# ମାଥିଉ ଲିଖିତ ସୁସମାଚାର

## ଯୀଶୁଙ୍କ ବଂଶାବଳୀ

୧ ଯୀଶୁ ଖ୍ରୀଷ୍ଟଙ୍କ ବଂଶାବଳୀ ଏହିପରି। ସେ ଦାଉଦଙ୍କ
ବଂଶଧର। ଦାଉଦ ଅବ୍ରହାମଙ୍କ ବଂଶଧର।

୨ ଅବ୍ରହାମ ଯିସ୍ହାକଙ୍କ ବାପା।
ଯିସ୍ହାକ ଯାକୁବଙ୍କ ବାପା।
ଯାକୁବ, ଯିହୂଦା ଓ ତାହାଙ୍କ ଭାଇମାନଙ୍କର ବାପା।
୩ ଯିହୂଦା, ଫେରସ ଓ ଜେରହଙ୍କ ବାପା।
(ଥାମାର ସେମାନଙ୍କ ମାଆ)
ଫେରସ ହେସ୍ରୋଣଙ୍କ ବାପା।
ହେସ୍ରୋଣ ଅରାମଙ୍କ ବାପା।
୪ ଅରାମ ଅମ୍ମୀନାଦାବଙ୍କ ବାପା।
ଅମ୍ମୀନାଦାବ ନହଶୋନଙ୍କ ବାପା।
ନହଶୋନ ସଲ୍ମୋନଙ୍କ ବାପା।
୫ ସଲ୍ମୋନ ବୋୟଜଙ୍କ ବାପା।
(ବୋୟଜଙ୍କ ମାଆଙ୍କ ନାମ ରାହାବ)
ବୋୟଜ ଓବେଦଙ୍କ ବାପା
(ରୂତ ଓବେଦଙ୍କ ମାଆ)
ଓବେଦ ଯିଶୟଙ୍କ ବାପା।
୬ ଯିଶୟ ରାଜା ଦାଉଦଙ୍କ ବାପା।
ଦାଉଦ ଶଲମୋନଙ୍କ ବାପା
(ଶଲମୋନଙ୍କ ମାଆ ଆଗରୁ ଉରିୟଙ୍କ
ସ୍ତ୍ରୀ ଥିଲେ)
୭ ଶଲମୋନ ରିହବୟାମଙ୍କ ବାପା।
ରିହବୟାମ ଅବିୟଙ୍କ ବାପା।
ଅବିୟ ଆସାଙ୍କ ବାପା।
୮ ଆସା ଯିହୋଶାଫଟଙ୍କ ବାପା।
ଯିହୋଶାଫଟ ଯୋରାମଙ୍କ ବାପା।
ଯୋରାମ ଉଜ୍ଜିୟଙ୍କ ବାପା।
୯ ଉଜ୍ଜିୟ ଯୋଥାମଙ୍କ ବାପା।
ଯୋଥାମ ଆହାଜଙ୍କ ବାପା।
ଆହାଜ ହିଜକିୟଙ୍କ ବାପା।
୧୦ ହିଜକିୟ ମନଶେହଙ୍କ ବାପା।
ମନଶେହ ଆମୋନଙ୍କ ବାପା।
ଆମୋନ ଯୋଶିୟଙ୍କ ବାପା।
୧୧ ଯୋଶିୟ, ଯିଖନିୟ ଓ ତାହାଙ୍କ ଭାଇମାନଙ୍କ ବାପା।
(ଏହା ଇସ୍ରାଏଲ ଲୋକଙ୍କୁ କ୍ରୀତଦାସ କରି
ବାବିଲୋନ ନିଆଯାଉଥିବା ସମୟର କଥା।)
୧୨ ସେମାନଙ୍କୁ ବାବିଲୋନକୁ ନିଆଯିବା ପରେ:
ଯିଖନିୟ ଶଲ୍ଥୀୟେଲଙ୍କ ବାପା।
ଶଲ୍ଥୀୟେଲ ଜିରୁବ୍ବାବେଲଙ୍କ ବାପା।
୧୩ ଜିରୁବ୍ବାବେଲ ଅବୀହୂଦଙ୍କ ବାପା।
ଅବୀହୂଦ ଏଲିୟାକୀମଙ୍କ ବାପା।
ଏଲିୟାକୀମ ଅଜ୍ଜୂରଙ୍କ ବାପା।
୧୪ ଅଜ୍ଜୂର ସାଦୋକଙ୍କ ବାପା।
ସାଦୋକ ଯାଖୀନଙ୍କ ବାପା।
ଯାଖୀନ ଏଲୀହୂଦଙ୍କ ବାପା।
୧୫ ଏଲୀହୂଦ ଏଲିୟାଜରଙ୍କ ବାପା।
ଏଲିୟାଜର ମତ୍ଥାନଙ୍କ ବାପା।
ମତ୍ଥାନ ଯାକୁବଙ୍କ ବାପା।
୧୬ ଯାକୁବ ଯୋସେଫଙ୍କ ବାପା।
ଯୋସେଫ ମରିୟମଙ୍କ ସ୍ୱାମୀ।
ମରିୟମଙ୍କ ଗର୍ଭରୁ ଯୀଶୁ ଜନ୍ମ ହେଲେ।
ଯୀଶୁଙ୍କୁ ଖ୍ରୀଷ୍ଟ* କୁହାଯାଏ।

୧୭ ଏହିଭଳି ଭାବରେ ଅବ୍ରହାମଙ୍କ ଠାରୁ ଦାଉଦଙ୍କ ପର୍ଯ୍ୟନ୍ତ
ହେଲେ ମୋଟ ଚଉଦ ପୁରୁଷ। ଦାଉଦଙ୍କ ଠାରୁ କ୍ରୀତଦାସ
ରୂପେ ବାବିଲୋନରେ ପହଞ୍ଚିବା ପର୍ଯ୍ୟନ୍ତ ଚଉଦ ପୁରୁଷ, ଓ
କ୍ରୀତଦାସ ରୂପେ ବାବିଲୋନରେ ପହଞ୍ଚିବା ପରଠାରୁ ଖ୍ରୀଷ୍ଟଙ୍କ
ଜନ୍ମପର୍ଯ୍ୟନ୍ତ ହେଲେ ଚଉଦ ପୁରୁଷ।

## ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମ

୧୮ ଯୀଶୁଖ୍ରୀଷ୍ଟଙ୍କ ମାଆ ଥିଲେ ମରିୟମ। ଯୀଶୁଖ୍ରୀଷ୍ଟଙ୍କ
ଜନ୍ମ ଏହିଭଳି ହୋଇଥିଲା। ମରିୟମଙ୍କର ଯୋସେଫଙ୍କ
ସହିତ ବିବାହ ସ୍ଥିର ହୋଇଥିଲା। କିନ୍ତୁ ବିବାହ ପୂର୍ବରୁ
ଜଣା ପଡ଼ିଲା ଯେ, ମରିୟମ ପବିତ୍ର-ଆତ୍ମାଙ୍କ ଶକ୍ତି ବଳରେ
ଗର୍ଭବତୀ ହୋଇଛନ୍ତି। ୧୯ କିନ୍ତୁ ତାହାଙ୍କର ଭାବୀପତି ଯୋସେଫ
ଜଣେ ଧାର୍ମିକ ଲୋକ ଥିଲେ। ଲୋକମାନଙ୍କ ଆଗରେ
ମରିୟମଙ୍କୁ ଅପମାନ କରିବା ସେ ଚାହୁଁନଥିଲେ। ସେ
ତାହାଙ୍କୁ ଛାଡ଼ପତ୍ର ଦେବା ପାଇଁ ଗୋପନରେ ଯୋଜନା
କଲେ।

୨୦ କିନ୍ତୁ ଯୋସେଫ ଯେତେବେଳେ ଏକଥା ଭାବୁଥିଲେ,
ସେତେବେଳେ ସ୍ୱପ୍ନରେ ଦର୍ଶନ ପାଇଲେ ପ୍ରଭୁଙ୍କର ଜଣେ
ଦୂତ ତାହାଙ୍କ ପାଖକୁ ଆସି କହିଲେ, "ହେ ଦାଉଦଙ୍କ
ସନ୍ତାନ ଯୋସେଫ ତୁମ୍ଭେ ମରିୟମଙ୍କୁ ଆପଣା ସ୍ତ୍ରୀ ରୂପେ
ଗ୍ରହଣ କରିବାକୁ ଭୟ କରନାହିଁ। କାରଣ ତାହାଙ୍କ

**ଖ୍ରୀଷ୍ଟ** ଅଭିଷିକ୍ତ (ମଶୀହ) ବ୍ୟକ୍ତି ବା ମନୋନୀତ ବ୍ୟକ୍ତି

ଗର୍ଭରେ ଥିବା ଶିଶୁଟି ପବିତ୍ର-ଆତ୍ମାଙ୍କର। ୨୧ମରିୟମ ପୁତ୍ର
ସନ୍ତାନଟିଏ ଜନ୍ମ ଦେବେ। ତୁମ୍ଭେ ତାହାଙ୍କ ନାମ ଯୀଶୁ
ରଖିବ। କାରଣ ସେ ନିଜ ଲୋକମାନଙ୍କୁ ସେମାନଙ୍କ
ପାପରୁ ରକ୍ଷା କରିବେ।"
୨୨ଭବିଷ୍ୟଦ୍‌ବକ୍ତାଙ୍କ ମାଧ୍ୟମରେ ପ୍ରଭୁ ଯାହା କହିଥିଲେ,
ତାହା ସଫଳ କରିବା ନିମନ୍ତେ ଏହା ଘଟିଲା। ୨୩"ଜଣେ
କୁମାରୀ କନ୍ୟା ଗର୍ଭବତୀ ହୋଇ ପୁତ୍ର ସନ୍ତାନଟିଏ ଜନ୍ମ
ଦେବେ। ଲୋକେ ତାହାଙ୍କ ନାମ 'ଇମ୍ମାନୁୟେଲ' ଦେବେ।"*
(ଇମ୍ମାନୁୟେଲର ଅର୍ଥ: ପରମେଶ୍ୱର ଆମ୍ଭ ସହିତ ଅଛନ୍ତି।)
୨୪ଯୋସେଫ ନିଦରୁ ଉଠି ପ୍ରଭୁଙ୍କ ଦୂତ ତାହାଙ୍କୁ
ଯେଉଁଭଳି ଆଦେଶ ଦେଲେ, ସେପରି କରିଲେ। ସେ
ମରିୟମଙ୍କୁ ବିବାହ କଲେ। ୨୫କିନ୍ତୁ ମରିୟମ ପୁତ୍ର-ସନ୍ତାନକୁ
ଜନ୍ମ ନ ଦେବା ପର୍ଯ୍ୟନ୍ତ ସେ ତାହାଙ୍କ ସହିତ ସହବାସ
କରିନଥିଲେ। ଆଉ ଯୋସେଫ ପୁଅଟିର ନାମ ଯୀଶୁ
ରଖିଲେ।

## ଯୀଶୁଙ୍କୁ ଦେଖିବା ପାଇଁ ପୂର୍ବ ଦେଶରୁ ପଣ୍ଡିତମାନଙ୍କ ଆଗମନ

୨ ହେରୋଦ*ଙ୍କ ରାଜତ୍ୱକାଳରେ ଯିହୂଦା ରାଜ୍ୟର
ବେଥ୍‌ଲେହମ ନଗରରେ ଯୀଶୁ ଜନ୍ମ ହେଲେ। ଯୀଶୁ
ଜନ୍ମ ହେବା ପରେ ପୂର୍ବ ଦେଶର କେତେକ ପଣ୍ଡିତ
ଯିରୂଶାଲମକୁ ଆସିଲେ। ୨ସେମାନେ ପଚାରିଲେ,
"ଯିହୂଦୀମାନଙ୍କର ରାଜା ସେହି ନବଜାତ ଶିଶୁ କେଉଁଠାରେ?
କାରଣ ଆମ୍ଭେ ପୂର୍ବର ଆକାଶରେ ତାହାଙ୍କ ତାରା ଉଠିଥିବାର
ଦେଖିଲୁ। ସେହି ତାରା ପ୍ରକାଶ କରେ ଯେ, ସେ ଜନ୍ମ
ହୋଇଛନ୍ତି। ତେଣୁ ଆମ୍ଭେ ତାହାଙ୍କୁ ପ୍ରଣାମ କରିବାକୁ
ଆସିଛୁ।"
୩ରାଜା ହେରୋଦ ଯିହୂଦୀମାନଙ୍କର ଏହି ନୂଆ ରାଜାଙ୍କ
କଥା ଶୁଣିଲେ। ସେଥିପାଇଁ ସେ ଉଦ୍‌ବିଗ୍ନ ହେଲେ।
ଯିରୂଶାଲମର ସବୁ ଲୋକେ ମଧ୍ୟ ଚିନ୍ତିତ ହୋଇ ପଡିଲେ।
୪ହେରୋଦ ଯିହୂଦା ସମାଜର ସମସ୍ତ ପ୍ରମୁଖ ଯାଜକ ଏବଂ
ଧର୍ମ-ଶାସ୍ତ୍ରୀମାନଙ୍କର ଗୋଟିଏ ବୈଠକ ଡାକିଲେ। ସେ
ସେମାନଙ୍କୁ ପଚାରିଲେ, ଖ୍ରୀଷ୍ଟ କେଉଁଠାରେ ଜନ୍ମ ହେବେ?
୫ସେମାନେ କହିଲେ, "ଯିହୂଦା ପ୍ରଦେଶର ବେଥ୍‌ଲେହମ
ନଗରରେ। ଭବିଷ୍ୟଦ୍‌ବକ୍ତା ଶାସ୍ତ୍ରରେ ଏସଂପର୍କରେ ଲେଖିଛନ୍ତି:

୬ 'ହେ ଯିହୂଦା-ପ୍ରଦେଶର ବେଥ୍‌ଲେହମ! ଯିହୂଦାର
ଶାସକମାନଙ୍କ ଭିତରେ ତୁମ୍ଭେ ମହାନ। ହଁ, ତୁମ୍ଭର
ଭିତରୁ ଜଣେ ଶାସକ ଆଗତ ହେବ ଏବଂ ସେହି
ଶାସକ ମୋର ଲୋକମାନଙ୍କୁ, ଇସ୍ରାୟେଲକୁ
କଢ଼ାଇନେବେ।'" ମିଖା ୫:୨

୭ତା'ପରେ ହେରୋଦ ପୂର୍ବଦେଶରୁ ଆସିଥିବା ପଣ୍ଡିତମାନଙ୍କ
ସହିତ ଗୁପ୍ତ ବୈଠକ କଲେ। ସେମାନେ କେତେବେଳେ
ପ୍ରଥମେ ସେହି ତାରା ଦେଖିଥିଲେ, ତାହାର ସଠିକ୍ ସମୟ
ହେରୋଦ ପଣ୍ଡିତମାନଙ୍କଠାରୁ ବୁଝିନେଲେ। ୮ହେରୋଦ
ସେମାନଙ୍କୁ ବେଥ୍‌ଲେହମ ପଠାଇଲେ ଓ କହିଲେ, "ତୁମ୍ଭେମାନେ
ବେଥ୍‌ଲେହମ ଯାଇ ଶିଶୁଟି ବିଷୟରେ ଯତ୍ନ ଭାବରେ
ଖୋଜ-ଖବର ନିଅ। ଯଦି ତୁମ୍ଭେ ତାକୁ ପାଇଯାଅ, ତେବେ
ମୋତେ ଜଣାଅ। ତା'ପରେ ମୁଁ ମଧ୍ୟ ଯାଇ ତାହାଙ୍କୁ
ପ୍ରଣାମ କରିବି।"
୯ପଣ୍ଡିତମାନେ ରାଜାଙ୍କ କଥା ଶୁଣି ଚାଲିଗଲେ। ଯେଉଁ
ତାରାଟି ସେମାନେ ଆଗରୁ ପୂର୍ବ ଦେଶରେ ଦେଖିଥିଲେ,
ପୁଣି ଥରେ ତାକୁ ଦେଖିଲେ। ସେହି ତାରାଟି ତାହାଙ୍କ
ଆଗେ-ଆଗେ ଚାଲିଲା ଏବଂ ଯେଉଁଠାରେ ପିଲାଟି ଥିଲା,
ସେହି ସ୍ଥାନ ଉପରେ ସ୍ଥିର ହୋଇ ରହିଗଲା। ୧୦ତାରା
ଦେଖି ପଣ୍ଡିତମାନେ ବହୁତ ଖୁସି ହେଲେ। ସେମାନେ
ଆନନ୍ଦରେ ପରିପୂର୍ଣ୍ଣ ହେଲେ। ୧୧ସେମାନେ ଘର ଭିତରକୁ
ଗଲେ। ମା ମରିୟମଙ୍କ ପାଖରେ ପିଲାଟିକୁ ଦେଖିଲେ।
ତାହାଙ୍କୁ ଭୂମିଷ୍ଠ ପ୍ରଣାମ କରି ତାହାଙ୍କର ଉପାସନା କଲେ।
ତା'ପରେ ସେମାନେ ଶିଶୁ ପାଇଁ ଆଣିଥିବା ଉପହାର
ପେଡିଟି ଖୋଲିଲେ। ସେମାନେ ଶିଶୁକୁ ସୁନା, କୁନ୍ଦୁରୁ* ଓ
ଗନ୍ଧରସ* ଉପହାର ଦେଲେ। ୧୨କିନ୍ତୁ ପରମେଶ୍ୱର ସେମାନଙ୍କୁ
ହେରୋଦଙ୍କ ପାଖକୁ ଫେରି ନ ଯିବାକୁ ସ୍ୱପ୍ନରେ ସାବଧାନ
କରାଇ ଦେଲେ। ତେଣୁ ସେମାନେ ଅନ୍ୟ ଏକ ପଥ
ଦେଇ ନିଜଦେଶକୁ ଫେରିଗଲେ।

## ଯୀଶୁଙ୍କ ବାପା-ମାଆ ତାହାଙ୍କୁ ମିସରକୁ ନେଲେ

୧୩ପଣ୍ଡିତମାନେ ଚାଲିଯିବାପରେ ପରମେଶ୍ୱରଙ୍କର ଜଣେ
ଦୂତ ସ୍ୱପ୍ନରେ ଯୋସେଫଙ୍କୁ ଦର୍ଶନ ଦେଇ କହିଲେ, "ଉଠ,
ଶିଶୁଟିକୁ ଓ ତା ମାଆଙ୍କୁ ନେଇ ମିସର ଦେଶକୁ ପଳାଅ
ଏବଂ ମୁଁ ନ କହିବା ପର୍ଯ୍ୟନ୍ତ ସେଠାରେ ରୁହ। କାରଣ
ହେରୋଦ ତାହାକୁ ମାରିଦେବା ପାଇଁ ଚାହୁଁଥିବାରୁ ତାହାଙ୍କୁ
ଖୋଜିବ।" ୧୪ତେଣୁ ଯୋସେଫ ଉଠିଲେ। ସେ ଶିଶୁ ଓ
ତା' ମାଆଙ୍କୁ ଧରି ମିସର ଦେଶକୁ ଯିବା ପାଇଁ ରାତିରେ
ବାହାରି ପଡିଲେ। ୧୫ସେଠାରେ ଯୋସେଫ ହେରୋଦଙ୍କ
ମୃତ୍ୟୁ ପର୍ଯ୍ୟନ୍ତ ରହିଲେ। ପରମେଶ୍ୱର ତାହାଙ୍କ ଭବିଷ୍ୟଦ୍‌ବକ୍ତାଙ୍କ
ମାଧ୍ୟମରେ ଯାହା କହିଥିଲେ, ତାହା ସଫଳ କରିବା ପାଇଁ
ଏସବୁ ଘଟିଲା। ପ୍ରଭୁ ପରମେଶ୍ୱର କହିଥିଲେ, "ମୁଁ ମୋର
ପୁଅକୁ ମିସରରୁ ବାହାରି ଆସିବାକୁ କହିଛି।"*

## ହେରୋଦ ବେଥ୍‌ଲେହମର ଶିଶୁ-ପୁତ୍ରମାନଙ୍କୁ ହତ୍ୟା କଲେ

୧୬ହେରୋଦ ଦେଖିଲେ ଯେ, ପଣ୍ଡିତମାନେ ତାହାଙ୍କୁ
ବୋକା ବନେଇ ଦେଇଛନ୍ତି। ସେ ଖୁବ୍ ରାଗିଗଲେ। ସେ
ପଣ୍ଡିତମାନଙ୍କ ଠାରୁ ଶିଶୁପୁତ୍ରଟିର ଜନ୍ମ-ସମୟ ଜାଣିଥିଲେ।

---

**"ଜଣେ ... ଦେବେ।"** ଯିଶାଇୟ ୭:୧୪

**ହେରୋଦ** ହେରୋଦ (ପ୍ରଥମ) ଖ୍ରୀ:ପୂ: ୪୦ରୁ ପ୍ରାୟ ଖ୍ରୀ:ପୂ: ୪ ପର୍ଯ୍ୟନ୍ତ ଯିହୂଦାର ଶାସକ ଥିଲେ।

**କୁନ୍ଦୁରୁ** ଆରବ ଦେଶୀୟ ଝୁଣା। ଯାହାକୁ 'ଲୋବାନ୍' କୁହାଯାଏ।

**ଗନ୍ଧରସ** ଦାମୀ ଅତର (ଗୁଗ୍‌ଗୁଳ)

**"ମୁଁ ମୋର ... ଆସିବାକୁ କହିଛି।"** ହୋଶେୟ ୧୧:୧

ତାହା ଦୁଇବର୍ଷ ତଳର କଥା ହୋଇଥିବାରୁ ସେ ବେଥ୍ଲେହମ
ଓ ତା' ଆଖପାଖ ଅଞ୍ଚଳର ଦୁଇବର୍ଷ ବା ତା'ଠାରୁ କମ୍
ବୟସର ସବୁ ଶିଶୁପୁତ୍ରଙ୍କୁ ହତ୍ୟା କରିବାକୁ ଆଦେଶ
ଦେଲେ। ୧୭ଏହିଭଳି ଭାବରେ ଭବିଷ୍ୟଦ୍‌ବକ୍ତା ଯିରିମିୟଙ୍କ
ମାଧ୍ୟମରେ କୁହାଯାଇଥିବା ପ୍ରଭୁଙ୍କ ବାକ୍ୟ ସଫଳ ହେଲା:

୧୮ "ରାମାରେ ଏକ ଦୁଃଖଭରା ସ୍ୱର ଶୁଣାଗଲା। ତାହା
ରୋଦନ ଓ ଅତିଶୟ ବିଳାପର ସ୍ୱର ଥିଲା।
ରାହେଲ ତା ପିଲାମାନଙ୍କ ପାଇଁ କାନ୍ଦୁଥିଲା। କେହିହେଲେ
ତାକୁ ସାନ୍ତ୍ୱନା ଦେଇ ପାରିବେନି। କାରଣ ତା'ର
ପିଲାମାନେ ମରିଯାଇଥିଲେ।"

ଯିରିମିୟ ୩୧:୧୫

### ଯୋସେଫ ଓ ମରିୟମ ମିସରରୁ ଫେରିଲେ

୧୯ହେରୋଦଙ୍କ ମୃତ୍ୟୁ ପରେ ମିସରରେ ଯୋସେଫଙ୍କୁ
ସ୍ୱପ୍ନରେ ପ୍ରଭୁ ପରମେଶ୍ୱରଙ୍କର ଜଣେ ଦୂତ ଦେଖାଦେଲେ।
୨୦ଦୂତ କହିଲେ, "ଉଠ, ପିଲାଟିକୁ ଓ ତା ମାଆକୁ ନେଇ
ଇସ୍ରାୟେଲ ଦେଶକୁ ଯାଅ। କାରଣ ଯେଉଁମାନେ ପିଲାଟିକୁ
ମାରିଦେବାକୁ ଚେଷ୍ଟା କରୁଥିଲେ, ସେମାନେ ଏବେ
ମରିଗଲେଣି।"
୨୧ତେଣୁ ଯୋସେଫ ପ୍ରସ୍ତୁତ ହେଲେ। ସେ ପିଲାଟିକୁ ଓ
ତା ମାଆଙ୍କୁ ନେଇ ଇସ୍ରାୟେଲ ଫେରିଗଲେ। ୨୨କିନ୍ତୁ
ଯୋସେଫ ଶୁଣିଲେ ଯେ, ହେରୋଦଙ୍କ ମୃତ୍ୟୁ ପରେ
ତାହାଙ୍କ ପୁଅ ଆର୍ଖିଲାୟ ଯିହୂଦାରେ ରାଜା ହୋଇଛନ୍ତି।
ତେଣୁ ସେ ସେଠାକୁ ଯିବାକୁ ଭୟକଲେ। କିନ୍ତୁ ପରମେଶ୍ୱରଙ୍କ
ଠାରୁ ସ୍ୱପ୍ନରେ ଆଦେଶ ପାଇ ଯୋସେଫ ଗାଲୀଲୀ
ପ୍ରଦେଶକୁ ଗଲେ। ୨୩ସେ ସେଠାରେ ପହଞ୍ଚି ନାଜରିତ
ନାମକ ନଗରରେ ବାସ କଲେ। ଖ୍ରୀଷ୍ଟ ନାଜରତୀୟ ରୂପେ
ଖ୍ୟାତ ହେବେବୋଲି ଭବିଷ୍ୟତ୍‌ବକ୍ତାମାନଙ୍କ ମାଧ୍ୟମରେ
ପରମେଶ୍ୱର କହିଥିଲେ। ସେହି ବାକ୍ୟ ଅନୁସାରେ ଏହା
ଘଟିଲା।

### ବାପ୍ତିଜକ ଯୋହନଙ୍କ କାର୍ଯ୍ୟ

୩ ସେହି ସମୟରେ ବାପ୍ତିଜକ ଯୋହନ ଆସି ଯିହୂଦା
ପ୍ରଦେଶର ପ୍ରାନ୍ତର ମଧ୍ୟରେ ଘୋଷଣା କରି କହିବାକୁ
ଲାଗିଲେ ୨ତୁମ୍ଭମାନଙ୍କର ଜୀବନ ଓ ହୃଦୟ ପରିବର୍ତ୍ତନ
କର, କାରଣ ସ୍ୱର୍ଗ ରାଜ୍ୟ ଶୀଘ୍ର ଆସୁଅଛି। ୩ସେହି
ଯୋହନଙ୍କ ବିଷୟରେ ଭବିଷ୍ୟଦ୍‌ବକ୍ତା ଯିଶାଇୟ କହୁଥିଲେ,

"ପ୍ରାନ୍ତରରେ ଉଚ୍ଚ ଶବ୍ଦ କରୁଥିବା ଜଣକର ସ୍ୱର।
'ପ୍ରଭୁଙ୍କର ପଥ ପ୍ରସ୍ତୁତ କର, ତାହାଙ୍କ ପଥସବୁ
ସଳଖ କର।'" ଯିଶାଇୟ ୪୦:୩

୪ଯୋହନଙ୍କ ବସ୍ତ୍ର ଓଟଲୋମରେ ତିଆରି ହୋଇଥିଲା।
ସେ ଅଣ୍ଟାରେ ଚମଡ଼ାପଟି ବାନ୍ଧିଥିଲେ। ପଙ୍ଗପାଳ ଓ
ବନମଧୁ ତାହାଙ୍କର ଖାଦ୍ୟ ଥିଲା। ୫ସେ ସମୟରେ
ଯିରୂଶାଲମ, ସମଗ୍ର ଯିହୂଦା ରାଜ୍ୟ ଓ ଯର୍ଦ୍ଦନ ନଦୀର
ଦୁଇପାଖ ଅଞ୍ଚଳରେ ଥିବା ଲୋକେ ଯୋହନଙ୍କ ପାଖକୁ
ଉପଦେଶ ଶୁଣିବାକୁ ଆସିଲେ। ୬ସେମାନେ ନିଜ ନିଜ
ପାପ ସ୍ୱୀକାର କଲେ। ଯୋହନ ଯର୍ଦ୍ଦନ ନଦୀରେ ସେମାନଙ୍କୁ
ବାପ୍ତିସ୍ମ ଦେଲେ।
୭ଅନେକ ଫାରୂଶୀ ଓ ସାଦ୍ଦୂକୀ ଯୋହନ ଲୋକମାନଙ୍କୁ
ବାପ୍ତିସ୍ମ ଦେଉଥିବା ସ୍ଥାନକୁ ଆସିଲେ। ସେମାନଙ୍କୁ ଦେଖି
ଯୋହନ କହିଲେ, "ହେ କାଳସର୍ପର ବଂଶ। ତୁମ୍ଭେ ପ୍ରଭୁଙ୍କ
ଆଗାମୀ କ୍ରୋଧରୁ ପଳାୟନ କରିବା ପାଇଁ ତୁମ୍ଭକୁ କିଏ
ଚେତାବନୀ ଦେଲା? ୮ତୁମ୍ଭକୁ ନିଜର କାର୍ଯ୍ୟ ଦ୍ୱାରା ପ୍ରକାଶ
କରିବାକୁ ହେବ ଯେ, ତୁମ୍ଭେ ବାସ୍ତବରେ ମନପରିବର୍ତ୍ତନ
କରିଛ। ୯ତୁମ୍ଭେମାନେ ନିଜକୁ ଅବ୍ରହାମଙ୍କ ସନ୍ତାନ ବୋଲି
କହିଦେଲେ ଯେ ଯଥେଷ୍ଟ ହୋଇଗଲା, ସେ କଥା
କେବେହେଲେ ଭାବନାହିଁ। ମୁଁ ତୁମ୍ଭକୁ କହି ରଖୁଛି ଯେ
ପରମେଶ୍ୱର ଅବ୍ରହାମଙ୍କ ପାଇଁ ଏହି ପଥରଗୁଡ଼ିକରୁ ମଧ୍ୟ
ସନ୍ତାନ ସୃଷ୍ଟି କରିପାରିବେ। ୧୦ଗଛର ମୂଳ ଉପରେ
କୁହ୍ରାଡ଼ି ରଖା ଯାଇସାରିଲାଣି। ଯେଉଁସବୁ ଗଛ ଭଲ ଫଳ
ଦେଉ ନାହାଁନ୍ତି, ସେଗୁଡ଼ିକୁ କାଟି ନିଆଁରେ ପକେଇ
ଦିଆଯିବ।
୧୧"ତୁମ୍ଭେମାନେ ମନପରିବର୍ତ୍ତନ କରିଥିବାରୁ ମୁଁ ତ
ତୁମ୍ଭକୁ ଜଳରେ ବାପ୍ତିସ୍ମ ଦେଉଛି, କିନ୍ତୁ ମୋ ପରେ ଯେ
ଆସୁଛନ୍ତି, ସେ ମୋ'ଠାରୁ ମହାନ। ମୁଁ ତ ତାହାଙ୍କର
ଜୋତା ବୋହି ନେବାକୁ ମଧ୍ୟ ଯୋଗ୍ୟ ନୁହେଁ। ସେ
ତୁମ୍ଭକୁ ପବିତ୍ରଆତ୍ମା ଓ ଅଗ୍ନିରେ ବାପ୍ତିସ୍ମ ଦେବେ। ୧୨ତାହାଙ୍କ
ହାତରେ କୁଲା ଅଛି। ସେଥିରେ ସେ ଶସ୍ୟ ସବୁରୁ ଅଗାଡ଼ି
ତକ ଅଲଗା କରିଦେବେ। ସେ ତାହାଙ୍କ ଖଳାରୁ ପରିଷ୍କାର
ହୋଇଥିବା ଶସ୍ୟତକ ଏକାଠି କରିନେଇ ଅମାର ଭିତରେ
ରଖି ଦେବେ ଓ ଅଗାଡ଼ି, କାଠି-କୁଟାତକ ନିଆଁରେ
ପକେଇ ଦେବେ। ସେ ନିଆଁ କେବେହେଲେ ଲିଭିବ
ନାହିଁ।"

### ଯୀଶୁ ଯୋହନଙ୍କ ଦ୍ୱାରା ବାପ୍ତିଜିତ ହେଲେ

୧୩ସେହି ସମୟରେ ଯୋହନଙ୍କଠାରୁ ବାପ୍ତିସ୍ମ ନେବାପାଇଁ
ଯୀଶୁ ଗାଲୀଲୀରୁ ଯର୍ଦ୍ଦନ ନଦୀ କୂଳକୁ ଆସିଲେ। ୧୪କିନ୍ତୁ
ଯୋହନ ଯୀଶୁଙ୍କୁ ବାପ୍ତିସ୍ମ ତାହାଙ୍କଠାରେ ନେବାପାଇଁ ମନା
କରିବାକୁ ଚେଷ୍ଟା କରି କହିଲେ, "ମୋର ତୁମ୍ଭଠାରୁ ବାପ୍ତିସ୍ମ
ନେବା ଦରକାର। ତୁମ୍ଭେ ମୋ ପାଖକୁ କାହିଁକି ଆସିଛ?"
୧୫ଉତ୍ତରରେ ଯୀଶୁ ତାହାଙ୍କୁ କହିଲେ, "ବର୍ତ୍ତମାନ ପାଇଁ
ଏହିଭଳି ହେଉ। ଆମ୍ଭେ ସମସ୍ତ ବିଷୟ କରିବା ଉଚିତ,
ଯାହା ଉତ୍ତମ ଅଟେ।" ତେଣୁ ଯୋହନ ଯୀଶୁଙ୍କୁ ବାପ୍ତିସ୍ମ
ଦେବାପାଇଁ ରାଜି ହେଲେ।
୧୬ଯୀଶୁ ବାପ୍ତିଜିତ ହେଲେ। ଯୀଶୁ ଜଳରୁ ବାହାରିବା
ମାତ୍ରେ ଆକାଶ ଖୋଲିଗଲା, ଏବଂ ସେ ପରମେଶ୍ୱରଙ୍କ
ଆତ୍ମାକୁ ଗୋଟିଏ କପୋତ ରୂପରେ ତଳକୁ ଓହ୍ଲେଇ
ତାହାଙ୍କ ଉପରକୁ ଆସୁଥିବାର ଦେଖିଲେ। ୧୭ସେତେବେଳେ
ଆକାଶରୁ ଏହି ବାଣୀ ହେଲା: "ଏ ମୋର ପ୍ରିୟ ପୁତ୍ର
(ଯୀଶୁ) ଓ ମୁଁ ତାହାଙ୍କୁ ପ୍ରେମ କରେ। ମୁଁ ତାହାଙ୍କ
ଉପରେ ପରମ ସନ୍ତୁଷ୍ଟ।"

## ଯୀଶୁଙ୍କୁ ପରୀକ୍ଷା

୪ ତା'ପରେ ସେହି ପବିତ୍ର ଆତ୍ମା ଯୀଶୁଙ୍କୁ ମରୁଭୂମିକୁ
କଢ଼ାଇ ନେଇଗଲେ। ଶୟତାନ ଦ୍ୱାରା ପରୀକ୍ଷିତ
ହେବାପାଇଁ ତାହାଙ୍କୁ ସେଠାକୁ ନିଆଯାଇଥିଲା। ୨ଯୀଶୁ
ଚାଳିଶ ଦିନ ଓ ଚାଳିଶ ରାତି କିଛି ଖାଇଲେ ନାହିଁ। ଏହା
ପରେ ତାହାଙ୍କୁ ଖୁବ ଭୋକ ଲାଗୁଥିଲା। ୩ଶୟତାନ ପରୀକ୍ଷା
କରିବା ନିମନ୍ତେ ଆସି ତାହାଙ୍କୁ କହିଲା, "ତୁମ୍ଭେ ଯଦି
ପରମେଶ୍ୱରଙ୍କ ପୁତ୍ର, ତେବେ ଏହି ପଥରଗୁଡ଼ିକୁ ରୋଟୀ
ହୋଇ ଯିବାପାଇଁ କୁହ।"
୪ଯୀଶୁ ଉତ୍ତରରେ କହିଲେ, "ଶାସ୍ତ୍ରରେ ଏହା ଲେଖାଅଛି,

'ମଣିଷକୁ କେବଳ ଖାଦ୍ୟ ବଞ୍ଚାଇ ରଖେ ନାହିଁ,
ତା'ର ଜୀବନ ପରମେଶ୍ୱରଙ୍କ ମୁହଁରୁ ବାହାରି ଥିବା
ବାଣୀ ଉପରେ ହିଁ ନିର୍ଭର କରେ।'"
ଦ୍ୱିତୀୟ ବିବରଣ ୮:୩

୫ତାପରେ ଶୟତାନ ତାହାଙ୍କୁ ପବିତ୍ର ନଗରୀ ଯିରୂଶାଲମକୁ
ନେଇଗଲା। ସେ ଯୀଶୁଙ୍କୁ ମନ୍ଦିରର ସବୁଠାରୁ ଉଚ୍ଚ
ସ୍ଥାନରେ ରଖିଲା। ୬ଶୟତାନ କହିଲା, "ଯଦି ତୁମ୍ଭେ
ପରମେଶ୍ୱରଙ୍କ ପୁତ୍ର, ତେବେ ତଳକୁ ଡେଇଁପଡ଼। କାରଣ
ଶାସ୍ତ୍ରରେ ଲେଖାଅଛି:

'ପରମେଶ୍ୱର ତୁମ୍ଭର ଯତ୍ନ ନେବାପାଇଁ ନିଜ ସ୍ୱର୍ଗଦୂତଙ୍କୁ
ଆଦେଶ ଦେବେ। ସେମାନେ ତୁମ୍ଭକୁ ତାହାଙ୍କ
ହାତରେ ଧରିପକାଇବେ। ତାହାଲେ ପଥରରେ ତୁମ୍ଭ
ଗୋଡ଼ ବାଜିବ ନାହିଁ।'" ଗୀତସଂହିତା ୯୧:୧୧-୧୨

୭ଯୀଶୁ ତାହାକୁ ଉତ୍ତର ଦେଲେ, "ଶାସ୍ତ୍ର ଏକଥା ମଧ୍ୟ
କୁହେ:

'ତୁମ୍ଭେ ନିଜ ପ୍ରଭୁ ପରମେଶ୍ୱରଙ୍କୁ ପରୀକ୍ଷା (ସନ୍ଦେହ)
କରିବ ନାହିଁ।'" ଦ୍ୱିତୀୟ ବିବରଣ ୬:୧୬

୮ତା'ପରେ ସେ ଯୀଶୁଙ୍କୁ ବହୁତ ଉଚ୍ଚ ପର୍ବତ ଉପରକୁ
ନେଇଗଲା। ଏବଂ ତାହାଙ୍କୁ ସଂସାରର ସମସ୍ତ ରାଜ୍ୟ ଓ
ସେଗୁଡିକର ଐଶ୍ୱର୍ଯ୍ୟ ଦେଖାଇଲା। ୯ଶୟତାନ ଯୀଶୁଙ୍କୁ
କହିଲା, "ଯଦି ତୁମ୍ଭେ ପାଦତଳେ ପଡ଼ି ମୋତେ ପ୍ରଣାମ
କରିବ, ତେବେ ତୁମ୍ଭକୁ ମୁଁ ଏସବୁ ଦେଇଦେବି।"
୧୦ଯୀଶୁ ତାକୁ କହିଲେ, "ଶୟତାନ, ମୋ ପାଖରୁ
ଦୂରହୁଅ। ଶାସ୍ତ୍ରରେ ଲେଖାଅଛି:

'ନିଜ ପ୍ରଭୁ ପରମେଶ୍ୱରଙ୍କୁ ପ୍ରଣାମ କର। କେବଳ
ତାହାଙ୍କର ଉପାସନା କର।'"
ଦ୍ୱିତୀୟ ବିବରଣ ୬:୧୩

୧୧ତେଣୁ ଶୟତାନ ତାହାଙ୍କୁ ଛାଡ଼ି ଚାଲିଗଲା, ଏବଂ
ତା'ପରେ ସ୍ୱର୍ଗଦୂତମାନେ ଆସି ତାହାଙ୍କର ଯତ୍ନ ନେଲେ।

## ଗାଲୀଲୀରେ ଯୀଶୁ କାର୍ଯ୍ୟ ଆରମ୍ଭ କରିଲେ

୧୨ଯୋହନ କାରାଗାରରେ ବନ୍ଦୀ ହୋଇଥିବା ଖବର
ଯୀଶୁ ଶୁଣିଲେ। ତେଣୁ ଯୀଶୁ ଗାଲୀଲୀକୁ ଫେରିଗଲେ।
୧୩ଯୀଶୁ କିନ୍ତୁ ନାଜରିତରେ ରହିଲେ ନାହିଁ। ସେ ଗାଲୀଲୀ
ହ୍ରଦ କୂଳରେ କଫର୍ନାହୂମ ସହରରେ ବାସ କଲେ।
କଫର୍ନାହୂମ ଜବୂଲୂନ ଓ ନପ୍ତାଲୀର ପାଖ ଅଞ୍ଚଳରେ
ଅବସ୍ଥିତ। ୧୪ଭବିଷ୍ୟଦ୍‌ବକ୍ତା ଯିଶାଇୟଙ୍କ ମାଧ୍ୟମରେ ପ୍ରଭୁ
ପରମେଶ୍ୱର ଯାହା କହିଥିଲେ, ତାହା ପୂର୍ଣ୍ଣ ହେବା ପାଇଁ
ଯୀଶୁ ଏଭଳି କରିଥିଲେ।

୧୫ "ଜବୂଲୂନ ଓ ନପ୍ତାଲୀ ପ୍ରଦେଶ, ଭୂମଧ୍ୟସାଗର
ରାସ୍ତାର ନିକଟସ୍ଥ ଯର୍ଦ୍ଦନ ନଦୀର ପରପାଶ୍ୱସ୍ଥ ଗାଲୀଲୀର
ଏକ ଅଣଯିହୂଦୀ ପ୍ରଦେଶ।
୧୬ ଯେଉଁଲୋକମାନେ ପାପର ଅନ୍ଧାରରେ ରହୁଥିଲେ,
ସେମାନେ ଏକ ମହାନ ଜ୍ୟୋତିଃ ଦେଖିଲେ।
କବର ଭଳି ଅନ୍ଧକାରମୟ ପ୍ରଦେଶରେ ଯେଉଁମାନେ
ରହୁଥିଲେ, ସେମାନଙ୍କ ଉପରେ ଜ୍ୟୋତିଃର ଉଦୟ
ହେଲା।" ଯିଶାଇୟ ୯:୧-୨

## ଯୀଶୁ କେତେକ ଶିଷ୍ୟଙ୍କୁ ବାଛିଲେ

୧୭ସେହିଦିନଠାରୁ ଯୀଶୁ ପ୍ରଚାର କରିବା ଆରମ୍ଭ
କରିଦେଲେ। ସେ କହିଲେ, "ହୃଦୟ ପରିବର୍ତ୍ତନ କର,
କାରଣ ସ୍ୱର୍ଗରାଜ୍ୟ ନିକଟ ହୋଇଗଲାଣି।"
୧୮ଯୀଶୁ ଗାଲୀଲୀ ହ୍ରଦ ପାଖ ଦେଇ ଯାଉଥିଲେ। ସେ
(ପିତର ନାମରେ ଖ୍ୟାତ) ଶିମୋନ ଓ ତାହାଙ୍କ ଭାଇ
ଆନ୍ଦ୍ରିୟଙ୍କୁ ଦେଖିଲେ। ସେମାନେ ହ୍ରଦରେ ଜାଲ ପକାଉଥିଲେ।
ସେମାନେ ବ୍ୟବସାୟରେ କେଉଟ ଥିଲେ। ୧୯ଯୀଶୁ ସେମାନଙ୍କୁ
କହିଲେ, "ଆସ, ମୋତେ ଅନୁସରଣ କର। ମୁଁ ତୁମ୍ଭକୁ
ଏକ ଭିନ୍ନ ପ୍ରକାରର କେଉଟ କରିବି। ମାଛ ନ ଧରି
ମଣିଷମାନଙ୍କୁ ତୁମ୍ଭେ ଏକତ୍ର ସଂଗ୍ରହ କରିବ।" ୨୦ସେମାନେ
ସଙ୍ଗେ ସଙ୍ଗେ ତାହାଙ୍କ ଜାଲ ଛାଡିଦେଇ ଯୀଶୁଙ୍କୁ ଅନୁସରଣ
କଲେ।
୨୧ଯୀଶୁ ସେଠାରୁ ଆଗକୁ ଚାଲିଲେ। ସେ ଦେଖିଲେ
ଯେ ଜେବଦୀଙ୍କ ପୁଅ ଯାକୁବ ଓ ଯୋହନଙ୍କୁ ତାହାଙ୍କ
ବାପାଙ୍କ ସହିତ ଡଙ୍ଗା ଉପରେ ବସି ଜାଲ ମରାମତି
କରୁଛନ୍ତି। ଯୀଶୁ ସେମାନଙ୍କୁ ଡାକିଲେ। ୨୨ସେମାନେ
ସଙ୍ଗେ ସଙ୍ଗେ ତାହାଙ୍କ ବାପାଙ୍କୁ ଓ ଡଙ୍ଗାକୁ ଛାଡ଼ି ଦେଇ
ଯୀଶୁଙ୍କୁ ଅନୁସରଣ କଲେ।

## ଯୀଶୁ ଲୋକମାନଙ୍କୁ ଉପଦେଶ ଦେଲେ ଓ ରୋଗସୁସ୍ଥ କଲେ

୨୩ଯୀଶୁ ଯିହୂଦୀ ପ୍ରାର୍ଥନାଗୃହ ମାନଙ୍କରେ ସ୍ୱର୍ଗ-ରାଜ୍ୟର
ସୁସମାଚାର ପ୍ରଚାର କରି ଓ ଲୋକଙ୍କର ସମସ୍ତ ପ୍ରକାର
ରୋଗ ଓ ପୀଡ଼ା ଦୂରକରି କରି ସମଗ୍ର ଗାଲୀଲୀ
ରାଜ୍ୟରେ ଭ୍ରମଣ କଲେ। ୨୪ସମଗ୍ର ସୁରିଆ ଦେଶରେ
ତାହାଙ୍କର ସମାଚାର ବ୍ୟାପିଗଲା। ଯେଉଁଲୋକମାନେ ବିଭିନ୍ନ
ରୋଗ ଓ ଭୟଙ୍କର ପୀଡ଼ାରେ ଭୋଗୁଥିଲେ, ଯେଉଁମାନଙ୍କୁ

ଭୂତ କବଳିତ କରିଥିଲା, ଯେଉଁମାନେ ମୃଗୀରୋଗୀ ଓ
ପକ୍ଷାଘାତ ରୋଗୀ ଥିଲେ, ସେମାନେ ସମସ୍ତେ ଯୀଶୁଙ୍କ
ପାଖକୁ ଆସିବାକୁ ଲାଗିଲେ। ଯୀଶୁ ସେମାନଙ୍କୁ ସୁସ୍ଥ
କରିଦେଲେ। ୨୫ତେଣୁ ଗାଲିଲୀ, ଦେକାପଲି, ଯିରୂଶାଲମ,
ଯିହୂଦା ଓ ଯର୍ଦ୍ଦନ ନଦୀର ପର ପାରିର ବହୁଲୋକ
ତାହାଙ୍କୁ ଅନୁସରଣ କରିବାକୁ ଲାଗିଲେ।

### ଯୀଶୁ ଲୋକମାନଙ୍କୁ ଶିକ୍ଷା ଦିଅନ୍ତି

୫ ଯୀଶୁଙ୍କୁ ଅନୁସରଣ କରୁଥିବା ଲୋକଙ୍କ ସଂଖ୍ୟା
କ୍ରମଶଃ ବଢ଼ିବାକୁ ଲାଗିଲା। ଏହା ଦେଖି ଯୀଶୁ
ଗୋଟିଏ ପାହାଡ ଉପରକୁ ଗଲେ ଏବଂ ସେଠାରେ
ବସିଲେ। ତାହାଙ୍କର ଶିଷ୍ୟମାନେ ତାହାଙ୍କପାଖକୁ ଆସିଲେ।
୨ଏଥର ଯୀଶୁ ସେମାନଙ୍କୁ ଉପଦେଶ ଦେବା ଆରମ୍ଭ
କଲେ:

୩ "ଆତ୍ମିକ ଭାବେ ଅଭାବ ଗ୍ରସ୍ତ ଲୋକମାନେ ଧନ୍ୟ,
କାରଣ ସ୍ୱର୍ଗରାଜ୍ୟ ସେହିମାନଙ୍କର।
୪ ବର୍ତ୍ତମାନ ଦୁଃଖିତ ଲୋକମାନେ ଧନ୍ୟ; କାରଣ
ପରମେଶ୍ୱର ସେମାନଙ୍କୁ ସାନ୍ତ୍ୱନା ଦେବେ।
୫ ନମ୍ର ଓ ସୁଶୀଳ ଲୋକମାନେ ଧନ୍ୟ; କାରଣ ଏ
ପୃଥିବୀ ସେହିମାନଙ୍କର ହେବ।
୬ ପରମେଶ୍ୱରଙ୍କ ଇଚ୍ଛା ଅନୁସାରେ ସତ୍‌କର୍ମ କରିବାକୁ
ଆଗ୍ରହୀ ଲୋକମାନେ ଧନ୍ୟ, କାରଣ ସେମାନେ
ସଂପୂର୍ଣ୍ଣ ତୃପ୍ତି ଲାଭ କରିବେ।
୭ ଅନ୍ୟମାନଙ୍କୁ ଦୟା ଦେଖାଉଥିବା ଲୋକମାନେ ଧନ୍ୟ;
କାରଣ ପରମେଶ୍ୱର ସେହିମାନଙ୍କୁ ଦୟା କରିବେ।
୮ ନିର୍ମଳ ହୃଦୟ ଥିବା ଲୋକମାନେ ଧନ୍ୟ; କାରଣ
ସେମାନେ ପରମଶ୍ୱରଙ୍କୁ ଦେଖିବେ।
୯ ଶାନ୍ତି ପାଇଁ କାମକରୁଥିବା ଲୋକମାନେ ଧନ୍ୟ;
କାରଣ ସେମାନେ ପରମେଶ୍ୱରଙ୍କ ସନ୍ତାନ ଭାବେ
ଡକାଯିବେ।
୧୦ ପରମେଶ୍ୱରଙ୍କ ଇଚ୍ଛା ଅନୁସାରେ ଧର୍ମକାର୍ଯ୍ୟ କରି
କଷ୍ଟ ସହୁଥିବା ଲୋକମାନେ ଧନ୍ୟ; କାରଣ ସ୍ୱର୍ଗରାଜ୍ୟ
ସେହିମାନଙ୍କର।

୧୧"ତୁମ୍ଭେମାନେ ମୋର ଅନୁଗାମୀ ହୋଇଥିବା ଯୋଗୁଁ
ଲୋକେ ତୁମ୍ଭମାନଙ୍କୁ ଅପମାନ ଦେବେ, ତୁମ୍ଭମାନଙ୍କୁ ଯାତନା
ଦେବେ ଓ ତୁମ୍ଭମାନଙ୍କ ବିରୁଦ୍ଧରେ ମିଛରେ ନାନା କଥା
କହିବେ। କିନ୍ତୁ ତୁମ୍ଭେମାନେ ଧନ୍ୟ। ୧୨ତେଣୁ ଖୁସିହୋଇ
ଆନନ୍ଦ କର। କାରଣ ସ୍ୱର୍ଗରେ ତୁମ୍ଭେମାନେ ଏକ ମହତ୍
ପୁରସ୍କାର ପାଇବ। ତୁମ୍ଭର ପୂର୍ବବର୍ତ୍ତୀ ଭବିଷ୍ୟଦ୍‌ବକ୍ତାମାନଙ୍କୁ
ମଧ୍ୟ ଲୋକମାନେ ଏହି ଭଳି ଯାତନା ଦେଇଥିଲେ।

### ତୁମ୍ଭେମାନେ ଲୁଣ ଓ ଆଲୋକ ପରି

୧୩"ତୁମ୍ଭେମାନେ ସମଗ୍ର ପୃଥିବୀ ପାଇଁ ଲୁଣ ସଦୃଶ।
କିନ୍ତୁ ଲୁଣ ଯଦି ନିଜେ ସ୍ୱାଦହୀନ ହୋଇ ଯାଏ, ତେବେ
ତାକୁ ଆଉଥରେ ଲୁଣିଆ କରି ଯାଇ ନପାରେ। ଲୁଣ
ଆପଣା ଲୁଣିଆ ସ୍ୱାଦ ହରାଇଲେ ଆଉ କୌଣସି କାମରେ
ଲାଗିପାରିବ ନାହିଁ। ତାକୁ ବାହାରେ ଫିଙ୍ଗି ଦିଆଯିବ।
ଲୋକେ ତାକୁ ପାଦରେ ଚକଟି ଚାଲିଯିବେ।
୧୪"ତୁମ୍ଭେ ଜଗତର ଆଲୋକ। ପାହାଡ ଉପରେ
ଅବସ୍ଥିତ କୌଣସି ନଗରକୁ କେବେହେଲେ ଲୁଚେଇ
ରଖାଯାଇ ପାରିବ ନାହିଁ। ୧୫ଲୋକେ ଦୀପଟିଏ ଜଳେଇ
ତାକୁ ହାଣ୍ଡି ତଳେ ରଖନ୍ତି ନାହିଁ। ଲୋକେ ତାକୁ
ଦୀପରୁଖା ଉପରେ ରଖନ୍ତି। ତଦ୍ୱାରା ଦୀପଟି ଘର ଭିତରର
ସବୁ ଲୋକଙ୍କୁ ଆଲୋକ ଦିଏ। ୧୬ଲୋକଙ୍କ ଆଗରେ
ତୁମ୍ଭେମାନେ ଆଲୋକ ଭଳି ପ୍ରକାଶିତ ହୁଅ। ସେମାନେ
ତୁମ୍ଭର ଭଲ କାମ ଗୁଡିକୁ ଦେଖନ୍ତୁ ଓ ସ୍ୱର୍ଗରେ ରହୁଥିବା
ତୁମ୍ଭ ପରମ-ପିତାହାଙ୍କ ପ୍ରଶଂସା ଗାନ କରନ୍ତୁ।

### ଯୀଶୁ ଓ ପୁରାତନ ନିୟମର ଲେଖାସମୂହ

୧୭"ତୁମ୍ଭେମାନେ ଭାବନାହିଁ ଯେ ମୁଁ ମୋଶାଙ୍କ ବ୍ୟବସ୍ଥାର
ନିୟମ କିମ୍ବା ଭବିଷ୍ୟଦ୍‌ବକ୍ତାଙ୍କ ଶିକ୍ଷା ନଷ୍ଟ କରିବାକୁ
ଆସିଛି। ମୁଁ ସେମାନଙ୍କ ଉପଦେଶ ନଷ୍ଟ କରିବାକୁ
ଆସିନାହିଁ। ବରଂ ମୁଁ ସେମାନଙ୍କ ଉପଦେଶଗୁଡିକର ସମ୍ପୂର୍ଣ୍ଣ
ଅର୍ଥ ପ୍ରକାଶିତ କରିବାକୁ ଆସିଛି। ୧୮ମୁଁ ତୁମ୍ଭକୁ ସତ୍ୟ
କହୁଛି, ଏ ପୃଥିବୀ ଓ ଆକାଶ ସମାପ୍ତ ନ ହେବା ପର୍ଯ୍ୟନ୍ତ
ଓ ସବୁ କଥା ନ ଘଟିବା ପର୍ଯ୍ୟନ୍ତ ଏହି ନିୟମରୁ
ଅକ୍ଷରଟିଏ କି ବିନ୍ଦୁଟିଏ ହେଲେ ମଧ୍ୟ ଲୋପ ପାଇବନାହିଁ।
୧୯ଏଣୁ ଲୋକେ ପ୍ରତ୍ୟେକ ଆଦେଶ ମାନିବା ଉଚିତ,
ଏପରିକି ମହତ୍ତ୍ୱପୂର୍ଣ୍ଣ ଦେଖା ଯାଉ ନଥିବା ଛୋଟ ଆଦେଶଟିଏ
ମଧ୍ୟ ମାନିବା ଉଚିତ। ଯେଉଁଲୋକ ଆଦେଶ ପାଳିବାକୁ
ମନାକରେ ଓ ଅନ୍ୟଲୋକଙ୍କୁ ଆଦେଶ ନ ପାଳିବାକୁ
ମନ୍ତ୍ରଣା ଦିଏ, ସେ ସ୍ୱର୍ଗ-ରାଜ୍ୟରେ ଅତି ନ୍ୟୂନ ବୋଲି
ଗଣିତ ହେବ। କିନ୍ତୁ ଯେଉଁଲୋକ ସେ ନିୟମ ମାନେ ଓ
ଅନ୍ୟକୁ ମାନି ଚଳିବାକୁ ଶିଖାଏ, ସେ ସ୍ୱର୍ଗ-ରାଜ୍ୟରେ
ମହାନ୍ ହେବ। ୨୦ମୁଁ ତୁମ୍ଭକୁ କହୁଛି ଯେ, ପରମେଶ୍ୱରଙ୍କ
ଇଚ୍ଛା ଅନୁସାରେ ଆଚରଣ କରି ତୁମ୍ଭେମାନେ ଧର୍ମ-ଶାସ୍ତ୍ରୀ
ଓ ଫାରୂଶୀ* ମାନଙ୍କ ଠାରୁ ଆଗେଇ ଯାଅ। ତା'ନହେଲେ
ତୁମ୍ଭେ ସ୍ୱର୍ଗ-ରାଜ୍ୟରେ ପ୍ରବେଶ କରିପାରିବ ନାହିଁ।

### ଯୀଶୁ କ୍ରୋଧ ବିଷୟରେ ଶିକ୍ଷା ଦିଅନ୍ତି

୨୧"ତୁମ୍ଭେମାନେ ଶୁଣିଛ ଯେ, ଆମ୍ଭର ପୂର୍ବପୁରୁଷମାନଙ୍କୁ
କୁହା ଯାଇଥିଲା: 'ନରହତ୍ୟା କରନାହିଁ।* ଯେଉଁଲୋକ
ନରହତ୍ୟା କରେ, ସେ ବିଚାରସ୍ଥାନରେ ବିଚାରିତ ହେବ।'
୨୨କିନ୍ତୁ ମୁଁ ତୁମ୍ଭମାନଙ୍କୁ କହୁଛି ଯେ, ତୁମ୍ଭେମାନେ ଅନ୍ୟ
ଉପରେ ରାଗ ନାହିଁ, କାରଣ ପ୍ରତ୍ୟେକ ଲୋକ ତୁମ୍ଭର
ଭାଇପରି ଅଟେ। ତେଣୁ ଯଦି ତୁମ୍ଭେ ଅନ୍ୟ ଉପରେ
ରାଗିବ, ତେବେ ତୁମ୍ଭେ ମଧ୍ୟ ବିଚାରାଳୟରେ ବିଚାରିତ

---

**ଫାରୂଶୀ** ଯିହୂଦୀ ଧର୍ମର ନୀତି-ନିୟମ ଓ ପ୍ରଥାମାନ ଚଳୁଥିବା ଧାର୍ମିକ ଗୋଷ୍ଠୀ।

**'ନରହତ୍ୟା କରନାହିଁ।'** ଯାତ୍ରା ୨୦:୧୩; ଦ୍ୱିତୀୟ ବିବରଣ ୫:୧୭।

ହେବ। ତୁମ୍ଭେମାନେ ଯଦି ଅନ୍ୟକୁ ଅପମାନ ଦେଇ ଖରାପ
କଥା କୁହ ତେବେ ତୁମ୍ଭକୁ ଯିହୂଦୀୟ ସର୍ବୋଚ୍ଚ ବିଚାରାଳୟରେ*
ବିଚାରିତ ହେବାକୁ ହେବ। ଯଦି ଅନ୍ୟକୁ ମୂର୍ଖ ବୋଲି
କୁହ ତେବେ ତୁମ୍ଭକୁ ନରକର ନିଆଁ ଭିତରେ ପକାଇ
ଦିଆଯିବ।
୨୩"ଯେତେବେଳେ ତୁମ୍ଭେମାନେ ପରମେଶ୍ୱରଙ୍କ ନିକଟକୁ
ତୁମ୍ଭମାନଙ୍କର ଉତ୍ସର୍ଗ-ଦାନ ଆଣ, ସେତେବେଳେ ଅନ୍ୟ
ଲୋକମାନଙ୍କ ବିଷୟ ଚିନ୍ତା କର। ଯଦି ବେଦୀ ଉପରେ
ପରମେଶ୍ୱରଙ୍କୁ ଉତ୍ସର୍ଗ-ଦାନ ଦେବାବେଳେ ତୁମ୍ଭର ମନ
ପଡିଯାଏ ଯେ, ତୁମ୍ଭ ବିରୁଦ୍ଧରେ କାହାର କିଛି କଥା ଅଛି,
୨୪ତେବେ ତୁମ୍ଭର ଉତ୍ସର୍ଗ-ଦାନ ସେହିଠାରେ ଛାଡି ଦେଇ
ସେହି ଲୋକଟି ପାଖକୁ ଯାଅ ଏବଂ ତା ସହିତ ଶାନ୍ତି
ସ୍ଥାପନ କର, ତା'ପରେ ଆସି ତୁମ୍ଭର ଉତ୍ସର୍ଗ-ଦାନ ଅର୍ପଣ
କର।
୨୫"ଯଦି ତୁମ୍ଭର ଶତ୍ରୁ ତୁମ୍ଭକୁ ବିଚାରାଳୟକୁ ନେଇ
ଯାଉଅଛି ତେବେ ବିଚାରାଳୟକୁ ଯିବା ପୂର୍ବରୁ ତା' ସହିତ
ଶୀଘ୍ର ବନ୍ଧୁତା ସ୍ଥାପନ କର। ନଚେତ ତୁମ୍ଭର ଶତ୍ରୁ
ବିଚାରପତିଙ୍କ ହାତରେ ଦେଇଦିବ ଓ ଶେଷରେ ବିଚାରପତି
ତୁମ୍ଭକୁ ସିପାହୀ ହାତରେ ଦେବେ, ତା'ପରେ ତୁମ୍ଭେ
କାରାଗାରରେ ବନ୍ଦୀ ହୋଇ ଯିବ। ୨୬ମୁଁ ତୁମ୍ଭକୁ ସତ୍ୟ
କହୁଛି, ଯେଉଁ ପର୍ଯ୍ୟନ୍ତ ତୁମ୍ଭେ ପାହୁଲା-ପାହୁଲା କରି ନ
ଶୁଝିଛ, ସେ ପର୍ଯ୍ୟନ୍ତ କାରାଗାର ଭିତରୁ ବାହାରି ଆସି
ପାରିବ ନାହିଁ।

## ଯୀଶୁ ଯୌନଗତ ପାପ ସମ୍ବନ୍ଧରେ ଶିକ୍ଷା ଦିଅନ୍ତି

୨୭"ତୁମ୍ଭେମାନେ ଏ କଥା କୁହା ଯାଇଥିବାର ଶୁଣିଛ
ଯେ, 'ବ୍ୟଭିଚାର କରନାହିଁ।'* ୨୮କିନ୍ତୁ ମୁଁ ତୁମ୍ଭକୁ କହୁଛି
ଯେ, ଯଦି କେହି ଲୋକ କୌଣସି ସ୍ତ୍ରୀ ଦେଖେ ଓ
ତା'ସହିତ ବ୍ୟଭିଚାର କରିବା ପାଇଁ ଚାହେଁ, ତେବେ ସେ
ନିଜ ମନ ଭିତରେ ସେହି ସ୍ତ୍ରୀ ସହିତ ବ୍ୟଭିଚାର କରି
ସାରିଲାଣି। ୨୯ଯଦି ତୁମ୍ଭର ଡାହାଣ ଆଖି ତୁମ୍ଭର ପାପର
କାରଣ ହୁଏ, ତେବେ ସେହି ଆଖିଟିକୁ କାଢ଼ି ଫିଙ୍ଗି ଦିଅ।
ତୁମ୍ଭର ସମ୍ପୂର୍ଣ୍ଣ ଶରୀର ନରକରେ ପଡ଼ିବା ଅପେକ୍ଷା
ଶରୀରର ଗୋଟିଏ ଅଙ୍ଗ ନଷ୍ଟ ହୋଇଯିବା ଭଲ। ୩୦ଯଦି
ତୁମ୍ଭର ଡାହାଣ ହାତଟି ତୁମ୍ଭ ପାପର କାରଣ ହୁଏ, ତାକୁ
କାଟି ଫିଙ୍ଗି ଦିଅ। କାରଣ ତୁମ୍ଭର ସମ୍ପୂର୍ଣ୍ଣ ଶରୀର
ନରକରେ ପଡ଼ିବା ଅପେକ୍ଷା ଶରୀରର ଗୋଟିଏ ଅଙ୍ଗ ନଷ୍ଟ
ହୋଇଯିବା ଭଲ।

## ଯୀଶୁ ଛାଡ଼ପତ୍ର ସମ୍ବନ୍ଧରେ ଶିକ୍ଷା ଦିଅନ୍ତି

୩୧"ଏକଥା ମଧ୍ୟ କୁହାଯାଇଛି ଯେ, 'ଯେଉଁଲୋକ ତାର
ପତ୍ନୀକୁ ଛାଡ଼ପତ୍ର ଦିଏ, ସେ ତା ପତ୍ନୀକୁ ଛାଡ଼ପତ୍ର ପାଇଁ
ଲିଖିତ ରୂପରେ ଗୋଟିଏ ସୂଚନା ଦେବ।'* ୩୨କିନ୍ତୁ ମୁଁ
ତୁମ୍ଭମାନଙ୍କୁ କହୁଛି ଯେ, ଯଦି କେହି ନିଜର ପତ୍ନୀକୁ
ଛାଡ଼ପତ୍ର ଦିଏ, ସେ ତାହାକୁ ବ୍ୟଭିଚାର ଦୋଷରେ ଦୋଷୀ
କରିଥାଏ। ଯଦି ତାହାର ପତ୍ନୀ ଅନ୍ୟ ବ୍ୟକ୍ତି ସହିତ ଯୌନ
ସଂପର୍କ ରଖିଥାଏ, ତେବେ କେବଳ ସେ ତାହାକୁ ଛାଡ଼ପତ୍ର
ଦେଇ ପାରିବ। ଯଦି କୌଣସି ଲୋକ ଛାଡ ପତ୍ର
ପାଇଥିବା ସେହି ପତ୍ନୀକୁ ବିବାହ କରେ ତେବେ ସେ ମଧ୍ୟ
ବ୍ୟଭିଚାର ପାପରେ ଦୋଷୀ ହୁଏ।

## ଶପଥ ସମ୍ବନ୍ଧରେ ଯୀଶୁଙ୍କର ଶିକ୍ଷା

୩୩"ଏକଥା ତୁମ୍ଭେ ଶୁଣିଛ ଯେ ଆମ୍ଭର ପୂର୍ବପୁରୁଷମାନଙ୍କୁ
କୁହାଯାଇ ଥିଲା: 'ତୁମ୍ଭେମାନେ କରିଥିବା ଶପଥ କେବେ
ହେଲେ ଭାଙ୍ଗ ନାହିଁ ଓ ପ୍ରଭୁଙ୍କ ଉଦ୍ଦେଶ୍ୟରେ ସେହି ସବୁ
ପାଳନ କର।'* ୩୪କିନ୍ତୁ ମୁଁ ତୁମ୍ଭକୁ କହୁଛି ଯେ, ଆଦୌ
ଶପଥ କରନାହିଁ। ସ୍ୱର୍ଗର ନାମରେ ଶପଥ କର ନାହିଁ,
କାରଣ ତାହା ପରମେଶ୍ୱରଙ୍କ ସିଂହାସନ। ୩୫ପୃଥିବୀ ନାମରେ
ଶପଥ ନିଅନାହିଁ। କାରଣ ତାହା ପରମେଶ୍ୱରଙ୍କର ପାଦ-ପୀଠ।
ଯିରୂଶାଲମ ନାମରେ ଶପଥ ନିଅ ନାହିଁ। କାରଣ ତାହା
ମହାରାଜା(ପରମେଶ୍ୱର)ଙ୍କ ନଗରୀ। ୩୬ନିଜ ମୁଣ୍ଡ ଛୁଇଁ
ଶପଥ ନିଅ ନାହିଁ, କାରଣ ତା'ର ଗୋଟିଏ ବାଳକୁ ବି
ତୁମ୍ଭେ କଳା ବା ଧଳା କରି ପାରିବନାହିଁ। ୩୭ଯଦି ତୁମ୍ଭେ
ଠିକ୍ ମନେ କରୁଛ ତେବେ ହଁ କୁହ ଏବଂ ତୁମ୍ଭେ ଯଦି
ଭୁଲ ବୋଲି ମନେ କରୁଛ ତେବେ ନା କୁହ। 'ହଁ' ବା
'ନାଁ' ଠାରୁ ଅଧିକା ବିଷୟ ପାପାତ୍ମା(ଶୟତାନ)ଠାରୁ ଆସିଥାଏ।

## ଯୀଶୁ କହନ୍ତି: ପ୍ରତିଶୋଧ ମନୋଭାବ ରଖ ନାହିଁ

୩୮"ତୁମ୍ଭେ ଶୁଣିଛ ଯେ ଏକଥା କୁହା ଯାଇଛି: 'ଆଖି
ବଦଳରେ ଆଖି ଓ ଦାନ୍ତ ବଦଳରେ ଦାନ୍ତ।'* ୩୯କିନ୍ତୁ ମୁଁ
ତୁମ୍ଭକୁ କହୁଛି ଯେ କୌଣସି ମନ୍ଦ ଲୋକର ବିରୁଦ୍ଧରେ
ଠିଆ ହୁଅନାହିଁ। ବରଂ ଯଦି କେହି ତୁମ୍ଭର ଡାହାଣ
ଗାଲରେ ଚାପୁଡ଼ାଟିଏ ମାରେ ତେବେ ତୁମ୍ଭେ ତା ଆଡ଼କୁ
ଆର ଗାଲଟି ମଧ୍ୟ ଦେଖେଇ ଦିଅ। ୪୦ଯଦି କେହି ତୁମ୍ଭ
ବିରୁଦ୍ଧରେ ବିଚାରାଳୟରେ ମକଦ୍ଦମା କରି ତୁମ୍ଭର କୁର୍ତ୍ତାଟି
ନେବାକୁ ଇଚ୍ଛା କରେ, ତେବେ ତୁମ୍ଭେ ତାକୁ ତୁମ୍ଭର
ଚାଦରଟି ମଧ୍ୟ ଦେଇ ଦିଅ। ୪୧ଯଦି କେହି ତୁମ୍ଭକୁ ତା
ସହିତ ଗୋଟିଏ କୋଶ ଚାଲିବାକୁ ବାଧ୍ୟ କରେ ତେବେ
ତୁମ୍ଭେ ତା ସହିତ ଦୁଇ କୋଶ ଚାଲି ଯାଅ। ୪୨ଯଦି
କେହି ତୁମ୍ଭକୁ କିଛି ମାଗେ, ତେବେ ତାହା ତାହାକୁ ଦିଅ।
କେହି ଯଦି ତୁମ୍ଭଠାରୁ ଧାର ନେବାକୁ ଇଚ୍ଛାକରେ, ତେବେ
ତାହାକୁ ମନା କରନାହିଁ।

---

**ଯିହୂଦୀୟମାନଙ୍କ ସର୍ବୋଚ୍ଚ-ବିଚାରାଳୟ** ମୂଳ ଗ୍ରୀକ୍ ଭାଷାରେ ସାନ୍ହେଡ୍ରିନ। ଏହା ଅଦାଲତ ପରି ମଧ୍ୟ କାମକରେ।

**'ବ୍ୟଭିଚାର କରନାହିଁ'** ଯାତ୍ରା ୨୦:୧୪; ଦ୍ୱିବିବରଣ ୫:୧୮।

**'ଯେଉଁଲୋକ ତାର ... ସୂଚନା ଦେବ'** ଦ୍ୱିବିବରଣ ୨୪:୧।

**'ତୁମ୍ଭେମାନେ କରିଥିବା ... ପାଳନ କର'** ଲେବୀୟ ୧୯:୧୨ ଗଣନା ୩୦:୨; ଦ୍ୱିବିବରଣ ୨୩:୨୧।

**'ଆଖି ବଦଳରେ ... ଦାନ୍ତ'** ଯାତ୍ରା. ୨୧:୨୪; ଲେବୀୟ ୨୪:୨୦

## ସମସ୍ତଙ୍କୁ ପ୍ରେମ କର

୪୩"ତୁମ୍ଭେ ଶୁଣିଛ ଯେ ଏକଥା କୁହା ଯାଇଛି: 'ତୁମ୍ଭର
ପଡ଼ୋଶୀଙ୍କୁ ପ୍ରେମ କର ଓ ଶତ୍ରୁମାନଙ୍କୁ ଘୃଣା କର।'*
୪୪କିନ୍ତୁ ମୁଁ କହୁଛି: ତୁମ୍ଭେ ତୁମ୍ଭର ଶତ୍ରୁଙ୍କୁ ମଧ୍ୟ ପ୍ରେମ
କର। ତୁମ୍ଭକୁ ଯାତନା ଦେଉଥିବା ଲୋକମାନଙ୍କ ପାଇଁ
ପ୍ରାର୍ଥନା କର। ୪୫ତାହେଲେ ତୁମ୍ଭେ ସ୍ୱର୍ଗରେ ରହୁଥିବା
ପରମ-ପିତାଙ୍କ ଯଥାର୍ଥ ସନ୍ତାନ ହୋଇ ପାରିବ। ପରମ-ପିତା,
ଭଲ ଲୋକ ଓ ମନ୍ଦ ଲୋକ ଉଭୟଙ୍କ ଉପରେ ତାହାଙ୍କ
ସୂର୍ଯ୍ୟଙ୍କୁ ଉଦିତ କରାନ୍ତି। ସେ ଭଲ କାମ କରୁ ଥିବା
ଲୋକ ଓ ମନ୍ଦ କାମ କରୁଥିବା ଲୋକ, ଉଭୟଙ୍କ
ଉପରେ ବର୍ଷା ବର୍ଷାନ୍ତି। ୪୬ଯେଉଁମାନେ ତୁମ୍ଭକୁ ପ୍ରେମ
କରୁଛନ୍ତି, ତୁମ୍ଭେ ଯଦି କେବଳ ସେହିମାନଙ୍କୁ ପ୍ରେମ କରିବ
ତେବେ ତୁମ୍ଭେମାନେ କୌଣସି ପୁରସ୍କାର ପାଇବନାହିଁ?
ଏପରିକି କରଆଦାୟକାରୀ* ମାନେ ମଧ୍ୟ ଏହା କରନ୍ତି?
୪୭ଯଦି ତୁମ୍ଭେ କେବଳ ନିଜ ଭାଇ-ବନ୍ଧୁମାନଙ୍କୁ ନମସ୍କାର
କର ତେବେ ତୁମ୍ଭେ ଅନ୍ୟମାନଙ୍କଠାରୁ କ'ଣ ଅଧିକ କଲ?
ବିଧର୍ମୀମାନେ କ'ଣ ଏଭଳି କରନ୍ତିନାହିଁ କି? ୪୮ଏଣୁ
ସ୍ୱର୍ଗରେ ରହୁଥିବା ତୁମ୍ଭର ପରମ-ପିତା ଯେପରି ସିଦ୍ଧ,
ତୁମ୍ଭେମାନେ ମଧ୍ୟ ସେହିପରି ସିଦ୍ଧ ହୁଅ।

## ଦାନ ବିଷୟରେ ଯୀଶୁଙ୍କ ଉପଦେଶ

୬ "ସାବଧାନ ରୁହ। ଯେତେବେଳେ ଭଲ କାମକର,
ଲୋକମାନଙ୍କୁ ଜଣାଇବା ପାଇଁ କରନାହିଁ। ଲୋକମାନେ
ତାହା ଦେଖନ୍ତୁ ବୋଲି ତୁମ୍ଭେ ସେଗୁଡ଼ିକ କରନାହିଁ।
ତାହେଲେ ତୁମ୍ଭେ ସ୍ୱର୍ଗରେ ଥିବା ତୁମ୍ଭର ପରମ-ପିତାଙ୍କ
ଠାରୁ ପୁରସ୍କାର ପାଇ ପାରିବନାହିଁ।
୨"ଏଣୁ ଯେତେବେଳେ ତୁମ୍ଭେ କୌଣସି ଦୀନ-ଦୁଃଖୀକୁ
ଦାନ ଦେଉଛ, ସେତେବେଳେ ତାର ଘୋଷଣା କରନାହିଁ।
ଲୋକଙ୍କ ପ୍ରଶଂସା ପାଇବା ପାଇଁ କପଟି ଲୋକେ ପ୍ରାର୍ଥନା-ଗୃହ
ଓ ଗଳିମାନଙ୍କରେ ତୂରୀବଜାଇ ସେଭଳି ପ୍ରଚାର କରିଥାନ୍ତି।
ମୁଁ ତୁମ୍ଭକୁ ସତ୍ୟକଥା କହୁଛି ଯେ ସେମାନେ ତାହାଙ୍କର
ପ୍ରତିଫଳ ପାଇ ସାରିଲେଣି। ୩ଯେତେବେଳେ ତୁମ୍ଭେ କୌଣସି
ଦୀନ-ଦୁଃଖୀଙ୍କୁ ଦାନ ଦେଉଛ, ସେତେବେଳେ ତୁମ୍ଭର
ଡାହାଣ ହାତ କ'ଣ କରୁଛି, ସେ ବିଷୟରେ ବାମ ହାତକୁ
ମଧ୍ୟ ଜାଣିବାକୁ ସୁଯୋଗ ଦିଅନାହିଁ। ତୁମ୍ଭେ କ'ଣ କରୁଛ,
ତାହା ଯେପରି କେହି ନ ଜାଣନ୍ତୁ। ୪ତୁମ୍ଭର ଦାନ
ଗୋପନରେ ହେବା ଉଚିତ। ତୁମ୍ଭର ପରମ-ପିତା ଗୋପନରେ
କରାଯାଇଥିବା କାର୍ଯ୍ୟକୁ ଦେଖି ପାରନ୍ତି। ସେ ତୁମ୍ଭକୁ ତାର
ପ୍ରତିଫଳ ଦେବେ।

## ପ୍ରାର୍ଥନା ବିଷୟରେ ଯୀଶୁଙ୍କ ଶିକ୍ଷା

୫"ତୁମ୍ଭେ ପ୍ରାର୍ଥନା କଲାବେଳେ କପଟୀମାନଙ୍କ ପରି ହୁଅ
ନାହିଁ। କାରଣ ସେମାନେ ଯିହୁଦୀ ପ୍ରାର୍ଥନା-ଗୃହ ଓ
ଗଳି-ମୁଣ୍ଡରେ ଠିଆହୋଇ ବଡ଼ପାଟିରେ ପ୍ରାର୍ଥନା କରିବାକୁ
ଭଲ ପାଆନ୍ତି, ଯେପରି ଲୋକେ ତାହାଙ୍କୁ ଦେଖି ପାରିବେ।
ମୁଁ ତୁମ୍ଭକୁ ସତ୍ୟ କହୁଛି ଯେ ସେମାନଙ୍କୁ ତାର ପୂରା
ପ୍ରତିଫଳ ଦିଆଯାଇ ସାରିଲାଣି। ୬କିନ୍ତୁ ତୁମ୍ଭେ ପ୍ରାର୍ଥନା
କଲାବେଳେ ତୁମ୍ଭ ବଖରା ଭିତରକୁ ଯାଅ। କବାଟ ବନ୍ଦକରି
ତୁମ୍ଭର ପରମ-ପିତାଙ୍କୁ ଗୋପନରେ ପ୍ରାର୍ଥନା କର। ତୁମ୍ଭର
ପରମ-ପିତା ଗୋପନରେ କରୁଥିବା ତୁମ୍ଭ କାମ ଗୁଡିକୁ
ଦେଖି ପାରନ୍ତି। ସେ ତୁମ୍ଭକୁ ତାର ପ୍ରତିଫଳ ଦେବେ।
୭"ତୁମ୍ଭେ ପ୍ରାର୍ଥନା କଲାବେଳେ ଯେଉଁମାନେ ପରମେଶ୍ୱରଙ୍କୁ
ଜାଣନ୍ତି ନାହିଁ ସେମାନଙ୍କ ଭଳି ନିରର୍ଥକ କଥା ବାରମ୍ବାର
କୁହନାହିଁ। ସେମାନେ ଭାବନ୍ତି ଯେ, ବହୁତ କଥା କହିବା
ଯୋଗୁଁ ତାହାଙ୍କ କଥା ପରମେଶ୍ୱର ଶୁଣିବେ। ୮ଏଣୁ ତୁମ୍ଭେ
ସେମାନଙ୍କ ଭଳି ହୁଅନାହିଁ। କାରଣ ତୁମ୍ଭେ ତୁମ୍ଭର
ପରମପିତାଙ୍କୁ କିଛି ମାଗିବା ପୂର୍ବରୁ ସେ ତୁମ୍ଭମାନଙ୍କର
ପ୍ରୟୋଜନୀୟ ବିଷୟ ଜାଣନ୍ତି। ୯ଏଣୁ ଏହି ଭଳି ପ୍ରାର୍ଥନା
କର:

'ହେ ସ୍ୱର୍ଗରେ ଥିବା ଆମ୍ଭର ପରମ-ପିତା। ତୁମ୍ଭର
ନାମ ସବୁବେଳେ ପବିତ୍ର ହେଉ।
୧୦ ତୁମ୍ଭର ସ୍ୱର୍ଗ-ରାଜ୍ୟ ଏ ପୃଥିବୀକୁ ଆସୁ। ସ୍ୱର୍ଗରେ
ତୁମ୍ଭ ଇଚ୍ଛା ସଫଳ ହେବାଭଳି ଏ ପୃଥିବୀରେ ବି
ତୁମ୍ଭ ଇଚ୍ଛା ସଫଳ ହେଉ।
୧୧ ଆମ୍ଭର ପ୍ରତିଦିନର ଖାଦ୍ୟ ତୁମ୍ଭେ ଦିଅ।
୧୨ ଆମ୍ଭ ପ୍ରତି ଭୁଲ କଲା ଲୋକଙ୍କୁ ଆମ୍ଭେ ଯେଉଁପରି
କ୍ଷମା କରିଛୁ, ସେହିପରି ଆମ୍ଭେ କରିଥିବା ପାପକୁ
କ୍ଷମା କର।
୧୩ ଆମ୍ଭକୁ ପରୀକ୍ଷାରେ ପକାଅ ନାହିଁ। ମାତ୍ର ମନ୍ଦଠାରୁ
ରକ୍ଷା କର।'*

୧୪ଏଣୁ ତୁମ୍ଭେ ଯଦି ଲୋକଙ୍କ ଅପରାଧ କ୍ଷମା କରିଦେବ
ତେବେ ସ୍ୱର୍ଗରେ ରହୁଥିବା ତୁମ୍ଭମାନଙ୍କର ପରମ-ପିତା ତୁମ୍ଭ
ଅପରାଧ ପାଇଁ ତୁମ୍ଭକୁ ମଧ୍ୟ କ୍ଷମା କରିଦେବେ। ୧୫କିନ୍ତୁ
ତୁମ୍ଭେ ଯଦି ଲୋକଙ୍କୁ ତାହାଙ୍କ ପାପ ପାଇଁ କ୍ଷମା ଦେବ
ନାହିଁ, ତେବେ ତୁମ୍ଭର ପରମ-ପିତା ମଧ୍ୟ ତୁମ୍ଭ ଅପରାଧ
ଗୁଡ଼ିକପାଇଁ ତୁମ୍ଭକୁ କ୍ଷମା ଦେବେ ନାହିଁ।

## ଯୀଶୁ ଉପବାସ ବିଷୟରେ ଉପଦେଶ ଦେଲେ

୧୬"ତୁମ୍ଭେ ଉପବାସ କଲାବେଳେ ଦୁଃଖିତ ଥିବା ଭଳି
ମୁହଁ କରନାହିଁ। କପଟୀମାନେ ସେହିପରି କରିଥାନ୍ତି। ତୁମ୍ଭେ
କପଟୀଙ୍କ ପରି ହୁଅନାହିଁ। କପଟୀମାନେ ମୁହଁ ଶୁଖାଇ
ଲୋକଙ୍କୁ ଦେଖେଇବାକୁ ଚାହାନ୍ତି ଯେ, ସେମାନେ ଉପବାସ
କରୁଛନ୍ତି। ମୁଁ ତୁମ୍ଭକୁ ସତ୍ୟ କହୁଛି ଯେ ସେମାନଙ୍କୁ

---

**'ତୁମ୍ଭର ... କର'** ଲେବୀୟ ୧୯:୧୮

**କରଆଦାୟକାରୀ** କର ଆଦାୟକରିବା ପାଇଁ ରୋମୀୟମାନେ ଯେଉଁ ଯିହୁଦୀୟଙ୍କୁ ଆଣିଥାନ୍ତି ସେମାନେ ବେଳେବେଳେ ଠକିବା ଯୋଗୁଁ ତାଙ୍କୁ ଅନ୍ୟ ଯିହୁଦୀୟ ମାନେ ଘୃଣା କରୁଥିଲେ।

**ପଦସଂଖ୍ୟା ୧୩** କେତେକ ଗ୍ରୀକ ପୁସ୍ତକ ଏହା ଯୋଗ କରନ୍ତି: "ରାଜ୍ୟ, ଶକ୍ତି, ଓ ମହିମା ତୁମ୍ଭର ଯୁଗେ ଯୁଗେ ହେଉ। ଆମେନ୍।"

ଏଥିପାଇଁ ପ୍ରତିଫଳ ମିଳିସାରିଛି। [୧୭]ତେଣୁ ତୁମ୍ଭେ ଉପବାସ
କଲାବେଳେ ମୁଣ୍ଡରେ ତେଲ ଲଗାଇ ବାଳ ସଜାଡ଼, ଓ
ମୁହଁ ଧୁଅ। [୧୮]ତା'ହେଲେ ତୁମ୍ଭେ ଉପବାସ କରୁଛ ବୋଲି
ଲୋକେ ଜାଣି ପାରିବେନାହିଁ। ତୁମ୍ଭର ପରମ-ପିତାଙ୍କୁ ତୁମ୍ଭେ
ସିନା ଦେଖି ପାରୁନାହଁ, ମାତ୍ର ସେ ତୁମ୍ଭକୁ ଉପବାସ
କରୁଥିବାର ଦେଖିବେ। କାରଣ ଗୋପନରେ କରାଯାଇଥିବା
କାମଗୁଡ଼ିକୁ ପରମ-ପିତା ଦେଖନ୍ତି। ସେ ତୁମ୍ଭକୁ ତାର
ପ୍ରତିଫଳ ଦେବେ।

### ପରମେଶ୍ୱର ଧନ ଅପେକ୍ଷା ମହାନ୍

[୧୯]"ନିଜ ପାଇଁ ଏ ସଂସାରରେ ଧନ-ସଞ୍ଚୟ କରନାହିଁ।
ଏଠାରେ ପୋକ ଓ କଳଙ୍କ ଲାଗି ତାକୁ ନଷ୍ଟ କରିଦେବେ।
ଚୋର ପଶି ସିନ୍ଧି କାଟି ଚୋରୀ କରିନେବ। [୨୦]ବରଂ ନିଜ
ପାଇଁ ସ୍ୱର୍ଗରେ ଧନ-ସଞ୍ଚୟ କର। ସେଠାରେ ତାକୁ ପୋକ
କିମ୍ବା କଳଙ୍କ ନଷ୍ଟ କରି ପାରିବ ନାହିଁ। ସେଠାରେ ଚୋର
ବି ସିନ୍ଧି କାଟି ସେହିଧନ ଚୋରାଇ କରି ନେଇ ପାରିବ
ନାହିଁ। [୨୧]କାରଣ ଯେଉଁଠାରେ ତୁମ୍ଭର ଧନ, ସେଠାରେ
ତୁମ୍ଭର ମନ।

[୨୨]"ଆଖି ଶରୀର ପାଇଁ ଆଲୋକ ସ୍ୱରୂପ। ଏଣୁ ତୁମ୍ଭ
ଆଖି ଯଦି ଠିକ୍ ଥିବ, ତେବେ ତୁମ୍ଭର ସମ୍ପୂର୍ଣ୍ଣ ଶରୀର
ଆଲୋକମୟ ହେବ। [୨୩]କିନ୍ତୁ ତୁମ୍ଭର ଆଖି ଯଦି ଖରାପ,
ତେବେ ତୁମ୍ଭର ସମ୍ପୂର୍ଣ୍ଣ ଶରୀର ଅନ୍ଧକାର(ପାପ)ମୟ ହୋଇଯିବ।
ତୁମ୍ଭ ଭିତରର ସେହି ଏକମାତ୍ର ଆଲୋକ ଯଦି ଅନ୍ଧକାରମୟ
ହୋଇଯାଏ, ତେବେ ସେ ଅନ୍ଧକାର କେତେ ଘନୀଭୂତ ନ
ହେବ!

[୨୪]"ଜଣେ କେବେହେଲେ ଏକାବେଳେ ଦୁଇଜଣ ମାଲିକଙ୍କ
ସେବକ ହୋଇ ପାରିବନାହିଁ। କାରଣ ସେ ଜଣକୁ ଘୃଣା
କରିବ, ଓ ଅନ୍ୟ ଜଣକୁ ଭଲ ପାଇବ। କିମ୍ବା ଜଣେ
ମାଲିକ ପ୍ରତି ଅନୁରକ୍ତ ରହିବ ଓ ଅନ୍ୟ ଜଣକୁ ହେୟ
ଜ୍ଞାନ କରିବ। ତୁମ୍ଭେ ଏକା ସାଙ୍ଗରେ ପରମେଶ୍ୱର ଓ
ଧନ ଉଭୟଙ୍କ ସେବା କରି ପାରିବନାହିଁ।

### ପରମେଶ୍ୱରଙ୍କ ରାଜ୍ୟକୁ ପ୍ରଥମସ୍ଥାନ ଦିଅ

[୨୫]"ଅତଏବ ମୁଁ ତୁମ୍ଭକୁ କହୁଛି, ବଞ୍ଚିବା ପାଇଁ ଖାଇବା
ପିଇବା ବିଷୟରେ ଚିନ୍ତା କରନାହିଁ। ନିଶ୍ଚିତ ରୂପରେ
ଜୀବନ ଖାଦ୍ୟ ଅପେକ୍ଷା, ଓ ଶରୀର ପୋଷାକ ଅପେକ୍ଷା
ମହତ୍ତ୍ୱପୂର୍ଣ୍ଣ। [୨୬]ଆକାଶର ପକ୍ଷୀମାନଙ୍କୁ ଦେଖ। ସେମାନେ
ବିହନ ବୁଣନ୍ତି ନାହିଁ, କି ଅମଳ କରନ୍ତି ନାହିଁ ।
ଅମାରରେ ଖାଦ୍ୟଶସ୍ୟ ବି ଜମେଇ ରଖନ୍ତି ନାହିଁ। ତଥାପି
ସ୍ୱର୍ଗରେ ରହୁଥିବା ତୁମ୍ଭର ପରମ-ପିତା ସେମାନଙ୍କୁ ଖାଇବାକୁ
ଦିଅନ୍ତି। ତୁମ୍ଭେ ଜାଣିଛ ଯେ ତୁମ୍ଭେମାନେ ସେମାନଙ୍କ
ଅପେକ୍ଷା ଅଧିକ ଶ୍ରେଷ୍ଠ ଅଟ? [୨୭]ତୁମ୍ଭ ଭିତରେ ଏପରି
କେହି ନାହିଁ, ଯେକି ଚିନ୍ତାଗ୍ରସ୍ତ ହୋଇ ନିଜ ଜୀବନ-କାଳ
ସହିତ ଘଡ଼ିଏ ହେଲେ ସମୟ ଯୋଗ କରି ପାରିବ।

[୨୮]"ତୁମ୍ଭେ ପୋଷାକ ବିଷୟରେ କାହିଁକି ଚିନ୍ତା କରୁଛ?
କ୍ଷେତ୍ରର ଫୁଲଗୁଡ଼ିକ ବିଷୟରେ ଭାବି ଦେଖ! ଦେଖ,
ସେମାନେ କିପରି ଫୁଟୁଛନ୍ତି। ସେମାନେ କୌଣସି କାମ
କରନ୍ତି ନାହିଁ, କି ନିଜ ପାଇଁ ପୋଷାକ ତିଆରି କରନ୍ତି
ନାହିଁ। [୨୯]କିନ୍ତୁ ମୁଁ ତୁମ୍ଭକୁ କହୁଛି ମହାନ ଓ ଧନୀରାଜା
ଶଲମୋନ ନିଜର ସମସ୍ତ ବୈଭବ ଥାଇ ମଧ୍ୟ ସେ ନିଜକୁ
ସୁସଜ୍ଜିତ କରିପାରି ନଥିଲେ। [୩୦]ପଡ଼ିଆର ସେହି ଘାସ
ଆଜି ବଞ୍ଚିଛି, କିନ୍ତୁ କାଲିକି ତାକୁ ଚୁଲିରେ ପକେଇ
ଦିଆଯିବ। ତଥାପି ଯଦି ପରମେଶ୍ୱର ତାକୁ ଏଭଳି ସୁନ୍ଦର
ବେଶ ଦେଇଛନ୍ତି, ତେବେ ସେ କ'ଣ ତୁମ୍ଭକୁ ପିନ୍ଧିବାପାଇଁ
ଅଧିକ ଦେବେନାହିଁ? ତେବେ ତୁମ୍ଭେମାନେ କାହିଁକି ଏତେ
ଅଳ୍ପ ବିଶ୍ୱାସ ରଖୁଛ? [୩୧]ଏଣୁ ଚିନ୍ତାଗ୍ରସ୍ତ ହୋଇ କୁହନାହିଁ
ଯେ ଆମ୍ଭେ କ'ଣ ଖାଇବା, କ'ଣ ପିଇବା ବା କ'ଣ
ପିନ୍ଧିବା? [୩୨]ଯେଉଁଲୋକମାନେ ପରମେଶ୍ୱରଙ୍କୁ ଜାଣନ୍ତିନାହିଁ,
ସେମାନେ ଏସବୁ ପଛରେ ଦୌଡ଼ନ୍ତି। କିନ୍ତୁ ସ୍ୱର୍ଗରେ
ରହୁଥିବା ତୁମ୍ଭର ପରମ-ପିତା ଜାଣନ୍ତି ଯେ, ଏସବୁ ଜିନିଷ
ତୁମ୍ଭମାନଙ୍କର ଦରକାର। [୩୩]ଏଣୁ ଆଗ ପରମେଶ୍ୱରଙ୍କ
ରାଜ୍ୟ ଓ ଉତ୍ତମକାର୍ଯ୍ୟ ବିଷୟରେ ଚିନ୍ତାକର। ତୁମ୍ଭେ
ଯେଉଁସବୁ ଭଲ କାମ କରିବା ପରମେଶ୍ୱର ଚାହାନ୍ତି,
ସେଗୁଡ଼ିକ କର। ତା'ହେଲେ ଏହିସବୁ ବିଷୟଗୁଡ଼ିକ ତୁମ୍ଭକୁ
ଯୋଗାଇ ଦିଆଯିବ। [୩୪]ଆସନ୍ତାକାଲି ପାଇଁ ଚିନ୍ତା କରନାହିଁ,
କାରଣ ପ୍ରତ୍ୟେକ ଦିନର କୌଣସି ନା କୌଣସି ସମସ୍ୟା
ଥାଏ। କାଲିର ଚିନ୍ତା କାଲି ପାଇଁ ଯଥେଷ୍ଟ।

### ଲୋକଙ୍କୁ ଚିହ୍ନିବା ପାଇଁ ଯୀଶୁଙ୍କ ଉପଦେଶ

୭ "ଅନ୍ୟର ବିଚାର କରନାହିଁ। ତା'ହେଲେ ପରମେଶ୍ୱର
ତୁମ୍ଭର ବିଚାର କରିବେ ନାହିଁ। [୨]ତୁମ୍ଭେ ଅନ୍ୟର
ବିଚାର କଲେ ଠିକ୍ ସେହିଭଳି ତୁମ୍ଭର ବି ବିଚାର
କରାଯିବ। ତୁମ୍ଭେ ଅନ୍ୟକୁ ଯେଉଁଥିରେ ତଉଲିବ ପରମେଶ୍ୱର
ତୁମ୍ଭକୁ ସେହିଥିରେ ତଉଲିବେ। ତୁମ୍ଭେ ଅନ୍ୟକୁ କ୍ଷମା
ଦେଲେ, ତୁମ୍ଭକୁ ବି କ୍ଷମା ଦିଆଯିବ। [୩]ତୁମ୍ଭେ ତୁମ୍ଭ ଭାଇ
ଆଖିରେ ପଡ଼ିଥିବା କାଠଗୁଣ୍ଡିଟି ପ୍ରତି କାହିଁକି ନଜର
ଦେଉଛ କିନ୍ତୁ ତୁମ୍ଭ ନିଜ ଆଖିରେ ପଡ଼ିଥିବା କାଠଖଣ୍ଡିଟି
ଦେଖିପାରୁନାହଁ? [୪]ତୁମ୍ଭ ନିଜ ଆଖିରେ କାଠଖଣ୍ଡିଟିଏ ପଡ଼ିଥିବା
ବେଳେ ତୁମ୍ଭେ ତୁମ୍ଭର ଭାଇକୁ କିପରି କହିପାରୁଛ ଯେ,
ଦେଖାଅ, ମୁଁ ତୁମ୍ଭ ଆଖିରୁ କାଠଗୁଣ୍ଡିଟି କାଢ଼ିଦେବି! [୫]ରେ
କପଟୀ, ଆଗ ନିଜ ଆଖିରୁ କାଠଖଣ୍ଡିଟି ବାହାର କର।
ତା'ହେଲେ ତୁମ୍ଭେ ନିଜେ ଠିକ୍ ଭାବରେ ଦେଖି ପାରିବ ଓ
ତା'ପରେ ତୁମ୍ଭେ ତୁମ୍ଭ ଭାଇର ଆଖିରୁ କାଠଗୁଣ୍ଡିଟି କାଢ଼ି
ଆଣି ପାରିବ।

[୬]"କୁକୁରମାନଙ୍କୁ ପବିତ୍ର ବସ୍ତୁ ଦିଅନାହିଁ, କାରଣ ସେମାନେ
ବୁଲି ପଡ଼ି ତୁମ୍ଭକୁ କାମୁଡ଼ି ପାରନ୍ତି। ଘୁଷୁରିମାନଙ୍କ ଆଗରେ
ନିଜର ମୋତି ପକାଅ ନାହିଁ, କାରଣ ସେମାନେ ମୋତିକୁ
ଗୋଡ଼ରେ ଦଳି ଦେଇ ଚାଲିଯିବେ।

### ଯାହାସବୁ ଚାହୁଁଛ, ସେଥିପାଇଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଥାଅ

[୭]"ମାଗ ସେଥିରେ ପରମେଶ୍ୱର ତାହା ତୁମ୍ଭକୁ ଦେବେ।
ଖୋଜ ଏବଂ ତୁମ୍ଭେ ପାଇବ। ଦ୍ୱାରରେ ଠକ୍ ଠକ୍ କର ଓ
ତାହା ତୁମ୍ଭପାଇଁ ଖୋଲିଯିବ। [୮]କାରଣ ଯେଉଁଲୋକ ମାଗୁଥାଏ,

ସେ ପାଏ। ଯେଉଁଲୋକ ଖୋଜୁଥାଏ, ସେ ପାଏ ଓ
ଯେଉଁଲୋକ ଦ୍ୱାର ଠକ୍ ଠକ୍ କରୁଥାଏ, ତା ପାଇଁ କବାଟ
ଖୋଲିଯାଏ।
୯"ତୁମ୍ଭର କାହାର ପୁଅଟିଏ ଅଛି କି? ଯଦି ତୁମ୍ଭ ପୁଅ
ରୋଟୀ ଖଣ୍ଡିଏ ମାଗେ ତୁମ୍ଭେ କ'ଣ ତାକୁ ପଥରଟିଏ
ଦେବ। ୧୦ପୁଅ ମାଛଟିଏ ମାଗିଲେ, ତୁମ୍ଭେ କ'ଣ ତାକୁ
ସାପଟିଏ ଦେବ? ନା! ତୁମ୍ଭେ ଦେବନାହିଁ? ୧୧ଏପରିକି
ତୁମ୍ଭେ ମନ୍ଦ ଲୋକ ହୋଇ ମଧ୍ୟ ପିଲାମାନଙ୍କୁ କିଭଳି ଭଲ
ଉପହାର ଦେବାକୁ ହୁଏ, ତାହା ତୁମ୍ଭେ ଜାଣ। ତେବେ
ସ୍ୱର୍ଗରେ ରହୁଥିବା ତୁମ୍ଭର ପରମ-ପିତା, ମାଗୁଥିବା ଲୋକଙ୍କୁ
ନିଶ୍ଚୟ କେତେ ଭଲ ଜିନିଷ ଦେବେ!

## ବ୍ୟବସ୍ଥାର ସବୁଠାରୁ ବଡ଼ ଶିକ୍ଷା

୧୨"ଅନ୍ୟମାନେ ତୁମ୍ଭ ପାଇଁ ଯାହା କରିବେ ବୋଲି
ତୁମ୍ଭେ ଚାହୁଁଛ, ତୁମ୍ଭେ ନିଜେ ସେମାନଙ୍କ ପାଇଁ ସେହିଭଳି
କର। ଏହା ହିଁ ମୋଶାଙ୍କ ନିୟମ ଓ ଭବିଷ୍ୟଦ୍‌ବକ୍ତାମାନଙ୍କର
ଶିକ୍ଷାର ଅର୍ଥ।

## ସ୍ୱର୍ଗ ଏବଂ ନରକର ମାର୍ଗ

୧୩"ସ୍ୱର୍ଗ ପଥରେ କଢ଼ାଇ ନେବା ଥିବା ଅଣଓସାରିଆ
ଫାଟକ ଦେଇ ପ୍ରବେଶ କର। କାରଣ ଓସାରିଆ ଫାଟକ
ଓ ପ୍ରଶସ୍ତ ରାସ୍ତା ନରକ ଆଡ଼କୁ ଯାଏ। ବହୁତ ଲୋକ
ସେହି ରାସ୍ତାରେ ଯାଆନ୍ତି। ୧୪ବାସ୍ତବ ଜୀବନ ପଥରେ ଥିବା
ଫାଟକ ବହୁତ ଛୋଟ। ବାସ୍ତବ ଜୀବନ ଆଡ଼କୁ ଯିବା
ରାସ୍ତା ବହୁତ କଠିନ। ଖୁବ୍ କମ୍ ଲୋକ ସେ ରାସ୍ତା
ଖୋଜି ପାଆନ୍ତି।

## ଲୋକମାନଙ୍କ କର୍ମକୁ ଲକ୍ଷ୍ୟ କର

୧୫"ଭଣ୍ଡ ଭବିଷ୍ୟଦ୍‌ବକ୍ତାଙ୍କ ଠାରୁ ଦୂରରେ ରୁହ। ସେମାନେ
ତୁମ୍ଭ ପାଖକୁ ମେଣ୍ଢା ଭଳି ସରଳ ଓ ଭଦ୍ର ଭାବରେ
ଆସନ୍ତି। କିନ୍ତୁ ସେମାନେ ପ୍ରକୃତରେ ହିଂସ୍ର ଗଧିଆ ଭଳି
ଅଟନ୍ତି। ୧୬ତୁମ୍ଭେ ତାହାଙ୍କୁ ସେମାନଙ୍କର କାର୍ଯ୍ୟରୁ ଚିହ୍ନିବ।
କଣ୍ଟା ବୁଦାରୁ ଯେପରି ଅଙ୍ଗୁର ମିଳେନାହିଁ କି ବଣୁଆ
କଣ୍ଟାଗଛରୁ ଡିମ୍ବିରି ଫଳ ଫଳେ ନାହିଁ, ସେହିପରି ଖରାପ
ଲୋକଙ୍କ ଭିତରୁ ଭଲ ବିଷୟ ବାହାରି ନଥାଏ। ୧୭ପ୍ରତ୍ୟେକ
ଭଲ ଗଛରେ ଭଲ ଫଳ ଫଳେ। କିନ୍ତୁ ଗୋଟିଏ ମନ୍ଦ
ଗଛରେ ମନ୍ଦ ଫଳ ଫଳେ, ୧୮ଗୋଟିଏ ଭଲ ଗଛରେ
ମନ୍ଦ ଫଳଫଳି ପାରିବନାହିଁ। କି ଗୋଟିଏ ମନ୍ଦ ଗଛରେ
ଭଲ ଫଳ ଫଳି ପାରିବନାହିଁ। ୧୯ଯେଉଁ ଗଛରେ ଭଲ
ଫଳଫଳେ ନାହିଁ, ତାହାକୁ କାଟି ଦିଆଯାଏ। ୨୦ତେଣୁ ମୁଁ
ପୁଣିଥରେ କହୁଛି ଯେ ଏହି ଭଣ୍ଡ ଲୋକମାନଙ୍କୁ ତୁମ୍ଭେ
ତାହାଙ୍କ କାର୍ଯ୍ୟରୁ ଚିହ୍ନି ପାରିବ। ୨୧ମୋତେ 'ପ୍ରଭୁ' 'ପ୍ରଭୁ'
କହୁଥିବା ପ୍ରତ୍ୟେକଲୋକ ସ୍ୱର୍ଗ-ରାଜ୍ୟରେ ପ୍ରବେଶ କରିବେ
ନାହିଁ। ଯେଉଁଲୋକ ସ୍ୱର୍ଗରେ ରହୁଥିବା ମୋର ପରମପିତାଙ୍କ
ଇଚ୍ଛା ଅନୁଯାୟୀ କାମ କରେ, ସେହି ବ୍ୟକ୍ତି କେବଳ
ସେଠାରେ ପ୍ରବେଶ କରିବ। ୨୨ସେହି ଶେଷ ଦିନରେ
ଅନେକ ଲୋକ ମୋତେ ପଚାରିବେ, 'ପ୍ରଭୁ, ଆମ୍ଭେ କ'ଣ
ତୁମ୍ଭ ନାମରେ ଭବିଷ୍ୟଦ୍‌ବାଣୀ କରି ନଥିଲୁ? ତୁମ୍ଭ ନାମରେ
କ'ଣ ଆମ୍ଭେ ଭୂତମାନଙ୍କୁ ବାହାର କରିଦେଇ ନଥିଲୁ?
ଆମ୍ଭେ କ'ଣ ତୁମ୍ଭ ନାମରେ ଅନେକ ଆଶ୍ଚର୍ଯ୍ୟଜନକ କାମ
କରିନ ଥିଲୁ?' ୨୩ତେବେ ମୁଁ ସେମାନଙ୍କୁ ଖୋଲାଖୋଲି
ଭାବରେ କହିବି ଯେ, 'ମୁଁ ତୁମ୍ଭକୁ ଆଦୌ ଜାଣିନି। ଆରେ
କୁକର୍ମୀମାନେ, ମୋ ପାଖରୁ ଚାଲିଯାଅ।'

## ଗୋଟିଏ ବୁଦ୍ଧିମାନ ଓ ଗୋଟିଏ ମୂର୍ଖ

୨୪"ତେଣୁ ଯେଉଁ ଲୋକ ମୋର ଏହି କଥାଗୁଡିକ
ଶୁଣେ, ଏବଂ ତାହା ମାନି ଚଳେ, ସେ ଲୋକ ପଥର
ଉପରେ ଘର ତୋଳିଥିବା ଗୋଟିଏ ବୁଦ୍ଧିମାନ ବ୍ୟକ୍ତିଭଳି।
୨୫ବର୍ଷା ହେଲା, ବଢ଼ି ମାଡ଼ି ଆସିଲା, ପବନ ବହିଲା ଓ
ସେ ଘରକୁ ଧକ୍‌କା ଦେଲା, କିନ୍ତୁ ତଥାପି ସେ ଘର
ଭାଙ୍ଗିଲାନାହିଁ। କାରଣ ତାର ମୂଳଦୁଆ ପଥର ଉପରେ
ରହିଥିଲା। ୨୬କିନ୍ତୁ ଯେଉଁ ଲୋକ ମୋର ଏହି କଥା
ଗୁଡିକ ଶୁଣେ, କିନ୍ତୁ ସେଗୁଡିକୁ ମାନି ଚଳେନାହିଁ, ସେ
ବାଲି ଉପରେ ଘର ତୋଳିଥିବା ଗୋଟିଏ ମୂର୍ଖ ବ୍ୟକ୍ତି
ଭଳି। ୨୭ବର୍ଷା ହେଲା, ବଢ଼ି ମାଡ଼ିଆସିଲା, ପବନ କହିଲା
ଓ ସେ ଘରକୁ ଧକ୍‌କା ଦେଲା ଏବଂ ସେହି ଘରଟି
ପୂରାପୂରି ଭାଙ୍ଗି ପଡିଲା।"
୨୮ଯୀଶୁଙ୍କର ଏହି ସବୁ କଥା କହିବା ଶେଷହେଲା।
ତାହାଙ୍କ ଉପଦେଶ ଶୁଣି ଜମା ହୋଇଥିବା ଲୋକେ
ଆଶ୍ଚର୍ଯ୍ୟ ହୋଇଗଲେ। ୨୯କାରଣ ସେ ସେମାନଙ୍କୁ ସେମାନଙ୍କର
ଧର୍ମ-ଶାସ୍ତ୍ରୀଙ୍କ ଭଳି ଉପଦେଶ ନଦେଇ ଅଧିକାର ଥିବା
ଜଣେ ଲୋକ ଭଳି ଉପଦେଶ ଦେଉଥିଲେ।

## ଯୀଶୁ ଗୋଟିଏ କୁଷ୍ଠ ରୋଗୀକୁ ସୁସ୍ଥ କରିଲେ

୮ ଯୀଶୁ ପାହାଡ ଉପରୁ ଓହ୍ଲେଇ ତଳକୁ ଆସିଲେ।
ଏକ ବିରାଟ ଜନ-ସମୂହ ତାହାଙ୍କୁ ଅନୁସରଣ କରିବାକୁ
ଲାଗିଲା। ୨ସେମାନଙ୍କ ଭିତରୁ ଜଣେ କୁଷ୍ଠରୋଗୀ ଆସି
ଯୀଶୁଙ୍କ ଆଗରେ ଆଣ୍ଠୁ ମାଡ଼ି ବସି ପଡ଼ି କହିଲା, "ପ୍ରଭୁ,
ଆପଣ ଚାହିଁଲେ ମୋତେ ଭଲ କରିଦେଇ ପାରିବେ।"
୩ତାପରେ ଯୀଶୁ ହାତ ବଢ଼େଇ କୁଷ୍ଠ ରୋଗୀଟିକୁ
ଛୁଇଁଦେଲେ। ସେ କହିଲେ, "ମୁଁ ଚାହୁଁଛି ତୁମ୍ଭେ ସୁସ୍ଥ
ହୁଅ।" ଏବଂ ସଙ୍ଗେ ସଙ୍ଗେ ତାର କୁଷ୍ଠରୋଗ ଭଲ
ହୋଇଗଲା। ୪ତାପରେ ଯୀଶୁ ତାହାକୁ କହିଲେ, "ଦେଖ,
ଏ ବିଷୟରେ କାହାକୁ କିଛି କୁହନାହିଁ, ବରଂ ଯାଜକଙ୍କ
ପାଖକୁ ଯାଅ ଓ ନିଜକୁ ଦେଖାଅ। ମୋଶାଙ୍କ ଆଦେଶ
ଅନୁସାରେ ଉତ୍ସର୍ଗ-ଦାନ ଦିଅ। ଏହା ଦ୍ୱାରା ଲୋକଙ୍କୁ
ଦେଖେଇ ଦିଆଯାଇ ପାରିବ ଯେ ତୁମ୍ଭେ ଭଲ ହୋଇ
ଯାଇଛ।"

## ଯୀଶୁ ଜଣେ ଅଧିକାରୀଙ୍କ ଦାସକୁ ଭଲ କରିଲେ

୫ତାପରେ ଯୀଶୁ କଫର୍ନାହୂମକୁ ଗଲେ। ନଗର ଭିତରେ
ପ୍ରବେଶ କଲାବେଳେ ଜଣେ ରୋମୀୟ ସେନାପତି ତାହାଙ୍କ
ପାଖକୁ ଆସିଲେ। ୬ସେ ବିନୟ ପୂର୍ବକ କହିଲେ, "ପ୍ରଭୁ,
ମୋର ଦାସ ରୋଗରେ ପୀଡ଼ିତ ହୋଇ ଘରେ ବିଛଣାରେ

ପଡ଼ିଛି। ତାକୁ ପକ୍ଷାଘାତ ରୋଗ ହୋଇଛି ଓ ସେ ଭୀଷଣ
କଷ୍ଟ ପାଉଛି।”
୭ତାପରେ ଯୀଶୁ ତାହାଙ୍କୁ କହିଲେ, “ମୁଁ ଯାଇ ତାହାକୁ
ଭଲ କରିଦେବି।”
୮ସେନାପତି ଉତ୍ତର ଦେଲେ, “ପ୍ରଭୁ, ଆପଣ ଯେ ମୋ
ଘରକୁ ଆସିବେ, ତାହାପାଇଁ ମୁଁ ଯୋଗ୍ୟ ନୁହେଁ। ଆପଣ
କେବଳ ଆଦେଶ ଦେଇ ଦିଅନ୍ତୁ। ମୋର ଦାସ ଭଲ
ହୋଇଯିବ। ୯ମୁଁ ମଧ୍ୟ ଜଣେ ବଡ ଅଧିକାରୀଙ୍କ ଅଧୀନରେ
କାମ କରୁଛି। ମୋ ଅଧୀନରେ କେତେକ ସୈନ୍ୟ ଅଛନ୍ତି।
ମୁଁ ଜଣେ ସୈନିକକୁ ଯଦି କୁହେ, ‘ଯାଅ’, ତେବେ ସେ
ଚାଲିଯାଏ। ଅନ୍ୟଜଣକୁ ମୁଁ ଯଦି କୁହେ, ‘ଆସ’, ତେବେ
ସେ ଆସେ। ମୋର ଦାସକୁ ମୁଁ ଯଦି କୁହେ, ‘ଏହା କର’
ତେବେ ସେ ତାହା କରେ। ତୁମ୍ଭର ମଧ୍ୟ ଏଭଳି ଶକ୍ତି
ଅଛି ବୋଲି ମୁଁ ଜାଣେ।”
୧୦ଯୀଶୁ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ। ସେ
ତାହାଙ୍କୁ ଅନୁସରଣ କରୁଥିବା ଲୋକଙ୍କୁ କହିଲେ, “ମୁଁ
ତୁମ୍ଭକୁ ସତ୍ୟ କହୁଛି ଯେ ମୁଁ ଏଭଳି ଗଭୀର ବିଶ୍ୱାସ
ଇସ୍ରାୟେଲରେ କାହାରି ପାଖରେ ପାଇନାହିଁ। ୧୧“ମୁଁ ତୁମ୍ଭକୁ
ପୁଣି କହି ରଖୁଛି ଯେ, ପୂର୍ବ ଓ ପଶ୍ଚିମରୁ ବହୁତ ଲୋକ
ଆସିବେ ଏବଂ ସେମାନେ ଅବ୍ରହାମ, ଇସ୍‌ହାକ ଓ ଯାକୁବଙ୍କ
ସହିତ ସ୍ୱର୍ଗରାଜ୍ୟରେ ଭୋଜିରେ ନିଜ ନିଜ ଆସନ ଗ୍ରହଣ
କରିବେ। ୧୨କିନ୍ତୁ ରାଜ୍ୟର ମୂଳ ପ୍ରଜାମାନଙ୍କୁ ଅନ୍ଧାର
ଭିତରକୁ ଫିଙ୍ଗି ଦିଆଯିବ। ସେଠାରେ କାନ୍ଦି କାନ୍ଦି ଓ
କଷ୍ଟହେତୁ ଦାନ୍ତ କଡ଼ମଡ଼ କରି ରହିବେ।”
୧୩ତା’ପରେ ଯୀଶୁ ସେନାପତିଙ୍କୁ କହିଲେ, “ତୁମ୍ଭର
ବିଶ୍ୱାସ ଲାଗି, ତୁମ୍ଭ ପାଇଁ ତାହା ଘଟୁ।” ଠିକ୍ ସେହି
ସମୟରେ ତାହାଙ୍କର ଦାସ ସୁସ୍ଥ ହୋଇଗଲା।

## ଯୀଶୁ ଅନେକ ଲୋକଙ୍କୁ ସୁସ୍ଥ କଲେ

୧୪ଯୀଶୁ ପିତରଙ୍କ ଘରେ ପହଞ୍ଚିଲେ। ସେ ଦେଖିଲେ
ଯେ ପିତରଙ୍କ ଶାଶୁ ଭୀଷଣ ଜ୍ୱରରେ ପୀଡ଼ିତ ହୋଇ
ବିଛଣାରେ ପଡ଼ିଛନ୍ତି। ୧୫ଯୀଶୁ ତାହାଙ୍କୁ ଛୁଇଁ ଦେଲେ, ଓ
ତାହାଙ୍କର ଜ୍ୱର ଛାଡ଼ିଗଲା। ତାପରେ ସେ ଉଠି ଯୀଶୁଙ୍କ
ସେବା କରିବାକୁ ଲାଗିଲେ।
୧୬ସେହିଦିନ ସନ୍ଧ୍ୟାରେ ଲୋକେ ତାହାଙ୍କ ପାଖକୁ
ଭୂତ-ଗ୍ରସ୍ତ ଅନେକ ଲୋକଙ୍କୁ ଆଣିଲେ। ଯୀଶୁ ଗୋଟିଏ
ଆଜ୍ଞାରେ ସେହି ଭୂତମାନଙ୍କୁ ବାହାର କରିଦେଲେ। ଏହିଭଳି
ଯୀଶୁ ସମସ୍ତ ରୋଗୀଙ୍କୁ ଭଲ କରିଦେଲେ। ୧୭ଭବିଷ୍ୟଦ୍‌ବକ୍ତା
ଯିଶାଇୟଙ୍କ ମାଧ୍ୟମରେ ପରମେଶ୍ୱର ଯାହା କହିଥିଲେ
ତାହା ସଫଳ ହେବା ପାଇଁ ଯୀଶୁ ଏହି କାମ ଗୁଡିକ
କଲେ:

> “ସେ ଆମ୍ଭର ରୋଗ ସବୁ ନେଇନେଲେ ଏବଂ
> ଆମ୍ଭର ଅସୁସ୍ଥତା ସହିଲେ।” ଯିଶାଇୟ ୫୩:୪

## ଯୀଶୁଙ୍କୁ ଅନୁସରଣ କରିବା

୧୮ଯୀଶୁ ତାହାଙ୍କ ଚାରିପଟେ ଲୋକଙ୍କ ଭିଡ ଦେଖିଲେ।
ଶିଷ୍ୟମାନଙ୍କୁ ହ୍ରଦର ଆର ପଟକୁ ଯିବାକୁ ଆଦେଶ
ଦେଲେ। ୧୯ତା’ପରେ ଜଣେ ଧର୍ମଶାସ୍ତ୍ରୀ ତାହାଙ୍କ ପାଖକୁ
ଆସି କହିଲେ, “ଗୁରୁ, ଆପଣ ଯେଉଁଆଡେ ଯିବେ, ମୁଁ
ଆପଣଙ୍କ ଅନୁସରଣ କରିବି।”
୨୦ଯୀଶୁ ତାହାଙ୍କୁ କହିଲେ, “କୋକିଶିଆଳିର ଗାତ ଅଛି
ଓ ଆକାଶର ପକ୍ଷୀମାନଙ୍କର ବସା ଅଛି। କିନ୍ତୁ ମନୁଷ୍ୟପୁତ୍ରଙ୍କ
ପାଇଁ ମୁଣ୍ଡ ଗୁଞ୍ଜିବାକୁ ଯାଗା ଟିକିଏ ନାହିଁ।”
୨୧ଆଉ ଜଣେ ଅନୁଗାମୀ ଯୀଶୁଙ୍କୁ କହିଲା, “ପ୍ରଭୁ
ମୋତେ ଆଗ ଯାଇ ମୋର ବାପାଙ୍କୁ କବର ଦେଇଆସିବାକୁ
ଅନୁମତି ଦିଅନ୍ତୁ। ତା’ପରେ ମୁଁ ଆପଣଙ୍କର ଅନୁସରଣ
କରିବି।”
୨୨କିନ୍ତୁ ଯୀଶୁ ତାହାକୁ କହିଲେ, “ମୋର ଅନୁସରଣ
କର। ମରିଯାଇଥିବା ଲୋକମାନେ ଏହି ମୃତ ଲୋକଙ୍କୁ
କବର ଦିଅନ୍ତୁ।”

## ଯୀଶୁ ଝଡକୁ ଶାନ୍ତ କଲେ

୨୩ଯୀଶୁ ନୌକାରେ ଯାଇ ବସିଲେ ଏବଂ ତାହାଙ୍କ
ଶିଷ୍ୟମାନେ ତାହାଙ୍କର ଅନୁଗମନ ଗଲେ। ୨୪ସେହି ସମୟରେ
ହ୍ରଦରେ ଭୟଙ୍କର ଝଡ ହେଲା। ଲହଡ଼ିରେ ଡ଼ଙ୍ଗା ଓଲଟ-ପାଲଟ
ହୋଇ ପଡୁଥିଲା। କିନ୍ତୁ ଯୀଶୁ ଶୋଇ ଥିଲେ। ୨୫ଶିଷ୍ୟମାନେ
ଯୀଶୁଙ୍କ ପାଖରେ ଥିଲେ। ସେମାନେ ଯୀଶୁଙ୍କୁ ଉଠାଇଲେ।
ସେମାନେ କହିଲେ, “ପ୍ରଭୁ, ଆମ୍ଭମାନଙ୍କୁ ରକ୍ଷା କର।
ଆମ୍ଭେ ବର୍ତ୍ତମାନ ବୁଡ଼ି ମରିଯିବା ଉପରେ।”
୨୬ଯୀଶୁ ସେମାନଙ୍କୁ କହିଲେ, “ହେ ଅଳ୍ପ ବିଶ୍ୱାସୀଗଣ,
ତୁମ୍ଭେ ସବୁ ଏତେ ଡରିଯାଉଛ କାହିଁକି?” ତା’ପରେ ଯୀଶୁ
ଉଠିଲେ। ସେ ପବନ ଓ ଲହଡ଼ିକୁ ଧମକ ଦେଲେ।
ପବନ ବନ୍ଦ ହୋଇଗଲା। ହ୍ରଦ ଶାନ୍ତ ହୋଇଗଲା। ତା’ପରେ
ସେଠାରେ ସମ୍ପୂର୍ଣ୍ଣ ନୀରବତା ଆସିଗଲା।
୨୭ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ କହିଲେ,
“ଏ କି ପ୍ରକାର ବ୍ୟକ୍ତି? ଏପରିକି ପବନ ଓ ହ୍ରଦ ମଧ୍ୟ
ତାହାଙ୍କ କଥା ମାନୁଛନ୍ତି?”

## ଭୂତ କବଳରୁ ଦୁଇ ଜଣଙ୍କୁ ମୁକ୍ତି

୨୮ଯୀଶୁ ହ୍ରଦର ଆରପଟରେ ଥିବା ଗଦରୀୟ* ଲୋକଙ୍କ
ରାଜ୍ୟରେ ପହଞ୍ଚିଲେ। ଭୂତ-ଗ୍ରସ୍ତ ଦୁଇଜଣ ଲୋକ କବର
ସ୍ଥାନରୁ ବାହାରି ତାହାଙ୍କୁ ଭେଟିଲେ। ସେମାନେ ବହୁତ
ଭୟଙ୍କର ଥିଲେ। ୨୯ସେମାନଙ୍କ ନିମନ୍ତେ କେହି ସେହି
ବାଟେ ଯାଇପାରୁ ନଥିଲେ। ସେମାନେ ପାଟିକରି କହିଲେ,
“ହେ ପରମେଶ୍ୱରଙ୍କ ପୁତ୍ର! ତୁମ୍ଭେ ଆମ୍ଭଠାରୁ କ’ଣ
ଚାହୁଁଛ? ଉପଯୁକ୍ତ ସମୟ ପୂର୍ବରୁ ତୁମ୍ଭେ କ’ଣ ଆମ୍ଭକୁ
ଦଣ୍ଡ ଦେବାପାଇଁ ଆସିଛ?”
୩୦ସେତେବେଳେ ସେଠାରୁ କିଛିଦୂରରେ ଗୋଟିଏ ବିରାଟ
ଘୁଷୁରୀ ପଲ ଚରୁଥିଲେ। ୩୧ଭୂତମାନେ ତାହାଙ୍କୁ ବିନୀତ
ଅନୁରୋଧ କଲେ, “ତୁମ୍ଭେ ଯଦି ଆମ୍ଭକୁ ଏ ମଣିଷଙ୍କ

---

**ଗଦରୀୟ** ଗଦର ବାସୀ। ଗଦର ଗାଲୀଲୀ ହ୍ରଦର ଦକ୍ଷିଣ
ପୂର୍ବରେ ଅବସ୍ଥିତ।

ଦେହରୁ ତଡ଼ ଦେବାକୁ ଚାହୁଁଛ, ତେବେ ଆମ୍ଭକୁ ଏ
ଘୁଷୁରି ପଲରେ ଛାଡ଼ିଦିଅ।"
୩୨ଯୀଶୁ ସେମାନଙ୍କୁ କହିଲେ, "ଯାଅ!" ତେଣୁ ଭୂତମାନେ
ମଣିଷଙ୍କ ଦେହରୁ ବାହାରି ଘୁଷୁରିମାନଙ୍କ ଦେହକୁ ଚାଲିଗଲେ।
ତା'ପରେ ସେହି ଘୁଷୁରିପଲ ତୀଖ ପାହାଡ଼ରୁ ତଳକୁ
ଗଡ଼ିଯାଇ ଶେଷରେ ହ୍ରଦରେ ବୁଡ଼ିଗଲେ। ୩୩ସେଠାରେ
ଘୁଷୁରି ଚରାଉଥିବା ଲୋକେ ଥିଲେ। ସେମାନେ ନଗରକୁ
ଦୌଡ଼ି ପଳାଇଲେ। ସେଠାରେ ଲୋକଙ୍କ ଆଗରେ ଘୁଷୁରିପଲ
ଓ ଭୂତ-ଗ୍ରସ୍ତ ଲୋକଙ୍କ ବିଷୟରେ ଯାହା-ଯାହା ଘଟିଥିଲା,
ସବୁକଥା ଗୋଟି ଗୋଟି କରି କହିଗଲେ। ୩୪ତାପରେ
ନଗରର ସବୁଲୋକେ ଯୀଶୁଙ୍କୁ ଭେଟିବାକୁ ଆସିଲେ।
ସେମାନେ ଯୀଶୁଙ୍କୁ ଦେଖି ତାହାଙ୍କୁ ସେମାନେ ସେହି
ଅଞ୍ଚଳ ଛାଡି ଚାଲିଯିବାପାଇଁ ବିନତି କଲେ।

## ଯୀଶୁ ଗୋଟିଏ ପକ୍ଷାଘାତ ରୋଗୀକୁ ସୁସ୍ଥ କଲେ

୯ ଯୀଶୁ ନୌକାରେ ବସି ହ୍ରଦର ଆର ପଟେ ଥିବା
ନିଜ ନଗରକୁ ଫେରିଗଲେ। ୨କେତେକ ଲୋକ
ଜଣେ ପକ୍ଷାଘାତ ରୋଗୀକୁ ଯୀଶୁଙ୍କ ପାଖକୁ ଆଣିଲେ। ସେ
ରୋଗୀଟି ଶେଯରେ ଶୋଇଥିଲା। ଯୀଶୁ ସେହି ଲୋକମାନଙ୍କର
ଗଭୀର ବିଶ୍ୱାସ ଥିବାର ଦେଖିଲେ। ସେ ପକ୍ଷାଘାତ
ରୋଗୀକୁ କହିଲେ, "ହେ ଯୁବକ! ସାହସ ରଖ। ତୁମ୍ଭର
ସବୁ ପାପ କ୍ଷମା କରାଗଲା।"
୩କେତେକ ଯିହୂଦୀ ଧର୍ମଶାସ୍ତ୍ରୀ ଏହା ଶୁଣିଲେ। ସେମାନେ
ନିଜ ନିଜ ଭିତରେ କୁହାକୁହି ହେଲେ, "ଏ ଲୋକଟି
ଏମିତି କଥା କହୁଛି, ସତେ ଯେପରି ସେ ନିଜେ
ପରମେଶ୍ୱର। ଏହାଦ୍ୱାରା ସେ ପରମେଶ୍ୱରଙ୍କ ନିନ୍ଦା କରୁଛି।"
୪ସେମାନେ ଯାହା ଭାବୁଥିଲେ, ଯୀଶୁ ତାହା ଜାଣି
ପାରିଲେ। ତେଣୁ ସେ କହିଲେ, "ତୁମ୍ଭେମାନେ ମନ
ଭିତରେ ମନ୍ଦ ଭାବନା କାହିଁକି ଆଣୁଛ? ୫ଏହି ପକ୍ଷାଘାତ
ରୋଗୀଟିକୁ କେଉଁ ବିଷୟଟି କହିବା ଅଧିକ ସହଜ ହେବ:
'ତୁମ୍ଭର ପାପ କ୍ଷମା କରି ଦିଆଗଲା' ନା 'ଉଠ, ଚାଲିବା
ଆରମ୍ଭ କର'? ୬ମୁଁ ତୁମ୍ଭକୁ ଦେଖେଇ ଦେବି ଯେ, ଏ
ଜଗତରେ ମନୁଷ୍ୟ-ପୁତ୍ରଙ୍କର ପାପ କ୍ଷମା କରିଦେବାର ଶକ୍ତି
ଅଛି।" ତା'ପରେ ଯୀଶୁ ସେହି ପକ୍ଷାଘାତ ରୋଗିଟିକୁ
କହିଲେ, "ଉଠ, ତୁମ୍ଭର ବିଛଣା ଧରି ଘରକୁ ଯାଅ।"
୭ପକ୍ଷାଘାତ ରୋଗିଟି ଉଠି ଘରକୁ ଚାଲିଗଲା। ୮ଜମା
ହୋଇଥିବା ଲୋକେ ଏ କଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ।
ପରମେଶ୍ୱର ଜଣେ ମଣିଷକୁ ଏପରି ଶକ୍ତି ଦେଇଥିବାରୁ
ସେମାନେ ପରମେଶ୍ୱରଙ୍କର ମହିମା ଗାନ କଲେ।

## ଯୀଶୁ ମାଥିଉଙ୍କୁ ବାଛିଲେ

୯ଯୀଶୁ ସେଠାରୁ ଯାଉଯାଉ ଦେଖିଲେ ଯେ କରଆଦାୟ
କେନ୍ଦ୍ରରେ ଜଣେ ଲୋକ ବସିଛନ୍ତି। ତାହାଙ୍କ ନାମ ଥିଲା
ମାଥିଉ। ଯୀଶୁ ତାହାଙ୍କୁ କହିଲେ, "ମୋର ଅନୁସରଣ
କର।" ମାଥିଉ ଉଠି ଯୀଶୁଙ୍କର ଅନୁଗମନ କଲେ।
୧୦ଯୀଶୁ ମାଥିଉଙ୍କ ଘରେ ଖାଉଥିଲେ। ସେ ଖାଇବାବେଳେ
ଅନେକ କର ଆଦାୟକାରୀ ଓ ଅନ୍ୟ ପାପୀମାନେ
ସେଠାରେ ପହଞ୍ଚିଲେ। ସେମାନେ ଯୀଶୁ ଓ ତାହାଙ୍କ
ଅନୁଗାମୀମାନଙ୍କ ସହ ଖାଇଲେ। ୧୧ଫାରୂଶୀମାନେ ଏହା
ଦେଖି ଯୀଶୁଙ୍କ ଅନୁଗାମୀମାନଙ୍କୁ ପଚାରିଲେ, "ତୁମ୍ଭର ଗୁରୁ
କର ଆଦାୟକାରୀ ଓ ପାପୀମାନଙ୍କ ସହିତ କାହିଁକି
ଖାଉଛନ୍ତି?"
୧୨ଫାରୂଶୀମାନଙ୍କ କଥା ଶୁଣି ଯୀଶୁ କହିଲେ, "ଜଣେ
ସୁସ୍ଥ ଲୋକ ପାଇଁ ଡାକ୍ତରର ଆବଶ୍ୟକ ନାହିଁ, କିନ୍ତୁ
ଜଣେ ରୋଗି ପାଇଁ ଡାକ୍ତର ଦରକାର। ୧୩ମୁଁ ତୁମ୍ଭକୁ
ଗୋଟିଏ କଥା କହିବି। ତୁମ୍ଭେ ଯାଇ ବୁଝ ଯେ ଏହି
ଶାସ୍ତ୍ର-ବାକ୍ୟର ଅର୍ଥ କ'ଣ: 'ମୁଁ ପଶୁବଧ ଚାହେଁ ନାହିଁ। ମୁଁ
ଲୋକଙ୍କ ଭିତରେ ଦୟାଭାବ ଚାହେଁ।'* ମୁଁ ଧାର୍ମିକ
ଲୋକଙ୍କୁ ଡାକିବାକୁ ଆସି ନାହିଁ। ମୁଁ ପାପୀଲୋକଙ୍କୁ
ଡାକିବାକୁ ଆସିଛି।"

## ଯୀଶୁ ଅନ୍ୟ ଧାର୍ମିକ ଯିହୂଦୀଙ୍କ ଭଳି ନୁହଁନ୍ତି

୧୪ଯୋହନ* ଙ୍କ ଶିଷ୍ୟମାନେ ଯୀଶୁଙ୍କ ପାଖକୁ ଆସିଲେ।
ସେମାନେ ଯୀଶୁଙ୍କୁ ପଚାରିଲେ, "ଆମେ ଓ ଫାରୂଶୀମାନେ
ଅଧିକାଂଶ ସମୟରେ ଉପବାସ କରୁଛୁ। କିନ୍ତୁ ଆପଣଙ୍କ
ଶିଷ୍ୟମାନେ ଉପବାସ କରନ୍ତି ନାହିଁ କାହିଁକି?"
୧୫ଯୀଶୁ ସେମାନଙ୍କୁ କହିଲେ, "ବର ଯେ ପର୍ଯ୍ୟନ୍ତ
ବରଯାତ୍ରୀମାନଙ୍କ ସହିତ ଥିବ, ସେ ପର୍ଯ୍ୟନ୍ତ ବରଯାତ୍ରୀମାନେ
ଦୁଃଖ କରିବେ କି? କିନ୍ତୁ ଦିନ ଆସିବ। ବରକୁ
ତାହାଙ୍କଠାରୁ ଛଡ଼େଇ ନିଆଯିବ। ସେତେବେଳେ
ବରଯାତ୍ରୀମାନେ ଦୁଃଖୀହେବେ। ତାପରେ ସେମାନେ ଉପବାସ
କରିବେ।
୧୬"କେହି କେବେ ପୁରୁଣା ଲୁଗା କଣାରେ ନୂଆ
କନାର ତାଳି ପକାଏନାହିଁ। କାରଣ ନୂଆ କନା ଧୋଇବା
ପୂର୍ବରୁ ଯାକି ହୋଇ ନ ଥାଏ। ନୂଆ କନାର ତାଳି
ପକାଇଦେଲେ ତାହା ଯାକି ହେବା ବେଳକୁ ପୁରୁଣା
ଲୁଗାକୁ ଚାରିପଟୁ ଟାଣିଦେବ, ଓ କଣାଟି ଆହୁରି ଅଧିକ
ବଡ ହୋଇଯିବ। ୧୭ଆହୁରି ଲୋକେ ନୂଆ ଅଙ୍ଗୁର ରସ
ପୁରୁଣା ଚମଡା ପାତ୍ରରେ ଢାଳନ୍ତି ନାହିଁ। ତା'କଲେ ପୁରୁଣା
ଚମଡା ପାତ୍ର ଫାଟିଯାଏ ଓ ଅଙ୍ଗୁରରସ ଢ଼ାଳି ହୋଇଯାଏ,
ସେଥିପାଇଁ ସେମାନେ ନୂଆ ଅଙ୍ଗୁର ରସ ନୂଆ ଚମଡା
ପାତ୍ରରେ ରଖନ୍ତି। ଏଥିରେ ଅଙ୍ଗୁରରସ ଓ ପାତ୍ର ଦୁଇଟି
ସୁରକ୍ଷିତ ରଖାଯାଇ ପାରିବ।"

## ଯୀଶୁ ଗୋଟିଏ ମୃତ ଝିଅଟିକୁ ଜୀବନ ଦେଲେ ଓ ଅସୁସ୍ଥ ସ୍ତ୍ରୀ ଲୋକଟିକୁ ସୁସ୍ଥ କରିଦେଲେ

୧୮ଯୀଶୁ ଏ ବିଷୟ କହୁଥିବା ସମୟରେ ଯିହୂଦୀ
ପ୍ରାର୍ଥନାଗୃହର ଜଣେ ଅଧକ୍ଷ ଆସିଲେ। ସେ ଯୀଶୁଙ୍କ
ଆଗରେ ଆଣ୍ଠୁମାଡ଼ି ବସି ପଡ଼ିଲେ ଓ କହିଲେ, "ମୋର

---

**'ମୁଁ ପଶୁବଧ ... ଚାହେଁ'** ହୋଶେହ ୬:୬

**ଯୋହନ** ବାପ୍ତିସ୍ମ ଦେଉଥିବା ବ୍ୟକ୍ତି। ସେ ଲୋକମାନଙ୍କ ମଧ୍ୟରେ ଯୀଶୁଙ୍କ ଆଗମନବାର୍ତ୍ତା ପ୍ରଚାର କରିଥିଲେ।

ଝିଅ ଏବେ ମରିଗଲା। ତୁମ୍ଭେ ଆସି ତା'ଉପରେ ହାତ ରଖି
ଦିଅ। ତା'ହେଲେ ସେ ପୁଣି ବଞ୍ଚି ଉଠିବ।"
୧୯ଯୀଶୁ ଉଠିଲେ। ସେ ଅଧ୍ୟକ୍ଷଙ୍କ ସହିତ ସେଠାକୁ
ବାହାରିଲେ। ତାହାଙ୍କ ଶିଷ୍ୟମାନେ ମଧ୍ୟ ତାହାଙ୍କ ସହିତ
ସେଠାକୁ ଗଲେ।
୨୦ସେଠାରେ ଜଣେ ସ୍ତ୍ରୀ ଲୋକ ଥିଲା। ତାର ବାରବର୍ଷ
ଧରି ରକ୍ତସ୍ରାବ ହେଉଥିଲା। ସେ ସ୍ତ୍ରୀଲୋକଟି ଯୀଶୁଙ୍କ ପଛ
ପଟକୁ ଆସି ତାହାଙ୍କ ପିନ୍ଧା ବସ୍ତ୍ରର ଧାରକୁ ଛୁଇଁଦେଲା।
୨୧ଏହା କଲାବେଳେ ସେ ମନେମନେ ଭାବୁଥିଲା, "ମୁଁ
ତାହାଙ୍କ ବସ୍ତ୍ର ଟିକିଏ ଛୁଇଁଦେଲେ ସୁସ୍ଥ ହୋଇଯିବ।"
୨୨ଯୀଶୁ ବୁଲିପଡ଼ି ତାହାକୁ ଚାହିଁଲେ। ଯୀଶୁ କହିଲେ,
"ଝିଅ, ସାହାସ ଧର। ତୁମ୍ଭର ବିଶ୍ୱାସ ତୁମ୍ଭକୁ ସୁସ୍ଥ କରି
ଦେଇଛି।" ସଙ୍ଗେସଙ୍ଗେ ସେ ସ୍ତ୍ରୀ ଲୋକଟି ସୁସ୍ଥ ହୋଇଗଲା।
୨୩ତା'ପରେ ଯୀଶୁ ଯିହୂଦୀ ପ୍ରାର୍ଥନାଗୃହର* ଅଧ୍ୟକ୍ଷଙ୍କ
ଘରେ ପହଞ୍ଚିଲେ। ସେଠାରେ ବଂଶୀବାଦକମାନେ ସମାଧି
ଜନିତ ବଂଶୀ ବଜାଉଥିଲେ। ଝିଅଟି ମରିଯାଇଥିବାରୁ ଲୋକେ
କାନ୍ଦୁଥିଲେ। ୨୪ଯୀଶୁ ସମସ୍ତଙ୍କୁ କହିଲେ, "ବାହାରିଯାଅ।
ଝିଅଟି ମରିନାହିଁ। ସେ କେବଳ ଶୋଇ ପଡିଛି।" ଏହା
ଶୁଣି ଲୋକେ ଯୀଶୁଙ୍କୁ ଉପହାସ କଲେ। ୨୫ଲୋକଙ୍କୁ ଘର
ଭିତରୁ ବାହାର କରି ଦିଆଯିବାପରେ ଯୀଶୁ ଭିତରକୁ
ଗଲେ। ଝିଅଟିର ହାତ ଧରିଲେ। ଝିଅଟି ଉଠି ଠିଆହେଲା।
୨୬ଏ ଖବର ସେହି ଅଞ୍ଚଳ ସାରା ବ୍ୟାପିଗଲା।

## ଯୀଶୁ ଅନେକ ଲୋକଙ୍କୁ ସୁସ୍ଥ କରନ୍ତି

୨୭ଯୀଶୁ ସେହି ସ୍ଥାନ ଛାଡ଼ି ଯାଉଥିବା ସମୟରେ ଦୁଇ
ଜଣ ଅନ୍ଧ ଲୋକ ତାହାଙ୍କୁ ଅନୁସରଣ କଲେ। ସେମାନେ
ପାଟି କରି କହୁଥିଲେ, "ହେ ଦାଉଦଙ୍କ ପୁତ୍ର*, ଆମ୍ଭମାନଙ୍କୁ
ଦୟା କର।"
୨୮ଯୀଶୁ ପୁଣି ଭିତରକୁ ଗଲେ, ଅନ୍ଧ ଦୁଇଟି ମଧ୍ୟ
ତାହାଙ୍କ ସଙ୍ଗରେ ଗଲେ। ଯୀଶୁ ସେମାନଙ୍କୁ ପଚାରିଲେ,
"ତୁମ୍ଭେ କ'ଣ ବିଶ୍ୱାସ କରୁଛ ଯେ, ମୁଁ ତୁମ୍ଭକୁ ଆଖି ଦାନ
କରି ପାରିବି?" ସେମାନେ ଉତ୍ତର ଦେଲେ, "ହଁ, ପ୍ରଭୁ"।
୨୯ତା'ପରେ ଯୀଶୁ ସେମାନଙ୍କ ଆଖିକୁ ଛୁଇଁଲେ। ସେ
କହିଲେ, "ତୁମ୍ଭେ ଯେପରି ବିଶ୍ୱାସ କରିଅଛ, ତୁମ୍ଭପ୍ରତି
ସେପରି ହେଉ।" ୩୦ତା'ପରେ ଅନ୍ଧ ଦୁଇଜଣ ଦେଖିବାକୁ
ପାରିଲେ। ଯୀଶୁ ସେମାନଙ୍କୁ ଦୃଢ଼ଭାବରେ ଚେତାବନୀ
ଦେଇ କହିଲେ, "ଏ ବିଷୟ ଅନ୍ୟକୁ କହିବ ନାହିଁ।"
୩୧କିନ୍ତୁ ଅନ୍ଧ ଦୁହେଁ ଏ ଖବର ସେ ଅଞ୍ଚଳ ସାରା ପ୍ରଚାର
କରିଦେଲେ।
୩୨ସେ ଅନ୍ଧ ଦୁଇଜଣ ଗଲାପରେ କେତେକ ଲୋକ
ଯୀଶୁଙ୍କ ପାଖକୁ ଆଉ ଜଣେ ଲୋକକୁ ଆଣିଲେ। ସେ
କଥା କହି ପାରୁ ନ ଥିଲା। କାରଣ ତା ଦେହରେ ଭୂତ
ପ୍ରବେଶ କରି ରହିଥିଲା। ୩୩ଯୀଶୁ ତା' ଦେହରୁ ଭୂତକୁ
ତଡ଼ିଦେଲେ। କିଛି କହି ପାରୁ ନଥିବା ଲୋକଟି ପୁଣି
ତା'ର କହିବା ଶକ୍ତି ଫେରି ପାଇଲା। ଜମା ହୋଇଥିବା
ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ କହିଲେ,
"ଇସ୍ରାୟେଲରେ ଏଭଳି ଘଟଣା ଘଟିବା ଆମ୍ଭେ କେବେହେଲେ
ଦେଖି ନଥିଲୁ।"
୩୪କିନ୍ତୁ ଫାରୂଶୀମାନେ କହିଲେ, "ଯୀଶୁ ଭୂତମାନଙ୍କ
ମୁଖିଆଙ୍କ ସାହାଯ୍ୟରେ ଅନ୍ୟ ଭୂତଙ୍କୁ ତଡି ଦେଉଛନ୍ତି।"

## ଲୋକମାନଙ୍କ ପାଇଁ ଯୀଶୁ ଦୁଃଖ କରନ୍ତି

୩୫ଯୀଶୁ ନଗର-ନଗର ଓ ଗାଁ-ଗାଁ ଯାତ୍ରା କରିବାକୁ
ଲାଗିଲେ। ସେ ବାଟରେ ଯିହୂଦୀ ପ୍ରାର୍ଥନା ଗୃହ ମାନଙ୍କରେ
ଉପଦେଶ ଦେଲେ, ଓ ପରମେଶ୍ୱରଙ୍କ ରାଜ୍ୟର ସୁସମାଚାର
ପ୍ରଚାର କଲେ। ସେ ଲୋକଙ୍କର ସବୁ ପ୍ରକାର ରୋଗ ଓ
ଅସୁସ୍ଥତାକୁ ସୁସ୍ଥ କରି ଦେଲେ। ୩୬ଲୋକମାନଙ୍କୁ ଦେଖି
ଯୀଶୁଙ୍କ ମନରେ କରୁଣା ଜାତ ହେଲା। ମେଷ-ପାଳକ
ନଥିଲେ ମେଣ୍ଢା-ପଲର ଅବସ୍ଥା ଯାହା ହୁଏ, ଲୋକମାନଙ୍କର
ଅବସ୍ଥା ସେହିଭଳି ନିରାଶା ଓ ଅସହାୟତାରେ ପୂର୍ଣ୍ଣଥିଲା।
୩୭ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ କହିଲେ, "ଫସଲ(ଲୋକ)
ବହୁତ। କିନ୍ତୁ ମୂଲିଆ(ସେବକ) କମ୍ ଅଛନ୍ତି। ୩୮ଫସଲ
ଅମଳ(ଉଦ୍ଧାର) କରିବା ପାଇଁ ଅଧିକ ମୂଲିଆ ପଠାଇବାକୁ
ଫସଲର ମାଲିକ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କର।"

## ଯୀଶୁ ପ୍ରେରିତ* ମାନଙ୍କୁ ସୁସମାଚାର ପ୍ରଚାର ପାଇଁ ପଠାଇଲେ

୧୦ ଯୀଶୁ ତାହାଙ୍କର ବାରଜଣ ଶିଷ୍ୟଙ୍କୁ
ପାଖକୁଡକାଇଲେ। ସେ ଭୂତମାନଙ୍କୁ ତଡ଼ିଦେବା
ପାଇଁ ଓ ସବୁ ପ୍ରକାର ରୋଗ ଏବଂ ଅସୁସ୍ଥତା ଭଲ
କରିଦେବା ପାଇଁ ଶିଷ୍ୟମାନଙ୍କୁ ଶକ୍ତି ପ୍ରଦାନ କଲେ।
୨ସେହି ବାରଜଣ ଶିଷ୍ୟଙ୍କ ନାମ ଏହିଭଳି: ଶିମୋନ(ଯାହାଙ୍କୁ
ପିତର ବୋଲି କୁହାଯାଏ), ତାହାଙ୍କ ଭାଇ ଆନ୍ଦ୍ରିୟ, ଜେବଦିଙ୍କ
ପୁଅ ଯାକୁବ ଓ ତାହାଙ୍କ ଭାଇ ଯୋହନ। ୩ଫିଲିପ୍ପ ଓ
ବାର୍ଥଲମି, ଥୋମା ଓ କରଆଦାୟକାରୀ ମାଥିଉ, ଆଲଫିଙ୍କ
ପୁତ୍ର ଯାକୁବ ଓ ଥଦ୍ଦୀୟ, ୪ଉଦ୍‌ଯୋଗୀ ଶିମୋନ ଓ
ଇଷ୍କାରିୟୋଥ ଯିହୂଦା। ଏହି ଇଷ୍କାରିୟୋଥ ଯିହୂଦା ପରେ
ଯୀଶୁଙ୍କ ପ୍ରତି ବିଶ୍ୱାସଘାତକତା କରିଥିଲା।
୫ଏହି ବାରଜଣ ଶିଷ୍ୟଙ୍କୁ ଯୀଶୁ ପଠାଇବାବେଳେ ଏହି
ଆଜ୍ଞା ଦେଲେ: "କୌଣସି ଅଣ-ଯିହୂଦୀ ଅଞ୍ଚଳକୁ ଯିବନାହିଁ
କି ଶମିରୋଣର କୌଣସି ନଗରରେ ପ୍ରବେଶ କରିବନାହିଁ।
୬ବରଂ ତୁମ୍ଭେ ଇସ୍ରାୟେଲ ଲୋକମାନଙ୍କ(ଯିହୂଦୀମାନଙ୍କ)
ପାଖକୁ ଯିବ। ସେମାନେ ହଜିଯାଇଥିବା ମେଣ୍ଢା ଭଳି।
୭ତୁମ୍ଭେମାନେ ପ୍ରଚାର କର, 'ସ୍ୱର୍ଗରାଜ୍ୟ ନିକଟ ହୋଇ
ଗଲାଣି।' ୮ତୁମ୍ଭେ ରୋଗିକୁ ସୁସ୍ଥ କର। ମୃତକୁ ପୁର୍ନଜୀବିତ
କର, କୁଷ୍ଠ ରୋଗ ସୁସ୍ଥ କର, ଭୂତମାନଙ୍କୁ ତଡ଼ିଦିଅ।

---

**ଯିହୂଦୀ ପ୍ରାର୍ଥନାଗୃହ** ଏଠାରେ ଯିହୁଦୀମାନେ ପ୍ରାର୍ଥନା, ଶାସ୍ତ୍ର ଅଧ୍ୟୟନ ଓ ସାଧାରଣ ସଭା ପାଇଁ ଏକତ୍ରିତ ହୁଅନ୍ତି।

**ଦାଉଦଙ୍କ ପୁତ୍ର** ଦାଉଦଙ୍କ ବଂଶଧର। ଦାଉଦ ଇସ୍ରାୟେଲର ରାଜା ଥିଲେ।

**ପ୍ରେରିତ** ବାରଜଣ ପ୍ରଧାନ ଶିଷ୍ୟ ବା ପ୍ରେରିତ। ଏମାନେ ପରମେଶ୍ୱରଙ୍କ ବାର୍ତ୍ତାବହ ରୂପେ ଯୀଶୁଙ୍କ ଦ୍ୱାରା ମନୋନୀତ।

ତୁମ୍ଭେ ବିନା ମୂଲ୍ୟରେ ଆଶୀର୍ବାଦ ଓ ଶକ୍ତି ପାଇଛ। ତେଣୁ
ଅନ୍ୟକୁ ତାହା ବିନା ମୂଲ୍ୟରେ ଦାନ କର। ୯ତୁମ୍ଭେ
ତୁମ୍ଭମାନଙ୍କ ସାଙ୍ଗରେ ସୁନା, ରୂପା କିମ୍ବା ତମ୍ବା ନିଅନାହିଁ।
୧୦ଯାତ୍ରାବେଳେ ଝୁଲା ନିଅନାହିଁ। ପିନ୍ଧିଥିବା ପୋଷାକ ଓ
ଯୋତା ଛଡା ଅଧିକା ପୋଷାକ ବା ଯୋତା କି ବାଡ଼ି
ନିଅନାହିଁ। ଜଣେ ସେବକ କେବଳ ନିହାତି ଆବଶ୍ୟକୀୟ
ପଦାର୍ଥ ନେବା ଉଚିତ।

୧୧"କୌଣସି ନଗର ବା ଗାଁରେ ପ୍ରବେଶ କଲାବେଳେ
ସେଠାର ଯୋଗ୍ୟ ଲୋକଟିକୁ ବାଛି ବାହାର କର। ସେହି
ନଗର ବା ଗାଁ ନ ଛାଡିବା ପର୍ଯ୍ୟନ୍ତ ସେହି ସ୍ଥାନରେ ରୁହ।
୧୨କୌଣସି ଘରେ ପ୍ରବେଶ କଲାବେଳେ ସେହି ପରିବାରରେ
ଲୋକଙ୍କୁ 'ତୁମ୍ଭପ୍ରତି ଶାନ୍ତି ହେଉ' ବୋଲି କହି ଆଶୀର୍ବାଦ
କର। ଯଦି ସେ ପରିବାରର ଲୋକେ ଯୋଗ୍ୟ, ତେବେ
ସେ ପରିବାର ପ୍ରତି ତୁମ୍ଭର ଶାନ୍ତି ରହିବ। ୧୩ଯଦି ସେ
ପରିବାର ଲୋକେ ଅଯୋଗ୍ୟ ତେବେ ତୁମ୍ଭର ଶାନ୍ତି ତୁମ୍ଭ
ନିକଟକୁ ଫେରିଆସିବ। ୧୪ଯଦି କେହି ହେଲେ ତୁମ୍ଭର
ସ୍ୱାଗତ କରୁ ନାହାଁନ୍ତି, କିମ୍ବା ତୁମ୍ଭର ଉପଦେଶ ଶୁଣୁ
ନାହାଁନ୍ତି, ତେବେ ସେ ଘର ବା ନଗର ଛାଡିଦିଅ। ତୁମ୍ଭ
ପାଦରେ ଲାଗିଥିବା ଧୂଳି ମଧ୍ୟ ସେହିଠାରେ ଝାଡ଼ିଦିଅ।
୧୫ମୁଁ ତୁମ୍ଭକୁ ସତ୍ୟ କହୁଛି, ଯେଉଁ ଦିନ ନ୍ୟାୟ ହେବ,
ସେ ଦିନ ସେହି ନଗରର ଲୋକଙ୍କ ଅବସ୍ଥା ସଦୋମ ଓ
ଗମୋରା* ନଗରର ଲୋକଙ୍କ ଅବସ୍ଥା ଅପେକ୍ଷା ଅଧିକ
ଖରାପ ହେବ।

## ନିଜ ଶିଷ୍ୟମାନଙ୍କୁ ଯୀଶୁଙ୍କ ଚେତାବନୀ

୧୬"ସାବଧାନ, ଗଧିଆମାନଙ୍କ ଭିତରେ ମେଣ୍ଢାମାନଙ୍କୁ
ଛାଡ଼ିବା ଭଳି ମୁଁ ତୁମ୍ଭମାନଙ୍କୁ ବାହାରକୁ ପଠାଉଛି। ତୁମ୍ଭେ
ସାପ ଭଳି ଚତୁର ହୁଅ। କପୋତ ଭଳି ନିରୀହ ହୁଅ।
୧୭କିନ୍ତୁ ଲୋକଙ୍କ ପ୍ରତି ସାବଧାନ ରୁହ। ତୁମ୍ଭକୁ ସେମାନେ
ଗିରଫ କରି ତାହାଙ୍କର ସ୍ଥାନୀୟ ବିଚାରାଳୟ ହାତରେ
ଦେଇଦେବେ ଓ ତାହାଙ୍କର ପ୍ରାର୍ଥନା-ଗୃହରେ ତୁମ୍ଭକୁ ଛାଟରେ
ପିଟିବେ। ୧୮ତୁମ୍ଭେ ମୋର ଶିଷ୍ୟ ହୋଇଥିବା ଯୋଗୁଁ
ତୁମ୍ଭକୁ ଶାସକ ଓ ରାଜାଙ୍କ ଆଗକୁ ନିଆଯିବ। ଅଣଯିହୂଦୀ
ତଥା ସେମାନଙ୍କ ଆଗରେ ତୁମ୍ଭେ ମୋ ବିଷୟରେ ସାକ୍ଷୀ
ହେବ। ୧୯ସେମାନେ ତୁମ୍ଭକୁ ଗିରଫ କଲାବେଳେ କ'ଣ
କହିବ ଓ କିପରି କହିବ, ସେ ବିଷୟରେ ଚିନ୍ତାକରି କିଛି
ବ୍ୟସ୍ତ ହୁଅନାହିଁ। କାରଣ ତୁମ୍ଭକୁ ସେତେବେଳେ କ'ଣ
କହିବାକୁ ହେବ ତାହା ବତେଇ ଦିଆଯିବ। ୨୦ମନେରଖ।
କହିବା ଲୋକ କେବେହେଲେ ତୁମ୍ଭେ ନୁହଁ, ତୁମ୍ଭର
ପରମ-ପିତାଙ୍କ ଆତ୍ମା ହିଁ ତୁମ୍ଭ ଭିତରୁ କହିବେ।

୨୧"ଭାଇ ତା ନିଜ ଭାଇକୁ, ବାପା-ମାଆ ନିଜ ପିଲାପିଲିଙ୍କୁ
ମରଣ ମୁହଁକୁ ଠେଲିଦେବେ। ପିଲାମାନେ ନିଜ ବାପା-ମାଆଙ୍କ
ବିରୁଦ୍ଧରେ ଠିଆହେବେ ଓ ତାହାଙ୍କୁ ମାରି ପକାଇବେ।
୨୨ମୋର ଅନୁଗାମୀ ହୋଇଥିବା ଯୋଗୁ ଲୋକେ ତୁମ୍ଭକୁ
ଘୃଣା କରିବେ। କିନ୍ତୁ ଯେଉଁଲୋକ ଶେଷ ପର୍ଯ୍ୟନ୍ତ
ଦୃଢ଼ଭାବରେ ତିଷ୍ଠି ରହି ପାରିବ, ସେ ଉଦ୍ଧାର ପାଇବ।
୨୩ଗୋଟିଏ ନଗରରେ ସେମାନେ ତୁମ୍ଭକୁ ଯାତନା ଦେଲେ
ତୁମ୍ଭେ ଅନ୍ୟ ନଗରକୁ ପଳାଅ। ମୁଁ ତୁମ୍ଭକୁ ସତ୍ୟ କହୁଛି
ଇସ୍ରାୟେଲର ସମସ୍ତ ନଗରୀରେ ତୁମ୍ଭର ଭ୍ରମଣ ସରିବା
ପୂର୍ବରୁ ମନୁଷ୍ୟପୁତ୍ର ପୁନର୍ବାର ଆସିବେ।

୨୪"ଶିଷ୍ୟ ନିଜ ଗୁରୁଠାରୁ ବଡ଼ ନୁହେଁ କି କୌଣସି
ସେବକ ତା ମାଲିକଠାରୁ ବଡ ନୁହେଁ। ୨୫ଜଣେ ଶିଷ୍ୟ
ତା'ଗୁରୁ ଭଳି ହେବାରେ ଓ ଜଣେ ସେବକ ତା'ମାଲିକ
ଭଳି ହେବାରେ ସନ୍ତୋଷ ଲାଭ କରିବା ଦରକାର। ଘରର
ମୁଖ୍ୟଙ୍କୁ ଯଦି ବାଆଲ୍‌ଜିବୂଲ୍*କହି ଡକାଯାଏ ତେବେ
ଘରର ଅନ୍ୟ ସଦସ୍ୟମାନଙ୍କୁ ନିଶ୍ଚୟ ଅଧିକ ଖରାପ
ନାମରେ ଡକାଯିବ।

## ପରମେଶ୍ୱରଙ୍କୁ ଭୟ କର, ମାତ୍ର ମନୁଷ୍ୟଙ୍କୁ ନୁହେଁ

୨୬"ତେଣୁ ସେହି ଲୋକମାନଙ୍କୁ ଡର ନାହିଁ। ଯାହା
ଗୁପ୍ତରେ ଅଛି ତାହା ଦିନେ ନା ଦିନେ ପ୍ରକାଶ ପାଇବ,
ଏବଂ ସବୁ ଗୋପନ କଥା ଜଣା ପଡିବ। ୨୭ମୁଁ ଗୋପନରେ
ତୁମ୍ଭକୁ ଯାହା ସବୁ କହୁଛି, ତୁମ୍ଭେ ତାହାକୁ ପ୍ରକାଶ୍ୟ
ଦିବାଲୋକରେ କୁହ। ମୁଁ ତୁମ୍ଭକୁ ଆସ୍ତେ ଆସ୍ତେ ଯାହା
କହୁଛି, ତୁମ୍ଭେ ଘର ଛାତ ଉପରେ ଚିତ୍କାର କରି ତାହା
କୁହ। ୨୮ଲୋକଙ୍କୁ ଭୟ କର ନାହିଁ। ସେମାନେ କେବଳ
ତୁମ୍ଭର ଶରୀରକୁ ମାରି ପାରିବେ। ମାତ୍ର ତୁମ୍ଭର ଆତ୍ମାକୁ
ମାରି ପାରିବେନାହିଁ। ତୁମ୍ଭେ କେବଳ ପରମେଶ୍ୱରଙ୍କୁ ଭୟ
କର। ସେ କେବଳ ତୁମ୍ଭର ଶରୀର ଓ ଆତ୍ମା ଉଭୟକୁ
ନଷ୍ଟ କରି ଦେଇ ପାରିବେ। ସେ ଶରୀର ଓ ଆତ୍ମା
ଉଭୟକୁ ନରକକୁ ପଠେଇ ଦେଇ ପାରିବେ। ୨୯ଗୋଟିଏ
ପଇସା ମୂଲ୍ୟରେ ଦୁଇଟି ଘରଚଟିଆ ବିକ୍ରି ହୁଅନ୍ତି। କିନ୍ତୁ
ତୁମ୍ଭ ପରମ-ପିତାଙ୍କ ବିନା ଅନୁମତିରେ ସେଥିରୁ ଗୋଟିଏ
ହେଲେ ମଧ୍ୟ ମରି ପାରିବେ ନାହିଁ। ୩୦ତୁମ୍ଭ ମୁଣ୍ଡରେ
କେତୋଟି ବାଳ ଅଛି, ସେ କଥା ମଧ୍ୟ ପରମେଶ୍ୱର
ଜାଣନ୍ତି। ୩୧ତେଣୁ ଭୟଭୀତ ହୁଅନାହିଁ। ତୁମ୍ଭେ ଅନେକ
ଘରଚଟିଆଙ୍କ ଅପେକ୍ଷା ଅଧିକ ମୂଲ୍ୟବାନ।

## ଯୀଶୁଙ୍କଠାରେ ବିଶ୍ୱାସ

୩୨"ଯଦି କେହି ଲୋକ ସମସ୍ତଙ୍କ ଆଗରେ ଠିଆହୋଇ
କୁହେ ଯେ, ସେ ମୋତେ ବିଶ୍ୱାସ କରେ ତେବେ ମୁଁ
ମଧ୍ୟ ସ୍ୱର୍ଗରେ ରହୁଥିବା ମୋର ପରମ-ପିତାଙ୍କ ଆଗରେ
କହିବ ଯେ ସେ ମୋର ନିଜ ଲୋକ। ୩୩କିନ୍ତୁ ଯେଉଁଲୋକ
ସମସ୍ତଙ୍କ ଆଗରେ ଠିଆହୋଇ କୁହେ ଯେ ସେ ମୋତେ
ବିଶ୍ୱାସ କରେ ନାହିଁ, ତେବେ ମୁଁ ମଧ୍ୟ ସ୍ୱର୍ଗରେ ରହୁଥିବା
ମୋର ପରମ-ପିତାଙ୍କ ଆଗରେ କହିବ ଯେ ସେ ଲୋକ
ମୋ ନିଜ ଲୋକ ନୁହେଁ।

୩୪"ତୁମ୍ଭେ ଭାବନାହିଁ ଯେ ମୁଁ ପୃଥିବୀରେ ଶାନ୍ତି ଆଣିବା

---

**ସଦୋମ ଓ ଗମୋରା** ଦୁଇଟି ନଗରର ନାମ। ଏଠାକାର ବାସିନ୍ଦାଙ୍କ ପାପର ଦଣ୍ଡ ଦେବାପାଇଁ ପରମେଶ୍ୱର ଏ ନଗର ଦୁଇଟିକୁ ନଷ୍ଟ କରି ଦେଇଥିଲେ।

**ବାଆଲ୍‌ଜିବୂଲ୍** ଶୟତାନର ଗୋଟିଏ ନାମ।

ପାଇଁ ଆସିନାହିଁ। କିନ୍ତୁ ଖଡ୍ଗ ଆଣିବା ପାଇଁ ଆସିଛି।
୩୫-୩୬ଏପରି ଘଟଣା ଘଟାଇବା ପାଇଁ ମୁଁ ଆସିଛି:

> ‘ପୁଅ ତା ବାପା ବିରୁଦ୍ଧରେ, ଝିଅ ତା ମା
> ବିରୁଦ୍ଧରେ ଓ ବୋହୂ ତା ଶାଶୁ ବିରୁଦ୍ଧରେ ଠିଆ
> ହେବ। ନିଜ ଘରର ଲୋକେ ହିଁ ନିଜଲୋକଙ୍କ
> ଶତ୍ରୁ ହେବେ।’ ମିଖା ୭:୬

୩୭“ଯେଉଁ ଲୋକ ମୋ ଅପେକ୍ଷା ତା ବାପା ମାଆଙ୍କୁ
ଅଧିକ ଭଲ ପାଏ, ତେବେ ସେ ମୋର ଅନୁଗାମୀ
ହେବାର ଯୋଗ୍ୟ ନୁହେଁ। ଯେଉଁ ଲୋକ ମୋ ଅପେକ୍ଷା
ତା ପୁଅ ଓ ଝିଅଙ୍କୁ ଅଧିକ ଭଲ ପାଏ, ସେ ମୋର
ଅନୁଗାମୀ ହେବାର ଯୋଗ୍ୟ ନୁହେଁ। ୩୮ଯେଉଁଲୋକ ତାକୁ
ଦିଆଯାଇଥିବା ଦୁଃଖ, କଷ୍ଟରୂପକ କ୍ରୁଶ ବୋହି ମୋର
ଅନୁସରଣ କରେନାହିଁ, ସେ ମୋତେ ପାଇବାକୁ ଯୋଗ୍ୟ
ନୁହେଁ। ୩୯ଯେଉଁ ଲୋକ ମୋ ଅପେକ୍ଷା ତା ନିଜ
ଜୀବନକୁ ଅଧିକ ଭଲ ପାଏ ସେ ବାସ୍ତବଜୀବନ ହରାଇ
ବସିବ। କିନ୍ତୁ ଯେଉଁ ଲୋକ ମୋ ସକାଶେ ଜୀବନ
ହରାଏ, ସେ ବାସ୍ତବ ଜୀବନ ପାଇପାରିବ। ୪୦ଯେଉଁ ଲୋକ
ତୁମ୍ଭକୁ ସ୍ୱୀକାର କରେ, ସେ ମୋତେ ମଧ୍ୟ ସ୍ୱୀକାର
କରେ, ଯେଉଁଲୋକ ମୋତେ ସ୍ୱୀକାର କରେ, ସେ
ମୋତେ ପଠାଇଥିବା ପରମେଶ୍ୱରଙ୍କୁ ମଧ୍ୟ ସ୍ୱୀକାର କରେ।
୪୧ଯେଉଁ ଲୋକ ପରମେଶ୍ୱରଙ୍କ ଭବିଷ୍ୟଦ୍‌ବକ୍ତାଙ୍କୁ ଭେଟି
ତାହାଙ୍କୁ ସ୍ୱାଗତ କରେ, ତେବେ ସେ ଭବିଷ୍ୟଦ୍‌ବକ୍ତାର
ପୁରସ୍କାର ପାଇବ। ଯେଉଁ ଲୋକ ଜଣେ ଧାର୍ମିକ ଲୋକକୁ
ଧାର୍ମିକ ଲୋକ ରୂପେ ସ୍ୱୀକାର କରେ ତେବେ ସେ
ଧାର୍ମିକ ଲୋକର ପୁରସ୍କାର ପାଇବ। ୪୨ଯଦି କେହି ଲୋକ
ମୋର ଏହି ଛୋଟ ଓ ସରଳ ଶିଷ୍ୟମାନଙ୍କ ମଧ୍ୟରୁ
କାହାରିକୁ ମୋର ଶିଷ୍ୟ ବୋଲି କହି ସାହାର୍ଯ୍ୟ କରେ,
ତେବେ ସେ ନିଶ୍ଚୟ ତାର ପୁରସ୍କାର ପାଇବ। ସେ ଯଦି
ମୋ ଶିଷ୍ୟମାନଙ୍କୁ କାହାକୁ କେବଳ ଗିନାଏ ଥଣ୍ଡା ପାଣି
ଦେଇଥାଏ, ତଥାପି ସେ ତାର ପୁରସ୍କାର ପାଇବ।”

## ଯୀଶୁ ଓ ବାପ୍ତିଜକ ଯୋହନ

୧୧ ଯୀଶୁ ତାହାଙ୍କର ବାର ଜଣ ଯାକ ଶିଷ୍ୟଙ୍କୁ
ନିର୍ଦ୍ଦେଶ ଦେଇ ସାରିବା ପରେ ସେ ସ୍ଥାନ ଛାଡ଼ି
ଚାଲିଗଲେ। ସେ ଗାଲିଲୀ ପ୍ରଦେଶର ସହରମାନଙ୍କରେ
ତାହାଙ୍କର ଉପଦେଶ ଓ ବାର୍ତ୍ତା ପ୍ରଚାର କରିବା ନିମନ୍ତେ
ଗଲେ।

୨ବାପ୍ତିଜକ ଯୋହନ କାରାଗାରରେ ଥିଲେ। ସେ ଯୀଶୁ
ଖ୍ରୀଷ୍ଟଙ୍କ କାର୍ଯ୍ୟ-କଳାପ ବିଷୟରେ ଶୁଣିଲେ। ସେ ନିଜର
କେତେକ ଶିଷ୍ୟଙ୍କୁ ଯୀଶୁଙ୍କ ପାଖକୁ ପଠାଇଲେ। ୩ଯୋହନଙ୍କ
ଶିଷ୍ୟମାନେ ଯୀଶୁଙ୍କୁ ପଚାରିଲେ, “ଯେଉଁ ବ୍ୟକ୍ତି ଆସିବେ
ବୋଲି ଯୋହନ କହୁଥିଲେ, ଆପଣ ସେହି ବ୍ୟକ୍ତି ନା
ଆମ୍ଭେ ଆଉ କାହାର ଆସିବାପାଇଁ ଅପେକ୍ଷା କରିବୁ?”

୪ଯୀଶୁ ଉତ୍ତର ଦେଲେ, “ତୁମ୍ଭେମାନେ ଯାହା ଦେଖୁଛ
ଓ ଶୁଣୁଛ, ତାହା ଯୋହନଙ୍କୁ ଯାଇ କୁହ। ୫ଅନ୍ଧ ତାର
ଦୃଷ୍ଟିଶକ୍ତି ଫେରି ପାଆନ୍ତି। ଛୋଟାମାନେ ଚାଲି ପାରନ୍ତି।
କୁଷ୍ଠ ରୋଗୀ ସୁସ୍ଥ ହୋଇ ଯାଉଛନ୍ତି। ବଧିର ଶୁଣି
ପାରୁଛି। ମଲାଲୋକ ବଞ୍ଚି ଉଠୁଛି। ଦୀନ-ଦୁଃଖୀ ଲୋକଙ୍କ
ପାଇଁ ସୁସମାଚାର ପ୍ରଚାର କରାଯାଉଛି। ୬ଯେଉଁ ଲୋକ
ମୋତେ ଗ୍ରହଣ କରେ, ସେ ଧନ୍ୟ।”

୭ଏ କଥା ଶୁଣି ଯୋହନଙ୍କ ଶିଷ୍ୟମାନେ ଫେରି
ଯାଉଥିବା ସମୟରେ ଯୀଶୁ ସେଠାରେ ଜମା ହୋଇଥିବା
ଲୋକମାନଙ୍କୁ ଯୋହନଙ୍କ ବିଷୟରେ କହିଲେ, “ଏ ମରୁଭୂମିକୁ
କ’ଣ ଦେଖିବାକୁ ତୁମ୍ଭେ ଆସିଥିଲ? କ’ଣ ପବନରେ
ଦୋହଲୁ ଥିବା କୌଣସି ନଳଗଛକୁ*? ୮ତେବେ କ’ଣ
ଦେଖିବାକୁ ତୁମ୍ଭେ ଆସିଥିଲ? କ’ଣ ଉତ୍ତମ ପୋଷାକ
ପିନ୍ଧିଥିବା କୌଣସି ବ୍ୟକ୍ତିଙ୍କୁ? ତା’ ନୁହେଁ! ଉତ୍ତମ ପୋଷାକ
ପିନ୍ଧୁଥିବା ଲୋକଙ୍କୁ ତୁମ୍ଭେ ରାଜଭବନରେ ପାଇ ପାରିବ।
୯ତେବେ କ’ଣ ଦେଖିବାକୁ ତୁମ୍ଭେ ଆସିଥିଲ? କ’ଣ
କୌଣସି ଭବିଷ୍ୟଦ୍‌ବକ୍ତାଙ୍କୁ? ହଁ, ମୁଁ ତୁମ୍ଭକୁ କହୁଛି ଯେ
ଯାହାକୁ ତୁମ୍ଭେ ଦେଖିଛ ସେ ଭବିଷ୍ୟଦ୍‌ବକ୍ତାଙ୍କ ଠାରୁ ମଧ୍ୟ
ଆହୁରି ବଡ। ୧୦ଯୋହନଙ୍କ ବିଷୟରେ ଶାସ୍ତ୍ରରେ ଲେଖାଅଛି:

> ‘ଦେଖ, ମୁଁ ତୁମ୍ଭଆଗରୁ ମୋର ଜଣେ ଦୂତଙ୍କୁ
> ପଠାଉଛି। ସେ ତୁମ୍ଭ ପାଇଁ ରାସ୍ତା ସଜାଡ଼ିବେ।’
> ମଲାଖି ୩:୧

୧୧ମୁଁ ତୁମ୍ଭକୁ ସତ୍ୟ କହୁଛି। ବାପ୍ତିସ୍ମ ଦେଉଥିବା ଯୋହନଙ୍କଠାରୁ
ମହାନ୍ ବ୍ୟକ୍ତି ଆଉ କେହିହେଲେ ଜନ୍ମ ହୋଇ ନାହାନ୍ତି।
କିନ୍ତୁ ସ୍ୱର୍ଗରାଜ୍ୟରେ ଯେ ସବୁଠାରୁ ଛୋଟ, ସେ ଯୋହନଙ୍କ
ଠାରୁ ମଧ୍ୟ ଶ୍ରେଷ୍ଠ। ୧୨ବାପ୍ତିଜକ ଯୋହନଙ୍କ ସମୟରୁ ଆଜି
ପର୍ଯ୍ୟନ୍ତ ସ୍ୱର୍ଗ-ରାଜ୍ୟ ଶକ୍ତି ବୃଦ୍ଧି ପାଉଅଛି। ଏହାକୁ ବଳ
ପ୍ରୟୋଗ କରି ଅଧିକାର କରି ନେବାପାଇଁ ହିଂସ୍ର ପ୍ରକୃତିର
ଲୋକମାନେ ଚେଷ୍ଟା କରୁଛନ୍ତି। ୧୩ଯୋହନଙ୍କ ସମୟ
ପୂର୍ବରୁ ସମସ୍ତ ଭବିଷ୍ୟଦ୍‌ବକ୍ତା ଓ ମୋଶାଙ୍କ ନିୟମ
ଭବିଷ୍ୟଦ୍‌ବାଣୀ କହିଥିଲେ। ୧୪ଯଦି ତୁମ୍ଭେ ସେମାନଙ୍କ
ଭବିଷ୍ୟଦ୍‌ବାଣୀ ବିଶ୍ୱାସ କରିବାକୁ ଇଚ୍ଛା କରୁଛ ତେବେ
ଶୁଣ: ଯେଉଁ ଏଲୀୟ ଆସିବେ ବୋଲି ସେମାନେ ଭବିଷ୍ୟଦ୍‌ବାଣୀ
କରିଥିଲେ, ସେ ହେଉଛନ୍ତି ଏହି ଯୋହନ। ୧୫ଯେଉଁମାନେ
ମୋକଥା ଶୁଣୁଛ, ଶୁଣ।

୧୬“ଏହି ଲୋକମାନଙ୍କ ବିଷୟରେ ମୁଁ କ’ଣ କହିବି।
ସେମାନେ କେଉଁ ପ୍ରକାରର? ସେମାନେ ବଜାରରେ ବସିଥିବା
ପିଲାମାନଙ୍କ ଭଳି। ସେ ପିଲାମାନେ ଅନ୍ୟ ପିଲାମାନଙ୍କୁ
ଡାକି କୁହନ୍ତି:

> ୧୭ ‘ଆମ୍ଭେ ତୁମ୍ଭ ପାଇଁ ବଂଶୀ ବଜାଇଲୁ। କିନ୍ତୁ ତୁମ୍ଭେ
> ନାଚିଲ ନାହିଁ। ଆମ୍ଭେ ଶୋକ ଗୀତ ଗାଇଲୁ, କିନ୍ତୁ
> ତୁମ୍ଭେ ବିଳାପ କଲ ନାହିଁ।’

---

**ନଳଗଛ** ଯୀଶୁଙ୍କ କହିବାର ତାତ୍ପର୍ଯ୍ୟ, ଯୋହନ ପବନରେ ଦୋହଲୁଥିବା ନଳଗଛ ଭଳି ଦୁର୍ବଳ ନଥିଲେ।

୧୮ବର୍ତ୍ତମାନର ଲୋକମାନେ ସେପରି। ଯୋହନ ଆସିଲେ।
କିନ୍ତୁ ଅନ୍ୟମାନଙ୍କ ଭଳି ସେ ଖାଉନଥିଲେ କି ପିଉ
ନଥିଲେ। ଲୋକେ କହିଲେ, 'ତାହାଙ୍କ ଦେହରେ ଭୂତ
ପଶି ଯାଇଛି।' ୧୯ତା'ପରେ ମନୁଷ୍ୟପୁତ୍ର ଆସିଲେ। ସେ
ଅନ୍ୟମାନଙ୍କୁ ଭଳି ଖିଆପିଆ କଲେ। ଲୋକେ କହିଲେ,
'ଦେଖ, ଏ ଲୋକ ପେଟୁଆ ଓ ମଦୁଆ। ସେ ପାପୀ ଓ
କର ଆଦାୟକାରୀଙ୍କ ଓ ପାପୀମାନଙ୍କ ବନ୍ଧୁ।' କିନ୍ତୁ କାର୍ଯ୍ୟ
ଦ୍ୱାରା ଜ୍ଞାନ ସତ୍ୟ ବୋଲି ପ୍ରମାଣିତ ହୋଇଥାଏ।"

### ଅବିଶ୍ୱାସୀ ଲୋକଙ୍କୁ ଯୀଶୁଙ୍କ ଚେତାବନୀ

୨୦ସେତେବେଳେ ଯୀଶୁ ଯେଉଁ ନଗର ମାନଙ୍କରେ
ଅଧିକାଂଶ ଆଶ୍ଚର୍ଯ୍ୟକାର୍ଯ୍ୟ ଗୁଡ଼ିକ କରିଥିଲେ, ସେହି ନଗରଗୁଡ଼ିକୁ
ତିରସ୍କାର କଲେ। କାରଣ ସେଠାକାର ଲୋକେ ନିଜ ପାପ
ପାଇଁ ଅନୁତାପ କରି ହୃଦୟ-ପରିବର୍ତ୍ତନ କରିନଥିଲେ, କି
ପାପ କରିବା ଛାଡି ନଥିଲେ, ୨୧ସେ କହିଲେ, "ହାୟ
କୋରାଜୀନ୍! ହାୟ ବେଥ୍ସାଇଦା!* ତୁମ୍ଭ ଅଞ୍ଚଳରେ ଯେଉଁ
ଆଶ୍ଚର୍ଯ୍ୟକାର୍ଯ୍ୟ ଗୁଡ଼ିକ କରାଗଲା, ସେ ଗୁଡିକ ଯଦି ସୋର
ଓ ସୀଦୋନ* ରେ କରିଥାଆନ୍ତୁ, ତେବେ ବହୁ ପୂର୍ବରୁ
ସେ ଲୋକମାନେ ହୃଦୟ ଓ ଜୀବନ ପରିବର୍ତ୍ତନ
କରିସାରିଥାଆନ୍ତେ। ସେମାନେ ଅଖା ପିନ୍ଧି ଓ ଦେହରେ
ପାଉଁଶ ବୋଳିହୋଇ ତାହାଙ୍କ ପାପ ପାଇଁ ଦୁଃଖ ପ୍ରକାଶ
କରି ସାରି ଥାଆନ୍ତେ। ୨୨କିନ୍ତୁ ମୁଁ ତୁମ୍ଭକୁ କହୁଛି ଯେ
ବିଚାର ଦିନରେ ସୋର ଓ ସୀଦୋନର ଅପେକ୍ଷା ତୁମ୍ଭ
ଦଶା ଅଧିକ ଖରାପ ହେବ। ୨୩ହେ କଫର୍ନାହୂମ! ତୁ କ'ଣ
ଭାବୁଛୁ ତୋତେ ସ୍ୱର୍ଗୀୟଗୌରବ ଦେବା ପାଇଁ ସ୍ୱର୍ଗକୁ
ଉଠାଇ ନିଆଯିବ? ନା, ତୁମ୍ଭକୁ ପାତାଳରେ ନିକ୍ଷେପ
କରାଯିବ। ଯେଉଁ ଆଶ୍ଚର୍ଯ୍ୟ କାର୍ଯ୍ୟଗୁଡିକ ତୋର ଅଞ୍ଚଳରେ
କରାଯାଇଛି, ସେଗୁଡିକ ଯଦି ସଦୋମ* ରେ କରାଯାଇଥାଆନ୍ତା,
ତେବେ ସେଠାକାର ବାସିନ୍ଦା ପାପ କରିବା ବନ୍ଦ କରି
ଦେଇଥାଆନ୍ତେ ଓ ସେ ନଗର ଏ ପର୍ଯ୍ୟନ୍ତ ତିଷ୍ଠି ରହି
ପାରି ଥାଆନ୍ତା। ୨୪କିନ୍ତୁ ମୁଁ ତୁମ୍ଭକୁ କହୁଛି ଯେ, ନ୍ୟାୟ
ହେବା ଦିନ ତୋର ଦଶା ସଦୋମର ଦଶା ଅପେକ୍ଷା
ଅଧିକ ଖରାପ ହେବ।"

### ଯୀଶୁ ତାହାଙ୍କର ଲୋକମାନଙ୍କୁ ଶାନ୍ତି ପ୍ରଦାନ କରନ୍ତି

୨୫ସେତେବେଳେ ଯୀଶୁ କହିଲେ, "ହେ ପରମ-ପିତା,
ତୁମ୍ଭେ ସ୍ୱର୍ଗ ଓ ପୃଥିବୀର ପ୍ରଭୁ। ତୁମ୍ଭେ ଏହି ସବୁ ବିଷୟ
ଜ୍ଞାନୀ ଓ ବୁଦ୍ଧିମାନ ଲୋକମାନଙ୍କ ନିକଟରୁ ଲୁଚାଇ ରଖି
ପିଲାଙ୍କ ଭଳି ସରଳ ଲୋକଙ୍କ ନିକଟରେ ସେଗୁଡ଼ିକୁ
ପ୍ରକାଶ କରିଛ। ଏଥିପାଇଁ ମୁଁ ତୁମ୍ଭର ସ୍ତୁତି କରୁଛି। ୨୬ହଁ
ପରମ-ପିତା, ତୁମ୍ଭେ ପ୍ରକୃତରେ ଯାହା ଚାହୁଁଥିଲ, ତାହା
ଘଟିଲା।

୨୭"ମୋର ପରମ-ପିତା ମୋତେ ସବୁକିଛି ଦେଇଛନ୍ତି।
ପରମ-ପିତାଙ୍କ ଛଡା ପୁତ୍ରଙ୍କୁ ଅନ୍ୟକେହି ଜାଣିନାହାଁନ୍ତି।
ପୁତ୍ରଙ୍କ ଛଡ଼ା କେହି ପରମ-ପିତାଙ୍କୁ ପ୍ରକୃତରେ ଜାଣିନାହାଁନ୍ତି।
ଆଉ ପୁତ୍ର ଯେଉଁମାନଙ୍କୁ ମନୋନୀତ କରିବେ, ସେହିମାନେ
କେବଳ ପରମ-ପିତାଙ୍କ ନିକଟରେ ପ୍ରକାଶିତ ହେବେ।

୨୮"ହେ, କ୍ଳାନ୍ତ ଶ୍ରାନ୍ତ ଓ ଚିନ୍ତାରେ ଭାରଗ୍ରସ୍ତ ଥିବା
ଲୋକମାନେ! ମୋ ନିକଟକୁ ଆସ। ମୁଁ ତୁମ୍ଭକୁ ବିଶ୍ରାମ
ଦେବି। ୨୯ମୋର କାର୍ଯ୍ୟଭାର ତୁମ୍ଭେ ଗ୍ରହଣ କର। ମୋ
ଠାରୁ ଶିଖ। କାରଣ ମୁଁ ଆତ୍ମାରେ ସରଳ ଓ ନମ୍ର ତେଣୁ
ତୁମ୍ଭେ ନିଜ ଆତ୍ମାରେ ବିଶ୍ରାମ ପାଇବ। ୩୦ଯେଉଁ କାର୍ଯ୍ୟ
ମୁଁ ତୁମ୍ଭକୁ ଗ୍ରହଣ କରିବାକୁ କହୁଛି, ତାହା ସହଜ। ଏବଂ
ଯେଉଁ ବୋଝ ତୁମ୍ଭ ଉପରେ ରଖୁଛି, ତାହା ହାଲୁକା।"

### କେତେକ ଯିହୂଦୀ ଯୀଶୁଙ୍କୁ ସମାଲୋଚନା କଲେ

**୧୨** ପ୍ରାୟ ସେହି ସମୟରେ ଯୀଶୁ ବିଶ୍ରାମଦିବସ*
ରେ ଶସ୍ୟକ୍ଷେତ୍ର ଦେଇ ଯାଉଥିଲେ। ଯୀଶୁଙ୍କ
ଶିଷ୍ୟମାନେ ତାହାଙ୍କ ସହିତ ଥିଲେ। ତାହାଙ୍କର ଶିଷ୍ୟମାନଙ୍କୁ
ଭୋକ ଲାଗିଲା। ସେମାନେ କେତେକ ଗହମ-କେଣ୍ଡା
ଛିଣ୍ଡେଇ ଖାଇବାକୁ ଲାଗିଲେ। ୨ଫାରୂଶୀମାନେ ଏହା ଦେଖି
ଯୀଶୁଙ୍କୁ କହିଲେ, "ଦେଖ, ତୁମ୍ଭର ଶିଷ୍ୟମାନେ ବିଶ୍ରାମଦିବସରେ
ଏଭଳି ଯାହା କରୁଛନ୍ତି, ତାହା ମୋଶାଙ୍କ ବ୍ୟବସ୍ଥାର
ବିରୋଧୀ।

୩ଏହା ଶୁଣି ଯୀଶୁ ସେମାନଙ୍କୁ କହିଲେ, "ଦାଉଦ ଓ
ତାହାଙ୍କ ସାଙ୍ଗରେ ଥିବା ଲୋକେ ଭୋକ ଲାଗିବା ବେଳେ
କ'ଣ କରିଥିଲେ, ସେ ବିଷୟରେ ତୁମ୍ଭେ କ'ଣ ପଢ଼ିନାହଁ?
୪ସେ ପରମେଶ୍ୱରଙ୍କ ଘରେ ପ୍ରବେଶ କରିଥିଲେ ଓ
ପରମେଶ୍ୱରଙ୍କୁ ଅର୍ପଣ କରାଯାଇଥିବା ପବିତ୍ର ରୋଟୀ ସେ
ଓ ତାହାଙ୍କ ସହିତ ଥିବା ଲୋକମାନେ ଖାଇଦେଇଥିଲେ।
ମୋଶାଙ୍କ ବ୍ୟବସ୍ଥା ଅନୁସାରେ ଦାଉଦ ଓ ତାହାଙ୍କ ସାଥୀ
ମାନଙ୍କର ଏହା ଖାଇବା ଅଧିକାର ନ ଥିଲା। କାରଣ
କେବଳ ଯାଜକମାନଙ୍କୁ ତାହା ଖାଇବାପାଇଁ ଅନୁମତି
ଦିଆଯାଇଥାଏ। ୫ତୁମ୍ଭେ ମୋଶାଙ୍କ ବ୍ୟବସ୍ଥାରେ କ'ଣ
ପଢ଼ିନାହଁ ଯେ ବିଶ୍ରାମ ଦିବସରେ ଯାଜକମାନେ ପ୍ରଭୁଙ୍କ
ମନ୍ଦିରରେ ବିଶ୍ରାମଦିବସର ନୀତିନିୟମ ଉଲ୍ଲଙ୍ଘନ କରନ୍ତି?
ସେ ଘଟଣାରେ ତାହାଙ୍କର କେହି କିଛି ଦୋଷ ଧରନ୍ତିନାହିଁ।
୬କିନ୍ତୁ ମୁଁ ତୁମ୍ଭକୁ କହୁଛି, ଏଠାରେ ଏଭଳି କିଛି ବିଷୟ
ଅଛି, ଯାହା ମନ୍ଦିରଠାରୁ ମହାନ୍। ୭ଶାସ୍ତ୍ରକୁହେ, 'ମୁଁ
ଲୋକମାନଙ୍କ ମଧ୍ୟରେ ଦୟା ଚାହେଁ, କିନ୍ତୁ ପଶୁବଳି
ଚାହେଁନାହିଁ।'* ତୁମ୍ଭେ ପ୍ରକୃତରେ ଏହାର ଅର୍ଥ ବୁଝିନାହଁ।

---

**କୋରାଜୀନ୍ ଓ ବେଥସାଇଦା** ଗାଲୀଲୀ ହ୍ରଦ ଉପକୂଳସ୍ଥ ଦୁଇଟି ନଗର। ଏଠାରେ ଯୀଶୁ ଉପଦେଶ ଦେଇଥିଲେ।

**ସୋର ଓ ସୀଦୋନ** ଦୁଇଟି ନଗର, ଯେଉଁଠାରେ ବହୁତ ଖରାପ ଲୋକ ରହୁଥିଲେ।

**ସଦୋମ** ଏହି ନଗରରେ ଦୁରାଚାରୀ ଲୋକେ ରହୁଥିଲେ। ପରମେଶ୍ୱର ଏ ନଗରଟିର ବିନାଶ କରିଥିଲେ। ଆଦିପୁସ୍ତକ ୧୯:୧-୨୯

**ବିଶ୍ରାମ ଦିବସ** ଯିହୂଦୀମାନଙ୍କର ସପ୍ତାହର ସପ୍ତମ ଦିବସ। ଏହି ଦିନଟି ସେମାନଙ୍କର ବିଶେଷ ଧାର୍ମିକ ଦିବସ ରୂପେ ପରିଗଣିତ।

**'ମୁଁ ଲୋକମାନଙ୍କ ... ବଳି ଚାହେଁନାହିଁ'** ହୋଶେୟ ୬:୬

ଯଦି ବୁଝି ଥାଆନ୍ତ, ତେବେ ଏହି ନିର୍ଦ୍ଦୋଷ ଲୋକମାନଙ୍କୁ
ନିନ୍ଦା କରନ୍ତିନାହିଁ।
୮"ମନୁଷ୍ୟପୁତ୍ର* ବିଶ୍ରାମଦିବସର ପ୍ରଭୁ ଅଟନ୍ତି।"

## ଯୀଶୁ ଗୋଟିଏ ଲୋକର ଅଚଳ ହାତଟି ସୁସ୍ଥ କରିଦେଲେ

୯ଯୀଶୁ ସେଠାରୁ ଯାଇ ସେମାନଙ୍କର ପ୍ରାର୍ଥନାଗୃହରେ
ପ୍ରବେଶ କଲେ। ୧୦ସେଠାରେ ଥିବା ଗୋଟିଏ ଲୋକର
ହାତ ଶୁଖି ଯାଇଥିଲା। ସେଠାରେ ଥିବା କେତେକ ଯିହୂଦୀ
ଯୀଶୁଙ୍କ ଉପରେ ଦୋଷାରୋପ କରିବା ପାଇଁ ସୁଯୋଗ
ଖୋଜୁଥିଲେ। ସେମାନେ ତାହାଙ୍କୁ ପଚାରିଲେ, "ମୋଶାଙ୍କ
ନିୟମ ଅନୁସାରେ ବିଶ୍ରାମଦିବସରେ କାହାରିକୁ ଭଲ କରିଦେବା
କ'ଣ ବିଧିସଙ୍ଗତ?"
୧୧ଯୀଶୁ କହିଲେ, "ମନେକର ତୁମ୍ଭର କାହାରି ଗୋଟିଏ
ମେଣ୍ଢା ଅଛି ଓ ସେହି ମେଣ୍ଢାଟି ବିଶ୍ରାମଦିବସରେ ଖାଲ
ଭିତରେ ଖସି ପଡ଼ିଲା। ତୁମ୍ଭେ କ'ଣ ତାକୁ ଖାଲରୁ ବାହାର
କରି ଆଣିବନାହିଁ? ୧୨ମଣିଷଟି ନିଶ୍ଚିତ ଭାବରେ ଗୋଟିଏ
ମେଣ୍ଢାଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ। ତେଣୁ ମୋଶାଙ୍କ ବ୍ୟବସ୍ଥା
ବିଶ୍ରାମ-ଦିବସରେ ଭଲ କାମ କରିବାକୁ ଅନୁମତି ଦେଇଥାଏ।"
୧୩ତା'ପରେ ଯୀଶୁ ସେହି ଲୋକଟିକୁ କହିଲେ, "ତୁମ୍ଭ
ହାତ ମୋତେ ଦେଖାଅ।" ଲୋକଟି ଯୀଶୁଙ୍କୁ ହାତ
ଦେଖାଇବା ପାଇଁ ଆଗକୁ ବଢ଼େଇଦେଲା। ତାର ସେହି
ଶୁଖି ଯାଇଥିବା ହାତଟି ସଂମ୍ପୂର୍ଣ୍ଣ ଭଲ ହୋଇ ଗଲା। ଏହି
ହାତଟି ତାର ଅନ୍ୟ ହାତ ଭଳି ହୋଇଗଲା। ୧୪କିନ୍ତୁ
ଫାରୂଶୀମାନେ ସେଠାରୁ ବାହାରି ଗଲେ। ଯୀଶୁଙ୍କୁ ଜୀବନରେ
ମାରିଦେବା ପାଇଁ ସେମାନେ ଯୋଜନା କଲେ।

## ପରମେଶ୍ୱରଙ୍କ ମନୋନୀତ ସେବକ: ଯୀଶୁ

୧୫ଯୀଶୁ ଏକଥା ଜାଣିପାରି ସେ ଜାଗା ଛାଡି ଚାଲିଗଲେ।
ବହୁତ ଲୋକ ତାହାଙ୍କୁ ଅନୁସରଣ କଲେ। ଯୀଶୁ ସମସ୍ତ
ରୋଗୀଙ୍କୁ ସୁସ୍ଥ କରିଦେଲେ। ୧୬କିନ୍ତୁ ଯୀଶୁ ସେମାନଙ୍କୁ
ଚେତାବନୀ ଦେଇ କହିଲେ, "ଏ କଥା କାହାରି ଆଗରେ
ପ୍ରକାଶ କରିବ ନାହିଁ।" ୧୭ଭବିଷ୍ୟଦ୍‌ବକ୍ତା ଯିଶାୟଙ୍କ ମାଧ୍ୟମରେ
ପରମେଶ୍ୱର ଯାହା କହିଥିଲେ, ସେଗୁଡିକ ପୂର୍ଣ୍ଣ ହେବାପାଇଁ
ଯୀଶୁ ଏହା କଲେ। ୧୮ ଯିଶାୟ କହିଥିଲେ,

"ଏ ମୋର ସେବକ। ମୁଁ ତାହାଙ୍କୁ ବାଛିଛି। ମୁଁ
ତାହାଙ୍କୁ ଭଲ ପାଏ। ମୁଁ ତାହାଙ୍କ ଉପରେ ଖୁସୀ।
ମୋର ଆତ୍ମା ମୁଁ ତାହାଙ୍କଠାରେ ରଖିବି। ସେ
ଜାତିମାନଙ୍କ ଭିତରେ ନ୍ୟାୟ ଘୋଷଣା କରିବେ।
୧୯ ସେ ଯୁକ୍ତି କରିବେ ନାହିଁ କି ପାଟିତୁଣ୍ଡ କରିବେ
ନାହିଁ। ଲୋକେ ଗଳିରେ ତାହାଙ୍କ କଥା ଶୁଣିବେ
ନାହିଁ।
୨୦ ନଇଁ ପଡିଥିବା ଛେଳିନଳର କାଣ୍ଡଟି ସେ ଭାଙ୍ଗିବେ
ନାହିଁ କି ଲିଭି ଆସୁଥିବା ଦୀପଟିକୁ ସେ ଲିଭେଇବେ
ନାହିଁ। ନ୍ୟାୟର ବିଜୟ ନ ହେବା ପର୍ଯ୍ୟନ୍ତ ସେ
ଅଟଳ ରହିବେ।
୨୧ ସେଥିରେ ସବୁ ଲୋକେ ତାହାଙ୍କ ଉପରେ ଭରସା
ରଖିବେ।" ଯିଶାଇୟ ୪୨:୧-୪

## ଯୀଶୁଙ୍କଠାରେ ପରମେଶ୍ୱରଙ୍କର ଶକ୍ତି ନିହିତ ଅଛି

୨୨ତା'ପରେ ଲୋକେ ଯୀଶୁଙ୍କ ପାଖକୁ ଗୋଟିଏ ଲୋକକୁ
ଆଣିଲେ। ସେ ଲୋକଟି ଅନ୍ଧ ଥିଲା। ତା ଦେହରେ
ଗୋଟିଏ ଭୂତ ପଶି ଥିବାରୁ ସେ ମୂକ ହୋଇ ଯାଇଥିଲା।
ଯୀଶୁ ଲୋକଟିକୁ ସୁସ୍ଥ କରିଦେଲେ। ଫଳରେ ଲୋକଟି
କଥା କହି ପାରିଲା, ଓ ଦେଖି ପାରିଲା। ୨୩ଜମା
ହୋଇଥିବା ଲୋକେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ,
ସେମାନେ କୁହାକୁହି ହେଲେ, "ଆମ୍ଭ ପାଖକୁ ପରମେଶ୍ୱର
ଯାହାଙ୍କୁ ପଠାଇବେ ବୋଲି ପ୍ରତିଜ୍ଞା କରିଥିଲେ, ଏ ହୁଏତ
ସେହି ଦାଉଦଙ୍କ ପୁତ୍ର ଅଟନ୍ତି?"
୨୪ମାତ୍ର ଫାରୂଶୀମାନେ ଲୋକଙ୍କର ଏହି କଥା ଶୁଣି
କହିଲେ, "ଯୀଶୁ ଭୂତମାନଙ୍କ ଶାସକ ବାଆଲ୍‌ଜିବୂଲ୍*ଙ୍କ
ସହାର୍ଯ୍ୟରେ ଭୂତମାନଙ୍କୁ ଛଡ଼ାନ୍ତି।"
୨୫ଯୀଶୁ ଫାରୂଶୀମାନଙ୍କର ମନକଥା ଜାଣିପାରିଲେ ଓ
ସେମାନଙ୍କୁ କହିଲେ, "ନିଜ ବିରୁଦ୍ଧରେ ବିଭେଦ ସୃଷ୍ଟି
କରୁଥିବା ପ୍ରତ୍ୟେକ ରାଜ୍ୟ ଧ୍ୱଂସ ପାଇଯିବ। ଯଦି କୌଣସି
ନଗର ନିଜ ନିଜ ମଧ୍ୟରେ ଭାଗଭାଗ ହୋଇଯାଏ, ତେବେ
ତାହା ତିଷ୍ଠିରହି ପାରିବନି। ସେହିଭଳି ନିଜ ନିଜ ଭିତରେ
ଭାଗ ହୋଇଗଲେ କୌଣସି ପରିବାର ତିଷ୍ଠି ରହି ପାରିବନି।
୨୬ଯଦି ଶୟତାନ ତାର ନିଜ ଭୂତମାନଙ୍କୁ ତଡ଼ି ଦିଏ,
ତେବେ ତାର ଅର୍ଥ ସେ ନିଜେ ନିଜ ଭିତରେ ଭାଗ-ଭାଗ
ହୋଇଛି। ଏ ପରିସ୍ଥିତିରେ ତାର ରାଜ୍ୟ ତିଷ୍ଠି ରହି ପାରିବା
ସମ୍ଭବ ହେବନାହିଁ। ୨୭ତୁମ କହିବା ଅନୁସାରେ ମୁଁ ଯଦି
ବାଆଲ୍‌ଜିବୂଲ୍‌ର ଶକ୍ତି ସାହାଯ୍ୟରେ ଭୂତମାନଙ୍କୁ ତଡ଼ି ଦେଉଛି
ତେବେ ତୁମ୍ଭର ଶିଷ୍ୟମାନେ କାହା ସାହାଯ୍ୟରେ ତାହାଙ୍କୁ
ତଡୁଛନ୍ତି? ତେଣୁ ତୁମ୍ଭ ନିଜର ଶିଷ୍ୟମାନେ ପ୍ରମାଣିତ
କରିଦେଉଛନ୍ତି ଯେ ତୁମ୍ଭେ ଭୁଲ କହୁଛ। ୨୮ମୁଁ କିନ୍ତୁ
ଭୂତମାନଙ୍କୁ ପରମେଶ୍ୱରଙ୍କ ଆତ୍ମାର ଶକ୍ତି ସାହାଯ୍ୟରେ ତଡ଼ି
ଦେଉଛି। ତେଣୁ ଏଥିରୁ ପ୍ରମାଣିତ ହେଉଛି ଯେ, ପରମେଶ୍ୱରଙ୍କ
ରାଜ୍ୟ ତୁମ୍ଭ ନିକଟରେ ପୂରାପୂରି ଆସି ପହଞ୍ଚିଗଲାଣି।
୨୯"ଜଣେ ଲୋକ କୌଣସି ବଳବାନ ଲୋକ ଘରେ
ପଶି ତାର ସମ୍ପତ୍ତି ଚୋରେଇନେବାକୁ ଚାହିଁଲେ, ସେ
ବଳବାନ ଲୋକଟିକୁ ପ୍ରଥମେ ବାନ୍ଧି ପକାଇବ। ତା'ପରେ
ସେ ବଳବାନ ଲୋକର ଘରୁ ସବୁ ଲୁଟି କରି ନେଇ
ଯାଇ ପାରିବ।
୩୦"ଯଦି କେହି ମୋ ସହିତ କାମ କରୁନାହିଁ, ତେବେ
ସେ ମୋ ବିରୁଦ୍ଧରେ କାମ କରୁଛି। ୩୧ତେଣୁ ମୁଁ ତୁମ୍ଭକୁ
କହୁଛି ଯେ, ଲୋକେ ଯେଉଁସବୁ ପାପ କରୁଛନ୍ତି ତାହା
କ୍ଷମା କରି ଦିଆଯିବ। ଲୋକମାନେ ଯେଉଁସବୁ ଖରାପ

---

**ମନୁଷ୍ୟପୁତ୍ର** ଯୀଶୁ ଖ୍ରୀଷ୍ଟଙ୍କ ପାଇଁ ଏହା ଗୋଟିଏ ନାମ।
ପରମେଶ୍ୱର ତାହାଙ୍କ ଲୋକଙ୍କୁ ରକ୍ଷା କରିବାପାଇଁ ଏହାଙ୍କୁ
ବାଛିଥିଲେ।

**ବାଆଲ୍‌ଜିବୂଲ୍** ଭୂତମାନଙ୍କର ରାଜା ଶଇତାନର ନାମ।

କଥା କହୁଛନ୍ତି, ତାହା କ୍ଷମା କରି ଦିଆଯିବ। କିନ୍ତୁ
ପବିତ୍ର-ଆତ୍ମାଙ୍କ ବିରୁଦ୍ଧରେ ନିନ୍ଦା କଲେ କ୍ଷମା କରାଯାଇ
ପାରିବନି। ୩୨ଯଦି କେହି ମନୁଷ୍ୟପୁତ୍ରଙ୍କ ବିରୁଦ୍ଧରେ କିଛି
କୁହେ ତେବେ ତାକୁ କ୍ଷମା କରାଯାଇପାରେ, କିନ୍ତୁ ପବିତ୍ରଆତ୍ମାଙ୍କ
ବିରୁଦ୍ଧରେ କେହି କିଛି କହିଲେ ତାକୁ ବର୍ତ୍ତମାନ ବା
ଭବିଷ୍ୟତରେ କେବେହେଲେ କ୍ଷମା କରାଯିବନାହିଁ।

### କର୍ମ ହିଁ ବ୍ୟକ୍ତିର ପରିଚୟ ଦିଏ

୩୩"ଭଲ ଫଳ ପାଇବାକୁ ହେଲେ ଭଲ ଗଛଟିଏ
ଲଗାଇବାକୁ ପଡ଼େ। ତୁମ୍ଭର ଖରାପ ଗଛଟିଏ ଥିଲେ
ସେଥିରୁ ତୁମ୍ଭେ ଖରାପ ଫଳ ପାଇବ। କାରଣ ଫଳଦ୍ୱାରା
ଗଛଟିକୁ ଚିହ୍ନି ହୁଏ। ୩୪ହେ ସର୍ପର ସନ୍ତାନଗଣ; ତୁମ୍ଭେମାନେ
ମନ୍ଦ ଲୋକ, ତୁମ୍ଭେ ଭଲ କଥା କିପରି କହି ପାରିବ?
ଜଣେ ତା ମନ ଭିତରେ ଯାହା ଭାବୁଥାଏ, ତାକୁ କଥାରେ
ପ୍ରକାଶ କରିଥାଏ। ୩୫ଗୋଟିଏ ଭଲ ଲୋକର ମନରେ
ଭଲ କଥା ସଞ୍ଚିତ ହୋଇ ରହିଥାଏ, ସେ କହିବାବେଳେ
ତାର ମନରୁ ଭଲ କଥା ବାହାରି ଆସେ। କିନ୍ତୁ ଜଣେ
ଖରାପ ଲୋକର ମନ ଭିତରେ ଖରାପ କଥା ସବୁ ସଞ୍ଚିତ
ହୋଇ ରହିଥାଏ। ସେ କହିବାବେଳେ ତା ମନ ଭିତରୁ
ଖରାପ କଥା ବାହାରିଥାଏ। ତେଣୁ ସେ ଖରାପ କଥା
କୁହେ। ୩୬କିନ୍ତୁ ମୁଁ ତୁମ୍ଭକୁ କହୁଛି ଲେକମାନେ ଅଜାଗ୍ରତ
ଭାବରେ କିଛି କହିଥିବା ପ୍ରତ୍ୟେକ ଶବ୍ଦପାଇଁ ବିଚାର
ଦିନରେ ସେମାନଙ୍କୁ ଉତ୍ତର ଦେବାକୁ ହେବ। ୩୭ଅତଏବ
ଯେଉଁସବୁ କଥା ତୁମ୍ଭେ କହିଥିବ, ତାରି ଅନୁସାରେ ତୁମ୍ଭକୁ
ଦୋଷୀ ବା ତୁମ୍ଭକୁ ନିର୍ଦ୍ଦୋଷୀ ବୋଲି ବିଚାର କରାଯିବ।"

### ଯୀଶୁଙ୍କୁ ପ୍ରମାଣ ଦେବା ପାଇଁ ଯିହୂଦୀମାନଙ୍କର ଆହ୍ୱାନ

୩୮ତାପରେ ଯିହୂଦୀ ଧର୍ମଶାସ୍ତ୍ରୀ ଓ ଫାରୂଶୀମାନଙ୍କ
ଭିତରୁ କେତେକ ଯୀଶୁଙ୍କୁ କହିଲେ, "ଗୁରୁ, ତୁମ୍ଭେ ଆମ୍ଭକୁ
ଚିହ୍ନ ସ୍ୱରୂପ ଆଶ୍ଚର୍ଯ୍ୟକାର୍ଯ୍ୟଟିଏ ଦେଖାଅ।"
୩୯ଯୀଶୁ କହିଲେ, "ମନ୍ଦ ଓ ପାପୀ ଲୋକମାନେ
ପ୍ରମାଣ ପାଇଁ ଆଶ୍ଚର୍ଯ୍ୟକାର୍ଯ୍ୟ ଦେଖିବାକୁ ଚାହାଁନ୍ତି। କିନ୍ତୁ
ତାହାଙ୍କୁ କୌଣସି ପ୍ରମାଣ ଦେଖାଇ ଦିଆଯିବନାହିଁ। କେବଳ
ଭବିଷ୍ୟଦ୍‌ବକ୍ତା ଯୂନସଙ୍କ କ୍ଷେତ୍ରରେ ଘଟିଥିବା ଆଶ୍ଚର୍ଯ୍ୟକାର୍ଯ୍ୟ
ହିଁ ସେମାନଙ୍କ ପାଇଁ ଏକମାତ୍ର ଚିହ୍ନ ହେବ। ୪୦ଯୂନସ
ସମୁଦ୍ରର ଗୋଟିଏ ବଡ଼ ମାଛ ପେଟରେ ତିନି ଦିନ ଓ
ତିନି ରାତି ଥିଲେ। ସେହିପରି ମନୁଷ୍ୟପୁତ୍ର ତିନିଦିନ ଓ
ତିନିରାତି କବର ଭିତରେ ରହିବେ। ୪୧ଯେଉଁଦିନ ବିଚାର
ହେବ, ସେହିଦିନ ନୀନିବୀର ଲୋକମାନେ ବର୍ତ୍ତମାନ ଜୀବିତ
ଥିବା ଲୋକଙ୍କ ସହିତ ଠିଆ ହେବେ, ଏବଂ ସେମାନଙ୍କୁ
ଦୋଷୀ ସାବ୍ୟସ୍ତ କରିବେ। କାରଣ ଯେତେବେଳେ ଯୂନସ
ସେମାନଙ୍କୁ ଉପଦେଶ ଦେଲେ ନୀନିବୀର ଲୋକେ ନିଜ
ନିଜର ହୃଦୟପରିବର୍ତ୍ତନ କରିଥିଲେ। ମୁଁ ତୁମ୍ଭମାନଙ୍କୁ କହୁଛି
ଯେ, ମୁଁ ଯୂନସଙ୍କ ଅପେକ୍ଷା ଅଧିକ ମହାନ୍। ୪୨ଯେଉଁ ଦିନ
ବିଚାର ହେବ ସେ ଦିନ ଦକ୍ଷିଣର ରାଣୀ ବର୍ତ୍ତମାନ ଜୀବିତ
ଥିବା ଲୋକଙ୍କ ସହିତ ଠିଆ ହେବେ ଏବଂ ସେ
ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରିବେ। କାରଣ ସେ
ଶଲମୋନଙ୍କ ଜ୍ଞାନର କଥା ଶୁଣିବା ପାଇଁ ବହୁତ ଦୂରରୁ
ଆସିଥିଲେ। ଏବଂ ମୁଁ ତୁମ୍ଭକୁ କହୁଛି ଯେ ମୁଁ ଶଲମୋନଙ୍କଠାରୁ
ଅଧିକ ମହାନ୍।

### ବର୍ତ୍ତମାନର ଲୋକମାନଙ୍କଠାରେ ମନ୍ଦଗୁଣ ଭରି ରହିଛି

୪୩"ଯେତେବେଳେ ଗୋଟିଏ ଭୂତ କୌଣସି ଲୋକଦେହରୁ
ବାହାରି ଚାଲି ଆସେ, ସେତେବେଳେ ସେ ପଥଭ୍ରଷ୍ଟ ହୋଇ
ବିଶ୍ରାମ ନେବାପାଇଁ ଶୁଖିଲା ଜାଗାଟିଏ ଖୋଜି ବୁଲେ। କିନ୍ତୁ
ସେଭଳି ଜାଗାଟିଏ ତାକୁ ମିଳେନାହିଁ। ୪୪ସେତେବେଳେ
ସେ କୁହେ, 'ମୁଁ ମୋର ଯେଉଁ ପୁରୁଣା ଘର ଛାଡ଼ି ଚାଲି
ଆସିଛି, ପୁଣି ସେଠାକୁ ଫେରିଯିବି।' ସେ ପୁଣି ଫେରିଆସେ।
ସେ ଦେଖେ ସେ ପର୍ଯ୍ୟନ୍ତ ମଧ୍ୟ ଘରଟି ଖାଲି ଅଛି। ସଫା
ଅଛି ଏବଂ ସବୁ ଠିକ୍‌ଠାକ୍ ଅଛି। ତା'ପରେ ସେ ଯାଏ ଓ
ତା'ଠାରୁ ଅଧିକ ଖରାପ ଆଉସାତଟା ଭୂତଙ୍କୁ ଡାକିଆଣେ।
୪୫ତା'ପରେ ସବୁ ଭୂତ ସେ ଘର ଭିତରକୁ ଯାଇ
ସେଠାରେ ବସବାସ କରନ୍ତି। ସେତେବେଳେ ଲୋକଟିର
ଅବସ୍ଥା ପୂର୍ବ ଅପେକ୍ଷା ଅଧିକ ଶୋଚନୀୟ ହୋଇପଡେ।
ଏବେ ଜୀବିତ ଥିବା ମନ୍ଦ ଲୋକଙ୍କ ପାଇଁ ସେହି ଏକାକଥା
ଘଟିବ।"

### ଯୀଶୁଙ୍କ ଶିଷ୍ୟମାନେ ତାହାଙ୍କର ପରିବାର

୪୬ଯୀଶୁ ଯେତେବେଳେ ଏହି ସବୁ କଥା ସେଠାରେ
ଜମା ହୋଇଥିବା ଲୋକମାନଙ୍କୁ କହୁଥିଲେ, ସେତେବେଳେ
ତାହାଙ୍କ ମାଆ ଏବଂ ଭାଇ ଆସି ବାହାରେ ଠିଆହେଲେ।
ସେମାନେ ଯୀଶୁଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ
ଚାହୁଁଥିଲେ। ୪୭ଜଣେ କେହି ଯୀଶୁଙ୍କୁ କହିଲେ, "ତୁମ୍ଭର
ମାଆ ଏବଂ ଭାଇମାନେ ବାହାରେ ଅପେକ୍ଷା କରିଛନ୍ତି।
ସେମାନେ ତୁମ୍ଭ ସହିତ କଥାବାର୍ତ୍ତା ହେବାକୁ ଚାହୁଁଛନ୍ତି।"
୪୮ଯୀଶୁ ସେମାନଙ୍କୁ ଉତ୍ତର ଦେଲେ, "ମୋର ମାଆ
କିଏ? ମୋର ଭାଇମାନେ କିଏ?" ୪୯ତା'ପରେ ସେ
ତାହାଙ୍କର ଶିଷ୍ୟମାନଙ୍କ ଆଡ଼କୁ ହାତ ବଢ଼େଇ କହିଲେ,
"ଏମାନେ ମୋର ମାଆ ଓ ଭାଇ। ୫୦ଯିଏ ସ୍ୱର୍ଗରେ
ରହୁଥିବା ମୋର ପରମପିତାଙ୍କ ଇଚ୍ଛା ଅନୁସାରେ କାମ
କରନ୍ତି, ସେ ମୋର ଭାଇ, ଭଉଣୀ ଓ ମାଆ।"

### ଯୀଶୁଙ୍କ ବୀଜ ବୁଣିବା କାହାଣୀ

**୧୩** ସେହିଦିନ ଯୀଶୁ ସେହି ଘରୁ ବାହାରି ଚାଲିଗଲେ
ଓ ହ୍ରଦ କୂଳରେ ଯାଇ ବସିଲେ। ୨ତାହାଙ୍କ
ଚାରିପଟେ ବହୁତ ଲୋକ ଜମା ହୋଇଗଲେ। ତେଣୁ ଯୀଶୁ
ଗୋଟିଏ ଡ଼ଙ୍ଗା ଭିତରକୁ ଉଠିଗଲେ ଓ ସେଠାରେ ଯାଇ
ବସିଲେ। ସବୁ ଲୋକେ କୂଳରେ ରହିଲେ। ୩ତା'ପରେ
ଯୀଶୁ ଲୋକଙ୍କୁ କାହାଣୀ ମାଧ୍ୟମରେ ଅନେକ ଉପଦେଶ
ଦେଲେ। ଯୀଶୁ କହିଲେ, "ଗୋଟିଏ କୃଷକ ତା କ୍ଷେତରେ
ବୀଜ ବୁଣିବାକୁ ଗଲା। ୪ସେ ବୁଣିବା ବେଳେ କିଛି ବୀଜ
ରାସ୍ତା କଡ଼ରେ ପଡ଼ିଗଲା। ଚଢ଼େଇମାନେ ଆସି ସେ
ସବୁତକ ଖାଇଦେଲେ। ୫ଆଉ କିଛି ବୀଜ ପଥୁରିଆ
ଜାଗାରେ ପଡିଗଲା। ସେଠାରେ ଯଥେଷ୍ଟ ମାଟି ନ ଥିଲା।

ମାଟି ଗହିରିଆ ନ ଥିବାରୁ ବୀଜରୁ ଖୁବ୍ ଶୀଘ୍ର ଗଜା
ବାହାରି ପଡ଼ିଲା। ୬କିନ୍ତୁ ଯେତେବେଳେ ସୂର୍ଯ୍ୟ ଉପରକୁ
ଉଠିଲା, ସେତେବେଳେ ଗଛ ଝାଉଁଳି ପଡ଼ିଲା। ତା'ର
ଚେର ଗଭୀରକୁ ଯାଇ ପାରିନଥିବାରୁ ଗଛଟି ଶୁଖି ମରିଗଲା।
୭ଆଉ କିଛି ବୀଜ କଣ୍ଟା ବୁଦାରେ ପଡ଼ିଗଲା। କଣ୍ଟାବୁଦା
ବଢ଼ି ଯିବାରୁ ଚାରା ଗଛକୁ ଘୋଟିଦେଲା। ୮ଆଉ କିଛି ବୀଜ
ଭଲ ମାଟି ଉପରେ ପଡ଼ିଲା ଓ ତାହା ବଢ଼ି ସେଥିଲେ
ଫଳଫଳିଲା। କେତେକ ଗଛରେ ଶହେଗୁଣ, କେତେକରେ
ଷାଠିଏ ଗୁଣ ଓ ଆଉ କେତେକରେ ତିରିଶ ଗୁଣ ଅଧିକ
ଫଳିଲା। ୯ତୁମ୍ଭର ଯଦି କାନ ଅଛି, ତେବେ ଶୁଣ।"

## କାହାଣୀ ମାଧ୍ୟମରେ ଯୀଶୁଙ୍କର ଶିକ୍ଷା

୧୦ଶିଷ୍ୟମାନେ ଯୀଶୁଙ୍କ ପାଖକୁ ଆସି ପଚାରିଲେ,
"ତୁମ୍ଭେ ସେମାନଙ୍କୁ କାହାଣୀ ମାଧ୍ୟମରେ କାହିଁକି ଶିକ୍ଷା
ଦେଉଛ?"

୧୧ଯୀଶୁ କହିଲେ, "ସ୍ୱର୍ଗରାଜ୍ୟର ନିଗୂଢ଼ ସତ୍ୟ ଜାଣିବା
ପାଇଁ କେବଳ ତୁମ୍ଭମାନଙ୍କୁ ଅଧିକାର ମିଳିଛି। ଏ ଅଧିକାର
ସେମାନଙ୍କୁ ଦିଆଯାଇନାହିଁ। ୧୨ଯାହା ପାଖରେ କିଛି ହେଲେ
ବୁଝିବା ଶକ୍ତି ଅଛି, ତାକୁ ଆହୁରି ଅଧିକ ଦିଆଯିବ, ଏବଂ
ସେ ଆବଶ୍ୟକତାଠାରୁ ଅଧିକ ପାଇବ। କିନ୍ତୁ ଯାହା
ପାଖରେ ବିଶେଷ ବୁଝିବା-ଶକ୍ତି ନାହିଁ, ସେ ତା'ପାଖରେ
ଥିବା ସେହି ଟିକେ ବୁଝିବାଶକ୍ତି ମଧ୍ୟ ହରେଇ ବସିବ।
୧୩ସେଇଥିପାଇଁ ମୁଁ ସେମାନଙ୍କୁ କାହାଣୀ ମାଧ୍ୟମରେ ଉପଦେଶ
ଦେଉଛି। କାରଣ ସେମାନେ ଚେଷ୍ଟା କରିଲେ ମଧ୍ୟ
ପ୍ରକୃତରେ କିଛି ବୁଝିପାରନ୍ତି ନାହିଁ। ୧୪ଭବିଷ୍ୟଦ୍‌ବକ୍ତା
ଯିଶାଇୟ ସେମାନଙ୍କ ବିଷୟରେ ଯାହା କହିଥିଲେ, ତାହା
ସତ୍ୟ ବୋଲି ସେହିମାନେ ପ୍ରମାଣିତ କରି ଦେଉଛନ୍ତି।
ଯିଶାଇୟ କହିଥିଲେ,

> 'ତୁମ୍ଭେମାନେ ଶୁଣୁଥିବ, କିନ୍ତୁ ବୁଝି ପାରିବ ନାହିଁ।
> ତୁମ୍ଭେମାନେ ଦେଖୁଥିବ କିନ୍ତୁ କିଛି ଜାଣି ପାରିବ
> ନାହିଁ।
> ୧୫ କାରଣ ସେମାନଙ୍କର(ଲୋକମାନଙ୍କର) ହୃଦୟ କଠୋର
> ହୋଇ ଯାଇଛି। ସେମାନଙ୍କର କାନ ଅଛି କିନ୍ତୁ
> ଶୁଣନ୍ତି ନାହିଁ ଏବଂ ସତ୍ୟକୁ ଦେଖିବା ପାଇଁ ମନା
> କରି ଦେଇଛନ୍ତି। ଫଳରେ ସେମାନେ ତାହାଙ୍କ
> ଆଖିରେ କିଛି ଦେଖି ପାରିବେନାହିଁ। କିମ୍ବା ତାହାଙ୍କ
> କାନରେ କିଛି ଶୁଣି ପାରିବେ ନାହିଁ। କିମ୍ବା
> ହୃଦୟରେ କିଛି ବୁଝି ପାରିବେ ନାହିଁ। ଏହା
> ଘଟିଅଛି କାରଣ ସୁସ୍ଥ ହେବା ପାଇଁ ସେମାନେ ମୋ
> ପାଖକୁ ଆସିବେ ନାହିଁ।' ଯିଶାଇୟ ୬:୯-୧୦

୧୬କିନ୍ତୁ ତୁମ୍ଭେ ଧନ୍ୟ, କାରଣ ତୁମ୍ଭେ ଯାହା ଆଖିରେ
ଦେଖୁଛ, ତାହା ବୁଝୁଛ। ତୁମ୍ଭେ ଯାହା କାନରେ ଶୁଣୁଛ,
ତାହା ବୁଝୁଛ। ୧୭ମୁଁ ତୁମ୍ଭକୁ ସତ୍ୟ କହୁଛି। ତୁମ୍ଭେ ଏବେ
ଯାହା ଦେଖୁଛ, ତାହା ଦେଖିବାକୁ କେତେ ଭବିଷ୍ୟଦ୍‌ବକ୍ତା
ଓ ସାଧୁମାନେ ଚାହିଁଥିଲେ। କିନ୍ତୁ ସେମାନେ ତାହା ଦେଖି
ପାରି ନ ଥିଲେ। ତୁମ୍ଭେ ଏବେ ଯାହା ଶୁଣୁଛ, ତାହା
ଶୁଣିବା ପାଇଁ ସେମାନେ ଚାହିଁଥିଲେ, କିନ୍ତୁ ସେମାନେ
ତାହା ଶୁଣି ପାରି ନ ଥିଲେ।

## ବୀଜ ବୁଣା କାହାଣୀର ବ୍ୟାଖ୍ୟା

୧୮"ତେବେ କୃଷକ ସମ୍ବନ୍ଧୀୟ କାହାଣୀର ଅର୍ଥ ଶୁଣ।
୧୯ରାସ୍ତାରେ ପଡ଼ି ଯାଇଥିବା ବୀଜର ଅର୍ଥ କଣ? ମଞ୍ଜିଟି
ସେହି ଲୋକପରି ସେ ସ୍ୱର୍ଗରାଜ୍ୟର ସୁସମାଚାର ଶୁଣେ, ଓ
ତାହା ବୁଝି ପାରେନାହିଁ। ଶୟତାନ ଆସେ ଓ ତା
ହୃଦୟରେ ଯାହା କିଛି ବୁଣା ହୋଇଥାଏ ସେତକ ନେଇ
ଚାଲିଯାଏ। ୨୦ପଥୁରିଆ ଜାଗାରେ ବୁଣାଯାଇଥିବା ବୀଜର
ଅର୍ଥ କ'ଣ? ବୀଜଟି ଠିକ୍ ସେହି ଲୋକପରି, ଯେ
ସୁସମାଚାର ଶୁଣେ ଏବଂ ଆନନ୍ଦର ସହିତ ତାହା ସଙ୍ଗେସଙ୍ଗେ
ଗ୍ରହଣ କରିନିଏ। ୨୧କିନ୍ତୁ ସେ ନିଜ ଭିତରେ ଶିକ୍ଷାକୁ ଦୃଢ଼
ହେବାକୁ ଦିଏନାହିଁ, କେବଳ କିଛି ସମୟ ପାଇଁ ସେ
ଶିକ୍ଷାକୁ ଆପଣା ହୃଦୟରେ ରଖିଥାଏ। ଯେତେବେଳେ
ସୁସମାଚାର ଯୋଗୁଁ ସେ ଦୁଃଖ-କଷ୍ଟ ଓ ଯାତନା ପାଏ,
ସେ ତିଷ୍ଠି ପାରେନାହିଁ। ସେ ଖୁବ୍ ଶୀଘ୍ର ସେଗୁଡ଼ିକୁ
ଛାଡ଼ିଦିଏ। ୨୨କଣ୍ଟାବୁଦାରେ ପଡ଼ିଯାଇଥିବା ବୀଜର ଅର୍ଥ
କ'ଣ? ମଞ୍ଜିଟି ସେହି ଲୋକ ଯେ ସୁସମାଚାର ଶୁଣେ
କିନ୍ତୁ ସଂସାରର ଚିନ୍ତା ଓ ଧନର ମୋହ ଲାଗି ସୁସମାଚାରକୁ
ତା'ଭିତରେ ବଢ଼ିବାକୁ ଦିଏନାହିଁ, ସେ ବ୍ୟକ୍ତି କେବେ
ସଫଳ ହୋଇପାରେ ନାହିଁ। ୨୩ଭଲ ମାଟି ଉପରେ
ପଡ଼ିଥିବା ବୀଜର ଅର୍ଥ କ'ଣ? ସେହି ଲୋକ ଭଳି ସେ
ସୁସମାଚାର ଶୁଣେ, ଓ ତାକୁ ବୁଝିପାରେ। ସେ ଲୋକ
ସଫଳ ହୁଏ। ସେହି ସଫଳତା ବେଳେବେଳେ ଶହେ
ଗୁଣ, ଷାଠିଏ ଗୁଣ ଓ ତିରିଶ ଗୁଣ ପର୍ଯ୍ୟନ୍ତ ମିଳିଥାଏ।"

## ଗହମ ଓ ବାଳୁଙ୍ଗାର ଉଦାହରଣ

୨୪ଯୀଶୁ ସେମାନଙ୍କୁ ଆଉ ଗୋଟିଏ କାହାଣୀ କହିଲେ।
"ସ୍ୱର୍ଗରାଜ୍ୟ ଜଣେ ବ୍ୟକ୍ତି ଭଳି ଯେ କି ନିଜ ଜମିରେ
ଭଲ ବୀଜ ବୁଣିଥିଲେ। ୨୫କିନ୍ତୁ ସବୁ ଲୋକ ଶୋଇଥିବା
ସମୟରେ ସେହି ଲୋକର ଶତ୍ରୁ ଆସିଲା। ସେ ଗହମ
ମଝିରେ ବାଳୁଙ୍ଗା-ବୀଜ ବୁଣିଦେଲା। ତା'ପରେ ସେ ଚାଲିଗଲା।
୨୬ଗହମ ଗଛ ବଢ଼ିଲା ଓ ସେଥିରେ କେଣ୍ଡା ଫଳିଲା।
ସେତିକି ବେଳକୁ ବାଳୁଙ୍ଗା ବି ଦେଖାଗଲା। ୨୭ସେହି
ବ୍ୟକ୍ତିର ଚାକରମାନେ ଆସିଲେ ଓ ଜମି ମାଲିକକୁ
କହିଲେ, 'ତୁମ୍ଭେ ତ ଜମିରେ ଭଲ ବୀଜ ବୁଣିଥିଲ,
ତେବେ ଏତେ ବାଳୁଙ୍ଗା କେମିତି ଉଠିଲା?'

୨୮ସେ ସେମାନଙ୍କୁ କହିଲେ, 'ଏହା କୌଣସି ଶତ୍ରୁର
କାର୍ଯ୍ୟ।'

"ଚାକରମାନେ ପଚାରିଲେ, 'ଆମେ ଯାଇ ବାଳୁଙ୍ଗାତକ
ଉପାଡ଼ି ଦେଉ ବୋଲି ଆପଣ ଚାହାଁନ୍ତି କି?'

୨୯"କ୍ଷେତମାଲିକ ସେମାନଙ୍କୁ ମନାକରି କହିଲେ,
'ତୁମ୍ଭେମାନେ ବାଳୁଙ୍ଗା ଉପାଡ଼ିଲା ବେଳେ ତା'ସହିତ ଗହମ
ମଧ୍ୟ ଉପାଡ଼ି ଦେବ। ୩୦ଫସଲ ପାଚିବା ପର୍ଯ୍ୟନ୍ତ ଉଭୟ
ଗହମ ଓ ବାଳୁଙ୍ଗା ଏକାଠି ବଢ଼ନ୍ତୁ। କାଟିବା ବେଳେ ମୁଁ

କଟାଳିମାନଙ୍କୁ କହିବ ପ୍ରଥମେ ବାଳୁଙ୍ଗାଗୁଡ଼ିକୁ ଏକାଠି କରି
ବଡ଼ାବାନ୍ଧି ଜାଳି ଦିଅ, ତା'ପରେ ଗହମ ସଂଗ୍ରହ କରି
ଅମାରରେ ରଖିଦିଅ।'"

### ଯୀଶୁ ଅନେକ କାହାଣୀ ଦ୍ୱାରା ଶିକ୍ଷା ଦେଲେ

୩୧ଯୀଶୁ ସେହି ଲୋକମାନଙ୍କୁ ଆଉ ଗୋଟିଏ ଦୃଷ୍ଟାନ୍ତ
କହିଲେ: "ସ୍ୱର୍ଗରାଜ୍ୟ ଗୋଟିଏ ସୋରିଷ ଦାନା ଭଳି।
ଜଣେ ତାକୁ ନେଇ ତା' କ୍ଷେତରେ ଲଗାଏ। ୩୨ସେ ବୀଜ
ଅନ୍ୟ ବୀଜ ତୁଳନାରେ ସବୁଠାରୁ ଛୋଟ ଥାଏ, କିନ୍ତୁ
ତାହା ଯେତେବେଳେ ବଡ଼ ହୁଏ, ସେତେବେଳେ ବଗିଚାରେ
ସମସ୍ତ ଚାରା ଅପେକ୍ଷା ବଡ଼ ହୋଇଯାଏ। ତାହା ଗଛରେ
ପରିଣତ ହୁଏ। ଆକାଶର ପକ୍ଷୀମାନେ ଆସି ଏହି ଗଛର
ଶାଖାରେ ବସା ବାନ୍ଧି ଆଶ୍ରୟ ନିଅନ୍ତି।"
୩୩ତା'ପରେ ଯୀଶୁ ଲୋକମାନଙ୍କୁ ଆଉ ଗୋଟିଏ କାହାଣୀ
କହିଲେ: "ସ୍ୱର୍ଗରାଜ୍ୟ ଖମୀର ଭଳି। ଜଣେ ସ୍ତ୍ରୀଲୋକ
ଗୋଟିଏ ବଡ଼ ପାତ୍ରରେ ଥିବା ଅଟାରେ ଖମୀର ମିଶାଇଲା।
ସବୁତକ ରୋଟୀ ଫୁଲିବାରେ ଖମୀର କାମ ଦେଲା।"
୩୪ଯୀଶୁ ସବୁ କିଛି କାହାଣୀ ମାଧ୍ୟମରେ କହୁଥିଲେ।
ବାସ୍ତବରେ ସେ ସେମାନଙ୍କୁ କାହାଣୀ ମାଧ୍ୟମ ଛଡ଼ା କିଛି
କହୁନଥିଲେ। ୩୫ପରମେଶ୍ୱର ଭବିଷ୍ୟଦ୍‌ବକ୍ତାଙ୍କ ମାଧ୍ୟମରେ
ଯାହା କହିଥିଲେ, ତାହା ପୂର୍ଣ୍ଣ ହେବା ପାଇଁ ଏହା
ହେଉଥିଲା। ପରମେଶ୍ୱର କହିଥିଲେ:

"ମୁଁ କାହାଣୀ ଦ୍ୱାରା କଥା କହିବି। ସୃଷ୍ଟିର ଆଦି
କାଳରୁ ଯେଉଁସବୁ କଥା ଗୋପନୀୟ ହୋଇ ରହିଛି,
ସେଗୁଡ଼ିକ ମୁଁ ପ୍ରକାଶ କରିବି।" ଗୀତସଂହିତା ୭୮:୨

### ଗହମ ଓ ବାଳୁଙ୍ଗା କାହାଣୀର ବ୍ୟାଖ୍ୟା

୩୬ତା'ପରେ ଯୀଶୁ ଲୋକମାନଙ୍କୁ ପଠେଇ ଦେଇ
ଘରକୁ ଗଲେ। ତାହାଙ୍କ ପାଖରେ ତାହାଙ୍କ ଶିଷ୍ୟମାନେ
ପହଞ୍ଚି କହିଲେ, "ଆମ୍ଭକୁ କ୍ଷେତର ବାଳୁଙ୍ଗା ଦୃଷ୍ଟାନ୍ତର ଅର୍ଥ
ବୁଝାଇ ଦିଅ।"
୩୭ଯୀଶୁ କହିଲେ, "ଯେଉଁ ଲୋକଜଣକ କ୍ଷେତରେ
ଭଲ ବୀଜ ବୁଣିଲେ, ସେ ହେଉଛନ୍ତି ମନୁଷ୍ୟପୁତ୍ର*।
୩୮ପୃଥିବୀ ହେଉଛି କ୍ଷେତ। ସ୍ୱର୍ଗରାଜ୍ୟରେ ଥିବା ପରମେଶ୍ୱରଙ୍କ
ସମସ୍ତ ସନ୍ତାନ ହେଲେ ଭଲ ବୀଜ, ବାଳୁଙ୍ଗାର ଅର୍ଥ
ଶୟତାନର ଅନୁଚର। ୩୯ଯେଉଁ ଶତ୍ରୁ ଜଣକ ବାଳୁଙ୍ଗା ବୁଣି
ଦେଇଥିଲା, ସେ ହେଉଛି ଶୟତାନ। ଫସଲ କାଟିବା
ସମୟ ହେଉଛି ଜଗତର ଅନ୍ତିମ ସମୟ ଏବଂ କଟାଳି
ହେଉଛନ୍ତି ସ୍ୱର୍ଗ-ଦୂତମାନେ।
୪୦"ଯେପରି ବାଳୁଙ୍ଗାକୁ ଏକାଠି କରା ହେଲା, ଓ
ନିଆଁରେ ପୋଡ଼ି ଦିଆଗଲା, ଠିକ୍ ସେହିପରି ଅବସ୍ଥା
ଜଗତର ଅନ୍ତିମ ସମୟରେ ହେବ। ୪୧ମନୁଷ୍ୟପୁତ୍ର ତାହାଙ୍କ
ସ୍ୱର୍ଗଦୂତଙ୍କୁ ପଠାଇବେ। ସେମାନେ ତାହାଙ୍କ ରାଜ୍ୟର ସମସ୍ତ
ପାପୀ ଓ ପାପପାଇଁ ପ୍ରବର୍ତ୍ତାଉଥିବା ସମସ୍ତଲୋକଙ୍କୁ ଏକାଠି
କରି ରାଜ୍ୟ ବାହାରକୁ ନେଇଯିବେ। ୪୨ସ୍ୱର୍ଗଦୂତମାନେ
ସେହି ଲୋକମାନଙ୍କୁ ଜଳୁଥିବା ଅଗ୍ନିକୁଣ୍ଡ ଭିତରକୁ ଫିଙ୍ଗିଦେବେ।
ସେଠାରେ ସେମାନେ କାନ୍ଦି-କାନ୍ଦି ଓ ଯନ୍ତ୍ରଣାରେ ଦାନ୍ତ
କାମୁଡ଼ି ରହିବେ। ୪୩ସେତେବେଳେ ଧାର୍ମିକ ଲୋକମାନେ
ସୂର୍ଯ୍ୟ ଭଳି ପ୍ରକାଶମାନ ହେବେ। ସେମାନେ ତାହାଙ୍କ
ପରମପିତାଙ୍କ ରାଜ୍ୟରେ ରହିବେ। ଯେଉଁମାନେ ଶୁଣି ପାରିବ,
ଶୁଣ।

### ଧନରଭଣ୍ଡାର ଓ ମୋତିର ଦୃଷ୍ଟାନ୍ତ

୪୪"ସ୍ୱର୍ଗରାଜ୍ୟ ଜମିରେ ପୋତା ହୋଇଥିବା ଧନଭଣ୍ଡାର
ଭଳି। ଦିନେ ଜଣେ ଲୋକ ଗୋଟିଏ ଧନରଭଣ୍ଡାର
ପାଇଲା, ଓ ପୁଣି ଆଉ ଥରେ ସେହି ଧନକୁ ଜମି
ଭିତରେ ପୋତିଦେଲା। ସେ ବହୁତ ଖୁସି ହୋଇଗଲା। ସେ
ସେଠାରୁ ଯାଇ ତା ପାଖରେ ଯାହା ସବୁ ଥିଲା, ସବୁତକ
ବିକି ସେହି ଜମିଟି କିଣିଲା। ୪୫"ସ୍ୱର୍ଗ-ରାଜ୍ୟ ମଧ୍ୟ ଭଲ
ମୋତି ଖୋଜୁଥିବା ଗୋଟିଏ ବେପାରୀ ଭଳି। ୪୬ଦିନେ ସେ
ଅତ୍ୟନ୍ତ ମୂଲ୍ୟବାନ ମୋତିଟିଏ ପାଇଗଲା, ସେ ଯାଇ ତାର
ସମସ୍ତ ସମ୍ପତ୍ତି ବିକି ଅମୂଲ୍ୟ ମୋତିଟି କିଣିଲା।

### ମାଛଧରା ଜାଲର ଦୃଷ୍ଟାନ୍ତ

୪୭"ସ୍ୱର୍ଗରାଜ୍ୟ ମଧ୍ୟ ହ୍ରଦରେ ଫିଙ୍ଗା ଯାଇଥିବା ଗୋଟିଏ
ଜାଲ ଭଳି। ସେଥିରେ ବିଭିନ୍ନ ପ୍ରକାରର ମାଛ ଧରା
ପଡ଼ିଲେ। ୪୮ଯେତେବେଳେ ଜାଲଟି ମାଛରେ ଭର୍ତ୍ତି ହୋଇଗଲା,
କେଉଟମାନେ ଜାଲକୁ କୂଳକୁ ଟାଣି ଆଣିଲେ। ସେମାନେ
ବସି ପଡ଼ି ଭଲ ଭଲ ମାଛ ବାଛି ଟୋକେଇରେ ଭର୍ତ୍ତି
କଲେ ଓ ଖରାପ ମାଛତକ ଫୋପାଡ଼ି ଦେଲେ। ୪୯ସଂସାର
ଶେଷ ହେବା ବେଳେ ଏହିଭଳି ଘଟିବ। ସ୍ୱର୍ଗଦୂତମାନେ
ଆସିବେ। ସେମାନେ ଧାର୍ମିକଲୋକଙ୍କ ଭିତରୁ ପାପୀଲୋକଙ୍କୁ
ଅଲଗା କରିଦେବେ। ୫୦ସ୍ୱର୍ଗଦୂତମାନେ ଖରାପ ଓ
ଦୁଷ୍ଟଲୋକମାନଙ୍କୁ ଅଗ୍ନିକୁଣ୍ଡ ଭିତରକୁ ଫିଙ୍ଗିଦେବେ। ସେଠାରେ
ସେମାନେ କେବଳ କାନ୍ଦିକାନ୍ଦି ଓ ଯନ୍ତ୍ରଣାରେ ଦାନ୍ତ କାମୁଡ଼ି
ରହିବେ।"
୫୧ଯୀଶୁ ନିଜ ଶିଷ୍ୟମାନଙ୍କୁ ପଚାରିଲେ, "ତୁମ୍ଭେ ଏ
ସବୁର ଅର୍ଥ ବୁଝି ପାରୁଛ?"
ଶିଷ୍ୟମାନେ କହିଲେ, "ହଁ, ଆମ୍ଭେମାନେ ବୁଝିପାରୁଛୁ।"
୫୨ତା'ପରେ ଯୀଶୁ କହିଲେ, "ସ୍ୱର୍ଗରାଜ୍ୟ ବିଷୟରେ
ଜାଣିଥିବା ପ୍ରତ୍ୟେକ ଧର୍ମଶାସ୍ତ୍ରୀ ଜଣେ ଘରମାଲିକ ଭଳି।
ଯେ କି ଭଣ୍ଡାରରେ ଥିବା ତାହାଙ୍କ ନୂଆ ଓ ପୁରୁଣା,
ଉଭୟ ପଦାର୍ଥ ବାହାରକରି ଆଣନ୍ତି।"

### ଯୀଶୁ ନିଜ ଜାଗାକୁ ଫେରିଆସିଲେ

୫୩ଯୀଶୁ ଏହି ସବୁ ଦୃଷ୍ଟାନ୍ତ କହିସାରିଲା ପରେ ସେ
ସ୍ଥାନ ଛାଡ଼ି ଚାଲିଗଲେ। ୫୪ସେ ଯେଉଁଠି ପ୍ରତିପାଳିତ
ହୋଇଥିଲେ ସେଠାକୁ ଗଲେ। ସେଠାରେ ଯିହୂଦୀ
ପ୍ରାର୍ଥନାଗୃହରେ ଉପଦେଶ ଦେବା ଆରମ୍ଭ କରିଦେଲେ,
ଯାହା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ କହିଲେ,

---

**ମନୁଷ୍ୟପୁତ୍ର** ଯୀଶୁ। ଏହା ମଶୀହଙ୍କ ପାଇଁ ଏକ ନାମ
ଲୋକଙ୍କୁ ରକ୍ଷା କରିବାକୁ ଏହାଙ୍କୁ ପରମେଶ୍ୱର ବାଛିଥିଲେ।

"ଆଶ୍ଚର୍ଯ୍ୟକାର୍ଯ୍ୟ କରିବା ପାଇଁ ଏ ଲୋକ କେଉଁଠାରୁ ଜ୍ଞାନ
ଓ ଶକ୍ତି ପାଇଲା? ୫୫ଏ ତ ସେହି ବଢ଼େଇର ପୁଅ।
ତାହାଙ୍କର ମାଆଙ୍କ ନାମ ତ ମରିୟମ। ଯାକୁବ, ଯୋସେଫ,
ଶିମୋନ ଓ ଯିହୁଦା ତ ଏହାର ଭାଇ। ୫୬ତା'ର ସବୁ
ଭଉଣୀମାନେ ତ ଆମ୍ଭ ସହିତ ଏଠାରେ ଅଛନ୍ତି। ତେବେ
ଏସବୁ କହିବା ପାଇଁ ଜ୍ଞାନ ଓ ଶକ୍ତି ସେ କେଉଁଠାରୁ
ପାଇଲା?" ୫୭ସେହି ଲୋକମାନେ ଯୀଶୁଙ୍କୁ ସ୍ୱୀକାର କଲେନାହିଁ।
ଯୀଶୁ ସେ ଲୋକମାନଙ୍କୁ କହିଲେ, "ଜଣେ ଭବିଷ୍ୟଦ୍‌ବକ୍ତାଙ୍କୁ
ଲୋକେ ସମ୍ମାନ ଦିଅନ୍ତି। କିନ୍ତୁ ନିଜ ସହରରେ ଓ
ତାହାଙ୍କ ନିଜ ପରିବାରରେ ଜଣେ ଭବିଷ୍ୟଦ୍‌ବକ୍ତାଙ୍କୁ ସମ୍ମାନ
ପାଏ ନାହିଁ।"
୫୮ସେଠାକାର ଲୋକେ ଯୀଶୁଙ୍କ ଉପରେ ବିଶ୍ୱାସ କରି
ପାରିଲେ ନାହିଁ। ତେଣୁ ଯୀଶୁ ସେଠାରେ ଅଧିକ ଆଶ୍ଚର୍ଯ୍ୟକାର୍ଯ୍ୟ
କଲେ ନାହିଁ।

## ହେରୋଦ ଯୀଶୁଙ୍କ ବିଷୟରେ ଶୁଣିଲେ

୧୪ ସେହି ସମୟରେ ଯୀଶୁଙ୍କ ବିଷୟରେ ଲୋକେ
ଯାହା କଥାବାର୍ତ୍ତା ହେଉଥିଲେ, ତାହା ଗାଲୀଲୀର
ଶାସକ ହେରୋଦ ଶୁଣିଲେ। ୨ସେ ତାହାଙ୍କ ଚାକରମାନଙ୍କୁ
କହିଲେ, "ଏହି ବ୍ୟକ୍ତି ପ୍ରକୃତରେ ବାପ୍ତିଜକ ଯୋହନ।
ସେ ନିଶ୍ଚୟ ମୃତ୍ୟୁରୁ ପୁଣି ବଞ୍ଚି ଉଠିଛି, ସେଥିପାଇଁ
ଏହିଶକ୍ତି ଏହା ପାଖରେ କାମ କରୁଛି ଓ ସେ ଆଶ୍ଚର୍ଯ୍ୟକାର୍ଯ୍ୟ
କରିବାକୁ ସକ୍ଷମ ହେଉଛି।"

## ବାପ୍ତିଜକ ଯୋହନଙ୍କୁ କିପରି ହତ୍ୟା କରାଗଲା

୩ଏହି ସମୟ ପୂର୍ବରୁ ହେରୋଦ ଯୋହନଙ୍କୁ ବନ୍ଦୀ କରି
ଶିକୁଳିରେ ବାନ୍ଧି କାରାଗାରରେ ନିକ୍ଷେପ କରିଥିଲେ। ସେ
ହେରୋଦିଆଙ୍କ ଅନୁରୋଧକ୍ରମେ ଏକଥା କରିଥିଲେ।
ହେରୋଦିଆ ହେରୋଦଙ୍କ ଭାଇ ଫିଲିପ୍ପଙ୍କ ସ୍ତ୍ରୀ ଥିଲେ।
୪ହେରୋଦ ଯୋହନଙ୍କୁ ବନ୍ଦୀ କରିବାର କାରଣ ହେଲା,
ଯୋହନ ବାରମ୍ବାର ହେରୋଦଙ୍କୁ କହୁଥିଲେ, "ତୁମ୍ଭେ
ହେରୋଦିଆଙ୍କୁ ନିଜ ସ୍ତ୍ରୀ ଭାବରେ ରଖିବା ଠିକ୍ କାମ
ନୁହେଁ।" ୫ତେଣୁ ହେରୋଦ ଯୋହନଙ୍କୁ ମାରିଦେବାକୁ
ଚାହିଁଲେ। କିନ୍ତୁ ସେ ଲୋକମାନଙ୍କୁ ଭୟ କରୁଥିଲେ।
କାରଣ ଲୋକେ ଯୋହନଙ୍କୁ ଜଣେ ଭବିଷ୍ୟଦ୍‌ବକ୍ତା ବୋଲି
ବିଶ୍ୱାସ କରୁଥିଲେ।
୬ହେରୋଦଙ୍କ ଜନ୍ମ ଦିନ ଅବସରରେ ହେରୋଦିଆଙ୍କ
ଝିଅ, ହେରୋଦ ଓ ତାହାଙ୍କ ଅତିଥିମାନଙ୍କ ଆଗରେ
ନାଚିଲା। ଏଥିରେ ହେରୋଦ ବହୁତ ମୁଗ୍ଧ ହୋଇଗଲେ।
୭ତେଣୁ ସେ ଶପଥ ପୂର୍ବକ ହେରୋଦିଆର ଝିଅକୁ ପ୍ରତିଶ୍ରୁତି
ଦେଲେ, "ତୁମ୍ଭେ ଯାହା କିଛି ମାଗିବ, ତାହା ତୁମ୍ଭକୁ
ଦିଆଯିବ।" ୮ହେରୋଦିଆଙ୍କ ପ୍ରରୋଚନାରେ ଝିଅ କହିଲା,
"ମୋତେ ବାପ୍ତିଜକ ଯୋହନଙ୍କ ମୁଣ୍ଡ ଗୋଟିଏ ଥାଳିରେ
ଆଣି ଏହିଠାରେ ଦିଅନ୍ତୁ।" ୯ଏହା ଶୁଣି ହେରୋଦ ବହୁତ
ଦୁଃଖୀ ହେଲେ। କିନ୍ତୁ ସେ ଶପଥ କରି ସାରିଥିଲେ, ଯେ
ଝିଅ ଯାହା ମାଗିବ ତାହା ତାକୁ ସେ ଦେବେ। ତା'ଛଡ଼ା
ହେରୋଦଙ୍କ ସହିତ ଖାଉଥିବା ଅତିଥିମାନେ ମଧ୍ୟ ଶପଥ
ଶୁଣିଥିଲେ। ତେଣୁ ହେରୋଦ ଝିଅକୁ ଯାହା କିଛି ସେ
ମାଗିଥିଲା ତାହା ଦେବାପାଇଁ ଆଦେଶ ଦେଲେ। ୧୦ସେ
କାରାଗାରରେ ଯୋହନଙ୍କ ମୁଣ୍ଡକାଟ କରିବା ପାଇଁ ଲୋକ
ପଠାଇଲେ। ୧୧ତାପରେ ଗୋଟିଏ ଥାଳିରେ ଯୋହନଙ୍କ
କଟାମୁଣ୍ଡ ଅଣାଗଲା। ତାହା ଝିଅକୁ ଦେଇ ଦିଆଗଲା। ଝିଅ
କଟାମୁଣ୍ଡ ତା ମାଆ ହେରୋଦିଆଙ୍କ ପାଖକୁ ନେଇଗଲା।
୧୨ଯୋହନଙ୍କ ଶିଷ୍ୟମାନେ ଆସି ଯୋହନଙ୍କ ମୃତଦେହ
ନେଇଯାଇ ସମାଧି ଦେଲେ। ତା'ପରେ ସେମାନେ ଯୀଶୁଙ୍କ
ପାଖକୁ ଯାଇ ସବୁକଥା କହିଲେ।

## ଯୀଶୁ ପାଞ୍ଚ ହଜାରରୁ ଅଧିକ ଲୋକଙ୍କୁ ଖାଇବାକୁ ଦେଲେ।

୧୩ଯୀଶୁ ଯୋହନଙ୍କ ବିଷୟରେ ଘଟିଥିବା ସବୁକଥା
ଶୁଣିସାରିବା ପରେ ସେ ସ୍ଥାନ ଛାଡ଼ି ଦେଲେ, ଓ ଏକୁଟିଆ
ଡଙ୍ଗାରେ ବସି ଗୋଟିଏ ନିଛାଟିଆ ଜାଗାକୁ ଚାଲିଗଲେ।
ଯୀଶୁ ଚାଲିଯାଇଥିବା ଖବର ଶୁଣି ଲୋକମାନେ ନିଜ
ନଗରମାନ ଛାଡ଼ି ଯୀଶୁଙ୍କୁ ଅନୁସରଣ କଲେ। ଯୀଶୁ
ଯେଉଁଠାକୁ ଯାଉଥିଲେ, ସେମାନେ ସ୍ଥଳପଥରେ ଚାଲି-ଚାଲି
ସେଠାରେ ଯାଇ ପହଞ୍ଚିଲେ। ୧୪ଡଙ୍ଗାରୁ ବାହାରି ଆସିବା
ବେଳକୁ ଯୀଶୁ ଦେଖିଲେ, ସେଠାରେ ବହୁତ ଲୋକ ଜମା
ହୋଇଛନ୍ତି। ଲୋକଙ୍କ ଉପରେ ତାହାଙ୍କର ଦୟା ହେଲା।
ସେ ଅସୁସ୍ଥ ଲୋକମାନଙ୍କୁ ସୁସ୍ଥ କରିଲେ।
୧୫ସନ୍ଧ୍ୟା ବେଳକୁ ଶିଷ୍ୟମାନେ ତାହାଙ୍କ ପାଖକୁ ଆସି
କହିଲେ, "ଏହା ଅତ୍ୟନ୍ତ ନିଛାଟିଆ ସ୍ଥାନ। ସମୟ ବହୁତ
ହେଲାଣି। ଲୋକମାନଙ୍କୁ ଏଠାରୁ ପଠେଇ ଦିଅ। ତା'ହେଲେ
ସେମାନେ ଗାଁମାନଙ୍କୁ ଯାଇ ସେମାନଙ୍କ ପାଇଁ ଖାଦ୍ୟ କିଣି
ପାରିବେ।"
୧୬କିନ୍ତୁ ଯୀଶୁ ସେମାନଙ୍କୁ କହିଲେ, "ସେମାନଙ୍କର
ଯିବା ଦରକାର ନାହିଁ। ତୁମ୍ଭେ ସେମାନଙ୍କୁ କିଛି ଖାଇବାକୁ
ଦିଅ।"
୧୭ଶିଷ୍ୟମାନେ କହିଲେ, "ଆମ୍ଭ ପାଖରେ ଏଠାରେ ମାତ୍ର
ପାଞ୍ଚଖଣ୍ଡ ରୋଟୀ ଓ ଦୁଇଟି ମାଛ ଅଛି।"
୧୮ଯୀଶୁ କହିଲେ, "ସେଗୁଡ଼ିକୁ ମୋ ପାଖକୁ ଆଣ।"
୧୯ଯୀଶୁ ସେଠାରେ ଜମା ହୋଇଥିବା ଲୋକମାନଙ୍କୁ ଘାସ
ଉପରେ ବସିଯିବାପାଇଁ କହିଲେ। ତା'ପରେ ସେ ପାଞ୍ଚଖଣ୍ଡ
ରୋଟୀ ଓ ଦୁଇଟି ଯାକ ମାଛ ଧରି ଆକାଶକୁ ଚାହିଁଲେ,
ଓ ଖାଦ୍ୟ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ।
ରୋଟୀକୁ ଖଣ୍ଡଖଣ୍ଡ କରି ଶିଷ୍ୟମାନଙ୍କ ହାତକୁ ଦେଲେ।
ଶିଷ୍ୟମାନେ ଲୋକଙ୍କୁ ସେଥିରୁ ବାଣ୍ଟିଲେ। ୨୦ସମସ୍ତ ଲୋକେ
ତାହା ଖାଇଲେ, ଓ ସନ୍ତୋଷ ଲାଭ କଲେ। ଲୋକେ
ଖାଇସାରିବା ପରେ ଶିଷ୍ୟମାନେ ବଳକା ଖାଦ୍ୟତକ ବାରଟି
ଝୁଡ଼ିରେ ଭର୍ତ୍ତି କଲେ। ୨୧ସେଠାରେ ପ୍ରାୟ କେବଳ ପାଞ୍ଚ
ହଜାର ପୁରୁଷ ଲୋକ ଖାଇଥିଲେ। ତା'ଛଡ଼ା ସ୍ତ୍ରୀଲୋକ ଓ
ପିଲାମାନେ ମଧ୍ୟ ଖାଇଥିଲେ।

## ହ୍ରଦ ଉପରେ ଯୀଶୁ ଚାଲିଲେ

୨୨ତା'ପରେ ଯୀଶୁ ଶିଷ୍ୟମାନଙ୍କୁ ଡଙ୍ଗାରେ ଚଢ଼ି ହ୍ରଦର

ଅପର ପାର୍ଶ୍ୱକୁ ଯିବାକୁ କହିଲେ। ଯୀଶୁ ନିଜେ ସେଠାରୁ
ପରେ ଯିବେ ବୋଲି କହିଲେ। ୨୩ତା'ପରେ ଜମା ହୋଇଥିବା
ଲୋକମାନଙ୍କୁ ବିଦାୟ କରି ସେ ପ୍ରାର୍ଥନା କରିବାକୁ
ଏକାକୀ ପାହାଡ ଉପରକୁ ଗଲେ। ସନ୍ଧ୍ୟା ହୋଇ ସାରିଥିଲା,
ଯୀଶୁ ସେଠାରେ ଏକୁଟିଆ ଥିଲେ। ୨୪ସେତେବେଳକୁ ହ୍ରଦ
ଭିତରେ ଡଙ୍ଗା ଅନେକ ଦୂରକୁ ଚାଲିଯାଇଥିଲା। ଢେଉରେ
ଧକ୍କା ଖାଇ ଡଙ୍ଗାଟି ଟଳମଳ ହେଉଥିଲା। ଖୁବ୍ ଜୋର୍‌ରେ
ପ୍ରତିକୂଳ ପବନ ବହୁଥିଲା।

୨୫ଯୀଶୁ ହ୍ରଦ ଉପରେ ଚାଲିକରି ରାତ୍ରିର ଚତୁର୍ଥ
ପ୍ରହରରେ ଶିଷ୍ୟମାନଙ୍କ ପାଖରେ ଯାଇ ପହଞ୍ଚିଲେ।
୨୬ଶିଷ୍ୟମାନେ ତାହାଙ୍କୁ ହ୍ରଦ ଉପରେ ଚାଲିକରି ଆସୁ
ଥିବାର ଦେଖି ଭୟଭୀତ ହେଲେ। ସେମାନେ କୁହାକୁହି
ହେଲେ, "ଏ ତ ଗୋଟିଏ ଭୂତ।" ସେମାନେ ଭୟରେ
ଚିତ୍କାର କଲେ।

୨୭ସଙ୍ଗେ ସଙ୍ଗେ ଯୀଶୁ ସେମାନଙ୍କୁ କହିଲେ, "ସାହାସ
ଧର! ମୁଁ ପରା ଆସିଛି! ଭୟ କର ନାହିଁ।"

୨୮ପିତର କହିଲେ, "ପ୍ରଭୁ, ଏହା ଯଦି ତୁମ୍ଭେ, ତେବେ
ମୋତେ ପାଣି ଉପରେ ଚାଲି ତୁମ୍ଭ ନିକଟକୁ ଯିବାକୁ
ଆଦେଶ ଦିଅ।"

୨୯ଯୀଶୁ କହିଲେ, "ଚାଲି ଆସ।"

ପିତର ଡଙ୍ଗାରୁ ବାହାରକୁ ଆସିଲେ। ସେ ପାଣି
ଉପରେ ଚାଲି ଯୀଶୁଙ୍କ ଆଡ଼କୁ ଗଲେ। ୩୦ପିତର ଯୀଶୁଙ୍କ
ଆଡ଼କୁ ପାଣି ଉପରେ ଚାଲିକରି ଯାଉଥିବା ସମୟରେ
ଜୋର୍‌ରେ ପବନ ବହୁଥିଲା। ଢେଉ ଉଠୁଥିଲା,। ଏହା
ଦେଖି ପିତର ଭୟ କଲେ। ସେ ବୁଡି ଯିବାକୁ ଲାଗିଲେ।
ସେ ପାଟି କରି ଡାକିଲେ, "ପ୍ରଭୁ ମୋତେ ରକ୍ଷା କର।"

୩୧ଯୀଶୁ ସଙ୍ଗେସଙ୍ଗେ ତାହାଙ୍କ ପାଖରେ ପହଞ୍ଚି ତାହାଙ୍କୁ
ଧରି ପକାଇଲେ। ସେ ପିତରଙ୍କୁ କହିଲେ, "ତୁମ୍ଭର ବିଶ୍ୱାସ
ଅଳ୍ପ। ତୁମ୍ଭେ କାହିଁକି ସନ୍ଦେହ କଲ?"

୩୨ଯୀଶୁ ଓ ପିତର ଡଙ୍ଗା ଉପରକୁ ଆସିଯିବା ପରେ
ପବନ ବନ୍ଦ ହୋଇଗଲା। ୩୩ଯେଉଁମାନେ ଡଙ୍ଗା ଉପରେ
ଥିଲେ, ସେମାନେ ଯୀଶୁଙ୍କୁ ପ୍ରଣାମ କଲେ ଓ କହିଲେ,
"ପ୍ରକୃତରେ ତୁମ୍ଭେ ପରମେଶ୍ୱରଙ୍କ ପୁତ୍ର।"

୩୪ସେମାନେ ହ୍ରଦ ପାର ହୋଇ ଗିନ୍ନେସରତ୍ କୂଳରେ
ପହଞ୍ଚିଲେ। ୩୫ସେଠାକାର ଲୋକେ ଚିହ୍ନିପାରିଲେ ଓ ଆଖପାଖ
ଅଞ୍ଚଳକୁ ଯୀଶୁଙ୍କ ଆସିବା ଖବର ପଠାଇଲେ। ଲୋକେ
ରୋଗୀଙ୍କୁ ତାହାଙ୍କ ପାଖକୁ ଆଣିଲେ। ୩୬ଲୋକମାନେ
ଯୀଶୁଙ୍କୁ ଅନୁରୋଧ କଲେ ଯେ, ରୋଗୀମାନେ ଯେପରି
ସୁସ୍ଥ ହୋଇଯାଆନ୍ତି, ସେଥିପାଇଁ ସେ ସେମାନଙ୍କୁ ତାହାଙ୍କ
ବସ୍ତ୍ରର ଧାରଟି କେବଳ ଛୁଇଁବାକୁ ଅନୁମତି ଦିଅନ୍ତୁ। ଯେଉଁ
ରୋଗୀମାନେ ତାହା ଛୁଇଁଲେ, ସେମାନେ ସମସ୍ତେ ସୁସ୍ଥ
ହୋଇଗଲେ।

## ମନୁଷ୍ୟକୃତ ନିୟମ ଠାରୁ ପରମେଶ୍ୱରଙ୍କ ବିଧାନ ବଡ଼

୧୫ କେତେକ ଫାରୂଶୀ ଓ ଯିହୂଦୀ ଧର୍ମଶାସ୍ତ୍ରୀ
ଯିରୂଶାଲମରୁ ଯୀଶୁଙ୍କ ନିକଟକୁ ଆସି ପଚାରିଲେ,
୨"ତୁମ୍ଭ ଶିଷ୍ୟମାନେ ପୂର୍ବପୁରୁଷଙ୍କ ପ୍ରଦତ୍ତ ନୀତିନିୟମଗୁଡ଼ିକୁ
କାହିଁକି ମାନୁ ନାହାଁନ୍ତି? ତୁମ୍ଭ ଶିଷ୍ୟମାନେ ଖାଇବା ପୂର୍ବରୁ
କାହିଁକି ହାତ ଧୋଉନାହାଁନ୍ତି।"

୩ଯୀଶୁ କହିଲେ, "ତୁମ୍ଭେ ନିଜର ପରମ୍ପରାଗତ ରୀତି-ନୀତି
ପାଳିବାକୁ ଯାଇ ପରମେଶ୍ୱରଙ୍କ ଆଦେଶ କାହିଁକି ଲଙ୍ଘନ
କରୁଛ? ୪ପରମେଶ୍ୱର କହିଛନ୍ତି: 'ତୁମ୍ଭେ ପିତାମାତାଙ୍କୁ
ସମ୍ମାନ ଦିଅ,* କିନ୍ତୁ ଯେଉଁଲୋକ ପିତାମାତାଙ୍କୁ ଅପମାନିତ
କରେ, ତାକୁ ବଧ କରାଯିବା ଉଚିତ।'* ୫କିନ୍ତୁ ତୁମ୍ଭେ
ଯେଉଁଭଳି ଶିକ୍ଷା ଦେଉଛ, ତା'ଫଳରେ ଜଣେ ଲୋକ
ତାର ପିତାମାତାଙ୍କୁ କହି ପାରିବ, 'ମୁଁ ତୁମ୍ଭକୁ ସାହାଯ୍ୟ
କରି ପାରିବିନାହିଁ। କାରଣ ମୋର ଯାହା ସବୁ ଅଛି
ସେଗୁଡ଼ିକୁ ମୁଁ ପରମେଶ୍ୱରଙ୍କୁ ଉତ୍ସର୍ଗ କରିବି।' ୬ଏହିଭଳି
ତୁମ୍ଭେ ସେ ଲୋକଙ୍କୁ ତା ପିତାମାତାଙ୍କୁ ସମ୍ମାନ ନ ଦେବା
ପାଇଁ ହିଁ ଶିକ୍ଷା ଦେଉଛ। ଏହିପରି ନିଜର ପରମ୍ପରାଗତ
ନୀତିନିୟମଗୁଡ଼ିକୁ ସମ୍ମାନ ଦେଇଛ ଓ ପରମେଶ୍ୱରଙ୍କ
ଆଦେଶକୁ ଅବମାନନା କରୁଛ। ୭ତୁମ୍ଭେ ସବୁ କପଟୀ।
ଯିଶାଇୟ ତୁମ୍ଭମାନଙ୍କ ବିଷୟରେ ଠିକ୍ ଭାବରେ ଏହି
ଭବିଷ୍ୟଦ୍‌ବାଣୀ କହିଥିଲେ:

୮ 'ଏମାନେ କେବଳ ମୁହଁରେ ମୋର ଆଦର କରନ୍ତି।
କିନ୍ତୁ ସେମାନଙ୍କ ମନକଥା ମୋ ଠାରୁ ବହୁତ
ଦୂରରେ ରହିଥାଏ।
୯ ସେମାନେ ମୋତେ ଯେଉଁ ଉପାସନା କରନ୍ତି, ତାହା
ମୂଲ୍ୟହୀନ। ସେମାନେ ଯେଉଁ ସବୁ ବିଷୟ ଶିକ୍ଷା
ଦିଅନ୍ତି ତାହା କେବଳ ମଣିଷ ତିଆରି ବିଧିବିଧାନ।'"

ଯିଶାଇୟ ୨୯:୧୩

୧୦ଯୀଶୁ ସମବେତ ହୋଇଥିବା ଲୋକମାନଙ୍କୁ ଡାକିଲେ।
ସେ ସେମାନଙ୍କୁ କହିଲେ, "ମୁଁ ଯାହା କହୁଛି ତାହା ଶୁଣି
ଓ ବୁଝ। ୧୧ମଣିଷ ମୁହଁ ଭିତରକୁ ଯାଇଥିବା ବିଷୟ
ଯୋଗୁ ଅପବିତ୍ର ହୋଇଯାଏ ନାହିଁ। ବରଂ ତା'ର ମୁହଁରୁ
ବାହାରୁ ଥିବା ବିଷୟ ଯୋଗୁ ସେ ଅପବିତ୍ର ହୋଇଥାଏ।"

୧୨ଯୀଶୁଙ୍କ ଶିଷ୍ୟମାନେ ତାହାଙ୍କ ପାଖକୁ ଆସି ତାହାଙ୍କୁ
କହିଲେ, "ଏସବୁ କହିବା ଫଳରେ ଫାରୂଶୀମାନେ ତୁମ୍ଭ
ଉପରେ ରାଗିଯାଇଅଛନ୍ତି ବୋଲି ତୁମ୍ଭେ ଜାଣିଛ ତ?"

୧୩ଯୀଶୁ କହିଲେ "ଯେଉଁ ଗଛ ମୋର ସ୍ୱର୍ଗୀୟ ପିତା
ନିଜେ ଲଗେଇ ନାହାଁନ୍ତି, ସେଗୁଡ଼ିକୁ ସମୂଳେ ଉପାଡି
ଦିଆଯିବ। ୧୪ସେମାନଙ୍କୁ ଛାଡ଼ିଦିଅ। ସେମାନେ ତ ଅନ୍ଧମାନଙ୍କର
ଅନ୍ଧ ନେତା। ଯଦି ଜଣେ ଅନ୍ଧ ଆଉ ଗୋଟିଏ ଅନ୍ଧକୁ
ରାସ୍ତା ଦେଖାଏ, ତେବେ ଉଭୟ ଖାତ ଭିତରେ ଖସି
ପଡିବେ।"

୧୫ଏକଥା ଶୁଣି ପିତର କହିଲେ, "ଏହି କାହାଣୀର ଅର୍ଥ
ଆମ୍ଭକୁ ବୁଝାଇ ଦିଅନ୍ତୁ।"

---

**'ତୁମ୍ଭେ ... ସମ୍ମାନ ଦିଅ'** ଯାତ୍ରା. ୨୦:୧୨; ଦ୍ୱି ବିବରଣ ୫:୧୬

**'କିନ୍ତୁ ଯେଉଁଲୋକ ... ଉଚିତ'** ଯାତ୍ରା.୨୧:୧୭

୧୬ଯୀଶୁ କହଲେ, "ଏବେ ବ କ'ଣ ତୁମ୍ଭ ବୁଝିବାରେ
ଅସୁବିଧା ଅଛି? ୧୭ତୁମ୍ଭେ କ'ଣ ଜାଣିନ ଯେ, ଯେଉଁଖାଦ୍ୟ
ଜଣେ ଲୋକର ପାଟି ଭିତରକୁ ଯାଏ, ତାହା ପେଟ
ଭିତରକୁ ଯାଏ ଓ ପରଶେଷରେ ଦେହରୁ ବାହାରଯାଏ।
୧୮କିନ୍ତୁ ଜଣେ ଲୋକ ଯେଉଁ ମନ୍ଦ କଥା ପାଟିରେ କହେ,
ତାହା ପ୍ରକୃତରେ ତା'ର ମନ ଭିତରୁ ଆସିଥାଏ। ଏହା
ଲୋକକୁ ଅପବତ୍ର କରଥାଏ। ୧୯କାରଣ ଖରାପ ଭାବନା,
ହତ୍ୟା, ବ୍ୟଭିଚାର, ଯୌନାଗ୍ରହ, ଚୋରୀ, ମିଛସାକ୍ଷ୍ୟ ଓ
ନନ୍ଦା ଆଦ ଖରାପ ବଷୟଗୁଡ଼ିକ ପ୍ରଥମେ ମଣିଷର ମନ
ଭିତରେ ସୃଷ୍ଟି ହୁଏ। ୨୦ଏଗୁଡିକ ମଣିଷକୁ ଅପବତ୍ର କର
ଦଅନ୍ତି। କିନ୍ତୁ ଖାଇବା ପୂର୍ବରୁ ହାତ ନ ଧୋଇବା ଘଟଣା
ମଣିଷକୁ ଅପବତ୍ର କର ପାରେ ନାହିଁ।"

### ଜଣେ ଅଣ-ଯିହୂଦୀ ସ୍ତ୍ରୀକୁ ଯୀଶୁଙ୍କ ସହାୟତା

୨୧ଯୀଶୁ ସେ ସ୍ଥାନ ଛାଡ଼ି ସୋର ଓ ସୀଦୋନ ଅଞ୍ଚଳକୁ
ଚାଲଗଲେ। ୨୨ସେହ ଅଞ୍ଚଳର ଜଣେ କିଣାନୀୟା ସ୍ତ୍ରୀ ଆସି
ବଡ଼ପାଟି କର କହଲା, "ହେ ପ୍ରଭୁ! ହେ ଦାଉଦଙ୍କ ପୁତ୍ର!
ମୋ ପ୍ରତି ଦୟା କରନ୍ତୁ। ମୋ ଝିଅ ଦେହରେ ଗୋଟିଏ
ଭୂତ ପଶି ରହଛି। ମୋ ଝିଅ ଭାର କଷ୍ଟ ପାଉଛି।"
୨୩ଯୀଶୁ ତାକୁ ପଦେହେଲେ କିଛି କହଲେ ନାହିଁ।
ତେଣୁ ଶିଷ୍ୟମାନେ ଯୀଶୁଙ୍କ ନିକଟକୁ ଆସିଲେ ଓ ଅନୁରୋଧ
କଲେ, "ସେ ଆମ୍ଭ ପଛେ-ପଛେ ପାଟି କର ଆସୁଛି।
ତାକୁ ଚାଲ ଯିବାକୁ କହ ଦଅନ୍ତୁ।"
୨୪ଯୀଶୁ କହଲେ, "ପରମେଶ୍ୱର ମୋତେ କେବଳ
ଇସ୍ରାୟେଲର ହଜିଯାଇଥିବା ଲୋକ(ଯିହୂଦୀ) ମାନଙ୍କ ପାଇଁ
ପଠାଇଛନ୍ତି।"
୨୫ତା'ପରେ ସେ ସ୍ତ୍ରୀ ଯୀଶୁଙ୍କ ନିକଟକୁ ପୁଣି ଥରେ
ଆସିଲା। ସେ ଯୀଶୁଙ୍କୁ ପ୍ରଣାମ କର କହଲା, "ହେ ପ୍ରଭୁ!
ମୋତେ ସାହାଯ୍ୟ କରନ୍ତୁ।"
୨୬ଯୀଶୁ କହଲେ, "ପିଲାମାନଙ୍କ ଖାଦ୍ୟନେଇ କୁକୁରଗୁଡ଼ିକୁ
ଦେଇଦେବା ଠିକ୍ କାମ ହେବନାହିଁ।"
୨୭ସେହ ସ୍ତ୍ରୀ କହଲା, "ହଁ ପ୍ରଭୁ, ଏହା ଠିକ୍ କଥା।
କିନ୍ତୁ ସେମାନଙ୍କ ମାଲକମାନଙ୍କର ଖାଇବା ଟେବୁଲ ଉପରୁ
ଖସି ପଡୁଥିବା ଖାଦ୍ୟ-କଣିକାସବୁ କୁକୁରଗୁଡ଼ିକ ଖାଇଥାନ୍ତି।"
୨୮ତା'ପରେ ଯୀଶୁ କହଲେ, "ହେ ନାରୀ! ତୁମ୍ଭର
ଗଭୀର ବଶ୍ୱାସ ରହଛି। ତୁମ୍ଭେ ମୋଠାରୁ ଯାହା ଚାହିଁଛ,
ମୁଁ ତାହା କରଦେବ।" ଏହା କହବା ମାତ୍ରେ ସେହ ସ୍ତ୍ରୀର
ଝିଅଟି ସଂମ୍ପୂର୍ଣ୍ଣ ରୂପେ ଭଲ ହୋଇଗଲା।

### ଯୀଶୁ ଅନେକ ଲୋକଙ୍କୁ ସୁସ୍ଥ କରଦେଲେ

୨୯ତାପରେ ଯୀଶୁ ସେ ସ୍ଥାନ ଛାଡ଼ି ଚାଲଗଲେ ଓ
ଗାଲୀଲୀ ହ୍ରଦ କୂଳରେ ଯାଇ ପହଞ୍ଚିଲେ। ସେ ଗୋଟିଏ
ପାହାଡ଼ ଉପରକୁ ଯାଇ ସେଠାରେ ବସିଲେ।
୩୦ଅନେକ ସଂଖ୍ୟାରେ ଲୋକମାନେ ତାହାଙ୍କ ପାଖକୁ
ଆସିଲେ। ସେମାନେ ଅନେକ ଅନ୍ଧ, ମୂକ, ବଧିର, ଛୋଟା,
ଅପଙ୍ଗ ଓ ଅନ୍ୟ ରୋଗୀମାନଙ୍କୁ ଯୀଶୁଙ୍କ ପାଖକୁ ଆଣିଲେ।
ଯୀଶୁ ସେମାନଙ୍କୁ ସୁସ୍ଥ କରଦେଲେ। ୩୧ଲୋକେ ଦେଖିଲେ
ଯେ ଯେଉଁ ଲୋକ କଥା କହପାରୁନଥିଲା ସେ କଥା କହ
ପାରୁଛି; ଅପଙ୍ଗ ଲୋକେ ପୁଣି ସବଳ ହୋଇଛନ୍ତି;
ଛୋଟାମାନେ ଚାଲ ପାରୁଛନ୍ତି; ଅନ୍ଧମାନେ ପୁଣି ଦେଖି
ପାରୁଛନ୍ତି; ଏସବୁ ଦେଖି ସେମାନେ ବହୁତ ଆଶ୍ଚର୍ଯ୍ୟ
ହୋଇଗଲେ। ସେମାନେ ଇସ୍ରାୟେଲର ପରମେଶ୍ୱରଙ୍କ ମହମା
ଗାନ କଲେ।

### ଯୀଶୁ ଚାର ହଜାରରୁ ଅଧିକ ଲୋକଙ୍କୁ ଖାଇବାକୁ ଦେଲେ।

୩୨ଯୀଶୁ ତାହାଙ୍କର ଶିଷ୍ୟମାନଙ୍କୁ ଡାକ କହଲେ, "ମୁଁ
ଏ ଲୋକମାନଙ୍କ ପାଇଁ ବଡ଼ ଦୁଃଖିତ। ସେମାନେ ମୋ
ସାଙ୍ଗରେ ତିନ ଦନ ହେଲା ରହଲେଣି। କିନ୍ତୁ ଏବେ
ସେମାନଙ୍କର ଖାଇବାକୁ କିଛି ନାହିଁ। ସେମାନେ ଏଠାରୁ
ଭୋକଲା ଚାଲଯିବାଟା ମୁଁ ଆଦୌ ଚାହୁଁନ। ସେମାନେ
ଘରକୁ ଗଲାବେଳେ ମୂର୍ଚ୍ଛା ହୋଇ ଯାଇ ପାରନ୍ତି।"
୩୩ଯୀଶୁଙ୍କ ଶିଷ୍ୟମାନେ କହଲେ, "ଆମେ ଏତେ ଲୋକଙ୍କ
ପାଇଁ ଏତେ ଖାଦ୍ୟ ଏଭଳି ସ୍ଥାନରେ କେଉଁଠାରୁ ପାଇବା?
ଆମ୍ଭେ ନଗର ଠାରୁ ବହୁତ ଦୂରରେ ଅଛୁ।"
୩୪ଯୀଶୁ ପଚାରଲେ, "ତୁମ୍ଭ ପାଖରେ କେତେ ଖଣ୍ଡ
ରୋଟୀ ଅଛି?"
ସେମାନେ କହଲେ, "ସାତଖଣ୍ଡ ରୋଟୀ ଓ କିଛି
ଛୋଟ ମାଛ ଅଛି।"
୩୫ଯୀଶୁ ଲୋକମାନଙ୍କୁ ଭୂଇଁ ଉପରେ ବସିଯିବାକୁ
କହଲେ: ୩୬ସେ ସାତଖଣ୍ଡ ରୋଟୀ ଓ ମାଛତକ ନେଲେ।
ତା'ପରେ ସେ ପରମେଶ୍ୱରଙ୍କୁ ଖାଦ୍ୟ ପାଇଁ ଧନ୍ୟବାଦ
ଦେଲେ। ଯୀଶୁ ସେଗୁଡ଼ିକୁ ଛୋଟ ଛୋଟ ଖଣ୍ଡ କଲେ ଓ
ତାହାଙ୍କ ଶିଷ୍ୟମାନଙ୍କୁ ଦେଲେ। ଶିଷ୍ୟମାନେ ଲୋକମାନଙ୍କୁ
ଖାଦ୍ୟ ବାଣ୍ଟିଲେ। ୩୭ସମସ୍ତେ ଖାଇଲେ ଓ ସନ୍ତୋଷ ଲାଭ
କଲେ। ତା'ପରେ ଶିଷ୍ୟମାନେ ବଳକା ଖାଦ୍ୟକୁ ସାତଟି
ଟୋକେଇରେ ଭର୍ତ୍ତିକଲେ। ୩୮ସେଠାରେ ପ୍ରାୟ ଚାର
ହଜାର ପୁରୁଷ ଖାଇଥିଲେ। ସେମାନଙ୍କ ଛଡା ସ୍ତ୍ରୀ ଓ
ପିଲାମାନେ ମଧ ଖାଇଥିଲେ। ୩୯ସେମାନେ ଖାଇ ସାରବା
ପରେ ଯୀଶୁ ସେମାନଙ୍କୁ ଘରକୁ ଫେରଯିବା ପାଇଁ କହଲେ।
ସେମାନଙ୍କୁ ବଦାୟ କରସାର ଯୀଶୁ ଡ଼ଙ୍ଗାରେ ବସି
ମଗ୍ଦାନ୍ ଅଞ୍ଚଳକୁ ଗଲେ।

### ଯୀଶଙ୍କୁ ଯିହୂଦୀ ନେତାଙ୍କ ପରୀକ୍ଷା

୧୬ ଫାରୂଶୀ ଓ ସାଦ୍ଦୂକୀମାନେ ଯୀଶୁଙ୍କ ନିକଟକୁ
ଆସିଲେ। ସେମାନେ ଯୀଶୁଙ୍କୁ ପରୀକ୍ଷା କରବାକୁ
ଚାହୁଁଥିଲେ। ତେଣୁ ସେମାନେ ଯୀଶୁଙ୍କୁ କୌଣସି ଆଶ୍ଚର୍ଯ୍ୟକାର୍ଯ୍ୟ
ଦେଖାଇବାକୁ କହଲେ, କାରଣ ଯୀଶୁ ଆଶ୍ଚର୍ଯ୍ୟକାର୍ଯ୍ୟ ଦେଖାଇବା
ଫଳରେ ପ୍ରମାଣିତ ହୋଇ ପାରବ ଯେ ସେ ପରମେଶ୍ୱରଙ୍କ
ପାଖରୁ ଆସିଛନ୍ତି।
୨ଯୀଶୁ ଉତ୍ତର ଦେଲେ, "ତୁମ୍ଭେମାନେ ସୂର୍ଯ୍ୟାସ୍ତ ସମୟରେ
ଆକାଶକୁ ଲାଲରଙ୍ଗ ହୋଇଥିବାର ଦେଖିଲେ କୁହ ଯେ
ପାଗ ଭଲ ରହବ। ୩ତୁମ୍ଭେମାନେ ସୂର୍ଯ୍ୟୋଦୟ ସମୟରେ
ଆକାଶକୁ ଲାଲ ରଙ୍ଗର ଓ ମେଘୁଆ ଥିବାର ଦେଖିଲେ

କୁହ ଯେ ଆଜି ଝଡ଼ ହେବ। ଏଗୁଡିକ ପାଗର ଲକ୍ଷଣ।
ତୁମ୍ଭେ ଏହି ଲକ୍ଷଣଗୁଡିକ ଆକାଶରେ ଦେଖ ଓ ସେଗୁଡ଼ିକର
ଅର୍ଥ ବୁଝ। ସେହିଭଳି ତୁମ୍ଭେ ବର୍ତ୍ତମାନ ଘଟୁଥିବା ଘଟଣାଗୁଡ଼ିକୁ
ଦେଖୁଛ। ଏଗୁଡିକ ମଧ୍ୟ ଏପ୍ରକାର ଲକ୍ଷଣ। କିନ୍ତୁ ଏଗୁଡ଼ିକର
ଅର୍ଥ ବୁଝିବାକୁ ତୁମ୍ଭେ ସମର୍ଥ ହୋଇ ପାରୁନ। ୪ମନ୍ଦ ଓ
ପାପୀ ଲୋକ ହିଁ ପ୍ରମାଣ-ଚିହ୍ନ ସ୍ୱରୂପ ଆଶ୍ଚର୍ଯ୍ୟକାର୍ଯ୍ୟ
ଦେଖିବାକୁ ଚାହାଁନ୍ତି। ଏଭଳି ଲୋକଙ୍କୁ ଯୂନସଙ୍କ ଚିହ୍ନ*
ବ୍ୟତୀତ ଅନ୍ୟ କୌଣସି ଚିହ୍ନ ଦିଆଯିବ ନାହିଁ।” ତାପରେ
ଯୀଶୁ ସେମାନଙ୍କୁ ସେଠାରେ ଛାଡି ଚାଲିଗଲେ।

## ଯିହୂଦୀ ନେତାମାନଙ୍କୁ ଯୀଶୁଙ୍କ ଚେତାବନୀ

୫ଯୀଶୁଙ୍କ ଶିଷ୍ୟମାନେ ହ୍ରଦର ଅପର ପାର୍ଶ୍ୱକୁ ଗଲେ।
କିନ୍ତୁ ସେମାନେ ସାଙ୍ଗରେ ରୋଟୀ ନେବାକୁ ଭୁଲିଗଲେ।
୬ଯୀଶୁ ସେମାନଙ୍କୁ କହିଲେ, “ସାବଧାନ ରୁହ। ଫାରୂଶୀ ଓ
ସାଦ୍ଦୂକୀମାନଙ୍କ ଖମୀରରୁ ତୁମ୍ଭମାନଙ୍କୁ ରକ୍ଷା କର।”
୭ଶିଷ୍ୟମାନେ ନିଜ-ନିଜ ଭିତରେ ଏହାର ଅର୍ଥ ବିଷୟରେ
ଆଲୋଚନା କଲେ। ସେମାନେ କହିଲେ, “ବୋଧହୁଏ
ଆମ୍ଭେ ରୋଟୀ ନ ଆଣିଥିବାରୁ ସେ ଏପରି କହିଲେ।”
୮ସେମାନେ ଯାହା କୁହାକୁହି ହେଉଥିଲେ ଯୀଶୁ ତାହା
ଜାଣି ପାରିଲେ। ସେ କହିଲେ, “ତୁମ୍ଭେ ରୋଟୀ ନ ଥିବା
କଥା କାହିଁକି ତୁମ୍ଭଭିତରେ କୁହାକୁହି ହେଉଛ? ତୁମ୍ଭର
ବିଶ୍ୱାସ ଅଳ୍ପ। ୯ଏବେ ସୁଦ୍ଧା ତୁମ୍ଭେ କ’ଣ ବୁଝି ପାରୁନ?
ପାଞ୍ଚଟି ରୋଟୀକୁ ପାଞ୍ଚହଜାର ଲୋକ ଖାଇଥିବା କଥା
ମନେ ପକାଅ। ଲୋକେ ଖାଇ ସାରିବା ପରେ ବଳକା
ଅଂଶତକ ତୁମ୍ଭେ ଅନେକ ଟୋକେଇରେ ଭର୍ତ୍ତି କରିଥିଲ।
୧୦ସାତୋଟି ରୋଟୀକୁ ଚାରିହଜାର ଲୋକ ଖାଇଥିବା କଥା
ମନେ ପକାଅ। ଲୋକେ ଖାଇସାରିବା ପରେ ବଳକା
ଅଂଶତକ ଅନେକ ଟୋକେଇରେ ଭର୍ତ୍ତି କରିଥିବା ବିଷୟରେ
କହୁ ନ ଥିଲି? ୧୧ତୁମ୍ଭେ ତାହା କାହିଁକି ବୁଝି ପାରୁନ? ମୁଁ
ତୁମ୍ଭକୁ ସାବଧାନ ରହିବାକୁ ଏବଂ ଫାରୂଶୀ ଓ ସାଦ୍ଦୂକୀମାନଙ୍କର
କୁପ୍ରଭାବରୁ ଦୂରରେ ରହିବାକୁ କହୁଛି।”
୧୨ତା’ପରେ ସେମାନେ ଯୀଶୁଙ୍କ କଥାର ଅର୍ଥ ବୁଝିଗଲେ।
ରୋଟୀରେ ବ୍ୟବହାର କରା ଯାଉଥିବା ଖମୀରର କୁପ୍ରଭାବରୁ
ସାବଧାନ ରହିବା ବିଷୟରେ ଯୀଶୁ କହୁନଥିଲେ। ମାତ୍ର
ଫାରୂଶୀ ଓ ସାଦ୍ଦୂକୀମାନଙ୍କର ଉପଦେଶଠାରୁ ସାବଧାନ
ରହିବାକୁ ସେ ସେମାନଙ୍କୁ କହୁଥିଲେ।

## ପିତର କହନ୍ତି ଯୀଶୁ ହେଉଛନ୍ତି ଖ୍ରୀଷ୍ଟ

୧୩ଯୀଶୁ କାଇସରୀଆ ଫିଲିପ୍ପୀ ଅଞ୍ଚଳକୁ ଆସିବା ପରେ
ଶିଷ୍ୟମାନଙ୍କୁ କହିଲେ, “ମୁଁ ହେଉଛି ମନୁଷ୍ୟପୁତ୍ର*। ମୁଁ
କିଏ ବୋଲି ଲୋକେ ମୋ ବିଷୟରେ କ’ଣ କହୁଛନ୍ତି?”
୧୪ଶିଷ୍ୟମାନେ ଉତ୍ତର ଦେଲେ, “କେତେକ ଆପଣଙ୍କୁ
ବାପ୍ତିଜକ ଯୋହନ ବୋଲି କହୁଛନ୍ତି ତ କେତେକ
ଏଲିୟ* ବୋଲି କହୁଛନ୍ତି। ଅନ୍ୟମାନେ ଆପଣଙ୍କୁ ଯିରିମିୟ*
ବା ଭବିଷ୍ୟଦ୍‌ବକ୍ତା* ମାନଙ୍କମଧ୍ୟରୁ ଜଣେ ବୋଲି କହୁଛନ୍ତି।”
୧୫ଯୀଶୁ କହିଲେ, “ମୁଁ କିଏ ବୋଲି ତୁମ୍ଭେ କ’ଣ
କହୁଛ?”
୧୬ଶିମୋନ ପିତର ଉତ୍ତର କେଲେ, “ଆପଣ ହେଉଛନ୍ତି
ଖ୍ରୀଷ୍ଟ। ଜୀବନ୍ତ ପରମେଶ୍ୱରଙ୍କ ପୁତ୍ର।”
୧୭ଉତ୍ତରରେ ଯୀଶୁ କହିଲେ, “ହେ ଶିମୋନ! ଯୂନସଙ୍କ
ପୁତ୍ର! ତୁମ୍ଭେ ଧନ୍ୟ! ଏକଥା ତୁମ୍ଭକୁ କୌଣସି ମଣିଷ
ଶିଖାଇ ନାହିଁ। ମୋ ସ୍ୱର୍ଗୀୟ ପିତା ତୁମ୍ଭକୁ ଏକଥା
ଶିଖାଇଛନ୍ତି। ୧୮ମୁଁ ମଧ୍ୟ ତୁମ୍ଭକୁ କହି ରଖୁଛି ଯେ ତୁମ୍ଭେ
ହେଉଛ ପିତର*। ଏବଂ ମୁଁ ଏହି ପଥର ଉପରେ ମୋର
ମଣ୍ଡଳୀ ତୋଳିବି। ମୃତ୍ୟୁଶକ୍ତି* ମୋର ମଣ୍ଡଳୀକୁ ପରାଜିତ
କରିବାକୁ ସମର୍ଥ ହୋଇପାରିବ ନାହିଁ। ୧୯ସ୍ୱର୍ଗରାଜ୍ୟର ଚାବି
ଗୁଡିକ ମୁଁ ତୁମ୍ଭକୁ ଦେବି। ତେଣୁ ଏ ପୃଥିବୀରେ
ଯେତେବେଳେ ତୁମ୍ଭେ ନ୍ୟାୟ-ବିଚାର କରିବ, ସେହି
ନ୍ୟାୟ-ବିଚାର ପରମେଶ୍ୱରଙ୍କର ନ୍ୟାୟ-ବିଚାର ହେବ। ଏ
ପୃଥିବୀରେ ଯେତେବେଳେ ତୁମ୍ଭେ କ୍ଷମା ଦେବ, ସେହି କ୍ଷମା
ପରମେଶ୍ୱରଙ୍କର କ୍ଷମା ହେବ।” ୨୦ତା’ପରେ ଯୀଶୁ ତାହାଙ୍କର
ଶିଷ୍ୟମାନଙ୍କୁ ଦୃଢ଼ ଆଜ୍ଞା ଦେଲେ, “ସେ ଯେ ଖ୍ରୀଷ୍ଟ
ଅଟନ୍ତି କାହାକୁ ନ କହିବା ପାଇଁ।”

## ନିଜ ମୃତ୍ୟୁ ବିଷୟରେ ଯୀଶୁଙ୍କ ଭବିଷ୍ୟଦ୍‌ବାଣୀ

୨୧ସେ ସମୟରୁ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ କହିବାକୁ
ଲାଗିଲେ ଯେ ସେ ନିଶ୍ଚିତ ଭାବରେ ଯିରୂଶାଲମକୁ ଯିବେ।
ସେଠାରେ ଯିହୂଦୀ ନେତା, ପ୍ରମୁଖ ଯାଜକ ଓ ଧର୍ମ-ଶାସ୍ତ୍ରୀମାନଙ୍କ
ଦ୍ୱାରା ସେ ଅନେକ ଯାତନା ପାଇବେ ଓ ବଧକରି
ଦିଆଯିବେ। ସେ ମୃତ୍ୟୁରୁ ତୃତୀୟ ଦିନ ପୁନର୍ଜୀବିତ
ହେବେ।
୨୨ତା’ପରେ ପିତର ଯୀଶୁଙ୍କୁ ଗୋଟିଏ ପାଖକୁ ଏକୁଟିଆ
ଡାକିନେଲେ ଓ ତାହାଙ୍କୁ ସମାଲୋଚନା କରି କହିଲେ,
“ହେ ପ୍ରଭୁ! ପରମେଶ୍ୱର ଆପଣଙ୍କ ଉପରେ ଦୟା
କରନ୍ତୁ। ଆପଣଙ୍କ ପାଇଁ ଏସବୁ ଘଟଣା ନ ଘଟୁ।”
୨୩ଯୀଶୁ ବୁଲିପଡ଼ି ପିତରଙ୍କୁ କହିଲେ, “ଶୟତାନ! ମୋ
ପାଖରୁ ଚାଲିଯାଅ। ତୁମ୍ଭେ ମୋ ପାଇଁ ଗୋଟିଏ ବିଘ୍ନ।
ତୁମ୍ଭେ ପରମେଶ୍ୱରଙ୍କ ନିୟମକୁ ଖାତିର୍ କରୁନାହିଁ। ଲୋକମାନେ
ଯାହାକୁ ମହତ୍ତ୍ୱପୂର୍ଣ୍ଣ ବୋଲି ଭାବନ୍ତି, ତୁମ୍ଭେମାନେ ମଧ୍ୟ
ସେହିଭଳି ଭାବୁଛ।”

---

**ଯୁନୁସଙ୍କ ଚିହ୍ନ** ଯୀଶୁ ସମାଧି ମଧ୍ୟରେ ତିନିଦିନ ରହିବା ଭଳି ୟୁନସ୍ ଗୋଟିଏ ବଡ ମାଛର ପେଟରେ ତିନିଦିନ ରହିଥିଲେ।

**ମନୁଷ୍ୟପୁତ୍ର** ଅର୍ଥାତ୍ ଯୀଶୁ। ଲୋକଙ୍କୁ ରକ୍ଷା କରିବା ସକାଶେ ପରମେଶ୍ୱର ତାଙ୍କୁ ମନୋନୀତ କରିଥିଲେ।

**ଏଲିୟ** ପ୍ରାୟ ୮୫୦ ଖ୍ରୀପୂ ସମୟରେ ପରମେଶ୍ୱରଙ୍କ ପାଇଁ କହୁଥିବା ବ୍ୟକ୍ତି।

**ଯିରିମିୟ** ପ୍ରାୟ ୬୦୦ ଖ୍ରୀ,ପୂ, ସମୟରେ ପରମେଶ୍ୱରଙ୍କ ପାଇଁ କହୁଥିବା ବ୍ୟକ୍ତି।

**ଭବିଷ୍ୟଦ୍‌ବକ୍ତା** ଯେଉଁମାନେ ପରମେଶ୍ୱରଙ୍କ ପାଇଁ କହନ୍ତି।

**ପିତର** ଗ୍ରୀକ୍ ନାମ, ଅର୍ଥାତ୍ ପଥର

**ମୃତ୍ୟୁଶକ୍ତି** ମୃତ୍ୟୁର ଦ୍ୱାର

୨୪ତା'ପରେ ଯୀଶୁ ତାହାଙ୍କର ଶିଷ୍ୟମାନଙ୍କୁ କହଲେ,
"ଯଦ କେହ ଲୋକ ମୋର ଅନୁସରଣ କରବାକୁ ଇଛା
କରୁଛ ତେବେ ସେ ନଜ ବଷୟରେ ଭୁଲଯାଉ। ସେ
ଲୋକକୁ ଦଆଯାଇଥିବା ଯାତନାର କ୍ରୁଶ ବହନ କରୁ।
ତା'ପରେ ସେ ମୋର ଅନୁସରଣ କରବା ଉଚତ।
୨୫ଯେଉଁଲୋକ ତା ନଜ ଜୀବନ ରକ୍ଷା କରବାକୁ ଚାହୁଁଥିବ,
ସେ ଏହାକୁ ହରେଇ ବସିବ। ମୋ ପାଇଁ ଜୀବନ
ଦେଉଥିବା ପ୍ରତ୍ୟେକ ଲୋକ ଏହାକୁ ରକ୍ଷା କରବ। ୨୬ଯଦ
ଜଣେ ଲୋକ ନଜ ଆତ୍ମାକୁ ହରେଇ ସାରା ସଂସାର ପାଏ,
ତେବେ ସେଥିରେ ତାହାର କ ଲାଭ ହେବ? ନଜର
ଆତ୍ମାକୁ ଥରେ ହରେଇ ପୁଣି ଥରେ କଣିବା ପାଇଁ କେହ
କେବେହେଲେ ଯଥେଷ୍ଟ ଧନ ଦେଇ ପାରବନାହିଁ।
୨୭ମନୁଷ୍ୟପୁତ୍ର ନଜର ପିତାହାଙ୍କ ମହମା ସହତ ତାହାଙ୍କର
ସ୍ୱର୍ଗଦୂତମାନଙ୍କ ସଙ୍ଗେ ଆସିବେ। ସେ ସମୟରେ ମନୁଷ୍ୟପୁତ୍ର
ପ୍ରତ୍ୟେକ ଲୋକକୁ ତାର କର୍ମ ଅନୁସାରେ ଫଳ ଦେବେ।
୨୮ମୁଁ ତୁମ୍ଭକୁ ସତ୍ୟ କହୁଛ। ଏଠାରେ କେତେକ ଲୋକ
ଠିଆ ହୋଇଛନ୍ତ, ଯେଉଁମାନେ ସେମାନଙ୍କ ମୃତ୍ୟୁ ପୂର୍ବରୁ
ମନୁଷ୍ୟପୁତ୍ରଙ୍କୁ ତାହାଙ୍କ ରାଜ୍ୟ ସହତ ଆସୁଥିବାର ଦେଖିବେ।"

## ମୋଶା ଓ ଏଲୀୟଙ୍କ ସହତ ଯୀଶୁ

୧୭ ଛଅ ଦନ ପରେ ଯୀଶୁ ପିତର, ଯାକୁବ ଓ
ତାହାଙ୍କର ଭାଇ ଯୋହନଙ୍କୁ ସାଙ୍ଗରେ ନେଲେ,
ଓ ଗୋଟିଏ ଉଚ୍ଚ ପର୍ବତ ଉପରକୁ ଗଲେ। ସେଠାରେ
ସେମାନେ ସମସ୍ତେ ଥିଲେ। ୨ସେମାନଙ୍କ ଆଗରେ ଯୀଶୁଙ୍କ
ସ୍ୱରୂପ ବଦଳଗଲା। ତାହାଙ୍କର ମୁହଁ ସୂର୍ଯ୍ୟ ଭଳ ଝଲସି
ଉଠିଲା। ତାହାଙ୍କର ପୋଷାକ ଆଲୋକ ଭଳ ଧଳା
ଦେଖାଗଲା। ୩ହଠାତ୍ ସେ ସ୍ଥାନରେ ଦୁଇଜଣ ବ୍ୟକ୍ତ ଆସି
ଯୀଶୁଙ୍କ ସହତ କଥାବାର୍ତ୍ତା ହେଲେ। ସେମାନେ ଏଲୀୟ ଓ
ମୋଶା* ଥିଲେ।
୪ଏହା ଦେଖି ପିତର ଯୀଶୁଙ୍କୁ କହଲେ, "ହେ ପ୍ରଭୁ,
ଭଲ ହେଲା ଯେ, ଆମ୍ଭେ ଏଠାରେ ଅଛୁ। ଆପଣ ଚାହିଁଲେ
ମୁଁ ଏଠାରେ ତିନୋଟି ତମ୍ବୁ ଟାଣିଦେବ। ସେଥିରୁ ଗୋଟିଏ
ଆପଣଙ୍କ ପାଇଁ, ଗୋଟିଏ ମୋଶାଙ୍କ ପାଇଁ, ଓ ଅନ୍ୟଟି
ଏଲୀୟଙ୍କ ପାଇଁ।"
୫ପିତର ଏକଥା କହୁଥିବା ବେଳେ ଗୋଟିଏ ଉଜ୍ଜ୍ୱଳ
ମେଘଖଣ୍ଡ ଆସି ସେମାନଙ୍କୁ ଢାଙ୍କି ଦେଲା। ମେଘମଧ୍ୟରୁ
ଆକାଶ-ବାଣୀ ହେଲା, "ଏ ହେଉଛନ୍ତ ମୋର ପୁତ୍ର ଯାହାଙ୍କୁ
ମୁଁ ପ୍ରେମ କରେ। ତାହାଙ୍କ ଉପରେ ମୁଁ ବହୁତ ସନ୍ତୁଷ୍ଟ।
ତୁମ୍ଭେ ତାହାଙ୍କ କଥା ମାନ,"
୬ଯୀଶୁଙ୍କ ଶିଷ୍ୟମାନେ ଏକଥା ଶୁଣି ଅଧିକ ଭୟଭୀତ
ହୋଇ ପଡଲେ। ସେମାନେ ଭୂଇଁ ଉପରେ ପଡଗଲେ।
୭ଯୀଶୁ ଶିଷ୍ୟମାନଙ୍କ ପାଖକୁ ଆସି ସେମାନଙ୍କୁ ଛୁଇଁ
ଦେଲେ। ଯୀଶୁ କହଲେ, "ଠିଆ ହୁଅ। ଭୟ କର
ନାହିଁ।" ୮ଶିଷ୍ୟମାନେ ଉପରକୁ ଚାହିଁଲେ। ସେମାନେ
ଯୀଶୁଙ୍କ ଛଡ଼ା ଆଉ କାହାରକୁ ଦେଖିଲେ ନାହିଁ।
୯ଯୀଶୁ ଓ ଶିଷ୍ୟମାନେ ପର୍ବତ ଉପରୁ ତଳକୁ ଓହ୍ଲାଉଥିଲେ।
ଯୀଶୁ ଶିଷ୍ୟମାନଙ୍କୁ ଆଦେଶ ଦେଲେ, "ପର୍ବତ ଉପରେ
ତୁମ୍ଭେମାନେ ଯାହାସବୁ ଦେଖିଲ, ତାହା କାହାକୁ କହବ
ନାହିଁ। ମନୁଷ୍ୟପୁତ୍ର ମୃତ୍ୟୁରୁ ପୁନର୍ଜୀବତ ହେବା ପର୍ଯ୍ୟନ୍ତ
ଅପେକ୍ଷା କର। ତା'ପରେ ତୁମ୍ଭେ ଯାହା ସବୁ ଦେଖିଛ,
ତାହା ଲୋକଙ୍କ ଆଗରେ କହପାର।"
୧୦ଯୀଶୁଙ୍କୁ ଶିଷ୍ୟମାନେ ପଚାରଲେ, "ତେବେ ଧର୍ମ-
ଶାସ୍ତ୍ରୀମାନେ କାହିଁକ କହୁଛନ୍ତ ଯେ ଖ୍ରୀଷ୍ଟଙ୍କ ପୂର୍ବରୁ ପ୍ରଥମେ
ଏଲୀୟ ନଶ୍ଚୟ ଆସିବେ?"
୧୧ଯୀଶୁ ଉତ୍ତର ଦେଲେ, "ସେମାନେ ଠିକ୍ କହୁଛନ୍ତ
ଯେ ଏଲୀୟ ଆସୁଛନ୍ତ, ସେ ପ୍ରତ୍ୟେକ ବସ୍ତୁକୁ ଠିକ୍
କ୍ରମରେ ରଖିବେ। ୧୨କନ୍ତୁ ମୁଁ ତୁମ୍ଭକୁ କହ ଦେଉଛ ଯେ
ଏଲୀୟ ଆସି ସାରଛନ୍ତ। ଲୋକମାନେ ତାହାଙ୍କୁ ଚହ୍ନି
ପାରଲେ ନାହିଁ। ଲୋକମାନେ ଯାହା ଇଛାକଲେ, ତାହାଙ୍କୁ
ସେହ ପ୍ରକାର ବ୍ୟବହାର କଲେ। ସେହଭଳ ମନୁଷ୍ୟ-ପୁତ୍ର
ମଧ ସେମାନଙ୍କଠାରୁ ସେହ ପ୍ରକାର ଯାତନା ଭୋଗ
କରବେ।" ୧୩ତାପରେ ତାହାଙ୍କର ଶିଷ୍ୟମାନେ ବୁଝି ପାରଲେ
ଯେ ଯୀଶୁ ଯେଉଁ ବାପ୍ତିଜକ ଯୋହନଙ୍କ ବଷୟରେ
ସେମାନଙ୍କୁ କହଥିଲେ, ସେ ପ୍ରକୃତରେ ଏଲୀୟ।

## ଯୀଶୁ ଗୋଟିଏ ଅସୁସ୍ଥ ବାଳକକୁ ସୁସ୍ଥ କରଦେଲେ

୧୪ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଲୋକମାନଙ୍କ ପାଖକୁ
ଫେର ଆସିଲେ। ଗୋଟିଏ ଲୋକ ଯୀଶୁଙ୍କ ପାଖକୁ ଆସି
ତାହାଙ୍କ ଆଗରେ ଆଣ୍ଠୁ ମାଡ଼ି ପଡ଼ଗଲା। ୧୫ସେ କହଲା,
"ପ୍ରଭୁ, ମୋର ପୁଅ ଉପରେ ଦୟା କର। ସେ ମୃଗୀ
ରୋଗରେ ବଡ଼ କଷ୍ଟ ପାଉଛ। ଅନେକ ସମୟରେ ସେ
ନଆଁରେ କମ୍ବା ପାଣିରେ ପଡ଼ ଯାଉଛ। ୧୬ମୁଁ ତାକୁ ତୁମ୍ଭ
ଶିଷ୍ୟମାନଙ୍କ ପାଖକୁ ଆଣିଥିଲ। କନ୍ତୁ ସେମାନେ ତାକୁ
ସୁସ୍ଥ କର ପାରଲେନାହିଁ।"
୧୭ଯୀଶୁ କହଲେ, "ତୁମ୍ଭମାନଙ୍କର ବଶ୍ୱାସ ନାହିଁ।
ତୁମ୍ଭେମାନେ ମନ୍ଦ ଜୀବନ କାଟୁଛ। ମୁଁ ଆଉ କେତେଦନ
ତୁମ୍ଭମାନଙ୍କ ସହତ ରହବ? କେତେ ସମୟ ପର୍ଯ୍ୟନ୍ତ
ମୋର ଧୈର୍ଯ୍ୟ ରହବ? ସେ ପିଲାଟିକୁ ମୋ ପାଖକୁ
ଆଣ।" ୧୮ତା'ପରେ ଯୀଶୁ ପିଲାଟିର ଦେହ ଭିତରେ
ରହଥିବା ଭୂତଟିକୁ କଠୋର ଆଦେଶ ଦେଲେ। ଭୂତଟି
ତା' ଦେହରୁ ବାହାର ଆସିଲା। ସେହ ମୁହୂର୍ତ୍ତରେ ପିଲାଟି
ସୁସ୍ଥ ହୋଇଗଲା।
୧୯ତା'ପରେ ଯୀଶୁଙ୍କ ଶିଷ୍ୟମାନେ ତାହାଙ୍କୁ ନରୋଳାରେ
ଭେଟି ପଚାରଲେ, "ଆମେମାନେ ଭୂତକୁ ତଡଦେବାକୁ
କାହିଁକ ସକ୍ଷମ ହୋଇ ପାରଲୁନାହିଁ?"
୨୦ଯୀଶୁ କହଲେ, "ତାହା କେବଳ ତୁମ୍ଭର ଅଳ୍ପ
ବଶ୍ୱାସର ଯୋଗୁ ହେଲା। ମୁଁ ତୁମ୍ଭକୁ ସତ୍ୟ କହୁଛ।
ତୁମ୍ଭର ଯଦ ଗୋଟିଏ ସୋରଷ ଦାନା ପରମାଣର ମଧ
ବଶ୍ୱାସ ଅଛ, ତେବେ ତୁମ୍ଭେ ଏହ ପର୍ବତକୁ କହପାରବ,
'ଏ ଜାଗାରୁ ସେ ଜାଗାକୁ ଚାଲଯାଅ,' ଏବଂ ପର୍ବତ

---

**ଏଲୀୟ ଓ ମୋଶା** ଅତୀତର ଦୁଇଜଣ ବଶିଷ୍ଟ ଯିହୁଦୀ ନେତା

ଚାଲିଯିବ। ତୁମ୍ଭପାଇଁ କିଛି ଅସମ୍ଭବ ହୋଇ ରହିବନାହିଁ।
୨୧(ଏହିଭଳି ଭୂତମାନେ କେବଳ ଉପବାସ ଓ ପ୍ରାର୍ଥନା
ଦ୍ୱାରା ବାହାରି ଯାଇ ଥାଆନ୍ତି।)*

### ନିଜ ମୃତ୍ୟୁ ବିଷୟରେ ଯୀଶୁ କହନ୍ତି

୨୨ତା'ପରେ ଗାଲିଲୀରେ ଶିଷ୍ୟମାନେ ଏକାଠି ହେବାପରେ,
ଯୀଶୁ ସେମାନଙ୍କୁ କହିଲେ, "ମନୁଷ୍ୟପୁତ୍ରଙ୍କୁ ମନୁଷ୍ୟମାନେ
ହିଁ ଧରିନେବେ। ୨୩ସେମାନେ ତାହାଙ୍କୁ ମାରିଦେବେ। କିନ୍ତୁ
ସେ ମୃତ୍ୟୁରୁ ତୃତୀୟ ଦିନ ବଞ୍ଚି ଉଠିବେ।" ଯୀଶୁଙ୍କୁ ମାରି
ଦିଆଯିବ ବୋଲି ଖବର ଶୁଣି ତାହାଙ୍କ ଶିଷ୍ୟମାନେ ବହୁତ
ମନଦୁଃଖ କଲେ।

### କର ଦେବା ବିଷୟରେ ଯୀଶୁଙ୍କ ଉପଦେଶ

୨୪ଯୀଶୁ ଓ ତାହାଙ୍କ ଶିଷ୍ୟମାନେ କଫର୍ନାହୂମକୁ ଗଲେ।
କଫର୍ନାହୂମରେ କେତେକ ଲୋକ ପିତରଙ୍କ ପାଖକୁ ଆସିଲେ।
ଯେଉଁମାନେ ମନ୍ଦିରର କର ଆଦାୟ କରନ୍ତି, ସେମାନେ
ସେହି ଲୋକ ଥିଲେ। ସେମାନେ ପଚାରିଲେ, "ତୁମ୍ଭର
ଗୁରୁ ମନ୍ଦିରର 'ଦୁଇ-ଡ୍ରକ୍‌ମା' କର* ଦିଅନ୍ତି କି?"
୨୫ପିତର ଉତ୍ତର ଦେଲେ, "ହଁ, ସେ ଦିଅନ୍ତି।"
ପିତର ଘର ଭିତରକୁ ଗଲେ। ସେଠାରେ ଯୀଶୁ
ଥିଲେ। ପିତର କିଛି କହିବା ପୂର୍ବରୁ ଯୀଶୁ କହିଲେ,
"ପୃଥିବୀର ରାଜାମାନେ ଲୋକମାନଙ୍କଠାରୁ ଅନେକ ପ୍ରକାର
କର ଆଦାୟ କରିଥାନ୍ତି। କିନ୍ତୁ କେଉଁମାନେ ସେହି କର
ଦିଅନ୍ତି? ଏମାନେ କ'ଣ ରାଜାଙ୍କ ନିଜ ସନ୍ତାନ ସନ୍ତତି ନା
ଅନ୍ୟ-ମାନଙ୍କର ସନ୍ତାନ-ସନ୍ତତି? ତୁମ୍ଭେ କ'ଣ ଭାବୁଛ?"
୨୬ପିତର ଉତ୍ତର ଦେଲେ, "ରାଜାମାନେ ଅନ୍ୟମାନଙ୍କର
ସନ୍ତାନ-ସନ୍ତତିଙ୍କ ଠାରୁ କର ଆଦାୟ କରନ୍ତି।" ଯୀଶୁ
ତାହାଙ୍କୁ କହିଲେ, "ତାର ଅର୍ଥ ରାଜାଙ୍କ ସନ୍ତାନମାନଙ୍କୁ
କର ଦେବାକୁ ପଡ଼େ ନାହିଁ। ୨୭କିନ୍ତୁ ଏହି କର
ଆଦାୟକାରୀଙ୍କୁ ଆମ୍ଭେ କ୍ରୋଧିତ କରିବାନାହିଁ। ତେଣୁ କର
ଏହିଭଳି ଭାବରେ ଦେଇଦିଅ: ହ୍ରଦକୁ ଯାଅ। ତୁମ୍ଭର ମାଛ
ଧର। ତୁମ୍ଭେ ଧରିଥିବା ପ୍ରଥମ ମାଛଟି ଆଣ। ତାର ପାଟି
ଖୋଲ। ତା ପାଟିରୁ ତୁମ୍ଭେ ଚାରିଟି ରୌପ୍ୟ ମୁଦ୍ରା ପାଇବ।
ସେ ମୁଦ୍ରାଗୁଡ଼ିକୁ ଆଣି ମୋ ପାଇଁ ଓ ତୁମ୍ଭ ପାଇଁ
ଟିକସ-ଆଦାୟକାରୀଙ୍କୁ ଦେଇଦିଅ।"

### ସବୁଠାରୁ ଶ୍ରେଷ୍ଠ କିଏ

୧୮ ସେହି ସମୟରେ ଶିଷ୍ୟମାନେ ଯୀଶୁଙ୍କ ନିକଟକୁ
ଆସି ପଚାରିଲେ, "ସ୍ୱର୍ଗରାଜ୍ୟରେ ସବୁଠାରୁ
ଶ୍ରେଷ୍ଠ କିଏ?"
୨ଯୀଶୁ ଗୋଟିଏ ଛୋଟ ପିଲାକୁ ପାଖକୁ ଡାକିଲେ। ସେ
ପିଲାକୁ ଶିଷ୍ୟମାନଙ୍କ ଆଗରେ ଠିଆ କରାଇଲେ। ୩ତା'ପରେ
ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି। ତୁମ୍ଭେ ନିଜକୁ
ପରିବର୍ତ୍ତନ କର। ହୃଦୟ ଭିତରେ ଗୋଟିଏ ଛୋଟ
ପିଲାଭଳି ହୋଇଯାଅ। ଏକଥା ନକଲେ ତୁମ୍ଭେ ସ୍ୱର୍ଗରାଜ୍ୟରେ
କଦାପି ପ୍ରବେଶ କରିପାରିବ ନାହିଁ। ୪ଯେଉଁ ଲୋକ ନିଜକୁ
ଗୋଟିଏ ଛୋଟ ପିଲା ଭଳି ନମ୍ର କରିଥାଏ, ସେହି ଲୋକ
ସ୍ୱର୍ଗରାଜ୍ୟରେ ସବୁଠାରୁ ଶ୍ରେଷ୍ଠ।
୫"ଯେଉଁଲୋକ ମୋ ନାମରେ ଏହିଭଳି ଗୋଟିଏ
ଛୋଟ ପିଲାକୁ ଗ୍ରହଣ କରେ, ସେ ମୋତେ ଗ୍ରହଣ
କରେ। ୬କିନ୍ତୁ ମୋଠାରେ ବିଶ୍ୱାସ ରଖିଥିବା ଏହି ନମ୍ର
ଛୋଟ ପିଲାମାନଙ୍କ ମଧ୍ୟରୁ କାହାରିକୁ ପାପ ପଥରେ ଯଦି
କେହି ଟାଣିନିଏ, ତାହାହେଲେ ସେହି ଲୋକର ବେକରେ
ଗୋଟିଏ ଚକି ପଥର ବାନ୍ଧି ଗଭୀର ସମୁଦ୍ରରେ ତାକୁ
ବୁଡ଼େଇ ଦିଆଗଲେ ଭଲ ହୁଅନ୍ତା। ୭ଏହି ପୃଥିବୀରେ ପାପ
କରୁଥିବା ଲୋକମାନଙ୍କ ପାଇଁ ମୁଁ ଦୁଃଖ ଅନୁଭବ କରୁଛି।
ଏସବୁ ଘଟଣା ନିଶ୍ଚୟ ଘଟିବ। କିନ୍ତୁ ଯେଉଁ ଲୋକ ଏସବୁ
ଘଟଣା ଘଟିବାର କାରଣ ହୁଏ, ତାହା ପାଇଁ ଏହା ବହୁତ
ଖରାପ ହେବ। ୮ଯଦି ତୁମ୍ଭର ହାତ କିମ୍ବା ପାଦ ତୁମ୍ଭ ପାଇଁ
ପାପର କାରଣ ହୁଏ, ତେବେ ତାକୁ କାଟି ଫିଙ୍ଗିଦିଅ।
ଦୁଇହାତ ଓ ଦୁଇଗୋଡ଼ ଥାଇ ଚିରକାଳ ଜଳୁଥିବା
ନରକର ନିଆଁରେ ତୁମ୍ଭକୁ ଫିଙ୍ଗି ଦିଆଯିବା ଅପେକ୍ଷା ବରଂ
ହାତ କିମ୍ବା ଗୋଡ ନଥାଇ ଅନନ୍ତଜୀବନ ମଧ୍ୟରେ ପ୍ରବେଶ
କରିବା ତୁମ୍ଭ ପାଇଁ ଭଲ। ୯ଯଦି ତୁମ୍ଭର ଆଖିଟିଏ
ତୁମ୍ଭପାଇଁ ପାପର କାରଣ ହୁଏ ତେବେ ତାକୁ କାଢ଼ି
ଫିଙ୍ଗିଦିଅ। ତୁମ୍ଭର ଦୁଇଟି ଯାକ ଆଖି ଥାଇ ତୁମ୍ଭକୁ
ନରକର ନିଆଁରେ ଫିଙ୍ଗି ଦିଆଯିବା ଅପେକ୍ଷା ଗୋଟିଏ ଆଖି
ଥାଇ ଅନନ୍ତଜୀବନ ଲାଭ କରିବା ତୁମ୍ଭ ପାଇଁ ଭଲ।

### ଯୀଶୁ ହଜିଥିବା ମେଣ୍ଢାର ଦୃଷ୍ଟାନ୍ତ କହିଲେ

୧୦"ସାବଧାନ ଏହି ଛୋଟ ପିଲାମାନଙ୍କ ମଧ୍ୟରୁ କାହାରିକୁ
ତୁଚ୍ଛ ମନେ କରନାହିଁ। ଏହି ପିଲାମାନଙ୍କ ପାଇଁ ସ୍ୱର୍ଗରେ
ଦୂତମାନେ ଅଛନ୍ତି। ଏବଂ ସେହି ଦୂତମାନେ ସ୍ୱର୍ଗରେ
ମୋର ପରମପିତାଙ୍କ ସହିତ ସଦାସର୍ବଦା ଅଛନ୍ତି। ୧୧ଯେଉଁମାନେ
ହଜିଯାଇଛନ୍ତି ମନୁଷ୍ୟ-ପୁତ୍ର ସେମାନଙ୍କୁ ଉଦ୍ଧାର କରିବା
ପାଇଁ ଆସିଛନ୍ତି।*
୧୨"ଯଦି କୌଣସି ଲୋକର ଶହେଟି ମେଣ୍ଢା ଥାଆନ୍ତି,
କିନ୍ତୁ ସେଥିରୁ ଗୋଟିଏ ହଜିଯାଏ, ତେବେ ସେହି ଲୋକଟି
ତାର ବାକି ଅନେଶ୍ୱତ ମେଣ୍ଢାଙ୍କୁ ପାହାଡ ଉପରେ ଛାଡିଦେଇ
ହଜିଯାଇଥିବା ମେଣ୍ଢାକୁ ଖୋଜିବାକୁ ଯିବନାହିଁ କି? ତୁମ୍ଭେ
କଣ ଭାବ? ୧୩ମୁଁ ତୁମ୍ଭକୁ ସତ୍ୟ କହୁଛି। ଯଦି ସେ
ମେଣ୍ଢାଟି ଖୋଜି ପାଇଯାଏ ତେବେ ନହଜିଥିବା ଅନେଶ୍ୱତ
ମେଣ୍ଢାଙ୍କ ଅପେକ୍ଷା ମିଳିଯାଇଥିବା ମେଣ୍ଢା ପାଇଁ ସେ ଅଧିକ
ଖୁସି ହେବ। ୧୪ଠିକ୍ ସେହିଭଳି ସ୍ୱର୍ଗରେ ରହୁଥିବା ତୁମ୍ଭର
ପରମପିତା ଏହିଭଳି ଛୋଟ ପିଲାମାନଙ୍କ ମଧ୍ୟରୁ କେହି
ଜଣେ ହେଲେ ହଜିଯିବା ଚାହାନ୍ତିନାହିଁ।

---

**ପଦସଂଖ୍ୟା ୨୧** କେତେକ ଗ୍ରୀକ୍ ପ୍ରତିରେ ଏହିଭଳି ଭାବରେ ପଦଟିର ଉଲ୍ଲେଖ ରହିଛି।

**"ଦୁଇ-ଡ୍ରକ୍‌ମା" କର** ଯିହୁଦୀମାନେ ମନ୍ଦିର ପାଇଁ ବର୍ଷକୁ ଥରେ ଦେଉଥିବା ଏକ ଟିକସ।

**ପଦସଂଖ୍ୟା ୧୧** ଏହା କେତେକ ଗ୍ରୀକ୍ ପ୍ରତୀକରେ ମିଳେ।

### ଯେତେବେଳେ ଜଣେ ଭୁଲ କରେ

୧୫"ତୁମ୍ଭର କେହି ଭାଇ ଯଦି ତୁମ୍ଭ ବିରୁଦ୍ଧରେ ଭୁଲ
କାମ କରେ, ତେବେ ସେ ଏକାକୀ ଥିବାବେଳେ ତା'
ନିକଟକୁ ଯାଇ ତାର ଭୁଲ ବିଷୟରେ କୁହ। ଯଦି
ସେ ତୁମ୍ଭ କଥା ଶୁଣେ, ତେବେ ତୁମ୍ଭେ ତାକୁ ପୁଣି ଥରେ
ତୁମ୍ଭର ଭାଇ ହୋଇ ରହିବାକୁ ସାହାଯ୍ୟ କଲ। ୧୬ଯଦି
ସେ ଲୋକ କିଛି ଶୁଣିବାକୁ ମନା କରିଦିଏ ତେବେ ଜଣେ
ବା ଦୁଇ ଜଣ ଲୋକଙ୍କୁ ନେଇ ପୁଣି ଥରେ ତା' ପାଖକୁ
ଯାଅ। ତେବେ ଯାହା କିଛି କୁହା ଯାଇଛି, ଦୁଇ ବା
ତିନିଜଣ ସାକ୍ଷୀଙ୍କ ଦ୍ୱାରା ତାହା ସମର୍ଥିତ ହେବ। ୧୭ଯଦି
ସେ ଲୋକ ସେମାନଙ୍କ କଥା ମଧ୍ୟ ଶୁଣିବାକୁ ମନା
କରିଦିଏ, ତେବେ ମଣ୍ଡଳୀକୁ କୁହ। ଯଦି ସେ ଲୋକ
ମଣ୍ଡଳୀ କଥା ନ ଶୁଣେ, ତେବେ ପରମେଶ୍ୱରଙ୍କୁ ବିଶ୍ୱାସ
କରୁ ନଥିବା ଲୋକ, କିମ୍ବା ଜଣେ କର-ଆଦାୟକାରୀକୁ
ଯେଭଳି ବ୍ୟବହାର କରାଯାଏ, ତାହାକୁ ସେହିଭଳି ବ୍ୟବହାର
କର।

୧୮"ମୁଁ ତୁମ୍ଭକୁ ସତ୍ୟ କହୁଛି ଯେ ତୁମ୍ଭେ ଏ ସଂସାରରେ
ଯାହା ସବୁ ବନ୍ଦ କରିବ ତାହା ପରମେଶ୍ୱରଙ୍କ ଦ୍ୱାରା ବନ୍ଦ
ହେବ। ତୁମ୍ଭେ ଏ ସଂସାରରେ ଯେତେବେଳେ କ୍ଷମା
ଦେବାପାଇଁ ପ୍ରତିଶ୍ରୁତି ଦେବ, ସେହି କ୍ଷମା ମଧ୍ୟ ପରମେଶ୍ୱରଙ୍କ
କ୍ଷମା ହେବ। ୧୯ମୁଁ ତୁମ୍ଭକୁ ପୁଣି କହୁଛି ଯେ, ଏ
ଜଗତରେ ଯଦି ତୁମ୍ଭ ଭିତରୁ କେହି ଦୁଇଜଣ ଏକମତ
ହୋଇ ସ୍ୱର୍ଗରେ ରହୁଥିବା ମୋର ପରମପିତାଙ୍କୁ କିଛି
ମାଗିବେ, ତେବେ ସେ ତାହା ତୁମ୍ଭ ପାଇଁ ପୂରଣ
କରିଦେବେ। ୨୦ଏକଥା ସତ୍ୟ। କାରଣ ଯେଉଁଠାରେ, ମୋ
ନାମରେ ବିଶ୍ୱାସ କରୁଥିବା ଦୁଇତିନି ଜଣ ଲୋକ ଏକାଠି
ହୁଅନ୍ତି, ମୁଁ ସେଠାରେ ସେମାନଙ୍କ ସହିତ ଅଛି।"

### ପାପକ୍ଷମାର କାହାଣୀ

୨୧ତା'ପରେ ପିତର ଯୀଶୁଙ୍କ ପାଖକୁ ଯାଇ ପଚାରିଲେ,
"ପ୍ରଭୁ, ମୋ ଭାଇ ଯଦି ମୋ ନିକଟରେ ବାରମ୍ବାର
ଅପରାଧ କରେ, ତେବେ ମୁଁ ତାକୁ କେତେଥର ପର୍ଯ୍ୟନ୍ତ
କ୍ଷମା ଦେବି? ମୁଁ କ'ଣ ତାକୁ ସାତଥର ପର୍ଯ୍ୟନ୍ତ କ୍ଷମା
ଦେବି?"

୨୨ଯୀଶୁ, କହିଲେ, "ମୁଁ କହୁଛି, ତୁମ୍ଭେ ତାକୁ ନିଶ୍ଚିତ
ରୂପରେ ସାତଥର ଠାରୁ ଅଧିକ ଥର କ୍ଷମା କରିବା
ଉଚିତ। ଏପରିକି ଯଦି ସେ ସାତଗୁଣ ସତୁରି* ଥର
ପର୍ଯ୍ୟନ୍ତ ମଧ୍ୟ ତୁମ୍ଭ ପ୍ରତି ଅପରାଧ କରେ, ତେବେ ମଧ୍ୟ
ତୁମ୍ଭେ କ୍ଷମା ଦେବା ଜାରି ରଖ।"

୨୩"ନିଜ ଚାକରମାନଙ୍କଠାରୁ ଉଧାର ଥିବା ଟଙ୍କା ପଇସାର
ଆଦାୟ ପାଇଁ ମନସ୍ଥ କରିଥିବା ଜଣେ ରାଜାଙ୍କ ସହିତ
ସ୍ୱର୍ଗରାଜ୍ୟର ତୁଳନା କରା ଯାଇପାରେ। ୨୪ରାଜା ତାହାଙ୍କ
ଟଙ୍କା ଆଦାୟ କରିବା ଆରମ୍ଭ କରିଦେଲେ। ତାହାଙ୍କର
ଜଣେ ଚାକର ଉପରେ ଦଶ ହଜାର ରୌପ୍ୟମୁଦ୍ରା ବାକି
ଥିଲା। ୨୫ରାଜାଙ୍କୁ ଋଣ ପରିଶୋଧ କରିବା ପାଇଁ ଚାକର
ପାଖରେ କିଛି ହେଲେ ନଥିଲା। ରାଜା ଆଦେଶ ଦେଲେ
ଯେ, ଚାକରର ସବୁ ଜିନିଷ ଏପରିକି ତାର ସ୍ତ୍ରୀ ଓ
ପିଲାପିଲିଙ୍କୁ ବିକ୍ରି କରିଦେଇ ଋଣ ପରିଶୋଧ କରାଯିବ।

୨୬"ଚାକରଟି ରାଜାଙ୍କ ଆଗରେ ଆଣ୍ଠୁ ମାଡ଼ି ବସି
ପଡ଼ିଲା। ସେ ପ୍ରାର୍ଥନା କଲା, 'ଆପଣ ମୋ ପାଇଁ
ଧୈର୍ଯ୍ୟବାନ ହୁଅନ୍ତୁ। ମୁଁ ଆପଣଙ୍କର ସମସ୍ତ ଋଣ ପରିଶୋଧ
କରିଦେବି।' ୨୭ମାଲିକ ଏହାଶୁଣି ଚାକରଟି ପାଇଁ ଦୁଃଖ
ପ୍ରକାଶ କଲେ। ତେଣୁ ସେ ଚାକରର ଋଣ ଛାଡ଼
କରିଦେଇ ତାକୁ ଛାଡ଼ିଦେଲେ।

୨୮"ଚାକର ବାହାରୁଥିବା ସମୟରେ ରାସ୍ତାରେ ସେ
ତା'ର ଜଣେ ସଙ୍ଗୀ-ଚାକରକୁ ଦେଖିଲା। ସେ ଜଣକ
ତାଠାରୁ ଶହେ ମୁଦ୍ରା ଋଣ କରିଥିଲା। ପ୍ରଥମ ଚାକର
ଦ୍ୱିତୀୟ ଚାକରର ତଣ୍ଟି ଚିପି ଧରି କହିଲା, 'ମୋ ଠାରୁ
ଯେଉଁ ଋଣ ନେଇଛୁ, ତାହାକୁ ଶୁଝି ଦେ।'

୨୯"ତା'ପରେ ଦ୍ୱିତୀୟ ଚାକର ତା ନିକଟରେ ଆଣ୍ଠୁ
ମାଡ଼ି ବସି ପ୍ରାର୍ଥନା କଲା, 'ମୋ ପାଇଁ ଧୈର୍ଯ୍ୟ ଧର। ମୁଁ
ଯାହା ନେଇଛି ସବୁତକ ଶୁଝିଦେବି।'

୩୦"କିନ୍ତୁ ପ୍ରଥମ ଚାକର ଧୈର୍ଯ୍ୟ ଧରିବାକୁ ମନା କଲା।
କେବଳ ଏତିକି ନୁହେଁ, ସେ ବିଚାରପତିଙ୍କ ନିକଟକୁ ଯାଇ
ଦ୍ୱିତୀୟ ଚାକର ବିରୁଦ୍ଧରେ ଅଭିଯୋଗ ମଧ୍ୟ କଲା। ଦ୍ୱିତୀୟ
ଚାକରକୁ କାରାଗାରକୁ ପଠାଇ ଦିଆଗଲା। ଋଣ ପରିଶୋଧ
ନ କରିବା ପର୍ଯ୍ୟନ୍ତ ତାକୁ କାରାଗାରରେ ରହିବାକୁ ପଡ଼ିଲା।
୩୧ଅନ୍ୟ ଚାକରମାନେ ଏ ସମସ୍ତ ଘଟଣା ଦେଖିଲେ, ଓ
ବଡ଼ ଦୁଃଖିତ ହେଲେ। ତେଣୁ ଯାହା ସବୁ ଘଟିଥିଲା, ସେ
ସବୁ ସେମାନେ ସେମାନଙ୍କ ମାଲିକଙ୍କ ଆଗରେ ଯାଇ
କହିଲେ।

୩୨"ତାପରେ ମାଲିକ ପ୍ରଥମ ଚାକରକୁ ଡାକି କହିଲେ,
'ରେ ଦୁଷ୍ଟ ଚାକର! ତୁ ମୋଠାରୁ ବହୁତ ଅଧିକ ଧନ ଋଣ
କରିଥିଲୁ। କିନ୍ତୁ ତୁ ମୋତେ ଦୟା ଭିକ୍ଷା କରିଥିଲୁ। ଏଣୁ
ତୋର ସମସ୍ତ ଋଣ ମୁଁ ଛାଡ଼ କରିଦେଲି। ୩୩ମୁଁ ତୋତେ
ଯେଉଁଭଳି ଦୟା ଦେଖାଇଥିଲି, ତୁ କ'ଣ ତୋର ସଙ୍ଗୀ-ଚାକରକୁ
ସେହିଭଳି ଦୟା ଦେଖାଇ ନଥାନ୍ତୁ?' ୩୪ତା'ର ମାଲିକ ଖୁବ୍
ରାଗିଗଲେ। ଦଣ୍ଡ ଦେବା ପାଇଁ ସେ ଚାକରକୁ କାରାଗାରରେ
ରଖିଲେ। ସମସ୍ତ ଋଣ ପରିଶୋଧ କରା ନ ଯିବା ପର୍ଯ୍ୟନ୍ତ
ଚାକରଟିକୁ କାରାଗାରରେ ରହିବାକୁ ହେଲା।

୩୫"ମୋର ସ୍ୱର୍ଗୀୟ ପରମପିତା ତୁମ୍ଭକୁ ଯେ ଭଳି
ବ୍ୟବହାର ଦେଖାଇବେ, ଏହି ରାଜା ଚାକରକୁ ଠିକ୍
ସେହିଭଳି ବ୍ୟବହାର ଦେଖାଇଲେ। ଅତଏବ ତୁମ୍ଭେମାନେ
ନିଜ ଭାଇ ବା ଭଉଣୀକୁ ହୃଦୟରୁ କ୍ଷମା ଦେବ। ନଚେତ
ମୋର ସ୍ୱର୍ଗୀୟ ପିତା ତୁମ୍ଭମାନଙ୍କୁ କ୍ଷମା ଦେବେନାହିଁ।"

### ଯୀଶୁ ବିବାହ ବିଚ୍ଛେଦ ବିଷୟରେ ଶିକ୍ଷା ଦେଲେ

**୧୯** ଏସବୁ କଥା କହିସାରି ଯୀଶୁ ଗାଲିଲୀରୁ
ଫେରି ଯର୍ଦ୍ଦନ ନଦୀର ଅପର ପାର୍ଶ୍ୱରେ ଥିବା
ଯିହୂଦା ଅଞ୍ଚଳରେ ପହଞ୍ଚିଲେ। ୨ଅନେକ ଲୋକ ତାହାଙ୍କୁ

---

**ସାତଗୁଣ ସତୁରି** ଥରକୁ ସାତ-ସାତ କରି ସତୁରି ଥର ବୋଲି
ଅର୍ଥ ନିଆ ଯାଇପାରେ।

ଅନୁସରଣ କଲେ। ସେଠାରେ ଯୀଶୁ ରୋଗୀଲୋକମାନଙ୍କୁ
ସୁସ୍ଥ କଲେ।
୩କେତେକ ଫାରୂଶୀ ପରୀକ୍ଷା କରବା ପାଇଁ ତାହାଙ୍କ
ପାଖକୁ ଆସିଲେ। ସେମାନେ ପଚାରଲେ, "ଜଣେ ପୁରୁଷ
କୌଣସି କାରଣରୁ ତାର ସ୍ତ୍ରୀକୁ ଛାଡ଼ ଦେବା ନ୍ୟାୟସଙ୍ଗତ
କି?"
୪ଯୀଶୁ କହଲେ, "ତୁମ୍ଭେ ନଶ୍ଚୟ ଶାସ୍ତ୍ରରେ ପଢ଼ଛ ଯେ,
'ସୃଷ୍ଟିକର୍ତ୍ତା ମୂଳରୁ ଲୋକମାନଙ୍କୁ ସ୍ତ୍ରୀ ଓ ପୁରୁଷ ରୂପରେ
ସୃଷ୍ଟି କରଥିଲେ'?* ୫ପରମେଶ୍ୱର କହଲେ, 'ଏହ କାରଣରୁ
ପୁରୁଷ ନଜ ପିତା-ମାତାଙ୍କୁ ଛାଡ ତା ସ୍ତ୍ରୀ ସହତ ମିଳତ
ହେବ, ଏବଂ ସେ ଦୁଇଜଣ ଏକ ହୋଇଯିବେ।'* ୬ତେଣୁ
ସ୍ୱାମୀ-ସ୍ତ୍ରୀ ଦୁଇଜଣ ହୋଇ ରହନ୍ତ ନାହିଁ ମାତ୍ର ସେମାନେ
ଏକ ହୋଇ ଯାଆନ୍ତ। ପରମେଶ୍ୱର ସେମାନଙ୍କୁ ଏକାଠି
ଯୋଡଛନ୍ତ। ତେଣୁ କୌଣସି ଲୋକ ସେମାନଙ୍କୁ ଅଲଗା
ନ କରୁ।"
୭ଫାରୂଶୀମାନେ ପଚାରଲେ, "ତେବେ ଜଣେ ପୁରୁଷ
ଛାଡ଼ପତ୍ର ଲେଖି ନଜ ସ୍ତ୍ରୀକୁ ଛାଡ଼ ଦେଇ ପାରବ ବୋଲ
ମୋଶା କାହିଁକ ଆଦେଶ ଦେଇଛନ୍ତ?"
୮ଯୀଶୁ ସେମାନଙ୍କୁ କହଲେ, "ତୁମ୍ଭେମାନେ ପରମେଶ୍ୱରଙ୍କ
ଉପଦେଶ ଗ୍ରହଣ କରବାକୁ ମନା କରଥିବାରୁ ମୋଶା
ତୁମ୍ଭମାନଙ୍କୁ ନଜ ସ୍ତ୍ରୀକୁ ଛାଡ଼ପତ୍ର ଦେବାକୁ ଅନୁମତି
ଦେଇଛନ୍ତ। କନ୍ତୁ ପ୍ରଥମରୁ ଛାଡ଼ପତ୍ର ଦେବାପାଇଁ ଅନୁମତି
ଦଆଯାଇ ନଥିଲା। ୯ମୁଁ ତୁମ୍ଭମାନଙ୍କୁ କହ ରଖୁଛ ଯେ,
ଯଦ କୌଣସି ଲୋକ ନଜ ସ୍ତ୍ରୀକୁ ଛାଡପତ୍ର ଦେଇ
ଅନ୍ୟଜଣେ ସ୍ତ୍ରୀଲୋକକୁ ବବାହ କରେ, ତେବେ ସେ
ବ୍ୟଭିଚାର ପାପରେ ଦୋଷୀ ସାବ୍ୟସ୍ତ ହୁଏ। ଯଦ ପ୍ରଥମ
ସ୍ତ୍ରୀର ଅନ୍ୟ କୌଣସି ଲୋକ ସହତ ଯୌନ-ସମ୍ପର୍କ
ରହଥାଏ, ସେହ ଗୋଟିଏ କାରଣରୁ ଜଣେ ଲୋକ ନଜ
ସ୍ତ୍ରୀକୁ ଛାଡ଼ପତ୍ର ଦେଇ ପୁଣି ଥରେ ବବାହ କର
ପାରବ।"
୧୦ଶିଷ୍ୟମାନେ ଯୀଶୁଙ୍କୁ କହଲେ, "ଯଦ ଜଣେ ପୁରୁଷ
କେବଳ ଗୋଟିଏ ମାତ୍ର କାରଣ ପାଇଁ ନଜ ସ୍ତ୍ରୀକୁ
ଛାଡ଼ପତ୍ର ଦେଇ ପାରବ,ତେବେ ବବାହ ନ କରବା ବରଂ
ଭଲ।"
୧୧ଯୀଶୁ ଉତ୍ତର ଦେଲେ, "ବବାହ ସମ୍ବନ୍ଧରେ ଏହ
ଉପଦେଶ ପ୍ରତ୍ୟେକ ଲୋକ ଗ୍ରହଣ କର ପାରବେନାହିଁ।
ଯେଉଁମାନଙ୍କୁ ପରମେଶ୍ୱର ଏହ କ୍ଷମତା ଦେଇଛନ୍ତ, କେବଳ
ସେହମାନେ ଏହ ଉପଦେଶ ଗ୍ରହଣ କର ପାରବେ।
୧୨କେତେକ ଲୋକ କାହିଁକ ବବାହ କରପାରନ୍ତ ନାହିଁ,
ତାର ବଭିନ୍ନ କାରଣ ଅଛ। ମାତୃ-ଗର୍ଭରୁ କେତେକ
ଲୋକ ନପୁଂସକ ହୋଇ ଜନ୍ମ ହୋଇଥାନ୍ତ। କେତେକ
ଲୋକ ଅନ୍ୟମାନଙ୍କ ଦ୍ୱାରା ପରବର୍ତ୍ତୀ ସମୟରେ ନପୁଂସକ
ହୋଇଯାଇଥାନ୍ତ। ଆଉ କେତେକ ଲୋକ ସ୍ୱର୍ଗ-ରାଜ୍ୟ
ପାଇଁ ବବାହ କରନ ଥାଆନ୍ତ। କନ୍ତୁ ଯେଉଁଲୋକ ବବାହ
କରପାରବ, ସେ ବବାହ ସମ୍ବନ୍ଧୀୟ ଏହ ଉପଦେଶ ଗ୍ରହଣ
କରବା ଉଚତ*।"

### ଯୀଶୁ ପିଲାମାନଙ୍କୁ ଗ୍ରହଣ କଲେ

୧୩ତା'ପରେ ଲୋକମାନେ କେତେକ ପିଲାଙ୍କୁ ଯୀଶୁଙ୍କ
ପାଖକୁ ନେଇ ଆସିଲେ। ଯେପର ଯୀଶୁ ସେମାନଙ୍କ
ଉପରେ ଆପଣା ହାତ ରଖି ପାରବେ, ଓ ସେମାନଙ୍କ
ଲାଗି ପ୍ରାର୍ଥନା କରବେ। କନ୍ତୁ ଯୀଶୁଙ୍କ ଶିଷ୍ୟମାନେ
ଲୋକମାନଙ୍କୁ ଧମକ ଦେଇ ଯୀଶୁଙ୍କ ପାଖକୁ, ପିଲାମାନଙ୍କୁ
ନ ଆଣିବା ପାଇଁ କହଲେ। ୧୪ଯୀଶୁ କହଲେ, "ପିଲାମାନଙ୍କୁ
ମୋ ପାଖକୁ ଆସିବାକୁ ଦଅ। ସେମାନଙ୍କୁ ଅଟକାଅ ନାହିଁ।
କାରଣ ଯେଉଁମାନେ ଠିକ୍ ଏହ ପିଲାମାନଙ୍କ ଭଳ ଅଟନ୍ତ
ସ୍ୱର୍ଗରାଜ୍ୟ ସେହମାନଙ୍କର।" ୧୫ତା'ପରେ ଯୀଶୁ ତାହାଙ୍କର
ହାତ ସେହ ପିଲାମାନଙ୍କ ଉପରେ ରଖିଲେ ଏବଂ ସେଠାରୁ
ଚାଲଗଲେ।

### ଧନୀଲୋକ ଯୀଶୁଙ୍କୁ ଅନୁସରଣ କରବାପାଇଁ ମନାକଲା

୧୬ଜଣେ ଲୋକ ଆସି ଯୀଶୁଙ୍କୁ ପଚାରଲେ, "ଗୁରୁ,
ଅନନ୍ତ-ଜୀବନ ଲାଭ କରବା ପାଇଁ ମୁଁ କେଉଁ କେଉଁ ଭଲ
କାମ କରବା ଉଚତ?"
୧୭ଯୀଶୁ ସେ ଲୋକକୁ ପଚାରଲେ, "ଭଲ କାମ
ବଷୟରେ ମୋତେ କାହିଁକ ପଚାରୁଛ? ଭଲ ତ କେବଳ
ମାତ୍ର ଜଣେ। ସେ ହେଉଛନ୍ତ ପରମେଶ୍ୱର। ତଥାପି ଯଦ
ତୁମ୍ଭେ ଅନନ୍ତ-ଜୀବନ ପାଇବା ପାଇଁ ଚାହୁଁଛ, ତେବେ
ଆଦେଶଗୁଡ଼କ ପାଳନ କର।"
୧୮ଲୋକ ଜଣକ ପଚାରଲା, "କେଉଁ ଆଦେଶ?"
ଯୀଶୁ ଉତ୍ତର ଦେଲେ, "'ତୁମ୍ଭେ କାହାରକୁ ହତ୍ୟା
କରବନାହିଁ; ବ୍ୟଭିଚାରଜନତ ପାପ କରନାହିଁ; ଚୋରୀ
କରନାହିଁ; ଅନ୍ୟ ଲୋକଙ୍କ ବଷୟରେ ମିଛ କୁହନାହିଁ।'
୧୯ନଜ ପିତା-ମାତାଙ୍କୁ ସମ୍ମାନ ଦେବ* ଓ 'ନଜକୁ ଯେପର
ଭଲ ପାଉଛ, ଅନ୍ୟମାନଙ୍କୁ ସେପର ଭଲ ପାଇବ।'*"
୨୦ଯୁବକଟି କହଲା, "ମୁଁ ଏ ସବୁକଥା ମାନଛ। ଏବେ
ମୋ ପାଖରେ ଆଉ କ'ଣ ଅଭାବ ରହଛ?"
୨୧ଯୀଶୁ କହଲେ, "ଯଦ ତୁମ୍ଭେ ସିଦ୍ଧ ହେବାକୁ ଚାହୁଁଛ,
ତେବେ ଯାଅ, ଏବଂ ତୁମ୍ଭ ପାଖରେ ଥିବା ସବୁ କଛ ବକ
ସେ ଧନ ଗରୀବମାନଙ୍କୁ ବାଣ୍ଟିଦଅ। ତା'ହେଲେ ସ୍ୱର୍ଗରେ
ତୁମ୍ଭକୁ ଅମାପ ଧନ ମିଳ ପାରବ। ତା'ପରେ ଆସ ଓ
ମୋର ଅନୁସରଣ କର।"
୨୨ଯୁବକଟି ଏକଥା ଶୁଣିବା ପରେ ବହୁତ ଦୁଃଖ କଲା।
ସେ ବହୁତ ଧନୀ ଥିଲା ଓ ନଜର ଧନ ପାଖରେ
ରଖିବାକୁ ଚାହୁଁଥିଲା। ତେଣୁ ସେ ଯୀଶୁଙ୍କୁ ଛାଡ ଚାଲଗଲା।

---

**'ସୃଷ୍ଟିକର୍ତ୍ତା ... ସୃଷ୍ଟି କରଥିଲେ'** ଆଦି.୧:୨୭ କମ୍ବା ୫:୨
**'ଏହ କାରଣରୁ ... ଏକ ହୋଇଯିବେ'** ଆଦି.୨:୨୪

**କନ୍ତୁ ... କରବା ଉଚତ** କମ୍ବା "ଯେଉଁଲୋକ ବବାହ ନ କରବା ବଷୟରେ ଏହ ଉପଦେଶ ଗ୍ରହଣ କରପାରବ, ସେ ଏ ଉପଦେଶ ଗ୍ରହଣ କରବା ଉଚତ।"
**'ତୁମ୍ଭେ ... ଦେବ'** ଯାତ୍ରା.୨୦:୧୨-୧୬ ଦ୍ୱିବବରଣି ୫:୧୬-୨୦
**'ନଜକୁ ... ଭଲ ପାଇବ'** ଲେବୀୟ. ୧୯:୧୮

୨୩ତାପରେ ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ମୁଁ ତୁମ୍ଭକୁ
ସତ୍ୟ କହୁଛି। ଜଣେ ଧନୀଲୋକ ନିମନ୍ତେ ସ୍ୱର୍ଗରାଜ୍ୟରେ
ପ୍ରବେଶ କରିବା ଅତ୍ୟନ୍ତ କଷ୍ଟକର ବିଷୟ। ୨୪ହଁ, ମୁଁ
ତୁମ୍ଭକୁ କହୁଛି ଯେ ଜଣେ ଧନୀଲୋକ ପରମେଶ୍ୱରଙ୍କ
ରାଜ୍ୟରେ ପ୍ରବେଶ କରିବା ଠାରୁ ଗୋଟିଏ ଓଟ ଛୁଞ୍ଚି-କଣା
ଭିତରେ ଗଳିଯିବା ବରଂ ସହଜ।"
୨୫ଶିଷ୍ୟମାନେ ଏକଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲେ।
ସେମାନେ ପଚାରିଲେ, "ତେବେ କିଏ ପରିତ୍ରାଣ ପାଇ
ପାରିବ?"
୨୬ଯୀଶୁ ସେମାନଙ୍କୁ ଚାହିଁ କହିଲେ, "ଏହା ଲୋକମାନଙ୍କ
ପାଇଁ ଅସମ୍ଭବ। କିନ୍ତୁ ପରମେଶ୍ୱରଙ୍କ ପାଇଁ ସବୁ କିଛି
ସମ୍ଭବ।"
୨୭ତାପରେ ପିତର କହିଲେ, "ଆମ୍ଭର ଯାହା କିଛି
ଥିଲା, ଆମ୍ଭେ ସେ ସବୁ ଛାଡି ଦେଇଛୁ ଏବଂ ତୁମ୍ଭର
ଅନୁସରଣ କରିଛୁ। ତା'ହେଲେ ଆମ୍ଭେ କ'ଣ ପାଇବୁ?"
୨୮ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ
କହୁଛି। ନୂତନ ଜଗତ ସୃଷ୍ଟି ହେଲେ ମନୁଷ୍ୟ ପୁତ୍ର
ତାହାଙ୍କର ମହାନ ସିଂହାସନ ପାଖରେ ବସିବେ, ଓ
ତୁମ୍ଭେମାନେ ମଧ୍ୟ ଯେଉଁମାନେ ମୋତେ ଅନୁସରଣ କରୁଛ,
ସିଂହାସନ ପାଖରେ ବସିବ। ତୁମ୍ଭେମାନେ ବାରଟି ସିଂହାସନ
ଉପରେ ବସିବ, ଏବଂ ଇସ୍ରାୟେଲର* ବାରଟି ବଂଶର
ଲୋକମାନଙ୍କର ବିଚାର କରିବ। ୨୯ମୋ ପାଇଁ ଯେଉଁ
ଲୋକ ଘର-ଦ୍ୱାର କିମ୍ବା ଭାଇ, ଭଉଣୀ କିମ୍ବା ପିତା,
ମାତାଙ୍କୁ କିମ୍ବା ପିଲାମାନଙ୍କୁ କିମ୍ବା ଜମି-ବାଡ଼ି ଛାଡ଼ି ଦେଇଛି,
ସେ ଶହେଗୁଣ ଅଧିକା ପାଇବ ଏବଂ ଅନନ୍ତ-ଜୀବନ
ପାଇବ। ୩୦କିନ୍ତୁ ଯେଉଁମାନେ ଏବେ ପ୍ରଥମ ସ୍ଥାନରେ
ଅଛନ୍ତି, ଭବିଷ୍ୟତରେ ସେମାନଙ୍କ ଭିତରୁ ବହୁତ ଲୋକ
ଶେଷ ସ୍ଥାନରେ ରହିଯିବେ। ଏବଂ ଏବେ ଶେଷ ସ୍ଥାନରେ
ପଡି ରହିଥିବା ବହୁତଲୋକ ଭବିଷ୍ୟତରେ ପ୍ରଥମସ୍ଥାନ ଲାଭ
କରିବେ।

### ଯୀଶୁ ଶ୍ରମିକମାନଙ୍କର କାହାଣୀ କହିଲେ

୨୦ "ସ୍ୱର୍ଗ-ରାଜ୍ୟ ଜଣେ ଜମିଦାରଙ୍କ ଭଳି।
ଜମିଦାରଙ୍କର କେତେକ ଅଙ୍ଗୁର ବଗିଚା ଥିଲା।
ଦିନେ ବଡ଼ ସକାଳୁ ସେ ତାହାଙ୍କ ଅଙ୍ଗୁର ବଗିଚାରେ କାମ
କରିବା ପାଇଁ ଅନ୍ୟ କେତେକ ଶ୍ରମିକ ଆଣିବାକୁ ବାହାରିଗଲେ।
୨ସେ ଶ୍ରମିକମାନଙ୍କୁ ସେଦିନ କାମ କରିବା ବାବଦରେ
ଗୋଟିଏ ଗୋଟିଏ ରୌପ୍ୟ ମୁଦ୍ରା ଦେବା ପାଇଁ ରାଜି
ହେଲେ। ତାପରେ ସେ ଶ୍ରମିକମାନଙ୍କୁ ବଗିଚାକୁ କାମ
କରିବାକୁ ପଠାଇଦେଲେ।
୩"ପ୍ରାୟ ନଅଟା ବେଳେ ସେ ବଜାର ଆଡ଼କୁ ଗଲେ
ଓ ସେଠାରେ କେତେକ ଶ୍ରମିକଙ୍କୁ ଠିଆ ହୋଇଥିବାର
ଦେଖିଲେ। ସେମାନଙ୍କ ପାଖରେ କିଛି କାମ ନ ଥିଲା।
୪ତେଣୁ ସେ ସେମାନଙ୍କୁ କହିଲେ, 'ତୁମ୍ଭେମାନେ ଯଦି ଯାଇ
ମୋ ଅଙ୍ଗୁରବଗିଚାରେ କାମ କରିବ, ତେବେ ତୁମ୍ଭର ଯାହା
ଉଚିତ ପ୍ରାପ୍ୟ ହେବ, ମୁଁ ତୁମ୍ଭକୁ ତାହା ଦେବି।' ୫ତେଣୁ
ସେମାନେ ମଧ୍ୟ ଅଙ୍ଗୁର ବଗିଚାକୁ କାମ କରିବାକୁ ଗଲେ।
"ପୁଣି ପ୍ରାୟ ବାରଟା ବେଳେ ଓ ଆଉଥରେ ପ୍ରାୟ
ତିନିଟା ବେଳେ ସେ ଘରୁ ଯାଇ ପୂର୍ବଭଳି ଆଉ କେତେକ
ଶ୍ରମିକଙ୍କୁ ଆଣିଲେ। ୬ପ୍ରାୟ ପାଞ୍ଚଟାବେଳେ ସେ ଘରୁ ଯାଇ
ବଜାରରେ ଦେଖିଲେ ଯେ କେତେକ ଲୋକ ଠିଆ
ହୋଇଛନ୍ତି। ସେ ସେମାନଙ୍କୁ ପଚାରିଲେ, 'ତୁମ୍ଭେମାନେ
ଦିନସାରା କିଛି କାମ ନକରି ଏଠାରେ ଏମିତି କାହିଁକି ଠିଆ
ହୋଇଛ?'
୭"ସେମାନେ କହିଲେ, 'ଆମ୍ଭକୁ କେହି ମଜୁରୀ ଦେଇ
କାମ କରିବାକୁ ଡାକି ନାହାଁନ୍ତି।' ଜମିଦାର ଜଣକ ସେମାନଙ୍କୁ
କହିଲେ, 'ତୁମ୍ଭେମାନେ ମଧ୍ୟ ଯାଇ ମୋର ଅଙ୍ଗୁର ବଗିଚାରେ
କାମ କର।'
୮"ସନ୍ଧ୍ୟା ହେବାରୁ ଅଙ୍ଗୁର ବଗିଚାର ଜମିଦାର ତାହାଙ୍କ
ଗୁମାସ୍ତାଙ୍କୁ ଡାକି କହିଲେ, 'ଶ୍ରମିକମାନଙ୍କୁ ଡାକ। ମୁଁ
ଯେଉଁମାନଙ୍କୁ ଶେଷରେ କାମରେ ଲଗାଇଲି ଶ୍ରମିକମାନଙ୍କ
ଠାରୁ ପ୍ରଥମେ ମଜୁରୀ ଦେବା ଆରମ୍ଭ କର। ସର୍ବ
ଶେଷରେ ପ୍ରଥମେ କାମକୁ ଆସିଥିବା ଶ୍ରମିକମାନଙ୍କୁ ମଜୁରୀ
ଦିଅ।'
୯"ଯେଉଁମାନେ ପାଞ୍ଚଟା ବେଳେ ଆସିଥିଲେ, ସେମାନେ
ମଜୁରୀ ନେବାକୁ ଆସିଲେ। ପ୍ରତ୍ୟେକ ଶ୍ରମିକ ଗୋଟିଏ
କରି ରୌପ୍ୟମୁଦ୍ରା ପାଇଲେ। ୧୦ଯେତେବେଳେ ଆଗ
ଆସିଥିବା ଶ୍ରମିକମାନେ ଆସିଲେ, ସେମାନେ ଭାବିଥିଲେ
ଯେ ସେମାନଙ୍କୁ କିଛି ଅଧିକ ମିଳିବ। କିନ୍ତୁ ସେମାନେ
ମଧ୍ୟ ପ୍ରତ୍ୟେକ ଗୋଟିଏ କରି ରୌପ୍ୟମୁଦ୍ରା ପାଇଲେ।
୧୧ସେମାନେ ଗୋଟିଏ ଗୋଟିଏ ରୌପ୍ୟମୁଦ୍ରା ନେଇସାରି
ଜମିଦାରଙ୍କ ଆଗରେ ଯାଇ ଏ ବିଷୟରେ ଅଭିଯୋଗ
କଲେ। ୧୨ସେମାନେ କହିଲେ, 'ଶେଷରେ ଆସିଥିବା
ଶ୍ରମିକମାନେ ମାତ୍ର ଗୋଟିଏ ଘଣ୍ଟା କାମ କରିଛନ୍ତି। ଆମ୍ଭେ
ଖରାରେ ଦିନସାରା କଠିନ ପରିଶ୍ରମ କରିଛୁ। କିନ୍ତୁ ଆପଣ
ସେମାନଙ୍କୁ ଯେତିକି ମଜୁରୀ ଦେଲେ, ଆମ୍ଭକୁ ମଧ୍ୟ
ସେତିକି ମଜୁରୀ ଦେଲେ!'
୧୩"ଜମିଦାର ସେହି ଶ୍ରମିକମାନଙ୍କ ଭିତରୁ ଜଣକୁ
କହିଲେ, 'ବନ୍ଧୁ, ମୁଁ ତୁମ୍ଭ ପ୍ରତି ଅନ୍ୟାୟ କରିନାହିଁ। ତୁମ୍ଭେ
ଗୋଟିଏ ଗୋଟିଏ ରୌପ୍ୟମୁଦ୍ରା ନେଇ କାମ କରିବ ବୋଲି
ମୋ ସାଙ୍ଗରେ ରାଜି ହୋଇ ନ ଥିଲ କି? ୧୪ଯାହା ତୁମ୍ଭର
ପ୍ରାପ୍ୟ ତାହା ନେଇ ଘରକୁ ଯାଅ। ମୁଁ ତୁମ୍ଭମାନଙ୍କୁ
ଯେତିକି ଦେଇଛି, ଶେଷରେ ଆସିଥିବା ଶ୍ରମିକକୁ ସେତିକି
ଲେଖାଁଏ ଦେବାକୁ ଚାହୁଁଛି। ୧୫ମୋ ଧନକୁ ମୋର
ଯେଭଳି ଇଚ୍ଛା ହେବ, ସେ ଭଳି ଖର୍ଚ୍ଚ କରିବାର ଅଧିକାର
କ'ଣ ମୋର ନାହିଁ? ବା ମୁଁ ଏହି ଲୋକଙ୍କ ପାଇଁ ଉଦାର
ବୋଲି କ'ଣ ତୁମ୍ଭେ ଈର୍ଷା କରୁଛ କି?'
୧୬"ଏହିଭଳି ଭାବରେ ବର୍ତ୍ତମାନ ଯେଉଁଲୋକ ସର୍ବଶେଷରେ
ଅଛନ୍ତି, ଭବିଷ୍ୟତରେ ସେମାନେ ପ୍ରଥମ ସ୍ଥାନ ପାଇବେ।
ଏବଂ ଯେଉଁଲୋକମାନେ ବର୍ତ୍ତମାନ ପ୍ରଥମ ସ୍ଥାନରେ ଅଛନ୍ତି,
ସେମାନେ ଭବିଷ୍ୟତରେ ଶେଷ ସ୍ଥାନ ପାଇବେ।"

---

**ଇସ୍ରାୟେଲ** ଇସ୍ରାୟେଲ ଶବ୍ଦ ପରମେଶ୍ୱରଙ୍କ ସମସ୍ତ ଲୋକଙ୍କ ପାଇଁ ବ୍ୟବହୃତ ହୋଇଥାଏ।

## ଯୀଶୁ ତାହାଙ୍କ ମୃତ୍ୟୁ ବିଷୟରେ କହିଲେ

୧୭ଯୀଶୁ ଯିରୂଶାଲମକୁ ଯାଉଥିଲେ। ତାହାଙ୍କର ବାରଜଣ
ଶିଷ୍ୟ ତାହାଙ୍କ ସହିତ ଥିଲେ। ସେମାନେ ଚାଲିକରି
ଯାଉଥିବା ସମୟରେ ଯୀଶୁ ସେହି ବାରଜଣ ଶିଷ୍ୟଙ୍କୁ
ଗୋଟିଏ ପାଖକୁ ଡାକିନେଇ କହିଲେ, ୧୮"ଶୁଣ, ଆମ୍ଭେମାନେ
ଯିରୂଶାଲମକୁ ଯାଉଛୁ। ମନୁଷ୍ୟ-ପୁତ୍ରଙ୍କୁ ସେଠାରେ ପ୍ରଧାନ
ଯାଜକ ଓ ଯିହୂଦୀ ଧର୍ମ-ଶାସ୍ତ୍ରୀମାନଙ୍କ ହାତରେ ଦେଇ
ଦିଆଯିବ। ସେମାନେ ତାହାଙ୍କୁ ମୃତ୍ୟୁଦଣ୍ଡ ଦେବାକୁ କହିବେ।
୧୯ସେମାନେ ଯୀଶୁଙ୍କୁ ଅଣ-ଯିହୂଦୀ ଲୋକଙ୍କ ହାତରେ
ଦେଇଦେବେ। ସେହି ଲୋକମାନେ ଯୀଶୁଙ୍କୁ ଉପହାସ
କରିବେ, କୋରଡ଼ାରେ ପିଟିବେ, ଏବଂ ଗୋଟିଏ କ୍ରୁଶରେ
ଚଢ଼େଇ ତାହାଙ୍କୁ ମାରିଦେବେ। କିନ୍ତୁ ମୃତ୍ୟୁର ତୃତୀୟ ଦିନ
ସେ ପୁଣି ବଞ୍ଚି ଉଠିବେ।"

## ଏକ ମାତାଙ୍କର ବିଶେଷ ଅନୁରୋଧ

୨୦ତା'ପରେ ଜେବଦିଙ୍କ ସ୍ତ୍ରୀ ଯୀଶୁଙ୍କ ନିକଟକୁ ଆସିଲେ।
ତାହାଙ୍କର ପୁଅମାନେ ତାହାଙ୍କ ସହିତ ଥିଲେ। ସେମାନଙ୍କର
ମାଆ ଯୀଶୁଙ୍କୁ ପ୍ରଣାମ କଲେ। ସେ ସେମାନଙ୍କ ପାଇଁ
ଯୀଶୁଙ୍କୁ କିଛି ଅନୁରୋଧ କଲେ।
୨୧ଯୀଶୁ ପଚାରିଲେ, "ତୁମ୍ଭେ କ'ଣ ଚାହୁଁଛ?"
ସେ କହିଲେ, "ଆପଣ ପ୍ରତିଜ୍ଞା କରି କୁହନ୍ତୁ ଯେ,
ତୁମ୍ଭ ରାଜ୍ୟରେ ମୋର ଏହି ଦୁଇ ପୁଅଙ୍କ ଭିତରୁ ଜଣେ
ତୁମ୍ଭର ଡାହାଣ ପଟେ, ଓ ଅନ୍ୟ ଜଣକ ବାମପଟେ
ବସିବ।"
୨୨ଯୀଶୁ ଉତ୍ତର ଦେଲେ, "ତୁମ୍ଭେ କ'ଣ ମାଗୁଛ, ସେ
କଥା ତୁମ୍ଭେ ଜାଣି ପାରୁନାହଁ। ଯେଉଁଭଳି ଯାତନା ମୁଁ
ଭୋଗ କରିବାକୁ ଯାଉଛି, ତାହା କ'ଣ ତୁମ୍ଭେ ଭୋଗ
କରି ପାରିବ?"
ସେମାନେ ଉତ୍ତର ଦେଲେ, "ହଁ, ଆମ୍ଭେ ପାରିବୁ।"
୨୩ଯୀଶୁ ସେମାନଙ୍କୁ କହିଲେ, "ମୁଁ ଯେଉଁଭଳି ଯାତନା
ଭୋଗ କରିବି, ତୁମ୍ଭେମାନେ ମଧ୍ୟ ପ୍ରକୃତରେ ସେହିଭଳି
ଯାତନା ଭୋଗ କରିବ। କିନ୍ତୁ ମୋର ଡାହାଣ ପଟେ କିଏ
ବସିବ ବା ବାମ ପଟେ କିଏ ବସିବ, ତାହା ବାଛିବାର
ଅଧିକାର ମୋର ନାହିଁ। କାରଣ, କିଏ କେଉଁଠାରେ
ବସିବେ, ତାହା ମୋର ପରମପିତା ଆଗରୁ ସ୍ଥିର କରି
ସାରିଛନ୍ତି। ସେ ସେମାନଙ୍କ ପାଇଁ ଯେଉଁସ୍ଥାନ ପ୍ରସ୍ତୁତ
କରିଛନ୍ତି, ସେମାନେ ସେହି ସ୍ଥାନରେ ବସିବେ।"
୨୪ଅନ୍ୟ ଦଶଜଣ ଶିଷ୍ୟ ଏ କଥା ଶୁଣି ସେହି
ଦୁଇଭାଇଙ୍କ ଉପରେ ରାଗିଗଲେ। ୨୫ଯୀଶୁ ସବୁ ଶିଷ୍ୟଙ୍କୁ
ଏକାଠି ଡାକି କହିଲେ, "ତୁମ୍ଭେ ଜାଣ ଯେ, ଅଣ-ଯିହୂଦୀ
ଶାସକମାନେ ସେମାନଙ୍କ କ୍ଷମତା ଅନ୍ୟ ଲୋକଙ୍କ ଉପରେ
ବ୍ୟବହାର କରିବାକୁ ଭଲ ପାଆନ୍ତି। ଆଉ ଏହା ମଧ୍ୟ
ଜାଣ ଯେ, ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ ନେତାମାନେ ସେମାନଙ୍କର
କର୍ତ୍ତୃତ୍ୱ ସେମାନଙ୍କ ଉପରେ ବ୍ୟବହାର କରିବାକୁ ଭଲ
ପାଆନ୍ତି। ୨୬କିନ୍ତୁ ତୁମ୍ଭମାନଙ୍କ କ୍ଷେତ୍ରରେ ସେହିଭଳି ହେବନାହିଁ।
ତୁମ୍ଭ ଭିତରୁ ଯଦି କେହି ବଡ଼ ହେବାକୁ ଇଚ୍ଛା କରୁଛି,
ତେବେ ସେ ଜଣେ ସେବକ ଭଳି ତୁମ୍ଭମାନଙ୍କର ସେବା
କରିବ। ୨୭ଯଦି ତୁମ୍ଭ ଭିତରୁ କେହି ପ୍ରଥମ ସ୍ଥାନ
ପାଇବାକୁ ଇଚ୍ଛା କରୁଛି, ତେବେ ତାକୁ ଜଣେ କ୍ରୀତଦାସ
ଭଳି ତୁମ୍ଭମାନଙ୍କର ସେବା କରିବାକୁ ହେବ। ୨୮ମନୁଷ୍ୟ-ପୁତ୍ରଙ୍କ
କ୍ଷେତ୍ରରେ ତାହା ଏକା ଭଳି। ମନୁଷ୍ୟ-ପୁତ୍ର ଅନ୍ୟମାନଙ୍କ
ଠାରୁ ସେବା ପାଇବେ ବୋଲି ଆସିନାହାନ୍ତି। ସେ ଅନ୍ୟମାନଙ୍କର
ସେବା କରିବା ପାଇଁ ଆସି ଅଛନ୍ତି। ମନୁଷ୍ୟପୁତ୍ର ଅନେକ
ଲୋକଙ୍କ ମୁକ୍ତିର ମୂଲ୍ୟଭାବେ ନିଜ ଜୀବନଦାନ କରିବା
ପାଇଁ ଆସିଛନ୍ତି।"

## ଯୀଶୁ ଦୁଇଜଣ ଅନ୍ଧଙ୍କୁ ସୁସ୍ଥ କଲେ

୨୯ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଯିରୀହୋରୁ ଗଲାବେଳେ
ବହୁ ସଂଖ୍ୟାରେ ଲୋକମାନେ ଯୀଶୁଙ୍କୁ ଅନୁସରଣ କରିବାକୁ
ଲାଗିଲେ। ୩୦ରାସ୍ତା ପାଖରେ ଦୁଇଜଣ ଅନ୍ଧ ବସିଥିଲେ।
ସେମାନେ ଶୁଣିଲେ ଯେ ଯୀଶୁ ସେ ବାଟେ ଦେଇ
ଯାଉଛନ୍ତି। ସେମାନେ ପାଟି କଲେ, "ହେ ପ୍ରଭୁ, ଦାଉଦଙ୍କ
ପୁତ୍ର, ଆମ୍ଭ ଉପରେ ଦୟା କର।"
୩୧ଲୋକେ ସେମାନଙ୍କୁ ଧମକ ଦେଇ ଚୁପ୍ ରହିବାକୁ
କହିଲେ। କିନ୍ତୁ ଅନ୍ଧ ଦୁଇଜଣ ଅଧିକରୁ ଅଧିକ ପାଟି
କରି କହିଲେ, "ହେ ପ୍ରଭୁ, ହେ ଦାଉଦଙ୍କ ପୁତ୍ର, ଆମ୍ଭ
ଉପରେ ଦୟା କର।"
୩୨ଯୀଶୁ ରହିଗଲେ, ଦୁଇଜଣଙ୍କୁ ଡାକିଲେ ଓ ସେମାନଙ୍କୁ
କହିଲେ, "ମୁଁ ତୁମ୍ଭମାନଙ୍କ ପାଇଁ କ'ଣ କରିବି ବୋଲି
ତୁମ୍ଭେ ଚାହୁଁଛ?"
୩୩ସେମାନେ ତାହାଙ୍କୁ କହିଲେ, "ହେ ପ୍ରଭୁ, ଆମ୍ଭେ
ଯେପରି ଦେଖିପାରିବୁ, ତାହା ଚାହୁଁଛୁ।"
୩୪ଯୀଶୁଙ୍କ ମନରେ ସେମାନଙ୍କ ପାଇଁ ଦୟା ଆସିଲା।
ସେ ସେମାନଙ୍କର ଆଖି ଛୁଇଁଦେଲେ, ଓ ସେମାନେ ତୁରନ୍ତ
ଦେଖି ପାରିଲେ। ତା'ପରେ ସେମାନେ ଯୀଶୁଙ୍କୁ ଅନୁସରଣ
କଲେ।

## ଯୀଶୁ ରାଜାଭାବରେ ଯିରୂଶାଲମରେ ପ୍ରବେଶ କଲେ

୨୧ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଯିରୂଶାଲମ
ପାଖାପାଖି ଆସି ଯାଇଥିଲେ। ସେମାନେ ପ୍ରଥମେ
ଜୀତ ପର୍ବତ ପାଖ ବେଥ୍‌ଫାଗୀ ଠାରେ ଅଟକିଲେ। ୨ଯୀଶୁ
ଦୁଇଜଣ ଶିଷ୍ୟଙ୍କୁ ଗାଁକୁ ପଠାଇଲେ। ସେ କହିଲେ,
"ତୁମ୍ଭେ ଠିକ ସାମନାରେ ଥିବା ଗାଁକୁ ଯାଅ। ସେଠାରେ
ପହଞ୍ଚିବା ପରେ ତୁମ୍ଭେ ଗୋଟିଏ ମାଈ ଗଧ ବନ୍ଧା
ହୋଇଥିବାର ଦେଖିବ। ତା'ସହିତ ଗୋଟିଏ ଗଧଛୁଆ ମଧ୍ୟ
ସେଠାରେ ଥିବ। ସେମାନଙ୍କୁ ଖୋଲିଦେବ, ଓ ସେମାନଙ୍କୁ
ମୋ ପାଖକୁ ନେଇ ଆସିବ। ୩ଯଦି ତୁମ୍ଭକୁ କେହି ଲୋକ
ପଚାରେ ଯେ, ତୁମ୍ଭେମାନେ କାହିଁକି ଗଧ ଦୁହିଁଙ୍କୁ ନେଇ
ଯାଉଛ, ତେବେ ତୁମ୍ଭେ କହିବ 'ଏଗୁଡ଼ିକ ପ୍ରଭୁଙ୍କର
ଦରକାର। ପରେ ସେ ସେମାନଙ୍କୁ ସଙ୍ଗେ ସଙ୍ଗେ
ପଠାଇଦେବେ।'"
୪ଭବିଷ୍ୟଦ୍‌ବକ୍ତା ଯାହା କହିଥିଲେ, ତାହା ସଫଳ ହେବା
ପାଇଁ ଏସବୁ ଘଟିଲା। ଭବିଷ୍ୟଦ୍‌ବକ୍ତା କହିଥିଲେ:

୫ “ସିୟୋନ ନଗରୀକୁ କୁହ: ‘ଦେଖ, ତୁମ୍ଭର ରାଜା
ତୁମ୍ଭ ପାଖକୁ ଆସୁଛନ୍ତି। ସେ ନମ୍ର ଓ ସେ
ଗୋଟିଏ ଗଧ ଉପରେ ଚଢ଼ି ଆସୁଛନ୍ତି। ହଁ,
ଗୋଟିଏ ଗଧଛୁଆ ଉପରେ ଚଢ଼ିଛନ୍ତି, ସେହି ଛୁଆଟି
ଏକ ଯୁବା ଗଧରୁ ଜନ୍ମ ହୋଇଛି।’”

ଜିଖରିୟ ୯:୯

୬ଶିଷ୍ୟମାନେ ଚାଲିଗଲେ ଓ ଯୀଶୁଙ୍କ କହିବା ଅନୁସାରେ
ସେମାନେ କାମ କଲେ। ୭ସେମାନେ ମାଈଗଧ ଓ
ଗଧଛୁଆକୁ ନେଇ ଯୀଶୁଙ୍କ ପାଖକୁ ଆସିଲେ। ସେମାନେ
ତାହାଙ୍କ ଲୁଗାଗୁଡ଼ିକ ଗଧମାନଙ୍କ ଉପରେ ବିଛାଇଦେଲେ।
ଯୀଶୁ ସେହି ଲୁଗା ଉପରେ ବସିଲେ। ୮ଯୀଶୁ ଯିରୂଶାଲମ
ରାସ୍ତାରେ ଯାତ୍ରା କଲେ। ଅନେକ ଲୋକ ଯୀଶୁଙ୍କ ପାଇଁ
ସେମାନଙ୍କର ଲୁଗା ରାସ୍ତାରେ ବିଛେଇ ଦେଲେ। ଆଉ
କେତେକ ଲୋକ, ଗଛରୁ ଡାଳ ସବୁ କାଟି ରାସ୍ତାରେ
ବିଛାଇଦେଲେ। ୯ଯୀଶୁଙ୍କ ଆଗେ-ଆଗେ କେତେକ ଲୋକ
ଯାଉଥିଲେ। ତାହାଙ୍କ ପଛେ ପଛେ ମଧ୍ୟ କେତେକ ଲୋକ
ଯାଉଥିଲେ। ସେ ସମସ୍ତେ ପାଟି କରି କହୁଥିଲେ:

“ଦାଉଦଙ୍କ ପୁତ୍ରଙ୍କ ମହିମା-ଗାନ* କର। ଯିଏ
ପ୍ରଭୁଙ୍କ ନାମରେ ଆସୁଛନ୍ତି। ସେ ଧନ୍ୟ। ସ୍ୱର୍ଗରେ
ରହୁଥିବା ପରମେଶ୍ୱରଙ୍କ ମହିମାଗାନ କର।”

ଗୀତସଂହିତା ୧୧୮:୨୬

୧୦ଯୀଶୁ ଯେତେବେଳେ ଯିରୂଶାଲମରେ ପ୍ରବେଶ କଲେ,
“ସେତେବେଳେ ସାରା ନଗରରେ ଚହଳ ପଡିଗଲା। ଲୋକେ
ପଚାରିଲେ, “ଏ ଲୋକଟି କିଏ?”
୧୧ଯୀଶୁଙ୍କୁ ଅନୁସରଣ କରୁଥିବା ଲୋକେ କହିଲେ, “ଏ
ହେଉଛନ୍ତି ଭବିଷ୍ୟଦ୍‌ବକ୍ତା ଯୀଶୁ। ସେ ଗାଲିଲୀ ପ୍ରଦେଶର
ନାଜରିତ ସହରରୁ ଆସିଛନ୍ତି।”

## ଯୀଶୁ ମନ୍ଦିରକୁ ଗଲେ

୧୨ଯୀଶୁ ମନ୍ଦିର ପରିସରରେ ପ୍ରବେଶ କଲେ। ସେଠାରେ
କିଣା ଓ ବିକା କରୁଥିବା ଲୋକମାନଙ୍କୁ ଯୀଶୁ ବାହାରକୁ
ଘଉଡ଼େଇ ଦେଲେ। ସେ ମୁଦ୍ରା ବ୍ୟବସାୟୀଙ୍କ ମେଜ ଓ
କାପ୍ତା ବ୍ୟବସାୟୀଙ୍କ ଆସନ ଓଲଟେଇ ଦେଲେ। ୧୩ଯୀଶୁ
ସେମାନଙ୍କୁ କହିଲେ, “ଶାସ୍ତ୍ରରେ ଏକଥା ଲେଖାଅଛି, ‘ମୋ
ଘର ପ୍ରାର୍ଥନା ଘର ବୋଲି କୁହାଯିବ।’* କିନ୍ତୁ
ତୁମ୍ଭେମାନେ ଏହାକୁ ଡକାୟତଙ୍କ ଆଡ଼ଡା ସ୍ଥଳ କରି
ଦେଇଛ।”*
୧୪ମନ୍ଦିରରେ କେତେକ ଅନ୍ଧ ଓ କେତେକ ଛୋଟା
ଲୋକ ଯୀଶୁଙ୍କ ପାଖକୁ ଆସିଲେ। ଯୀଶୁ ସେମାନଙ୍କୁ ସୁସ୍ଥ
କରିଦେଲେ। ୧୫ପ୍ରଧାନ ଯାଜକ ଓ ଧର୍ମ-ଶାସ୍ତ୍ରୀମାନେ
ଯୀଶୁଙ୍କ ଏ ବିସ୍ମୟ ଜନକ କାମ ଦେଖିଲେ। ମନ୍ଦିର
ପରିସରରେ ପିଲାମାନେ ପାଟି କରି ଯୀଶୁଙ୍କ ମହିମା ଗାନ
କରୁଥିବାର ସେମାନେ ଶୁଣିଲେ। ପିଲାମାନେ କହୁଥିଲେ,
“ଦାଉଦଙ୍କ ପୁତ୍ରଙ୍କ ମହିମା ଗାନ କର।” ଏସବୁ ଘଟଣାରେ
ଯାଜକ ଓ ଧର୍ମଶାସ୍ତ୍ରୀମାନେ ରାଗିଗଲେ।
୧୬ସେମାନେ ଯୀଶୁଙ୍କୁ ପଚାରିଲେ, “ଏ ପିଲାମାନେ କ’ଣ
କହୁଛନ୍ତି, ତୁମ୍ଭେ କ’ଣ ତାହା ଶୁଣି ପାରୁଛ?”
ଯୀଶୁ ଉତ୍ତର ଦେଲେ, “ହଁ ଶୁଣି ପାରୁଛି। ଧର୍ମଶାସ୍ତ୍ର
କହେ, ‘ତୁମ୍ଭେ ବାଳକ ଓ ଶିଶୁଙ୍କୁ ପ୍ରଶଂସା ଗାନ
କରିବାପାଇଁ ଶିଖେଇଛ।’* ଏକଥା କ’ଣ ତୁମ୍ଭେ ଧର୍ମଶାସ୍ତ୍ରରେ
ପଢ଼ିନାହଁ?”
୧୭ତା’ପରେ ଯୀଶୁ ସେ ସ୍ଥାନ ଓ ନଗରରୁ ବାହାରକୁ
ଚାଲିଗଲେ। ସେ ବେଥନିଆ ଚାଲିଗଲେ ଓ ସେଠାରେ
ରାତିଟି କଟାଇଲେ।

## ଯୀଶୁ ବିଶ୍ୱାସର ଶକ୍ତି ପ୍ରକାଶ କଲେ

୧୮ତାପର ଦିନ ଅତି ସକାଳୁ ଯୀଶୁ ଯିରୂଶାଲମ
ନଗରକୁ ଫେରୁଥିଲେ। ତାହାଙ୍କୁ ଭୋକ ଲାଗିଲା। ୧୯ରାସ୍ତା
କଡରେ ସେ ଗୋଟିଏ ଡିମ୍ବିରି ଗଛ ଦେଖିଲେ। ସେ ଗଛ
ପାଖକୁ ଗଲେ। ଗଛରେ ପତ୍ର ଛଡା ଆଉ ସେ କିଛି
ପାଇଲେ ନାହିଁ। ସେ ଗଛକୁ କହିଲେ, “ଆଉ ଏଣିକି
ତୋଠାରେ ଫଳ ଆସିବ ନାହିଁ।” ସଙ୍ଗେସଙ୍ଗେ ଡିମ୍ବିରି
ଗଛଟି ଶୁଖି ମରିଗଲା।
୨୦ଯୀଶୁଙ୍କ ଶିଷ୍ୟମାନେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ।
ସେମାନେ ଯୀଶୁଙ୍କୁ ପଚାରିଲେ, “ଏତେ ଶୀଘ୍ର ଡିମ୍ବିରି
ଗଛଟି କିପରି ଶୁଖି ମରିଗଲା?”
୨୧ଯୀଶୁ ଉତ୍ତର ଦେଲେ, “ମୁଁ ତୁମ୍ଭକୁ ସତ୍ୟ କହୁଛି।
ଯଦି ତୁମ୍ଭର ବିଶ୍ୱାସ ଥିବ ଓ କୌଣସି ସନ୍ଦେହ ନଥିବ
ତେବେ ମୁଁ ଏ ଗଛଟିକୁ ଯାହା କଲି, ତୁମ୍ଭେମାନେ ମଧ୍ୟ
ଠିକ୍ ସେହିପରି କରିପାରିବ। ତୁମ୍ଭେମାନେ ମଧ୍ୟ ଅନେକ
ଅଧିକ କାମ କରିପାରିବ। ତୁମ୍ଭେମାନେ ଏପର୍ବତକୁ କହିପାରିବ,
‘ହେ ପର୍ବତ, ଏଠାରୁ ଯାଅ ଓ ସମୁଦ୍ରରେ ପଡ଼।’ ଯଦି
ତୁମ୍ଭମାନଙ୍କର ବିଶ୍ୱାସ ଥାଏ, ଏହା ଘଟିବ। ୨୨ତୁମ୍ଭେମାନେ
ଯାହା କିଛି ପ୍ରାର୍ଥନାରେ ମାଗିବ, ତାହା ପାଇବ।”

## ଯିହୂଦୀ ନେତାମାନେ ଯୀଶୁଙ୍କ ଅଧିକାରକୁ ସନ୍ଦେହ କଲେ

୨୩ଯୀଶୁ ମନ୍ଦିର ପରିସରକୁ ଗଲେ। ସେଠାରେ ସେ
ଉପଦେଶ ଦେଉଥିବା ସମୟରେ ପ୍ରଧାନ ଯାଜକ ଓ
ଲୋକମାନଙ୍କର ପ୍ରାଚୀନ ନେତାମାନେ ତାହାଙ୍କ ପାଖକୁ
ଆସିଲେ। ସେମାନେ ଯୀଶୁଙ୍କୁ ପଚାରିଲେ, “ଆମ୍ଭକୁ କୁହ,
ଏଭଳି ସବୁ କାମ କେଉଁ ଅଧିକାରରେ ତୁମ୍ଭେ କରୁଛ?
ତୁମ୍ଭକୁ ଏ ଅଧିକାର କିଏ ଦେଲା?”
୨୪ଯୀଶୁ ଉତ୍ତର ଦେଲେ, “ମୁଁ ମଧ୍ୟ ତୁମ୍ଭମାନଙ୍କୁ
ଗୋଟିଏ ପ୍ରଶ୍ନ ପଚାରିବି। ତୁମ୍ଭେମାନେ ଯଦି ମୋ ପ୍ରଶ୍ନର
ଉତ୍ତର ଦେଇ ପାରିବ, ତେବେ ମୁଁ କହିବି ଯେ ଏଭଳି

---

**ମହିମା-ଗାନ** ଏହାର ମୂଳ ହିବ୍ରୁ ଶବ୍ଦ “ହୋଶାନ୍ନା”, ଏହି ଶବ୍ଦଟି ପରମେଶ୍ୱରଙ୍କୁ ସହାୟତା ମାଗି ପ୍ରାର୍ଥନା କରୁଥିବା ସମୟରେ ବ୍ୟବହୃତ ହୁଏ।

**‘ମୋ ଘର ... ଯିବ’** ଯିଶାଇୟ ୫୬:୭

**କିନ୍ତୁ ... ଦେଇଛ** ଯିରିମିୟ ୭:୧୧

**‘ତୁମ୍ଭେ ... ଶିଖେଇଛ’** ଗୀତସଂହିତା ୮:୩

କାମ କରିବାକୁ ମୋର କେଉଁ ଅଧିକାର ରହିଛି। ୨୫କୁହ,
ଯୋହନଙ୍କ ବାପ୍ତିସ୍ମ କେଉଁଠାରୁ ଆସିଥିଲା?"
ପରମେଶ୍ୱରଙ୍କ ପାଖରୁ ବା ମଣିଷ ପାଖରୁ? "ମୁଖ୍ୟ
ଯାଜକ ଓ ପ୍ରାଚୀନ ନେତାମାନେ ଯୀଶୁଙ୍କ ପ୍ରଶ୍ନ ବିଷୟରେ
ଆଲୋଚନା କଲେ।" ସେମାନେ ନିଜ ନିଜ ଭିତରେ
କୁହାକୁହି ହେଲେ, 'ଆମେ ଯଦି କହିବା ଯେ ଯୋହନଙ୍କ
ବାପ୍ତିସ୍ମ ପରମେଶ୍ୱରଙ୍କଠାରୁ ଆସିଥିଲା', ତେବେ ଯୀଶୁ
ପଚାରିବେ, 'ତେବେ ଯୋହନଙ୍କୁ ତୁମ୍ଭେମାନେ କାହିଁକି
ବିଶ୍ୱାସ କଲନାହିଁ?' ୨୬କିନ୍ତୁ ଆମ୍ଭେ ଯଦି କହିବା, 'ଏହା
ମନୁଷ୍ୟ ପାଖରୁ ଆସିଛି', ତେବେ ଏଠାରେ ଜମା ହୋଇଥିବା
ଲୋକେ ଆମ୍ଭ ଉପରେ ରାଗିଯିବେ। ଆମ୍ଭେମାନେ
ଏଲୋକମାନଙ୍କୁ ଭୟ କରୁଛୁ। କାରଣ ସେମାନେ ସମସ୍ତେ
ଯୋହନଙ୍କୁ ଭବିଷ୍ୟଦ୍‌ବକ୍ତା ରୂପେ ବିଶ୍ୱାସ କରନ୍ତି।"
୨୭ତେଣୁ ସେମାନେ ଯୀଶୁଙ୍କୁ ଉତ୍ତର ଦେଲେ, "ଯୋହନଙ୍କ
ବାପ୍ତିସ୍ମ କେଉଁଠାରୁ ଆସିଥିଲା, ଆମ୍ଭେ ତାହା ଜାଣିନାହୁଁ।"
ଯୀଶୁ କହିଲେ, "ତେବେ କେଉଁ ଅଧିକାରରେ ମୁଁ
ଏସମସ୍ତ କାର୍ଯ୍ୟ କରୁଛି, ତାହା ମଧ୍ୟ ତୁମ୍ଭମାନଙ୍କୁ କହିବି
ନାହିଁ।"

## ଯୀଶୁ ଦୁଇ ପୁଅର କାହାଣୀ କହିଲେ

୨୮"କୁହତ ଦେଖି, ତୁମ୍ଭେ ଏବିଷୟରେ କ'ଣ ଭାବୁଛ?:
ଜଣେ ଲୋକର ଦୁଇଟି ପୁଅ ଥିଲେ। ସେ ପ୍ରଥମ ପୁଅ
ପାଖକୁ ଯାଇ କହିଲା, 'ପୁଅ ଆଜି ଯା ଓ ଅଙ୍ଗୁର
ବଗିଚାରେ କାମ କର।' ୨୯ପୁଅ କହିଲା, 'ମୁଁ ଯିବି ନାହିଁ।'
କିନ୍ତୁ ପରେ ସେ ନିଜର ମନ ବଦଳାଇ ଗଲା।
୩୦"ତା'ପରେ ତା ବାପା ଅନ୍ୟ ପୁଅ ପାଖକୁ ଗଲେ ଓ
ତାକୁ ସେହି କଥା କହିଲେ। ସେ କହିଲା, 'ହଁ। ଆଜ୍ଞା
ମୁଁ ଯିବି।' କିନ୍ତୁ ଗଲାନାହିଁ।
୩୧"ତେବେ କୁହ, 'କେଉଁ ପୁଅ ତାର ବାପାଙ୍କ ବାଧ୍ୟହେଲା?"
ଯିହୂଦୀ ଧର୍ମ-ନେତାମାନେ କହିଲେ, 'ପ୍ରଥମ ପୁଅଟି
ମାନିଲା।'
ଯୀଶୁ ସେମାନଙ୍କୁ କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ
କହୁଛି। ତୁମ୍ଭେମାନେ ଭାବ ଯେ, କର ଆଦାୟକାରୀ ଓ
ବେଶ୍ୟାମାନେ ଖରାପ ମଣିଷ। କିନ୍ତୁ ସେମାନେ ତୁମ୍ଭମାନଙ୍କ
ପୂର୍ବରୁ ଆଗ ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରିବେ।"
୩୨ତୁମ୍ଭମାନଙ୍କୁ ବଞ୍ଚିବା ପାଇଁ ଠିକ ବାଟ ଦେଖାଇବାକୁ
ଯୋହନ ଆସି ଥିଲେ। ତୁମ୍ଭେମାନେ ଯୋହନଙ୍କୁ ବିଶ୍ୱାସ
କଲ ନାହିଁ। କିନ୍ତୁ କର ଆଦାୟକାରୀ ଓ ବେଶ୍ୟାମାନେ
ଯୋହନଙ୍କୁ ବିଶ୍ୱାସ କଲେ। କର-ଆଦାୟକାରୀ ଓ
ବେଶ୍ୟାମାନେ ଯୋହନଙ୍କୁ ବିଶ୍ୱାସ କରିଛନ୍ତି ବୋଲି ତୁମ୍ଭେ
ଦେଖିଲ। ତଥାପି ତାହାଙ୍କଠାରେ ବିଶ୍ୱାସ କରିବା ଲାଗି
ତୁମ୍ଭେମାନେ ହୃଦୟ ପରିବର୍ତ୍ତନ କଲ ନାହିଁ।

## ପରମେଶ୍ୱର ତାହାଙ୍କର ପୁତ୍ରଙ୍କୁ ପଠାଇଲେ

୩୩"ଆଉ ଗୋଟିଏ କାହାଣୀ ଶୁଣ। ଜଣେ ଜମି-ମାଲିକ
ଥିଲେ। ତାହାଙ୍କ ଜମିରେ ସେ ଅଙ୍ଗୁର ଲଗାଇଲେ। ସେ
ତା ଚାରିପଟେ ବାଡ ଲଗାଇଲେ। ସେ ଅଙ୍ଗୁର ରସ
ବାହାର କରିବା ପାଇଁ ସେଥିରେ ଦ୍ରାକ୍ଷାକୁଣ୍ଡଟିଏ* ଖୋଳିଲେ।
ସେ ସେଠାରେ ପ୍ରହରୀଗୃହଟିଏ ନିର୍ମାଣ କଲେ ଓ କେତେକ
କୃଷକଙ୍କୁ ଜମିଟି ଭାଗ ଦେଇଦେଲେ। ତା'ପରେ ସେ
ବିଦେଶ-ଯାତ୍ରାରେ ବାହାରି ଗଲେ। ୩୪କିଛି ଦିନ ପରେ
ଅଙ୍ଗୁର ତୋଳିବା ବେଳ ଆସିଲା। ଜମିମାଲିକ ତାହାଙ୍କ
ଅଙ୍ଗୁର ଭାଗ ତକ ଆଣିବା ପାଇଁ କେତେକ ଚାକରଙ୍କୁ
କୃଷକମାନଙ୍କ ପାଖକୁ ପଠାଇଲେ।
୩୫"କିନ୍ତୁ କୃଷକମାନେ ଚାକରମାନଙ୍କୁ ଧରି, ତାହାଙ୍କଭିତରୁ
ଜଣକୁ ପିଟିଲେ। ସେମାନେ ଜଣକ ପରେ ଜଣେ ଚାକରଙ୍କୁ
ପଥରରେ ମାରି-ମାରି ମାରି ପକାଇଲେ। ୩୬ତେଣୁ ଜମି
ମାଲିକ ଆଉ କେତେକ ଚାକରଙ୍କୁ କୃଷକମାନଙ୍କ ପାଖକୁ
ପଠାଇଲେ। ଏଥର ପ୍ରଥମଥର ଠାରୁ ଅଧିକ ଚାକର
ଗଲେ। କିନ୍ତୁ କୃଷକମାନେ ପ୍ରଥମ ଚାକରମାନଙ୍କ ପ୍ରତି
ଯାହା କରିଥିଲେ, ଏଥର ମଧ୍ୟ ସେମାନଙ୍କ ପ୍ରତି ତାହା
କଲେ। ୩୭ତେଣୁ ମାଲିକ ନିଜର ପୁଅକୁ ପଠାଇବାକୁ ଠିକ୍
କଲେ। ସେ ଭାବିଲେ, 'କୃଷକମାନେ ମୋ ପୁଅକୁ ସମ୍ମାନ
ଦେବେ।'
୩୮"କୃଷକମାନେ ପୁଅକୁ ଦେଖି ନିଜ ନିଜ ଭିତରେ
କୁହାକୁହି ହେଲେ, 'ଏ ହେଉଛି ଜମିମାଲିକଙ୍କ ପୁଅ। ସେ
ଏ ଜମିର ଉତ୍ତରାଧିକାରୀ। ଆମ୍ଭେ ଯଦି ତାକୁ ମାରିଦେବା,
ଏହି ସମ୍ପତ୍ତି ଆମ୍ଭର ହୋଇଯିବ।' ୩୯କୃଷକମାନେ ପୁଅକୁ
ଧରି ନେଲେ ଅଙ୍ଗୁର ବଗିଚା ବାହାରକୁ ଫିଙ୍ଗି ମାରିଦେଲେ।
୪୦"ଅତଏବ, ଯେତେବେଳେ ନିଜେ ଜମି-ମାଲିକ ଆସିବେ,
ସେତେବେଳେ ଏହି କୃଷକମାନଙ୍କୁ କ'ଣ କରିବେ?"
୪୧ପ୍ରଧାନ ଯାଜକ ଓ ପ୍ରାଚୀନ ନେତାମାନେ କହିଲେ,
"ସେ ନିଶ୍ଚୟ ସେହି ନିର୍ଦ୍ଦୟ ଲୋକଙ୍କୁ ହତ୍ୟା କରିବେ ଓ
ତା'ପରେ ସେ ଅଙ୍ଗୁର ବଗିଚାଟିକୁ ଅନ୍ୟ କୃଷକମାନଙ୍କୁ
ଭାଗରେ ଦେଇଦେବେ, ଯେଉଁମାନେ ଅମଳ ସମୟରେ
ତାର ଭାଗ ତାହାଙ୍କୁ ଦେବେ।"
୪୨ଯୀଶୁ ସେମାନଙ୍କୁ କହିଲେ, "ତୁମ୍ଭେମାନେ ଏକଥା
କ'ଣ କେବେହେଲେ ଶାସ୍ତ୍ରରେ ପଢ଼ି ନ ଥିଲ?:

> 'ଯେଉଁ ପଥରକୁ ଗୃହ ନିର୍ମାଣକାରୀମାନେ ବେକାର
> ଭାବିଲେ, ସେହି ପଥର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ
> ମୂଳଦୁଆ କୋଣର ପଥର ହୋଇଗଲା। ପରମେଶ୍ୱର
> ଏହାହିଁ କଲେ। ଆମ୍ଭ ପାଇଁ ଏହା ଆଶ୍ଚର୍ଯ୍ୟଜନକ
> ଘଟଣା।' ଗୀତସଂହିତା ୧୧୮:୨୨-୨୩

୪୩"ତେଣୁ ମୁଁ ତୁମ୍ଭମାନଙ୍କୁ କହୁଛି ଯେ ତୁମ୍ଭମାନଙ୍କଠାରୁ
ପରମେଶ୍ୱରଙ୍କ ରାଜ୍ୟ ଛଡାଇ ନିଆଯିବ। ପରମେଶ୍ୱର
ତାହାଙ୍କ ରାଜ୍ୟରେ ଯାହା ହେବାପାଇଁ ଚାହାଁନ୍ତି, ଯେଉଁ
ଲୋକମାନେ ତାହା କରନ୍ତି, ସେମାନଙ୍କୁ ପରମେଶ୍ୱର
ତାହାଙ୍କ ରାଜ୍ୟ ଦେବେ। ୪୪ଯେଉଁ ଲୋକ ଏହି ପଥର
ଉପରେ ଖସି ପଡ଼ିବ, ସେ ଖଣ୍ଡବିଖଣ୍ଡ ହୋଇଯିବ। ଏବଂ

---

**ଦ୍ରାକ୍ଷାକୁଣ୍ଡ** ଅଙ୍ଗୁରରୁ ରସ ବାହାର କରିବା ପାଇଁ ପଥରରେ ଖୋଳା ଯାଇଥିବା ସ୍ଥାନ।

ପଥରଟି ଯଦି କାହା ଉପରେ ପଡ଼ିବ ତେବେ ପଥରଟି
ତାକୁ ଚୁନା କରିଦେବ।”
୪୫ପ୍ରଧାନ ଯାଜକ ଓ ଫାରୂଶୀମାନେ ଯୀଶୁଙ୍କ କାହାଣୀଗୁଡ଼ିକ
ଶୁଣିଲେ। ସେମାନେ ଜାଣି ପାରିଲେ ଯେ, ଯୀଶୁ ଏକଥା
ସେହିମାନଙ୍କ ବିଷୟରେ କହୁଛନ୍ତି। ୪୬ତେଣୁ ସେମାନେ
ଯୀଶୁଙ୍କୁ ବନ୍ଦୀ କରିବାକୁ ଚେଷ୍ଟା କଲେ। ସେମାନେ କିନ୍ତୁ
ଲୋକମାନଙ୍କୁ ଡ଼ରୁଥିଲେ। କାରଣ ଲୋକେ ଯୀଶୁଙ୍କୁ ଜଣେ
ଭବିଷ୍ୟଦ୍‌ବକ୍ତା ବୋଲି ବିଶ୍ୱାସ କରୁଥିଲେ।

### ଭୋଜି ପାଇଁ ନିମନ୍ତ୍ରିତ ଲୋକଙ୍କ କାହାଣୀ

୨୨ ଲୋକମାନଙ୍କୁ ଅନ୍ୟ କିଛି କଥା କହିବା ପାଇଁ
ଯୀଶୁ କାହାଣୀଗୁଡ଼ିକର ପ୍ରୟୋଗ କଲେ। ୨ଯୀଶୁ
କହିଲେ, “ସ୍ୱର୍ଗରାଜ୍ୟ ହେଉଛି ନିଜ ପୁଅର ବିବାହ-ଭୋଜି
ପ୍ରସ୍ତୁତ କରିଥିବା ଜଣେ ରାଜାଭଳି। ୩ରାଜା କେତେକ
ଲୋକଙ୍କୁ ବିବାହ-ଭୋଜିକୁ ନିମନ୍ତ୍ରଣ କଲେ। ସବୁ ପ୍ରସ୍ତୁତ
ହୋଇ ସାରିବା ପରେ ରାଜା ସେହି ଅତିଥିମାନଙ୍କୁ ଡାକିବାକୁ
ଚାକରମାନଙ୍କୁ ପଠାଇଲେ। କିନ୍ତୁ ସେମାନେ ରାଜାଙ୍କ ଭୋଜିକୁ
ଆସିବାକୁ ମନା କରିଦେଲେ।
୪“ତା'ପରେ ରାଜା ଆଉ କିଛି ଚାକରଙ୍କୁ ପଠାଇଲେ।
ରାଜା ଚାକରମାନଙ୍କୁ କହିଲେ, ‘ଯେଉଁମାନଙ୍କୁ ବିବାହ-ଭୋଜିକୁ
ଆସିବାକୁ ନିମନ୍ତ୍ରଣ କରାଯାଇଛି, ତୁମ୍ଭେମାନେ ସେମାନଙ୍କୁ
କୁହ, ଭୋଜି ପ୍ରସ୍ତୁତି ସରିଲାଣି। ମୋର ଉତ୍ତମ ବଳଦ ଓ
ମୋଟା ପଶୁମାନଙ୍କୁ ମରାଯାଇଛି। ସବୁ କିଛି ପ୍ରସ୍ତୁତ ଅଛି।
ଅତଏବ ବିବାହ-ଭୋଜିକୁ ଆସନ୍ତୁ।’
୫“ଚାକରମାନେ ଯାଇ ଲୋକମାନଙ୍କୁ ଆସିବାକୁ କହିଲେ।
କିନ୍ତୁ ଲୋକମାନେ ଚାକରମାନଙ୍କ କଥାକୁ ଧ୍ୟାନ ଦେଲେନି।
ସେମାନେ ବିଭିନ୍ନ କାମରେ ଚାଲିଗଲେ। ଜଣେ ତା'
ଜମିରେ କାମ କରିବାକୁ ଚାଲିଗଲା। ଆଉ ଜଣେ ତା
ବ୍ୟବସାୟ କାମରେ ଚାଲିଗଲା। ୬ଆଉ କେତେକ ଲୋକ
ଚାକରମାନଙ୍କୁ ଧରି ନେଇ ପିଟାପିଟି କଲେ, ଓ ସେମାନଙ୍କୁ
ମାରିଦେଲେ। ୭ରାଜା ଖୁବ୍ ରାଗିଗଲେ। ତାହାଙ୍କ ଚାକରମାନଙ୍କୁ
ଯେଉଁମାନେ ମାରିଦେଲେ, ସେମାନଙ୍କୁ ମାରିଦେବାପାଇଁ ରାଜା
ସୈନ୍ୟ ପଠାଇଲେ। ସୈନ୍ୟମାନେ ସେହି ହତ୍ୟାକରୀମାନଙ୍କୁ
ମାରିଦେଲେ ଓ ତାହାଙ୍କ ନଗରକୁ ପୋଡ଼ିଦେଲେ।
୮“ତା'ପରେ ରାଜା ଚାକରମାନଙ୍କୁ କହିଲେ, ‘ବିବାହ
ଭୋଜି ପ୍ରସ୍ତୁତ ହୋଇ ସାରିଛି, ଯେଉଁମାନଙ୍କୁ ନିମନ୍ତ୍ରଣ
କରାଯାଇଥିଲା, ସେମାନେ ଅଯୋଗ୍ୟ ଥିଲେ। ୯ତେଣୁ
ତୁମ୍ଭେମାନେ ନଗର-ରାସ୍ତାକୁ ଯାଅ। ଯାହାକୁ ଦେଖିବ ତାକୁ
ବିବାହ-ଭୋଜିକୁ ଡାକିଆଣ।’ ୧୦ଚାକରମାନେ ନଗର
ରାସ୍ତାଗୁଡ଼ିକୁ ଗଲେ। ଭଲ ଲୋକ ହେଉ ବା ମନ୍ଦ ଲୋକ
ହେଉ, ସେମାନେ ଯାହାକୁ ପାଇଲେ ତାକୁ ବିବାହ-ଭୋଜିକୁ
ଡାକିଆଣିଲେ। ବିବାହ-ଭବନ ଅତିଥିମାନଙ୍କ ଦ୍ୱାରା ପୂରିଗଲା।
୧୧“ରାଜା ଅତିଥିମାନଙ୍କୁ ଦେଖିବାକୁ ଭିତରକୁ ଆସିଲେ।
ସେ ସେଠାରେ ଗୋଟିଏ ଲୋକକୁ ବିବାହ-ପୋଷାକ ନ
ପିନ୍ଧି ଆସିଥିବାର ଦେଖିଲେ। ୧୨ରାଜା ତାହାଙ୍କୁ ପଚାରିଲେ,
‘ବନ୍ଧୁ, ତୁମ୍ଭେ ବିବାହ-ପୋଷାକ ନ ପିନ୍ଧି ଏ ଭିତରକୁ
କେମିତି ଆସିଲ?’ କିନ୍ତୁ ଲୋକଟି କିଛି କହିଲା ନାହିଁ।
୧୩ତେଣୁ ରାଜା କେତେକ ଚାକରଙ୍କୁ କହିଲେ, ‘ଏ ଲୋକର
ହାତ-ଗୋଡ ବାନ୍ଧି ପକାଅ। ଏହାକୁ ବାହାରେ ଅନ୍ଧାରରେ
ଫିଙ୍ଗିଦିଅ, ଯେଉଁଠାରେ ଲୋକେ କାନ୍ଦୁଥିବେ, ଓ ଯନ୍ତ୍ରଣାରେ
ଦାନ୍ତ କଡ଼ମଡ଼ କରୁଥିବେ।’
୧୪“ହଁ ଅନେକ ଲୋକଙ୍କୁ ନିମନ୍ତ୍ରଣ କରାଯାଇଛି, କିନ୍ତୁ
ସେମାନଙ୍କ ମଧ୍ୟରୁ ଅଳ୍ପ ଲୋକ ମନୋନୀତ ଅଟନ୍ତି।”

### କେତେକ ଯିହୁଦୀ ନେତା ଯୀଶୁଙ୍କୁ ଫାନ୍ଦରେ ପକେଇବା ପାଇଁ ଚେଷ୍ଟା

୧୫ଯୀଶୁ ଯେଉଁ ସ୍ଥାନରେ ଉପଦେଶ ଦେଉଥିଲେ,
ଫାରୂଶୀମାନେ ସେ ସ୍ଥାନ ଛାଡ଼ି ଚାଲିଗଲେ। ସେମାନେ
ଯୀଶୁଙ୍କ କଥା ଦ୍ୱାରା ତାହାଙ୍କୁ କିପରି ଫାନ୍ଦରେ ପକାଇବେ,
ସେ ବିଷୟରେ ଯୋଜନା କଲେ। ୧୬ସେମାନେ କେତେକ
ହେରୋଦୀୟ* ମାନଙ୍କ ସହିତ ନିଜର କେତେକ ଶିଷ୍ୟଙ୍କୁ
ଯୀଶୁଙ୍କ ପାଖକୁ ପଠାଇଲେ। ସେମାନେ ଯାଇ କହିଲେ,
“ହେ ଗୁରୁ, ଆମ୍ଭେ ଜାଣୁ ଯେ ତୁମ୍ଭେ ଜଣେ ନିଷ୍ଠାବାନ
ଲୋକ। ପରମେଶ୍ୱରଙ୍କ ମାର୍ଗ ବିଷୟରେ ଅନ୍ୟମାନେ କ'ଣ
ଭାବୁଛନ୍ତି, ସେ ବିଷୟରେ ତୁମ୍ଭେ ଆଦୌ ଭୟ କରନାହିଁ।
ତୁମ୍ଭ ପାଇଁ ସମସ୍ତେ ସମାନ। ୧୭ଏ ବିଷୟରେ ତୁମ୍ଭ
ମତାମତ କ'ଣ ଆମ୍ଭକୁ କୁହ। କାଇସରଙ୍କୁ କର ଦେବା
ଉଚିତ ହେବ, ନା ନାହିଁ?”
୧୮କିନ୍ତୁ ଯୀଶୁ ସେମାନଙ୍କ ଦୁଷ୍ଟତା ବୁଝି ପାରିଲେ। ସେ
କହିଲେ, “ହେ କପଟୀ ଗଣ! ମୋତେ ଫାନ୍ଦରେ ପକାଇବାକୁ
କାହିଁକି ଚେଷ୍ଟା କରୁଛ? ୧୯କର ଦେବା ପାଇଁ ବ୍ୟବହୃତ
ହେଉଥିବା ଗୋଟେ ମୁଦ୍ରା ମୋତେ ଦେଖାଅ।” ସେମାନେ
ଯୀଶୁଙ୍କୁ ଗୋଟିଏ ରୌପ୍ୟମୁଦ୍ରା* ଦେଖାଇଲେ। ୨୦ଯୀଶୁ
ସେମାନଙ୍କୁ ପଚାରିଲେ, “ଏ ମୁଦ୍ରାର ଉପରେ କାହାର ଛବି
ଓ ନାମ ଖୋଦିତ ହୋଇଛି?”
୨୧ଲୋକମାନେ କହିଲେ, “କାଇସରଙ୍କର।”
ତାପରେ ଯୀଶୁ ସେମାନଙ୍କୁ କହିଲେ, “ଯାହା କାଇସରଙ୍କର
ତାହା କାଇସରଙ୍କୁ ଦିଅ, ଓ ଯାହା ପରମେଶ୍ୱରଙ୍କର, ତାହା
ପରମେଶ୍ୱରଙ୍କୁ ଦିଅ।”
୨୨ଏ କଥା ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ଓ
ତାହାଙ୍କୁ ଛାଡ଼ି ସେଠାରୁ ଚାଲିଗଲେ।

### କେତେକ ସାଦ୍ଦୁକୀଙ୍କ ଯୀଶୁଙ୍କୁ ଫାନ୍ଦରେ ପକେଇବା ପାଇଁ ଚେଷ୍ଟା

୨୩ସେହି ଦିନ କେତେକ ସାଦ୍ଦୁକୀ* ଯୀଶୁଙ୍କ ପାଖକୁ
ଆସିଲେ। ସାଦ୍ଦୁକୀମାନେ ବିଶ୍ୱାସ କରନ୍ତି, ଯେ ଲୋକେ
ମୃତ୍ୟୁରୁ ପୁନର୍ଜୀବିତ ହୁଅନ୍ତି ନାହିଁ। ସାଦ୍ଦୁକୀମାନେ ଯୀଶୁଙ୍କୁ

---

**ହେରୋଦୀୟ** ଗୋଟିଏ ଯିହୁଦୀୟ ରାଜନୈତିକ ଦଳ

**ରୌପ୍ୟମୁଦ୍ରା** ରୋମୀୟ ଦିନାର। ଏହି ମୁଦ୍ରାର ମୂଲ୍ୟ ଦିନକର ମଜୁରୀ ସଙ୍ଗେ ସମାନ।

**ସାଦ୍ଦୁକୀ** ଗୋଟିଏ ପ୍ରମୁଖ ଯିହୁଦୀୟ ଧାର୍ମିକ ଗୋଷ୍ଠୀ। ସେମାନେ ପୁରାତନ ନିୟମର କେବଳ ପ୍ରଥମ ପାଞ୍ଚଟି ପୁସ୍ତକ ଗ୍ରହଣ କରନ୍ତି।

ଗୋଟିଏ ପ୍ରଶ୍ନ ପଚାରିଲେ। 24ସେମାନେ କହିଲେ, "ହେ
ଗୁରୁ, ମୋଶା ଆମ୍ଭକୁ କହିଛନ୍ତି ଯଦି କୌଣସି ଲୋକ
ପିଲାପିଲି ନଥାଇ ମରିଯାଏ, ତେବେ ତାର ଭାଇ ତାର
ସ୍ତ୍ରୀକୁ ନିଶ୍ଚୟ ବିବାହ କରିବ, ଅତଏବ ନିଜ ମୃତ ଭାଇ
ପାଇଁ ସେମାନେ ସନ୍ତାନ ଜନ୍ମ କରିବେ। 25ଆମ୍ଭ ଭିତରେ
ସାତ ଭାଇ ଥିଲେ। ପ୍ରଥମ ଜଣକ ବିବାହ କରିଥିଲା। କିନ୍ତୁ
ପରେ ମରିଗଲା। ତାର କୌଣସି ସନ୍ତାନ ନ ଥିଲେ।
ତେଣୁ ତାର ଭାଇ ସେହି ସ୍ତ୍ରୀ ଲୋକଟିକୁ ବିବାହ କଲା।
26ଦ୍ୱିତୀୟ ଭାଇଟି ମଧ୍ୟ ମରିଗଲା। ଏହାପରେ ତୃତୀୟ ଭାଇ
ଓ ଅନ୍ୟ ସବୁ ଭାଇଙ୍କର ସେହି ଅବସ୍ଥା ହେଲା।
27ଶେଷରେ ସେ ସ୍ତ୍ରୀ ଲୋକଟି ମଧ୍ୟ ମରିଗଲା। 28କିନ୍ତୁ
ସମସ୍ତ ସାତ ଭାଇ ତାହାକୁ ବିବାହ କରିଥିଲେ। ତେବେ
କୁହନ୍ତୁ, ପୁନରୁତ୍ଥାନ ପରେ ସେ କାହାର ସ୍ତ୍ରୀ ହେବ?"
29ଯୀଶୁ କହିଲେ, "ଏ କଥା ତୁମ୍ଭେ ବୁଝିପାରୁନ।
କାରଣ ଶାସ୍ତ୍ର କ'ଣ କୁହେ ଜାଣ ନାହିଁ। ଏବଂ ପରମେଶ୍ୱରଙ୍କ
ଶକ୍ତି ବିଷୟରେ ତୁମ୍ଭେମାନେ କିଛି ଜାଣିନାହଁ। 30ତୁମ୍ଭର
ବୁଝି ରଖିବା ଉଚିତ ଯେ, ଯେତେବେଳେ ଲୋକମାନେ
ମୃତ୍ୟୁରୁ ବଞ୍ଚି ଉଠିବେ, ସେତେବେଳେ କୌଣସି ବିବାହ
ହେବ ନାହିଁ। ପୁନର୍ଜୀବନ ଲାଭ କରିବା ପରେ ଲୋକମାନେ
କେହି କାହାକୁ ବାହା ହେବେନି। ସେମାନେ ସ୍ୱର୍ଗରେ
ସମସ୍ତେ ସ୍ୱର୍ଗ-ଦୂତମାନଙ୍କ ଭଳି ହେବେ। 31ମୃତର ପୁନରୁତ୍ଥାନ
ବିଷୟରେ ପରମେଶ୍ୱର ତୁମ୍ଭକୁ କ'ଣ କହିଛନ୍ତି, ତାହା
କ'ଣ ତୁମ୍ଭେ ପଢ଼ିନାହଁ? 32ପରମେଶ୍ୱର କହିଛନ୍ତି, 'ମୁଁ
ଅବ୍ରହାମଙ୍କ ପରମେଶ୍ୱର, ଯିସ୍ହାକଙ୍କ ପରମେଶ୍ୱର ଓ
ଯାକୁବଙ୍କ* ପରମେଶ୍ୱର ଅଟେ।'* ଯଦି ନିଜେ ପରମେଶ୍ୱର
କହିଛନ୍ତି ଯେ ସେ ସେମାନଙ୍କର ପରମେଶ୍ୱର, ତେବେ
ସେମାନେ ବାସ୍ତବରେ ମୃତ ନୁହଁନ୍ତି। କାରଣ ପରମେଶ୍ୱର
ମୃତ ଲୋକମାନଙ୍କର ପରମେଶ୍ୱର ନୁହଁନ୍ତି, କିନ୍ତୁ ଜୀବିତ
ମାନଙ୍କର ଅଟନ୍ତି।"
33ଲୋକମାନେ ଯୀଶୁଙ୍କ ଉପଦେଶ ଶୁଣି ଆଶ୍ଚର୍ଯ୍ୟ
ହୋଇଗଲେ।

### କେଉଁ ଆଜ୍ଞା ସବୁଠାରୁ ବଡ଼

34ଫାରୂଶୀମାନେ ଶୁଣିଲେ ଯେ ଯୀଶୁଙ୍କ ଉତ୍ତରରେ
ସାଦୂକୀମାନେ ଚୁପ୍ ହୋଇଗଲେ। ତା'ପରେ ସେମାନେ
ସମସ୍ତେ ଏକାଠି ହେଲେ। 35ଜଣେ ଫାରୂଶୀ ମୋଶାଙ୍କ
ବ୍ୟବସ୍ଥା ବିଷୟରେ ଦକ୍ଷ ଥିଲା। ସେ ଯୀଶୁଙ୍କୁ ପରୀକ୍ଷାରେ
ପକାଇବାପାଇଁ ମନସ୍ଥ କରି ତାହାଙ୍କୁ ଗୋଟିଏ ପ୍ରଶ୍ନ
ପଚାରିଲା। 36ସେ କହିଲା, "ହେ ଗୁରୁ, ମୋଶାଙ୍କ ବ୍ୟବସ୍ଥା
ଭିତରୁ କେଉଁ ଆଦେଶଟି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ?"
37ଯୀଶୁ କହିଲେ, "ତୁମ୍ଭେ ସମ୍ପୂର୍ଣ୍ଣ ହୃଦୟ, ସମ୍ପୂର୍ଣ୍ଣ
ଆତ୍ମା ଓ ସମ୍ପୂର୍ଣ୍ଣ ମନ ଦେଇ ପ୍ରଭୁ ତୁମ୍ଭର ପରମେଶ୍ୱରଙ୍କୁ
ପ୍ରେମ କରିବ।'* 38ଏହା ପ୍ରଥମ ଓ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ
ଆଦେଶ। 39ଦ୍ୱିତୀୟ 'ଆଦେଶଟି ମଧ୍ୟ ପ୍ରଥମ ଆଦେଶ
ଭଳି। ତାହା ହେଉଛି: 'ତୁମ୍ଭେ ନିଜକୁ ଯେପରି ଭଲ
ପାଅ, ଅନ୍ୟକୁ ମଧ୍ୟ ସେହିପରି ଭଲ ପାଅ।'* 40ସମସ୍ତ
ବ୍ୟବସ୍ଥା ଓ ଭବିଷ୍ୟଦ୍‌ବକ୍ତାମାନଙ୍କର ଲେଖାଗୁଡ଼ିକ ଏହି
ଦୁଇଟି ଆଦେଶ ଉପରେ ଆଧାରିତ।"

### ଫାରୂଶୀମାନଙ୍କୁ ଯୀଶୁଙ୍କର ଗୋଟିଏ ପ୍ରଶ୍ନ

41ଯେତେବେଳେ ଫାରୂଶୀମାନେ ଏକାଠି ଥିଲେ। ଯୀଶୁ
ସେମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରିଲେ। 42ଯୀଶୁ କହିଲେ,
"ଖ୍ରୀଷ୍ଟଙ୍କ ବିଷୟରେ ତୁମ୍ଭେମାନେ କ'ଣ ମନେ କରୁଛ?
ସେ କାହାର ପୁଅ?"
ସେମାନେ କହିଲେ, "ଦାଉଦଙ୍କ ପୁଅ"।
43ଯୀଶୁ ଫାରୂଶୀମାନଙ୍କୁ ପଚାରିଲେ, "ଦାଉଦ ତାହାଙ୍କୁ
ପ୍ରଭୁ ବୋଲି କାହିଁକି ସମ୍ବୋଧନ କରିଲେ। ଦାଉଦ ପବିତ୍ର
ଆତ୍ମାଙ୍କ ଶକ୍ତିରେ କହୁଥିଲେ। ଦାଉଦ କହିଲେ:

44 'ପ୍ରଭୁ ମୋର ପ୍ରଭୁ' ଖ୍ରୀଷ୍ଟଙ୍କୁ କହିଥିଲେ: ମୁଁ ତୁମ୍ଭର
ଶତ୍ରୁମାନଙ୍କୁ ତୁମ୍ଭର ନିୟନ୍ତ୍ରଣରେ ଦେବି ଏବଂ ତୁମ୍ଭେ
ମୋର ଡାହାଣ ପଟେ ବସିବ।"

ଗୀତସଂହିତା ୧୧୦:୧

45ଯଦି ଦାଉଦ ଖ୍ରୀଷ୍ଟଙ୍କୁ ପ୍ରଭୁ ବୋଲି କହୁଛନ୍ତି। ତେବେ
ଖ୍ରୀଷ୍ଟ କିପରି ଦାଉଦଙ୍କ ପୁଅ ହୋଇ ପାରିବେ"? 46ଜଣେ
ହେଲେ ଫାରୂଶୀ ଯୀଶୁଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିଲେନାହିଁ।
ସେହି ଦିନ ଠାରୁ ଯୀଶୁଙ୍କୁ ଆଉ କୌଣସି ପ୍ରଶ୍ନ ପଚାରି
ଫାନ୍ଦରେ ପକାଇବାକୁ କେହିହେଲେ ଚେଷ୍ଟା କରିବାକୁ
ସାହସ କଲେନାହିଁ।

### ଯୀଶୁଙ୍କର ଯିହୂଦୀ ଧର୍ମ-ନେତାଙ୍କୁ ସମାଲୋଚନା

୨୩ ତା'ପରେ ଯୀଶୁ ଜନସମୂହ ଓ ତାହାଙ୍କ ଶିଷ୍ୟମାନଙ୍କୁ
କହିଲେ, 2"ଧର୍ମ-ଶାସ୍ତ୍ରୀମାନେ ଓ ଫାରୂଶୀମାନେ
ମୋଶାଙ୍କ ବ୍ୟବସ୍ଥାର ବ୍ୟାଖ୍ୟା କରିବାର ଅଧିକାର ପାଇଛନ୍ତି।
3ତେଣୁ ସେମାନେ ଯାହାସବୁ କହୁଛନ୍ତି, ତାହା ତୁମ୍ଭେ
ମାନିବା ଉଚିତ। ତୁମ୍ଭକୁ ସେମାନେ ଯାହାସବୁ କରିବାକୁ
କହୁଛନ୍ତି, ତୁମ୍ଭେ ତାହା କରିବା ଉଚିତ। କିନ୍ତୁ ସେମାନେ
ଯାହାସବୁ କରୁଛନ୍ତି, ତୁମ୍ଭେ ତାହା କରନାହିଁ। କାରଣ
ସେମାନେ ଯାହାସବୁ କହନ୍ତି, ନିଜେ ତାକୁ କାର୍ଯ୍ୟରେ
କେବେ କରନ୍ତି ନାହିଁ। 4ମାନିବା ପାଇଁ କଠିନ ହେଲେ
ମଧ୍ୟ ସେମାନେ ଲୋକମାନଙ୍କ ପାଇଁ କଡ଼ାକଡ଼ ନିୟମ
ତିଆରି କରନ୍ତି। ସେହି ନିୟମଗୁଡ଼ିକ ମାନିବାପାଇଁ ସେମାନେ
ଲୋକଙ୍କୁ ବାଧ୍ୟ କରନ୍ତି। କିନ୍ତୁ ସେମାନେ ନିଜେ କେବେହେଲେ
ସେହି ନିୟମମାନଙ୍କ ମଧ୍ୟରୁ ଗୋଟିଏ ହେଲେ ଅନୁସରଣ
କରିବାକୁ ଚେଷ୍ଟା କରନ୍ତିନାହିଁ।

---

**ଅବ୍ରାହାମ, ଯିସ୍ହାକ ଓ ଯାକୁବ** ପୁରାତନ ନିୟମ'ର ତିନି ଜଣ ଯିହୁଦୀୟ ପ୍ରମୁଖ ନେତା।

**'ମୁଁ ... ପରମେଶ୍ୱର ଅଟେ'** ଯାତ୍ରା. ୩:୬

**'ତୁମ୍ଭେ ... ପ୍ରେମ କରିବ'** ଦ୍ୱିତୀୟ ବିବରଣି ୬:୫

**'ତୁମ୍ଭେ ... ଭଲ ପାଅ'** ଲେବୀୟ. ୧୯:୧୮

୫"କେବଳ ଅନ୍ୟ ଲୋକଙ୍କୁ ଦେଖେଇ ହେବା ପାଇଁ
ଯାହା କିଛି ଭଲ କାମ, ତାହା ସେମାନେ କରନ୍ତି। ନିଜକୁ
ଧାର୍ମିକ ଦେଖେଇ ହେବା ପାଇଁ ପ୍ରକୃତରେ ସେମାନେ ବଡ଼
ବଡ଼ କବଚ ପିନ୍ଧିଥାନ୍ତି, ଓ ନିଜର ସ୍ୱତନ୍ତ୍ର ପ୍ରାର୍ଥନା-ପୋଷାକକୁ
ବହୁତ ଲମ୍ବା କରିଥାନ୍ତି। ୬ଭୋଜିମାନଙ୍କରେ ମହତ୍ତ୍ୱପୂର୍ଣ୍ଣ
ଆସନମାନ ଓ ଧର୍ମସଭାମାନଙ୍କରେ ମହତ୍ତ୍ୱପୂର୍ଣ୍ଣ ଆସନ ମାନ
ପାଇବାକୁ ସେମାନେ ଭଲ ପାଆନ୍ତି। ୭ସେମାନେ ବଜାର
ସ୍ଥାନ ମାନଙ୍କରେ, ଲୋକମାନଙ୍କର ନମସ୍କାର ପ୍ରତିଦାନ
କରିବାକୁ ଭଲ ପାଆନ୍ତି। ସେମାନେ ଚାହାଁନ୍ତି ଯେ ଲୋକେ
ତାହାଙ୍କୁ 'ରାବ୍ବୀ'* ବୋଲି ଡାକନ୍ତୁ। ୮କିନ୍ତୁ ତୁମ୍ଭ ଭିତରୁ
କେହି ନିଜକୁ ରାବ୍ବୀ(ଗୁରୁ) ବୋଲେଇବ ନାହିଁ। ତୁମ୍ଭେ
ସମସ୍ତେ ଭାଇ-ଭଉଣୀ। ତୁମ୍ଭସମସ୍ତଙ୍କର ଜଣେ ମାତ୍ର ଗୁରୁ
ଅଛନ୍ତି। ୯ଏ ସଂସାରରେ କାହାରିକୁ 'ପରମପିତା' ବୋଲି
ସମ୍ବୋଧନ କରନାହିଁ। ତୁମ୍ଭର ଜଣେ ମାତ୍ର ପରମପିତା ଯେ
କି ସ୍ୱର୍ଗରେ ରହୁଛନ୍ତି। ୧୦ତୁମ୍ଭେ ନିଜକୁ ମାଲିକ ବୋଲାଇବ
ନାହିଁ। କାରଣ ତୁମ୍ଭର କେବଳ ଜଣେ ମାତ୍ର ମାଲିକ। ସେ
ହେଉଛନ୍ତି ଯୀଶୁ। ୧୧ଯେଉଁଲୋକ ଚାକର ଭଳି ତୁମ୍ଭର
ସେବାକରିବ, ସେ ଲୋକ ତୁମ୍ଭମାନଙ୍କ ମଧ୍ୟରେ ସବୁଠାରୁ
ବଡ ହେବ। ୧୨ଯେଉଁଲୋକ ନିଜକୁ ଅନ୍ୟଲୋକଙ୍କ ଅପେକ୍ଷା
ଉଚ୍ଚ କରିବ, ତାକୁ ନତ କରାଯିବ। ଯେଉଁଲୋକ ନିଜକୁ
ନତ କରିବ, ତାକୁ ମହାନ କରାଯିବ।

୧୩"ରେ କପଟୀ ଧର୍ମଶାସ୍ତ୍ରୀମାନେ ଓ ଫାରୂଶୀମାନେ?
ତୁମ୍ଭକୁ ଧିକ୍! ତୁମ୍ଭେମାନେ ଲୋକମାନଙ୍କ ପାଇଁ ସ୍ୱର୍ଗ-ରାଜ୍ୟର
ଦ୍ୱାର ବନ୍ଦ କରି ଦେଉଛ। ତୁମ୍ଭେମାନେ ନିଜେ ତ ପ୍ରବେଶ
କରି ପାରୁନାହଁ, ତା'ଛଡା ଯେଉଁଲୋକମାନେ ପ୍ରବେଶ
କରିବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କୁ ମଧ୍ୟ ତୁମ୍ଭେମାନେ
ଅଟକେଇ ଦେଉଛ। ୧୪*

୧୫"ରେ କପଟୀ ଧର୍ମ-ଶାସ୍ତ୍ରୀ ଓ ଫାରୂଶୀମାନେ! ହାୟ!
ତୁମ୍ଭର ମାର୍ଗ ଅନୁସରଣ କରିବା ପାଇଁ ଲୋକ ଖୋଜି
ପାଇବା ପାଇଁ ତୁମ୍ଭେ ବିଭିନ୍ନ ଦେଶ ଓ ସମୁଦ୍ର ପାରି
ହୋଇ ଚାଲିଯାଉଛ। ଯେତେବେଳେ ସେଭଳି ଲୋକଟିଏ
ପାଇ ଯାଉଛ ସେତେବେଳେ ତାକୁ ତୁମ୍ଭେ ତୁମ୍ଭଠାରୁ ଅଧିକ
ଖରାପ କରିପକାଉଛ। ତୁମ୍ଭେ ସବୁ ଏତେ ଖରାପ ଯେ
ତୁମ୍ଭେ କେବଳ ନରକର ଅଧିକାରୀ ହେବ।

୧୬"ରେ ଅନ୍ଧ ମାର୍ଗ-ଦର୍ଶକ ଗଣ! ତୁମ୍ଭକୁ ଧିକ୍! ତୁମ୍ଭେ
କହିଥାଅ, ଯଦି କେହି ଲୋକ ଉପାସନା ମନ୍ଦିର ନାମରେ
ରାଣ ପକାଇ ଶପଥ କରିଥାଏ ତେବେ ତାକୁ ସେହି ଶପଥ
ରଖିବା ଦରକାର ନାହିଁ। କିନ୍ତୁ ଯେଉଁ ଲୋକ ଉପାସନା
ମନ୍ଦିରର ସୁନା ନାମରେ ରାଣ ପକାଇ ଶପଥ କରେ,
ତେବେ ସେ ନିଶ୍ଚୟ ସେହି ଶପଥ ରକ୍ଷା କରିବ।
୧୭ତୁମ୍ଭେମାନେ ଅନ୍ଧ ଓ ମୂର୍ଖ। ଅଧିକ ବଡ଼ କିଏ? ସୁନା
ନା ମନ୍ଦିର? ମନ୍ଦିର ସେହି ସୁନାକୁ ପବିତ୍ର କରିଥାଏ।
ତେଣୁ ମନ୍ଦିର ଅଧିକ ବଡ। ୧୮ତୁମ୍ଭେମାନେ କହିଥାଅ,
'ଯଦି କେହି ବେଦୀନାମରେ ଶପଥ ନିଏ, ତେବେ ତାର
କୌଣସି ଅର୍ଥନାହିଁ। କିନ୍ତୁ ଯଦି ଜଣେ ବେଦୀ ଉପରେ
ରଖାଯାଇଥିବା ଉପହାର ନାମରେ ଶପଥ ନିଏ, ତେବେ
ତାକୁ ନିଶ୍ଚିତ ଭାବରେ ରକ୍ଷା କରିବାକୁ ପଡିବ। ୧୯ତୁମ୍ଭେମାନେ
ଅନ୍ଧ। ତୁମ୍ଭେ କିଛି ବୁଝିନାହିଁ। ବଡ଼ କିଏ? ବେଦୀ ନା
ଉପହାର? ବେଦୀ ଉପହାରକୁ ପବିତ୍ର କରିଥାଏ। ତେଣୁ
ବେଦୀ ବଡ଼। ୨୦ଏଣୁ ଯଦି କେହି ବେଦୀ ନାମରେ ଶପଥ
କରେ ତେବେ ସେ ବେଦୀ ସହିତ ବେଦୀ ଉପରେ ଯାହା
ରଖା ଯାଇଥାଏ, ସେ ସମସ୍ତଙ୍କ ନାମରେ ଶପଥ କରିଥାଏ।
୨୧ଯେଉଁଲୋକ ମନ୍ଦିର ନାମରେ ଶପଥ କରେ, ସେ
ମନ୍ଦିର ଭିତରେ ଜଣେ ଯିଏ ଅଛନ୍ତି, ତାହାଙ୍କ ନାମରେ
ଶପଥ ନେଇଥାଏ। ୨୨ଏବଂ ଯେଉଁଲୋକ ସ୍ୱର୍ଗ ନାମରେ
ଶପଥ ନେଇଥାଏ, ସେ ପରମେଶ୍ୱରଙ୍କ ସିଂହାସନ ସହିତ
ସେହି ସିଂହାସନ ଉପରେ ଯେ ବିରାଜମାନେ, ତାହାଙ୍କ
ନାମରେ ମଧ୍ୟ ଶପଥ ନେଇଥାଏ।

୨୩"ରେ କପଟୀ ଯିହୂଦୀ ଧର୍ମଶାସ୍ତ୍ରୀମାନେ ଓ ଫାରୂଶୀମାନେ!
ତୁମ୍ଭକୁ ଧିକ! ତୁମ୍ଭ ପାଖରେ ଯାହା ଅଛି, ତାର ଦଶ
ଭାଗରୁ ଏକ ଭାଗ, ଏପରିକି ନିଜର ପୋଦନା, ପାନମଧୁରୀ
ଓ ଜୀରାର ମଧ୍ୟ ଦଶ ଭାଗରୁ ଏକଭାଗ ତୁମ୍ଭେ ପରମେଶ୍ୱରଙ୍କୁ
ଦେଉଛ, କିନ୍ତୁ ତୁମ୍ଭେମାନେ ନିୟମର ଅଧିକ ନ୍ୟାୟ, ଦୟା
ଓ ବିଶ୍ୱାସ ଭଳି ମହତ୍ତ୍ୱପୂର୍ଣ୍ଣ ଉପଦେଶ ଗୁଡ଼ିକୁ ପାଳନ
କରୁନାହିଁ। ମାତ୍ର ଏଗୁଡ଼ିକ ତୁମ୍ଭର ପାଳନ କରିବା ଉଚିତ।
ଅନ୍ୟ ଉପଦେଶଗୁଡ଼ିକୁ ମଧ୍ୟ ନିୟମିତ ରୂପରେ ତୁମ୍ଭର
ପାଳନ କରିବା ଉଚିତ। ୨୪ତୁମ୍ଭେମାନେ ଲୋକଙ୍କୁ ମାର୍ଗ
ବତାଉଛ। କିନ୍ତୁ ତୁମ୍ଭେମାନେ ନିଜେ ଅନ୍ଧ। ତୁମ୍ଭେମାନେ
ଏହି ପ୍ରକାରର ଅଟ। ତୁମ୍ଭମାନଙ୍କ ପାନୀୟ ଭିତରୁ ମାଛିକୁ
ଛାଣି ଓ ଓଟକୁ ଗିଳି ପକାଅ।

୨୫"ରେ କପଟୀ ଧର୍ମ-ଶାସ୍ତ୍ରୀମାନେ ଓ ଫାରୂଶୀମାନେ!
ତୁମ୍ଭେମାନେ ଧିକ! ତୁମ୍ଭେମାନେ ତୁମ୍ଭର ଥାଳି-ଗିନାର
ବାହାର ପଟ ଭଲ ଭାବରେ ଧୋଉଛ। କିନ୍ତୁ ତୁମ୍ଭମାନଙ୍କର
ଅନ୍ତର ଅନ୍ୟକୁ ଠକି ନିଜକୁ ତୋଷିବା ପଦାର୍ଥରେ ପୂର୍ଣ୍ଣ
କରୁଛ। ୨୬ରେ ଅନ୍ଧ ଫାରୂଶୀମାନେ! ପ୍ରଥମେ ଗିନାର
ଭିତର ପଟ ମାଜି ସଫା କର। କିନ୍ତୁ ବାସ୍ତବରେ ଗିନାର
ଭିତର ପଟ ସଫା ରହିଲେ, ବାହାର ପଟ ମଧ୍ୟ ସଫା
ହୋଇ ପାରିବ।

୨୭"ରେ କପଟୀ ଧର୍ମ-ଶାସ୍ତ୍ରୀମାନେ! ରେ ଫାରୂଶୀମାନେ?
ତୁମ୍ଭକୁ ଧିକ! ତୁମ୍ଭେ ସବୁ ଧଳା ରଙ୍ଗ ବୋଳା ହୋଇଥିବା
ସମାଧି ଭଳି। ଏହି ସମାଧି ମାନଙ୍କର ବାହାର ପଟ ସୁନ୍ଦର
ଦେଖାଯାଏ। କିନ୍ତୁ ସମାଧି ଭିତର ମଲା ଲୋକର କେବଳ
କଙ୍କାଳ ଥାଏ। ସବୁ ପ୍ରକାର ଅପରିଷ୍କାର ଜିନିଷ ତା'
ଭିତରେ ଥାଏ। ୨୮ଠିକ୍ ସେହିଭଳି ତୁମ୍ଭେ ବାହାରୁ ତ
ଅନ୍ୟମାନଙ୍କୁ ସୁନ୍ଦର ଦେଖା ଯାଉଛ, କିନ୍ତୁ ଭିତରେ ତୁମ୍ଭେ
ଛନ୍ଦ-କପଟ ଓ ଖରାପ-ଗୁଣରେ ପରିପୂର୍ଣ୍ଣ।

୨୯"ରେ କପଟୀ ଧର୍ମଶାସ୍ତ୍ରୀମାନେ! ଓ ଫାରୂଶୀମାନେ!
ତୁମ୍ଭେ ଭବିଷ୍ୟଦ୍‌ବକ୍ତାମାନଙ୍କ ପାଇଁ ସମାଧି ତିଆରି କରୁଛ।

---

**ରାବ୍ବୀ** ଗୁରୁ

**ପଦ ସଂଖ୍ୟା ୧୪** "ରେ କପଟୀ ଧର୍ମଶାସ୍ତ୍ରୀ ଓ ଫାରୂଶୀମାନେ! ତୁମେମାନେ ବିଧବାଙ୍କ ଘର-ଦ୍ୱାର ଠକି ନେଉଛ, ଏବଂ ଦେଖେଇ ହେବା ପାଇଁ ବହୁତ ଲମ୍ବା ଲମ୍ବା ପ୍ରାର୍ଥନା କରୁଛ। ଏଥିପାଇଁ ତୁମକୁ କଠିନ ଦଣ୍ଡ ମିଳିବ।"

ଯେଉଁ ଲୋକମାନେ ଭଲ ଜୀବନ କଟାଇଥିଲେ, ତୁମ୍ଭେମାନେ
ତାହାଙ୍କ ସମାଧି ସୁଶୋଭିତ କରୁଛ। ୩୦ଏବଂ ତୁମ୍ଭେମାନେ
କୁହୁଛ ଯେ, 'ଆମେ ଯଦି ଆମ୍ଭ ପୂର୍ବ-ପୁରୁଷଙ୍କ ସମକାଳୀନ
ହୋଇଥାଆନ୍ତୁ, ତେବେ ଏହି ଭବିଷ୍ୟଦ୍‌ବକ୍ତାମାନଙ୍କୁ ମାରି
ଦେବା ପାଇଁ ଆମ୍ଭେ କେବେହେଲେ ସାହାଯ୍ୟ କରି ନ
ଥାନ୍ତୁ।' ୩୧ତୁମ୍ଭେ ପ୍ରମାଣିତ କରି ଦେଉଛ ଯେ ତୁମ୍ଭେମାନେ
ସେହି ଲୋକମାନଙ୍କର ବଂଶଧର ଯେଉଁମାନେ
ଭବିଷ୍ୟଦ୍‌ବକ୍ତାମାନଙ୍କୁ ହତ୍ୟା କଲେ। ୩୨ତୁମ୍ଭର ପୂର୍ବ-ପୁରୁଷ
ଯେଉଁ ପାପ ଆରମ୍ଭ କରି ଦେଇଥିଲେ, ତୁମ୍ଭେ ତାହାକୁ
ଶେଷ କରିବ।

୩୩"ତୁମ୍ଭେମାନେ ସାପ ଭଳି। ତୁମ୍ଭେ ବିଷଧର ସର୍ପ-କୁଳରେ
ଜନ୍ମ ହୋଇଛ। ତୁମ୍ଭେ ପରମେଶ୍ୱରଙ୍କଠାରୁ ରକ୍ଷା ପାଇବ
ନାହିଁ। ତୁମ୍ଭ ସମସ୍ତଙ୍କୁ ଦୋଷୀ ବୋଲି ବିଚାର କରାଯିବ, ଓ
ତୁମ୍ଭେମାନେ ନରକକୁ ଯିବ। ୩୪ତେଣୁ ମୁଁ ତୁମ୍ଭକୁ ଏହା
କହୁଛି: ମୁଁ ତୁମ୍ଭକୁ ଭବିଷ୍ୟଦ୍‌ବକ୍ତାମାନଙ୍କ, ଜ୍ଞାନୀଲୋକ ଓ
ଗୁରୁମାନଙ୍କ ପାଖକୁ ପଠାଉଛି। ତୁମ୍ଭେ ସେମାନଙ୍କ ମଧ୍ୟରୁ
କେତେକଙ୍କୁ ମାରିବ, କ୍ରୁଶରେ ଚଢ଼ାଇ ତୁମ୍ଭେ କେତେକଙ୍କୁ
ହତ୍ୟା କରିବ। ତୁମ୍ଭର ପ୍ରାର୍ଥନା-ଗୃହରେ ତୁମ୍ଭେ କେତେକଙ୍କୁ
କୋରଡା ମାରିବ। ସହରରୁ ସହର ତୁମ୍ଭେମାନେ ସେମାନଙ୍କର
ପଛେ ପଛେ ଯାଇ କେତେକଙ୍କୁ ତାଡ଼ନା କରିବ। ୩୫ତେଣୁ
ଧାର୍ମିକ ଲୋକ ହେବଲଙ୍କଠାରୁ ଆରମ୍ଭକରି ବରଖିୟଙ୍କ
ପୁତ୍ର ଜିଖରିୟଙ୍କ ପର୍ଯ୍ୟନ୍ତ ଏ ପୃଥିବୀରେ ଯେତେ ଭଲ
ଲୋକଙ୍କୁ ମାରି ଦିଆ ଯାଇଛି, ସେଥିପାଇଁ, ତୁମ୍ଭେମାନେ
ଦୋଷୀ ସାବ୍ୟସ୍ତ ହେବ। ବରଖିୟଙ୍କ ପୁତ୍ର ଜିଖରିୟଙ୍କୁ
ମନ୍ଦିର ଓ ବେଦୀ ମଧ୍ୟ ସ୍ଥଳରେ ତୁମ୍ଭେମାନେ ହତ୍ୟା
କରିଥିଲ। ୩୬ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି ଯେ, ବର୍ତ୍ତମାନ
ତୁମ୍ଭ ସହ ଜୀବିତ ଥିବା ଲୋକମାନଙ୍କ ପାଇଁ ଏହି ସମସ୍ତ
କଥା ଘଟିବ।

## ଯିରୂଶାଲମର ଲୋକମାନଙ୍କୁ ଯୀଶୁଙ୍କ ସତର୍କତା

୩୭"ଯିରୂଶାଲମ! ରେ ଯିରୂଶାଲମ! ତୁ ଭବିଷ୍ୟଦ୍‌ବକ୍ତାମାନଙ୍କୁ
ହତ୍ୟା କରିଛୁ। ପରମେଶ୍ୱର ଯେଉଁମାନଙ୍କୁ ତୋ ପାଖକୁ
ପଠାଇଥିଲେ, ତୁ ସେମାନଙ୍କୁ ପଥର ଫୋପାଡ଼ି ହତ୍ୟା
କରିଛୁ। ତୋର ଲୋକମାନଙ୍କୁ ମୁଁ ବହୁତ ଥର ସାହାଯ୍ୟ
କରିବାକୁ ଇଚ୍ଛା କରିଥିଲି। ଯେଉଁଭଳି ଗୋଟିଏ କୁକୁଡ଼ା ନିଜ
ଛୁଆମାନଙ୍କୁ ନିଜ ପକ୍ଷ୍ୟତଳେ ଏକାଠି କରେ, ସେହିପରି
ତୋର ସମସ୍ତ ସନ୍ତାନମାନଙ୍କୁ ଏକାଠି କରିବା ପାଇଁ ମୁଁ
ଅନେକ ଥର ଚାହିଁଥିଲି। କିନ୍ତୁ ତୁ ମୋତେ ତାହା କରେଇ
ଦେଲୁନାହିଁ। ୩୮ବର୍ତ୍ତମାନ ତୋର ଘର ପୁରାପୁରି ଉଜୁଡ଼ି
ଯିବ। ୩୯ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି ଯେ, ଯେଉଁ
ପର୍ଯ୍ୟନ୍ତ ତୁମ୍ଭେମାନେ ମୋତେ ନ କହିଛ: 'ଯିଏ ପ୍ରଭୁଙ୍କ
ନାମରେ ଆସୁଛନ୍ତି, ସେ ଧନ୍ୟ, ସେ ପର୍ଯ୍ୟନ୍ତ ତୁମ୍ଭେମାନେ
ମୋତେ ଆଉ ଦେଖି ପାରିବନାହିଁ।*'"

## ମନ୍ଦିର ଧ୍ୱଂସ ବିଷୟରେ ଭବିଷ୍ୟଦ୍‌ବାଣୀ

୨୪ ଯୀଶୁ ମନ୍ଦିର ଛାଡ଼ି ବାହାରି ଆସିଲେ ଓ ଚାଲି
ଯାଉଥିଲେ। ସେହି ସମୟରେ ତାହାଙ୍କ
ଶିଷ୍ୟମାନେ ତାହାଙ୍କୁ ମନ୍ଦିରର ଭବନଗୁଡ଼ିକୁ ଦେଖାଇବା
ପାଇଁ ତାହାଙ୍କ ପାଖକୁ ଆସିଲେ। ୨ଯୀଶୁ ସେମାନଙ୍କୁ
ପଚାରିଲେ, "ଏହି ଭବନଗୁଡ଼ିକୁ ତୁମ୍ଭେମାନେ ଦେଖି ପାରୁଛ?
ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ସବୁତକ ଭବନ ଧ୍ୱଂସ
ହୋଇଯିବ। ଏଠାରେ ଗୋଟିଏ ହେଲେ ପଥର ଅନ୍ୟଟି
ଉପରେ ରହିପାରିବ ନାହିଁ। ସବୁତକ ପଥର ଅନ୍ୟଟି
ଉପରେ ରହି ପାରିବନାହିଁ। ସବୁତକ ପଥର ଭୂଇଁ ଉପରେ
କୁଢ଼େଇ ହୋଇ ପଡ଼ିବ।"

୩ପରେ ଯେତେବେଳେ ଯୀଶୁ ଜୀତ ପର୍ବତ ଉପରେ
ବସି ଥିଲେ, ତାହାଙ୍କର ଶିଷ୍ୟମାନେ ସେ ଏକାନ୍ତରେ ଥିବା
ସମୟରେ ତାହାଙ୍କ ପାଖକୁ ଆସିଲେ। ସେମାନେ ପଚାରିଲେ,
"ଆମ୍ଭକୁ କୁହନ୍ତୁ, ଏସବୁ ଘଟଣା କେବେ ଘଟିବ? କେଉଁ
ସଙ୍କେତ ଦେଖାଇବ ଯେ ଆପଣଙ୍କ ପୁନର୍ବାର ଆସିବା ଓ
ଜଗତର ଅନ୍ତ ହେବା ସମୟ ହେଲାଣି?"

୪ଯୀଶୁ ଉତ୍ତର ଦେଲେ, "ସାବଧାନ ହୁଅ, ତୁମ୍ଭମାନଙ୍କୁ
ଯେପରି କେହି ପଥଭ୍ରଷ୍ଟ ନ କରେ। ୫ମୁଁ ତୁମ୍ଭମାନଙ୍କୁ
ଏକଥା ଏଥିପାଇଁ କହୁଛି ଯେ, ଅନେକ ଲୋକ ମୋ
ନାମରେ ଆସିବେ, ଓ କହିବେ 'ମୁଁ ନିଜେ ଖ୍ରୀଷ୍ଟ', ଓ
ସେମାନେ ଅନେକ ଲୋକଙ୍କୁ ପଥଭ୍ରଷ୍ଟ କରିବେ।
୬ତୁମ୍ଭେମାନେ ଯୁଦ୍ଧର ବିଷୟରେ ଓ ଯୁଦ୍ଧର ଗୁଜବ
ବିଷୟରେ ଶୁଣିବ। କିନ୍ତୁ ଦେଖ! ଭୟ କରିବ ନାହିଁ।
ଅନ୍ତକାଳ ଆସିବା ପୂର୍ବରୁ ଏସବୁ ଘଟଣା ନିଶ୍ଚୟ ଘଟିବ।
୭ଗୋଟିଏ ଜାତି ଅନ୍ୟ ଜାତିର ବିରୁଦ୍ଧରେ, ଓ ଗୋଟିଏ
ରାଜ୍ୟ ଅନ୍ୟ ଗୋଟିଏ ରାଜ୍ୟ ବିରୁଦ୍ଧରେ ଠିଆ ହେବ।
ବିଭିନ୍ନ ସ୍ଥାନରେ ଦୁର୍ଭିକ୍ଷ ପଡ଼ିବ ଓ ଭୂମିକମ୍ପ ହେବ।
୮କିନ୍ତୁ ଏ ଘଟଣାଗୁଡ଼ିକ କେବଳ ପ୍ରଥମ-ପ୍ରସୂତି-ବେଦନା
ଭଳି ହେବ।

୯"ସେତେବେଳେ ଲୋକେ ତୁମ୍ଭମାନଙ୍କ ପ୍ରତି ଖରାପ
ବ୍ୟବହାର କରିବେ। ସେମାନେ ତୁମ୍ଭମାନଙ୍କୁ ଦଣ୍ଡ ଦେବା
ପାଇଁ ଧରାଇ ଦେବେ। ସେମାନେ ତୁମ୍ଭମାନଙ୍କୁ ମାରିଦେବେ।
ତୁମ୍ଭେମାନେ ମୋର ଶିଷ୍ୟ ହୋଇଥିବା ଯୋଗୁଁ ସମସ୍ତ
ଦେଶର ଲୋକମାନେ ତୁମ୍ଭମାନଙ୍କୁ ଘୃଣା କରିବେ।
୧୦ସେତେବେଳେ ଅନେକ ବିଶ୍ୱାସୀ-ଲୋକ ବିଶ୍ୱାସ ହରେଇ
ବସିବେ। ସେମାନେ ପରସ୍ପରର ବିରୋଧୀ ହେବେ, ଓ
ପରସ୍ପରକୁ ଘୃଣା କରିବେ। ୧୧ଅନେକ ଭଣ୍ଡ ଭବିଷ୍ୟଦ୍‌ବକ୍ତା
ବାହାରିବେ। ସେମାନେ ଅନେକ ଲୋକଙ୍କୁ ଠକିବେ, ଓ
ସେମାନଙ୍କ କଥାରେ ପଡ଼ି ଅନେକ ଲୋକ ଭୁଲ କଥାରେ
ବିଶ୍ୱାସ କରିବେ। ୧୨ସଂସାରରେ ମନ୍ଦ ବଢ଼ି ବଢ଼ି ଚାଲିବ।
ଅଧିକାଂଶ ବିଶ୍ୱାସୀ ଲୋକଙ୍କର ପରମେଶ୍ୱର-ପ୍ରେମ ଲୋପ
ପାଇଯିବ। ୧୩କିନ୍ତୁ ଯେଉଁଲୋକ ଶେଷ ପର୍ଯ୍ୟନ୍ତ ଦୃଢ଼
ଭାବରେ ତିଷ୍ଠି ରହିବ ସେ ଉଦ୍ଧାର ପାଇବ। ୧୪ଈଶ୍ୱରଙ୍କ
ରାଜ୍ୟର ସୁସମାଚାର ସାରା ଜଗତରେ ପ୍ରଚାରିତ ହେବ।
ସମସ୍ତ ଦେଶର ଲୋକମାନେ ଏହା ଶୁଣିବେ। ତା'ପରେ
ଅନ୍ତକାଳ ଆସିବ।

**'ଯିଏ ପ୍ରଭୁଙ୍କ ... ପାରିବନାହିଁ'** ଗୀତସଂହିତା ୧୧୮:୨୬

୧୫"ଭବଷ୍ୟଦ୍‌ବକ୍ତା ଦାନୟେଲ 'ଧ୍ୱଂସ ସାଧକ ଭୟଙ୍କର
ବସ୍ତୁ'* ବଷୟରେ କହଲେ। ଏହ ଭୟଙ୍କର ବସ୍ତୁଟି ପବତ୍ର
ସ୍ଥାନରେ ଠିଆ ହୋଇଥିବାର ଦେଖାଯିବ।" (ଏହାକୁ ପଢୁଥିବା
ଲୋକେ ଏହାର ଅର୍ଥ ବୁଝି ପାରବା ଉଚତ।) ୧୬"ସେତେବେଳେ
ଯିହୂଦାର ଲୋକମାନେ ପର୍ବତ ଆଡକୁ ପଳେଇଯିବା ଉଚତ।
୧୭ସେତେବେଳେ କୌଣସି ଜନଷ ପାଇଁ ତିଳେ ହେଲେ
ସମୟ ନଷ୍ଟ କରବା ଉଚତ ନୁହେଁ। ସେତେବେଳେ ଘରର
ଛାତ ଉପରେ ଥିବା ଲୋକ ଘରୁ କୌଣସି ଜନଷ ପାଇବା
ପାଇଁ ତଳକୁ ଓହ୍ଲେଇ ନ ଆସୁ। ୧୮ଜମିରେ ଥିବା ବ୍ୟକ୍ତ
ନଜର ଗୃହର ଆଣିବାକୁ ଫେର ନ ଯାଉ। ୧୯ଯେଉଁ
ମହଳାମାନେ ଗର୍ଭବତୀ ଥିବେ, କମ୍ବା ଯାହା କୋଳରେ
ଶିଶୁଟିଏ ଥିବ ସେମାନେ ଏହ ସମୟରେ ବହୁତ କଷ୍ଟ
ଭୋଗିବେ। ୨୦କନ୍ତୁ ପ୍ରାର୍ଥନା କର ଯେ ଶୀତଦନ କମ୍ବା
ବଶ୍ରାମ-ଦବସ* ରେ ଏ ଗୁଡକ ନ ଘଟୁ ଯେପର ତୁମ୍ଭକୁ
ପଳାଇବାକୁ ନ ପଡ଼େ। ୨୧କାରଣ ସେତେବେଳେ ଏତେ
ଅଧିକ ବପଦ ଆସିବ ଯେ ସେଭଳ ବପଦ ସୃଷ୍ଟିର ଆରମ୍ଭ
କାଳରୁ ଏ ପର୍ଯ୍ୟନ୍ତ ଆସିନାହିଁ କ ଭବଷ୍ୟତରେ ଆସିବନାହିଁ।
୨୨ପରମେଶ୍ୱର ଏହ ବପଦପୂର୍ଣ୍ଣ ସମୟକୁ କମେଇ ଦେବାକୁ
ସ୍ଥିର କରଛନ୍ତ। ନହେଲେ କେହ ବଞ୍ଚି ରହ ପାରବେ
ନାହିଁ। କନ୍ତୁ ପରମେଶ୍ୱର ଯେଉଁମାନଙ୍କୁ ବାଛଛନ୍ତ, କେବଳ
ସେହମାନଙ୍କ ପାଇଁ ସେହ ସମୟକୁ କମେଇ ଦେଇଛନ୍ତ।
୨୩ସେହ ସମୟରେ କେତେକ ଲୋକ ତୁମ୍ଭକୁ କହପାରନ୍ତ
'ଦେଖ, ଖ୍ରୀଷ୍ଟ ଏଠାରେ ଅଛନ୍ତ' କମ୍ବା 'ଖ୍ରୀଷ୍ଟ ସେଠାରେ
ଅଛନ୍ତ।' କନ୍ତୁ ସେମାନଙ୍କୁ ବଶ୍ୱାସ କରବନାହିଁ। ୨୪ଭଣ୍ଡ
ଖ୍ରୀଷ୍ଟମାନେ ଓ ଭଣ୍ଡ ଭବଷ୍ୟଦ୍‌ବକ୍ତାମାନେ ବାହାରବେ।
ସେମାନେ ବହୁତ ବଡ଼ ବଡ଼ ଆଶ୍ଚର୍ଯ୍ୟଜନକ କାମ କରବେ,
ଓ ଚମତ୍କାର ପ୍ରଦର୍ଶନ କରବେ। ଯଦ ସମ୍ଭବ ହୁଏ,
ତେବେ ପରମେଶ୍ୱରଙ୍କ ଦ୍ୱାରା ମନୋନୀତ ଲୋକମାନଙ୍କୁ
ମଧ୍ୟ ସେମାନେ ବୋକା ବନେଇ ଦେବାକୁ ଚେଷ୍ଟା କରବେ।
୨୫ଏ ଗୁଡକ ଘଟିବା ପୂର୍ବରୁ ମୁଁ ତୁମ୍ଭକୁ ଚେତାବନୀ
ଦେଉଛ।
୨୬"କଛ ଲୋକେ ତୁମ୍ଭକୁ କହ ପାରନ୍ତ: 'ଦେଖ, ଖ୍ରୀଷ୍ଟ
ଜନବହୀନ ମରୁଭୂମି ଅଞ୍ଚଳରେ ଅଛନ୍ତ।' କନ୍ତୁ ତୁମ୍ଭେ
ଖ୍ରୀଷ୍ଟଙ୍କୁ ଖୋଜିବା ପାଇଁ ଜନବହୀନ ମରୁଭୂମି ଅଞ୍ଚଳକୁ
ଯିବନାହିଁ। ବା ସେମାନେ ତୁମ୍ଭକୁ କହ ପାରନ୍ତ: 'ଖ୍ରୀଷ୍ଟ
ସେହ କୋଠରୀରେ ଅଛନ୍ତ।' କନ୍ତୁ ତୁମ୍ଭେ ସେମାନଙ୍କୁ
ବଶ୍ୱାସ କରବ ନାହିଁ। ୨୭ଆକାଶରେ ବଜୁଳ ମାରଲେ
ପୂର୍ବରୁ ଆରମ୍ଭ ହୋଇ ପଶ୍ଚିମ ଆକାଶ ପର୍ଯ୍ୟନ୍ତ ବ୍ୟାପି
ଯାଏ, ଓ ଯେପର ସମସ୍ତେ ତାହା ଦେଖି ପାରନ୍ତ, ଠିକ୍
ସେହଭଳ ମନୁଷ୍ୟ-ପୁତ୍ରଙ୍କ ଆସିବା ସମୟରେ ସମସ୍ତେ
ଦେଖି ପାରବେ। ୨୮ଯେଉଁ ସ୍ଥାନରେ ତୁମ୍ଭେ ଶାଗୁଣାମାନଙ୍କୁ
ଏକାଠି ହୋଇଥିବାର ଦେଖ, ତୁମ୍ଭେ ସହଜରେ ଜାଣି ପାର
ଯେ ସେହ ସ୍ଥାନରେ ଗୋଟିଏ ମଲା ଜୀବ ପଡଛ। ଠିକ୍
ସେହଭଳ ମୋର ଆସିବା ଦନ ଏହପ୍ରକାର ହେବ।
୨୯"ସେହ ଦନ ଗୁଡ଼କର ବପଦ ପଡ଼ବା ପରେ-ପରେ
ଏହ ଘଟଣାମାନ ଘଟିବ:

'ସୂର୍ଯ୍ୟ କଳା ପଡ଼ଯିବ, ଚନ୍ଦ୍ର ଆଲୋକ ଦେବନ।
ତାରାମାନେ ଆକାଶରୁ ଖସି ପଡ଼ବେ। ଆକାଶର
ସମସ୍ତ ଶକ୍ତଗୁଡକ ପରବର୍ତ୍ତିତ ହୋଇଯିବେ।'
ଯିଶାଇୟ ୧୩ :୧୦; ୩୪:୪

୩୦"ପ୍ରଭୁ ମୋର ପ୍ରଭୁ ଖ୍ରୀଷ୍ଟଙ୍କୁ କହଥିଲେ:ସେତିକବେଳେ
ମନୁଷ୍ୟ-ପୁତ୍ରଙ୍କ ଆସିବା ସଙ୍କେତ ଆକାଶରେ ଦେଖାଦେବ।
ଜଗତର ସମସ୍ତ ଲୋକ ବଳାପ କରବେ। ଲୋକେ
ତାହାଙ୍କୁ ଆକାଶରେ ମେଘମାଳା ଉପରେ ଆସୁଥିବାର
ଦେଖିବେ। ମନୁଷ୍ୟପୁତ୍ର ଶକ୍ତ ଓ ମହାନ୍ ମହମା ସହତ
ଆସିବେ। ୩୧ନଜର ସ୍ୱର୍ଗଦୂତମାନଙ୍କୁ ପୃଥିବୀରେ ସର୍ବତ୍ର
ପଠାଇବା ପାଇଁ ମନୁଷ୍ୟପୁତ୍ର ମହା ତୂରୀ ଧ୍ୱନୀ ସହତ
ଆସିବେ। ସେହ ସ୍ୱର୍ଗଦୂତମାନେ ମର୍ତ୍ତ୍ୟର ଗୋଟିଏ ଭାଗରୁ
ଆଉ ଗୋଟିଏ ଭାଗ ପର୍ଯ୍ୟନ୍ତ ବୁଲ, ଚାରଆଡୁ ତାହାଙ୍କର
ମନୋନୀତ ଲୋକଙ୍କୁ ଏକାଠି କରବେ।
୩୨"ଡମ୍ବିରି ଗଛରୁ ଗୋଟିଏ ଶିକ୍ଷା-ଲାଭ କର।
ଯେତେବେଳେ ଡମ୍ବିରି ଗଛର ଡାଳଗୁଡକ ଶାଗୁଆ ଓ
ନରମ ହୁଏ, ସେତେବେଳେ ତୁମ୍ଭେ ଜାଣ ଯେ, ଖରାଦନ
ଶୀଘ୍ର ଆସିଯିବ। ୩୩ଠିକ୍ ସେହଭଳି ମୁଁ କହଥିବା କଥାଗୁଡକ
ଯେତେବେଳେ ଘଟିବାର ତୁମ୍ଭେ ଦେଖିବ, ତୁମ୍ଭେ ଜାଣିବ
ଯେ ଖ୍ରୀଷ୍ଟଙ୍କ ଆସିବା ସମୟ ନକଟ ହେଲାଣି। ୩୪ମୁଁ
ତୁମ୍ଭକୁ ସତ୍ୟ କହୁଛ। ବର୍ତ୍ତମାନର ଲୋକେ ବଞ୍ଚିଥିବା
ସମୟରେ ହିଁ ଏସବୁ ଘଟଣା ଘଟିବ। ୩୫ପୃଥିବୀ ଓ
ଆକାଶ ନଷ୍ଟ ହୋଇଯିବ, କନ୍ତୁ ମୋର ବାକ୍ୟ କେବେ
ଅନ୍ୟଥା ହେବନାହିଁ।

### କେବଳ ପରମେଶ୍ୱର ଉଚତ ସମୟ ଜାଣନ୍ତ

୩୬"ସେହ ଦନ ବା ସେହ ସମୟ କେବେ ଆସିବ,
କେହ ଜାଣନ୍ତ ନାହିଁ। ଏପରକ ସ୍ୱର୍ଗର ଦୂତମାନେ ଜାଣନ୍ତ
ନାହିଁ। ଏପରକ ପୁତ୍ର ଜାଣନ୍ତ ନାହିଁ, କେବଳ ପରମ-ପିତା
ଏହା ଜାଣନ୍ତ। ୩୭ନୋହଙ୍କ ସମୟରେ ଯେଭଳ ଘଟିଥିଲା,
ମନୁଷ୍ୟପୁତ୍ରଙ୍କ ଆସିବା ସମୟରେ ସେପର ଘଟିବ।
୩୮ସେତେବେଳେ ବନ୍ୟା ଆସିବା ପୂର୍ବରୁ ଲୋକମାନେ ଖିଆ
ଓ ପିଆ କରୁଥିଲେ, ଲୋକେ ବବାହ କରୁଥିଲେ ଏବଂ
ପିଲାମାନଙ୍କୁ ବବାହ ଦେଉଥିଲେ। ନୋହଙ୍କର ଜାହାଜରେ
ପ୍ରବେଶ କରବା ଦନ ପର୍ଯ୍ୟନ୍ତ ଲୋକେ ଏସବୁ କରୁଥିଲେ।
୩୯ଯାହା ସବୁ ସେତେବେଳେ ଘଟି ଯାଉଥିଲା, ଲୋକେ
ତାହା ଜାଣି ପାରୁ ନ ଥିଲେ। ସେତିକବେଳେ ବନ୍ୟା
ମାଡଆସିଲା। ସବୁ ଲୋକ ନଷ୍ଟ ହୋଇଗଲେ। ମନୁଷ୍ୟ-ପୁତ୍ର
ଆସିବା ସମୟରେ ଠିକ୍ ସେହପର ହେବ। ୪୦ଜମିରେ
ଦୁଇଜଣ ଲୋକ ଏକାଠି କାମ କରୁଥିବେ, ସେମାନଙ୍କ
ମଧ୍ୟରୁ ଜଣକୁ ସେଠାରେ ଛାଡ ଆଉ ଜଣକୁ ନଆଯିବ।

---

**ଧ୍ୱଂସ ସାଧକ ଭୟଙ୍କର ବସ୍ତୁ** ଦାନୟେଲ ୯:୨୭; ୧୧:୩୧; ୧୨:୧୧

**ବଶ୍ରାମ ଦବସ** ଯିହୁଦୀୟ ସପ୍ତାହର ସପ୍ତମ ଦବସ। ସେମାନଙ୍କ ପାଇଁ ଏହ ଦବସଟି ଗୋଟିଏ ସ୍ୱତନ୍ତ୍ର ଧାର୍ମିକ ଦବସ।

୪୧ଦୁଇଜଣ ସ୍ତ୍ରୀଲୋକ ମିଶି ଚକରେ ଶସ୍ୟ ପେଷୁଥିବେ,
ସେମାନଙ୍କ ମଧ୍ୟରୁ ଜଣକୁ ସେଠାରେ ବାଦ୍ ଦେଇ ଆରଜଣକୁ
ନିଆଯିବ।
୪୨“ତେଣୁ ସଦାବେଳେ ପ୍ରସ୍ତୁତ ରୁହ। ତୁମ୍ଭର ପ୍ରଭୁ
କେଉଁଦିନ ଆସିବେ ତାହା ତୁମ୍ଭେ ଜାଣ ନାହିଁ। ୪୩ମନେରଖ,
ଯଦି ଘରମାଲିକ ଜାଣିଥାଆନ୍ତେ ଯେ ଚୋର କେତେବେଳେ
ଆସିବ, ତେବେ ସେ ସତର୍କ ରହନ୍ତେ ଓ ଚୋରକୁ ଘରେ
ପଶିବାକୁ ଦିଅନ୍ତେ ନାହିଁ। ୪୪ଠିକ୍ ସେହିଭଳି ତୁମ୍ଭେ ଜାଗ୍ରତ
ରୁହ। କାରଣ ତୁମ୍ଭେ ଯେତେବେଳେ ଆଶା କରୁ ନ ଥିବ,
ଠିକ୍ ସେତିକିବେଳେ ମନୁଷ୍ୟ-ପୁତ୍ର ଆସିଯିବେ।
୪୫“କିଏ ବିଶ୍ୱାସଯୋଗ୍ୟ ଓ ବିଜ୍ଞ ଚାକର? ଯିଏ ଅନ୍ୟ
ଚାକରମାନଙ୍କୁ ଠିକ୍ ସମୟରେ ସେମାନଙ୍କର ଖାଦ୍ୟ ଦେବ,
ମାଲିକ ସେହିଭଳି ଚାକରକୁ ବିଶ୍ୱାସ କରିଥାନ୍ତି। କିଏ ସେ
ଚାକର, ସେହି କାମ କରିବା ପାଇଁ, ସେ କେଉଁ ଚାକରକୁ
ବିଶ୍ୱାସ କରିବେ? ୪୬ଯେତେବେଳେ ମାଲିକ ଫେରିଆସି
ଦେଖିବେ ଯେ ସେ ଚାକରଟିକୁ ଯେଉଁ କାମ ଦେଇଥିଲେ,
ସେ ସେହି କାମ ଠିକ୍ ଭାବରେ କରୁଛି, ସେତେବେଳେ
ସେ ଚାକରଟି ବହୁତ ଖୁସି ହେବ। ୪୭ମୁଁ ତୁମ୍ଭକୁ ସତ୍ୟ
କହୁଛି, ମାଲିକ ତାହାଙ୍କ ନିଜର ସମସ୍ତ ସମ୍ପତ୍ତିର ଦାୟିତ୍ୱ
ଦେବା ପାଇଁ ସେହି ଚାକରଟିକୁ ବାଛିବେ। ୪୮ଅନ୍ୟ
ପକ୍ଷରେ ଚାକରଟି ଯଦି ମନ୍ଦ ଲୋକ ହୋଇଥିବ, ଏବଂ
ସେ ମନେମନେ ଭାବିବ ଯେ ମାଲିକ ଏତେ ଶୀଘ୍ର
ଆସିବେନାହିଁ, ୪୯ତେବେ ସେ ଅନ୍ୟ ଚାକରମାନଙ୍କୁ ପିଟିବା
ଆରମ୍ଭ କରିଦେବ। ସେ ଖାଇ ଓ ଅନ୍ୟ ଲୋକମାନଙ୍କ
ସହିତ ମଦ୍ୟପାନ କରି ରହିବ। ୫୦ଚାକରଟି ଆଶା
କରୁନଥିବା ଦିନ ଓ ତାକୁ ଜଣା ନ ଥିବା ସମୟରେ ସେ
ମାଲିକ ଆସି ପହଞ୍ଚିବେ। ୫୧ମାଲିକ ତାକୁ କଠିନ ଶାସ୍ତି
ଦେବେ। ସେ ତାକୁ କପଟୀଲୋକଙ୍କ ସହିତ ଯେଉଁଠାରେ
ଲୋକମାନେ କାନ୍ଦନ୍ତି ଓ ଯନ୍ତ୍ରଣାରେ ଦାନ୍ତ କଡ଼ମଡ଼ କରନ୍ତି
ସେହି ସ୍ଥାନକୁ ପଠାଇଦେବେ।

## ଦଶ ଜଣ କୁମାରୀ ଝିଅଙ୍କ କାହାଣୀ

**୨୫** “ସେ ସମୟରେ ସ୍ୱର୍ଗରାଜ୍ୟ, ବର ଖୋଜିବାକୁ
ବାହାରିଥିବା ଦଶ ଜଣ କୁମାରୀ ଝିଅଙ୍କ ଭଳି
ହେବ। ଏହି ଝିଅମାନେ ବର ସହିତ ସାକ୍ଷାତ କରିବାକୁ
ବାହାରିଥିଲେ। ସେମାନେ ତାହାଙ୍କ ସହିତ ଦୀପ ଆଣି
ଥିଲେ, ୨ତାହାଙ୍କ ଭିତରୁ ପାଞ୍ଚ ଜଣ ବୋକୀ ଥିଲେ। ଆଉ
ପାଞ୍ଚ ଜଣ ଚତୁର ଥିଲେ। ୩ବୋକୀ ଝିଅ ପାଞ୍ଚ ଜଣ
ସେମାନଙ୍କ ସାଥିରେ ଦୀପ ସିନା ନେଇଥିଲେ, କିନ୍ତୁ ଦୀପ
ଜାଳିବା ପାଇଁ ବେଶୀ ତେଲ ଆଣି ନ ଥିଲେ। ୪ଚତୁର
ଝିଅ ପାଞ୍ଚ ଜଣ ଦୀପ ତ ନେଇଥିଲେ, ତା'ଛଡା
କାଚପାତ୍ରରେ ଅଧିକ ତେଲ ନେଇଥିଲେ। ୫ବରର ଆସିବା
ଡେରି ହୋଇଗଲା। ସବୁ ଝିଅଯାକ କ୍ଲାନ୍ତ ହୋଇ ଶେଷରେ
ଶୋଇ ପଡିଲେ।
୬“ଅଧ ରାତିରେ ଜଣେ କେହି ଘୋଷଣା କଲା: ବର
ଆସୁଛନ୍ତି। ବାହାରକୁ ଯାଅ ଓ ତାହାଙ୍କୁ ସାକ୍ଷାତ କର।
୭“ଏକଥା ଶୁଣି ସବୁ ଝିଅଯାକ ଉଠି ପଡିଲେ ନିଜ
ନିଜ ଦୀପ ସଜାଡ଼ିବାକୁ ଲାଗିଲେ। ୮ବୋକୀ ଝିଅମାନେ
ଚତୁର ଝିଅମାନଙ୍କୁ କହିଲେ, 'ତୁମ୍ଭ ତେଲରୁ ଆମ୍ଭକୁ ଟିକିଏ
ଦିଅ, ଆମ୍ଭ ଦୀପରୁ ତେଲ ପ୍ରାୟଃ ସରି ଯାଇଛି।'
୯“ଚତୁର ଝିଅମାନେ କହିଲେ, 'ନା, ନା, ଆମ୍ଭ ତେଲ
ଆମ୍ଭ ସମସ୍ତଙ୍କ ପାଇଁ ଯଥେଷ୍ଟ ହେବନାହିଁ। ବରଂ ତୁମ୍ଭେମାନେ
ଦୋକାନକୁ ଯାଇ ନିଜ ପାଇଁ କିଛି ତେଲ କିଣିଆଣ।'
୧୦“ତେଣୁ ପାଞ୍ଚ ଜଣ ଯାକ ବୋକୀ ଝିଅ ତେଲ
କିଣିବାକୁ ଚାଲିଗଲେ। ସେମାନେ ଚାଲିଗଲାପରେ ବର
ଆସିଲେ। ଯେଉଁ ଚତୁର ଝିଅ ଯାକ ପ୍ରସ୍ତୁତ ଥିଲେ,
ସେମାନେ ବର ସହିତ ବିବାହ-ଭୋଜିକୁ ଗଲେ। ତା'ପରେ
କବାଟରେ ତାଲା ପଡ଼ିଗଲା। ୧୧ସେହି ସମୟରେ ବାକିତକ
ଝିଅ ପହଞ୍ଚିଲେ। ସେମାନେ କହିଲେ, 'ଆଜ୍ଞା! ଆଜ୍ଞା!
କବାଟ ଖୋଲନ୍ତୁ। ଯେପରି ଆମ୍ଭେ ଭିତରକୁ ଆସି
ପାରିବୁ,'
୧୨“କିନ୍ତୁ ବର ଉତ୍ତର ଦେଲେ, 'ମୁଁ ତୁମ୍ଭକୁ ସତ୍ୟ
କହୁଛି, ମୁଁ ତୁମ୍ଭକୁ ଚିହ୍ନିନାହିଁ।'
୧୩“ତେଣୁ ସଦାବେଳେ ଜାଗ୍ରତ ରୁହ, କାରଣ ମନୁଷ୍ୟ-ପୁତ୍ର
କେଉଁଦିନ ଓ କେଉଁ ସମୟରେ ଆସିବେ, ତାହା ତୁମ୍ଭେ
ଜାଣିନାହିଁ।

## ତିନିଜଣ ଚାକରଙ୍କ ବିଷୟରେ କାହାଣୀ

୧୪“ସ୍ୱର୍ଗରାଜ୍ୟ ଘର ଛାଡ଼ି ବିଦେଶକୁ ବୁଲିବାକୁ ଯାଉଥିବା
ଲୋକଟିଏ ଭଳି। ସେହି ଲୋକ ଯିବା ପୂର୍ବରୁ ତାର
ଚାକରମାନଙ୍କୁ ଡାକି ତାର ଅନୁପସ୍ଥିତିରେ ସମସ୍ତ ସମ୍ପତ୍ତିର
ଯତ୍ନ ନେବାକୁ କହିଲେ। ୧୫କେଉଁ ଚାକର କେତେ ଦାୟିତ୍ୱ
ନେଇ ପାରିବ, ସେ କଥା ସେ ସ୍ଥିର କଲେ। ସେ ଜଣଙ୍କୁ
ପାଞ୍ଚ ତୋଡ଼ା ରୂପା ଟଙ୍କା ଦେଲେ। ଆଉ ଜଣଙ୍କୁ ଦୁଇ
ତୋଡ଼ା, ଓ ତୃତୀୟଙ୍କୁ ଗୋଟିଏ ତୋଡ଼ା ରୂପା ଟଙ୍କା
ଦେଲେ। ଚାକରମାନଙ୍କର ସାମର୍ଥ୍ୟ ଅନୁସାରେ ସେମାନଙ୍କୁ
କାମ ବାଣ୍ଟିଦେଇ ସେ ବୁଲିବାକୁ ଚାଲିଗଲେ। ୧୬ଯେଉଁ
ଚାକରଟି ପାଞ୍ଚ ତୋଡ଼ା ରୂପା ଟଙ୍କା ନେଇଥିଲା, ସେ
ତୁରନ୍ତ ସେ ଟଙ୍କାକୁ ବ୍ୟବସାୟରେ ଲଗାଇଦେଲା। ସେ
ଆଉ ପାଞ୍ଚ ତୋଡ଼ା ରୂପା ଟଙ୍କା ଲାଭକଲା। ୧୭ସେହିଭଳି
ଯେଉଁ ଚାକରଟି ଦୁଇତୋଡ଼ା ରୂପାଟଙ୍କା ପାଇଥିଲା, ସେ
ମଧ୍ୟ ଟଙ୍କାକୁ ବ୍ୟବସାୟରେ ଲଗାଇ ଆଉ ଦୁଇତୋଡ଼ା
ରୂପା ଟଙ୍କା ଲାଭକଲା। ୧୮କିନ୍ତୁ ଯେଉଁ ଲୋକଟି କେବଳ
ଗୋଟିଏ ମାତ୍ର ତୋଡ଼ା ରୂପା ଟଙ୍କା ପାଇଥିଲା, ସେ ଯାଇ
ତା' ମାଲିକର ଧନକୁ ନେଇ ମାଟିରେ ଗୋଟିଏ ଗାତ
ଖୋଳି ସେଥିରେ ଲୁଚାଇ ରଖିଲା।
୧୯“ବହୁତ ଦିନ ପରେ ମାଲିକ ଘରକୁ ଫେରି ଆସିଲେ।
ସେ ଚାକରମାନଙ୍କୁ ଡାକିଲେ, ଓ ତାହାଙ୍କ ଟଙ୍କାରେ କ'ଣ
କଲେ, ତାହା ସେମାନଙ୍କୁ ପଚାରିଲେ। ୨୦ଯେଉଁ ଚାକରଟି
ପାଞ୍ଚ ତୋଡ଼ା ରୂପା ଟଙ୍କା ପାଇଥିଲା, ସେ ମାଲିକ ପାଖକୁ
ଆଉ ଅଧିକ ପାଞ୍ଚ ତୋଡ଼ା ଆଣିଦେଲା, ଚାକରଟି କହିଲା,
'ଆପଣ ମୋତେ ପାଞ୍ଚ ତୋଡ଼ା ରୂପା ଟଙ୍କା ଦେଇଥିଲେ।
ମୁଁ ତା'ଦ୍ୱାରା ଆଉ ପାଞ୍ଚ ତୋଡ଼ା ରୂପା ଟଙ୍କା ରୋଜଗାର
କରିଛି।'

୨୧"ମାଲିକ କହିଲେ, 'ସାବାସ୍, ତୁମ୍ଭେ ବହୁତ ଭଲ, ଓ
ବିଶ୍ୱାସଯୋଗ୍ୟ ଲୋକ। ତୁମ୍ଭେ ଅଳ୍ପ ଟଙ୍କାରେ ଭଲ କାମ
କରିଛ। ତେଣୁ ମୁଁ ତୁମ୍ଭକୁ ବଡ଼ ବିଷୟର ଦାୟିତ୍ୱ ଦେବି।
ଆସ, ମୋ ସହିତ ମୋ ଖୁସିରେ ଭାଗୀ ହୁଅ।'
୨୨"ତା'ପରେ ଦୁଇ ତୋଡ଼ା ରୂପା ଟଙ୍କା ପାଇଥିବା
ଚାକରଟି ମାଲିକ ପାଖକୁ ଆସିଲା। ଚାକରଟି କହିଲା,
'ଆପଣ ମୋତେ ଦୁଇ ତୋଡ଼ା ଟଙ୍କାର ଦାୟିତ୍ୱ ଦେଇଥିଲେ।
ମୁଁ ଆଉ ଦୁଇ ତୋଡ଼ା ଟଙ୍କା ରୋଜଗାର କରିବା ପାଇଁ
ଆପଣଙ୍କର ଦୁଇ ତୋଡ଼ା ଟଙ୍କା ବ୍ୟବହାର କରିଛି।'
୨୩"ମାଲିକ କହିଲେ, 'ତୁମ୍ଭେ ଠିକ୍ କରିଛ। ତୁମ୍ଭେ
ଜଣେ ଭଲ ଚାକର। ତୁମ୍ଭ ଉପରେ ବିଶ୍ୱାସ କରାଯାଇପାରେ।
ଅଳ୍ପ ଟଙ୍କାରେ ତୁମ୍ଭେ ଭଲ କାମ କରିଛ। ତେଣୁ ମୁଁ
ତୁମ୍ଭକୁ ବଡ଼ ବିଷୟର ଦାୟିତ୍ୱ ଦେବି। ଆସ, ମୋ ସହିତ
ଖୁସିରେ ଭାଗୀ ହୁଅ।'
୨୪"ତା'ପରେ ଗୋଟିଏ ତୋଡ଼ା ଟଙ୍କା ପାଇଥିବା ଲୋକଟି
ମାଲିକଙ୍କ ପାଖକୁ ଆସିଲା। ସେ କହିଲା, 'ମାଲିକ ମୁଁ
ଜାଣେ ଯେ ଆପଣ ଜଣେ କଠୋର ବ୍ୟକ୍ତି। ରୋପଣ ନ
କରି ମଧ୍ୟ ଆପଣ ଜମିରୁ ଫସଲ କାଟନ୍ତି। ବୀଜ ନ ବୁଣି
ମଧ୍ୟ ଶସ୍ୟ ଏକାଠି କରନ୍ତି। ୨୫ତେଣୁ ମୁଁ ଭୟ କଲି। ମୁଁ
ଯାଇ ଭୂମିରେ ଆପଣଙ୍କ ଟଙ୍କାତକ ଲୁଚେଇ ଦେଲି।
ଆପଣ ମୋତେ ଦେଇଥିବା ତୋଡ଼ା ଟଙ୍କା ନିଅନ୍ତୁ।'
୨୬"ତା ମାଲିକ ତାକୁ କହିଲେ, 'ତୁମ୍ଭେ ଜଣେ ଅଳସୁଆ,
ଓ ଦୁଷ୍ଟ ଚାକର। ତୁମ୍ଭେ ଜାଣିଛ ଯେ ମୁଁ ଯେଉଁଠି
ରୋପଣ କରି ନଥାଏ ସେଠାରେ ମଧ୍ୟ ଫସଲ କାଟେ, ଓ
ଯେଉଁଠି ବୀଜ ବୁଣି ନଥାଏ, ସେଠାରେ ଶସ୍ୟ ଏକାଠି
କରେ। ୨୭ତେଣୁ ତୁମ୍ଭେ ମୋ ଟଙ୍କାକୁ ବ୍ୟାଙ୍କରେ ଜମା
ରଖିଦେବା ଉଚିତ ଥିଲା। ତା ହୋଇଥିଲେ ମୁଁ ଘରକୁ
ଫେରିବା ପରେ ମୋ ଟଙ୍କା ଫେରି ପାଇଥାନ୍ତି। ତା ସହିତ
ମୋ ଟଙ୍କାର ସୁଧ ମଧ୍ୟ ପାଇଥାନ୍ତି।'
୨୮"ତାପରେ ମାଲିକ ତାହାଙ୍କର ଅନ୍ୟ ଚାକରମାନଙ୍କୁ
କହିଲେ, 'ସେହି ଚାକରଠାରୁ ଟଙ୍କାର ଥଳିଟି ନେଇ,
ଯାହାର ଦଶ ତୋଡ଼ା ଟଙ୍କା ଅଛି ତାକୁ ଦେଇଦିଅ।
୨୯ଯେଉଁଲୋକ ନିଜ ପାଖରେ ଥିବା ଜିନିଷର ଉପଯୁକ୍ତ
ବ୍ୟବହାର କରେ, ତାକୁ ବହୁତ ଅଧିକ ଦିଆଯିବ। ତାହାଙ୍କୁ
ତାହାଙ୍କର ଆବଶ୍ୟକତା ଠାରୁ ବହୁତ ବେଶୀ ଦିଆଯିବ।
କିନ୍ତୁ ଯେଉଁ ଲୋକ ତା ପାଖରେ ଥିବା ଜିନିଷର ଉପଯୁକ୍ତ
ବ୍ୟବହାର କରେ ନାହିଁ, ତାଠାରୁ ଯାହାକିଛି ଅଛି, ସବୁ
କିଛି ଛଡ଼େଇ ନିଆଯିବ।' ୩୦ତା'ପରେ ମାଲିକ କହିଲେ,
'ସେ ଅଦରକାରୀ ଚାକରକୁ ବାହାରେ ଅନ୍ଧକାରରେ ପକେଇ
ଦିଅ। ସେଠାରେ ଲୋକମାନେ କାନ୍ଦିବେ ଏବଂ ଯନ୍ତ୍ରଣାରେ
ଦାନ୍ତ କଡମଡ କରିବେ।'

## ମନୁଷ୍ୟପୁତ୍ର ସମସ୍ତଙ୍କର ବିଚାର କରିବେ

୩୧"ମନୁଷ୍ୟପୁତ୍ର ପୁଣି ଥରେ ଆସିବେ। ସେ ତାହାଙ୍କର
ମହିମା ସହିତ ଆସିବେ। ତାହାଙ୍କ ସହିତ ସମସ୍ତ ସ୍ୱର୍ଗଦୂତମାନେ
ଆସିବେ। ସେ ରାଜା ହେବେ ଏବଂ ତାହାଙ୍କର ମହାନ
ସିଂହାସନ ଉପରେ ବସିବେ। ୩୨ମନୁଷ୍ୟପୁତ୍ରଙ୍କ ଆଗରେ
ଜଗତର ସବୁଲୋକେ ଏକାଠି ହେବେ। ତାପରେ ମନୁଷ୍ୟ-ପୁତ୍ର
ସବୁ ଲୋକଙ୍କୁ ଦୁଇଟି ଦଳରେ ବାଣ୍ଟିଦେବେ। ଜଣେ
ଜଗୁଆଳି ଯେପରି ଛେଳିମାନଙ୍କ ଭିତରୁ ମେଣ୍ଢାମାନଙ୍କୁ
ଅଲଗା କରିଦିଏ ଏହା ଠିକ୍ ସେହିପରି ଅଟେ। ୩୩ମନୁଷ୍ୟ-ପୁତ୍ର
ମେଣ୍ଢାଙ୍କୁ ତାହାଙ୍କ ଡାହାଣ ପଟେ ରଖିବେ ଓ ଛେଳିଙ୍କୁ
ତାହାଙ୍କ ବାମ ପଟେ ରଖିବେ।
୩୪"ତା'ପରେ ରାଜା ତାହାଙ୍କ ଡାହାଣ ପଟରେ ଥିବା
ଲୋକମାନଙ୍କୁ କହିବେ, 'ଆସ, ମୋର ପରମ-
ପିତା ତୁମ୍ଭମାନଙ୍କୁ ଆଶୀର୍ବାଦ କରିଛନ୍ତି। ପରମେଶ୍ୱର ତୁମ୍ଭକୁ
ଯେଉଁ ରାଜ୍ୟ ଦେବାକୁ ପ୍ରତିଶ୍ରୁତି ଦେଇଛନ୍ତି, ତାହା ଲାଭ
କର। ଜଗତ ସୃଷ୍ଟି ହେବା କାଳରୁ ତୁମ୍ଭପାଇଁ ସେ ରାଜ୍ୟ
ପ୍ରସ୍ତୁତ ହୋଇ ସାରିଛି।" ୩୫ତୁମ୍ଭେ ଏହି ରାଜ୍ୟ ଲାଭ
କରିବ କାରଣ ମୁଁ ଯେତେବେଳେ ଭୋକିଲା ଥିଲି,
ସେତେବେଳେ ତୁମ୍ଭେ ମୋତେ ଖାଇବାକୁ ଦେଇଥିଲ।
ମୋତେ ଶୋଷ ଲାଗୁଥିବା ସମୟରେ ମୋତେ କିଛି
ପିଇବାକୁ ଦେଇଛ। ମୁଁ ଘରଠାରୁ ଦୂରରେ ଏକୁଟିଆ ଥିଲି।
ତୁମ୍ଭେ ମୋତେ ତୁମ୍ଭ ଘରକୁ ଡାକିଥିଲ। ୩୬ମୋର କୌଣସି
ଲୁଗା-ପଟା ନ ଥିଲା, ଏବଂ ତୁମ୍ଭେ ମୋତେ ପିନ୍ଧିବାକୁ
ଦେଇଥିଲ। ମୁଁ ଅସୁସ୍ଥ ଥିଲି। ତୁମ୍ଭେ ମୋର ଯତ୍ନ
ନେଇଥିଲ। ମୁଁ କାରାଗାରରେ ଥିଲି। ତୁମ୍ଭେ ମୋତେ
ଦେଖିବାକୁ ଆସିଥିଲ।'
୩୭"ସେତେବେଳେ ଭଲଲୋକମାନେ ଉତ୍ତର ଦେବେ,
'ହେ ପ୍ରଭୁ! ଆମ୍ଭେ କେତେବେଳେ ଆପଣଙ୍କୁ ଭୋକିଲା
ଦେଖିଥିଲୁ ଓ ଖାଇବାକୁ ଦେଇଥିଲୁ? କେତେବେଳେ
ଆମ୍ଭେ ଆପଣଙ୍କୁ ଶୋଷିଲା ଦେଖିଥିଲୁ ଓ ପିଇବାକୁ କିଛି
ଦେଇଥିଲୁ? ୩୮କେତେବେଳେ ଆମ୍ଭେ ଆପଣଙ୍କୁ ଘରଠାରୁ
ଦୂରରେ ଏକୁଟିଆ ଦେଖିଥିଲୁ ଓ ଆମ୍ଭ ଘରକୁ ଡାକିଥିଲୁ?
କେତେବେଳେ ଆପଣଙ୍କୁ ଆମ୍ଭେ ପୋଷାକ ନଥିବା ବେଳେ
ଦେଖିଥିଲୁ ଓ ପିନ୍ଧିବାକୁ କିଛି ଦେଇଥିଲୁ? ୩୯କେତେବେଳେ
ଆପଣଙ୍କୁ ଆମ୍ଭେ ଅସୁସ୍ଥ ଅବସ୍ଥାରେ ବା କାରାଗାରରେ
ଦେଖିଥିଲୁ ଓ ଆପଣଙ୍କର ଯତ୍ନ ନେଇଥିଲୁ?'
୪୦"ସେତେବେଳେ ରାଜା ଉତ୍ତର ଦେବେ, 'ମୁଁ ତୁମ୍ଭକୁ
ସତ୍ୟ କହୁଛି। ଏଠାରେ ତୁମ୍ଭେ ମୋର ଉପେକ୍ଷିତ ଭାଇମାନଙ୍କ
ଭିତରୁ ଜଣଙ୍କ ପାଇଁ ଯାହା କିଛି କଲ, ତାହା ତୁମ୍ଭେ ମୋ
ପାଇଁ କଲ।'
୪୧"ତା'ପରେ ରାଜା ତାହାଙ୍କ ବାମ ପଟର ଲୋକମାନଙ୍କୁ
କହିବେ, 'ମୋ ପାଖରୁ ଚାଲିଯାଅ। ପରମେଶ୍ୱର ତୁମ୍ଭ
ନିମନ୍ତେ ଦଣ୍ଡ ନିରୂପଣ କରିଛନ୍ତି। ତୁମ୍ଭେ ଚିରକାଳ
ଜଳୁଥିବା ନିଆଁକୁ ଯିବ, ଯାହାକି ଶୟତାନ ଓ ତାର
ଦୂତମାନଙ୍କ ପାଇଁ ପ୍ରସ୍ତୁତ ହୋଇଛି। ୪୨କାରଣ ମୁଁ ଭୋକିଲା
ଥିଲି କିନ୍ତୁ ତୁମ୍ଭେ ମୋତେ କିଛି ଖାଇବାକୁ ଦେଇ ନଥିଲ,
୪୩ମୁଁ ଶୋଷିଲା ଥିଲି କିନ୍ତୁ ତୁମ୍ଭେ ମୋତେ କିଛି ପିଇବାକୁ
ଦେଇ ନଥିଲ। ମୁଁ ଏକୁଟିଆ ଘରଠାରୁ ଦୂରରେ ଥିଲି,
କିନ୍ତୁ ତୁମ୍ଭେ ମୋତେ ଘର ଭିତରକୁ ଡାକିଲ ନାହିଁ, ମୋର
ଲୁଗାପଟା ନଥିଲା, ମୋତେ ତୁମ୍ଭେ ପିନ୍ଧିବାକୁ କିଛି ଦେଇ
ନଥିଲ। ମୁଁ ଅସୁସ୍ଥ ଥିଲି, ଓ କାରାଗାରରେ ଥିଲି, ଓ
ତୁମ୍ଭେ ମୋ ପାଇଁ ଚିନ୍ତା କରି ନଥିଲ।'

୪୪"ତା'ପରେ ସେମାନେ ମଧ୍ୟ ଉତ୍ତର ଦେବେ, 'ପ୍ରଭୁ,
ଆପଣଙ୍କୁ କେବେବେଳେ ଆମ୍ଭେ ଭୋକିଲା ବା ଶୋଷିଲା
ଦେଖିଥିଲୁ? ଆମ୍ଭେ କେବେବେଳେ ଆପଣଙ୍କୁ ଏକୁଟିଆ ଓ
ଘରଠାରୁ ଦୂରରେ ଦେଖିଥିଲୁ? କେବେବେଳେ ଆପଣଙ୍କୁ
ଆମ୍ଭେ ଲୁଗା-ପଟା ନ ଥିବା ଅବସ୍ଥାରେ ବା ଅସୁସ୍ଥ
ଅବସ୍ଥାରେ ବା କାରାଗାରରେ ଦେଖିଥିଲୁ? କେବେ ଏସବୁ
ଆମ୍ଭେ ଦେଖିଥିଲୁ ଓ ଆପଣଙ୍କୁ ସାହାଯ୍ୟ କଲୁନାହିଁ?'
୪୫"ତାପରେ ରାଜା ଉତ୍ତର ଦେବେ, 'ମୁଁ ତୁମ୍ଭକୁ ସତ୍ୟ
କହୁଅଛି, ଯେତେବେଳେ ଏଠାରେ ତୁମ୍ଭେ ମୋର ଉପେକ୍ଷିତ
ଲୋକଙ୍କ ଭିତରୁ ଯେ କୌଣସି ଲୋକକୁ ସାହାଯ୍ୟ
କରିବାକୁ ମନା କଲ, ତୁମ୍ଭେ ମୋତେ ସାହାଯ୍ୟ କରିବା
ପାଇଁ ମନା କଲ!'
୪୬"ତାପରେ ଏହି ଲୋକଗୁଡିକ ଚାଲିଯିବେ, ସେମାନଙ୍କୁ
ସବୁ ଦିନ ପାଇଁ ଦଣ୍ଡ ଭୋଗିବାକୁ ପଡିବ। କିନ୍ତୁ ଭଲ
ଲୋକମାନେ ଅନନ୍ତ-ଜୀବନ ଲାଭ କରିବେ।"

## ଯିହୁଦୀ ନେତାମାନଙ୍କର ଯୀଶୁଙ୍କୁ ହତ୍ୟା କରିବା ପାଇଁ ଷଡଯନ୍ତ୍ର।

**୨୬** ଏହି ସବୁ କଥା କହି ସାରିବା ପରେ ଯୀଶୁ
ନିଜର ଶିଷ୍ୟମାନଙ୍କୁ କହିଲେ, ୨"ଦୁଇଦିନ ପରେ
ନିସ୍ତାର-ପର୍ବ ହେବା କଥା ତୁମ୍ଭେ ଜାଣ। ସେହି ଦିନ
କ୍ରୁଶରେ ଚଢ଼ାଇ ମନୁଷ୍ୟ-ପୁତ୍ରଙ୍କୁ ମାରି ଦେବା ପାଇଁ
ତାହାଙ୍କ ଶତ୍ରୁମାନଙ୍କ ହାତରେ ଦେଇ ଦିଆଯିବ।"
୩ତା'ପରେ ପ୍ରଧାନ ଯାଜକ ଓ ଲୋକମାନଙ୍କ ପ୍ରାଚୀନ
ନେତାମାନେ କୟାଫା ନାମକ ମହାଯାଜକଙ୍କ ଭବନର
ଅଗଣାରେ ଏକାଠି ହେଲେ। ୪ସେମାନେ ଯୀଶୁଙ୍କୁ କପଟରେ
ବନ୍ଦୀ କରି ତାହାଙ୍କୁ ମାରିଦେବା ପାଇଁ ଯୋଜନା କଲେ।
୫କିନ୍ତୁ ବୈଠକରେ ସେମାନେ କଥାବାର୍ତ୍ତା ହେଲେ, "ଆମେ
ନିସ୍ତାର-ପର୍ବ* ସମୟରେ ଏସବୁ କରିବା ଉଚିତ ହେବନାହିଁ।
କାରଣ ଲୋକମାନେ ଏଥିରେ ରାଗିଯାଇ ପାରନ୍ତି ଓ
ଦଙ୍ଗାହାଙ୍ଗାମା କରି ପାରନ୍ତି।"

## ଯୀଶୁଙ୍କ ଉପରେ ଅତର ଢ଼ାଳିଲେ

୬ଯୀଶୁ ବେଥନିଆରେ ଥିଲେ। ସେ କୁଷ୍ଠରୋଗୀ ଶିମୋନର
ଘରେ ରହିଥିଲେ। ୭ଯୀଶୁ ସେଠାରେ ଥିବା ସମୟରେ
ଜଣେ ସ୍ତ୍ରୀଲୋକ ତାହାଙ୍କ ପାଖରେ ଆସି ପହଞ୍ଚିଲା। ସେ
ଗୋଟିଏ ଶ୍ୱେତ ସ୍ଫଟିକ ପାତ୍ରରେ ବହୁ ମୂଲ୍ୟବାନ ସୁଗନ୍ଧିତ
ଅତର ଆଣିଥିଲା। ସେ ଅତରତକ ଯୀଶୁଙ୍କ ମୁଣ୍ଡ ଉପରେ
ଢାଳିଦେଲା। ସେତେବେଳେ ଯୀଶୁ ଖାଉଥିଲେ।
୮ଯୀଶୁଙ୍କ ଶିଷ୍ୟମାନେ ଏହାଦେଖି ଅତ୍ୟନ୍ତ ରାଗିଗଲେ।
ସେମାନେ କହିଲେ, "ଏତେ ଅପବ୍ୟୟ କାହିଁକି? ୯ଏ
ଅତରତକ ଅନେକ ଟଙ୍କାରେ ବିକାଯାଇ ସେଥିରୁ ମିଳିବା
ଟଙ୍କା ଗରୀବମାନଙ୍କ ମଧ୍ୟରେ ବଣ୍ଟା ଯାଇ ପାରିଥାନ୍ତା।"
୧୦ଯୀଶୁ ତାହା ଜାଣି ସେମାନଙ୍କୁ କହିଲେ, "କାହିଁକି
ବୃଥାରେ ଏହି ସ୍ତ୍ରୀଲୋକକୁ ହଇରାଣ କରୁଛ? ସେ ମୋ
ପାଇଁ ଗୋଟିଏ ବହୁତ ଭଲ କାମ କରିଛି। ୧୧ଗରିବମାନେ
ତ ସବୁବେଳେ ତୁମ୍ଭ ସହିତ ଅଛନ୍ତି।* ମୋତେ କିନ୍ତୁ
ତୁମ୍ଭେ ମୋତେ ସବୁବେଳେ ପାଇବ ନାହିଁ। ୧୨ଏହି
ସ୍ତ୍ରୀଲୋକ ମୋ ଦେହରେ ଅତର ଢାଳିଛି। ମୋର ସମାଧି
ନିମନ୍ତେ ମୋତେ ପ୍ରସ୍ତୁତ କରିବା ପାଇଁ ସେ ଏହା କରିଛି,
୧୩ମୁଁ ତୁମ୍ଭକୁ ସତ୍ୟ କହୁଛି, ଏ ଜଗତରେ ସର୍ବତ୍ର
ଲୋକମାନଙ୍କ ମଧ୍ୟରେ ସୁସମାଚାର ଘୋଷଣା କରାଯିବ।
ତା ସହିତ ଏ ସ୍ତ୍ରୀ ଲୋକଟି କ'ଣ କରିଥିଲା, ସେ ବିଷୟ
ମଧ୍ୟ ଘୋଷଣା କରାଯିବ। ଲୋକମାନେ ତାକୁ ମନେ
ରଖିବେ।"

## ଯିହୂଦା ଯୀଶୁଙ୍କ ଶତ୍ରୁ ପାଲଟିଗଲେ

୧୪ତା'ପରେ ଯୀଶୁଙ୍କର ବାରଜଣ ଶିଷ୍ୟଙ୍କ ମଧ୍ୟରୁ ଜଣେ
ଯାଇ ପ୍ରଧାନ ଯାଜକମାନଙ୍କ ସହିତ କଥାବାର୍ତ୍ତା କଲା।
ସେହି ଶିଷ୍ୟର ନାମ ଇଷ୍କାରିୟୋଥ ଯିହୂଦା ଥିଲା। ୧୫ସେ
କହିଲା, "ମୁଁ ତୁମ୍ଭମାନଙ୍କ ହାତରେ ଯୀଶୁଙ୍କୁ ଧରାଇ
ଦେବି। ଏହା କରିବା ପାଇଁ ତୁମ୍ଭେମାନେ ମୋତେ କ'ଣ
ଦେବ?" ଯାଜକମାନେ ଯିହୂଦାଙ୍କୁ ତିରିଶଟି ରୂପା ଟଙ୍କା
ଦେଲେ। ୧୬ସେହି ସମୟରୁ ଯିହୂଦା ଯାଜକମାନଙ୍କ ହାତରେ
ଯୀଶୁଙ୍କୁ ଧରାଇ ଦେବା ପାଇଁ ସୁଯୋଗର ଅପେକ୍ଷାରେ
ରହିଲା।

## ଶିଷ୍ୟମାନଙ୍କ ସହିତ ଯୀଶୁଙ୍କ ନିସ୍ତାର ପର୍ବର ଭୋଜି

୧୭ଖମୀର ଶୂନ୍ୟ ରୋଟୀ ପର୍ବର ପ୍ରଥମ ଦିନ ଶିଷ୍ୟମାନେ
ଯୀଶୁଙ୍କ ନିକଟକୁ ଆସିଲେ। ସେମାନେ କହିଲେ, "ନିସ୍ତାର-
ଭୋଜି ଖାଇବାକୁ ଆପଣଙ୍କ ପାଇଁ ଆମ୍ଭେ ସବୁକିଛି ପ୍ରସ୍ତୁତ
କରିବୁ। ଆପଣ କେଉଁଠାରେ ଭୋଜି ଖାଇବା ପାଇଁ
ଚାହାଁନ୍ତି?"
୧୮ଯୀଶୁ କହିଲେ, "ନଗରରେ ଥିବା ମୋର ଜଣେ
ଚିହ୍ନା ଲୋକ ପାଖକୁ ଯାଅ। ତାକୁ କୁହ 'ଗୁରୁ କହିଛନ୍ତି
'ମନୋନୀତ ସମୟ ଆସି ପାଖେଇ ଗଲାଣି ଓ ମୁଁ ତୁମ୍ଭ
ଘରେ ମୋ ଶିଷ୍ୟମାନଙ୍କ ସହିତ ନିସ୍ତାର ପର୍ବଭୋଜି
ଉତ୍ସବ ପାଳନ କରିବି।'" ୧୯ଯୀଶୁଙ୍କ କହିବା ଅନୁସାରେ
ଶିଷ୍ୟମାନେ କଲେ। ସେମାନେ ନିସ୍ତାରପର୍ବର ଭୋଜି
ପ୍ରସ୍ତୁତ କଲେ।
୨୦ସନ୍ଧ୍ୟା ବେଳେ ଯୀଶୁ ନିଜର ବାରଜଣଯାକ ଶିଷ୍ୟଙ୍କ
ସହିତ ଖାଇବାକୁ ବସିଲେ। ୨୧ସେମାନେ ଖାଉଥିବା ସମୟରେ
ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି। ତୁମ୍ଭମାନଙ୍କ
ମଧ୍ୟରେ ଥିବା ବାରଜଣଙ୍କ ଭିତରୁ ଜଣେ ମୋ ପ୍ରତି
ବିଶ୍ୱାସଘାତକତା କରିବ।"

---

**ନିସ୍ତାର ପର୍ବ** ଯିହୁଦୀମାନଙ୍କର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ପବିତ୍ର ଦିବସ ମୋଶାଙ୍କ ସମୟରେ ସେହିଦିନ ମିଶରରେ ପରମେଶ୍ୱର ସେମାନଙ୍କୁ ଦାସତ୍ୱରୁ ମୁକ୍ତ କରିଥିଲେ। ସେହିକଥା ମନେ ରଖିବା ପାଇଁ ସେମାନେ ପ୍ରତିବର୍ଷ ଏହିଦିନ ଗୋଟିଏ ସ୍ୱତନ୍ତ୍ର ଭୋଜନ କରିଥାନ୍ତି।

**'ଗରିବମାନେ ... ଅଛନ୍ତି'** ଦ୍ୱି, ବିବରଣି. ୧୫:୧୧

୨୨ଏହାଶୁଣି ସେମାନେ ବହୁତ ଦୁଃଖିତ ହେଲେ। ପ୍ରତ୍ୟେକ
ଶିଷ୍ୟ ଯୀଶୁଙ୍କୁ ପଚାରିଲେ, "ପ୍ରଭୁ, ନିଶ୍ଚିତଭାବରେ ସେ
ଜଣକ ମୁଁ ନୁହେଁ! କୁହନ୍ତୁ ମୁଁ କି?"
୨୩ଯୀଶୁ ଉତ୍ତର ଦେଲେ, "ଯେଉଁଲୋକ ମୋ ସାଙ୍ଗରେ
ଗିନାରେ ତାର ହାତ ବୁଡାଇଛି, ସେ ମୋ ସହିତ
ବିଶ୍ୱାସଘାତକତା କରିବ। ୨୪ମନୁଷ୍ୟପୁତ୍ର ଯିବେ ଓ ମରିଯିବେ।
ଏହାହିଁ ହେବବୋଲି ଶାସ୍ତ୍ରରେ ଲେଖାଅଛି। କିନ୍ତୁ ଯେଉଁ
ଲୋକ ମନୁଷ୍ୟପୁତ୍ରଙ୍କୁ ମରିବା ପାଇଁ ଶତ୍ରୁ ହାତରେ
ଦେଇଦେବ, ସେ ଲୋକ ଧିକ୍! ସେ ଲୋକ ଜନ୍ମ
ନହୋଇଥିଲେ ବରଂ ଭଲ ହୋଇଥାନ୍ତା।'"
୨୫ତାପରେ ଯିହୂଦା, "ଯିଏ ତାହାଙ୍କୁ ଶତ୍ରୁମାନଙ୍କୁ ଧରେଇ
ଦେବାକୁ ଯାଉଥିଲା, କହିଲା ଗୁରୁ, ସେ କ'ଣ ମୁଁ?"
ଯୀଶୁ କହିଲେ, "ହଁ, ତୁମ୍ଭେ ସେହି।"

## ପ୍ରଭୁଭୋଜ

୨୬ସେମାନେ ଖାଉଥିବା ବେଳେ, ଯୀଶୁ କିଛି ରୋଟୀ
ନେଲେ। ସେହି ରୋଟୀ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେଲେ। ତା'ପରେ ରୋଟୀ ଛିଣ୍ଡେଇଲେ। ତାହାକୁ ଶିଷ୍ୟମାନଙ୍କୁ
ଦେଲେ। ଯୀଶୁ କହିଲେ, "ଏହି ରୋଟୀ ନିଅ ଓ ଖାଅ।
ଏ ରୋଟୀ ମୋର ଶରୀର।"
୨୭ତା'ପରେ ସେ ଗୋଟିଏ ଗିନାରେ ଅଙ୍ଗୁରରସ ନେଲେ,
ଓ ଏଥିପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ଶିଷ୍ୟମାନଙ୍କୁ
କହିଲେ, "ତୁମ୍ଭେ ସମସ୍ତେ ଏଥିରୁ ପିଅ। ୨୮ଏ ଅଙ୍ଗୁରରସ
ମୋର ରକ୍ତ। ମୋ ରକ୍ତରେ ପରମେଶ୍ୱରଙ୍କଠାରୁ ସେ
ତାହାଙ୍କ ଲୋକମାନଙ୍କ ପାଇଁ କରିଥିବା ନୂଆ ଚୁକ୍ତି ଆରମ୍ଭ
ହୁଏ। ଅନେକ ଲୋକଙ୍କର ପାପକୁ କ୍ଷମା କରିଦିଆଯିବା
ପାଇଁ ଏ ରକ୍ତ ଦିଆ ଯାଉଛି। ୨୯ମୁଁ ତୁମ୍ଭମାନଙ୍କୁ ଏକଥା
କହି ରଖୁଛି: ମୋର ପରମପିତାଙ୍କ ରାଜ୍ୟରେ ଆମ୍ଭେ
ସମସ୍ତେ ଏକାଠି ନହେବା ପର୍ଯ୍ୟନ୍ତ ଓ ନୂଆ ଅଙ୍ଗୁରରସର
ଅଂଶୀ ହେବା ପର୍ଯ୍ୟନ୍ତ ମୁଁ ଅଙ୍ଗୁରରସ ପୁଣି ପାନ
କରିବିନାହିଁ। ତା'ପରେ ମୁଁ ତୁମ୍ଭମାନଙ୍କ ସହିତ ଏହାକୁ
ପାନ କରିବି।"
୩୦ଏହାପରେ ସେମାନେ ନିସ୍ତାର-ପର୍ବର ପ୍ରାର୍ଥନା ଗୀତ
ବୋଲିଲେ, ଓ ଜୀତ ପର୍ବତକୁ ଚାଲିଗଲେ।

## ତାହାଙ୍କ ଶିଷ୍ୟମାନେ ତାହାଙ୍କୁ ଛାଡ଼ିଦେବେ ବୋଲି ଯୀଶୁ କହିଲେ

୩୧ଯୀଶୁ ସେମାନଙ୍କୁ କହିଲେ, "ଆଜି ରାତିରେ ତୁମ୍ଭେମାନେ
ମୋ ଉପରୁ ବିଶ୍ୱାସ ହରେଇ ବସିବ। ଶାସ୍ତ୍ରମାନଙ୍କରେ
ଏକଥା ଲେଖାଅଛି:

'ମୁଁ ମେଷପାଳକଙ୍କୁ ମାରିଦେବି, ଏବଂ ମେଣ୍ଢାମାନେ
ଏଣେତେଣେ ପଳେଇବେ।' ଯିଖରୀୟ ୧୩:୭

୩୨କିନ୍ତୁ ମୁଁ ପୁଣି ଥରେ ମୃତ୍ୟୁରୁ ପୁନରୁତ୍ଥିତ ହେବି।
ତା'ପରେ ମୁଁ ଗାଲିଲୀକୁ ଚାଲିଯିବି। ତୁମ୍ଭେମାନେ ସେଠାକୁ
ଯିବା ପୂର୍ବରୁ ମୁଁ ସେଠାକୁ ଯାଇଥିବି।"

୩୩ପିତର କହିଲେ, "ଅନ୍ୟ ସମସ୍ତେ ଶିଷ୍ୟ ଆପଣଙ୍କ
ଉପରୁ ବିଶ୍ୱାସ ହରେଇ ପାରନ୍ତି, କିନ୍ତୁ ମୁଁ କେବେହେଲେ
ମୋର ବିଶ୍ୱାସ ହରାଇବି ନାହିଁ।"
୩୪ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି। ଆଜି
ରାତିରେ ତୁମ୍ଭେ କହିବ ଯେ ମୋତେ ଚିହ୍ନିନାହିଁ। କୁକୁଡ଼ା
ଡ଼ାକିବା ପୂର୍ବରୁ ତୁମ୍ଭେ ତିନିଥର ଏହିକଥା କହିବ।"
୩୫ପିତର ଏକଥା ଶୁଣି କହିଲେ, "ମୁଁ ବରଂ ଆପଣଙ୍କ
ସହିତ ମୃତ୍ୟୁ ବରଣ କରିବି, କିନ୍ତୁ କେବେହେଲେ
ଆପଣଙ୍କୁ ଚିହ୍ନିନାହିଁ ବୋଲି କହିବିନାହିଁ।" ପୁଣି ଅନ୍ୟ
ସମସ୍ତ ଶିଷ୍ୟମାନେ ସେହି ଏକା କଥା କହିଲେ।

## ଯୀଶୁଙ୍କ ଏକାନ୍ତ ପ୍ରାର୍ଥନା

୩୬ତା'ପରେ ଯୀଶୁ ଶିଷ୍ୟମାନଙ୍କ ସହିତ ଗେଥ୍ଶିମାନୀ
ନାମକ ସ୍ଥାନକୁ ଗଲେ। ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ
କହିଲେ, "ସେଠାରେ ଯାଇ ମୁଁ ପ୍ରାର୍ଥନା କରୁଥିବା ପର୍ଯ୍ୟନ୍ତ
ତୁମ୍ଭେମାନେ ଏହିଠାରେ ବସ।" ୩୭ଯୀଶୁ ପିତର ଓ
ଜେବଦୀଙ୍କ ଦୁଇ ପୁଅଙ୍କୁ ସାଙ୍ଗରେ ନେଲେ। ତା'ପରେ
ଯୀଶୁ ଦୁଃଖ ଓ ବ୍ୟାକୁଳତା ଅନୁଭବ କଲେ। ୩୮ଯୀଶୁ
ସେମାନଙ୍କୁ କହିଲେ, "ମୋର ହୃଦୟ ଏତେ ଦୁଃଖରେ
ଭରି ଯାଇଛି ଯେ, ସତେ ଯେପରି ପ୍ରାଣ ବାହାରି ଯିବା
ଉପରେ। ତୁମ୍ଭେମାନେ ମୋ ସହିତ ଏଠାରେ ଚେଇଁ କରି
ରୁହ ଓ ଅପେକ୍ଷା କର।"
୩୯ସେମାନଙ୍କ ପାଖରୁ କିଛି ଦୂରକୁ ଚାଲିକରି ଯିବାପରେ
ଯୀଶୁ ତଳେ ଉବୁଡ଼ ହୋଇ ପଡ଼ିଲେ ଓ ପ୍ରାର୍ଥନା କଲେ,
"ହେ ପରମ-ପିତା! ଯଦି ସମ୍ଭବ ହୁଏ, ତେବେ ଯନ୍ତ୍ରଣାର
ଏହି ପାତ୍ରଟି ମୋଠାରୁ ଦୂର ହୋଇଯାଉ। କିନ୍ତୁ ମୋ ଇଚ୍ଛା
ଅନୁସାରେ ନ ହୋଇ ଆପଣଙ୍କ ଇଚ୍ଛା ଅନୁସାରେ କରନ୍ତୁ।"
୪୦ତା'ପରେ ସେ ଶିଷ୍ୟମାନଙ୍କ ପାଖକୁ ଫେରିଗଲେ। ସେ
ଶିଷ୍ୟମାନଙ୍କୁ ଶୋଇଥିବାର ଦେଖିଲେ। ଯୀଶୁ ପିତରଙ୍କୁ
କହିଲେ, "ତୁମ୍ଭେମାନେ ମୋ ସହିତ ଘଣ୍ଟାଏ ପାଇଁ ମଧ
ଜାଗି ରହି ପାରିଲ ନାହିଁ? ୪୧ତୁମ୍ଭେମାନେ ଜାଗି ରହି
ପ୍ରାର୍ଥନା କର ଯେପରି ତୁମ୍ଭେମାନେ ପରୀକ୍ଷାରେ ନପଡ଼!
ଯାହା ଠିକ୍ ତାହା କରିବାକୁ ତୁମ୍ଭମାନଙ୍କର ଆତ୍ମା ଚାହୁଁଛି।
କିନ୍ତୁ ତୁମ୍ଭମାନଙ୍କର ଦେହ ଦୁର୍ବଳ।"
୪୨ପୁଣି ଥରେ ସେ ଗଲେ, ଓ ପ୍ରାର୍ଥନା କଲେ, "ହେ
ପରମ-ପିତା, ଯଦି ଯନ୍ତ୍ରଣାର ଏ ପାତ୍ର ମୋ ଠାରୁ ଦୂର
ହୋଇ ପାରିବ ନାହିଁ, ଏବଂ ଏହାକୁ ମୁଁ ପାନ କରେ,
ତେବେ ମୁଁ ପ୍ରାର୍ଥନା କରୁଛି ଯେ, ଆପଣ ଯାହା ଇଚ୍ଛା
କରୁଛନ୍ତି, ତାହା ହିଁ ହେଉ।"
୪୩ତା'ପରେ ସେ ଫେରିଆସି ପୁଣି ଶିଷ୍ୟମାନଙ୍କୁ
ଶୋଇଥିବାର ଦେଖିଲେ। ସେମାନଙ୍କ ଆଖି ବହୁତ ଭାରି
ହୋଇ ଯାଇଥିଲା। ସେମାନେ ସେମାନଙ୍କର ଆଖି ଖୋଲି
ପାରୁ ନଥିଲେ। ୪୪ଯୀଶୁ ଶିଷ୍ୟମାନଙ୍କୁ ଛାଡି ପୁଣି ଫେରି
ଯାଇ ତୃତୀୟ ଥର ପ୍ରାର୍ଥନା କଲେ। ଏଥର ମଧ ସେ
ପୂର୍ବଭଳି ସେହି ଏକା କଥା କହିଲେ।
୪୫ତା'ପରେ ସେ ଶିଷ୍ୟମାନଙ୍କ ପାଖକୁ ଫେରିଗଲେ ଓ
ସେମାନଙ୍କୁ କହିଲେ, "ତୁମ୍ଭେମାନେ ଏବେ ସୁଦ୍ଧା ଶୋଇଛ

ଓ ବିଶ୍ରାମ ନେଉଛ? ଶୁଣ, ସମୟ ଆସି ଗଲାଣି। ଏବେ
ପାପୀମାନଙ୍କ ହାତରେ ମନୁଷ୍ୟ-ପୁତ୍ରଙ୍କୁ ସମର୍ପି ଦିଆଯିବ।
୪୬ଉଠ, ଆମ୍ଭେ ଯିବା। ଦେଖ, ମୋତେ ଶତ୍ରୁମାନଙ୍କ
ହାତରେ ଯେଉଁ ଲୋକଟି ଦେଇଦେବ, ସେ ଏଠାକୁ
ଆସୁଛି।"

## ଯୀଶୁ ବନ୍ଦୀ ହେଲେ

୪୭ଯୀଶୁ ଏହି କଥା କହୁଥିବା ସମୟରେ ଯିହୂଦା
ସେଠାକୁ ଆସିଲା। ସେ ଯୀଶୁଙ୍କର ବାରଜଣ ଶିଷ୍ୟଙ୍କ
ମଧ୍ୟରୁ ଜଣେ ଥିଲା। ଯିହୁଦାଙ୍କ ସହିତ ମଧ୍ୟ ଅନେକ
ଲୋକ ଥିଲେ। ଯିହୂଦା ଓ ସେହି ଲୋକମାନେ ଖଣ୍ଡା ଓ
ଠେଙ୍ଗା ଧରିଥିଲେ। ସେମାନଙ୍କୁ ପ୍ରଧାନ ଯାଜକ ଓ
ପ୍ରାଚୀନମାନେ ପଠାଇଥିଲେ। ୪୮ଯିହୂଦା ଲୋକମାନଙ୍କୁ ଯୀଶୁ
କିଏ ବୋଲି ଚିହ୍ନେଇ ଦେବା ପାଇଁ ଗୋଟିଏ ସଙ୍କେତ
ବତେଇ ଦେଲେ। ସେ କହିଲେ, "ମୁଁ ଯାହାକୁ ଚୁମ୍ବନ
କରିବି, ସେ ସେହିଲୋକ। ତାକୁ ବନ୍ଦୀ କରିବ।" ୪୯ତା'ପରେ
ଯିହୂଦା ଯୀଶୁଙ୍କ ପାଖରେ ପହଞ୍ଚି ତାହାଙ୍କୁ କହିଲେ, "ହେ
ଗୁରୁ, ନମସ୍କାର" ତାପରେ ସେ ଯୀଶୁଙ୍କୁ ଚୁମ୍ବନ ଦେଲେ।
୫୦ଯୀଶୁ କହିଲେ, "ବନ୍ଧୁ, ତୁମ୍ଭେ ଯେଉଁ କାମରେ
ଆସିଛ, ତାହା କର!"

ତା'ପରେ ଯିହୂଦାଙ୍କ ସହିତ ଆସିଥିବା ଲୋକମାନେ
ସେଠାରେ ପହଞ୍ଚି ଯାଇ ଯୀଶୁଙ୍କୁ ବନ୍ଦୀ କରିନେଲେ।
୫୧ଯେଉଁ ଲୋକମାନେ ଯୀଶୁଙ୍କ ସହିତ ଥିଲେ, ସେମାନଙ୍କ
ଭିତରୁ ଜଣେ ଶିଷ୍ୟ ତାର ଖଣ୍ଡା ବାହାର କରି ମହାଯାଜକଙ୍କ
ଚାକରକୁ ସେଥିରେ ଆଘାତ କଲା। ଫଳରେ ଚାକରର
କାନ କଟିଗଲା।

୫୨ଯୀଶୁ ସେହି ଲୋକକୁ କହିଲେ, "ତୁମ୍ଭ ଖଣ୍ଡାକୁ
ଖୋଳ ଭିତରେ ରଖ। ଯେଉଁ ଲୋକମାନେ ଖଣ୍ଡା ବ୍ୟବହାର
କରନ୍ତି, ସେମାନଙ୍କୁ ଖଣ୍ଡା ଦ୍ୱାରା ହତ୍ୟା କରା ଯାଇଥାଏ।
୫୩ତୁମ୍ଭେ କ'ଣ ଜାଣିନାହଁ ଯେ ମୁଁ ମୋର ପରମ-ପିତାଙ୍କୁ
ମାଗିଲେ ସେ ସଙ୍ଗେ ସଙ୍ଗେ, ମୋତେ ବାରଟି ସେନା
ବାହିନୀରୁ ଅଧିକ ଯୋଗେଇବେ। ୫୪କିନ୍ତୁ ମୁଁ ତା' କଲେ
ଧର୍ମଶାସ୍ତ୍ର କିପରି ସମ୍ପୂର୍ଣ୍ଣ ହେବ? ସବୁକଥା ଏହିଭଳି
ଭାବରେ ଘଟିବ ବୋଲି ଶାସ୍ତ୍ରରେ ଲେଖା ଅଛି।"

୫୫ତା'ପରେ ଯୀଶୁ ଲୋକମାନଙ୍କୁ କହିଲେ, "ତୁମ୍ଭେସବୁ
ଖଣ୍ଡା ଓ ଠେଙ୍ଗା ନେଇ ମୋତେ ବନ୍ଦୀ କରିବାପାଇଁ ଏପରି
ଭାବରେ ଆସିଛ, ସତେ ଯେପରି ମୁଁ ଗୋଟାଏ ଅପରାଧୀ।
ମୁଁ ସବୁଦିନ ମନ୍ଦିର ପରିସରରେ ବସି ଲୋକମାନଙ୍କୁ
ଉପଦେଶ ଦେଉଥିଲି। ସେତେବେଳେ ତୁମ୍ଭେ ମୋତେ
ବନ୍ଦୀ କରିଲନାହିଁ। ୫୬କିନ୍ତୁ ଭବିଷ୍ୟଦ୍‌ବକ୍ତାମାନେ ଯେଉଁଭଳି
ଲେଖିଥିଲେ, ସେହିଭଳି ହେବା ପାଇଁ ଏହି ସବୁ କଥା
ଘଟିଲା," ତା'ପରେ ସମସ୍ତ ଶିଷ୍ୟମାନେ ଯୀଶୁଙ୍କୁ ଛାଡ଼ି
ପଳାଇଗଲେ।

## ଯିହୂଦୀନେତାମାନଙ୍କ ସମ୍ମୁଖରେ ଯୀଶୁଙ୍କୁ ହାଜର କରାଗଲା

୫୭ଯେଉଁ ଲୋକମାନେ ଯୀଶୁଙ୍କୁ ବନ୍ଦୀ କରି ନେଇଥିଲେ,
ସେମାନେ ତାହାଙ୍କୁ ମହାଯାଜକ କୟାଫାଙ୍କ ଘରକୁ ନେଇଗଲେ।
ସେଠାରେ ଧର୍ମଶାସ୍ତ୍ରୀ ଓ ପ୍ରାଚୀନ ନେତାମାନେ ଏକାଠି
ଜମା ହୋଇଥିଲେ। ୫୮ପିତର ଅଳ୍ପ ଦୂରରେ ରହି
ମହାଯାଜକଙ୍କ ଅଗଣା ପର୍ଯ୍ୟନ୍ତ ଯୀଶୁଙ୍କ ପଛେ ପଛେ
ଗଲେ। ଯୀଶୁଙ୍କର ପରିଣାମ କ'ଣ ହେବ, ତାହା ଦେଖିବା
ପାଇଁ ସେ ଭିତରକୁ ଯାଇ ପ୍ରହରୀମାନଙ୍କ ମଧ୍ୟରେ ବସି
ପଡିଲେ।

୫୯ଯୀଶୁଙ୍କୁ ଯେପରି ମୃତ୍ୟୁଦଣ୍ଡ ଦେଇ ପାରିବେ, ସେଥିପାଇଁ
ପ୍ରଧାନଯାଜକ ଓ ସଂପୂର୍ଣ୍ଣ ଯିହୂଦୀମହାସଭା ଯୀଶୁଙ୍କ ବିରୁଦ୍ଧରେ
କିଛି ମିଛ ଅଭିଯୋଗ ଖୋଜି ବାହାର କରିବାକୁ ଚେଷ୍ଟା
କଲେ। ୬୦କିନ୍ତୁ ଯଦିଓ ଅନେକ ମିଛ ସାକ୍ଷୀ ଆଗକୁ ଆସି
ମିଛରେ ସାକ୍ଷ୍ୟ ଦେଲେ, ତଥାପି ମହାସଭା ଯୀଶୁଙ୍କୁ
ମୃତ୍ୟୁ-ଦଣ୍ଡ ଦେବା ପାଇଁ ପ୍ରକୃତ କାରଣ ପାଇ ପାରିଲା
ନାହିଁ। ଶେଷରେ ଦୁଇଜଣ ଲୋକ ଆଗରୁ ବାହାରି ଆସି
କହିଲେ, ୬୧"ଏହି ଲୋକ କହିଛନ୍ତି 'ମୁଁ ପରମେଶ୍ୱରଙ୍କ
ମନ୍ଦିର ଧ୍ୱଂସ କରିପାରେ ଓ ପୁଣି ଏହାକୁ ତିନି ଦିନ
ମଧ୍ୟରେ ତିଆରି କରି ଦେଇପାରେ।'"

୬୨ତା'ପରେ ମହାଯାଜକ ଠିଆ ହେଲେ ଓ ଯୀଶୁଙ୍କୁ
ପଚାରିଲେ, "ଏ ଲୋକମାନେ ତୁମ୍ଭ ବିରୁଦ୍ଧରେ ଯାହା
ଅଭିଯୋଗ କଲେ ତାର ତୁମ୍ଭେ କିଛି ଉତ୍ତର ଦେବକି? ଏ
ଲୋକମାନେ କ'ଣ ସତ୍ୟ କହୁଛନ୍ତି?" ୬୩ଯୀଶୁ କିନ୍ତୁ ଚୁପ୍
ରହିଲେ।

ପୁଣି ଥରେ ମହାଯାଜକ ତାହାଙ୍କୁ ପଚାରିଲେ, "ମୁଁ
ତୁମ୍ଭକୁ ଜୀବିତ ପରମେଶ୍ୱରଙ୍କ ନାମରେ ଶପଥ କରାଉଛି,
ତୁମ୍ଭେ ଆମ୍ଭକୁ କୁହ, ତୁମ୍ଭେ କ'ଣ ଖ୍ରୀଷ୍ଟ, ପରମେଶ୍ୱରଙ୍କ
ପୁତ୍ର?"

୬୪ଯୀଶୁ କହିଲେ, "ହଁ, ମୁଁ ପରମେଶ୍ୱରଙ୍କ ପୁତ୍ର ଖ୍ରୀଷ୍ଟ।
କିନ୍ତୁ ମୁଁ ତୁମ୍ଭକୁ କହି ରଖୁଛି ଯେ ତୁମ୍ଭେ ଭବିଷ୍ୟତରେ
ମନୁଷ୍ୟ-ପୁତ୍ରଙ୍କୁ ସେହି ସର୍ବଶକ୍ତିମାନ ପରମେଶ୍ୱରଙ୍କ ଡାହାଣ
ପଟେ ବସିଥିବାର ଓ ଆକାଶର ମେଘମାଳାରେ ଆସୁଥିବାର
ଦେଖିବ।"

୬୫ମହା-ଯାଜକ ଏକଥା ଶୁଣି ବହୁତ ରାଗିଗଲେ ଓ ସେ
ତାହାଙ୍କ ନିଜ ପୋଷାକ ଚିରି ପକେଇଲେ ଓ ସେ
କହିଲେ, "ଏ ଯେଉଁ ସବୁ କଥା କହିଲେ ତା' ଦ୍ୱାରା
ପରମେଶ୍ୱରଙ୍କର ନିନ୍ଦା ହୋଇଛି। ଆମ୍ଭର ଆଉ କୌଣସି
ସାକ୍ଷୀ-ଦରକାର ନାହିଁ। ତୁମ୍ଭେମାନେ ପରମେଶ୍ୱରଙ୍କର ନିନ୍ଦା
ଶୁଣିଛ। ତୁମ୍ଭେମାନେ ତେବେ କ'ଣ ଭାବୁଛ?" ୬୬ସେମାନେ
କହିଲେ,

"ସେ ଅପରାଧୀ। ତାହାଙ୍କର ମୃତ୍ୟୁ ହେବା ଉଚିତ।"

୬୭ତା'ପରେ ସେଠାରେ ଥିବା ଲୋକମାନେ ଯୀଶୁଙ୍କ
ମୁହଁ ଉପରେ ଛେପ ପକାଇଲେ, ବିଧା ମାରିଲେ।
କେତେକ ଲୋକ ଚାପୁଡ଼ା ମାରିଲେ। ୬୮ସେମାନେ କହିଲେ,
"ହେ ଖ୍ରୀଷ୍ଟ! ତୁମ୍ଭେ ଯଦି ଜଣେ ଭବିଷ୍ୟଦ୍‌ବକ୍ତା ତେବେ
କୁହ, ତୁମ୍ଭକୁ କିଏ ମାରିଲା?"

## ଯୀଶୁଙ୍କୁ ଜାଣନ୍ତି ବୋଲି ସ୍ୱୀକାର କରିବାକୁ ପିତର ଭୟ କଲେ

୬୯ସେହି ସମୟରେ ପିତର ପ୍ରାଙ୍ଗଣ ମଧ୍ୟରେ ବସିଥିଲେ।

ଜଣେ ଦାସୀ ପିତରଙ୍କ ପାଖକୁ ଆସିଲା। ସେ କହିଲା,
“ତୁମ୍ଭେ ମଧ୍ୟ ଗାଲିଲୀର ଯୀଶୁଙ୍କ ସହିତ ଥିଲ।”
୭୦କିନ୍ତୁ ପିତର ଏକଥା ସମସ୍ତଙ୍କ ଆଗରେ ଅସ୍ୱୀକାର
କଲେ। ସେ କହିଲେ, “ତୁମ୍ଭେ କେଉଁ ବିଷୟରେ କହୁଛ
ତାହା ମୁଁ ଜାଣେ ନାହିଁ।”
୭୧ତା’ପରେ ସେ ଅଗଣାରୁ ବାହାରି ଆସିଲେ। ଫାଟକ
ପାଖରେ ଆଉଜଣେ ଦାସୀ ତାହାଙ୍କୁ ଦେଖି ପକାଇ
ସେଠାରେ ଥିବା ସମସ୍ତ ଲୋକଙ୍କୁ କହିଲା, “ଏ ଲୋକ
ନାଜରିତର ଯୀଶୁଙ୍କ ସହିତ ଥିଲା।”
୭୨ପୁଣି ଥରେ ପିତର ଅସ୍ୱୀକାର କରିଦେଲେ। ସେ
କହିଲେ, “ମୁଁ ପରମେଶ୍ୱରଙ୍କ ନାମରେ ପ୍ରତିଜ୍ଞା କରି
କହୁଛି ଯେ ମୁଁ ସେ ଲୋକକୁ ଜାଣେନାହିଁ।”
୭୩କିଛି ସମୟ ପରେ ସେଠାରେ ଠିଆ ହୋଇଥିବା
ଲୋକମାନେ ପିତରଙ୍କ ପାଖକୁ ଆସି ତାହାଙ୍କୁ କହିଲେ,
“ଆମ୍ଭେ ଜାଣୁ ତୁମ୍ଭେ ନିଶ୍ଚୟ ତାହାଙ୍କର ଶିଷ୍ୟମାନଙ୍କ
ମଧ୍ୟରୁ ଜଣେ। ଏକଥା ତୁମ୍ଭ କହିବା ଢଙ୍ଗରୁ ଜଣା
ପଡୁଛି।”
୭୪ପିତର ନିଜକୁ ଧିକ୍କାର କରି, ରାଣ ପକାଇ
କହିଲେ, “ମୁଁ ସେ ଲୋକଙ୍କୁ ଜାଣେନାହିଁ।” ସେତେବେଳେ
କୁକୁଡ଼ା ଡ଼ାକିଲା। ୭୫ଏବେ ପିତରଙ୍କର, ଯୀଶୁ କହିଥିବା
କଥା ମନେ ପଡିଲା। ଯୀଶୁ କହିଥିଲେ, “କୁକୁଡା ଡାକିବା
ପୂର୍ବରୁ ତୁମ୍ଭେ ମୋତେ ଜାଣିନାହିଁ ବୋଲି ତିନିଥର ଅସ୍ୱୀକାର
କରିବ।” ପିତର ବାହାରକୁ ବାହାରିଯାଇ ବ୍ୟାକୁଳ ହୋଇ
କାନ୍ଦିବାକୁ ଲାଗିଲେ।

## ରାଜ୍ୟପାଳ ପୀଲାତଙ୍କ ଆଗରେ ଯୀଶୁଙ୍କୁ ହାଜର କରାଗଲା

୨୭ ତାପରେ ଦିନ ଅତି ସକାଳୁ ସମସ୍ତ ପ୍ରଧାନ
ଯାଜକ ଓ ପ୍ରାଚୀନ ନେତାମାନେ ଏକାଠିହେଲେ,
ଓ ଯୀଶୁଙ୍କୁ ମାରିଦେବା ପାଇଁ ଯୋଜନା କଲେ। ୨ସେମାନେ
ଯୀଶୁଙ୍କୁ ବାନ୍ଧି ପକାଇଲେ। ତାପରେ ତାହାଙ୍କୁ ରାଜ୍ୟପାଳ
ପୀଲାତଙ୍କ ପାଖକୁ ନେଇଗଲେ, ଓ ତାହାଙ୍କ ହାତରେ
ଯୀଶୁଙ୍କୁ ଦେଇଦେଲେ।

## ଯିହୂଦାଙ୍କ ଆତ୍ମହତ୍ୟା

୩ଯିହୂଦା ଦେଖିଲା ଯେ, ସେମାନେ ଯୀଶୁଙ୍କୁ ମାରିଦେବା
ପାଇଁ ସ୍ଥିର କରିଛନ୍ତି। ଯିହୂଦାହିଁ ଯୀଶୁଙ୍କୁ ତାହାଙ୍କର
ଶତ୍ରୁମାନଙ୍କ ହାତରେ ଦେଇ ଦେଇଥିଲା। ତେଣୁ ସେ
ଏସବୁ ଘଟଣା ଦେଖି ନିଜର କର୍ମ ପାଇଁ ବହୁତ ଦୁଃଖ
କଲା। ସେ ପ୍ରଧାନ ଯାଜକ ଓ ପ୍ରାଚୀନ ନେତାମାନଙ୍କୁ
ସେହିତିରିଶଟି ରୌପ୍ୟମୁଦ୍ରା ଫେରାଇଦେଲା। ୪ସେ କହିଲା,
“ମୁଁ ପାପ କରିଛି। ମୁଁ ଜଣେ ନିରପରାଧ ଲୋକକୁ ମାରି
ଦେବାପାଇଁ ତୁମ୍ଭ ହାତରେ ଧରେଇ ଦେଇଛି।”
ଯୀହୂଦୀ ନେତାମାନେ କହିଲେ, “ଏଥିରେ ଆମ୍ଭର କିଛି
ଯାଏ ଆସେ ନାହିଁ। ତୁମ୍ଭ କଥା ତୁମ୍ଭେ ବୁଝ।”
୫“ଯିହୂଦା ମନ୍ଦିର ଭିତରେ ସେହି ରୂପାଟଙ୍କାତକ
ଫିଙ୍ଗିଦେଲା। ତାପରେ ସେହି ଜାଗା ଛାଡି ଯିହୂଦା ଚାଲିଗଲେ,
ଓ ନିଜକୁ ଫାଶି ଦେଲା।
୬ପ୍ରଧାନ ଯାଜକମାନେ ମନ୍ଦିର ଭିତରେ ସେହି ରୂପା
ଟଙ୍କାତକ ଗୋଟାଇ ନେଲେ। ସେମାନେ କହିଲେ, “ମନ୍ଦିର
ଟଙ୍କାସହିତ ଏ ଟଙ୍କାତକ ରଖିବା ନିୟମ ବିରୁଦ୍ଧ ହେବ।
କାରଣ ଏ ଟଙ୍କା ଜଣକର ମୃତ୍ୟୁ ପାଇଁ ଦିଆଯାଇଛି।”
୭ବାହାରୁ ଯିରୂଶାଲମକୁ ଭ୍ରମଣରେ ଆସୁଥିବା ଲୋକମାନଙ୍କ
ମୃତ୍ୟୁ ହେଲେ ସେମାନଙ୍କୁ ସମାଧି ଦେବା ନିମନ୍ତେ
ସେମାନେ ଏ ଟଙ୍କାରେ ‘କୁମ୍ଭାର-ଜମି’ ନାମରେ ନାମିତ
ଜମି ଖଣ୍ଡିଏ କିଣିବାକୁ ସ୍ଥିର କଲେ। ୮ତେଣୁ ଏବେ ସୁଦ୍ଧା
ଏହି ଜମିଟିକୁ ରକ୍ତ-କ୍ଷେତ୍ର ବୋଲି କୁହାଯାଉଛି। ୯ଏଭଳି
ଭାବରେ ଭବିଷ୍ୟଦ୍‌ବକ୍ତା ଯିରିମିୟଙ୍କ ମାଧ୍ୟମରେ କୁହାଯାଇଥିବା
ବାଣୀ ସଫଳ ହେଲା। ଯିରିମିୟ କହିଥିଲେ,
“ସେମାନେ ତିରିଶଟି ରୂପା-ଟଙ୍କା ନେଲେ। ସେତିକି
ଟଙ୍କା ଇସ୍ରାୟେଲର ଲୋକେ ତାହାଙ୍କର ଜୀବନର ମୂଲ୍ୟ-ସ୍ୱରୂପ
ଦେବାକୁ ସ୍ଥିର କରିଥିଲେ। ୧୦ପ୍ରଭୁ ମୋତେ ଦେଇଥିବା
ଆଦେଶ ଅନୁସାରେ ସେମାନେ ସେହି ଟଙ୍କାରେ କୁମ୍ଭାର-ଜମି
ଖଣ୍ଡିକ କିଣିଲେ।”*

## ଯୀଶୁଙ୍କୁ ପୀଲାତଙ୍କର ପ୍ରଶ୍ନ

୧୧ଏହି ସମୟରେ ଯୀଶୁ ରାଜ୍ୟପାଳ ପୀଲାତ ଆଗରେ
ଠିଆହେଲେ। ରାଜ୍ୟପାଳ ତାହାଙ୍କୁ ପଚାରିଲେ, “ତୁମ୍ଭେ
କ’ଣ ଯିହୂଦୀମାନଙ୍କର ରାଜା?”
ଯୀଶୁ ଉତ୍ତର ଦେଲେ, “ହଁ”।
୧୨କିନ୍ତୁ ଯେତେବେଳେ ପ୍ରଧାନ ଯାଜକ ଓ ପ୍ରାଚୀନ
ନେତାମାନେ ତାହାଙ୍କୁ ଅଭିଯୁକ୍ତ କଲେ ସେ କିଛି ଉତ୍ତର
ଦେଲେନାହିଁ। ୧୩ତେଣୁ ପୀଲାତ ଯୀଶୁଙ୍କୁ ପଚାରିଲେ, “ସେମାନେ
ତୁମ୍ଭ ବିରୁଦ୍ଧରେ ଯେଉଁ ସବୁ ଅଭିଯୋଗ କରୁଛନ୍ତି ତାହା
ତୁମ୍ଭେ ଶୁଣିଛ। କାହିଁକି ଉତ୍ତର ଦେଉନାହଁ?”
୧୪କିନ୍ତୁ ଯୀଶୁ ଗୋଟିଏ ହେଲେ ଉତ୍ତର ତାହାଙ୍କୁ
ଦେବାକୁ ମନାକଲେ। ଏଥିରେ ପୀଲାତ ବଡ଼ ଆଶ୍ଚର୍ଯ୍ୟ
ହୋଇଗଲେ।

## ପୀଲାତ ଚେଷ୍ଟା କରିବା ସତ୍ତ୍ୱେ ଯୀଶୁଙ୍କୁ ମୁକ୍ତ କରିବାରେ ଅସଫଳ ହେଲେ

୧୫ପ୍ରତ୍ୟେକ ବର୍ଷ ନିସ୍ତାର ପର୍ବ ଅବସରରେ ରାଜ୍ୟପାଳ
କାରାଗାରରୁ ଜଣେ ବନ୍ଦୀକୁ ମୁକ୍ତ କରିବାର ରୀତି ଥିଲା।
ଲୋକମାନେ ଯେଉଁ ଲୋକର ମୁକ୍ତ ହେବା ଚାହୁଁଥିଲେ,
କେବଳ ସେହି ଲୋକକୁ ମୁକ୍ତ କରାଯାଉଥିଲା। ୧୬ସେହି
ସମୟରେ ବାରବ୍ବା* ନାମରେ ଜଣେ କୁଖ୍ୟାତ ବନ୍ଦୀ
ଥିଲା। ୧୭ତେଣୁ ଯେତେବେଳେ ସବୁଲୋକେ ଏକାଠି
ଜମାହେଲେ, ସେତେବେଳେ ପୀଲାତ ସେମାନଙ୍କୁ ପଚାରିଲେ,
“ମୁଁ ତୁମ୍ଭମାନଙ୍କ ପାଇଁ ଜଣେ ଲୋକକୁ ମୁକ୍ତ କରିବ।
ବାରବ୍ବା ଓ ଯୀଶୁଙ୍କ ମଧ୍ୟରୁ କାହାକୁ ମୁକ୍ତ କରିବାକୁ

---

**‘ସେମାନେ … ଖଣ୍ଡିକ କିଣିଲେ’** ଯିଖରିୟ ୧୧:୧୨-୧୩; ଯିରିମିୟ ୩୨:୬-୯

**ବାରବ୍ବା** କେତେକ ଗ୍ରୀକ୍ ପୁସ୍ତକରେ ଏହି ନାମଟି ବାରବ୍ବା ଯୀଶୁ ବୋଲି ଉଲ୍ଲେଖ ଅଛି।

ଚାହୁଁଛ?” ୧୮ପୀଲାତ ଜାଣିଥିଲେ ଯେ ଲୋକମାନେ ଯୀଶୁଙ୍କ
ପ୍ରତି ଈର୍ଷାପରାୟଣ ଥିଲେ। ସେଥିପାଇଁ ତାହାଙ୍କ ହାତରେ
ଯୀଶୁଙ୍କୁ ସମର୍ପି ଦେଇଛନ୍ତି।
୧୯ପୀଲାତ ବିଚାରମଞ୍ଚରେ ବସିଥିବା ସମୟରେ ତାହାଙ୍କ
ସ୍ତ୍ରୀ ତାହାଙ୍କ ପାଖକୁ ଗୋଟିଏ ଖବର ପଠାଇଲେ। ଖବରଟି
ଥିଲା: “ଏହି ନିରୀହ ଲୋକଟିର କିଛି ହେଲେ କ୍ଷତି
କରନାହିଁ। ମୁଁ ତାହାଙ୍କ ବିଷୟରେ କାଲି ରାତିରେ ଗୋଟିଏ
ସ୍ୱପ୍ନ ଦେଖିଛି। ସେଥିଯୋଗୁଁ ମୁଁ ଅଧିକ ଚିନ୍ତାଗ୍ରସ୍ତ ହୋଇପଡ଼ିଛି।”
୨୦କିନ୍ତୁ ପ୍ରଧାନ ଯାଜକ ଓ ପ୍ରାଚୀନ ନେତାମାନେ
ଲୋକମାନଙ୍କୁ ପ୍ରବର୍ତ୍ତାଇଲେ ଯେ, ସେମାନେ ବାରବ୍ବାଙ୍କୁ
ମୁକ୍ତ କରିବା ପାଇଁ ଓ ଯୀଶୁଙ୍କୁ ମାରିଦେବା ପାଇଁ
ଅନୁରୋଧ କରନ୍ତୁ।
୨୧ରାଜ୍ୟପାଳ ପୀଲାତ ପଚାରିଲେ, “ବାରବ୍ବା ଓ ଯୀଶୁ
ଏହି ଦୁଇଜଣ ବନ୍ଦୀଙ୍କ ମଧ୍ୟରୁ ତୁମ୍ଭମାନଙ୍କ ପାଇଁ କାହାକୁ
ମୁକ୍ତ କରିଦେବା ତୁମ୍ଭେମାନେ ଚାହୁଁଛ?”
ସେମାନେ କହିଲେ, “ବାରବ୍ବା”
୨୨ତା’ପରେ ପୀଲାତ ସେମାନଙ୍କୁ ପଚାରିଲେ, “ତେବେ
ଯେଉଁ ଯୀଶୁଙ୍କୁ ଖ୍ରୀଷ୍ଟ କୁହାଯାଏ ତାହାଙ୍କ ପ୍ରତି ମୁଁ କ’ଣ
କରିବି?”
ସମସ୍ତେ କହିଲେ, “ତାହାଙ୍କୁ କ୍ରୁଶରେ ଚଢ଼େଇ ଦିଆଯାଉ।”
୨୩ପୀଲାତ ପଚାରିଲେ, “କାହିଁକି? ସେ କ’ଣ ଅପରାଧ
କରିଛନ୍ତି?”
କିନ୍ତୁ ସମସ୍ତେ ଚିତ୍କାର କରି କହିଲେ, “ତାହାଙ୍କୁ
କ୍ରୁଶରେ ଚଢେଇ ଦିଆଯାଉ।”
୨୪ପୀଲାତ ଦେଖିଲେ ଯେ, ସେ ଲୋକମାନଙ୍କ ମତ
ବଦଳେଇବାକୁ କିଛି କରିପାରିବେ ନାହିଁ ବରଂ ଲୋକେ
ବେଳକୁବେଳ ଉତ୍ତେଜିତ ହୋଇ ଉଠୁଛନ୍ତି। ପୀଲାତ କିଛି
ପାଣି ନେଲେ, ଓ ସମସ୍ତେ ଦେଖି ପାରିବା ଭଳି ତାହାଙ୍କର
ଦୁଇହାତ ଧୋଇଲେ। ସେ କହିଲେ, “ଏ ଲୋକର ମୃତ୍ୟୁ
ପାଇଁ ମୁଁ ଦାୟୀ ନୁହେଁ। ତୁମ୍ଭେମାନେ କେବଳ ଏସବୁ
କରୁଛ।”
୨୫ସବୁଲୋକ ଉତ୍ତର ଦେଲେ, “ଆମେ ତାହାଙ୍କ ମୃତ୍ୟୁ
ପାଇଁ ଦାୟୀ ରହିବୁ। ତାହାଙ୍କ ମୃତ୍ୟୁ ପାଇଁ ଯେ କୌଣସି
ଦଣ୍ଡ ପାଇବାକୁ ଯୋଗ୍ୟ, ଆମ୍ଭ ନିଜ ପାଇଁ ଓ ଆମ୍ଭ
ପିଲାମାନଙ୍କ ପାଇଁ ସେଥିରେ ରାଜି ଅଛୁ।” ୨୬ପୀଲାତ
ବାରବ୍ବାଙ୍କୁ ମୁକ୍ତ କରିଦେଲେ ଓ ଯୀଶୁଙ୍କୁ ବେତରେ
ମାରିବା ପାଇଁ ଆଦେଶ ଦେଲେ। ତା’ପରେ ସେ ଯୀଶୁଙ୍କୁ
କ୍ରୁଶରେ ଚଢ଼ାଇବା ପାଇଁ ସୈନ୍ୟମାନଙ୍କୁ ହାତରେ ଅର୍ପଣ
କଲେ।

### ପୀଲାତଙ୍କ ସୈନ୍ୟମାନେ ଯୀଶୁଙ୍କୁ ଥଟ୍ଟା କଲେ

୨୭ତାପରେ ପୀଲାତଙ୍କ ସୈନ୍ୟମାନେ ଯୀଶୁଙ୍କୁ ପୀଲାତଙ୍କ
ରାଜପ୍ରାସାଦ ଭିତରକୁ ନେଇଗଲେ। ସବୁ ସୈନ୍ୟତକ
ଯୀଶୁଙ୍କ ଚାରିପଟେ ଜମା ହୋଇଗଲେ। ୨୮ସୈନ୍ୟମାନେ
ଯୀଶୁଙ୍କ ପୋଷାକ କାଢ଼ି ପକାଇଲେ ଓ ତାହାଙ୍କୁ ଲାଲ
ପୋଷାକଟି ପିନ୍ଧାଇଦେଲେ। ୨୯ସେମାନେ କଣ୍ଟାଡାଳରେ
ଗୋଟିଏ ମୁକୁଟ ତିଆରି କଲେ ଓ ସେହି କଣ୍ଟା ମୁକୁଟ
ଯୀଶୁଙ୍କ ମୁଣ୍ଡରେ ପିନ୍ଧାଇଦେଲେ। ତାହାଙ୍କର ଡାହାଣ
ହାତରେ ବାଡ଼ିଟି ଧରେଇ ଦେଲେ। ତାପରେ ତାହାଙ୍କ
ଆଗରେ ଆଣ୍ଠୁମାଡ଼ି ବସି ପଡି ତାହାଙ୍କୁ ଥଟ୍ଟା କଲେ।
ସେମାନେ କହିଲେ, “ହେ, ଯିହୂଦୀମାନଙ୍କର ରାଜା! ତୁମ୍ଭେ
ଦୀର୍ଘଜୀବୀ ହୁଅ।” ୩୦ତା’ପରେ ସେମାନେ ତାହାଙ୍କ ମୁହଁ
ଉପରକୁ ଛେପପକାଇଲେ ଓ ତାହାଙ୍କ ହାତରୁ ବାଡ଼ିଟି
ନେଇ ସେଥିଲେ ତାହାଙ୍କର ମୁଣ୍ଡକୁ ପିଟିବାକୁ ଲାଗିଲେ।
୩୧ତାହାଙ୍କୁ ଥଟ୍ଟା କରି ସାରିବା ପରେ ତାହାଙ୍କ ପୋଷାକ
କାଢ଼ିନେଲେ ଓ ପୁଣି ତାହାଙ୍କର ନିଜ ବସ୍ତ୍ର ପିନ୍ଧାଇ
କ୍ରୁଶରେ ଚଢାଇବା ପାଇଁ ନେଇଗଲେ।

### ଯୀଶୁଙ୍କୁ କ୍ରୁଶରେ ହତ୍ୟା କରାଗଲା

୩୨ସୈନ୍ୟମାନେ ଯୀଶୁଙ୍କୁ ନେଇ ନଗର ବାହାରକୁ
ଯାଉଥିବା ସମୟରେ କୁରୀଣୀୟ ଶିମୋନ ନାମରେ ଜଣେ
ଲୋକକୁ ଦେଖିଲେ। ସେମାନେ ସେ ଲୋକଟିକୁ ଯୀଶୁଙ୍କ
ପାଇଁ କ୍ରୁଶ ବୋହି ନେବା ପାଇଁ ବାଧ କଲେ। ୩୩ସେମାନେ
ଗଲ୍‌ଗଥା ନାମକ ସ୍ଥାନରେ (ଯାହାର ଅର୍ଥ କପାଳ-ସ୍ଥାନ)
ପହଞ୍ଚିଲେ। ୩୪ସେମାନେ ଯୀଶୁଙ୍କୁ ପିତ୍ତ ମିଶା ଅଙ୍ଗୁରରସ
ପିଇବାକୁ ଦେଲେ, କିନ୍ତୁ ଯୀଶୁ ତାହାକୁ ଚାଖିବା ପରେ
ପିଇବା ପାଇଁ ମନା କଲେ। ୩୫ସେମାନେ ଯୀଶୁଙ୍କୁ କ୍ରୁଶରେ
କଣ୍ଟାମାରିସାରି ତାହାଙ୍କର ପୋଷାକ ପତ୍ର ନିଜ ନିଜ
ଭିତରେ ଗୁଲିବାଣ୍ଟ କରି ବାଣ୍ଟି ନେଲେ। ୩୬ତା’ପରେ
ସୈନ୍ୟମାନେ ସେଠାରେ ଯୀଶୁଙ୍କୁ ଜଗିବା ପାଇଁ ବସିଲେ।
୩୭ସୈନ୍ୟମାନେ ଯୀଶୁଙ୍କ ବିରୁଦ୍ଧରେ ଅଭିଯୋଗ-ପତ୍ର ତିଆରି
କଲେ ଓ ତାହାକୁ ତାହାଙ୍କ ମୁଣ୍ଡ ଉପରେ ଝୁଲାଇ
ଦେଲେ। ସେଥିରେ ଲେଖା ଥିଲା, “ଏ ଯିହୂଦୀମାନଙ୍କର
ରାଜା ଯୀଶୁ।” ୩୮ସେହି ସମୟରେ ଦୁଇଜଣ ଡକାୟତଙ୍କୁ
ମଧ୍ୟ ଯୀଶୁଙ୍କ ପାଖରେ କ୍ରୁଶରେ ଚଢ଼େଇ ଦିଆଗଲା।
ଜଣକୁ ତାହାଙ୍କ ଡାହାଣ ପଟେ ଓ ଆଉ ଜଣକୁ ବାମ
ପଟେ। ୩୯ସେହି ପାଖ ଦେଇ ଯାଉଥିବା ଲୋକମାନେ
ଯୀଶୁଙ୍କୁ ଅପମାନ ଦେଉଥିଲେ। ସେମାନେ ସେମାନଙ୍କ
ମୁଣ୍ଡହଲେଇ କହୁଥିଲେ, ୪୦“ତୁମ୍ଭେ କହୁଥିଲ ଯେ ତୁମ୍ଭେ
ମନ୍ଦିରକୁ ଭାଙ୍ଗି ଦେଇ ପାରିବ ଓ ପୁଣି ତାକୁ ତିନିଦିନ
ମଧ୍ୟରେ ତିଆରି କରିଦେଇ ପାରିବ। ତେଣୁ ଏବେ ତୁମ୍ଭେ
ନିଜକୁ ରକ୍ଷା କର। ତୁମ୍ଭେ ଯଦି ପ୍ରକୃତରେ ପରମେଶ୍ୱରଙ୍କ
ପୁତ୍ର, ତେବେ କ୍ରୁଶ ଉପରୁ ତଳକୁ ଚାଲିଆସ।”
୪୧ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ ଓ ପ୍ରାଚୀନମାନେ ମଧ୍ୟ
ସେଠାରେ ଥିଲେ। ସେମାନେ ମଧ୍ୟ ଅନ୍ୟମାନଙ୍କ ଭଳି
ଯୀଶୁଙ୍କୁ ଥଟ୍ଟା କରୁଥିଲେ। ୪୨ସେମାନେ କହୁଥିଲେ, “ସେ
ଅନ୍ୟମାନଙ୍କୁ ରକ୍ଷା କରୁଥିଲେ। ଏବେ କିନ୍ତୁ ସେ ନିଜକୁ
ରକ୍ଷା କରି ପାରୁନାହାନ୍ତି। ଲୋକେ କହନ୍ତି ଯେ ସେ
ଇସ୍ରାୟେଲର ରାଜା। ଏକଥା ଯଦି ସତ, ତେବେ ସେ
ବର୍ତ୍ତମାନ କ୍ରୁଶ ଉପରୁ ତଳକୁ ଓହ୍ଲେଇ ଆସନ୍ତୁ। ତେବେ
ଆମ୍ଭେ ତାହାଙ୍କୁ ବିଶ୍ୱାସ କରିବୁ। ୪୩ସେ ପରମେଶ୍ୱରଙ୍କଠାରେ
ବିଶ୍ୱାସ କରୁଥିଲେ। ଯଦି ପ୍ରକୃତରେ ପରମେଶ୍ୱର ତାହାଙ୍କୁ
ଚାହୁଁଥାଆନ୍ତି, ତେବେ ସେ ତାହାଙ୍କୁ ବର୍ତ୍ତମାନ ରକ୍ଷା
କରନ୍ତୁ। ସେ ନିଜେ କହୁଥିଲେ, ‘ମୁଁ ପରମେଶ୍ୱରଙ୍କ

ପୁତ୍ର ।’” ୪୪ଯେଉଁ ଡକାୟତମାନଙ୍କୁ ଯୀଶୁଙ୍କ ପାଖରେ
କ୍ରୁଶରେ ଚଢ଼େଇ ଦିଆଯାଉଥିଲା, ସେମାନେ ମଧ୍ଯ ଯୀଶୁଙ୍କୁ
ସେହିଭଳି ଥଟ୍ଟା କରିବାରେ ଲାଗିଲେ ।

### ଯୀଶୁଙ୍କ ମୃତ୍ୟୁ

୪୫ଦ୍ୱିପ୍ରହରଠାରୁ ତିନିଟା ବାଜିବା ପର୍ଯ୍ୟନ୍ତ ସାରା ଦେଶରେ
ଅନ୍ଧକାର ଘୋଟିଗଲା । ୪୬ପ୍ରାୟ ତିନିଟାବେଳେ ଯୀଶୁ ଉଚ୍ଚ
ସ୍ୱରରେ ଡାକିଲେ, “ଏଲି, ଏଲି, ଲାମା ସବକ୍ଥାନୀ?”
ଅର୍ଥାତ୍ “ହେ ମୋର ପରମେଶ୍ୱର, ହେ ମୋର ପରମେଶ୍ୱର,
ତୁମ୍ଭେ ମୋତେ କାହିଁକି ପରିତ୍ୟାଗ କଲ?”*
୪୭ସେଠାରେ ଠିଆହୋଇଥିବା କେତେକ ଲୋକ ଏକଥା
ଶୁଣିଲେ ଓ କହିଲେ, “ସେ ଏଲୟଙ୍କୁ ଡାକୁଛି ।”
୪୮ସେହିକ୍ଷଣି ସେହି ଲୋକମାନଙ୍କ ମଧ୍ଯରୁ ଜଣେ ଦୌଡ଼ିଯାଇ
ସ୍ପଞ୍ଜିଟିଏ ନେଇ ଆସିଲା । ତାକୁ ଅମ୍ଳରସରେ ବୁଡ଼ାଇ
ଗୋଟିଏ ବାଡ଼ିରେ ଟାଙ୍ଗି ଯୀଶୁଙ୍କୁ ବଢ଼ାଇ ଦେଲା । ୪୯କିନ୍ତୁ
ଅନ୍ୟମାନେ କହିଲେ, “ରୁହ, ଏଲୟ ଆସି ତାହାଙ୍କୁ ରକ୍ଷା
କରୁଛନ୍ତି କି ନାହିଁ ଏବେ ଦେଖିବା ।”
୫୦ପୁଣି ଥରେ ଯୀଶୁ ବଡ଼ ପାଟିରେ ଚିତ୍କାର କଲେ,
ତା’ପରେ ସେ ପ୍ରାଣତ୍ୟାଗ କଲେ । ୫୧ତାପରେ ମନ୍ଦିରର
ପରଦା ଉପରୁ ତଳ ପର୍ଯ୍ୟନ୍ତ ଚିରିଯାଇ ଦୁଇଖଣ୍ଡ ହୋଇଗଲା ।
ଭୂମିକମ୍ପ ହେଲା, ଓ ପଥର ମାନ ଫାଟି ଗଲା, ୫୨କବରଗୁଡିକ
ଖୋଲିଗଲା, ଆଗରୁ ମରିଯାଇଥିବା ପରମେଶ୍ୱରଙ୍କର ଅନେକ
ଗୁଡିଏ ଲୋକ ମୃତ୍ୟୁରୁ ପୁଣି ଉତ୍ଥାନ କଲେ । ସେମାନେ
କବର ଭିତରୁ ବାହାରି ଆସିଲେ । ୫୩ଯୀଶୁ ମୃତ୍ୟୁରୁ ବଞ୍ଚି
ଉଠିବା ପରେ ସେମାନେ ପବିତ୍ରନଗରକୁ ଯାଇ ଅନେକ
ଲୋକଙ୍କୁ ଦେଖାଦେଲେ ।
୫୪ରୋମୀୟ ସେନାଧକ୍ଷ ଓ ଯୀଶୁଙ୍କୁ ଜଗି ରହିଥିବା
ସୈନ୍ୟମାନେ ଭୂମିକମ୍ପ ଓ ଅନ୍ୟସବୁ ଘଟଣାମାନ ଘଟୁଥିବା
ଦେଖିଲେ, ସେମାନେ ବହୁତ ଭୟ କଲେ ଓ ସେମାନେ
କହିଲେ, “ସେ ପ୍ରକୃତରେ ପରମେଶ୍ୱରଙ୍କ ପୁତ୍ର ଥିଲେ ।”
୫୫କିଛି ଦୂରରେ ଅନେକ ସ୍ତ୍ରୀଲୋକ ଏସବୁ ଦେଖୁଥିଲେ ।
ଏହି ସ୍ତ୍ରୀଲୋକମାନେ ଯୀଶୁଙ୍କ ଯତ୍ନ ନେବା ପାଇଁ ଗାଲିଲୀରୁ
ତାହାଙ୍କ ସହିତ ଆସିଥିଲେ । ୫୬ସେମାନଙ୍କ ମଧ୍ଯରେ ମଗ୍ଦଲୀନୀ
ମରିୟମ, ଯାକୁବ ଓ ଯୋସେଫଙ୍କ ମାଆ ମରିୟମ, ଓ
ଜେବଦିଙ୍କ ପୁତ୍ରମାନ(ଯାକୁବ ଓ ଯୋହନ)ଙ୍କ ମାଆ ଥିଲେ ।

### ଯୀଶୁଙ୍କୁ କବର ଦିଆଗଲା

୫୭ସନ୍ଧ୍ୟା ହେବା ବେଳକୁ ଯୋସେଫ ନାମକ ଆରିମଥିୟାର
ଜଣେ ଧନୀଲୋକ ଯିରୂଶାଲମରେ ଆସି ପହଞ୍ଚିଲେ । ସେ
ମଧ୍ଯ ଯୀଶୁଙ୍କର ଜଣେ ଶିଷ୍ୟ ଥିଲେ । ୫୮ସେ ପୀଲାତଙ୍କ
ପାଖକୁ ଗଲେ, ଓ ଯୀଶୁଙ୍କ ଶରୀର ପାଇଁ ଅନୁରୋଧ
କଲେ । ପୀଲାତ ସୈନ୍ୟମାନଙ୍କୁ ଆଜ୍ଞାଦେଇ କହିଲେ
ଶରୀରକୁ ତାହାଙ୍କୁ ଦେଇଦିଅ । ୫୯ଯୋସେଫ ଶରୀରକୁ
ନେଲେ, ଓ ତାହାଙ୍କୁ ନୂଆ ରେଶମ ବସ୍ତ୍ର ଦ୍ୱାରା ଘୋଡେଇ
ଦେଲେ । ୬୦ଯୋସେଫ ଯୀଶୁଙ୍କ ଶରୀରକୁ ତାହାଙ୍କ ନୂଆ
କବର ମଧ୍ଯରେ ରଖିଲେ । ସେହି କବରକୁ ଯୋସେଫ
ପଥରର କାନ୍ଥ କାଟି ତିଆରି କରିଥିଲେ । ତାପରେ ସେ
ଗୋଟିଏ ବହୁତ ବଡ ପଥର ଗଡ଼େଇ ଆଣି ପ୍ରବେଶ-ଦ୍ୱାରକୁ
ବନ୍ଦକରି ଦେଲେ । ଏସବୁ କଲାପରେ ଯୋସେଫ ଚାଲିଗଲେ ।
୬୧ମଗ୍ଦଲୀନୀ ମରିୟମ ଓ ମରିୟମନାମକ ଅନ୍ୟ ସ୍ତ୍ରୀଲୋକ
ଜଣକ ସେଠାରେ କବର ଆଗରେ ବସି ରହିଥିଲେ ।

### ଯୀଶୁଙ୍କ କବର ପାଖରେ ପହରା

୬୨ସେହି ଦିନଟି ପ୍ରସ୍ତୁତି-ଦିବସ ଥିଲା, ସେହି ଶୁକ୍ରବାରର
ପରଦିନ ପ୍ରମୁଖ ଯାଜକ ଓ ଫାରୂଶୀମାନେ ପୀଲାତଙ୍କୁ
ଭେଟିଲେ । ୬୩ସେମାନେ କହିଲେ, “ମହାଶୟ, ଆମ୍ଭର
ମନେ ଅଛି ଯେ ସେହି ପ୍ରତାରକ ସେ ବଞ୍ଚିଥିବା ବେଳେ
କହିଥିଲା, ‘ତୃତୀୟ ଦିନ ପରେ ମୁଁ ମୃତ୍ୟୁରୁ ପୁଣି
ପୁନରୁତ୍ଥିତ ହେବି ।’ ୬୪ତେଣୁ ତୃତୀୟ ଦିନ ପର୍ଯ୍ୟନ୍ତ
କବରକୁ ପହରା ଦେବା ପାଇଁ ଆପଣ ଆଦେଶ ଦିଅନ୍ତୁ ।
ତାହାଙ୍କର ଶିଷ୍ୟମାନେ ସେଠାକୁ ଆସି ତାହାଙ୍କ ମୃତ
ଦେହକୁ ଚୋରୀ କରି ନେବାପାଇଁ ଚେଷ୍ଟା କରିବେ ।
ତା’ପରେ ସେମାନେ ଲୋକମାନଙ୍କୁ କହିବେ ଯେ, ସେ
ମୃତ୍ୟୁରୁ ଉଠିଛନ୍ତି । ତାହାହେଲେ ଏହି ଶେଷ ପ୍ରତାରଣା
ଆଗ ପ୍ରତାରଣା ଅପେକ୍ଷା ଅଧିକ ଖରାପ ହେବ ।”
୬୫ପୀଲାତ ସେମାନଙ୍କୁ କହିଲେ, “ତୁମ୍ଭେ ପହରା ପାଇଁ
ସୈନ୍ୟ ନେଇଯାଇପାର । ତୁମ୍ଭେ ଯେଉଁଭଳି ଭଲ ଭାବୁଛ,
ଯାଅ ଓ ସେହିପରି କବରସ୍ଥାନକୁ ପହରା ଦେଇ ନିରାପଦରେ
ରଖ ।” ୬୬ତା’ପରେ ସେମାନେ କବର ପାଖକୁ ଗଲେ ଓ
ପ୍ରବେଶ-ଦ୍ୱାରରେ ମୋହର ଲଗେଇଲେ । ସେଠାରେ
ସୈନ୍ୟମାନଙ୍କୁ ପହରା ଦେବାପାଇଁ ଆଦେଶ ଦେଇ
ଚୋରମାନଙ୍କ କବଳରୁ କବରକୁ ନିରାପଦ ରଖିବାର ବ୍ୟବସ୍ଥା
କଲେ ।

### ଯୀଶୁ ମୃତ୍ୟୁରୁ ପୁନରୁତ୍ଥିତ ହେଲେ

୨୮ ବିଶ୍ରାମଦିବସର ପରଦିନ ଅର୍ଥାତ ସପ୍ତାହର ପ୍ରଥମ
ଦିନ ଅତି ସକାଳୁ ମଗ୍ଦଲୀନୀ ମରିୟମ ଓ
ମରିୟମ ନାମକ ଅନ୍ୟ ସ୍ତ୍ରୀଲୋକ ଜଣକ କବର ଦେଖିବାକୁ
ଆସିଲେ । ୨ସେତିକିବେଳେ ଗୋଟିଏ ବଡ ଧରଣର ଭୂମିକମ୍ପ
ହେଲା । ପ୍ରଭୁଙ୍କର ଜଣେ ସ୍ୱର୍ଗଦୂତ ସ୍ୱର୍ଗରୁ ଓହ୍ଲାଇ ଆସିଲେ ।
ସ୍ୱର୍ଗଦୂତ ଜଣକ କବର ପାଖକୁ ଗଲେ ଓ ପ୍ରବେଶଦ୍ୱାର
ପାଖରୁ ପଥରଟି ଗଡେଇ ବାହାର କରିଦେଲେ । ସେ
ପଥର ଉପରେ ବସିଲେ । ୩ସ୍ୱର୍ଗଦୂତଙ୍କ ରୂପ ବିଜୁଳି ଭଳି
ଝଲକୁଥିଲା ଓ ତାହାଙ୍କ ପୋଷାକ ହିମ ଭଳି ଧଳା ଥିଲା ।
୪କବରକୁ ଜଗି ରହିଥିବା ସୈନ୍ୟମାନେ ସ୍ୱର୍ଗଦୂତଙ୍କୁ ଦେଖି
ଡ଼ରିଗଲେ । ସେମାନେ ଭୟରେ ଥରିବାକୁ ଲାଗିଲେ ।
ସେମାନେ ମୃତ ପ୍ରାୟ ହୋଇଗଲେ ।
୫ସ୍ୱର୍ଗଦୂତ ଜଣକ ସ୍ତ୍ରୀଲୋକମାନଙ୍କୁ କହିଲେ, “ଭୟ
କରନାହିଁ । ଯେଉଁ ଯୀଶୁଙ୍କୁ କ୍ରୁଶରେ ଚଢ଼ାଇ ମାରି ଦିଆଯାଇଛି
ତୁମ୍ଭେ ତାହାଙ୍କୁ ଖୋଜୁଥିବା କଥା ମୁଁ ଜାଣିଛି । ୬କିନ୍ତୁ ଯୀଶୁ
ଏଠାରେ ନାହାଁନ୍ତି । ସେ ତାହାଙ୍କ କଥା ଅନୁସାରେ ମୃତ୍ୟୁରୁ
ପୁନରୁତ୍ଥିତ ହୋଇଛନ୍ତି । ତାହାଙ୍କ ମରି-ଶରୀରକୁ ଯେଉଁ

---

**“ହେ ମୋର ... ପରିତ୍ୟାଗ କଲ?”** ଗୀତସଂହିତା. ୨୨:୧

ସ୍ଥାନରେ ରଖା ଯାଇଥିଲା, ସେ ସ୍ଥାନ ତୁମ୍ଭେ ଆସି ଦେଖ।
[୭]ଶୀଘ୍ର ଏଠାରୁ ଯାଇ ତାହାଙ୍କ ଶିଷ୍ୟମାନଙ୍କୁ ଜଣାଅ: 'ଯୀଶୁ
ମୃତ୍ୟୁରୁ ପୁନରୁତ୍ଥିତ ହୋଇଛନ୍ତି। ସେ ଗାଲିଲୀ ପ୍ରଦେଶକୁ
ଯାଉଛନ୍ତି। ତୁମ୍ଭମାନଙ୍କ ପୂର୍ବରୁ ସେ ସେଠାରେ ଥିବେ।
ତୁମ୍ଭେମାନେ ତାହାଙ୍କୁ ସେଠାରେ ଦେଖିବ।'" ତାପରେ
ସ୍ୱର୍ଗଦୂତ ଆଉ ଥରେ କହିଲେ, "ଏହି ସବୁ କଥା ମୁଁ
ତୁମ୍ଭକୁ କହିବାକୁ ଆସିଥିଲି।"

[୮]ତେଣୁ ସେହି ସ୍ତ୍ରୀଲୋକମାନେ ତତ୍କ୍ଷଣାତ୍ କବର ସ୍ଥାନ
ଛାଡ଼ି ଚାଲିଗଲେ। ସେମାନେ ଡରି ଯାଇଥିଲେ, କିନ୍ତୁ
ବହୁତ ଖୁସି ମଧ୍ୟ ଥିଲେ। ଯାହାସବୁ ଘଟିଗଲା, ସେ ସବୁ
ଯୀଶୁଙ୍କ ଶିଷ୍ୟମାନଙ୍କୁ ଜଣାଇବା ପାଇଁ ସେମାନେ ଦୌଡ଼-ଦୌଡ଼
ଗଲେ। [୯]ହଠାତ୍ ସେମାନେ ଦେଖିଲେ, ଯୀଶୁ ତାହାଙ୍କ
ଆଗରେ ଠିଆ ହୋଇଛନ୍ତି। ସେ କହିଲେ, "ତୁମ୍ଭମାନଙ୍କର
ମଙ୍ଗଳ ହେଉ!" ସ୍ତ୍ରୀଲୋକମାନେ ଯୀଶୁଙ୍କ ପାଖକୁ ଗଲେ।
ସେମାନେ ତାହାଙ୍କ ପାଦ ଧରି ତାହାଙ୍କର ଉପାସନା
କଲେ। [୧୦]ଯୀଶୁ ସେମାନଙ୍କୁ କହିଲେ, "ଭୟ କର ନାହିଁ।
ତୁମ୍ଭେମାନେ ଯାଇ ମୋ ଭାଇମାନଙ୍କୁ କୁହ ଯେ, ସେମାନେ
ଗାଲିଲୀ ଯାଆନ୍ତୁ। ସେମାନେ ମୋତେ ସେହିଠାରେ
ଦେଖିବେ।"

## ଜଗୁଆଳମାନେ ଯିହୂଦୀ ନେତାମାନଙ୍କୁ ଘଟଣାର ସୂଚନା ଦେଲେ

[୧୧]ଯେତେବେଳେ ସ୍ତ୍ରୀଲୋକମାନେ ଯୀଶୁଙ୍କ ଶିଷ୍ୟମାନଙ୍କୁ
ଖବର ଦେବାକୁ ଗଲେ, କବର ନିକଟରେ ପହରା
ଦେଉଥିବା କେତେକ ଜଗୁଆଳ ନଗରକୁ ଗଲେ ଓ କବର
ନିକଟରେ ଯାହା ସବୁ ଘଟିଥିଲା, ସେ ସମସ୍ତ ଖବର
ପ୍ରଧାନ ଯାଜକମାନଙ୍କୁ ଜଣାଇଲେ। [୧୨]ତା'ପରେ ପ୍ରଧାନ
ଯାଜକମାନେ ପ୍ରାଚୀନମାନଙ୍କ ସହିତ ମନ୍ତ୍ରଣା କରି ଗୋଟିଏ
ଉପାୟ ବାହାର କଲେ। ସେମାନେ ସୈନ୍ୟମାନଙ୍କୁ ମିଛ
କହିବା ପାଇଁ ଲାଞ୍ଚ ହିସାବରେ ପ୍ରଚୁର ଟଙ୍କା ଦେଲେ।
[୧୩]ସେମାନେ ସୈନ୍ୟମାନଙ୍କୁ କହିଲେ, "ତୁମ୍ଭେ ଲୋକମାନଙ୍କୁ
କହିବ ଯେ, ତୁମ୍ଭେମାନେ ସବୁ ଶୋଇ ପଡ଼ିଥିବା ସମୟରେ
ଯୀଶୁଙ୍କ ଶିଷ୍ୟମାନେ ରାତିରେ ଆସିଲେ ଓ ତାହାଙ୍କ
ଶରୀରକୁ କବରସ୍ଥାନରୁ ଚୋରେଇ ନେଲେ। [୧୪]ରାଜ୍ୟପାଳ
ଯଦି ଏକଥା ଶୁଣନ୍ତି, ତେବେ ଆମ୍ଭେ ତାହାଙ୍କୁ ଠିକ୍
ଭାବରେ ସବୁ ବୁଝାଇ କହିବୁ ଓ ତୁମ୍ଭମାନଙ୍କୁ ଅସୁବିଧାରୁ
ରକ୍ଷା କରିବୁ।" [୧୫]ସୈନ୍ୟମାନେ ଟଙ୍କାତକ ନେଲେ। ସେମାନଙ୍କୁ
ଯେପରି କରିବାକୁ ଶିଖାଯାଇଥିଲା, ସେମାନେ ତାହାହିଁ
କଲେ। ଏବଂ ଏକଥାଟି ଆଜି ପର୍ଯ୍ୟନ୍ତ ମଧ୍ୟ ଯିହୂଦୀମାନଙ୍କ
ମଧ୍ୟରେ ପ୍ରଚଳିତ ଅଛି।

## ଯୀଶୁ ତାହାଙ୍କ ଶିଷ୍ୟମାନଙ୍କ ସହିତ କଥାବାର୍ତ୍ତା ହେଲେ

[୧୬]ଏଗାର ଜଣ ଶିଷ୍ୟ ଗାଲିଲୀକୁ ଗଲେ। ଯୀଶୁ
ସେମାନଙ୍କୁ ଯେଉଁ ପାହାଡ଼ ଉପରକୁ ଯିବାକୁ କହିଥିଲେ,
ସେମାନେ ସେଠାକୁ ଗଲେ। [୧୭]ପାହାଡ଼ ଉପରେ ସେମାନେ
ଯୀଶୁଙ୍କୁ ଦେଖିଲେ। ସେମାନେ ତାହାଙ୍କୁ ପ୍ରଣାମ କଲେ।
କିନ୍ତୁ ସେମାନଙ୍କ ମଧ୍ୟରୁ କେତେକ ଶିଷ୍ୟ ବିଶ୍ୱାସ
କରିପାରିଲେନାହିଁ ଯେ, ଏ ହେଉଛନ୍ତି ପ୍ରକୃତରେ ଯୀଶୁ।
[୧୮]ତେଣୁ ଯୀଶୁ ସେମାନଙ୍କ ପାଖକୁ ଆସି କହିଲେ, "ସ୍ୱର୍ଗ
ଓ ପୃଥିବୀର ସମସ୍ତ ଅଧିକାର ମୋତେ ଦିଆ ଯାଇଛି।
[୧୯]ତେଣୁ ଯାଅ, ଓ ସବୁ ଦେଶର ଲୋକମାନଙ୍କୁ ମୋର
ଶିଷ୍ୟ କର। ପରମ-ପିତା, ପୁତ୍ର ଓ ପବିତ୍ରଆତ୍ମାଙ୍କ ନାମରେ
ତୁମ୍ଭେମାନେ ସେମାନଙ୍କୁ ବାପ୍ତିସ୍ମ ଦିଅ। [୨୦]ମୁଁ ତୁମ୍ଭମାନଙ୍କୁ
ଯାହା ସବୁ କହିଛି, ସେ ସବୁ କଥା ପାଳନ କରିବା ପାଇଁ
ଲୋକମାନଙ୍କୁ ଶିକ୍ଷା ଦିଅ। ମୁଁ ତୁମ୍ଭମାନଙ୍କ ସହିତ ସଦାସର୍ବଦା
ରହିବି ବୋଲି ତୁମ୍ଭେମାନେ ଦୃଢ଼-ବିଶ୍ୱାସ ରଖ। ଜଗତର
ଶେଷ ସମୟ ପର୍ଯ୍ୟନ୍ତ ମଧ୍ୟ ମୁଁ ତୁମ୍ଭ ସଙ୍ଗେ ସଙ୍ଗେ
ରହିବି।"

# ମାର୍କ ଲିଖିତ ସୁସମାଚାର

## ଯୀଶୁଙ୍କ ଆଗମନର ପ୍ରସ୍ତୁତି

୧ ଏହା ପରମେଶ୍ୱରଙ୍କ ପୁତ୍ର ଯୀଶୁ ଖ୍ରୀଷ୍ଟଙ୍କ ସୁସମାଚାରର
ଆରମ୍ଭ। ୨ଭବିଷ୍ୟଦ୍‌ବକ୍ତା ଯିଶାଇୟଙ୍କ ପୁସ୍ତକରେ
ଲେଖାଅଛି:

"ଶୁଣ! ମୁଁ ମୋ ଦୂତଙ୍କୁ ତୁମ୍ଭ ପୂର୍ବରୁ ପଠାଉଛି ସେ
ତୁମ୍ଭ ପାଇଁ ପଥ ପ୍ରସ୍ତୁତ କରିବ।" ମଲାଖି ୩:୧

୩ "ମରୁଭୂମିରେ ଜଣେ ପାଟିକରି କହୁଛି; 'ପ୍ରଭୁଙ୍କ
ପାଇଁ ପଥ ପ୍ରସ୍ତୁତ କର, ତାହାଙ୍କ ପାଇଁ ରାସ୍ତା
ସମତଳ କର।'" ଯିଶାଇୟ ୪୦:୩

୪ତେଣୁ ବାପ୍ତିଜକ ଯୋହନ ମରୁଭୂମି ଅଞ୍ଚଳକୁ ଆସି
ଲୋକମାନଙ୍କୁ ବାପ୍ତିସ୍ମ ଦେଉ ଥିଲେ। ସେ ସେମାନଙ୍କୁ
କହିଲେ, ତୁମ୍ଭେମାନେ ନିଜର ହୃଦୟ ପରିବର୍ତ୍ତନ କରିବାକୁ
ଚାହୁଁ ଥିବାରୁ ବାପ୍ତିସ୍ମ ଗ୍ରହଣ କର। ତା'ପରେ ସେମାନଙ୍କର
ପାପଗୁଡ଼ିକୁ କ୍ଷମା କରାଯିବ। ୫ଯିହୂଦା ଓ ଯିରୁଶାଲମର
ସବୁଲୋକ ଯୋହନଙ୍କ ପାଖକୁ ଆସିଲେ। ନିଜ ନିଜ ପାପ
ସ୍ୱୀକାର କରି ଯର୍ଦ୍ଦନ ନଦୀରେ ସେମାନେ ଯୋହନଙ୍କ
ଦ୍ୱାରା ବାପ୍ତିଜିତ ହେଲେ। ୬ଯୋହନ ଓଟ ଲୋମରେ
ତିଆରି ପୋଷାକ ପିନ୍ଧୁଥିଲେ ଓ ଅଣ୍ଟା ଚାରିପଟେ ଗୋଟିଏ
ଚମଡ଼ାର ପଟି ବାନ୍ଧୁଥିଲେ। ପଙ୍ଗପାଳ ଓ ବନ-ମଧୁ
ତାହାଙ୍କର ଖାଦ୍ୟ ଥିଲା। ୭ଯୋହନ ଲୋକମାନଙ୍କ ଆଗରେ
ଘୋଷଣା କରୁଥିଲେ: "ମୋ ପରେ ଜଣେ ଶକ୍ତିଶାଳୀ
ଲୋକ ଆସୁଛନ୍ତି; ମୁଁ ଆଣ୍ଠୁମାଡ଼ି ବସି ତାହାଙ୍କର ଯୋତା
ଖୋଲିବା ପାଇଁ ମଧ୍ୟ ଯୋଗ୍ୟ ନୁହେଁ। ୮ମୁଁ ତୁମ୍ଭମାନଙ୍କୁ
ଜଳ ଦ୍ୱାରା ବାପ୍ତିସ୍ମ ଦେଉଛି, କିନ୍ତୁ ସେ ତୁମ୍ଭମାନଙ୍କୁ
ପବିତ୍ର-ଆତ୍ମାଙ୍କ ଦ୍ୱାରା ବାପ୍ତିସ୍ମ କରିବେ।"

## ଯୀଶୁଙ୍କ ବାପ୍ତିସ୍ମ ଗ୍ରହଣ

୯ସେହି ସମୟରେ ଯୀଶୁ ଗାଲିଲୀର ନାଜରିତରୁ (ଗୋଟିଏ
ସହର) ଯୋହନଙ୍କ ପାଖକୁ ଆସିଲେ। ଯୋହନ ଯୀଶୁଙ୍କୁ
ଯର୍ଦ୍ଦନ ନଦୀରେ ବାପ୍ତିସ୍ମ ଦେଲେ। ୧୦ଯୀଶୁ ଜଳରୁ ବାହାରି
ଆସୁଥିବା ସମୟରେ ସ୍ୱର୍ଗ ଖୋଲା ଥିବାର ଦେଖିଲେ। ସେ
ଦେଖିଲେ ଯେ ଆତ୍ମା ତାହାଙ୍କ ଉପରକୁ କପୋତ ଭଳି
ଓହ୍ଲେଇ ଆସୁଛନ୍ତି।। ୧୧ଆକାଶରୁ ବାଣୀ ହେଲା: "ହେ
ମୋହର ପୁତ୍ର, ମୁଁ ତୁମ୍ଭକୁ ପ୍ରେମ କରେ, ମୁଁ ତୁମ୍ଭ
ଉପରେ ବହୁତ ଖୁସୀ।"

## ଯୀଶୁଙ୍କୁ ଶୟତାନର ପରୀକ୍ଷା

୧୨ତା'ପରେ, ସଂଗେ ସଂଗେ ଆତ୍ମା ଯୀଶୁଙ୍କୁ ମରୁଭୂମିକୁ
ଏକୁଟିଆ ପଠାଇଦେଲେ। ୧୩ଯୀଶୁ ସେଠାରେ ଚାଳିଶ ଦିନ
ପର୍ଯ୍ୟନ୍ତ ବନ୍ୟ ପଶୁମାନଙ୍କ ସହିତ ରହିଲେ। ସେଠାରେ
ସେ ଶୟତାନ ଦ୍ୱାରା ପରୀକ୍ଷିତ ହେଲେ। ତା'ପରେ
ସ୍ୱର୍ଗଦୂତମାନେ ଆସି ଯୀଶୁଙ୍କର ସେବା କଲେ।

## ଯୀଶୁ କେତେକ ଶିଷ୍ୟଙ୍କୁ ବାଛିଲେ

୧୪ଏହା ପରେ ଯୋହନଙ୍କୁ କାରାଗାରରେ ବନ୍ଦୀ କରି
ରଖାଗଲା। ଯୀଶୁ ଗାଲିଲୀକୁ ଆସିଲେ ଓ ସେ ପରମେଶ୍ୱରଙ୍କ
ସୁସମାଚାର ପ୍ରଚାର କରିବାକୁ ଲାଗିଲେ। ୧୫ଯୀଶୁ କହିଲେ,
"ବର୍ତ୍ତମାନ ଉପଯୁକ୍ତ ସମୟ ଆସିଯାଇଛି। ପରମେଶ୍ୱରଙ୍କ
ରାଜ୍ୟ ପାଖ ହୋଇ ଗଲାଣି। ତୁମ୍ଭମାନଙ୍କର ହୃଦୟ
ପରିବର୍ତ୍ତନ କର। ସୁସମାଚାରରେ ବିଶ୍ୱାସ କର।"
୧୬ଯୀଶୁ ଗାଲିଲୀ ହ୍ରଦ ଦେଇ ଯିବା ସମୟରେ
ଶିମୋନ ଓ ତାହାଙ୍କ ଭାଇ ଆନ୍ଦ୍ରିୟଙ୍କୁ ଦେଖିଲେ। ଶିମୋନ,
ପିତରଙ୍କର ଏହା ଅନ୍ୟ ଏକ ନାମ। ସେହି ଦୁଇ ଜଣ
କେଉଟ ଥିଲେ। ମାଛ ଧରିବା ପାଇଁ ସେମାନେ ହ୍ରଦ
ଭିତରକୁ ଜାଲ ଫିଙ୍ଗୁଥିଲେ। ୧୭ଯୀଶୁ ସେମାନଙ୍କୁ କହିଲେ,
"ତୁମ୍ଭେମାନେ ଆସ ଓ ମୋତେ ଅନୁସରଣ କର। ମୁଁ
ତୁମ୍ଭମାନଙ୍କୁ ଏକ ଭିନ୍ନ ପ୍ରକାରର ମାଛ ଧରାଳି କରିବି।
ତୁମ୍ଭେମାନେ ମାଛ ବଦଳରେ ମନୁଷ୍ୟଙ୍କୁ ଏକାଠି କରିବ।"
୧୮ତେଣୁ ଶିମୋନ ଓ ଆନ୍ଦ୍ରିୟ ସେମାନଙ୍କର ଜାଲ ଛାଡ଼ି,
ଯୀଶୁଙ୍କୁ ଅନୁସରଣ କଲେ।
୧୯ଯୀଶୁ ଗାଲିଲୀ ହ୍ରଦ କୂଳରେ ଚାଲିବାକୁ ଲାଗିଲେ।
କିଛି ବାଟ ଗଲା ପରେ, ଜେବଦୀଙ୍କ ପୁତ୍ର ଯାକୁବ ଓ
ତାହାଙ୍କ ଭାଇ ଯୋହନଙ୍କୁ ଦେଖିଲେ। ସେ ଦୁଇ ଭାଇ
ନୌକାରେ ବସି ମାଛ ଧରିବା ପାଇଁ ଜାଲ ସଜାଡୁଥିଲେ।
୨୦ସେହି ଦୁଇ ଭାଇଙ୍କ ସହ, ଡ଼ଙ୍ଗାରେ ସେମାନଙ୍କ ବାପା
ଜେବଦୀ ଓ ଅନ୍ୟ ସାହାଯ୍ୟକାରୀ ଶ୍ରମିକମାନେ ଥିଲେ।
ସେହି ଦୁଇ ଭାଇଙ୍କୁ ଦେଖିବା ମାତ୍ରେ ଯୀଶୁ ସେମାନଙ୍କୁ
ଆସିବାକୁ ଅନୁରୋଧ କଲେ। ସେମାନେ ସେମାନଙ୍କର
ବାପା ଓ ଶ୍ରମିକମାନଙ୍କୁ ଛାଡି, ଯୀଶୁଙ୍କୁ ଅନୁସରଣ କଲେ।

## ଯୀଶୁ ଦୁଷ୍ଟାତ୍ମାକୁ ସୁସ୍ଥକଲେ

୨୧ଯୀଶୁ ଓ ତାହାଙ୍କ ଶିଷ୍ୟମାନେ କଫର୍ନାହୂମକୁ ଗଲେ।
ବିଶ୍ରାମଦିବସ* ରେ ଯୀଶୁ ପ୍ରାର୍ଥନା ଗୃହକୁ ଯାଇ ସେଠାରେ
ଲୋକମାନଙ୍କୁ ଶିକ୍ଷା ଦେବାକୁ ଲାଗିଲେ। ୨୨ଯୀଶୁଙ୍କ ଶିକ୍ଷା

---

**ବିଶ୍ରାମଦିବସ** ଯିହୂଦୀ ସପ୍ତାହର ସପ୍ତମ ଦିବସ। ଏହି ଦିନଟି ସେମାନଙ୍କର ବିଶେଷ ପବିତ୍ର ଦିବସ।

ଶୁଣି ସେଠାକାର ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ। ଯୀଶୁ
ସେମାନଙ୍କୁ ଧର୍ମଶାସ୍ତ୍ରୀଙ୍କ ପରି ଶିକ୍ଷା ନ ଦେଇ, ଜଣେ
ଅଧିକାର ପାଇଥିବା ବ୍ୟକ୍ତିଙ୍କ ଭଳି ଶିକ୍ଷା ଦେଲେ। ୨୩ଯୀଶୁ
ପ୍ରାର୍ଥନାଗୃହ* ରେ ଥିବା ସମୟରେ ସେଠାରେ ଏପରି
ଜଣେ ଲୋକ ଥିଲା, ଯାହାଙ୍କର ଦେହରେ ଭୂତଟିଏ
ପ୍ରବେଶ କରି ରହିଥିଲା। ସେ ଲୋକଟି ପାଟି କରି
କହିଲା, ୨୪"ହେ ନାଜରୀତର ଯୀଶୁ; ତୁମ୍ଭେ ଆମ୍ଭଠାରୁ
କ'ଣ ଚାହୁଁଛ? ତୁମ୍ଭେ କ'ଣ ଆମ୍ଭକୁ ଧ୍ୱଂସ କରିଦେବାକୁ
ଆସିଛ? ତୁମ୍ଭେ କିଏ, ମୁଁ ତାହା ଜାଣେ। ତୁମ୍ଭେ ପରମେଶ୍ୱରଙ୍କ
ପବିତ୍ର ଲୋକ।"

୨୫ଯୀଶୁ ଭର୍ତ୍ସନା କରି କହିଲେ, "ଚୁପ୍ ରହ, ଏହି
ଲୋକଟି ଭିତରୁ ବାହାରିଯା।" ୨୬ଦୁଷ୍ଟାତ୍ମା ଲୋକଟିକୁ
ଦୋହଲାଇ ଦେଲା। ତା'ପରେ ସେ ଖୁବ୍ ଜୋରରେ
ଚିତ୍କାର କରି ସେହି ଲୋକଟି ଭିତରୁ ବାହାରି ଗଲା।

୨୭ଏହା ଦେଖି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ
ପରସ୍ପର କୁହାକୁହି ହେଲେ, "ଏଠାରେ କ'ଣ ସବୁ ଘଟୁଛି?
ଏ ଲୋକଟି ଆମ୍ଭକୁ କିଛି ନୂଆ ଶିକ୍ଷା ଦେଉଛି। ଏବଂ
ସେ ଅଧିକାର ସହିତ ଶିକ୍ଷା ଦେଉଛି। ସେ ଭୂତମାନଙ୍କୁ
ମଧ୍ୟ ଆଜ୍ଞା ଦେଉଛି ଓ ଭୂତମାନେ ତା' କଥା ମାନୁଛନ୍ତି।"
୨୮ତେଣୁ ଯୀଶୁଙ୍କ ବିଷୟରେ ଗାଲୀଲୀ ଅଞ୍ଚଳର ଚାରିଆଡ଼େ
ଖୁବ୍ ଶୀଘ୍ର ଖବର ବ୍ୟାପିଗଲା।

## ଯୀଶୁ ଅନେକଙ୍କୁ ସୁସ୍ଥକଲେ

୨୯ତାପରେ ସେମାନେ ପ୍ରାର୍ଥନା-ଗୃହରୁ ବାହାରି ଯାକୁବ
ଓ ଯୋହନଙ୍କ ସହିତ ସିଧା ଶିମୋନ ଓ ଆନ୍ଦ୍ରିୟଙ୍କ ଘରକୁ
ଗଲେ। ୩୦ଶିମୋନଙ୍କ ଶାଶୁ ଜ୍ୱରରେ ପୀଡ଼ିତ ହୋଇ
ବିଛଣାରେ ପଡ଼ି ଥିଲେ। ତେଣୁ ସେଠାରେ ଥିବା ଲୋକମାନେ
ଯୀଶୁଙ୍କୁ ତାହାଙ୍କ ବିଷୟରେ କହିଲେ। ୩୧ଯୀଶୁ ତାହାଙ୍କ
ବିଛଣା ନିକଟକୁ ଗଲେ। ଯୀଶୁ ତାହାଙ୍କ ହାତ ଧରି
ତାହାଙ୍କୁ ଠିଆ ହେବାରେ ସାହାଯ୍ୟ କଲେ। ତାହାଙ୍କର ଜ୍ୱର
ଛାଡ଼ିଗଲା ଓ ସେ ସୁସ୍ଥ ହୋଇଗଲେ। ତା'ପରେ ସେ
ସେମାନଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ।

୩୨ସୂର୍ଯ୍ୟ ବୁଡ଼ି ଯିବା ପରେ, ସେହି ରାତିରେ ଲୋକମାନେ
ଅନେକ ଅସୁସ୍ଥ ଲୋକଙ୍କୁ ଯୀଶୁଙ୍କ ପାଖକୁ ନେଇ ଆସିଲେ।
ଯେଉଁ ଲୋକମାନଙ୍କ ଦେହ ଭିତରେ ଦୁଷ୍ଟାତ୍ମା ପ୍ରବେଶ
କରି ରହି ଥିଲା, ସେମାନଙ୍କୁ ମଧ୍ୟ ଲୋକମାନେ ଯୀଶୁଙ୍କ
ପାଖକୁ ଆଣିଲେ। ୩୩ସହରର ସବୁ ଲୋକେ ସେହି ଘରର
ଦୁଆରରେ ଜମା ହୋଇଗଲେ। ୩୪ବିଭିନ୍ନ ପ୍ରକାର ରୋଗରେ
ପୀଡ଼ିତ ଅନେକ ଲୋକଙ୍କୁ ଯୀଶୁ ସୁସ୍ଥ କରି ଦେଲେ। ସେ
ମଧ୍ୟ ଲୋକଙ୍କ ଦେହରୁ ଅନେକ ଭୂତାତ୍ମା ବାହାରି ଚାଲି
ଯିବାକୁ ବାଧ୍ୟ କଲେ, କିନ୍ତୁ ସେ କିଏ ବୋଲି ଭୂତ ମାନେ
ଜାଣି ଥିବାରୁ ସେ ସେମାନଙ୍କୁ ପଦେ ହେଲେ କହିବାକୁ
ସୁଯୋଗ ଦେଲେନାହିଁ।

## ଲୋକଙ୍କୁ ସୁସମାଚାର ପ୍ରଚାର କରିବାକୁ ଯୀଶୁଙ୍କ ପ୍ରସ୍ତୁତି

୩୫ତା'ପର ଦିନ ସକାଳେ ଯୀଶୁ ଖୁବ୍ ଶୀଘ୍ର ଉଠି
ପଡ଼ିଲେ। ଅନ୍ଧାର ଥାଉ ଥାଉ ସେ ଘର ଛାଡ଼ି ଗୋଟିଏ
ନିଛାଟିଆ ଜାଗାକୁ ଚାଲିଗଲେ। ସେଠାରେ ସେ ପ୍ରାର୍ଥନା
କଲେ। ୩୬ପରେ ଶିମୋନ ଓ ତାହାଙ୍କ ସାଥୀମାନେ
ଯୀଶୁଙ୍କୁ ଖୋଜିବାକୁ ଗଲେ। ୩୭ସେମାନେ ଯୀଶୁଙ୍କୁ ପାଇଲେ
ଓ ତାହାଙ୍କୁ କହିଲେ, "ଲୋକେ ତୁମ୍ଭକୁ ଖୋଜୁଛନ୍ତି।"

୩୮ଏହା ଶୁଣି ଯୀଶୁ କହିଲେ, "ଆମ୍ଭେମାନେ ଅନ୍ୟ
ନିକଟବର୍ତ୍ତୀ ନଗରକୁ ଯିବା ଉଚିତ ଯେପରି ମୁଁ ସେଠାରେ
ସେମାନଙ୍କୁ ମଧ୍ୟ ଉପଦେଶ ଦେଇ ପାରିବି। ମୁଁ କେବଳ
ଏଥିପାଇଁ ଆସିଛି।" ୩୯ଏହି ଭଳି ଭାବରେ ସେ ପ୍ରାର୍ଥନା-
ଗୃହମାନଙ୍କରେ ଉପଦେଶ ଦେଇ ଓ ଲୋକଙ୍କ ଠାରୁ
ଭୂତମାନଙ୍କୁ ତଡ଼ି ଗାଲୀଲୀ ସାରା ବୁଲିଲେ।

## ଗୋଟିଏ କୁଷ୍ଠରୋଗୀକୁ ଯୀଶୁ ସୁସ୍ଥ କରିଦେଲେ

୪୦ଗୋଟିଏ କୁଷ୍ଠ ରୋଗୀ ଯୀଶୁଙ୍କ ପାଖକୁ ଆସିଲା।
ସେ ଯୀଶୁଙ୍କ ଆଗରେ ଆଣ୍ଠୁମାଡ଼ି ପ୍ରାର୍ଥନା କଲା, "ତୁମ୍ଭେ
ଇଚ୍ଛା କଲେ ମୋତେ ଭଲ କରି ଦେଇ ପାରିବ। ସେହି
ଶକ୍ତି ତୁମ୍ଭର ଅଛି।"

୪୧ସେହି ଲୋକଟି ଉପରେ ଯୀଶୁଙ୍କର କରୁଣା ଜାତ
ହେଲା। ସେ ହାତ ବଢ଼େଇ ଲୋକଟିକୁ ଛୁଇଁ ଦେଲେ ଓ
କହିଲେ, "ମୁଁ ତୁମ୍ଭକୁ ସୁସ୍ଥ କରିବାକୁ ଚାହୁଁଛି, ତୁମ୍ଭେ ସୁସ୍ଥ
ହୋଇଯାଅ।" ୪୨ତାର କୁଷ୍ଠ ରୋଗ ତତ୍‌କ୍ଷଣାତ୍ ଛାଡ଼ି ଗଲା
ଓ ସେ ସୁସ୍ଥ ହୋଇଗଲା।

୪୩ଯୀଶୁ ଲୋକଟିକୁ ଚାଲି ଯିବାକୁ କହିଲେ, କିନ୍ତୁ
ତା'କୁ ଚେତାବନୀ ଦେଇ ସେ କହିଲେ, ୪୪"ମୁଁ ତୁମ୍ଭ
ପାଇଁ ଯାହା କଲି ସେହି କଥା କାହାକୁ ହେଲେ
କହିବନାହିଁ। କିନ୍ତୁ ଯାଜକଙ୍କ ପାଖକୁ ଯାଇ, ନିଜ ଦେହ
ଦେଖାଅ। ତୁମ୍ଭେ ସୁସ୍ଥ ହୋଇ ଥିବାରୁ ମୋଶାଙ୍କ ଆଜ୍ଞା
ଅନୁସାରେ, ପରମେଶ୍ୱରଙ୍କୁ ନୈବେଦ୍ୟ ଅର୍ପଣ କର। ତୁମ୍ଭେ
ସୁସ୍ଥ ହୋଇ ଯାଇଛ ବୋଲି ଲୋକମାନଙ୍କ ଆଗରେ
ପ୍ରମାଣ ରହିବ।" ୪୫ଲୋକଟି ସେହି ସ୍ଥାନ ଛାଡ଼ି ଚାଲିଗଲା
ଓ ଯାହାକୁ ଦେଖିଲା ତାହାକୁ କହିଲା ଯେ, ଯୀଶୁ ତାହାକୁ
ସୁସ୍ଥ କରି ଦେଇଛନ୍ତି। ତେଣୁ ଯୀଶୁଙ୍କ ବିଷୟରେ ଖବର
ଚାରି ଆଡ଼େ ବ୍ୟାପିବାକୁ ଲାଗିଲା। ଫଳରେ ଲୋକେ
କାଳେ ଦେଖି ପକାଇବେ, ତେଣୁ ଯୀଶୁ କୌଣସି ନଗର
ଭିତରକୁ ଆଉ ଯାଇ ପାରିଲେ ନାହିଁ। ସେ ଲୋକେ ରହୁ
ନ ଥିବା ନିଛାଟିଆ ଜାଗା ମାନଙ୍କରେ ରହିବାକୁ ଲାଗିଲେ।
କିନ୍ତୁ ସମସ୍ତ ନଗରରୁ ଲୋକମାନେ ଯୀଶୁ ରହୁଥିବା ସ୍ଥାନକୁ
ଆସିବାକୁ ଲାଗିଲେ।

## ପକ୍ଷାଘାତ-ରୋଗୀକୁ ଯୀଶୁ ଭଲ କରି ଦେଲେ

୨ କିଛି ଦିନ ପରେ, ଯୀଶୁ କଫର୍ନାହୂମକୁ ଫେରି
ଆସିଲେ। ଯୀଶୁ ଘରକୁ ଫେରି ଆସିଛନ୍ତି ବୋଲି
ଖବର ବ୍ୟାପିଗଲା। ୨ଅନେକ ଲୋକ ଯୀଶୁଙ୍କ ଉପଦେଶ
ଶୁଣିବା ପାଇଁ ଜମା ହୋଇଗଲେ। ଘରଟି ପୁରିଗଲା। ଘରେ
କିମ୍ବା ବାହାରେ କେଉଁଠି ହେଲେ ଠିଆ ହେବାକୁ ଜାଗା ନ

---

**ପ୍ରାର୍ଥନାଗୃହ** ଏଠାରେ ଯିହୁଦୀମାନେ ଧର୍ମଶାସ୍ତ୍ର ଅଧ୍ୟୟନ,ପ୍ରାର୍ଥନା
ଓ ସାଧାରଣ ସଭା ପାଇଁ ଏକତ୍ରିତ ହୁଅନ୍ତି।

ଥିଲା। ଯୀଶୁ ଲୋକମାନଙ୍କୁ ଉପଦେଶ ଦେଉଥିଲେ। ୩ସେହି
ସମୟରେ କେତେକ ଲୋକ ତାହାଙ୍କ ପାଖକୁ ଗୋଟିଏ
ପକ୍ଷାଘାତ ରୋଗଗ୍ରସ୍ତ ଲୋକଙ୍କୁ ଆଣିଲେ। ରୋଗୀକୁ ଚାରି
ଜଣ ଲୋକ ବୋହି କରି ଆଣିଥିଲେ। ୪ଲୋକ ଭିଡ଼
ହୋଇ ଯାଇଥିବାରୁ ସେମାନେ ରୋଗୀଟିକୁ ଯୀଶୁଙ୍କ ପାଖକୁ
ଆଣି ପାରିଲେ ନାହିଁ। ତେଣୁ ସେମାନେ ଯୀଶୁ ଥିବା
ଘରର ଛାତ କଣା କଲେ ଓ ବିଛଣାରେ ପଡ଼ି ଥିବା
ପକ୍ଷାଘାତ ରୋଗୀଟିକୁ ସେହି କଣା ବାଟରେ ଯୀଶୁ ଥିବା
ସ୍ଥାନ ପର୍ଯ୍ୟନ୍ତ, ତଳକୁ ଝୁଲାଇଦେଲେ। ୫ଯୀଶୁ ଦେଖିଲେ
ଯେ, ସେହି ଲୋକମାନଙ୍କର ଗଭୀର ବିଶ୍ୱାସ ଅଛି। ତେଣୁ
ଯୀଶୁ ପକ୍ଷାଘାତ ଲୋକଟିକୁ କହିଲେ, "ହେ ଯୁବକ, ତୁମ୍ଭ
ପାପଗୁଡ଼ିକୁ କ୍ଷମା କରାଗଲା।"
୬କେତେଜଣ ଧର୍ମଶାସ୍ତ୍ରୀ ସେଠାରେ ବସିଥିଲେ। ଯୀଶୁଙ୍କ
କାମ ସେମାନେ ଦେଖିଲେ। ସେମାନେ ନିଜ ଭିତରେ
କୁହାକୁହି ହେଲେ, ୭"ଏ' ଲୋକଟି ଏଭଳି କଥାବାର୍ତ୍ତା
କାହିଁକି କରୁଛି? ସେ ପରମେଶ୍ୱରଙ୍କ ବିରୁଦ୍ଧରେ କଥା
କହୁଛି। ପରମେଶ୍ୱରଙ୍କ ବ୍ୟତୀତ ପାପଗୁଡ଼ିକୁ ଅନ୍ୟ କିଏ
କ୍ଷମା କରି ପାରିବ?"
୮ଧର୍ମଶାସ୍ତ୍ରୀମାନେ ତାହାଙ୍କ ବିଷୟରେ ସେସବୁ ଭାବୁଛନ୍ତି
ବୋଲି ଯୀଶୁ ସଙ୍ଗେ ସଙ୍ଗେ ଜାଣି ପାରିଲେ। ତେଣୁ ଯୀଶୁ
ସେମାନଙ୍କୁ କହିଲେ, "ତୁମ୍ଭେମାନେ ମନରେ ଏସବୁ କଥା
କାହିଁକି ଭାବୁଛ। ୯ଏହି ପକ୍ଷାଘାତ ଲୋକଙ୍କୁ କେଉଁ କଥାଟି
କହିବା ସରଳ: 'ତୁମ୍ଭ ପାପ ଗୁଡ଼ିକୁ କ୍ଷମା କରି ଦିଆ
ଗଲା।' ନା' ତା'କୁ କହିବା: 'ଠିଆ ହୁଅ ଓ ତୁମର ବିଛଣା
ଧରି ଚାଲ।' ୧୦କିନ୍ତୁ, ମୁଁ ତୁମ୍ଭ ଆଗରେ ପ୍ରମାଣିତ କରି
ଦେବି ଯେ, ଏହି ପୃଥିବୀରେ ମନୁଷ୍ୟ ପୁତ୍ରଙ୍କର ପାପଗୁଡ଼ିକୁ
କ୍ଷମା କରିବା ଶକ୍ତି ଅଛି।" ତା'ପରେ ଯୀଶୁ ପକ୍ଷାଘାତ
ଲୋକଟିକୁ କହିଲେ, ୧୧"ମୁଁ ତୁମ୍ଭକୁ କହୁଛି, ଠିଆ ହୁଅ,
ବିଛଣା ଧରି ଓ ଘରକୁ ଯାଅ।" ୧୨ପକ୍ଷାଘାତ ଲୋକଟି
ଠିଆ ହେଲା। ବିଛଣା ଧରିଲା ଏବଂ ଘର ଭିତରୁ ବାହାରକୁ
ବାହାରିଗଲା। ସବୁ ଲୋକେ ତାକୁ ଦେଖି ପାରିଲେ।
ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ଓ ପରମେଶ୍ୱରଙ୍କ ମହିମାଗାନ
କଲେ। ସେମାନେ କହିଲେ, "ଆମ୍ଭେମାନେ ଏଭଳି ଆଶ୍ଚର୍ଯ୍ୟ
ଘଟଣା କେବେହେଲେ ଦେଖି ନ ଥିଲୁ।"
୧୩ପୁଣିଥରେ ଯୀଶୁ ହ୍ରଦ ପାଖ ଦେଇ ଗଲେ। ଅନେକ
ଲୋକ ତା'ଙ୍କ ପାଖକୁ ଆସିଲେ। ଯୀଶୁ ସେମାନଙ୍କୁ ଶିକ୍ଷା
ଦେଲେ। ୧୪ଯୀଶୁ ଯାଉଥିବା ସମୟରେ କର ଆଦାୟ
ସ୍ଥାନରେ ବସି ଥିବା ଆଲଫିଙ୍କ ପୁଅ ଲେବୀଙ୍କୁ ଦେଖି ସେ
କହିଲେ, "ମୋର ଅନୁସରଣ କର।" ତା'ପରେ ଲେବୀ
ଠିଆ ହେଲେ ଓ ଯୀଶୁଙ୍କର ଅନୁସରଣ କଲେ।
୧୫ପରେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଲେବୀଙ୍କ
ଘରେ ଖାଉଥିବା ସମୟରେ, ସେମାନଙ୍କ ସହିତ ଅନେକ
କର ଆଦାୟକାରୀ ଓ ଅନ୍ୟ ଦୁଷ୍ଟ ଲୋକମାନେ ମଧ୍ୟ
ଖାଉ ଥିଲେ। ଯୀଶୁଙ୍କୁ ଅନୁସରଣ କରୁଥିବା ଅନେକ
ଲୋକ ମଧ୍ୟ ସେଠାରେ ଥିଲେ। ୧୬ଯୀଶୁଙ୍କୁ କର ଆଦାୟକାରୀ
ଓ ଅନ୍ୟ ଦୁଷ୍ଟ ଲୋକଙ୍କ ସହିତ ବସି ଖାଉଥିବାର ଦେଖି,
ଧର୍ମଶାସ୍ତ୍ରୀମାନେ (ଯେଉଁମାନେ ଫାରୂଶୀ ଥିଲେ) ଯୀଶୁଙ୍କ
ଶିଷ୍ୟମାନଙ୍କୁ ପଚାରିଲେ, "ଯୀଶୁ କର-ଆଦାୟକାରୀ ଓ
ପାପୀମାନଙ୍କ ସହିତ କାହିଁକି ଖାଉଛନ୍ତି?"
୧୭ଯୀଶୁ ଏହା ଶୁଣି ସେମାନଙ୍କୁ କହିଲେ, "ସୁସ୍ଥ
ଲୋକର ଡାକ୍ତର ଦରକାର ନାହିଁ, କେବଳ ରୋଗୀ
ଲୋକଙ୍କର ଡାକ୍ତର ଦରକାର। ମୁଁ ଧାର୍ମିକମାନଙ୍କୁ ନିମନ୍ତ୍ରଣ
ଦେବା ପାଇଁ ଆସିନାହିଁ। ମୁଁ କେବଳ ପାପୀମାନଙ୍କୁ
ନିମନ୍ତ୍ରଣ ଦେବା ପାଇଁ ଆସିଛି।"

## ଯୀଶୁ ଅନ୍ୟ ଧର୍ମ-ଗୁରୁମାନଙ୍କ ଠାରୁ ଭିନ୍ନ

୧୮ଯୋହନଙ୍କ ଶିଷ୍ୟ ଓ ଫାରୂଶୀମାନେ ଉପବାସ
କରୁଥିଲେ। କେତେକ ଲୋକ ଯୀଶୁଙ୍କ ପାଖକୁ ଆସି
କହିଲେ, "ଯୋହନଙ୍କ ଶିଷ୍ୟମାନେ ଉପବାସ କରୁଛନ୍ତି,
କିନ୍ତୁ ତୁମ୍ଭର ଶିଷ୍ୟମାନେ କାହିଁକି ଉପବାସ କରୁ ନାହାଁନ୍ତି?"
୧୯ଯୀଶୁ କହିଲେ, "ବିବାହ ଉତ୍ସବ ସମୟରେ ବର
ଯାତ୍ରୀମାନେ ଦୁଃଖିତ ହୁଅନ୍ତି ନାହିଁ, କାରଣ ବର ସେମାନଙ୍କ
ସାଙ୍ଗରେ ଥାଆନ୍ତି। ତେଣୁ ବର ସେଠାରେ ଥିବା ପର୍ଯ୍ୟନ୍ତ
ସେମାନେ ଉପବାସ କରି ନ ପାରନ୍ତି। ୨୦କିନ୍ତୁ ସମୟ
ଆସିବ, ବରଙ୍କୁ ସେମାନଙ୍କଠାରୁ ଦୂରେଇ ନିଆ ଯିବ।
ସେତେବେଳେ ସେମାନେ (ବର ଯାତ୍ରୀମାନେ) ଉପବାସ
କରିବେ।
୨୧"କେହି କେବେହେଲେ ପୁରୁଣା ଲୁଗାରେ ନୂଆ
କନାର ତାଳି ପକାଏ ନାହିଁ। ଯଦି ସେ ତା' କରେ,
ତେବେ ନୂଆ କନାର ତାଳି ଜାକି ହୋଇ ଯିବ ଓ ତଦ୍ୱାରା
ଟାଣି ହୋଇ ଯାଇ ପୁରୁଣା କନାର କଣା ବଡ଼ ହୋଇଯିବ।
୨୨ସେହି ଭଳି କେହି କେବେହେଲେ ନୂଆ ଅଙ୍ଗୁରରସ
ପୁରୁଣା ଚମଡ଼ା-ପାତ୍ରରେ ରଖେ ନାହିଁ। ଯଦି ତାହା କରେ
ତେବେ ନୂଆ ଦ୍ରାକ୍ଷାରସ ପୁରୁଣା ଚମଡ଼ା ପାତ୍ରକୁ ଫଟାଇ
ଦେବ ଓ ଚମଡ଼ା ପାତ୍ରସହିତ ଅଙ୍ଗୁରରସ ମଧ୍ୟ ନଷ୍ଟ
ହୋଇଯିବ। ସେଥିପାଇଁ ନୂଆ ଅଙ୍ଗୁରରସ ନୂଆ ଚମଡ଼ା
ପାତ୍ରରେ ହିଁ ରଖା ଯାଇଥାଏ।"

## କେତେକ ଯିହୂଦୀ ଯୀଶୁ ଓ ତାଙ୍କ ଶିଷ୍ୟମାନଙ୍କୁ ସମାଲୋଚନା କଲେ

୨୩ବିଶ୍ରାମ ଦିବସରେ ଯୀଶୁ ଶସ୍ୟ-କ୍ଷେତ୍ର ଦେଇ ଯାଉଥିଲେ।
ତାହାଙ୍କ ଶିଷ୍ୟମାନେ ମଧ୍ୟ ତାହାଙ୍କ ସହିତ ଯାଉଥିଲେ।
ଯାଉ ଯାଉ ତାହାଙ୍କ ଶିଷ୍ୟମାନେ ଖାଇବା ପାଇଁ ଶସ୍ୟକ୍ଷେତ୍ରରୁ
ଶସ୍ୟ-କେଣ୍ଡା ଛିଣ୍ଡେଇଲେ। ୨୪ଫାରୂଶୀମାନେ ତାହା ଦେଖି
ଯୀଶୁଙ୍କୁ କହିଲେ, "ତୁମ୍ଭ ଶିଷ୍ୟମାନେ ଏଭଳି କାହିଁକି
କରୁଛନ୍ତି? ବିଶ୍ରାମ ଦିବସରେ ଏଭଳି କାମ ଯିହୂଦୀନିୟମର
ବିରୁଦ୍ଧାଚରଣ ଅଟେ।"
୨୫ଯୀଶୁ କହିଲେ, "ତୁମ୍ଭେମାନେ ଦାଉଦଙ୍କ ବିଷୟରେ
ପଢ଼ିଛ ଯେ ସେ ଓ ତାହାଙ୍କ ସହିତ ଥିବା ଲୋକେ
ଭୋକରେ ଥିଲାବେଳେ ଓ ଆହାରର ଆବଶ୍ୟକ ଥିଲା
ବେଳେ କ'ଣ କରିଥିଲେ? ୨୬ତୁମ୍ଭେମାନେ କ'ଣ ପଢ଼ିନାହିଁ
ଯେ, ଅବିୟାଥାର ମହାଯାଜକ ଥିବା ସମୟରେ ଦାଉଦ
ପରମେଶ୍ୱରଙ୍କ ମନ୍ଦିରରେ ପ୍ରବେଶ କରି ପରମେଶ୍ୱରଙ୍କୁ
ଅର୍ପଣ କରା ଯାଇ ଥିବା ଖାଦ୍ୟ ଖାଇ ଦେଇଥିଲେ?

ମୋଶାଙ୍କ ନିୟମ ଅନୁସାରେ ଯାଜକମାନେ କେବଳ ସେହି
ଖାଦ୍ୟ ଖାଇ ପାରିବେ। ତାହାଙ୍କ ବ୍ୟତୀତ ଆଉ କାହାରିକୁ
ସେହି ଖାଦ୍ୟ ଖାଇବାର ଅଧିକାର ନାହିଁ। କିନ୍ତୁ ଦାଉଦ
ସେ ଖାଦ୍ୟରୁ କିଛି ମଧ୍ୟ ତାହାଙ୍କ ସହିତ ଥିବା ଲୋକମାନଙ୍କୁ
ଖାଇବାକୁ ଦେଇଥିଲେ।"
୨୭ତା'ପରେ ଯୀଶୁ ଫାରୂଶୀମାନଙ୍କୁ କହିଲେ, "ଲୋକଙ୍କୁ
ସାହାଯ୍ୟ କରିବା ପାଇଁ ବିଶ୍ରାମ ଦିବସ ସୃଷ୍ଟି ହୋଇଛି।
ବିଶ୍ରାମ ଦିବସ ଦ୍ୱାରା ପରିଚାଳିତ ହେବା ପାଇଁ ମନୁଷ୍ୟ
ସୃଷ୍ଟି ହୋଇନାହିଁ। ୨୮ଏଣୁ ମନୁଷ୍ୟପୁତ୍ର ପ୍ରତ୍ୟେକ ଦିନର
ମାଲିକ, ଏପରିକି ବିଶ୍ରାମ ଦିନର ମଧ୍ୟ।"

### ଯୀଶୁ ଜଣେ ଖଞ୍ଜ ଲୋକର ହାତ ସୁସ୍ଥ କରିଦେଲେ

୩ ଆଉ ଥରେ ଯୀଶୁ ଯିହୂଦୀମାନଙ୍କ ପ୍ରାର୍ଥନା ଗୃହକୁ
ଯାଇଥିଲେ। ସେଠାରେ ଜଣେ ଖଞ୍ଜ ଲୋକ ଥିଲା।
୨ସେଠାରେ କେତେକ ଲୋକ ଜଗି ରହିଥିଲେ ଯେ ଯଦି
ଯୀଶୁ ସେ ଲୋକଟିକୁ ବିଶ୍ରାମ ଦିବସରେ ଭଲ କରି ଦେବେ,
ତେବେ ସେମାନେ ଯୀଶୁଙ୍କୁ ଦୋଷାରୋପ କରିବାକୁ ସୁଯୋଗ
ପାଇବେ। ୩ଯୀଶୁ ସେଠାରେ ଥିବା ଖଞ୍ଜ ଲୋକଟିକୁ
ଆଦେଶ ଦେଲେ "ଏଠାରେ ଠିଆ ହୁଅ ଯେପରି ତୁମ୍ଭକୁ
ସମସ୍ତେ ଦେଖି ପାରିବେ।"
୪ତା'ପରେ ଯୀଶୁ ଲୋକମାନଙ୍କୁ ପଚାରିଲେ, "ବିଶ୍ରାମ
ଦିବସରେ କେଉଁ କାମ କରିବା ଠିକ୍? ଭଲ କାମ ନା
ମନ୍ଦ କାମ? ଜଣଙ୍କର ଜୀବନ ରକ୍ଷା କରିବା ଠିକ୍ ନା
ଜୀବନ ନଷ୍ଟ କରିବା ଠିକ୍?" କିନ୍ତୁ ସେମାନେ ନୀରବ
ରହିଲେ।
୫ତା'ପରେ ଯୀଶୁ ଲୋକମାନଙ୍କ ଆଡ଼କୁ ରାଗରେ
ଚାହିଁଲେ; କିନ୍ତୁ ସେମାନଙ୍କ ହୃଦୟର କଠିନତା ଲକ୍ଷ୍ୟ କରି
ବହୁତ ଦୁଃଖୀ ହେଲେ। ଯୀଶୁ ସେହି ଲୋକଟିକୁ କହିଲେ,
"ତୁମ୍ଭ ହାତ ମୋତେ ଦେଖାଅ।" ଲୋକଟି ଯୀଶୁଙ୍କ ଆଡ଼କୁ
ହାତଟି ବଢ଼ାଇଦେଲା ଓ ୬ତା'ହାତ ଭଲ ହୋଇଗଲା।
ତା'ପରେ ଫାରୂଶୀମାନେ ସେଠାରୁ ଚାଲି ଗଲେ ଓ
ହେରୋଦୀୟ ମାନଙ୍କ ସହିତ ମିଶି ଯୀଶୁଙ୍କୁ ମାରିବା ପାଇଁ
ଷଡ଼ଯନ୍ତ୍ର କଲେ।

### ଅନେକ ଲୋକ ଯୀଶୁଙ୍କ ଶିଷ୍ୟ ହେଲେ

୭ଯୀଶୁ ନିଜ ଶିଷ୍ୟମାନଙ୍କ ସହିତ ଗାଲିଲୀ ହ୍ରଦ କୂଳକୁ
ଚାଲିଗଲେ। ତାହାଙ୍କ ପଛରେ ଗାଲିଲୀର ଅନେକ ଲୋକ
ମଧ୍ୟ ଗଲେ। ୮ଯିହୂଦା, ଯିରୂଶାଲମ, ଏଦୋମ, ଯର୍ଦ୍ଦନ
ନଦୀର ଅପର ପାର୍ଶ୍ୱ, ସୋର ଓ ସୀଦୋନର ଚାରିଆଡୁ
ଅନେକ ଅନେକ ଲୋକ ମଧ୍ୟ ଆସି ପହଞ୍ଚିଲେ। ଏ
ଲୋକମାନେ ଆସିବାର କାରଣ ହେଲା, ଯୀଶୁ ଯାହା ସବୁ
କରୁଥିଲେ, ସେ ସମସ୍ତ ଘଟଣା ସେମାନେ ଶୁଣି ସାରିଥିଲେ।
୯ଯୀଶୁ ଅନେକ ଲୋକଙ୍କୁ ଦେଖିଲେ, ଭିଡ ହୋଇ ଯିବାରୁ
ଲୋକମାନେ ଯେପରି ତାହାଙ୍କ ଆଡ଼କୁ ମାଡ଼ି ନ ଆସନ୍ତି
ସେଥିପାଇଁ ସେ ନିଜ ଶିଷ୍ୟମାନଙ୍କୁ ଗୋଟିଏ ଛୋଟ ଡଙ୍ଗା
ତାହାଙ୍କ ପାଇଁ ପ୍ରସ୍ତୁତ କରିବାକୁ କହିଲେ। ୧୦ଯୀଶୁ
ଅନେକ ଲୋକଙ୍କୁ ସୁସ୍ଥ କଲେ। ତେଣୁ ସବୁ ରୋଗୀମାନେ
ତାହାଙ୍କୁ ଛୁଇଁବା ପାଇଁ ତାହାଙ୍କ ଆଡ଼କୁ ମାଡ଼ି ଆସୁଥିଲେ।
୧୧କେତେକ ଲୋକଙ୍କ ଦେହରେ ଦୁଷ୍ଟାତ୍ମାମାନେ ପ୍ରବେଶ
କରିଥିଲେ। ଯେତେବେଳେ ସେହି ଦୁଷ୍ଟାତ୍ମାମାନେ ଯୀଶୁଙ୍କୁ
ଦେଖୁଥିଲେ, ସେମାନେ ତାହାଙ୍କ ଆଗରେ ପଡ଼ି ଯାଇ
ଚିତ୍କାର କରି କହୁଥିଲେ, "ତୁମ୍ଭେ ପରମେଶ୍ୱରଙ୍କ ପୁତ୍ର।"
୧୨କିନ୍ତୁ ଯୀଶୁ ସେମାନଙ୍କୁ ଦୃଢ଼ ଭାବରେ ଆଜ୍ଞା ଦେଲେ
ଯେ ସେ କିଏ, ଏହା ସେମାନେ ଲୋକମାନଙ୍କୁ ଯେପରି ନ
କୁହନ୍ତି।

### ଯୀଶୁ ବାରଜଣ ପ୍ରେରିତ* ଙ୍କୁ ମନୋନୀତ କଲେ

୧୩ତା'ପରେ ଯୀଶୁ ଗୋଟିଏ ପାହାଡ଼ ଉପରକୁ ଗଲେ।
ସେ ଯେଉଁ ଲୋକମାନଙ୍କୁ ଚାହିଁଲେ, ସେମାନଙ୍କୁ ତାହାଙ୍କ
ପାଖକୁ ଆସିବାକୁ କହିଲେ। ସେମାନେ ଯୀଶୁଙ୍କ ପାଖକୁ
ଗଲେ। ୧୪ଯୀଶୁ ସେମାନଙ୍କ ମଧ୍ୟରୁ ବାରଜଣଙ୍କୁ ବାଛି
ପ୍ରେରିତ ବୋଲି ନାମିତ କଲେ। ଯୀଶୁ ଚାହୁଁଥିଲେ ଯେ
ସେମାନେ ତାହାଙ୍କ ସହିତ ରହିବେ। ସେ ସେମାନଙ୍କୁ
ପ୍ରଚାର ଉଦ୍ଦେଶ୍ୟରେ ଅନ୍ୟ ସ୍ଥାନ ଗୁଡ଼ିକୁ ପଠାଇବେ ଓ
୧୫ଲୋକମାନଙ୍କ ଦେହରୁ ଭୂତମାନଙ୍କୁ ତଡ଼ି ଦେବା ପାଇଁ
ସେମାନଙ୍କର ଅଧିକାର ରହିବ। ୧୬ଯୀଶୁ ମନୋନୀତ କରିଥିବା
ବାରଜଣଙ୍କ ନାମ ଏହିଭଳି; ଶିମୋନ (ଯାହାଙ୍କୁ ସେ ପିତର
ବୋଲି ନାମ ଦେଲେ।) ୧୭ଜେବଦିଙ୍କ ପୁତ୍ର ଯାକୁବ ଓ
ତାହାଙ୍କ ଭାଇ ଯୋହନ (ଯେଉଁମାନଙ୍କୁ ସେ ବିନେରଗୋଷ୍
ଅର୍ଥାତ "ମେଘ ଗର୍ଜ୍ଜନର ପୁତ୍ର" ନାମ ଦେଲେ।) ୧୮ଆନ୍ଦ୍ରିୟ,
ଫିଲିପ୍ପ, ବର୍ଥଲମି, ମାଥିଉ ଥୋମା, ଆଲଫିଙ୍କ ପୁତ୍ର
ଯାକୁବ, ଥଦ୍ଦିୟ, କଣାନୀୟ ବା ଉଦ୍‌ଯୋଗୀ ଶିମୋନ
ଜିଲୋଟ* ୧୯ତଥା ଇଷ୍କାରିୟୋଥ ଯିହୂଦା। ଏହି ଯିହୁଦା
ପରେ ପ୍ରବଞ୍ଚନା କରି ଯୀଶୁଙ୍କୁ ଶତ୍ରୁ ହସ୍ତରେ ଅର୍ପଣ
କରିଥିଲା।

### କେତେକ କହିଲେ ଯେ: ଯୀଶୁଙ୍କ ଦେହରେ ଦୁଷ୍ଟାତ୍ମା ରହିଛି

୨୦ତା'ପରେ ଯୀଶୁ ଘରକୁ ଫେରିଗଲେ। ସେଠାରେ
ମଧ୍ୟ ଅନେକ ଲୋକ ଜମା ହୋଇଗଲେ। ସେଠାରେ
ଏତେ ଲୋକ ଥିଲେ ଯେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ
ଖାଇ ମଧ୍ୟ ପାରିଲେନାହିଁ। ୨୧ଯୀଶୁଙ୍କ ପରିବାରର ଲୋକେ
ଏସବୁ ଶୁଣିଲେ। ସେମାନେ ଯୀଶୁଙ୍କୁ ଆଣିବାକୁ ଗଲେ।
କାରଣ ଲୋକେ କୁହାକୁହି ହେଉ ଥିଲେ ଯେ, ଯୀଶୁଙ୍କ
ମତିଭ୍ରମ ହେଲାଣି।
୨୨ଯିରୁଶାଲମରୁ ଆସିଥିବା ଧର୍ମଶାସ୍ତ୍ରୀମାନେ କହିଲେ,
"ଯୀଶୁଙ୍କ ଦେହରେ ବାଆଲ୍‌ଜିବୂଲ୍ ପଶି ଯାଇଛି। ସେଥିଯୋଗୁ
ଯୀଶୁ ଭୂତମାନଙ୍କ ମୁଖିଆଙ୍କର ଶକ୍ତି ସାହାଯ୍ୟରେ ଭୂତମାନଙ୍କୁ
ତଡ଼ି ଦେଉଛନ୍ତି।"

---

**ପ୍ରେରିତ** ଯେଉଁମାନଙ୍କୁ ଯୀଶୁ ସ୍ୱତନ୍ତ୍ରଃ ସାହାଯ୍ୟକାରୀ ରୂପେ ମନୋନୀତ କରିଥିଲେ

**ଜିଲୋଟ** ଯିହୂଦୀମାନଙ୍କର ଗୋଟିଏ ରକ୍ଷଣଶୀଳ ରାଜନୈତିକ ଦଳ

୨୩ତେଣୁ ଯୀଶୁ ସେମାନଙ୍କୁ ପାଖକୁ ଡାକଲେ ଏବଂ
ଦୃଷ୍ଟାନ୍ତ ମାଧ୍ୟମରେ ସେମାନଙ୍କୁ ବୁଝାଇଲେ, "ଶୟତାନ
କପର ଶୟତାନକୁ ତଡ଼ି ଦେଇ ପାରବ? ୨୪ଯଦ କୌଣସି
ରାଜ୍ୟ ନଜ ଭିତରେ ଯୁଦ୍ଧ କରେ ତେବେ ତାହା ଆଉ
ତିଷ୍ଠି ରହ ପାରବନାହିଁ।
୨୫ଯଦ କୌଣସି ପରବାର ନଜ ଭିତରେ ଭାଗ-ଭାଗ
ହୋଇ ଯାଏ, ତେବେ ସେ ପରବାର ତିଷ୍ଠି ରହ
ପାରବନାହିଁ। ୨୬ସେହ ଭଳ ଯଦ ଜଣେ ଶୟତାନ
ବଭାଜିତ ହୋଇ ନଜ ବରୁଦ୍ଧରେ ଲଢ଼େଇ କରେ, ତେବେ
ସେ ମଧ୍ୟ ତିଷ୍ଠି ରହ ପାରବନାହିଁ। ବରଂ ତାହାର ଅନ୍ତ
ହୋଇଯିବ। ୨୭ଯଦ ଜଣେ ଲୋକ ଗୋଟିଏ ଶକ୍ତଶାଳୀ
ଲୋକର ଘରେ ପଶି ତାର ସମ୍ପତ୍ତି ଲୁଟି ନେବାକୁ ଚାହିଁବ,
ତେବେ ପ୍ରଥମେ ସେ ଶକ୍ତଶାଳୀ ଲୋକଟିକୁ ବାନ୍ଧିବା
ଦରକାର। ତା'ପରେ ସେ ଶକ୍ତଶାଳୀ ଲୋକଟିର ଘର
ଲୁଟି କର ସବୁ ଜିନଷ ନେଇ ଯାଇ ପାରବ। ୨୮ମୁଁ
ତୁମ୍ଭକୁ ସତ୍ୟ କହୁଛ। ଲୋକେ ଯେଉଁ ସବୁ ପାପ
କରୁଛନ୍ତ, ସେଗୁଡ଼ିକୁ କ୍ଷମା କର ଦଆ ଯାଇ ପାରବ।
ଲୋକେ ପରମେଶ୍ୱରଙ୍କ ବରୁଦ୍ଧରେ ଯେତେ ସବୁ ଖରାପ
କଥା କହୁଛନ୍ତ, ସେସବୁଗୁଡ଼ିକୁ ମଧ୍ୟ କ୍ଷମା କର ଦଆ
ଯାଇପାରବ। ୨୯କନ୍ତୁ ପବତ୍ର-ଆତ୍ମାଙ୍କ ବରୁଦ୍ଧରେ ଯେଉଁ
ଲୋକ କଛ କହବ, ତାହାକୁ କେବେହେଲେ କ୍ଷମା
ମିଳବନାହିଁ। ସେ ସବୁବେଳେ ସେହ ପାପର ଦୋଷୀ
ହେବ।"
୩୦ଧର୍ମଶାସ୍ତ୍ରୀମାନେ ଯୀଶୁଙ୍କଠାରେ ଦୁଷ୍ଟାତ୍ମା ଅଛ ବୋଲ
କହଥିବାରୁ, ଯୀଶୁ ଏସବୁ କହଲେ।

### ଯୀଶୁଙ୍କ ଶିଷ୍ୟମାନେ ହେଉଛନ୍ତ ତାହାଙ୍କର ପ୍ରକୃତ ପରବାର

୩୧ତା'ପରେ ଯୀଶୁଙ୍କ ମାଆ ଓ ଭାଇମାନେ ସେଠାକୁ
ଆସିଲେ। ସେମାନେ ବାହାରେ ଠିଆ ହେଲେ ଓ ଗୋଟିଏ
ଲୋକକୁ ଯୀଶୁଙ୍କୁ ବାହାରକୁ ଆସିବା ପାଇଁ ଡକାଇ
ପଠେଇଲେ। ୩୨ସେତେବେଳେ ଯୀଶୁଙ୍କ ଚାରପଟେ
ଲୋକମାନେ ଘେର ବସିଥିଲେ। ସେମାନେ ତାହାଙ୍କୁ କହଲେ,
"ତୁମ୍ଭ ମାଆ ଓ ଭାଇମାନେ ତୁମ୍ଭକୁ ବାହାରେ ଅପେକ୍ଷା
କରଛନ୍ତ।"
୩୩ଯୀଶୁ ପଚାରଲେ, "କଏ ମୋର ମାଆ? କେଉଁମାନେ
ମୋର ଭାଇ?" ୩୪ତା'ପରେ ଯୀଶୁ ତାହାଙ୍କ ଚାର ପାଖରେ
ବସିଥିବା ଲୋକମାନଙ୍କ ଆଡ଼େ ଚାହିଁଲେ। ସେ କହଲେ,
"ଏ ଲୋକମାନେ ମୋର ମାଆ ଓ ଭାଇ। ୩୫ଯେଉଁମାନେ
ପରମେଶ୍ୱରଙ୍କ ଇଚ୍ଛାକୁ କାର୍ଯ୍ୟକାରୀ କରନ୍ତ, ସେମାନେ ହିଁ
ମୋର ଭାଇ,ଭଉଣୀ ଓ ମାଆ।"

### ବୀଜ ବୁଣିବା ବଷୟରେ ଦୃଷ୍ଟାନ୍ତ କଥା

୪ ଯୀଶୁ ପୁଣି ହ୍ରଦ କୂଳରେ ଉପଦେଶ ଦେବା ଆରମ୍ଭ
କଲେ। ସେଠାରେ ତାହାଙ୍କ ଚାରପଟେ ବହୁତ
ଲୋକ ଜମା ହୋଇଗଲେ। ତେଣୁ ସେ ହ୍ରଦରେ ଥିବା
ଗୋଟିଏ ଡ଼ଙ୍ଗାରେ ଯାଇ ବସିଲେ। ଅନ୍ୟ ସବୁ ଲୋକ
ହ୍ରଦର କୂଳରେ ଠିଆ ହୋଇ ରହଲେ। ୨ଯୀଶୁ ଡ଼ଙ୍ଗାରେ
ଥାଇ ଲୋକମାନଙ୍କୁ ଶିକ୍ଷା ଦେଲେ। ସେ ସେମାନଙ୍କୁ
ଉପଦେଶ ଦେବା ପାଇଁ ଅନେକ ଗୁଡ଼ିଏ ଦୃଷ୍ଟାନ୍ତ କଥାର
ପ୍ରୟୋଗ କଲେ। ତାହାଙ୍କ ଶିକ୍ଷାରେ ସେ କହଲେ,
୩"ଶୁଣ; ଜଣେ ଚାଷୀ ବୀଜ ବୁଣିବାକୁ ବାହାରଲା।"
୪ଯେତେବେଳେ ଚାଷୀଟି ବୀଜ ବୁଣୁଥିଲା, ସେଥିରୁ କଛ
ବୀଜ ରାସ୍ତାରେ ପଡ଼ିଗଲା। ପକ୍ଷୀମାନେ ଆସି ସେତକ
ଖାଇଦେଲେ। ୫ଆଉ କଛ ବୀଜ ପଥୁରଆ ଜମିରେ
ପଡ଼ିଗଲା। ସେ ଜମିରେ ଯଥେଷ୍ଟ ମାଟି ନ ଥିଲା। ଯଥେଷ୍ଟ
ମାଟି ନ ଥିବାରୁ ସେ ବୀଜଗୁଡ଼ିକ ଅତି ଶୀଘ୍ର ଗଜା
ହୋଇଗଲା। ୬କନ୍ତୁ ସୂର୍ଯ୍ୟ ଆକାଶରେ ଉଠିବା ପରେପରେ
ଉତ୍ତାପ ହେତୁ ଗଜା ଗୁଡ଼ିକ ଜଳ ଗଲା। ମାଟି ଭିତରକୁ
ଚେର ଗଭୀର ଭାବରେ ଯାଇ ପାର ନ ଥିବାରୁ ଗଛ
ଚାରାଗୁଡ଼ିକ ଶୁଖି ଗଲା। ୭କଛ ବୀଜ କଣ୍ଟାବୁଦାଗୁଡ଼ିକ
ଭିତରେ ପଡ଼ିଗଲା। କଣ୍ଟାବୁଦାଗୁଡ଼ିକ ବଢ଼ୁ ଥିଲା, ତେଣୁ
କଣ୍ଟାବୁଦାଗୁଡ଼ିକ ଗଛଚାରାଗୁଡ଼ିକୁ ଚାପି ଦେଲା, ତା'ଫଳରେ
ସେଗୁଡ଼ିକ ଭଲ ଭାବରେ ବଢ଼ି ପାରଲାନାହିଁ। ତେଣୁ
ସେଥିରେ ଫଳ ଫଳଲାନାହିଁ। ୮କେତେକ ବୀଜ ଭଲ
ମାଟିରେ ପଡ଼ିଲା। ସେଥିରୁ ଗଛ ହେଲା। ଗଛ ଭଲ
ବଢ଼ିଲା ଓ ଫଳ ଫଳଲା। କେତେକ ଗଛରେ ତିରଶଗୁଣ
ବା ଷାଠିଏଗୁଣ ବା ଏପରକ କେତେକ ଗଛରେ ଶହେଗୁଣ
ପର୍ଯ୍ୟନ୍ତ ଫଳ ଫଳଲା।"
୯ତା'ପରେ ଯୀଶୁ କହଲେ, "ତୁମ୍ଭମାନଙ୍କ ଭିତରୁ ଯିଏ
ଶୁଣୁଛ, ଶୁଣ।"

### ଯୀଶୁ କାହିଁକି ଦୃଷ୍ଟାନ୍ତ ପ୍ରୟୋଗ କରନ୍ତ

୧୦ପରେ ଯେତେବେଳେ ଯୀଶୁ ଏକୁଟିଆ ଥିଲେ,
ସେତେବେଳେ ତାହାଙ୍କର ବାର ଜଣ ଯାକ ପ୍ରେରତ ଓ
ଅନ୍ୟ ଶିଷ୍ୟମାନେ ତାହାଙ୍କୁ ଦୃଷ୍ଟାନ୍ତ ସମ୍ବନ୍ଧରେ ପଚାରଲେ।
୧୧ଯୀଶୁ କହଲେ, "କେବଳ ତୁମ୍ଭମାନଙ୍କୁ ପରମେଶ୍ୱରଙ୍କ
ରାଜ୍ୟର ନଗୁଢ଼ ତତ୍ତ୍ୱ ବୁଝି ପାରବା ପାଇଁ ଶକ୍ତ ଦଆ
ଯାଇଛ। କନ୍ତୁ ଅନ୍ୟମାନଙ୍କ ପାଇଁ ମୁଁ ଦୃଷ୍ଟାନ୍ତ ମାଧ୍ୟମରେ
ସବୁକଥା କହୁଛ। ୧୨ମୁଁ ଏପର କରେ କାରଣ:

> 'ସେମାନେ ଖାଲ ଚାହିଁଥିବେ ସିନା କନ୍ତୁ କଛ
> ଦେଖି ପାରୁ ନଥିବେ। ସେମାନେ ଖାଲ ଶୁଣୁଥିବେ
> ସିନା କନ୍ତୁ କଛ ବୁଝି ପାରୁ ନଥିବେ। ଯଦ
> ସେମାନେ ଦେଖି ପାରବେ ଓ ବୁଝି ପାରବେ,
> ତେବେ ସେମାନେ ବଦଳ ଯିବେ ଓ କ୍ଷମା ପାଇ
> ଯିବେ'।'" ଯିଶାଇୟ ୬:୯-୧୦

### ଯୀଶୁ ବୀଜ ବୁଣା ଦୃଷ୍ଟାନ୍ତ-କଥା ବୁଝାଇଲେ

୧୩ତା'ପରେ ଯୀଶୁ ସେମାନଙ୍କୁ କହଲେ, "ତୁମ୍ଭେମାନେ
ଏହ ଦୃଷ୍ଟାନ୍ତ ବୁଝି ପାରୁଛ କ? ତେବେ ଅନ୍ୟ ଦୃଷ୍ଟାନ୍ତଗୁଡ଼ିକ
କପର ବୁଝିବ?" ୧୪ଚାଷୀଟି ଲୋକମାନଙ୍କ ମନ ମଧ୍ୟରେ
ପରମେଶ୍ୱରଙ୍କ ଉପଦେଶ ବୁଣୁଥିବା ଲୋକ ଭଳ।
୧୫ବେଳେବେଳେ ଉପଦେଶ ରାସ୍ତାରେ ପଡ଼ି ଯାଏ। କେତେକ
ଲୋକ ଏହ ରାସ୍ତା ଭଳ, ସେହ ଲୋକମାନେ ପରମେଶ୍ୱରଙ୍କ

ଉପଦେଶ ଶୁଣନ୍ତି କିନ୍ତୁ ଶୟତାନ ତତ୍କ୍ଷଣାତ୍ ଆସି
ସେମାନଙ୍କ ମଧ୍ୟରେ ବୁଣା ଯାଇ ଥିବା ଉପଦେଶକୁ ନେଇ
ଯାଏ। ୧୬ଆଉ କେତେକ ଲୋକ ପଥୁରିଆ ଜମିରେ ବୁଣା
ଯାଇଥିବା ବୀଜ ଭଳି, ସେମାନେ ଉପଦେଶ ଶୁଣନ୍ତି ଏବଂ
ଶୀଘ୍ର ଆନନ୍ଦରେ ତାହା ଗ୍ରହଣ କରି ନିଅନ୍ତି। ୧୭କିନ୍ତୁ
ତାହାର ଚେର ତାହାଙ୍କ ହୃଦୟର ଗଭୀରତାରେ ପ୍ରବେଶ
କରି ପାରେ ନାହିଁ। କେବଳ କିଛି କ୍ଷଣ ପାଇଁ ସେମାନେ
ଉପଦେଶକୁ ଧରି ରଖନ୍ତି। ପରେ ଯେତେବେଳେ ଉପଦେଶ
ଯୋଗୁ ବିପଦ ଆସେ ବା ସେମାନେ ନିର୍ଯ୍ୟାତିତ ହୁଅନ୍ତି,
ସେତେବେଳେ ସେମାନେ ତୁରନ୍ତ ବିଶ୍ୱାସ ପରିତ୍ୟାଗ କରନ୍ତି।
୧୮ଆଉ କେତେକ ଲୋକ କଣ୍ଟାବୁଦାଗୁଡ଼ିକରେ ପଡ଼ି ଯାଇଥିବା
ବୀଜ ଭଳି। ଏମାନେ ଉପଦେଶ ଶୁଣନ୍ତି। ୧୯କିନ୍ତୁ ତାହାଙ୍କ
ମନରେ ଜୀବନର ଚିନ୍ତା, ଧନ-ସମ୍ପତ୍ତିର ମୋହ ଓ ଅନ୍ୟ
ବସ୍ତୁ ଲାଭ କରିବାର ଲାଳସା ଆସେ ଓ ସେଗୁଡ଼ିକ
ଉପଦେଶକୁ ଚାପି ପକାଏ। ଫଳରେ ତାହା ସେମାନଙ୍କ
ଜୀବନରେ ଫଳହୀନ ହୁଏ। ୨୦କେତେକ ଲୋକ ଭଲ
ମାଟିରେ ବୁଣା ଯାଇଥିବା ବୀଜ ଭଳି, ସେମାନେ ଉପଦେଶ
ଶୁଣନ୍ତି ଓ ତାହା ଗ୍ରହଣ କରନ୍ତି। ତା'ପରେ ସେମାନେ
ବୃଦ୍ଧି ପାଇ ଫଳପ୍ରଦ ହୁଅନ୍ତି। ତାହା ବେଳେବେଳେ ତିରିଶ
ଗୁଣ, ଷାଠିଏ ଗୁଣ ବା ଶହେ ଗୁଣ ପର୍ଯ୍ୟନ୍ତ ଫଳ
ଦେଇଥାଏ।"

## ଯାହା ତୁମ୍ଭ ପାଖରେ ଅଛି ତାହାର ବିନିଯୋଗ କର

୨୧ତା'ପରେ ଯୀଶୁ ସେମାନଙ୍କୁ କହିଲେ, "ତୁମ୍ଭେ କ'ଣ
ହାଣ୍ଡି ତଳେ କି ଖଟ ତଳେ ଦୀପଟିଏ ରଖ କି? ତୁମ୍ଭେ
ଦୀପ ରୁଖା ଉପରେ ଦୀପ ରଖ। ୨୨ତେବେ ଯାହା କିଛି
ଲୁଚି ରହିଛି, ତାହା ସ୍ପଷ୍ଟ ହୋଇଯିବ। ଯାହା କିଛି ରହସ୍ୟ
ହୋଇ ରହିଛି, ତାହା ପ୍ରକାଶ ପାଇବ। ୨୩ମୋତେ
ଶୁଣୁଥିବା ଲୋକମାନେ ଶୁଣନ୍ତୁ।

୨୪"ତୁମ୍ଭେ ଯାହା ଶୁଣୁଛ, ତାହା ଉପରେ ସାବଧାନ
ହୋଇ ବିଚାର କର।। ତୁମ୍ଭେ ଯେଉଁଭଳି ଭାବରେ ଅନ୍ୟକୁ
ଦେଉଛ, ପରମେଶ୍ୱର ତୁମ୍ଭକୁ ଠିକ ସେହିଭଳି ଭାବରେ
ଦେବେ। ବରଂ ପରମେଶ୍ୱର ତୁମ୍ଭକୁ ଆହୁରି ଅଧିକ
ଦେବେ। ୨୫ଯାହା ପାଖରେ କିଛି ଅଛି, ତାହାକୁ ଆଉ
ଅଧିକ ଦିଆଯିବ। କିନ୍ତୁ ଯାହା ପାଖରେ ଖୁବ୍ କମ୍ ଅଛି,
ତାହା ମଧ୍ୟ ସେ ହରେଇ ବସିବ।"

## ବୀଜର ଦୃଷ୍ଟାନ୍ତ ଯୀଶୁ ବ୍ୟାଖ୍ୟା କଲେ

୨୬ଯୀଶୁ ପୁଣି କହିଲେ, "ପରମେଶ୍ୱରଙ୍କ ରାଜ୍ୟ, ଜମିରେ
ବୀଜ ବୁଣୁଥିବା ଲୋକଟିଏ ଭଳି। ୨୭ବୀଜରୁ ଅଙ୍କୁର
ବାହାରି ଦିନରାତି ବଢ଼ିବାକୁ ଲାଗେ। ସେହି ଲୋକ ଦିନରେ
ଚେଇଁଥାଉ କିମ୍ବା ରାତିରେ ଶୋଇଥାଉ, ସେଥିରେ କିଛି
ଯାଏ ଆସେ ନାହିଁ। ତଥାପି ଅଙ୍କୁରଟି ଆପଣା ଛାଏଁ ବଢ଼ି
ଚାଲି ଥାଏ। ସେହି ଲୋକ ଜାଣିପାରେ ନାହିଁ ଯେ
ଅଙ୍କୁରଟି କିପରି ବଢୁଛି। ୨୮କାହାରି ସାହାଯ୍ୟ ବିନା ଭୂମି
ଆପେ-ଆପେ ଶସ୍ୟ ଉତ୍ପନ୍ନ କରେ। ପ୍ରଥମେ ଅଙ୍କୁର, ତା
ପରେ କେଣ୍ଡା ହୁଏ। ତା'ପରେ କେଣ୍ଡାରେ ପରିପୂର୍ଣ୍ଣ ଶସ୍ୟ
ହୁଏ; ୨୯ଯେତେବେଳେ ଶସ୍ୟ ପାଚିଯାଏ, ସେତେବେଳେ
ସେହି ଲୋକ ଦାଆ ନେଇ ତାକୁ କାଟେ। କାରଣ ଏହାହିଁ
ଅମଳ କରିବାର ଉପଯୁକ୍ତ ସମୟ।"

## ପରମେଶ୍ୱରଙ୍କ ରାଜ୍ୟ ଏକ ସୋରିଷ ଦାନା ଭଳି

୩୦ସେ ପୁଣି କହିଲେ, "ପରମେଶ୍ୱରଙ୍କ ରାଜ୍ୟ ସଂପର୍କରେ
କ'ଣ କହି ମୁଁ ତୁମ୍ଭକୁ ବୁଝାଇବି? ମୁଁ କେଉଁ ଦୃଷ୍ଟାନ୍ତ
ମାଧ୍ୟମରେ ଏହା ବୁଝେଇବି? ୩୧ପରମେଶ୍ୱରଙ୍କ ରାଜ୍ୟ
ଗୋଟିଏ ସୋରିଷ ଦାନା ଭଳି। ଏହି ସୋରିଷ ଦାନା,
ତୁମ୍ଭେ ଜମିରେ ବୁଣୁଥିବା ବୀଜଗୁଡ଼ିକ ଭିତରେ ସବୁଠାରୁ
ଛୋଟ। ୩୨କିନ୍ତୁ ତୁମ୍ଭେ ବୁଣିବା ପରେ ଏହି ବୀଜ ବଢ଼ି
ତୁମ୍ଭ ବଗିଚାର ଅନ୍ୟ ଗଛମାନଙ୍କ ଭିତରେ ସବୁଠାରୁ ବଡ଼
ହୋଇଯାଏ। ତାର ଶାଖା ଗୁଡ଼ିକ ବଡ଼ ହୋଇଯାଆନ୍ତି।
ପକ୍ଷୀମାନେ ଆସି ତା ଛାଇରେ ବସା ବାନ୍ଧି ରହନ୍ତି।"

୩୩ଯୀଶୁ ଏହି ଭଳି ଅନେକ ଦୃଷ୍ଟାନ୍ତ କଥା ମାଧ୍ୟମରେ
ସେମାନଙ୍କୁ ଉପଦେଶ ପ୍ରଦାନ କରୁଥିଲେ। ସେମାନଙ୍କର
ବୁଝି ପାରିବା କ୍ଷମତା ଅନୁସାରେ ଯୀଶୁ ସେମାନଙ୍କୁ କହୁଥିଲେ।
୩୪ଯୀଶୁ ଲୋକଙ୍କୁ ଉପଦେଶ ଦେଲାବେଳେ ସବୁବେଳେ
ଦୃଷ୍ଟାନ୍ତର ପ୍ରୟୋଗ କରୁଥିଲେ। କିନ୍ତୁ ଯୀଶୁଙ୍କ ସହିତ
ତାହାଙ୍କ ଶିଷ୍ୟମାନେ ଏକୁଟିଆ ଥିବାବେଳେ, ସେତେବେଳେ
ଯୀଶୁ ସେମାନଙ୍କୁ ସବୁଗୁଡ଼ିକର ଅର୍ଥ ସ୍ପଷ୍ଟ ଭାବରେ ବୁଝେଇ
ଦେଉଥିଲେ।

## ଯୀଶୁ ଝଡ଼ ବନ୍ଦ କରିଦେଲେ

୩୫ସେହି ଦିନ ସନ୍ଧ୍ୟାବେଳେ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ
କହିଲେ, "ଚାଲ, ଆର ପଟକୁ ଯିବା।" ୩୬ତେଣୁ ସେମାନେ
ସବୁ ଲୋକଙ୍କୁ ସେଠାରେ ଛାଡ଼ି ଦେଲେ।। ଯେଉଁ
ଡ଼ଙ୍ଗାରେ ଯୀଶୁ ପୂର୍ବରୁ ବସି ସାରିଥିଲେ, ଶିଷ୍ୟମାନେ ମଧ୍ୟ
ଯାଇ ସେଥିରେ ବସିଲେ। ସେଠାରେ ଅନ୍ୟ ଡ଼ଙ୍ଗାଗୁଡ଼ିକ
ମଧ୍ୟ ଥିଲା। ୩୭ତା'ପରେ ହ୍ରଦରେ ଗୋଟିଏ ଭୟଙ୍କର ଝଡ଼
ସୃଷ୍ଟି ହେଲା। ଡ଼ଙ୍ଗା ଆଡ଼କୁ ଢେଉ ମାଡ଼ି ଆସିଲା।।
ଡ଼ଙ୍ଗାରେ ପାଣି ପ୍ରାୟ ଭର୍ତ୍ତି ହୋଇଗଲା। ୩୮ଯୀଶୁ ଡ଼ଙ୍ଗା
ଭିତରେ ପଛ ମଙ୍ଗରେ ଗୋଟିଏ ତକିଆରେ ମୁଣ୍ଡ ଦେଇ
ଶୋଇ ପଡ଼ିଥିଲେ। ତାହାଙ୍କ ଶିଷ୍ୟମାନେ ତାହାଙ୍କ ପାଖକୁ
ଯାଇ ତାହାଙ୍କୁ ଉଠାଇଲେ। ସେମାନେ କହିଲେ, "ଗୁରୁ,
ତୁମ୍ଭେ କ'ଣ ଆମ୍ଭ କଥା କିଛି ଚିନ୍ତାକରୁ ନାହଁ, ବର୍ତ୍ତମାନ
ଆମ୍ଭେ ବୁଡ଼ିଯିବା।"

୩୯ଯୀଶୁ ଉଠି ପଡ଼ିଲେ, ସେ ପବନକୁ ଧମକ ଦେଲେ
ଓ ଢେଉକୁ କହିଲେ, "ଶାନ୍ତ ହୁଅ, ସ୍ଥିର ହୁଅ।"
ତା'ପରେ ଝଡ଼ ବନ୍ଦ ହୋଇଗଲା। ହ୍ରଦ ଶାନ୍ତ ହୋଇଗଲା।

୪୦ତା'ପରେ ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ତୁମ୍ଭେମାନେ
କାହିଁକି ଭୟ କରୁଛ? ଏ ପର୍ଯ୍ୟନ୍ତ କ'ଣ ତୁମ୍ଭମାନଙ୍କର
ବିଶ୍ୱାସ ହୋଇନାହିଁ?"

୪୧ସେମାନେ କିନ୍ତୁ ବହୁତ ଡରି ଯାଇଥିଲେ। ସେମାନେ
ନିଜ ଭିତରେ ପଚରା ପଚରି ହେଲେ, "ଏ କେଉଁ
ପ୍ରକାରର ଲୋକ? ଏପରିକି ପବନ ଓ ପାଣି ମଧ୍ୟ ତାହାଙ୍କୁ
ମାନୁଛନ୍ତି।"

### ଯୀଶୁ ଜଣେ ଲୋକଙ୍କୁ ଦୁଷ୍ଟାତ୍ମା କବଳରୁ ମୁକ୍ତ କଲେ

୫ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ହ୍ରଦର ଅପର ପାର୍ଶ୍ୱର
ଗିରାଶୀୟମାନଙ୍କ ଦେଶରେ ପହଞ୍ଚିଲେ। ୨ଯୀଶୁ ଡଙ୍ଗାର
ବାହାରକୁ ଆସିବା ମାତ୍ରେ ଗୋଟିଏ ଲୋକ କବର ମଧ୍ୟରୁ
ବାହାରି ତାହାଙ୍କ ପାଖକୁ ଆସିଲା। ତା'ଦେହରେ ଦୁଷ୍ଟାତ୍ମାଟି
ପ୍ରବେଶ କରି ରହିଥିଲା। ୩ସେ ଲୋକଟି କବର ମଧ୍ୟରେ
ରହୁଥିଲା। ତାହାକୁ କେହି ହେଲେ ବାନ୍ଧି ପାରୁ ନ ଥିଲେ।
ଏପରିକି ଶିକୁଳିରେ ମଧ୍ୟ ତାକୁ ବାନ୍ଧି ପାରୁ ନ ଥିଲେ।
୪କାରଣ ତାହାକୁ ଅଧିକାଂଶ ସମୟରେ ହାତକଡ଼ି ଓ ବେଡ଼ି
ଦ୍ୱାରା ବାନ୍ଧି ଦିଆ ଯାଉଥିଲା। କିନ୍ତୁ ସେ ହାତକଡ଼ିକୁ
ଛଣ୍ଡାଇ ଖୋଲି ଦେଉଥିଲା ଓ ଶିକୁଳିକୁ ଖଣ୍ଡ-ଖଣ୍ଡ କରି
ଛଣ୍ଡାଇ ଦେଉଥିଲା। କେହି ହେଲେ ତାକୁ ନିୟନ୍ତ୍ରିତ କରି
ପାରୁ ନଥିଲେ। ୫ସେ ଦିନ ରାତି ସଦାବେଳେ କବର ଓ
ପାହାଡ଼ରେ ଥାଇ ଚିତ୍କାର କରୁଥିଲା ଓ ନିଜକୁ ପଥରରେ
କ୍ଷତ-ବିକ୍ଷତ କରି ପକାଉଥିଲା। ୬ଲୋକଟି ଯୀଶୁଙ୍କୁ ଦୂରରୁ
ଦେଖି ତାହାଙ୍କ ପାଖକୁ ଧାଇଁ ଆସିଲା ଓ ପ୍ରଣାମ କରି
ତାହାଙ୍କ ଆଗରେ ପଡ଼ିଗଲା। ୭-୮ଯୀଶୁ ସେହି ଲୋକକୁ
କହିଲେ, "ରେ ଦୁଷ୍ଟାତ୍ମା; ଏହି ଲୋକ ଦେହରୁ ବାହାରି
ଆ।" ଯୀଶୁ ଏପରି କରିବା ଦ୍ୱାରା ସେହି ଲୋକ ବଡ଼
ପାଟିରେ ଚିତ୍କାର କରି କହିଲା, "ସବୁଠାରୁ ମହାନ ପରମେଶ୍ୱରଙ୍କ
ପୁତ୍ର ହେ ଯୀଶୁ, ତୁମ୍ଭେ ମୋ ଠାରୁ କ'ଣ ଚାହୁଁଛ? ତୁମ୍ଭକୁ
ପରମେଶ୍ୱରଙ୍କ ରାଣ, ମୁଁ ଅନୁରୋଧ କରୁଛି, ତୁମ୍ଭେ
ମୋତେ ହଇରାଣ କର ନାହିଁ।"

୯ଯୀଶୁ ତାକୁ ପଚାରିଲେ, "ତୁମ୍ଭ ନାମ କ'ଣ?"

ଲୋକଟି କହିଲା, "ମୋ ନାମ ଲିଜନ* ବା ବାହିନୀଭୂତ।
କାରଣ ଆମ୍ଭେ ଅନେକ।" ୧୦ସେହି ଦୁଷ୍ଟାତ୍ମାମାନେ ବାରମ୍ବାର
କାକୁତି ମିନତି ହୋଇ ଭିକ୍ଷା ମାଗିଲା ଯେ ସେ ସେମାନଙ୍କୁ
ସେହି ଅଞ୍ଚଳର ବାହାରକୁ ପଠେଇ ନ ଦିଅନ୍ତୁ।

୧୧ସେହି ପାହାଡ଼ କଡ଼ରେ ସେତେବେଳେ ଘୁଷୁରିଙ୍କର
ଗୋଟିଏ ବଡ଼ ପଲ ଚରୁଥିଲା। ୧୨ଦୁଷ୍ଟାତ୍ମାମାନେ ଯୀଶୁଙ୍କୁ
ଅନୁରୋଧ କଲେ, "ଆମ୍ଭକୁ ଘୁଷୁରିମାନଙ୍କ ପାଖକୁ ପଠେଇ
ଦିଅ, ତାହେଲେ ଆମ୍ଭେ ସେମାନଙ୍କ ଦେହ ଭିତରେ
ପ୍ରବେଶ କରିଯିବୁ।" ୧୩ଯୀଶୁ ସେମାନଙ୍କୁ ଏପରି କରିବାକୁ
ଅନୁମତି ଦେଇଦେଲେ। ତାପରେ ଦୁଷ୍ଟାତ୍ମାମାନେ ସେହି
ଲୋକଟି ଦେହରୁ ବାହାରି ଘୁଷୁରିମାନଙ୍କ ଦେହରେ ପଶିଗଲେ।
ସେହି ଘୁଷୁରି ପଲରେ ପ୍ରାୟ ଦୁଇ ହଜାର ଘୁଷୁରି ଥିଲେ।
ସେ ସବୁତକ ଘୁଷୁରି ପାହାଡ଼ କଡ଼କୁ ଖୁବ୍ ବେଗରେ
ଧାଇଁଲେ ଓ ହ୍ରଦ ଭିତରେ ପଡ଼ି ଗଲେ। ସବୁତକ ଘୁଷୁରି
ପାଣିରେ ବୁଡ଼ିଗଲେ।

୧୪ଘୁଷୁରି ପଲର ଜଗୁଆଳମାନେ ପଳେଇ ଯାଇ ସହରରେ
ଏହି ଘଟଣା ବିଷୟରେ କହିଲେ। ଲୋକେ କ'ଣ ଘଟିଛି
ବୋଲି ଦେଖିବାକୁ ଆସିଲେ। ୧୫ସେମାନେ ଯୀଶୁଙ୍କ ପାଖରେ
ପହଞ୍ଚି ଦେଖିଲେ ଯାହା ଦେହରେ ବାହିନୀଭୂତ* ପ୍ରବେଶ
କରିଥିଲା, ସେ ଲୋକଟି ଲୁଗାପଟା ପିନ୍ଧି ଭଲ୍ ଭାବରେ
ବସିଛି। ତାହାର ମନ ଭଲ ହୋଇ ଯାଇଛି। ଏହା ଦେଖି
ସେମାନେ ଭୟଭୀତ ହେଲେ। ୧୬ସେଠାରେ କେତେକ
ଲୋକ ଥିଲେ, ଯେଉଁମାନେ ଯୀଶୁଙ୍କ କାର୍ଯ୍ୟ ଦେଖିଥିଲେ।
ସେମାନେ ଅନ୍ୟ ଲୋକମାନଙ୍କ ଆଗରେ ଦୁଷ୍ଟାତ୍ମା* ଭୂତଗ୍ରସ୍ତ
ଲୋକଟିର ଓ ଘୁଷୁରିମାନଙ୍କର କ'ଣ ହେଲା, ସେ ସବୁ
ବର୍ଣ୍ଣନା କଲେ। ୧୭ତା'ପରେ ସେ ଲୋକମାନେ ଯୀଶୁଙ୍କୁ
ସେ ଅଞ୍ଚଳ ଛାଡ଼ି ଚାଲିଯିବାକୁ ଅନୁରୋଧ କଲେ।

୧୮ଯୀଶୁ ଡଙ୍ଗାରେ ବସି ଚାଲି ଯିବାକୁ ପ୍ରସ୍ତୁତ ହେଲେ।
ଯିଏ ପୂର୍ବରୁ ଦୁଷ୍ଟାତ୍ମା ଦ୍ୱାରା ଆକ୍ରାନ୍ତ ହୋଇଥିଲା, ସେ
ଯୀଶୁଙ୍କୁ ସହିତ ଯିବାକୁ ତାହାଙ୍କୁ ଅନୁରୋଧ କଲା।

୧୯କିନ୍ତୁ ଯୀଶୁ ତାହାକୁ ଯିବାପାଇଁ ଅନୁମତି ଦେଲେ
ନାହିଁ। ଯୀଶୁ କହିଲେ, "ତୁମ୍ଭେ ତୁମ୍ଭର ଘରକୁ, ଆତ୍ମୀୟ-ସ୍ୱଜନଙ୍କ
ପାଖକୁ ଯାଅ। ପ୍ରଭୁ ତୁମ୍ଭ ପାଇଁ ଯାହା କରିଛନ୍ତି, ସେ
ସମସ୍ତ କଥା ସେମାନଙ୍କୁ କୁହ।। ସେମାନଙ୍କୁ କୁହ ଯେ
ପ୍ରଭୁ ତୁମ୍ଭକୁ ଦୟା କରିଛନ୍ତି।" ୨୦ତେଣୁ ସେ ଚାଲିଗଲା ଓ
ଦେକାପଲି* ଅଞ୍ଚଳର ଲୋକଙ୍କୁ କହିବାକୁ ଲାଗିଲା ଯେ
ଯୀଶୁ କିପରି ତା ପାଇଁ କେତେ ବଡ଼ କାମ କରିଛନ୍ତି।
ସମସ୍ତ ଲୋକ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ।

### ଯୀଶୁ ମୃତ ବାଳକାକୁ ଜୀବନ ଦେଲେ ଓ ଏକ ଅସୁସ୍ଥ ସ୍ତ୍ରୀକୁ ସୁସ୍ଥ କଲେ

୨୧ଯୀଶୁ ନୌକାରେ ବସି ହ୍ରଦର ଅପର ପାର୍ଶ୍ୱକୁ
ଫେରିଗଲେ। ପୁଣି ହ୍ରଦ କୂଳରେ ତାହାଙ୍କ ଚାରି ପଟେ
ବହୁତ ଲୋକ ଜମିଗଲେ। ୨୨ଯିହୁଦୀ ପ୍ରାର୍ଥନା ଗୃହର
ଜଣେ ଅଧିକାରୀ ସେଠାକୁ ଆସିଲେ। ତାହାଙ୍କ ନାମ
ଯାଇରସ ଥିଲା। ଯାଇରସ ଯୀଶୁଙ୍କୁ ଦେଖିବା ମାତ୍ରେ
ତାହାଙ୍କ ପାଦ ତଳେ ପଡ଼ିଗଲେ। ୨୩ସେ କାକୁତି ମିନତି
ହୋଇ ଯୀଶୁଙ୍କୁ ଭିକ୍ଷା ମାଗିଲେ, "ମୋର ଛୋଟ ଝିଅ
ମରିବା ଉପରେ। ଦୟା କରି ଆପଣ ଆସି ତା'ଉପରେ
ହାତ ରଖନ୍ତୁ, ତା'ହେଲେ ସେ ସୁସ୍ଥ ହୋଇଯିବ ଓ ଜୀବନ
ପାଇବ।"

୨୪ଯୀଶୁ ଯାଇରସଙ୍କ ସାଥିରେ ବାହାରିଲେ। ଅନେକ
ଲୋକ ଯୀଶୁଙ୍କ ପଛେ ପଛେ ଗଲେ। ଭିଡ଼ ହୋଇଥିବା
ଯୋଗୁ ଲୋକେ ଯୀଶୁଙ୍କ ଆଡ଼କୁ ମାଡ଼ି ଆସୁ ଥିଲେ।

୨୫ସେଠାରେ ଲୋକଙ୍କ ଭିତରେ ଜଣେ ସ୍ତ୍ରୀ ଲୋକ
ଥିଲା। ବିଗତ ବାରବର୍ଷ ଧରି ତା'ର ରକ୍ତସ୍ରାବ ହେଉଥିଲା।
୨୬ଅନେକ ଚିକିତ୍ସକଙ୍କ ଦ୍ୱାରା ଚିକିତ୍ସା କରାଇ ସାରିବା
ପରେ ସେ ନିରାଶ ହୋଇ ପଡ଼ିଥିଲା। ସେ ବହୁତ କଷ୍ଟ
ପାଉଥିଲା। ତାର ସମସ୍ତ ଟଙ୍କା ଖର୍ଚ୍ଚ ହୋଇ ଯାଇଥିଲା।
ତଥାପି ତା'ର ସ୍ୱାସ୍ଥ୍ୟରେ କୌଣସି ଉନ୍ନତି ଘଟୁ ନଥିଲା।
ବରଂ ତାର ଦେହ ଅତ୍ୟଧିକ ଖରାପ ହୋଇ ଯାଉଥିଲା।

---

**ଲିଜନ** ଏହା ବହୁତ ଅଧିକ। ରୋମୀୟ ସେନାବାହିନୀରେ ଗୋଟିଏ ଲିଜନରେ ୫,୦୦୦ ସୈନ୍ୟ ରହୁଥିଲେ।

**ବାହିନୀଭୂତ** ଅନେକ ଦୁଷ୍ଟାତ୍ମା

**ଦୁଷ୍ଟାତ୍ମା** ଏହା ଭୂତକୁ ବୁଝାଏ

**ଦେକାପଲି** ଏହା ଗ୍ରୀକ ଶବ୍ଦ। ଏହାର ଅର୍ଥ ଦଶ ନଗର। ଏହି ଅଞ୍ଚଳ ଗାଲିଲୀ ହ୍ରଦର ପୂର୍ବରେ ଅବସ୍ଥିତ ଥିଲା। ଏକଦା ସେଠାରେ ଦଶଟି ପ୍ରମୁଖ ନଗର ଅବସ୍ଥିତ ଥିଲା।

୨୭ସେହି ସ୍ତ୍ରୀ ଲୋକଟି ଯୀଶୁଙ୍କ ବିଷୟରେ ଶୁଣିବା ପରେ
ଲୋକଙ୍କ ସହିତ ତାହାଙ୍କର ଅନୁସରଣ କଲା। ସେ ପଛ
ପଟରୁ ଆସି ଯୀଶୁଙ୍କ ନିକଟତର ହେଲା ଓ ତାହାଙ୍କ ବସ୍ତ୍ର
ଛୁଇଁଦେଲା। ୨୮ସେ ମନେ ମନେ କହୁଥିଲା, "ଯଦି ମୁଁ
ଖାଲି ଟିକିଏ ତାହାଙ୍କର ବସ୍ତ୍ର ଛୁଁଇ ପାରିବି ତେବେ ଭଲ
ହୋଇଯିବି।" ୨୯ସେ ଯୀଶୁଙ୍କ ବସ୍ତ୍ର ଛୁଇଁବା ମାତ୍ରେ ତାର
ରକ୍ତ ସ୍ରାବ ବନ୍ଦ ହୋଇଗଲା ଓ ତାର ଶରୀରରେ ରୋଗ
ଭଲ ହୋଇଗଲା ବୋଲି ସେ ଅନୁଭବ କଲା। ୩୦ସେହି
ସମୟରେ ଯୀଶୁ ଅନୁଭବ କଲେ ଯେ ତାହାଙ୍କ ଠାରୁ ଶକ୍ତି
ବାହାରି ଯାଇଛି। ସେ ଅଟକି ଗଲେ ଓ ପଛକୁ ବୁଲି ପଡ଼ି
ପଚାରିଲେ, "ମୋର ବସ୍ତ୍ର କିଏ ଛୁଇଁଲା।"
୩୧ଶିଷ୍ୟମାନେ ଯୀଶୁଙ୍କୁ କହିଲେ, "ଏଠାରେ ତ ଅନେକ
ଲୋକ ଆପଣଙ୍କ ଆଡ଼କୁ ଠେଲି ହୋଇ ଯାଉଛନ୍ତି। ଅଥଚ
ଆପଣ ପଚାରୁଛନ୍ତି, "ମୋତେ କିଏ ଛୁଇଁଲା?""
୩୨କିନ୍ତୁ ଯୀଶୁ ତାହାଙ୍କୁ କେଉଁ ଲୋକ ଛୁଇଁଲା ବୋଲି
ଚାରିଆଡ଼କୁ ଦେଖିବାକୁ ଲାଗିଲେ। ୩୩ସେହି ସ୍ତ୍ରୀ ଲୋକଟି
ଜାଣିଥିଲା ଯେ ସେ ଭଲ ହୋଇଯାଇଛି, ତେଣୁ ସେ
ଆଗକୁ ଆସି ଯୀଶୁଙ୍କ ପାଦ ତଳେ ପଡ଼ିଗଲା। ସେ
ଭୟରେ ଥରୁଥିଲା। ସେ ଯୀଶୁଙ୍କୁ ସବୁ କଥା କହିଲା।
୩୪ଯୀଶୁ ତାକୁ କହିଲେ, "ଆଗୋ ନାରୀ; ତୁମ୍ଭର ବିଶ୍ୱାସ
ତୁମ୍ଭକୁ ସୁସ୍ଥ କରି ଦେଇଛି। ଶାନ୍ତିରେ ଯାଅ ଏବଂ ତୁମ୍ଭ
ରୋଗରୁ ମୁକ୍ତ ହୁଅ।"
୩୫ଯୀଶୁ ସେଠାରେ ଏସବୁ କହୁଥିବା ସମୟରେ ଯିହୂଦୀ
ପ୍ରାର୍ଥନା ଗୃହର ଅଧିକାରୀ ଯାଈରସଙ୍କ ଘରୁ କେତେକ
ଲୋକ ଆସି ତାହାଙ୍କୁ କହିଲେ, "ତୁମ୍ଭର ଝିଅ ମରିଗଲାଣି।
ବର୍ତ୍ତମାନ ତୁମ୍ଭେ ଗୁରୁ (ଯୀଶୁ)ଙ୍କୁ ଅଯଥାରେ ଆଉ କାହିଁକି
ହଇରାଣ କରିବ?"
୩୬କିନ୍ତୁ ଯୀଶୁ ସେମାନଙ୍କ କଥା ଶୁଣିସାରି ଯିହୂଦୀ
ପ୍ରାର୍ଥନା ଗୃହର ଅଧିକାରୀଙ୍କୁ କହିଲେ, "ଭୟ କର ନାହିଁ,
କେବଳ ବିଶ୍ୱାସ କର।"
୩୭ତା'ପରେ ସେ ସମସ୍ତଙ୍କୁ ଛାଡି କେବଳ ପିତର,
ଯାକୁବ ଓ ତାହାଙ୍କ ଭାଇ ଯୋହନଙ୍କୁ ସାଙ୍ଗରେ ନେଲେ।
୩୮ସେମାନେ ଯିହୂଦୀ ପ୍ରାର୍ଥନା ସଭାର ଅଧିକାରୀଙ୍କ ଘରକୁ
ଗଲେ। ସେ ସେଠାରେ ଲୋକମାନଙ୍କୁ ଉଚ୍ଚ ସ୍ୱରରେ
ବିଳାପ କରୁଥିବାର ଦେଖିଲେ। ସେଠାରେ ବହୁତ କୋଳାହଳ
ହେଉଥିଲା। ୩୯ଯୀଶୁ ଘର ଭିତରେ ପ୍ରବେଶ କରି ଲୋକମାନଙ୍କୁ
କହିଲେ, "ତୁମ୍ଭେ ସବୁ କାହିଁକି ଏତେ ପାଟିତୁଣ୍ଡ ଓ
କାନ୍ଦାକଟା କରୁଛ? ଏ ପିଲାଟି ମରି ନାହିଁ, ସେ କେବଳ
ଶୋଇ ଯାଇଛି।" ୪୦ଏହା ଶୁଣି ସବୁ ଲୋକ ଯୀଶୁଙ୍କୁ
ପରିହାସ କଲେ। କିନ୍ତୁ ସେ ସମସ୍ତଙ୍କୁ ଘରର ବାହାରକୁ
ପଠେଇଦେଲେ। କେବଳ ପିଲାଟିର ବାପା-ମାଆ ଓ ତାହାଙ୍କ
ସହିତ ଆସିଥିବା ଶିଷ୍ୟମାନଙ୍କୁ ସାଙ୍ଗରେ ନେଇ ପିଲାଟି
ଯେଉଁ କୋଠରୀରେ ଥିଲା, ସେହି କୋଠରୀକୁ ଗଲେ।
୪୧ତା ପରେ ଯୀଶୁ ଝିଅଟିର ହାତ ଧରି ତାହାକୁ କହିଲେ,
"ଟଲିଥା, କୂମ୍" (ଅର୍ଥାତ୍ ହେ ଝିଅ, ମୁଁ ତୋତେ କହୁଛି
ଉଠ। ) ୪୨ଝିଅଟି ସଙ୍ଗେ ସଙ୍ଗେ ଉଠି ଠିଆ ହେଲା ଓ
ଚାଲିବାକୁ ଆରମ୍ଭ କଲା। (ଝିଅଟିର ବୟସ ବାର ବର୍ଷ
ଥିଲା। ) ତାର ବାପା-ମାଆ ଓ ଶିଷ୍ୟମାନେ ଅତ୍ୟନ୍ତ
ଆଶ୍ଚର୍ଯ୍ୟ ହୋଇଗଲେ। ୪୩ଯୀଶୁ ଏ କଥା ଲୋକମାନଙ୍କୁ ନ
କହିବା ପାଇଁ ଝିଅର ବାପା-ମାଆଙ୍କୁ କଡ଼ା ଭାବରେ
ନିର୍ଦ୍ଦେଶ ଦେଲେ। ତା ପରେ ଯୀଶୁ ଝିଅଟିର ବାପା-ମାଆଙ୍କୁ
ଝିଅକୁ କିଛି ଖାଇବାକୁ ଦେବାକୁ କହିଲେ।

## ଯୀଶୁ ନିଜ ଜନ୍ମ ସହରକୁ ଗଲେ

୬ ଯୀଶୁ ସେ ସ୍ଥାନ ଛାଡ଼ି ନିଜ ଜନ୍ମ ସହରକୁ ଗଲେ।
ତାହାଙ୍କ ଶିଷ୍ୟମାନେ ତାହାଙ୍କ ସହିତ ଗଲେ।
୨ବିଶ୍ରାମଦିବସରେ ଯୀଶୁ ଯିହୂଦୀୟ ପ୍ରାର୍ଥନା ଗୃହରେ ଶିକ୍ଷା
ଦେଲେ। ବହୁତ ଲୋକ ତାହାଙ୍କ ଶିକ୍ଷା ଶୁଣି ଆଶ୍ଚର୍ଯ୍ୟ
ହୋଇଗଲେ। ସେମାନେ କହିଲେ, "ଏ ଲୋକକୁ ଏସବୁ
ଶିକ୍ଷା କେଉଁଠାରୁ ପାଇଲା? ଏ ଲୋକକୁ ଏ ଉତ୍ତମ
ବିଚାରଶକ୍ତି (ବିଜ୍ଞତା) ଦେଲା କିଏ? ଆଶ୍ଚର୍ଯ୍ୟକାର୍ଯ୍ୟ କରିବା
ପାଇଁ ସେ କେଉଁଠାରୁ ଶକ୍ତି ପାଇଲା? ୩ଏ କ'ଣ ସେହି
ବଢ଼େଇ ନୁହଁନ୍ତି? ଏ କ'ଣ ମରିୟମଙ୍କ ପୁଅ, ଆଉ
ଯାକୁବ, ଯୋସି, ଯିହୂଦା ଓ ଶିମୋନଙ୍କ ଭାଇ ନୁହଁନ୍ତି?
ତାହାଙ୍କର ଭଉଣୀମାନେ କ'ଣ ଏଠାରେ ଆମ୍ଭ ସହିତ
ନାହାଁନ୍ତି?" ତେଣୁ ଯୀଶୁଙ୍କୁ ସ୍ୱୀକାର କରିବାରେ ଏହି
ଲୋକମାନେ ବାଧା ପାଇଲେ।
୪ତେଣୁ ଯୀଶୁ ଲୋକମାନଙ୍କୁ କହିଲେ, "ଅନ୍ୟମାନେ
ଜଣେ ଭବିଷ୍ୟଦ୍‌ବକ୍ତାଙ୍କୁ ସମ୍ମାନ ଦେଇଥାନ୍ତି।। କିନ୍ତୁ ତାହାଙ୍କ
ନିଜ ସହର ଲୋକେ, ତାହାଙ୍କର ସମ୍ପର୍କୀୟମାନେ ଓ
ତାହାଙ୍କ ନିଜ ପରିବାରର ଲୋକମାନେ ତାହାଙ୍କୁ ସମ୍ମାନ
କରନ୍ତି ନାହିଁ।" ୫ଅତଏବ ସେଠାରେ ଯୀଶୁ କୌଣସି
ଆଶ୍ଚର୍ଯ୍ୟକାର୍ଯ୍ୟ ପ୍ରଦର୍ଶନ କରି ପାରିଲେ ନାହିଁ। କେବଳ
କେତେକ ରୋଗୀଙ୍କ ଉପରେ ହାତ ରଖି ସେ ସେମାନଙ୍କୁ
ସୁସ୍ଥ କରିଲେ। ୬ଏ ଲୋକମାନଙ୍କର କୌଣସି ବିଶ୍ୱାସ ନ
ଥିବାରୁ ଯୀଶୁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ। ତା'ପରେ
ଯୀଶୁ ସେ ଅଞ୍ଚଳର ଅନ୍ୟ ସବୁ ଗାଁକୁ ଯାଇ ସେଠାରେ
ଶିକ୍ଷା ଦେବାକୁ ଲାଗିଲେ। ୭ଯୀଶୁ ବାରଜଣ ଶିଷ୍ୟଙ୍କୁ ଏକାଠି
ଡାକିଲେ। ସେ ସେମାନଙ୍କୁ ଦୁଇ-ଦୁଇ ଜଣ କରି ବାହାରକୁ
ପଠାଇଲେ। ସେ ସେମାନଙ୍କୁ ଦୁଷ୍ଟାତ୍ମାମାନଙ୍କ ଉପରେ
କ୍ଷମତା ପ୍ରଦାନ କଲେ। ୮ସେ ଶିଷ୍ୟମାନଙ୍କୁ ନିର୍ଦ୍ଦେଶ
ଦେଲେ, "ତୁମ୍ଭେ ଯାତ୍ରା କାଳରେ ବାଡ଼ିଟିଏ ଛଡ଼ା ଆଉ
କିଛି ନେବ ନାହିଁ। ରୋଟୀ, ଝୁଲା କି ପକେଟରେ କିଛି
ହେଲେ ଟଙ୍କା ମଧ୍ୟ ନେବ ନାହିଁ। ୯ତୁମ୍ଭେ ଚପଲ ପିନ୍ଧି
ପାରିବ। କିନ୍ତୁ କେବଳ ପିନ୍ଧିଥିବା ଲୁଗାପଟା ଛଡ଼ା କୌଣସି
ଅଧିକ ଲୁଗାପଟା ନେବ ନାହିଁ। ୧୦କୌଣସି ଘରେ ପ୍ରବେଶ
କଲେ ସେ ସହର ଛାଡ଼ି ଚାଲିଯିବା ପର୍ଯ୍ୟନ୍ତ ସେହି ଘରେ
ରୁହ। ୧୧ଯଦି କୌଣସି ସହରରେ ସେମାନେ ତୁମକୁ
ସ୍ୱାଗତ ନ କରନ୍ତି କିମ୍ବା ସେମାନେ ତୁମ୍ଭ କଥା ନ
ଶୁଣନ୍ତି, ତେବେ ସେ ସହର ଛାଡ଼ି ଚାଲି ଯାଅ। ଛାଡିଲା
ବେଳେ ତୁମ ପାଦରୁ ସେଠାକାର ଧୂଳି ଝାଡ଼ି ଦିଅ। ତାହା
ସେମାନଙ୍କ ପାଇଁ ଚେତାବନୀ ହେବ।"
୧୨ଶିଷ୍ୟମାନେ ସେଠାରୁ ଅନ୍ୟ ସ୍ଥାନକୁ ଚାଲିଗଲେ।
ସେମାନେ ଘୋଷଣା କଲେ ଯେ ଲୋକମାନେ ଅନୁତାପ

କରନ୍ତୁ । ହୃଦୟ ପରିବର୍ତ୍ତନ କରନ୍ତୁ । ୧୩ସେମାନେ ଲୋକଙ୍କ
ଦେହରୁ ଅନେକ ଭୂତଙ୍କୁ ତଡ଼ି ଦେଲେ । ସେମାନେ
ଅନେକ ରୋଗୀଙ୍କୁ ତୈଳ ଲଗାଇ ସୁସ୍ଥ କରି ଦେଲେ ।
ହେରୋଦଙ୍କ ଧାରଣା ଥିଲା ଯେ ଯୀଶୁହିଁ ବାପ୍ତିଜକ ଯୋହନ ।

### ହେରୋଦ ଭାବିଛନ୍ତି ଯୀଶୁ ହେଉଛନ୍ତି ବାପ୍ତିଜକ ଯୋହନ

୧୪ରାଜା ହେରୋଦ ଯୀଶୁଙ୍କ ବିଷୟରେ ଶୁଣିଲେ ।
କାରଣ ବର୍ତ୍ତମାନ ଯୀଶୁଙ୍କ ଖ୍ୟାତି ଚାରିଆଡ଼େ ବ୍ୟାପି
ଯାଇଥିଲା । କେତେକ ଲୋକ କହୁଥିଲେ, "ଯୀଶୁ ହେଉଛନ୍ତି
ବାପ୍ତିଜକ ଯୋହନ । ସେ ମୃତ୍ୟୁରୁ ପୁନରୁତ୍ଥିତ ହୋଇଛନ୍ତି ।
ସେଥି ଯୋଗୁ ସେ ଆଶ୍ଚର୍ଯ୍ୟକାର୍ଯ୍ୟ କରି ପାରୁଛନ୍ତି ।"
୧୫ଅନ୍ୟମାନେ କହୁଥିଲେ, "ସେ ହେଉଛନ୍ତି ଏଲିୟ ।"
ଆଉ କେତେକ କହୁଥିଲେ, "ଯୀଶୁ ହେଉଛନ୍ତି
ଭବିଷ୍ୟଦ୍‌ବକ୍ତା, ପ୍ରାଚୀନ କାଳର ଭବିଷ୍ୟଦ୍‌ବକ୍ତାଙ୍କ ଭଳି
ସେ ମଧ୍ୟ ଜଣେ ଭବିଷ୍ୟଦ୍‌ବକ୍ତା ।"
୧୬ହେରୋଦ ଯୀଶୁଙ୍କ ବିଷୟରେ ଏସବୁ ଶୁଣିଲେ । ସେ
କହିଲେ, "ମୁଁ ଯୋହନଙ୍କୁ ମୁଣ୍ଡ-କାଟ କରି ହତ୍ୟା କରିଛି ।
ବର୍ତ୍ତମାନ ଯୋହନ ମୃତ୍ୟୁରୁ ପୁଣି ବଞ୍ଚି ଉଠିଛନ୍ତି ।"

### ବାପ୍ତିଜକ ଯୋହନଙ୍କୁ କିଭଳି ହତ୍ୟା କରାଯାଇଥିଲା

୧୭ନିଜେ ହେରୋଦ ଯୋହନଙ୍କୁ ବନ୍ଦୀ କରିବା ପାଇଁ
ତାହାଙ୍କ ସୈନ୍ୟମାନଙ୍କୁ ଆଦେଶ ଦେଇଥିଲେ । ଯୋହନଙ୍କୁ
କାରାଗାରରେ ରଖାଯାଇଥିଲା । ହେରୋଦ ତାହାଙ୍କ ସ୍ତ୍ରୀ
ହେରୋଦିଆଙ୍କୁ ଖୁସି କରିବା ପାଇଁ ଏହା କରିଥିଲେ ।
ପ୍ରଥମେ ହେରୋଦିଆ ହେରୋଦଙ୍କ ଭାଇ ଫିଲିପ୍‌ଙ୍କ ସ୍ତ୍ରୀ
ଥିଲେ । ପରେ ହେରୋଦ ତାହାଙ୍କୁ ବିବାହ କରିଥିଲେ ।
୧୮ଯୋହନ ହେରୋଦଙ୍କୁ କହିଥିଲେ, "ତୁମ୍ଭ ଭାଇଙ୍କ ସ୍ତ୍ରୀଙ୍କୁ
ବିବାହ କରିବା ଠିକ୍ ନୁହେଁ ।" ୧୯ତେଣୁ ହେରୋଦିଆ
ଯୋହନଙ୍କୁ ଶତ୍ରୁ ଭାବରେ ଦେଖୁଥିଲେ । ସେ ଯୋହନଙ୍କୁ
ହତ୍ୟା କରିବାକୁ ଚାହୁଁଥିଲେ, କିନ୍ତୁ ସେ ଏଥିପାଇଁ ହେରୋଦଙ୍କୁ
ପ୍ରବର୍ତ୍ତାଇବାରେ ଅସଫଳ ହୋଇଥିଲେ । ୨୦ହେରୋଦ
ଯୋହନଙ୍କୁ ମାରିବାକୁ ଭୟ କରୁଥିଲେ । ସେ ଜାଣି ଥିଲେ
ଯେ ସମସ୍ତ ଲୋକ ଯୋହନଙ୍କୁ ଜଣେ ଭଲ ଓ ପବିତ୍ର
ଲୋକ ଭାବୁଥିଲେ । ତେଣୁ ହେରୋଦ ଯୋହନଙ୍କୁ ରକ୍ଷା
କରୁଥିଲେ । ଯୋହନଙ୍କ ଉପଦେଶ ଶୁଣିବାକୁ ହେରୋଦ
ଖୁବ୍ ଭଲ ପାଉଥିଲେ । ତଥାପି ଯୋହନଙ୍କ ଉପଦେଶ
ହେରୋଦଙ୍କୁ ସବୁବେଳେ ବିଚଳିତ କରୁଥିଲା ।
୨୧କିଛି ଦିନ ପରେ ହେରୋଦଙ୍କ ଜନ୍ମ ଦିନରେ
ଯୋହନଙ୍କ ମୃତ୍ୟୁ ଘଟାଇବା ପାଇଁ ହେରୋଦିଆଙ୍କୁ ଗୋଟିଏ
ସୁଯୋଗ ମିଳିଗଲା । ତାହାଙ୍କର ଉଚ୍ଚ ଅଧିକାରୀ, ସେନାପତିଗଣ
ଏବଂ ଗାଲିଲୀର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ହେରୋଦ ରାତ୍ରି
ସମୟରେ ଭୋଜି ଦେଉଥାନ୍ତି । ୨୨ହେରଦିଆଙ୍କ ଝିଅ ଭିତରକୁ
ଆସି ନାଚିଲା । ତା ନାଚରେ ଅତିଥିଗଣ ଓ ନିଜେ
ହେରୋଦ ବହୁତ ଖୁସି ହେଲେ ।
ହେରୋଦ ଝିଅକୁ କହିଲେ, "ତୋର ଯାହା ଦରକାର
ମୋତେ ମାଗେ । ମୁଁ ତୋତେ ତାହା ଦେବି ।" ୨୩ହେରୋଦ
ଶପଥ ପୂର୍ବକ ମଧ୍ୟ କହିଲେ, "ତୁ ଯାହା ମାଗିବୁ ମୁଁ
ତୋତେ ତାହା ଦେବ । ଏପରିକି ମୁଁ ମୋ ରାଜ୍ୟର ଅଧା
ଭାଗ ତୋତେ ଦେଇପାରେ ।"
୨୪ଝିଅଟି ତା ମାଆ ପାଖକୁ ଯାଇ ପଚାରିଲା, "ରାଜା
ହେରୋଦଙ୍କୁ ମୁଁ କ'ଣ ମାଗିବି?"
ତା ମାଆ କହିଲେ, "ବାପ୍ତିଜକ ଯୋହନଙ୍କ ମୁଣ୍ଡ
ମାଗେ ।"
୨୫ଝିଅଟି ଅତି ଶୀଘ୍ର ରାଜାଙ୍କ ପାଖକୁ ଚାଲି ଗଲା । ସେ
ରାଜାଙ୍କୁ କହିଲା, "ମୋତେ ବାପ୍ତିଜକ ଯୋହନଙ୍କ ମୁଣ୍ଡ
ଗୋଟିଏ ଥାଳିରେ ରଖି ବର୍ତ୍ତମାନ ଦିଅ ।"
୨୬ରାଜା ହେରୋଦ ବହୁତ ଦୁଃଖ କଲେ । କିନ୍ତୁ ସେ
ଝିଅର ଇଚ୍ଛା ଅନୁସାରେ ଦାନ ଦେବାକୁ ଶପଥ କରି
ସାରିଥିଲେ । ସେଠାରେ ହେରୋଦଙ୍କ ସହିତ ଖାଉଥିବା
ଅତିଥିମାନେ ମଧ୍ୟ ହେରୋଦଙ୍କ ଶପଥ ବିଷୟରେ ଶୁଣି
ସାରିଥିଲେ । ତେଣୁ ଝିଅ ଯାହା ମାଗିଥିଲା, ତାହା ଦେବା
ପାଇଁ ହେରୋଦ ମନା କରିବାକୁ ଇଚ୍ଛା କଲେନାହିଁ । ୨୭ଏଣୁ
ରାଜା ଯୋହନଙ୍କ ମୁଣ୍ଡ ନେଇ ଆସିବାକୁ ଆଜ୍ଞା ଦେଇ
ତୁରନ୍ତ ଜଣେ ସୈନ୍ୟକୁ ପଠାଇଲେ । ସେ ଯାଇ କାରାଗାରରେ
ଯୋହନଙ୍କ ମୁଣ୍ଡ କାଟି ଦେଲା । ୨୮ଯୋହନଙ୍କ ସେହି ମୁଣ୍ଡ
ସେ ଗୋଟିଏ ଥାଳିରେ ଆଣି ଝିଅକୁ ତାହା ଦେଲା । ସେ
ଝିଅ ସେହି ମୁଣ୍ଡ ନେଇ ତା ମାଆକୁ ଦେଲା । ୨୯ଏହି ସବୁ
ଘଟଣା ଯୋହନଙ୍କ ଶିଷ୍ୟମାନେ ଶୁଣିଲେ । ସେମାନେ ଆସି
ଯୋହନଙ୍କ ମୃତ ଶରୀରକୁ ନେଇ କବର ଦେଲେ ।

### ଯୀଶୁ ପାଞ୍ଚ ହଜାରରୁ ଅଧିକ ଲୋକଙ୍କୁ ଖୁଆଇଲେ

୩୦ଯେଉଁ ପ୍ରେରିତମାନଙ୍କୁ ଯୀଶୁ ପଠାଇଥିଲେ, ସେମାନେ
ଫେରି ଆସିଲେ । ସେମାନେ ଯୀଶୁଙ୍କ ଚାରିପଟେ ଏକାଠି
ହୋଇ ସେମାନେ ଯାହା ସବୁ କରିଥିଲେ ଓ ଲୋକଙ୍କୁ
ଯାହା ସବୁ ଶିକ୍ଷା ଦେଇଥିଲେ, ସେ ସବୁ ତାହାଙ୍କୁ
କହିଲେ । ୩୧ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ବହୁତ ଗହଳି
ସ୍ଥାନରେ ଥିଲେ । ସେଠାରେ ବହୁତ ଲୋକ ଥିଲେ । ତେଣୁ
ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ସେଠାରେ ଖାଇବାକୁ ମଧ୍ୟ
ଟିକିଏ ସମୟ ପାଉ ନଥିଲେ । ଯୀଶୁ ଶିଷ୍ୟମାନଙ୍କୁ କହିଲେ,
"ତୁମ୍ଭେମାନେ ମୋ ସହିତ ଗୋଟିଏ ନିର୍ଜନ ସ୍ଥାନକୁ ଚାଲ
ଓ ସେଠାରେ ଆମ୍ଭେ ଟିକେ ବିଶ୍ରାମ ନେବା ।"
୩୨ତେଣୁ ସେମାନେ ଗୋଟିଏ ଡଙ୍ଗାରେ ବସି ଗୋଟିଏ
ନିର୍ଜନ ସ୍ଥାନକୁ ଚାଲିଗଲେ । ୩୩କିନ୍ତୁ ବହୁତ ଲୋକ
ସେମାନଙ୍କୁ ଚାଲି ଯାଉ ଥିବାର ଦେଖିଲେ ଓ ଚିହ୍ନି ମଧ୍ୟ
ପାରିଲେ । ତେଣୁ ସମସ୍ତ ନଗରରୁ ଲୋକେ ସ୍ଥଳ ପଥ
ଦେଇ ଯୀଶୁଙ୍କ ଯାଉଥିବା ସ୍ଥାନରେ ଯାଇ ପହଞ୍ଚି ଗଲେ ।
ଯୀଶୁ ପହଞ୍ଚିବା ପୂର୍ବରୁ, ସେମାନେ ସେଠାରେ ପହଞ୍ଚିଗଲେ ।
୩୪ଯୀଶୁ ଯେତେବେଳେ ସେଠାରେ ପହଞ୍ଚିଲେ, ସେ ଦେଖିଲେ
ଯେ ବହୁତ ଲୋକ ଅପେକ୍ଷା କରିଛନ୍ତି । ଯୀଶୁ ସେମାନଙ୍କ
ପାଇଁ ଦୁଃଖ ଅନୁଭବ କଲେ । କାରଣ ସେମାନେ ମେଷପାଳକ
ବିହୀନ ଅରକ୍ଷିତ ମେଣ୍ଢାପଲ ଭଳି ଥିଲେ । ଯୀଶୁ ସେମାନଙ୍କୁ
ଅନେକ ଉପଦେଶ ଦେଲେ ।
୩୫ସେତେବେଳେକୁ ଦିନ ଗଡ଼ି ଯାଇଥିଲା । ତେଣୁ
ଶିଷ୍ୟମାନେ ଯୀଶୁଙ୍କ ପାଖକୁ ଆସି କହିଲେ, "ଏହା

ଗୋଟିଏ ଜନଶୂନ୍ୟ ଜାଗା। ଦିନ ଗଡ଼ିଗଲାଣି। ୩୬ତେଣୁ
ଲୋକମାନଙ୍କୁ ଆଖ-ପାଖ ପଲ୍ଲୀ ଓ ଗାଁଗୁଡ଼ିକୁ ପଠାଅ।
ତା'ହେଲେ ସେଠାକୁ ଯାଇ ସେମାନେ ତାହାଙ୍କ ଖାଇବା
ପାଇଁ କିଛି ଖାଦ୍ୟ କିଣି ଆଣି ପାରିବେ।"
୩୭ଯୀଶୁ କିନ୍ତୁ ସେମାନଙ୍କୁ କହିଲେ, "ତୁମ୍ଭେମାନେ
ସେମାନଙ୍କୁ ଖାଇବାକୁ ଦିଅ।"
ଶିଷ୍ୟମାନେ ପଚାରିଲେ, "ଆମ୍ଭେ କ'ଣ ଯାଇ ରୋଟୀ
କିଣି ଆଣି ସେମାନଙ୍କୁ ଖାଇବାକୁ ଦେବୁ? ରୋଟୀ କିଣିବାକୁ
ସେତିକି ଅର୍ଥ ଯୋଗାଡ଼ କରିବାକୁ ହେଲେ ଆମ୍ଭ ସମସ୍ତଙ୍କୁ
ମାସେ କାଳ କାମ କରିବାକୁ ହେବ।"
୩୮ଯୀଶୁ ଶିଷ୍ୟମାନଙ୍କୁ ପଚାରିଲେ, "ଯାଇ ଦେଖ, ତୁମ୍ଭ
ପାଖରେ କେତେ ଖଣ୍ଡ ରୋଟୀ ଅଛି?"
ଶିଷ୍ୟମାନେ ରୋଟୀ ଗଣିସାରି ଯୀଶୁଙ୍କୁ କହିଲେ, "ଆମ୍ଭ
ପାଖରେ ପାଞ୍ଚଟି ରୋଟୀ ଓ ଦୁଇଟି ମାଛ ଅଛି।"
୩୯ଯୀଶୁ ଆଜ୍ଞା ଦେଲେ, "ଲୋକମାନଙ୍କୁ ପଡ଼ିଆର
ସବୁଜ ଘାସ ଉପରେ ଦଳ-ଦଳ କରି ବସେଇ ଦିଅ।"
୪୦ଲୋକମାନେ ପ୍ରତି ଦଳରେ ପଚାଶ-ପଚାଶ ବା ଶହେ-ଶହେ
ହୋଇ ବସିଗଲେ। ୪୧ତା'ପରେ ଯୀଶୁ ପାଞ୍ଚଟି ରୋଟୀ ଓ
ଦୁଇଟି ମାଛକୁ ନେଇ ସ୍ୱର୍ଗ ଆଡ଼କୁ ଚାହିଁ ପରମେଶ୍ୱରଙ୍କୁ
ରୋଟୀ ପାଇଁ ଧନ୍ୟବାଦ ଦେଲେ। ସେ ରୋଟୀ ଗୁଡ଼ିକୁ
ଛିଣ୍ଡାଇ ଖଣ୍ଡ ଖଣ୍ଡ କରି ଶିଷ୍ୟମାନଙ୍କୁ ଲୋକମାନଙ୍କ
ମଧ୍ୟରେ ପରିଶିବାକୁ ଦେଲେ। ତା'ପରେ ମାଛକୁ ମଧ୍ୟ ସେ
ଖଣ୍ଡ-ଖଣ୍ଡ କଲେ ଓ ଲୋକଙ୍କ ମଧ୍ୟରେ ସେହିଭଳି ବାଣ୍ଟି
ଦେଲେ। ୪୨ସମସ୍ତେ ପୁରା ପେଟ ଖାଇ ତୃପ୍ତ ହେଲେ।
୪୩ସମସ୍ତେ ଖାଇ ସାରିବା ପରେ ଶିଷ୍ୟମାନେ ବଳକା
ରୋଟୀ ଖଣ୍ଡ ଓ ମାଛ ଖଣ୍ଡ ଗୁଡ଼ିକୁ ବାରଟି ଟୋକେଇରେ
ସଂପୂର୍ଣ୍ଣ କରି ଭର୍ତ୍ତି କଲେ। ୪୪ଯେଉଁମାନେ ରୋଟୀ
ଖାଇଥିଲେ ସେମାନଙ୍କ ମଧ୍ୟରେ କେବଳ ପୁରୁଷଙ୍କ ସଂଖ୍ୟା
ପାଞ୍ଚ ହଜାର ଥିଲା।

## ଯୀଶୁ ପାଣି ଉପରେ ଚାଲିଲେ

୪୫ତା'ପରେ ଯୀଶୁ ଶିଷ୍ୟମାନଙ୍କୁ ଡ଼ଙ୍ଗା ଭିତରକୁ ଯିବାକୁ
କହିଲେ। ଯୀଶୁ ଶିଷ୍ୟମାନଙ୍କୁ ହ୍ରଦର ଅପର ପାର୍ଶ୍ୱରେ ଥିବା
ବେଥ୍ସାଇଦାକୁ ଆଗୁଆ ଯିବାକୁ କହିଲେ ଓ ସେ ନିଜେ
ପରେ ଯିବେ ବୋଲି କହିଲେ। ସେଠାରେ ଥିବା ଲୋକମାନଙ୍କୁ
ଘରକୁ ଫେରିଯିବା ପାଇଁ କହି ସେ ରହିଲେ। ୪୬ଯୀଶୁ
ଲୋକମାନଙ୍କୁ ବିଦାୟ ଦେବା ପରେ ପ୍ରାର୍ଥନା କରିବା
ଉଦ୍ଦେଶ୍ୟରେ ପାହାଡ଼ ଉପରକୁ ଗଲେ।
୪୭ସନ୍ଧ୍ୟା ହେବା ପରେ ମଧ୍ୟ ଡ଼ଙ୍ଗାଟି ହ୍ରଦ ମଝିରେ
ଥିଲା ଓ ଯୀଶୁ ସ୍ଥଳ ଭାଗରେ ଏକୁଟିଆ ଥିଲେ। ୪୮ଯୀଶୁ
ଦେଖିଲେ ଯେ ଶିଷ୍ୟମାନଙ୍କୁ ଡ଼ଙ୍ଗାର ଆହୁଲା ମାରିବା ପାଇଁ
ବଡ଼ ଅସୁବିଧା ହେଉଛି। କାରଣ ସେତେବେଳେ ପବନ
ତାହାଙ୍କର ବିପରୀତ ଦିଗରେ ବହୁଥିଲା। ପ୍ରାତଃକାଳର ପ୍ରାୟ
ତିନିଟାରୁ ଛଅଟା ଭିତରେ ଯୀଶୁ ହ୍ରଦ ଉପରେ ଚାଲି ଚାଲି
ଶିଷ୍ୟମାନଙ୍କ ପାଖକୁ ଆସିଲେ। ସେ ଶିଷ୍ୟମାନଙ୍କ ପାଖ
ଦେଇ ଯେତେବେଳେ ଆଗେଇ ଯିବା ଉପରେ,
୪୯ସେତେବେଳେ ତାହାଙ୍କ ଶିଷ୍ୟମାନେ ତାହାଙ୍କୁ ହ୍ରଦ
ଉପରେ ଚାଲୁଥିବାର ଦେଖି ତାହାଙ୍କୁ ଭୂତ ବୋଲି ଭାବିନେଲେ।
ସେମାନେ ଚିତ୍କାର କରିବାକୁ ଲାଗିଲେ।। ୫୦ସମସ୍ତ ଶିଷ୍ୟମାନେ
ଯେମିତି ତାହାଙ୍କୁ ଦେଖିଲେ ସେମାନେ ଡରିଗଲେ। ଯୀଶୁ
ତୁରନ୍ତ ସେମାନଙ୍କୁ କହିଲେ, "ସାହାସ ଧର। ଏହି ମୁଁ,
ଭୟ କର ନାହିଁ।" ୫୧ତା'ପରେ ସେ ଶିଷ୍ୟମାନଙ୍କ ସହିତ
ଡ଼ଙ୍ଗାରେ ଚଢ଼ିଗଲେ। ପବନ ବନ୍ଦ ହୋଇଗଲା। ଏଥିରେ
ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ। ୫୨ସେମାନେ ରୋଟୀ
ସମ୍ବନ୍ଧୀୟ ଆଶ୍ଚର୍ଯ୍ୟକାର୍ଯ୍ୟକୁ ବୁଝି ପାରି ନଥିଲେ। ସେମାନଙ୍କ
ବୁଦ୍ଧି ଜଡ଼ ହୋଇଯାଇଥିଲା।
୫୩ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ହ୍ରଦ ପାର ହୋଇ
ଗିନ୍ନେସରତ୍‌ରେ ପହଞ୍ଚିଲେ। ସେମାନେ ଡ଼ଙ୍ଗାଟି ସେଠାରେ
ବାନ୍ଧି ଦେଲେ। ୫୪ଡ଼ଙ୍ଗାରୁ ଓହ୍ଲେଇ ବାହାରକୁ ଆସିବା
ପରେ ଲୋକମାନେ ଯୀଶୁଙ୍କୁ ଦେଖି ଚିହ୍ନି ପାରିଲେ।
୫୫ତା'ପରେ ସେମାନେ ଯୀଶୁ ଆସିଥିବା ଖବର ଲୋକଙ୍କୁ
ଦେବା ପାଇଁ ସେ ଅଞ୍ଚଳର ପ୍ରତ୍ୟେକ ସ୍ଥାନକୁ ଦୌଡ଼ି
ଗଲେ। ଯୀଶୁ ଯେଉଁ ସ୍ଥାନକୁ ଗଲେ, ସେଠାରେ ଖବର
ବ୍ୟାପିଗଲା ଓ ସେଠାକୁ ଲୋକମାନେ ରୋଗୀମାନଙ୍କୁ ଖଟିଆରେ
ନେଇ ଆସିଲେ। ୫୬ଯୀଶୁ ସେ ଅଞ୍ଚଳର ନଗର, ଗାଁ ଓ
ପୁରପଲ୍ଲୀ ଯେଉଁଆଡ଼େ ଗଲେ, ଲୋକେ ରୋଗୀମାନଙ୍କୁ
ସେଠାକାର ହାଟ ବଜାରରେ ଥୋଇ ଦେଇ ତାହାଙ୍କୁ
ଅନୁରୋଧ କରୁଥିଲେ, ଯେ ସେ ତାହାଙ୍କ ପିନ୍ଧା ଲୁଗାରୁ
ଟିକିଏ ସେମାନଙ୍କୁ ଛୁଇଁ ଦେବାକୁ ସୁଯୋଗ ଦିଅନ୍ତୁ ।
ଯେଉଁମାନେ ତାହାଙ୍କୁ ଛୁଇଁ ପାରିଲେ, ସେମାନେ ସମସ୍ତେ
ସୁସ୍ଥ ହୋଇଗଲେ।

## ମନୁଷ୍ୟକୃତ ନିୟମ ଠାରୁ ପରମେଶ୍ୱରଙ୍କ ବିଧାନ ମହାନ

୭ କେତେକ ଫାରୂଶୀ ଓ କେତେକ ଧର୍ମଶାସ୍ତ୍ରୀ
ଯିରୂଶାଲମରୁ ଆସି ଯୀଶୁଙ୍କ ଚାରିପଟେ ରୁଣ୍ଡ
ହୋଇଗଲେ। ୨ସେମାନେ ଯୀଶୁଙ୍କର କେତେକ ଶିଷ୍ୟଙ୍କୁ
ଅପବିତ୍ର ହାତରେ (ଅର୍ଥାତ ନିର୍ଦ୍ଧାରିତ ପଦ୍ଧତିରେ ହାତ ନ
ଧୋଇ) ଖାଉଥିବାର ଦେଖିଲେ। ୩ଫାରୂଶୀ ଓ ସମସ୍ତ
ଯିହୂଦୀମାନେ ନିର୍ଦ୍ଧାରିତ ପଦ୍ଧତିରେ ହାତ ନ ଧୋଇ
କେବେହେଲେ ଖାଉ ନଥିଲେ। ସେମାନେ ତାହାଙ୍କର
ମହାନ ପୂର୍ବ ପୁରୁଷଙ୍କ ଦ୍ୱାରା ପ୍ରଚଳିତ ପରମ୍ପରା ପାଳନ
କରିବା ପାଇଁ ଏହା କରୁଥିଲେ। ୪ଏପରିକି ବଜାରରୁ
ଅଣାଯାଉଥିବା ଖାଦ୍ୟ ପଦାର୍ଥକୁ ସେମାନେ ନିର୍ଦ୍ଧାରିତ ପଦ୍ଧତିରେ
ନ ଧୋଇ ଖାଆନ୍ତି ନାହିଁ। ଗିନା, କଳସ, ତମ୍ବାପାତ୍ର ଆଦି
ମାଜିବା, ଧୋଇବା ଭଳି ଅନେକ ପରମ୍ପରା ସେମାନେ
ପାଳନ କରନ୍ତି।
୫ତେଣୁ ଫାରୂଶୀ ଓ ଧର୍ମଶାସ୍ତ୍ରୀମାନେ ଯୀଶୁଙ୍କୁ ପଚାରିଲେ,
"ତୁମ୍ଭର ଶିଷ୍ୟମାନେ ପୂର୍ବ ପୁରୁଷରୁ ପ୍ରଚଳିତ ପରମ୍ପରା
ଗୁଡ଼ିକୁ କାହିଁକି ପାଳୁ ନାହାଁନ୍ତି? ସେମାନେ ଅପବିତ୍ର
ହାତରେ ଖାଆନ୍ତି, ସେମାନେ ଏଭଳି କାହିଁକି କରନ୍ତି?"
୬ଯୀଶୁ କହିଲେ, "ତୁମ୍ଭଭଳି କପଟୀମାନଙ୍କ ସମ୍ବନ୍ଧରେ
ଯିଶାୟ ଯାହା ଭବିଷ୍ୟଦ୍‌ବାଣୀ କରିଥିଲେ ତାହା ଯଥାର୍ଥ,
ଯିଶାୟ ଲେଖିଥିଲେ,

‘ଏ ଲୋକମାନେ କେବଳ ମୁହଁରେ ମୋର ସମ୍ମାନ
କରନ୍ତ, କନ୍ତୁ ସେମାନଙ୍କ ମନ ମୋ ଠାରୁ ବହୁ
ଦୂରରେ।
୭ ସେମାନଙ୍କର ମୋ ପାଇଁ ଉପାସନା ନରର୍ଥକ,
କାରଣ ସେମାନେ ଲୋକଙ୍କୁ ତାହାଙ୍କ ସିଦ୍ଧାନ୍ତ
ଭାବରେ ମନୁଷ୍ୟକୃତ ନୟିମ ମାନବାକୁ ଉପଦେଶ
ଦଅନ୍ତ।’ ଯିଶାଇୟ ୨୯:୧୩

୮ତୁମ୍ଭେମାନେ ପରମେଶ୍ୱରଙ୍କ ଆଦେଶ ତ୍ୟାଗ କରଛ।
ଏବେ ତୁମ୍ଭେମାନେ ମନୁଷ୍ୟକୃତ ପରମ୍ପରାକୁ ଧର ବସିଛ।”
୯ଯୀଶୁ ପୁଣି ସେମାନଙ୍କୁ କହଲେ, “ନଜ ପରମ୍ପରା
ପାଳନ କରବା ପାଇଁ ତୁମ୍ଭେମାନେ ପରମେଶ୍ୱରଙ୍କ ଆଦେଶ
ତ୍ୟାଗ କର ଦେଇ ନଜକୁ ଚତୁର ବୋଲ ଭାବୁଛ।
୧୦ମୋଶା କହଥିଲେ, ‘ତୁମ୍ଭେ ତୁମ୍ଭ ବାପା-ମାଆଙ୍କୁ ସମ୍ମାନ
କର’*। ସେ ମଧ କହଥିଲେ, ‘ଯେଉଁଲୋକ ନଜ
ବାପା-ମାଆଙ୍କୁ ଖରାପ କଥା କହେ, ତାକୁ ମାରଦଆଯିବା
ଉଚତ’*। ୧୧କିନ୍ତୁ ତୁମ୍ଭେମାନେ ଉପଦେଶ ଦେଉଛ ଯେ
ଜଣେ ଲୋକ ତାର ବାପା ମାଆଙ୍କୁ କହ ପାରବ, ‘ମୋର
ଯେଉଁ ପଦାର୍ଥଟିରେ ତୁମ୍ଭର ଲାଭ ହୋଇ ପାର ଥାଆନ୍ତା,
ସେହ ପଦାର୍ଥ ମୁଁ ତୁମ୍ଭ ପାଇଁ ବ୍ୟବହାର କର ପାରବନାହିଁ,
କାରଣ ତାହା ମୁଁ ପରମେଶ୍ୱରଙ୍କୁ ସମର୍ପଣ କରବ।’ ୧୨ଏହ
ଭଳ, ସେହ ଲୋକକୁ ତାର ବାପା ମାଆଙ୍କ ପାଇଁ କଛ
କରବା ପାଇଁ ତୁମ୍ଭେମାନେ ଅନୁମତି ଦେଉ ନାହିଁ। ୧୩ନଜ
ନୟିମ ପାଳବା ଅଧିକ ମହତ୍ୱପୂର୍ଣ୍ଣ ବୋଲ ମନେ କର
ତୁମ୍ଭେମାନେ ଲୋକମାନଙ୍କୁ ତାହା ପାଳବାକୁ ଉପଦେଶ
ଦେଉଛ। ତୁମ୍ଭେମାନେ ପରମେଶ୍ୱରଙ୍କ ଆଦେଶ ପାଳବା
ମହତ୍ୱପୂର୍ଣ୍ଣ ନୁହେଁ ବୋଲ ଉପଦେଶ ଦେଇ ତାହା ଏଡ଼େଇ
ଦେଉଛ। ଏହଭଳ ଅନେକ କାମ ତୁମ୍ଭେମାନେ କରୁଛ।”
୧୪ଯୀଶୁ ଲୋକମାନଙ୍କୁ ପୁଣି ପାଖକୁ ଡାକଲେ। ସେ
କହଲେ ପ୍ରତ୍ୟେକ ଲୋକ ମୋର କଥା ଶୁଣ ଓ ବୁଝ।
୧୫ଏଭଳ କୌଣସି ବସ୍ତୁ ନାହିଁ, ଯାହା ବାହାରୁ ମନୁଷ୍ୟ
ଭିତରକୁ ପ୍ରବେଶ କର ତାକୁ ଅଶୁଦ୍ଧ କର ପକାଇବ।
ବରଂ ଯେଉଁ ବସ୍ତୁ ମନୁଷ୍ୟର ଭିତରୁ ବାହାର ଥାଏ, ତାହା
ହିଁ ତାକୁ ଅଶୁଦ୍ଧ କରପାରେ। ୧୬*
୧୭ତା’ପରେ ଯୀଶୁ ଲୋକମାନଙ୍କୁ ଛାଡ଼ ଘର ଭିତରକୁ
ଗଲେ। ଶିଷ୍ୟମାନେ ତାହାଙ୍କୁ ଏ ଦୃଷ୍ଟାନ୍ତ କଥା ବଷିୟରେ
ପଚାରଲେ। ୧୮ଯୀଶୁ କହଲେ, “ତୁମ୍ଭେମାନେ ମଧ, ଅନ୍ୟମାନଙ୍କ
ଭଳ କ’ଣ ବୁଝି ପାରଲ ନାହିଁ? ତୁମ୍ଭେମାନେ କ’ଣ ବୁଝି
ପାରୁନ ଯେ ଲୋକର ଭିତରକୁ ବାହାରୁ କୌଣସି ବସ୍ତୁ
ଗଲେ ତାହା ସେହ ଲୋକକୁ ଦୂଷିତ କରପାରେ ନାହିଁ।
୧୯କାରଣ ଖାଦ୍ୟ ତାର ହୃଦୟକୁ ନଯାଇ ପେଟ ଭିତରକୁ
ଯାଏ ଓ ପୁଣି ମଳ ଆକାରରେ ବାହାରକୁ ବାହାର ଯାଏ।”
(ଏହା କହ ଯୀଶୁ ସମସ୍ତ ଖାଦ୍ୟ-ପଦାର୍ଥ ଯେ ଶୁଦ୍ଧ ଅଟେ,
ଏହା ପ୍ରମାଣିତ କଲେ।)
୨୦ସେ ପୁଣି କହଲେ, “ମନୁଷ୍ୟର ଭିତରୁ ଯାହା
ବାହାରକୁ ଆସେ, ତାହା ତାହାକୁ ଅଶୁଦ୍ଧ କର ଥାଏ।
୨୧ମନୁଷ୍ୟ ଭିତରେ, ତାର ମନରେ, ଏହ ସବୁ ଖରାପ
ଜନିଷ ଜନ୍ମ ଦଏ; ମନ୍ଦ ବଚାର, ଯୌନଗତ ପାପ, ଚୋରୀ,
ହତ୍ୟା। ୨୨ବ୍ୟଭିଚାର, ଲାଳସା ବା ଲୋଭ, ଦୁଷ୍ଟାତ୍ମା,
ମନ୍ଦକାମ କରବା, ପ୍ରବଞ୍ଚନା, ଈର୍ଷା, ଚୁଗୁଲି, ଅହଙ୍କାର
ଏବଂ ମୂର୍ଖତା। ୨୩ଏହ ସବୁ ଖରାପ ଜନିଷ ମନୁଷ୍ୟର
ଭିତରୁ ବାହାରକୁ ଆସିଥାଏ। ଏଗୁଡ଼କ ମନୁଷ୍ୟକୁ ଅଶୁଦ୍ଧ
କରପକାନ୍ତ।”

## ଯୀଶୁ ଜଣେ ଅଣଯିହୂଦୀ ସ୍ତ୍ରୀଲୋକଙ୍କୁ ସାହାଯ୍ୟ କଲେ

୨୪ଯୀଶୁ ସେ ସ୍ଥାନ ଛାଡ଼ ସୋରର ଆଖ ପାଖ
ଅଞ୍ଚଳକୁ ଗଲେ। ସେଠାରେ ଯୀଶୁ ଗୋଟିଏ ଘର ଭିତରକୁ
ଗଲେ। ସେ ଚାହୁଁ ନଥିଲେ ଯେ କୌଣସି ଲୋକ
ତାହାଙ୍କର ଆସିଥିବା ଖବର ଜାଣନ୍ତୁ। କନ୍ତୁ ସେ ସେଠାରେ
ଲୁଚ ରହ ପାରଲେନାହିଁ। ୨୫ଜଣେ ସ୍ତ୍ରୀ ଲୋକ ଯୀଶୁ
ଆସିଥିବା ଖବର ଶୁଣି ପାରଲା। ତାର ଝିଅ ଦେହରେ
ଦୁଷ୍ଟାତ୍ମା ପ୍ରବେଶ କର ରହଥିଲା। ତେଣୁ ସେ ସଙ୍ଗେ
ସଙ୍ଗେ ଯୀଶୁଙ୍କ ପାଖକୁ ଆସି ତାହାଙ୍କ ପାଦ ତଳେ
ପଡ଼ଗଲା। ୨୬ସେ ସ୍ତ୍ରୀ ଲୋକଟି ଗ୍ରୀକ୍ ଥିଲା। ସେ
ସିରଆର ଫିନେିକୟା ଠାରେ ଜନ୍ମ ହୋଇଥିଲା। ସେ ତା
ଝିଅ ଠାରୁ ଭୂତକୁ ବାହାର କର ଦେବା ପାଇଁ ଯୀଶୁଙ୍କୁ
ପ୍ରାର୍ଥନା କଲା।
୨୭ଯୀଶୁ ତାହାକୁ କହଲେ, “ପ୍ରଥମେ ପିଲାମାନଙ୍କୁ ତୃପ୍ତ
ହେବାକୁ ଦଅ, କାରଣ ପିଲାମାନଙ୍କର ରୋଟୀ ନେଇ ଯାଇ
କୁକୁରମାନଙ୍କ ଆଗରେ ଫିଙ୍ଗି ଦେବା ଠିକ୍ ନୁହେଁ।”
୨୮ସେ ସ୍ତ୍ରୀ ଲୋକଟି ଉତ୍ତର ଦେଲା, “ହେ ପ୍ରଭୁ,
ତାହା ସତ୍ୟ, କନ୍ତୁ ପିଲାମାନେ ଖାଉଥିବା ସମୟରେ ତଳକୁ
ଖସି ପଡୁଥିବା ଖାଦ୍ୟର ଟିକ ଟିକ ଅଂଶତକ ଟେବୁଲ
ତଳେ ଥିବା କୁକୁରମାନେ ମଧ ଖାଇ ଥାଆନ୍ତ।”
୨୯ତା’ ପରେ ଯୀଶୁ ସେହି ସ୍ତ୍ରୀଲୋକଟିକୁ କହଲେ,
“ଏହା ହିଁ ଉପଯୁକ୍ତ ଉତ୍ତର। ଏବେ ତୁମ୍ଭେ ଘରକୁ ଯାଇ
ପାର। ଭୂତ ତୁମ୍ଭର ଝିଅକୁ ଛାଡ଼ ଚାଲ ଗଲାଣି।”
୩୦ସେହ ସ୍ତ୍ରୀ ଲୋକଟି ଘରକୁ ଯାଇ ଦେଖିଲା ଯେ
ତାହାର ଝିଅ ଖଟରେ ଶୋଇଛ। ଦୁଷ୍ଟାତ୍ମା ତା ଦେହରୁ
ବାହାର ଚାଲ ଯାଇଛ।

## ଯୀଶୁ ଜଣେ ମୂକ ବଧିର ଲୋକକୁ ସୁସ୍ଥ କରଦେଲେ

୩୧ତା’ପରେ ଯୀଶୁ ସୋର ଆଖ-ପାଖ ଅଞ୍ଚଳ ଛାଡ଼
ଦେକାପଲ ରାସ୍ତାରେ ସୀଦୋନ ହୋଇ ଗାଲୀଲୀ ହ୍ରଦ
ପାଖକୁ ଆସିଲେ। ୩୨ସେଠାରେ କେତେକ ଲୋକ ଯୀଶୁଙ୍କ
ପାଖକୁ ଗୋଟିଏ ଲୋକକୁ ଆଣିଲେ। ସେ ଲୋକଟି ମୂକ
ଓ ବଧିର ଥିଲା। ଲୋକମାନେ ଯୀଶୁଙ୍କୁ ଅନୁରୋଧ କଲେ
ଯେ ସେ ତାହାଙ୍କ ହାତ ଲୋକଟି ଉପରେ ରଖି ତାକୁ

---

**‘ତୁମ୍ଭେ ... କର’** ଯାତ୍ରା ପୁସ୍ତକ ୨୦:୧୨ ଦ୍ୱିତୀୟ ବବିରଣ ୫:୧୬।

**‘ଯେଉଁଲୋକ ... ଉଚତ’** ଯାତ୍ରା ପୁସ୍ତକ ୨୧:୧୭

**ପଦସଂଖ୍ୟା ୧୬** କେତେକ ଗ୍ରୀକ୍ ମୂଳ ଭାଷାରେ ପଦ ୧୬ ଯୋଗ କରାଯାଇଅଛ। “ତୁମ୍ଭେମାନେ, ଯେଉଁମାନେ ଶୁଣୁଛ, ଶୁଣ।

ଭଲ କରି ଦିଅନ୍ତୁ। ୩୩ଯୀଶୁ ସେ ଲୋକଟିକୁ ଭିଡ଼ଠାରୁ
ଟିକିଏ ଦୂରକୁ ଗୋଟିଏ ପାଖକୁ ନେଇଗଲେ। ସେ ସେହି
ଲୋକଟିର କାନ ଭିତରେ ନିଜ ଆଙ୍ଗୁଳି ଗୁଡ଼ିକୁ ରଖିଲେ।
ତା ପରେ ସେ ଛେପ ପକାଇଲେ ଓ ଲୋକଟିର ଜିଭକୁ
ଛୁଇଁଲେ। ୩୪ଯୀଶୁ ପୁଣି ସ୍ୱର୍ଗ ଆଡ଼କୁ ଚାହିଁ ଦୀର୍ଘ ନିଶ୍ୱାସ
ପକାଇଲେ। ସେ ଲୋକଟିକୁ କହିଲେ, ୩୫ "ଇପ୍ଫଥଃ।"
(ଅର୍ଥାତ 'ଖୋଲି ଯାଉ।')। ତତ୍‌କ୍ଷଣାତ୍ ତାର କାନ ଖୋଲି
ଗଲା। ଜିଭର ଗ୍ରନ୍ଥି ଖୋଲିଗଲା। ସେ ସ୍ପଷ୍ଟ ଭାବରେ କହି
ପାରିଲା।

୩୬ଯୀଶୁ ସେମାନଙ୍କୁ ଆଜ୍ଞା ଦେଲେ ଯେ ଏ ବିଷୟରେ
କାହାକୁ କିଛି ଯେପରି ନ କୁହନ୍ତି। ଯୀଶୁ ସଦାବେଳେ
ଲୋକଙ୍କୁ ଆଜ୍ଞା ଦେଉଥିଲେ ଯେ ସେମାନେ ଅନ୍ୟ
କାହାକୁ ତାହାଙ୍କ ବିଷୟରେ କିଛି ନ କୁହନ୍ତୁ। କିନ୍ତୁ
ଏହାର ପରିଣାମରେ ଲୋକେ ତାହାଙ୍କ ବିଷୟରେ ଅଧିକରୁ
ଅଧିକ ପ୍ରଚାର କରୁଥିଲେ। ୩୭ଲୋକମାନେ ବାସ୍ତବରେ
ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ। ସେମାନେ କହୁଥିଲେ, "ଯୀଶୁ
ସବୁ କିଛି ସୁସ୍ଥ କରୁଛନ୍ତି, ଏପରିକି ସେ ବଧିରକୁ
ଶ୍ରବଣ-ଶକ୍ତି ଓ ମୂକକୁ ବାକ୍ ଶକ୍ତି ପ୍ରଦାନ କରୁଛନ୍ତି।"

## ଯୀଶୁ ଚାରି ହଜାରରୁ ଅଧିକ ଲୋକଙ୍କୁ ଖାଇବାକୁ ଦେଲେ

୮ ଆଉ ଥରେ ଯୀଶୁଙ୍କ ସହିତ ବହୁତ ଲୋକ ଥିଲେ।
ସେମାନଙ୍କର କିଛି ଖାଇବାକୁ ନଥିଲା। ତେଣୁ ଯୀଶୁ
ଶିଷ୍ୟମାନଙ୍କୁ ପାଖକୁ ଡକାଇ କହିଲେ, ୨"ଏ ଲୋକମାନଙ୍କ
ପାଇଁ ମୋତେ ବଡ଼ ଦୁଃଖ ଲାଗୁଛି। ସେମାନେ ମୋ
ସହିତ ତିନି ଦିନ ହେଲା ଅଛନ୍ତି ଅଥଚ ବର୍ତ୍ତମାନ
ସେମାନଙ୍କ ପାଖରେ ଖାଇବାକୁ କିଛି ନାହିଁ। ୩କିଛି ନ
ଖୁଆଇ, ସେମାନଙ୍କୁ ଯଦି ମୁଁ ପଠାଇ ଦିଏ, ତେବେ
ସେମାନେ ମୂର୍ଚ୍ଛା ହୋଇ ରାସ୍ତାରେ ଢ଼ଳି ପଡ଼ିବେ। କେତେକ
ଲୋକ ବହୁତ ଦୂରରୁ ଆସିଛନ୍ତି।"

୪ଯୀଶୁଙ୍କ ଶିଷ୍ୟମାନେ କହିଲେ, "ଆମ୍ଭେମାନେ ଏ
ଜନହୀନ ଅଂଚଳରେ ଏମାନଙ୍କୁ ଖୁଆଇବା ପାଇଁ ଯଥେଷ୍ଟ
ଖାଦ୍ୟ କୁଆଡୁ ପାଇ ପାରିବୁ?"

୫ଯୀଶୁ ସେମାନଙ୍କୁ ପଚାରିଲେ, "ତୁମ୍ଭମାନଙ୍କ ପାଖରେ
କେତେ ଖଣ୍ଡ ରୋଟୀ ଅଛି?"

ସେମାନେ ଉତ୍ତର ଦେଲେ, "ଆମ୍ଭମାନଙ୍କ ପାଖରେ
ସାତ ଖଣ୍ଡ ଅଛି।"

୬ତା'ପରେ ଯୀଶୁ ଲୋକମାନଙ୍କୁ ତଳେ ବସି ଯିବାକୁ
କହିଲେ। ସେ ସାତ ଖଣ୍ଡ ରୋଟୀ ନେଲେ ଓ ସେଥିପାଇଁ
ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ରୋଟୀତକ ଖଣ୍ଡ ଖଣ୍ଡ
କରି ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦେବାକୁ ଶିଷ୍ୟମାନଙ୍କୁ
ଦେଲେ। ସେମାନେ ସେଇଆ କଲେ। ୭ଶିଷ୍ୟମାନଙ୍କ
ପାଖରେ ମଧ୍ୟ ଅଳ୍ପ କିଛି ଛୋଟ ମାଛ ଥିଲା। ଯୀଶୁ ମାଛ
ପାଇଁ ଧନ୍ୟବାଦ ଦେଇ ଶିଷ୍ୟମାନଙ୍କୁ ତାହା ଲୋକଙ୍କ
ଭିତରେ ବାଣ୍ଟି ଦେବାକୁ କହିଲେ। ୮ସବୁ ଲୋକ ଖାଇ
ତୃପ୍ତ ହେଲେ। ତା ପରେ ସେମାନେ ବଳକା ଟୁକୁରା ତକ
ଏକାଠି କରି ସାତଟି ଟୋକେଇରେ ଭର୍ତ୍ତି କଲେ। ୯ସେଠାରେ
ପ୍ରାୟ କେବଳ ଚାରି ହଜାର ପୁରୁଷ ଖାଇଥିଲେ। ସେମାନେ
ଖାଇଲା ପରେ ଯୀଶୁ ସେମାନଙ୍କୁ ବିଦାୟ କରି ଦେଲେ।
୧୦ତା'ପରେ ଯୀଶୁ ଶିଷ୍ୟମାନଙ୍କ ସହ ଡ଼ଙ୍ଗାରେ ବସି
ଦଲ୍‌ମନୂଥା ଅଞ୍ଚଳକୁ ଚାଲିଗଲେ।। ଫାରୂଶୀମାନେ ଯୀଶୁଙ୍କୁ
ପରୀକ୍ଷା କରିବାକୁ ଚାହିଁଲେ।

## ଫାରୂଶୀ ଯୀଶୁଙ୍କୁ ପରୀକ୍ଷା କଲେ

୧୧ଫାରୂଶୀମାନେ ଯୀଶୁଙ୍କ ପାଖକୁ ଆସି ଯୀଶୁଙ୍କୁ ପରୀକ୍ଷା
କରିବାକୁ ପ୍ରଶ୍ନ ପଚାରିଲେ। ସେମାନେ ଯୀଶୁଙ୍କୁ ପରୀକ୍ଷା
କରିବାକୁ ଚାହୁଁଥିଲେ। ତେଣୁ ସେମାନେ ଯୀଶୁଙ୍କୁ, ସେ
ପରମେଶ୍ୱରଙ୍କ ପାଖରୁ ଆସିଛନ୍ତି ବୋଲି ପ୍ରମାଣିତ କରିବା
ପାଇଁ ଆଶ୍ଚର୍ଯ୍ୟକର୍ମ କରିବାକୁ କହିଲେ। ୧୨ଯୀଶୁ ଦୀର୍ଘନିଶ୍ୱାସ
ନେଇ ଦୁଃଖ ପ୍ରକାଶ କରି କହିଲେ, "ତୁମ୍ଭେମାନେ କାହିଁକି
ପ୍ରମାଣ ସ୍ୱରୂପ ଆଶ୍ଚର୍ଯ୍ୟକର୍ମ ଦେଖିବାକୁ ଚାହୁଁଛ? ମୁଁ ତୁମ୍ଭକୁ
ସତ୍ୟ କହୁଛି, ତୁମ୍ଭମାନଙ୍କୁ ସେଭଳି କୌଣସି ପ୍ରମାଣ
ଦିଆଯିବନାହିଁ।" ୧୩ତା'ପରେ ଯୀଶୁ ଫାରୂଶୀମାନଙ୍କୁ ଛାଡ଼ି
ପୁନଃ ଡ଼ଙ୍ଗା ଭିତରକୁ ଚାଲି ଆସିଲେ। ସେ ଡ଼ଙ୍ଗାରେ
ବସି ହ୍ରଦର ଅପର ପାରିକୁ ଚାଲିଗଲେ।

## ଯୀଶୁଙ୍କ ସତର୍କବାଣୀ

୧୪ସେମାନେ ଖାଇବା ପାଇଁ ଅଧିକ ଖାଦ୍ୟ ଆଣିବାକୁ
ଭୁଲି ଯାଇଥିଲେ। ଯୀଶୁଙ୍କ ଶିଷ୍ୟମାନଙ୍କ ପାଖରେ ଖଣ୍ଡିଏ
ମାତ୍ର ରୋଟୀ ଥିଲା। ୧୫ଯୀଶୁ ସେମାନଙ୍କୁ ଚେତାବନୀ
ଦେଇ କହିଲେ, "ସାବଧାନ; ଫାରୂଶୀ ଓ ହେରୋଦଙ୍କ
ଖମୀର* ଠାରୁ ଦୂରରେ ରୁହ।"

୧୬ଶିଷ୍ୟମାନେ ଏହାର ଅର୍ଥ ବିଷୟରେ ଆଲୋଚନା
କଲେ। ସେମାନେ କହିଲେ, "ଆମ୍ଭମାନଙ୍କ ପାଖରେ ରୋଟୀ
ନାହିଁ ବୋଲି ଯୀଶୁ ଏକଥା କହିଲେ।"

୧୭ସେମାନେ କ'ଣ କଥାବାର୍ତ୍ତା ହେଉଛନ୍ତି ତାହା ଯୀଶୁ
ଜାଣି ପାରିଲେ ତେଣୁ ସେ ସେମାନଙ୍କୁ କହିଲେ, "ରୋଟୀ
ନାହିଁ ବୋଲି ତୁମ୍ଭେମାନେ କାହିଁକି ତର୍କ-ବିତର୍କ କରୁଛ?
ଏବେ ସୁଦ୍ଧା ତୁମ୍ଭେମାନେ ଦେଖି ପାରୁନ କି ବୁଝି ପାରୁନ?
୧୮ତୁମ୍ଭମାନଙ୍କର କ'ଣ ବୁଦ୍ଧି ହଜି ଯାଇଛି? ତୁମ୍ଭମାନଙ୍କର
ଆଖି ଅଛି ତଥାପି ତୁମ୍ଭେମାନେ ଦେଖି ପାରୁନାହଁ?
ତୁମ୍ଭମାନଙ୍କର କାନ ଅଛି, ତଥାପି ତୁମ୍ଭେମାନେ ଶୁଣି
ପାରୁନାହଁ? ଆମ୍ଭ ପାଖରେ ଯେତେବେଳେ ଖାଇବାକୁ
ଯଥେଷ୍ଟ ରୋଟୀ ନ ଥିଲା ମୁଁ ସେତେବେଳେ କ'ଣ
କରିଥିଲି ତୁମ୍ଭମାନଙ୍କର କ'ଣ ତାହା ମନେ ନାହିଁ? ୧୯ମୁଁ
ଯେତେବେଳେ ପାଞ୍ଚ ହଜାର ଲୋକଙ୍କ ପାଇଁ ପାଞ୍ଚଟି
ରୋଟୀ ଖଣ୍ଡ ଖଣ୍ଡ କରି ତୁମ୍ଭକୁ ଦେଇଥିଲି, ମନେ
ପକେଇଲ, ତୁମ୍ଭେମାନେ କେତୋଟି ଟୋକେଇରେ ବଳକା
ରୋଟୀ ଖଣ୍ଡତକ ଭର୍ତ୍ତି କରିଥିଲ?"

ସେମାନେ କହିଲେ, "ବାରଟିରେ।"

୨୦"ଆଉ ମୁଁ ଯେତେବେଳେ ଚାରିହଜାର ଲୋକଙ୍କ
ପାଇଁ ସାତଟି ରୋଟୀ ଖଣ୍ଡ ଖଣ୍ଡ କରି ଦେଇଥିଲି, ମନେ

---

**ଖମୀର** ଏଠାରେ ଖମୀର ଶବ୍ଦର ପ୍ରୟୋଗ କୁ ପ୍ରଭାବର ପ୍ରତୀକ ରୂପରେ ବ୍ୟବହାର କରାଯାଇଛି।

ପକେଇଲ, ତୁମ୍ଭେମାନେ କେତୋଟି ଟୋକେଇରେ ବଳକା
ରୋଟୀ ଖଣ୍ଡତକ ଭର୍ତ୍ତି କରଥିଲ?"
"ସେମାନେ କହଲେ, ସାତଟିରେ।"
୨୧ତା'ପରେ ଯୀଶୁ ସେମାନଙ୍କୁ କହଲେ, "ମୁଁ ଯାହା
କରଥିଲ,ସେ ସବୁ ତୁମ୍ଭେମାନେ ମନେ ରଖିଛ। ଅଥଚ
ଏବେ ମଧ୍ୟ ତୁମ୍ଭେମାନେ କଛି ବୁଝି ପାରୁନାହଁ?"

## ବେଥ୍‌ସାଇଦାରେ ଯୀଶୁ ଜଣେ ଅନ୍ଧକୁ ଚକ୍ଷୁଦାନ କଲେ

୨୨ତା'ପରେ ସେମାନେ ବେଥ୍‌ସାଇଦା ଚାଲ ଆସିଲେ।
ସେଠାରେ କେତେକ ଲୋକ ଯୀଶୁଙ୍କ ପାଖକୁ ଗୋଟିଏ
ଅନ୍ଧକୁ ନେଇ ଆସିଲେ। ସେମାନେ ଯୀଶୁଙ୍କୁ ପ୍ରାର୍ଥନା
କଲେ ଯେ ସେ ଅନ୍ଧକୁ କେବଳ ଛୁଇଁ ଦଅନ୍ତୁ। ୨୩ଯୀଶୁ
ଅନ୍ଧ ଲୋକଟିର ହାତ ଧର ତାକୁ ଗାଁ ବାହାରକୁ କଢ଼ାଇ
ନେଇଗଲେ। ସେ ଅନ୍ଧଟିର ଆଖିରେ ଛେପ ପକାଇଲେ।
ତା ଉପରେ ହାତ ରଖି ତାକୁ ପଚାରଲେ, "ତୁମ୍ଭେ କଛି
ଦେଖି ପାରୁଛ କି?"
୨୪ସେହ ଲୋକଟି ଉପରକୁ ଚାହିଁ କହଲା, "ମୁଁ
ଲୋକମାନଙ୍କୁ ଦେଖି ପାରୁଛି। ସେମାନେ ଚାର ଆଡ଼େ
ଚାଲୁଥିବା ଗଛ ଭଳ ମୋତେ ଦେଖା ଯାଉଛନ୍ତ।"
୨୫ଯୀଶୁ ପୁଣି ଥରେ ଅନ୍ଧଟିର ଆଖି ଉପରେ ହାତ
ରଖିଲେ। ତା'ର ଆଖି ଭଲ ହୋଇ ଯାଇଥିଲା ଓ ସେ
ସବୁକଛି ସ୍ପଷ୍ଟ ଦେଖି ପାରୁଥିଲା। ୨୬ଯୀଶୁ ତାକୁ ଘରକୁ
ପଠେଇ ଦେଲେ ଓ କହିଲେ, "ଗାଁ ଭିତରକୁ ତୁମ୍ଭେ
ଏବେ ଆଦୌ ଯିବ ନାହିଁ।"

## ପିତର କହଲେ ଯେ ଯୀଶୁ ହେଉଛନ୍ତ ଖ୍ରୀଷ୍ଟ

୨୭ତା'ପରେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ କାଇସରୀଆ
ଫିଲପ୍ପୀ ଅଞ୍ଚଳର ଗାଁ ମାନଙ୍କୁ ଗଲେ। ବାଟରେ ସେ
ତାହାଙ୍କ ଶିଷ୍ୟମାନଙ୍କୁ ପଚାରଲେ, "ମୁଁ କିଏ ବୋଲ
ଲୋକେ କ'ଣ କହୁଛନ୍ତ?"
୨୮ସେମାନେ କହଲେ, "କେତେକ ଲୋକ କହୁଛନ୍ତ,
ଆପଣ ବାପ୍ତିଜକ ଯୋହନ; ଅନ୍ୟମାନେ କହୁଛନ୍ତ ଆପଣ
ଏଲୟ; ଏବଂ ଆଉ କେତେକ କହୁଛନ୍ତ ଆପଣ ଭାବବାଦୀମାନଙ୍କ
ମଧ୍ୟରୁ ଜଣେ।"
୨୯ଯୀଶୁ ସେମାନଙ୍କୁ ପଚାରଲେ, "ମୁଁ କିଏ ବୋଲ
ତୁମ୍ଭେମାନେ କ'ଣ କହୁଛ?"
ପିତର ଉତ୍ତର ଦେଲେ, "ଆପଣ ଖ୍ରୀଷ୍ଟ।"
୩୦ତା' ପରେ ଯୀଶୁ ସେମାନଙ୍କୁ ଚେତାବନୀ ଦେଇ
କହଲେ, "ମୁଁ କିଏ ବୋଲ ତୁମ୍ଭେମାନେ କାହାରକୁ କଛି
କୁହ ନାହିଁ।"
୩୧ତା'ପରେ ସେ ସେମାନଙ୍କୁ ଶିକ୍ଷାଦେବାକୁ ଆରମ୍ଭ
କଲେ, "ମନୁଷ୍ୟପୁତ୍ରଙ୍କୁ ବହୁତ ଯାତନା ଭୋଗ କରବାକୁ
ହେବ। ପ୍ରାଚୀନ ଓ ଯିହୂଦୀ ନେତା, ପ୍ରଧାନ ଯାଜକ ତଥା
ଧର୍ମଶାସ୍ତ୍ରୀମାନେ ତାହାଙ୍କୁ ସ୍ୱୀକାର କରବେ ନାହିଁ। ନିଶ୍ଚିତ
ରୂପରେ ତାହାଙ୍କୁ ମାର ଦଆଯିବ ଓ ସେ ମୃତ୍ୟୁର ତୃତୀୟ
ଦନ ପୁଣି ମୃତ୍ୟୁରୁ ପୁନରୁଥାନ ହେବେ।" ୩୨ଯାହା ସବୁ
ଘଟିବ ସେ ସମସ୍ତ କଥା ଯୀଶୁ ସେମାନଙ୍କୁ କହଦେଲେ।
ସେ କିଛି ହେଲେ ଲୁଚେଇ ରଖିଲେନାହିଁ। ପିତର ଯୀଶୁଙ୍କୁ
ଗୋଟିଏ ପାଖକୁ ଅଲଗା ନେଇ ସେ ଏସବୁ କହଥିବା
ଯୋଗୁ ତାହାଙ୍କୁ ସମାଲୋଚନା କଲେ। ୩୩ଯୀଶୁ ପଛ
ପଟକୁ ବୁଲ ଶିଷ୍ୟମାନଙ୍କ ଉପରେ ଦୃଷ୍ଟି ପକାଇଲେ ଏବଂ
ପିତରଙ୍କୁ ସମାଲୋଚନା କର କହଲେ, "ଶୟତାନ, ମୋଠାରୁ
ଦୂର ହୁଅ। ତୁମ୍ଭେ ପରମେଶ୍ୱରଙ୍କ ବିଚାର ଭଳ ବିଚାର
କରୁ ନାହିଁ। ଲୋକମାନେ ଯେଉଁ ଭଳ ବିଚାର କରୁଛନ୍ତ,
ତୁମ୍ଭେ ସେହ ଭଳ ଭାବୁଛ।"
୩୪ତା'ପରେ ଯୀଶୁ ସବୁ ଲୋକଙ୍କୁ ପାଖକୁ ଡାକଲେ।
ତାହାଙ୍କ ସହତ ଶିଷ୍ୟମାନେ ମଧ୍ୟ ସେଠାରେ ଥିଲେ। ଯୀଶୁ
ସେମାନଙ୍କୁ କହଲେ, " ଯେଉଁ ଲୋକ ମୋତେ ଅନୁସରଣ
କରବାକୁ ଚାହୁଁଛି, ଯାହା କଛି ସେ ଚାହୁଁଛି, ସେ ସବୁକୁ
ଛାଡ଼, ନଜ କ୍ରୁଶକୁ (ଯାତନାକୁ) ବହନ କର ମୋ
ପଛରେ ଆସୁ। ୩୫କାରଣ ଯେଉଁ ଲୋକ ନଜ ଜୀବନକୁ
ବଞ୍ଚାଇବାକୁ ଚାହିଁବ, ସେ ତାହା ହରାଇବ। ଯେଉଁ ଲୋକ
ମୋ ପାଇଁ ଓ ସୁସମାଚାର ପାଇଁ ନଜ ଜୀବନ ତ୍ୟାଗ
କରବ, ସେ ତା' ଜୀବନକୁ ଚିର ଦନ ଲାଗି ରକ୍ଷା
କରବ। ୩୬ଯଦ କୌଣସି ଲୋକ ସମସ୍ତ ପୃଥିବୀକୁ ଲାଭ
କରେ କନ୍ତୁ ନଜର ଜୀବନ ହରେଇ ବସେ, ତେବେ
ସେଥିରେ କ'ଣ ଲାଭ ଅଛି? ୩୭କାରଣ କୌଣସି ଲୋକ
ଯେତେ ଅର୍ଥ ଦେଲେ ମଧ୍ୟ ତା ବଦଳରେ ନଜ ଜୀବନ
ପୁଣି ଥରେ ଫେର ପାଇ ପାରବନାହିଁ। ୩୮ଏହ ଯୁଗର
ଲୋକେ ବର୍ତ୍ତମାନ ପାପ ଓ ବ୍ୟଭିଚାରର ଖରାପ ସମୟରେ
ବାସ କରୁଛନ୍ତ। ଯଦ କେହ ଲୋକ ମୋ ନାମ ଓ ମୋ
ଉପଦେଶ ଯୋଗୁ ଲଜ୍ଜା ବୋଧ କରେ ତେବେ ମନୁଷ୍ୟ
ପୁତ୍ର ଯେତେବେଳେ ସ୍ୱର୍ଗ ଦୂତମାନଙ୍କ ସହତ ନଜ
ପରମ-ପିତାଙ୍କ ମହମା ସହତ ଆସିବେ ସେତେବେଳେ ସେ
ମଧ୍ୟ ସେହ ଲୋକ ଯୋଗୁ ଲଜ୍ଜା ବୋଧ କରବେ।"
୯ ତା'ପରେ ଯୀଶୁ କହଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି,
ଏଠାରେ ଯେଉଁମାନେ ଠିଆ ହୋଇଛ, ତୁମ୍ଭମାନଙ୍କ
ମଧ୍ୟରୁ କେତେ ଜଣ ନଜ ମୃତ୍ୟୁ ପୂର୍ବରୁ ପରମେଶ୍ୱରଙ୍କ
ରାଜ୍ୟ ଏଠାକୁ ଆସିବାର ଦେଖିବ। ପରମେଶ୍ୱରଙ୍କ ରାଜ୍ୟ
ତା'ର କ୍ଷମତା ନେଇ ଆସିବ।"

## ମୋଶା ଓ ଏଲୟଙ୍କ ସହତ ଯୀଶୁ

୨ଛଅ ଦନ ପରେ, ଯୀଶୁ ପିତର, ଯାକୁବ ଓ
ଯୋହନଙ୍କୁ ନଜ ସାଙ୍ଗରେ ନେଇ ଗୋଟିଏ ଉଚ୍ଚ ପର୍ବତ
ଉପରକୁ ଗଲେ। ସେଠାରେ କେବଳ ସେହମାନେ ଥିଲେ।
ସେଠାରେ ଶିଷ୍ୟମାନେ ଯୀଶୁଙ୍କୁ ଦେଖୁଥିବା ସମୟରେ
ଯୀଶୁଙ୍କ ସ୍ୱରୂପ ପରବର୍ତ୍ତନ ହୋଇ ଗଲା। ୩ଯୀଶୁଙ୍କ ବସ୍ତ୍ର
ଧଳା ଚକ୍ ଚକ୍ ହୋଇଗଲା। ତାହା ଏତେ ଉଜ୍ଜ୍ୱଳ ଓ
ଧଳା ଥିଲା ଯେ ପୃଥିବୀର କୌଣସି ଲୋକ ଏତେ ଧଳା
କର ପାରବନାହିଁ। ୪ଏଲୟ ଓ ମୋଶା* ଯୀଶୁଙ୍କ ସହତ
ପ୍ରକାଶିତ ହେଲେ। ସେମାନେ ଯୀଶୁଙ୍କ ସହତ କଥାବାର୍ତ୍ତା
କରୁଥିଲେ।

---

**ଏଲୟ ଓ ମୋଶା** ପୁରାତନ ନୟମର ଦୁଇଜଣ ମୁଖ୍ୟ ନେତା।

୫ପିତର ଯୀଶୁଙ୍କୁ କହିଲେ, "ଗୁରୁ, ବହୁତ ଭଲ ହେଲା
ଯେ ଆମ୍ଭେ ଏଠାରେ ଅଛୁ। ଆମ୍ଭେ ଏଠାରେ ତିନୋଟି ତମ୍ବୁ
ଟାଣି ଦେବୁ, ଗୋଟିଏ ତୁମ୍ଭ ପାଇଁ, ଗୋଟିଏ ମୋଶାଙ୍କ
ପାଇଁ ଓ ଅନ୍ୟଟି ଏଲୀୟଙ୍କ ପାଇଁ।" ୬ପିତର ଜାଣି ପାରୁ
ନ ଥିଲେ ଯେ କ'ଣ କହିବାକୁ ହେବ। କାରଣ ସେ ଓ
ଅନ୍ୟ ଦୁଇଜଣ ଶିଷ୍ୟ ବହୁତ ଡରି ଯାଇଥିଲେ।
୭ତାପରେ ଖଣ୍ଡେ ମେଘ ଭାସି ଆସିଲା ଓ ସମସ୍ତଙ୍କୁ
ଘୋଡ଼ାଇ ପକାଇଲା। ମେଘ ଭିତରୁ ଏହି ଭଳି ବାଣୀ
ଶୁଣା ଗଲା, "ଏ ମୋର ପୁତ୍ର, ମୁଁ ତାହାଙ୍କୁ ପ୍ରେମ କରେ।
ତୁମ୍ଭେମାନେ ତାହାଙ୍କ କଥା ମାନ।"
୮ଏବଂ ସେହି ସମୟରେ ପିତର, ଯାକୁବ ଓ ଯୋହନ
ଚାରିଆଡ଼କୁ ଚାହିଁଲେ କିନ୍ତୁ ସେଠାରେ ସେମାନେ ତାହାଙ୍କ
ସହିତ କେବଳ ଯୀଶୁଙ୍କ ଛଡ଼ା ଆଉ କାହାରିକୁ ଦେଖିଲେ
ନାହିଁ। ୯ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ପର୍ବତ ଉପରୁ
ତଳକୁ ଓହ୍ଲାଇ ଆସୁଥିଲେ। ଯୀଶୁ ଶିଷ୍ୟମାନଙ୍କୁ ଆଜ୍ଞା
ଦେଲେ। ଯେ ସେମାନେ ପର୍ବତ ଉପରେ ଯାହା ସବୁ
ଦେଖିଲେ ତାହା କାହାରି ଆଗରେ ପ୍ରକାଶ କରିବେ ନାହିଁ
ଓ ମନୁଷ୍ୟ-ପୁତ୍ର ମୃତ୍ୟୁରୁ ପୁନରୁତ୍ଥିତ ନ ହେବା ପର୍ଯ୍ୟନ୍ତ
ଅପେକ୍ଷା କରିବେ। ତା ପରେ ସେମାନେ ଲୋକଙ୍କ
ଆଗରେ ତାହା ପ୍ରକାଶ କରି ପାରିବେ।
୧୦ତେଣୁ ଶିଷ୍ୟମାନେ ଯୀଶୁଙ୍କ କଥା ମାନିଲେ ଓ
ସେମାନେ ଯାହା ଦେଖିଲେ ତାହା କାହାରି ଆଗରେ
ପ୍ରକାଶ କଲେ ନାହିଁ। କିନ୍ତୁ ସେମାନେ କଥାବାର୍ତ୍ତା କରୁଥିଲେ
ଯେ ମୃତ୍ୟୁରୁ ପୁନରୁତ୍ଥିତ ହେବାର ଅର୍ଥ କ'ଣ? ୧୧ସେମାନେ
ଯୀଶୁଙ୍କୁ ପଚାରିଲେ, "ଧର୍ମଶାସ୍ତ୍ରୀମାନେ କାହିଁକି କହୁଛନ୍ତି
ଯେ ଏଲୀୟ ନିଶ୍ଚିତ ଭାବରେ ପ୍ରଥମେ ଆସିବେ?"
୧୨ଯୀଶୁ ସେମାନଙ୍କୁ କହିଲେ, "ହଁ, ସେମାନେ ଠିକ୍
କହୁଛନ୍ତି। ସବୁ ବିଷୟ ସୁବ୍ୟବସ୍ଥିତ କରିବାକୁ ନିଶ୍ଚୟ
ଏଲୀୟ ହିଁ ପ୍ରଥମେ ଆସିବେ। କିନ୍ତୁ ମନୁଷ୍ୟପୁତ୍ରଙ୍କ
ସମ୍ବନ୍ଧରେ ଶାସ୍ତ୍ରରେ କାହିଁକି ଲେଖା ଅଛି ଯେ ସେ ବହୁତ
ଯାତନା ଭୋଗ କରିବେ ଓ ଲୋକେ ତାହାଙ୍କ ସହିତ
ତାଚ୍ଛଲ୍ୟପୂର୍ଣ୍ଣ ବ୍ୟବହାର କରିବେ। ୧୩ମୁଁ ତୁମ୍ଭକୁ କହୁଛି
ଯେ ଏଲୀୟ ଏବେ ଆସି ସାରିଛନ୍ତି, ଏବଂ ଲୋକମାନେ
ଯାହା ଚାହିଁଛନ୍ତି ତାହାଙ୍କ ପ୍ରତି ସେଭଳି ଖରାପ ବ୍ୟବହାର
କରିଛନ୍ତି। ତାହାଙ୍କ ପ୍ରତି ଏଭଳି ବ୍ୟବହାର କରାଯିବ
ବୋଲି ଶାସ୍ତ୍ରରେ ଲେଖା ଅଛି।"

## ଯୀଶୁ ଗୋଟିଏ ଅସୁସ୍ଥ ବାଳକକୁ ସୁସ୍ଥ କରିଦେଲେ

୧୪ତା ପରେ ଯୀଶୁ ପିତର, ଯାକୁବ ଓ ଯୋହନ ଅନ୍ୟ
ଶିଷ୍ୟମାନଙ୍କ ପାଖକୁ ଗଲେ। ସେମାନେ ଦେଖିଲେ ଯେ
ଅନେକ ଲୋକ ସେମାନଙ୍କୁ ଘେରି ରହିଛନ୍ତି। ସେମାନଙ୍କ
ସହିତ ଧର୍ମଶାସ୍ତ୍ରୀମାନେ ଯୁକ୍ତି-ତର୍କ କରୁଛନ୍ତି। ୧୫ଯେତେବେଳେ
ଲୋକମାନେ ଯୀଶୁଙ୍କୁ ଦେଖିଲେ, ସେମାନେ ଆଶ୍ଚର୍ଯ୍ୟ
ହୋଇଗଲେ। ସେମାନେ ତାହାଙ୍କୁ ସ୍ୱାଗତ କରିବାକୁ ତାହାଙ୍କ
ପାଖକୁ ଦୌଡ଼ି ଗଲେ।
୧୬ଯୀଶୁ ପଚାରିଲେ, "ତୁମ୍ଭେମାନେ ଧର୍ମଶାସ୍ତ୍ରୀମାନଙ୍କ
ସହିତ କେଉଁ ବିଷୟରେ ଯୁକ୍ତିତର୍କ କରୁଥିଲ?"
୧୭ଭିଡ଼ ଭିତରୁ ଜଣେ ଲୋକ ଉତ୍ତର ଦେଲା, "ହେ
ଗୁରୁ, ମୁଁ ମୋ ପୁଅକୁ ଆପଣଙ୍କ ପାଖକୁ ଆଣିଥିଲି। ତା
ଦେହରେ ଦୁଷ୍ଟାତ୍ମାଟିଏ ପ୍ରବେଶ କରି ତାକୁ କଥା କହିବାକୁ
ଦେଉନାହିଁ। ୧୮ଦୁଷ୍ଟାତ୍ମା ପୁଅକୁ ଆକ୍ରମଣ କରୁଛି। ସେ
ଆକ୍ରମଣ କଲାବେଳେ ପୁଅକୁ ତଳେ କଚାଡ଼ି ଦେଉଛି।
ପୁଅ ମୁହଁରୁ ଫେଣ ବାହାରୁଛି ଓ ସେ ଦାନ୍ତ କଡ଼ମଡ଼
କରୁଛି ଓ ଶୁଖିଯାଉଛି, ମୁଁ ଆପଣଙ୍କ ଶିଷ୍ୟମାନଙ୍କୁ ସେହି
ଦୁଷ୍ଟାତ୍ମାକୁ ବାହାର କରି ଦେବାକୁ ଅନୁରୋଧ କଲି, କିନ୍ତୁ
ସେମାନେ ତାକୁ ବାହାର କରି ପାରିଲେ ନାହିଁ।"
୧୯ଯୀଶୁ ଉତ୍ତର ଦେଲେ, "ତୁମ୍ଭେମାନେ କାହିଁକି ବିଶ୍ୱାସ
କରୁନାହିଁ? କେତେ କାଳ ମୁଁ ତୁମ୍ଭମାନଙ୍କ ସହିତ ଥିବି?
କେତେ କାଳ ମୁଁ ତୁମ୍ଭମାନଙ୍କର ସବୁ ସହିଥିବି? ସେହି
ପିଲାକୁ ମୋ ପାଖକୁ ନେଇଆସ।"
୨୦ତେଣୁ ଶିଷ୍ୟମାନେ ପିଲାକୁ ଯୀଶୁଙ୍କ ପାଖକୁ ନେଇ
ଆସିଲେ। ଦୁଷ୍ଟାତ୍ମା ଯୀଶୁଙ୍କୁ ଦେଖିବା ମାତ୍ରେ ପିଲାକୁ
ଆକ୍ରମଣ କଲା। ସେହି ପିଲା ତଳେ ପଡ଼ିଯାଇ ଗଡ଼ିଗଲା।
ତା' ପାଟିରୁ ଫେଣ ବାହାରିଲା।
୨୧ଯୀଶୁ ପିଲାର ବାପାକୁ ପଚାରିଲେ, "କେତେ ଦିନ
ହେଲା ପିଲାର ଏମିତି ହେଉଛି?"
ତାର ବାପା କହିଲେ, "ପିଲାଟି ଦିନରୁ ଏମିତି ହେଉଛି।"
୨୨ଦୁଷ୍ଟାତ୍ମା ତାକୁ ମାରିବାକୁ, ଅନେକ ଥର ପାଣିକୁ ଓ
ଅନେକ ନିଆଁ ଭିତରକୁ ଫିଙ୍ଗି ଦେଉଛି। ଆପଣ ଯଦି ତା
ପାଇଁ କିଛି କରି ପାରନ୍ତି, ତେବେ ଆମ୍ଭ ପ୍ରତି ଦୟା ହେବ
ଓ ଆମ୍ଭକୁ ସାହାଯ୍ୟ ହେବ।"
୨୩ଯୀଶୁ କହିଲେ, "ତୁମ୍ଭେ କହିଲ, 'ତୁମ୍ଭେ ଯଦି ପାରିବ
ତେବେ ସାହାଯ୍ୟ ହେବ।' ବିଶ୍ୱାସୀ ଲୋକପାଇଁ ସବୁ କିଛି
ସମ୍ଭବ।"
୨୪ପିଲାଟିର ବାପା ଉଚ୍ଚସ୍ୱର କରି କହିଲା, "ମୁଁ ବିଶ୍ୱାସ
କରୁଛି। ମୋତେ ଅଧିକ ବିଶ୍ୱାସ କରିବା ପାଇଁ ସାହାଯ୍ୟ
କରନ୍ତୁ।"
୨୫ଯୀଶୁ ଦେଖିଲେ ଯେ ଏହି ଘଟଣା ଦେଖିବା ପାଇଁ
ଲୋକେ ତାହାଙ୍କ ପାଖକୁ ମାଡ଼ି ଆସୁଛନ୍ତି। ତେଣୁ ସେ
ଦୁଷ୍ଟାତ୍ମାକୁ ଧମକ ଦେଇ କହିଲେ, "ହେ ଦୁଷ୍ଟାତ୍ମା, ତୁ
ପିଲାଟିକୁ ମୂକ ଓ ବଧିର କରି ଦେଇଛୁ। ମୁଁ ତୋତେ
ଆଜ୍ଞା ଦେଉଛି, ପିଲାର ଦେହ ଭିତରୁ ବାହାରିଯା। ଏହାର
ଦେହରେ ପୁଣି ଆଉ କେବେହେଲେ ପ୍ରବେଶ କରିବୁନାହିଁ।"
୨୬ଦୁଷ୍ଟାତ୍ମା ଯନ୍ତ୍ରଣାରେ ଚିତ୍କାର କଲା, ପିଲାକୁ ଥରାଇ
ତଳେ ପକାଇ ଦେଲା। ପୁଣି ଥରେ ପିଲାକୁ ତଳେ କଚାଡ଼ି
ଦେଇ ଦୁଷ୍ଟାତ୍ମା ତା' ଦେହରୁ ବାହାରି ଆସିଲା। ଏହି ପିଲା
ମରିଗଲା ଭଳି ଦେଖାଗଲା। ଅନେକ ଲୋକ କହିଲେ,
"ସେ ମରି ଯାଇଛି।"
୨୭କିନ୍ତୁ ଯୀଶୁ ପିଲାର ହାତ ଧରି ତାହାକୁ ଉଠାଇ
ଠିଆ କରାଇଲେ। ସେହି ପିଲା ଠିଆ ହେଲା।
୨୮ତା'ପରେ ଯୀଶୁ ଘର ଭିତରକୁ ଗଲେ। କେବଳ
ତାହାଙ୍କ ଶିଷ୍ୟମାନେ ତାହାଙ୍କ ସହିତ ସେଠାରେ ଥିଲେ।
ସେମାନେ ତାକୁ ପଚାରିଲେ, "ଆମ୍ଭେମାନେ ଦୁଷ୍ଟାତ୍ମାକୁ
କାହିଁକି ବାହାର କରି ପାରିଲୁନି?"

୨୯ଏହା ଶୁଣି ଯୀଶୁ ସେମାନଙ୍କୁ କହିଲେ, "ଏହି
ପ୍ରକାରର ଦୁଷ୍ଟାତ୍ମାକୁ କେବଳ ପ୍ରାର୍ଥନା ମାଧ୍ୟମରେ ବାହାର
କରି ଯାଇ ପାରିବ।"

## ନିଜ ମୃତ୍ୟୁ ସମ୍ବନ୍ଧରେ ଯୀଶୁଙ୍କ କଥନ

୩୦ତା'ପରେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ସେ ସ୍ଥାନ
ଛାଡ଼ି ଚାଲିଗଲେ। ସେମାନେ ଗାଲିଲୀ ଦେଇ ଯାଉଥିଲେ।
ସେମାନେ କେଉଁଠି ଅଛନ୍ତି ସେ କଥା ଲୋକେ ଜାଣନ୍ତୁ
ବୋଲି ଯୀଶୁ ଚାହୁଁ ନଥିଲେ। ୩୧କାରଣ ସେ ନିଜ
ଶିଷ୍ୟମାନଙ୍କୁ ଏକୁଟିଆ ଅଲଗା ଉପଦେଶ ଦେବାକୁ ଚାହୁଁଥିଲେ।
ସେ ସେମାନଙ୍କୁ କହିଲେ, "ମନୁଷ୍ୟପୁତ୍ରଙ୍କୁ ମନୁଷ୍ୟମାନଙ୍କ
ହାତରେ ଦେଇ ଦିଆଯିବ। ସେମାନେ ତାହାଙ୍କୁ ମାରିଦେବେ।
କିନ୍ତୁ ମୃତ୍ୟୁର ତିନି ଦିନ ପରେ ସେ ପୁଣି ମୃତ୍ୟୁରୁ
ପୁନରୁତ୍ଥିତ ହେବେ।" ୩୨ଯୀଶୁଙ୍କ ଏହି କଥା କହିବାର ଅର୍ଥ
ଶିଷ୍ୟମାନେ ବୁଝି ପାରିଲେ ନାହିଁ। ସେମାନେ ତାହାଙ୍କୁ
ଏହାର ଅର୍ଥ ପଚାରି ବୁଝିବାକୁ ଭୟ କଲେ।

## ସବୁଠାରୁ ଶ୍ରେଷ୍ଠ କିଏ

୩୩ଯୀଶୁ ଓ ତାହାଙ୍କ ଶିଷ୍ୟମାନେ କଫର୍ନାହୂମକୁ ଆସିଲେ।
ସେମାନେ ଗୋଟିଏ ଘର ଭିତରକୁ ଗଲେ। ତା ପରେ
ଯୀଶୁ ଶିଷ୍ୟମାନଙ୍କୁ ପଚାରିଲେ, "ଆଜି ରାସ୍ତାରେ ଆସିବା
ବେଳେ କେଉଁ ବିଷୟରେ ତୁମ୍ଭେମାନେ ଯୁକ୍ତିତର୍କ କରୁଥିଲ?"
୩୪କିନ୍ତୁ ଶିଷ୍ୟମାନେ ଚୁପ୍ ରହିଲେ। କାରଣ ସେମାନେ
ବାଟରେ ଯୁକ୍ତିତର୍କ କରୁଥିଲେ ଯେ ତାହାଙ୍କ ଭିତରେ
ସବୁଠାରୁ ଶ୍ରେଷ୍ଠ କିଏ?
୩୫ଯୀଶୁ ବସିପଡ଼ିଲେ ଓ ବାରଜଣ ପ୍ରେରିତଙ୍କୁ ପାଖକୁ
ଡାକିଲେ। ଯୀଶୁ କହିଲେ, "ଯଦି କେହି ସବୁଠାରୁ ବଡ଼
ହେବାକୁ ଚାହେଁ ତେବେ ସେ ଅନ୍ୟ ସମସ୍ତଙ୍କୁ ତା' ନିଜ
ଅପେକ୍ଷା ବଡ଼ ମନେ କରୁ ଓ ସମସ୍ତଙ୍କର ସେବା କରୁ।"
୩୬ତା'ପରେ ଯୀଶୁ ଗୋଟିଏ ଛୋଟ ପିଲାକୁ ନେଇ
ସେମାନଙ୍କ ଆଗରେ ଠିଆ କରାଇଲେ। ସେହି ପିଲାକୁ
କୋଳରେ ନେଇ ସେ କହିଲେ, ୩୭"ମୋ ନାମରେ ଯେଉଁ
ଲୋକ ଗୋଟିଏ ପିଲାକୁ ଏହିଭଳି ଗ୍ରହଣ କରେ, ସେ
ମୋତେ ଗ୍ରହଣ କରେ। ଯେଉଁ ଲୋକ ମୋତେ ଗ୍ରହଣ
କରେ, ସେ ଯେ, କେବଳ ମୋତେ ଗ୍ରହଣ କରେ, ତା
ନୁହେଁ, ବରଂ ସେ ମୋର ପ୍ରେରଣ କର୍ତ୍ତାଙ୍କୁ ମଧ୍ୟ ଗ୍ରହଣ
କରେ।"

## ଆମକୁ ବିରୋଧ କରୁନଥିବା ଲୋକ ଆମ ନିଜର ଲୋକ

୩୮ଯୋହନ ଯୀଶୁଙ୍କୁ କହିଲେ, "ହେ ଗୁରୁ, ତୁମ୍ଭ ନାମ
ନେଇ ଲୋକଙ୍କ ଦେହରୁ ଦୁଷ୍ଟାତ୍ମାମାନଙ୍କୁ ବାହାର କରୁ
ଥିବା ଜଣେ ଲୋକଙ୍କୁ ଆମ୍ଭେମାନେ ଦେଖିଲୁ। ଆମ୍ଭେମାନେ
ତା'କୁ ମନାକରିଲୁ, କାରଣ ସେ ଆମ୍ଭମାନଙ୍କ ଭିତରର
ଲୋକ ନୁହେଁ।"
୩୯କିନ୍ତୁ ଯୀଶୁ କହିଲେ, "ତାକୁ ଅଟକାଅ ନାହିଁ।
କାରଣ ଯେଉଁ ଲୋକ ମୋ ନାମ ନେଇ ଶକ୍ତିର କାର୍ଯ୍ୟ
କରିପାରେ, ସେ ମୋ ନାମରେ ଆଉ ଖରାପ କଥା କହି
ପାରିବ ନାହିଁ।" ୪୦ଯେଉଁ ଲୋକ ଆମ୍ଭର ବିରୋଧ କରେ
ନାହିଁ, ସେ ଆମ୍ଭର ସପକ୍ଷର ଲୋକ। ୪୧ମୁଁ ତୁମ୍ଭମାନଙ୍କୁ
ସତ୍ୟ କହୁଛି। ତୁମ୍ଭେମାନେ ଖ୍ରୀଷ୍ଟଙ୍କ ଲୋକ ବୋଲି ଯଦି
କେହି ତୁମ୍ଭମାନଙ୍କୁ ଗିନାଏ ପାଣି ପିଇବାକୁ ଦିଏ, ତେବେ
ତାକୁ ଏଥି ପାଇଁ ନିଶ୍ଚୟ ପୁରସ୍କାର ମିଳିବ।
୪୨"ଯଦି ଏହି ଛୋଟ ଅବୋଧ ପିଲାମାନଙ୍କ ମଧ୍ୟରୁ
ମୋତେ କେହି ବିଶ୍ୱାସ କରୁଥାଏ ଏବଂ ଆଉ ଜଣେ
ଲୋକ ସେହି ପିଲାଟିକୁ ପାପ କର୍ମରେ ଲିପ୍ତ କରାଏ,
ତେବେ ସେ ଲୋକଟି ପାଇଁ ଏହା ଅତ୍ୟନ୍ତ ଖରାପ ହେବ।
ସେ ଲୋକ ବେକରେ ଚକି ପଥରଟିଏ ବାନ୍ଧି ଦେଇ ତାକୁ
ସମୁଦ୍ରରେ ଫିଙ୍ଗି ଦେବା ତା ପାଇଁ ଭଲ ହୋଇଥାଆନ୍ତା।
୪୩ଯଦି ତୁମ୍ଭର ହାତ ତୁମ୍ଭକୁ ପାପ କରାଏ, ତେବେ ତାକୁ
କାଟିଦିଅ। କାରଣ ଦୁଇ ହାତ ଥାଇ ଅନନ୍ତ କାଳ ଧରି
ଜଳୁଥିବା ନରକର ନିଆଁ ଭିତରେ ତୁମ୍ଭକୁ ଫିଙ୍ଗି ଦିଆଯିବା
ଅପେକ୍ଷା ବରଂ ତୁମ୍ଭେ ପଙ୍ଗୁ ହୋଇ ଅନନ୍ତ ଜୀବନ ଲାଭ
କରିବା ଭଲ। ୪୪* ୪୫ଯଦି ତୁମ୍ଭର ପାଦ ତୁମ୍ଭକୁ ପାପ
କରାଏ, ତେବେ ତାକୁ କାଟି ଦିଅ। ଦୁଇ ପାଦ ଥାଇ
ନର୍କରେ ତୁମ୍ଭକୁ ଫିଙ୍ଗି ଦିଆଯିବା ଅପେକ୍ଷା ବରଂ ଛୋଟା
ହୋଇ ଅନନ୍ତ ଜୀବନ ଲାଭ କରିବା ଭଲ। ୪୬* ୪୭ଯଦି
ତୁମ୍ଭର ଆଖି ତୁମ୍ଭକୁ ପାପ କରାଏ, ତେବେ ତାକୁ ବାହାର
କରି ଦିଅ। ଦୁଇ ଆଖି ଥାଇ ନରକରେ ତୁମ୍ଭକୁ ଫିଙ୍ଗି
ଦିଆଯିବା ଅପେକ୍ଷା ବରଂ ତୁମ୍ଭେ ଗୋଟିଏ ଆଖି ଥାଇ
ଅନନ୍ତ ଜୀବନ ଲାଭ କରିବା ଭଲ। ୪୮ମନୁଷ୍ୟକୁ ଖାଉଥିବା
ନରକର କୀଟ କେବେ ମରେନାହିଁ କି ନର୍କର ନିଆଁ
କେବେ ଲିଭେନାହିଁ। ୪୯ନିଆଁରେ ପ୍ରତ୍ୟେକ ଲୋକକୁ
ଦଣ୍ଡିତ କରାଯିବ।
୫୦"ଲୁଣ ଭଲ ପଦାର୍ଥ। କିନ୍ତୁ ଲୁଣ ଯଦି ତାର ଲୁଣିଆ
ଗୁଣ ହରାଇ ବସିବ, ତାକୁ ପୁଣି ଥରେ କିପରି ଲୁଣିଆ
କରି ଯାଇ ପାରିବ? ତେଣୁ ତୁମ୍ଭେ ଭଲ ଗୁଣରେ ପରିପୂର୍ଣ୍ଣ
ହୁଅ। ସମସ୍ତେ ମିଳିମିଶି ଶାନ୍ତିରେ ରୁହ।"

## ବିବାହ-ବିଚ୍ଛେଦ ସମ୍ପର୍କରେ ଯୀଶୁଙ୍କ ଶିକ୍ଷା

୧୦ ତା'ପରେ ଯୀଶୁ ସେ ସ୍ଥାନ ଛାଡ଼ି ଦେଲେ। ସେ
ଯିହୂଦା ଅଞ୍ଚଳ ଓ ଯର୍ଦ୍ଦନ ନଦୀର ଅପର
ପାରିକୁ ଗଲେ। ପୁଣି ବହୁତ ଲୋକ ତାହାଙ୍କ ପାଖରେ
ଜମା ହୋଇଗଲେ। ସବୁ ସମୟ ଭଳି ଯୀଶୁ ଲୋକମାନଙ୍କୁ
ଶିକ୍ଷା ଦେଲେ।
୨କେତେକ ଫାରୂଶୀ ଯୀଶୁଙ୍କ ପାଖକୁ ଆସିଲେ। ସେମାନେ
ଯୀଶୁଙ୍କ ଭୁଲ ଧରିବା ପାଇଁ ଚେଷ୍ଟା କଲେ। ସେମାନେ
ଯୀଶୁଙ୍କୁ ପରୀକ୍ଷା କରିବା ପାଇଁ ତାହାଙ୍କୁ ପଚାରିଲେ,

---

**ପଦ ସଂଖ୍ୟା ୪୪** ପଦ ସଂଖ୍ୟା ୪୪ ମାର୍କଙ୍କର କେତେକ ଗ୍ରୀକ୍ ପତ୍ରରେ ଯୋଡ଼ା ଯାଇଛି। ଏହି ପଦଟି ପଦ ସଂଖ୍ୟା ୪୮ ସହିତ ସମାନ

**ପଦ ସଂଖ୍ୟା ୪୬** ପଦ ସଂଖ୍ୟା ୪୬ ମାର୍କଙ୍କ କେତେକ ଗ୍ରୀକ୍ ପତ୍ରରେ ଯୋଡ଼ା ଯାଇଛି। ଏହି ପଦଟି ପଦ ସଂଖ୍ୟା ୪୮ ସହିତ ସମାନ।

"ଜଣେ ପୁରୁଷ ତାର ସ୍ତ୍ରୀକୁ ଛାଡ଼ପତ୍ର ଦେବା କ'ଣ ଆଇନ
ସଙ୍ଗତ କାର୍ଯ୍ୟ?"
୩ଯୀଶୁ କହିଲେ, "ମୋଶା ତୁମ୍ଭମାନଙ୍କୁ କ'ଣ ଆଜ୍ଞା
ଦେଇଛନ୍ତି?"
୪ସେମାନେ କହିଲେ, "ଜଣେ ପୁରୁଷ ଛାଡ଼ପତ୍ର ପାଇଁ
ପ୍ରମାଣପତ୍ର ଲେଖି ଦେଇ ତା'ପରେ ନିଜ ସ୍ତ୍ରୀକୁ ଛାଡ଼ି
ଦେଇ ପାରିବ ବୋଲି, ମୋଶା କହିଥିଲେ।"
୫ଯୀଶୁ ସେମାନଙ୍କୁ କହିଲେ, "ମୋଶା ତୁମ୍ଭମାନଙ୍କ ପାଇଁ
ଏହି ଆଜ୍ଞା ଲେଖିଥିଲେ, କାରଣ ତୁମ୍ଭେମାନେ ପରମେଶ୍ୱରଙ୍କ
ଉପଦେଶ ମାନିବାକୁ ମନା କଲ। ୬କିନ୍ତୁ ପରମେଶ୍ୱର
ଯେତେବେଳେ ଜଗତ ସୃଷ୍ଟି କଲେ, 'ସେ ଲୋକଙ୍କୁ ପୁରୁଷ
ଓ ସ୍ତ୍ରୀ କରି ସୃଷ୍ଟି କଲେ।'* ୭'ଏଣୁ ଜଣେ ପୁରୁଷ ନିଜ
ବାପାମାଆଙ୍କୁ ଛାଡ଼ି ନିଜ ସ୍ତ୍ରୀ ସହିତ ମିଳିତ ହେବ। ୮ଏବଂ
ସେମାନେ ଏକ ହୋଇଯିବେ।'* ତେଣୁ ସେମାନେ ଦୁଇଜଣ
ନୁହଁନ୍ତି ବରଂ ଏକ। ୯ପରମେଶ୍ୱର ଯଦି ଏହି ଦୁଇଜଣ
ମନୁଷ୍ୟଙ୍କୁ ଏକାଠି କରିଛନ୍ତି, ତାହାଙ୍କୁ କୌଣସି ବ୍ୟକ୍ତି
ଅଲଗା କରି ଦେବା ଉଚିତ ନୁହେଁ।"
୧୦ତା ପରେ ଯୀଶୁ ଓ ଶିଷ୍ୟମାନେ ଘରକୁ ଫେରିବା
ପରେ ଶିଷ୍ୟମାନେ ଯୀଶୁଙ୍କୁ ପୁଣି ଥରେ ଛାଡ଼ପତ୍ର ବିଷୟରେ
ପଚାରିଲେ। ୧୧ଯୀଶୁ କହିଲେ, "ଯେଉଁ ପୁରୁଷ ନିଜ
ପତ୍ନୀକୁ ଛାଡ଼ପତ୍ର ଦେଇ ଅନ୍ୟ ଜଣେ ସ୍ତ୍ରୀକୁ ବିବାହ
କରେ, ସେହି ପୁରୁଷ ତା ପତ୍ନୀ ପ୍ରତି ପାପ କରିବା
କାରଣରୁ ଦୋଷୀ ହୁଏ। ସେ ବ୍ୟଭିଚାର ପାପ ପାଇଁ
ଦୋଷୀ ହୁଏ। ୧୨ଏବଂ ଯଦି ଜଣେ ସ୍ତ୍ରୀ ନିଜ ସ୍ୱାମୀଙ୍କୁ
ଛାଡ଼ପତ୍ର ଦେଇ ଅନ୍ୟ ଜଣେ ପୁରୁଷକୁ ବିବାହ କରେ
ତେବେ ସେ ମଧ୍ୟ ବ୍ୟଭିଚାର ପାପରେ ଦୋଷୀ ହୁଏ।"

## ପିଲାମାନଙ୍କୁ ଯୀଶୁ ଗ୍ରହଣ କଲେ

୧୩ପୁଣି ଲୋକମାନେ ଯୀଶୁଙ୍କ ପାଖକୁ ସେମାନଙ୍କର
ଛୋଟ ଛୋଟ ପିଲାମାନଙ୍କୁ ଆଣିଲେ ଯେପରି ଯୀଶୁ
ପିଲାମାନଙ୍କୁ ଛୁଇଁ ଦେଇ ଆଶୀର୍ବାଦ କରିବେ। କିନ୍ତୁ
ଯୀଶୁଙ୍କ ଶିଷ୍ୟମାନେ ଲୋକମାନଙ୍କୁ ବାରଣ କଲେ ଯେ
ସେମାନେ ସେମାନଙ୍କର ପିଲାମାନଙ୍କୁ ଯୀଶୁଙ୍କ ପାଖକୁ ନ
ଆଣନ୍ତୁ। ୧୪ଏହା ଦେଖି ଯୀଶୁ ବହୁତ ରାଗିଗଲେ। ଯୀଶୁ
ଶିଷ୍ୟମାନଙ୍କୁ କହିଲେ, "ଛୋଟଛୋଟ ପିଲାମାନେ ମୋ
ପାଖକୁ ଆସନ୍ତୁ। ସେମାନଙ୍କୁ ଅଟକାଅ ନାହିଁ। କାରଣ
ପରମେଶ୍ୱରଙ୍କ ରାଜ୍ୟ ଏହି ପିଲାମାନଙ୍କ ଭଳି ସରଳ
ଲୋକମାନଙ୍କର ଅଟେ। ୧୫ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି,
ଗୋଟିଏ ଛୋଟ ପିଲା ସରଳ ମନରେ ସବୁ ବିଷୟ ଗ୍ରହଣ
କଲାଭଳି ତୁମ୍ଭେମାନେ ପରମେଶ୍ୱରଙ୍କ ରାଜ୍ୟ ଗ୍ରହଣ କରିବା
ଉଚିତ ନଚେତ ତୁମ୍ଭେ ସେଠାରେ କେବେ ହେଲେ
ପ୍ରବେଶ କରି ପାରିବ ନାହିଁ।" ୧୬ତା'ପରେ ଯୀଶୁ ପିଲାମାନଙ୍କୁ
କୋଳକୁ ଉଠେଇ ନେଲେ। ସେ ସେମାନଙ୍କ ଉପରେ
ହାତ ରଖି ଆଶୀର୍ବାଦ କଲେ।

## ଜଣେ ଧନୀ ଲୋକର ଯୀଶୁଙ୍କୁ ପ୍ରଶ୍ନ

୧୭ଯୀଶୁ ଯାଉଥିବା ବେଳେ ଜଣେ ଲୋକ ଦୌଡ଼ି
ଦୌଡ଼ି ତାହାଙ୍କ ପାଖକୁ ଆସିଲା ଓ ଯୀଶୁଙ୍କ ଆଗରେ
ଆଣ୍ଠୁମାଡ଼ି ବସି ପଡ଼ିଲା। ସେ ପଚାରିଲା, "ହେ ଉତ୍ତମ
ଗୁରୁ; ଅନନ୍ତ ଜୀବନର ଅଧିକାରୀ ହେବା ପାଇଁ ମୁଁ କ'ଣ
କରିବି?"
୧୮ଯୀଶୁ ଉତ୍ତର ଦେଲେ, "ତୁମ୍ଭେ ମୋତେ ଉତ୍ତମ
ବୋଲି କାହିଁକି କହୁଛ? କେବଳ ପରମେଶ୍ୱରଙ୍କ ଛଡ଼ା
ଆଉ କେହି ହେଲେ ଉତ୍ତମ ନୁହଁନ୍ତି। ୧୯କିନ୍ତୁ ମୁଁ ତୁମ୍ଭ
ପ୍ରଶ୍ନର ଉତ୍ତର ଦେଉଛି। ତୁମ୍ଭେ ଆଜ୍ଞା ଗୁଡ଼ିକ ଜାଣିଛ:
ହତ୍ୟା କର ନାହିଁ। ବ୍ୟଭିଚାର କର ନାହିଁ। ଚୋରୀ କର
ନାହିଁ। ମିଥ୍ୟା ସାକ୍ଷ୍ୟ ଦିଅ ନାହିଁ। ଠକ ନାହିଁ। ବାପା
ମାଆଙ୍କୁ ଆଦର କର।"
୨୦ସେହି ଲୋକ ଯୀଶୁଙ୍କୁ କହିଲା, "ଗୁରୁ, ମୁଁ ମୋ
ପିଲାଦିନୁ ଏହି ସବୁ କଥା ମାନି ଚାଲୁଛି।"
୨୧ଯୀଶୁ ତାହାଙ୍କୁ ଚାହିଁଲେ ଓ ସ୍ନେହ କଲେ। ସେ
ତାହାଙ୍କୁ କହିଲେ, "ତୁମ୍ଭର ଏବେ ବି ଗୋଟିଏ କଥାର
ଅଭାବ ଅଛି। ତୁମ୍ଭେ ଯାଅ, ଯାହା କିଛି ତୁମ୍ଭ ପାଖରେ
ଅଛି ସେତକ ବିକି ଦେଇ ଗରିବଙ୍କୁ ସେ ଧନ ବାଣ୍ଟି
ଦିଅ। ସ୍ୱର୍ଗରେ ତୁମ୍ଭକୁ ଧନ ମିଳିବ। ତା'ପରେ ଆସ ଓ
ମୋର ଅନୁସରଣ କର।"
୨୨ଯୀଶୁଙ୍କ କଥା ଶୁଣି ଲୋକଟିର ମନ ଦୁଃଖ ହୋଇଗଲା।
ସେ ମନ ଦୁଃଖରେ ଫେରିଗଲା। କାରଣ ସେ ବହୁତ
ଧନୀ ଥିଲା ଓ ତାର ଧନ ନିଜ ପାଖରେ ରଖିବାକୁ
ଚାହୁଁଥିଲା।
୨୩ଯୀଶୁ ଚାରି ଆଡ଼େ ଚାହିଁ ଶିଷ୍ୟମାନଙ୍କୁ କହିଲେ,
"ଧନୀ ଲୋକମାନଙ୍କ ପକ୍ଷରେ ପରମେଶ୍ୱରଙ୍କ ରାଜ୍ୟରେ
ପ୍ରବେଶ କରିବା ବଡ଼ କଠିନ ବିଷୟ।"
୨୪ଯୀଶୁଙ୍କ କଥା ଶୁଣି ଶିଷ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ,
କିନ୍ତୁ ଯୀଶୁ ସେମାନଙ୍କୁ ପୁଣି କହିଲେ, "ହେ ମୋର
ପିଲାମାନେ, ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରିବା
ପ୍ରକୃତରେ କେଡ଼େ କଠିନ। ୨୫ଜଣେ ଧନୀ ଲୋକର
ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରିବା ଅପେକ୍ଷା,
ଗୋଟିଏ ଓଟ ଗୋଟିଏ ଛୁଞ୍ଚି କଣାରେ ଗଳି ଯାଇ ପାରିବା
ସହଜ।"
୨୬ସେମାନେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ
ପରସ୍ପର କୁହାକୁହି ହେଲେ, "ତେବେ କିଏ ଉଦ୍ଧାର ପାଇ
ପାରିବ?"
୨୭ଯୀଶୁ ସେମାନଙ୍କୁ ଚାହିଁ କହିଲେ, "ଏହା ମନୁଷ୍ୟମାନଙ୍କ
ପାଇଁ ଅସମ୍ଭବ। କିନ୍ତୁ ପରମେଶ୍ୱରଙ୍କ ପାଇଁ ନୁହେଁ।
ପରମେଶ୍ୱର ସବୁ କିଛି କରି ପାରିବେ।"
୨୮ପିତର ଯୀଶୁଙ୍କୁ କହିଲେ, "ଆପଣଙ୍କୁ ଅନୁସରଣ
କରିବା ପାଇଁ ଆମ୍ଭେମାନେ ସବୁ କିଛି ତ୍ୟାଗ କରିଛୁ।"
୨୯ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି; ଯେ
ମୋ ପାଇଁ ଓ ସୁସମାଚାର ପାଇଁ ଘରଦ୍ୱାର, ଭାଇ-ଭଉଣୀ,
ବାପା ମାଆ, ପିଲାଛୁଆ ଓ ଜମିବାଡ଼ି ଛାଡ଼ି ଦେଇ ପାରିଛି,
୩୦ସେ ନିଶ୍ଚୟ ଆପଣାର ସେହି ଛାଡ଼ିଥିବା ବସ୍ତୁଠାରୁ ଶହେ

---

**'ସେ ... ସୃଷ୍ଟିକଲେ।'** ଆଦିପୁସ୍ତକ ୧:୨୭

**'ଏଣୁ ... ହୋଇଯିବ।'** ଆଦିପୁସ୍ତକ ୨:୨୪

ଗୁଣ ଅଧିକ ଇହ କାଳରେ ପାଇ ପାରିବ। ସେ ଅଧିକ
ଘରଦ୍ୱାର, ଭାଇ-ଭଉଣୀ, ମାଆ,ପିଲାପିଲି ଓ ଜମିବାଡ଼ି
ପାଇବ। ଏବଂ ନିର୍ଯ୍ୟାତନା ସହିତ ସେ ଏହି ସବୁ ଜିନିଷ
ପାଇବ କିନ୍ତୁ ପର କାଳରେ ସେ ଅନନ୍ତ
ଜୀବନ ଲାଭ କରିବ। ୩୧ବର୍ତ୍ତମାନ ଯେଉଁ ଲୋକମାନେ
ପ୍ରଥମ ସ୍ଥାନରେ ଅଛନ୍ତି, ସେମାନେ ଭବିଷ୍ୟତରେ ଶେଷ
ସ୍ଥାନକୁ ଚାଲିଯିବେ, ଏବଂ ବର୍ତ୍ତମାନ ଯେଉଁମାନେ ଶେଷ
ସ୍ଥାନରେ ଅଛନ୍ତି, ସେମାନେ ଭବିଷ୍ୟତରେ ପ୍ରଥମ ସ୍ଥାନକୁ
ଚାଲିଯିବେ।"

### ଯୀଶୁ ତାଙ୍କ ମୃତ୍ୟୁ ବିଷୟରେ ପୁଣି ଥରେ କହିଲେ

୩୨ଯୀଶୁ ଓ ତାହାଙ୍କ ସହିତ ଲୋକମାନେ ଯିରୂଶାଲମକୁ
ଯାଉଥିଲେ। ଯୀଶୁ ସେମାନଙ୍କ ଆଗେ ଆଗେ ଯାଉଥିଲେ।
ତାହାଙ୍କ ଶିଷ୍ୟମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଉଥିଲେ।
କିନ୍ତୁ ତାହାଙ୍କୁ ଅନୁସରଣ କରି ଆସୁଥିବା ଲୋକେ ସବୁ
ଡରି ଯାଇଥିଲେ। ଯୀଶୁ ତାହାଙ୍କର ବାରଜଣ ପ୍ରେରିତଙ୍କୁ
ଅଲଗା ଡାକି ଯିରୂଶାଲମରେ ଯାହା ସବୁ ଘଟିବ, ସେ
ବିଷୟରେ କହିବାକୁ ଲାଗିଲେ। ୩୩ଯୀଶୁ କହିଲେ, "ଶୁଣ,
ଆମ୍ଭେମାନେ ଯିରୂଶାଲମକୁ ଯାଉଛୁ। ମନୁଷ୍ୟପୁତ୍ରଙ୍କୁ ପ୍ରଧାନ
ଯାଜକ ଓ ଧର୍ମଶାସ୍ତ୍ରୀମାନଙ୍କ ହାତରେ ଦେଇ ଦିଆଯିବ
ଏବଂ ସେମାନେ ତାହାଙ୍କୁ ମୃତ୍ୟୁ ଦଣ୍ଡଦେବା ପାଇଁ
ଅଣଯିହୂଦୀମାନଙ୍କୁ ସମର୍ପି ଦେବେ। ୩୪ସେମାନେ ତାହାଙ୍କୁ
ଉପହାସ କରିବେ ଓ ତାହାଙ୍କ ଉପରେ ଛେପ ପକାଇବେ।
ତାହାଙ୍କୁ କୋରଡ଼ାରେ ପିଟିବେ ଓ ଶେଷରେ ମାରି
ପକାଇବେ। କିନ୍ତୁ ମୃତ୍ୟୁ ଠାରୁ ତୃତୀୟ ଦିନରେ ସେ
ପୁନରୁତ୍ଥାନ ହେବେ।"

### ଯାକୁବ ଓ ଯୋହନଙ୍କର ଯୀଶୁଙ୍କୁ ଅନୁରୋଧ

୩୫ଜେବଦୀଙ୍କ ପୁତ୍ର ଯାକୁବ ଓ ଯୋହନ ଯୀଶୁଙ୍କ ପାଖକୁ
ଆସି କହିଲେ। "ହେ ଗୁରୁ, ତୁମ୍ଭେ ଆମ୍ଭ ପାଇଁ କିଛି
କର ବୋଲି ଆମ୍ଭେ ଚାହୁଁଛୁ।"
୩୬ଯୀଶୁ ପଚାରିଲେ, "ତୁମ୍ଭେମାନେ ମୋ ଦ୍ୱାରା ତୁମ୍ଭ
ପାଇଁ କ'ଣ ପାଇବାକୁ ଚାହୁଁଛ?"
୩୭ସେମାନେ କହିଲେ, "ଆପଣଙ୍କ ରାଜ୍ୟରେ ଆପଣ
ମହିମା ପ୍ରାପ୍ତ ହେବାବେଳେ ଆମ୍ଭ ଭିତରୁ ଜଣେ ତୁମ୍ଭର
ଡାହାଣ ପଟେ ଓ ଆଉ ଜଣେ ବାମ ପଟେ ବସିବା ପାଇଁ
ଆମ୍ଭକୁ ଅଧିକାର ପ୍ରଦାନ କରନ୍ତୁ।"
୩୮ଯୀଶୁ କହିଲେ, "ତୁମ୍ଭେ କ'ଣ ମାଗୁଛ, ତାହା ତୁମ୍ଭେ
ଜାଣି ପାରୁନାହଁ। ମୁଁ ଯେଉଁ ଯାତନା ଭୋଗ କରିବି,
ତୁମ୍ଭେ ମଧ୍ୟ କ'ଣ ସେହି ଭଳି ଯାତନା ଭୋଗ କରି
ପାରିବ? ମୁଁ ଯେଉଁଭଳି ବାପ୍ତିଜିତ ହେବି, ତୁମ୍ଭେ କ'ଣ
ସେହିଭଳି ବାପ୍ତିଜିତ ହୋଇ ପାରିବ?"
୩୯ସେମାନେ ତାହାଙ୍କୁ କହିଲେ, "ହଁ ଆମ୍ଭେ ପାରିବୁ।"
ତା'ପରେ ଯୀଶୁ ସେମାନଙ୍କୁ କହିଲେ, "ମୁଁ ଯେଉଁ
ଯାତନା ଭୋଗ କରିବି, ତୁମ୍ଭେ ତାହା ଭୋଗ କରିବ। ମୁଁ
ଯାହା ଦ୍ୱାରା ବାପ୍ତିଜିତ ହେବି, ତୁମ୍ଭେମାନେ ମଧ୍ୟ ତା ଦ୍ୱାରା
ବାପ୍ତିଜିତ ହେବ। ୪୦କିନ୍ତୁ ମୋର ଡାହାଣ ବା ବାମ
ପଟରେ କିଏ ବସିବ, ତାହା ବାଛିବାର ଅଧିକାର ମୋର
ନାହିଁ। ଯେଉଁମାନଙ୍କ ପାଇଁ ଏହା ପ୍ରସ୍ତୁତ କରି ଯାଇଛି,
କେବଳ ସେହିମାନେ ସେଥିରେ ବସି ପାରିବେ।"
୪୧ଅନ୍ୟ ଦଶ ଜଣ ପ୍ରେରିତ ଏହା ଶୁଣିଲେ। ସେମାନେ
ଯାକୁବ ଓ ଯୋହନଙ୍କ ଉପରେ ରାଗିଗଲେ। ୪୨ଯୀଶୁ
ସମସ୍ତ ପ୍ରେରିତମାନଙ୍କୁ ଏକାଠି ଡାକିଲେ। ସେ ସେମାନଙ୍କୁ
କହିଲେ, "ଅଣ-ଯିହୂଦୀମାନଙ୍କ ଭିତରେ ଅନେକ ଲୋକ
ଅଛନ୍ତି, ଯେଉଁମାନଙ୍କୁ ସେମାନେ ଶାସକ କହନ୍ତି। ତୁମ୍ଭେ
ଜାଣ ଯେ, ଏହି ଶାସକମାନେ ଲୋକଙ୍କ ଉପରେ ପ୍ରଭୁତ୍ୱ
ଦେଖାଇବାକୁ ଭଲ ପାଆନ୍ତି। ତାହାଙ୍କର ମହତ୍ତ୍ୱପୂର୍ଣ୍ଣ
ନେତାମାନେ ମଧ୍ୟ ଲୋକଙ୍କ ଉପରେ ତାହାଙ୍କର ଅଧିକାର
ସାବ୍ୟସ୍ତ କରିବାକୁ ଭଲ ପାଆନ୍ତି। ୪୩କିନ୍ତୁ ତୁମ୍ଭ ମଧ୍ୟରେ
ଏଭଳି କିଛି ହେବା ଅନୁଚିତ। ଯଦି ତୁମ୍ଭ ଭିତରୁ କେହି
ବଡ଼ ହେବାକୁ ଚାହୁଁଥାଏ, ତେବେ ସେ ଜଣେ ସେବକ
ଭଳି ତୁମ୍ଭ ସମସ୍ତଙ୍କର ସେବା କରୁ। ୪୪ଯଦି ତୁମ୍ଭ ଭିତରୁ
କେହି ମହତ୍ତ୍ୱପୂର୍ଣ୍ଣ ହେବାକୁ ଚାହୁଁଥାଏ, ତେବେ ସେ ତୁମ୍ଭ
ସମସ୍ତଙ୍କର ଜଣେ କ୍ରୀତଦାସ ଭଳି ସେବା କରୁ। ୪୫ସେହିଭଳି
ମନୁଷ୍ୟ-ପୁତ୍ର ଅନ୍ୟ ଠାରୁ ସେବା ପାଇବା ପାଇଁ ଆସି
ନାହାଁନ୍ତି, ବରଂ ସେ ସେବା କରିବା ପାଇଁ ଆସିଛନ୍ତି। ସେ
ବହୁତ ଲୋକଙ୍କୁ ଉଦ୍ଧାର କରିବା ପାଇଁ ନିଜର ଜୀବନ
ଦେବା ପାଇଁ ଆସିଛନ୍ତି।"

### ଅନ୍ଧକୁ ଚକ୍ଷୁଦାନ

୪୬ତା'ପରେ ସେମାନେ ଯିରୀହୋକୁ ଆସିଲେ। ଯୀଶୁ
ତାହାଙ୍କ ଶିଷ୍ୟ ଓ ଅନ୍ୟ ଅନେକ ଲୋକଙ୍କ ସହିତ ସେହି
ସହର ଛାଡ଼ି ଯିବା ସମୟରେ ତୀମୟର ପୁଅ ବର୍ତ୍ତୀମୟ
ନାମକ ଜଣେ ଅନ୍ଧ ଭିକାରୀ ରାସ୍ତା କଡ଼ରେ ବସିଥିଲା।
ସେ ସଦାବେଳେ ଲୋକଙ୍କୁ ଭିକ ମାଗୁଥିଲା। ୪୭ସେ ଶୁଣିଲା
ଯେ ନାଜରିତର ଯୀଶୁ ସେହି ବାଟ ଦେଇ ଯାଉଛନ୍ତି। ସେ
ଚିତ୍କାର କରି କହିଲା, "ହେ ଦାଉଦଙ୍କ ପୁତ୍ର ଯୀଶୁ; ମୋ
ଉପରେ କୃପା କର।"
୪୮ଅନେକ ଲୋକ ତାକୁ ଚୁପ ହେବା ପାଇଁ ଧମକ
ଦେଲେ। କିନ୍ତୁ ସେହି ଅନ୍ଧ ଭିକାରୀଟି ଅଧିକରୁ ଅଧିକ
ଚିତ୍କାର କରି କହିଲା, "ହେ ଦାଉଦଙ୍କ ପୁତ୍ର ଯୀଶୁ, ମୋ
ଉପରେ କୃପା କର।"
୪୯ଯୀଶୁ ଅଟକି ଗଲେ ଓ କହିଲେ, "ତାହାକୁ କୁହ
ମୋ ପାଖକୁ ଆସୁ।"
ଲୋକମାନେ ଅନ୍ଧ ଲୋକଟିକୁ ଡାକି କହିଲେ, "ସାହସ
ଧର, ଉଠ। ଯୀଶୁ ତୁମ୍ଭକୁ ଡାକୁଛନ୍ତି।" ୫୦ଅନ୍ଧ ଲୋକଟି
ତତ୍‌କ୍ଷଣାତ୍ ତା' ଚାଦରଟି ଫିଙ୍ଗି ଦେଲା ଓ ଡେଇଁ ପଡ଼ିଲା।
ସେ ଯୀଶୁଙ୍କ ନିକଟକୁ ଆସିଲା। ୫୧ଯୀଶୁ ଅନ୍ଧ ଲୋକଟିକୁ
ପଚାରିଲେ, "ମୁଁ ତୁମ୍ଭ ପାଇଁ କ'ଣ କରିବି ବୋଲି ତୁମ୍ଭେ
ଚାହୁଁଛ?" ଅନ୍ଧଟି ଉତ୍ତର ଦେଲା, "ଗୁରୁ, ମୁଁ ଦେଖିବାକୁ
ଚାହୁଁଛି।" ୫୨ଯୀଶୁ କହିଲେ, "ଯାଅ। ତୁମ୍ଭେ ଭଲ ହୋଇଗଲ,
କାରଣ ତୁମ୍ଭେ ବିଶ୍ୱାସ କଲ।" ତା'ପରେ ଲୋକଟି ସବୁ
କିଛି ଦେଖି ପାରିଲା ଓ ସେ ପଥରେ ଯୀଶୁଙ୍କୁ ଅନୁସରଣ
କଲା।

## ଯୀଶୁ ଜଣେ ରାଜା ଭଳି ଯିରୂଶାଲମରେ ପ୍ରବେଶ କଲେ

୧୧ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଯିରୂଶାଲମର
ନିକଟବର୍ତ୍ତୀ ହେଲେ। ସେମାନେ ଜୀତ-ପର୍ବତ
ପାଖ ବେଥ୍‌ଫାଗୀ ଓ ବେଥନିଆ ସହରରେ ପହଞ୍ଚିଲେ।
ଯୀଶୁ ନିଜ ଶିଷ୍ୟମାନଙ୍କ ଭିତରୁ ଦୁଇ ଜଣକୁ ଏହା କହି
ପଠାଇଲେ, ୨“ଆଗରେ ଦେଖାଯାଉଥିବା ଗାଆଁକୁ ଯାଅ।
ଗାଁଆ ଭିତରେ ପ୍ରବେଶ କରିବା ମାତ୍ରେ ତୁମ୍ଭେମାନେ
ଗୋଟିଏ ଗଧଛୁଆ ବନ୍ଧା ହୋଇଥିବାର ଦେଖିବ। ସେହି
ଗଧ ଛୁଆ ଉପରେ କେହି ଏ ପର୍ଯ୍ୟନ୍ତ ଚଢ଼ି ନାହାଁନ୍ତି।
ତାକୁ ଖୋଲି ମୋ ପାଖକୁ ନେଇ ଆସ। ୩ଯଦି କୌଣସି
ଲୋକ ତୁମ୍ଭମାନଙ୍କୁ ଗଧଛୁଆକୁ କାହିଁକି ନେଇ ଯାଉଛ
ବୋଲି ପଚାରେ, ତେବେ ତୁମ୍ଭେମାନେ ତାହାକୁ କହିବ,
“ପ୍ରଭୁଙ୍କର ଏହାଠାରେ ଦରକାର ଅଛି। ତା’ ପରେ
ତାହାକୁ ଶୀଘ୍ର ଫେରଇ ଦେବେ।”
୪ସେମାନେ ଚାଲିଗଲେ। ସେମାନେ ଗୋଟିଏ ଦ୍ୱାର
ପାଖ ଦାଣ୍ଡରେ ଏକ ଗଧଛୁଆକୁ ବନ୍ଧା ହୋଇଥିବାର
ଦେଖିଲେ। ସେମାନେ ତାହାକୁ ଖୋଲିଦେଲେ। ୫କେତେକ
ଲୋକ ସେଠାରେ ଠିଆ ହୋଇଥିଲେ। ସେମାନେ ଏହା
ଦେଖି ପଚାରିଲେ, “ତୁମ୍ଭେମାନେ ଏ ଗଧଛୁଆକୁ କାହିଁକି
ଖୋଲୁଛ?” ୬ଶିଷ୍ୟମାନଙ୍କୁ ଯୀଶୁ ଯାହା କହିବା ପାଇଁ
କହିଥିଲେ, ଶିଷ୍ୟମାନେ ଲୋକମାନଙ୍କୁ ତାହା କହିଲେ।
ତା’ପରେ ଲୋକମାନେ ଗଧଛୁଆ ସହ ସେମାନଙ୍କୁ ଛାଡ଼ିଦେଲେ।
୭ଶିଷ୍ୟମାନେ ଗଧକୁ ଯୀଶୁଙ୍କ ପାଖକୁ ଆଣିଲେ ଓ ଗଧ
ପିଠି ଉପରେ ନିଜ ଲୁଗା ପକାଇ ଦେଲେ। ଯୀଶୁ
ତା’ଉପରେ ବସିଲେ। ୮ଅନେକ ଲୋକ ଯୀଶୁଙ୍କ ପାଇଁ
ସେମାନଙ୍କ ଲୁଗା ରାସ୍ତାରେ ବିଛେଇ ଦେଲେ। ଅନ୍ୟମାନେ
ଡାଳ କାଟି ଆଣି ରାସ୍ତାରେ ବିଛେଇ ଦେଲେ। ୯କେତେକ
ଲୋକ ଯୀଶୁଙ୍କ ଆଗେ ଆଗେ ଯାଉଥିଲେ ଓ ଅନ୍ୟ
କେତେକ ତାହାଙ୍କ ପଛେ ପଛେ ଯାଉଥିଲେ। ସମସ୍ତେ
ପାଟି କରି କହୁଥିଲେ,

“ପ୍ରଶଂସା (ହୋଶାନ୍ନା*) ଗାନକର ପ୍ରଭୁଙ୍କ ନାମରେ
ଯେଉଁ ବ୍ୟକ୍ତି ଆସୁଛନ୍ତି, ସେ ଧନ୍ୟ।’
ଗୀତସଂହିତା ୧୧୮:୨୫-୨୬

୧୦ ଆମ୍ଭର ପିତା ଦାଉଦଙ୍କର ଆଗାମୀ ରାଜ୍ୟ ଧନ୍ୟ,
ସ୍ୱର୍ଗରେ ରହୁଥିବା ପରମ-ପିତା ହେଉଛନ୍ତି ଧନ୍ୟ।”

୧୧ଯୀଶୁ ଯିରୂଶାଲମ ଆସି ମନ୍ଦିର* ଭିତରେ ପ୍ରବେଶ
କଲେ। ଯୀଶୁ ମନ୍ଦିରରେ ପ୍ରତ୍ୟେକ ବିଷୟ ପ୍ରତି ଦୃଷ୍ଟି
ପକାଇଲେ। ସେତେବେଳକୁ ବହୁତ ଡେରି ହୋଇ ଯାଇଥିଲା।
ତେଣୁ ଯୀଶୁ ବାରଜଣ ପ୍ରେରିତଙ୍କ ସହିତ ବେଥନିଆକୁ
ଚାଲିଗଲେ।
୧୨ତହିଁ ଆର ଦିନ ଯେତେବେଳେ ସେମାନେ ବେଥନିଆରୁ
ବାହାରୁଥିଲେ, ତାହାଙ୍କୁ ବହୁତ ଭୋକ ଲାଗିଲା। ୧୩ଯୀଶୁ
ପତ୍ରରେ ପରିପୂର୍ଣ୍ଣ ଗୋଟିଏ ଡିମ୍ବିରି-ଗଛ ଦେଖିଲେ। ଗଛରେ
କିଛି ଡିମ୍ବିରି ଫଳ ଥିବ ଭାବି ସେ ଗଛ ମୂଳକୁ ଗଲେ।
କିନ୍ତୁ ସେଠାରେ ପହଞ୍ଚି ସେ ଗଛରେ ଗୋଟିଏ ହେଲେ
ଡିମ୍ବିରି-ଫଳ ପାଇଲେ ନାହିଁ। ଗଛରେ ପତ୍ର ଛଡ଼ା ଆଉ
କିଛି ନଥିଲା। ଏହା ଡିମ୍ବିରି-ଫଳ ଆସିବା ଋତୁ ନଥିଲା।
୧୪ତେଣୁ ଯୀଶୁ ଗଛଟିକୁ କହିଲେ, “ଲୋକେ ତୁମ୍ଭର ଫଳ
ଆଉ ଏଣିକି କେବେହେଲେ ଖାଇବେ ନାହିଁ।” ଶିଷ୍ୟମାନେ
ଯୀଶୁଙ୍କର ଏହି କଥା ଶୁଣିଲେ।

## ଯୀଶୁଙ୍କର ମନ୍ଦିରରେ ପ୍ରବେଶ

୧୫ତା’ପରେ ସେ ଯିରୂଶାଲମକୁ ଗଲେ। ଯୀଶୁ ମନ୍ଦିରରେ
ପ୍ରବେଶ କଲାମାତ୍ରେ ସେଠାରେ କିଣା-ବିକା କରୁଥିବା
ଲୋକମାନଙ୍କୁ ବାହାରକୁ ତଡ଼ି ଦେବାକୁ ଲାଗିଲେ। ସେ
ବିଭିନ୍ନ ପ୍ରକାର ମୁଦ୍ରା ବିନିମୟ କରୁଥିବା ଲୋକଙ୍କ ମେଜ
ଓଲଟେଇ ଦେଲେ। ଯେଉଁମାନେ କପୋତ ବିକୁଥିଲେ
ସେମାନଙ୍କର ମେଜସବୁ ମଧ୍ୟ ସେ ଓଲଟେଇ ଦେଲେ।
୧୬ସେ ମଧ୍ୟ କାହାରିକୁ ମନ୍ଦିର ପରିସରରୁ କିଛି ହେଲେ
ନେଇ ଯିବାକୁ ଅନୁମତି ଦେଲେ ନାହିଁ। ୧୭ତା’ପରେ ସେ
ସେମାନଙ୍କୁ ଉପଦେଶ ଦେଇ କହିଲେ, “ଶାସ୍ତ୍ରରେ ଏ କଥା
ଲେଖା ଅଛି ଯେ ‘ମୋ ଘରକୁ ସବୁ ଜାତିର ଲୋକମାନଙ୍କ
ପାଇଁ ପ୍ରାର୍ଥନା ଘର କୁହାଯିବ।’* କିନ୍ତୁ ତୁମ୍ଭେମାନେ ତ
ତାକୁ ଚୋରମାନଙ୍କର ଆଶ୍ରୟ ସ୍ଥଳରେ ପରିଣତ କରି
ଦେଉଛ।’*
୧୮ପ୍ରଧାନଯାଜକ ଓ ଧର୍ମଯାଜକମାନେ ଏ କଥା ଶୁଣିଲେ।
ସେମାନେ ଯୀଶୁଙ୍କୁ ମାରିବା ପାଇଁ ବାଟ ଖୋଜିଲେ। କିନ୍ତୁ
ସେଠାରେ ଜମା ହୋଇଥିବା ସବୁ ଲୋକେ ଯୀଶୁଙ୍କ
ଉପଦେଶ ଶୁଣି ବିସ୍ମିତ ହୋଇଯାଇଥିବାରୁ ଧର୍ମଯାଜକମାନେ
ଯୀଶୁଙ୍କୁ ଡରି ଗଲେ। ୧୯ସନ୍ଧ୍ୟା ହୋଇଗଲା। ସନ୍ଧ୍ୟା
ହେବାରୁ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ନଗରରୁ ବାହାରି
ଚାଲିଗଲେ।

## ଯୀଶୁ ବିଶ୍ୱାସର ଶକ୍ତି ଦେଖେଇଲେ

୨୦ତା’ପର ଦିନ ସକାଳେ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କ
ସହିତ ସେହି ଡିମ୍ବିରିଗଛ ଥିବା ବାଟ ଦେଇ ଆସିଲେ।
ସେମାନେ ଡିମ୍ବିରି ଗଛକୁ ମୂଳରୁ ଶୁଖି ମରି ଯାଇଥିବାର
ଦେଖିଲେ। ୨୧ସେତେବେଳେ ପିତର ଡିମ୍ବିରି ଗଛକୁ ମନେ
ପକେଇଲେ ଓ ଯୀଶୁଙ୍କୁ କହିଲେ, “ହେ ଗୁରୁ, ଦେଖ;
ଗତ କାଲି ତୁମ୍ଭେ ଯେଉଁ ଡିମ୍ବିରି ଗଛକୁ ଅଭିଶାପ
ଦେଇଥିଲ, ସେ ଗଛ ଆଜି ଶୁଖି ମରି ଯାଇଛି।”

---

**ହୋଶାନ୍ନା** ଏକ ଏବ୍ରିୟ ଶବ୍ଦ। ରକ୍ଷା କରିବା ପାଇଁ ପରମେଶ୍ୱରଙ୍କୁ ପ୍ରାର୍ଥନା କଲାବେଳେ ପ୍ରଥମେ ଏହି ଶବ୍ଦର ପ୍ରୟୋଗ ହେଉଥିଲା। କିନ୍ତୁ ଏଠାରେ ପରମେଶ୍ୱର କିମ୍ବା ଖ୍ରୀଷ୍ଟଙ୍କୁ ପ୍ରଶଂସା କରି ଆନନ୍ଦ ଅଭିବ୍ୟକ୍ତ କରିବା ପାଇଁ ଏହି ଶବ୍ଦର ପ୍ରୟୋଗ କରା ଯାଇଛି।

**ମନ୍ଦିର** ଯିହୂଦୀ ମାନଙ୍କର ଉପାସନା ସ୍ଥଳ।

**‘ମୋ ଘରକୁ ... କୁହାଯିବ’** ଯିଶାଇୟ ୫୬:୭

**‘ମୋ ଘରକୁ ... କରି ଦେଉଛ’** ଯିରିମିୟ ୭:୧୧

୨୨ଯୀଶୁ ଉତ୍ତର ଦେଲେ, "ପରମେଶ୍ୱରଙ୍କଠାରେ ବିଶ୍ୱାସ
ରଖ। ୨୩ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି: ଯଦି କେହି
ଲୋକ ଏହି ପର୍ବତକୁ କହିବ, 'ତୁ ଉପୁଡ଼ି ସମୁଦ୍ରରେ ଯାଇ
ପଡ଼ିଯା,' ଏବଂ ଯଦି ଲୋକଟିର ମନରେ କୌଣସି ପ୍ରକାର
ସନ୍ଦେହ ନ ଥାଇ ବିଶ୍ୱାସ କରିବ ଯେ, ସେ ଯାହା କହୁଛି
ତାହା ଘଟିବ, ତେବେ ପରମେଶ୍ୱର ତା'ପାଇଁ ତାହା କରି
ଦେବେ। ୨୪ଏଣୁ ମୁଁ ତୁମ୍ଭମାନଙ୍କୁ କହୁଛି ଯେ ତୁମ୍ଭେମାନେ
ପ୍ରାର୍ଥନା କଲାବେଳେ ଯାହା ମାଗୁଛ, ବିଶ୍ୱାସ କର ଯେ,
ତାହା ତୁମ୍ଭକୁ ମିଳିଯାଇଛି ତେବେ ପ୍ରକୃତରେ ତାହା ତୁମ୍ଭେ
ପାଇବ। ୨୫ତୁମ୍ଭେମାନେ ଯେତେବେଳେ ପ୍ରାର୍ଥନା କରିବାକୁ
ଠିଆ ହୋଇଥିବ, ସେତେବେଳେ ଯଦି ତୁମ୍ଭମାନଙ୍କର ମନେ
ପଡ଼ିଯାଏ ଯେ, ତୁମ୍ଭେମାନେ କାହାରି ଉପରେ କୌଣସି
କାରଣରୁ ରାଗିଛ, ତେବେ ସେହି ଲୋକକୁ କ୍ଷମା କରି
ଦିଅ। ତା'ହେଲେ ସ୍ୱର୍ଗରେ ରହୁଥିବା ତୁମ୍ଭମାନଙ୍କର ପରମ-ପିତା
ମଧ୍ୟ ତୁମ୍ଭମାନଙ୍କର ପାପ ଗୁଡ଼ିକୁ କ୍ଷମା କରିଦେବେ।"
୨୬*

## ଯିହୂଦୀ ନେତାମାନଙ୍କର ସନ୍ଦେହ

୨୭ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ପୁଣି ଯିରୂଶାଲମକୁ
ଗଲେ। ଯୀଶୁ ମନ୍ଦିର ଭିତରେ ବୁଲୁଥିଲେ। ପ୍ରଧାନ ଯାଜକ
ଧର୍ମଶାସ୍ତ୍ରୀ ପ୍ରାଚୀନ ଓ ଯିହୂଦୀ ନେତାମାନେ ତାହାଙ୍କ
ପାଖକୁ ଆସିଲେ। ୨୮ସେମାନେ ଯୀଶୁଙ୍କୁ କହିଲେ, "ଆମ୍ଭକୁ
କୁହ,କେଉଁ ଅଧିକାରରେ ତୁମ୍ଭେ ଏସବୁ କାମ କରୁଛ? ଏ
ସବୁ କରିବାକୁ ତୁମ୍ଭକୁ କିଏ ଅଧିକାର ଦେଲା?"
୨୯ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭମାନଙ୍କୁ ଗୋଟିଏ
ପ୍ରଶ୍ନ ପଚାରିବି। ମୋ ପ୍ରଶ୍ନର ଉତ୍ତର ଦେଲେ ମୁଁ
ତୁମ୍ଭମାନଙ୍କୁ କହିବି ଯେ କେଉଁ ଅଧିକାରରେ ମୁଁ ଏସବୁ
କାର୍ଯ୍ୟ କରୁଛି। ୩୦ମୋତେ କୁହ, ଯେତେବେଳେ ଯୋହନ
ଲୋକମାନଙ୍କୁ ବାପ୍ତିସ୍ମ ଦେଉଥିଲେ, ତାହା ପରମେଶ୍ୱରଙ୍କ
ଠାରୁ ଆସିଥିଲା ନା ମନୁଷ୍ୟଠାରୁ? ମୋର ପ୍ରଶ୍ନର ଉତ୍ତର
ଦିଅ।"
୩୧ଯିହୂଦୀ ନେତାମାନେ ଯୀଶୁଙ୍କ ପ୍ରଶ୍ନ ଉପରେ ଆଲୋଚନା
କଲେ। ସେମାନେ କୁହାକୁହି ହେଲେ, "ଆମ୍ଭେମାନେ ଯଦି
କହିବା ଯେ, 'ଯୋହନଙ୍କ ବାପ୍ତିସ୍ମ ପରମେଶ୍ୱରଙ୍କ ଠାରୁ
ଆସିଥିଲା', ତେବେ ଯୀଶୁ କହିବେ, 'ତେବେ ତୁମ୍ଭେମାନେ
ଯୋହନଙ୍କୁ କାହିଁକି ବିଶ୍ୱାସ କଲ ନାହିଁ?' ୩୨କିନ୍ତୁ ଯଦି
ଆମ୍ଭେମାନେ କହିବା, 'ଯୋହନଙ୍କ ବାପ୍ତିସ୍ମ ମନୁଷ୍ୟଠାରୁ
ଆସିଥିଲା ତେବେ ଲୋକମାନେ ଆମ୍ଭ ଉପରେ ରାଗିଯିବେ।"
(ସେମାନେ ଲୋକମାନଙ୍କୁ ଖୁବ୍ ଡରୁଥିଲେ। କାରଣ ସବୁ
ଲୋକ ବିଶ୍ୱାସ କରୁଥିଲେ ଯେ, ଯୋହନ ପ୍ରକୃତରେ ଜଣେ
ଭବିଷ୍ୟଦ୍‌ବକ୍ତା)।

୩୩ଏଣୁ ସେମାନେ ଯୀଶୁଙ୍କୁ ଉତ୍ତର ଦେଲେ, "ଆମ୍ଭେମାନେ
ଜାଣିନାହୁଁ।"
ତେଣୁ ଯୀଶୁ ସେମାନଙ୍କୁ କହିଲେ, "ତା'ହେଲେ ମୁଁ
ମଧ୍ୟ ତୁମ୍ଭମାନଙ୍କୁ କହିବି ନାହିଁ ଯେ କେଉଁ ଅଧିକାରରେ
ମୁଁ ଏ ସବୁ କାର୍ଯ୍ୟ କରୁଛି।"

## ପରମେଶ୍ୱର ନିଜ ପୁତ୍ରଙ୍କୁ ପଠାଇଲେ

୧୨ ଯୀଶୁ ଦୃଷ୍ଟାନ୍ତ ମାଧ୍ୟମରେ ଲୋକମାନଙ୍କୁ ଶିକ୍ଷା
ଦେଲେ; ସେ କହିଲେ, "ଜଣେ ଲୋକ ଗୋଟିଏ
ବଗିଚାରେ ଅଙ୍ଗୁର ଗଛ ଲଗାଇଲା। ବଗିଚା ଚାରିପଟେ
ପାଚେରୀ କରିଦେଲା। ଅଙ୍ଗୁର-ରସ ସଂଗ୍ରହ* କରିବା
ପାଇଁ ଗୋଟିଏ କୁଣ୍ଡ ତିଆରି କଲା। ସେ ପ୍ରହରୀଗୃହଟି
ମଧ୍ୟ ତିଆରି କଲା। ସେ କେତେକ କୃଷକଙ୍କୁ ସେହି
ବଗିଚାକୁ ଭାଗରେ ଦେଲା, ତାପରେ ସେ ପରିଭ୍ରମଣ
ଉଦ୍ଦେଶ୍ୟରେ ସେ ସ୍ଥାନ ଛାଡ଼ି ଚାଲିଗଲା। ୨ପରେ ଯେତେବେଳେ
ଅଙ୍ଗୁର ତୋଳିବା ବେଳ ଆସିଲା, ସେତେବେଳେ ସେ
ତାହାଙ୍କର ଜଣେ ଚାକରକୁ ଅଙ୍ଗୁରରୁ ତାହାଙ୍କର ନିଜ ଭାଗ
ଆଣିବା ପାଇଁ କୃଷକମାନଙ୍କ ପାଖକୁ ପଠାଇଲା। ୩କିନ୍ତୁ
କୃଷକମାନେ ଚାକରଟିକୁ ଧରି ପ୍ରହାର କଲେ ଓ ତାକୁ
କିଛି ନ ଦେଇ ଘଉଡ଼େଇ ଦେଲେ। ୪ତା'ପରେ ସେହି
ଲୋକଟି ଆଉ ଜଣେ ଚାକରକୁ ସେମାନଙ୍କ ପାଖକୁ
ପଠାଇଲା। ସେମାନେ ଏହି ଚାକରର ମୁଣ୍ଡକୁ ପିଟିଲେ ଓ
ତାକୁ ଅପମାନ ଦେଲେ। ୫ତା'ପରେ ସେ ଆଉ ଜଣେ
ଚାକରକୁ ପଠାଇଲା। କୃଷକମାନେ ଏହି ଚାକରଟିକୁ ଜୀବନରେ
ମାରିଦେଲେ। ସେ ଲୋକଟି ଆଉ ଅଧିକ ଚାକରଙ୍କୁ
ପଠାଇଲା,କିନ୍ତୁ କୃଷକମାନେ କେତେକଙ୍କୁ ପିଟିଲେ ଓ ଅନ୍ୟ
କେତେକଙ୍କୁ ଜୀବନରେ ମାରିଦେଲେ।
୬"ଲୋକଟି ପାଖରେ କୃଷକମାନଙ୍କ ପାଖକୁ ପଠାଇବା
ପାଇଁ ଆଉ ଜଣେ ମାତ୍ର ବାକି ଥିଲା। ସେ ଜଣକ ତାହାର
ପୁଅ। ସେହି ଲୋକଟି ପୁଅକୁ ଖୁବ୍ ଭଲ ପାଉଥିଲା। କିନ୍ତୁ
ସେ କୃଷକମାନଙ୍କ ପାଖକୁ ପୁଅକୁ ପଠାଇବାକୁ ସ୍ଥିର କଲା।
କାରଣ କୃଷକମାନଙ୍କ ପାଖକୁ ପଠାଇବା ପାଇଁ ପୁଅ ହିଁ
ଶେଷ ବ୍ୟକ୍ତି ଥିଲା। ସେ କହିଲା, 'କୃଷକମାନେ ମୋର
ପୁଅକୁ ନିଶ୍ଚୟ ସମ୍ମାନ ଦେବେ।'
୭"କିନ୍ତୁ କୃଷକମାନେ କୁହାକୁହି ହେଲେ, 'ଏହି ଲୋକଟି
ବଗିଚା ମାଲିକର ପୁଅ। ବଗିଚାର ସେ ଉତ୍ତରାଧିକାରୀ।
ଆମ୍ଭେମାନେ ତାକୁ ମାରିଦେଲେ ବଗିଚାଟି ଆମ୍ଭର ହୋଇଯିବ'।
୮ତେଣୁ କୃଷକମାନେ ମାଲିକର ପୁଅକୁ ଧରି ନେଇ
ଜୀବନରେ ମାରିଦେଲେ ଓ ଅଙ୍ଗୁର ବଗିଚା ବାହାରକୁ
ଫିଙ୍ଗିଦେଲେ।
୯"ଏବେ ଅଙ୍ଗୁର ବଗିଚାର ମାଲିକ କ'ଣ କରିବ? ସେ
ଆସି ସେହି କୃଷକମାନଙ୍କୁ ମାରି ପକାଇବ ଓ ଅଙ୍ଗୁର

---

**ପଦସଂଖ୍ୟା ୨୬** କେତେକ ପ୍ରାଚୀନ ଗ୍ରୀକ ପ୍ରତିରେ ପଦସଂଖ୍ୟା ୨୬ର ପାଠ ଏହି ଭଳି ଦିଆ ଯାଇଛି। "କିନ୍ତୁ ଯଦି ତୁମ୍ଭେମାନେ ଅନ୍ୟକୁ କ୍ଷମା କରିବନାହିଁ ତେବେ ସ୍ୱର୍ଗରେ ରହୁଥିବା ତୁମ୍ଭମାନଙ୍କର ପରମପିତା ତୁମ୍ଭର ପାପ ଗୁଡ଼ିକୁ ମଧ୍ୟ କ୍ଷମା କରିବେ ନାହିଁ।"

**ଅଙ୍ଗୁରରସ ସଂଗ୍ରହ** ମୂଳ ଶବ୍ଦ ୱାଇନ-ପ୍ରେସ। ଏହା ପଥରରେ ଖୋଳା ଯାଇଥିବା ଗୋଟିଏ ସ୍ଥାନ। ସେଥିରେ ଅଙ୍ଗୁରକୁ ଛେଚି ତାର ରସ ସଂଗ୍ରହ କରାଯାଏ।

ବଗିଚାକୁ ଅନ୍ୟ କୃଷକମାନଙ୍କୁ ଦେଇଦେବ। ୧୦ତୁମ୍ଭେମାନେ
କ'ଣ ଏହି ଶାସ୍ତ୍ର ପଢ଼ିନାହିଁ?
"ଯେଉଁ ପଥରକୁ କାରିଗରମାନେ ଅଦରକାରୀ ମନେକଲେ,
ସେହି ପଥର

'କିନ୍ତୁ କୋଣର ପ୍ରଧାନ ମୂଳଦୁଆ ପଥର* ହୋଇଗଲା।
୧୧ ପ୍ରଭୁ ତାହା କଲେ ଏବଂ ଏହା ଆମ୍ଭ ପାଇଁ
ଆଶ୍ଚର୍ଯ୍ୟଜନକ।'" ଗୀତସଂହିତା ୧୧୮:୨୨-୨୩

୧୨ଏହି ଯିହୂଦୀନେତାମାନେ ଯୀଶୁଙ୍କ ଦୃଷ୍ଟାନ୍ତ ଶୁଣିଲେ।
ଏହା ସେମାନଙ୍କ ଉଦ୍ଦେଶ୍ୟରେ ଥିଲା ବୋଲି ସେମାନେ
ଜାଣି ପାରିଲେ। ତେଣୁ ଯୀଶୁଙ୍କୁ ବନ୍ଦୀ କରିବା ପାଇଁ
ସେମାନେ ଉପାୟ ଖୋଜି ବସିଲେ। କିନ୍ତୁ ସେମାନେ
ଲୋକମାନଙ୍କୁ ଭୟ କରୁଥିଲେ। ତେଣୁ ସେମାନେ ଯୀଶୁଙ୍କୁ
ଛାଡ଼ି ଚାଲିଗଲେ।

## ଯୀଶୁଙ୍କୁ ଫାନ୍ଦରେ ପକାଇବାକୁ ଯିହୂଦୀ ନେତାଙ୍କ ଚକ୍ରାନ୍ତ

୧୩ପରେ ଯିହୂଦୀ ନେତାମାନେ କେତେକ ଫାରୂଶୀ ଓ
ହେରୋଦୀୟମାନଙ୍କୁ ଯୀଶୁଙ୍କ ପାଖକୁ ପଠାଇଲେ। ସେମାନେ
ଯୀଶୁଙ୍କ ଭୁଲ ଧରି ଫାନ୍ଦରେ ପକାଇବାକୁ ଚାହୁଁଥିଲେ।
୧୪ଫାରୂଶୀ ଓ ହେରୋଦୀୟମାନେ ଯୀଶୁଙ୍କ ପାଖକୁ ଯାଇ
କହିଲେ, "ଗୁରୁ, ଆମ୍ଭେମାନେ ଜାଣିଛୁ ଯେ ତୁମ୍ଭେ ବହୁତ
ଭଲ ଲୋକ। ଅନ୍ୟମାନେ ତୁମ୍ଭ ବିଷୟରେ କ'ଣ ଭାବୁଛନ୍ତି,
ସେଥିପାଇଁ ତୁମ୍ଭେ କେବେ ଚିନ୍ତା କର ନାହିଁ। ସବୁ ଲୋକ
ତୁମ୍ଭ ପାଇଁ ସମାନ। ତୁମ୍ଭେ ପରମେଶ୍ୱର ଗୃହୁଁଥିବା ଜୀବନର
ମାର୍ଗ ବିଷୟରେ ଠିକ୍ ଉପଦେଶ ଦେଉଛ। ଆମ୍ଭମାନଙ୍କୁ
କୁହ: କାଇସରଙ୍କୁ କର ଦେବାର ଉଚିତ୍ କି ନୁହେଁ?"
୧୫ଯୀଶୁ ସେମାନଙ୍କ ଚାଲବାଜି ବୁଝିଗଲେ। ସେ ସେମାନଙ୍କୁ
ପଚାରିଲେ, "ତୁମ୍ଭେମାନେ ମୋତେ ଭଲ କଥା କହି
କାହିଁକି ଫାନ୍ଦରେ ପକାଇବାକୁ ଚେଷ୍ଟା କରୁଛ? ମୋ
ପାଖକୁ ରୂପା ଟଙ୍କାଟିଏ ଆଣ, ମୁଁ ତାକୁ ଦେଖେ।"
୧୬ସେମାନେ ରୁପାଟଙ୍କାଟିଏ ନେଇ ଆସିଲେ। ଯୀଶୁ ସେମାନଙ୍କୁ
ପଚାରିଲେ, "ମୁଦ୍ରାଟି ଉପରେ କାହାର ଛବି ଅଙ୍କିତ
ହୋଇଛି? ତା ଉପରେ କାହାର ନାମ ଲେଖା ଯାଇଛି?"
ସେମାନେ କହିଲେ, "ଏହା କାଇସରଙ୍କ ଛବି ଓ କାଇସରଙ୍କ
ନାମ।"
୧୭ତା'ପରେ ଯୀଶୁ ସେମାନଙ୍କୁ କହିଲେ, "ଯାହା
କାଇସରଙ୍କର, ତାହା କାଇସରଙ୍କୁ ଦିଅ ଓ ଯାହା
ପରମେଶ୍ୱରଙ୍କର, ତାହା ପରମେଶ୍ୱରଙ୍କୁ ଦିଅ।" ଏହା ଶୁଣି
ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ।

## ଯୀଶୁଙ୍କୁ ଫାନ୍ଦରେ ପକାଇବାକୁ କେତେକ ସାଦ୍ଦୂକୀଙ୍କର ଚକ୍ରାନ୍ତ

୧୮ତା' ପରେ କେତେକ ସାଦ୍ଦୂକୀ ତାହାଙ୍କ ପାଖକୁ
ଆସିଲେ। ସାଦ୍ଦୂକୀମାନେ ଦାବୀ କରନ୍ତି ଯେ ମଣିଷ
ମୃତ୍ୟୁପରେ ପୁନରୁତ୍ଥାନ ହେବ। ୧୯ସେମାନେ କହିଲେ,
"ଗୁରୁ, ମୋଶା ଆମ୍ଭମାନଙ୍କ ପାଇଁ ଲେଖିଛନ୍ତି ଯେ, ଯଦି
କୌଣସି ବିବାହିତ ଲୋକ ପିଲାପିଲି ନଥାଇ ମରି ଯାଏ
ତେବେ ତା'ର ଭାଇର ସେହି ସ୍ତ୍ରୀଟିକୁ ବିବାହ କରିବା
ଉଚିତ୍। ତା'ହେଲେ ସେହି ମୃତ ଭାଇଟି ପାଇଁ ବଂଶ ବୃଦ୍ଧି
କରିପାରିବ। ୨୦ଥରେ ସାତ ଭାଇ ଥିଲେ। ସବୁଠାରୁ ବଡ଼
ଭାଇ ବିବାହ କଲା। କିନ୍ତୁ କୌଣସି ପିଲାପିଲି ନଥାଇ ସେ
ମରିଗଲା। ୨୧ତେଣୁ ଦ୍ୱିତୀୟ ଭାଇ ସେ ସ୍ତ୍ରୀଟିକୁ ବିବାହ
କଲା। ସେ ମଧ୍ୟ କୌଣସି ପିଲାପିଲି ନ ଥାଇ ମରିଗଲା।
ତୃତୀୟ ଭାଇ ପ୍ରତି ମଧ୍ୟ ତାହା ଘଟିଲା। ୨୨ସାତ ଜଣ
ଭାଇ ସେହି ସ୍ତ୍ରୀ ଲୋକକୁ ଜଣକ ପରେ ଜଣେ ବିବାହ
କଲେ ଓ ଶେଷରେ ମରିଗଲେ। ସେମାନଙ୍କ ମଧ୍ୟରୁ
କାହାରି ହେଲେ କୌଣସି ପିଲାପିଲି ନଥିଲେ। ଶେଷରେ
ସେହି ସ୍ତ୍ରୀଟି ମଧ୍ୟ ମରିଗଲା। ୨୩କିନ୍ତୁ ସାତ ଭାଇଯାକ
ତାକୁ ବିବାହ କରିଥିଲେ। ତେବେ ପୁନରୁତ୍ଥାନ ସମୟରେ,
ସେହି ସ୍ତ୍ରୀଟି କାହାର ପତ୍ନୀ ହେବ?"
୨୪ଯୀଶୁ କହିଲେ, "ସବୁ ଶାସ୍ତ୍ର କଣ କହେ, ତାହା
ତୁମ୍ଭେମାନେ ଜାଣିନାହଁ କି ପରମେଶ୍ୱରଙ୍କ ଶକ୍ତି ବିଷୟରେ।
ତେଣୁ ତୁମ୍ଭେମାନେ ଭ୍ରମରେ ପଡ଼ିଥାଅ। ୨୫ଲୋକମାନେ
ଯେତେବେଳେ ମୃତ୍ୟୁରୁ ପୁନରୁତ୍ଥାନ ହେବେ ସେତେବେଳେ
କୌଣସି ବିବାହ ହେବ ନାହିଁ। ସେମାନେ କେହି କାହାରିକୁ
ବିବାହ କରିବେନାହିଁ, ବରଂ ପ୍ରତ୍ୟେକେ ସ୍ୱର୍ଗଦୂତଙ୍କ ଭଳି
ହୋଇଯିବେ। ୨୬ପୁନରୁତ୍ଥିତ ଲୋକଙ୍କ ବିଷୟରେ ତୁମ୍ଭେମାନେ
କ'ଣ ମୋଶାଙ୍କ ପୁସ୍ତକରେ ଲିଖିତ ବୁଦାବୃତ୍ତାନ୍ତଟି ପଢ଼ିନାହିଁ?
ସେଥିରେ ପରମେଶ୍ୱର ମୋଶାଙ୍କୁ କହିଛନ୍ତି, 'ମୁଁ ଅବ୍ରାହାମଙ୍କ
ପରମେଶ୍ୱର, ଇସ୍ହାକର ପରମେଶ୍ୱର, ଯାକୁବର
ପରମେଶ୍ୱର'।* ୨୭ଯଦି ପରମେଶ୍ୱର କହିଛନ୍ତି ଯେ, ସେ
ସେମାନଙ୍କର ପରମେଶ୍ୱର, ତେବେ ପ୍ରକୃତରେ ଏ ଲୋକମାନେ
ମୃତ ନୁହଁନ୍ତି। କାରଣ ସେ ମୃତମାନଙ୍କର ପରମେଶ୍ୱର
ନୁହଁନ୍ତି। ବରଂ ସେ ଜୀବିତମାନଙ୍କର ପରମେଶ୍ୱର। ହେ
ସାଦ୍ଦୂକୀମାନେ, ତୁମ୍ଭେମାନେ ବଡ଼ ଭ୍ରମରେ ପଡ଼ିଛ।"

## କେଉଁ ଆଦେଶ ମହତ୍ତ୍ୱପୂର୍ଣ୍ଣ

୨୮ଜଣେ ଧର୍ମଶାସ୍ତ୍ରୀ ଯୀଶୁଙ୍କ ପାଖକୁ ଆସିଲେ। ସାଦ୍ଦୂକୀ
ଓ ଫାରୂଶୀମାନଙ୍କ ସହିତ ଯୀଶୁଙ୍କୁ ଯୁକ୍ତିତର୍କ କରୁଥିବାର
ସେ ଶୁଣିଲେ। ସେ ଦେଖିଲେ ଯେ, ଯୀଶୁ ସେମାନଙ୍କ
ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇଛନ୍ତି। ତେଣୁ ସେ ଯୀଶୁଙ୍କୁ
ପଚାରିଲେ, "କେଉଁ ଆଦେଶଟି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ?"
୨୯ଯୀଶୁ ଉତ୍ତର ଦେଲେ, "ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଆଦେଶଟି
ଏହି ପ୍ରକାରର: 'ହେ ଇସ୍ରାୟେଲ, ଶୁଣ। ଆମ୍ଭ ପ୍ରଭୁ
ପରମେଶ୍ୱର ଏକମାତ୍ର ପ୍ରଭୁ। ୩୦ସମସ୍ତ ହୃଦୟରେ, ସମସ୍ତ
ଆତ୍ମାରେ, ସମସ୍ତ ମନରେ ଓ ସମସ୍ତ ଶକ୍ତିରେ ତୁମ୍ଭେ
ଆପଣା ପ୍ରଭୁ ପରମେଶ୍ୱରଙ୍କୁ ପ୍ରେମ କର।'* ୩୧ଦ୍ୱିତୀୟ

---

**କୋଣର ପ୍ରଧାନ ମୂଳଦୁଆ ପଥର** କୋଠା ଘରର ପ୍ରଥମ ଓ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ପଥର।

**'ମୁଁ ଅବ୍ରାହାମ... ପରମେଶ୍ୱର'** ଯାତ୍ରା. ୩:୬

**'ହେ ଇସ୍ରାୟେଲ, ... ପ୍ରେମ କର'** ଦ୍ୱିତୀୟ ବିବରଣ ୬:୪-୫

ମହତ୍ତ୍ୱପୂର୍ଣ୍ଣ ଆଦେଶଟି ହେଉଛି ଏହି 'ପ୍ରକାରର: ତୁମ୍ଭେ
ନିଜକୁ ଯେପରି ପ୍ରେମ କର, ନିଜର ପଡ଼ୋଶୀକୁ ସେହିପରି
ପ୍ରେମ କର'* । ଏହି ଦୁଇଟି ଆଦେଶ ଛଡ଼ା ଆଉ ବଡ଼
ଆଦେଶ କିଛି ନାହିଁ ।"
୩୨ ଏହା ଶୁଣି ଧର୍ମଶାସ୍ତ୍ରୀ ଜଣକ କହିଲେ, "ଗୁରୁ, ପ୍ରଭୁ
ପରମେଶ୍ୱର ଯେ ଏକ ଓ ତାହାଙ୍କ ଛଡ଼ା ଆଉ ଅନ୍ୟ
କେହି ନାହିଁ, ଏହା ତୁମ୍ଭେ ଠିକ୍ କହୁଛ । ୩୩ ପ୍ରକୃତରେ
ଜଣେ ଲୋକକୁ ସମସ୍ତ ହୃଦୟ, ସମସ୍ତ ମନ ଓ ସମସ୍ତ
ଶକ୍ତି ଦେଇ ପରମେଶ୍ୱରଙ୍କୁ ପ୍ରେମ କରିବାକୁ ହେବ । ସେ
ଯେପରି ନିଜକୁ ଭଲ ପାଏ, ତାକୁ ଅନ୍ୟକୁ ମଧ୍ୟ ସେପରି
ଭଲ ପାଇବାକୁ ହେବ । ଆମ୍ଭେ ପରମେଶ୍ୱରଙ୍କୁ ଯେତେ
ପଶୁ ବଳି ଓ ଉତ୍ସର୍ଗ ଦାନ ଅର୍ପଣ କରୁ, ସେହି
ଗୁଡ଼ିକଠାରୁ ଏହି ଦୁଇଟି ଆଦେଶ ଅଧିକ ମହତ୍ତ୍ୱପୂର୍ଣ୍ଣ ।"
୩୪ ଯୀଶୁ ଦେଖିଲେ ଯେ ଲୋକଟି ବୁଦ୍ଧି-ବିଚାର ଜ୍ଞାନୀ
ଭଳି ଉତ୍ତର ଦେଇଛି । ସେ ତାହାକୁ କହିଲେ, "ତୁମ୍ଭେ
ପରମେଶ୍ୱରଙ୍କ ରାଜ୍ୟଠାରୁ ଦୂରରେ ନାହିଁ ।" ଏହା ପରେ
ଆଉ କେହି ହେଲେ ଯୀଶୁଙ୍କୁ କୌଣସି ଅଧିକ ପ୍ରଶ୍ନ
ପଚାରିବାକୁ ସାହସ କଲେ ନାହିଁ ।
୩୫ ଯୀଶୁ ମନ୍ଦିରରେ ଉପଦେଶ ଦେଲାବେଳେ ପଚାରିଲେ,
"ଧର୍ମ-ଶାସ୍ତ୍ରୀମାନେ କିପରି କହୁଛନ୍ତି ଯେ ଖ୍ରୀଷ୍ଟ ଦାଉଦଙ୍କ
ପୁତ୍ର? ୩୬ ସ୍ୱୟଂ ଦାଉଦ ପବିତ୍ର ଆତ୍ମାଙ୍କ ସାହାଯ୍ୟରେ
କହିଥିଲେ;

> 'ପ୍ରଭୁ ପରମେଶ୍ୱର ମୋର ପ୍ରଭୁଙ୍କୁ (ଖ୍ରୀଷ୍ଟ) କହିଥିଲେ:
> ତୁମ୍ଭେ ମୋ ପାଖରେ, ମୋହର ଡାହାଣ ପଟେ
> ବସ । ମୁଁ ତୁମ୍ଭର ଶତ୍ରୁମାନଙ୍କୁ ତୁମ୍ଭର ଅଧୀନକୁ
> ନେଇ ଆସିବି ।' ଗୀତସଂହିତା ୧୧୦:୧

୩୭ ଦାଉଦ ନିଜେ ଖ୍ରୀଷ୍ଟଙ୍କୁ 'ପ୍ରଭୁ' ବୋଲି କହିଥିଲେ ।
ତେବେ ଖ୍ରୀଷ୍ଟ କିଭଳି ଦାଉଦଙ୍କ ପୁତ୍ର ହୋଇ ପାରିବେ?"
ଜମା ହୋଇଥିବା ଲୋକମାନେ ଯୀଶୁଙ୍କ ଉପଦେଶ ଖୁସି
ମନରେ ଶୁଣୁଥିଲେ ।
୩୮ ଯୀଶୁ ଶିକ୍ଷା ଦେଇ ଚାଲିଥିଲେ । ସେ କହିଲେ,
"ଧର୍ମଶାସ୍ତ୍ରୀଙ୍କଠାରୁ ସାବଧାନ ରୁହ । ସେମାନେ ଲମ୍ବା ଲମ୍ବା
ରାଜକୀୟ ପୋଷାକ ପିନ୍ଧି ଏଣେ ତେଣେ ବୁଲିବାକୁ ଭଲ
ପାଆନ୍ତି । ସେମାନେ ଭଲ ପାଆନ୍ତି ଯେ, ଲୋକେ ତାହାଙ୍କୁ
ହାଟ-ବଜାରରେ ସମ୍ମାନ ଦେଖାନ୍ତୁ । ୩୯ ପ୍ରାର୍ଥନା-ଗୃହରେ
ସେମାନେ ମହତ୍ତ୍ୱପୂର୍ଣ୍ଣ ଆସନରେ ବସିବାକୁ ଭଲପାଆନ୍ତି ।
ଭୋଜିରେ ସେମାନେ, ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ପାଇବାକୁ
ଭଲପାଆନ୍ତି । ୪୦ ସେମାନେ ବିଧବାମାନଙ୍କ ପ୍ରତି ଅତ୍ୟନ୍ତ
ନୀଚ ବ୍ୟବହାର ଦେଖାନ୍ତି । ସେମାନେ ବିଧବାମାନଙ୍କର
ସମ୍ପତ୍ତି ଅପହରଣ କରି ନିଅନ୍ତି । ଭଲ ଦେଖେଇ ହେବା
ପାଇଁ ସେମାନେ ଲମ୍ବା ପ୍ରାର୍ଥନା କରନ୍ତି । ଏଭଳି ଲୋକମାନଙ୍କୁ
ପରମେଶ୍ୱର କଠିନ ଶାସ୍ତି ଦେବେ ।"

### ଏକ ବିଧବାର ପ୍ରକୃତ ଦାନ

୪୧ ଯୀଶୁ ମନ୍ଦିରର ଦାନ ବାକ୍ସ ପାଖରେ ବସିଥିଲେ ।
ଲୋକମାନେ କିଭଳି ଭାବରେ ଦାନ-ବାକ୍ସରେ ଟଙ୍କା ଭର୍ତ୍ତି
କରୁଛନ୍ତି, ତାହା ସେ ଲକ୍ଷ୍ୟ କରୁଥିଲେ । ବହୁତ ଧନୀ
ଲୋକ ଦାନ-ବାକ୍ସରେ ପ୍ରଚୁର ଟଙ୍କା ପକାଉଥିଲେ । ୪୨ ପରେ
ଗରୀବ ବିଧବାଟିଏ ସେଠାକୁ ଆସିଲା ଓ ସେଥିରେ ସେ
ମାତ୍ର ଦୁଇଟି ତମ୍ବା-ମୁଦ୍ରା ପକେଇଲା । ଏହି ମୁଦ୍ରା ଦୁଇଟିର
ମୂଲ୍ୟ ପଇସାଟିଏ ସାଙ୍ଗରେ ବି ସମାନ ନୁହେଁ ।
୪୩ ତା'ପରେ ଯୀଶୁ ନିଜ ଶିଷ୍ୟମାନଙ୍କୁ ପାଖକୁ ଡାକି
କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ଏହି ସମସ୍ତ
ଧନୀ ଲୋକମାନେ ଦେଇଥିବା ଦାନଠାରୁ ଏହି ଗରିବ
ବିଧବାଟି ପ୍ରକୃତରେ ବହୁତ ଅଧିକ ଦେଇଛି । ୪୪ କାରଣ
ଧନୀ ଲୋକମାନଙ୍କ ପାଖରେ ପ୍ରଚୁର ଅଛି । ସେମାନେ
ତାହାଙ୍କର ଦରକାର ନଥିବା ବଳକା ଅର୍ଥରୁ ହିଁ ଧନ
ଦେଇଛନ୍ତି । କିନ୍ତୁ ଏହି ବିଧବାଟି ବହୁତ ଗରିବ । ଏହି
ଗରିବଟି ନିକଟରେ ଯାହା ଥିଲା; ସେ ସବୁତକ ଦାନ-ସ୍ୱରୂପ
ଦେଇ ଦେଇଛି । ତାର ଚଳିବା ପାଇଁ ସେତିକି ମାତ୍ର
ସମ୍ବଳ ଥିଲା ।"

### ମନ୍ଦିର-ଧ୍ୱଂସ ସମ୍ପର୍କରେ ଯୀଶୁଙ୍କ ଭବିଷ୍ୟଦ୍‌ବାଣୀ

**୧୩** ଯୀଶୁ ମନ୍ଦିର ମଧ୍ୟରୁ ବାହାରି ଯାଉଥିବା ସମୟରେ
ତାହାଙ୍କର ଜଣେ ଶିଷ୍ୟ ତାହାଙ୍କୁ କହିଲା,
"ଗୁରୁ, ଦେଖନ୍ତୁ, ଏ ମନ୍ଦିରର ସୁନ୍ଦର ଭବନ ଗୁଡ଼ିକ ଓ
ତାର ବିଶାଳ ପଥର ଗୁଡ଼ିକ କେତେ ସୁନ୍ଦର ହୋଇଛି ।"
୨ ଯୀଶୁ କହିଲେ, "ତୁମ୍ଭେ ଏହି ବିଶାଳ ଭବନଗୁଡ଼ିକ
ଦେଖୁଛ? ଏହି ସମସ୍ତ ଭବନ ଧ୍ୱଂସ ପାଇଯିବ । ସବୁତକ
ପଥର ଭୂମି ଉପରେ ଓଜାଡ଼ି ହୋଇ ପଡ଼ିବ । ଗୋଟିଏ
ହେଲେ ପଥର ଅନ୍ୟ ପଥର ଉପରେ ରହି ପାରିବନାହିଁ ।"
୩ ପରେ ଯୀଶୁ ମନ୍ଦିର ସାମନାରେ ଥିବା ଜୀତ ପର୍ବତ*
ଉପରେ ବସିଥିଲେ । ତାହାଙ୍କ ସହିତ ପିତର, ଯାକୁବ,
ଯୋହନ ଓ ଆନ୍ଦ୍ରିୟ ଥିଲେ । ସେମାନେ ଯୀଶୁଙ୍କୁ ବ୍ୟକ୍ତିଗତଭାବେ
ପଚାରିଲେ, ୪ "ଏ ସବୁ କେବେ ଘଟିବ, ଆମ୍ଭକୁ କୁହ? ଏ
ସବୁ ଘଟିବା ସମୟ ହୋଇଗଲା ବୋଲି, କଣକଣ ଚିହ୍ନ
ମାନ ଦେଖା ଯିବ?"
୫ ଯୀଶୁ ଶିଷ୍ୟମାନଙ୍କୁ କହିଲେ । "ସାବଧାନ । ତୁମ୍ଭକୁ
କେହି ଯେପରି ପ୍ରତାରଣା କରି ନ ପାରେ । ୬ ଅନେକ
ଲୋକ ଆସିବେ ଏବଂ ସେମାନେ ମୋର ନାମ ବ୍ୟବହାର
କରିବେ । ସେମାନେ ଦାବି କରିବେ, 'ମୁଁ ସେହି' । ସେମାନେ
ବହୁତ ଲୋକଙ୍କୁ ପ୍ରତାରଣା କରିବେ । ୭ ତୁମ୍ଭେ ଯୁଦ୍ଧ
ବିଷୟରେ କିମ୍ବା ଯୁଦ୍ଧ ଚାଲିଥିବା ବିଷୟରେ ଉଡ଼ା ଖବର
ଶୁଣି ଭୟଭୀତ ହୋଇ ଯିବନାହିଁ । ଅନ୍ତିମକାଳ ଆସିବା
ପୂର୍ବରୁ ଏସବୁ ଘଟଣା ନିଶ୍ଚୟ ଘଟିବ । ୮ ଗୋଟିଏ ଜାତି
ଅନ୍ୟ ଜାତି ବିରୋଧରେ, ଗୋଟିଏ ରାଜ୍ୟ ଅନ୍ୟ ରାଜ୍ୟ
ବିରୋଧରେ ଲଢେଇ କରିବ । ବହୁତ ସ୍ଥାନରେ ଭୂମିକମ୍ପ

---

**'ତୁମ୍ଭେ ... ପ୍ରେମ କର'** ଲେବୀୟ ୧୯:୧୮

**ଜୀତ ପର୍ବତ** ଯିରୁଶାଲମର ପୂର୍ବରେ ଥିବା ଏକ ପର୍ବତ, ଯେଉଁଠାରୁ ମନ୍ଦିର ଚୂଳ ଦେଖି ହେବ ।

ହେବ। ଲୋକଙ୍କୁ ଖାଇବାକୁ ମିଳିବନାହିଁ। ଏହା ସବୁ
କୌଣସି ନୂତନ ଶିଶୁର ଜନ୍ମ ପୂର୍ବର ପ୍ରସବ ବେଦନା
ଭଳି।
୯“ତୁମ୍ଭେମାନେ ସତର୍କ ରହିବ। ଲୋକମାନେ ତୁମ୍ଭମାନଙ୍କୁ
ବନ୍ଦୀକରି ବିଚାରାଳୟରେ ସମର୍ପି ଦେବେ। ସେମାନେ
ତୁମ୍ଭମାନଙ୍କୁ ସେମାନଙ୍କର ପ୍ରାର୍ଥନାଗୃହ ଗୁଡ଼ିକରେ ପିଟିବେ।
ମୋର ଶିଷ୍ୟ ହୋଇଥିବା ଯୋଗୁ ତୁମ୍ଭମାନଙ୍କୁ ଶାସକ ଓ
ରାଜାମାନଙ୍କ ଆଗରେ ଠିଆ ହେବାକୁ ବାଧ କରାଯିବ।
ତୁମ୍ଭେମାନେ ମୋ ବିଷୟରେ ପ୍ରମାଣ ଦେବ। ୧୦କିନ୍ତୁ
ଏସବୁ ଘଟଣା ଘଟିବା ପୂର୍ବରୁ ସବୁ ଜାତିର ଲୋକଙ୍କଠାରେ
ସୁସମାଚାର* ପ୍ରକାଶ୍ୟରେ ପ୍ରଚାରିତ କରାହେବ। ୧୧ସେମାନେ
ତୁମ୍ଭମାନଙ୍କୁ ବନ୍ଦୀକରି ତୁମ୍ଭମାନଙ୍କୁ ଜେରା କରିବେ। ସେମାନେ
ତୁମ୍ଭମାନଙ୍କୁ ବିଚାର ପାଇଁ ଯଦି ନିଅନ୍ତି, ତେବେ ତୁମ୍ଭେ
ସେଠାରେ କ’ଣ କହିବ, ସେ ବିଷୟରେ ଆଗରୁ କେବେହେଲେ
ଚିନ୍ତା କର ନାହିଁ। ସେ ସମୟରେ ତୁମ୍ଭକୁ ପରମେଶ୍ୱର
ଯାହା କିଛି କହିବା ପାଇଁ ଦେବେ, ତୁମ୍ଭେ ତାହା କହିବ,
କାରଣ ସେତେବେଳେ ପ୍ରକୃତରେ ତୁମ୍ଭେ କଥା କହିବ
ନାହିଁ ମାତ୍ର ପବିତ୍ରଆତ୍ମା କଥା କହିବେ।
୧୨“ଭାଇ, ଭାଇକୁ ମରଣ ମୁହଁକୁ ଠେଲି ଦେବ। ବାପା
ତା’ ସନ୍ତାନକୁ ମରିବା ପାଇଁ ଦେଇ ଦେବ। ପିଲାମାନେ
ବାପାମାଆଙ୍କ ବିରୁଦ୍ଧରେ ଠିଆହେବେ ଓ ସେମାନଙ୍କୁ ମାରି
ଦେବେ। ୧୩ତୁମ୍ଭେମାନେ ମୋର ଶିଷ୍ୟ ହୋଇଥିବା ଯୋଗୁ
ସମସ୍ତେ ତୁମ୍ଭମାନଙ୍କୁ ଘୃଣା କରିବେ। କିନ୍ତୁ ଯେଉଁ ଲୋକ
ଶେଷ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଦୃଢ଼ ହୋଇ ରହିବ, ସେ
ରକ୍ଷା ପାଇବ।
୧୪“ତୁମ୍ଭେମାନେ, ‘ଧ୍ୱଂସ ଘଟାଉଥିବା ଭୟଙ୍କର ବସ୍ତୁକୁ’*
ଯେଉଁଠାରେ ନ ରହିବା ଉଚିତ୍, ସେହି ସ୍ଥାନରେ ଥିବାର
ଦେଖିବ।” (ଯେଉଁମାନେ ଏହା ପଢ଼ିବେ, ସେମାନେ ବୁଝିନେବା
ଉଚିତ୍ ଯେ ଏହାର ଅର୍ଥ କ’ଣ?) “ସେତେବେଳେ
ଯିହୂଦାର ଲୋକମାନେ ପାହାଡ଼ ଉପରକୁ ପଳେଇବା ଉଚିତ।
୧୫ଯେଉଁ ଲୋକ ଘରର ଛାତ ଉପରେ ଥିବ, ସେ ଘର
ଭିତରକୁ ଯାଇ କିଛି ହେଲେ ପାଇବାକୁ ତଳକୁ ନ
ଆସିବା ଉଚିତ। ୧୬ଯଦିକେହି ବାହାରେ ପଡ଼ିଆରେ ଥାଏ,
ସେ ନିଜ ଚାଦର ଆଣିବା ପାଇଁ ଘରକୁ ଫେରି ନ ଯାଉ।
୧୭ସେହି ସମୟ ଗର୍ଭବତୀ ମହିଳା ଓ କୋଳରେ
ଛୋଟ ପିଲାଥିବା ମହିଳାମାନଙ୍କ ପାଇଁ ବହୁତ ଶୋଚନୀୟ
ହେବ। ୧୮ପ୍ରାର୍ଥନା କର, ଯେପରି ଏ ସବୁ ଶୀତ ଦିନରେ
ନ ହୁଏ। ୧୯କାରଣ ସେହି ଦିନ ଗୁଡ଼ିକ ବିପଦରେ
ପରିପୂର୍ଣ୍ଣ ରହିବ। ସେତେବେଳେ ଏତେ ବଡ଼ ବିପଦ ମାଡ଼ି
ଆସିବ ଯେ ସେଭଳି ବଡ଼ ବିପଦ ପରମେଶ୍ୱରଙ୍କ ସୃଷ୍ଟି
ରଚନା କାଳରୁ ଆଜି ପର୍ଯ୍ୟନ୍ତ କେବେ ଆସି ନାହିଁ କି
ଭବିଷ୍ୟତରେ କେବେ ଆସିବ ନାହିଁ। ୨୦ସେହି ଭୟଙ୍କର
ସମୟକୁ କମେଇ ଦେବା ପାଇଁ ପରମେଶ୍ୱର ସ୍ଥିର କରିଛନ୍ତି।
ଯଦି ସେହି ସମୟ କମେଇ ଦିଆ ନ ଯିବ, ତେବେ
କେହି ବଞ୍ଚି ରହି ପାରିବେ ନାହିଁ। କିନ୍ତୁ ପରମେଶ୍ୱର
ଯେଉଁମାନଙ୍କୁ ବାଛିଛନ୍ତି, କେବଳ ସେହିମାନଙ୍କ ପାଇଁ ସେହି
ସମୟ କମେଇ ଦେବେ। ୨୧ସେହି ଦିନମାନଙ୍କରେ କେତେକ
ଲୋକ ତୁମ୍ଭମାନଙ୍କୁ କହି ପାରନ୍ତି ଯେ, ‘ଦେଖ ଏଠାରେ
ଯୀଶୁ ଅଛନ୍ତି’ କିମ୍ବା ‘ଦେଖ ସେଠାରେ ସେ ଅଛନ୍ତି’।
ତୁମ୍ଭେ କିନ୍ତୁ ସେମାନଙ୍କୁ ବିଶ୍ୱାସ କରିବ ନାହିଁ। ୨୨ଭଣ୍ଡ
ଖ୍ରୀଷ୍ଟ ଓ ଭଣ୍ଡ ଭବିଷ୍ୟଦ୍‌ବକ୍ତାମାନେ ଦେଖାଦେବେ। ସେମାନେ
ଅଦ୍‌ଭୁତ କାମ ଓ ଆଶ୍ଚର୍ଯ୍ୟକାର୍ଯ୍ୟ କରିବେ। ସମ୍ଭବ
ହେଲେ, ପରମେଶ୍ୱର ବାଛିଥିବା ଲୋକମାନଙ୍କୁ ସେମାନେ
ପ୍ରତାରଣା କରିବା ପାଇଁ ଚେଷ୍ଟା କରିବେ। ୨୩ତେଣୁ
ସାବଧାନ ରହିବ। ଏ ସବୁ ଘଟିବାର ଯଥେଷ୍ଟ ପୂର୍ବରୁ ମୁଁ
ତୁମ୍ଭମାନଙ୍କୁ ଚେତେଇ ଦେଉଛି।
୨୪“ସେହି ଦିନମାନଙ୍କରେ ଏହି ବଡ଼ ବିପଦର ସମୟ
ଚାଲି ଗଲାପରେ

‘ସୂର୍ଯ୍ୟ ସଂପୂର୍ଣ୍ଣ ଅନ୍ଧକାରମୟ ହୋଇଯିବ, ଚନ୍ଦ୍ର ତାର
ଆଲୋକ ଦେବନାହିଁ।
୨୫ ଆକାଶରୁ ତାରାମାନେ ଖସି ପଡ଼ିବେ, ଆକାଶରେ
ନକ୍ଷେତ୍ର ମଣ୍ଡଳର ମହାଶକ୍ତିଗୁଡ଼ିକ ଦୋହଲି ଯିବେ।’
ଯିଶାଇୟ ୧୩:୧୦; ୩୪:୪

୨୬“ସେତେବେଳେ ଲୋକେ ମନୁଷ୍ୟପୁତ୍ରଙ୍କୁ ମହାଶକ୍ତି ଓ
ମହିମା ସହିତ ମେଘମାଳା ମଧ୍ୟରେ ଆସିବାର ଦେଖିବେ।
୨୭ମନୁଷ୍ୟପୁତ୍ର ପୃଥିବୀର ଚାରି ଆଡ଼କୁ ତାହାଙ୍କ ସ୍ୱର୍ଗ-ଦୂତମାନଙ୍କୁ
ପଠାଇବେ। ସେମାନେ ତାହାଙ୍କ ଦ୍ୱାରା ବଛା ଯାଇଥିବା
ଲୋକଙ୍କୁ ପୃଥିବୀର ପ୍ରତ୍ୟେକ ସ୍ଥାନରୁ ଆଣି ଏକାଠି
କରାଇବେ।
୨୮“ଡିମ୍ବିରି ଗଛ ଆମ୍ଭକୁ ଗୋଟିଏ ଶିକ୍ଷା ଦିଏ। ଯେତେବେଳେ
ଡିମ୍ବିରି ଗଛର ଡାଳ ଗୁଡ଼ିକ ଶାଗୁଆ ଓ ନରମ ପଡ଼ିଯାଏ
ଏବଂ ନୂଆ ପତ୍ର କଅଁଳିବାକୁ ଆରମ୍ଭ କରେ, ସେତେବେଳେ
ତୁମ୍ଭେମାନେ ଜାଣି ପାର ଯେ ଗ୍ରୀଷ୍ମ ଋତୁ ପାଖେଇ
ଗଲାଣି। ୨୯ମୁଁ ତୁମ୍ଭକୁ ଯାହା କହିଲି, ଠିକ୍ ତାହା ଏହିପରି
ଘଟିବ। ତୁମ୍ଭେମାନେ ଯେତେବେଳେ ଏହିଭଳି ସବୁ ଘଟିବାର
ଦେଖିବ, ସେତେବେଳେ ବୁଝ ଯେ ‘ସେହି ସମୟ’*
ନିକଟରେ ଆସି ପହଞ୍ଚିଗଲାଣି। ୩୦ମୁଁ ତୁମ୍ଭକୁ ସତ୍ୟ
କହୁଛି। ଏହି ପିଢ଼ୀର ଲୋକେ ବଞ୍ଚିଥିବା ସମୟରେ ହିଁ
ଏସବୁ ଘଟଣା ଘଟିବ। ୩୧ପୃଥିବୀ ଓ ଆକାଶ ନଷ୍ଟ

---

**ସୁସମାଚାର** ସୁସମାଚାର ଅଭିପ୍ରାୟ ହେଉଛି, ପରମେଶ୍ୱର ଖ୍ରୀଷ୍ଟଙ୍କ ମାଧ୍ୟମରେ ଗୋଟିଏ ମାର୍ଗ ପ୍ରସ୍ତୁତ କରିଛନ୍ତି ଏହା ଲୋକମାନଙ୍କୁ ଜଣାଇବା। ତାହା ଦ୍ୱାରା ଲୋକମାନଙ୍କୁ ସେମାନଙ୍କ ପାପ ପାଇଁ କ୍ଷମା ମିଳିବ ଏବଂ ସେମାନେ ପରମେଶ୍ୱରଙ୍କ ସହିତ ରହିବେ। ଯେଉଁଲୋକ ଏହି ମୃତ୍ୟୁକୁ ସ୍ୱୀକାର କରେ, ପରମେଶ୍ୱର ମଧ୍ୟ ତାକୁ ସ୍ୱୀକାର କରନ୍ତି।

**‘ଧ୍ୱଂସ … ବସ୍ତୁକୁ’** ଦାନିଏଲ ୯:୨୭; ୧୨:୧୧

**‘ସେହି ସମୟ’** ଏଠାରେ ଯୀଶୁ ଯେଉଁ ସମୟ ବିଷୟରେ ଚର୍ଚ୍ଚା କରୁଛନ୍ତି, ସେହି ସମୟ ହେଉଛି, ଯେତେବେଳେ କୌଣସି ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିବ। ‘ଲୂକଲିଖିତ ସୁସମାଚାର’ (୨୧:୩୧)ରେ ଯୀଶୁ କହିଲେ ଯେ ତାହା ହିଁ ହେଉଛି ପରମେଶ୍ୱରଙ୍କ ରାଜ୍ୟର ଆସିବା ସମୟ।

ହୋଇଯିବ, କିନ୍ତୁ ମୋ କହିଥିବା ବାକ୍ୟ କେବେହେଲେ
ନଷ୍ଟ ହେବନାହିଁ।
୩୨"ସେହି ଦିନ ବା ସେହି ସମୟ ବିଷୟରେ କାହାରିକୁ
କିଛି ଜଣାନାହିଁ। ସ୍ୱର୍ଗଦୂତ ବା ମନୁଷ୍ୟପୁତ୍ର କେହି କିଛି
ଜାଣନ୍ତିନାହିଁ। କେବଳ ଏକଥା ପରମପିତା ପରମେଶ୍ୱର
ଜାଣନ୍ତି। ୩୩ସାବଧାନ; ସଦାବେଳେ ପ୍ରସ୍ତୁତ ରୁହ। କାରଣ
ସେ ସମୟ କେତେବେଳେ ପହଞ୍ଚିବ, ତାହା ତୁମ୍ଭେମାନେ
ଜାଣିନାହଁ। ୩୪ଏହା ଏହିଭଳି ଘଟଣା, ଯେପରି ଜଣେ
ବ୍ୟକ୍ତି କୌଣସି ସ୍ଥାନକୁ ଯାତ୍ରା କଲାବେଳେ ଚାକରମାନଙ୍କ
ଉପରେ ନିଜ ଘରର ଦାୟିତ୍ୱ ଛାଡ଼ି ଦେଇଯାଏ ଓ
ପ୍ରତ୍ୟେକ ଚାକରକୁ ତାର ନିର୍ଦ୍ଦିଷ୍ଟ କାମ ଦେଇଥାଏ ଏବଂ
ଦ୍ୱାର-ପାଳକକୁ ସଦାବେଳେ ପ୍ରସ୍ତୁତ ହୋଇ ରହିବାକୁ
ଆଦେଶ ଦେଇଥାଏ। ୩୫ଏଣୁ ତୁମ୍ଭେମାନେ ମଧ୍ୟ ସର୍ବଦା
ପ୍ରସ୍ତୁତ ହୋଇ ରୁହ। କାରଣ ତୁମ୍ଭେ ଜାଣ ନାହିଁ, ଘରର
ମାଲିକ କେତେବେଳେ ଯେ ଆସି ପହଞ୍ଚିଯିବେ। ସନ୍ଧ୍ୟାବେଳେ,
ଅଧରାତିରେ, ପାହାନ୍ତିଆରେ ବା ସକାଳେ, କୌଣସି ସମୟରେ
ସେ ଆସି ପାରନ୍ତି। ୩୬ସେ ଖୁବ୍ ଶୀଘ୍ର ମଧ୍ୟ ଆସି ଯାଇ
ପାରନ୍ତି। ତୁମ୍ଭେ ଯଦି ସର୍ବଦା ପ୍ରସ୍ତୁତ ଥିବ, ତେବେ ସେ
ତୁମ୍ଭକୁ କଦାପି ଶୋଇଥିବା ଅବସ୍ଥାରେ ଦେଖି ପାରିବେନାହିଁ।
୩୭ମୁଁ ତୁମ୍ଭକୁ ଯାହା କହୁଛି, ସମସ୍ତଙ୍କୁ ସେହି ଏକା କଥା
କହୁଛି ଯେ ସର୍ବଦା ପ୍ରସ୍ତୁତ ରୁହ।"

## ଯୀଶୁଙ୍କୁ ମାରିଦେବା ପାଇଁ ଯିହୂଦୀ ନେତାଙ୍କ ଯୋଜନା

**୧୪** ନିସ୍ତାର ପର୍ବ ଓ ଖମୀର ଶୂନ୍ୟ ରୋଟୀପର୍ବ
ଆଉ ଦୁଇ ଦିନ ବାକି ଥିଲା। ପ୍ରଧାନ ଯାଜକ
ଓ ଯିହୂଦୀ ଧର୍ମଶାସ୍ତ୍ରୀମାନେ ଯୀଶୁଙ୍କୁ କୌଶଳରେ ବନ୍ଦୀ
କରି ତା'ପରେ ମାରି ଦେବା ପାଇଁ ଉପାୟ ଖୋଜୁ ଥିଲେ।
୨ସେମାନେ କହିଲେ, "ଆମ୍ଭେ କିନ୍ତୁ ପର୍ବ ସମୟରେ
ଯୀଶୁଙ୍କୁ ବନ୍ଦୀ କରି ପାରିବା ନାହିଁ। ତା' କଲେ ଲୋକମାନେ
ରାଗିଯାଇ ଦଙ୍ଗା ହାଙ୍ଗାମା କରି ପାରନ୍ତି।"

## ଏକ ସ୍ତ୍ରୀର ବିଶେଷ କାର୍ଯ୍ୟ

୩ଯୀଶୁ ବେଥନିଆରେ କୁଷ୍ଠ ରୋଗୀ ଶିମୋନଙ୍କ ଘରେ
ଖାଇବାକୁ ବସିଥିବା ସମୟରେ ଜଣେ ସ୍ତ୍ରୀ ଲୋକ ତାହାଙ୍କ
ପାଖକୁ ଆସିଲା। ସେ ଗୋଟିଏ ଧଳା, ଚିକ୍କଣ ସ୍ଫଟିକ
ସିଲଖଡ଼ି ପାତ୍ରରେ ବହୁମୂଲ୍ୟ ଅତର ଭର୍ତ୍ତିକରି ଆଣିଥିଲା।
ସେ ଅତର ଖାଣ୍ଟି ଜଟାମାଂସରୁ ତିଆରି ହୋଇଥିଲା। ସ୍ତ୍ରୀ
ଲୋକଟି ପାତ୍ରଟି ଖୋଲିଦେଇ ସବୁତକ ଅତର ଯୀଶୁଙ୍କ
ମୁଣ୍ଡରେ ଢାଳିଦେଲା।
୪ଏହା ଦେଖି ସେଠାରେ ଉପସ୍ଥିତ ଥିବା କେତେକ
ଲୋକ ଖୁବ୍ ବିରକ୍ତ ହେଲେ ଓ ପରସ୍ପର କୁହାକୁହି
ହେଲେ, "ଅତରକୁ ଏଭଳି କାହିଁକି ନଷ୍ଟ କରାଗଲା? ୫ଏହି
ଅତରତକ ଜଣକର ସାରା ବର୍ଷର ପରିଶ୍ରମର ମୂଲ୍ୟ ସଙ୍ଗେ
ସମାନ। ଏହା ବିକା ଯାଇ ପାରିଥାଆନ୍ତା ଏବଂ ତହିଁର ଅର୍ଥ
ଗରୀବ ଲୋକମାନଙ୍କୁ ବଣ୍ଟା ଯାଇ ପାରିଥାଆନ୍ତା।" ତେଣୁ
ସେମାନେ ସ୍ତ୍ରୀଲୋକଟିକୁ ଦୃଢ଼ଭାବରେ ସମାଲୋଚନା କରିବାକୁ
ଲାଗିଲେ। ୬ଯୀଶୁ କହିଲେ, "ସେହି ସ୍ତ୍ରୀ ଲୋକଟିକୁ
ହଇରାଣ କର ନାହିଁ। ତାକୁ ଛାଡ଼ିଦିଅ। ସେ ମୋ ପାଇଁ
ଗୋଟିଏ ବହୁତ ଭଲ କାମ କରିଛି। ୭କାରଣ ଗରିବମାନେ
ତ ସବୁବେଳେ ତୁମ୍ଭ ପାଖରେ ରହିବେ। ତୁମ୍ଭେ ଯେତେବେଳେ
ଚାହିଁବ, ସେମାନଙ୍କୁ ସାହାଯ୍ୟ କରି ପାରିବ। କିନ୍ତୁ ତୁମ୍ଭେମାନେ
ମୋତେ ସଦାବେଳେ ପାଇବ ନାହିଁ।" ୮ଏ ସ୍ତ୍ରୀଲୋକଟିର
ମୋ ପାଇଁ ଯାହା କରି ପାରିବାର ଶକ୍ତି ଥିଲା, ସେ
ସେତିକି କରିଛି। ସମାଧି ନିମନ୍ତେ ମୋ ଦେହକୁ ପ୍ରସ୍ତୁତ
କରିବା ପାଇଁ ସେ ମୋ ଦେହରେ ମୋର ମୃତ୍ୟୁ ପୂର୍ବରୁ
ଅତର ଢାଳିଛି। ୯ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି। ସାରା
ସଂସାରରେ ଲୋକମାନଙ୍କ ମଧ୍ୟରେ ସୁସମାଚାର ପ୍ରଚାର
କରାଯିବ। ଯେଉଁ ଯେଉଁ ସ୍ଥାନରେ ସୁସମାଚାର ପ୍ରଚାରିତ
ହେବ, ସେହି-ସେହି ସ୍ଥାନରେ ଏହି ସ୍ତ୍ରୀଲୋକଟିର ଏହି
କାର୍ଯ୍ୟ ବିଷୟରେ କୁହାଯିବ। ଲୋକମାନେ ତାହାକୁ ମନେ
ପକେଇବେ।"

## ଯିହୂଦା ଯୀଶୁଙ୍କ ଶତ୍ରୁମାନଙ୍କୁ ସାହାଯ୍ୟ

୧୦ତା ପରେ ବାରଜଣ ଯାକ ପ୍ରେରିତଙ୍କ ମଧ୍ୟରୁ ଜଣେ
ପ୍ରେରିତ ପ୍ରମୁଖ-ଯାଜକମାନଙ୍କ ସହିତ କଥା ବାର୍ତ୍ତା କରିବାକୁ
ଗଲା। ଏହି ପ୍ରେରିତର ନାମ ଥିଲା ଇଷ୍କାରିୟୋଥ ଯିହୂଦା।
ସେ ଯୀଶୁଙ୍କୁ ପ୍ରଧାନ ଯାଜକମାନଙ୍କ ହାତରେ ଧରେଇ
ଦେବାକୁ ଚାହୁଁଥିଲା। ୧୧ପ୍ରଧାନ ଯାଜକମାନେ ଯିହୂଦାର ଏ
କଥାରେ ବହୁତ ଖୁସୀ ହେଲେ। ଏହି କାମ କରି ଦେଲେ
ସେମାନେ ଯିହୂଦାକୁ ଟଙ୍କା ଦେବେ ବୋଲି କଥା
ଦେଲେ। ତେଣୁ ଯିହୂଦା ଯୀଶୁଙ୍କୁ ପ୍ରଧାନ ଯାଜକମାନଙ୍କ
ହାତରେ ଧରେଇ ଦେବା ପାଇଁ ସୁଯୋଗର ଅପେକ୍ଷାରେ
ରହିଲା।

## ନିସ୍ତାର ପର୍ବର ଭୋଜି

୧୨ଖମୀର ଶୂନ୍ୟ ରୋଟୀ-ପର୍ବର ପ୍ରଥମ ଦିନରେ
ଯିହୂଦୀମାନେ 'ନିସ୍ତାର ପର୍ବର ମେଣ୍ଢାଛୁଆଟି'* କୁ ବଳି
ଦିଅନ୍ତି। ସେହି ଦିନ ଯୀଶୁଙ୍କ ପାଖକୁ ତାହାଙ୍କ ଶିଷ୍ୟମାନେ
ଆସି ପଚାରିଲେ, "ନିସ୍ତାର ପର୍ବର ଭୋଜିରେ ଆପଣଙ୍କ
ପାଇଁ ସବୁ କିଛି ପ୍ରସ୍ତୁତ କରିବାକୁ ଆମ୍ଭେ କେଉଁଠାକୁ ଯିବୁ
ବୋଲି ଆପଣ ଚାହୁଁଛନ୍ତି?"
୧୩ତା'ପରେ ଯୀଶୁ ନିଜର ଦୁଇଜଣ ଶିଷ୍ୟଙ୍କୁ ନଗରକୁ
ପଠାଇଲେ। ଯୀଶୁ ସେମାନଙ୍କୁ କହିଲେ, "ନଗରକୁ ଯାଅ,
ତୁମ୍ଭେ ଗୋଟିଏ ଲୋକକୁ ପାଣି ମାଠିଆଟିଏ ନେଇଯାଉଥିବାର
ଦେଖିବ। ସେହିଲୋକ ତୁମ୍ଭ ପାଖକୁ ଆସିବ। ତୁମ୍ଭେ ତା'ର
ପଛେ ପଛେ ଯିବ। ୧୪ସେହି ଲୋକ ଗୋଟିଏ ଘରେ
ପ୍ରବେଶ କରିବ, ତୁମ୍ଭେ ମଧ୍ୟ ଯାଇ ସେହି ଘରମାଲିକକୁ
କହିବ ଯେ, 'ଗୁରୁ କହି ପଠେଇଛନ୍ତି ମୁଁ ମୋ ଶିଷ୍ୟମାନଙ୍କ
ସହିତ ନିସ୍ତାର ପର୍ବର ଭୋଜି ଯେଉଁ ବଖରାଟିରେ ପାଳନ

---

**'ନିସ୍ତାର ପର୍ବର ମେଣ୍ଢାଛୁଆ'** ନିସ୍ତାର ପର୍ବ ପାଳନ କରିବା ପରମ୍ପରାରେ ଗୋଟିଏ ମେଣ୍ଢା ଛୁଆକୁ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ଉପହାର ସ୍ୱରୂପ ଅର୍ପଣ କରାଯାଏ। ଯାତ୍ରା. ୧୨:୩-୯

କରିବି, ସେହି ବଖରାଟି ଦେଖାଅ? ତାହାଙ୍କୁ କୁହ ଯେ
ଗୁରୁ ଏହା ଜାଣିବାକୁ ଇଚ୍ଛା କରନ୍ତି।' ୧୫ଘର ମାଲିକ
ତୁମ୍ଭମାନଙ୍କୁ ଉପର ମହଲାରେ ସମସ୍ତ ବ୍ୟବସ୍ଥା ଥିବା
ଗୋଟିଏ ବଡ଼ କୋଠରୀ ଦେଖାଇବେ। ତୁମ୍ଭେ ସେହିଠାରେ
ଆମ୍ଭମାନଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କର।"
୧୬ତା'ପରେ ଶିଷ୍ୟମାନେ ସେଠାରୁ ନଗରକୁ ଚାଲିଗଲେ।
ଯୀଶୁ ସେମାନଙ୍କୁ ଯାହା କହିଥିଲେ, ସବୁ କଥା ସେହିପରି
ଘଟିଲା। ସେଠାରେ ସେମାନେ ନିସ୍ତାରପର୍ବର ଖାଦ୍ୟ ପ୍ରସ୍ତୁତ
କଲେ।
୧୭ସନ୍ଧ୍ୟା ବେଳକୁ ଯୀଶୁ ବାରଜଣ ଯାକ ପ୍ରେରିତଙ୍କୁ
ସାଙ୍ଗରେ ଧରି ସେଠାରେ ଯାଇ ପହଞ୍ଚିଲେ। ୧୮ସେମାନେ
ଖାଉଥିବା ବେଳେ ଯୀଶୁ କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ
କହୁଛି, ବର୍ତ୍ତମାନ ମୋ ସାଙ୍ଗରେ ଖାଉଥିବା ତୁମ୍ଭ ଭିତରୁ
ଜଣେ ମୋ' ପ୍ରତି ବିଶ୍ୱାସଘାତକତା କରିବ।"
୧୯ଏହା ଶୁଣି ଶିଷ୍ୟମାନେ ବହୁତ ମନ ଦୁଃଖ କଲେ।
ପ୍ରତ୍ୟେକେ ଯୀଶୁଙ୍କୁ କହିଲେ, "ନିଶ୍ଚୟ ମୁଁ ସେହି ଲୋକ
ନୁହେଁ।"
୨୦ତା'ପରେ ଯୀଶୁ ସେମାନଙ୍କୁ କହିଲେ, "ସେହି ଲୋକ
ତୁମ୍ଭ ବାରଜଣଙ୍କ ମଧ୍ୟରୁ ଜଣେ, ଯେକି ମୋ' ସହିତ
ବିଶ୍ୱାସଘାତକତା କରିବ। ସେ ମୋ' ସଙ୍ଗେ ଗୋଟିଏ
ଗିନାରେ ରୋଟୀ ବୁଡ଼ାଉଛି। ୨୧ମନୁଷ୍ୟପୁତ୍ରଙ୍କୁ ଯାଇ ମରିବାକୁ
ପଡ଼ିବ। ଏହା ଘଟିବ ବୋଲି ଶାସ୍ତ୍ରରେ ଲେଖାଅଛି। କିନ୍ତୁ,
ଯେଉଁଲୋକ ମନୁଷ୍ୟ ପୁତ୍ରଙ୍କୁ ବିଶ୍ୱାସଘାତକତା କରିବ,
ସେହି ଲୋକ ଯଦି ଜନ୍ମ ହୋଇ ନଥାଆନ୍ତା, ତେବେ
ବହୁତ ଭଲ ହୋଇଥାଆନ୍ତା।"

## ପ୍ରଭୁଭୋଜ

୨୨ସେମାନେ ଖାଇବା ସମୟରେ ଯୀଶୁ କିଛି ରୋଟୀ
ନେଲେ। ସେ ରୋଟୀ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେଲେ। ରୋଟୀ ଛିଣ୍ଡେଇ ଶିଷ୍ୟମାନଙ୍କୁ ଦେଇ କହିଲେ,
"ଏହି ରୋଟୀ ନିଅ। ଏହା ମୋର ଦେହ।"
୨୩ତା'ପରେ ସେ ଅଙ୍ଗୁର ରସର ପାତ୍ରଟି ନେଲେ।
ତାହା ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ତା'ପରେ
ତାହା ଶିଷ୍ୟମାନଙ୍କୁ ଦେଲେ। ସମସ୍ତ ଶିଷ୍ୟ ସେହି ପାତ୍ରରୁ
ଅଙ୍ଗୁର ରସ ପିଇଲେ।
୨୪ତା'ପରେ ଯୀଶୁ କହିଲେ, "ଏହା ମୋର ରକ୍ତ।
ମୋର ରକ୍ତ ଏକ ନୂଆ ନିୟମ ଆରମ୍ଭ କରେ। ଏହି
ନିୟମଟି ପରମେଶ୍ୱରଙ୍କ ଠାରୁ ତାହାଙ୍କ ଲୋକଙ୍କ ପାଇଁ
ଉଦ୍ଦିଷ୍ଟ। ଏହି ରକ୍ତ ଅନେକ ଲୋକଙ୍କ ପାଇଁ ଦିଆଯାଇଛି।
୨୫ମୁଁ ତୁମ୍ଭକୁ ସତ୍ୟ କହୁଛି। ମୁଁ ଯେପର୍ଯ୍ୟନ୍ତ ପରମେଶ୍ୱରଙ୍କ
ରାଜ୍ୟରେ ନୂଆ ଅଙ୍ଗୁରରସ ପାନ ନ କରିଛି, ସେହି ଦିନ
ପର୍ଯ୍ୟନ୍ତ ଆଉ ଅଙ୍ଗୁରରସ ପିଇବି ନାହିଁ।"
୨୬ସବୁ ଶିଷ୍ୟମାନେ ମିଳି ଗୋଟିଏ ଗୀତ ବୋଲିଲେ ଓ
ତା'ପରେ ଜୀତ ପର୍ବତ ଉପରକୁ ଚାଲିଗଲେ।

## ଯୀଶୁଙ୍କ ଭବିଷ୍ୟଦ୍‌ବାଣୀ: ଶିଷ୍ୟମାନେ ବିଶ୍ୱାସ ହରେଇବେ

୨୭ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ତୁମ୍ଭେମାନେ ସମସ୍ତେ
ତୁମ୍ଭମାନଙ୍କର ବିଶ୍ୱାସ ହରେଇ ବସିବ। ଏହା ଶାସ୍ତ୍ରରେ
ଲେଖା ଅଛି:

'ମୁଁ ମେଷପାଳକଙ୍କୁ ମାରିଦେବି, ତହିଁରେ ମେଣ୍ଢାମାନେ
ଏଣେତେଣେ ପଳେଇଯିବେ'। ଜିଖରିୟ ୧୩:୭

୨୮କିନ୍ତୁ ମୁଁ ମୃତ୍ୟୁ ପରେ ପୁନରୁତ୍ଥିତ ହେବି। ତା'ପରେ ମୁଁ
ଗାଲୀଲୀକୁ ଯିବି। ତୁମ୍ଭେମାନେ ସେଠାକୁ ଯିବା ପୂର୍ବରୁ ମୁଁ
ସେଠାରେ ଥିବି।"
୨୯ପିତର କହିଲେ, "ଅନ୍ୟ ସମସ୍ତ ଶିଷ୍ୟ ହୁଏତ
ସେମାନଙ୍କ ବିଶ୍ୱାସ ହରେଇ ପାରନ୍ତି। କିନ୍ତୁ ମୁଁ ମୋର
ବିଶ୍ୱାସ କଦାପି ହରେଇବି ନାହିଁ।"
୩୦ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି,
ଆଜି ରାତିରେ କୁକୁଡ଼ା ଦ୍ୱିତୀୟ ଥର ଡ଼ାକିବା ପୂର୍ବରୁ
ତୁମ୍ଭେ ମୋତେ ଚିହ୍ନି ନାହିଁ ବୋଲି ତିନିଥର କହିବ।"
୩୧ଏ କଥା ଶୁଣି ପିତର ଆହୁରି ଜୋର ଦେଇ
କହିଲେ, "ମୋତେ ତୁମ୍ଭ ସହିତ ମରିବାକୁ ପଡ଼ିଲେ ସୁଦ୍ଧା
ମୁଁ ତୁମ୍ଭକୁ ଚିହ୍ନିନାହିଁ ବୋଲି କଦାପି କହିବି ନାହିଁ।" ଅନ୍ୟ
ସମସ୍ତ ଶିଷ୍ୟ ମଧ୍ୟ ସେହି ଏକା କଥା କହିଲେ।

## ଯୀଶୁଙ୍କ ଏକାନ୍ତରେ ପ୍ରାର୍ଥନା

୩୨ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଗେଥିଶିମାନୀ ନାମକ
ଗୋଟିଏ ସ୍ଥାନକୁ ଆସିଲେ। ଯୀଶୁ ଶିଷ୍ୟମାନଙ୍କୁ କହିଲେ,
"ମୁଁ ପ୍ରାର୍ଥନା କରୁଥିବା ପର୍ଯ୍ୟନ୍ତ ତୁମ୍ଭେମାନେ ଏଠାରେ
ବସ।" ୩୩ସେ ପିତର, ଯାକୁବ ଓ ଯୋହନଙ୍କୁ ତାହାଙ୍କ
ସହିତ ଆସିବାକୁ କହିଲେ। ତା' ପରେ ଯୀଶୁ ଅତ୍ୟଧିକ
ବିଚଳିତ ଓ ଦୁଃଖରେ ପୂର୍ଣ୍ଣ ହେବାକୁ ଲାଗିଲେ, ୩୪ଯୀଶୁ,
ପିତର, ଯାକୁବ ଓ ଯୋହନଙ୍କୁ କହିଲେ, "ମୋର ହୃଦୟ
ଦୁଃଖରେ ଭାଙ୍ଗି ପଡ଼ୁଛି। ମୁଁ ପ୍ରାଣ ବାହାରି ଯିବା ବେଳି
ଭଳି ଦୁଃଖ ଅନୁଭବ କରୁଛି। ଏଠାରେ ଅପେକ୍ଷା କରି
ରୁହ ଓ ଜାଗ୍ରତ ମଧ୍ୟ ରୁହ।"
୩୫ଯୀଶୁ ସେମାନଙ୍କ ଠାରୁ ଅଳ୍ପ ଦୂରକୁ ଚାଲି କରି
ଗଲେ। ତା'ପରେ ଯୀଶୁ ଭୂମିରେ ପଡ଼ିଗଲେ ଓ ପ୍ରାର୍ଥନା
କଲେ ଯେ ଯଦି ସମ୍ଭବ ହୁଏ, ତେବେ ଏ ଯନ୍ତ୍ରଣାର
ମୁହୂର୍ତ୍ତଟି ମୋ ପାଖରୁ ଘୁଞ୍ଚିଯାଉ।" ୩୬ସେ କହିଲେ,
"ଆବ୍ବା;* (ହେ ପରମ ପିତା) ତୁମ୍ଭ ପାଇଁ ସବୁ କିଛି
ସମ୍ଭବ। ମୋ ଠାରୁ ଯନ୍ତ୍ରଣାର ଏହି ଗିନାଟି* କୁ ଦୂରେଇ
ଦିଅ। ତଥାପି ଯାହା ତୁମ୍ଭର ଇଚ୍ଛା, ତାହା କର; କିନ୍ତୁ
ମୋ ଇଚ୍ଛାରେ କିଛି ନୁହେଁ।"
୩୭ତା' ପରେ ଯୀଶୁ ତାହାଙ୍କର ଶିଷ୍ୟମାନଙ୍କ ପାଖକୁ
ଫେରି ଆସିଲେ। ସେ ସେମାନଙ୍କୁ ଶୋଇ ପଡ଼ିଥିବାର

---

**'ଆବ୍ବା'** ଏହା ବାପାଙ୍କ ପାଇଁ ଗୋଟିଏ ସମ୍ବୋଧନ ଶବ୍ଦ।

**'ଯନ୍ତ୍ରଣାର ଗିନା'** ଯୀଶୁ ଯେଉଁ ଯନ୍ତ୍ରଣା ଭୋଗ କରିବେ, ଏଠାରେ ସେ ତାହାର ବିଷୟରେ ସଙ୍କେତ ଦେଉଛନ୍ତି। ଏହା ବହୁତ କଠୋର। ଅତ୍ୟନ୍ତ ଖରାପ ସ୍ୱାଦ-ଯୁକ୍ତ ପୁରା ଭର୍ତ୍ତି ଗିନାଏ ପାନୀୟ ପିଇବା ଭଳି ଏହାକୁ ଗ୍ରହଣ କରିବା ଅତି କଠିଣ।

ଦେଖିଲେ। ସେ ପିତରଙ୍କୁ କହିଲେ, "ଶିମୋନ, ତୁମ୍ଭେ
ଶୋଇ ପଡ଼ିଲ? ତୁମ୍ଭେ ଘଣ୍ଟାଏ ପାଇଁ ଚେଇଁ ରହି
ପାରିଲନାହିଁ? ୩୮ଜାଗି ରୁହ ଓ ପ୍ରାର୍ଥନା କର ଯେ,
ତୁମ୍ଭେମାନେ ଯେପରି ପରୀକ୍ଷାରେ ନ ପଡ଼। ଯାହା ଠିକ୍,
ତୁମ୍ଭର ଆତ୍ମା ତାହା କରିବାକୁ ଚାହୁଁଛି, କିନ୍ତୁ ତୁମ୍ଭର
ଶରୀର ଦୁର୍ବଳ।"

୩୯ପୁଣି ଯୀଶୁ ଫେରିଗଲେ ଓ ସେହିଭଳି କହି ପ୍ରାର୍ଥନା
କଲେ। ୪୦ତା'ପରେ ସେ ଶିଷ୍ୟମାନଙ୍କ ପାଖକୁ ପୁଣି
ଫେରି ଆସିଲେ ଓ ଦେଖିଲେ ଯେ, ସେମାନେ ପୁଣି
ଶୋଇ ପଡ଼ିଛନ୍ତି। ସେମାନଙ୍କ ଆଖି ନିଦରେ ମାଡ଼ି
ପଡୁଥିଲା। ଶିଷ୍ୟମାନେ ଜାଣି ପାରୁ ନଥିଲେ ଯେ, ସେମାନେ
ଯୀଶୁଙ୍କୁ କ'ଣ ଉତ୍ତର ଦେବେ।

୪୧ଯୀଶୁ ତୃତୀୟଥର ପ୍ରାର୍ଥନା ସାରିବା ପରେ ଶିଷ୍ୟମାନଙ୍କ
ପାଖକୁ ପୁଣି ଫେରି ଆସିଲେ ଏବଂ କହିଲେ, "ଏବେ
ମଧ୍ୟ ତୁମ୍ଭେମାନେ ଶୋଇ ବିଶ୍ରାମ ନେଉଛ? ଯଥେଷ୍ଟ
ସମୟ ହେଲାଣି। ବର୍ତ୍ତମାନ ମନୁଷ୍ୟପୁତ୍ରଙ୍କୁ ପାପୀମାନଙ୍କ
ହାତରେ ଧରେଇ ଦିଆଯିବାର ସମୟ ଆସି ପହଞ୍ଚି ଗଲା।
୪୨ଠିଆ ହୁଅ। ଆମ୍ଭେମାନେ ଏଥର ଯିବା। ଦେଖ, ମୋତେ
ବିଶ୍ୱାସଘାତକତା କରି ଧରେଇ ଦେବା ଲୋକ ଏବେ
ଆସୁଛି।"

## ଯୀଶୁ ବନ୍ଦୀ ହେଲେ

୪୩ଯୀଶୁ ଏହି କଥା କହୁଥିବା ସମୟରେ ଯିହୂଦା ଆସି
ସେଠାରେ ପହଞ୍ଚିଲା। ସେ ବାରଜଣ ପ୍ରେରିତଙ୍କ ମଧ୍ୟରେ
ଜଣେ ଥିଲା। ତା ସାଙ୍ଗରେ ଅନେକ ଲୋକ ଥିଲେ।
ସେହି ଲୋକମାନଙ୍କୁ ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ, ଓ
ପ୍ରାଚୀନ ଯିହୂଦୀ ନେତାମାନେ ପଠାଇଥିଲେ। ଯିହୂଦା ଓ
ସେହି ଲୋକମାନେ ହାତରେ ଖଣ୍ଡା ଓ ଠେଙ୍ଗା
ଧରିଥିଲେ।

୪୪ବିଶ୍ୱାସଘାତକ ଯିହୂଦା ସେହି ଲୋକମାନଙ୍କୁ ଯୀଶୁଙ୍କୁ
ଚିହ୍ନେଇ ଦେବା ପାଇଁ ଗୋଟିଏ ସଙ୍କେତ ଦେଇଥିଲା। ସେ
କହିଥିଲା: "ଯେଉଁ ଲୋକକୁ ମୁଁ ଚୁମ୍ବନ ଦେବି, ସେ
ହେଉଛନ୍ତି ଯୀଶୁ। ତୁମ୍ଭେମାନେ ତାହାଙ୍କୁ ବନ୍ଦୀ କରିବ ଓ
ସାବଧାନରେ ଦୂରକୁ ନେଇଯିବ।" ୪୫ଯିହୂଦା ଯୀଶୁଙ୍କ
ପାଖକୁ ଯାଇ କହିଲା, "ଗୁରୁ!" ତା'ପରେ ଯିହୂଦା ଯୀଶୁଙ୍କୁ
ଚୁମ୍ବନ କଲା। ୪୬ଏହି ସମୟରେ ଲୋକମାନେ ଯୀଶୁଙ୍କୁ
ଧରି ବନ୍ଦୀ କରିନେଲେ। ୪୭ଯୀଶୁଙ୍କ ପାଖରେ ଠିଆ
ହୋଇଥିବା ଜଣେ ଶିଷ୍ୟ ତାର ଖଣ୍ଡା ବାହାର କରି ଆଣି
ମହା ଯାଜକଙ୍କର ଜଣେ ଚାକର ଉପରେ ଆଘାତ କଲା।
ସେହି ଚାକରର କାନ କଟିଗଲା।

୪୮ଯୀଶୁ ସେହି ଲୋକମାନଙ୍କୁ କହିଲେ, "ମୁଁ କ'ଣ
ଜଣେ ଅପରାଧୀ ଯେ ତୁମ୍ଭେମାନେ ଖଣ୍ଡା ଓ ଠେଙ୍ଗା ନେଇ
ମୋତେ ଧରି ନେବାକୁ ଆସିଛ? ୪୯ପ୍ରତିଦିନ ମନ୍ଦିରରେ
ଶିକ୍ଷା ଦେବା ସମୟରେ ମୁଁ ତୁମ୍ଭମାନଙ୍କ ସହିତ ଥିଲି।
କିନ୍ତୁ ସେତେବେଳେ ତୁମ୍ଭେମାନେ ମୋତେ ବନ୍ଦୀ କରି
ନଥିଲ। କିନ୍ତୁ ଶାସ୍ତ୍ରରେ ଯାହା ଲେଖା ଯାଇଛି ତାହା
ଯେପରି ସତ୍ୟ ହୁଏ, ସେଥି ନିମନ୍ତେ ଏଭଳି ଘଟୁଛି।"

୫୦ତା' ପରେ ଯୀଶୁଙ୍କ ଶିଷ୍ୟମାନେ ତାହାଙ୍କୁ ଛାଡି ଦୌଡ଼ି
ପଳାଇଲେ।

୫୧ଜଣେ ଯୁବକ ଯୀଶୁଙ୍କୁ ଅନୁସରଣ କରୁଥିଲା। ସେ
କେବଳ ଖଣ୍ଡିଏ ସରୁ ରେଶମ ଲୁଗା ପିନ୍ଧିଥିଲା। ସେହି
ଲୋକମାନେ ଯୁବକକୁ ଧରିବାକୁ ଚେଷ୍ଟା କଲେ। ୫୨ସେ
ଲୁଗାକୁ ଖସାଇ ଦେଲା ଓ ଉଲଗ୍ନ ହୋଇ ଦୌଡ଼ି
ପଳାଇଲା।

## ଯିହୂଦୀ ନେତାଙ୍କ ଆଗରେ ଯୀଶୁଙ୍କ ବିଚାର

୫୩ସେହି ଲୋକମାନେ ଯୀଶୁଙ୍କୁ ମହା-ଯାଜକଙ୍କ ପାଖକୁ
ନେଇଗଲେ। ସମସ୍ତ ପ୍ରଧାନ-ଯାଜକ, ପ୍ରାଚୀନ ନେତାଗଣ,
ଓ ଧର୍ମଶାସ୍ତ୍ରୀମାନେ ଏକତ୍ରିତ ହେଲେ। ୫୪ପିତର ଯୀଶୁଙ୍କଠାରୁ
ଦୂରରେ ରହି ତାହାଙ୍କ ପଛେ ପଛେ ଆସି ମହା ଯାଜକଙ୍କ
ଅଗଣା ଭିତରେ ପହଞ୍ଚିଗଲେ। ସେ ସେଠାରେ ପ୍ରହରୀମାନଙ୍କ
ସହିତ ବସି ଯାଇ ନିଆଁରେ ସେକ ହେଲେ।

୫୫ପ୍ରଧାନ ଯାଜକ ଓ ସମଗ୍ର ଯିହୂଦୀ ମହାସଭା ଯୀଶୁଙ୍କୁ
ମୃତ୍ୟୁ-ଦଣ୍ଡ ଦେବା ପାଇଁ ତାହାଙ୍କ ବିରୁଦ୍ଧରେ କୌଣସି
ଦୋଷର ପ୍ରମାଣ ପାଇବା ପାଇଁ ଚେଷ୍ଟା କଲେ, କିନ୍ତୁ
ସେମାନେ ମୃତ୍ୟୁଦଣ୍ଡ ଦେବା ଭଳି କୌଣସି ପ୍ରମାଣ
ପାଇଲେନାହିଁ। ୫୬ଅନେକ ଲୋକ ଆସି ଯୀଶୁଙ୍କ ବିରୁଦ୍ଧରେ
ମିଛ ସାକ୍ଷ୍ୟ ଦେଲେ। କିନ୍ତୁ ସେମାନେ ସମସ୍ତେ ଅଲଗା-ଅଲଗା
କଥା କହିଲେ। ତାହାଙ୍କ ଭିତରୁ ଜଣେ ହେଲେ ଅନ୍ୟ
ସହିତ ସମ୍ମତ ନ ଥିଲା।

୫୭ତା'ପରେ କେତେକ ଲୋକ ଠିଆ ହେଲେ ଓ
ଯୀଶୁଙ୍କ ବିରୁଦ୍ଧରେ ମିଛ ସାକ୍ଷ୍ୟ ଦେଇ କହିଲେ, ୫୮"ଆମ୍ଭେମାନେ
ଯୀଶୁଙ୍କୁ ଏହି କଥା କହିବାର ଶୁଣିଛୁ, 'ମଣିଷ ତିଆରି ଏ
ମନ୍ଦିରକୁ ମୁଁ ଭାଙ୍ଗି ଦେବି ଓ ପୁଣି ତିନି ଦିନ ଭିତରେ
ଆଉ ଗୋଟାଏ ମନ୍ଦିର ତିଆରି କରି ଦେବି, ଯାହା କି
ମଣିଷ ହାତରେ ତିଆରି ହୋଇ ନ ଥିବ।'" ୫୯ତଥାପି ଏ
ଲୋକମାନେ ଯାହା ସବୁ କହିଲେ, ତା ମଧ୍ୟରେ କାହାରି
କଥା କାହାରି ସାଙ୍ଗରେ ମେଳ ଖାଉ ନଥିଲା।

୬୦ତା'ପରେ ସମସ୍ତଙ୍କ ଆଗରେ ମହାଯାଜକ ଠିଆ
ହେଲେ। ସେ ଯୀଶୁଙ୍କୁ କହିଲେ, "ଏ ଲୋକମାନେ ତୁମ୍ଭ
ବିରୁଦ୍ଧରେ ଅନେକ କଥା କହିଲେ। ତୁମ୍ଭ ବିରୁଦ୍ଧରେ
ଯେତେ ଗୁଡ଼ିଏ ଅଭିଯୋଗ ଅଣାଗଲା, ସେ ବିଷୟରେ
ତୁମ୍ଭର କିଛି କହିବାର ଅଛି କି? ଏ ଲୋକମାନେ କ'ଣ
ସତ୍ୟ କଥା କହୁଛନ୍ତି?" ୬୧କିନ୍ତୁ ଯୀଶୁ ଚୁପ୍ ରହିଲେ।
ସେ କିଛି ଉତ୍ତର ଦେଲେନାହିଁ।

ମହା ଯାଜକ ଯୀଶୁଙ୍କୁ ଆଉ ଗୋଟିଏ ପ୍ରଶ୍ନ ପଚାରିଲେ:
"ତୁମ୍ଭେ କ'ଣ ମହାନ୍ ପରମେଶ୍ୱରଙ୍କ ପୁତ୍ର ଖ୍ରୀଷ୍ଟ?"

୬୨ଯୀଶୁ ଉତ୍ତର ଦେଲେ, "ହଁ ମୁଁ ପରମେଶ୍ୱରଙ୍କ ପୁତ୍ର।
ଏବଂ ଭବିଷ୍ୟତରେ ତୁମ୍ଭେ ମନୁଷ୍ୟପୁତ୍ରଙ୍କୁ ସେହି ସର୍ବଶକ୍ତିମାନଙ୍କ
ଡାହାଣ ପଟେ ବସିଥିବାର ଏବଂ ସ୍ୱର୍ଗର ମେଘମାଳା
ମଧ୍ୟରେ ଆସୁଥିବାର ଦେଖିବ।"

୬୩ମହାଯାଜକ ଏକଥା ଶୁଣି ଖୁବ୍ ରାଗି ଗଲେ। ସେ
ରାଗରେ ନିଜ ବସ୍ତ୍ର ଚିରି ପକାଇ ସମସ୍ତଙ୍କୁ କହିଲେ,
"ଆମ୍ଭର ଆଉ ସାକ୍ଷୀର କ'ଣ ଦରକାର? ୬୪ସେ ପରମେଶ୍ୱରଙ୍କ

ବିରୁଦ୍ଧରେ ଯାହା ସବୁ କହିଗଲେ, ତୁମ୍ଭେମାନେ ସମସ୍ତେ
ଶୁଣିଲ। ଏବେ ତୁମ୍ଭେମାନେ କ'ଣ ଭାବୁଛ?"
ସମସ୍ତେ ଯୀଶୁଙ୍କୁ ଅପରାଧୀ ସାବ୍ୟସ୍ତ କଲେ ଓ ତାହାଙ୍କୁ
ମୃତ୍ୟୁଦଣ୍ଡ ଦିଆ ଯିବା ଉଚିତ୍ ବୋଲି କହିଲେ। ୬୫ସେଠାରେ
ଉପସ୍ଥିତ ଥିବା କେତେକ ଲୋକ ଯୀଶୁଙ୍କ ଉପରକୁ ଛେପ
ପକାଇଲେ। କେତେକ ଯୀଶୁଙ୍କ ମୁହଁ ଘୋଡେଇ ଦେଇ
ବିଧା ମାରିଲେ, ଓ ଆଉ କେତେକ ଥଟ୍ଟା କରି କହିଲେ
"ଏବେ ତୁମ୍ଭେ ଆମ୍ଭକୁ ଦେଖେଇ ଦିଅ ଯେ, ତୁମ୍ଭେ ଜଣେ
ଭବିଷ୍ୟଦ୍-ବକ୍ତା।" ତା'ପରେ ପ୍ରହରୀମାନେ ତାହାଙ୍କୁ ନେଇ
ଯାଇ ପିଟିଲେ।

## ପିତର ଯୀଶୁଙ୍କୁ ଜାଣିଥିବା କଥା ଅସ୍ୱୀକାର କଲେ

୬୬ସେହି ସମୟରେ ପିତର ମଧ୍ୟ ଅଗଣା ମଧ୍ୟରେ
ଥିଲେ। ପିତରଙ୍କ ପାଖକୁ ମହାଯାଜକଙ୍କର ଜଣେ ଚାକରାଣୀ
ଆସିଲା। ୬୭ସେ ପିତରଙ୍କୁ ନିଆଁ ପାଖରେ ସେକି ହେଉଥିବାର
ଦେଖିଲା। ସେ ପିତରକୁ ଭଲ କରି ଚାହିଁଲା।
ତା'ପରେ ତାହାଙ୍କୁ ଚିହ୍ନି ପାରି କହିଲା, "ତୁମ୍ଭେ ମଧ୍ୟ
ନାଜରିତର ଯୀଶୁଙ୍କ ସାଙ୍ଗରେ ଥିଲ।"
୬୮ପିତର କିନ୍ତୁ କହିଲେ ଯେ, ସେ କେବେହେଲେ
ଯୀଶୁଙ୍କ ସାଙ୍ଗରେ ନ ଥିଲେ। ସେ କହିଲେ, "ତୁମ୍ଭେ
କାହା ବିଷୟରେ କହୁଛ, ସେ ସବୁ ମୁଁ ଜାଣି ପାରୁନି କି
ବୁଝି ପାରୁନାହିଁ।" ତା'ପରେ ପିତର ସେ ସ୍ଥାନ ଛାଡି
ଅଗଣାର ପ୍ରବେଶ-ଦ୍ୱାର ପାଖକୁ ଚାଲିଗଲେ।*
୬୯ସେ ଚାକରାଣୀଟି ପୁଣି ପିତରଙ୍କୁ ଦେଖି ସେଠାରେ
ଠିଆ ହୋଇଥିବା ଲୋକମାନଙ୍କୁ କହିବାକୁ ଲାଗିଲା, "ଏ
ଲୋକଟି ସେମାନଙ୍କ ମଧ୍ୟରୁ ଜଣେ।" ୭୦ପୁଣି ଥରେ
ପିତର କହିଲେ ଯେ, ଏ କଥା ସତ୍ୟ ନୁହେଁ।
କିଛି ସମୟ ପରେ ସେଠାରେ ଠିଆ ହୋଇଥିବା
ଲୋକମାନେ ପିତରଙ୍କୁ କହିଲେ, "ନିଶ୍ଚିତ ଭାବରେ ତୁମ୍ଭେ
ସେମାନଙ୍କ ମଧ୍ୟରୁ ଜଣେ। କାରଣ ତୁମ୍ଭେ ମଧ୍ୟ ଗାଲିଲୀରୁ
ଆସିଛ।"
୭୧ତା'ପରେ ପିତର ଅଭିଶାପ ଦେବାକୁ ଲାଗିଲେ। ସେ
ଦୃଢ ଭାବରେ କହିଲେ, "ମୁଁ ପରମେଶ୍ୱରଙ୍କ ନାମରେ
ଶପଥ କରି କହୁଛି ଯେ ତୁମ୍ଭେମାନେ ଯେଉଁ ଲୋକ
ବିଷୟରେ କହୁଛ, ମୁଁ ତାହାକୁ ଆଦୌ ଜାଣେ ନାହିଁ।"
୭୨ପିତର ଏକଥା କହିବା ପରେ ପରେ କୁକୁଡାଟିଏ
ଦ୍ୱିତୀୟ ଥର ଡ଼ାକିଲା। ଯୀଶୁଙ୍କର ସେହି ସବୁ କଥା ଏବେ
ପିତରଙ୍କର ମନେ ପଡ଼ିଲା: "କୁକୁଡା ତୃତୀୟ ଥର ଡ଼ାକିବା
ପୂର୍ବରୁ ତୁମ୍ଭେ ମୋତେ ଜାଣିନାହିଁ ବୋଲି ତିନିଥର କହି
ସାରିଥିବ।" ତା'ପରେ ପିତର ଭୀଷଣ ଦୁଃଖରେ ଭାଙ୍ଗି
ପଡି କାନ୍ଦିବାକୁ ଲାଗିଲେ।

---

**ପଦସଂଖ୍ୟା ୬୮** କେତେକ ଗ୍ରୀକ୍ ପ୍ରତିରେ ଏହା ଅଛି (ସେତିକିବେଳେ କୁକୁଡ଼ାଟିଏ ଡ଼ାକିଲା)

## ପୀଲାତଙ୍କ ଆଗରେ ଯୀଶୁଙ୍କୁ ହାଜର କରାଗଲା

୧୫ ସକାଳ ହେବା ମାତ୍ରେ ପ୍ରଧାନ ଯାଜକ, ପ୍ରାଚୀନ,
ଯିହୂଦୀ ନେତାଗଣ ଓ ଧର୍ମଶାସ୍ତ୍ରୀ ତଥା ସମଗ୍ର
ଯିହୂଦୀ ମହାସଭା ଯୀଶୁଙ୍କ ପ୍ରତି କ'ଣ ବିଚାର କରାଯିବ,
ତାହା ସ୍ଥିର କଲେ। ସେମାନେ ଯୀଶୁଙ୍କୁ ବାନ୍ଧି ଶାସନ-କର୍ତ୍ତା
ପୀଲାତଙ୍କ ପାଖକୁ ନେଇଗଲେ ଓ ତାହାଙ୍କ ହାତରେ
ସମର୍ପଣ କରିଦେଲେ।
୨ପୀଲାତ ଯୀଶୁଙ୍କୁ ପଚାରିଲେ, "ତୁମ୍ଭେ କ'ଣ ଯିହୂଦୀମାନଙ୍କର
ରାଜା?"
ଯୀଶୁ ଉତ୍ତର ଦେଲେ, "ତୁମ୍ଭେ ଯାହା କହିଲ ତାହା
ସତ୍ୟ।"
୩ପ୍ରଧାନ ଯାଜକମାନେ ଅନେକ ବିଷୟରେ ଯୀଶୁଙ୍କୁ
ଅଭିଯୁକ୍ତ କଲେ। ୪ପୀଲାତ ପୁଣି ଯୀଶୁଙ୍କୁ ପଚାରିଲେ,
"ତୁମ୍ଭର କ'ଣ କିଛି କହିବାର ନାହିଁ? ଦେଖ, ସେମାନେ
ତୁମ୍ଭକୁ ଅନେକ ବିଷୟରେ ଅଭିଯୁକ୍ତ କରୁଛନ୍ତି।"
୫ତଥାପି ଯୀଶୁ କିଛି ହେଲେ ଉତ୍ତର ଦେଲେ ନାହିଁ।
ପୀଲାତ ଏଥିରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ।

## ପୀଲାତ ଯୀଶୁଙ୍କୁ ମୁକ୍ତ କରିବାରେ ଅସମର୍ଥହେଲେ

୬ପ୍ରତିବର୍ଷ ପରମ୍ପରାକ୍ରମେ ନିସ୍ତାର-ପର୍ବ ସମୟରେ ଶାସନ-
କର୍ତ୍ତା ଜଣେ ବନ୍ଦୀକୁ ବନ୍ଦୀଶାଳାରୁ ମୁକ୍ତ କରିଥାନ୍ତି। ଯେଉଁ
ବନ୍ଦୀକୁ ମୁକ୍ତ କରିବା ପାଇଁ ଲୋକମାନେ ଚାହାଁନ୍ତି, କେବଳ
ସେହି ବନ୍ଦୀକୁ ଶାସନକର୍ତ୍ତା ମୁକ୍ତ ଦେଇଥାନ୍ତି। ୭ସେହି
ସମୟରେ ବନ୍ଦୀଶାଳାରେ ବାରବ୍ବା ନାମରେ ଏକ ବ୍ୟକ୍ତି
ବିଦ୍ରୋହୀମାନଙ୍କ ସହିତ ବନ୍ଦୀ ଥିଲା। ଏହି ବିଦ୍ରୋହୀମାନେ
ଗୋଟିଏ ବିଦ୍ରୋହ ସମୟରେ ନରହତ୍ୟା ଅପରାଧରେ
ଦୋଷୀ ସାବ୍ୟସ୍ତ ହୋଇଥିଲେ। ୮ଲୋକମାନେ ପୀଲାତଙ୍କ
ପାଖକୁ ଆସିଲେ ଓ ତାହାଙ୍କୁ କହିଲେ ଯେ ସବୁଥର ଭଳି
ଏଥର ମଧ୍ୟ ସେମାନଙ୍କ ପାଇଁ ସେ ଜଣେ ବନ୍ଦୀକୁ ମୁକ୍ତ
କରନ୍ତୁ। ୯ପୀଲାତ ଲୋକମାନଙ୍କୁ ପଚାରିଲେ, "ତୁମ୍ଭେମାନେ
କ'ଣ ଚାହୁଁଛ ଯେ ମୁଁ ତୁମ୍ଭମାନଙ୍କ ପାଇଁ ଯିହୂଦୀମାନଙ୍କ
ରାଜାଙ୍କୁ ଛାଡ଼ି ଦିଏ?" ୧୦ପୀଲାତ ଏକଥା କହିବାର କାରଣ
ହେଲା, ସେ ଜାଣିଥିଲେ ଯେ ପ୍ରଧାନଯାଜକମାନେ ଈର୍ଷାନ୍ୱିତ
ହୋଇ ଯୀଶୁଙ୍କୁ ତାହାଙ୍କ ହାତରେ ସମର୍ପଣ କରି ଦେଇଛନ୍ତି।
୧୧କିନ୍ତୁ ପ୍ରଧାନଯାଜକମାନେ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ
ଯେ, ସେମାନେ ପୀଲାତଙ୍କୁ କୁହନ୍ତୁ ବାରବ୍ବାକୁ ମୁକ୍ତ
କରିବା ପାଇଁ, କିନ୍ତୁ ଯୀଶୁଙ୍କୁ ନୁହେଁ।
୧୨ପୀଲାତ ଲୋକମାନଙ୍କୁ ଆଉଥରେ ପଚାରିଲେ,
"ତୁମ୍ଭେମାନେ ଯାହାକୁ ଯିହୂଦୀମାନଙ୍କର ରାଜା ବୋଲି
କହୁଛ, ମୁଁ ତାହାଙ୍କ ପ୍ରତି କ'ଣ କରିବା ପାଇଁ ତୁମ୍ଭେମାନେ
ଚାହୁଁଛ?"
୧୩ଲୋକମାନେ ପାଟି କରି କହିଲେ, "ତାହାଙ୍କୁ କ୍ରୁଶରେ
ଚଢାଅ।"
୧୪ପୀଲାତ ପଚାରିଲେ,"କାହିଁକି? ସେ ଏଭଳି କ'ଣ
ଅପରାଧ କରିଛନ୍ତି?"
କିନ୍ତୁ ଲୋକମାନେ ଅଧିକ ଜୋରରେ ଚିତ୍କାର କରି
କହିଲେ, "ତାହାଙ୍କୁ କ୍ରୁଶରେ ଚଢାଅ।"

୧୫ପୀଲାତ ଲୋକମାନଙ୍କୁ ଖୁସୀ କରିବାକୁ ଚାହିଁଲେ,
ତେଣୁ ସେ ସେମାନଙ୍କ ପାଇଁ ବାରବ୍ବାକୁ ମୁକ୍ତ କରି
ଦେଲେ ଏବଂ ଯୀଶୁଙ୍କୁ କୋରଡ଼ାରେ ପିଟିବା ପାଇଁ ସୈନ୍ୟମାନଙ୍କୁ
ଆଦେଶ ଦେଲେ। ତା'ପରେ ସେ ଯୀଶୁଙ୍କୁ କ୍ରୁଶରେ
ଚଢ଼ାଇ, ମାରିଦେବା ପାଇଁ ତାହାଙ୍କୁ ସୈନ୍ୟମାନଙ୍କ ହାତରେ
ଦେଇ ଦେଲେ।
୧୬ସୈନ୍ୟମାନେ ଯୀଶୁଙ୍କୁ ଶାସନକର୍ତ୍ତାଙ୍କ ପ୍ରାସାଦ ଭିତରକୁ
ନେଇଗଲେ। ସେମାନେ ଅନ୍ୟ ସମସ୍ତ ସୈନ୍ୟମାନଙ୍କୁ
ଏକାଠି ଡାକଲେ। ୧୭ସୈନ୍ୟମାନେ ଯୀଶୁଙ୍କୁ ବାଇଗଣୀ
ରଙ୍ଗର ପୋଷାକ ପିନ୍ଧାଇଲେ। ସେମାନେ ଗୋଟିଏ କଣ୍ଟାର
ମୁକୁଟ ତିଆରି କରି ତାହାଙ୍କ ମୁଣ୍ଡରେ ପିନ୍ଧାଇଲେ। ୧୮ତା
ପରେ ସେମାନେ ତାହାଙ୍କୁ ସ୍ୱାଗତ କରି ଥଟ୍ଟାରେ କହିଲେ
ହେ ଯିହୂଦୀମାନଙ୍କର ରାଜା, କହି ପ୍ରଣାମ କଲେ।
୧୯ସୈନ୍ୟମାନେ ଯୀଶୁଙ୍କ ମୁଣ୍ଡରେ ବାରମ୍ବାର ବେତରେ
ଆଘାତ କଲେ। ତାହାଙ୍କ ଉପରେ ଛେପ ପକାଇଲେ।
ଆଣ୍ଠୁମାଡ଼ି ବସି ତାହାଙ୍କୁ ପ୍ରଣାମ କଲେ। ୨୦ଥଟ୍ଟା କରି
ସାରିବା ପରେ ସେମାନେ ଯୀଶୁଙ୍କ ଦେହରୁ ବାଇଗଣୀ
ପୋଷାକ କାଢ଼ିନେଇ ପୁଣି ତାହାଙ୍କୁ ତାହାଙ୍କର ପୂର୍ବ ବସ୍ତ୍ର
ପିନ୍ଧାଇଦେଲେ। ତା'ପରେ ସେମାନେ ଯୀଶୁଙ୍କୁ କ୍ରୁଶରେ
ଚଢାଇ ମାରିବା ପାଇଁ ପ୍ରାସାଦ ବାହାରକୁ ନେଇଗଲେ।

## ଯୀଶୁଙ୍କୁ କ୍ରୁଶରେ ଚଢାଇ ମାରି ଦିଆ ଗଲା

୨୧ସେତେବେଳେ ଜଣେ କୂରୀଣୀୟ ବାସିନ୍ଦା ଶିମୋନ
ପଲ୍ଲୀଗ୍ରାମରୁ ଆସି ସେ ବାଟେ ଯାଉଥିଲା। ସେ ଆଲେକ୍ଜାଣ୍ଡର
ଓ ରୂଫଙ୍କ ପିତା ଥିଲା। ସୈନ୍ୟମାନେ ଯୀଶୁଙ୍କ ପାଇଁ କ୍ରୁଶ
ବୋହି ନେବାକୁ ତାକୁ ବାଧ କଲେ। ୨୨ତା ପରେ
ସେମାନେ ଯୀଶୁଙ୍କୁ ଗଲ୍ଗଥା ନାମକ ସ୍ଥାନକୁ ନେଇ
ଗଲେ। (ଗଲ୍ଗଥାର ଅର୍ଥ କପାଳ-ସ୍ଥାନ) ୨୩ସେଠାରେ
ସେମାନେ ଯୀଶୁଙ୍କୁ ଗନ୍ଧରସ ମିଶ୍ରିତ ଅଙ୍ଗୁରରସ ପିଇବାକୁ
ଦେଲେ। କିନ୍ତୁ ଯୀଶୁ ତାହା ପିଇବାକୁ ମନା କଲେ। ୨୪ତା
ପରେ ସୈନ୍ୟମାନେ ଯୀଶୁଙ୍କୁ କ୍ରୁଶ-ବିଦ୍ଧ କଲେ। ସେମାନେ
ଯୀଶୁଙ୍କ ଲୁଗା-ପଟା ନିଜ ନିଜ ମଧ୍ୟରେ ବାଣ୍ଟି ନେଲେ।
କିଏ କ'ଣ ପାଇବ, ତାହା ସେମାନେ ଗୁଲିବାଣ୍ଟ ଦ୍ୱାରା ଭାଗ
କରିବା ପାଇଁ ସ୍ଥିର କଲେ।
୨୫ଯୀଶୁଙ୍କୁ କ୍ରୁଶବିଦ୍ଧ କଲା ବେଳକୁ ସକାଳ ନଅଟା
ବାଜିଥିଲା। ୨୬ଯୀଶୁଙ୍କ ବିରୁଦ୍ଧରେ ଗୋଟିଏ ଅଭିଯୋଗପତ୍ର
ଫଳକ ଉପରେ ଲେଖା ଯାଇଥିଲା ଓ "ଯିହୂଦୀମାନଙ୍କର
ରାଜା।' ୨୭ଯୀଶୁଙ୍କ ସହିତ ଆଉ ଦୁଇଜଣ ଡକାୟତଙ୍କୁ ମଧ୍ୟ
ସେମାନେ କ୍ରୁଶ-ବିଦ୍ଧ କଲେ। ଜଣକୁ ତାହାଙ୍କର ଡାହାଣ
ପଟେ ଓ ଆଉ ଜଣଙ୍କୁ ବାମ ପଟେ କ୍ରୁଶବିଦ୍ଧ କରାଗଲା।
୨୮* ୨୯ଯୀଶୁଙ୍କ ପାଖ ଦେଇ ଚାଲିଯାଉଥିବା ଲୋକେ
ତାହାଙ୍କୁ ଅପମାନିତ କରୁଥିଲେ। ସେମାନେ ମୁଣ୍ଡ ହଲେଇ
ହଲେଇ କହୁଥିଲେ, "ଆରେ ବାଃ; ତୁ ସେହି ଲୋକ,
ଯିଏ ମନ୍ଦିରକୁ ଭାଙ୍ଗି ଦେଇ ତିନି ଦିନ ମଧ୍ୟରେ ତାହା
ପୁଣି ତିଆରି କରି ଦେବୁ ବୋଲି କହୁଥିଲୁ। ୩୦ଏବେ କ୍ରୁଶ
ଉପରୁ ଓହ୍ଲେଇ ଆସି ନିଜକୁ ରକ୍ଷା କର।"
୩୧ପ୍ରଧାନ ଯାଜକ ଓ ଧର୍ମଶାସ୍ତ୍ରୀମାନେ ମଧ୍ୟ ସେଠାରେ
ଉପସ୍ଥିତ ଥିଲେ। ଅନ୍ୟ ଲୋକମାନେ ଯୀଶୁଙ୍କୁ ଯେଉଭଳି
ଭାବରେ ଥଟ୍ଟା କରୁଥିଲେ, ସେମାନେ ମଧ୍ୟ ଠିକ୍ ସେହିଭଳି
ଯୀଶୁଙ୍କୁ ଥଟ୍ଟା କଲେ। ସେମାନେ କୁହାକୁହି ହେଉଥିଲେ,
"ସେ ଅନ୍ୟକୁ ରକ୍ଷା କରୁଥିଲା, କିନ୍ତୁ ଏବେ ସେ ନିଜକୁ
ରକ୍ଷା କରି ପାରିଲା ନାହିଁ। ୩୨ଯଦି ପ୍ରକୃତରେ ସେ ଖ୍ରୀଷ୍ଟ,,
ଇସ୍ରାୟେଲର ରାଜା, ତେବେ ବର୍ତ୍ତମାନ ସେ କ୍ରୁଶ ଉପରୁ
ତଳକୁ ଓହ୍ଲେଇ ଆସୁ। ନିଜକୁ ରକ୍ଷା କରୁ। ତା'ହେଲେ
ଆମ୍ଭେମାନେ ତାହା ଦେଖିବା ଓ ତାକୁ ବିଶ୍ୱାସ କରିବା।
ଯେଉଁମାନଙ୍କୁ ଯୀଶୁଙ୍କ ସହିତ ପାଖରେ କ୍ରୁଶ-ବିଦ୍ଧ କରାଯାଉଥିଲା,
ସେମାନେ ମଧ୍ୟ ଯୀଶୁଙ୍କୁ ଅପମାନିତ କଲେ।

## ଯୀଶୁଙ୍କ ମୃତ୍ୟୁ

୩୩ଦ୍ୱିପ୍ରହର ବେଳକୁ ସମଗ୍ର ଦେଶ ଉପରେ ଅନ୍ଧକାର
ମାଡ଼ି ଆସିଲା। ଏହି ଅନ୍ଧକାର ଅପରାହ୍ନ ତିନିଟା ବେଳ
ପର୍ଯ୍ୟନ୍ତ ରହିଲା। ୩୪ସେହି ସମୟରେ ଯୀଶୁ ବଡ଼ ପାଟିରେ
କହି ଉଠିଲେ, "ଏଲୋହୀ, ଏଲୋହୀ, ଲମାଶବକ୍ ଥାନୀ।"
ଅର୍ଥାତ, "ହେ ମୋର ପରମେଶ୍ୱର, ହେ ମୋର ପରମେଶ୍ୱର,
ତୁମ୍ଭେ ମୋତେ କାହିଁକି ପରିତ୍ୟାଗ କଲ?"
୩୫ସେଠାରେ ଠିଆ ହୋଇଥିବା କେତେକ ଲୋକ
ଏକଥା ଶୁଣିଲେ। ସେମାନେ କହିଲେ, "ଶୁଣ, ସେ
ଏଲୟଙ୍କୁ ଡାକୁଛି।" ୩୬ସେଠାରୁ ଜଣେ ଲୋକ ଦୌଡ଼ିଯାଇ
ଅମ୍ଳରସରେ ଭିଜାଇଥିବା ଗୋଟିଏ ସ୍ପଞ୍ଜ ଆଣିଲା। ସ୍ପଞ୍ଜକୁ
ଗୋଟିଏ ବାଡ଼ରେ ବାନ୍ଧିଲା। ଯୀଶୁ ସ୍ପଞ୍ଜରୁ ଅମ୍ଳ-ରସ
ପିଇବେ ବୋଲି ସେ ବାଡ଼ିଟିର ସ୍ପଞ୍ଜ ବନ୍ଧା ହୋଇଥିବା
ପାଖଟି ତାହାଙ୍କ ଆଡ଼କୁ ବଢାଇଲା। ଲୋକଟି କହିଲା,
"ଏବେ ଆମ୍ଭେ ଅପେକ୍ଷା କରିବା ଏବଂ ଏଲୟ ଆସି ତାକୁ
କ୍ରୁଶ ଉପରୁ ତଳକୁ ନେବାକୁ ଆସୁଛନ୍ତି କି ନାହିଁ,
ଦେଖିବା।"
୩୭ତା'ପରେ ଯୀଶୁ ଉଚ୍ଚ ସ୍ୱରରେ ପାଟି କରି ପ୍ରାଣତ୍ୟାଗ
କଲେ।
୩୮ଯୀଶୁ ଯେତେବେଳେ ପ୍ରାଣତ୍ୟାଗ କଲେ, ସେତେବେଳେ
ମନ୍ଦିରର ପରଦା ଉପରୁ ତଳ ପର୍ଯ୍ୟନ୍ତ ଦୁଇଖଣ୍ଡ ହୋଇ
ଚିରିଗଲା। ୩୯କ୍ରୁଶ ଆଗରେ ଠିଆ ହୋଇଥିବା ସେନାପତି
ଯୀଶୁ କିପରି ପ୍ରାଣତ୍ୟାଗ କଲେ, ତାହା ଦେଖିଲେ। ସେ
କହିଲେ, "ପ୍ରକୃତରେ ଏହି ଲୋକ ପରମେଶ୍ୱରଙ୍କ ପୁତ୍ରଥିଲେ।"
୪୦କେତେକ ସ୍ତ୍ରୀଲୋକ କ୍ରୁଶଠାରୁ କିଛି ଦୂରରେ ଠିଆ
ହୋଇ ଦେଖୁଥିଲେ। ସେମାନଙ୍କ ମଧ୍ୟରେ ମଗ୍ଦଲା ସହରରୁ
ଆସିଥିବା ମରିୟମ, ଶଲୋମୀ, ଯାକୁବ ଓ ଯୋସିଙ୍କ ମାଆ
ମରିୟମ ଥିଲେ। (ଯାକୁବ ମରିୟମଙ୍କର ସାନ ପୁଅ
ଥିଲା।) ୪୧ଏହି ସ୍ତ୍ରୀଲୋକମାନେ ଯୀଶୁ ଗଲୀଲୀରେ ଥିବାବେଳେ
ତାହାଙ୍କର ସହିତରେ ଥିଲେ। ସେମାନେ ତାହାଙ୍କର
ସେବାଯତ୍ନ କରୁଥିଲେ। ଅନ୍ୟ ଅନେକ ସ୍ତ୍ରୀଲୋକ ମଧ୍ୟ

**ପଦସଂଖ୍ୟା ୨୮** କେତେକ ଗ୍ରୀକ୍ ପତ୍ରରେ ପଦସଂଖ୍ୟା ୨୮ ଏହିଭଳି ଯୋଡ଼ା ଯାଇଛି। "ଏହି ଭଳି ଭାବରେ ଶାସ୍ତ୍ରରେ ଲେଖାଥିବା ଏହି କଥା ସଫଳ ହେଲା : ତାହାଙ୍କୁ 'ଅପରାଧୀଙ୍କ ସହିତ ରଖାଗଲା।'"

ସେଠାରେ ଥିଲେ। ସେମାନେ ଯୀଶୁଙ୍କ ସହିତ ଯିରୂଶାଲମକୁ
ଆସିଥିଲେ।

## ଯୀଶୁଙ୍କୁ ସମାଧି ଦିଆଗଲା

[୪୨]ସନ୍ଧ୍ୟା ହୋଇଯାଇଥିଲା। ଏହି ଦିନଟି ଆୟୋଜନ
ଦିବସ (ବିଶ୍ରାମ-ଦିବସର ପୂର୍ବ ଦିନ) ଥିଲା। [୪୩]ଆରିମାଥିଆର
ଯିହୂଦୀ ଯୋସେଫ ମହାସଭାର ଜଣେ ସମ୍ମାନିତ ସଦସ୍ୟ
ଥିଲେ ଓ ସେ ପରମେଶ୍ୱରଙ୍କ ରାଜ୍ୟ ଆସୁ ବୋଲି
ଚାହୁଁଥିଲେ। ସେ ସାହସର ସହିତ ପୀଲାତଙ୍କ ପାଖକୁ ଯାଇ
ଯୀଶୁଙ୍କ ଶବକୁ ମାଗିଲେ। [୪୪]ଯୀଶୁ ଏତେ ଶୀଘ୍ର ମରି
ଯାଇ ସାରିଲେଣି ଶୁଣି ପୀଲାତ ବହୁତ ଆଶ୍ଚର୍ଯ୍ୟ ହୋଇଗଲେ।
ସେ ଯୀଶୁଙ୍କୁ ଜଗିଥିବା ସେନାପତିଙ୍କୁ ଡକାଇଲେ। ପୀଲାତ
ତାହାଙ୍କୁ ଯୀଶୁ ମରି ସାରିଲେଣି କି ନାହିଁ ପଚାରିଲେ।
[୪୫]ସେନାପତି ଜଣକ ପୀଲାତଙ୍କୁ ଯୀଶୁ ପ୍ରାଣତ୍ୟାଗ କରି
ସାରିଥିବା କଥା କହିଲେ। ତା’ପରେ ପୀଲାତ ଯୋସେଫଙ୍କୁ
କହିଲେ ଯେ ସେ ଯୀଶୁଙ୍କ ଶବ ନେଇ ଯାଇ ପାରିବେ।
[୪୬]ଯୋସେଫ ଖଣ୍ଡିଏ ବସ୍ତ୍ର କିଣିଲେ। ସେ ଶବକୁ କ୍ରୁଶ
ଉପରୁ ତଳକୁ ଓହ୍ଲାଇ ଆଣିଲେ। ସେ ଶବକୁ ବସ୍ତ୍ରରେ
ସମ୍ପୂର୍ଣ୍ଣ ଗୁଡ଼େଇ ଦେଲେ ଓ ପଥର କାଟି ହୋଇ ତିଆରି
ହୋଇଥିବା ଗୋଟିଏ କବରରେ ତାହାଙ୍କୁ ରଖିଦେଲେ।
ଖଣ୍ଡିଏ ବଡ଼ ପଥର ଗଡ଼େଇ ଆଣି କବରର ମୁହଁକୁ ବନ୍ଦ
କରିଦେଲେ। [୪୭]ମଗ୍‌ଦଲୀନୀ ମରିୟମ ଓ ଯୋସିଙ୍କ ମାଆ
ଯୀଶୁଙ୍କୁ ଯେଉଁଠାରେ ରଖାଗଲା, ସେହି ସ୍ଥାନଟି
ଦେଖିଲେ।

## ଯୀଶୁ ମୃତ୍ୟୁରୁ ପୁନରୁତ୍ଥିତ ହେଲେ

୧୬ ବିଶ୍ରାମ ଦିବସର ପର ଦିନ ମଗ୍‌ଦଲୀନୀ ମରିୟମ,
ଯାକୁବଙ୍କ ମାଆ ମରିୟମ ଓ ଶଲୋମୀ ଯୀଶୁଙ୍କ
ଶରୀରକୁ ଅଭିଷିକ୍ତ କରିବା ପାଇଁ କିଛି ସୁଗନ୍ଧିତ ତେଲ
ଆଣିଲେ। [୨]ସପ୍ତାହର ସେହି ପ୍ରଥମ ଦିନ ଖୁବ୍ ଶୀଘ୍ର, ଠିକ
ସୂର୍ଯ୍ୟୋଦୟ ପରେ ପରେ ସେମାନେ କବର ପାଖକୁ
ଗଲେ। [୩]ସେମାନେ ନିଜନିଜ ଭିତରେ କୁହାକୁହି ହେଲେ,
“କବର ମୁହଁକୁ ଗୋଟିଏ ବିରାଟ ପଥର ଦ୍ୱାରା ବନ୍ଦ କରି
ଦିଆ ହୋଇଛି। ପଥରଟିକୁ ଆମ୍ଭ ପାଇଁ କିଏ ସେଠାରୁ
ଗଡ଼େଇ ଦେବ?”
[୪]ତା ପରେ ସେମାନେ ସେ ଆଡ଼କୁ ଚାହିଁଲେ। ସେମାନେ
ଦେଖିଲେ ଯେ ସେହି ବଡ଼ ପଥରଟି ସେଠାରୁ ଘୁଞ୍ଚା
ଯାଇଛି। [୫]ସେମାନେ କବର ଭିତରକୁ ଗଲେ। ସେଠାରେ
ସେମାନେ ଧଳା ପୋଷାକ ପିନ୍ଧିଥିବା ଜଣେ ଯୁବକକୁ
ଦେଖିଲେ। ସେ ସମାଧିର ଡାହାଣ ପଟେ ବସି ରହିଥିଲା।
ସେମାନେ ଡରିଗଲେ।
[୬]କିନ୍ତୁ ଯୁବକ ଜଣକ କହିଲେ, “ଭୟ କର ନାହିଁ।
ତୁମ୍ଭେମାନେ କ୍ରୁଶବଦ୍ଧ ନାଜରୀତର ଯୀଶୁଙ୍କୁ ଖୋଜୁଛ। ସେ
ମୃତ୍ୟୁରୁ ପୁନରୁତ୍ଥିତ ହୋଇଛନ୍ତି। ସେ ଏଠାରେ ନାହାଁନ୍ତି।
ଦେଖ, ସେମାନେ ତାହାଙ୍କୁ ଏହି ସ୍ଥାନରେ ରଖିଥିଲେ।
[୭]ଏବେ ଯାଇ ତାହାଙ୍କ ଶିଷ୍ୟମାନଙ୍କୁ ଏବଂ ପିତରଙ୍କୁ କୁହ
ଯେ ତୁମ୍ଭମାନଙ୍କ ପୂର୍ବରୁ ଯୀଶୁ ଗାଲୀଲୀକୁ ଯାଉଛନ୍ତି। ସେ
ତୁମ୍ଭକୁ ପୂର୍ବରୁ ଯେଉଁ ଭଳି କହିଥିଲେ, ତୁମ୍ଭେମାନେ
ତାହାଙ୍କୁ ସେହିଭଳି ସେଠାରେ ଦେଖିବ।” [୮]ସେହି
ସ୍ତ୍ରୀଲୋକମାନେ ଭୟ ପାଇ ଯାଇଥିଲେ ଏବଂ ବିସ୍ମୟରେ
ଅଭିଭୂତ ହୋଇ ଯାଉଥିଲେ। ସେମାନେ କବରରୁ ବାହାରି
ଦୌଡ଼ି ପଳାଇଲେ, କିନ୍ତୁ ଭୟଭୀତ ହୋଇ ଯାଇଥିବାରୁ
ଏସବୁ ଘଟଣା କାହାରିକୁ କହିଲେ ନାହିଁ।

---

*(କେତେକ ପୁରୁଣା ଗ୍ରୀକ୍ ପ୍ରତିରେ ପଦସଂଖ୍ୟା ଆଠ)ରେହିଁ ମାର୍କ ଲିଖିତ ସୁସମାଚାର ସମାପ୍ତ ହୋଇଛି।)*

## କେତେକ ଶିଷ୍ୟ ଯୀଶୁଙ୍କୁ ଦେଖିଲେ

[୯]ସପ୍ତାହର ପ୍ରଥମ ଦିନର ବଡ଼ ସକାଳୁ ଯୀଶୁ ମୃତ୍ୟୁରୁ
ପୁନରୁତ୍ଥିତ ହେଲେ। ସର୍ବ ପ୍ରଥମେ ସେ ମଗ୍‌ଦଲୀନୀ
ମରିୟମଙ୍କ ନିକଟରେ ନିଜକୁ ଦେଖା ଦେଲେ। ଅତୀତରେ
ଥରେ ଯୀଶୁ ଏହି ମରିୟମଙ୍କ ଠାରୁ ସାତଟି ଭୂତଙ୍କୁ ତଡ଼ି
ଦେଇଥିଲେ। [୧୦]ମରିୟମ ଯୀଶୁଙ୍କୁ ଦେଖି ସାରିବା ପରେ
ତାହାଙ୍କ ଶିଷ୍ୟମାନଙ୍କ ପାଖକୁ ଯାଇ ଏବିଷୟ କହିଲେ।
ସେତେବେଳେକୁ ଶିଷ୍ୟମାନେ ଶୋକରେ ବୁଡ଼ି ଯାଇଥିଲେ
ଓ ବିଳାପ କରୁଥିଲେ। [୧୧]ମରିୟମ ସେମାନଙ୍କୁ କହିଲେ
ଯେ ଯୀଶୁ ଜୀବିତ ଅଛନ୍ତି ଏବଂ ସେ ନିଜେ ଯୀଶୁଙ୍କୁ
ଦେଖିଛନ୍ତି। କିନ୍ତୁ ଶିଷ୍ୟମାନେ ସେମାନଙ୍କ କଥାରେ ବିଶ୍ୱାସ
କଲେ ନାହିଁ।
[୧୨]ଏହା ପରେ ଦୁଇଜଣ ଶିଷ୍ୟ ପଡିଆ ମଧିରେ
ଯାଉଥିବା ସମୟରେ ଯୀଶୁ ସେମାନଙ୍କ ନିକଟରେ ଅନ୍ୟ
ଏକ ରୂପରେ ଦେଖା ଦେଲେ। [୧୩]ଏହି ଶିଷ୍ୟ ଦୁଇଜଣ
ଫେରିଆସି ଅନ୍ୟ ଶିଷ୍ୟମାନଙ୍କୁ ଏକଥା ଜଣାଇଲେ। ତଥାପି
ଶିଷ୍ୟମାନେ ତାହାଙ୍କ କଥାକୁ ମଧ୍ୟ ବିଶ୍ୱାସ କଲେ ନାହିଁ।

## ପ୍ରେରିତମାନଙ୍କ ସହିତ ଯୀଶୁଙ୍କ କଥାବାର୍ତ୍ତା

[୧୪]ପରେ ଯେତେବେଳେ ଏଗାର ଜଣ ପ୍ରେରିତ ଖାଉଥିଲେ,
ସେତିକିବେଳେ ଯୀଶୁ ସେମାନଙ୍କୁ ଦେଖା ଦେଲେ। ସେ
ସେମାନଙ୍କୁ ସେମାନଙ୍କର ଅବିଶ୍ୱାସ ଓ ମନର ଜଡ଼ତା ପାଇଁ
ସମାଲୋଚନା କଲେ। କାରଣ ଯେଉଁମାନେ ଯୀଶୁଙ୍କୁ ମୃତ୍ୟୁରୁ
ପୁନରୁତ୍ଥାନ ହୋଇଛନ୍ତି ବୋଲି ଦେଖିଥିଲେ ସେମାନଙ୍କୁ ଏହି
ଶିଷ୍ୟମାନେ ବିଶ୍ୱାସ କରି ନଥିଲେ।
[୧୫]ଯୀଶୁ ସେମାନଙ୍କୁ କହିଲେ, “ପୃଥିବୀର ଚାରିଆଡ଼କୁ
ଯାଅ। ପ୍ରତ୍ୟେକ ଲୋକକୁ ସୁସମାଚାର ଶୁଣାଅ। [୧୬]ଯେଉଁ
ଲୋକ ବିଶ୍ୱାସ କରିବ ଓ ବାପ୍ତିଜିତ ହେବ, ସେ ଉଦ୍ଧାର
ପାଇବ। କିନ୍ତୁ ଯେଉଁ ଲୋକ ଅବିଶ୍ୱାସ କରିବ, ସେ
ଦୋଷୀ ସାବ୍ୟସ୍ତ ହେବ। [୧୭]ଯେଉଁମାନେ ମୋତେ ବିଶ୍ୱାସ
କରିବେ, ସେମାନେ ତାର ପ୍ରମାଣ ସ୍ୱରୂପ ଏହି ସବୁ କାମ
କରିବାକୁ ସକ୍ଷମ ହେବେ: ସେମାନେ ଲୋକମାନଙ୍କ ଠାରୁ
ମୋ ନାମରେ ଭୂତମାନଙ୍କୁ ବାହାର କରି ଦେଇ ପାରିବେ।
କେବେହେଲେ ଶିଖି ନଥିବା ନୂଆନୂଆ ଅନେକ ଭାଷାରେ
କଥାବାର୍ତ୍ତା କରିବେ। [୧୮]ସେମାନେ ନିଜ ହାତରେ ସାପକୁ
ଧରିବେ କିନ୍ତୁ ସେମାନଙ୍କର କିଛି ହେଲେ କ୍ଷତି ହେବନାହିଁ।
ସେମାନେ ବିଷ ମଧ୍ୟ ପିଇ ଦେବେ, କିନ୍ତୁ ସେମାନଙ୍କର

କିଛି ହେଲେ କ୍ଷତି ହେବନାହିଁ। ଏ ଲୋକମାନେ
ରୋଗୀମାନଙ୍କ ଉପରେ ହାତ ରଖିବେ ଏବଂ ରୋଗୀମାନେ
ଭଲ ହୋଇଯିବେ।”
୧୯ପ୍ରଭୁ ଯୀଶୁ ଏହିସବୁ କଥା ପ୍ରେରିତମାନଙ୍କୁ କହିସାରିବା
ପରେ ତାହାଙ୍କୁ ସ୍ୱର୍ଗକୁ ନିଆଗଲା। ସେ ପରମେଶ୍ୱରଙ୍କ
ଡାହାଣ ପଟେ ବସିଲେ। ୨୦ତା’ପରେ ପ୍ରେରିତମାନେ ପୃଥିବୀର
ପ୍ରତ୍ୟେକ ସ୍ଥାନକୁ ଯାଇ ଲୋକମାନଙ୍କୁ ସୁସମାଚାରର ଉପଦେଶ
ଦେଲେ ଏବଂ ପ୍ରଭୁ ସେମାନଙ୍କୁ ସାହାଯ୍ୟ କଲେ। ପ୍ରଭୁ
ପ୍ରମାଣିତ କରିଦେଲେ ଯେ, ପ୍ରେରିତମାନେ ଯେଉଁ ସୁସମାଚାର
ପ୍ରଚାର କରୁଥିଲେ ତାହା ସତ୍ୟ। ପ୍ରଭୁ ସେମାନଙ୍କୁ ଆଶ୍ଚର୍ଯ୍ୟକାର୍ଯ୍ୟ
କରିବା ପାଇଁ ଶକ୍ତି ପ୍ରଦାନ କରି ଏହା ପ୍ରମାଣିତ
କରିଦେଲେ।

# ଲୂକ ଲିଖିତ ସୁସମାଚାର

## ଯୀଶୁଙ୍କ ଜୀବନୀ ସମ୍ବନ୍ଧରେ ଲୂକଙ୍କ ରଚନା

୧ ପ୍ରିୟ ଥିୟଫିଲ,
ଅନେକ ଲୋକ ଆମ୍ଭମାନଙ୍କ ମଧ୍ୟରେ ଘଟି ଯାଇଥିବା
ଘଟଣା ଗୁଡ଼ିକର ବିବରଣୀ ଲେଖିବା ପାଇଁ ଚେଷ୍ଟା କରିଛନ୍ତି।
୨ଯେଉଁମାନେ ଏ ଘଟଣା ଗୁଡ଼ିକୁ ନିଜେ ଆରମ୍ଭରୁ ଦେଖିଛନ୍ତି
ଏବଂ ଲୋକମାନଙ୍କ ମଧ୍ୟରେ ତାହାଙ୍କ ବାର୍ତ୍ତା ପ୍ରଚାର କରି
ପରମେଶ୍ୱରଙ୍କ ସେବା କରିଛନ୍ତି, ସେହିମାନଙ୍କ ଠାରୁ
ଯେଉଁବିଷୟ ଆମ୍ଭେମାନେ ଶିକ୍ଷା କରିଛୁ ଠିକ୍ ସେହିସବୁ
କଥା ସେମାନେ ଲେଖିଅଛନ୍ତି। ୩ହେ ମାନ୍ୟବର, ଯେହେତୁ
ପ୍ରଥମରୁ ମୁଁ ନିଜେ ସାବଧାନ ହୋଇ ଏ ସବୁ ଅନୁଧାନ
କରିଛି, ସେଥିସକାଶେ ତୁମ୍ଭ ପାଇଁ ଏହାର ଗୋଟିଏ କ୍ରମିକ
ବିବରଣୀ ଏକ ପୁସ୍ତକ ଆକାରରେ ଲେଖିବାକୁ ମୁଁ ଉଚିତ
ମନେ କଲି। ୪ମୁଁ ଏଗୁଡିକ ଲେଖିବା ଫଳରେ ତୁମ୍ଭେମାନେ
ଜାଣି ପାରିବ ଯେ ଆପଣଙ୍କୁ ଯାହା ସବୁ ଶିକ୍ଷା ଦିଆ
ଯାଇଛି, ତାହା ସତ୍ୟ।

## ଜିଖରିୟ ଓ ଏଲୀଶାବେଥ

୫ହେରୋଦ ଯିହୂଦାର ରାଜା ଥିବା ସମୟରେ ଜିଖରିୟ
ନାମକ ଜଣେ ଯାଜକ ଥିଲେ। ସେ 'ଅବିୟ'ଙ୍କ ଦଳର
ଲୋକଥିଲେ। ତାହାଙ୍କ ପତ୍ନୀଙ୍କ ନାମ ଥିଲା ଏଲୀଶାବେଥ।
ଏଲୀଶାବେଥ ହାରୋଣ ବଂଶର ଝିଅ ଥିଲେ। ୬ସେମାନେ
ଦୁହେଁ ପରମେଶ୍ୱରଙ୍କ ଆଗରେ ଉତ୍ତମ ବ୍ୟକ୍ତି ଥିଲେ।
ସେମାନେ ଉଭୟ ପ୍ରଭୁଙ୍କର ସମସ୍ତ ଆଜ୍ଞା ପାଳନ କରୁଥିଲେ।
ପ୍ରଭୁ ଲୋକମାନଙ୍କୁ ପାଳିବାକୁ କହିଥିବା ସମସ୍ତ କଥା
ସେମାନେ ଦୁହେଁ ପାଳୁଥିଲେ। ସେମାନଙ୍କର କୌଣସି ଭୁଲ
ନଥିଲା। ୭କିନ୍ତୁ ସେମାନଙ୍କର କୌଣସି ସନ୍ତାନସନ୍ତତି ନଥିଲେ।
ଏଲୀଶାବେଥ ବନ୍ଧ୍ୟା ଥିଲେ। ଉଭୟେ ଜିଖରିୟ ଓ
ଏଲୀଶାବେଥ ବୁଢ଼ାବୁଢ଼ୀ ହୋଇ ଯାଇଥିଲେ।
୮ଜିଖରିୟ ତାହାଙ୍କ ଦଳ ତରଫରୁ ଜଣେ ଯାଜକ
ହିସାବରେ ମନ୍ଦିରରେ ପରମେଶ୍ୱରଙ୍କ ସେବାକାର୍ଯ୍ୟ କରୁଥିଲେ।
ସେବାକାର୍ଯ୍ୟ କରିବା ପାଇଁ ତାହାଙ୍କ ଦଳର ପାଳି ପଡ଼ିଲା।
୯ଧୂପ ଅର୍ପଣ କରିବା ପାଇଁ ଯାଜକମାନେ ସଦାବେଳେ
ଜଣେ ଯାଜକଙ୍କୁ ବାଛୁଥିଲେ। ଜିଖରିୟଙ୍କୁ ଏଥିପାଇଁ ବଛାଗଲା।
ତେଣୁ ଜିଖରିୟ ପ୍ରଭୁଙ୍କ ମନ୍ଦିର ଭିତରକୁ ଧୂପ ଦେବା
ପାଇଁ ଗଲେ। ୧୦"ବାହାରେ ବହୁତ ଲୋକ ଜମା ହୋଇଥିଲେ।
ଧୂପ ଲାଗିବା ସମୟରେ ସେମାନେ ପ୍ରାର୍ଥନା କରୁଥିଲେ।
୧୧ସେହି ସମୟରେ ଜିଖରିୟଙ୍କ ଆଗରେ ପ୍ରଭୁଙ୍କର ଜଣେ
ସ୍ୱର୍ଗଦୂତ ଦର୍ଶନ ଦେଲେ। ସେ ଧୂପବେଦୀର ଡାହାଣ
ପଟେ ଠିଆ ହୋଇଥିଲେ। ୧୨ଜିଖରିୟ ସ୍ୱର୍ଗଦୂତଙ୍କୁ ଦେଖିବା
ମାତ୍ରେ ବିଚଳିତ ଓ ବହୁତ ଭୟଭୀତ ହେଲେ। ୧୩କିନ୍ତୁ
ସ୍ୱର୍ଗଦୂତ ତାହାଙ୍କୁ କହିଲେ, "ଜିଖରିୟ! ଭୟ କରନାହିଁ,
ତୁମ୍ଭର ପ୍ରାର୍ଥନା ପରମେଶ୍ୱର ଶୁଣିଛନ୍ତି। ତୁମ୍ଭର ପତ୍ନୀ
ଏଲୀଶାବେଥ ଗୋଟିଏ ପୁତ୍ର ସନ୍ତାନ ଜନ୍ମ କରିବେ।
ତୁମ୍ଭେମାନେ ତାହାର ନାମ ଯୋହନ ରଖିବ। ୧୪ତୁମ୍ଭେ
ଅତ୍ୟନ୍ତ ଖୁସି ହେବ। ତାହାଙ୍କର ଜନ୍ମ ହେତୁ ବହୁତ
ଲୋକ ଖୁସି ହେବେ। ୧୫ପ୍ରଭୁଙ୍କ ପାଇଁ ଯୋହନ ମହାନ
ହେବେ। ସେ କେବେ ହେଁ ଦ୍ରାକ୍ଷାରସ କିମ୍ବା ମଦ୍ୟପାନ
କରିବେ ନାହିଁ। ଏପରିକି ଜନ୍ମ ସମୟରୁ ସେ ପବିତ୍ରଆତ୍ମାରେ
ପରିପୂର୍ଣ୍ଣ ହେବେ। ୧୬ଯୋହନ ଅନେକ ଯିହୂଦୀ ଲୋକଙ୍କୁ
ପ୍ରଭୁଙ୍କ ପାଖକୁ ଫେରି ଆସିବାକୁ ସାହାଯ୍ୟ କରିବେ। ପ୍ରଭୁ
ସେମାନଙ୍କର ପରମେଶ୍ୱର ଅଟନ୍ତି। ୧୭ଯୋହନ ନିଜେ
ଅଗ୍ରଗାମୀ ରୂପେ ପ୍ରଭୁଙ୍କ ପୂର୍ବରୁ ଯିବେ। ସେ ଏଲିୟଙ୍କ
ପରି ଶକ୍ତିଶାଳୀ ହେବେ। ସେ ଏଲିୟଙ୍କ ଆତ୍ମା ଲାଭ
କରିବେ। ସେ ପିତାଗଣ ଓ ସେମାନଙ୍କ ସନ୍ତାନମାନଙ୍କ
ମଧ୍ୟରେ ଶାନ୍ତି ସ୍ଥାପନ କରିବେ। ପରମେଶ୍ୱରଙ୍କୁ ଅବଜ୍ଞା
କରୁଥିବା ଅନେକ ଲୋକମାନଙ୍କୁ ଧାର୍ମିକମାନଙ୍କ ଦୃଷ୍ଟିର
ଠିକ୍ ମାର୍ଗକୁ ସେ ନେଇ ଆସିବେ। ପ୍ରଭୁଙ୍କ ଆଗମନ
ପାଇଁ ସେ ଲୋକମାନଙ୍କୁ ପ୍ରସ୍ତୁତ କରିବେ।"
୧୮ଜିଖରିୟ ସ୍ୱର୍ଗଦୂତଙ୍କୁ କହିଲେ, "ତୁମ୍ଭେ ଯାହା କହୁଛ,
ତାହା ସତ୍ୟ ବୋଲି ମୁଁ କିପରି ଜାଣିବି? ମୁଁ
ଜଣେ ବୁଢ଼ା ଲୋକ ଓ ମୋର ପତ୍ନୀ ମଧ୍ୟ ବୁଢ଼ୀ
ହୋଇଗଲେଣି।"
୧୯ସ୍ୱର୍ଗଦୂତ ଉତ୍ତର ଦେଲେ, "ମୁଁ ଗାବ୍ରିୟେଲ। ମୁଁ
ପରମେଶ୍ୱରଙ୍କ ସାମନାରେ ଠିଆ ହୋଇଥାଏ। ତୁମ୍ଭ ସହିତ
କଥାବାର୍ତ୍ତା କରିବାକୁ ଓ ଏ ସୁସମାଚାର ଦେବାକୁ ପରମେଶ୍ୱର
ମୋତେ ପଠାଇଛନ୍ତି। ୨୦ଏବେ ଶୁଣ! ତୁମ୍ଭେମାନେ ମୋ
କଥାରେ ବିଶ୍ୱାସ କଲନାହିଁ। କିନ୍ତୁ ନିଶ୍ଚିତ ସମୟ ଆସିଲେ
ଏହା ସତ୍ୟ ବୋଲି ପ୍ରମାଣିତ ହେବ। ଏବେ ତୁମ୍ଭେ ମୂକ
ହୋଇଯିବ। ଯେ ପର୍ଯ୍ୟନ୍ତ ଏସବୁ ନ ଘଟିଛି, ସେ ପର୍ଯ୍ୟନ୍ତ
ତୁମ୍ଭେମାନେ କହିବା ଶକ୍ତି ହରେଇ ବସିବ।"
୨୧ତେଣେ ଲୋକମାନେ ବାହାରେ ଜିଖରିୟଙ୍କୁ ଅପେକ୍ଷା
କରିଥିଲେ। ସେମାନେ ଆଶ୍ଚର୍ଯ୍ୟ ହେଲେ ଯେ ଏତେ
ସମୟ ପର୍ଯ୍ୟନ୍ତ ଜିଖରିୟ ମନ୍ଦିର ଭିତରେ କାହିଁକି ଅଟକି
ରହିଛନ୍ତି! ୨୨ଯେତେବେଳେ ଜିଖରିୟ ବାହାରକୁ ଆସିଲେ,
ସେତେବେଳେ ସେ କିଛି କଥା କହିପାରୁ ନଥିଲେ। ତେଣୁ
ସେମାନେ ବୁଝି ପାରିଲେ ଯେ, ସେ ମନ୍ଦିର ଭିତରେ
କୌଣସି ଦିବ୍ୟଦର୍ଶନ ପାଇଛନ୍ତି। ସେ ମୂକ ହୋଇ
ଯାଇଥିଲେ ଓ କେବଳ ଠାରରେ କହୁଥିଲେ। ୨୩ଜିଖରିୟଙ୍କ

ସେବାକାର୍ଯ୍ୟର ସମୟ ଶେଷ ହୋଇଯିବାପରେ ସେ ଘରକୁ
ଫେରିଗଲେ।
୨୪ତା’ପରେ ଜିଖରିୟଙ୍କ ପତ୍ନୀ ଏଲୀଶାବେଥ ଗର୍ଭବତୀ
ହେଲେ, ତେଣୁ ଏଲୀଶାବେଥ ଘର ବାହାରକୁ ପାଞ୍ଚମାସ
ପର୍ଯ୍ୟନ୍ତ ବାହାରିଲେ ନାହିଁ। ଏଲୀଶାବେଥ କହିଲେ, ୨୫“ଦେଖ,
ଶେଷରେ ପରମେଶ୍ୱର ମୋତେ ସାହାଯ୍ୟ କରିଛନ୍ତି।
ଲୋକମାନଙ୍କ ମଧ୍ୟରେ ମୋର ଲଜ୍ଜା ନିବାରଣ କରିବା
ପାଇଁ ପ୍ରଭୁ ମୋ’ ପ୍ରତି ସଦୟ ହୋଇଛନ୍ତି।”

## କୁମାରୀ କନ୍ୟା ମରିୟମ

୨୬-୨୭ଏଲୀଶାବେଥଙ୍କର ଗର୍ଭର ଷଷ୍ଠ ମାସ ଚାଲୁଥିଲା।
ଗାଲିଲୀର ଗୋଟିଏ ସହର ନାଜରିତରେ ବାସ କରୁଥିବା
ଜଣେ କୁମାରୀକନ୍ୟା ପାଖକୁ ପରମେଶ୍ୱର ସ୍ୱର୍ଗଦୂତ
ଗାବ୍ରିୟେଲଙ୍କୁ ପଠାଇଲେ। ଦାଉଦଙ୍କ ବଂଶଜ ଯୋସେଫ
ନାମକ ଜଣେ ପୁରୁଷ ସହିତ ସେ କନ୍ୟାଙ୍କର ବିବାହନିର୍ବନ୍ଧ
ହୋଇ ସାରିଥିଲା। ତାହାଙ୍କର ନାମ ମରିୟମ ଥିଲା।
୨୮ସ୍ୱର୍ଗଦୂତ ସେହି କନ୍ୟା ପାଖକୁ ଆସି କହିଲେ, “ନମସ୍କାର।
ପ୍ରଭୁ ତୁମ୍ଭକୁ ଅନୁଗ୍ରହ କରିଛନ୍ତି। ସେ ତୁମ୍ଭସହିତ ଅଛନ୍ତି।”
୨୯ମରିୟମ କିନ୍ତୁ ସ୍ୱର୍ଗଦୂତଙ୍କ କଥାଶୁଣି ଉଦବିଗ୍ନ
ହୋଇଗଲେ। ତାହାଙ୍କ ଅଭିବାଦନର ଅର୍ଥ କଣ ହୋଇପାରେ,
ସେହି କଥା ଭାବି ସେ ଚିନ୍ତାରେ ପଡିଗଲେ।
୩୦ସ୍ୱର୍ଗଦୂତ ତାହାଙ୍କୁ କହିଲେ, “ମରିୟମ! ଭୟ କରନାହିଁ।
କାରଣ ପରମେଶ୍ୱର ତୁମ୍ଭ ଉପରେ ପ୍ରସନ୍ନ ହୋଇଛନ୍ତି।
୩୧ଶୁଣ, ତୁମ୍ଭେ ଗର୍ଭବତୀ ହେବ। ତୁମ୍ଭେ ଗୋଟିଏ ପୁତ୍ର
ସନ୍ତାନକୁ ଜନ୍ମ ଦେବ। ତୁମ୍ଭେ ତାହାଙ୍କ ନାଁ ଯୀଶୁ ରଖିବ।
୩୨ସେ ମହାନ୍ ହେବେ। ଲୋକମାନେ ତାହାଙ୍କୁ ସର୍ବୋପରିସ୍ଥ
ପରମେଶ୍ୱରଙ୍କ ପୁତ୍ର ବୋଲି କହିବେ ଏବଂ ପ୍ରଭୁ ପରମେଶ୍ୱର
ତାହାଙ୍କୁ ତାହାଙ୍କର ପୂର୍ବ ପୁରୁଷ ଦାଉଦଙ୍କ ସିଂହାସନ
ପ୍ରଦାନ କରିବେ। ୩୩ସେ ଅନନ୍ତକାଳ ପର୍ଯ୍ୟନ୍ତ ଯାକୁବବଂଶ
ଉପରେ ରାଜତ୍ୱ କରିବେ। ଯୀଶୁଙ୍କ ରାଜ୍ୟର କେବେହେଲେ
ଶେଷ ହେବ ନାହିଁ।”
୩୪ମରିୟମ ସ୍ୱର୍ଗଦୂତଙ୍କୁ ପଚାରିଲେ, “ଏହା କିପରି
ଘଟିବ? ମୁଁ ଏବେ ମଧ୍ୟ କୁମାରୀ ଅଛି।”
୩୫ସ୍ୱର୍ଗଦୂତ ମରିୟମଙ୍କୁ କହିଲେ, “ପବିତ୍ରଆତ୍ମା ତୁମ୍ଭ
ପାଖକୁ ଆସିବେ, ସର୍ବୋପରିସ୍ଥ ପରମେଶ୍ୱରଙ୍କ ଶକ୍ତି ତୁମ୍ଭକୁ
ଆବରଣ କରିବ। ଏହି ଭଳି ଭାବରେ ଜନ୍ମଗ୍ରହଣ କରୁଥିବା
ବାଳକ ପବିତ୍ର ହେବେ। ସେ ପରମେଶ୍ୱରଙ୍କ ପୁତ୍ରଭାବରେ
ଖ୍ୟାତ ହେବେ। ୩୬ତୁମ୍ଭର ସମ୍ପର୍କୀୟ ଏଲୀଶାବେଥ ମଧ୍ୟ
ଗର୍ଭବତୀ ଅଛନ୍ତି। ବହୁତ ବୁଢ଼ୀ ହୋଇଯାଇଥିଲେ ମଧ୍ୟ
ସେ ଏବେ ଗୋଟିଏ ପୁତ୍ରସନ୍ତାନକୁ ଜନ୍ମ ଦେବେ। ସମସ୍ତେ
ଭାବୁଥିଲେ ଯେ ସେ ଏଣିକି ଆଉ ସନ୍ତାନ ସନ୍ତତି
ପାଇବାକୁ ସମର୍ଥ ହେବେନାହିଁ। କିନ୍ତୁ ସେ ଏବେ ଛଅ
ମାସର ଗର୍ଭବତୀ ଅଟନ୍ତି। ୩୭ପରମେଶ୍ୱର ସବୁ କିଛି କରି
ପାରନ୍ତି। ତାହାଙ୍କ ପାଇଁ ଅସମ୍ଭବ ବୋଲି କିଛି ନାହିଁ।”
୩୮ମରିୟମ କହିଲେ, “ମୁଁ ପ୍ରଭୁଙ୍କର ଦାସୀ କନ୍ୟା
ଅଟେ। ତୁମ୍ଭେ ମୋତେ ଯାହା କହିଲ, ମୋ ପାଇଁ ତାହା
ହିଁ ହେଉ।” ତାପରେ ସ୍ୱର୍ଗଦୂତ ତାହାଙ୍କ ପାଖରୁ ଚାଲିଗଲେ।

## ମରିୟମ, ଜିଖରିୟ ଓ ଏଲୀଶାବେଥଙ୍କ ପାଖକୁ ଗଲେ।

୩୯ଠିକ୍ ତା’ପରେ ମରିୟମ ପ୍ରସ୍ତୁତ ହେଲେ ଓ
ତରତର ହୋଇ ଯିହୂଦାର ପାହାଡ଼ିଆ ପ୍ରଦେଶସ୍ଥିତ ଗୋଟିଏ
ନଗରକୁ ବାହାରି ପଡ଼ିଲେ। ୪୦ସେ ଜିଖରିୟଙ୍କ ଘରକୁ
ଯାଇ ଏଲୀଶାବେଥଙ୍କୁ ଅଭିବାଦନ କଲେ। ୪୧ମରିୟମଙ୍କ
ଅଭିବାଦନ ଶୁଣିବା ମାତ୍ରେ ଏଲୀଶାବେଥଙ୍କ ଗର୍ଭସ୍ଥ ସନ୍ତାନ
ନାଚି ଉଠିଲା। ଏଲୀଶାବେଥ ପବିତ୍ର ଆତ୍ମାରେ ପରିପୂର୍ଣ୍ଣ
ହୋଇ ଉଠିଲେ। ୪୨ଏଲୀଶାବେଥ ବଡ ପାଟିରେ କହିଲେ,
“ତୁମ୍ଭେ ସମସ୍ତ ନାରୀମାନଙ୍କ ଅପେକ୍ଷା ଅଧିକ ଧନ୍ୟା।
କାରଣ ଯେଉଁ ଶିଶୁକୁ ତୁମ୍ଭେ ଜନ୍ମ ଦେବାକୁ ଯାଉଅଛ,
ପରମେଶ୍ୱର ତାହାକୁ ଧନ୍ୟ କରିଛନ୍ତି। ୪୩ତୁମ୍ଭେ ମୋ
ପ୍ରଭୁଙ୍କ ମାଆ ଏବଂ ତୁମ୍ଭେ ମୋ ପାଖକୁ ଆସିଛ! ମୋ
ପାଇଁ ଏତେ ବଡ ଭଲ ଘଟଣା କାହିଁକି ଘଟିଲା? ୪୪ମୁଁ
ତୁମ୍ଭ ଅଭିବାଦନର ସ୍ୱର ଶୁଣିବା ମାତ୍ରେ ମୋର ଗର୍ଭସ୍ଥ
ସନ୍ତାନ ଆନନ୍ଦରେ ନାଚି ଉଠିଲା। ୪୫ତୁମ୍ଭେ ଧନ୍ୟା।
କାରଣ ପ୍ରଭୁ ତୁମ୍ଭକୁ ଯାହା କହିଥିଲେ ତୁମ୍ଭେ ତାହା
ବିଶ୍ୱାସ କରିଛ। ଏ କଥା ନିଶ୍ଚୟ ଘଟିବ ବୋଲି ତୁମ୍ଭେ
ବିଶ୍ୱାସ କଲ।

## ମରିୟମ ପରମେଶ୍ୱରଙ୍କୁ ସ୍ତୁତି କଲେ।

୪୬ତା’ପରେ ମରିୟମ କହିଲେ,

୪୭ “ମୋର ଆତ୍ମା ପ୍ରଭୁଙ୍କର ସ୍ତୁତି କରୁଛି। ମୋର
ହୃଦୟ ଆନନ୍ଦରେ ପରିପୂର୍ଣ୍ଣ। କାରଣ ପରମେଶ୍ୱର
ମୋର ଉଦ୍ଧାର କର୍ତ୍ତା।
୪୮ ମୋର କିଛି ମହତ୍ୱ ନାହିଁ, କିନ୍ତୁ ପରମେଶ୍ୱର ମୋ
ଭଳି ଦୀନହୀନଦାସୀ ଉପରେ କୃପାଦୃଷ୍ଟି ପକାଇଲେ।
ଆଜିଠାରୁ ସମସ୍ତେ ମୋତେ ସବୁ ଧନ୍ୟ କହିବେ।
୪୯ କାରଣ ସର୍ବଶକ୍ତିମାନ ପରମେଶ୍ୱର ମୋ ପାଇଁ
ମହାନ୍ କାର୍ଯ୍ୟ ସବୁ କରିଛନ୍ତି। ତାହାଙ୍କର ନାମ
ପବିତ୍ର ହେଉ।
୫୦ ଯେଉଁମାନେ ତାହାଙ୍କର ଉପାସନା କରନ୍ତି, ସେ
ସେମାନଙ୍କୁ ସଦାସର୍ବଦା ଦୟାକରନ୍ତି।
୫୧ ସେ ତାଙ୍କର ବାହୁର ଶକ୍ତି ଦେଖାଇଛନ୍ତି। ସେ
ଅହଂକାରୀ ଲୋକମାନଙ୍କୁ ଛିନ୍‌ଛତ୍ର କରି ସେମାନଙ୍କର
ସମସ୍ତ ଯୋଜନା ଧ୍ୱଂସ କରିଦେଲେ।
୫୨ ପରମେଶ୍ୱର ରାଜାମାନଙ୍କୁ ସିହାଂସନରୁ ତଳକୁ ଖସାଇ
ଆଣିଲେ ଓ ଦୀନହୀନ ଲୋକଙ୍କୁ ଉପରକୁ ଉଠାଇଲେ।
୫୩ ସେ ଭୋକିଲା ଲୋକଙ୍କୁ ଭଲ ବିଷୟଦେଇ ତୃପ୍ତ
କଲେ କିନ୍ତୁ ଧନୀ ଓ ସ୍ୱାର୍ଥପର ଲୋକଙ୍କୁ ଖାଲି
ହାତରେ ଫେରାଇ ଦେଲେ।
୫୪ ତାହାଙ୍କର ସେବା କରିବାପାଇଁ ସେ ନିଜେ ବାଛିଥିବା
ଇସ୍ରାୟେଲର ଲୋକମାନଙ୍କୁ ସାହାଯ୍ୟ କଲେ। ସେ
ଆମ୍ଭମାନଙ୍କୁ ତାହାଙ୍କର କୃପା ପ୍ରଦାନ କରିଛନ୍ତି।
୫୫ ସେ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କୁ, ଅବ୍ରହାମ ଓ ତାହାଙ୍କର
ସନ୍ତାନମାନଙ୍କୁ ସଦାସର୍ବଦା ଦୟା ଦେଖାଇବା ପାଇଁ
ଦେଇଥିବା ତାହାଙ୍କ ପୂର୍ବ ପ୍ରତିଶ୍ରୁତି ପାଳନ କରିଛନ୍ତି।”

୫୬ମରୟମ ପ୍ରାୟ ତିନିମାସ ପର୍ଯ୍ୟନ୍ତ ଏଲୀଶାବେଥଙ୍କ
ପାଖରେ ରହିବା ପରେ ନିଜ ଘରକୁ ଫେରିଗଲେ।

## ଯୋହନଙ୍କ ଜନ୍ମ

୫୭ଏଲୀଶାବେଥଙ୍କର ସନ୍ତାନ ପ୍ରସବ କରିବା ସମୟ
ହେବାରୁ ସେ ପୁତ୍ରସନ୍ତାନଟିଏ ଜନ୍ମ ଦେଲେ। ୫୮ତାହାଙ୍କର
ପଡୋଶୀ ଓ ପରିବାରର ଲୋକେ ଶୁଣିଲେ ଯେ ପ୍ରଭୁ
ତାହାଙ୍କ ଉପରେ ଅଶେଷ ଦୟା କରିଛନ୍ତି। ସେମାନେ
ଏଲୀଶାବେଥଙ୍କ ପାଇଁ ଆନନ୍ଦିତ ହେଲେ।
୫୯ବାଳକର ଜନ୍ମ ହେବାର ଅଷ୍ଟମ ଦିନ ସେମାନେ
ଶିଶୁକୁ ସୁନ୍ନତ କରିବାକୁ ଆସିଲେ ଓ ସେମାନେ ବାଳକର
ନାମ ତାର ପିତାଙ୍କ ନାମ ଅନୁସାରେ ଜିଖରିୟ ଦେବାକୁ
ଚାହୁଁଥିଲେ। ୬୦କିନ୍ତୁ ତାହାଙ୍କ ମାଆ କହିଲେ, "ନା, ତା'ର
ନାମ ଯୋହନ ଦିଆଯିବ।"
୬୧ଲୋକମାନେ ଏଲୀଶାବେଥଙ୍କୁ କହିଲେ, "ତୁମ୍ଭର କୌଣସି
ସମ୍ପର୍କୀୟଙ୍କର ଏଭଳି ନାମ ନାହିଁ। ୬୨ତା'ପରେ ସେମାନେ
ପରେ ତାର ବାପାଙ୍କୁ ପଚାରିଲେ, "ତୁମ୍ଭେ ଏହି ଶିଶୁର
ନାମ କ'ଣ ଦେବାକୁ ଚାହୁଁଛ?"
୬୩ଏହା ଶୁଣି ଜିଖରିୟ ଲେଖିବା ପାଇଁ ସେମାନଙ୍କୁ ଏକ
ଲେଖାଫଳକ ମାଗି ସେଥିରେ ଲେଖିଲେ, ତା'ର "ନାମ
ଯୋହନ।" ୬୪ସବୁ ଲୋକ ଆଶ୍ଚର୍ଯ୍ୟ ହୋଇଗଲେ। ତାପରେ,
ତତ୍କ୍ଷଣାତ୍ ଜିଖରିୟଙ୍କ ପାଟି ଖୋଲିଗଲା। ସେ କଥାବାର୍ତ୍ତା
କରି ପାରିଲେ। ସେ ପରମେଶ୍ୱରଙ୍କର ସ୍ତୁତି କରିବାରେ
ଲାଗିଲେ। ୬୫ତାହାଙ୍କର ସମସ୍ତ ପଡ଼ୋଶୀ ଭୟ ଭୀତ
ହେଲେ। ଯିହୂଦାର ସମସ୍ତ ପାହାଡ଼ିଆ ପ୍ରଦେଶରେ ଲୋକେ
ଏହି ସବୁ ଘଟଣା ବିଷୟରେ ଚର୍ଚ୍ଚା କରିବାକୁ ଲାଗିଲେ।
୬୬ଏ କଥା ଯେଉଁମାନେ ଶୁଣିଲେ, ସେମାନେ ବିସ୍ମିତ
ହୋଇ ଗଲେ। ଲୋକେ ଭାବିଲେ, "ଏ ବାଳକଟି କ'ଣ
ହେବ?" ପ୍ରଭୁଙ୍କ ହସ୍ତ ପିଲାଟିର ସହିତ ଅଛି, ସେମାନେ
ଏପରି ଭାବିଲେ।

## ଜିଖରିୟ ପରମେଶ୍ୱରଙ୍କ ସ୍ତୁତି କଲେ।

୬୭ତା'ପରେ ଯୋହନଙ୍କ ପିତା ଜିଖରିୟ ପବିତ୍ରଆତ୍ମାରେ
ପରିପୂର୍ଣ୍ଣ ହୋଇ ଉଠିଲେ। ସେ ଭବିଷ୍ୟଦ୍‌ବାଣୀ କହିଲେ:

୬୮ "ଇସ୍ରାୟେଲର ପ୍ରଭୁ ପରମେଶ୍ୱରଙ୍କର ସ୍ତୁତିଗାନ କର।
ସେ ନିଜ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ
ଆସିଛନ୍ତି ଏବଂ ସେମାନଙ୍କୁ ସ୍ୱାଧୀନତା ଦେଇଛନ୍ତି।
୬୯ ସେ ଆମ୍ଭମାନଙ୍କ ପାଇଁ ତାହାଙ୍କ ସେବକ ଦାଉଦଙ୍କ
ପରିବାରରୁ ଜଣେ ଶକ୍ତିଶାଳୀ ଉଦ୍ଧାରକର୍ତ୍ତାଙ୍କୁ
ଦେଇଛନ୍ତି।
୭୦ ବହୁତ ଦିନ ପୂର୍ବେ ବାସ କରୁଥିବା ନିଜ ପବିତ୍ର
ଭବିଷ୍ୟଦ୍‌ବକ୍ତାମାନଙ୍କ ମାଧ୍ୟମରେ ପରମେଶ୍ୱର ଏହା
କରିବେ ବୋଲି କହିଥିଲେ।
୭୧ ସେ ଆମ୍ଭମାନଙ୍କୁ ଆମ୍ଭମାନଙ୍କର ଶତ୍ରୁମାନଙ୍କ ଠାରୁ
ତଥା ଆମ୍ଭମାନଙ୍କୁ ଘୃଣା କରୁଥିବା ସମସ୍ତଙ୍କ ହାତରୁ
ରକ୍ଷା କରିବାକୁ ପ୍ରତିଶ୍ରୁତି ଦେଇଥିଲେ।
୭୨ ସେ ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କୁ ଦୟା ଦେଖାଇବେ
ବୋଲି କହିଥିଲେ ଏବଂ ସେ ତାହାଙ୍କର ପବିତ୍ର
ପ୍ରତିଜ୍ଞା ମନେ ରଖିଛନ୍ତି।
୭୩ ସେ ଆମ୍ଭମାନଙ୍କର ପୂର୍ବପୁରୁଷ ଅବ୍ରହାମଙ୍କୁ ପ୍ରତିଜ୍ଞା
ଦେଇଥିଲେ।
୭୪ ଯେ ସେ ଆମ୍ଭମାନଙ୍କୁ ଆମ୍ଭମାନଙ୍କ ଶତ୍ରୁଙ୍କ ଶକ୍ତି
କବଳରୁ ମୁକ୍ତ କରିବେ। ତା'ଫଳରେ ଆମ୍ଭେମାନେ
ନିର୍ଭୟରେ ପରମେଶ୍ୱରଙ୍କ ସେବା କରିପାରିବୁ।
୭୫ ଆମ୍ଭେମାନେ ବଞ୍ଚିଥିବା ପର୍ଯ୍ୟନ୍ତ ପରମେଶ୍ୱରଙ୍କ ଆଗରେ
ଧାର୍ମିକ ଓ ପବିତ୍ର ରହିବୁ।
୭୬ "ଏବଂ ତୁମ୍ଭେ, ହେ ଶିଶୁ! ତୁମ୍ଭେ ସେହି ସର୍ବୋପରିସ୍ଥ
ପରମେଶ୍ୱରଙ୍କ ଭବିଷ୍ୟଦ୍‌ବକ୍ତା ରୂପେ ଖ୍ୟାତ ହେବ।
ପ୍ରଭୁଙ୍କ ଆଗମନ ପାଇଁ ଲୋକମାନଙ୍କୁ ପ୍ରସ୍ତୁତ କରିବା
ନିମନ୍ତେ ପ୍ରଭୁଙ୍କ ପୂର୍ବରୁ ତୁମ୍ଭେ ପ୍ରଥମେ ଯିବ।
୭୭ ପରମେଶ୍ୱରଙ୍କ ଲୋକଙ୍କୁ ତୁମ୍ଭେ ଜଣେଇଦେବ ଯେ
ସେମାନଙ୍କର ପାପକୁ କ୍ଷମା କରି ଦିଆଯାଇ ସେମାନଙ୍କୁ
ଉଦ୍ଧାର କରାଯିବ।
୭୮ "ଆମ୍ଭମାନଙ୍କ ପରମେଶ୍ୱରଙ୍କ ସ୍ନେହମୟ ଅନୁଗ୍ରହ
ହେତୁ ସ୍ୱର୍ଗରୁ ଆଗତ ଗୋଟିଏ ନୂତନ ଦିନର
ପ୍ରଭାତ ଆମ୍ଭମାନଙ୍କୁ ଆଲୋକିତ କରିବ।
୭୯ ମୃତ୍ୟୁର ଭୟରେ ଅନ୍ଧକାର ଭିତରେ ବାସ କରୁଥିବା
ଲୋକଙ୍କୁ ପରମେଶ୍ୱର ସାହାଯ୍ୟ କରିବେ। ସେ
ଆମ୍ଭମାନଙ୍କୁ ଶାନ୍ତି ମାର୍ଗରେ ବାଟ କଢ଼େଇ ନେବେ।"

୮୦ଶିଶୁଟି ଏହିପରି ବଢ଼ିବାକୁ ଲାଗିଲା ଓ ଆତ୍ମାରେ
ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା। ଇସ୍ରାୟେଲରେ ଉପଦେଶ
ପ୍ରଦାନ କରିବାର ଶକ୍ତି ପାଇବା ପର୍ଯ୍ୟନ୍ତ ଯୋହନ ଅନ୍ୟ
ଲୋକଙ୍କ ଠାରୁ ଦୂରରେ ଏକ ସ୍ଥାନରେ ରହିଥିଲେ।

## ଯୀଶୁଙ୍କ ଜନ୍ମ

୨ ସେହି ସମୟରେ ରୋମୀୟ ଶାସନ ଅନ୍ତର୍ଗତ ସମସ୍ତ
ଦେଶର ଲୋକମାନଙ୍କ ଉଦ୍ଦେଶ୍ୟରେ କାଇସର
ଅଗଷ୍ଟଙ୍କର ଗୋଟିଏ ଆଜ୍ଞା ଘୋଷଣା କରାଗଲା। ଆଜ୍ଞାଟି
କୁହେ ଯେ ସମସ୍ତେ ଜନଗଣନା ପାଇଁ ନିଜନିଜ ନାମର
ପଞ୍ଜୀକରଣ କରିବେ। ୨ଏହା ପ୍ରଥମ ଜନଗଣନା ଥିଲା।
କ୍ୱିରୀଣିୟ ସୁରିୟାର ରାଜ୍ୟପାଳ ଥିବା ସମୟରେ ଏହା
ହେଲା। ୩ତେଣୁ ପ୍ରତ୍ୟେକ ଲୋକ ନାମ ପଞ୍ଜୀକରଣ
କରିବାପାଇଁ ନିଜନିଜ ନଗରକୁ ଗଲେ।
୪ଯୋସେଫ ଦାଉଦଙ୍କ ବଂଶର ହୋଇଥିବାରୁ ସେ
ଗାଲିଲୀର ନାଜରିତ ନଗରରୁ ଯିହୂଦା ପ୍ରଦେଶର
ବେଥ୍‌ଲେହମକୁ ଗଲେ। ବେଥ୍‌ଲେହମ ନଗର ଦାଉଦଙ୍କ
ନଗର ନାମରେ ପରିଚିତ ଥିଲା। ୫ଯୋସେଫ ମରିୟମଙ୍କ
ସହିତ ନାମ ପଞ୍ଜୀକରଣ କଲେ, କାରଣ ମରିୟମଙ୍କ
ସହିତ ତାହାଙ୍କର ବିବାହନିର୍ବନ୍ଧ ହୋଇ ସାରିଥିଲା। ମରିୟମ
ସେତେବେଳେ ଗର୍ଭବତୀ ଥିଲେ। ୬ଯୋସେଫ ଓ ମରିୟମ
ବେଥ୍‌ଲେହମରେ ଥିବା ସମୟରେ ମରିୟମଙ୍କର ପ୍ରସବ
ସମୟ ଆସିଲା। ୭ସେ ତାହାଙ୍କର ପ୍ରଥମଜାତ ପୁତ୍ର

ସନ୍ତାନକୁ ଜନ୍ମ ଦେଲେ। ସେମାନେ ରହିବାକୁ ଚଟିଘରେ
ଆଉ ଜାଗା ନ ଥିଲା। ତେଣୁ ମରିୟମ ଶିଶୁଟିକୁ ଲୁଗାପଟାରେ
ଗୁଡ଼ାଇ ଗୁହାଳରେ ଗୋରୁକୁଣ୍ଡରେ ରଖିଦେଲେ।

### ମେଷପାଳକମାନେ ଯୀଶୁଙ୍କ ଜନ୍ମଖବର ପାଇଲେ

୮ସେହି ରାତିରେ କେତେକ ମେଷପାଳକ ସେମାନଙ୍କର
ମେଣ୍ଢାଗୁଡ଼ିକୁ ରାତିସାରା ପଦାରେ ଜଗି ରହିଥିଲେ। ୯ପ୍ରଭୁଙ୍କର
ଜଣେ ସ୍ୱର୍ଗଦୂତ ମେଷପାଳକମାନଙ୍କ ସମ୍ମୁଖରେ ଠିଆ
ହେଲେ। ପ୍ରଭୁଙ୍କର ଗୌରବର ଜ୍ୟୋତିଃ ସେମାନଙ୍କର
ଚତୁର୍ଦ୍ଦିଗରେ ଝଲକି ଉଠିଲା। ୧୦ମେଷପାଳକମାନେ ଅତ୍ୟନ୍ତ
ଭୟଭୀତ ହୋଇଗଲେ। ସ୍ୱର୍ଗଦୂତ ସେମାନଙ୍କୁ କହିଲେ,
"ଭୟ କରନାହିଁ, କାରଣ ମୁଁ ତୁମ୍ଭମାନଙ୍କ ପାଇଁ ଅତ୍ୟନ୍ତ
ଶୁଭ ସମାଚାର ଆଣିଛି। ତାହା ସବୁଲୋକଙ୍କ ପାଇଁ ମହା
ଆନନ୍ଦ ଆଣିଦେବ। ୧୧କାରଣ ଆଜି ଦାଉଦଙ୍କ ନଗରରେ
ତୁମ୍ଭମାନଙ୍କର ତ୍ରାଣକର୍ତ୍ତା ପ୍ରଭୁ ଯୀଶୁ ଜନ୍ମ ଗ୍ରହଣ କରିଛନ୍ତି।
୧୨ତୁମ୍ଭେମାନେ ତାହାଙ୍କୁ ଚିହ୍ନି ପାରିବା ପାଇଁ ଏହା ହେଉଛି
ସଙ୍କେତ: "ତୁମ୍ଭେମାନେ ଗୋଟିଏ ଶିଶୁକୁ କନାରେ ଗୁଡ଼ାଇ
ହୋଇ ଗୋରୁକୁଣ୍ଡରେ ଶୋଇଥିବାର ଦେଖିବ।"
୧୩ସେହି ସମୟରେ ସ୍ୱର୍ଗରୁ ବହୁସଂଖ୍ୟାରେ ସ୍ୱର୍ଗଦୂତମାନେ,
ଆସି ସେହି ସ୍ୱର୍ଗଦୂତଙ୍କ ସହିତ ଯୋଗ ଦେଲେ। ସମସ୍ତ
ସ୍ୱର୍ଗଦୂତ ଏହିପରି ପ୍ରଭୁଙ୍କ ସ୍ତୁତି କରୁଥିଲେ:

୧୪ "ସ୍ୱର୍ଗରେ ରହୁଥିବା ପରମେଶ୍ୱରଙ୍କୁ ଜୟ ହେଉ
ଏବଂ ଏ ପୃଥିବୀରେ ଯେଉଁ ଲୋକମାନଙ୍କ ଉପରେ
ପରମେଶ୍ୱର ପ୍ରସନ୍ନ ଅଛନ୍ତି, ସେସମସ୍ତଙ୍କୁ ଶାନ୍ତି
ମିଳୁ।"

୧୫ସ୍ୱର୍ଗଦୂତମାନେ ମେଷପାଳକମାନଙ୍କୁ ଛାଡି ସ୍ୱର୍ଗକୁ
ଫେରିଗଲେ। ମେଷପାଳକମାନେ ପରସ୍ପର କୁହାକୁହି ହେଲେ:
"ଆମ୍ଭେମାନେ ବେଥ୍ଲେହମ ଯିବା ଓ ଏହି ଯେଉଁ ଘଟଣା
ଘଟିଛି ବୋଲି ପ୍ରଭୁ ଆମ୍ଭମାନଙ୍କୁ ଜଣାଇଲେ, ତାହା
ଦେଖିବା।"
୧୬ତେଣୁ ସେମାନେ ଶୀଘ୍ର ଗଲେ ଓ ମରିୟମ ଏବଂ
ଯୋସେଫଙ୍କୁ ଖୋଜିପାଇଲେ। ସେହି ଶିଶୁ ଗୋଟିଏ
ଗୋରୁକୁଣ୍ଡରେ ଶୋଇ ଥିଲେ। ୧୭ମେଷପାଳକମାନେ ଶିଶୁଙ୍କୁ
ଦେଖିଲେ। ଏହି ଶିଶୁଙ୍କ ବିଷୟରେ ସ୍ୱର୍ଗଦୂତମାନେ ଯାହା
କହିଥିଲେ,ତାହା ସେମାନେ ସମସ୍ତଙ୍କୁ କହିଲେ।
୧୮ମେଷପାଳକମାନେ ଯାହା କହିଲେ ତାହା ଶୁଣି, ସମସ୍ତେ
ଆଶ୍ଚର୍ଯ୍ୟ ହୋଇଗଲେ। ୧୯କିନ୍ତୁ ମରିୟମ ଏସବୁ କଥା ନିଜ
ମନ ଭିତରେ ଗୋପନ ରଖି ନିରନ୍ତର ଚିନ୍ତା କରିବାକୁ
ଲାଗିଲେ। ୨୦ମେଷପାଳକମାନେ ନିଜ ମେଷମାନଙ୍କ ନିକଟକୁ
ଫେରିଗଲେ ଏବଂ ଯାହା ସବୁ ଶୁଣିଥିଲେ, ଓ ଦେଖିଥିଲେ,
ସେଥିପାଇଁ ପରମେଶ୍ୱରଙ୍କୁ ଗୌରବ ଦେଲେ ଓ ପ୍ରଶଂସା
ଗାନ କଲେ। ସ୍ୱର୍ଗଦୂତମାନେ ଯେପରି କହିଥିଲେ, ସେମାନେ
ପ୍ରତ୍ୟେକ ଜିନିଷକୁ ସେହିପରି ଦେଖିଲେ।
୨୧ଶିଶୁଟି ଆଠ ଦିନର ହେବାରୁ ତାର ସୁନ୍ନତ କରାଗଲା
ଓ ତାହାଙ୍କର ନାମ ଯୀଶୁ ରଖାଗଲା। ସେ
ଗର୍ଭରେ ରହି ବଢ଼ିବା ପୂର୍ବରୁ ସ୍ୱର୍ଗଦୂତ ତାହାଙ୍କୁ ଏହି ନାମ
ଦେଇଥିଲେ।

### ଯୀଶୁଙ୍କୁ ମନ୍ଦିରରେ ହାଜିର କରାଗଲା

୨୨ମୋଶାଙ୍କ ବ୍ୟବସ୍ଥା ଅନୁସାରେ ଶୁଚି* ହେବାର
ସମୟ ଆସିଲା। ଏହାପରେ ଯୋସେଫ ଓ ମରିୟମ
ଯୀଶୁଙ୍କୁ ପ୍ରଭୁପରମେଶ୍ୱର ନିକଟରେ ଉତ୍ସର୍ଗ କରିବା ପାଇଁ
ଯିରୂଶାଲମକୁ ନେଇ ଆସିଲେ। ୨୩ପ୍ରଭୁଙ୍କ 'ନିୟମ'* ରେ
ଲେଖାଅଛି: "ପରିବାରରେ ପ୍ରଥମ ପୁତ୍ରସନ୍ତାନ ଜନ୍ମ ହେଲେ
ସେ 'ପ୍ରଭୁଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ' ହେବ।"* ୨୪ପ୍ରଭୁଙ୍କ
ନିୟମରେ ଆହୁରି ମଧ୍ୟ ଲେଖାଅଛି: "ତୁମ୍ଭକୁ ଦୁଇଟି
କପୋତ କିମ୍ବା ଦୁଇଟି ପାରାଛୁଆ ମଧ୍ୟ ବଳି ଦେବାକୁ
ହେବ।"* ତେଣୁ ଏହି ବ୍ୟବସ୍ଥା ଅନୁସାରେ ବଳି ଦେବା
ନିମନ୍ତେ ଯୋସେଫ ଓ ମରିୟମ ଯିରୂଶାଲମକୁ ଗଲେ।

### ଶିମିୟୋନ ଯୀଶୁଙ୍କୁ ଦେଖା କଲେ

୨୫ଯିରୂଶାଲମରେ ଶିମିୟୋନ ନାମରେ ଜଣେ ଅତ୍ୟନ୍ତ
ଧାର୍ମିକ ଓ ନିଷ୍ଠାପର ଭକ୍ତ ରହୁଥିଲେ। ଇସ୍ରାୟେଲକୁ
ସାନ୍ତ୍ୱନା କରିବା ନିମନ୍ତେ ପରମେଶ୍ୱର କେବେ ଆସିବେ,
ସେହି ସମୟକୁ ସେ ଅପେକ୍ଷା କରି ରହିଥିଲେ। ପବିତ୍ରଆତ୍ମା
ତାହାଙ୍କ ମଧ୍ୟରେ ଥିଲେ। ୨୬ପବିତ୍ରଆତ୍ମା ତାହାଙ୍କୁ କହି
ଦେଇଥିଲେ ଯେ, ସେ ପ୍ରଭୁ ପରମେଶ୍ୱରଙ୍କଠାରୁ ଆଗତ
ଖ୍ରୀଷ୍ଟଙ୍କ ଦର୍ଶନ ନ କରିବା ପୂର୍ବରୁ ତାହାଙ୍କର ମୃତ୍ୟୁ
ହେବନାହିଁ। ୨୭ଆତ୍ମା ଶିମିୟୋନଙ୍କୁ ମନ୍ଦିରକୁ କଢ଼େଇଆଣିଲେ।
ଯିହୂଦୀମାନଙ୍କ ବ୍ୟବସ୍ଥା ଅନୁସାରେ କାର୍ଯ୍ୟ କରିବା ପାଇଁ
ଯୋସେଫ ମରିୟମ ଶିଶୁ ଯୀଶୁଙ୍କୁ ସଙ୍ଗରେ ନେଇ
ମନ୍ଦିରକୁ ଗଲେ। ୨୮ଶିମିୟୋନ ଯୀଶୁଙ୍କୁ କୋଳକୁ ନେଇ
ପ୍ରଭୁଙ୍କ ସ୍ତୁତିଗାନ କରି କହିଲେ:

୨୯ "ପ୍ରଭୁ ! ଏବେ ତୁମ୍ଭେ ତୁମ୍ଭ କହିବା ଅନୁସାରେ
ତୁମ୍ଭର ଏହି ଦାସକୁ ଶାନ୍ତିରେ ମରିବାକୁ ଦିଅ।
୩୦ ମୁଁ ମୋ ଆଖିରେ ତୁମ୍ଭର ପରିତ୍ରାଣକୁ ଦେଖିଛି।
୩୧ ତୁମ୍ଭେ ତାହାଙ୍କୁ ସମସ୍ତ ଲୋକଙ୍କ ଆଗରେ ପ୍ରସ୍ତୁତ
କରିଛ।
୩୨ ସେ ଅଣଯିହୂଦୀମାନଙ୍କୁ ତୁମ୍ଭର ପଥ ଦେଖାଇବା
ପାଇଁ ଆଲୋକ ଅଟନ୍ତି ଓ ସେ ତୁମ୍ଭର ଲୋକମାନଙ୍କ
ପାଇଁ ଗୌରବ ଆଣିବେ।"

---

**ମୋଶାଙ୍କ ବ୍ୟବସ୍ଥା ଅନୁସାରେ ଶୁଚି** ମୋଶାଙ୍କ ବ୍ୟବସ୍ଥା ଅନୁସାରେ ଜଣେ ଯିହୂଦୀ ମହିଳା ସନ୍ତାନ ଜନ୍ମ ଦେବାର ଚାଳିଶ ଦିନ ପରେ ମନ୍ଦିରରେ ଗୋଟିଏ ନିର୍ଦ୍ଦିଷ୍ଟ ଉତ୍ସବ ହେବା ପରେ ଶୁଚି ହୋଇ ପାରିବ।

**'ନିୟମ'** ଯାହା ମୋଶାଙ୍କୁ 'ବ୍ୟବସ୍ଥା' ରୂପରେ ପରମେଶ୍ୱର ଦେଇଥିଲେ।

**"ପରିବାରରେ ... ହେବ।"** ଯାତ୍ରା ପୁସ୍ତକ ୧୩:୨,୧୨

**"ତୁମ୍ଭକୁ ... ହେବ।"** ଲେବୀୟ ପୁସ୍ତକ ୧୨:୮

୩୩ ଯୀଶୁଙ୍କ ବାପାମାଆ ଯୀଶୁଙ୍କ ବିଷୟରେ ଶିମିୟୋନଙ୍କ
ମୁହଁରୁ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ। ୩୪ ତା'ପରେ
ଶିମିୟୋନ ସେମାନଙ୍କୁ ଆଶୀର୍ବାଦ କଲେ ଓ ମରିୟମଙ୍କୁ
କହିଲେ, "ଏ ବାଳକ ଯୋଗୁ ଅନେକ ଯିହୂଦୀଙ୍କର
ଉତ୍‌ଥାନ ଓ ପତନ ହେବ। ସେ ପରମେଶ୍ୱରଙ୍କର ଏକ
ଚିହ୍ନ ହେବେ ଓ ତାହା ଲୋକମାନେ ଗ୍ରହଣ କରିବେନାହିଁ।
୩୫ ଲୋକମାନଙ୍କ ମନ ଭିତରେ ଥିବା ଗୋପନକଥା ପ୍ରକାଶିତ
ହେବ। ସେହି ଘଟଣା ସବୁ ତୁମ୍ଭର ହୃଦୟକୁ ଦୁଃଖ
ଆଣିବ।"

### ହାନ୍ନା ଯୀଶୁଙ୍କୁ ଦେଖା କଲେ।

୩୬ ସେତେବେଳେ ହାନ୍ନା ନାମରେ ଜଣେ ମହିଳା
ଭବିଷ୍ୟଦ୍‌ବକ୍ତ୍ରୀ ମନ୍ଦିର ଭିତରେ ଥିଲେ। ସେ ଆଶେର
ବଂଶର ଫିନୂୟେଲଙ୍କ ଝିଅ ଥିଲେ। ହାନ୍ନା ବହୁତ ବୁଢ଼ୀ
ହୋଇ ଯାଇଥିଲେ। ବିବାହ ପରେ ମାତ୍ର ସାତବର୍ଷ ପର୍ଯ୍ୟନ୍ତ
ସେ ସ୍ୱାମୀଙ୍କ ସହିତ ରହିଥିଲେ। ୩୭ ତାପରେ ତାହାଙ୍କର
ସ୍ୱାମୀ ମରିଗଲେ ଓ ସେ ବିଧବା ହୋଇ ଏକୁଟିଆ
ରହିବାକୁ ଲାଗିଲେ। ଏବେ ତାହାଙ୍କୁ ଚଉରାଅଶୀ ବର୍ଷ
ବୟସ ହୋଇଥିଲା। ହାନ୍ନା ସବୁବେଳେ ମନ୍ଦିରରେ ରହୁଥିଲେ।
କେବେହେଲେ ସେ ମନ୍ଦିର ଛାଡ଼ି ଯାଇ ନ ଥିଲେ। ସେ
ଉପବାସ କରି ଓ ସେ ଦିନରାତି ପ୍ରାର୍ଥନା କରି ପରମେଶ୍ୱରଙ୍କ
ଉପାସନା କରୁଥିଲେ। ୩୮ ସେ ସେହି ସମୟରେ ଶିଶୁ ଓ
ତା'ର ବାପାମାଆଙ୍କ ପାଖକୁ ଆସିଲେ। ସେ ପରମେଶ୍ୱରଙ୍କୁ
ଧନ୍ୟବାଦ ଦେଲେ। ଯେଉଁମାନେ ଯିରୂଶାଲମର ମୁକ୍ତିର
ଅପେକ୍ଷାରେ ଥିଲେ, ସେହି ସମସ୍ତ ଲୋକଙ୍କୁ ସେ ଯୀଶୁଙ୍କ
ବିଷୟରେ କହିଲେ।

### ଯୋସେଫ ଓ ମରିୟମ ଘରକୁ ଫେରିଗଲେ।

୩୯ ଯୋସେଫ ଓ ମରିୟମ ପ୍ରଭୁଙ୍କ ବ୍ୟବସ୍ଥାନୁଯାୟୀ
ସମସ୍ତ କାର୍ଯ୍ୟ ସମ୍ପୂର୍ଣ୍ଣ କଲେ। ତା'ପରେ ସେମାନେ
ଗାଲିଲୀ ପ୍ରଦେଶର ନିଜ ନଗର ନାଜରିତକୁ ଫେରିଗଲେ।
୪୦ ସାନ ଶିଶୁଟି(ଯୀଶୁ) ଦିନକୁ ଦିନ ବଢ଼ିବାକୁ ଲାଗିଲେ।
ସେ ହୃଷ୍ଟପୁଷ୍ଟ ଓ ବୁଦ୍ଧିମାନ ହେବାକୁ ଲାଗିଲେ। ତାହାଙ୍କ
ସହିତ ପରମେଶ୍ୱରଙ୍କର ଆଶୀର୍ବାଦ ଥିଲା।

### ବାଳକ ଯୀଶୁ

୪୧ ନିସ୍ତାରପର୍ବ ପାଇଁ ଯୀଶୁଙ୍କର ପିତାମାତା ପ୍ରତିବର୍ଷ
ଯିରୂଶାଲମ ଯାଉଥିଲେ। ୪୨ ଯୀଶୁଙ୍କୁ ବାରବର୍ଷ ବୟସ ହୋଇଥିବା
ସମୟରେ ସବୁଥର ଭଳି ସେମାନେ ପର୍ବକୁ ଗଲେ।
୪୩ ପର୍ବ ଦିନତକ ଶେଷ ହୋଇଯିବା ପରେ ସେମାନେ
ଘରକୁ ଫେରୁଥିଲେ। କିନ୍ତୁ ବାଳକ ଯୀଶୁ ଯିରୂଶାଲମରେ
ରହିଗଲେ। ତାହାଙ୍କ ବାପାମାଆ ଏକଥା ଜାଣିନଥିଲେ।
୪୪ ଦଳ ଭିତରେ ପୁଅ ଅଛି ଭାବି ଯୋସେଫ ଓ ମରିୟମ
ପୁରା ଦିନେ ଯାତ୍ରା କରିସାରିଥିଲେ। ତା ପରେ ସେମାନେ
ନିଜ ପରିବାର ଲୋକ ଓ ଅନ୍ତରଙ୍ଗ ବନ୍ଧୁଙ୍କ ଭିତରେ
ଯୀଶୁଙ୍କୁ ଖୋଜିଲେ। ୪୫ କିନ୍ତୁ ସେମାନେ ଯୀଶୁଙ୍କୁ ପାଇଲେ
ନାହିଁ। ତେଣୁ ସେମାନେ ଯୀଶୁଙ୍କୁ ଖୋଜିଖୋଜି ଯିରୂଶାଲମ
ଫେରି ଆସିଲେ। ୪୬ ତିନିଦିନ ପରେ ସେମାନେ ଯୀଶୁଙ୍କୁ
ପାଇଲେ। ଯୀଶୁ ମନ୍ଦିର ଭିତରେ ଧର୍ମଗୁରୁମାନଙ୍କ ସହିତ
ବସିଥିଲେ। ସେ ସେମାନଙ୍କ କଥା ଶୁଣୁଥିଲେ ଓ ସେମାନଙ୍କୁ
ପ୍ରଶ୍ନ ସବୁ ପଚାରୁଥିଲେ। ୪୭ ସମସ୍ତେ ତାହାଙ୍କ କଥା
ଶୁଣୁଥିଲେ। ତାହାଙ୍କର ବୁଝିବା ଶକ୍ତି ଦେଖି ଓ ଜ୍ଞାନପୂର୍ଣ୍ଣ
ଉତ୍ତରଗୁଡ଼ିକ ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ।
୪୮ ଯୀଶୁଙ୍କ ବାପାମାଆ ତାହାଙ୍କୁ ଦେଖି ବିସ୍ମିତ ହୋଇଗଲେ।
ତାହାଙ୍କ ମାଆ ତାହାଙ୍କୁ ପଚାରିଲେ, "ପୁଅରେ! ତୁ ଆମ
ସାଙ୍ଗରେ ଏପରି କାହିଁକି କଲୁ? ତୋ ବାପା ଓ ମୁଁ
ତୋତେ ଖୋଜିଖୋଜି ବହୁତ ଚିନ୍ତିତ ହୋଇ ପଡ଼ିଲୁଣି।"
୪୯ ଏହା ଶୁଣି ଯୀଶୁ ସେମାନଙ୍କୁ କହିଲେ, "ତୁମ୍ଭେମାନେ
ମୋତେ କାହିଁକି ଖୋଜୁଥିଲ?ଯେଉଁଠାରେ ମୋର
ପରମପିତାଙ୍କର କାର୍ଯ୍ୟ ଅଛି, ମୁଁ ସେଠାରେ ନିଶ୍ଚୟ ଥିବି
ବୋଲି ତୁମ୍ଭେମାନେ କ'ଣ ଜାଣିନାହଁ?" ୫୦ କିନ୍ତୁ ସେମାନେ
ଯୀଶୁଙ୍କର କଥାର ଅର୍ଥ କିଛି ବୁଝି ପାରିଲେନାହିଁ।
୫୧ ଯୀଶୁ ସେମାନଙ୍କ ସହିତ ନାଜରିତକୁ ଗଲେ। ସେ
ବାପାମାଆଙ୍କର ସବୁ ଆଜ୍ଞା ପାଳନ କଲେ। ଯୀଶୁଙ୍କ ମାଆ
ତଥାପି ଏହି ସବୁ କଥା ନିଜ ମନ ଭିତରେ ରଖି ଚିନ୍ତା
କରୁଥିଲେ। ୫୨ ଯୀଶୁ ଜ୍ଞାନରେ, ଶରୀରରେ, ଏବଂ ପରମେଶ୍ୱର
ଓ ମନୁଷ୍ୟମାନଙ୍କ ଅନୁଗ୍ରହରେ ବଢ଼ିବାକୁ ଲାଗିଲେ।

### ଯୋହନଙ୍କ ପ୍ରଚାର

୩ ତିବିରିଅ କାଇସରଙ୍କ ରାଜତ୍ୱର ପନ୍ଦରତମ ବର୍ଷ
ସମୟର କଥା।
ଯିହୂଦା ପ୍ରଦେଶର ଶାସକ ପନ୍ତିୟ ପୀଲାତ,
ଗାଲିଲୀର ଶାସକ ହେରୋଦ, ଇତୂରୀୟା
ଓ ତ୍ରାଖୋନୀତି ପ୍ରଦେଶର ଶାସକ ହେରୋଦର ଭାଇ
ଫିଲିପ୍ପ, ଓ ଆବିଲୀନୀର ଶାସକ ଲୁସାନିୟା; ଏ ସମସ୍ତେ
କାଇସରଙ୍କ ଅଧୀନରେ ଥିଲେ।
୨ ହାନାନ ଓ କୟାଫା ମହାଯାଜକ ଥିଲେ। ସେହି
ସମୟରେ ଜିଖରିୟଙ୍କ ପୁଅ ଯୋହନଙ୍କ ପାଖକୁ ପରମେଶ୍ୱରଙ୍କର
ଗୋଟିଏ ଆଜ୍ଞା ଆସିଲା। ଯୋହନ ମରୁଭୂମିରେ ବାସ
କରୁଥିଲେ। ୩ ଯୋହନ ଯର୍ଦ୍ଦନ ନଦୀର ଚାରିପାଖଯାକ
ସବୁଅଞ୍ଚଳରେ ବୁଲିବୁଲି ଲୋକମାନଙ୍କ ନିକଟରେ ପ୍ରଚାର
କଲେ ଯେ ସେମାନେ ନିଜର ହୃଦୟ ଓ ଜୀବନ
ପରିବର୍ତ୍ତନ କରନ୍ତୁ ଓ ବାପ୍ତିଜିତ ହୁଅନ୍ତୁ, ତାହାହେଲେ
ସେମାନଙ୍କର ପାପଗୁଡ଼ିକୁ କ୍ଷମା କରି ଦିଆଯିବ। ୪ ଏହା
ଭବିଷ୍ୟଦ୍‌ବକ୍ତା ଯିଶାଇୟଙ୍କ ବାକ୍ୟ ସମ୍ବଳିତ ପୁସ୍ତକରେ ଲେଖାଥିବା
କଥା ଥିଲା। ସେଥିରେ ଲେଖାଥିଲା:

"ମରୁଭୂମିରେ ଜଣେ ଲୋକ ପାଟି କରି କହୁଛି:
'ପ୍ରଭୁଙ୍କ ମାର୍ଗ ପ୍ରସ୍ତୁତ କର। ତାହାଙ୍କ ବାଟ ସଳଖ
କର।
୫ ପ୍ରତ୍ୟେକ ଉପତ୍ୟକା ପୂର୍ଣ୍ଣ କରି ଦିଆଯିବ। ପ୍ରତ୍ୟେକ
ପର୍ବତ ଓ ପାହାଡ଼ ସମତଳ ହୋଇଯିବ। ବଙ୍କାରାସ୍ତା
ସବୁ ସିଧା କରି ଦିଆଯିବ ଓ ଖାଲଢ଼ିପ ରାସ୍ତା ସବୁ
ସମତଳ କରି ଦିଆଯିବ।

୬ ପ୍ରତ୍ୟେକ ଲୋକ ପରମେଶ୍ୱରଙ୍କ ପରିତ୍ରାଣ ବିଷୟରେ
ଜାଣିବେ।’” ଯିଶାଇୟ ୪୦:୩-୫

୭ଯୋହନଙ୍କ ନିକଟକୁ ବାପ୍ତିଜିତ ହେବା ପାଇଁ ଲୋକମାନେ
ଆସିଲେ। ଯୋହନ ସେମାନଙ୍କୁ କହିଲେ, “ତୁମ୍ଭେମାନେ
ବିଷଧର ସାପ ଭଳି। ପରମେଶ୍ୱରଙ୍କ ଆସୁଥିବା ମହା
କ୍ରୋଧରୁ ଖସି ପଳାଇବା ପାଇଁ କିଏ ତୁମ୍ଭମାନଙ୍କୁ ଚେତାଇ
ଦେଲା? ୮ତୁମ୍ଭେମାନେ ପ୍ରକୃତରେ ନିଜ ହୃଦୟ ଓ ଜୀବନ
ପରିବର୍ତ୍ତନ କରିଛ ବୋଲି ତୁମ୍ଭମାନଙ୍କୁ ନିଜ କାର୍ଯ୍ୟଦ୍ୱାରା
ପ୍ରମାଣିତ କରିବାକୁ ହେବ। ଗର୍ବ କରି କୁହନାହିଁ ଯେ
‘ଅବ୍ରାହାମ ଆମ୍ଭମାନଙ୍କର ପିତା।’ ମୁଁ ତୁମ୍ଭମାନଙ୍କୁ କହୁଛି
ଯେ ପରମେଶ୍ୱର ଅବ୍ରାହାମଙ୍କ ପାଇଁ ଏହି ପଥର ଗୁଡ଼ିକରୁ
ମଧ୍ୟ ସନ୍ତାନ ସୃଷ୍ଟି କରିପାରନ୍ତି। ୯ଗଛର ମୂଳରେ କୁହ୍ରାଡ଼ି
ରଖାଯାଇ ସାରିଲାଣି ଏବଂ ଯେଉଁ ଗଛ ଭଲ ଫଳ
ଦେଇପାରୁନାହିଁ, ସେହି ପ୍ରତ୍ୟେକ ଗଛକୁ କାଟିଦିଆଯିବ
ଏବଂ ନିଆଁରେ ଫିଙ୍ଗି ଦିଆଯିବ।”

୧୦ଲୋକମାନେ ତାହାଙ୍କୁ ପଚାରିଲେ, “ତେବେ ଆମ୍ଭେମାନେ
କଣ କରିବୁ?”

୧୧ଯୋହନ ସେମାନଙ୍କୁ ଉତ୍ତର ଦେଲେ, “ଯଦି ତୁମ୍ଭ
ପାଖରେ ଦୁଇଟି କୁର୍ତ୍ତା ଅଛି ତେବେ ସେଥିରୁ ଗୋଟିଏ
କୁର୍ତ୍ତା ଯାହାର ନାହିଁ ତାହାକୁ ଦିଅ। ଯଦି ତୁମ୍ଭ ପାଖରେ
ଖାଦ୍ୟ ଅଛି ତେବେ ତାହାକୁ ମଧ୍ୟ ବାଣ୍ଟିଦିଅ।”

୧୨କେତେକ କର ଆଦାୟକାରୀ ବାପ୍ତିଜିତ ହେବାପାଇଁ
ଆସିଲେ। ସେମାନେ ଯୋହନଙ୍କୁ ପଚାରିଲେ, “ହେଗୁରୁ!
ଆମ୍ଭେମାନେ କ’ଣ କରିବୁ?”

୧୩ଯୋହନ ସେମାନଙ୍କୁ କହିଲେ, “ତୁମ୍ଭକୁ ଯେତିକି
ନେବାକୁ ଆଦେଶ ଦିଆଯାଇଛି, ତା’ଠାରୁ ଅଧିକ କର
ଲୋକମାନଙ୍କଠାରୁ ନିଅନାହିଁ।”

୧୪ସୈନ୍ୟମାନେ ତାହାଙ୍କୁ ପଚାରିଲେ, “ଆମକୁ କ’ଣ
କରିବାକୁ ହେବ?”

ଯୋହନ ସେମାନଙ୍କୁ କହିଲେ, “ବଳପୂର୍ବକ କାହାରିଠାରୁ
ଅର୍ଥ ନିଅନାହିଁ। କାହା ବିରୁଦ୍ଧରେ ମିଛ କୁହନାହିଁ।
ଯେତିକି ବେତନ ମିଳୁଛି, ସେତିକିରେ ସନ୍ତୁଷ୍ଟ ରୁହ।”

୧୫ସବୁ ଲୋକେ ଖ୍ରୀଷ୍ଟଙ୍କ ଆଗମନର ଅପେକ୍ଷାରେ
ଥିଲେ। ଯୋହନଙ୍କ ବିଷୟରେ ସେମାନେ ମନେମନେ
ଭାବୁଥିଲେ, “ହୁଏତ ଏ ଖ୍ରୀଷ୍ଟ ଅଟନ୍ତି।”

୧୬ସେତେବେଳେ ଯୋହନ ସେମାନଙ୍କୁ କହିଲେ, “ମୁଁ
ତ ତୁମ୍ଭମାନଙ୍କୁ ଜଳରେ ବାପ୍ତିଜିତ କରୁଛି, କିନ୍ତୁ ମୋ’ଠାରୁ
ଅଧିକ ଶକ୍ତିଶାଳୀ ଜଣେ ଆସୁଛନ୍ତି। ତାହାଙ୍କର ଯୋତାର
ଫିତା ଫିଟାଇବାକୁ ମଧ୍ୟ ମୁଁ ଯୋଗ୍ୟ ନୁହେଁ। ସେ
ତୁମ୍ଭମାନଙ୍କୁ ପବିତ୍ରଆତ୍ମା ଓ ଅଗ୍ନି ଦ୍ୱାରା ବାପ୍ତିଜିତ କରିବେ।
୧୭ତାହାଙ୍କ ହାତରେ ଖଳା ସଫାକରିବାର କୁଲା ଅଛି।
ସେଥିରେ ସେ ଶସ୍ୟକୁ ଅଗାଡ଼ି ଠାରୁ ଅଲଗା କରିଦେବେ।
ସେ ଭଲ ଶସ୍ୟତକ ସଂଗ୍ରହ କରି ଅମାରରେ ନେଇ
ରଖିବେ। ତା’ପରେ ଅଗାଡ଼ି ଓ ଦରକାରୀ ଅନାବନା
ଜିନିଷଗୁଡ଼ିକୁ ଚିରକାଳ ଜଳୁଥିବା ନିଆଁରେ ପୋଡ଼ିଦେବେ।”
୧୮ଏହି ଭଳି ଯୋହନ ଲୋକମାନଙ୍କୁ ସୁସମାଚାରର
ଉପଦେଶ ଦେଉଥିଲେ ଏବଂ ଅନେକ ପ୍ରକାରରେ ସାହାଯ୍ୟ
କରୁଥିଲେ।

**ପରେ ଯୋହନଙ୍କ କାର୍ଯ୍ୟ କିପରି ଶେଷ ହେଲା।**

୧୯ସାମନ୍ତରାଜା ହେରୋଦ ନିଜ ଭାଇର ସ୍ତ୍ରୀ(ଭାଉଜ)
ହେରୋଦିଆଙ୍କ ସହିତ ଅନୁଚିତ ସମ୍ପର୍କ ରଖିଥିବାରୁ ଓ
ଅନ୍ୟ କେତେକ ଖରାପ କାମ କରିଥିବାରୁ ଯୋହନ
ତାହାଙ୍କୁ ସମାଲୋଚନା କଲେ। ୨୦ସେହିଭଳି ହେରୋଦ
ଆଉ ଗୋଟିଏ ଖରାପ କାମ କଲେ। ସେ ଯୋହନଙ୍କୁ
ବନ୍ଦୀଶାଳାରେ ରଖିଲେ। ସେ ଯେତେ କୁକର୍ମ କରିଥିଲେ,
ସେଥିରେ ଏହି କୁକର୍ମଟି ଯୋଗ ହେଲା।

**ଯୋହନ ଯୀଶୁଙ୍କୁ ବାପ୍ତିଜିତ କଲେ।**

୨୧ଯୋହନ କାରାଗାରରେ ବନ୍ଦୀ ହେବା ପୂର୍ବରୁ ସବୁଲୋକ
ଯୋହନଙ୍କ ଦ୍ୱାରା ବାପ୍ତିଜିତ ହେଉଥିଲେ। ତା’ପରେ ଯୀଶୁ
ମଧ୍ୟ ଆସିଲେ ଓ ତାହାଙ୍କ ଦ୍ୱାରା ବାପ୍ତିଜିତ ହେଲେ। ଯୀଶୁ
ପ୍ରାର୍ଥନା କଲାବେଳେ ଆକାଶ ଖୋଲିଗଲା। ୨୨ପବିତ୍ରଆତ୍ମା
ତାହାଙ୍କ ଉପରକୁ ଓହ୍ଲାଇ ଆସିଲେ ଓ ସେ କପୋତ ପରି
ଦେହ ଧାରଣ କରିଥିଲେ। ଆକାଶବାଣୀ ହେଲା: “ତୁମ୍ଭେ
ମୋର ପ୍ରିୟ ପୁତ୍ର। ମୁଁ ତୁମ୍ଭ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ।”

**ଯୋସେଫଙ୍କ ବଂଶର ଇତିହାସ**

୨୩ଯୀଶୁ ଉପଦେଶ ପ୍ରଦାନ କାର୍ଯ୍ୟ ଆରମ୍ଭ କରିବା
ବେଳକୁ ତାହାଙ୍କୁ ପ୍ରାୟ ତିରିଶ ବର୍ଷ ବୟସ ହୋଇଥିଲା।
ଲୋକଙ୍କ ଧାରଣା ଅନୁସାରେ ଯୀଶୁ ଯୋସେଫଙ୍କ ପୁତ୍ର।

ଯୋସେଫ ଏଲୀଙ୍କ ପୁତ୍ର ଥିଲେ।
୨୪ ଏଲୀ ମତ୍ଥାତଙ୍କର ପୁତ୍ର।
ମତ୍ଥାତ ଲେବୀଙ୍କ ପୁତ୍ର।
ଲେବୀ ମଲ୍‌ଖୀଙ୍କ ପୁତ୍ର।
ମଲ୍‌ଖୀ ଯନ୍ନୟଙ୍କର ପୁତ୍ର।
ଯନ୍ନୟ ଯୋସେଫଙ୍କର ପୁତ୍ର।
୨୫ ଯୋସେଫ ମତ୍ତିଥ୍ୟାଙ୍କର ପୁତ୍ର।
ମତ୍ତିଥ୍ୟା ଅମୋସଙ୍କର ପୁତ୍ର।
ଆମୋସ ନାହୂମଙ୍କର ପୁତ୍ର।
ନାହୂମ ହେସ୍ଲୀଙ୍କ ପୁତ୍ର।
ହେସ୍ଲୀ ନଗୟଙ୍କର ପୁତ୍ର।
୨୬ ନଗୟ ମହଥଙ୍କ ପୁତ୍ର।
ମହଥ ମତ୍ତିଥ୍ୟାଙ୍କର ପୁତ୍ର।
ମତ୍ତିଥ୍ୟା ଶିମୟିଙ୍କର ପୁତ୍ର।
ଶିମୟି ଯୋସେଖଙ୍କର ପୁତ୍ର।
ଯୋସେଖ ଯୋଦାଙ୍କର ପୁତ୍ର।
୨୭ ଯୋଦା ଯୋହନଙ୍କ ପୁତ୍ର।
ଯୋହନ ରେଷାଙ୍କ ପୁତ୍ର।
ରେଷା ଜିରୁବ୍‌ବାବେଲଙ୍କର ପୁତ୍ର।
ଜିରୁବ୍‌ବାବେଲ ଶଅଲ୍‌ଥୀୟେଲଙ୍କ ପୁତ୍ର।
ଶଅଲ୍‌ଥୀୟେଲ ନେରୀଙ୍କ ପୁତ୍ର।

୨୮ ନେରୀ ମଲ୍‌ଖୀଙ୍କ ପୁତ୍ର ।
ମଲ୍‌ଖୀ ଅଦ୍ଦୀଙ୍କ ପୁତ୍ର ।
ଅଦ୍ଦୀ କୋସାମଙ୍କ ପୁତ୍ର ।
କୋସାମ ଏଲ୍ମଦାନଙ୍କ ପୁତ୍ର ।
ଏଲ୍ମଦାନ ଏରଙ୍କ ପୁତ୍ର ।
୨୯ ଏର ଯୀଶୁଙ୍କ ପୁତ୍ର ।
ଯୀଶୁ ଏଲୀୟେଜରଙ୍କ ପୁତ୍ର ।
ଏଲୀୟେଜର ଯୋରୀମଙ୍କ ପୁତ୍ର ।
ଯୋରୀମ ମତ୍ଥାତଙ୍କ ପୁତ୍ର ।
ମତ୍ଥାତ ଲେବୀଙ୍କ ପୁତ୍ର ।
୩୦ ଲେବୀ ଶିମିୟୋନଙ୍କ ପୁତ୍ର ।
ଶିମିୟୋନ ଯିହୂଦାଙ୍କ ପୁତ୍ର ।
ଯିହୂଦା ଯୋସେଫଙ୍କ ପୁତ୍ର ।
ଯୋସେଫ ଯୋନାମଙ୍କ ପୁତ୍ର ।
ଯୋନାମ ଏଲୟାକୀମଙ୍କ ପୁତ୍ର ।
୩୧ ଏଲୟାକୀମ ମଲ୍ଲାହଙ୍କ ପୁତ୍ର ।
ମଲ୍ଲାହ ମନ୍ନାଙ୍କ ପୁତ୍ର ।
ମନ୍ନା ମତ୍ତଥାଙ୍କ ପୁତ୍ର ।
ମତ୍ତଥା ନାଥନଙ୍କ ପୁତ୍ର ।
ନାଥନ ଦାଉଦଙ୍କ ପୁତ୍ର ।
୩୨ ଦାଉଦ ଯିଶୟଙ୍କ ପୁତ୍ର ।
ଯିଶୟ ଓବେଦଙ୍କ ପୁତ୍ର
ଓବେଦ ବୋୟଜଙ୍କ ପୁତ୍ର ।
ବୋୟଜ ଶେଲହନଙ୍କ ପୁତ୍ର ।
ଶେଲହନ ନହଶୋନଙ୍କ ପୁତ୍ର ।
୩୩ ନହଶୋନ ଅମ୍ମୀନାଦାବଙ୍କ ପୁତ୍ର ।
ଅମ୍ମୀନାଦାବ ଅଦ୍ମୀନଙ୍କ ପୁତ୍ର ।
ଅଦ୍ମୀନ ଅର୍ଣ୍ଣୀଙ୍କ ପୁତ୍ର ।
ଅର୍ଣ୍ଣୀ ହେସ୍ରୋଣଙ୍କ ପୁତ୍ର ।
ହେସ୍ରୋଣ ଫେରସଙ୍କ ପୁତ୍ର ।
ଫେରସ ଯିହୂଦାଙ୍କ ପୁତ୍ର ।
୩୪ ଯିହୂଦା ଯାକୁବଙ୍କ ପୁତ୍ର ।
ଯାକୁବ ଯିସ୍‌ହାକଙ୍କ ପୁତ୍ର ।
ଯିସ୍‌ହାକ ଅବ୍ରାହାମଙ୍କ ପୁତ୍ର ।
ଅବ୍ରାହାମ ଥେରହଙ୍କ ପୁତ୍ର ।
ଥେରହ ନାହୋରଙ୍କ ପୁତ୍ର ।
୩୫ ନାହୋର ସରୂଗଙ୍କ ପୁତ୍ର ।
ସରୂଗ ରଗୁଙ୍କ ପୁତ୍ର ।
ରଗୁ ଫେଲଗଙ୍କ ପୁତ୍ର ।
ଫେଲଗ ଏବରଙ୍କ ପୁତ୍ର ।
ଏବର ଶେଲହଙ୍କ ପୁତ୍ର ।
୩୬ ଶେଲହ କେନାନଙ୍କ ପୁତ୍ର ।
କେନାନ ଅର୍ଫକ୍ଷଦଙ୍କ ପୁତ୍ର ।
ଅର୍ଫକ୍ଷଦ ଶେମଙ୍କ ପୁତ୍ର ।
ଶେମ ନୋହଙ୍କ ପୁତ୍ର ।
ନୋହ ଲେମଖଙ୍କ ପୁତ୍ର ।
୩୭ ଲେମଖ ମଥୂଶେଲହଙ୍କ ପୁତ୍ର ।
ମଥୂଶେଲହ ହନୋକଙ୍କ ପୁତ୍ର ।
ହନୋକ ଯେରଦଙ୍କ ପୁତ୍ର ।
ଯେରଦ ମହଲଲେଲଙ୍କ ପୁତ୍ର ।
ମହଲଲେଲ କେନାନଙ୍କ ପୁତ୍ର ।
୩୮ କେନାନ ଏନୋଶଙ୍କ ପୁତ୍ର ।
ଏନୋଶ ଶେଥଙ୍କ ପୁତ୍ର ।
ଶେଥ ଆଦମଙ୍କ ପୁତ୍ର ।
ଆଦମ ପରମେଶ୍ୱରଙ୍କ ପୁତ୍ର ।

### ଶୟତାନ ଦ୍ୱାରା ଯୀଶୁଙ୍କୁ ପରୀକ୍ଷା

**୪** ଯୀଶୁ ପବିତ୍ରଆତ୍ମାରେ ପରିପୂର୍ଣ୍ଣ ହୋଇ ଯର୍ଦ୍ଦନ
ନଦୀରୁ ବାହୁଡି ଆସିଲେ । ଆତ୍ମା ତାହାଙ୍କୁ ମରୁଭୂମିକୁ
କଢ଼ାଇ ନେଇଗଲେ । ୨ସେଠାରେ ଶୟତାନ ଚାଳିଶ ଦିନ
ପର୍ଯ୍ୟନ୍ତ ତାହାଙ୍କର ପରୀକ୍ଷା ନେଲା । ସେହି ଦିନମାନଙ୍କରେ
ଯୀଶୁ କିଛି ନ ଖାଇ ନ ପିଇ ରହିଲେ । ସେହି ଦିନତକ
ସରିଯିବା ପରେ ଯୀଶୁଙ୍କୁ ବଡ ଭୋକ ଲାଗିଲା ।
୩ଶୟତାନ ଯୀଶୁଙ୍କୁ କହିଲା, “ତୁମ୍ଭେ ଯଦି ପରମେଶ୍ୱରଙ୍କ
ସନ୍ତାନ, ତେବେ ଏହି ପଥରଟିକୁ କୁହ, ସେ ରୋଟୀ
ହୋଇଯାଉ ।”
୪ଏହା ଶୁଣି ଯୀଶୁ ତାହାକୁ ଉତ୍ତର ଦେଲେ,

“ଶାସ୍ତ୍ରରେ ଲେଖାଅଛି: ମଣିଷ କେବଳ ରୋଟୀରେ
ବଞ୍ôଚେନାହିଁ ।” ଦ୍ୱିତିୟ ବିବରଣ ୮:୩

୫ତାପରେ ଶୟତାନ ତାହାଙ୍କୁ ବହୁତ ଉପରକୁ ନେଇଯାଇ
କ୍ଷଣକ ମଧିରେ ସାରା ସଂସାରର ସମସ୍ତ ରାଜ୍ୟ ଦେଖାଇ
ଦେଲା । ୬ଶୟତାନ ଯୀଶୁଙ୍କୁ କହିଲା, “ମୁଁ ଏହିସବୁ ରାଜ୍ୟ
ଏବଂ ସେମାନଙ୍କର ସମସ୍ତ କ୍ଷମତା ବିଭବ ତୁମ୍ଭକୁ ଦେଇଦେବି ।
ସେଗୁଡିକୁ ମୋତେ ଦିଆ ଯାଇଛି । ମୁଁ ଯାହାକୁ ଚାହିଁବି,
ତାହାକୁ ଏ ସମସ୍ତ ଦେଇପାରିବି । ୭ତେବେ ଯଦି ତୁମ୍ଭେ
ମୋତେ ପ୍ରଣାମ କରିବ, ତେବେ ମୁଁ ଏସବୁ ତୁମ୍ଭକୁ
ଦେଇଦେବି ।”
୮ଯୀଶୁ ଉତ୍ତର ଦେଲେ, “ଶାସ୍ତ୍ରରେ ଲେଖାଅଛି:

‘ତୁମ୍ଭେ କେବଳ ନିଜ ପ୍ରଭୁ ପରମେଶ୍ୱରଙ୍କୁ ପ୍ରଣାମ
କରିବ ଓ ତାହାଙ୍କର ଉପାସନା କରିବ ।’”
ଦ୍ୱିତୀୟ ବିବରଣ ୬:୧୩

୯ତା’ପରେ ସେ ଯୀଶୁଙ୍କୁ ଯିରୂଶାଲେମକୁ ନେଇଗଲା ଓ
ସେଠାର ମନ୍ଦିରର ଶିଖରରେ ଠିଆ କରାଇ ଦେଲା । ସେ
ଯୀଶୁଙ୍କୁ କହିଲା, “ଯଦି ତୁମ୍ଭେ ପରମେଶ୍ୱରଙ୍କ ପୁତ୍ର,
ତେବେ ଏହି ଠାରୁ ତଳକୁ ଡେଇଁପଡ” । ୧୦ଶାସ୍ତ୍ରରେ
ଲେଖାଅଛି:

‘ପରମେଶ୍ୱର ତାହାଙ୍କର ସ୍ୱର୍ଗଦୂତ ମାନଙ୍କୁ ତୁମ୍ଭର
ଯତ୍ନ ନେବାପାଇଁ ଆଜ୍ଞା ଦେବେ ।’
ଗୀତସଂହିତା ୯୧:୧୧

୧୧ଏହା ମଧ୍ୟ ଲେଖାଅଛି:

'ସେମାନେ ତାହାଙ୍କ ହାତରେ ତୁମ୍ଭକୁ ଉଠେଇ
ନେବେ, ଯାହା ଫଳରେ କୌଣସି ପଥରରେ ତୁମ୍ଭ
ପାଦ ଲାଗିବନାହିଁ।'" ଗୀତସଂହିତା ୯୧:୧୨

୧୨ଯୀଶୁ କହିଲେ, "ଶାସ୍ତ୍ରରେ ଏ କଥା ମଧ୍ୟ ଲେଖାଅଛି:

'ତୁମ୍ଭେ ପ୍ରଭୁ ପରମେଶ୍ୱରଙ୍କୁ କେବେହେଲେ ପରୀକ୍ଷା
କରିବ ନାହିଁ।'" ଦ୍ୱିତୀୟ ବିବରଣ ୬:୧୬

୧୩ଶୟତାନ ଯୀଶୁଙ୍କର ସବୁ ପ୍ରକାର ପରୀକ୍ଷା ନେଇ
ସାରିଲା। ଆଉ ଠିକିଏ ଭଲ ସୁଯୋଗ ଆସିବା ପର୍ଯ୍ୟନ୍ତ
ଅପେକ୍ଷା କରିବାକୁ ସେ ଯୀଶୁଙ୍କୁ ଛାଡ଼ି ଚାଲିଗଲା।

## ଲୋକମାନଙ୍କୁ ଯୀଶୁଙ୍କ ଉପଦେଶ

୧୪ପବିତ୍ରଆତ୍ମାଙ୍କ ଦ୍ୱାରା ଶକ୍ତି ପାଇ ଯୀଶୁ ଗାଲୀଲୀକୁ
ଫେରିଗଲେ। ଗାଲୀଲୀର ଚାରିଆଡ଼େ ଯୀଶୁଙ୍କ ବିଷୟରେ
ଖବର ବ୍ୟାପିଗଲା। ୧୫ଯୀଶୁ ସେମାନଙ୍କର ପ୍ରାର୍ଥନାଗୃହ
ମାନଙ୍କରେ ଉପଦେଶ ଦେବା ଆରମ୍ଭ କଲେ। ସମସ୍ତେ
ତାହାଙ୍କର ପ୍ରଶଂସା କରୁଥିଲେ।
୧୬ତାପରେ ସେ ନାଜରିତକୁ ଆସିଲେ। ନାଜରିତରେ
ସେ ପ୍ରତିପାଳିତ ହୋଇଥିଲେ। ସବୁଥର ଭଳି ସେ
ବିଶ୍ରାମବାର ଦିନ ଯିହୂଦୀ ପ୍ରାର୍ଥନା ଗୃହକୁ ଗଲେ। ସେ
ପାଠ କରିବା ପାଇଁ ଠିଆ ହେଲେ। ୧୭ଭବିଷ୍ୟଦ୍‌ବକ୍ତା
ଯିଶାଇୟଙ୍କ ପୁସ୍ତକ ତାହାଙ୍କୁ ଦିଆଯାଇଥିଲା। ଯୀଶୁ ପୁସ୍ତକ
ଖୋଲି ଯେଉଁ ଜାଗାରେ ଏହା ଲେଖାଥିଲା, ତାହା ପାଇଲେ:

୧୮ "ପ୍ରଭୁଙ୍କ ଆତ୍ମା ମୋ' ଠାରେ ଅଛି। ଦୀନହୀନ
ଲୋକଙ୍କ ନିକଟରେ ସୁସମାଚାର ପ୍ରଚାର କରିବା
ପାଇଁ ପରମେଶ୍ୱର ମୋତେ ବାଛିଛନ୍ତି। ବନ୍ଦୀମାନେ
ଯେ ମୁକ୍ତ ହୋଇ ପାରିଛନ୍ତି, ଏହା ସେମାନଙ୍କୁ
ଶୁଣାଇବା ପାଇଁ, ଅନ୍ଧମାନେ ପୁନଃ ଦେଖିପାରିବେ
ବୋଲି ସେମାନଙ୍କୁ କହିବା ପାଇଁ, ଦୁଃଖ ଦୁର୍ଦ୍ଦଶା
(ଦୁର୍ବଳ) ଗ୍ରସ୍ତ ଲୋକଙ୍କ ଦୁଃଖ (ଯାତନା) ଦୂର
କରିଦେବାକୁ
୧୯ ଓ ପ୍ରଭୁଙ୍କ ଅନୁଗ୍ରହର ସମୟ ଘୋଷଣା କରିବାକୁ
ପ୍ରଭୁ ମୋତେ ପଠାଇଛନ୍ତି।" ଯିଶାଇୟ ୬୧:୧-୨

୨୦ଯୀଶୁ ପୁସ୍ତକ ବନ୍ଦ କରି ସେବକଙ୍କୁ ଫେରାଇଦେଲେ।
ତାପରେ ସେ ବସି ପଡ଼ିଲେ। ପ୍ରାର୍ଥନାଗୃହରେ ଥିବା
ପ୍ରତ୍ୟେକ ଲୋକର ଲକ୍ଷ୍ୟ ତାହାଙ୍କ ଉପରେ ଥିଲା। ୨୧ଯୀଶୁ
ସେମାନଙ୍କୁ କହିଲେ, "ମୁଁ ପୁସ୍ତକରୁ ଯେଉଁ ଅଂଶ ବର୍ତ୍ତମାନ
ପାଠକଲି, ତାହା ତୁମ୍ଭେମାନେ ଶୁଣିଲା ବେଳେ ଶାସ୍ତ୍ରର ଏହି
ବାକ୍ୟ ଏବେ ସଫଳ ହେଲା।"
୨୨ପ୍ରତ୍ୟେକ ଲୋକ ଯୀଶୁଙ୍କୁ ପ୍ରଶଂସା କରିବାକୁ ଲାଗିଲେ।
ଯୀଶୁଙ୍କ ମୁହଁରୁ ଯେଉଁ ସୁନ୍ଦର ବାକ୍ୟ ବାହାରି ଆସୁଥିଲା,
ସେଥିରେ ସମସ୍ତେ ବିସ୍ମିତ ହୋଇ ଯାଉଥିଲେ। ସେମାନେ
କହୁଥିଲେ, "ଏ କ'ଣ ଯୋସେଫଙ୍କ ପୁଅ ନୁହେଁ?"
୨୩ଯୀଶୁ ସେମାନଙ୍କୁ କହିଲେ, "ମୁଁ ଜାଣିଛି ଯେ,
ତୁମ୍ଭେମାନେ ମୋତେ ସେହି ପୁରୁଣା ଉକ୍ତିଟି କହିବ,
'ଆରେ ବଇଦ, ଆଗ ନିଜକୁ ଭଲ କର।' ତୁମ୍ଭେ
କହିବାକୁ ଚାହୁଁଛ, କଫର୍ନାହୂମରେ ତୁମ୍ଭେ ଯାହା ସବୁ
କରିଛ ବୋଲି ଆମ୍ଭେମାନେ ଶୁଣିଛୁ, ସେହିସବୁ ଏବେ ନିଜ
ପୈତୃକ ନଗରରେ ମଧ୍ୟ କର।" ୨୪ତାପରେ ଯୀଶୁ
ସେମାନଙ୍କୁ କହିଲେ, "ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି ଯେ
କୌଣସି ଭବିଷ୍ୟଦ୍‌ବକ୍ତାଙ୍କୁ ନିଜ ନଗରରେ ଗ୍ରହଣ କରାଯାଏ
ନାହିଁ। ୨୫ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ଏଲିୟଙ୍କ ସମୟରେ
ଇସ୍ରାଏଲରେ ଯେତେବେଳେ ତିନି ବର୍ଷ ଛଅ ମାସ
ପର୍ଯ୍ୟନ୍ତ ବର୍ଷା ହେଲା ନାହିଁ ଓ ସାରା ଦେଶରେ ଭୀଷଣ
ଦୁର୍ଭିକ୍ଷ ପଡିଲା, ସେତେବେଳେ ଇସ୍ରାଏଲରେ ବହୁ ସଂଖ୍ୟାରେ
ବିଧବା ଥିଲେ। ୨୬କିନ୍ତୁ ଏଲିୟଙ୍କୁ ସେମାନଙ୍କ ମଧ୍ୟରୁ
କୌଣସି ବିଧବାଙ୍କ ପାଖକୁ ପଠାଗଲା ନାହିଁ। ଏଲିୟଙ୍କୁ
କେବଳ ସୀଦୋନ ଅଞ୍ଚଳର ସାରିଫତରେ ରହୁଥିବା ଜଣେ
ବିଧବା ପାଖକୁ ପଠାଗଲା। ୨୭ଆହୁରି ମଧ୍ୟ ଭବିଷ୍ୟଦ୍‌ବକ୍ତା
ଏଲୀଶାୟଙ୍କ ସମୟରେ ଇସ୍ରାଏଲରେ ଅନେକ କୁଷ୍ଠରୋଗୀ
ଥିଲେ। ତଥାପି ସେମାନଙ୍କ ମଧ୍ୟରୁ, କାହାରିକୁ ଆରୋଗ୍ୟ
କରାଯାଇନଥିଲା। କେବଳ ସୁରିଆ ଦେଶର ନାମାନଙ୍କୁ
ଆରୋଗ୍ୟ କରାଯାଇଥିଲା। ନାମାନ ଇସ୍ରାଏଲର ଲୋକ
ନଥିଲେ।"
୨୮ପ୍ରାର୍ଥନାଗୃହରେ ଥିବା ସବୁଲୋକେ ଯୀଶୁଙ୍କ ଏହି
କଥା ସବୁ ଶୁଣି ଖୁବ ରାଗିଗଲେ। ୨୯ଲୋକମାନେ ଉଠି
ପଡ଼ିଲେ ଓ ଜୋର ଜବରଦସ୍ତି ଯୀଶୁଙ୍କୁ ନଗର ମଧ୍ୟରୁ
ବାହାର କରିଦେଲେ। ସେମାନଙ୍କ ନଗର ଗୋଟିଏ ପାହାଡ଼
ଉପରେ ନିର୍ମିତ ଥିଲା। ସେମାନେ ଯୀଶୁଙ୍କୁ ପାହାଡ଼ର
ଧାରକୁ ନେଇଗଲେ। ସେମାନେ ଯୀଶୁଙ୍କୁ ସେଠାରୁ ତଳକୁ
ଫିଙ୍ଗି ଦେବାକୁ ଚାହୁଁଥିଲେ। ୩୦କିନ୍ତୁ ଯୀଶୁ ସେମାନଙ୍କ ମଧ୍ୟ
ଦେଇ ଚାଲିଗଲେ।

## ଯୀଶୁ ଦୁଷ୍ଟାତ୍ମା କବଳରୁ ଜଣକୁ ସୁସ୍ଥ କଲେ।

୩୧ଯୀଶୁ ଗାଲୀଲୀର କଫର୍ନାହୂମ ନାମକ ନଗରକୁ
ଆସିଲେ। ସେ ବିଶ୍ରାମବାରରେ ଲୋକମାନଙ୍କୁ ଉପଦେଶ
ଦେବାକୁ ଲାଗିଲେ। ୩୨ଲୋକେ ତାହାଙ୍କ ଉପଦେଶ ଶୁଣି
ବିସ୍ମିତ ହୋଇଯାଉଥିଲେ। କାରଣ ସେ ଅଧିକାର ସହିତ
କଥା କହୁଥିଲେ। ୩୩ସେହି ପ୍ରାର୍ଥନାଗୃହରେ ଥିବା ଜଣେ
ଲୋକ ଦେହରେ ଦୁଷ୍ଟାତ୍ମା ଆସି ରହିଥିଲା। ସେ ବଡ଼ପାଟିରେ
ଚିତ୍କାର କରି କହିଲା, ୩୪"ହେ ନାଜରିତର ଯୀଶୁ! ତୁମ୍ଭେ
ଆମ୍ଭମାନଙ୍କଠାରୁ କ'ଣ ଚାହୁଁଛ? ତୁମ୍ଭେ କ'ଣ ଆମ୍ଭମାନଙ୍କୁ
ଧ୍ୱଂସ କରିଦେବାକୁ ଆସିଛ? ମୁଁ ଜାଣିଛି ତୁମ୍ଭେ କିଏ ତୁମ୍ଭେ
ପରମେଶ୍ୱରଙ୍କ ସେହି ପବିତ୍ର ବ୍ୟକ୍ତି।" ୩୫ଯୀଶୁ ତାହାକୁ
ଧମକ ଦେଇ କହିଲେ, "ଚୁପ୍ କର ଏହି ଲୋକର
ଦେହରୁ ବାହାରିଯା"। ଏହାପରେ ଦୁଷ୍ଟାତ୍ମା ସେହି ଲୋକଟିକୁ
ସମସ୍ତଙ୍କ ସାମନାରେ ତଳେ ପକାଇଦେଲା ଓ ତାହାର
କୌଣସି କ୍ଷତି ନକରି ତା' ଦେହରୁ ବାହାରିଗଲା।

୩୬ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ କୁହାକୁହି
ହେଲେ, "ଏ କିପରି କଥା? ଅଧିକାର ଓ ଶକ୍ତି ସହିତ
ସେ ଦୁଷ୍ଟାତ୍ମାମାନଙ୍କୁ ଆଜ୍ଞା ଦେଉଛନ୍ତି। ଏବଂ ଦୁଷ୍ଟାତ୍ମାମାନେ
ତାହାଙ୍କ କଥା ମାନି ବାହାରି ଆସୁଛନ୍ତି।" ୩୭ସେହି
ଅଞ୍ଚଳର ସବୁ ସ୍ଥାନରେ ଯୀଶୁଙ୍କ ବିଷୟରେ ଏହି ଖବର
ବ୍ୟାପିଗଲା।

## ଯୀଶୁ ପିତରଙ୍କ ଶାଶୁଙ୍କୁ ସୁସ୍ଥ କରିଦେଲେ।

୩୮ଯୀଶୁ ପ୍ରାର୍ଥନାଗୃହ ଛାଡି ଶିମୋନଙ୍କ ଘରକୁ ଗଲେ।
ଶିମୋନଙ୍କ ଶାଶୁଙ୍କୁ ଭୟଙ୍କର ଜ୍ୱର ହୋଇଥିଲା। ସେମାନେ
ଯୀଶୁଙ୍କୁ, ତାହାଙ୍କୁ ସାହାଯ୍ୟ କରିବା ପାଇଁ କହିଲେ।
୩୯ଯୀଶୁ ତାହାଙ୍କର ପାଖରେ ଠିଆ ହୋଇ ଜ୍ୱରକୁ ଧମକ
ଦେଲେ। ତାହାଙ୍କର ଜ୍ୱର ଛାଡ଼ିଗଲା। ତାପରେ ସେ ଉଠି
ସେମାନଙ୍କର ସେବାରେ ଲାଗିପଡ଼ିଲେ।

## ଯୀଶୁ ଅନେକ ଲୋକଙ୍କୁ ସୁସ୍ଥ କଲେ।

୪୦ସୂର୍ଯ୍ୟ ଅସ୍ତ ହୋଇଯିବା ପରେ ଲୋକମାନେ ସେମାନଙ୍କର
ରୋଗୀଲୋକମାନଙ୍କୁ ଯୀଶୁଙ୍କ ପାଖକୁ ଆଣିଲେ। ସେମାନଙ୍କ
ଠାରେ ବିଭିନ୍ନ ପ୍ରକାରର ରୋଗ ଥିଲା। ଯୀଶୁ ନିଜ ହାତ
ରୋଗୀମାନଙ୍କ ଉପରେ ରଖି ସେମାନଙ୍କୁ ସୁସ୍ଥ କରିଦେଲେ।
୪୧ଆଉ ମଧ୍ୟ ସେମାନଙ୍କ ମଧ୍ୟରେ ଥିବା ଅନେକଙ୍କ
ଭିତରୁ ଦୁଷ୍ଟାତ୍ମାମାନେ ବାହାରି ଆସିଲେ। ଦୁଷ୍ଟାତ୍ମାମାନେ
ଚିତ୍କାର କରୁ ଥିଲେ, "ତୁମ୍ଭେ ପରମେଶ୍ୱରଙ୍କର ପୁତ୍ର।"
କିନ୍ତୁ ଯୀଶୁ ଦୁଷ୍ଟାତ୍ମାମାନଙ୍କୁ ଚୁପ୍ ରହିବା ପାଇଁ କଠୋର
ଆଜ୍ଞା ଦେଲେ। କାରଣ ସେହି ଦୁଷ୍ଟାତ୍ମାମାନେ ଜାଣିଥିଲେ
ଯେ ଯୀଶୁ ହେଉଛନ୍ତି ସ୍ୱୟଂ ଖ୍ରୀଷ୍ଟ।

## ଅନ୍ୟ ନଗରଗୁଡ଼ିକୁ ଯୀଶୁଙ୍କ ଯାତ୍ରା

୪୨ଯୀଶୁ ଏକାକୀ ରହିବା ଉଦ୍ଦେଶ୍ୟରେ ତା'ପର ଦିନ
ସକାଳେ ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଗଲେ। କିନ୍ତୁ
ଲୋକମାନେ ତାହାଙ୍କୁ ଖୋଜିଲେ। ଖୋଜିଖୋଜି ଶେଷରେ
ସେମାନେ ଯୀଶୁ ଯେଉଁ ଠାରେ ଥିଲେ, ସେଠାରେ ପହଞ୍ଚିଗଲେ।
ଯୀଶୁ ସେମାନଙ୍କୁ ଛାଡ଼ି କରି କୁଆଡ଼େ ନ ଯାନ୍ତୁ ବୋଲି
ସେମାନେ ଚାହୁଁ ଥିଲେ। ତେଣୁ ସେମାନେ ଯୀଶୁଙ୍କୁ
ଅଟକେଇବାକୁ ଚେଷ୍ଟା କଲେ। ୪୩କିନ୍ତୁ ଯୀଶୁ ସେମାନଙ୍କୁ
କହିଲେ, "ପରମେଶ୍ୱରଙ୍କ ରାଜ୍ୟର ସୁସମାଚାର ମୋତେ
ଅନ୍ୟ ନଗରମାନଙ୍କରେ ମଧ୍ୟ ପ୍ରଚାର କରିବାକୁ ପଡ଼ିବ।
କାରଣ ମୋତେ ଏଥିପାଇଁ ପଠାଯାଇଛି।"
୪୪ଏହିଭଳି ଭାବରେ ଯୀଶୁ ଯିହୂଦାରେ ବିଭିନ୍ନ ପ୍ରାର୍ଥନାଗୃହ
ମାନଙ୍କରେ ଉପଦେଶ ପ୍ରଚାର କରିବାକୁ ଲାଗିଲେ।

## ପିତର, ଯାକୁବ ଓ ଯୋହନ ଯୀଶୁଙ୍କ ଶିଷ୍ୟ ହେଲେ।

୫ ଯୀଶୁ ଗିନେସରତ ହ୍ରଦ କୂଳରେ ଠିଆ ହୋଇଥିଲେ।
ତାହାଙ୍କ ଚାରିପଟେ ଘେରିଯାଇ ଠିଆହେବାକୁ
ଲୋକମାନେ ଠେଲାପେଲା ହେଉଥିଲେ। ସେମାନେ ତାହାଙ୍କ
ଠାରୁ ପରମେଶ୍ୱରଙ୍କ ଉପଦେଶ ବାଣୀ ଶୁଣିବାକୁ ଚାହୁଁଥିଲେ।
୨ଯୀଶୁ ହ୍ରଦ କୂଳରେ ଦୁଇଟି ଡଙ୍ଗା ଥୁଆ ହୋଇଥିବାର
ଦେଖିଲେ। କେଉଟମାନେ ସେହି ଡଙ୍ଗାରୁ ଓହ୍ଲେଇ ତାହାଙ୍କ
ଜାଲ ଧୋଉଥିଲେ। ୩ଯୀଶୁ ସେଥିରୁ ଗୋଟିଏ ଡଙ୍ଗାରେ
ଚଢ଼ିଗଲେ। ସେ ଡଙ୍ଗାଟି ଶିମୋନ* ଙ୍କର ଥିଲା। ଯୀଶୁ
ଡଙ୍ଗାଟିକୁ କୂଳଠାରୁ ଅଳ୍ପ ଟିକିଏ ଭିତରକୁ ନେବାକୁ
ଶିମୋନଙ୍କୁ କହିଲେ। ତାପରେ ସେ ଡଙ୍ଗାଟିରେ ବସି
ପଡ଼ିଲେ ଓ ସେହି ଡଙ୍ଗା ଉପରେ ଥାଇ ଲୋକମାନଙ୍କୁ
ଉପଦେଶ ଦେବାକୁ ଲାଗିଲେ।
୪ଉପଦେଶ ଦେଇ ସାରିବା ପରେ ଯୀଶୁ ଶିମୋନଙ୍କୁ
କହିଲେ, "ଡଙ୍ଗାକୁ ଗଭୀର ଜଳକୁ ନେଇ ଚାଲ। ପାଣିରେ
ତୁମ୍ଭେ ସମସ୍ତେ ଯଦି ତୁମ୍ଭମାନଙ୍କର ଜାଲ ପକେଇବ,
ତେବେ କିଛି ମାଛ ଧରିବ।"
୫ଶିମୋନ କହିଲେ, "ପ୍ରଭୁ, ମାଛ ଧରିବା ପାଇଁ
ଆମ୍ଭେମାନେ ରାତିସାରା କଠିନ ପରିଶ୍ରମ କଲୁ, ମାତ୍ର କିଛି
ହେଲେ ପାଇଲୁନାହିଁ। ଏବେ ତୁମ୍ଭେ ଜାଲ ପକାଇବାକୁ
କହୁଛ। ତେଣୁ ମୁଁ ଜାଲ ପକାଇବି।" ୬କେଉଟମାନେ
ସେମାନଙ୍କର ଜାଲ ପାଣିରେ ପକେଇଲେ। ତାହାଙ୍କର
ଜାଲସବୁ ଏତେ ମାଛରେ ବୋଝେଇ ହୋଇଗଲା ଯେ
ଜାଲସବୁ ଛିଣ୍ଡିଯିବାକୁ ଲାଗିଲା। ୭ସେମାନେ ସାହାଯ୍ୟ ନିମନ୍ତେ
ଅନ୍ୟ ଡଙ୍ଗାରେ ଥିବା ତାହାଙ୍କର ଅଂଶୀଦାରମାନଙ୍କୁ ଡାକିଲେ।
ସାଙ୍ଗମାନେ ଆସିଲେ। ଦୁଇଟି ଯାକ ଡଙ୍ଗା ମାଛରେ ଏତେ
ଭର୍ତ୍ତି ହୋଇ ଗଲା ଯେ ଡଙ୍ଗା ଦୁଇଟି ପ୍ରାୟ ବୁଡ଼ିଯିବାକୁ
ଲାଗିଲା।
୮-୯ଶିମୋନ ପିତର ଏବଂ ସମସ୍ତ କେଉଟମାନେ ଏତେ
ଗୁଡ଼ିଏ ମାଛ ଧରିପାରିଥିବାରୁ ଆଶ୍ଚର୍ଯ୍ୟ ହୋଇଗଲେ। ଶିମୋନ
ପିତର ଏହା ଦେଖି ଯୀଶୁଙ୍କ ପାଦତଳେ ପଡ଼ିଯାଇ କହିଲେ,
"ହେ ପ୍ରଭୁ! ତୁମ୍ଭେ ମୋ ପାଖରୁ ଚାଲିଯାଅ। ମୁଁ ଜଣେ
ପାପୀ ମଣିଷ।" ୧୦ଜେବଦୀଙ୍କ ଦୁଇ ପୁଅ ଯାକୁବ ଓ
ଯୋହନ ମଧ୍ୟ ସେହିଭଳି ଆଶ୍ଚର୍ଯ୍ୟ ହୋଇଗଲେ। (ସେମାନେ
ଶିମୋନଙ୍କ ସାଙ୍ଗରେ ଏକାଠି କାମ କରୁଥିଲେ)।
ଯୀଶୁ ଶିମୋନଙ୍କୁ କହିଲେ, "ଭୟ କରନାହିଁ। ବର୍ତ୍ତମାନ
ଠାରୁ ତୁମ୍ଭେମାନେ ମାଛ ବଦଳରେ ମଣିଷଙ୍କୁ ସଂଗ୍ରହ
କରିବା କାମ କରିବ।"
୧୧ତା'ପରେ ସେମାନେ ସେମାନଙ୍କର ଡଙ୍ଗା ଗୁଡ଼ିକୁ
କୂଳକୁ ଆଣିଲେ। ସେମାନେ ସବୁ କିଛି ତ୍ୟାଗ କରିଦେଇ
ଯୀଶୁଙ୍କ ଅନୁଗମନ କଲେ।

## ଯୀଶୁ ଗୋଟିଏ କୁଷ୍ଠ ରୋଗୀକୁ ସୁସ୍ଥ କରିଦେଲେ

୧୨ଥରେ ଯୀଶୁ ଗୋଟିଏ ନଗରରେ ଥିଲେ। ସେଠାରେ
ଦେହସାରା କୁଷ୍ଠ ହୋଇ ଯାଇଥିବା ଲୋକଟିଏ ରହୁଥିଲା।
ଯେତେବେଳେ ସେ ଯୀଶୁଙ୍କୁ ଦେଖିଲା, ତାହାଙ୍କୁ ପ୍ରଣାମ
କରି ଅନୁରୋଧ କଲା, "ହେ ପ୍ରଭୁ! ମୋତେ ସୁସ୍ଥ
କରିଦିଅ। ମୁଁ ଜାଣେ ଯେ ତୁମ୍ଭେ ଇଚ୍ଛାକଲେ ମୋତେ
ସୁସ୍ଥ କରିଦେଇ ପାରିବ।"
୧୩ଯୀଶୁ ହାତ ବଢ଼େଇ ସେହି ଲୋକଟିକୁ ଛୁଇଁକରି
କହିଲେ, "ମୁଁ ଇଚ୍ଛା କରୁଅଛି ତୁମ୍ଭେ ସୁସ୍ଥ ହୋଇ ଯାଅ।"

---

**ଶିମୋନ** ଶିମୋନଙ୍କର ଅନ୍ୟ ନାମ ପିତର।

ତତ୍କ୍ଷଣାତ୍ ତାହାଙ୍କଠାରୁ କୁଷ୍ଠରୋଗ ଦୂର ହୋଇଗଲା ।
୧୪ଯୀଶୁ ତାହାକୁ ଆଦେଶ ଦେଲେ, “ଏବେ ଯାହା ଘଟିଲା,
ସେ କଥା କାହାରିକୁ କୁହନାହିଁ । କିନ୍ତୁ ଯାଜକଙ୍କ ପାଖକୁ
ଯାଅ । ନିଜ ଦେହ ତାହାଙ୍କୁ ଦେଖାଅ । ତୁମ୍ଭେ ସୁସ୍ଥ
ହୋଇଯାଇଥିବା ଯୋଗୁ ମୋଶାଙ୍କ ଆଦେଶ ଅନୁସାରେ
ପରମେଶ୍ୱରଙ୍କ ନିକଟରେ ବଳି ଉତ୍ସର୍ଗ କର । ଏହା
ଲୋକଙ୍କୁ ଦେଖେଇଦେବ ଯେ ତୁମ୍ଭେ ସୁସ୍ଥ ହୋଇଯାଇଛ ।”
୧୫କିନ୍ତୁ ଯୀଶୁଙ୍କ ବିଷୟରେ ଖବର ଆହୁରି ଅଧିକରୁ
ଅଧିକ ବ୍ୟାପିବାକୁ ଲାଗିଲା । ଅନେକ ଲୋକ ଉପଦେଶ
ଶୁଣିବାକୁ ଓ ରୋଗରୁ ସୁସ୍ଥ ହେବାକୁ ତାହାଙ୍କ ପାଖକୁ
ଆସୁଥିଲେ । ୧୬ଯୀଶୁ କିନ୍ତୁ ପ୍ରାର୍ଥନା କରିବା ପାଇଁ ଅଧିକାଂଶ
ସମୟରେ କୌଣସି ନିର୍ଜନ ସ୍ଥାନକୁ ଚାଲି ଯାଉଥିଲେ ।

### ଯୀଶୁ ଗୋଟିଏ ପକ୍ଷାଘାତ ରୋଗୀକୁ ସୁସ୍ଥ କରିଦେଲେ ।

୧୭ଦିନେ ଯୀଶୁ ଲୋକମାନଙ୍କୁ ଉପଦେଶ ଦେଉଥିଲେ ।
ସେଠାରେ ଫାରୂଶୀ ଓ ଯିହୂଦୀଧର୍ମଶାସ୍ତ୍ରୀମାନେ ମଧ୍ୟ ବସିଥିଲେ ।
ସେମାନେ ଗାଲିଲୀର ପ୍ରତ୍ୟେକ ନଗରରୁ, ଯିହୂଦା ତଥା
ଯିରୂଶାଲମରୁ ଆସିଥିଲେ । ପ୍ରଭୁ ଲୋକଙ୍କୁ ସୁସ୍ଥ କରି
ଦେବାପାଇଁ ଯୀଶୁଙ୍କୁ ଶକ୍ତି ଦେଉଥିଲେ । ୧୮ସେତିକିବେଳେ
କେତେକ ଲୋକ ଗୋଟିଏ ପକ୍ଷାଘାତ ରୋଗୀକୁ ଖଟରେ
ବୋହିକରି ଯୀଶୁଙ୍କ ପାଖକୁ ଆଣିଲେ । ସେମାନେ ରୋଗୀଟିକୁ
ଭିତରକୁ ଆଣି ଯୀଶୁଙ୍କ ଆଗରେ ରଖିବା ପାଇଁ ଚେଷ୍ଟା
କଲେ । ୧୯କିନ୍ତୁ ସେଠାରେ ଏତେ ଲୋକ ଥିଲେ ଯେ
ସେମାନେ ଯୀଶୁଙ୍କ ପାଖକୁ ଯିବାକୁ ବାଟ ପାଇଲେ ନାହିଁ ।
ତେଣୁ ସେମାନେ ଛାତ ଉପରକୁ ଚାଲିଗଲେ । ଛାତରୁ
ଛପର କିଛି ବାହାର କରି କଣାଟିଏ କଲେ । ସେମାନେ
ସେହି କଣା ବାଟେ ପକ୍ଷାଘାତ ରୋଗୀଟିକୁ ଖଟ ସହିତ
ଯୀଶୁଙ୍କ ସାମନାକୁ ଖସେଇ ଦେଲେ । ୨୦ସେହି ଲୋକମାନଙ୍କର
ବିଶ୍ୱାସ ଦେଖି ଯୀଶୁ ସେହି ରୋଗୀଟିକୁ କହିଲେ, “ବନ୍ଧୁ!
ତୁମ୍ଭର ପାପ କ୍ଷମା କରିଦିଆଗଲା ।”
୨୧ଯିହୂଦୀଧର୍ମଶାସ୍ତ୍ରୀ ଓ ଫାରୂଶୀମାନେ ଭାବିବାକୁ ଲାଗିଲେ,
“ଏ ଲୋକ କିଏ? ଏ ପରମେଶ୍ୱରଙ୍କୁ ଅପମାନ କରୁଛି ।
କେବଳ ପରମେଶ୍ୱର ପାପ କ୍ଷମା କରିପାରନ୍ତି?”
୨୨କିନ୍ତୁ ଯୀଶୁ ଜାଣିପାରିଲେ ଯେ ସେମାନେ କ’ଣ
ଭାବୁଛନ୍ତି । ସେ କହିଲେ, “ତୁମ୍ଭେମାନେ ମନ ଭିତରେ
ଏଭଳି ବିଚାର କାହିଁକି ଆଣୁଛ? ୨୩କଅଣ କହିବା ସରଳ?
ପକ୍ଷାଘାତ ରୋଗୀଟିକୁ କହିବା ଯେ ‘ତୁମ୍ଭ ପାପ କ୍ଷମା କରି
ଦିଆଗଲା’ ନା ଏ କଥା କହିବା ଯେ ଉଠ ଓ ଚାଲ?’
୨୪ମୁଁ କିନ୍ତୁ ତୁମ୍ଭମାନଙ୍କୁ ଦେଖାଇ ଦେବିଯେ, ମନୁଷ୍ୟପୁତ୍ରଙ୍କର
ପାପ କ୍ଷମା କରିବାର ଶକ୍ତି ଅଛି ।” ତେଣୁ ସେ ପକ୍ଷାଘାତ
ରୋଗୀଟିକୁ କହିଲେ, “ମୁଁ ତୁମ୍ଭକୁ କହୁଛି: ଠିଆ ହୁଅ ।
ତୁମ୍ଭର ବିଛଣା ଧର ଓ ଘରକୁ ଯାଅ ।”
୨୫ସେ ତତ୍କ୍ଷଣାତ୍ ସେମାନଙ୍କ ସାମନାରେ ଉଠି ଠିଆ
ହେଲା । ଯେଉଁ ବିଛଣା ଉପରେ ସେ ଶୋଇ ଥିଲା, ତାହା
ଧରି ପରମେଶ୍ୱରଙ୍କ ସ୍ତୁତିଗାନକରି ନିଜ ଘରକୁ ଚାଲିଗଲା ।
୨୬ସେଠାରେ ଯେଉଁମାନେ ଉପସ୍ଥିତ ଥିଲେ, ସେମାନେ
ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇ ପରମେଶ୍ୱରଙ୍କ ଗୁଣଗାନ
କରିବାକୁ ଲାଗିଲେ । ପରମେଶ୍ୱରଙ୍କ ଶକ୍ତି ଦେଖି ସେମାନଙ୍କ
ହୃଦୟ ଭକ୍ତିରେ ଭରିଗଲା । ସେମାନେ କହି ଉଠିଲେ,
“ଆଜି ଆମ୍ଭେମାନେ ବିସ୍ମୟ ଜନକ ଘଟଣା ମାନ ଦେଖିଛୁ ।”

### ଯୀଶୁ ଲେବୀଙ୍କୁ ଡାକିଲେ ।

୨୭ଏହାପରେ ଯୀଶୁ ସେଠାରୁ ଚାଲିଗଲେ । ସେ କର
ଆଦାୟ କରି ଯାଉଥିବା କାର୍ଯ୍ୟାଳୟରେ ଲେବୀ ନାମକ
ଜଣେ କର ଆଦାୟକାରୀଙ୍କୁ ବସିଥିବାର ଦେଖିଲେ । ଯୀଶୁ
ତାହାଙ୍କୁ କହିଲେ, “ମୋର ଅନୁସରଣ କର” । ୨୮ଲେବୀ
ଉଠି ପଡିଲେ । ସେ ସବୁକିଛି ପରିତ୍ୟାଗ କରି ଯୀଶୁଙ୍କୁ
ଅନୁସରଣ କଲେ ।
୨୯ଲେବୀ ଯୀଶୁଙ୍କ ସମ୍ମାନାର୍ଥେ ନିଜ ଘରେ ଗୋଟିଏ
ବଡ ଭୋଜି ଦେଲେ । ଅନେକ କର ଆଦାୟକାରୀ ଓ
ଅନ୍ୟ କେତେକ ଲୋକ ମଧ୍ୟ ଯୀଶୁଙ୍କ ସହ ଏକତ୍ର
ଭୋଜନ କରୁଥିଲେ । ୩୦ତେଣୁ ଫାରୂଶୀ ଓ ଯିହୂଦୀଶାସ୍ତ୍ରୀମାନେ
ଯୀଶୁଙ୍କ ଶିଷ୍ୟମାନଙ୍କ ଆଗରେ ଅଭିଯୋଗ କଲେ, “ତୁମ୍ଭେମାନେ
କରଆଦାୟକାରୀ ଓ ପାପୀମାନଙ୍କ ସହିତ କାହିଁକି ଏକାଠି
ଖିଆପିଆ କରୁଛ?”
୩୧ଯୀଶୁ ସେମାନଙ୍କୁ କହିଲେ, “ସୁସ୍ଥ ଲୋକମାନଙ୍କ
ପାଇଁ ଡାକ୍ତରର ଆବଶ୍ୟକତା ନାହିଁ । କିନ୍ତୁ ଅସୁସ୍ଥ ଲୋକମାନଙ୍କ
ପାଇଁ ଡାକ୍ତରର ଆବଶ୍ୟକତା ରହିଛି । ୩୨ମୁଁ ଧାର୍ମିକ
ଲୋକମାନଙ୍କୁ ପରିବର୍ତ୍ତନ ସକାଶେ ଆସିନାହିଁ । ମୁଁ ପାପୀମାନଙ୍କ
ପାଇଁ ଆସିଛି । ସେମାନେ ନିଜନିଜ ହୃଦୟ ଓ ଜୀବନ
ପରିବର୍ତ୍ତନ କରନ୍ତୁ ।”

### ଉପବାସ ସମ୍ବନ୍ଧରେ ଯୀଶୁଙ୍କ ଉତ୍ତର

୩୩ସେମାନେ ଯୀଶୁଙ୍କୁ କହିଲେ, “ଯୋହନଙ୍କ ଶିଷ୍ୟମାନେ
ଅଧିକାଂଶ ଥର ଉପବାସ ଓ ପ୍ରାର୍ଥନା କରନ୍ତି । ଫାରୂଶୀ
ମାନଙ୍କ ଶିଷ୍ୟମାନେ ସେହିପରି କରନ୍ତି । କିନ୍ତୁ ତୁମ୍ଭର
ଶିଷ୍ୟମାନେ ସବୁବେଳେ ଖିଆପିଆ କରୁଛନ୍ତି ।”
୩୪ଯୀଶୁ ସେମାନଙ୍କୁ କହିଲେ, “ବର, ବରଯାତ୍ରୀ ସହିତ
ଥିବା ପର୍ଯ୍ୟନ୍ତ ତୁମ୍ଭେ କ’ଣ ବରଯାତ୍ରୀମାନଙ୍କୁ ଉପବାସରେ
ରଖି ପାରିବ? ୩୫କିନ୍ତୁ ସମୟ ଆସିବ, ଯେତେବେଳେ
ସେମାନଙ୍କ ପାଖରୁ ବରକୁ ଛଡାଇ ନିଆଯିବ । ସେତେବେଳେ
ସେମାନେ ଉପବାସ କରିବେ ।”
୩୬ଯୀଶୁ ସେମାନଙ୍କୁ ଆଉ ଗୋଟିଏ ଦୃଷ୍ଟାନ୍ତ କହିଲେ:
“ଜଣେ ଲୋକ ଗୋଟିଏ ପୁରୁଣା ଚାଦରରେ ତାଳି ପକାଇବାକୁ
କୌଣସି ନୂଆ ଚାଦରରୁ ଖଣ୍ଡେ ଚିରିପକାଏ ନାହିଁ । ଯେଉଁ
ଲୋକ ଏଭଳି କରେ, ତାର ନୂଆ ଚାଦରଟିତ ନଷ୍ଟ
ହୋଇଯାଏ ପୁଣି ନୂଆ ଚାଦରରୁ ଚିରାହୋଇଥିବା ତାଳି
ପୁରୁଣା ଚାଦର ସାଙ୍ଗରେ ମିଶେନାହିଁ । ୩୭କୌଣସି ଲୋକ
ପୁରୁଣା ଚମଡ଼ା ଥଳିଗୁଡ଼ିକରେ ନୂଆ ଅଙ୍ଗୁରରସ ଢାଳେ
ନାହିଁ । ଯଦି ସେ ଏପରି କରେ ତେବେ ନୂଆ ଦ୍ରାକ୍ଷାରସ
ପୁରୁଣା ଚମଡ଼ା ଥଳି ଗୁଡ଼ିକୁ ଚିରିଦେବ । ଅଙ୍ଗୁରରସ
ଢାଳିହୋଇଯିବ ଓ ଥଳି ଗୁଡ଼ିକ ନଷ୍ଟ ହୋଇଯିବ । ୩୮ତେଣୁ
ଲୋକେ ସଦାବେଳେ ନୂଆ ଦ୍ରାକ୍ଷାରସ ନୂଆ ଚମଡ଼ା
ଥଳିରେ ରଖିଥାନ୍ତି । ୩୯ପୁରୁଣା ଦ୍ରାକ୍ଷାରସ ପିଇ ସାରି

କୌଣସି ଲୋକ କେବେହେଲେ ନୂଆ ଅଙ୍ଗୁରରସ ପିଇବାକୁ ଇଚ୍ଛା କରେନାହିଁ। କାରଣ ସେ କହେ, 'ପୁରୁଣା ଅଙ୍ଗୁରରସ ସ୍ବାଦ।'"

## ଯୀଶୁ ବିଶ୍ରାମବାରର ପ୍ରଭୁ

୬ ଥରେ ବିଶ୍ରାମବାରରେ ଯୀଶୁ ଶସ୍ୟ କ୍ଷେତ୍ର ଦେଇ
ଯାଉ ଥିଲେ। ତାହାଙ୍କର ଶିଷ୍ୟମାନେ କେତେକ
ଶସ୍ୟ ଛିଣ୍ଡାଇଲେ ଓ ତାହାକୁ ଦୁଇ ହାତରେ ଦଳିଲେ
ଏବଂ ଖାଇଲେ। ୨କେତେକ ଫାରୂଶୀ କହିଲେ, "ବିଶ୍ରାମବାରରେ
ଯାହା କରିବା ବିଧିସଙ୍ଗତ ନୁହେଁ, ତୁମ୍ଭେମାନେ ତାହା
କାହିଁକି କରୁଛ?"
୩ଯୀଶୁ ସେମାନଙ୍କୁ ଉତ୍ତର ଦେଲେ, "ଦାଉଦ ଓ
ତାହାଙ୍କ ସାଥୀମାନେ ଭୋକିଲା ଥିବାବେଳେ ଦାଉଦ କ'ଣ
କରିଥିଲେ, ତାହା କ'ଣ ତୁମ୍ଭେମାନେ ପଢ଼ିନାହିଁ? ୪ଦାଉଦ
ପରମେଶ୍ୱରଙ୍କ ଘର ଭିତରକୁ ପଶିଲେ। ପରମେଶ୍ୱରଙ୍କୁ
ଅର୍ପିତ ହୋଇଥିବା ରୋଟୀ ଉଠେଇ ଆଣି ନିଜେ ଖାଇଥିଲେ
ତଥା ସାଥୀମାନଙ୍କୁ ମଧ୍ୟ ଖାଇବାକୁ ଦେଇଥିଲେ। ଏହା
ମୋଶାଙ୍କ ଆଦେଶର ବିରୁଦ୍ଧାଚରଣ ଥିଲା। ମୋଶାଙ୍କ ଆଦେଶ
ଅନୁସାରେ ଏହି ରୋଟୀ କେବଳ ଯାଜକମାନଙ୍କ ବ୍ୟତୀତ
ଅନ୍ୟ କାହାରି ଖାଇବା ଉଚିତ ନୁହେଁ। ୫ତା'ପରେ ଯୀଶୁ
ଫାରୂଶୀମାନଙ୍କୁ କହିଲେ, "ମନୁଷ୍ୟପୁତ୍ର ବିଶ୍ରାମବାରର ମଧ୍ୟ
ମାଲିକ।"

## ଯୀଶୁ ବିଶ୍ରାମବାରରେ ଜଣେ ରୋଗୀକୁ ସୁସ୍ଥ କଲେ

୬ଆଉ ଗୋଟିଏ ବିଶ୍ରାମବାରରେ ଯୀଶୁ ଯିହୂଦୀ ପ୍ରାର୍ଥନାଗୃହକୁ
ଗଲେ। ସେଠାରେ ସେ ଲୋକମାନଙ୍କୁ ଉପଦେଶ ଦେଲେ।
ସେଠାରେ ଗୋଟିଏ ଲୋକ ଥିଲା, ଯାହାର ଡାହାଣ ହାତଟି
ପଙ୍ଗୁ ହୋଇ ଯାଇଥିଲା। ୭ବିଶ୍ରାମବାରରେ ଯୀଶୁ କାହାରିକୁ
ସୁସ୍ଥ କରି ଦେଉଛନ୍ତି କି ନାହିଁ ତାହା ଦେଖିବା ପାଇଁ
ସେଠାରେ ଯିହୂଦୀଧର୍ମଶାସ୍ତ୍ରୀ ଓ ଫାରୂଶୀମାନେ ଅପେକ୍ଷା
କରି ରହିଥିଲେ। ସେମାନେ ଦେଖିବାକୁ ଚାହୁଁଥିଲେ ଯେ
ଯୀଶୁ କିଛି ଭୁଲ କାମ କଲେ ସେମାନେ ତାହାଙ୍କୁ ଦୋଷୀ
ସାବ୍ୟସ୍ତ କରିପାରିବେ। ୮କିନ୍ତୁ ସେମାନେ କ'ଣ ଭାବୁଛନ୍ତି,
ତାହା ଯୀଶୁ ଜାଣି ପାରିଲେ। ତେଣୁ ଯେଉଁ ଲୋକଟିର
ହାତ ପଙ୍ଗୁ ହୋଇଯାଇଥିଲା, ଯୀଶୁ ତାହାକୁ କହିଲେ,
"ଉଠ ଓ ସମସ୍ତଙ୍କ ଆଗରେ ଠିଆ ହୋଇ ଯାଅ।" ସେ
ଉଠିପଡି ସମସ୍ତଙ୍କ ଆଗରେ ଠିଆ ହୋଇଗଲା। ୯ତା'ପରେ
ଯୀଶୁ ଲୋକମାନଙ୍କୁ କହିଲେ, "ମୁଁ ତୁମ୍ଭମାନଙ୍କୁ ପଚାରୁଛି
ବିଶ୍ରାମବାରରେ କାହାରି ମଙ୍ଗଳ କରିବା ନା କାହାରି କ୍ଷତି
କରିବା ଉଚିତ? କାହାରି ଜୀବନରକ୍ଷା କରିବା ଉଚିତ ନା
କାହାରି ଜୀବନ ନଷ୍ଟ କରିବା।" ୧୦ଯୀଶୁ ଚାରିଆଡ଼କୁ
ସମସ୍ତଙ୍କ ଉପରେ ଦୃଷ୍ଟି ପକେଇଲେ ଓ ପୁଣି ସେହି
ଲୋକଟିକୁ କହିଲେ, "ତୁମ୍ଭ ହାତ ବଢ଼ାଅ।" ସେ
ସେହିଭଳି କଲା ଓ ତା ହାତ ପୁଣି ସୁସ୍ଥ ହୋଇଗଲା।
୧୧ଫାରୂଶୀ ଓ ଧର୍ମଶାସ୍ତ୍ରୀମାନେ ଖୁବ୍ ରାଗିଗଲେ। ସେମାନେ
ନିଜ ନିଜ ଭିତରେ କଥାବାର୍ତ୍ତା କଲେ, "ଯୀଶୁଙ୍କ ପାଇଁ
କ'ଣ କରାଯିବ?"

## ଯୀଶୁ ତାହାଙ୍କ ବାରଜଣ ପ୍ରେରିତଙ୍କୁ ବାଛିଲେ

୧୨ସେହି ସମୟରେ ଯୀଶୁ ପ୍ରାର୍ଥନା କରିବା ପାଇଁ
ଗୋଟିଏ ପର୍ବତ ଉପରକୁ ଗଲେ। ସେ ସେଠାରେ
ପରମେଶ୍ୱରଙ୍କୁ ପ୍ରାର୍ଥନା କରିବାରେ ସାରା ରାତିଟି ବିତେଇଲେ।
୧୩ତା'ପରଦିନ ସକାଳେ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ ଡାକିଲେ।
ସେ ସେମାନଙ୍କ ମଧ୍ୟରୁ ବାରଜଣଙ୍କୁ ବାଛିଲେ। ସେ ଏହି
ଶିଷ୍ୟମାନଙ୍କୁ 'ପ୍ରେରିତ' ନାମ ଦେଲେ। ୧୪ସେମାନେ ହେଲେ:
ଶିମୋନ(ଯାହାଙ୍କୁ ସେ ପିତର ବୋଲି ମଧ୍ୟ ନାମ ଦେଲେ)।
ଶିମୋନଙ୍କ ଭାଇ ଆନ୍ଦ୍ରିୟ, ଯାକୁବ ଓ ଯୋହନ। ଫିଲିପ୍ପ
ଓ ବର୍ଥଲମି, ୧୫ମାଥିଉ, ଥୋମା, ଆଲଫିଙ୍କ ପୁତ୍ର ଯାକୁବ,
ଶିମୋନ ଯାହାଙ୍କୁ (ଉଦ୍‌ଯୋଗୀ) ବୋଲି କୁହନ୍ତି। ୧୬ଯାକୁବଙ୍କ
ପୁତ୍ର ଯିହୂଦା ଓ ଇଷ୍କାରିୟୋଥ ଯିହୂଦା। ପରେ ଏହି ଯିହୂଦା
ବିଶ୍ୱାସ ଘାତକତା କରି ଯୀଶୁଙ୍କୁ ଶତ୍ରୁ ହସ୍ତରେ ସମର୍ପଣ
କଲା।

## ଯୀଶୁ ଲୋକଙ୍କୁ ଉପଦେଶ ଦେଲେ ଓ ରୋଗମୁକ୍ତ କଲେ

୧୭ତାପରେ ଯୀଶୁ ସେମାନଙ୍କ ସହିତ ତଳକୁ ଆସି
ଗୋଟିଏ ସମତଳ ଭୂମି ଉପରେ ଠିଆହେଲେ। ସେଠାରେ
ବହୁତ ସଂଖ୍ୟାରେ ତାହାଙ୍କ ଶିଷ୍ୟମାନେ ଉପସ୍ଥିତ ଥିଲେ।
ତା ଛଡ଼ା ସମଗ୍ର ଯିହୂଦା, ଯିରୂଶାଲମ, ସମୁଦ୍ର ଉପକୂଳବର୍ତ୍ତୀ
ସହର ସୋର ଓ ସୀଦୋନରୁ ଆସି ବହୁ ସଂଖ୍ୟାରେ
ଲୋକ ସେଠାରେ ଜମା ହୋଇଥିଲେ। ୧୮ସେମାନେ ଯୀଶୁଙ୍କ
ଉପଦେଶ ଶୁଣିବାକୁ ଓ ସୁସ୍ଥ ହେବାକୁ ସେଠାକୁ ଆସିଥିଲେ।
ଯେଉଁମାନେ ଦୁଷ୍ଟାତ୍ମା ଯୋଗୁ କଷ୍ଟ ପାଉଥିଲେ, ସେମାନେ
ସେଠାକୁ ଆସି ସୁସ୍ଥ ହୋଇଗଲେ। ୧୯ସମସ୍ତ ଲୋକେ
ତାହାଙ୍କୁ ଛୁଇଁବାକୁ ଚେଷ୍ଟା କରୁଥିଲେ। କାରଣ ତାହାଙ୍କ
ଦେହରୁ ଶକ୍ତି ବାହାରୁ ଥିଲା। ସେ ସେହି ଲୋକମାନଙ୍କୁ
ସୁସ୍ଥ କରିଦେଲେ।
୨୦ଶିଷ୍ୟମାନଙ୍କ ଆଡ଼କୁ ଚାହିଁ ଯୀଶୁ କହିଲେ,

"ହେ ଦୀନହୀନ ଲୋକମାନେ! ତୁମ୍ଭେମାନେ ଧନ୍ୟ,
କାରଣ ତୁମ୍ଭେମାନେ ସ୍ୱର୍ଗରାଜ୍ୟର ଅଧିକାରୀ।
୨୧ ତୁମ୍ଭେମାନେ, ଯେଉଁମାନେ ଏବେ ଭୋକିଲା, ଧନ୍ୟ,
କାରଣ ତୁମ୍ଭେମାନେ ପରିତୃପ୍ତ ହେବ। ରୋଦନ
କରୁଛ ଯେ ତୁମ୍ଭେମାନେ, ତୁମ୍ଭେମାନେ ଏବେ ଧନ୍ୟ,
କାରଣ ତୁମ୍ଭେମାନେ ଆନନ୍ଦରେ ଜୀବନଯାପନ କରିବ।

୨୨"ମନୁଷ୍ୟପୁତ୍ରଙ୍କ ଯୋଗୁ ଲୋକମାନେ ତୁମ୍ଭମାନଙ୍କୁ ଘୃଣା
କରିବେ। ସେମାନେ ତୁମ୍ଭମାନଙ୍କୁ ଘୃଣା କରିବେ। ତୁମ୍ଭମାନଙ୍କୁ
ଅପମାନ ଦେବେ, ତୁମ୍ଭମାନଙ୍କ ବିଷୟରେ ମନ୍ଦ କଥା କହି
ତୁମ୍ଭମାନଙ୍କୁ ଅଗ୍ରାହ୍ୟ କରିଦେବେ, ଯେତେବେଳେ ଏହା
ଘଟିବ, ତୁମ୍ଭେ ଧନ୍ୟ ହେବ। ୨୩ସେତେବେଳେ ଆନନ୍ଦରେ
ନାଚଉଠିବ। କାରଣ ତୁମ୍ଭମାନଙ୍କ ପାଇଁ ସ୍ୱର୍ଗରେ ମହା
ପୁରସ୍କାର ରହିଛି। ସେମାନଙ୍କର ପୂର୍ବପୁରୁଷମାନେ
ଭବିଷ୍ୟଦ୍‌ବକ୍ତାମାନଙ୍କୁ ଠିକ୍ ସେହିଭଳି ବ୍ୟବହାର ଦେଖାଇ
ଥିଲେ ଯେଉଁ ଭଳି ଏବେ ସେମାନେ ତୁମ୍ଭକୁ ବ୍ୟବହାର
ଦେଖାଉଛନ୍ତି।

୨୪ “କିନ୍ତୁ ହେ ଧନୀଲୋକମାନେ! ତୁମ୍ଭକୁ ଧିକ୍! କାରଣ
ତୁମ୍ଭେମାନେ ଆରାମଦାୟକ ଜୀବନ କଟାଇ ଆସିଛ।
୨୫ ଧିକ୍ ତୁମ୍ଭେମାନେ, ଯେଉଁମାନେ ବର୍ତ୍ତମାନ ପରିତୃପ୍ତ
ଅଛ। କାରଣ ତୁମ୍ଭେମାନେ ଭୋକିଲା ହେବ। ଧିକ୍
ତୁମ୍ଭେମାନେ, ଯେଉଁମାନେ ବର୍ତ୍ତମାନ ହସୁଛ, କାରଣ
ତୁମ୍ଭେମାନେ ଦୁଃଖିତ ହେବ ଓ କାନ୍ଦିବ।

୨୬“ଧିକ ତୁମ୍ଭମାନଙ୍କୁ ଯେଉଁମାନଙ୍କୁ ବର୍ତ୍ତମାନ ଲୋକେ
‘ଭଲ’ ବୋଲି କହୁଛନ୍ତି। କାରଣ ସେମାନଙ୍କର ପୂର୍ବପୁରୁଷମାନେ
ଭଣ୍ଡ ଭବିଷ୍ୟଦ୍‌ବକ୍ତାମାନଙ୍କୁ ମଧ୍ୟ ଭଲ ବୋଲି କହୁଥିଲେ।

## ତୁମ୍ଭର ଶତ୍ରୁକୁ ପ୍ରେମ କର

୨୭“ତୁମ୍ଭେମାନେ ଯେଉଁମାନେ ମୋ କଥା ଶୁଣୁଛ, ମୁଁ
ସେହିମାନଙ୍କୁ କହୁଛି: ନିଜ ଶତ୍ରୁକୁ ପ୍ରେମ କର। ତୁମ୍ଭମାନଙ୍କୁ
ଯେଉଁମାନେ ଘୃଣା କରୁଛନ୍ତି, ସେମାନଙ୍କର ମଙ୍ଗଳ କର।
୨୮ଯେଉଁମାନେ ତୁମ୍ଭମାନଙ୍କୁ ଅଭିଶାପ ଦେଉଛନ୍ତି, ପରମେଶ୍ୱରଙ୍କୁ
ପ୍ରାର୍ଥନା କର ଯେ ସେ ସେମାନଙ୍କୁ ଆର୍ଶୀବାଦ କରନ୍ତୁ।
ଯେଉଁମାନେ ତୁମ୍ଭମାନଙ୍କୁ ଅପମାନ ଦେଉଛନ୍ତି, ତୁମ୍ଭେମାନେ
ସେମାନଙ୍କ ପାଇଁ ପ୍ରାର୍ଥନା କର। ୨୯ଯେଉଁଲୋକ ତୁମ୍ଭର
ଗୋଟିଏ ଗାଲରେ ଚାପୁଡ଼ାଟିଏ ମାରିବ, ତାହାକୁ ଅନ୍ୟ
ଗାଲଟି ବି ଦେଖାଇ ଦିଅ। ଯେଉଁ ଲୋକ ତୁମ୍ଭର ଜାମାଟି
ନେଇଯାଉଛି ତାହାକୁ ତୁମ୍ଭର ଧୋତିବି ନେଇଯିବାକୁ ଦିଅ।
୩୦ଯଦି କେହି ତୁମ୍ଭକୁ କିଛି ମାଗୁଛି, ତାହା ତାକୁ
ଦେଇଦିଅ। ଯଦି କୌଣସି ଲୋକ ତୁମ୍ଭର କିଛି ନେଇ
ଯାଏ, ତେବେ ତାହା ତାକୁ ଫେରେଇ ଦେବାକୁ କୁହନାହିଁ।
୩୧ଅନ୍ୟ ଲୋକମାନେ ତୁମ୍ଭମାନଙ୍କୁ ଯେଉଁଭଳି ବ୍ୟବହାର
ଦେଖାନ୍ତୁ ବୋଲି ଇଚ୍ଛା କର, ତୁମ୍ଭେମାନେ ମଧ୍ୟ ଅନ୍ୟମାନଙ୍କୁ
ସେହିଭଳି ବ୍ୟବହାର ଦେଖାଅ। ୩୨ଯେଉଁମାନେ ତୁମ୍ଭମାନଙ୍କୁ
ପ୍ରେମ କରନ୍ତି, ତୁମ୍ଭେମାନେ ଯଦି କେବଳ ସେହି ଲୋକମାନଙ୍କୁ
ପ୍ରେମ କରୁଛ, ତେବେ ତୁମ୍ଭେମାନେ କେଉଁ ପ୍ରଶଂସା
ପାଇବାକୁ ଯୋଗ୍ୟ? କାରଣ ପାପୀମାନେ ମଧ୍ୟ ସେହିମାନଙ୍କୁ
ପ୍ରେମ କରନ୍ତି, ଯେଉଁମାନେ ସେମାନଙ୍କୁ ପ୍ରେମ କରନ୍ତି।
୩୩ଯେଉଁମାନେ ତୁମ୍ଭମାନଙ୍କର ଉପକାର କରନ୍ତି, ତୁମ୍ଭେମାନେ
ଯଦି କେବଳ ସେହିମାନଙ୍କର ଉପକାର କରିବ, ତେବେ
ତୁମ୍ଭମାନଙ୍କର ମହତ ପଣିଆ କେଉଁଠି ରହିଲା? କାରଣ
ପାପୀମାନେ ମଧ୍ୟ ଏହିପରି କରନ୍ତି। ୩୪ଯେଉଁମାନଙ୍କଠାରୁ
ଫେରି ପାଇବାର ଆଶା ଥିବ, ତୁମ୍ଭେମାନେ ଯଦି କେବଳ
ସେହିମାନଙ୍କୁ ଟଙ୍କା ଧାର ଦିଅ, ତେବେ ତୁମ୍ଭେମାନେ
କେଉଁ ପ୍ରଶଂସା ପାଇବାକୁ ଯୋଗ୍ୟ? କାରଣ ପାପୀମାନେ
ମଧ୍ୟ ଟଙ୍କା ଫେରିପାଇବା ଆଶାରେ ଅନ୍ୟ ପାପୀମାନଙ୍କୁ
ଟଙ୍କା ଧାର ଦିଅନ୍ତି। ୩୫ତେଣୁ ନିଜ ଶତ୍ରୁକୁ ଭଲ ପାଅ।
ଲୋକଙ୍କର ଉପକାର କର ଓ ଫେରିପାଇବାର କୌଣସି
ଆଶା ନରଖି ଟଙ୍କା ଧାର ଦିଅ। ଏହା କଲେ ତୁମ୍ଭମାନଙ୍କୁ
ପ୍ରଚୁର ପୁରସ୍କାର ମିଳିବ। ତୁମ୍ଭେମାନେ ସର୍ବୋପରିସ୍ଥ
ପରମେଶ୍ୱରଙ୍କର ସନ୍ତାନ ହେବ। କାରଣ ସେ କପଟୀ
ଏବଂ ଦୁଷ୍ଟ ଲୋକମାନଙ୍କ ପ୍ରତି ମଧ୍ୟ ଦୟାଶୀଳ ଅଟନ୍ତି।
୩୬ତୁମ୍ଭମାନଙ୍କର ପରମପିତା ଯେଉଁଭଳି ତୁମ୍ଭମାନଙ୍କୁ ପ୍ରେମ
ଦେଖାନ୍ତି ଓ ଦୟା କରନ୍ତି, ତୁମ୍ଭେମାନେ ମଧ୍ୟ ସେହିଭଳି
ଅନ୍ୟମାନଙ୍କୁ ଦୟା ଦେଖାଅ ଓ ପ୍ରେମ କର।

## ନିଜକୁ ଦେଖ

୩୭“ତୁମ୍ଭେମାନେ କାହାରି ବିଚାର କରନାହିଁ। ତାହାହେଲେ
ତୁମ୍ଭମାନଙ୍କର ମଧ୍ୟ ବିଚାର କରାଯିବ ନାହିଁ। କୌଣସି
ବ୍ୟକ୍ତିକୁ ଦୋଷୀ କରନାହିଁ, ତେବେ ତୁମ୍ଭେ ମଧ୍ୟ ଦୋଷୀ
ବିବେଚିତ ହେବନାହିଁ। ଅନ୍ୟକୁ କ୍ଷମା କରିଦିଅ, ତେବେ
ତୁମ୍ଭମାନଙ୍କୁ ମଧ୍ୟ କ୍ଷମା କରିଦିଆଯିବ। ୩୮ଅନ୍ୟକୁ ଦିଅ,
ତେବେ ତୁମ୍ଭେମାନେ ପାଇବ। ତୁମ୍ଭମାନଙ୍କୁ ବହୁତ ଦିଆଯିବ।
ତୁମ୍ଭେମାନେ ଯେତିକି ଧରି ପାରିବ, ତା’ଠାରୁ ଅଧିକ
ତୁମ୍ଭମାନଙ୍କ ହାତରେ ଢାଳି ଦିଆଯିବ। ତୁମ୍ଭମାନଙ୍କୁ ଏତେ
ଅଧିକ ଦିଆଯିବ ଯେ ସେଥିରୁ ବହୁତ ତୁମ୍ଭମାନଙ୍କ ଅଣ୍ଟିରୁ
ଉଚ୍ଛୁଳି ପଡିବ। ତୁମ୍ଭେମାନେ ଯେଉଁଭଳି ଭାବରେ ଅନ୍ୟକୁ
ଦେବ, ପରମେଶ୍ୱର ବି ତୁମ୍ଭମାନଙ୍କୁ ସେହିଭଳି ଭାବରେ
ଦେବେ।”
୩୯ଯୀଶୁ ସେମାନଙ୍କୁ ଗୋଟିଏ ଦୃଷ୍ଟାନ୍ତ କଥା କହିଲେ,
“ଜଣେ ଅନ୍ଧ ଆଉ ଜଣେ ଅନ୍ଧକୁ ବାଟ ଦେଖାଇ
ପାରିବକି? ନା! ତାହାକଲେ ଉଭୟ ଗୋଟିଏ ଖାଲରେ
ଖସି ପଡିବେ। ୪୦ଜଣେ ଛାତ୍ର ତା ଶିକ୍ଷକ ଠାରୁ ବଡ଼
ହୋଇ ପାରିବ ନାହିଁ। କିନ୍ତୁ ଛାତ୍ର ଜଣକ ପ୍ରତ୍ୟେକ ବିଷୟ
ସଂପୂର୍ଣ୍ଣ ଶିଖି ସାରିବା ପରେ ନିଜ ଶିକ୍ଷକଙ୍କ ସମାନ
ହୋଇଯାଏ। ୪୧“ତୁମ୍ଭେମାନେ ନିଜ ଭାଇ ଆଖିରେ ପଡ଼ିଥିବା
ଗୋଟିଏ ଛୋଟ ଗୁଣ୍ଡିଟି ଆଡ଼କୁ କାହିଁକି ଚାହୁଁଛ? ତୁମ୍ଭମାନଙ୍କୁ
କ’ଣ ନିଜ ଆଖିରେ ପଡ଼ିଥିବା ବଡ଼ କାଠ ଖଣ୍ଡିକ
ଦେଖାଯାଉନାହିଁ? ୪୨ତୁମ୍ଭେ ଯେତେବେଳେ ନିଜ ଆଖିରେ
ପଡ଼ିଥିବା ବଡ଼ କାଠ ଖଣ୍ଡିକ ଦେଖି ପାରୁନାହିଁ, ସେତେବେଳେ
ନିଜ ଭାଇକୁ କିପରି କହି ପାରିବ: ‘ଭାଇ, ଆସ ତୁମ୍ଭ
ଆଖିରେ ପଡିଥିବା ଛୋଟ ଗୁଣ୍ଡିଟି ବାହାର କରିଦେବି’।
ଆରେ କପଟୀ! ଆଗ ନିଜ ଆଖିରେ ପଡ଼ିଥିବା କାଠ
ଖଣ୍ଡିକ ବାହାର କରିଦିଅ, ତାହେଲେ ତୁମ୍ଭେ ସ୍ପଷ୍ଟ ଦେଖିପାରିବ
ଓ ଭାଇର ଆଖିରେ ପଡ଼ିଥିବା ଛୋଟ ଗୁଣ୍ଡିଟି ବାହାର କରି
ପାରିବ।

## ଦୁଇ ପ୍ରକାରର ଫଳ

୪୩“ଗୋଟିଏ ଭଲ ଗଛରେ ଖରାପ ଫଳ ଫଳେ ନାହିଁ।
ଠିକ୍ ସେହିଭଳି ଗୋଟିଏ ଖରାପ ଗଛରେ ଭଲ ଫଳ
ଫଳେ ନାହିଁ। ୪୪ପ୍ରତ୍ୟେକ ଗଛ ତା’ର ଫଳ ଦ୍ୱାରା ଚିହ୍ନି
ହୁଏ। ଲୋକମାନେ ଅନାବନା କଣ୍ଟା ଗଛରୁ ଡିମ୍ବିରିଫଳ
ସଂଗ୍ରହ କରନ୍ତିନାହିଁ କି କଣ୍ଟା ବୁଦାରୁ ଅଙ୍ଗୁର କୋଳି
ପାଆନ୍ତିନାହିଁ। ୪୫ଜଣେ ଭଲ ଲୋକର ମନ ଭିତରେ ଭଲ
ବିଷୟ ସଞ୍ଚିତ ହୋଇ ରହିଥାଏ। ତେଣୁ ତା’ମନ ଭିତରୁ
ଭଲ ବିଷୟ ବାହାରିଥାଏ। କିନ୍ତୁ ଗୋଟିଏ ଖରାପ ଲୋକର
ମନ ଭିତରେ ଖରାପ ବିଷୟ ସଞ୍ଚିତ ହୋଇ ରହିଥାଏ।
ତେଣୁ ତା’ ମନ ଭିତରୁ ଖରାପ ବିଷୟ ବାହାରିଥାଏ।
ଜଣେ ଲୋକର ମନ ଭିତରେ ଯାହା ଥାଏ, ସେ ତାହା
କହିଥାଏ।

## ଦୁଇ ପ୍ରକାରର ମଣିଷ

୪୬"ତୁମ୍ଭେମାନେ ମୋତେ କାହିଁକି 'ପ୍ରଭୁ, ପ୍ରଭୁ' ବୋଲି
ଡାକୁଛ? କିନ୍ତୁ ମୁଁ ଯାହା କହୁଛି, ତୁମ୍ଭେମାନେ ତ ତାହା
କରୁନାହିଁ? ୪୭ଯେଉଁଲୋକ ମୋପାଖକୁ ଆସେ, ମୋ ଉପଦେଶ
ଶୁଣେ ଓ ତାହାକୁ ମାନେ, ୪୮ସେ ଲୋକ ଘର ତିଆରି
କରୁଥିବା ଗୋଟିଏ ଲୋକ ଭଳି। ସେ ଗଭୀର କରି ଗାତ
ଖୋଳେ ଓ ଦୃଢ଼ ପଥର ଉପରେ ମୂଳଦୁଆ ପକାଏ!
ଯେତେବେଳେ ବଢ଼ିଆସେ, ପାଣି ସେ ଘରକୁ ଭସେଇ
ନେବାକୁ ଧକ୍କା ମାରେ, କିନ୍ତୁ ଆଦୌ ହଲେଇ ପାରେନାହିଁ।
କାରଣ ଘରଟି ମଜ୍‌ଭୁତ ଭାବରେ ତିଆରି ହୋଇଥାଏ।
୪୯କିନ୍ତୁ ଯେଉଁ ଲୋକ ମୋର ଉପଦେଶ ଶୁଣେ, କିନ୍ତୁ
ତାହା ମାନେ ନାହିଁ, ସେ ଲୋକ ମୂଳଦୁଆ ନ ପକାଇ
କେବଳ ବାଲି ଉପରେ ଘର ତୋଳୁଥିବା ଲୋକଟିଏ ପରି।
ଯେତେବେଳେ ବଢ଼ିଆସେ, ଘରଟି ଅତି ସହଜରେ ପଡ଼ିଯାଏ
ଏବଂ ସଂପୂର୍ଣ୍ଣ ରୂପେ ନଷ୍ଟ ହୋଇଯାଏ।"

## ବିଶ୍ୱାସର ଶକ୍ତି

୭ ଯୀଶୁ ଲୋକମାନଙ୍କୁ ଯାହାସବୁ ଶୁଣେଇବାକୁ ଚାହୁଁଥିଲେ,
ସେ ସମସ୍ତ କହି ସାରିବା ପରେ ସେ କଫର୍ନାହୂମ
ଚାଲିଗଲେ। ୨ସେ ସମୟରେ କଫର୍ନାହୂମରେ ଜଣେ
ଶତସେନାପତି ଥିଲେ। ତାହାଙ୍କର ଗୋଟିଏ ଚାକର ଏତେ
ବେମାର ଥିଲା ଯେ ସେ ପ୍ରାୟ ମରିଯିବା ଅବସ୍ଥାରେ ଥିଲା।
ଶତସେନାପତି ଚାକରଟିକୁ ଖୁବ୍ ଭଲ ପାଉଥିଲେ।
୩ଶତସେନାପତି ଜଣକ ଯୀଶୁଙ୍କ ବିଷୟରେ ଶୁଣି ତାହାଙ୍କ
ପାଖକୁ କେତେକ ପ୍ରାଚୀନ ଯିହୂଦୀନେତାଙ୍କୁ ପଠାଇଲେ।
ସେ ଚାହୁଁଥିଲେ ଯେ ଲୋକେ ଯାଇ ଯୀଶୁଙ୍କୁ ଆସିବାକୁ
ଅନୁରୋଧ କରନ୍ତୁ ଓ ଯୀଶୁ ଆସି ଚାକରଟିର ଜୀବନ
ରକ୍ଷା କରିଦିଅନ୍ତୁ। ୪ସେହି ପ୍ରାଚୀନ ନେତାମାନେ ଯୀଶୁଙ୍କ
ପାଖକୁ ଗଲେ। ସେମାନେ ଯୀଶୁଙ୍କୁ ଅନୁନୟ ପୂର୍ବକ
ଅନୁରୋଧ କରି କହିଲେ, "ଶତସେନାପତି ଜଣକ ଆପଣଙ୍କ
ସାହାଯ୍ୟ ପାଇବାକୁ ଯୋଗ୍ୟ। ୫ସେ ଆମ୍ଭ ଲୋକଙ୍କୁ ଭଲ
ପାଆନ୍ତି ଏବଂ ଆମ୍ଭ ପାଇଁ ପ୍ରାର୍ଥନାଗୃହ ତିଆରି କରିଛନ୍ତି।"
୬ତେଣୁ ଯୀଶୁ ସେମାନଙ୍କ ସହିତ ଯିବାପାଇଁ ବାହାରି
ପଡିଲେ। ଯୀଶୁ ଶତସେନାପତି ଘର ପାଖା ପାଖି ଆସି
ପହଞ୍ଚି ଯାଇଥିବା ସମୟରେ ଶତସେନାପତି ଜଣକ ନିଜ
ବନ୍ଧୁମାନଙ୍କୁ ଯୀଶୁଙ୍କ ପାଖକୁ ଏହି କଥା କହିବା ପାଇଁ
ପଠାଇଲେ, "ପ୍ରଭୁ, ନିଜକୁ ଆଉ କଷ୍ଟ ଦିଅନ୍ତୁ ନାହିଁ।
କାରଣ ମୁଁ ଏତେ ଭଲ ନୁହେଁ ଯେ ଆପଣ ମୋ ଘରକୁ
ଆସିବେ। ୭କେବଳ ସେଇଥିପାଇଁ ମୁଁ ନିଜେ ଆପଣଙ୍କ
ପାଖକୁ ଯିବାକୁ ନିଜକୁ ଯୋଗ୍ୟ ମନେ କରି ନ ଥିଲି।
ଆପଣ କେବଳ ଆଦେଶ ଦିଅନ୍ତୁ ଓ ମୋର ଚାକରଟି
ଭଲ ହୋଇଯିବ। ୮ମୁଁ ଆପଣଙ୍କର ଅଧିକାର ବିଷୟରେ
ବୁଝି ପାରୁଛି। ମୁଁ ନିଜେ ଜଣେ ଅଧିକାରୀଙ୍କ ଅଧିନରେ
କାମ କରୁଛି ଏବଂ ମୋ ଅଧିନରେ ମଧ୍ୟ କେତେକ
ସୈନ୍ୟ ରହିଛନ୍ତି। ମୁଁ ଯଦି ଜଣେ ସୈନ୍ୟକୁ କହେ,
'ଯାଅ' ତେବେ ସେ ଚାଲିଯାଏ। ମୁଁ ଯଦି ଆଉ ଜଣକୁ
କୁହେ, 'ଆସ' ତେବେ ସେ ଚାଲିଆସେ। ମୁଁ ଯଦି ମୋ
ଚାକରକୁ କୁହେ, 'ଏହା କର', ତେବେ ସେ ତାହା
କରେ।"
୯ଯୀଶୁ ଏହା ଶୁଣିସାରି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ।
ସେ ତାହାଙ୍କୁ ଅନୁସରଣ କରୁଥିବା ଲୋକମାନଙ୍କ ଆଡ଼କୁ
ବୁଲି ପଡ଼ି କହିଲେ, "ମୁଁ ତୁମ୍ଭମାନଙ୍କୁ କହି ରଖୁଛି ଯେ
ଏଭଳି ବିଶ୍ୱାସ ମୋତେ ଇସ୍ରାୟେଲରେ ମଧ୍ୟ ମିଳିନାହିଁ।"
୧୦ଯୀଶୁଙ୍କ ପାଖକୁ ଯେଉଁ ଲୋକମାନଙ୍କୁ ପଠାଯାଇଥିଲା,
ସେମାନେ ଘରକୁ ଫେରିଯିବାପରେ ଦେଖିଲେ ଯେ ଚାକରଟି
ସୁସ୍ଥ ହୋଇ ଯାଇଛି।

## ମୃତ ଲୋକକୁ ଜୀବନଦାନ

୧୧ତା'ପର ଦିନ ଯୀଶୁ ନାଇନ ନଗରକୁ ଗଲେ।
ତାହାଙ୍କ ସହିତ ତାଙ୍କ ଶିଷ୍ୟମାନେ ଓ ବହୁ ସଂଖ୍ୟାରେ
ଅନ୍ୟ ଲୋକମାନେ ଯାଉଥିଲେ। ୧୨ଯୀଶୁ ଯେତେବେଳେ
ନଗରଦ୍ୱାର ନିକଟରେ ପହଞ୍ଚିଲେ ସେତେବେଳେ ଗୋଟିଏ
ଶବ ନିଆ ଯାଉଥିବାର ସେ ଦେଖିଲେ। ସେ ତା' ବିଧବା
ମାଆର ଏକମାତ୍ର ସନ୍ତାନ ଥିଲା। ପୁଅକୁ ନିଆ ଯାଉଥିବା
ସମୟରେ ସେଠାରେ ତା ମାଆ ସହିତ ମଧ୍ୟ ନଗରର
ବହୁ ସଂଖ୍ୟକ ଲୋକ ଥିଲେ। ୧୩ସେହି ବିଧବାକୁ ଦେଖି
ଯୀଶୁଙ୍କ ମନରେ କରୁଣା ଜାତ ହେଲା। ସେ ତାକୁ
କହିଲେ, "କାନ୍ଦ ନାହିଁ।" ୧୪ଯୀଶୁ କୋକେଇ ପାଖକୁ
ଯାଇ ତାହା ଛୁଇଁଲେ। କୋକେଇ କାନ୍ଧେଇ ନେଉଥିବା
ଲୋକେ ଅଟକିଗଲେ। ଯୀଶୁ ମୃତ ପୁତ୍ରକୁ କହିଲେ,
"ଯୁବକ, ମୁଁ ତୁମ୍ଭକୁ କହୁଛି ଠିଆ ହୁଅ।" ୧୫ମୃତ ପୁତ୍ର
ଉଠି ବସିଲା। ସେ କଥା କହିବାକୁ ଲାଗିଲା। ଯୀଶୁ ତାକୁ
ତା ମାଆ ହାତରେ ଦେଇଦେଲେ।
୧୬ସବୁଲୋକେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ
ପରମେଶ୍ୱରଙ୍କ ମହିମା ଗାନ କଲେ। ସେମାନେ କହିଲେ,
"ଜଣେ ମହାନ ଭବିଷ୍ୟଦ୍‌ବକ୍ତା ଆମ୍ଭମାନଙ୍କ ପାଖକୁ
ଆସିଛନ୍ତି।" ଆହୁରି ମଧ୍ୟ ସେମାନେ କହିଲେ,
"ପରମେଶ୍ୱର ନିଜ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆସି
ଯାଇଛନ୍ତି।"
୧୭ଯୀଶୁଙ୍କ ବିଷୟରେ ଏହି ଖବର ଯିହୂଦା ଓ ଆଖପାଖ
ସମସ୍ତ ଅଞ୍ଚଳରେ ପ୍ରଚାରିତ ହୋଇଗଲା।

## ଯୋହନଙ୍କ ପ୍ରଶ୍ନ

୧୮ଯୋହନଙ୍କ ଶିଷ୍ୟମାନେ ଯୋହନଙ୍କୁ ଏ ସମସ୍ତ ଖବର
ଜଣାଇଲେ। ଯୋହନ ତାହାଙ୍କର ଦୁଇଜଣ ଶିଷ୍ୟଙ୍କୁ ଡକାଇଲେ।
୧୯ଯୋହନ ସେମାନଙ୍କୁ ପ୍ରଭୁ (ଯୀଶୁ)ଙ୍କ ପାଖକୁ ଏହି କଥା
ପଚାରି ପଠାଇଲେ: "ଯାହାଙ୍କର ଆସିବାର ଥିଲା, ଆପଣ
କ'ଣ ସେହି ଲୋକ ନା ଆମ୍ଭେ ଆଉ କାହାରି ଅପେକ୍ଷାରେ
ରହିବୁ?"
୨୦ସେ ଲୋକମାନେ ଯୀଶୁଙ୍କ ପାଖରେ ପହଞ୍ଚିଲେ।
ସେମାନେ ଯୀଶୁଙ୍କୁ ପଚାରିଲେ, "ବାପ୍ତିଜକ ଯୋହନ ଆମ୍ଭକୁ
ତୁମ୍ଭପାଖକୁ ଏହି ପ୍ରଶ୍ନ ପଚାରିବାକୁ ପଠାଇଲେ: 'ଯାହାଙ୍କର
ଆସିବାର ଥିଲା, ଆପଣ କ'ଣ ସେହି ଲୋକ ନା ଆମ୍ଭେ
ଆଉ ଅନ୍ୟ କାହାରି ଅପେକ୍ଷାରେ ରହିବୁ?'"

୨୧ସେହି ସମୟରେ ଯୀଶୁ ଅନେକ ଲୋକଙ୍କୁ ସେମାନଙ୍କ
ରୋଗରୁ ସୁସ୍ଥ, ବେଦନା ଦୂର ଓ ଦୁଷ୍ଟାତ୍ମା କବଳରୁ ମୁକ୍ତ
କରି ଦେଉଥିଲେ। ସେ ଅନେକ ଅନ୍ଧଙ୍କୁ ଦୃଷ୍ଟିଶକ୍ତି
ଦେଉଥିଲେ। ୨୨ତାପରେ ଯୀଶୁ ଯୋହନଙ୍କ ସେହି ଶିଷ୍ୟମାନଙ୍କୁ
କହିଲେ, "ଯାଅ ଓ ଏଠାରେ ତୁମ୍ଭେ ଯାହା ସବୁ ଦେଖିଲ
ଓ ଶୁଣିଲ, ତାହା ଯୋହନଙ୍କୁ ଯାଇ ଜଣାଅ। ଅନ୍ଧମାନେ
ଦେଖି ପାରୁଛନ୍ତି, ଛୋଟାମାନେ ଚାଲି ପାରୁଛନ୍ତି; କୁଷ୍ଠ
ରୋଗୀ ସୁସ୍ଥ ହୋଇ ଯାଉଛନ୍ତି; ବଧିରଲୋକ ଶୁଣିପାରୁଛନ୍ତି;
ମରିଯାଉଥିବା ଲୋକଙ୍କୁ ପୁଣି ଜୀବନ ଦିଆଯାଉଛି ଏବଂ
ଗରିବ ଲୋକମାନଙ୍କୁ ପରମେଶ୍ୱରଙ୍କ ରାଜ୍ୟର ସୁସମାଚାର
ଶୁଣେଇ ଦିଆଯାଉଛି। ୨୩ଯେଉଁଲୋକ ମୋତେ ଗ୍ରହଣ
କରିବ, ସେ ଧନ୍ୟ।"
୨୪ଯୋହନଙ୍କ ଶିଷ୍ୟମାନେ ଚାଲିଯିବା ପରେ ଯୀଶୁ
ଲୋକମାନଙ୍କୁ ଯୋହନଙ୍କ ବିଷୟରେ କହିବାକୁ ଆରମ୍ଭ
କଲେ: "ତୁମ୍ଭେମାନେ ମରୁଭୂମିରେ କ'ଣ ଦେଖିବାକୁ
ଯାଇଥିଲ? କ'ଣ ପବନରେ ଦୋହଲୁଥିବା ନଳଗଛ?
୨୫ତା'ନହେଲେ, ତୁମ୍ଭେ କ'ଣ ଦେଖିବାକୁ ସେଠାକୁ ଯାଇଥିଲ?
କ'ଣ ଉତ୍ତମ ବସ୍ତ୍ର ପିନ୍ଧିଥିବା ଜଣେ ଲୋକଙ୍କୁ? ନା,
ଯେଉଁମାନେ ଉତ୍ତମ ବସ୍ତ୍ର ପିନ୍ଧନ୍ତି ଏବଂ ଆମୋଦପ୍ରମୋଦରେ
ଜୀବନ କଟାନ୍ତି, ସେମାନେ ତ ରାଜାଙ୍କ ପ୍ରାସାଦ ମାନଙ୍କରେ
ଥାଆନ୍ତି। ୨୬ତେବେ ତୁମ୍ଭେମାନେ କ'ଣ ଦେଖିବାପାଇଁ
ବାହାରି ଯାଇଥିଲ? କ'ଣ ଜଣେ ଭବିଷ୍ୟଦ୍‌ବକ୍ତାଙ୍କୁ? ହଁ, ମୁଁ
ତୁମ୍ଭକୁ କହୁଛି। ଯୋହନ ଜଣେ ଭବିଷ୍ୟଦ୍‌ବକ୍ତାଙ୍କଠାରୁ
ମଧ୍ୟ ମହାନ୍ ଅଟନ୍ତି। ୨୭ଯୋହନଙ୍କ ବିଷୟରେ ଏହା
ଲେଖାଅଛି:

'ଦେଖ, ମୁଁ ତୁମ୍ଭ ଆଗରୁ ମୋହର ଦୂତଙ୍କୁ ପଠାଉଛି।
ସେ ତୁମ୍ଭପାଇଁ ପୂର୍ବରୁ ରାସ୍ତା ତିଆରି କରିଦେବେ।'
ମଲାଖି ୩:୧

୨୮ମୁଁ ତୁମ୍ଭକୁ କହୁଛି, ନାରୀ ଗର୍ଭ ମଧ୍ୟରୁ ଜାତ ସମସ୍ତଙ୍କ
ମଧ୍ୟରେ ଯୋହନଙ୍କ ଠାରୁ ଅଧିକ ମହାନ୍ କେହି ନାହିଁ।
ତଥାପି ପରମେଶ୍ୱରଙ୍କ ରାଜ୍ୟର ଯେଉଁ ଲୋକ ସବୁଠାରୁ
ଛୋଟ, ସେ ମଧ୍ୟ ଯୋହନଙ୍କ ଠାରୁ ମହାନ।"
୨୯ଯୀଶୁଙ୍କ ଉପଦେଶ ଶୁଣୁଥିବା ସବୁଲୋକ ସ୍ୱୀକାର
କଲେ ଯେ, ପରମେଶ୍ୱରଙ୍କ ଉପଦେଶ ସବୁଠାରୁ ଉତ୍ତମ।
ଏପରିକି କର ଆଦାୟକାରୀମାନେ ମଧ୍ୟ ଏଥିରେ ଏକମତ
ହୋଇଗଲେ। ସେମାନେ ସମସ୍ତେ ପୂର୍ବରୁ ଯୋହନଙ୍କ ଦ୍ୱାରା
ବାପ୍ତିଜିତ ହୋଇଥିଲେ, ୩୦କିନ୍ତୁ ଫାରୂଶୀ ଓ ଧର୍ମଶାସ୍ତ୍ରୀମାନେ
ସେମାନଙ୍କ ପାଇଁ ପରମେଶ୍ୱରଙ୍କ ଦତ୍ତ ଯୋଜନାକୁ ଅସ୍ୱୀକାର
କଲେ ଓ ଯୋହନଙ୍କ ଦ୍ୱାରା ବାପ୍ତିସ୍ମ ଗ୍ରହଣ କଲେ
ନାହିଁ।)
୩୧ତେବେ ମୁଁ ପୁଣି ଏହି ଯୁଗର ଲୋକମାନଙ୍କ
ବିଷୟରେ କ'ଣ କହିବି? ମୁଁ କାହା ସହିତ ସେମାନଙ୍କୁ
ତୁଳନା କରିବି? ସେମାନେ କାହା ଭଳି ହେବେ? ୩୨ସେମାନେ
ବଜାରରେ, ବସିଥିବା ସେହି ପିଲାମାନଙ୍କ ଭଳି, ଯେଉଁମାନଙ୍କ
ଭିତରୁ ଦଳେ ଅନ୍ୟଦଳକୁ କହନ୍ତି:

'ଆମେ ତୁମ୍ଭପାଇଁ ବଂଶୀ ବଜାଇଲୁ, କିନ୍ତୁ ତୁମ୍ଭେ
ନାଚିଲନାହିଁ। ଆମ୍ଭେ ଗୋଟିଏ ଶୋକଗୀତ ଗାଇଲୁ,
କିନ୍ତୁ ତୁମ୍ଭେମାନେ କାନ୍ଦିଲନାହିଁ।'

୩୩"ବାପ୍ତିଜକ ଯୋହନ ଆସିଲେ। ସେ ଅନ୍ୟ ଲୋକମାନଙ୍କ
ଭଳି ଖାଉନଥିଲେ କିମ୍ବା ଅଙ୍ଗୁରରସ ପିଉନଥିଲେ। ଆଉ
ତୁମ୍ଭେମାନେ କହୁଛ ଯେ, 'ତାହାଙ୍କ ଦେହରେ ଭୂତ
ପ୍ରବେଶ କରିଛି।' ୩୪ପୁଣି ମନୁଷ୍ୟପୁତ୍ର ଅନ୍ୟମାନଙ୍କ ଭଳି
ଖାଇଲେ ଓ ଅଙ୍ଗୁରରସ ପିଇଲେ। ଆଉ ତୁମ୍ଭେମାନେ
କହୁଛ, 'ଦେଖ, ଏ ଲୋକ ଜଣେ ପେଟୁ ଓ ଗୋଟାଏ
ମଦୁଆ। କର ଆଦାୟକାରୀ ଓ ପାପୀମାନେ ତା'ର ସାଙ୍ଗ
ଅଟନ୍ତି।' ୩୫କିନ୍ତୁ ଆପଣା କାର୍ଯ୍ୟ ଦ୍ୱାରା ଜ୍ଞାନ ଯଥାର୍ଥ
ବୋଲି ପ୍ରକାଶିତ ହୋଇଥାଏ।"

## ଫାରୂଶୀ ଶିମୋନ

୩୬ଫାରୂଶୀ ମାନଙ୍କ ମଧ୍ୟରୁ ଜଣେ ଯୀଶୁଙ୍କୁ ନିଜ ସହିତ
ଖାଇବା ପାଇଁ ନିମନ୍ତ୍ରଣ କଲେ। ଯୀଶୁ ସେହି ଫାରୂଶୀଙ୍କ
ଘରକୁ ଗଲେ ଓ ଖାଇବା ପାଇଁ ବସିଲେ। ୩୭ସେହି
ସମୟରେ ସେହି ନଗରରେ ଜଣେ ପାପୀ ସ୍ତ୍ରୀ ଲୋକ
ଥିଲା। ସେ ଜାଣିପାରିଲା ଯେ ଯୀଶୁ ଫାରୂଶୀଙ୍କ ଘରେ
ଖାଉଛନ୍ତି। ତେଣୁ ସେହି ସ୍ତ୍ରୀ ଲୋକଟି ଗୋଟିଏ ସ୍ଫଟିକ
ପାତ୍ରରେ କିଛି ଅତର ଆଣିଲା। ୩୮ସେ ଯୀଶୁଙ୍କ ପଛଆଡେ
ଗୋଡ ପାଖରେ ଠିଆ ହେଲା। ସେ କାନ୍ଦୁଥିଲା। ତା'ପରେ
ସେ ଯୀଶୁଙ୍କ ପାଦ ତା' ଲୁହରେ ଧୋଇଦେଲା। ନିଜ
ମୁଣ୍ଡର ବାଳରେ ଯୀଶୁଙ୍କ ପାଦ ପୋଛିଦେଲା। ତାହାଙ୍କ
ପାଦରେ ବହୁବାର ଚୁମ୍ବନ ଦେଲା ଓ ପାଦ ଉପରେ ଅତର
ଢ଼ାଳିଦେଲା। ୩୯ଯେଉଁ ଫାରୂଶୀ ଜଣକ ଯୀଶୁଙ୍କୁ ନିଜ
ଘରକୁ ଡାକିଥିଲେ, ସେ ଏସବୁ ଦେଖିଲେ। ସେ ମନେ
ମନେ ଭାବିଲେ, "ଯୀଶୁ ଯଦି ପ୍ରକୃତରେ ଜଣେ ଭବିଷ୍ୟଦ୍‌ବକ୍ତା
ହୋଇଥାନ୍ତେ, ତେବେ ସେ ନିଶ୍ଚୟ ଜାଣି ପାରନ୍ତେ ଯେ,
ଯେଉଁ ସ୍ତ୍ରୀ ଲୋକଟି ତାହାଙ୍କୁ ଛୁଇଁଛି ସେ ଜଣେ
ପାପିନୀ।"
୪୦ଯୀଶୁ ଫାରୂଶୀଙ୍କୁ କହିଲେ, "ଶିମୋନ, ମୋର ତୁମ୍ଭକୁ
କିଛି କହିବାର ଅଛି।"
ଶିମୋନ କହିଲେ, "ଗୁରୁ, କୁହନ୍ତୁ!"
୪୧ଯୀଶୁ କହିଲେ, "କୌଣସି ସାହୁକାର ପାଖରୁ ଦୁଇଜଣ
ଖାତକ କରଜ ନେଇଥିଲେ। ଜଣେ ପାଞ୍ଚଶହରୂପା ଟଙ୍କା
କରଜ ନେଇଥିଲା ଓ ଆଉ ଜଣେ ପଚାଶଟି ରୂପା ଟଙ୍କା
ନେଇଥିଲା। ୪୨ସେମାନଙ୍କ ପାଖରେ ଟଙ୍କା ନଥିବାରୁ ସେମାନେ
ଋଣ ପରିଶୋଧ କରି ପାରୁନଥିଲେ। ତେଣୁ ସାହୁକାର
ଦୁଇଜଣଙ୍କୁ ଋଣ ମୁକ୍ତ କରିଦେଲେ। ତେବେ ଏ ଦୁଇଜଣଙ୍କ
ମଧ୍ୟରୁ କିଏ ସାହୁକାରଙ୍କୁ ଅଧିକ ଭଲ ପାଇବ?
୪୩ଶିମୋନ ଉତ୍ତର ଦେଲେ, "ମୁଁ ଭାବୁଛି, ସାହୁକାର
ଯାହାକୁ ଅଧିକା ଟଙ୍କା ଛାଡ଼ିଦେଲେ, ସେହି ଲୋକଙ୍କୁ
ଅଧିକା ଭଲ ପାଇବ।"
ଯୀଶୁ ଶିମୋନଙ୍କୁ କହିଲେ, "ତୁମ୍ଭେ ଠିକ୍ କଥା
କହିଛ।" ୪୪ତା'ପରେ ଯୀଶୁ ସ୍ତ୍ରୀ ଲୋକଟି ଆଡକୁ

ବୁଲପଡ଼ି ଶିମୋନଙ୍କୁ କହିଲେ, “ତୁମ୍ଭେ ଏ ସ୍ତ୍ରୀ ଲୋକଟିକୁ ଦେଖୁଛ? ମୁଁ ତୁମ୍ଭ ଘରକୁ ଆସିଲି। ଅଥଚ ତୁମ୍ଭେ ମୋତେ ଗୋଡ ଧୋଇବାକୁ ପାଣି ସୁଦ୍ଧା ଦେଇନାହିଁ, କିନ୍ତୁ ଏ ସ୍ତ୍ରୀ ଲୋକଟି ମୋର ପାଦକୁ ଲୁହରେ ଧୋଇ ଦେଲା। ଏବଂ ତାବାଳରେ ପୋଛିଦେଲା। ୪୫ତୁମ୍ଭେ ମୋତେ ଚୁମ୍ବନ ଦେଇନାହିଁ, କିନ୍ତୁ ଯେଉଁ ସମୟରୁ ମୁଁ ଭିତରକୁ ଆସିଲିଣି, ସେସମୟରୁ ଏ ପର୍ଯ୍ୟନ୍ତ ସେ ମୋର ପାଦରେ ଚୁମ୍ବନ ଦେବା ବନ୍ଦ କରିନାହିଁ। ୪୬ତୁମ୍ଭେ ମୋ ମୁଣ୍ଡରେ ତେଲ ଲଗାଇଲ ନାହିଁ, କିନ୍ତୁ ଏ ସ୍ତ୍ରୀ ଲୋକଟି ମୋ ପାଦରେ ଅତର ଲଗାଇଲା। ୪୭ଏଣୁ ମୁଁ ତୁମ୍ଭକୁ କହୁଛି ଯେ, ତା'ର ଅନେକ ପାପ କ୍ଷମା କରିଦିଆଗଲା। ଏ କଥା ସ୍ପଷ୍ଟ, କାରଣ ସେ ଅଗାଧ ପ୍ରେମ ଦେଖାଇଛି। ଯେଉଁ ଲୋକ କ୍ଷମା ପାଇବାପାଇଁ କମ୍ ଆବଶ୍ୟକତା ଅନୁଭବ କରିଥାଏ, ସେ କ୍ଷମା ପାଇବାବେଳେ କମ୍ ପ୍ରେମ ଅନୁଭବ କରିଥାଏ।”

୪୮ତା'ପରେ ଯୀଶୁ ସେହି ସ୍ତ୍ରୀଲୋକଟିକୁ କହିଲେ, “ତୋର ପାପ କ୍ଷମା କରିଦିଆଗଲା।”

୪୯ଯେଉଁମାନେ ଯୀଶୁଙ୍କ ସହିତ ଭୋଜନ କରୁଥିଲେ, ସେମାନେ ମନେମନେ ଭାବିବାକୁ ଲାଗିଲେ, “ଏ ଲୋକ ନିଜକୁ କ'ଣ ଭାବୁଛି? ସେ କିପରି ପାପଗୁଡ଼ିକୁ କ୍ଷମା କରିପାରିବ?”

୫୦ଯୀଶୁ ସ୍ତ୍ରୀ ଲୋକଟିକୁ କହିଲେ, “ତୁମ୍ଭେ ବିଶ୍ୱାସ କରିଥିବାରୁ ତୁମ୍ଭେ ପାପରୁ ରକ୍ଷା ପାଇଅଛ। “ଶାନ୍ତିରେ ଯାଅ।”

## ଶିଷ୍ୟମାନଙ୍କ ସହିତ ଯୀଶୁ

୮ ଏହାପରେ ଯୀଶୁ ନଗରନଗର, ଗାଁଗାଁ ବୁଲି ପରମେଶ୍ୱରଙ୍କ ରାଜ୍ୟର ସୁସମାଚାର ଲୋକମାନଙ୍କୁ ଶୁଣାଇଲେ। ତାହାଙ୍କ ସହିତ ବାରଜଣ ପ୍ରେରିତ ମଧ୍ୟ ରହିଥିଲେ। ୨କେତେକ ସ୍ତ୍ରୀଲୋକ ମଧ୍ୟ ତାହାଙ୍କ ସାଙ୍ଗରେ ଥିଲେ। ସେମାନଙ୍କୁ ଯୀଶୁ ଦୁଷ୍ଟାତ୍ମା କବଳରୁ ତଥା ରୋଗରୁ ମୁକ୍ତ କରିଥିଲେ। ସେମାନଙ୍କ ମଧ୍ୟରୁ ଜଣକର ନାଁ ଥିଲା ମରିୟମ। ସେ ମଗ୍‌ଦଲା ସହରର ବାସିନ୍ଦା ଥିଲେ। ତା'ଠାରୁ ସାତଟି ଭୂତ ବାହାର କରା ଯାଇଥିଲା। ୩ହେରୋଦଙ୍କ ଗୁମାସ୍ତା ଖୁଜାଙ୍କ ସ୍ତ୍ରୀ ଯୋହାନ୍ନା, ଶୋଶାନ୍ନା, ପୁଣି ଏହିଭଳି ଆହୁରି ଅନେକ ସ୍ତ୍ରୀ ଲୋକ ମଧ୍ୟ ଯାଉଥିଲେ। ସେହି ସ୍ତ୍ରୀ ଲୋକମାନେ ଯୀଶୁ ଓ ତାହାଙ୍କ ପ୍ରେରିତମାନଙ୍କୁ ସାହାଯ୍ୟ କରିବା ପାଇଁ ସେମାନଙ୍କ ନିଜ ଟଙ୍କା ଖର୍ଚ୍ଚ କରୁଥିଲେ।

## ବିହନ ବୁଣା ଦୃଷ୍ଟାନ୍ତ

୪ବହୁ ଲୋକ ଆସି ଜମା ହୋଇଗଲେ। ପ୍ରତ୍ୟେକ ନଗରରୁ ଲୋକେ ଯୀଶୁଙ୍କ ପାଖକୁ ଆସିଲେ। ଯୀଶୁ ସେମାନଙ୍କୁ ଏହି ଦୃଷ୍ଟାନ୍ତ କହିଲେ:

୫“ଜଣେ କୃଷକ ବୀଜ ବୁଣିବାକୁ ବାହାରିଲା। ସେ ବୀଜ ବୁଣିଲା ବେଳେ କିଛି ବୀଜ ରାସ୍ତା କଡ଼ରେ ଯାଇ ପଡ଼ିଲା। ଏହି ବୀଜ ଗୁଡ଼ିକ ଲୋକଙ୍କ ପାଦରେ ଚକଟି ହୋଇଗଲା ଓ ଚଢ଼େଇମାନେ ସେ ଗୁଡ଼ିକୁ ଖାଇଗଲେ। ୬କିଛି ବୀଜ ପଥର ଉପରେ ପଡ଼ିଲା ସେଥିରୁ ଗଜା ବାହାରିଲା କିନ୍ତୁ ଜଳ ଅଭାବରୁ ମରିଗଲା। ୭କିଛି ବୀଜ କଣ୍ଟା ବୁଦାରେ ପଡ଼ିଲା। ବୀଜ ଗଜା ହୋଇ ଗଛ ବଢ଼ିଲା। କିନ୍ତୁ କଣ୍ଟା ବୁଦା ମଧ୍ୟ ତା' ସହିତ ବଢ଼ିଲା ଓ ଶେଷରେ ତାକୁ ଚିପି ପକାଇଲା। ୮ଅନ୍ୟ ବୀଜତକ ଭଲ ମାଟିରେ ପଡ଼ିଲା। ତାହା ଗଛ ହୋଇ ବଢ଼ିଲା। ଏଥିରୁ ଶହେ ଗୁଣ ଅଧିକ ଶସ୍ୟ ମିଳିଲା।”

ଏହି ଦୃଷ୍ଟାନ୍ତ କହିସାରି ଯୀଶୁ ବଡ଼ ପାଟିରେ କହିଲେ, “ତୁମ୍ଭମାନଙ୍କର ଯଦି କାନ ଅଛି, ତେବେ ଶୁଣ।”

୯ତାହାଙ୍କ ଶିଷ୍ୟମାନେ ତାହାଙ୍କୁ ପଚାରିଲେ,“ଏହି ଦୃଷ୍ଟାନ୍ତର ଅର୍ଥ କ'ଣ?”

୧୦ଯୀଶୁ କହିଲେ, “ପରମେଶ୍ୱରଙ୍କ ରାଜ୍ୟର ନିଗୂଢ଼ ବିଷୟ ଜାଣିବା ପାଇଁ ତୁମ୍ଭେ ବଛା ହୋଇଛ। କିନ୍ତୁ ଅନ୍ୟମାନଙ୍କୁ ଏହି ରହସ୍ୟ ବିଷୟରେ କହିବାକୁ ମୁଁ ଦୃଷ୍ଟାନ୍ତ ବ୍ୟବହାର କରୁଛି।

> ‘ମୁଁ ଏହା କରୁଛି ଯେପରିକି ସେମାନେ ଚାହୁଁଥିଲେ
> ମଧ୍ୟ ଦେଖି ପାରିବେନି ଏବଂ ଶୁଣୁଥିଲେ ମଧ୍ୟ ବୁଝି
> ପାରିବେ ନାହିଁ।’ ଯିଶାଇୟ ୬:୯

## ବିହନବୁଣା ଦୃଷ୍ଟାନ୍ତର ଅର୍ଥ

୧୧“ଦୃଷ୍ଟାନ୍ତର ଏହାହିଁ ଅର୍ଥ: “ବୀଜ ହେଉଛି ପରମେଶ୍ୱରଙ୍କ ଉପଦେଶ। ୧୨ଯେଉଁ ବୀଜ ରାସ୍ତା କଡରେ ପଡ଼ିଥିଲା, ତାହା ସେହି ଲୋକମାନଙ୍କ ଭଳି, ଯେଉଁମାନେ ପରମେଶ୍ୱରଙ୍କ ବାକ୍ୟ ଶୁଣନ୍ତି, କିନ୍ତୁ ତା'ପରେ ଶୟତାନ ଆସେ ତାହାଙ୍କ ହୃଦୟରୁ ଉପଦେଶ ବାହାର କରି ନେଇଯାଏ। ତେଣୁ ସେହି ଲୋକମାନେ ବିଶ୍ୱାସ କରି ନପାରି ଉଦ୍ଧାର ପାଆନ୍ତି ନାହିଁ। ୧୩ଯେଉଁ ବୀଜ ପଥର ଉପରେ ପଡ଼ିଥିଲା, ତାହା ସେହି ଲୋକମାନଙ୍କ ଭଳି, ଯେଉଁମାନେ ପରମେଶ୍ୱରଙ୍କ ଉପଦେଶ ଶୁଣନ୍ତି ଓ ଆନନ୍ଦରେ ତାହା ଗ୍ରହଣ କରନ୍ତି। କିନ୍ତୁ ତା'ର ଚେର ସେହି ଲୋକମାନଙ୍କ ହୃଦୟ ମଧ୍ୟରେ ଗଭୀରକୁ ପ୍ରବେଶ କରିପାରେନାହିଁ। ସେମାନେ କିଛି ସମୟ ପର୍ଯ୍ୟନ୍ତ ବିଶ୍ୱାସ କରନ୍ତି, କିନ୍ତୁ ପରୀକ୍ଷାର ସମୟ ଆସିଲେ ସେମାନେ ବିଶ୍ୱାସ କରିବା ବନ୍ଦ କରନ୍ତି। ସେମାନେ ବିଶ୍ୱାସ ହରେଇ ବସନ୍ତି ଓ ପରମେଶ୍ୱରଙ୍କଠାରୁ ଦୂରେଇ ଯାଆନ୍ତି। ୧୪ଯେଉଁ ବୀଜ କଣ୍ଟା ବୁଦାରେ ପଡ଼ିଥିଲା, ତାହା ସେହି ଲୋକମାନଙ୍କ ଭଳି, ଯେଉଁମାନେ ପରମେଶ୍ୱରଙ୍କ ବାକ୍ୟ ଶୁଣନ୍ତି କିନ୍ତୁ ଚିନ୍ତା, ଧନ, ସମ୍ପତ୍ତି, ଜୀବନର ଭୋଗ ବିଳାସ ଆଦି ସେମାନଙ୍କୁ ବଢ଼ିବାରୁ ବାଧାଦିଏ। ତା' ଫଳରେ ସେଥିରୁ ଭଲ ଫଳ ମିଳି ପାରେନାହିଁ। ୧୫ଏବଂ ଯେଉଁ ବୀଜ ଭଲ ମାଟିରେ ପଡ଼ିଥିଲା, ତାହା ସେହି ଲୋକମାନଙ୍କ ଭଳି, ଯେଉଁମାନେ ପରମେଶ୍ୱରଙ୍କ ଉପଦେଶ ସ୍ୱଚ୍ଛ ଓ ପବିତ୍ର ହୃଦୟରେ ଶୁଣନ୍ତି, ତାହା ହୃଦୟରେ ଗ୍ରହଣ କରନ୍ତି, କାର୍ଯ୍ୟରେ ପାଳନ କରନ୍ତି ଓ ଧୈର୍ଯ୍ୟ ପୂର୍ବକ ଉତ୍ତମ ଫଳ ଫଳନ୍ତି।

## ନିଜର ବୁଝିବା ଶକ୍ତିର ପ୍ରୟୋଗ କର

୧୬“କେହି କେବେ ଦୀପଟିଏ ହାଣ୍ଡିତଳେ ଘୋଡେଇ

ରଖିବା ପାଇଁ ବା ଖଟ ତଳେ ଲୁଚେଇ ରଖିବା ପାଇଁ
ଜଳେଇ ନଥାଏ। ବରଂ ସେ ଦୀପଟି ଗୋଟିଏ ଦୀପ ରୁଖା
ଉପରେ ରଖେ। ତାହା ହେଲେ ଯେଉଁମାନେ ଘର
ଭିତରକୁ ଆସିବେ, ସେମାନେ ଦେଖି ପାରିବା ପାଇଁ
ଯଥେଷ୍ଟ ଆଲୁଅ ପାଇବେ। ୧୭ପ୍ରତ୍ୟେକ ଗୁପ୍ତ ରହିଥିବା
ବିଷୟ ଜ୍ଞାତ ହେବ ଓ ପ୍ରକାଶ୍ୟକୁ ଅଣାଯିବ। ଏପରି
କୌଣସି ଗୁପ୍ତ ଜିନିଷ ନାହିଁ, ଯାହା ସ୍ପଷ୍ଟ କରାଯିବ ନାହିଁ,
ଜ୍ଞାତ ହେବ ନାହିଁ ଓ ପ୍ରକାଶ୍ୟକୁ ଅଣା ଯିବ ନାହିଁ।
୧୮ତୁମ୍ଭେମାନେ କିପରି ଶୁଣୁଛ, ସେଥିପାଇଁ ସାବଧାନ ରୁହ।
ଯାହାର କିଛି ବୁଝିବା ଶକ୍ତି ଥିବ, ସେ ଅଧିକ ଗ୍ରହଣ
କରିବ ଏବଂ ଯାହାର ବୁଝିବା ଶକ୍ତି ନଥିବ, ତାହାର
ଯେତିକି ବା ବୁଝିବା ଶକ୍ତି ଅଛି ବୋଲି ସେ ଭାବୁଥିବ,
ସେତକ ମଧ୍ୟ ତା'ଠାରୁ ଛଡାଇ ନିଆଯିବ।"

### ଯୀଶୁଙ୍କ ଶିଷ୍ୟମାନେ ହେଉଛନ୍ତି ତାହାଙ୍କର ବାସ୍ତବ ପରିବାର

୧୯ଯୀଶୁଙ୍କ ମାଆ ଓ ଭାଇମାନେ ତାହାଙ୍କୁ ଦେଖିବାକୁ
ଆସିଲେ। କିନ୍ତୁ ବହୁତ ଲୋକ ଗହଳି ହୋଇଥିବା ହେତୁ
ସେମାନେ ତାହାଙ୍କ ପାଖକୁ ଯାଇ ପାରୁ ନ ଥିଲେ।
୨୦କେହି ଜଣେ ଯୀଶୁଙ୍କୁ କହିଲା, "ତୁମ୍ଭର ମା ଓ
ଭାଇମାନେ ବାହାରେ ଠିଆ ହୋଇଛନ୍ତି। ସେମାନେ ତୁମ୍ଭକୁ
ଦେଖିବାକୁ ଚାହୁଁଛନ୍ତି।"
୨୧କିନ୍ତୁ ଯୀଶୁ ସେମାନଙ୍କୁ ଉତ୍ତର ଦେଲେ, "ମୋର
ମାଆ ଓ ଭାଇମାନେ ହେଉଛନ୍ତି ସେହିମାନେ, ଯେଉଁମାନେ
ପରମେଶ୍ୱରଙ୍କ ଉପଦେଶ ଶୁଣନ୍ତି ଓ ତାହା ପାଳନ
କରନ୍ତି।"

### ଶିଷ୍ୟମାନେ ଯୀଶୁଙ୍କ ଶକ୍ତି ଦେଖିଲେ

୨୨ଦିନେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଗୋଟିଏ
ଡଙ୍ଗାରେ ଚଢ଼ିଲେ। ଯୀଶୁ ସେମାନଙ୍କୁ କହିଲେ, "ଆସ,
ଆମ୍ଭେମାନେ ହ୍ରଦ ସେପାରିକି ଯିବା।" ଶିଷ୍ୟମାନେ ଡ଼ଙ୍ଗା
ଖୋଲିଦେଲେ। ୨୩ସେମାନେ ଡଙ୍ଗା ବାହି ନେଉଥିବା
ସମୟରେ ଯୀଶୁ ଶୋଇ ପଡିଲେ। ହ୍ରଦରେ ଝଡ଼ତୋଫାନ
ମାଡ଼ି ଆସିଲା। ଡଙ୍ଗାରେ ପାଣି ପଶିବାକୁ ଲାଗିଲା। ସେମାନେ
ବିପଦରେ ପଡିଗଲେ। ୨୪ଶିଷ୍ୟମାନେ ଯୀଶୁଙ୍କ ପାଖକୁ
ଆସିଲେ ଓ ତାହାଙ୍କୁ ଉଠେଇ କହିବାକୁ ଲାଗିଲେ, "ଗୁରୁ,
ହେ ଗୁରୁ, ଆମ୍ଭେ ବୁଡ଼ିଯିବା"।
ଯୀଶୁ ଠିଆ ହେଲେ। ସେ ତୋଫାନ ଓ ଢ଼େଉକୁ
ଆଜ୍ଞା ଦେଲେ। ପବନ ବନ୍ଦ ହୋଇଗଲା। ହ୍ରଦ ଶାନ୍ତ
ହୋଇଗଲା। ୨୫ଯୀଶୁ ଶିଷ୍ୟମାନଙ୍କୁ ପଚାରିଲେ, "ତୁମ୍ଭମାନଙ୍କର
ବିଶ୍ୱାସ କେଉଁଆଡ଼େ ଗଲା?"
ସେମାନେ କିନ୍ତୁ ଡରିଯାଇଥିଲେ ଓ ଆଶ୍ଚର୍ଯ୍ୟ
ହୋଇଯାଇଥିଲେ। ସେମାନେ କଥା ବାର୍ତ୍ତା ହେଲେ, "ଏ
ତେବେ କିଏ? ସେ ପବନ ଓ ପାଣିକୁ ମଧ୍ୟ ଆଜ୍ଞା
ଦେଉଛନ୍ତି ଓ ସେମାନେ ତାହାଙ୍କ କଥା ମାନୁଛନ୍ତି!"

### ଜଣେ ଲୋକ ଭୂତ କବଳରୁ ମୁକ୍ତ

୨୬ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଗାଲୀଲୀରୁ ହ୍ରଦର
ଅପର ପାର୍ଶ୍ୱକୁ ଗଲେ। ସେମାନେ ଗରାଗିୟମାନେ ରହୁଥିବା
ଅଞ୍ଚଳରେ ପହଞ୍ଚିଲେ। ୨୭ଯୀଶୁ ଡଙ୍ଗାରୁ ବାହାରକୁ ବାହାରିବା
ସମୟରେ ଜଣେ ଲୋକ ନଗରରୁ ଯୀଶୁଙ୍କ ପାଖକୁ
ଆସିଲା। ଏହି ଲୋକଟି ଦେହରେ ଭୂତଟିଏ ପ୍ରବେଶ
କରିଥିଲା। ଅନେକ ଦିନ ଧରି ସେ ଲୁଗା ପିନ୍ଧୁ ନଥିଲା କି
ଘରେ ମଧ୍ୟ ରହୁନଥିଲା। ସେ କବର ସ୍ଥାନରେ ରହୁଥିଲା।
୨୮-୨୯ଭୂତ ଅନେକ ଥର ଲୋକଟିକୁ କବଳିତ କରୁଥିଲା।
ଏହି ସମୟରେ ତା' ହାତରେ ହାତକଡ଼ି ଓ ଗୋଡରେ
ବେଡ଼ି ପକାଇ ପହରା ଭିତରେ ରଖା ଯାଉଥିଲା। କିନ୍ତୁ
ସେ ସବୁବେଳେ ସେ ସବୁ ଛିଣ୍ଡାଇ ଦେଉଥିଲା ଓ ତା'
ଦେହରେ ଥିବା ଭୂତ ତାହାକୁ ଲୋକେ ରହୁ ନଥିବା
ନିଛାଟିଆ ଜାଗାକୁ ତଡି ନେଉଥିଲା। ଯୀଶୁ ଭୂତକୁ ସେହି
ଲୋକଟି ଦେହରୁ ବାହାରି ଆସିବାକୁ ଆଜ୍ଞା ଦେଲେ।
ଲୋକଟି ଯୀଶୁଙ୍କ ଆଗରେ ପଡିଯାଇ ଉଚ୍ଚ ସ୍ୱରରେ, ପାଟି
କରି କହିଲା, "ହେ ସର୍ବୋପରିସ୍ଥଙ୍କ ପୁତ୍ର ଯୀଶୁ! ତୁମ୍ଭେ
ମୋ ଠାରୁ କ'ଣ ଚାହୁଁଛ? ମୁଁ ଅନୁରୋଧ କରୁଛି, ମୋତେ
ଦଣ୍ଡ ଦିଅନାହିଁ।"
୩୦ଯୀଶୁ ତାକୁ ପଚାରିଲେ, "ତୋର ନାମ କ'ଣ?"
ଲୋକଟି କହିଲା, "ବାହିନୀ"* (ସେ ତା ନାମ
"ବାହିନୀ" କହିବାର କାରଣ ହେଲା ବହୁତ ଗୁଡିଏ ଭୂତ
ତା ଦେହରେ ପ୍ରବେଶ କରିଥିଲେ। ) ୩୧ଭୂତମାନେ
ଯୀଶୁଙ୍କୁ ଅନୁରୋଧ କଲେ ଯେ ସେ ସେମାନଙ୍କୁ ଅନନ୍ତ
ନରକକୁ ପଠାଇ ନ ଦିଅନ୍ତୁ। ୩୨ସେତେବେଳେ ସେହି
ପାହାଡ ଉପରେ ଏକ ବଡ଼ ଘୁଷୁରିଦଳ ଚରୁଥିଲେ।
ଭୂତମାନେ ଯୀଶୁଙ୍କୁ ଅନୁରୋଧ କଲେ ଯେ ସେ ସେମାନଙ୍କୁ
ଘୁଷୁରିମାନଙ୍କ ଦେହକୁ ଯିବାକୁ ଅନୁମତି ଦିଅନ୍ତୁ। ଯୀଶୁ
ସେମାନଙ୍କୁ ତାହା କରିବାକୁ ଅନୁମତି ଦେଇଦେଲେ।
୩୩ତାପରେ ଭୂତମାନେ ଲୋକଟି ଦେହରୁ ବାହାରି ଆସିଲେ
ଓ ଘୁଷୁରିମାନଙ୍କ ଦେହକୁ ଚାଲିଗଲେ ଦଳକଯାକ ଘୁଷୁରି
ସେହି ପାହାଡ ଉପରୁ ହ୍ରଦ ଭିତରକୁ ଦୌଡିଗଲେ ଓ
ସମସ୍ତେ ବୁଡ଼ିଗଲେ।
୩୪ଏ ଘଟଣା ଦେଖି ଘୁଷୁରି ଜଗୁଆଳମାନେ ସେଠାରୁ
ପଳାଇଲେ। ସେମାନେ ଯାଇ ନଗର ଓ ପଲ୍ଲୀରେ ଥିବା
ଲୋକମାନଙ୍କୁ ଏହି କଥା କହିଲେ। ୩୫ଲୋକମାନେ ଏହି
ଘଟଣା ଦେଖିବା ପାଇଁ ବାହାରି ଆସିଲେ। ସେମାନେ
ଯୀଶୁଙ୍କ ପାଖକୁ ଆସିଲେ। ସେମାନେ ଯୀଶୁଙ୍କ ପାଦତଳେ
ସେହି ଲୋକଟିକୁ ବସିଥିବାର ଦେଖିଲେ। ଲୋକଟି ଲୁଗା
ପିନ୍ଧିଥିଲା ଓ ତା'ମନ ପୁରାପୁରି ବଦଳି ଯାଇଥିଲା। ତା'
ଦେହରୁ ଭୂତ ମାନେ ବାହାରି ଯାଇଥିଲେ। ଏହା ଦେଖି
ସମସ୍ତେ ଡରିଗଲେ। ୩୬ଯେଉଁମାନେ ଏହି ଘଟଣା ଦେଖିଥିଲେ,
ସେମାନେ ସମସ୍ତେ ଅନ୍ୟ ଲୋକମାନଙ୍କୁ କହିବାକୁ ଲାଗିଲେ,
ଯେ ଭୂତ କବଳିତ ଲୋକଟି କିପରି ଭଲ ହୋଇଗଲା।
୩୭ସେ ଅଞ୍ଚଳର ସମସ୍ତ ଲୋକ ଯୀଶୁଙ୍କୁ ସେହି ସ୍ଥାନରୁ

---

**ବାହିନୀ** ଏହାର ଅର୍ଥ ବହୁତ ବେଶୀ। ପ୍ରାଚୀନ ରୋମୀୟ ସୈନ୍ୟବାହିନୀରେ ଗୋଟିଏ ବାହିନୀରେ ପ୍ରାୟ ୫,୦୦୦ ସୈନ୍ୟ ରହୁଥିଲେ।

ଚାଲିଯିବାପାଇଁ ଅନୁରୋଧ କଲେ। କାରଣ ସେମାନେ
ସମସ୍ତେ ବହୁତ ଡରି ଯାଇଥିଲେ। ତେଣୁ ଯୀଶୁ ଡଙ୍ଗାରେ
ବସି ଗାଲିଲୀ ଫେରିଗଲେ। ୩୮କିନ୍ତୁ ଯେଉଁଲୋକଟି ଦେହରୁ
ଭୂତ ଗୁଡାକ ବାହାରି ସାରିଥିଲେ, ସେ ଯୀଶୁଙ୍କ ସହିତ
ଯିବାକୁ ଅନୁରୋଧ କଲା।
କିନ୍ତୁ ଯୀଶୁ ଲୋକଟିକୁ ଏହା କହି ଘରକୁ ପଠାଇଦେଲେ:
୩୯“ଘରକୁ ଫେରିଯାଅ। ପରମେଶ୍ୱର ତୁମ୍ଭ ପାଇଁ ଯାହା
କରିଛନ୍ତି ତାହା ଲୋକମାନଙ୍କୁ କୁହ।”
ତେଣୁ ଲୋକଟି ଫେରିଗଲା ଓ ଯୀଶୁ ତା ପାଇଁ ଯାହା
କରିଥିଲେ, ତାହା ନଗର ସାରା ସମସ୍ତଙ୍କୁ କହି
ବୁଲିଲା।

### ମରିଯାଇଥିବା ଝିଅକୁ ଜୀବନ ଦେବା ଓ ରୋଗୀ ସ୍ତ୍ରୀ ଲୋକକୁ ସୁସ୍ଥ କରିବା

୪୦ଯୀଶୁ ଗାଲିଲୀ ଫେରିଯିବା ପରେ ଲୋକମାନେ
ତାହାଙ୍କୁ ସ୍ୱାଗତ କଲେ। ସମସ୍ତେ ତାହାଙ୍କୁ ଅପେକ୍ଷା କରି
ରହିଥିଲେ। ୪୧ଯାଇରସ ନାମରେ ଜଣେ ଲୋକ ଯୀଶୁଙ୍କ
ପାଖକୁ ଆସିଲେ। ଯାଇରସ ସେଠାକାର ପ୍ରାର୍ଥନାଗୃହର
ନେତା ଥିଲେ। ସେ ଯୀଶୁଙ୍କ ପାଦତଳେ ପଡ଼ିଗଲେ ଓ
ତାହାଙ୍କୁ ଘରକୁ ଆସିବା ପାଇଁ ଅନୁରୋଧ କଲେ।
୪୨ଯାଇରସଙ୍କର ଗୋଟିଏ ବୋଲି ଝିଅ ଥିଲା। ତାହାକୁ
ବାର ବର୍ଷ ବୟସ ହୋଇଥିଲା। ସେ ମରିଯିବା ଅବସ୍ଥାରେ
ପଡିଥିଲା। ଯୀଶୁ ଯେତେବେଳେ ଯାଇରସର ଘରକୁ ଯାଉଥିଲେ,
ସେତେବେଳେ ବହୁ ସଂଖ୍ୟାରେ ଲୋକ ତାହାଙ୍କ ଘର
ଚାରିପାଖକୁ ଆସିଗଲେ।
ଲୋକଙ୍କ ଭିଡ଼ ଭିତରେ ଯୀଶୁ ଚାପି ହୋଇ ଯାଉଥିଲେ।
୪୩ସେଠାରେ ଜଣେ ସ୍ତ୍ରୀ ଲୋକ ମଧ୍ୟ ଥିଲା। ତାର ବାର
ବର୍ଷ ହେଲା ରକ୍ତ ସ୍ରାବ ହେଉଥିଲା। ସେ ତାର ସମସ୍ତ
ଅର୍ଥ ଔଷଧରେ ଖର୍ଚ୍ଚ କରି ସାରିଥିଲା। କିନ୍ତୁ କୌଣସି
ଡାକ୍ତର ତାକୁ ଭଲ କରିଦେବା ପାଇଁ ସମର୍ଥ ହୋଇ
ନଥିଲେ। ୪୪ସେହି ସ୍ତ୍ରୀ ଲୋକ ଯୀଶୁଙ୍କ ପଛପଟୁ ଆସି
ତାହାଙ୍କ ଜାମାର ତଳକୁ ଛୁଇଁଦେଲା। ତତ୍‌କ୍ଷଣାତ୍ ତାର
ରକ୍ତସ୍ରାବ ବନ୍ଦ ହୋଇଗଲା। ୪୫ସେତେବେଳେ ଯୀଶୁ ପଚାରିଲେ,
“ମୋତେ କିଏ ଛୁଇଁଲା?”
ସବୁଲୋକ କହିଲେ ଯେ, ସେମାନେ ତାହାଙ୍କୁ ଛୁଇଁ
ନାହାଁନ୍ତି। ତାପରେ ପିତର କହିଲେ, “ଗୁରୁ, ସବୁ ଲୋକତ
ଆପଣଙ୍କ ଚାରିପଟେ ଘେରି ରହିଛନ୍ତି ଏବଂ ଆପଣଙ୍କ
ଆଡକୁ ଠେଲି ହୋଇ ଯାଉଛନ୍ତି।”
୪୬କିନ୍ତୁ ଯୀଶୁ କହିଲେ, “ଜଣେ କେହି ମୋତେ
ଛୁଇଁଛି। କାରଣ ମୋଠାରୁ ଶକ୍ତି ବାହାରି ଯାଇଥିବା ମୁଁ
ଅନୁଭବ କରିଛି।” ୪୭ସ୍ତ୍ରୀ ଲୋକଟି ଦେଖିଲା ଯେ ସେ
ଲୁଚି ରହି ପାରିବନାହିଁ, ତେଣୁ ସେ ଥରିଥରି ଆଗକୁ
ଆସିଲା। ସେ ଯୀଶୁଙ୍କ ଆଗରେ ମୁଣ୍ଡ ନୁଆଇଲା। ସେ
ଯୀଶୁଙ୍କୁ କାହିଁକି ଛୁଇଁ ଦେଲା, ସେଇ କଥା ସବୁ
ଲୋକମାନଙ୍କ ଆଗରେ କହିଲା। ସେ କହିଲା ଯେ,
ଯେତେବେଳେ ସେ ଯୀଶୁଙ୍କୁ ଛୁଇଁଦେଲା, ତତ୍‌କ୍ଷଣାତ୍ ସେ
ସୁସ୍ଥ ହୋଇଗଲା। ୪୮ଯୀଶୁ ସ୍ତ୍ରୀ ଲୋକଟିକୁ କହିଲେ, “ହେ
ଝିଅ, ତୁମ୍ଭେ ବିଶ୍ୱାସ କଲ ସେଥିପାଇଁ ସୁସ୍ଥ ହୋଇଗଲ।
ଏଥର ଶାନ୍ତିରେ ଯାଅ।”
୪୯ସେ ଠିକ୍ ଏହି କଥା କହୁଥିବା ସମୟରେ ପ୍ରାର୍ଥନାଗୃହର
ନେତା ଯାଇରସଙ୍କ ଘରୁ ଜଣେ ଆସି କହିଲା, “ତୁମ୍ଭ ଝିଅ
ମରିଗଲା। ଆଉ ଏବେ ଗୁରୁଙ୍କୁ କଷ୍ଟ ଦିଅନାହିଁ।”
୫୦ଯୀଶୁ ଏକଥା ଶୁଣିଲେ। ସେ ଯାଇରସଙ୍କୁ କହିଲେ,“ଭୟ
କରନାହିଁ। ବିଶ୍ୱାସ ରଖ। ତୁମ୍ଭ ଝିଅ ସୁସ୍ଥ ହୋଇଯିବ।”
୫୧ଯୀଶୁ ଘରକୁ ଆସିଲେ। ସେ କେବଳ ପିତର,
ଯୋହନ ଓ ଯାକୁବ ତଥା ଝିଅଟିର ବାପାମାଆଙ୍କୁ ତାହାଙ୍କ
ସହିତ ଭିତରକୁ ଯିବାକୁ ଦେଲେ। ୫୨ସମସ୍ତେ ସେହି
ଝିଅଟିର ମୃତ୍ୟୁ ପାଇଁ କାନ୍ଦୁଥିଲେ ଓ ଦୁଃଖ କରୁଥିଲେ।
କିନ୍ତୁ ଯୀଶୁ କହିଲେ, “କାନ୍ଦନାହିଁ ସେ ମରିନାହିଁ; ସେ
କେବଳ ଶୋଇଛି ମାତ୍ର।”
୫୩ଏହା ଶୁଣି ଲୋକେ ଯୀଶୁଙ୍କୁ ଉପହାସ କଲେ।
କାରଣ ସେମାନେ ଜାଣିଥିଲେ ଯେ ଝିଅଟି ମରିଯାଇଛି।
୫୪କିନ୍ତୁ ଯୀଶୁ ଝିଅଟିର ହାତ ଧରି ତାକୁ ଡାକିଲେ, “ହେ
ଝିଅ, ଉଠିପଡ।” ୫୫ସେହିକ୍ଷଣି ତା ଶରୀର ଭିତରକୁ ତା’ର
ଆତ୍ମା ଫେରି ଆସିଲା ଓ ସେ ସଙ୍ଗେସଙ୍ଗେ ଠିଆ ହୋଇ
ପଡ଼ିଲା। ଯୀଶୁ ଆଜ୍ଞା ଦେଲେ, “ତାକୁ କିଛି ଖାଇବାକୁ
ଦିଅ।” ୫୬ତା ବାପାମାଆ ବିସ୍ମିତ ହୋଇଗଲେ। ଯୀଶୁ
ସେମାନଙ୍କୁ ଏ ଘଟଣା କାହାରି ଆଗରେ ନ କହିବାକୁ
କହିଲେ।

### ଯୀଶୁ ବାରଜଣ ପ୍ରେରିତଙ୍କୁ ପଠାଇଲେ

୯ ଯୀଶୁ ବାରଜଣ ପ୍ରେରିତଙ୍କୁ ଏକାଠି ଡାକିଲେ। ସେ
ସେମାନଙ୍କୁ ଭୂତ ମାନଙ୍କ ଉପରେ କ୍ଷମତା ଓ
ଅଧିକାର ପ୍ରଦାନ କଲେ। ସେ ପ୍ରେରିତମାନଙ୍କୁ ରୋଗ
ଭଲ କରିଦେବା ପାଇଁ ମଧ୍ୟ ଶକ୍ତି ଦେଲେ। ୨ତାପରେ
ସେ ସେମାନଙ୍କୁ ପରମେଶ୍ୱରଙ୍କ ରାଜ୍ୟର ସୁସମାଚାର ଶୁଣାଇବା
ପାଇଁ ଓ ରୋଗୀମାନଙ୍କୁ ସୁସ୍ଥ କରିବା ପାଇଁ ପଠାଇଲେ।
୩ସେ ସେମାନଙ୍କୁ କହିଲେ, “ଯାତ୍ରା ସମୟରେ ସାଙ୍ଗରେ
କୌଣସି ପଦାର୍ଥ ନେବ ନାହିଁ। ଠେଙ୍ଗା, ଝୁଲି,ଖାଦ୍ୟ,
ଟଙ୍କାପଇସା କିମ୍ବା ଅଧିକ ଲୁଗାପଟା କିଛି ହେଲେ ନେବ
ନାହିଁ। କେବଳ ପିନ୍ଧିଥିବା ଲୁଗା ଛଡା ଅନ୍ୟ କିଛି
ନେବନାହିଁ। ୪ତୁମ୍ଭେମାନେ ଯେଉଁ ଘରକୁ ଯିବ, ସେ ସ୍ଥାନ
ଛାଡ଼ିବା ସମୟ ନ ହେବା ପର୍ଯ୍ୟନ୍ତ ସେହିଠାରେ ରହିବ।
୫ଯଦି ନଗରର ଲୋକେ ତୁମ୍ଭମାନଙ୍କୁ ସ୍ୱାଗତ ନକରନ୍ତି,
ତେବେ ନଗର ଛାଡି ବାହାରକୁ ଚାଲିଯିବ ଓ ତୁମ୍ଭମାନଙ୍କ
ପାଦର ଧୂଳିତକ ମଧ୍ୟ ସେଠାରେ ଝାଡିଦେବ। ତେବେ
ଏହା ସେମାନଙ୍କ ପାଇଁ ଚେତାବନୀ ହେବ।”
୬ପ୍ରେରିତମାନେ ବାହାରିଗଲେ। ସେମାନେ ସମସ୍ତେ ନଗର
ଦେଇ ଯାତ୍ରା କଲେ। ସେମାନେ ସୁସମାଚାର ଶୁଣାଇଲେ
ଓ ସବୁ ଜାଗାରେ ଲୋକମାନଙ୍କୁ ସୁସ୍ଥ କଲେ।

### ଯୀଶୁଙ୍କ ବିଷୟରେ ହେରୋଦଙ୍କ ଭ୍ରମ

୭ଇତି ମଧ୍ୟରେ ସାମନ୍ତରାଜା ହେରୋଦ ଏହି ଘଟଣାଗୁଡିକ
ବିଷୟରେ ଶୁଣି ଗଭୀର ଚିନ୍ତାରେ ପଡିଗଲେ। କାରଣ

କେତେକ ଲୋକ କହୁଥିଲେ, "ବାପ୍ତିଜକ ଯୋହନ ପୁଣି
ମୃତ୍ୟୁରୁ ବଞ୍ଚି ଉଠିଛନ୍ତି।" ୮ଆଉକେତେକ କହୁଥିଲେ,
"ଏଲିୟ ଆମ୍ଭ ପାଖରେ ପ୍ରକଟିତ ହୋଇଛନ୍ତି।" ଅନ୍ୟମାନେ
ମଧ୍ୟ କହୁଥିଲେ, "ଆଗ କାଳର କୌଣସି ଭବିଷ୍ୟଦ୍‌ବକ୍ତା
ଜୀବନରେ ଉଠିଛନ୍ତି।" ୯କିନ୍ତୁ ହେରୋଦ କହିଲେ, "ମୁଁ
ଯୋହନଙ୍କ ମୁଣ୍ଡକାଟି କରିଛି। ତେବେ ଏ କିଏ, ଯାହାଙ୍କ
ବିଷୟରେ ମୁଁ ଏଭଳି କଥା ଶୁଣୁଛି?" ତେଣୁ ହେରୋଦ
ଯୀଶୁଙ୍କୁ ଦେଖିବା ପାଇଁ ଚେଷ୍ଟା କଲେ।

## ଯୀଶୁ ପାଞ୍ଚ ହଜାରରୁ ଅଧିକ ଲୋକଙ୍କୁ ଖାଇବାକୁ ଦେଲେ।

୧୦ପ୍ରେରିତମାନେ ଫେରିଆସି ସେମାନେ ଯାତ୍ରା କରିବା
ସମୟରେ ଯାହା ସବୁ କରିଥିଲେ, ସେ ବିଷୟରେ ଯୀଶୁଙ୍କ
ଆଗରେ ବର୍ଣ୍ଣନା କଲେ। ତା'ପରେ ଯୀଶୁ ପ୍ରେରିତମାନଙ୍କୁ
ସାଙ୍ଗରେ ନେଇ ସେଠାରୁ ବେଥ୍‌ସାଇଦା ନାମକ ନଗରକୁ
ଅନ୍ୟମାନଙ୍କ ଠାରୁ ଅଲଗା ରହିବା ପାଇଁ ଚାଲିଗଲେ।
୧୧କିନ୍ତୁ ଯୀଶୁ କେଉଁଠାକୁ ଗଲେ ଏହା ଲୋକମାନେ ଜାଣି
ପାରିଲେ। ସେମାନେ ତାହାଙ୍କର ଅନୁସରଣ କଲେ। ଯୀଶୁ
ସେମାନଙ୍କୁ ସ୍ୱାଗତ କଲେ ଏବଂ ସେମାନଙ୍କୁ ପରମେଶ୍ୱରଙ୍କ
ରାଜ୍ୟ ବିଷୟରେ ଶିକ୍ଷା ଦେଲେ। ସେ ରୋଗୀମାନଙ୍କୁ ସୁସ୍ଥ
କଲେ।

୧୨ଅପରାହ୍ଣର ବିଳମ୍ବିତ ପ୍ରହରରେ ବାରଜଣ ଯାକ
ପ୍ରେରିତ ଯୀଶୁଙ୍କ ପାଖକୁ ଆସି କହିଲେ, "ଏ ସ୍ଥାନଟି
ନିର୍ଜନ ଅଟେ। ଆପଣ ଲୋକମାନଙ୍କୁ ବିଦାୟ କରିଦିଅନ୍ତୁ।
ସେମାନେ ଆଖପାଖ ଗାଁ ଓ କ୍ଷେତକୁ ଯାଇ ବସା ଓ
ଖାଦ୍ୟର ବ୍ୟବସ୍ଥା କରନ୍ତୁ।"

୧୩କିନ୍ତୁ ଯୀଶୁ ସେମାନଙ୍କୁ କହିଲେ, "ତୁମ୍ଭେମାନେ
ଏମାନଙ୍କୁ କିଛି ଖାଇବାକୁ ଦିଅ।"

ଶିଷ୍ୟମାନେ କହିଲେ, ଆମ୍ଭ ପାଖରେ କେବଳ ପାଞ୍ଚଟି
ରୋଟୀ ଓ ଦୁଇଟି ମାଛ ଛଡା ଆଉ କିଛି ହେଲେ ନାହିଁ।
ଆମ୍ଭେ ଯାଇ ଏସବୁ ଲୋକମାନଙ୍କ ପାଇଁ ଖାଦ୍ୟ କିଣି
ଆଣିବୁ ବୋଲି ଆପଣ ଚାହୁଁଛନ୍ତି କି?" ୧୪(ସେଠାରେ
କେବଳ ପ୍ରାୟ ପାଞ୍ଚ ହଜାର ପୁରୁଷ ଲୋକ ଥିଲେ। )

ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ଲୋକମାନଙ୍କୁ ପଚାଶପଚାଶ
ଜଣ ହିସାବରେ ଦଳଦଳ କରି ବସାଅ।"

୧୫ସେମାନେ ତାହା କଲେ ଓ ସବୁ ଲୋକଙ୍କୁ ବସାଇ
ଦେଲେ। ୧୬ତାପରେ ଯୀଶୁ ପାଞ୍ଚଟି ରୋଟୀ ଓ ଦୁଇଟି
ମାଛ ନେଲେ। ସେ ସ୍ୱର୍ଗ ଆଡ଼କୁ ଚାହିଁ ଖାଦ୍ୟପାଇଁ
ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ସେ ଖାଦ୍ୟତକ ଖଣ୍ଡଖଣ୍ଡ
କରି ତାହାଙ୍କ ଶିଷ୍ୟମାନଙ୍କୁ ଲୋକଙ୍କ ଭିତରେ ପରଶି
ଦେବାକୁ ଦେଲେ। ୧୭ସବୁ ଲୋକ ଖାଇଲେ ଓ ତୃପ୍ତ
ହୋଇଗଲେ। ତଥାପି ବହୁତ ଖାଦ୍ୟ ବଳିଗଲା। ବଳକା
ଖାଦ୍ୟ ଟୁକୁରାତକ ଶିଷ୍ୟମାନେ ବାରଟି ଟୋକେଇରେ
ଭର୍ତ୍ତିକଲେ।

## ଯୀଶୁ, ଖ୍ରୀଷ୍ଟ ଅଟନ୍ତି

୧୮ଥରେ ଯୀଶୁ ଏକୁଟିଆ ପ୍ରାର୍ଥନା କରୁଥିଲେ। ତାହାଙ୍କ
ଶିଷ୍ୟମାନେ ଏକାଠି ମିଳି ସେହିସ୍ଥାନକୁ ଆସିଲେ। ଯୀଶୁ
ସେମାନଙ୍କୁ ପଚାରିଲେ, "ମୁଁ କିଏ ବୋଲି ଲୋକେ କ'ଣ
ସବୁ କହୁଛନ୍ତି?"

୧୯ସେମାନେ ଉତ୍ତର ଦେଲେ, "କେତେକ କହୁଛନ୍ତି
ଯେ ଆପଣ ବାପ୍ତିଜକ ଯୋହନ। କେତେକ କହୁଛନ୍ତି ଯେ
ଆପଣ ଏଲିୟ। ଏବଂ ଅନ୍ୟ କେତେକ କହୁଛନ୍ତି ଯେ
ଆପଣ ବହୁ କାଳ ପୂର୍ବେ ଥିବା ଭବିଷ୍ୟଦ୍‌ବକ୍ତାମାନଙ୍କ
ମଧ୍ୟରୁ ପୁନର୍ବାର ବଞ୍ଚି ଉଠିଥିବା କୌଣସି ଏକ ଭବିଷ୍ୟଦ୍‌ବକ୍ତା।"

୨୦ଯୀଶୁ ସେମାନଙ୍କୁ କହିଲେ, "ମୁଁ କିଏ ବୋଲି
ତୁମ୍ଭେମାନେ କ'ଣ କହୁଛ?"

ପିତର ଉତ୍ତର ଦେଲେ, "ଆପଣ ପରମେଶ୍ୱରଙ୍କ ପାଖରୁ
ଆସିଥିବା ଖ୍ରୀଷ୍ଟ।"

୨୧କିନ୍ତୁ ଯୀଶୁ ଏ ବିଷୟରେ କାହାକୁ ନ କହିବା ପାଇଁ
ଚେତାବନୀ ଦେଇ ସେମାନଙ୍କୁ କହିଲେ, ୨୨"ଏ କଥା
ସତ୍ୟ ଯେ ମନୁଷ୍ୟପୁତ୍ର ଅନେକ ଯାତନା ନିଶ୍ଚୟ ଭୋଗ
କରିବେ। ପ୍ରାଚୀନ ଯିହୂଦୀ ନେତା, ପ୍ରଧାନ ଯାଜକ ଓ
ଶାସ୍ତ୍ରୀମାନେ ତାହାଙ୍କୁ ଅସ୍ୱୀକାର କରିବେ। ମନୁଷ୍ୟ ପୁତ୍ରଙ୍କୁ
ମାରି ଦେବେ। କିନ୍ତୁ ତିନିଦିନ ପରେ ସେ ପୁଣି ମୃତ୍ୟୁରୁ
ପୁନରୁତ୍ଥିତ ହେବେ।"

୨୩ଯୀଶୁ ପୁଣି ସେମାନଙ୍କୁ କହିବାକୁ ଲାଗିଲେ, "ଯଦି
କେହି ମୋର ଅନୁସରଣ କରିବାକୁ ଚାହୁଁଥାଏ, ତେବେ
ତାହାକୁ ନିଜର ସମସ୍ତ କାମନା ତ୍ୟାଗ କରିବାକୁ ପଡିବ।
ପ୍ରତିଦିନ ତାହାକୁ ଦିଆଯାଇଥିବା କ୍ରୁଶକୁ ଗ୍ରହଣ କରିବାକୁ
ହେବ, ଏବଂ ସେ ମୋର ଅନୁସରଣ କରିବ। ୨୪ଯେଉଁ
ଲୋକ ନିଜ ଜୀବନ ରକ୍ଷା କରିବାକୁ ଚାହିଁବ, ସେ ତାହା
ହରାଇ ବସିବ। ଏବଂ ଯେଉଁଲୋକ ମୋ ପାଇଁ ତାହାର
ଜୀବନ ଦେବ, ସେ ତାହାକୁ ରକ୍ଷା କରିବ। ୨୫ଯଦି ଜଣେ
ସାରା ସଂସାର ପାଇ ଶେଷରେ ମରିଯାଏ ବା ହଜିଯାଏ,
ତାହା ହେଲେ ଲାଭ କଣ? ୨୬ଯଦି କୌଣସି ଲୋକ ମୋ
ପାଇଁ ବା ମୋ ଉପଦେଶ ପାଇଁ ଲଜ୍ଜିତ ହୋଇଥାଏ,
ତେବେ ମୁଁ ମଧ୍ୟ ତା' ପାଇଁ ଲଜ୍ଜିତ ହେବି। ଯେତେବେଳେ
ମନୁଷ୍ୟ ପୁତ୍ର ନିଜ ମହିମା, ପରମପିତାଙ୍କ ମହିମା ଓ
ପବିତ୍ର ସ୍ୱର୍ଗଦୂତଙ୍କ ମହିମା ସହିତ ଆଗମନ କରିବେ,
ସେତେବେଳେ ସେ ତା ପାଇଁ ଲଜ୍ଜିତ ହେବେ। ୨୭ମୁଁ
ତୁମ୍ଭମାନଙ୍କୁ ସତ୍ୟ କହୁଛି ଯେ ତୁମ୍ଭମାନଙ୍କ ଭିତରୁ ଏଠାରେ
ଠିଆ ହୋଇଥିବା କେତେକ ଲୋକ ମୃତ୍ୟୁ ପୁର୍ବରୁ ପରମେଶ୍ୱରଙ୍କ
ରାଜ୍ୟ ଦେଖିବେ।"

## ମୋଶା ଓ ଏଲିୟଙ୍କ ସହିତ ଯୀଶୁ

୨୮ଏକଥା କହିବାର ପ୍ରାୟ ଆଠ ଦିନ ପରେ ସେ
ପିତର, ଯୋହନ ଓ ଯାକୁବଙ୍କୁ ସାଙ୍ଗରେ ନେଇ ପ୍ରାର୍ଥନା
କରିବାକୁ ଗୋଟିଏ ପର୍ବତ ଉପରକୁ ଗଲେ। ୨୯ଯୀଶୁ
ପ୍ରାର୍ଥନା କରୁଥିବା ସମୟରେ ତାହାଙ୍କ ମୁହଁର ଚେହେରା
ବଦଳିଗଲା। ତାହାଙ୍କ ପିନ୍ଧାଲୁଗା ଚକ୍‌ଚକ୍ ଧଳା ହୋଇଗଲା।
୩୦ତାପରେ ସେଠାରେ ଦୁଇ ଜଣ ପୁରୁଷ ଯୀଶୁଙ୍କ ସହିତ
କଥାବାର୍ତ୍ତା କରୁଥିଲେ। ସେମାନେ ମୋଶା ଓ ଏଲିୟ
ଥିଲେ। ୩୧ସେମାନଙ୍କ ଚେହେରା ମଧ୍ୟ ଝଲକୁ ଥିଲା।

ସେମାନେ ଯୀଶୁଙ୍କ ସହିତ ଯିରୂଶାଲମରେ ଘଟିବାକୁ ଥିବା
ତାହାଙ୍କ ମୃତ୍ୟୁ ବିଷୟରେ କଥାବାର୍ତ୍ତା ହେଉଥିଲେ।
୩୨ସେତେବେଳେ ପିତର ଓ ଅନ୍ୟମାନେ ଶୋଇ ପଡିଥିଲେ।
କିନ୍ତୁ ସେମାନେ ଉଠି ପଡିଲେ ଓ ଯୀଶୁଙ୍କ ମହିମା
ଦେଖିଲେ। ଯୀଶୁଙ୍କ ସହିତ ଠିଆ ହୋଇଥିବା ଅନ୍ୟ
ଦୁଇଜଣଙ୍କୁ ମଧ୍ୟ ସେମାନେ ଦେଖିଲେ: ୩୩ମୋଶା ଓ
ଏଲିୟ ଯିବାକୁ ବାହାରିବା ସମୟରେ ପିତର ଯୀଶୁଙ୍କୁ
କହିଲେ, "ଗୁରୁ, ଭଲ ହେଲା ଯେ ଆମ୍ଭେମାନେ ଏଠାରେ
ଅଛୁ। ଆମ୍ଭେମାନେ ଏଠାରେ ତିନୋଟି ତମ୍ବୁ ଟାଣି ଦେବୁ।
ଗୋଟିଏ ତୁମ୍ଭ ପାଇଁ ଆଉ ଗୋଟିଏ ମୋଶାଙ୍କ ପାଇଁ ଓ
ଅନ୍ୟଟି ଏଲିୟଙ୍କ ପାଇଁ।" (ପିତର ଜାଣି ପାରୁ ନ ଥିଲେ
ଯେ ସେ କ'ଣ କହୁଛନ୍ତି।)
୩୪ପିତର ଏହି ସବୁ କଥା କହିବା ସମୟରେ ଖଣ୍ଡେ
ମେଘ ଉଠି ଆସିଲା ଓ ସମସ୍ତଙ୍କୁ ଘୋଡ଼ାଇ ପକେଇଲା।
ମେଘ ସେମାନଙ୍କୁ ଘୋଡାଇ ପକାଇବାରୁ ପିତର,ଯାକୁବ ଓ
ଯୋହନ ଡରିଗଲେ। ୩୫ସେତେବେଳେ ମେଘ ଭିତରୁ
ଆକାଶବାଣୀ ହେଲା, "ଏ ମୋର ପୁତ୍ର। ଏହାଙ୍କୁ ମୁଁ
ବାଛିଅଛି। ତାହାଙ୍କ କଥାରେ ବାଧ୍ୟ ହୁଅ।"
୩୬ଆକାଶବାଣୀ ହୋଇ ସାରିବା ପରେ ସେଠାରେ
କେବଳ ଯୀଶୁ ଥିଲେ। ପିତର, ଯାକୁବ ଓ ଯୋହନ ଏ
ବିଷୟରେ ନୀରବ ରହିଲେ। ସେମାନେ ଯାହା କିଛି
ଦେଖିଥିଲେ, ସେ ବିଷୟରେ ସେ ସମୟରେ କାହାରିକୁ
କିଛି କହିଲେନାହିଁ।

## ଯୀଶୁ ଗୋଟିଏ ବାଳକକୁ ଭୂତ କବଳରୁ ମୁକ୍ତକଲେ

୩୭ତା ପରଦିନ ଯୀଶୁ,ପିତର, ଯୋହନ ଓ ଯାକୁବ
ପର୍ବତ ଉପରୁ ତଳକୁ ଓହ୍ଲାଇ ଆସିଲେ। ବହୁ ସଂଖ୍ୟାରେ
ଲୋକେ ଆସି ଯୀଶୁଙ୍କୁ ଭେଟିଲେ। ୩୮ଭିଡ଼ ଭିତରୁ ଜଣେ
ଲୋକ ପାଟି କରିଉଠିଲା, "ଗୁରୁ, ଦୟାକରି ଆସି ମୋ
ପୁଅକୁ ଦେଖନ୍ତୁ। ୩୯ସେ ମୋର ଏକ ମାତ୍ର ସନ୍ତାନ।
ଶୟତାନଠାରୁ ଗୋଟିଏ ଭୂତ ଆସି ତାକୁ କବଳିତ କରି
ନେଉଛି ଏବଂ ତା'ପରେ ପୁଅ ଚିତ୍କାର କରି ଉଠୁଛି। ସେ
ତା' ନିଜର ନିୟନ୍ତ୍ରଣ ହରେଇ ବସୁଛି। ତା ମୁହଁରୁ ଫେଣ
ବାହାରି ପଡୁଛି। ସେ ଭୂତ ତାକୁ ବାରମ୍ବାର ଯନ୍ତ୍ରଣା
ଦେଉଛି ଓ ପ୍ରାୟ ତାକୁ ଛାଡି ଯାଉନାହିଁ।" ୪୦ମୁଁ
ଆପଣଙ୍କ ଶିଷ୍ୟମାନଙ୍କୁ ମୋ ପୁଅ ଦେହରୁ ଭୂତକୁ ଛଡ଼େଇ
ଦେବାକୁ ଅନୁରୋଧ କଲି, କିନ୍ତୁ ସେମାନେ ପାରିଲେନାହିଁ।"
୪୧ତା'ପରେ ଯୀଶୁ କହିଲେ, "ତୁମ୍ଭେମାନେ ବିଶ୍ୱାସ
ବିହୀନ ଜୀବନ ଯାପନ କରୁଛ ଓ କୁପଥଗାମୀ ହେଉଛ।
ଆଉ କେତେ ଦିନ ପର୍ଯ୍ୟନ୍ତ ମୁଁ ତୁମ୍ଭମାନଙ୍କ ସହିତ
ରହିଥିବି ଓ କେତେଦିନ ପର୍ଯ୍ୟନ୍ତ ମୁଁ ତୁମ୍ଭମାନଙ୍କର
ବ୍ୟବହାର ସହୁଥିବି?" ତାପରେ ଯୀଶୁ ଲୋକଟିକୁ କହିଲେ,
"ତୁମ୍ଭ ପୁଅକୁ ଏଠାକୁ ଆଣ।"
୪୨ପିଲାଟି ଆସୁଥିବା ବେଳେ ଭୂତ ତାକୁ ଭୂମି ଉପରକୁ
କଚାଡ଼ି ଦେଲା। ପିଲାଟି ନିଜର ନିୟନ୍ତ୍ରଣ ହରାଇ ବସିଲା।
କିନ୍ତୁ ଯୀଶୁ ଭୂତକୁ ଗୋଟିଏ କଠୋର ଧମକ ଦେଲେ।
ଏହାପରେ ପିଲାଟି ସୁସ୍ଥ ହୋଇଗଲା। ଯୀଶୁ ତାହାକୁ
ତା'ବାପା ପାଖରେ ସମର୍ପି ଦେଲେ। ୪୩ସମସ୍ତ ଲୋକ
ପରମେଶ୍ୱରଙ୍କ ମହାନ ଶକ୍ତି ଦେଖି ଆଶ୍ଚର୍ଯ୍ୟ
ହୋଇଗଲେ।

## ଯୀଶୁ ତାହାଙ୍କ ମୃତ୍ୟୁ ବିଷୟରେ କହିଲେ

ଯୀଶୁ ଯାହା ସବୁ କରୁଥିଲେ ତାହା ଦେଖି ଲୋକେ
ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ। ୪୪ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ
କହିଲେ, "ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ ଯାହା କହିବି, ତାହା
ଭୁଲିବ ନାହିଁ। ମନୁଷ୍ୟପୁତ୍ରଙ୍କୁ କେତେଜଣ ମନୁଷ୍ୟମାନଙ୍କ
ହାତରେ ଧରେଇ ଦେବେ।" ୪୫କିନ୍ତୁ ଶିଷ୍ୟମାନେ ଯୀଶୁଙ୍କ
ଏ କଥାର କିଛି ଅର୍ଥ ବୁଝି ପାରିଲେ ନାହିଁ। ଏହାର ଅର୍ଥ
ସେମାନଙ୍କ ପ୍ରତି ଲୁକାୟିତ ଥିଲା। ତେଣୁ ସେମାନେ କିଛି
ଏହାକୁ ବୁଝି ପାରିଲେ ନାହିଁ କିନ୍ତୁ ସେମାନେ ଯୀଶୁଙ୍କୁ ଏ
ବିଷୟରେ ପଚାରିବାକୁ ସାହାସ କଲେ ନାହିଁ।

## ସବୁଠାରୁ ବଡ଼ କିଏ

୪୬ଥରେ ଯୀଶୁଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଯୁକ୍ତିତର୍କ
ହେଲା ଯେ ସେମାନଙ୍କ ଭିତରେ ସବୁଠାରୁ ଶ୍ରେଷ୍ଠ କିଏ?
୪୭ଯୀଶୁ ସେମାନଙ୍କର ମନଭାବ ଜାଣିଗଲେ। ତେଣୁ ସେ
ଗୋଟିଏ ଛୋଟ ପିଲାକୁ ନିଜ ପାଖରେ ଠିଆ କରାଇଲେ।
୪୮ସେ ଶିଷ୍ୟମାନଙ୍କୁ କହିଲେ, "ଯଦି କୌଣସି ଲୋକ
ଏହିଭଳି ଛୋଟ ପିଲାକୁ ମୋ ନାମରେ ଗ୍ରହଣ କରେ,
ତାହାହେଲେ ସେ ମୋତେ ଗ୍ରହଣ କରେ। ଆଉ ଯେଉଁଲୋକ
ମୋତେ ଗ୍ରହଣ କରେ, ସେ ମୋତେ ପଠାଇ ଥିବା
ପରମେଶ୍ୱରଙ୍କୁ ଗ୍ରହଣ କରେ। ଏଣୁ ତୁମ୍ଭମାନଙ୍କ ମଧ୍ୟରେ
ଯେଉଁ ଲୋକ ସବୁଠାରୁ ନମ୍ର, ସେ ହେଉଛି ସବୁଠାରୁ
ଶ୍ରେଷ୍ଠ।"

## ଯେଉଁଲୋକ ତୁମ୍ଭର ବିପକ୍ଷ ନୁହେଁ ସେ ତୁମ୍ଭର ସପକ୍ଷ

୪୯ଯୋହନ କହିଲେ, "ଗୁରୁ, ଆମ୍ଭେମାନେ ଜଣେ
ଲୋକକୁ ଆପଣଙ୍କ ନାମ ନେଇ ଭୂତମାନଙ୍କୁ ଲୋକଙ୍କ
ଦେହରୁ ତଡି ଦେଉଥିବାର ଦେଖିଲୁ। ଆମ୍ଭେମାନେ ତାହାକୁ
ଏସବୁ ବନ୍ଦ କରିବାକୁ କହିଲୁ। କାରଣ ସେ ଆମ୍ଭ
ଶିଷ୍ୟମାନଙ୍କ ଗୋଷ୍ଠୀର ଲୋକ ନୁହେଁ।"
୫୦ଯୀଶୁ ଯୋହନଙ୍କୁ ଉତ୍ତର ଦେଲେ, "ତାକୁ ମନା
କରନାହିଁ। କାରଣ ଯେଉଁଲୋକ ତୁମ୍ଭ ବିପକ୍ଷରେ ନାହାଁନ୍ତି,
ସେହିଁ ତୁମ୍ଭ ସପକ୍ଷର ଲୋକ।"

## ଗୋଟିଏ ଶମିରୋଣୀୟ ନଗର

୫୧ଯୀଶୁ ଜଗତ ଛାଡି ସ୍ୱର୍ଗକୁ ଫେରିଯିବାର ସମୟ
ପାଖେଇ ଆସୁଥିଲା। ଯୀଶୁ ଯିରୂଶାଲମ ଯିବାକୁ ସ୍ଥିର
କଲେ। ୫୨ସେ ତାହାଙ୍କ ଆଗରୁ କେତେକ ଲୋକଙ୍କୁ
ପଠାଇଲେ। ସେମାନେ ଯୀଶୁଙ୍କ ପାଇଁ ସବୁକିଛି ପ୍ରସ୍ତୁତ
କରିବା ପାଇଁ ଶମିରୋଣର ଏକ ନଗରରେ ପହଞ୍ଚିଲେ।
୫୩କିନ୍ତୁ ଯୀଶୁ ଯିରୂଶାଲମକୁ ଯାଉଥିବାର ଦେଖି ସେଠାକାର
ଲୋକ ତାହାଙ୍କୁ ସ୍ୱାଗତ କଲେ ନାହିଁ। ୫୪ଯୀଶୁଙ୍କ ଶିଷ୍ୟ
ଯାକୁବ ଓ ଯୋହନ ଏହା ଦେଖିଲେ। ସେମାନେ କହିଲେ,

"ପ୍ରଭୁ ସ୍ୱର୍ଗରୁ ଅଗ୍ନି ବର୍ଷା କରି ସେମାନଙ୍କୁ ଧ୍ୱଂସ କରିଦେବାପାଇଁ ଆମ୍ଭେ ଆଦେଶ ଦେବୁ ବୋଲି କ'ଣ ଆପଣ ଚାହୁଁଛନ୍ତି?"*

୫୫କିନ୍ତୁ ଯୀଶୁ ସେମାନଙ୍କ ଆଡ଼କୁ ବୁଲି ପଡ଼ି ସେମାନଙ୍କୁ ଭର୍ତ୍ସନାକଲେ।* ୫୬ତା'ପରେ ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଅନ୍ୟ ଗାଁକୁ ଚାଲିଗଲେ।

## ଯୀଶୁଙ୍କ ଅନୁସରଣ କରିବା

୫୭ସେମାନେ ରାସ୍ତାରେ ଆଗେଇ ଯାଉଥିଲେ। ଜଣେ ଲୋକ ଯୀଶୁଙ୍କୁ କହିଲା, "ଆପଣ ଯେଉଁ ଆଡ଼େ ଯିବେ, ମୁଁ ଆପଣଙ୍କ ପଛେପଛେ ଯିବି।"

୫୮ଯୀଶୁ ତାହାକୁ କହିଲେ, "କୋକିଶିଆଳିର ରହିବାପାଇଁ ଗାତ ଅଛି। ଆକାଶର ପକ୍ଷୀମାନଙ୍କର ବସା ଅଛି, କିନ୍ତୁ ମନୁଷ୍ୟ ପୁତ୍ରଙ୍କର ମୁଣ୍ଡ ଗୁଞ୍ଜିବାକୁ ଟିକିଏ ହେଲେ ସ୍ଥାନ ନାହିଁ।"

୫୯ତା'ପରେ ଯୀଶୁ ଆଉ ଜଣକୁ କହିଲେ, "ମୋର ଅନୁସରଣ କର।"

କିନ୍ତୁ ସେହି ଲୋକଟି କହିଲା, "ପ୍ରଭୁ, ମୋତେ ପ୍ରଥମେ ଯାଇ ମୋ ବାପାଙ୍କୁ କବର ଦେବାକୁ ଅନୁମତି ଦିଅନ୍ତୁ।"

୬୦କିନ୍ତୁ ଯୀଶୁ ତାହାକୁ କହିଲେ, "ମୃତ ଲୋକଙ୍କୁ ମୃତ ଲୋକମାନେ କବର ଦେବେ। କିନ୍ତୁ ତୁମ୍ଭେ ଯାଇ ପରମେଶ୍ୱରଙ୍କ ରାଜ୍ୟବିଷୟରେ ପ୍ରଚାର କର।"

୬୧ଆଉ ଜଣେ ଲୋକ କହିଲା, "ପ୍ରଭୁ ମୁଁ ଆପଣଙ୍କ ଅନୁସରଣ କରିବି। କିନ୍ତୁ ପ୍ରଥମେ ମୋତେ ମୋ ପରିବାର ଲୋକଙ୍କ ଠାରୁ ବିଦାୟ ନେବାକୁ ଅନୁମତି ଦିଅନ୍ତୁ।"

୬୨କିନ୍ତୁ ଯୀଶୁ ତାହାଙ୍କୁ କହିଲେ, "ଯେଉଁ ଲୋକ ଲଙ୍ଗଳ ଉପରେ ହାତ ଦେଇ ପଛକୁ ଚାହେଁ, ସେ ପରମେଶ୍ୱରଙ୍କ ରାଜ୍ୟ ପାଇଁ ଯୋଗ୍ୟ ନୁହେଁ।"

## ଯୀଶୁ ବାସ୍ତରିଜଣଙ୍କୁ ପଠାଇଲେ

**୧୦** ଏହାପରେ ପ୍ରଭୁ(ଯୀଶୁ)ଆଉ ବାସ୍ତରିଜଣ* ଲୋକଙ୍କୁ ବାଛିଲେ। ଯେଉଁଯେଉଁ ନଗର ଓ ସ୍ଥାନ ମାନଙ୍କୁ ତାହାଙ୍କର ଯିବାର ଯୋଜନା ଥିଲା, ସେହି ନଗର ଓ ସ୍ଥାନ ମାନଙ୍କୁ ସେ ସେମାନଙ୍କୁ ଦୁଇଦୁଇ ଜଣ ହିସାବରେ ନିଜେ ଯିବା ଆଗରୁ ପଠାଇଦେଲେ। ୨ଯୀଶୁ ସେମାନଙ୍କୁ କହିଲେ, "ଅମଳ ହେବାକୁ ପ୍ରଚୁର ଫସଲ ପଡ଼ି ରହିଛି। କିନ୍ତୁ ମୂଲିଆ ଖୁବ କମ୍। ତେଣୁ ଫସଲର ମାଲିକଙ୍କୁ ପ୍ରାର୍ଥନା କର ଯେ, ସେ ଯେପରି ତାହାଙ୍କର ଫସଲ କାଟିବା ପାଇଁ କାମ କରିବାକୁ ଅଧିକ ମୂଲିଆ ପଠାଇବେ। ୩ଯାଅ, କିନ୍ତୁ ମନେରଖ। ମୁଁ ତୁମ୍ଭମାନଙ୍କୁ ଗଧିଆ ମାନଙ୍କ ମଧ୍ୟରେ ମେଣ୍ଢାଛୁଆ ଭାବରେ ପଠାଉଛି। ୪ସାଙ୍ଗରେ ଟଙ୍କା, ଥଳି, ଜୋତା କିଛି ହେଲେ ନିଅନାହିଁ। ରାସ୍ତାରେ କାହାରି ସହିତ କଥାବାର୍ତ୍ତା ହେବା ପାଇଁ ଅଟକି ଯିବ ନାହିଁ। ୫ଯେ କୌଣସି ଘରେ ପ୍ରବେଶ କରିବା ମାତ୍ରେ ପ୍ରଥମେ କୁହ, 'ଏ ଘରକୁ ଶାନ୍ତି ମିଳୁ।' ୬ଯଦି ସେଠାରେ କେହି ଶାନ୍ତିପ୍ରିୟ ଲୋକ ଥିବ, ତେବେ ତୁମ୍ଭମାନଙ୍କର ଶାନ୍ତିଆଶୀର୍ବାଦ ତାହାକୁ ମିଳିବ। ଯଦି ସେଠାରେ କେହି ଶାନ୍ତିପ୍ରିୟ ଲୋକ ନଥିବ, ତେବେ ତୁମ୍ଭମାନଙ୍କ ଶାନ୍ତିଆଶୀର୍ବାଦ ତୁମ୍ଭମାନଙ୍କ ପାଖକୁ ଫେରି ଆସିବ। ୭ତୁମ୍ଭେମାନେ ଶାନ୍ତି ଥିବା ଘରେ ରୁହ। ସେ ଲୋକମାନେ ତୁମ୍ଭମାନଙ୍କୁ ଯାହାଦେବେ ତାହା ଖାଅ ଓ ପିଅ। କାରଣ କାମ କରିବା ଲୋକର ତା'ବେତନ ଉପରେ ଅଧିକାର ଅଛି। ଅନ୍ୟ ଘରେ ରହିବା ପାଇଁ ସେହି ଘର ଛାଡି ଯାଅନାହିଁ। ୮ଯଦି ତୁମ୍ଭେମାନେ ଗୋଟିଏ ନଗରକୁ ଯାଅ ଓ ସେଠାରେ ଯଦି ଲୋକେ ତୁମ୍ଭମାନଙ୍କୁ ସ୍ୱାଗତ କରନ୍ତି, ତେବେ ତୁମ୍ଭମାନଙ୍କୁ ସେମାନେ ଯାହା ଖାଦ୍ୟ ଦିଅନ୍ତି, ତାହା ଖାଅ। ୯ସେଠାରେ ରହୁଥିବା ରୋଗୀଙ୍କୁ ସୁସ୍ଥ କର। ତା'ପରେ ସେମାନଙ୍କୁ କୁହ, 'ପରମେଶ୍ୱରଙ୍କ ରାଜ୍ୟ ତୁମ୍ଭମାନଙ୍କ ନିକଟରେ ଖୁବ ଶୀଘ୍ର ଆସି ପହଞ୍ଚିଯାଉଛି।' ୧୦କିନ୍ତୁ ତୁମ୍ଭେମାନେ ଯଦି ଏଭଳି ଏକ ନଗରକୁ ଯାଅ ଓ ସେଠାରେ ଲୋକେ ତୁମ୍ଭମାନଙ୍କର ସ୍ୱାଗତ ନ କରନ୍ତି, ତେବେ ସେହି ନଗରର ଗଳି ମାନଙ୍କରେ ଯାଅ ଏବଂ କୁହ, ୧୧'ଆମ୍ଭର ପାଦରେ ଲାଗିଥିବା ଏହି ଧୂଳିତକ ମଧ୍ୟ ଆମ୍ଭେ ତୁମ୍ଭମାନଙ୍କ ବିରୁଦ୍ଧରେ ଏହିଠାରେ ଝାଡି ଦେଇ ଯାଉଛୁ।' ତଥାପି ମନେରଖ, 'ପରମେଶ୍ୱରଙ୍କ ରାଜ୍ୟ ଖୁବ ଶୀଘ୍ର ଆସୁଛି।' ୧୨ମୁଁ ତୁମ୍ଭମାନଙ୍କୁ କହୁଛି ଯେ ବିଚାର ହେବା ଦିନ ସେହି ନଗରର ଲୋକମାନଙ୍କର ଦଶା ସଦୋମର ଲୋକମାନଙ୍କ ଦଶା ଅପେକ୍ଷା ଅଧିକ ଖରାପ ହେବ।

## ଅବିଶ୍ୱାସୀମାନଙ୍କୁ ଯୀଶୁଙ୍କ ଚେତାବନୀ

୧୩"ହାୟ୍ କୋରାଜିନ୍! ହାୟ୍ ବେଥ୍ସାଇଦା!* ତୁମ୍ଭମାନଙ୍କ ମଧ୍ୟରେ ମୁଁ ଅନେକ ଆଶ୍ଚର୍ଯ୍ୟକର୍ମ ଦେଖାଇଛି। ଯଦି ଏଗୁଡିକ ସୋର ଓ ସୀଦୋନରେ ଲୋକମାନଙ୍କୁ କରି ଯାଇଥାଆନ୍ତା, ତେବେ କେବେଠାରୁ ସେମାନେ ନିଜର ହୃଦୟ ପରିବର୍ତ୍ତନ କରି ସାରିଥାଆନ୍ତେ ଓ ପାପ କରିବା ଛାଡ଼ି ଦେଇଥାଆନ୍ତେ। ସେମାନେ ନିଜନିଜ ପାପ ପାଇଁ ଅନୁତାପ କରିଥିବା କଥା ଦେଖାଇବା ପାଇଁ ତାର ପ୍ରତୀକ ସ୍ୱରୁପ ଅଖାରେ ତିଆରି ଶୋକବସ୍ତ୍ର ଧାରଣ କରିଥାଆନ୍ତେ ଓ ମୁଣ୍ଡରେ ପାଉଁଶ ବୋଳି ହୋଇଥାଆନ୍ତେ। ୧୪ବିଚାର ଦିନ ତୁମ୍ଭମାନଙ୍କ ଦଶା ସୋର ଓ ସୀଦୋନର ଲୋକମାନଙ୍କ

---

**ପଦସଂଖ୍ୟା ୫୪** କେତେକ ଗ୍ରୀକ୍ ପୁସ୍ତକରେ ଏହା ଯୋଡ଼ାଯାଇଛି-'ଏଲିୟ ମଧ୍ୟ ଯେପରି କରିଥିଲେ,ସେହିପରି'

**ପଦସଂଖ୍ୟା ୫୫** କେତେକ ଗ୍ରୀକ୍ ପୁସ୍ତକରେ ଏହି ପାଠ ମଧ୍ୟ ମିଳିଥାଏ: ଏବଂ ଯୀଶୁ କହିଲେ,"ତୁମ୍ଭେ କ'ଣ ଜାଣିନାହଁ ଯେ ତୁମ୍ଭେ କିଭଳି ଆତ୍ମାର ଅଧିକାରୀ! ୫୬ ମନୁଷ୍ୟ ପୁତ୍ର ମନୁଷ୍ୟମାନଙ୍କ ଆତ୍ମାକୁ ନଷ୍ଟ କରିବାକୁ ନୁହେଁ ବରଂ ସେମାନଙ୍କର ଉଦ୍ଧାର କରିବା ପାଇଁ ଆସିଛନ୍ତି।

**ବାସ୍ତରିଜଣ** କେତେକ ଗ୍ରୀକ ପୁସ୍ତକରେ ଏହି ସଂଖ୍ୟା ସତୁରି ଲେଖାଅଛି।

**କୋରାଜିନ ଓ ବେଥ୍ସାଇଦା** ଗାଲୀଲୀ ହ୍ରଦ ଉପକୂଳସ୍ଥ ଦୁଇଟିନଗର। ଏଠାରେ ଯୀଶୁ ଲୋକଙ୍କୁ ଉପଦେଶ ପ୍ରଦାନ କରିଥିଲେ।

ଦଶା ଅପେକ୍ଷା ଅଧିକ ଖରାପହେବ। ୧୫ ଏବଂ ହେ କଫର୍ନାହୂମ!
ତୁମ୍ଭକୁ କ'ଣ ସ୍ୱର୍ଗ ଯେତେ ଉଚ୍ଚ, ସେତେ ଉଚ୍ଚକୁ ଉଠା
ଯିବ? ନା, ତୁମ୍ଭକୁ ନରକ ଯେତେ ନୀଚ ସେହିପରି ନୀଚ
ସ୍ଥାନକୁ ଅଣାଯିବ।
୧୬ "ଯେତେବେଳେ କୌଣସି ଲୋକ ତୁମ୍ଭମାନଙ୍କ କଥା
ଶୁଣେ, ସେ ପ୍ରକୃତରେ ମୋ କଥା ଶୁଣେ। ଯେତେବେଳେ,
ଜଣେ ତୁମ୍ଭମାନଙ୍କୁ ଗ୍ରହଣ କରିବାକୁ ମନା କରେ, ସେ
ପ୍ରକୃତରେ ମୋତେ ଗ୍ରହଣ କରିବାକୁ ମନା କରିଦିଏ ଏବଂ
ଯେତେବେଳେ ଜଣେ ମୋତେ ଗ୍ରହଣ କରିବାକୁ ମନା
କରେ, ସେ ପ୍ରକୃତରେ ମୋତେ ପଠାଇଥିବା ପରମେଶ୍ୱରଙ୍କୁ
ଗ୍ରହଣ କରିବାକୁ ମନା କରିଦିଏ।"

## ଶୟତାନର ପତନ

୧୭ ଯେତେବେଳେ ବାସ୍ତରି* ଜଣ ସେମାନଙ୍କ ଭ୍ରମଣରୁ
ଫେରି ଆସିଲେ, ସେମାନେ ବହୁତ ଖୁସି ଥିଲେ। ସେମାନେ
କହିଲେ, "ପ୍ରଭୁ, ଆମ୍ଭେମାନେ ଯେତେବେଳେ ଆପଣଙ୍କ
ନାମ ନେଇ ଆଜ୍ଞା ଦେଲୁ, ସେତେବେଳେ ଏପରିକି
ଭୂତମାନେ ମଧ୍ୟ ଆମ୍ଭମାନଙ୍କ କଥା ମାନିଲେ।" ୧୮ ଏହା
ଶୁଣି ଯୀଶୁ ସେମାନଙ୍କୁ କହିଲେ, "ମୁଁ ଶୟତାନକୁ ଆକାଶରୁ
ବିଜୁଳି ଭଳି ଖସିଥିବାର ଦେଖିଛି। ୧୯ ଶୁଣ! ସାପ ଓ
କଙ୍କଡାବିଛାମାନଙ୍କୁ ପାଦତଳେ ଦଳି ଦେବାକୁ ମୁଁ ତୁମ୍ଭମାନଙ୍କୁ
ଶକ୍ତି ଦେଇଛି। ମୁଁ ତୁମ୍ଭମାନଙ୍କୁ ଶତ୍ରୁ ପାଖରେ ଥିବା ଶକ୍ତି
ଠାରୁ ଅଧିକ ଶକ୍ତି ଦେଇଛି। ତୁମ୍ଭମାନଙ୍କର କେହି କିଛି
କ୍ଷତି କରି ପାରିବ ନାହିଁ। ୨୦ ହଁ, ଆତ୍ମାମାନେ ତୁମ୍ଭମାନଙ୍କ
କଥା ମାନୁଛନ୍ତି। ତୁମ୍ଭେମାନେ ଖୁସି ହୁଅ। କାହିଁକି?
ତୁମ୍ଭମାନଙ୍କ ପାଖରେ ଏ ଶକ୍ତି ଥିବା ଯୋଗୁ ନୁହେଁ, ବରଂ
ତୁମ୍ଭମାନଙ୍କ ନାମ ସ୍ୱର୍ଗରେ ଲେଖା ହୋଇଥିବା ଯୋଗୁ ଖୁସି
ହୁଅ।"

## ଯୀଶୁ ପରମପିତାହାଙ୍କୁ ପ୍ରାର୍ଥନା କଲେ

୨୧ ତାପରେ ପବିତ୍ରଆତ୍ମା ଯୀଶୁଙ୍କୁ ଅତ୍ୟନ୍ତ ଆନନ୍ଦିତ
କରାଇଲେ। ଯୀଶୁ କହିଲେ, "ହେ ପରମପିତା! ହେ ସ୍ୱର୍ଗ
ଓ ପୃଥିବୀର ପ୍ରଭୁ! ମୁଁ ତୁମ୍ଭକୁ ପ୍ରଶଂସା କରୁଛି। କାରଣ
ତୁମ୍ଭେ ଏହି କଥାଗୁଡିକୁ ଜ୍ଞାନୀ ଓ ବୁଦ୍ଧିମାନ ଲୋକମାନଙ୍କ
ନିକଟରୁ ଲୁଚେଇ ରଖିଥିଲେ ମଧ୍ୟ ଶିଶୁମାନଙ୍କ ପରି
ଲୋକମାନଙ୍କୁ ଦେଖାଇଛ। ହେ ପରମ ପିତା! ତୁମ୍ଭେ ଏହା
ପ୍ରକୃତରେ କରିବାକୁ ଚାହୁଁଥିଲ ବୋଲି ତୁମ୍ଭେ ଏହା କଲ।
୨୨ "ମୋର ପରମପିତା ମୋତେ ସବୁକିଛି ଦେଇଛନ୍ତି।
ପୁତ୍ର କିଏ ଏହା ପରମପିତାଙ୍କ ବ୍ୟତୀତ ଅନ୍ୟ କେହି
ଜାଣନ୍ତି ନାହିଁ। ଏବଂ ପରମପିତା କିଏ ଏହା ପୁତ୍ରଙ୍କ ଛଡା
କେହି ଜାଣନ୍ତି ନାହିଁ। କେବଳ ସେହିମାନେ ପରମପିତାଙ୍କ
ବିଷୟରେ ଜାଣିପାରିବେ, ଯେଉଁମାନଙ୍କୁ ତାହା ଜଣାଇବା
ନିମନ୍ତେ ପୁତ୍ର ସ୍ୱୟଂ ବାଛିବେ।"
୨୩ ତାପରେ ଯୀଶୁ ଶିଷ୍ୟମାନଙ୍କ ଆଡ଼କୁ ମୁହଁ ବୁଲାଇଲେ।
ଯୀଶୁଙ୍କ ସହିତ ସେଠାରେ କେବଳ ତାହାଙ୍କ ଶିଷ୍ୟମାନେ
ରହିଥିଲେ। ଯୀଶୁ କହିଲେ, "ତୁମ୍ଭେମାନେ ଧନ୍ୟ, ଯେହେତୁ
ତୁମ୍ଭେମାନେ ଏହି ସବୁବିଷୟ ଦେଖିଲ। ୨୪ ମୁଁ ତୁମ୍ଭମାନଙ୍କୁ
କହୁଛି, ତୁମ୍ଭେମାନେ ଏବେ ଯାହା ଦେଖୁଛ, ତାହା ଦେଖିବା
ପାଇଁ ଅନେକ ଭବିଷ୍ୟଦ୍‌ବକ୍ତା ଓ ରାଜା ଚାହିଁଥିଲେ। କିନ୍ତୁ
ସେମାନେ ଏସବୁ ଦେଖି ପାରି ନଥିଲେ। ତୁମ୍ଭେମାନେ
ଏବେ ଯାହା ଶୁଣୁଛ, ତାହା ଶୁଣିବା ପାଇଁ ଅନେକ
ଭବିଷ୍ୟଦବକ୍ତା ଓ ରାଜା ଚାହିଁଥିଲେ। କିନ୍ତୁ ସେମାନେ
ଏସବୁ ଶୁଣି ପାରି ନଥିଲେ।"

## ଉତ୍ତମ ଶମିରୋଣୀୟ ଦୃଷ୍ଟାନ୍ତ

୨୫ ତାପରେ ଜଣେ ଧର୍ମଶାସ୍ତ୍ରୀ ଠିଆ ହେଲେ। ସେ
ଯୀଶୁଙ୍କୁ ପରୀକ୍ଷା କରିବା ପାଇଁ ତାହାଙ୍କୁ ପଚାରିଲେ, "ଗୁରୁ,
ଅନନ୍ତ ଜୀବନ ଲାଭ କରିବା ପାଇଁ ମୁଁ କ'ଣ କରିବି?"
୨୬ ଏହା ଶୁଣି ଯୀଶୁ ତାହାଙ୍କୁ କହିଲେ, "ବ୍ୟବସ୍ଥାଶାସ୍ତ୍ରରେ
କ'ଣ ଲେଖାଅଛି? ସେଥିରେ ତୁମ୍ଭେ କ'ଣ ପଢୁଛ?"
୨୭ ସେ ଉତ୍ତର ଦେଲେ, "'ତୁମ୍ଭେ ନିଜର ସମସ୍ତ
ହୃଦୟ, ସମସ୍ତ ଆତ୍ମା, ସମସ୍ତ ଶକ୍ତି, ଓ ସମସ୍ତ ମନଦେଇ
ତୁମ୍ଭର ପ୍ରଭୁ ପରମେଶ୍ୱରଙ୍କୁ ପ୍ରେମ କର।'* ଏବଂ, 'ତୁମ୍ଭେ
ନିଜକୁ ପ୍ରେମ କରିଲା ଭଳି ଅନ୍ୟମାନଙ୍କୁ ପ୍ରେମ କର।'"*
୨୮ ତାପରେ ଯୀଶୁ ତାହାଙ୍କୁ କହିଲେ, "ତୁମ୍ଭେ ଠିକ୍
ଉତ୍ତର ଦେଇଛ। ଏହାହିଁ କର। ଏହା ଫଳରେ ତୁମ୍ଭେ
ଅନନ୍ତଜୀବନ ଲାଭ କରିବ।"
୨୯ ନିଜେ ଠିକ୍ ଜୀବନ ଯାପନ କରୁଛନ୍ତି ବୋଲି
ଧର୍ମଶାସ୍ତ୍ରୀ ଜଣକ ପ୍ରମାଣ କରିବାକୁ ଚାହୁଁଥିଲେ। ତେଣୁ
ସେ ଯୀଶୁଙ୍କୁ ପଚାରିଲେ, "ତେବେ ଯେଉଁମାନଙ୍କୁ ପ୍ରେମ
କରିବ, ସେମାନେ କିଏ?"
୩୦ ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଯୀଶୁ କହିଲେ,
"ଜଣେ ଲୋକ ଯିରୂଶାଲମରୁ ଯିରୀହୋକୁ ଯାଉଥିଲା।
ବାଟରେ ସେ ଡକାୟତମାନଙ୍କ ହାବୁଡ଼ରେ ପଡ଼ିଲା। ସେମାନେ
ତା' ଲୁଗାପଟା ସବୁ ଚିରି ବାହାର କରି ଓ ତାକୁ ମାଡ
ମାରି ଅର୍ଦ୍ଧମୃତ ଅବସ୍ଥାରେ ପକାଇଦେଇ ଚାଲିଗଲେ।
୩୧ ଏପରି ଘଟିଲା ଯେ ଜଣେ ଯିହୂଦୀଯାଜକ ସେହି ରାସ୍ତା
ଦେଇ ଯାଉଥିଲେ। ସେହି ଲୋକଟିକୁ ଦେଖି ସେ ବାଟ
ଭାଙ୍ଗି ଚାଲିଗଲେ। ୩୨ ତାପରେ ଜଣେ ଲେବୀୟ * ସେହି
ବାଟରେ ଆସିଲେ। ସେ ସେହି ଲୋକଟିକୁ ଦେଖିବା
ସତ୍ତ୍ୱେ ତାକୁ ସାହାଯ୍ୟ କରିବାକୁ ନ ଅଟକି ଚାଲିଗଲେ।
୩୩ ତାପରେ ଶମିରୋଣୀୟ ଦେଶର ଜଣେ ଲୋକ ସେହି
ବାଟେ ଆସିଲେ। ଆହତ ଲୋକଟି ଯେଉଁଠାରେ ପଡ଼ିଥିଲା,
ସେ ସେହି ସ୍ଥାନକୁ ଆସିଲେ। ସେ ସେହି ଲୋକଟିକୁ
ଦେଖି ତା ପାଇଁ ବହୁତ ମନ ଦୁଃଖ କଲେ। ୩୪ ସେ
ଆହତ ଲୋକଟି ପାଖକୁ ଗଲେ। ତା କ୍ଷତରେ ତେଲ ଓ
ଅଙ୍ଗୁରରସ ଢ଼ାଳି ପଟି ବାନ୍ଧିଦେଲେ। ତାହାଙ୍କ ପାଖରେ

---

**ବାସ୍ତରି** କେତେକ ଗ୍ରୀକ୍ ପୁସ୍ତକରେ ସତୁରି ଲେଖା ଅଛି।

**'ତୁମ୍ଭେ ନିଜର ... ପ୍ରେମ କର'** ଦ୍ୱିତୀୟ ବିବରଣ ୬:୫

**'ତୁମ୍ଭେ ନିଜକୁ ... ପ୍ରେମ କର'** ଲେବୀୟ ପୁସ୍ତକ ୧୯:୧୮

**ଲେବୀୟ** ଲେବୀ ପରିବାର-ସମୂହର ଲୋକ। ଏମାନେ ମନ୍ଦିରରେ ଇହୁଦୀ ଯାଜକଙ୍କୁ ସାହାର୍ଯ୍ୟ କରିଥାନ୍ତି।

ଗଧଟିଏ ଥିଲା। ସେ ଆହତ ଲୋକଟିକୁ ତାହାଙ୍କ ଗଧ
ଉପରେ ବସାଇ ଗୋଟିଏ ଚଟିଘରକୁ ନେଇଗଲେ। ଚଟିଘରେ
ସେ ଆହତ ଲୋକଟିର ଯତ୍ନ ନେଲେ। ୩୫ତା'ପରଦିନ
ଶମିରୋଣୀୟ ଲୋକ ଜଣକ ଦୁଇଟି ରୂପାମୁଦ୍ରା ବାହାର
କଲେ। ସେ ତାହା ଚଟିଘରର ଦାୟିତ୍ୱରେ ଥିବା ଲୋକଟିକୁ
ଦେଇ କହିଲେ, 'ଏହି ଆହତ ଲୋକଟିର ଯତ୍ନ ନେବ।
ତା' ପାଇଁ ଯଦି ଆଉ ଅଧିକ ଟଙ୍କା ଖର୍ଚ୍ଚ ହୁଏ, ମୁଁ
ଫେରିଲା ବେଳେ ତୁମ୍ଭକୁ ସେତକ ପରିଶୋଧ
କରିଦେବି।'"

୩୬ଏହାପରେ ଯୀଶୁ କହିଲେ, "ଏବେ କୁହ, ଡକାୟତମାନଙ୍କ
ହାବୁଡ଼ରେ ପଡ଼ି ଆହତ ହୋଇଥିବା ଲୋକଟିକୁ ଏହି ତିନି
ଜଣଙ୍କ ମଧ୍ୟରୁ କିଏ ପ୍ରେମଭାବ ଦେଖାଇଲେ ବୋଲି ତୁମ୍ଭେ
ଭାବୁଛ?"

୩୭ଶାସ୍ତ୍ରୀ ଜଣକ କହିଲେ, "ଯେଉଁଲୋକ ଆହତ ଲୋକଟିକୁ
ସାହାଯ୍ୟ କଲା।"

ତାପରେ ଯୀଶୁ ତାହାଙ୍କୁ କହିଲେ, "ତେବେ ତୁମ୍ଭେ
ଯାଅ, ଏବଂ ଲୋକମାନଙ୍କ ନିମନ୍ତେ ସେହିଭଳି କାମକର।"

## ମରିୟମ ଓ ମାର୍ଥା

୩୮ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ଯାତ୍ରା କରୁଥିବା
ଅବସରରେ ଗୋଟିଏ ଗାଁକୁ ଯୀଶୁ ଗଲେ। ମାର୍ଥା ନାମକ
ଜଣେ ସ୍ତ୍ରୀଲୋକ ଯୀଶୁଙ୍କୁ ନିଜ ଘରକୁ ସ୍ୱାଗତ କଲା।
୩୯ମାର୍ଥାର ମରିୟମ ନାମରେ ଗୋଟିଏ ଭଉଣୀ ଥିଲା।
ମରିୟମ ଯୀଶୁଙ୍କ ପାଦ ପାଖରେ ବସି ତାହାଙ୍କ ଉପଦେଶ
ଶୁଣୁଥିଲା, କିନ୍ତୁ ମାର୍ଥା ଘରର ସବୁ କାମ କରୁଥିଲା।
୪୦ମାର୍ଥାକୁ ବହୁତ ଗୁଡ଼ାଏ କାମ କରିବାକୁ ପଡ଼ୁଥିବାରୁ ସେ
ରାଗିଗଲା। ସେ ଯୀଶୁଙ୍କ ପାଖକୁ ଆସି କହିଲା, "ପ୍ରଭୁ!
ମୋ ଭଉଣୀ ଘରର ଯେ ସବୁ କାମ ମୋ ଉପରେ ଛାଡ଼ି
ଦେଇଛି, ଏବିଷୟରେ କ'ଣ ଆପଣଙ୍କର ମନୋଯୋଗ
ନାହିଁ? ଏଣୁ ତାହାକୁ କୁହନ୍ତୁ ଯେ ସେ ମୋତେ ସାହାଯ୍ୟ
କରୁ।"

୪୧ଯୀଶୁ ଉତ୍ତର ଦେଲେ, "ମାର୍ଥା, ହେ ମାର୍ଥା, ବହୁତ
ଗୁଡ଼ାଏ କଥା ପାଇଁ ତୁମ୍ଭେ ବ୍ୟସ୍ତ ଓ ଚିନ୍ତିତ ଅଛ। ୪୨କିନ୍ତୁ
ଗୋଟିଏ ଜିନିଷ ସବୁଠାରୁ ମହତ୍ୱପୂର୍ଣ୍ଣ। ମରିୟମ ନିଜ ପାଇଁ
ଠିକ୍ ଜିନିଷଟି ପସନ୍ଦ କରିଛି, ଏବଂ ଏହା ତା ଠାରୁ
ଛଡ଼େଇ ନିଆଯିବନାହିଁ।"

## ଯୀଶୁ ପ୍ରାର୍ଥନା ବିଷୟରେ ଉପଦେଶ ଦେଲେ।

୧୧ ଥରେ ଯୀଶୁ ଗୋଟିଏ ସ୍ଥାନରେ ପ୍ରାର୍ଥନା କରୁଥିଲେ।
ସେ ପ୍ରାର୍ଥନା କରି ସାରିବା ପରେ ତାହାଙ୍କର
ଜଣେ ଶିଷ୍ୟ ତାହାଙ୍କୁ କହିଲେ, "ପ୍ରାର୍ଥନା କିପରି କରିବାକୁ
ହେବ ତାହା ଯୋହନ ତାହାଙ୍କ ଶିଷ୍ୟମାନଙ୍କୁ ଶିଖାଇ
ଦେଇଥିଲେ। ପ୍ରଭୁ, ପ୍ରାର୍ଥନା କିପରି କରିବାକୁ ହୁଏ, ତାହା
ଆପଣ ମଧ୍ୟ ଆମ୍ଭମାନଙ୍କୁ ବତେଇ ଦିଅନ୍ତୁ।

୨ଯୀଶୁ ସେମାନଙ୍କୁ କହିଲେ, "ତୁମ୍ଭେମାନେ ପ୍ରାର୍ଥନା
କଲାବେଳେ କୁହ:

'ହେ ପରମପିତା, ଆମ୍ଭେମାନେ ପ୍ରାର୍ଥନା କରୁଛୁ ଯେ
ତୁମ୍ଭ ନାମ ସର୍ବଦା ପବିତ୍ର ରହୁ। ଆମ୍ଭେମାନେ
ପ୍ରାର୍ଥନା କରୁଛୁଯେ ତୁମ୍ଭର ରାଜ୍ୟ ଆସୁ।
୩ ଆମ୍ଭେମାନେ ଆବଶ୍ୟକ କରୁଥିବା ଖାଦ୍ୟ ଆମ୍ଭକୁ
ଦିଅ।
୪ ଆମ୍ଭମାନଙ୍କର ପାପଗୁଡ଼ିକୁ କ୍ଷମା କରିଦିଅ, କାରଣ
ଯେଉଁମାନେ ଆମ୍ଭମାନଙ୍କ ପ୍ରତି ଅନ୍ୟାୟ କରିଛନ୍ତି,
ଆମ୍ଭେମାନେ ପ୍ରତ୍ୟେକଙ୍କୁ ମଧ୍ୟ କ୍ଷମା କରି ଦେଉଛୁ।
ଆମ୍ଭମାନଙ୍କୁ କଠିନ ପରୀକ୍ଷା ମଧ୍ୟରେ ପକାଅ ନାହିଁ।'"

## ମାଗୁଥାଅ

୫-୬ତାପରେ ଯୀଶୁ ସେମାନଙ୍କୁ କହିଲେ, "ମନେ କର
ତୁମ୍ଭମାନଙ୍କ ଭିତରୁ ଜଣେ କେହି ନିଜ ସାଙ୍ଗ ପାଖକୁ
ରାତିରେ ବହୁତ ଡେରିରେ ଯାଇ କହିଲା, 'ମୋର ଅନ୍ୟ
ସହରରେ ଜଣେ ବନ୍ଧୁ ମୋତେ ଦେଖା କରିବାକୁ ଆସିଛନ୍ତି।
ତାହାଙ୍କୁ ଖାଇବାକୁ ଦେବାପାଇଁ ମୋ ପାଖରେ କିଛି
ହେଲେ ନାହିଁ। ଦୟାକରି ମୋତେ ତିନିଖଣ୍ଡ ରୋଟୀଦିଅ।'
୭ତୁମ୍ଭ ସାଙ୍ଗ ଘର ଭିତରୁ ଉତ୍ତର ଦେଲେ, 'ତୁମ୍ଭେ
ଚାଲିଯାଅ। ମୋତେ ହଇରାଣ କରନାହିଁ। ଦୁଆର ବନ୍ଦ
ହୋଇଗଲାଣି। ମୁଁ ଓ ମୋ ପିଲାମାନେ ଶୋଇବାକୁ ଗଲୁଣି,
ତୁମ୍ଭକୁ ରୋଟୀ ଦେବାକୁ ମୁଁ ବର୍ତ୍ତମାନ ଉଠି ପାରିବିନାହିଁ।'
୮ମୁଁ ତୁମ୍ଭକୁ କହୁଛି। ସେ ଲୋକଟି ଶେଯ ଛାଡ଼ି ଉଠିବା,
ଓ ତୁମ୍ଭକୁ ରୋଟୀ ଦେବା ପାଇଁ ହୁଏତ ତୁମ୍ଭର ବନ୍ଧୁତ୍ୱ
ଯଥେଷ୍ଟ ହୋଇ ପାରି ନଥାଏ। କିନ୍ତୁ ତୁମ୍ଭେ ଯଦି ନିରନ୍ତର
ମାଗି ଚାଲିଥାଅ, ତେବେ ସେ ନିଶ୍ଚୟ ଉଠିବ, ଓ ତୁମ୍ଭର
ଯାହା ଦରକାର, ତାହା ଦେବ। ୯ତେଣୁ ମୁଁ ତୁମ୍ଭମାନଙ୍କୁ
କହୁଛି, ବାରମ୍ବାର ମାଗୁଥାଅ। ତାହେଲେ ପରମେଶ୍ୱର
ତୁମ୍ଭମାନଙ୍କୁ ଦେବେ। ଖୋଜୁ ଥାଅ। ତୁମ୍ଭେମାନେ ପାଇବ।
ଦୁଆର ଠକ୍‌ଠକ୍ କରି ଚାଲି ଥାଅ। ତୁମ୍ଭ ପାଇଁ ଦୁଆର
ଖୋଲିଯିବ। ୧୦କାରଣ ଯେଉଁଲୋକମାନେ ମାଗୁଥାନ୍ତି, ସେମାନେ
ପ୍ରତ୍ୟେକେ ପାଇଥାନ୍ତି। ଯେଉଁମାନେ ଖୋଜୁଥାନ୍ତି, ସେମାନେ
ପାଇଥାନ୍ତି। ଯେଉଁମାନେ ଦୁଆର ବାଡ଼େଇ ଥାନ୍ତି, ସେମାନଙ୍କ
ପାଇଁ ଦୁଆର ଖୋଲି ଯାଏ। ୧୧ତୁମ୍ଭମାନଙ୍କ ଭିତରୁ କାହାର
ପୁଅଟିଏ ଅଛି କି? ତୁମ୍ଭକୁ ତୁମ୍ଭ ପୁଅ ମାଛଟିଏ ମାଗିଲେ
ତୁମ୍ଭେ କ'ଣ କରିବ? କୌଣସି ବାପା ତା ପୁଅକୁ ମାଛଟିଏ
ବଦଳରେ, ସାପଟିଏ ଦିଏ କି? ନା, ତୁମ୍ଭେମାନେ ତାକୁ
ମାଛ ଦେବ। ୧୨କିମ୍ବା ପୁଅ ଯଦି ଅଣ୍ଡାଟିଏ ମାଗେ, ତେବେ
ତା ହାତରେ ତୁମ୍ଭେମାନେ କଙ୍କଡ଼ାବିଛାଟିଏ ଦେବକି? ନା।
୧୩ତୁମ୍ଭେମାନେ ଖରାପ ଲୋକ ହୋଇଥିଲେ ମଧ୍ୟ ତୁମ୍ଭମାନଙ୍କ
ପିଲାମାନଙ୍କୁ କିଭଳି ଭଲ ଉପହାର ଦିଆଯାଏ ତୁମ୍ଭେମାନେ
ଜାଣ। ତେବେ ସ୍ୱର୍ଗରେ ରହୁଥିବା ତୁମ୍ଭମାନଙ୍କର ପରମପିତା
ଜାଣନ୍ତି ଯେ ତାହାଙ୍କୁ ମାଗୁଥିବା ଲୋକ ମାନଙ୍କୁ ସେ
ପବିତ୍ରଆତ୍ମା କିପରି ଦେବେ।"

## ଯୀଶୁଙ୍କଠାରେ ପରମେଶ୍ୱରଙ୍କର ଶକ୍ତି

୧୪ଥରେ ଯୀଶୁ କଥା କହି ପାରୁନଥିବା ଗୋଟିଏ
ଲୋକ ଦେହରୁ ଭୂତକୁ ତଡ଼ି ଦେଉଥିଲେ। ଭୂତଟି ମୂକ

ଲୋକ ଦେହରୁ ବାହାରି ଆସିବା ମାତ୍ରେ, ଲୋକଟି ପୁଣି
କଥା କହିବାକୁ ଲାଗିଲା। ଜମା ହୋଇଥିବା ଲୋକମାନେ
ଆଶ୍ଚର୍ଯ୍ୟ ହୋଇଗଲେ। ୧୫କିନ୍ତୁ ସେମାନଙ୍କ ମଧ୍ୟରୁ କେତେକ
କହିଲେ, "ଯୀଶୁ ଭୂତପତି ବାଆଲ୍‌ଜିବୁଲ୍‌ର ଶକ୍ତି ଦ୍ୱାରା
ଭୂତ ଛଡ଼ାଉଛନ୍ତି, ଭୂତମାନଙ୍କୁ ତଡ଼ି ଦେବାକୁ ବ୍ୟବହାର
କରୁଛନ୍ତି।
୧୬ଅନ୍ୟ ଲୋକମାନେ ଯୀଶୁଙ୍କୁ ପରୀକ୍ଷା କରିବାକୁ
ଚାହୁଁଥିଲେ। ସେମାନେ ଯୀଶୁଙ୍କୁ ସ୍ୱର୍ଗର କୌଣସି ଚିହ୍ନ
ଦେଖାଇବାକୁ କହିଲେ। ୧୭କିନ୍ତୁ ଯୀଶୁ ସେହିଲୋକମାନଙ୍କ
ଭାବନା ଜାଣିପାରିଲେ। ସେ କହିଲେ, "ଗୋଟିଏ ରାଜ୍ୟ
ଭାଗଭାଗ ହୋଇ ନିଜ ବିରୁଦ୍ଧରେ ଲଢେଇ କଲେ ଶେଷରେ
ଧ୍ୱଂସ ହୋଇଯିବ। ଗୋଟିଏ ପରିବାରର ଲୋକେ ନିଜ
ବିରୁଦ୍ଧରେ ଲଢ଼େଇ କଲେ ସେ ପରିବାର ମଧ୍ୟ ଭାଙ୍ଗି
ଯିବ। ୧୮ତେଣୁ ଯଦି ଶୟତାନ ନିଜ ବିରୁଦ୍ଧରେ ଲଢ଼େଇ
କରେ, ତେବେ କିଭଳି ତା ରାଜ୍ୟ ତିଷ୍ଠି ରହି ପାରିବ? ମୁଁ
ବାଆଲ୍‌ଜିବୁଲ୍ ସହାଯ୍ୟରେ ଭୂତମାନଙ୍କୁ ବାହାର କରି
ଦେଉଛି ବୋଲି ତୁମ୍ଭେମାନେ କହୁଛ। ୧୯କିନ୍ତୁ, ମୁଁ ଯଦି
ବାଆଲ୍‌ଜିବୁଲ୍ ସାହାଯ୍ୟରେ ଭୂତମାନଙ୍କୁ ବାହାର କରି
ଦେଉଛି, ତେବେ ତୁମ୍ଭମାନଙ୍କ ଲୋକମାନେ କାହା ସାହାଯ୍ୟରେ
ଭୂତମାନଙ୍କୁ ବାହାର କରୁଛନ୍ତି? ତେବେ ତୁମ୍ଭମାନଙ୍କର ନିଜ
ଲୋକେ ପ୍ରମାଣିତ କରି ଦେଉଛନ୍ତି ଯେ, ତୁମ୍ଭେମାନେ
ଭୁଲ କହୁଛ। ୨୦ମୁଁ ଭୂତମାନଙ୍କୁ ବାହାର କରିଦେବାପାଇଁ
ପରମେଶ୍ୱରଙ୍କ ଶକ୍ତି ବ୍ୟବହାର କରୁଛି। ଏକଥା ସ୍ପଷ୍ଟ
ଦେଖାଇ ଦେଉଛି ଯେ ପରମେଶ୍ୱରଙ୍କ ରାଜ୍ୟ ତୁମ୍ଭମାନଙ୍କ
ପାଖକୁ ଆସିଗଲାଣି।
୨୧"ଯେତେବେଳେ ଜଣେ ଶକ୍ତିଶାଳୀ ଲୋକ ଅନେକ
ଅସ୍ତ୍ରଶସ୍ତ୍ର ଧରି ନିଜ ଘରକୁ ଜଗିରହେ, ସେତେବେଳେ
ତା'ର ସମସ୍ତ ସମ୍ପତ୍ତି ସୁରକ୍ଷିତ ରହେ। ୨୨କିନ୍ତୁ, ଯେତେବେଳେ
ତା'ଠାରୁ ଜଣେ ଅଧିକ ଶକ୍ତିଶାଳୀ ଲୋକ ଆସେ ଓ
ତା'ଉପରେ ଆକ୍ରମଣ କରି ତାକୁ ହରେଇ ଦିଏ, ଯେଉଁ
ଅସ୍ତ୍ରଶସ୍ତ୍ର ଗୁଡିକ ଉପରେ ପ୍ରଥମ ଲୋକଟିର ଭରସା ଥିଲା,
ସେହି ସମସ୍ତ ଅସ୍ତ୍ରଶସ୍ତ୍ର ଗୁଡିକୁ ଅଧିକତର ବଳବାନ
ଲୋକଟି ଛଡେଇ ନିଏ, ଓ ତାହାର ଜିନିଷଗୁଡ଼ିକୁ ଯାହା
ଇଚ୍ଛା ତାହା କରେ।
୨୩"ଯେଉଁ ଲୋକ ମୋ ସହିତ ନାହିଁ, ସେ ମୋ
ବିରୁଦ୍ଧରେ ଅଛି, ଯେଉଁ ଲୋକ ମୋ ସହିତ କାମ କରୁନି,
ସେ ମୋ ବିରୁଦ୍ଧରେ କାମ କରୁଛି।

## ଶୂନ୍ୟ ମଣିଷ

୨୪"ଯେତେବେଳେ କୌଣସି ଭୂତ କୌଣସି ମଣିଷ
ଦେହରୁ ବାହାରି ଆସେ, ସେତେବେଳେ ସେହି ଆତ୍ମା
ବିଶ୍ରାମ ସ୍ଥାନ ଖୋଜିଖୋଜି ଶୁଖିଲା ଜାଗାସବୁରେ ବୁଲେ।
କିନ୍ତୁ ସେ ବିଶ୍ରାମ ନେବାକୁ ଜାଗା ଟିକିଏ ନ ପାଇଲେ
ଭାବେ, 'ମୁଁ ଯେଉଁଠାରୁ ଆସିଛି, ପୁଣି ସେହି ଘରକୁ
ଫେରିଯିବି।' ୨୫ଯେତେବେଳେ ଭୂତଟି ସେହି ମଣିଷ ନିକଟକୁ
ଫେରିଆସେ, ସେ ଦେଖେ ଯେ ସେହି ଘରଟି ସଫାସୁତୁରା
ଓ ସବୁ ଠିକ୍‌ଠାକ୍ ଅଛି। ୨୬ତାପରେ ସେ ଯାଇ ତା'ଠାରୁ
ଆହୁରି ଅଧିକ ଦୁଷ୍ଟ ସାତଜଣ ଭୂତଙ୍କୁ ଡାକିଆଣେ,
ସେମାନେ ସମସ୍ତେ ସେହି ମଣିଷ ମଧ୍ୟରେ ପ୍ରବେଶ କରି
ଏକତ୍ର ରହନ୍ତି। ଏହିଭଳି ଭାବରେ ସେହି ଲୋକଟିର
ଅବସ୍ଥା ପୂର୍ବ ଅପେକ୍ଷା ଅଧିକ ଖରାପ ହୋଇ ପଡେ।"

## ଏହି ଲୋକମାନେ ପ୍ରକୃତରେ ଧନ୍ୟ

୨୭ଯୀଶୁ ଏହିସବୁ କଥା କହୁଥିବା ସମୟରେ ଭିଡ
ଭିତରୁ ସ୍ତ୍ରୀ ଲୋକଟିଏ ଉଠିପଡି ଉଚ୍ଚ ସ୍ୱରରେ କହିବାକୁ
ଲାଗିଲା, "ଧନ୍ୟ ତୁମ୍ଭର ମାଆ। କାରଣ ସେ ତୁମ୍ଭକୁ ଜନ୍ମ
ଦେଇଛନ୍ତି ଓ କ୍ଷୀରପାନ କରାଇଛନ୍ତି।" ୨୮କିନ୍ତୁ ଯୀଶୁ
କହିଲେ, "ପରମେଶ୍ୱରଙ୍କ ଉପଦେଶ ଯେଉଁମାନେ ଶୁଣନ୍ତି,
ଓ ତାହା ମାନି ଚଳନ୍ତିପ୍ରକୃତରେ ସେହିମାନେ ହିଁ ଧନ୍ୟ।"

## ପ୍ରମାଣପାଇଁ ଦାବୀ

୨୯ଧୀରେ ଧୀରେ ଭିଡ ବଢ଼ିବାକୁ ଲାଗିଲା। ଯୀଶୁ
କହିଲେ, "ବର୍ତ୍ତମାନ ଯୁଗର ଲୋକେ ବଡ଼ ମନ୍ଦ। ସେମାନେ
ପରମେଶ୍ୱରଙ୍କଠାରୁ ପ୍ରମାଣ ସ୍ୱରୂପ ଏକ ଆଶ୍ଚର୍ଯ୍ୟକର୍ମ*
ଦେଖିବାକୁ ଚାହୁଁଛନ୍ତି। କିନ୍ତୁ ଏମାନଙ୍କୁ ଚିହ୍ନ ସ୍ୱରୂପ
କୌଣସି ଆଶ୍ଚର୍ଯ୍ୟକର୍ମ ଦେଖାଇ ଦିଆଯିବନାହିଁ। ଯୂନସ* ଙ୍କ
ସମ୍ବନ୍ଧରେ ଘଟିଥିବା ଆଶ୍ଚର୍ଯ୍ୟକର୍ମ ହେଉଛି ଏକ ମାତ୍ର
ଚିହ୍ନ। ୩୦ଯୂନସ ଯେପରି ନୀନିବୀୟମାନଙ୍କ ପାଇଁ ଚିହ୍ନ
ସ୍ୱରୂପ ହେଲେ, ସେହିଭଳି ଏହି ସମୟର ଲୋକମାନଙ୍କ
ପାଇଁ ମନୁଷ୍ୟପୁତ୍ର ମଧ୍ୟ ଚିହ୍ନ ସ୍ୱରୂପ ହେବେ। ୩୧ବିଚାର
ଦିନରେ ଦକ୍ଷିଣର ରାଣୀ* ପ୍ରକାଶିତ ହୋଇ ଏବେ
ବଞ୍ଚିଥିବା ଲୋକମାନଙ୍କ ବିରୁଦ୍ଧରେ ଅଭିଯୋଗ ଆଣିବେ, ଓ
ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରିବେ, କାରଣ ସେହି ରାଣୀ
ଶଲମୋନଙ୍କ ଜ୍ଞାନମୂଳକ ଉପଦେଶ ଶୁଣିବା ପାଇଁ ବହୁତ
ଦୂରରୁ ଆସିଥିଲେ, ଏବଂ ମୁଁ ତୁମ୍ଭମାନଙ୍କୁ କହୁଛି ଯେ, ମୁଁ
ଶଲମୋନଙ୍କ ଅପେକ୍ଷା ମହାନ୍ ଅଟେ। ୩୨ବିଚାର ହେବା
ଦିନ ନିନିବୀର ଲୋକମାନେ ଏହି ସମୟରେ ବଞ୍ଚିଥିବା
ଲୋକମାନଙ୍କ ବିରୁଦ୍ଧରେ ଠିଆ ହୋଇ ସେମାନଙ୍କୁ ଦୋଷୀ
ସାବ୍ୟସ୍ତ କରିବେ। କାରଣ ସେମାନେ ଯୂନସଙ୍କ ଉପଦେଶ
ଶୁଣି ନିଜର ହୃଦୟ ଓ ଜୀବନଯାପନ ପ୍ରଣାଳୀ ପରିବର୍ତ୍ତନ
କରିଥିଲେ। ମୁଁ ତୁମ୍ଭମାନଙ୍କୁ କହୁଛି ଯେ, ମୁଁ ଯୂନସଙ୍କ
ଅପେକ୍ଷା ମହାନ୍ ଅଟେ।

---

**ଆଶ୍ଚର୍ଯ୍ୟକର୍ମ** ପରମେଶ୍ୱରଙ୍କ ଶକ୍ତି ବଳରେ କରାଯାଇଥିବା ବିସ୍ମୟଜନକ କାର୍ଯ୍ୟ।

**ଯୂନସ** ପୁରାତନ ନିୟମରେ ବର୍ଣ୍ଣିତ ଜଣେ ଭବିଷ୍ୟଦ୍‌ବକ୍ତା। ଗୋଟିଏ ବଡ ମାଛ ପେଟରେ ତିନି ଦିନ ରହିବା ପରେ ସେ ଜୀବିତ ଅବସ୍ଥାରେ ବାହାରି ଆସିଥିଲେ। ସେହିଭଳି ଯୀଶୁ ସମାଧିରୁ ତୃତୀୟ ଦିନରେ ପୁନରୁତ୍ଥିତ ହେବେ।

**ଦକ୍ଷିଣର ରାଣୀ** ଶିବା ପ୍ରଦେଶର ରାଣୀ। ପରମେଶ୍ୱରଙ୍କ ଜ୍ଞାନ ଶଲମୋନଙ୍କ ଠାରୁ ଲାଭ କରିବା ପାଇଁ ସେ ଏକ ହଜାର ମାଇଲ ପଥ ଯାତ୍ରା କରିଥିଲେ।

### ପୃଥିବୀରେ ଆଲୋକ ସ୍ୱରୂପ ହୁଅ

୩୩"କୌଣସି ଲୋକ ଦୀପଟିଏ ଜଳାଇ ଲୁଗାଇ ରଖେନାହିଁ
କିମ୍ବା ହାଣ୍ଡି ତଳେ ରଖେ ନାହିଁ। ବରଂ ତାହା ରୁଖାଟିଏ
ଉପରେ ରଖେ, ଯାହା ଫଳରେ ଭିତରକୁ ଆସୁଥିବା
ଲୋକେ ଆଲୁଅ ଦେଖି ପାରିବେ। ୩୪ତୁମ୍ଭ ଆଖି ତୁମ୍ଭ
ଶରୀର ପାଇଁ ପ୍ରଦୀପ। ତୁମ୍ଭର ଆଖି ଭଲ ଥିଲେ ତୁମ୍ଭର
ସମଗ୍ର ଶରୀର ଆଲୁଅରେ ପରିପୂର୍ଣ୍ଣ ରହିବ। ତୁମ୍ଭର ଆଖି
ଖରାପ ଥିଲେ ତୁମ୍ଭର ସମଗ୍ର ଶରୀର ଅନ୍ଧକାରରେ
ଭରିଯିବ। ୩୫ମନେରଖ, ତୁମ୍ଭ ଭିତରର ଆଲୁଅ ଯେପରି
ଅନ୍ଧକାରମୟ ହୋଇ ନ ଯାଏ। ୩୬ଯଦି ତୁମ୍ଭର ସମଗ୍ର
ଶରୀର ଆଲୋକରେ ପରିପୂର୍ଣ୍ଣ ଏବଂ ଏହାର କୌଣସି
ଅଂଶ ଅନ୍ଧକାରମୟ ନୁହେଁ, ତାହାହେଲେ ଏହା ଆଲୋକରେ
ପୂର୍ଣ୍ଣ ରହିବ। ତାହା ତୁମ୍ଭ ଉପରେ (ଝଟକୁ) ଥିବା ପ୍ରଦୀପ
ପରି ହେବ।"

### ଯୀଶୁ ଫାରୂଶୀମାନଙ୍କୁ ସମାଲୋଚନା କଲେ

୩୭ଯୀଶୁ ତାହାଙ୍କ କଥା ଶେଷ କଲାବେଳକୁ ଜଣେ
ଫାରୂଶୀ ଯୀଶୁଙ୍କୁ ତାହାଙ୍କ ସାଙ୍ଗରେ ଖାଇବା ପାଇଁ
ଅନୁରୋଧ କଲେ। ତେଣୁ ଯୀଶୁ ଭିତରକୁ ଗଲେ ଓ
ଖାଇବା ପାଇଁ ବସି ପଡ଼ିଲେ। ୩୮ଯୀଶୁ ଖାଇବାକୁ ଯିବା
ପୂର୍ବରୁ ନିଜ ହାତ ନ ଧୋଇଥିବାରୁ ଫାରୂଶୀଜଣକ ଆଶ୍ଚର୍ଯ୍ୟ
ହୋଇଗଲେ। ୩୯ପ୍ରଭୁ (ଯୀଶୁ) ତାହାଙ୍କୁ କହିଲେ, "ତୁମ୍ଭେମାନେ
ଫାରୂଶୀମାନେ ଥାଳିଗିନାର ବାହାରତ ପରିଷ୍କାର କରୁଛ,
କିନ୍ତୁ ଭିତରେ ତୁମ୍ଭେମାନେ ଲୋକମାନଙ୍କୁ ଠକି ଓ
ଦୁଷ୍ଟତାପୂର୍ଣ୍ଣ ଆଚରଣ କରି ତା' ଦ୍ୱାରା ପାଇଥିବା ଜିନିଷରେ
ପରିପୂର୍ଣ୍ଣ କରିଛ। ୪୦ହେ ନିର୍ବୋଧଗଣ! ବାହାରେ ଯାହା
ଅଛି, ତାହା ଯିଏ ତିଆରି କରିଛନ୍ତି ସେ ମଧ୍ୟ ଭିତରେ
ଥିବା ବିଷୟସବୁ ତିଆରି କରିଛନ୍ତି। ୪୧ଏଣୁ ତୁମ୍ଭମାନଙ୍କ
ଭିତରେ ଥିବା ବିଷୟ ଗୁଡ଼ିକ ପ୍ରତି ଦୃଷ୍ଟିଦିଅ।
ଯେଉଁଲୋକମାନେ ସାହାଯ୍ୟ ଲୋଡ଼ନ୍ତି, ସେମାନଙ୍କୁ ସାହାଯ୍ୟ
କର। ତାହେଲେ ତୁମ୍ଭେମାନେ ସମ୍ପୂର୍ଣ୍ଣରୂପେ ପରିଷ୍କାର ଓ
ପବିତ୍ର ହୋଇଯିବ। ୪୨ହେ ଫାରୂଶୀଗଣ! ତୁମ୍ଭମାନଙ୍କୁ ଧିକ!
ତୁମ୍ଭେମାନେ ସମସ୍ତ ବିଷୟରେ ଦଶମାଂଶ ପରମେଶ୍ୱରଙ୍କୁ
ଦେଇଥାଅ। ପୋଦିନା, ଆରୁଦ, ଓ ଏପରିକି ବଗିଚାର
ଅନ୍ୟାନ୍ୟ ଛୋଟ ଗଛର ମଧ୍ୟ ଦଶ ଭାଗରୁ ଭାଗେ
ପରମେଶ୍ୱରଙ୍କୁ ଦେଇଥାଅ। କିନ୍ତୁ ଅନ୍ୟମାନଙ୍କ ପ୍ରତି ଦୟାପୂର୍ଣ୍ଣ
ବ୍ୟବହାର କରିବାକୁ ଓ ପରମେଶ୍ୱରଙ୍କୁ ଭଲ ପାଇବାକୁ
ତୁମ୍ଭେମାନେ ଭୁଲି ଯାଇଥାଅ। ତୁମ୍ଭମାନଙ୍କର ଏସବୁ କାର୍ଯ୍ୟ
କରିବା ଉଚିତ। ତା'ସହିତ ଦଶମାଂଶ ଦେବା ଏବଂ
ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ ଚାଲୁରଖିବା ଉଚିତ। ୪୩ହାୟ
ଫରୂଶୀଗଣ! କାରଣ ତୁମ୍ଭେମାନେ ଯିହୂଦୀ ପ୍ରାର୍ଥନାଗୃହରେ
ଅତ୍ୟନ୍ତ ମହତପୂର୍ଣ୍ଣ ଆସନ ଚାହୁଁଛ ଓ ହାଟବଜାରରେ
ଲୋକମାନଙ୍କ ଠାରୁ ସମ୍ମାନଜନକ ନମସ୍କାର ପାଇବାକୁ ଭଲ
ପାଉଛ। ୪୪ହାୟ, କାରଣ ତୁମ୍ଭେମାନେ ଲୁଚିରହିଥିବା ସେହି
କବରମାନଙ୍କ ଭଳି, ଯାହା ଉପରେ ଲୋକମାନେ ଅଜଣାରେ
ଚାଲିଯାଆନ୍ତି।"

### ଧର୍ମଶାସ୍ତ୍ରୀମାନଙ୍କ ବିଷୟରେ ଯୀଶୁଙ୍କ କଥନ

୪୫ଜଣେ ଧର୍ମଶାସ୍ତ୍ରୀ ଯୀଶୁଙ୍କୁ କହିଲେ, "ଗୁରୁ, ଆପଣ
ଯେତେବେଳେ ଫରୂଶୀମାନଙ୍କ ବିଷୟରେ ଏହି ଭଳି କଥା
କହୁଛନ୍ତି, ସେତେବେଳେ ଆମ୍ଭ ଦଳକୁ ମଧ୍ୟ ଅପମାନ
ଦେଉଛନ୍ତି।"

୪୬ଏହା ଶୁଣି ଯୀଶୁ କହିଲେ, "ହେ ଧର୍ମଶାସ୍ତ୍ରୀଗଣ!
ହାୟ, କାରଣ ତୁମ୍ଭେମାନେ ଲୋକମାନଙ୍କ ଉପରେ କଠିନ
ନିୟମର ବୋଝ ଏତେ ଲଦି ଦେଉଛ ଯେ, ତାହାମାନିବା
କଷ୍ଟକର ହୋଇଯାଉଛି। ଏହି ନିୟମ ଗୁଡ଼ିକୁ ମାନିବା ପାଇଁ
ତୁମ୍ଭେମାନେ ଲୋକଙ୍କୁ ବାଧ୍ୟ କରୁଛ କିନ୍ତୁ ନିଜେ କେବେହେଲେ
ଏଥିରୁ କୌଣସି ଗୋଟିଏ ହେଲେ ନିୟମ ପାଳିବାକୁ ଚେଷ୍ଟା
କରୁନାହିଁ। ୪୭ହାୟ, କାରଣ ତୁମ୍ଭେମାନେ ଭବିଷ୍ୟଦ୍‌ବକ୍ତାମାନଙ୍କ
ସମ୍ମାନାର୍ଥେ କବର ତିଆରି କରୁଥାଅ। କିନ୍ତୁ ଏହି
ଭବିଷ୍ୟଦ୍‌ବକ୍ତାମାନଙ୍କୁ ତୁମ୍ଭମାନଙ୍କର ପୂର୍ବପୁରୁଷମାନେ ହିଁ
ମାରିଦେଇଥିଲେ। ୪୮ଏହାଦ୍ୱାରା ତୁମ୍ଭେମାନେ ଲୋକଙ୍କୁ ଦେଖେଇ
ଦେବାକୁ ଚାହୁଁଛ ଯେ, ତୁମ୍ଭେମାନେ ତୁମ୍ଭମାନଙ୍କ
ପୂର୍ବପୁରୁଷମାନଙ୍କ କାମକୁ ସମର୍ଥନ କରୁଛ। କାରଣ ସେମାନେ
ଭବିଷ୍ୟଦ୍‌ବକ୍ତାମାନଙ୍କୁ ମାରି ଦେଇଥିଲେ ଏବଂ ତୁମ୍ଭେମାନେ
ତାହାଙ୍କ ପାଇଁ କବର ତିଆରି କରୁଛ। ୪୯ଏଥିପାଇଁ
ପରମେଶ୍ୱରଙ୍କ ଜ୍ଞାନ କହେ, 'ମୁଁ ଭବିଷ୍ୟଦ୍‌ବକ୍ତା ଓ
ପ୍ରେରିତମାନଙ୍କୁ ସେମାନଙ୍କ ପାଖକୁ ପଠାଇବି। କେତେକଙ୍କୁ
ସେମାନେ ମାରି ପକାଇବେ ଓ ଆଉ କେତେକଙ୍କୁ ବହୁତ
ଖରାପ ବ୍ୟବହାର ଦେଖାଇବେ।' ୫୦ଏଣୁ ସୃଷ୍ଟି ଆରମ୍ଭରୁ
ଯେତେଯେତେ ଭବିଷ୍ୟଦ୍‌ବକ୍ତାଙ୍କ ରକ୍ତପାତ ହୋଇଛି, ସେଥିପାଇଁ
ଏହି ସମୟର ବଞ୍ଚିଥିବା ଲୋକମାନଙ୍କୁ ଦଣ୍ଡ ଭୋଗିବାକୁ
ପଡ଼ିବ। ୫୧ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି। ହେବଲ* ଙ୍କ
ରକ୍ତପାତ ଠାରୁ ଆରମ୍ଭ କରି ବେଦୀ* ଓ ମନ୍ଦିର* ର
ମଧ୍ୟସ୍ଥଳରେ ନିହତ ହୋଇଥିବା ଜିଖରିୟଙ୍କ ରକ୍ତପାତ
ପର୍ଯ୍ୟନ୍ତ ସମସ୍ତ ଭବିଷ୍ୟଦ୍‌ବକ୍ତାଙ୍କ ରକ୍ତପାତ ପାଇଁ ଏହି
ସମୟରେ ବଞ୍ଚିଥିବା ଲୋକମାନଙ୍କୁ ଏହି ଦଣ୍ଡ ଭୋଗିବାକୁ
ପଡ଼ିବ।

୫୨"ହେ ଧର୍ମଶାସ୍ତ୍ରୀଗଣ! ତୁମ୍ଭମାନଙ୍କୁ ଧିକ୍, କାରଣ
ତୁମ୍ଭେମାନେ ଈଶ୍ୱର ଜ୍ଞାନର ଚାବିକାଠି ଲୁଚେଇ ଦେଲ।
ନିଜେ ଐଶ୍ୱରିକ ଜ୍ଞାନ ଶିଖିଲ ନାହିଁ କି, ଯେଉଁମାନେ
ଶିଖିବାକୁ ଚାହୁଁଥିଲେ, ସେମାନଙ୍କୁ ମଧ୍ୟ ଶିଖିବାକୁ ଦେଲନାହିଁ।"

୫୩ଯୀଶୁ ସେ ସ୍ଥାନ ଛାଡ଼ି ଚାଲି ଯାଉଥିବା ସମୟରେ
ଧର୍ମଶାସ୍ତ୍ରୀ ଓ ଫାରୂଶୀମାନେ ଯୀଶୁଙ୍କୁ ଅନେକ କଷ୍ଟ ଦେବା
ଆରମ୍ଭ କରିଦେଲେ। ସେମାନେ ଯୀଶୁଙ୍କୁ ଅନେକ ବିଷୟରେ
ପ୍ରଶ୍ନମାନ ପଚାରି ତାହାଙ୍କଠାରୁ ଉତ୍ତର ଚାହୁଁଥିଲେ। ୫୪କାରଣ

---

**ହେବଲ ଓ ଜିଖରିୟ** ବାଇବଲର ପୁରାତନ ନିୟମର ବର୍ଣ୍ଣନା ଅନୁଯାୟୀ ହତ୍ୟା କରାଯାଇଥିବା ଲୋକମାନଙ୍କ ମଧ୍ୟରେ ହେବଲ ଓ ଜିଖରୀୟ ଯଥାକ୍ରମେ ପ୍ରଥମ ଓ ଶେଷ ବ୍ୟକ୍ତି।

**ବେଦୀ** ମନ୍ଦିର ବାହାରେ ଏହି ସ୍ଥାନରେ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ବଳି ଦିଆଯାଏ।

**ମନ୍ଦିର** ଯିହୂଦୀମାନଙ୍କର ଉପାସନା ପାଇଁ ଯିରୂଶାଲମରେ ଥିବା ଅଟ୍ଟାଳିକା।

ସେମାନେ ଯୀଶୁଙ୍କୁ କିଛି ଭୁଲ କଥା କୁହାଇ ଫାନ୍ଦରେ
ପକେଇବାକୁ ବାଟ ଖୋଜୁଥିଲେ।

## ଫାରୂଶୀମାନଙ୍କ ଭଳି ହୁଅନାହିଁ

୧୨ ହଜାରହଜାର ଲୋକ ଆସି ଜମା ହୋଇଗଲେ।
ଲୋକେ ଜଣେ ଜଣକୁ ମାଡ଼ି ପକାଉ ଥିଲେ।
ଲୋକମାନଙ୍କୁ କହିବା ପୂର୍ବରୁ ଯୀଶୁ ପ୍ରଥମେ ନିଜ ଶିଷ୍ୟମାନଙ୍କୁ
କହିଲେ, “ଫାରୂଶୀମାନଙ୍କ ଖମୀରଠାରୁ ଦୂରରେ ରୁହ।
ମୋ କହିବାର ଅଭିପ୍ରାୟ ହେଉଛି ଯେ, ସେମାନେ
କପଟୀ। ୨ଲୁଚି ରହିଥିବା ପ୍ରତ୍ୟେକ ଜିନିଷକୁ ପ୍ରକାଶ କରି
ଦିଆଯିବ। ଗୋପନରେ ରହିଥିବା ପ୍ରତ୍ୟେକ ବିଷୟକୁ
ପ୍ରକାଶ କରାଯିବ। ୩ତୁମ୍ଭେମାନେ ଅନ୍ଧକାରରେ କହିଥିବା
କଥା ଆଲୁଅରେ କହି ଦିଆଯିବ। ଗୋଟିଏ ଏକାନ୍ତ
କୋଠରୀ ଭିତରେ ଚୁପ୍ କରି କାହା କାନରେ ତୁମ୍ଭେମାନେ
କିଛି କହିଲେ ମଧ୍ୟ ତାହାକୁ ଘରର ଛାତ ଉପରୁ
ଘୋଷଣା କରି ଦିଆଯିବ।”

## କେବଳ ପରମେଶ୍ୱରଙ୍କୁ ଭୟ କର

୪ତା’ପରେ ଯୀଶୁ ଲୋକମାନଙ୍କୁ କହିଲେ, “ହେ ମୋର
ବନ୍ଧୁଗଣ! ମୁଁ ତୁମ୍ଭମାନଙ୍କୁ କହୁଛି, ଲୋକଙ୍କୁ ଭୟ କରନାହିଁ।
ଲୋକେ କେବଳ ଶରୀରକୁ ମାରି ପକାଇବେ। କିନ୍ତୁ
ସେତିକି କରି ସାରିବା ପରେ ସେମାନେ ତୁମ୍ଭମାନଙ୍କର
ଆଉ ଅଧିକା କିଛି କରି ପାରିବେ ନାହିଁ। ୫ତୁମ୍ଭେମାନେ
ଯାହାକୁ ଭୟ କରିବା ଉଚିତ ମୁଁ ତୁମ୍ଭମାନଙ୍କୁ ତାହାଙ୍କୁ
ଦେଖାଇଦେବି। ତୁମ୍ଭମାନଙ୍କୁ ମାରିସାରି ନରକରେ ଫିଙ୍ଗିଦେବା
ଶକ୍ତି ଯାହାର ଅଛି, ତୁମ୍ଭେମାନେ ସେହି ପରମେଶ୍ୱରଙ୍କୁ
ଭୟ କରିବା ଉଚିତ। ହଁ, ମୁଁ ତୁମ୍ଭମାନଙ୍କୁ କହୁଛି,
କେବଳ ତାହାଙ୍କୁ ଭୟ କର।

୬“ଚଢ଼େଇ ବିକାଯିବା ବେଳେ ପାଞ୍ଚଟା ଚଢ଼େଇଙ୍କର
ମୂଲ୍ୟ ଅଳ୍ପ କେତେକ ପଇସା ହୁଏ। ତଥାପି, ପରମେଶ୍ୱର
ସେମାନଙ୍କ ମଧ୍ୟରୁ ଗୋଟିକୁ ହେଲେ ଭୁଲି ଯାଆନ୍ତିନାହିଁ।
୭ହଁ, ତୁମ୍ଭମାନଙ୍କ ମୁଣ୍ଡରେ କେତେ ଗୋଟି ବାଳ ଅଛି,
ତାହା ମଧ୍ୟ ପରମେଶ୍ୱର ଜାଣନ୍ତି। ଭୟ କର ନାହିଁ।
ତୁମ୍ଭମାନଙ୍କର ମୂଲ୍ୟ ଅନେକ ଚଢ଼େଇଙ୍କ ଅପେକ୍ଷା ବହୁତ
ଅଧିକ।

## ଯୀଶୁଙ୍କ ଯୋଗୁ ଲଜ୍ଜା କରନାହିଁ

୮“ମୁଁ ତୁମ୍ଭମାନଙ୍କୁ କହୁଛି, ଯେଉଁ ଲୋକ ସମସ୍ତଙ୍କ
ଆଗରେ ଠିଆ ହୋଇ କହେ ଯେ ସେ ମୋଠାରେ ବିଶ୍ୱାସ
କରୁଛି, ତା’ହେଲେ ମୁଁ (ମନୁଷ୍ୟପୁତ୍ର)ମଧ୍ୟ ପରମେଶ୍ୱରଙ୍କ
ସ୍ୱର୍ଗଦୂତମାନଙ୍କ ଆଗରେ କହିବି ଯେ ସେହି ଲୋକଟି
ମୋର ନିଜର ଲୋକ। ୯କିନ୍ତୁ ଯେଉଁଲୋକ ଅନ୍ୟମାନଙ୍କ
ଆଗରେ ଠିଆ ହୋଇ କୁହେ ଯେ, ସେ ମୋଠାରେ
ବିଶ୍ୱାସ କରେନାହିଁ, ତେବେ ମୁଁ ମଧ୍ୟ ପରମେଶ୍ୱରଙ୍କ
ସ୍ୱର୍ଗଦୂତମାନଙ୍କ ଆଗରେ କହିବି ଯେ ସେ ଲୋକ ମୋ
ନିଜ ଲୋକ ନୁହେଁ।

୧୦“ମନୁଷ୍ୟପୁତ୍ରଙ୍କ ବିରୁଦ୍ଧରେ କିଛି କହିଥିବା ଲୋକକୁ
କ୍ଷମା କରି ଦିଆଯାଇପାରେ। କିନ୍ତୁ ପବିତ୍ରଆତ୍ମାଙ୍କ ବିରୁଦ୍ଧରେ
କହିଥିବା ଲୋକକୁ କ୍ଷମା କରାଯାଇ ପାରିବନାହିଁ।

୧୧“ଯେତେବେଳେ ଲୋକମାନେ ତୁମ୍ଭମାନଙ୍କୁ ଯିହୂଦୀ
ପ୍ରାର୍ଥନାଗୃହ, ଶାସକ ଏବଂ ଅନ୍ୟାନ୍ୟ ଅଧିକାରୀମାନଙ୍କ
ଆଗକୁ ଆଣିବେ, ସେତେବେଳେ ତୁମ୍ଭେମାନେ କିପରି
ଉତ୍ତର ଦେବ, ଓ କ’ଣ କହିବ, ସେ ବିଷୟରେ ଆଦୌ
ଚିନ୍ତା କରନାହିଁ। ୧୨କାରଣ ସେହି ସମୟରେ ପବିତ୍ରଆତ୍ମା
ତୁମ୍ଭମାନଙ୍କୁ ଶିଖାଇ ଦେବେ ତୁମ୍ଭମାନଙ୍କୁ କ’ଣ କହିବାକୁ
ହେବ।”

## ସ୍ୱାର୍ଥପରତା ବିରୁଦ୍ଧରେ ଚେତାବନୀ

୧୩ଜନସମୂହ ମଧ୍ୟରୁ କେହି ଜଣେ ଯୀଶୁଙ୍କୁ କହିଲା,
“ଗୁରୁ,! ଆମ୍ଭର ବାପା ଏବେ ମରି ଗଲେ। ଆମ୍ଭ ବାପାଙ୍କ
ସମ୍ପତ୍ତିକୁ ଆମ୍ଭ ଭିତରେ ଭାଗ କରିବା ପାଇଁ ମୋ ଭାଇକୁ
କୁହନ୍ତୁ।”

୧୪ଏହା ଶୁଣି ଯୀଶୁ କହିଲେ, “ମୋତେ ତୁମ୍ଭମାନଙ୍କର
ବିଚାର କରିବାକୁ କିମ୍ବା ତୁମ୍ଭ ବାପାଙ୍କ ସମ୍ପତ୍ତି ତୁମ୍ଭ ଦୁହିଙ୍କ
ଭିତରେ ବାଣ୍ଟି ଦେବାକୁ କିଏ କହିଛି?” ୧୫ଯୀଶୁ କହିଲେ,
“ସାବଧାନରେ ସହିତ ସମସ୍ତ ପ୍ରକାର ଲୋଭରୁ ନିଜକୁ
ଦୂରରେ ରଖ। ନିଜର ଅଧିକାରରେ ଥିବା ବିପୁଳ ସଂପତ୍ତିରୁ
କେହି କେବେ ଜୀବନ ପାଇ ପାରେନହିଁ।”

୧୬ତା’ପରେ ସେ ସେମାନଙ୍କୁ ଗୋଟିଏ ଦୃଷ୍ଟାନ୍ତ ଶୁଣାଇଲେ:
“ଜଣେ ଧନୀ ଲୋକର କେତେକ ଜମି ଥିଲା। ସେହି
ଜମିରେ ବହୁତ ଖାଦ୍ୟଶସ୍ୟ ଫଳିଲା। ୧୭ଲୋକଟି ମନେ
ମନେ ଭାବିଲା, ‘ମୁଁ କ’ଣ କରିବି? ମୋ ପାଖରେ ମୋର
ସବୁ ଶସ୍ୟତକ ରଖିବା ପାଇଁ ଜାଗା ନାହିଁ। ୧୮ତା’ପରେ
ସେ କହିଲା, ଠିକ୍ ଅଛି। କ’ଣ କରିବାକୁ ହେବ, ତାହା
ମୁଁ ଜାଣିଛି। ମୁଁ ପ୍ରଥମେ ଅମାର ଗୁଡିକ ଭାଙ୍ଗିଦେଇ ବଡ
ବଡ ଅମାର ତିଆରି କରିବି ଏବଂ ସବୁତକ ଗହମ ଓ
ଭଲ ଜିନିଷ ତକ ଏକାଠି ନୂଆ ଅମାର ମାନଙ୍କରେ
ରଖିଦେବି। ୧୯ତା’ପରେ ମୁଁ ନିଜକୁ କହି ପାରିବି, ମୁଁ
ଅନେକ ଉତ୍ତମ ପଦାର୍ଥ ଅନେକ ବର୍ଷ ପାଇଁ ସଞ୍ଚୟ କରି
ରଖିଛି। ଏଥର ଆରାମ କର। ଖାଇପିଇ ମଉଜ କର।’
୨୦କିନ୍ତୁ ପରମେଶ୍ୱର ତାହାକୁ କହିଲେ, ‘ଆରେ ନିର୍ବୋଧ
ମନୁଷ୍ୟ! ଆଜି ରାତିରେ ତୁ ମରିଯିବୁ। ତୁ ଯେଉଁ
ପଦାର୍ଥତକ ତୋପାଇଁ ସାଇତି କରି ରଖିଛୁ, ତାହା କ’ଣ
ହେବ? ସେ ସବୁ କିଏ ଭୋଗ କରିବ?‘

୨୧“ଯେଉଁଲୋକ କେବଳ ନିଜ ପାଇଁ ଅନେକ ପଦାର୍ଥ
ସାଇତି କରି ରଖେ, ତାହା ପ୍ରତି ଏହିଭଳି ଘଟିବ।
ପରମେଶ୍ୱରଙ୍କ ଦୃଷ୍ଟିରେ ସେହିଲୋକ ଆଦୌ ଧନୀ ନୁହେଁ।’

## ପରମେଶ୍ୱରଙ୍କ ରାଜ୍ୟକୁ ପ୍ରଥମସ୍ଥାନ ଦେବା

୨୨ଯୀଶୁ ପୁଣି ତାହାଙ୍କ ଶିଷ୍ୟମାନଙ୍କୁ କହିଲେ, “ଏଣୁ ମୁଁ
ତୁମ୍ଭମାନଙ୍କୁ କହୁଛି ଯେ କ’ଣ ଖାଇ ଜୀବନଧାରଣ କରିବ,
ସେଥିପାଇଁ ଚିନ୍ତା କରନାହିଁ। ଶରୀର ଆବୃତ କରିବା ପାଇଁ
ଯେଉଁ ଲୁଗା ପଟା ଦରକାର, ସେଥିପାଇଁ ଚିନ୍ତା କରନାହିଁ।
୨୩କାରଣ ଜୀବନ ଖାଇବା ଠାରୁ ଓ ଶରୀର ପିନ୍ଧିବା ଠାରୁ

ଅଧିକ ମହତ୍ତ୍ୱପୂର୍ଣ୍ଣ। ୨୪ପକ୍ଷୀଗୁଡ଼ିକଙ୍କୁ ଦେଖ। ସେମାନେ
ବିହନ ବୁଣନ୍ତି ନାହିଁ, କି ଫସଲ ଅମଳ କରନ୍ତି ନାହିଁ।
ସଞ୍ଚୟ କରିବା ପାଇଁ ପକ୍ଷୀମାନଙ୍କ ପାଖରେ ଭଣ୍ଡାର ନାହିଁ,
କି ଅମାର ନାହିଁ। ତଥାପି ପରମେଶ୍ୱର ସେମାନଙ୍କୁ
ଖାଇବାକୁ ଦେଇଥାନ୍ତି। ତୁମ୍ଭେମାନେ ତ ପକ୍ଷୀମାନଙ୍କ ଅପେକ୍ଷା
କେତେ ଅଧିକ ମୂଲ୍ୟବାନ। ୨୫ତୁମ୍ଭମାନଙ୍କ ଭିତରେ କ'ଣ
ଏପରି କିଏ ଅଛି, ଯେ କି ଏଗୁଡ଼ିକ ପାଇଁ ବ୍ୟସ୍ତ ହେବା
ଦ୍ୱାରା ନିଜ ପରମାୟୁରେ ଆଉ ଘଡ଼ିଏ ସମୟ ଯୋଡ଼ି
ପାରିବ? ୨୬ତେବେ ତୁମ୍ଭେମାନେ ଯଦି ଏତିକି ଛୋଟିଆ
କାମଟିଏ କରି ପାରିବନାହିଁ, ତେବେ ଅନ୍ୟସବୁ ବଡ଼ବଡ଼
କାମ ପାଇଁ କାହିଁକି ବ୍ୟସ୍ତ ହୋଇ ପଡୁଛ? ୨୭ବନ୍ୟ
ଫୁଲଗୁଡ଼ିକୁ ଦେଖ, ସେମାନେ କିପରି ଫୁଟନ୍ତି? ସେମାନେ
ପରିଶ୍ରମ କରନ୍ତିନାହିଁ, କି ଲୁଗା ବୁଣନ୍ତି ନାହିଁ। କିନ୍ତୁ ମୁଁ
ତୁମ୍ଭମାନଙ୍କୁ କହୁଛି ଯେ ସବୁଠାରୁ ମହାନ୍, ଓ ଧନବାନ
ରାଜା ଶଲମୋନ ମଧ୍ୟ ସେହି ଫୁଲ ମାନଙ୍କ ମଧ୍ୟରୁ
କୌଣସି ଗୋଟିଏ ପରି ସୁନ୍ଦର ସୁସଜ୍ଜିତ ହୋଇପାରି
ନଥିଲେ। ୨୮ପରମେଶ୍ୱର ପଡ଼ିଆର ଘାସକୁ ମଧ୍ୟ ସେହିପରି
ବସ୍ତ୍ର ଦେଇଛନ୍ତି। ସେହି ଘାସ ଆଜି ବଞ୍ଚିଛି। ଆସନ୍ତା
କାଲି ତାକୁ ନିଆଁରେ ଜଳିବା ପାଇଁ ଫିଙ୍ଗି ଦିଆଯିବ।
ତୁମ୍ଭମାନଙ୍କ ଜାଣି ରଖିବା ଉଚିତ ଯେ, ପରମେଶ୍ୱର
ତୁମ୍ଭମାନଙ୍କୁ ତାଠାରୁ ବହୁତ ଅଧିକ ବସ୍ତ୍ର ଦେବେ।
ପରମେଶ୍ୱରଙ୍କଠାରେ ତୁମ୍ଭମାନଙ୍କର କ'ଣ ଏତିକି ବିଶ୍ୱାସ
ନାହିଁ? ୨୯ତେଣୁ ତୁମ୍ଭେମାନେ କ'ଣ ଖାଇବ, କ'ଣ ପିଇବ
ସେ ବିଷୟରେ ଆଦୌ ଚିନ୍ତା କରିନାହିଁ। ଆଦୌ ବ୍ୟସ୍ତ
ହୁଅନାହିଁ। ୩୦ଏ ପୃଥିବୀରେ ସମସ୍ତେ ସେଗୁଡ଼ିକ ପାଇବା
ପାଇଁ ଚେଷ୍ଟା କରୁଛନ୍ତି। ତୁମ୍ଭମାନଙ୍କର ପରମପିତା ଜାଣିଛନ୍ତି
ଯେ, ତୁମ୍ଭମାନଙ୍କର ସେଗୁଡ଼ିକ ଦରକାର। ୩୧ବରଂ ତୁମ୍ଭମାନଙ୍କର
ଯେଉଁ ବିଷୟଟି ଚାହିଁବା ଉଚିତ, ତାହା ହେଉଛି ସ୍ୱର୍ଗରାଜ୍ୟ।
ତାହେଲେ ତୁମ୍ଭେମାନେ ଦରକାର କରୁଥିବା ଏହି ସମସ୍ତ
ବିଷୟ ତୁମ୍ଭମାନଙ୍କୁ ଦିଆଯିବ।

## ଧନ ଉପରେ ଭରସା ରଖନାହିଁ

୩୨"ହେ ସାନ ମେଷପଲ! ଭୟ କରନାହିଁ। ତୁମ୍ଭମାନଙ୍କ
ପରମପିତା ତୁମ୍ଭମାନଙ୍କୁ ସେହି ସ୍ୱର୍ଗ ରାଜ୍ୟ ଦେବାକୁ
ଚାହାଁନ୍ତି। ୩୩ତେଣୁ ତୁମ୍ଭେମାନେ ନିଜର ସମସ୍ତ ସମ୍ପତ୍ତି ବିକି
ଦେଇ ସେହି ଟଙ୍କା ଗରିବ ଲୋକଙ୍କ ମଧ୍ୟରେ ବାଣ୍ଟିଦିଅ।
ଏ ସଂସାରର ଧନସମ୍ପତ୍ତି ସବୁ ଦିନ ପାଇଁ ରହିବନାହିଁ।
ତେଣୁ ସବୁଦିନ ରହି ପାରୁଥିବା ଧନସମ୍ପତ୍ତି ସଂଗ୍ରହ କର।
ନିଜ ପାଇଁ ସ୍ୱର୍ଗରେ ଧନସମ୍ପତ୍ତି ସଂଗ୍ରହ କର। ଏହା
ଚିରକାଳ ରହିବ। ସ୍ୱର୍ଗରେ ତୁମ୍ଭମାନଙ୍କ ସମ୍ପତ୍ତିକୁ କେହି
ଚୋରେଇ ନେଇ ପାରିବନାହିଁ କି ତାକୁ କୀଟ ନଷ୍ଟ କରି
ପାରିବନାହିଁ। ୩୪ତୁମ୍ଭମାନଙ୍କର ଧନସମ୍ପତ୍ତି ଯେଉଁଠାରେ ରହିବ,
ତୁମ୍ଭମାନଙ୍କ ହୃଦୟ ମଧ୍ୟ ସେହି ଠାରେ ରହିବ।

## ସର୍ବଦା ପ୍ରସ୍ତୁତ ରୁହ

୩୫"କର୍ମ ପାଇଁ ସର୍ବଦା ପ୍ରସ୍ତୁତ ରୁହ। ତୁମ୍ଭର ଦୀପ
ଗୁଡ଼ିକ ଜଳେଇ ରଖ। ୩୬ବିବାହଭୋଜିରୁ ଫେରି ମାଲିକ
ଯେପରି ତୁମ୍ଭମାନଙ୍କୁ ପ୍ରସ୍ତୁତ ଦେଖନ୍ତି, ଏପରି ଚାକରମାନଙ୍କ
ଭଳି ହୁଅ। କାରଣ ମାଲିକ ଫେରି ଆସି କବାଟ
ବାଡ଼େଇବା ମାତ୍ରେ ଚାକରମାନେ ସଙ୍ଗେସଙ୍ଗେ ମାଲିକଙ୍କୁ
ଦୁଆର ଫିଟେଇ ଦେବେ। ୩୭ସେହି ଚାକରମାନେ ଧନ୍ୟ,
ଯେଉଁମାନଙ୍କୁ ମାଲିକ ଫେରିଆସି ଦେଖିବେ ଯେ ସେମାନେ
ଜାଗ୍ରତ ଅଛନ୍ତି, ଓ ତାହାଙ୍କୁ ଅପେକ୍ଷା କରି ରହିଛନ୍ତି। ମୁଁ
ତୁମ୍ଭମାନଙ୍କୁ ସତ୍ୟ କହୁଛି। ମାଲିକ ମଧ୍ୟ ସେମାନଙ୍କ
ସେବା ପାଇଁ ନିଜକୁ ପ୍ରସ୍ତୁତ କରିବେ। ସେ ସେମାନଙ୍କୁ
ବସିବା ପାଇଁ କହିବେ, ଓ ନିଜେ(ଖାଦ୍ୟ)ପରଶି ଦେବେ।
୩୮ସେହି ଚାକରମାନଙ୍କୁ ମାଲିକଙ୍କ ପାଇଁ ଅଧରାତି ବା
ତା'ଠାରୁ ଆହୁରି ଅଧିକ ସମୟ ଅପେକ୍ଷା କରିବାକୁ
ପଡ଼ିପାରେ। କିନ୍ତୁ ମାଲିକ ଯେତେବେଳେ ଫେରିଆସି
ସେମାନଙ୍କୁ ସେପର୍ଯ୍ୟନ୍ତ ଅପେକ୍ଷା କରିଥିବାର ଦେଖିବେ,
ସେତେବେଳେ ସେମାନେ ଖୁସି ହୋଇଯିବେ। ୩୯ମନେରଖ,
ଯଦି ଘରର ମାଲିକ ଆଗରୁ ଜାଣିପାରନ୍ତେ ଯେ ଚୋର
କେତେବେଳେ ଆସିବ, ତେବେ ସେ ଚୋରକୁ ଘରେ
ପଶିବାକୁ ଦିଅନ୍ତେନାହିଁ। ୪୦ଏଣୁ ତୁମ୍ଭେମାନେ ମଧ୍ୟ ପ୍ରସ୍ତୁତ
ରୁହ। କାରଣ ମନୁଷ୍ୟପୁତ୍ର ଏପରି ଏକ ସମୟରେ
ଆସିବେ, ଯେଉଁ ସମୟରେ ସେ ଆସିବେ ବୋଲି ତୁମ୍ଭେମାନେ
ଆଦୌ ଭାବି ପାରି ନଥିବ।"

## ବିଶ୍ୱସ୍ତ ସେବକ କିଏ?

୪୧ପିତର ପଚାରିଲେ, "ପ୍ରଭୁ! ଏହି ଦୃଷ୍ଟାନ୍ତ ଆପଣ
ଆମ୍ଭ ପାଇଁ କହୁଛନ୍ତି ନା ସମସ୍ତଙ୍କ ପାଇଁ?"
୪୨ଏହା ଶୁଣି ଯୀଶୁ କହିଲେ, "ବିଶ୍ୱାସୀ ଓ ବୁଦ୍ଧିମାନ
ସେବକ କିଏ? ମାଲିକ ଅନ୍ୟସେବକ ମାନଙ୍କୁ ସେମାନଙ୍କର
ଖାଦ୍ୟ ଠିକ୍ ସମୟରେ ଦେବା ପାଇଁ ଜଣେ ଚାକରକୁ
ଦାୟିତ୍ୱ ଦେଇଥାନ୍ତି, ଯାହାକୁ ଏ କାମ କରିବା ପାଇଁ
ମାଲିକ ବିଶ୍ୱାସ କରିବେ, ସେ ସେବକ କିଏ? ୪୩ମାଲିକ
ଯେବେ ଆସିଲେ ମଧ୍ୟ ଯେଉଁ ସେବକକୁ ସବୁବେଳେ କାମ
ତୁଲାଉଥିବାର ଦେଖିବେ, ସେହି ସେବକ ବହୁତ ଖୁସି
ହେବ। ୪୪ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି। ମାଲିକ ତାକୁ
ତାହାଙ୍କ ସମସ୍ତ ସମ୍ପତ୍ତିର ଦାୟିତ୍ୱରେ ରହିବା ପାଇଁ
ବାଛିବେ। ୪୫କିନ୍ତୁ ଯଦି ସେବକଟି ଦୁଷ୍ଟ ହୋଇଥିବ ଓ
ମନେମନେ କହିବ, ମୋ ମାଲିକ ତୁରନ୍ତ ଆସିବେ ନାହିଁ,
ତେବେ କ'ଣ ଘଟିବ? ସେ ଅନ୍ୟ ପୁରୁଷ ଓ ମହିଳା
ସେବକମାନଙ୍କୁ ମାରପିଟ୍ କରିବା ଆରମ୍ଭ କରିଦେବ ଓ
ନିଜେ ଖିଆପିଆରେ ବୁଡ଼ି ରହିବ ଓ ମଦ ପିଇ ମାତାଲ
ହେବ। ୪୬ତା'ପରେ ସେହି ସେବକଟିର ମାଲିକ କୌଣସି
ଦିନ ଆସି ପହଞ୍ଚିଯିବେ। ସେତେବେଳେ ସେବକଟି ପ୍ରସ୍ତୁତ
ନଥିବ। ମାଲିକ ଆସି ଏପରି ହଠାତ୍ ପହଞ୍ଚିଯିବେ ବୋଲି
ସେବକଟି ଭାବି ମଧ୍ୟ ପାରି ନଥିବ। ତାପରେ ମାଲିକ
ସେବକଟିକୁ କଠିନ ଦଣ୍ଡ ଦେବେ ଓ ଅନ୍ୟ ଅବାଧ୍ୟ
ଲୋକଙ୍କ ପାଖକୁ ତଡ଼ିଦେବେ।
୪୭"ଯେଉଁ ସେବକ ଆଗରୁ ଜାଣିଥାଏ ଯେ, ମାଲିକଙ୍କ
ଇଚ୍ଛା କ'ଣ କିନ୍ତୁ ସେଥିପାଇଁ ଆଦୌ ତତ୍ପର ହୁଏନାହିଁ,
କିମ୍ବା ମାଲିକଙ୍କ ଇଚ୍ଛା ଅନୁସାରେ କାମ କରେନି, ସେହିଭଳି

ସେବକକୁ ଭୀଷଣ ଦଣ୍ଡ ଦିଆଯିବ। [୪୮]କିନ୍ତୁ ଯେଉଁ
ସେବକ ନିଜ ମାଲିକଙ୍କ ଇଚ୍ଛା ବିଷୟରେ କିଛି ଜାଣି
ନଥାଏ, ସେ ଦଣ୍ଡନୀୟ କାମ କରିବସେ। ତେବେ ତାକୁ
ସେଥିପାଇଁ ନିଜ କର୍ତ୍ତବ୍ୟ ବିଷୟରେ ଜାଣିଥିବା ଚାକର
ଅପେକ୍ଷା କମ୍ ଦଣ୍ଡ ଦିଆଯିବ। କାରଣ ଯେଉଁ ଲୋକକୁ
ଅଧିକ ଦିଆଯାଇଛି, ସେ ବିଷୟ ପାଇଁ ଦାୟୀ ହେବ।
ଯେଉଁ ଲୋକକୁ ଅଧିକ ଦିଆଯାଇଛି ତାଠାରୁ ବହୁତ ଅଧିକ
ଆଶା କରାଯିବ।"

## ଲୋକମାନେ ଯୀଶୁଙ୍କ ସହ ଏକମତ ହେବେନାହିଁ

[୪୯]ଯୀଶୁ କହି ଚାଲିଲେ, "ମୁଁ ଏ ପୃଥିବୀରେ ନିଆଁ
ଜଳେଇବାକୁ ଆସିଛି। ମୁଁ ଚାହୁଁଛି ଏହା ଆଗରୁ ଜଳୁଥାନ୍ତା।
[୫୦]ମୋତେ 'ଅନ୍ୟପ୍ରକାର ବାପ୍ତିସ୍ମ'* ଦ୍ୱାରା ବାପ୍ତିଜିତ ହେବାକୁ
ପଡ଼ିବ। ଏହା ନହେବା ପର୍ଯ୍ୟନ୍ତ ମୁଁ ପୀଡ଼ା ଅନୁଭବ
କରୁଛି। [୫୧]ତୁମ୍ଭେମାନେ କ'ଣ ଭାବୁଛ ଯେ ମୁଁ ଶାନ୍ତି
ଦେବା ପାଇଁ ଏ ପୃଥିବୀକୁ ଆସିଛି? ନା, ମୁଁ ପୃଥିବୀକୁ
ଭାଗଭାଗ କରିଦେବାକୁ ଆସିଛି। [୫୨]ଏଣିକି ବର୍ତ୍ତମାନଠାରୁ
ଗୋଟିଏ ଘରେ ପାଞ୍ଚଜଣ ଲୋକ ଥିଲେ ସେମାନେ
ପରସ୍ପରର ବିରୋଧୀ ହୋଇଯିବେ।
ତିନି ଜଣ ଦୁଇ ଜଣଙ୍କ ବିରୋଧରେ ଠିଆ ହେବେ
କିମ୍ବା ଦୁଇଜଣ ତିନିଜଣଙ୍କ ବିରୋଧରେ ଠିଆହେବେ।

[୫୩]ବାପ ପୁଅର ବିରୋଧୀ, ପୁଅ ବାପର ବିରୋଧୀ,
ମାଆ ଝିଅର ବିରୋଧୀ, ଝିଅ ମାଆର ବିରୋଧୀ,
ଶାଶୁ ବୋହୂର ବିରୋଧୀ ଓ ବୋହୂ ଶାଶୁର
ବିରୋଧୀ ହୋଇଯିବ।"

## ସମୟକୁ ଚିହ୍ନ

[୫୪]ଯୀଶୁ ଲୋକମାନଙ୍କୁ କହିବାକୁ ଲାଗିଲେ, "ତୁମ୍ଭେମାନେ
ପଶ୍ଚିମ ଦିଗରୁ ମେଘ ଉଠିଲେ ଦେଖିଲେ କୁହ, 'ଝଡବର୍ଷା
ଆସୁଛି' ତାପରେ ତାହାହିଁ ହୁଏ। [୫୫]ଦକ୍ଷିଣ ଦିଗରୁ ପବନ
ବୋହିଲେ ତୁମ୍ଭେମାନେ କୁହ, 'ଗରମ ହେବ।' ତାପରେ
ତାହାହିଁ ହୁଏ। [୫୬]ହେ କପଟୀଗଣ! ତୁମ୍ଭେମାନେ ପାଗ
ବିଷୟରେ ତ ଜାଣି ପାରୁଛ। ତେବେ ଏହି ସମୟରେ
କ'ଣ ଘଟୁଛି, ତାହା କାହିଁକି ଜାଣି ପାରୁନାହିଁ?

## ନିଜ ସମସ୍ୟାର ସମାଧାନ କର

[୫୭]"ଯାହା ଠିକ୍, ତାହା ତୁମ୍ଭେମାନେ ନିଜେ ନିଷ୍ପତ୍ତି କରି
ପାରୁନାହିଁ କାହିଁକି? [୫୮]ଯଦି ତୁମ୍ଭେ ତୁମ୍ଭ ବିରୋଧୀ ସହିତ
ବିଚାରାଳୟକୁ ଯାଉଛ, ତେବେ ରାସ୍ତାରେ ତା' ସହିତ
ବୁଝାମଣା କରିବାକୁ ଚେଷ୍ଟା କର। ତା ନହେଲେ ସେ
ତୁମ୍ଭକୁ ବିଚାରପତିଙ୍କ ଆଗକୁ ଟାଣିନେବ। ବିଚାରପତି
ତୁମ୍ଭକୁ ଅଧିକାରୀଙ୍କ ହାତରେ ଦେଇଦେବେ, ଏବଂ ଅଧିକାରୀ
ତୁମ୍ଭକୁ କାରାଗାରରେ ବନ୍ଦୀକରିବେ। [୫୯]ଯେଉଁଦିନ ପର୍ଯ୍ୟନ୍ତ
ତୁମ୍ଭେ ପ୍ରତ୍ୟେକ ଋଣର ମୂଲ୍ୟ ଶେଷ ପଇସା ପର୍ଯ୍ୟନ୍ତ ନ
ଦେଇଛ, ସେ ପର୍ଯ୍ୟନ୍ତ ତୁମ୍ଭେମାନେ ସେଠାରୁ ମୁକ୍ତ ପାଇ
ପାରିବ ନାହିଁ।"

## ହୃଦୟ ପରିବର୍ତ୍ତନ କର

୧୩ ସେତେବେଳେ ଯୀଶୁଙ୍କ ପାଖରେ କେତେକ
ଲୋକ ଥିଲେ। ଗାଲୀଲୀର କେତେକ ଲୋକଙ୍କର
ଯାହା ଘଟିଥିଲା, ସେହି ବିଷୟରେ ସେମାନେ ଯୀଶୁଙ୍କୁ
କହିଲେ। ସେମାନେ ଉପାସନା କରୁଥିବା ସମୟରେ ପୀଲାତ*
ସେହି ଲୋକମାନଙ୍କୁ ହତ୍ୟା କରିଥିଲେ, ଓ ବଳିପଶୁମାନଙ୍କ
ରକ୍ତ ସହିତ ସେମାନଙ୍କ ରକ୍ତକୁ ମିଶାଇଥିଲେ। [୨]ଯୀଶୁ
ଉତ୍ତର ଦେଲେ, "ତୁମ୍ଭେମାନେ କ'ଣ ଭାବୁଛ ଯେ ଏହି
ଲୋକମାନେ ଗାଲୀଲୀର ସବୁଠାରୁ ଅଧିକ ପାପୀ ଥିଲେ
ବୋଲି ସେମାନଙ୍କୁ ଏ ଦଶା ଭୋଗିବାକୁ ପଡିଲା? [୩]ନା,
ସେମାନେ ତାହା ନଥିଲେ। କିନ୍ତୁ ତୁମ୍ଭେମାନେ ଯଦି ତୁମ୍ଭର
ହୃଦୟ ଓ ଜୀବନଯାପନ ପ୍ରଣାଳୀରେ ପରିବର୍ତ୍ତନ ନ ଆଣିବ
ତେବେ ତୁମ୍ଭେମାନେ ମଧ୍ୟ ସେହି ଲୋକମାନଙ୍କ ଭଳି ଧ୍ୱଂସ
ପାଇଯିବ। [୪]ଶୀଲୋହରେ ସେହି ଯେଉଁ ଅଠର ଜଣଙ୍କ
ଉପରେ ପ୍ରହରୀଗୃହ ଭାଙ୍ଗି ପଡିଲା, ତୁମ୍ଭେମାନେ କ'ଣ
ଭାବୁଛ ଯେ ସେମାନେ ଯିରୂଶାଲମରେ ରହୁଥିବା ଅନ୍ୟ
ଲୋକମାନଙ୍କ ଅପେକ୍ଷା ଅଧିକ ପାପୀ ଥିଲେ? [୫]ନା,
ସେମାନେ ତା'ନଥିଲେ। ମୁଁ କିନ୍ତୁ ତୁମ୍ଭମାନଙ୍କୁ କହୁଛି ଯେ
ତୁମ୍ଭେମାନେ ଯଦି ତୁମ୍ଭମାନଙ୍କର ହୃଦୟ ଓ ଜୀବନଯାପନ
ପ୍ରଣାଳୀରେ ପରିବର୍ତ୍ତନ ନ ଆଣିବ, ତେବେ ତୁମ୍ଭେମାନେ
ସବୁ ବିନଷ୍ଟ ହେବ।"

## ଅଦରକାରୀ ଗଛ

[୬]ଯୀଶୁ ପୁଣି ଏହି ଦୃଷ୍ଟାନ୍ତଟି କହିଲେ, "କୌଣସି
ଗୋଟିଏ ଲୋକ ତା ବଗିଚାରେ ଡିମ୍ବିରି ଗଛଟିଏ ଲଗାଇଥିଲା।
ଗଛରେ ଫଳ ଆସିଛି କି ନାହିଁ ତାହା ଦେଖିବାକୁ ସେ
ଆସିଥିଲା। କିନ୍ତୁ ଗୋଟିଏ ହେଲେ ଫଳ ପାଇଲାନାହିଁ।
[୭]ତେଣୁ ସେ ବଗିଚା ଦାୟିତ୍ୱରେ ଥିବା ଚାକରକୁ କହିଲା,
'ଦେଖ, ମୁଁ ତିନି ବର୍ଷ ହେଲା ଏ ଡିମ୍ବିରି ଗଛରେ ଫଳ
ଆସିବ ବୋଲି ଅପେକ୍ଷା କରି ଆସୁଛି। କିନ୍ତୁ ଗୋଟିଏ
ହେଲେ ଫଳ ମୁଁ ପାଉନାହିଁ। ଏ ଗଛଟା କାଟିଦିଅ,
କାହିଁକି ଅଯଥାରେ ସେ ଗଛଟା ମାଟି ଖରାପ କରିବ?'
[୮]କିନ୍ତୁ ଚାକରଟି କହିଲା, 'ମାଲିକ: ଆଉ ବର୍ଷକ ପାଇଁ
ଏହାକୁ ଛାଡିଦିଅ। ମୁଁ ଏହାର ଚାରିପଟେ ଗାତ ଖୋଳି
ଖତସାର ଦେବି। [୯]କାଳେ ଆସନ୍ତା ବର୍ଷ ଗଛରେ ଫଳ
ଆସିପାରେ। ଯଦି ଆସନ୍ତା ବର୍ଷ ଗଛରେ ଫଳ ନ ଆସିବ,
ତେବେ ତୁମ୍ଭେ ଏହାକୁ କାଟି ଦେଇପାର।'"

---

**'ଅନ୍ୟପ୍ରକାର ବାପ୍ତିସ୍ମ'** ଏଠାରେ ଅନ୍ୟ ପ୍ରକାର "ବାପ୍ତିସ୍ମର" ଅର୍ଥ ଯନ୍ତ୍ରଣା ଭିତରେ "ବୁଡିଯିବା।"

**'ପୀଲାତ'** ଖ୍ରୀ:୨୬ ଠାରୁ ଖ୍ରୀ:୩୬ ପର୍ଯ୍ୟନ୍ତ ଯିହୂଦାର ରୋମୀୟ ଶାସକ।

## ଯୀଶୁ ବଶ୍ରାମବାରରେ ଜଣେ ସ୍ତ୍ରୀ ଲୋକକୁ ସୁସ୍ଥ କରଦେଲେ

୧୦ଅରେ ଯୀଶୁ ବଶ୍ରାମବାରରେ ଗୋଟିଏ ଯିହୂଦୀ,
ପ୍ରାର୍ଥନାଗୃହରେ ଉପଦେଶ ଦେଉଥିଲେ। ୧୧ସେଠାରେ ଏପର
ଗୋଟିଏ ସ୍ତ୍ରୀଲୋକ ଥିଲା, ଯାହା ଦେହରେ ଗୋଟିଏ ଭୂତ
ପ୍ରବେଶ କର ରହଥିଲା। ଭୂତ ସ୍ତ୍ରୀ ଲୋକଟିକୁ ଅଠର ବର୍ଷ
ଧର ପଙ୍ଗୁ କର ପକାଇଥିଲା। ସେ କୁଜ୍ଜା ହୋଇ ନଇଁ
ଯାଇଥିଲା। ସେ ଜମା ସିଧା ଠିଆ ହୋଇ ପାରୁନଥିଲା।
୧୨ଯୀଶୁ ତାକୁ ଡାକ ପାଖରେ ଦେଖି କହଲେ, "ହେ
ନାରୀ ତୁମ୍ଭର ପୀଡିତା ଅବସ୍ଥା ବର୍ତ୍ତମାନ ଚାଲଯାଇଛ।"
୧୩ଯୀଶୁ ନଜ ହାତ ସ୍ତ୍ରୀ ଲୋକଟି ଉପରେ ରଖିଲେ।
ତାପରେ ସ୍ତ୍ରୀ ଲୋକଟି ସିଧା ଠିଆ ହେବାକୁ ସକ୍ଷମ
ହେଲା। ସେ ପରମେଶ୍ୱରଙ୍କ ସ୍ତୁତି କଲା।
୧୪ଯୀଶୁ ବଶ୍ରାମ ବାରରେ ସ୍ତ୍ରୀ ଲୋକଟିକୁ ସୁସ୍ଥ
କରଦେବାରୁ ଯିହୂଦୀ ପ୍ରାର୍ଥନାଗୃହର ନେତା ରାଗିଗଲେ।
ନେତା ଜଣକ ଲୋକମାନଙ୍କୁ କହଲେ, "ସପ୍ତାହରେ କାମ
କରବାକୁ ଛଅ ଦନ ରହଛି। ତେଣୁ ତୁମ୍ଭେମାନେ ସୁସ୍ଥ
ହେବା ପାଇଁ ସେ ଭିତରୁ କୌଣସି ଦନ ଆସ।
ବଶ୍ରାମବାରରେ କେବେହେଲେ ସୁସ୍ଥ ହେବାପାଇଁ ଆସନାହିଁ।"
୧୫ପ୍ରଭୁ(ଯୀଶୁ) ଉତ୍ତର ଦେଲେ, "ତୁମ୍ଭେମାନେ କପଟୀ।
ତୁମ୍ଭେମାନେ ପ୍ରତିଦନ ଏପରକ ବଶ୍ରାମବାରରେ ମଧ
ତୁମ୍ଭମାନଙ୍କର କାମ କରୁଥିବା ପଶୁଙ୍କୁ ଖୋଲ ପାଣି
ପିଆଇଥାଅ। ୧୬ଏହ ଯେଉଁ ସ୍ତ୍ରୀ ଲୋକଟିକୁ ମୁଁ ସୁସ୍ଥ
କରଦେଲ ସେ ଆମ୍ଭର ଜଣେ ଯିହୂଦୀ ଭଉଣୀ।*
ଶୟତାନ ତାକୁ ଅଠର ବର୍ଷ ହେଲା ବାନ୍ଧି ରଖିଥିଲା,
ବଶ୍ରାମବାରରେ ସେଥିରୁ ସେ ମୁକ୍ତ ହେବା କ'ଣ ଉଚତ
ନୁହେଁ?" ୧୭ଯୀଶୁ ଏକଥା କହବା ବେଳେ ଯେଉଁସବୁ
ଲୋକେ ତାହାଙ୍କୁ ସମାଲୋଚନା କରୁଥିଲେ, ସେମାନେ
ଲଜ୍ଜିତ ହେଲେ। ଯୀଶୁ ଯେଉଁ ସବୁ ଆଶ୍ଚର୍ଯ୍ୟକାର୍ଯ୍ୟ ମାନ
କଲେ, ତାକୁ ଦେଖି ସବୁ ଲୋକ ଖୁସି ହେଲେ।

## ପରମେଶ୍ୱରଙ୍କ ରାଜ୍ୟ କଭଳ?

୧୮ଯୀଶୁ କହଲେ, "ପରମେଶ୍ୱରଙ୍କ ରାଜ୍ୟ କଭଳ? ମୁଁ
ଏହାକୁ କାହା ସହତ ତୁଳନା କର ପାରବ? ୧୯ପରମେଶ୍ୱରଙ୍କ
ରାଜ୍ୟ ଗୋଟିଏ ସୋରଷ ଦାନା ଭଳ। ଜଣେ ଲୋକ ସେ
ସୋରଷ ମଞ୍ଜିଟି ତା' ବଗିଚ୍ଚାରେ ବୁଣେ। ମଞ୍ଜିଟିରୁ ଗଜା
ବାହାର ଗଛ ହୁଏ। ପକ୍ଷୀମାନେ ଏହାର ଡାଳରେ ବସା
ବାନ୍ଧନ୍ତ।"
୨୦ଯୀଶୁ ପୁଣି କହଲେ, "ମୁଁ ପରମେଶ୍ୱରଙ୍କ ରାଜ୍ୟ
କାହା ସହତ ତୁଳନା କରପାରବ? ୨୧ଏହା ଖମୀର ଭଳ।
ଜଣେ ସ୍ତ୍ରୀଲୋକ ରୋଟୀ ତିଆର କରବା ପାଇଁ ଗୋଟିଏ
ବଡ ପାତ୍ରରେ ଥିବା ଅଟା ସହତ ଏହ ଖମୀର ମିଶାଏ।
ଖମୀର ସମସ୍ତ ଦଳାଅଟାକୁ ଫୁଲାଇ ଦଏ।"

## ଅଣଓସାରଆ ଦ୍ୱାର

୨୨ଯୀଶୁ ପ୍ରତ୍ୟେକ ନଗର ଓ ଗ୍ରାମରେ ଉପଦେଶ
ଦେଉଥିଲେ। ସେ ଯାତ୍ରା କରୁକରୁ ଯିରୂଶାଲମ ଆଡକୁ
ଯାଉଥିଲେ। ୨୩ଜଣେ କେହ ଯୀଶୁଙ୍କୁ କହଲା, "ପ୍ରଭୁ,
କେତେ ଜଣ ଲୋକ ପରତ୍ରାଣ ପାଇ ପାରବେ?କ'ଣ ଅଳ୍ପ
ଲୋକ?"
୨୪ଯୀଶୁ କହଲେ, "ତୁମ୍ଭେମାନେ ଅଣ ଓସାରଆ ଦ୍ୱାର
ଦେଇ ସ୍ୱର୍ଗରାଜ୍ୟରେ ପ୍ରବେଶ କରବା ପାଇଁ କଠିନ
ପରଶ୍ରମ କର। ଅନେକ ଲୋକ ସେଠାରେ ପ୍ରବେଶ
କରବାକୁ ଚେଷ୍ଟା କରବେ। କନ୍ତୁ ସେମାନେ ପ୍ରବେଶ
କରବାକୁ ସମର୍ଥ ହେବେ ନାହିଁ। ୨୫ଯଦ ଜଣେ ଲୋକ
ତା'ର ଘରର କବାଟ ବନ୍ଦ କର ଦଏ ତେବେ ତୁମ୍ଭେମାନେ
ବାହାରେ ଠିଆ ହୋଇ କବାଟ ବାଡ଼େଇବ। କନ୍ତୁ ସେ
କବାଟ ଖୋଲବ ନାହିଁ। ତୁମ୍ଭେମାନେ କହବ, 'ଆଜ୍ଞା, ଆମ୍ଭ
ପାଇଁ ଦ୍ୱାର ଫିଟାନ୍ତୁ।' କନ୍ତୁ ଲୋକଟି କହବ, 'ମୁଁ ତୁମ୍ଭକୁ
ଜାଣିନାହିଁ। ତୁମ୍ଭେମାନେ କେଉଁ ଠାରୁ ଆସିଛ?' ୨୬ତାପରେ
ତୁମ୍ଭେମାନେ କହବ, 'ଆମ୍ଭେ ତୁମ୍ଭ ସହତ ଏକାଠି ଖାଇଛୁ,
ପିଇଛୁ। ତୁମ୍ଭେମାନେ ଆମ୍ଭ ନଗର ଗଳମାନଙ୍କରେ ଉପଦେଶ
ଦେଇଛ।' ୨୭ତା'ପରେ ସେ ତୁମ୍ଭମାନଙ୍କୁ କହବେ, 'ମୁଁ
ତୁମ୍ଭମାନଙ୍କୁ ଜାଣିନାହିଁ। ତୁମ୍ଭେମାନେ କେଉଁଠାରୁ ଆସିଛ?
ତୁମ୍ଭେମାନେ ମନ୍ଦ କାମ କରୁଥିବା ଲୋକ। ମୋ'ପାଖରୁ
ଦୂର ହୁଅ।' ୨୮ତୁମ୍ଭେମାନେ ଅବ୍ରହାମ, ଯିସ୍ହାକ ଓ ଯାକୁବ
ତଥା ଅନ୍ୟ ଭବଷ୍ୟଦ୍‌ବକ୍ତାମାନଙ୍କୁ ପରମେଶ୍ୱରଙ୍କ ରାଜ୍ୟରେ
ଦେଖି ପାରବ। କନ୍ତୁ ତୁମ୍ଭେମାନେ ବାହାରେ ରହଯିବ।
ସେତିକବେଳେ ତୁମ୍ଭେମାନେ କ୍ରୋଧ ଓ ଭୟରେ କାନ୍ଦିବ।
୨୯ଲୋକମାନେ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦଗରୁ
ଆସିବେ। ସେମାନେ ପରମେଶ୍ୱରଙ୍କ ରାଜ୍ୟରେ ଖାଇବାକୁ
ବସିବେ। ୩୦କେତେକ ଲୋକ ଥିବେ, ଯେଉଁମାନଙ୍କର
ଜାଗତକ ପଦ ମର୍ଯ୍ୟଦା ସବୁଠାରୁ ନମ୍ନରେ ଅଛି, ସେମାନେ
ପରମେଶ୍ୱରଙ୍କ ରାଜ୍ୟରେ ସବୁଠାରୁ ଉଚ୍ଚ ଆସନ ଲାଭ
କରବେ। ଆଉ ଶେଷରେ ଥିବା କେତେକ ଲୋକ ପ୍ରଥମ
ହେବେ ଓ ପ୍ରଥମରେ ଥିବା କେତେକ ଲୋକ ପରମେଶ୍ୱରଙ୍କ
ରାଜ୍ୟରେ ସବୁଠାରୁ ଶେଷରେ ରହବେ।'

## ଯୀଶୁଙ୍କର ଯିରୂଶାଲମରେ ମୃତ୍ୟୁ ହେବ

୩୧ସେହ ସମୟରେ କେତେକ ଫାରୂଶୀ ଯୀଶୁଙ୍କ ପାଖକୁ
ଆସିଲେ। ସେମାନେ କହଲେ, "ଏଠାରୁ ଚାଲଯାଇ ଲୁଚଯାଆନ୍ତୁ।
ହେରୋଦ ଆପଣଙ୍କୁ ମାରଦେବା ପାଇଁ ଚାହୁଁଛନ୍ତ।"
୩୨ଯୀଶୁ ସେମାନଙ୍କୁ କହଲେ, "ଯାଅ, ସେହ
କୋକଶିଆଳକୁ କୁହ, 'ଆଜି ଓ ଆସନ୍ତା କାଲ ମୁଁ
ଲୋକଙ୍କଦେହରୁ ଭୂତମାନଙ୍କୁ ତଡ ଦେଉଛ ଓ ଲୋକମାନଙ୍କୁ
ସୁସ୍ଥ କରବା କାମ ସାର ଦେଉଛ। ତା'ପର ଦନ ମୋର
କାମ ସରଯିବ। ୩୩କନ୍ତୁ ମୁଁ ଏସବୁ କାର୍ଯ୍ୟ ଆଜି ଓ
ଆସନ୍ତା କାଲ ନଶ୍ଚୟ କରବ। ତା'ପରେ ମୁଁ ଯିବ।
କାରଣ ସମସ୍ତ ଭବଷ୍ୟଦ୍‌ବକ୍ତା ଯିରୂଶାଲମରେ ମରନ୍ତ।
୩୪"ଯିରୂଶାଲମ! ହେ ଯିରୂଶାଲମ! ତୁମ୍ଭେ
ଭବଷ୍ୟଦ୍‌ବକ୍ତାମାନଙ୍କୁ ହତ୍ୟା କରୁଛ। ଯେଉଁ ଲୋକମାନଙ୍କୁ

---

**ଯିହୂଦୀ ଭଉଣୀ** ଅବ୍ରହାମଙ୍କ କନ୍ୟା।

ପରମେଶ୍ୱର ତୁମ୍ଭ ପାଖକୁ ପଠାଇଥିଲେ, ତୁମ୍ଭେ ତାହାଙ୍କୁ
ପଥର ଫୋପାଡ଼ି ମାରି ଦେଇଛ। ମୁଁ ଅନେକ ଥର ତୁମ୍ଭ
ଲୋକମାନଙ୍କୁ ସାହାଯ୍ୟ କରିବାକୁ ଚାହିଁଛି। ଗୋଟିଏ କୁକୁଡ଼ା
ତାର ପକ୍ଷତଳେ କୁକୁଡ଼ାଛୁଆ ମାନଙ୍କୁ ଏକାଠି କରିବାଭଳି
ମୁଁ ତୁମ୍ଭମାନଙ୍କ ଲୋକମାନଙ୍କୁ ଏକାଠି କରିବାକୁ ଚାହିଁଥିଲି।
କିନ୍ତୁ ତୁମ୍ଭେମାନେ ମୋତେ ତାହା କରେଇ ଦେଲନାହିଁ।
୩୫ବର୍ତ୍ତମାନ ତୁମ୍ଭମାନଙ୍କ ଘର ପୂରାପୂରି ଖାଲି ଛାଡ଼ି
ଦିଆଯିବ। ମୁଁ ତୁମ୍ଭମାନଙ୍କୁ କହୁଛି, ଯେଉଁ ସମୟ ପର୍ଯ୍ୟନ୍ତ
ତୁମ୍ଭେମାନେ ଏହି କଥା ନ କହିବ, 'ପ୍ରଭୁଙ୍କ ନାମରେ
ଯେଉଁ ବ୍ୟକ୍ତି ଆସନ୍ତି, ପରମେଶ୍ୱର ତାହାଙ୍କୁ ଆଶିର୍ବାଦ
କରନ୍ତୁ',* 'ସେହି ସମୟ ପର୍ଯ୍ୟନ୍ତ ତୁମ୍ଭେମାନେ ମୋତେ
ପୁନର୍ବାର ଦେଖି ପାରିବନାହିଁ।'"

## ବିଶ୍ରାମବାରରେ ଲୋକଙ୍କୁ ସୁସ୍ଥ କରିଦେବା କ'ଣ ଠିକ୍?

**୧୪** ଗୋଟିଏ ବିଶ୍ରାମବାରରେ ଯୀଶୁ ଜଣେ ପ୍ରଧାନ
ଫାରୂଶୀଙ୍କ ଘରକୁ ତାହାଙ୍କ ସହିତ ଏକାଠି
ଖାଇବା ପାଇଁ ଗଲେ। ସେଠାରେ ଥିବା ପ୍ରତ୍ୟେକ ଲୋକ
ଯୀଶୁଙ୍କୁ ସତର୍କତାର ସହିତ ଲକ୍ଷ୍ୟ କରୁଥିଲେ। ୨ଜଣେ
'ଜଳୋଦର'* ରୋଗୀକୁ ଯୀଶୁଙ୍କ ସାମନାକୁ ଅଣାଗଲା।
୩ଯୀଶୁ ଫାରୂଶୀ ଓ ଧର୍ମଶାସ୍ତ୍ରୀମାନଙ୍କୁ ପଚାରିଲେ
"ବିଶ୍ରାମବାରରେ ଭଲ କରିଦେବା ଠିକ୍ ନା ଭୁଲ?"
୪ସେମାନେ କିନ୍ତୁ ଚୁପ୍ ରହିଲେ। ତେଣୁ ଯୀଶୁ ଲୋକଟିକୁ
ଧରି ସୁସ୍ଥ କରିଦେଲେ। ତା'ପରେ ସେହି ଲୋକଟି
ଚାଲିଗଲା। ୫ଯୀଶୁ ଧର୍ମଶାସ୍ତ୍ରୀ ଓ ଫାରୂଶୀମାନଙ୍କୁ କହିଲେ,
"ଯଦି ବିଶ୍ରାମବାରରେ ତୁମ୍ଭମାନଙ୍କ ପୁଅ କିମ୍ବା ତୁମ୍ଭମାନଙ୍କ
ବଳଦଟି କୂଅ ଭିତରେ ଖସିପଡ଼େ, ତେବେ ତୁମ୍ଭେମାନେ
କ'ଣ ତାକୁ ସଙ୍ଗେ ସଙ୍ଗେ ବାହାରକୁ ଟାଣି ଆଣିବନାହିଁ?"
୬ଯୀଶୁ ଯାହା ପଚାରିଲେ ସେମାନେ କିଛି ଉତ୍ତର ଦେଇ
ପାରିଲେନାହିଁ।

## ନିଜକୁ ମହାନ ବୋଲି ଭାବନାହିଁ

୭ଯୀଶୁ ଲକ୍ଷ୍ୟ କଲେ ଯେ କେତେକ ଅତିଥି ବସିବା
ପାଇଁ ଭଲ ଆସନଟିଏ ଖୋଜୁଥିଲେ। ତେଣୁ ଯୀଶୁ ଏହି
ଦୃଷ୍ଟାନ୍ତ କହିଲେ: ୮"ଯଦି ଜଣେ ତୁମ୍ଭକୁ ବିବାହଉତ୍ସବରେ
ନିମନ୍ତ୍ରଣ କରୁଛି, ତେବେ ସବୁଠାରୁ ମୁଖ୍ୟ ଆସନରେ
ବସନାହିଁ। କାରଣ ସେହି ଲୋକଟି ତୁମ୍ଭଠାରୁ ଅଧିକ
ମହାନ ଲୋକକୁ ମଧ୍ୟ ଡାକି ଥାଇପାରେ। ୯ତୁମ୍ଭେ ଯଦି
ସବୁଠାରୁ ମୁଖ୍ୟ ଆସନରେ ବସିଥିବ, ତେବେ ତୁମ୍ଭକୁ
ନିମନ୍ତ୍ରଣ କରିଥିବା ଲୋକଟି ଆସି କହିବ, 'ଏହି ଲୋକଙ୍କୁ
ତୁମ୍ଭ ଆସନଟି ଦେଇଦିଅ।' ତାପରେ ତୁମ୍ଭେ ସେଠାରୁ ଉଠି
ପଛରେ ଥିବା ଶେଷ ଆସନଟିକୁ ଯିବ। ସେତେବେଳେ
ତୁମ୍ଭକୁ ବଡ଼ ଅପମାନ ଲାଗିବ। ୧୦ତେଣୁ ଯେତେବେଳେ
ଜଣେ ଲୋକ ତୁମ୍ଭକୁ ନିମନ୍ତ୍ରଣ କରିଛି, ତୁମ୍ଭେ ଗୋଟିଏ
ନିମ୍ନତମ ଆସନରେ ବସ। ସେତେବେଳେ ତୁମ୍ଭକୁ ନିମନ୍ତ୍ରଣ
କରିଥିବା ଲୋକଟି ଆସି ତୁମ୍ଭକୁ କହିବ, 'ବନ୍ଧୁ, ତୁମ୍ଭେ
ଏଠାରେ ନ ବସି ଟିକିଏ ଆଗକୁ ଆସି ଏ ଭଲ
ଆସନରେ ବସ।' ସେତେବେଳେ ଅନ୍ୟ ନିମନ୍ତ୍ରିତ ଅତିଥିମାନେ
ତୁମ୍ଭକୁ ସମ୍ମାନ କରିବେ। ୧୧ଯେଉଁ ଲୋକ ନିଜକୁ ମହାନ୍
ଭାବେ, ତାକୁ ହୀନ କରି ଦିଆଯିବ। ଯେଉଁଲୋକ ନିଜକୁ
ହୀନ ଭାବେ, ତାହାକୁ ମହାନ୍ କରାଯିବ।"

## ତୁମ୍ଭେ ପୁରସ୍କାର ପାଇବ

୧୨ଯୀଶୁ ତାହାଙ୍କୁ ନିମନ୍ତ୍ରଣ କରିଥିବା ଫାରୂଶୀ ଜଣଙ୍କୁ
କହିଲେ, "ତୁମ୍ଭେ କାହାରିକୁ ଦିନରେ ବା ରାତିରେ
ଖାଇବାକୁ ନିମନ୍ତ୍ରଣ କଲାବେଳେ କେବଳ ତୁମ୍ଭର ଭାଇବନ୍ଧୁକୁଟୁମ୍ବ
ଓ ଧନୀ ପଡ଼ୋଶୀମାନଙ୍କୁ ଡାକନାହିଁ। କାରଣ ଅନ୍ୟବେଳେ
ସେମାନେ ମଧ୍ୟ ତୁମ୍ଭକୁ ତାହାଙ୍କ ସହିତ ଖାଇବାକୁ
ଡାକିବେ। ସେତେବେଳେ ତୁମ୍ଭେ ତୁମ୍ଭର ପ୍ରତିଦାନ ପାଇଯିବ।
୧୩ବରଂ ଭୋଜି ଦେବା ସମୟରେ ଗରିବ, ପଙ୍ଗୁ, ଛୋଟା
ଓ ଅନ୍ଧମାନଙ୍କୁ ଡାକ। ୧୪ଏ ଲୋକମାନଙ୍କର କିଛି ନଥିବାରୁ
ସେମାନେ ତୁମ୍ଭକୁ ପ୍ରତିବଦଳରେ କିଛି ଦେଇ ପାରିବେନାହିଁ।
ତେଣୁ ଏହା ତୁମ୍ଭପାଇଁ ଆଶୀର୍ବାଦଜନକ ହେବ। କିନ୍ତୁ
ଯେତେବେଳେ ଧାର୍ମିକ ଲୋକମାନେ ମୃତମାନଙ୍କ ମଧ୍ୟରୁ
ଜୀବିତ ହେବେ, ସେହି ସମୟରେ ତୁମ୍ଭେମାନେ ତୁମ୍ଭର
ପୁରସ୍କାର ପାଇବ।"

## ଗୋଟିଏ ବଡ଼ ରାତ୍ରିଭୋଜି ବିଷୟରେ ଦୃଷ୍ଟାନ୍ତ

୧୫ଯୀଶୁଙ୍କ ସହିତ ଖାଇବାକୁ ବସିଥିବା ଲୋକମାନଙ୍କ
ମଧ୍ୟରୁ ଜଣେ ଲୋକ ଏ ସବୁ କଥା ଶୁଣି ଯୀଶୁଙ୍କୁ
କହିଲା, "ପରମେଶ୍ୱରଙ୍କ ରାଜ୍ୟରେ ଭୋଜନ କରୁଥିବା
ଲୋକ ବହୁତ ଖୁସି ହେବ।"
୧୬ଯୀଶୁ ସେହି ଲୋକକୁ କହିଲେ,"ଥରେ ଜଣେ ଲୋକ
ଗୋଟିଏ ବଡ଼ ରାତ୍ରିଭୋଜର ବ୍ୟବସ୍ଥା କରିଥିଲେ। ସେ
ବହୁତ ଲୋକଙ୍କୁ ନିମନ୍ତ୍ରଣ କରିଥିଲେ। ୧୭ଖାଇବା ସମୟ
ହେବାରୁ ସେ ଅତିଥିମାନଙ୍କ ପାଖକୁ ଏହି କଥା କହିବା
ପାଇଁ ନିଜ ଚାକରକୁ ପଠାଇଲେ: 'ଆସନ୍ତୁ, ଭୋଜନ
ପ୍ରସ୍ତୁତି ହୋଇ ଗଲାଣି।' ୧୮କିନ୍ତୁ ସମସ୍ତ ନିମନ୍ତ୍ରିତ ବ୍ୟକ୍ତିମାନେ
କହିଲେ ଯେ, ସେମାନେ ଯାଇ ପାରିବେନାହିଁ। ପ୍ରତ୍ୟେକ
ବାହାନା କରି କ୍ଷମା ମାଗି ରହିଗଲେ। ପ୍ରଥମ ଲୋକଟି
କହିଲା, 'ମୁଁ ଏବେ ଖଣ୍ଡେ ଜମି କିଣିଛି। ସେହି ଜମିଟି
ଦେଖିବାକୁ ବର୍ତ୍ତମାନ ମୋତେ ଯିବାକୁ ପଡ଼ିବ। ଦୟା କରି
ମୋତେ କ୍ଷମା କର।' ୧୯ଆଉ ଜଣେ କହିଲା, 'ମୁଁ ଏବେ
ପାଞ୍ଚହଳ ବଳଦ କିଣିଛି। ମୁଁ ତାହାଙ୍କୁ ପରଖିବାକୁ ଯିବାକୁ
ବାହାରିଲଣି। ଦୟାକରି ମୋତେ କ୍ଷମା କର।' ୨୦ତୃତୀୟ
ଲୋକଟି କହିଲା, 'ମୋର ତ ଏବେ ବାହାଘର ହୋଇଛି।
ମୁଁ ଯାଇ ପାରିବନାହିଁ।' ୨୧ତେଣୁ ଚାକରଟି ଫେରିଆସିଲା।
ଯାହା ସବୁ ଘଟିଥିଲା, ସେ ତା ମାଲିକକୁ ସବୁ କହିଲା,
ଏହା ଶୁଣି ମାଲିକ ଖୁବ୍ ରାଗିଗଲେ ଓ କହିଲେ, 'ନଗରର
ରାସ୍ତା ଗଳିମାନଙ୍କୁ ଶୀଘ୍ର ଦୌଡ଼ିଯାଅ, ଏବଂ ଦୀନଦୁଃଖୀ,
ପଙ୍ଗୁ, ଅନ୍ଧ, ଓ ଛୋଟାମାନଙ୍କୁ ଏଠାକୁ ନେଇଆସ।'
୨୨ପରେ ଚାକରଟି ତାହାଙ୍କୁ କହିଲା, 'ମାଲିକ ତୁମ୍ଭେ ଯାହା

---

**'ପ୍ରଭୁଙ୍କ ନାମରେ ... କରନ୍ତୁ'** ଗୀତସଂହିତା ୧୧୮:୨୬
**'ଜଳୋଦର'** ତୃପ୍ତିରୋଗ, ଫୁଲ-ଫୁଲ ଯିବା ରୋଗ।

କହଲ, ମୁଁ ତ କଲ। ତଥାପି ଆଉ ଅଧିକ ଲୋକଙ୍କ
ପାଇଁ ଜାଗା ବଳଛ।' ୨୩ମାଲକ ଚାକରକୁ କହଲେ,
'ରାଜପଥ ଓ ଗ୍ରାମପଥକୁ ଚାଲଯାଅ। ସେଠାରେ ଥିବା
ଲୋକଙ୍କୁ ଆସିବାକୁ କୁହ। ମୁଁ ଚାହେଁ, ମୋ ଘର
ପୁରପୁର ଭରଯାଉ।' ୨୪ଯେଉଁମାନଙ୍କୁ ମୁଁ ପ୍ରଥମେ ନମନ୍ତ୍ରଣ
କରଥିଲ, ସେମାନଙ୍କ ମଧ୍ୟରୁ ଜଣେ ହେଲେ ମଧ୍ୟ ମୋ
ସହତ ଆଉ କେବେହେଁ ଭୋଜି ଖାଇବେ ନାହିଁ।'"

## ପ୍ରଥମେ ତୁମ୍ଭେ ଯୋଜନା କର

୨୫ବହୁତ ଲୋକ ଯୀଶୁଙ୍କ ସହତ ଯାତ୍ରା କରୁଥିଲେ।
ଯୀଶୁ ଲୋକମାନଙ୍କୁ କହଲେ, ୨୬"ଯଦ ଜଣେ ଲୋକ ମୋ
ପାଖକୁ ଆସେ, କନ୍ତୁ ଯଦ ମୋ ଅପେକ୍ଷା ତା ବାପାମାଆ,
ସ୍ତ୍ରୀ, ପିଲା, ଭାଇଭଉଣୀମାନଙ୍କୁ ଅଧିକ ଭଲ ପାଏ, ତେବେ
ସେ ଲୋକ ମୋର ଶିଷ୍ୟ ହୋଇ ପାରବନାହିଁ। ଜଣେ
ଲୋକକୁ ତା' ନଜ ଅପେକ୍ଷା ମୋତେ ଅଧିକ ଭଲ
ପାଇବାକୁ ହେବ। ୨୭ଜଣେ ଲୋକ ମୋତେ ଅନୁସରଣ
କଲାବେଳେ ଯଦ ତାକୁ ଦଆଯାଇଥିବା କ୍ରୁଶ କାନ୍ଧେଇ
ଚାଲବନାହିଁ, ତେବେ ସେ ଲୋକ ମୋର ଶିଷ୍ୟ ହୋଇ
ପାରବନାହିଁ। ୨୮ତୁମ୍ଭେମାନେ ଯଦ ଗୋଟିଏ କୋଠାଘର
ତିଆର କରବାକୁ ଚାହୁଁଛ, ତେବେ ତୁମ୍ଭେମାନେ ପ୍ରଥମେ
ବସି ସ୍ଥିର କରବ ଯେ, ଏଥି ପାଇଁ କେତେ ଖର୍ଚ୍ଚ ହେବ।
ତୁମ୍ଭମାନଙ୍କର ହସାବ କର ଦେଖିବା ଉଚତ ଯେ, କାମଟି
ସଂମ୍ପୂର୍ଣ୍ଣ କରବା ନମନ୍ତେ ତୁମ୍ଭମାନଙ୍କ ପାଖରେ ଯଥେଷ୍ଟ
ଅର୍ଥ ଅଛ କ ନାହିଁ। ୨୯ତା'ନହେଲେ ତୁମ୍ଭେମାନେ
ମୂଳଦୁଆ ପକେଇ ଦେଇ କାମ ଆରମ୍ଭ କର ପାର, କନ୍ତୁ
ଶେଷ କର ପାରବନାହିଁ। ଯଦ ତୁମ୍ଭେମାନେ ତାକୁ ଶେଷ
କରପାରବ ନାହିଁ, ତେବେ ଏହାକୁ ଦେଖିଥିବା ଲୋକେ
ତୁମ୍ଭମାନଙ୍କୁ ଉପହାସ କରବେ। ୩୦ସେମାନେ କହବେ, 'ଏ
ଲୋକଟା କୋଠା ଆରମ୍ଭ କରଦେଲା, କନ୍ତୁ ଶେଷ କର
ପାରଲାନାହିଁ।'

୩୧"ଯଦ ଜଣେ ରାଜା ଅନ୍ୟ ଜଣେ ରାଜାଙ୍କ ସହତ
ଯୁଦ୍ଧ କରବାକୁ ବାହାରନ୍ତ, ତେବେ ସେ ଆଗ ବସି
ଯୋଜନା କରନ୍ତ। ଯଦ ସେହ ରାଜାଙ୍କର କେବଳ ଦଶ
ହଜାର ସୈନ୍ୟ ଥାଆନ୍ତ, ତେବେ ସେ କୋଡଏ ହଜାର
ସୈନ୍ୟ ଧର ଆସୁଥିବା ଜଣେ ବରୋଧୀ ରାଜାଙ୍କୁ ପରାସ୍ତ
କରପାରବେ ନାହିଁ। ୩୨ଯଦ ସେ ଅନ୍ୟ ରାଜାଙ୍କୁ ପରାସ୍ତ
କରବାକୁ ସକ୍ଷମ ହେବେନାହିଁ, ତେବେ ବରୋଧୀ ରାଜା
ବହୁତ ଦୂରରେ ଥିବାବେଳେ ତାହାଙ୍କ ପାଖକୁ କଛ ଲୋକ
ପଠାଇ ସନ୍ଧିପ୍ରସ୍ତାବ ଦେବେ। ୩୩ସେହଭଳ ତୁମ୍ଭେମାନେ
ସମସ୍ତେ ପ୍ରଥମେ ଯୋଜନା କରବ। ତୁମ୍ଭେମାନେ ମୋତେ
ଅନୁସରଣ କରବାକୁ ଚାହିଁଲେ ତୁମ୍ଭମାନଙ୍କର ପ୍ରତ୍ୟେକ
ବଷୟ ତ୍ୟାଗ କରବ। ତୁମ୍ଭେମାନେ ଯଦ ତାହା କର
ନପାରବ, ତେବେ ମୋର ଶିଷ୍ୟ ହୋଇ ପାରବନାହିଁ।

## ତୁମ୍ଭର ପ୍ରଭାବ ହରାଅନାହିଁ

୩୪"ଲୁଣ ଗୋଟିଏ ଭଲ ଜନଷ। ଲୁଣ ଯଦ ତାର
ଲୁଣିଆ ସ୍ୱାଦ ହରାଇ ବସେ, ତେବେ ତାର କୌଣସି
ମୂଲ୍ୟ ନାହିଁ। ତୁମ୍ଭେମାନେ ପୁଣି ଥରେ ତାର ଲୁଣିଆ ସ୍ୱାଦ
ଫେରାଇ ଦେଇ ପାରବନାହିଁ। ୩୫ଏହାକୁ ତୁମ୍ଭେମାନେ
ଏପରକ ମାଟି ପାଇଁ ବା ଖତସାର ପାଇଁ ମଧ୍ୟ ବ୍ୟବହାର
କର ପାରବନାହିଁ। ଲୋକେ ତାକୁ ଫୋପାଡ ଦଅନ୍ତ।"

"ଯାହାର ଶୁଣିବାର ଅଛ, ସେ ଶୁଣୁ।"

## ସ୍ୱର୍ଗରେ ଆନନ୍ଦ

୧୫ ଯୀଶୁଙ୍କ ଉପଦେଶ ଶୁଣିବା ପାଇଁ ଅନେକ
କରଆଦାୟକାରୀ ଓ ଖରାପ ଲୋକମାନେ
ଆସିବାକୁ ଲାଗିଲେ। ୨ଏହା ଦେଖି ଫାରୂଶୀ ଓ ଧର୍ମଶାସ୍ତ୍ରୀମାନେ
ଅଭିଯୋଗ କରବାକୁ ଆରମ୍ଭ କଲେ, "ଦେଖ, ଏହ
ବ୍ୟକ୍ତ(ଯୀଶୁ) ପାପୀ ଲୋକମାନଙ୍କୁ ସ୍ୱାଗତ କରୁଛନ୍ତ ଓ
ଏପରକ ସେମାନଙ୍କ ସହତ ଖାଉଛନ୍ତ।"

୩ଯୀଶୁ ସେମାନଙ୍କୁ ଏହ ଦୃଷ୍ଟାନ୍ତ କହଲେ: ୪"ମନେକର
ତୁମ୍ଭମାନଙ୍କ ଭିତରୁ ଜଣକର ଶହେଟି ମେଣ୍ଢା ଅଛ, କନ୍ତୁ
ସେଥିରୁ ଗୋଟିଏ ହଜଗଲା। ତେବେ ସେ ଅନେଶ୍ୱତ
ମେଣ୍ଢାଙ୍କୁ ଏକୁଟିଆ ଛାଡଦେଇ ହଜ ଯାଇଥିବା ମେଣ୍ଢାଟିକୁ
ଖୋଜିବା ପାଇଁ ବାହାରପଡବ ଓ ତାକୁ ପାଇବା ପର୍ଯ୍ୟନ୍ତ
ସେ ଖୋଜିବାକୁ ଲାଗିବ। ୫ମେଣ୍ଢାଟି ପାଇଗଲେ ସେ
ବହୁତ ଖୁସି ହେବ। ସେ ମେଣ୍ଢାଟିକୁ କାନ୍ଧରେ ବସାଇ
ଘରକୁ ଆଣିବ। ୬ସେ ତା' ବନ୍ଧୁ ଓ ପଡୋଶୀମାନଙ୍କ
ପାଖକୁ ଯାଇ କହବ, ମୁଁ ମୋର ହଜ ଯାଇଥିବା ମେଣ୍ଢାଟି
ପାଇ ଯାଇଛ। ମୁଁ ଅତ୍ୟନ୍ତ ଆନନ୍ଦିତ। ଆସ, ମୋ ସହତ
ତୁମ୍ଭେମାନେମାନେ ଆନନ୍ଦ କର। ୭ସେହଭଳ ମୁଁ ତୁମ୍ଭମାନଙ୍କୁ
କହୁଛ, ଯେତେବେଳେ ଜଣେ ପାପୀ ତା' ହୃଦୟ ପରବର୍ତ୍ତନ
କରଥାଏ, ସେତେବେଳେ ସ୍ୱର୍ଗରେ ଅଧିକ ଆନନ୍ଦ ହୁଏ।
ଯେଉଁ ଲୋକମାନଙ୍କ ହୃଦୟପରବର୍ତ୍ତନର ଆବଶ୍ୟକ ନାହିଁ,
ଏପର ଅନେଶ୍ୱତ ଧାର୍ମିକ ଲୋକଙ୍କ ଅପେକ୍ଷା ଗୋଟିଏ
ପାପୀ ଲୋକର ହୃଦୟ ପରବର୍ତ୍ତନ ହେଲେ ଅଧିକ ଆନନ୍ଦ
ହୁଏ।

୮"ମନେକର ଜଣେ ସ୍ତ୍ରୀଲୋକର ଦଶଟି ରୂପା ମୁଦ୍ରା
ଅଛ। କନ୍ତୁ ସେଥିରୁ ଗୋଟିଏ ହଜଗଲା। ତେବେ ସେହ
ସ୍ତ୍ରୀଲୋକଟି ଆଲୁଅ ଲଗେଇ ଘର ସାରା ଭଲ କର
ଓଳେଇ ପକେଇବ, ଓ ରୂପା ମୁଦ୍ରାଟି ନ ପାଇବା ପର୍ଯ୍ୟନ୍ତ
ଚାରଆଡ଼ ଖୋଜିବ। ୯ହଜ ଯାଇଥିବା ରୂପା ମୁଦ୍ରାଟି
ପାଇଗଲେ ସେ ତା' ବଂଧୁ ଓ ପଡୋଶୀମାନଙ୍କୁ ଡାକ
କହବ, 'ମୁଁ ବହୁତ ଆନନ୍ଦିତ। କାରଣ ମୋର ହଜ
ଯାଇଥିବା ରୂପା ମୁଦ୍ରାଟି ମିଳଗଲା। ଆସ, ମୋ ସହତ
ଆନନ୍ଦ କର।' ୧୦ସେହଭଳ ଜଣେ ପାପୀ ତା' ହୃଦୟ
ପରବର୍ତ୍ତନ କଲେ, ପରମେଶ୍ୱରଙ୍କ ଦୂତମାନେ ବହୁତ
ଆନନ୍ଦିତ ହୁଅନ୍ତ।"

## ପୁଅ ଯେ କ ଘର ଛାଡ ଚାଲଗଲା

୧୧ଯୀଶୁ କହଲେ, "ଜଣେ ଲୋକର ଦୁଇ ପୁଅ ଥିଲେ।
୧୨ଦନେ ସାନ ପୁଅ ତା' ବାପାଙ୍କୁ କହଲା, 'ବାପା, ତୁମ୍ଭେ
ମତେ ତୁମ୍ଭର ସବୁ ସମ୍ପତ୍ତିରୁ ମୋ ଭାଗତକ ଦେଇଦଅ।'
ତେଣୁ ତା' ବାପା ତାହାଙ୍କର ସବୁ ସମ୍ପତ୍ତିକୁ ଦୁଇ ପୁଅଙ୍କ

ମଧ୍ୟରେ ବାଣ୍ଟିଦେଲେ। ୧୩ଅଳ୍ପ ଦିନ ପରେ ସାନପୁଅ
ତା’ଭାଗର ସବୁ ସମ୍ପତ୍ତିତକ ସଂଗ୍ରହ କରି ଗୋଟିଏ ଦୂର
ଦେଶକୁ ଚାଲିଗଲା। ସେଠାରେ ସେ ଗୋଟିଏ ମୂର୍ଖ ଭଳି
ଜୀବନଯାପନ କରି ସବୁ ଧନ ସମ୍ପତ୍ତି ଉଡେଇ ଦେଲା।
୧୪ସବୁତକ ସାରିଦେଲା ପରେ, ସେହି ଦେଶରେ ଚାରିଆଡେ
ଭୟଙ୍କର ଦୁର୍ଭିକ୍ଷ ପଡିଲା। ତାକୁ ଅଭାବ ଭିତରେ ଉପାସରେ
ରହିବାକୁ ପଡିଲା। ତା’ର ଟଙ୍କା ଦରକାର ପଡିଲା।
୧୫ତେଣୁ ସେ ସେହି ଦେଶରେ ଗୋଟିଏ ଲୋକ ପାଖକୁ
ମୂଲ ଲାଗିବାକୁ ଗଲା, ସେ ଲୋକଟି ତାହାକୁ ତା
ପଡିଆରେ ଘୁଷୁରି ଚରେଇବାକୁ ପଠାଇଲା। ୧୬ତାହାକୁ
ଏତେ ଭୋକ ଲାଗୁଥିଲା ଯେ ସେ ଘୁଷୁରିମାନେ ଖାଉଥିବା
ଖାଦ୍ୟରୁ କିଛି ଖାଇବାକୁ ଇଚ୍ଛା କଲା କିନ୍ତୁ ତାହା ମଧ୍ୟ
କେହି ତାହାକୁ ଦେଲେନାହିଁ। ୧୭ଏବେ ସେ ବୁଝି ପାରିଲା
ଯେ, ସେ ବହୁତ ମୂର୍ଖାମୀ କରିଛି। ସେ ଭାବିଲା, ‘ମୋ
ବାପାଙ୍କର ମୂଲିଆମାନଙ୍କର କେତେ ଖାଦ୍ୟ ବଳୁଛି। ଆଉ
ମୁଁ ଏଠାରେ ଭୋକରେ ମରୁଛି। ୧୮ମୁଁ ଏ ସ୍ଥାନ ଛାଡି ମୋ
ବାପାଙ୍କ ପାଖକୁ ଫେରିଯିବି।’ ମୁଁ ତାହାଙ୍କୁ କହିବି, ‘ବାପା,
ମୁଁ ପରମେଶ୍ୱରଙ୍କ ବିରୁଦ୍ଧରେ ଓ ତୁମ୍ଭ ବିରୁଦ୍ଧରେ ପାପ
କରିଛି। ୧୯ମୁଁ ତୁମ୍ଭର ପୁଅ ହେବାର ଯୋଗ୍ୟ ନୁହେଁ।
କିନ୍ତୁ ତୁମ୍ଭେ ମୋତେ ଦୟାକରି ତୁମ୍ଭର ଅନ୍ୟ ମୂଲିଆମାନଙ୍କ
ଭଳି ରଖ।’ ୨୦ତେଣୁ ସେ ସ୍ଥାନ ଛାଡି ତା’ ବାପାଙ୍କ
ପାଖକୁ ବାହାରିଲା।

## ପୁଅର ଘର ବାହୁଡ଼ା

“ପୁତ୍ର ବହୁତ ଦୂରରେ ଥିଲା ବେଳେ ବାପା ତାହାକୁ
ଦେଖିଲେ। ସେ ପୁଅ ପାଇଁ ଦୁଃଖ ଅନୁଭବ କଲେ ଓ ତା
ପାଖକୁ ଦୌଡିଗଲେ। ସେ ପୁଅକୁ କୁଣ୍ଢେଇ ପକେଇ
ଚୁମ୍ବନ ଦେଲେ। ୨୧ପୁଅ କହିଲା, ‘ବାପା, ମୁଁ ପରମେଶ୍ୱରଙ୍କ
ବିରୁଦ୍ଧରେ ଓ ତୁମ୍ଭ ବିରୁଦ୍ଧରେ ପାପ କରିଛି। ମୁଁ ତୁମ୍ଭର
ପୁଅ ହେବାକୁ ଯୋଗ୍ୟ ନୁହେଁ।’ ୨୨କିନ୍ତୁ ବାପା ତାହାଙ୍କ
ଚାକରମାନଙ୍କୁ ଡାକି କହିଲେ, “ଶୀଘ୍ର ଯାଅ, ତା’ ପାଇଁ
ସବୁଠାରୁ ଭଲ ପୋଷାକପତ୍ର ଆଣ। ତା’ ଆଙ୍ଗୁଠିରେ
ମୁଦିଟିଏ ପିନ୍ଧାଇ ଦିଅ। ପାଦରେ ଭଲ ଯୋତା ପିନ୍ଧାଇ
ଦିଅ। ୨୩ଆମ୍ଭର ସବୁଠାରୁ ମୋଟା ବାଛୁରୀଟିକୁ ଆଣ।
ଆମ୍ଭେ ତାହାକୁ ମାରିବା। ଆମ୍ଭର ଖାଇବା ପାଇଁ ତାହା
ପ୍ରଚୁର ହେବ। ଆମ୍ଭେମାନେ ଗୋଟିଏ ଭୋଜି କରିବା।
୨୪ମୋର ପୁଅ ମରି ଯାଇଥିଲା। ବର୍ତ୍ତମାନ ସେ ପୁଣି ବଞ୍ଚି
ଉଠିଛି। ସେ ହଜି ଯାଇଥିଲା। ଏବେ ମିଳି ଯାଇଛି।’
ତେଣୁ ସେମାନେ ଭୋଜିର ଆୟୋଜନ କଲେ।

## ବଡ ପୁଅ ଆସିଲା

୨୫“ଏହି ସମୟରେ ଲୋକଟିର ବଡ ପୁଅ କ୍ଷେତରେ
ଥିଲା। ଫେରିଲା ବେଳେ, ଘର ପାଖାପାଖି ପହଞ୍ଚିବା
ବେଳକୁ ସେ ନାଚଗୀତର ଶବ୍ଦ ଶୁଣିଲା। ୨୬ତେଣୁ ସେ
ଜଣେ ଚାକରକୁ ଡାକି ପଚାରିଲା, ‘ଏ ସବୁ କ’ଣ
ଚାଲିଛି?’ ୨୭ଚାକରଟି କହିଲା, ‘ତୁମ୍ଭ ଭାଇ ଫେରି ଆସିଛି।
ତୁମ୍ଭ ବାପା ଭୋଜି ପାଇଁ ମୋଟା ବାଛୁରୀଟି ମାରିଛନ୍ତି।
ତୁମ୍ଭ ଭାଇ କୁଶଳରେ ଫେରି ଆସିଥିବାରୁ ତୁମ୍ଭ ବାପା
ବହୁତ ଖୁସି ହେଉଛନ୍ତି।’ ୨୮ଏହା ଶୁଣି ବଡ ପୁଅ ଭୀଷଣ
ରାଗିଗଲା। ସେ ଭିତରେ ପ୍ରବେଶ କରିବା ପାଇଁ ଇଚ୍ଛା
କଲାନାହିଁ। ତେଣୁ ତା’ ବାପା ବଡ ପୁଅକୁ ଭିତରକୁ
ଡାକିବା ପାଇଁ ବାହାରି ଆସିଲେ। ୨୯ବଡ ପୁଅ ବାପାଙ୍କୁ
କହିଲା, ‘ବର୍ଷବର୍ଷ ଧରି ମୁଁ ଗୋଟିଏ କ୍ରୀତଦାସ ଭଳି
ତୁମ୍ଭର ସେବା କରି ଆସିଛି। ତୁମ୍ଭର ଆଦେଶକୁ ସବୁବେଳେ
ମାନି ଆସିଛି। କିନ୍ତୁ ତୁମ୍ଭେ ମୋ ପାଇଁ ଛେଳିଟିଏ ମଧ୍ୟ
କେବେ ମାରିନାହିଁ। ତୁମ୍ଭେ ମୋ ପାଇଁ ଓ ମୋ ବନ୍ଧୁମାନଙ୍କ
ପାଇଁ କେବେହେଲେ ଭୋଜିଟିଏ ଦେଇନାହିଁ। ୩୦କିନ୍ତୁ
ତୁମ୍ଭର ଏହି ପୁଅଟି ତୁମ୍ଭର ସବୁତକ ସମ୍ପତ୍ତି ବେଶ୍ୟା
ମାନଙ୍କ ପାଇଁ ନଷ୍ଟ କରି ଦେଇଛି। ତା’ ପରେ ସେ
ଘରକୁ ଫେରି ଆସିଲା। ଆଉ ତା’ ପାଇଁ ତୁମ୍ଭେ ମୋଟା
ବାଛୁରିଟିକୁ ମାରିଲ!’ ୩୧କିନ୍ତୁ ବାପା ତାକୁ କହିଲେ, ‘ପୁଅ,
ତୁ ସବୁବେଳେ ମୋ ପାଖରେ ଅଛୁ। ମୋର ଯାହା କିଛି
ଅଛି, ସେ ସବୁ ତୋର। ୩୨କିନ୍ତୁ ତୋର ଏ ଭାଇ
ମରିଯାଇଥିଲା। ଏବେ ସେ ପୁଣି ଜୀବନ ପାଇଲା। ସେ
ହଜି ଯାଇଥିଲା, ଏବେ ସେ ମିଳିଲା। ସେଥିପାଇଁ ଆମ୍ଭେ
ଖୁସି ହେବା ଓ ଭୋଜି କରିବା ଉଚିତ।’”

## ବାସ୍ତବଧନ

୧୬ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ କହିଲେ, “ଜଣେ
ଧନୀ ଲୋକ ଥିଲେ। ସେ ତାହାଙ୍କ ସମ୍ପତ୍ତିର
ବୁଝାସୁଝା କରିବା ପାଇଁ ଗୁମାସ୍ତାଟିଏ ରଖିଥିଲେ। ପରେ
ଧନୀ ଲୋକ ଜଣକ ଅଭିଯୋଗ ପାଇଲେ ଯେ, ଗୁମାସ୍ତା
ତାହାଙ୍କୁ ଠକୁଥିଲା। ୨ଧନୀଲୋକଜଣକ ଗୁମାସ୍ତାଙ୍କୁ ଡାକି
କହିଲେ, “ମୁଁ ତୁମ୍ଭ ବିରୁଦ୍ଧରେ ଅନେକ କଥା ଶୁଣୁଛି।
ତୁମ୍ଭେ ଯାହା ସବୁ କରିଛ, ତାର ହିସାବ ମୋତେ ଦିଅ।
ଏଣିକି ତୁମ୍ଭେ ଆଉ ମୋର ଗୁମାସ୍ତା ହୋଇ ପାରିବନାହିଁ।’
୩ଗୁମାସ୍ତା ଜଣକ ମନେ ମନେ ଭାବିଲା, ‘ଏବେ ମୁଁ କ’ଣ
କରିବି? ମୋ ମାଲିକ ମୋ ଚାକିରି ନେଇ ଯାଉଛନ୍ତି।
ଗାତ ଖୋଳିବା ପାଇଁ ମୋ ଦେହରେ ବଳ ନାହିଁ। ଭିକ
ମାଗିଲେ ମୋତେ ଲାଜ ମାଡିବ।’ ୪ତେବେ ମୋତେ କ’ଣ
କରିବାକୁ ହେବ ତା ମୁଁ ଜାଣିଛି। ଯେତେବେଳେ ମୁଁ
ଗୁମାସ୍ତା ଚାକିରି ହରାଇବି, ସେତେବେଳେ ଯେପରି ଲୋକେ
ସେମାନଙ୍କ ଘରେ ମୋର ସ୍ୱାଗତ କରିବେ ସେଥିପାଇଁ
ଗୋଟିଏ କାମ ମୁଁ କରିବି। ୫ତେଣୁ ଗୁମାସ୍ତା ଜଣକ
ମାଲିକଙ୍କଠାରୁ ଋଣ ନେଇଥିବା ପ୍ରତ୍ୟେକ ଖାତକଙ୍କୁ ଡାକିଲେ।
ସେ ପ୍ରଥମ ଖାତକଟିକୁ ପଚାରିଲେ, ‘ମୋ ମାଲିକଙ୍କୁ
ତୁମ୍ଭର କେତେ ଦେବାକୁ ଅଛି?’ ୬ଲୋକଟି ଉତ୍ତର ଦେଲା,
‘ଶହେ ଟିଣ ତେଲ।’ ଗୁମାସ୍ତା ତାକୁ କହିଲେ, ‘ଏଇଟି
ତୁମ୍ଭର ହିସାବ କାଗଜ ନିଅ। ବସି ପଡି ତାକୁ କମ୍ କରି
ଶୀଘ୍ର ପଚାଶ ବୋଲି ଲେଖିଦିଅ।’ ୭ତା’ପରେ ଗୁମାସ୍ତା
ଆଉ ଜଣେ ଖାତକକୁ ପଚାରିଲେ, ‘ତୁମ୍ଭର କେତେ ଋଣ
ପରିଶୋଧ କରିବାକୁ ଅଛି?’ ଖାତକଟି କହିଲା, ‘ଶହେ
ଭରଣ ଗହମ’, ଗୁମାସ୍ତା ତାହାଙ୍କୁ କହିଲେ, ‘ଏଇଟି ତୁମ୍ଭର

ହସାବ କାଗଜ ନଅ, ତାକୁ କମ କର ଅଶୀ ଭରଣ
ବୋଲ ଲେଖିଦଅ।' ୮ପରେ ମାଲକ ସେହ ଅସାଧୁ
ଗୁମାସ୍ତାଙ୍କର ପ୍ରଶଂସା କଲେ। କାରଣ ଗୁମାସ୍ତା ଚତୁରତାର
ସହତ କାମ ତୁଲେଇ ଦେଲେ। ତାହାଙ୍କ ଭଳ,
ଅନ୍ୟଲୋକମାନଙ୍କ ସହତ ବ୍ୟବସାୟ କରବାରେ ଏହ
ସଂସାରକ ଲୋକମାନେ ଆଧ୍ୟାତ୍ମିକ ଲୋକମାନଙ୍କ ଅପେକ୍ଷା
ଅଧିକ ଚତୁର।
୯"ମୁଁ ତୁମ୍ଭମାନଙ୍କୁ କହୁଛ ଯେ, ତୁମ୍ଭମାନଙ୍କର ଯାହାସବୁ
ଅଛ ସେଥିରେ ପରମେଶ୍ୱରଙ୍କ ସହତ ମିତ୍ରତା ସ୍ଥାପନ
କର। ତେଣୁ ଯେତେବେଳେ ଏ ଜାଗତିକ ଧନ ସରଯିବ,
ସେତେବେଳେ ଚରନ୍ତନ ନବାସରେ ତୁମ୍ଭମାନଙ୍କୁ ସ୍ୱାଗତ
କରାଯିବ। ୧୦ଛୋଟଛୋଟ ବଷୟରେ ଯଦ ଜଣକୁ ବଶ୍ୱାସ
କରାଯାଇ ପାରବ, ତେବେ ତାକୁ ବଡ଼ ବଷୟ ଗୁଡକ
ପାଇଁ ମଧ୍ୟ ବଶ୍ୱାସ କରାଯାଇ ପାରବ। ଅଳ୍ପ ଜିନଷ ପାଇଁ
ଯଦ ଜଣେ ଅସାଧୁ ହୋଇଯାଏ, ତେବେ ସେ ଅଧିକ
ଜିନଷ ପାଇଁ ମଧ୍ୟ ଅସାଧୁ ହୋଇଯିବ। ୧୧ତୁମ୍ଭେମାନେ ଯଦ
ସଂସାରକ ସମ୍ପତ୍ତି ପାଇଁ ବଶ୍ୱାସଯୋଗ୍ୟ ବୋଲ ପ୍ରମାଣିତ
ହୋଇ ପାରବନାହଁ, ତେବେ ତୁମ୍ଭମାନଙ୍କୁ ସତ୍ୟ ସମ୍ପତ୍ତି
ପାଇଁ କଏ ବଶ୍ୱାସ କରବ? ୧୨ତୁମ୍ଭେମାନେ ଯଦ ଅନ୍ୟ
କାହାର ଜିନଷ ରଖିବା ପାଇଁ ବଶ୍ୱାସଯୋଗ୍ୟ ବୋଲ
ପ୍ରମାଣିତ ହୋଇ ନାହଁ, ତେବେ ତୁମ୍ଭମାନଙ୍କ ନଜ ଜିନଷ
ମଧ୍ୟ ତୁମ୍ଭମାନଙ୍କୁ ଦଆ ଯିବନାହିଁ।
୧୩"ଜଣେ ସେବକ ଏକା ସଙ୍ଗରେ ଦୁଇଜଣ ମାଲକଙ୍କ
ସେବା କରପାରବ ନାହିଁ। ସେ ଜଣକୁ ଘୃଣା କରବ ଓ
ଅନ୍ୟ ଜଣକୁ ଶ୍ରଦ୍ଧା କରବ। କମ୍ବା ସେ ଜଣକ ପ୍ରତି
ବଶ୍ୱସ୍ତ ରହବ ଓ ଅନ୍ୟ ଜଣକୁ ବେଖାତିର କରବ।
ତୁମ୍ଭେମାନେ ଏକାବେଳେ ପରମେଶ୍ୱର ଓ ଧନ ଦୁହିଁଙ୍କ
ସେବା କର ପାରବ ନାହିଁ।"

## ପରମେଶ୍ୱରଙ୍କ ବଧାନ ଅଟଳ

୧୪ଫାରୂଶୀମାନେ ଏହ ସବୁ କଥା ଶୁଣୁଥିଲେ। ଫାରୂଶୀମାନେ
ନଜେ ଟଙ୍କାକୁ ଭଲ ପାଉଥିବାରୁ ଯୀଶୁଙ୍କୁ ସମାଲୋଚନା
କଲେ। ୧୫ଯୀଶୁ ଫାରୂଶୀମାନଙ୍କୁ କହଲେ, "ଲୋକଙ୍କ
ଆଗରେ ତୁମ୍ଭେମାନେ ନଜକୁ ଭଲ ବୋଲ ଦେଖେଇ
ହେଉଛ। କନ୍ତୁ ତୁମ୍ଭମାନଙ୍କ ହୃଦୟରେ ପ୍ରକୃତରେ କ'ଣ
ଅଛ, ତାହା ପରମେଶ୍ୱର ଜାଣନ୍ତ। ଯେଉଁସବୁ ବଷୟକୁ
ଲୋକମାନେ ବହୁତ ମୂଲ୍ୟବାନ ବୋଲ ମନେ କରଥାନ୍ତ,
ତାହା ପରମେଶ୍ୱରଙ୍କ ଦୃଷ୍ଟିରେ ମୂଲ୍ୟ ହୀନ।
୧୬"ମୋଶାଙ୍କ ନୟିମ ଓ ଭବଷ୍ୟଦ୍‌ବକ୍ତାମାନଙ୍କ ଲେଖା
ଅନୁସାରେ ଲୋକମାନେ ଜୀବନଯାପନ କରନ୍ତୁ ବୋଲ
ପରମେଶ୍ୱର ଚାହିଁଲେ। କନ୍ତୁ ବାପ୍ତିଜକ ଯୋହନ ଆସିବା
ପର ଠାରୁ ପରମେଶ୍ୱରଙ୍କ ରାଜ୍ୟ ବଷୟରେ ସୁସମାଚାର
ପ୍ରଚାର କରାଯାଉଛ। ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ
କରବା ପାଇଁ ଅନେକ ଲୋକ ଅକ୍ଳାନ୍ତ ଚେଷ୍ଟା କରୁଛନ୍ତ।
୧୭ସ୍ୱର୍ଗ ଓ ପୃଥିବୀର ଧ୍ୱଂସ ହୁଏତ ସହଜରେ ହୋଇଯିବ,
ମାତ୍ର ବ୍ୟବସ୍ଥାର କ୍ଷୁଦ୍ରତମ ଅଂଶ ସୁଦ୍ଧା ପରବର୍ତ୍ତିତ
ହେବନାହିଁ।

## ଛାଡପତ୍ର ଓ ପୁନର୍ବବାହ

୧୮"ଯଦ ଜଣେ ପୁରୁଷ ନଜ ପତ୍ନୀକୁ ଛାଡପତ୍ର ଦେଇ
ଅନ୍ୟ ଜଣେ ସ୍ତ୍ରୀକୁ ବବାହ କରେ, ତେବେ ସେହ
ପୁରୁଷଟି ବ୍ୟଭିଚାର ପାପରେ ଦୋଷୀ ସାବ୍ୟସ୍ତ ହେବ।
ଏବଂ ଯେଉଁ ପୁରୁଷ ଜଣେ ପରତ୍ୟକ୍ତା ସ୍ତ୍ରୀକୁ ବବାହ
କରେ, ସେ ମଧ୍ୟ ବ୍ୟଭିଚାର ପାପରେ ଦୋଷୀ ହେବ।"

## ଧନୀଲୋକ ଓ ଲାଜାର

୧୯ଯୀଶୁ କହଲେ, "ଥରେ ଜଣେ ଧନୀଲୋକ ସଦାବେଳେ
ଭଲ ଭଲ ପୋଷାକ ପିନ୍ଧୁଥିଲା। ସେ ଏତେ ଧନୀ ଥିଲା
ଯେ ପ୍ରତିଦନ ଗୋଟିଏ ବଳାସପୂର୍ଣ୍ଣ ଭୋଜି ଦେବାକୁ ସକ୍ଷମ
ଥିଲା। ୨୦ଲାଜାର ନାମରେ ଜଣେ ଅତି ଗରବ ଲୋକ
ଥିଲା। ତା'ଦେହ ଘା'ରେ ଭର ଯାଇଥିଲା। ଲାଜାର ପ୍ରାୟ
ସବୁ ସମୟରେ ଧନୀଲୋକଙ୍କ ଫାଟକ ପାଖରେ ପଡରହୁଥିଲା।
୨୧ଧନୀଲୋକ ଖାଇ ସାରବା ପରେ ସେ ଛାଡ ଦେଇ
କେବଳ ଅଇଁଠା ଅଂଶ ତକ ଖାଇବାକୁ ଚାହୁଁଥିଲା।
କୁକୁରମାନେ ଆସି ତା'ର ଘାଆକୁ ଚାଟୁଥିଲେ। ୨୨ପରେ
ଲାଜାର ମରଗଲା। ସ୍ୱର୍ଗଦୂତମାନେ ତାହାକୁ ନେଇଯାଇ
ଅବ୍ରହାମଙ୍କ କୋଳରେ ରଖିଲେ। ଧନୀ ଲୋକ ଜଣକ
ମଧ୍ୟ ମରଗଲା ଓ ତାହାକୁ କବର ଦଆଗଲା। ୨୩ତାହାକୁ
ନରକକୁ ପଠାଇ ଦଆଗଲା। ସେଠାରେ ସେ ବହୁତ
ଯନ୍ତ୍ରଣା ଭୋଗ କଲା। ଧନୀଲୋକ ଜଣକ ଉପରକୁ
ଅନାଇଲା ଓ ଲାଜାରକୁ କୋଳରେ ଧରଥିବା ଅବ୍ରହାମଙ୍କୁ
ବହୁତ ଦୂରରେ ଦେଖିଲା। ୨୪ସେ ଡାକଲା, 'ପିତା ଅବ୍ରହାମ,
ମୋତେ ଦୟା କର। ମୋ ପାଖକୁ ଲାଜାରକୁ ପଠାଅ।
ସେ ତା' ଆଙ୍ଗୁଳ ଟିପକୁ ପାଣିରେ ବୁଡେଇ ମୋ ଜିଭରେ
ଟୋପାଏ ଟୋପାଏ ପାଣି ଦେଉ। ମୁଁ ଏହ ନଆଁରେ ବହୁତ
ଯନ୍ତ୍ରଣା ଭୋଗ କରୁଛ।' ୨୫କନ୍ତୁ ଅବ୍ରାହାମ କହଲେ,
'ପୁଅ, ତୁ ଯେତେବେଳେ ବଞ୍ଚିଥିଲୁ, ସେତେବେଳର କଥା
ଟିକିଏ ମନେ ପକା। ତୁ ଜୀବନରେ ସମସ୍ତ ବଷୟ
ପାଇଛୁ। କନ୍ତୁ ଲାଜାର ପାଇଁ ସମସ୍ତ ଖରାପ ଜିନଷ
ଘଟିଛି। ଏବେ ସେ ଆରାମରେ ଅଛ, ଓ ତୁ ଯନ୍ତ୍ରଣା
ଭୋଗୁଛୁ। ୨୬ତା' ଛଡା ତୋର ଓ ଆମ୍ଭ ମଝିରେ ଗୋଟିଏ
ବଡ ଖାତ ଅଛ। ତୋତେ ସାହାଯ୍ୟ କରବା ପାଇଁ ସେହ
ଖାତକୁ କେହ ପାର ହୋଇ ଯାଇ ପାରବେନାହିଁ ଏବଂ
ସେହ ସ୍ଥାନ ଛାଡ କେହ ଏଠାକୁ ଆସି ପାରବେ ନାହିଁ।'
୨୭ଧନୀ ଲୋକ ଜଣକ କହଲେ, 'ତେବେ ପିତା, ଦୟାକର
ଲାଜାରକୁ ପୃଥିବୀରେ ଥିବା ମୋର ବାପାଙ୍କ ଘରକୁ
ପଠାଅ। ୨୮ମୋର ପାଞ୍ଚଜଣ ଭାଇ ଅଛନ୍ତ। ଲାଜାର ମୋର
ଭାଇମାନଙ୍କୁ ସତର୍କ କରାଇ ଦେବ। ତା'ହେଲେ ସେମାନେ
ଏ ଯନ୍ତ୍ରଣା ଭୋଗ କରବା ସ୍ଥାନକୁ ଆସିବେନାହିଁ।' ୨୯କନ୍ତୁ
ଅବ୍ରହାମ କହଲେ, 'ସେମାନଙ୍କ ପାଖରେ ମୋଶାଙ୍କ ନୟିମ
ଓ ଭବଷ୍ୟଦ୍‌ବକ୍ତାମାନଙ୍କ ଲେଖା ସବୁ ପଢ଼ିବା ପାଇଁ
ରହଛ। ସେମାନେ ସେଥିରୁ ଶିକ୍ଷା ଲାଭ କରନ୍ତୁ।'
୩୦ଧନୀଲୋକଟି କହଲା, 'ନା, ପିତା ଅବ୍ରହାମ! ଯଦ ମର
ଯାଇଥିବା ଲୋକମାନଙ୍କ ଭିତରୁ କେହ ଜଣେ ତାହାଙ୍କ
ପାଖକୁ ଯାଏ, ତେବେ ସେମାନେ ବଶ୍ୱାସ କରବେ, ଓ

ସେମାନଙ୍କର ହୃଦୟ ଓ ଜୀବନକୁ ପରିବର୍ତ୍ତନ କରିବେ।’
୩୧କିନ୍ତୁ ଅବ୍ରହାମ ତାହାକୁ କହିଲେ, ‘ନା, ଯଦି ତୁମ୍ଭ
ଭାଇମାନେ ମୋଶା ଓ ଭବିଷ୍ୟଦ୍‌ବକ୍ତାଙ୍କ କଥା ଶୁଣିବେନାହିଁ,
ତେବେ ସେମାନେ ମୃତ୍ୟୁରୁ ଫେରି ଆସି ଥିବା କୌଣସି
ଲୋକଙ୍କ କଥା ମଧ୍ୟ ଶୁଣିବେ ନାହିଁ।’”

୧୭ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ କହିଲେ, “ନିଶ୍ଚିତ
ଭାବରେ ଏଭଳି ଘଟଣା ଘଟିବ, ଯେଉଁ କାରଣରୁ
ଲୋକେ ପାପ କରିବେ। ମାତ୍ର ଯେଉଁ ଲୋକ ଦ୍ୱାରା
ଏଭଳି ଘଟଣାମାନ ଘଟିବ, ସେହି ଲୋକ ପାଇଁ ଏହା
ବହୁତ ଖରାପ ହେବ। ୨ଯେଉଁଲୋକ ଏଭଳି ଦୁର୍ବଳ
ମାନଙ୍କ ମଧ୍ୟରୁ ଜଣକୁ ହେଲେ ପାପ କରିବା ପାଇଁ
ପ୍ରବର୍ତ୍ତାଏ ତାହା ପାଇଁ ଏହା ବହୁତ ଖରାପ ହେବ।
ବେକରେ ପଥର ବାନ୍ଧି ସମୁଦ୍ରରେ ବୁଡି ମରିବା ତା’
ପକ୍ଷରେ ଭଲ ହେବ। ୩ତେଣୁ ସାବଧାନ ରୁହ। ଯଦି
ତୁମ୍ଭର ଭାଇ ପାପ କରେ, ତେବେ ତାକୁ କୁହ ଯେ ଭୁଲ
କରୁଛି। ସେ ଯଦି ଦୁଃଖ ପ୍ରକାଶ କରି ଆଉ ପାପ କରେ
ନାହିଁ ତେବେ ତାକୁ କ୍ଷମା ଦିଅ। ୪ଯଦି ତୁମ୍ଭର ଭାଇ ଦିନ
ଭିତରେ ତୁମ୍ଭ ପ୍ରତି ସାତଥର ଅନ୍ୟାୟ କରେ, ଓ ପ୍ରତିଥର
ଆସି କହେ ଯେ, ସେ ଏଥିପାଇଁ ଦୁଃଖିତ, ତେବେ ତାକୁ
କ୍ଷମା କରି ଦିଅ।”

### ତୁମ୍ଭର ବିଶ୍ୱାସ କେତେ ଦୃଢ଼

୫ପ୍ରେରିତମାନେ ପ୍ରଭୁଙ୍କୁ କହିଲେ, “ଆମ୍ଭକୁ ଅଧିକ
ବିଶ୍ୱାସ ପ୍ରଦାନ କର।”
୬ପ୍ରଭୁ କହିଲେ, “ଯଦି ତୁମ୍ଭମାନଙ୍କର ବିଶ୍ୱାସ ଗୋଟିଏ
ସୋରିଷ ଦାନା ପରିମାଣର ହୋଇଥାଏ, ତେବେ ତୁମ୍ଭେମାନେ
ଏହି ତୁତ ଗଛକୁ କହିପାରିବ, ନିଜକୁ ଉପାଡିନେଇ
ସମୁଦ୍ରରେ ରୋପଣ କର, ତେବେ ଗଛଟି ତୁମ୍ଭମାନଙ୍କ
କଥା ମାନିବ।

### ଉତ୍ତମ ସେବକ ହୁଅ

୭“ମନେକର ତୁମ୍ଭମାନଙ୍କ ଭିତରୁ ଜଣକର ଚାକରଟିଏ
ଅଛି। ସେହି ଚାକର ତୁମ୍ଭ ବିଲରେ କାମ କରିଆସେ।
ସେ ତୁମ୍ଭ ବିଲରେ ହଳ କରିଆସୁଛି କିମ୍ବା ମେଣ୍ଢାଙ୍କ ଯତ୍ନ
ନେଇ ଆସେ। ସେ କାମରୁ ଫେରିବା ପରେ ତୁମ୍ଭେ ତାକୁ
କ’ଣ କହିବ? ତୁମ୍ଭେ କ’ଣ କହିବ ଯେ, ‘ଭିତରକୁ ଆସ
ଓ ଖାଇବକୁ ବସ?’ ୮ନା, ତୁମ୍ଭେ ତୁମ୍ଭର ଚାକରକୁ
କହିବ, ‘ମୋ ପାଇଁ କିଛି ଖାଇବାକୁ ପ୍ରସ୍ତୁତ କର। ମୋ
ଖିଆପିଆ ସରିଲେ ତୁମ୍ଭେମାନେ ଖାଇବ ଓ ପିଇବ।’
୯ଚାକର ବିଶେଷ ଧନ୍ୟବାଦ ବି ପାଇବା କଥା ନୁହେଁ।
କାରଣ ମାଲିକ ଯାହା କରିବାକୁ କହନ୍ତି, ସେ କେବଳ
ତାହାହିଁ କରେ। ୧୦ତୁମ୍ଭମାନଙ୍କ କ୍ଷେତ୍ରରେ ସେହି ଏକା
କଥା ହେବ। ତୁମ୍ଭମାନଙ୍କୁ ଦିଆଯାଇଥିବା କାମତକ କରି
ଦେବା ପରେ ତୁମ୍ଭମାନଙ୍କର କହିବା ଉଚିତ ଯେ ‘ଆମ୍ଭେମାନେ
କୌଣସି ବିଶେଷ ଧନ୍ୟବାଦ ପାଇବାକୁ ଯୋଗ୍ୟ ନୋହୁଁ।
କାରଣ ଆମ୍ଭେ ଅଯୋଗ୍ୟ ଗୃହକର ଓ ଆମ୍ଭର ଯାହା କରିବା
ଉଚିତ, ଆମ୍ଭେ କେବଳ ତାହାହିଁ କରିଛୁ।’”

### କୃତଜ୍ଞ ରୁହ

୧୧ଯୀଶୁ ଯିରୂଶାଲମ ଯାତ୍ରା କରୁଥିଲେ। ସେ ଗାଲିଲୀରୁ
ଶମିରୋଣକୁ ଗଲେ। ୧୨ସେ ଗୋଟିଏ ଛୋଟ ନଗରକୁ
ଆସିଲେ। ସେଠାରେ ତାହାଙ୍କୁ ଦଶ ଜଣ ଲୋକ ଭେଟିଲେ।
ସେହି ସମସ୍ତଙ୍କର କୁଷ୍ଠ ରୋଗ ହୋଇଥିବାରୁ ସେମାନେ
କେହି ଯୀଶୁଙ୍କର ଅତି ପାଖକୁ ଆସି ପାରିଲେନାହିଁ।
୧୩କିନ୍ତୁ ସେମାନେ ଯୀଶୁଙ୍କୁ ପାଟି କରି ଡାକିଲେ, “ହେ
ପ୍ରଭୁ ଯୀଶୁ! ଦୟାକରି ଆମ୍ଭକୁ ସାହାଯ୍ୟ କର।”
୧୪ଯୀଶୁ ଲୋକମାନଙ୍କୁ ଦେଖି କହିଲେ, “ତୁମ୍ଭେମାନେ
ଯାଇ ନିଜ ଦେହକୁ ଯାଜକମାନଙ୍କୁ ଦେଖାଅ।”
ସେହି ଦଶ ଜଣ ଲୋକ ଯାଜକଙ୍କ ପାଖକୁ ଗଲାବେଳେ
ସୁସ୍ଥ ହୋଇଗଲେ। ୧୫ଜଣେ ଲୋକ ନିଜକୁ ସୁସ୍ଥ ହୋଇ
ଯାଇଥିବାର ଦେଖି ଯୀଶୁଙ୍କ ପାଖକୁ ଫେରି ଆସିଲା। ସେ
ବଡ ପାଟିକରି ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲା। ୧୬ସେ
ଯୀଶୁଙ୍କ ପାଦତଳେ ନଇଁପଡି ପ୍ରଣାମ କଲା ଓ ତାହାଙ୍କୁ
ଧନ୍ୟବାଦ ଦେଲା। (ଏହି ଲୋକଟି ଶମିରୋଣର ଅଧିବାସୀ
ଥିଲା। ସେ ଯିହୂଦୀ ନଥିଲା) ୧୭ଯୀଶୁ ଉତ୍ତର ଦେଲେ,
“ଦଶ ଜଣ ଲୋକ ସୁସ୍ଥ ହେଲେ; ତେବେ ଅନ୍ୟ ନଅ
ଜଣ କାହାଁନ୍ତି? ୧୮ସୁସ୍ଥ ହୋଇ ସାରିବା ପରେ ପୁଣି ଫେରି
ଆସି ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଇବା ପାଇଁ କ’ଣ ଏହି
ଶମିରୋଣୀୟ ଜଣକ କେବଳ ଥିଲା?” ୧୯ତାପରେ ଯୀଶୁ
ତାହାକୁ କହିଲେ, “ଠିଆ ହୁଅ। ତୁମ୍ଭ ଏବେ ଯାଅ। ତୁମ୍ଭର
ବିଶ୍ୱାସ କରି ଥିବା ହେତୁ ତୁମ୍ଭେ ଭଲ ହୋଇଗଲ।”

### ପରମେଶ୍ୱରଙ୍କ ରାଜ୍ୟ ତୁମ୍ଭ ନିଜ ଭିତରେ ଅଛି

୨୦କେତେକ ଫାରୂଶୀ ଯୀଶୁଙ୍କୁ ପଚାରିଲେ, “ପରମେଶ୍ୱରଙ୍କ
ରାଜ୍ୟ କେବେ ଆସିବ?”
ଯୀଶୁ ଉତ୍ତର ଦେଲେ, “ପରମେଶ୍ୱରଙ୍କ ରାଜ୍ୟ ଆସୁଛି।
କିନ୍ତୁ ଯେଉଁଭଳି ଭାବରେ ଆସିବ, ତାହାକୁ ତୁମ୍ଭେମାନେ
ଆଖିରେ ଦେଖି ପାରିବନାହିଁ। ୨୧ଲୋକମାନେ କହିବେନାହିଁ
ଯେ, ‘ହେଇ ଦେଖ, ପରମେଶ୍ୱରଙ୍କ ରାଜ୍ୟ ଏଠାରେ ଅଛି
କିମ୍ବା ସେଠାରେ ଅଛି। ନା, ପରମେଶ୍ୱରଙ୍କ ରାଜ୍ୟ ତୁମ୍ଭମାନଙ୍କ
ନିଜ ଭିତରେ ଅଛି।’”
୨୨ତାପରେ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ କହିଲେ,
“ଦିନ ଆସିବ, ଯେତେବେଳେ ତୁମ୍ଭେମାନେ ମନୁଷ୍ୟପୁତ୍ରଙ୍କ
ଦିନ ଗୁଡିକମାନଙ୍କ ଭିତରୁ ଦିନଟିଏ ଦେଖିବାକୁ ବହୁତ
ଇଚ୍ଛା କରିବ। କିନ୍ତୁ ତୁମ୍ଭେମାନେ ତାହା ଦେଖି ପାରିବନାହିଁ।
୨୩ଲୋକମାନେ ତୁମ୍ଭମାନଙ୍କୁ କହିବେ, ‘ଦେଖ ତାହା ସେଠାରେ!’
‘ଦେଖ, ତାହା ଏଠାରେ!’ କିନ୍ତୁ ତୁମ୍ଭେମାନେ ଯେଉଁଠି ଅଛ
ସେହିଠାରେ ରୁହ। ବାହାରକୁ ଯାଇ ଖୋଜନାହିଁ।

### ଯୀଶୁଙ୍କ ପୁନରାଗମନର ସମୟ

୨୪“ମନୁଷ୍ୟପୁତ୍ରଙ୍କର ଫେରି ଆସିବା ସମୟ ତୁମ୍ଭେମାନେ
ଜାଣି ପାରିବ। ଯେଉଁ ଦିନ ସେ ଫେରି ଆସିବେ, ସେ
ଆକାଶରେ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତର ପର୍ଯ୍ୟନ୍ତ ଉଜ୍ଜ୍ୱଳ
ବିଜୁଳି ଝଲକିଲା ଭଳି ଦେଖାଯିବେ। ୨୫କିନ୍ତୁ ମନୁଷ୍ୟପୁତ୍ର
ପ୍ରଥମେ ଅନେକ ଯନ୍ତ୍ରଣା ଭୋଗ କରିବେ ଏବଂ ବର୍ତ୍ତମାନର

ଲୋକମାନଙ୍କ ଦ୍ୱାରା ହତ ହେବେ। [୨୬]ନୋହ ବାସ
କରୁଥିବା ସମୟରେ ଯାହା ଘଟିଥିଲା, ମନୁଷ୍ୟ ପୁତ୍ର
ଫେରିଆସିବା ସମୟରେ ସେହି ଏକା କଥା ଘଟିବ।
[୨୭]ନୋହଙ୍କ ସମୟରେ, ଏପରିକି ନୋହ ଜାହାଜରେ ବସିବା
ସମୟ ପର୍ଯ୍ୟନ୍ତ ଲୋକମାନେ ଖିଆପିଆ କରୁଥିଲେ ଓ
ବିବାହ କରୁଥିଲେ। ତା'ପରେ ବନ୍ୟା ମାଡ଼ି ଆସିଲା ଓ
ସେ ସମସ୍ତଙ୍କୁ ମାରି ଦେଲା। [୨୮]ପରମେଶ୍ୱର ଲୋଟଙ୍କ
ସମୟରେ ସଦୋମ ନଗର ଧ୍ୱଂସ କଲାବେଳେ ଯାହା
ଘଟିଥିଲା, ଏବେ ମଧ୍ୟ ସେହି କଥା ଘଟିବ। ସେହି
ଲୋକମାନେ ସେତେବେଳେ ଖିଆପିଆ, କିଣାବିକା କରୁଥିଲେ।
ଗଛ ଲଗାଉଥିଲେ ଓ ନିଜ ପାଇଁ ଘର ତୋଳୁ ଥିଲେ।
[୨୯]ଲୋଟ ନଗର ଛାଡ଼ି ଚାଲିଯିବା ସମୟ ପର୍ଯ୍ୟନ୍ତ ମଧ୍ୟ
ଲୋକମାନେ ଏସବୁ କାମ କରୁଥିଲେ। ତା'ପରେ ସେଠାରେ
ଆକାଶରୁ ଅଗ୍ନି ଓ ଗନ୍ଧକ ବର୍ଷା ହେଲା ଓ ତାହା
ସମସ୍ତଙ୍କୁ ମାରିଦେଲା। [୩୦]ଯେତେବେଳେ ମନୁଷ୍ୟପୁତ୍ର ଫେରି
ଆସିବେ, ସେତେବେଳେ ଠିକ୍ ସେହିଭଳି ଘଟଣା ଘଟିବ।

[୩୧]"ସେ ଦିନ ଯଦି କୌଣସି ଲୋକ ତା'ର ଘରର
ଛାତ ଉପରେ ଥିବ, ଭିତରକୁ ଯାଇ ଜିନିଷପତ୍ର ଆଣିବାକୁ
ତାକୁ ସମୟ ହେବନାହିଁ। ଯଦି କୌଣସି ଲୋକ ବିଲରେ
ଥିବ, ତେବେ ସେ ଘରକୁ ଫେରି ପାରିବନାହିଁ। [୩୨]ଲୋଟଙ୍କ
ସ୍ତ୍ରୀଙ୍କର କ'ଣ ହୋଇଥିଲା, ମନେ ପକାଅ। [୩୩]ଯେଉଁଲୋକ
ନିଜ ଜୀବନ ରକ୍ଷା କରିବାକୁ ଚେଷ୍ଟା କରିବ, ସେ ତାହା
ହରେଇ ବସିବ। କିନ୍ତୁ ଯେଉଁ ଲୋକ ତା ଜୀବନ
ପରିତ୍ୟାଗ କରିବ, ସେ ତାହା ରକ୍ଷା କରିବ। [୩୪]ମୁଁ ଫେରି
ଆସିବା ସମୟରେ ଗୋଟିଏ କୋଠରୀରେ ହୁଏତ ସେହି
ରାତିରେ ଦୁଇଜଣ ଲୋକ ଶୋଇଥାଇ ପାରନ୍ତି, କିନ୍ତୁ
ସେମାନଙ୍କ ମଧ୍ୟରୁ ଜଣକୁ ନିଆ ହେବ ଓ ଅନ୍ୟ ଜଣକୁ
ଛାଡ଼ି ଦିଆଯିବ। [୩୫]ହୁଏତ ଦୁଇଜଣ ସ୍ତ୍ରୀଲୋକ ଏକତ୍ର
ଚକିରେ ଶସ୍ୟ ଦାନା ପେଶୁ ଥାଇ ପାରନ୍ତି, କିନ୍ତୁ
ସେମାନଙ୍କ ମଧ୍ୟରୁ ଜଣକୁ ନେଇ ନିଆଯିବ ଓ ଅନ୍ୟ
ଜଣକୁ ଛାଡ଼ି ଦିଆଯିବ।" [୩୬]*

[୩୭]ଶିଷ୍ୟମାନେ ଯୀଶୁଙ୍କୁ ପଚାରିଲେ, "ଏ ଘଟଣା କେଉଁଠାରେ
ଘଟିବ ପ୍ରଭୁ?"

ଯୀଶୁ ଉତ୍ତର ଦେଲେ, "ଶାଗୁଣାମାନେ ଉଡ଼ିବା ଦ୍ୱାରା
ଲୋକମାନେ ଜାଣିପାରନ୍ତି କୌଣସି ଏକ ଶବ ପଡ଼ିଛି।"

## ପରମେଶ୍ୱର ତାହାଙ୍କ ଲୋକଙ୍କୁ ଉତ୍ତର ଦେବେ

୧୮ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ
ଯେ, ସେମାନେ ସଦାବେଳେ ପ୍ରାର୍ଥନା କରିବା
ଉଚିତ। ଏବଂ କେବେହେଲେ ଭରସା ହରେଇବା ଉଚିତ
ନୁହେଁ। ଯୀଶୁ ସେମାନଙ୍କୁ ଉପଦେଶ ଦେବାପାଇଁ ଏହି
ଦୃଷ୍ଟାନ୍ତ କହିଲେ: [୨]"ଥରେ ଗୋଟିଏ ନଗରରେ ଜଣେ
ବିଚାରପତି ଥିଲେ। ପରମେଶ୍ୱରଙ୍କୁ ତାହାଙ୍କର ଡର ନଥିଲା
କି ଲୋକମାନେ ତାହାଙ୍କ ବିଷୟରେ କ'ଣ ଭାବୁଛନ୍ତି,
ସେଥିପ୍ରତି ଖାତିର କରୁ ନଥିଲେ। [୩]ସେହି ନଗରରେ
ଗୋଟିଏ ସ୍ତ୍ରୀଲୋକ ଥିଲା। ତା'ର ସ୍ୱାମୀ ମରି ଯାଇଥିଲା।
ସେ ସ୍ତ୍ରୀଲୋକଟି ଏହି ବିଚାରପତିଙ୍କ ନିକଟକୁ ବହୁତ ଥର
ଆସୁଥିଲା। ସେ ବିଚାରପତିଙ୍କୁ କହୁଥିଲା, 'ଗୋଟିଏ ଲୋକ
ମୋ ପ୍ରତି ଅନ୍ୟାୟ କରୁଛି। ତୁମ୍ଭେ ମୋତେ ମୋ ନ୍ୟାୟ
ଅଧିକାର ଦିଅ।' [୪]କିନ୍ତୁ ବିଚାରପତି ସ୍ତ୍ରୀଲୋକଟିକୁ ସାହାଯ୍ୟ
କରିବାକୁ ଇଚ୍ଛା କରିନଥିଲେ। କେତେ ସମୟ ପରେ
ବିଚାରପତି ଜଣକ ମନେମନେ ଭାବିଲେ, 'ମୁଁ ପରମେଶ୍ୱରଙ୍କୁ
ଡରୁନାହିଁ କି ଲୋକମାନେ ମୋ ବିଷୟରେ କ'ଣ ଭାବୁଛନ୍ତି,
ସେଥିପ୍ରତି ଖାତିର ବି କରୁନାହିଁ। [୫]କିନ୍ତୁ ଏହି ସ୍ତ୍ରୀଲୋକଟି
ମୋତେ ସବୁବେଳେ ବ୍ୟସ୍ତ କରି ପକାଉଛି। ମୁଁ ତାକୁ
ନ୍ୟାୟଅଧିକାର ଦେଇଦେଲେ ସେ ମୋ ପିଛା ଛାଡ଼ିଦେବ।
ନଚେତ ସେ ମୋତେ ହଇରାଣ କରୁଥିବ।'"

[୬]ପ୍ରଭୁ! କହିଲେ, "ଶୁଣ, ସେହି ଦୁଷ୍ଟବିଚାରପତି ଜଣକ
ଯାହା କହିଲେ, ସେ କଥାର ଗୋଟିଏ ଅର୍ଥ ଅଛି।
[୭]ପରମେଶ୍ୱରଙ୍କ ଦ୍ୱାରା ମନୋନୀତ ଲୋକମାନେ ଦିନରାତି
ତାହାଙ୍କୁ ପାଟି କରି ଡାକୁଥାନ୍ତି। ଯାହା ଠିକ୍, ତାହା
ପରମେଶ୍ୱର ତାହାଙ୍କ ଲୋକଙ୍କୁ ସଦାବେଳେ ଦେଇଥାନ୍ତି।
ନିଜ ଲୋକଙ୍କୁ ଉତ୍ତର ଦେବାରେ ପରମେଶ୍ୱର ଆଦୌ
ବିଳମ୍ବ କରିବେ ନାହିଁ। [୮]ମୁଁ ତୁମ୍ଭକୁ କହୁଛି। ଅତି ଶୀଘ୍ର
ପରମେଶ୍ୱର ତାହାଙ୍କ ଲୋକଙ୍କୁ ସାହାଯ୍ୟ କରିବେ। କିନ୍ତୁ
ମନୁଷ୍ୟପୁତ୍ର ପୁଣିଥରେ ଫେରି ଆସିବା ପରେ ସେ ଏ
ପୃଥିବୀରେ ତାହାଙ୍କର ବିଶ୍ୱାସୀମାନଙ୍କୁ ପାଇ ପାଇବେ
କି?"

## ପରମେଶ୍ୱରଙ୍କ ପ୍ରତି ବିଶ୍ୱସ୍ତ ରହିବା ଉଚିତ

[୯]କେତେକ ଲୋକ ଭାବୁଥିଲେ ଯେ ସେମାନେ ବହୁତ
ଭଲ ଅଟନ୍ତି। ସେମାନେ ନିଜେ ଅନ୍ୟମାନଙ୍କ ଅପେକ୍ଷା
ବହୁତ ଭଲ ହୋଇଥିବା ଭଳି ବ୍ୟବହାର କରୁଥିଲେ।
ଯୀଶୁ ସେମାନଙ୍କୁ ଉପଦେଶ ଦେବାପାଇଁ ଏହି ଦୃଷ୍ଟାନ୍ତ
କହିଲେ: [୧୦]"ଜଣେ ଫାରୂଶୀ ଓ ଜଣେ କରଆଦାୟକାରୀ
ଥିଲେ। ଦିନେ ସେହି ଦୁଇଜଣ ପ୍ରାର୍ଥନା କରିବାକୁ ମନ୍ଦିରକୁ
ଗଲେ। [୧୧]ଫାରୂଶୀଜଣକ କରଆଦାୟକାରୀଙ୍କଠାରୁ ଦୂରରେ
ଅଲଗା ଠିଆ ହୋଇଥିଲେ। ଫାରୂଶୀ ଜଣକ ପ୍ରାର୍ଥନା
କଲାବେଳେ କହିଲେ, 'ହେ ପରମେଶ୍ୱର, ମୁଁ ଅନ୍ୟ
ଲୋକଙ୍କ ଭଳି ଖରାପ ହୋଇନଥିବାରୁ ତୁମ୍ଭକୁ କୃତଜ୍ଞତା
ଜଣାଉଛି। ମୁଁ ଚୋରି, ଠକାମି, ବ୍ୟଭିଚାର ପାପ କରୁଥିବା
ଲୋକମାନଙ୍କ ଭଳି ନୁହେଁ। ମୁଁ ଏହି କରଆଦାୟକାରୀ
ଅପେକ୍ଷା ଭଲ ହୋଇଥିବାରୁ ତୁମ୍ଭ ପାଖରେ କୃତଜ୍ଞତା
ଜଣାଉଛି। [୧୨]ମୁଁ ଜଣେ ଭଲ ଲୋକ। ମୁଁ ସପ୍ତାହରେ
ଦୁଇ ଥର ଉପବାସ କରେ। ମୁଁ ମୋର ସମସ୍ତ ରୋଜଗାରର
ଦଶ ଭାଗରୁ ଏକ ଭାଗ ଦାନ କରେ।'

[୧୩]କରଆଦାୟକାରୀ ମଧ୍ୟ ଅଲଗା ଏକାକୀ ଠିଆ
ହୋଇଥିଲେ। କିନ୍ତୁ ପ୍ରାର୍ଥନା କଲାବେଳେ ସେ ସ୍ୱର୍ଗ ଆଡ଼କୁ
ମଧ୍ୟ ଚାହିଁଲେ ନାହିଁ। କରଆଦାୟକାରୀ ପରମେଶ୍ୱରଙ୍କ

---

**ପଦସଂଖ୍ୟା ୩୬** କେତେକ ଗ୍ରୀକ୍-ପ୍ରତୀକରେ ଲୂକଙ୍କର ଏହି ଛତିଶତମ ପଦ ଅଛି: "ହୁଏତ ଗୋଟିଏ ଜମିରେ ଦୁଇଜଣ ପୁରୁଷ କାମ କରିପାରୁଥାଆନ୍ତି। କିନ୍ତୁ ସେମାନଙ୍କ ମଧ୍ୟରୁ ଜଣକୁ ନିଆଯିବ ଓ ଅନ୍ୟ ଜଣକୁ ଛାଡ଼ି ଦିଆଯିବ।"

ପାଖରେ ନଜକୁ ନମ୍ରକର ପ୍ରାର୍ଥନା କଲେ, “ହେ ପରମେଶ୍ୱର,
ମୋ ଉପରେ ଦୟା କର। ମୁଁ ଜଣେ ପାପୀ।” ୧୪ମୁଁ
ତୁମ୍ଭମାନଙ୍କୁ କହୁଛ, ‘ଏହ ଲୋକଟି ଯେତେବେଳେ ତା’ର
ପ୍ରାର୍ଥନା ଶେଷ କର ତା’ ଘରକୁ ଫେରଗଲା, ସେ
ପରମେଶ୍ୱରଙ୍କ ଦୃଷ୍ଟିରେ ଧାର୍ମିକ ପରଗଣିତ ହେଲା। କନ୍ତୁ
ଯେଉଁ ଫାରୂଶୀ ଅନୁଭବ କଲା ଯେ ସେ ଅନ୍ୟଲୋକମାନଙ୍କ
ଅପେକ୍ଷା ଭଲ ଲୋକ, ସେ ପରମେଶ୍ୱରଙ୍କ ପ୍ରତି ବଶ୍ୱସ୍ତ
ନଥିଲା। ଯେଉଁ ଲୋକ ନଜକୁ ନଜେ ମହାନ ବୋଲଭାବେ,
ତାକୁ ହୀନ କର ଦଆଯିବ, କନ୍ତୁ ଯେଉଁ ଲୋକ ନଜକୁ
ହୀନ କର ଦଏ ତାକୁ ମହାନ କରା ଯିବ।’”

## ପରମେଶ୍ୱରଙ୍କ ରାଜ୍ୟରେ କେଉଁମାନେ ପ୍ରବେଶ କରବେ

୧୫କେତେକ ଲୋକ ସେମାନଙ୍କର ଛୋଟ ଛୋଟ
ପିଲାମାନଙ୍କୁ ଯୀଶୁଙ୍କ ପାଖକୁ ଆଣିଲେ ଯେପର ଯୀଶୁ
ସେହ ପିଲାମାନଙ୍କୁ କେବଳ ଛୁଇଁବେ। ଯୀଶୁଙ୍କ ଶିଷ୍ୟମାନେ
ଏହା ଦେଖି ଲୋକମାନଙ୍କୁ ଏହା ନ କରବାକୁ କହଲେ।
୧୬କନ୍ତୁ ଯୀଶୁ ସେହ ଛୋଟ ପିଲାମାନଙ୍କୁ ପାଖକୁ ଡାକଲେ।
ସେ ତାହାଙ୍କ ଶିଷ୍ୟମାନଙ୍କୁ କହଲେ, “ଛୋଟ ପିଲାମାନେ
ମୋ ପାଖକୁ ଆସନ୍ତୁ। ସେମାନଙ୍କୁ ଅଟକାଅ ନାହିଁ। କାରଣ
ଯେଉଁ ଲୋକମାନେ ଏହ ଛୋଟ ପିଲାମାନଙ୍କ ଭଳ
ହୋଇଥିବେ, କେବଳ ସେହ ମାନେ ପରମେଶ୍ୱରଙ୍କ ରାଜ୍ୟର
ଅଧିକାରୀ ହେବେ। ୧୭ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛ।
ଗୋଟିଏ ଛୋଟ ପିଲା କଛ ଗ୍ରହଣ କଲାଭଳ ତୁମ୍ଭେମାନେ
ପରମେଶ୍ୱରଙ୍କ ରାଜ୍ୟ ଗ୍ରହଣ ନ କଲେ ତା’ମଧ୍ୟରେ
ପ୍ରବେଶ କର ପାରବନାହିଁ।”

## ଜଣେ ଧନୀଲୋକ ଯୀଶୁଙ୍କୁ ଗୋଟିଏ ପ୍ରଶ୍ନ ପଚାରଲେ

୧୮ଜଣେ ଯିହୂଦୀ ନେତା ଯୀଶୁଙ୍କୁ ପଚାରଲେ, “ହେ
ଉତ୍ତମ ଗୁରୁ! ଅନନ୍ତଜୀବନ ଲାଭ କରବା ପାଇଁ ମୁଁ କ’ଣ
କରବା ଉଚତ?”

୧୯ଯୀଶୁ ତାହାଙ୍କୁ କହଲେ, “ତୁମ୍ଭେ ମୋତେ ଉତ୍ତମ
ବୋଲ କାହିଁକ କହଲ? କେବଳ ପରମେଶ୍ୱରହିଁ ଉତ୍ତମ।
୨୦ମୁଁ କନ୍ତୁ ତୁମ୍ଭ ପ୍ରଶ୍ନର ଉତ୍ତର ଦେବ। ତୁମ୍ଭେ ପରମେଶ୍ୱରଙ୍କ
ଆଜ୍ଞାମାନ ଜାଣିଛ: ‘ତୁମ୍ଭେ ବ୍ୟଭିଚାର କରବ ନାହିଁ, ତୁମ୍ଭେ
କାହାରକ ହତ୍ୟା କରବ ନାହିଁ, କୌଣସି ଜିନଷ ଚୋର
କରବ ନାହିଁ, ଅନ୍ୟ ଲୋକଙ୍କ ବଷୟରେ କେବେହେଁ ମିଛ
କହବ ନାହିଁ, ତୁମ୍ଭେ ତୁମ୍ଭର ବାପାମାଆଙ୍କୁ ନଶ୍ଚୟ ସମ୍ମାନ
ଦେବ....’*”

୨୧କନ୍ତୁ ଯିହୂଦୀ ନେତା ଜଣକ କହଲେ, “ମୁଁ ମୋ
ପିଲା ଦନୁ ଏସବୁ ଆଜ୍ଞା ମାନଆସିଛ।”

୨୨ଏକଥା ଶୁଣି ଯୀଶୁ ସେହ ନେତାଙ୍କୁ କହଲେ,
“ତଥାପି ଏ ପର୍ଯ୍ୟନ୍ତ ଆଉ ଗୋଟିଏ କଥା ତୁମ୍ଭର
କରବାକୁ ବାକଅଛ। ତୁମ୍ଭର ଯାହା ଅଛ ସବୁ ବକ ଦେଇ
ଗରବଙ୍କୁ ବାଣ୍ଟିଦଅ। ତୁମ୍ଭକୁ ସ୍ୱର୍ଗରେ ପୁରସ୍କାର ମିଳବ।
ତା’ପରେ ତୁମ୍ଭେ ଆସ ଓ ମୋର ଅନୁସରଣ କର।”
୨୩ନେତା ଜଣକ ଏହା ଶୁଣି ବହୁତ ମନ ଦୁଃଖ କଲେ।
ସେ ବହୁତ ଧନୀ ଥିଲେ ଓ ନଜ ଧନତକ ରଖିବାକୁ
ଚାହୁଁଥିଲେ।

୨୪ସେହ ଯିହୁଦୀ ନେତାଙ୍କୁ ଦୁଃଖିତ ହେବାର ଦେଖି
ଯୀଶୁ କହଲେ, “ପରମେଶ୍ୱରଙ୍କ ରାଜ୍ୟରେ ଧନୀ ଲୋକମାନେ
ପ୍ରବେଶ କରବା ବହୁତ କଠିନ। ୨୫ଜଣେ ଧନୀଲୋକ
ପକ୍ଷରେ ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରବା ଠାରୁ,
ଗୋଟିଏ ଛୁଞ୍ଚି କଣାଦେଇ ଓଟଟିଏ ଗଳଯିବା ଅଧିକ
ସହଜ।”

## କେଉଁମାନେ ପରତ୍ରାଣ ପାଇ ପାରବେ

୨୬ଲୋକମାନେ ଏକଥା ଶୁଣିବା ପରେ କହଲେ, “ତେବେ
କେଉଁମାନେ ପରତ୍ରାଣ ପାଇ ପାରବେ?”

୨୭ଯୀଶୁ କହଲେ, “ଯେଉଁ କାମ ମନୁଷ୍ୟ ପକ୍ଷରେ
ସମ୍ଭବ ନହେଁ, ତାହା ପରମେଶ୍ୱର କର ପାରବେ।”

୨୮ପିତର କହଲେ, “ଦେଖନ୍ତୁ, ଆମ୍ଭେ ଆମ୍ଭର ସର୍ବସ୍ୱ
ଛାଡଦେଇ ଆପଣଙ୍କ ଅନୁସରଣ କରଛୁ।”

୨୯ଯୀଶୁ କହଲେ, “ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛ।
ଯେଉଁ ଲୋକ ପରମେଶ୍ୱରଙ୍କ ରାଜ୍ୟ ପାଇଁ ତାର ଘର,
ପତ୍ନୀ, ଭାଇ, ବାପାମାଆ କମ୍ବା ପିଲାମାନଙ୍କୁ ଛାଡଥିବ,
୩୦ସେ ଛାଡ ଥିବା ବସ୍ତୁ ଅପେକ୍ଷା ଅଧିକ ପାଇବ। ସେ
ଲୋକ ଏହ ଜୀବନକାଳ ମଧ୍ୟରେ ତ ଅନେକ ଗୁଣ
ଅଧିକ ପାଇବ, ଏବଂ ମରଗଲା ପରେ ମଧ୍ୟ ସେ
ପରମେଶ୍ୱରଙ୍କ ସହତ ଚରକାଳ ବାସ କରବ।

## ଯୀଶୁ ମୃତ୍ୟୁରୁ ପୁଣି ଜୀବତ ହେବେ

୩୧ତା’ପରେ ଯୀଶୁ ଅଲଗା ଭାବରେ ବାରଜଣ ଶିଷ୍ୟଙ୍କୁ
କହଲେ, “ଶୁଣ, ଆମ୍ଭେମାନେ ଯିରୂଶାଲମକୁ ଯାଉଛୁ।
ପରମେଶ୍ୱର ଭବଷ୍ୟଦ୍‌ବକ୍ତାମାନଙ୍କୁ ମନୁଷ୍ୟପୁତ୍ରଙ୍କ ବଷୟରେ
ଯାହା ସବୁ ଲେଖିବାକୁ କହଥିଲେ,ସେ ସବୁ ଘଟିବ।
୩୨ତାହାଙ୍କ ଲୋକମାନେ ତାହାଙ୍କୁ ବଧର୍ମୀମାନଙ୍କ ହାତରେ
ଦେଇଦେବେ। ତାହାଙ୍କୁ ଉପହାସ କରାଯିବ। ଲୋକେ
ତାହାଙ୍କୁ ଅପମାନ ଦେବେ ଓ ତାହାଙ୍କ ଉପରକୁ ଛେପ
ପକାଇବେ। ୩୩ସେମାନେ ତାହାଙ୍କୁ ଚାବୁକରେ ପିଟିବେ ଓ
ଶେଷରେ ମାରଦେବେ। କନ୍ତୁ ମୃତ୍ୟୁର ତୃତୀୟ ଦବସରେ
ସେ ପୁଣି ଜୀବତ ହୋଇ ଉଠିବେ।” ୩୪ପ୍ରେରତମାନେ
ଏକଥା ବୁଝିବାକୁ ଚେଷ୍ଟା କଲେ। ମାତ୍ର ସେମାନେ ବୁଝି
ପାରଲେନାହିଁ। ଏକଥାର ଅର୍ଥ ସେମାନଙ୍କ ପାଖରେ ଗୁପ୍ତ
ରହଲା।

## ଯୀଶୁ ଗୋଟିଏ ଅନ୍ଧକୁ ସୁସ୍ଥ କରଦେଲେ

୩୫ଯୀଶୁ ଯିରୀହୋ ନଗର ପାଖାପାଖି ହୋଇ ଆସିଲେ।
ସେତେବେଳେ ରାସ୍ତା କଡରେ ଗୋଟିଏ ଅନ୍ଧ ବସିଥିଲା।
ସେହ ଅନ୍ଧଟି ଭିକ ମାଗୁଥିଲା। ୩୬ସେ ରାସ୍ତାରେ ଯାଉଥିବା
ଲୋକମାନଙ୍କ କୋଳାହଳ ଶୁଣିପାର ପଚାରଲା, “ଘଟଣା
କ’ଣ?”

---

**‘ତୁମ୍ଭେ ବ୍ୟଭିଚାର ... ଦେବ’** ଯାତ୍ରାପୁସ୍ତକ ୨୦:୧୨-୧୬;
ଦ୍ୱିତୀୟ ବବରଣ ୫:୧୬-୨୦

୩୭ଲୋକମାନେ କହିଲେ, "ନାଜରତର ଯୀଶୁ ଏହି ବାଟ
ଦେଇ ଯାଉଛନ୍ତି।"
୩୮ଅନ୍ଧଟି ଉତ୍ତେଜିତ ହୋଇ ପଡ଼ିଲା, ଓ କହିଲା,
"ଦାଉଦଙ୍କ ପୁତ୍ର ଯୀଶୁ ଦୟାକରି ମୋତେ ସାହାଯ୍ୟ
କର।"
୩୯ଆଗରେ ଯାଉଥିବା ଲୋକମାନେ ଅନ୍ଧକୁ ଧମକ
ଦେଲେ। ସେମାନେ ଅନ୍ଧକୁ ଚୁପ୍ ରହିବାକୁ କହିଲେ।
କିନ୍ତୁ ସେ ଆହୁରି ଜୋର୍‌ରେ ପାଟି କରି କହିଲା, "ହେ
ଦାଉଦଙ୍କ ପୁତ୍ର; ଦୟାକରି ମୋତେ ସାହାଯ୍ୟ କରନ୍ତୁ।"
୪୦ଯୀଶୁ ସେଠାରେ ଅଟକି ଗଲେ, ସେ ଆଜ୍ଞା ଦେଲେ
"ତାହାକୁ ମୋ ପାଖକୁ ଆଣ।" ସେ ପାଖକୁ ଆସିବା
ପରେ ଯୀଶୁ ତାକୁ ପଚାରିଲେ, ୪୧"ମୁଁ ତୁମ୍ଭ ପାଇଁ କ'ଣ
କରିବି ବୋଲି ତୁମ୍ଭେ ଚାହୁଁଛ?"
ସେହି ଅନ୍ଧଟି କହିଲା, "ପ୍ରଭୁ, ମୁଁ ପୁଣି ଥରେ ଦେଖି
ପାରିବାକୁ ଚାହୁଁଛି।"
୪୨ଯୀଶୁ ତାହାକୁ କହିଲେ, "ତୁମ୍ଭେ ଦୃଷ୍ଟି ଶକ୍ତି ଲାଭ
କର। ତୁମ୍ଭର ବିଶ୍ୱାସ ହିଁ ତୁମ୍ଭକୁ ଉଦ୍ଧାର କଲା।"
୪୩ତତ୍ ସଙ୍ଗେ ସଙ୍ଗେ ଅନ୍ଧଟି ଦୃଷ୍ଟି ଶକ୍ତି ଫେରିପାଇଲା।
ସେ ପରମେଶ୍ୱରଙ୍କୁ ପ୍ରଶଂସା କରି ଯୀଶୁଙ୍କୁ ଅନୁସରଣ
କଲା। ଏହି ଘଟଣା ଦେଖି ଥିବା ଲୋକେ ପରମେଶ୍ୱରଙ୍କ
ସ୍ତୁତିଗାନ କଲେ।

## ଜକ୍କିୟ

୧୯ ଯୀଶୁ ଯିରୀହୋ ନଗର ଦେଇ ଯାଉଥିଲେ।
୨ଯିରୀହୋରେ ଜକ୍କିୟ ବୋଲି ଜଣେ ଲୋକ
ଥିଲେ। ସେ ଜଣେ ପ୍ରଧାନ କରଆଦାୟକାରୀ ଥିଲେ ଓ
ସେ ବହୁତ ଧନୀ ଥିଲେ। ୩ସେ ଯୀଶୁଙ୍କୁ ଦେଖିବାକୁ
ଚାହୁଁଥିଲେ। ଆହୁରି ମଧ୍ୟ ଅନେକ ଲୋକ ଯୀଶୁଙ୍କୁ
ଦେଖିବାକୁ ଚାହୁଁ ଥିଲେ। ଜକ୍କିୟ ଏତେ ବାଙ୍ଗରା ଥିଲେ
ଯେ, ଲୋକଙ୍କ ଭିତରେ ଥାଇ ଯୀଶୁଙ୍କୁ ଦେଖି ପାରିବା
ସମ୍ଭବ ନଥିଲା। ୪ତେଣୁ ଯେଉଁବାଟେ ଯୀଶୁ ଆସିବେ
ବୋଲି ସେ ଜାଣିଥିଲେ, ସେଭଳି ଗୋଟିଏ ସ୍ଥାନକୁ ସେ
ଦୌଡ଼ିଗଲେ। ଯୀଶୁଙ୍କୁ ଦେଖି ପାରିବା ପାଇଁ ସେ ଗୋଟିଏ
ଡିମ୍ବିରି ଗଛରେ ଚଢ଼ିଗଲେ। ୫ଯୀଶୁ ସେହି ସ୍ଥାନକୁ
ଆସିଲେ। ସେ ଉପରକୁ ଚାହିଁଲେ। ସେ ଜକ୍କିୟଙ୍କୁ ଗଛ
ଉପରେ ଦେଖିଲେ। ଯୀଶୁ ତାହାଙ୍କୁ କହିଲେ, "ଜକ୍କିୟ!
ଶୀଘ୍ର ତଳକୁ ଆସ; ମୁଁ ଆଜି ନିଶ୍ଚୟ ତୁମ୍ଭ ଘରେ
ରହିବି।"
୬ତା'ପରେ ଜକ୍କିୟ ଖୁବ୍ ଶୀଘ୍ର ତଳକୁ ଓହ୍ଲାଇ ଆସିଲେ।
ଅତ୍ୟନ୍ତ ଖୁସିରେ ସେ ଯୀଶୁଙ୍କୁ ନିଜ ଘରେ ସ୍ୱାଗତ
କଲେ। ୭ସମସ୍ତେ ଏକଥା ଦେଖିଲେ। ସେମାନେ ଅଭିଯୋଗ
କରିବାକୁ ଆରମ୍ଭ କଲେ, "ଦେଖ, କେଉଁ ଭଳି ଲୋକ
ସହିତ ଯୀଶୁ ରହୁଛନ୍ତି। ଜକ୍କିୟ ଗୋଟିଏ ପାପୀ।"
୮ଜକ୍କିୟ ପ୍ରଭୁଙ୍କୁ କହିଲେ, "ମୁଁ ଭଲ କାମ କରିବାକୁ
ଇଚ୍ଛା କରୁଛି। ମୁଁ ମୋ ଧନର ଅଧା ଗରିବଙ୍କୁ ବାଣ୍ଟି
ଦେବି। ମୁଁ ଯଦି କାହାରିକୁ ଠକିଥାଏ, ତେବେ ସେହି
ଲୋକକୁ ଚାରିଗୁଣ ଧନ ଫେରାଇ ଦେବି।"
୯ଯୀଶୁ କହିଲେ, "ଏ ଲୋକଟି ପ୍ରକୃତରେ ଜଣେ ଭଲ
ମଣିଷ। ସେ ଅବ୍ରହାମଙ୍କର ଉପଯୁକ୍ତ ସନ୍ତାନ। ତେଣୁ ଆଜି
ସେ ନିଜ ପାପରୁ ଉଦ୍ଧାର ପାଇଗଲେ। ୧୦ମନୁଷ୍ୟପୁତ୍ର ହଜି
ଯାଇଥିବା ଲୋକମାନଙ୍କୁ ଖୋଜିବାକୁ ଓ ସେମାନଙ୍କୁ ରକ୍ଷା
କରିବାକୁ ଆସିଛନ୍ତି।

## ପରମେଶ୍ୱର ଯାହା ଦିଅନ୍ତି ତାହା ଉପଯୁକ୍ତ ଭାବରେ ବ୍ୟବହାର କର

୧୧ଯୀଶୁ ଯିରୂଶାଲମର ପାଖାପାଖି ଆସିଗଲେ। କେତେକ
ଲୋକ ଭାବିଲେ ଯେ ପରମେଶ୍ୱରଙ୍କ ରାଜ୍ୟ ଶୀଘ୍ର ଆସିଯିବ।
୧୨ଲୋକମାନେ ଏହି କଥା ଭାବୁଥିବା ଯୀଶୁ ଜାଣି ପାରିଲେ।
ତେଣୁ ସେ ଲୋକମାନଙ୍କୁ ଏହି ଦୃଷ୍ଟାନ୍ତଟି କହିଲେ: "ଜଣେ
ଅତି ମାନ୍ୟଗଣ୍ୟ ବ୍ୟକ୍ତି ରାଜା ହେବା ପାଇଁ କୌଣସି ଏକ
ଦୂର ରାଜ୍ୟକୁ ଯିବାକୁ ପ୍ରସ୍ତୁତ ହେଉଥିଲେ। ତା'ପରେ ସେ
ଫେରିଆସି ନିଜ ଲୋକମାନଙ୍କ ଉପରେ ଶାସନ କରିବାକୁ
ଯୋଜନା କଲେ। ୧୩ସେ ନିଜର ଦଶ ଜଣ ଚାକରଙ୍କୁ
ଡାକିଲେ। ସେ ପ୍ରତ୍ୟେକ ଚାକରଙ୍କୁ ଗୋଟିଏ ଗୋଟିଏ
ଟଙ୍କା ଥଳି ଦେଲେ। ସେ କହିଲେ, 'ମୁଁ ଫେରିବା ପର୍ଯ୍ୟନ୍ତ
ଏହି ଟଙ୍କାରେ ବ୍ୟବସାୟ କର।' ୧୪ସେହି ବ୍ୟକ୍ତିଙ୍କୁ ସେ
ରାଜ୍ୟର ନାଗରିକମାନେ ଘୃଣା କରୁଥିଲେ। ତେଣୁ ସେମାନେ
ତାହାଙ୍କ ପଛରେ ଦଳେ ଲୋକଙ୍କୁ ସେଠାକୁ ପଠାଇଲେ।
ସେଠାକୁ ଯାଇ ଏହି ଦଳର ଲୋକମାନେ କହିଲେ, 'ଆମ୍ଭେ
ଚାହୁଁନା ଯେ, ସେହି ବ୍ୟକ୍ତି ଆମ୍ଭମାନଙ୍କର ରାଜା ହୁଅନ୍ତୁ।'
୧୫"ତଥାପି ସେ ରାଜା ହୋଇଗଲେ। ତା'ପରେ ସେ
ଘରକୁ ଫେରି ଆସିଲେ। ତା'ପରେ ସେ କହିଲେ, 'ଯେଉଁ
ଚାକରମାନଙ୍କୁ ମୁଁ ମୋର ଟଙ୍କା ଦେଇଥିଲି ସେମାନଙ୍କୁ
ଡାକ, ମୁଁ ଜାଣିବାକୁ ଚାହୁଁଛି ଯେ, ସେହି ଟଙ୍କାରେ
ସେମାନେ ଆଉ କେତେ ଅଧିକ ଲାଭ କରିଛନ୍ତି।'
୧୬ପ୍ରଥମ ଚାକର ଜଣକ ଆସି କହିଲା, 'ଆଜ୍ଞା, ଆପଣ
ମୋତେ ଦେଇଥିବା ଟଙ୍କା ଥଳିଟିକୁ ବ୍ୟବହାର କରି ମୁଁ
ଦଶ ଥଳି ଅଧିକ ଟଙ୍କା ଅର୍ଜନ କରିଛି।' ୧୭ରାଜା
ଚାକରମାନଙ୍କୁ କହିଲେ, "ବହୁତ ଭଲ କଥା। ତୁମ୍ଭେ
ଜଣେ ଭଲ ଚାକର। ତୁମ୍ଭକୁ ଛୋଟ ଛୋଟ ବିଷୟରେ
ବିଶ୍ୱାସ କରାଯାଇ ପାରିବ ବୋଲି ମୁଁ ଜାଣୁଛି। ତେଣୁ ମୁଁ
ତୁମ୍ଭକୁ ମୋର ଦଶଟି ନଗର ଶାସନ କରିବାକୁ ଦେବି।'
୧୮ଦ୍ୱିତୀୟ ଚାକରଟି ଆସିଲା ଓ କହିଲା, 'ଆଜ୍ଞା, ଆପଣ
ଦେଇଥିବା ଟଙ୍କାଥଳିକୁ ବ୍ୟବହାର କରି ପାଞ୍ଚଥଳି ଟଙ୍କା
ଅର୍ଜନ କରିଛି।' ୧୯ରାଜା ସେହି ଚାକରଟିକୁ କହିଲେ,
'ତୁମ୍ଭେ ପାଞ୍ଚଟି ନଗର ଉପରେ ଶାସନ କରିବ।' ୨୦ତା'ପରେ
ଅନ୍ୟ ଚାକରଟି ଭିତରକୁ ଆସିଲା। ସେ ରାଜାଙ୍କୁ କହିଲା,
'ଆଜ୍ଞା, ଏହି ଆପଣଙ୍କ ଟଙ୍କା ଥଳି। ମୁଁ ଖଣ୍ଡେ କନାରେ
ଏହାକୁ ଗୁଡ଼ାଇ ଲୁଚେଇ ରଖିଥିଲି। ୨୧ଆପଣ ଜଣେ
କଠୋର ବ୍ୟକ୍ତି ହୋଇଥିବାରୁ ମୁଁ ଆପଣଙ୍କୁ ଭୟ କରୁଥିଲି।
ଏପରିକି ଆପଣ ନିଜେ ଅର୍ଜନ କରି ନ ଥିବା ଟଙ୍କା
ନେଇଥାନ୍ତି ଓ ନିଜେ ଉତ୍ପନ୍ନ କରି ନ ଥିବା ଖାଦ୍ୟଶସ୍ୟ
ସଂଗ୍ରହ କରିଥାନ୍ତି।" ୨୨ତା'ପରେ ରାଜା ସେହି ଚାକରକୁ
କହିଲେ, 'ତୁମ୍ଭେ ଜଣେ ଦୁଷ୍ଟ ଚାକର। ତୁମ୍ଭେ ମୋ ପ୍ରତି

ବ୍ୟବହାର କରିଥିବା ଭାଷାରେ ମୁଁ ତୁମ୍ଭର ବିଚାର କରିବି।
ତୁମ୍ଭେ କହୁଛ ଯେ, ମୁଁ ଜଣେ କଠୋର ବ୍ୟକ୍ତି। ପୁଣି
କହୁଛ ଯେ ମୁଁ ଅର୍ଜନ ନକରି ଟଙ୍କା ନିଏ ଓ ଉତ୍ପନ୍ନ
ନକରି ମଧ୍ୟ ଖାଦ୍ୟଶସ୍ୟ ସଂଗ୍ରହ କରେ।’ ୨୩ଯଦି ଏକଥା
ସତ୍ୟ, ତେବେ ତୁମ୍ଭେ ମୋ ଟଙ୍କା ବ୍ୟାଙ୍କରେ ଜମା ରଖି
ପାରିଥାନ୍ତି। ତା’ହେଲେ ମୁଁ ଫେରି ଆସିଲା ବେଳକୁ ମୋ
ଟଙ୍କାରେ କିଛି ସୁଧ ଅର୍ଜନ କରାଯାଇ ପାରିଥାଆନ୍ତା।
୨୪ସେଠାରେ ରହି ଏସବୁ ଦେଖୁ ଥିବା ଲୋକମାନଙ୍କୁ ରାଜା
କହିଲେ, ‘ଏ ଚାକର ପାଖରୁ ଟଙ୍କା ଥଳିଟି ନେଇ ଯାଇ
ଦଶଥଳି ଟଙ୍କା ଅର୍ଜନ କରିଥିବା ଚାକରକୁ ଦେଇଦିଅ।’
୨୫ଲୋକମାନେ ରାଜାଙ୍କୁ କହିଲେ, “କିନ୍ତୁ ଆଜ୍ଞା, ସେ
ଚାକରଟି ପାଖରେ ତ ଆଗରୁ ଦଶଥଳି ଟଙ୍କା ଅଛି।’
୨୬ରାଜା କହିଲେ, ‘ଯଦି ଜଣେ ବ୍ୟକ୍ତି ତା’ ପାଖରେ ଯାହା
ଅଛି ତାହାର ବ୍ୟବହାର କରେ ତେବେ ସେ ଆହୁରି
ଅଧିକ ପାଇବ। କିନ୍ତୁ ଯେଉଁ ବ୍ୟକ୍ତି ତା ପାଖରେ ଯେତିକି
ଅଛି, ତାହା ବ୍ୟବହାର କରେନି, ତାଠାରୁ ତାହା ମଧ୍ୟ
ଛଡେଇ ନିଆଯିବ। ୨୭ବର୍ତ୍ତମାନ ମୋର ଶତ୍ରୁମାନେ କାହାଁନ୍ତି?
ମୁଁ ସେମାନଙ୍କର ରାଜା ନ ହୁଏ ବୋଲି ଯେଉଁମାନେ ଚାହୁଁ
ଥିଲେ। ସେମାନେ କାହାଁନ୍ତି? ମୋ ଶତ୍ରୁମାନଙ୍କୁ ଏଠାକୁ
ଆଣ। ସେମାନଙ୍କୁ ମୋ ଆଖି ଆଗରେ ମାରିଦିଅ।’”

## ଯୀଶୁ ଯିରୂଶାଲମରେ ପ୍ରବେଶ କଲେ

୨୮ଯୀଶୁ ଏସବୁ କହି ସାରିବା ପରେ ଯିରୂଶାଲମ
ଆଡକୁ ଯାତ୍ରା ଆରମ୍ଭ କଲେ। ୨୯ଜୀତ ପର୍ବତ ପାଖ
ବେଥ୍ଫାଗୀ ଓ ବେଥନିଆ ନଗର ପାଖକୁ ଯୀଶୁ ଆସିଗଲେ।
ଯୀଶୁ ନିଜର ଦୁଇ ଜଣ ଶିଷ୍ୟଙ୍କୁ ଏହା କହି ପଠାଇଲେ,
୩୦“ଆଗରେ ଯେଉଁ ଗାଁ ଦେଖା ଯାଉଛି, ସେଠାକୁ ଯାଅ।
ତୁମ୍ଭେମାନେ ଗାଁରେ ପଶିବା ମାତ୍ରେ ସେଠାରେ ଗୋଟିଏ
ଗଧଛୁଆ ବନ୍ଧା ହୋଇଥିବାର ଦେଖିବ। ସେହି ଗଧ
ଉପରେ କେହି କେବେହେଲେ ଚଢ଼ି ନଥିବେ। ତାକୁ
ଖୋଲି ଦେଇ ମୋ ପାଖକୁ ଆଣିବ। ୩୧ଯଦି କୌଣସି
ଲୋକ ତୁମ୍ଭକୁ ପଚାରେ ଯେ ତୁମ୍ଭେମାନେ ଗଧଟିକୁ
କାହିଁକି ନେଇ ଯାଉଛ, ତେବେ ତୁମ୍ଭେମାନେ କହିବ ଯେ
ପ୍ରଭୁଙ୍କର ଏଇଟି ଦରକାର ଅଛି।’”

୩୨ଦୁଇ ଜଣ ଶିଷ୍ୟ ସେହି ଗାଁକୁ ଗଲେ, ଯୀଶୁ
ସେମାନଙ୍କୁ ଯେଉଭଳି କହିଥିଲେ, ଠିକ୍ ସେହି ଅନୁସାରେ
ସେମାନେ ଗଧଟିକୁ ପାଇଗଲେ। ୩୩ଶିଷ୍ୟମାନେ ଗଧଟିକୁ
ଫିଟାଉଥିବା ସମୟରେ ଗଧଟିର ମାଲିକମାନେ ବାହାରି
ଆସିଲେ। ସେମାନେ ଶିଷ୍ୟମାନଙ୍କୁ ପଚାରିଲେ, “ତୁମ୍ଭେମାନେ
ଗଧଟିକୁ କାହିଁକି ଫିଟାଉଛ?”

୩୪ଶିଷ୍ୟମାନେ କହିଲେ, “ଏହାଠାରେ ପ୍ରଭୁଙ୍କର ଦରକାର
ଅଛି।” ୩୫ତା’ପରେ ଶିଷ୍ୟମାନେ ଗଧଟିକୁ ଯୀଶୁଙ୍କ ପାଖକୁ
ଆଣିଲେ। ସେମାନେ ଗଧ ପିଠି ଉପରେ ସେମାନଙ୍କର
ଲୁଗା ପକେଇଲେ। ତା’ପରେ ସେମାନେ ଯୀଶୁଙ୍କୁ ଗଧ
ଉପରେ ବସାଇଲେ। ୩୬ଯୀଶୁ ଗଧ ଉପରେ ବସି ଯିରୂଶାଲମ
ଆଡକୁ ଯାତ୍ରା କଲେ। ଲୋକମାନେ ଯୀଶୁଙ୍କ ଆଗରେ
ରାସ୍ତାଉପରେ ନିଜନିଜ ଲୁଗା ବିଛାଇ ଦେଲେ।

୩୭ଯୀଶୁ ଯିରୂଶାଲମର ପାଖ ହୋଇ ଆସୁଥିଲେ, ସେ
ଜୀତପର୍ବତର ପାଦ ଦେଶ ନିକଟରେ ପହଞ୍ଚିଲେ। ଯୀଶୁଙ୍କର
ସମୁଦାୟ ଶିଷ୍ୟଦଳ ଖୁସି ଥିଲେ। ସେମାନେ ଉଚ୍ଚସ୍ୱରରେ
ପରମେଶ୍ୱରଙ୍କ ପ୍ରଶଂସା ଗାନ କରିବାକୁ ଲାଗିଲେ। ସେମାନେ
ଯେଉଁ ସବୁ ଶକ୍ତିର କାର୍ଯ୍ୟମାନ ଦେଖିଥିଲେ, ସେଥିପାଇଁ
ପରମେଶ୍ୱରଙ୍କ ସ୍ତୁତିଗାନ କଲେ। ସେମାନେ କହିଲେ:
୩୮“ସ୍ୱାଗତ କରି କହିଲେ:

“ପ୍ରଭୁଙ୍କ ନାମରେ ଯେଉଁ ରାଜା ଆସୁଛନ୍ତି, ତାହାଙ୍କୁ
ପରମେଶ୍ୱରଙ୍କ ଆଶୀର୍ବାଦ କରନ୍ତୁ,
ଗୀତସଂହିତା ୧୧୮:୨୬
ସ୍ୱର୍ଗରେ ଶାନ୍ତି ଓ ପରମେଶ୍ୱରଙ୍କ ମହିମା ହେଉ।”

୩୯ଜନଗହଳରେ କେତେ ଜଣ ରହିଥିବା ଫାରୂଶୀ
ଯୀଶୁଙ୍କୁ କହିଲେ, “ଗୁରୁ, ତୁମ୍ଭର ଶିଷ୍ୟମାନଙ୍କୁ ଏ ସବୁ
କଥା ନ କହିବାକୁ କୁହ।”

୪୦କିନ୍ତୁ ଯୀଶୁ କହିଲେ, “ମୁଁ ତୁମ୍ଭମାନଙ୍କୁ କହୁଛି,
ଏସବୁ କଥା ନିଶ୍ଚୟ କୁହାଯିବ। ଯଦି ମୋର ଶିଷ୍ୟମାନେ
ଏସବୁ କଥା ନ କୁହନ୍ତି। ତାହା ହେଲେ ଏ ପଥର ସବୁ
ପାଟି କରି ତାହାସବୁ କହିବେ।”

## ଯୀଶୁ ଯିରୂଶାଲମ ପାଇଁ କାନ୍ଦି ପକାଇଲେ।

୪୧ଯୀଶୁ ଯିରୂଶାଲମ ପାଖରେ ପହଞ୍ଚିଗଲେ। ଯୀଶୁ
ଯିରୂଶାଲମ ନଗରକୁ ଦେଖି ତା’ପାଇଁ କାନ୍ଦି ପକାଇଲେ।
୪୨ଯୀଶୁ ଯିରୂଶାଲମକୁ କହିଲେ, “ତୁମ୍ଭକୁ କିପରି ଶାନ୍ତି
ମିଳି ପାରିବ, ତାହା ତୁମ୍ଭେମାନେ ଆଜି ଅନ୍ତତଃ ଜାଣି
ପାରନ୍ତ! କିନ୍ତୁ ତାହା ତୁମ୍ଭେମାନେ ଜାଣି ପାରିବନାହିଁ।
କାରଣ ତାହା ତୁମ୍ଭ ପାଖରୁ ଗୁପ୍ତ ରଖା ଯାଇଛି। ୪୩ତୁମ
ସକାଶେ ଏପରି ସମୟ ଆସୁଛି। ଯେତେବେଳେ କି ତୁମ୍ଭର
ଶତ୍ରୁମାନେ ତୁମ୍ଭ ଚାରିପଟେ ଗୋଟିଏ ପାଚେରୀ ତିଆରି
କରିଦେବେ। ତୁମ୍ଭ ଶତ୍ରୁମାନେ ତୁମ୍ଭକୁ ଫେରିଯାଇ ଅବରୋଧ
କରିବେ। ୪୪ସେମାନେ ତୁମ୍ଭକୁ ଓ ତୁମ୍ଭ ଲୋକମାନଙ୍କୁ ନଷ୍ଟ
କରିଦେବେ। ତୁମ୍ଭ କୋଠାଗୁଡିକର ଗୋଟିଏ ହେଲେ
ପଥର ଅନ୍ୟ ପଥରଟି ଉପରେ ସେମାନେ ରଖେଇ
ଦେବେ ନାହିଁ। ଏସବୁ ଘଟିବ। କାରଣ ତୁମ୍ଭକୁ ଉଦ୍ଧାର
କରିବା ପାଇଁ ପରମେଶ୍ୱର ଯେତେବେଳେ ଆସିଥିଲେ, ସେ
ସମୟଟିକୁ ତୁମ୍ଭେ ଚିହ୍ନି ପାରିଲ ନାହିଁ।”

## ମନ୍ଦିରରେ ଯୀଶୁ

୪୫ଯୀଶୁ ମନ୍ଦିର ଭିତରକୁ ଗଲେ। ସେ ମନ୍ଦିର ପରିସର
ଭିତରେ କିଣା ବିକା କରୁଥିବା ଲୋକମାନଙ୍କୁ ବାହାର
କରିବାକୁ ଲାଗିଲେ। ୪୬ଯୀଶୁ କହିଲେ, “ଶାସ୍ତ୍ରରେ ଲେଖାଅଛି:
‘ମୋ ଗୃହ ପ୍ରାର୍ଥନାଗୃହ ହେବ।’* କିନ୍ତୁ ତୁମ୍ଭେମାନେ
ଏହାକୁ ଚୋରମାନଙ୍କ ଆଡ୍ଡାସ୍ଥଳ କରି ଦେଇଛ।’”

---

**‘ମୋ ... ହେବ’** ଯିଶାଇୟ ୫୬:୭

୪୭ଯୀଶୁ ପ୍ରତିଦିନ ମନ୍ଦିରରେ ଉପଦେଶ ଦେଉଥିଲେ।
ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ ଓ ଯିହୂଦୀ ନେତାମାନେ ଯୀଶୁଙ୍କୁ
ଜୀବନରେ ମାରି ଦେବାକୁ ଚାହୁଁଥିଲେ। ୪୮କିନ୍ତୁ ସବୁ
ଲୋକ ଯୀଶୁଙ୍କ ଉପଦେଶ ମନଧାନ ଦେଇ ଶୁଣୁଥିଲେ।
ସେମାନେ ଯୀଶୁଙ୍କ କଥାପ୍ରତି ପ୍ରବଳ ଆଗ୍ରହ ପ୍ରକାଶ
କରୁଥିଲେ। ତେଣୁ ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ ଓ ଯିହୂଦୀ
ନେତାମାନେ କ'ଣ କରିବେ ବୋଲି କିଛି ସ୍ଥିର କରି ପାରୁ
ନଥିଲେ।

## ଯିହୂଦୀ ନେତାମାନେ ଯୀଶୁଙ୍କୁ ପଚାରିଲେ

୨୦ ଦିନେ ଯୀଶୁ ମନ୍ଦିର ଭିତରେ ଥିଲେ। ସେ
ଲୋକମାନଙ୍କୁ ଉପଦେଶ ଦେଉଥିଲେ। ଯୀଶୁ
ଲୋକମାନଙ୍କୁ ପରମେଶ୍ୱରଙ୍କ ରାଜ୍ୟ ବିଷୟରେ ସୁସମାଚାର
କହୁଥିଲେ। ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ ଓ ଯିହୂଦୀ
ନେତାମାନେ ଯୀଶୁଙ୍କୁ ପ୍ରଶ୍ନ ପଚାରିବାକୁ ଆସିଲେ। ୨ସେମାନେ
ପଚାରିଲେ, "ଆମ୍ଭକୁ କୁହ, କେଉଁ ଅଧିକାର ବଳରେ
ତୁମ୍ଭେ, ଏସବୁ କାମ କରୁଛ? ତୁମ୍ଭକୁ ଏ ଅଧିକାର କିଏ
ଦେଲା?"
୩ଯୀଶୁ ଉତ୍ତର ଦେଲେ, "ମୁଁ ମଧ୍ୟ ତୁମ୍ଭମାନଙ୍କୁ
ଗୋଟିଏ ପ୍ରଶ୍ନ ପଚାରିବି। ମୋତେ କୁହ: ୪ଯେତେବେଳେ
ଯୋହନ ଲୋକମାନଙ୍କୁ ବାପ୍ତିସ୍ମ ଦେଲେ, ତାହା
ପରମେଶ୍ୱରଙ୍କଠାରୁ ଆସିଥିଲା ନା ମଣିଷଠାରୁ ଆସିଥିଲା?"
୫ପ୍ରଧାନ ଯାଜକ, ଧର୍ମଶାସ୍ତ୍ରୀ ଓ ଯିହୂଦୀ ନେତାମାନେ ଏ
ବିଷୟରେ କଥାବାର୍ତ୍ତା ହେଲେ। ସେମାନେ ପରସ୍ପର କୁହାକୁହି
ହେଲେ, "ଆମ୍ଭେ ଯଦି କହିବା ଯେ ଯୋହନଙ୍କ ବାପ୍ତିସ୍ମ
ପରମେଶ୍ୱରଙ୍କଠାରୁ ଆସିଥିଲା, ତେବେ ସେ ପଚାରିବେ,
'ତୁମ୍ଭେମାନେ ଯୋହନଙ୍କୁ କାହିଁକି ବିଶ୍ୱାସ କଲନାହିଁ?'
୬କିନ୍ତୁ ଆମ୍ଭେ ଯଦି କହିବା, 'ଯୋହନଙ୍କ ବାପ୍ତିସ୍ମ ମଣିଷ
ଠାରୁ ଆସିଥିଲା', ତେବେ ସବୁ ଲୋକ ଆମ୍ଭ ଉପରକୁ
ଢେଲାପଥର ଫିଙ୍ଗି ଆମ୍ଭକୁ ଜୀବନରେ ମାରିଦେବେ।
କାରଣ ସେମାନେ ଯୋହନଙ୍କୁ ଭବିଷ୍ୟଦ୍‌ବକ୍ତା ରୂପେ ବିଶ୍ୱାସ
କରନ୍ତି।" ୭ତେଣୁ ସେମାନେ କହିଲେ, "ଆମ୍ଭେ ଜାଣିନାହୁଁ।"
୮ଯୀଶୁ ସେମାନଙ୍କୁ କହିଲେ, "ମୁଁ ତେବେ ତୁମ୍ଭମାନଙ୍କୁ
କହିବି ନାହିଁ ଯେ ମୁଁ କେଉଁ ଅଧିକାରରେ ଏ ସବୁ କାମ
କରୁଛି।"

## ପରମେଶ୍ୱର ତାହାଙ୍କ ପୁତ୍ରଙ୍କୁ ପଠାନ୍ତି

୯ତାପରେ ଯୀଶୁ ଲୋକମାନଙ୍କୁ ଏହି ଦୃଷ୍ଟାନ୍ତଟି କହିଲେ:
"ଗୋଟିଏ ଲୋକ କିଛି ଜମିରେ ଅଙ୍ଗୁର ଚାଷ କଲା। ସେ
ଏହି ଜମିଟି କେତେ ଜଣ କୃଷକଙ୍କୁ ଭାଗ ଦେଇ ଦେଲା।
ତାପରେ ସେ ଦୀର୍ଘ ସମୟ ପର୍ଯ୍ୟନ୍ତ ସେଠାରୁ ଚାଲିଗଲା।
୧୦ପରେ ଅଙ୍ଗୁର ତୋଳିବା ସମୟ ଆସିଲା। ତେଣୁ
ଲୋକଟି ତାର ଜଣେ ଚାକରକୁ ଏହି କୃଷକ ମାନଙ୍କ
ପାଖକୁ ପଠାଇଲା ଯେପରି କୃଷକମାନେ ତାହାଙ୍କ ଭାଗ
ଅଙ୍ଗୁର ଚାକର ହାତରେ ଦେଇଦେବେ। କିନ୍ତୁ କୃଷକମାନେ
ଚାକରକୁ ମାଡ ମାରି ଖାଲି ହାତରେ ପଠେଇ ଦେଲେ।
୧୧ତେଣୁ ଲୋକଟି ଆଉ ଜଣେ ଚାକରକୁ ପଠାଇଲା।
କୃଷକମାନେ ଏହି ଲୋକଟିକୁ ମାଡ ମାରିଲେ ଓ ତାପ୍ରତି
ଅସମ୍ମାନ ବ୍ୟବହାର କଲେ। ସେମାନେ ତାକୁ ମଧ୍ୟ କିଛି
ନଦେଇ ପଠେଇ ଦେଲେ। ୧୨ତେଣୁ ଜମିମାଲିକ ପୁଣି
ଆଉ ଜଣେ ଚାକରକୁ ପଠାଇଲା। କୃଷକମାନେ ତାକୁ
ଭୟଙ୍କର ଭାବରେ କ୍ଷତବିକ୍ଷତ କରି ବାହାରକୁ ଫିଙ୍ଗି
ଦେଲେ। ୧୩ଜମିମାଲିକ କହିଲା, 'ଏବେ ମୁଁ କ'ଣ କରିବି?
ମୁଁ ମୋ ପୁଅକୁ ପଠାଇବି। ମୁଁ ମୋ ପୁଅକୁ ଅତ୍ୟଧିକ
ଭଲ ପାଏ। ହୁଏତ ମୋ ପୁଅକୁ କୃଷକ ମାନେ ସମ୍ମାନ
ଦେଇ ପାରନ୍ତି।' ୧୪କୃଷକମାନେ ମାଲିକର ପୁଅକୁ ଦେଖି
କୁହାକୁହି ହେଲେ, 'ଏତ ଜମିମାଲିକର ପୁଅ। ଏ ଜମି
ଖଣ୍ଡିକ ତାର ହିଁ ହେବ। ଆମ୍ଭେ ତାକୁ ମାରିଦେଲେ ଜମିଟି
ଆମ୍ଭର ହୋଇଯିବ।' ୧୫ତେଣୁ କୃଷକମାନେ ମାଲିକର
ପୁଅକୁ ଜୀବନରେ ମାରିଦେଲେ ଓ ଜମି ବାହାରକୁ ଫିଙ୍ଗି
ଦେଲେ।
"ଏବେ ଜମିମାଲିକ କ'ଣ କରିବ? ୧୬ସେ ଆସି ସେହି
କୃଷକମାନଙ୍କୁ ଜୀବନରେ ମାରିଦେବ। ତାପରେ ସେହି
ଜମିଟିକୁ ଆଉ କେତେକ କୃଷକଙ୍କୁ ଭାଗ ଦେଇଦେବ।"
ଲୋକମାନେ ଏହି ଦୃଷ୍ଟାନ୍ତଟି ଶୁଣିଲେ ଓ ସେମାନେ
କହିଲେ, "ଯେ, ଏକଥା କେବେହେଲେ ନ ହେଉ।"
୧୭ଯୀଶୁ ସେମାନଙ୍କୁ ଚାହିଁ କହିଲେ, "ତେବେ ଧର୍ମଶାସ୍ତ୍ରର
ଏହି ପଦ ଅର୍ଥ କ'ଣ ହେବ:

'ନିର୍ମାତାମାନେ ଯେଉଁ ପଥରକୁ ନାପସନ୍ଦ କରିଦେଲେ,
ସେହି ପଥରଟି ମୂଳଦୁଆର ପ୍ରଧାନ ପଥର ହୋଇଗଲା।'
ଗୀତ ସଂହିତା ୧୧୮:୨୨

୧୮ଯେଉଁଲୋକ ସେହି ପଥର ଉପରେ ଖସି ପଡିବ, ତା'ର
ହାଡ ଗୋଡ ଭାଙ୍ଗିଯିବ। କିନ୍ତୁ ସେହି ପଥର ଯାହା
ଉପରେ ପଡିବ, ତାହା ତାକୁ ଚୂରମାର୍ କରିଦେବ।"
୧୯ଧର୍ମଶାସ୍ତ୍ରୀ ଓ ମୁଖ୍ୟ ଯାଜକମାନେ ଯୀଶୁଙ୍କ ଠାରୁ ଏହି
ଦୃଷ୍ଟାନ୍ତଟି ଶୁଣିଲେ। ସେମାନେ ଜାଣି ପାରିଲେ ଯେ ଏହି
ଦୃଷ୍ଟାନ୍ତଟି ସେମାନଙ୍କ ଉଦ୍ଦେଶ୍ୟରେ କୁହାଯାଇଛି। ତେଣୁ
ସେମାନେ ଯୀଶୁଙ୍କୁ ଠିକ୍ ସେତିକିବେଳେ ବନ୍ଦୀ କରିବାକୁ
ଚାହିଁଲେ। କିନ୍ତୁ ଲୋକମାନେ କାଳେ କ'ଣ କିଛି
କରିପକାଇବେ, ସେଥିପାଇଁ ସେମାନେ ଡରୁଥିଲେ।

## ଯୀଶୁଙ୍କୁ ଫାନ୍ଦରେ ପକାଇବାକୁ ଯିହୂଦୀ ନେତାମାନଙ୍କ ଚେଷ୍ଟା।

୨୦ତେଣୁ ଧର୍ମଶାସ୍ତ୍ରୀ ଏବଂ ଯାଜକମାନେ ଯୀଶୁଙ୍କୁ ଫାନ୍ଦରେ
ପକାଇବା ପାଇଁ ଉପଯୁକ୍ତ ସମୟ ଅପେକ୍ଷାରେ ରହିଲେ।
ସେମାନେ ଯୀଶୁଙ୍କ ପାଖକୁ କେତେକ ଗୁପ୍ତଚର ପଠାଇଲେ।
ସେମାନେ ଏହି ଲୋକମାନଙ୍କୁ ଭଲ ଲୋକ ଭଳି ଛଳନା
କରିବା ପାଇଁ କହିଥିଲେ। ସେମାନେ ଯୀଶୁଙ୍କ କହୁଥିବା
କଥାରେ କିଛି ଭୁଲ ବିଷୟ ଖୋଜି ବାହାର କରିବାକୁ
ଚାହୁଁଥିଲେ। (କାରଣ ଯଦି ସେମାନେ ଯୀଶୁଙ୍କର କିଛି
ଭୁଲ ଦେଖି ପାରିବେ, ତେବେ ସେମାନେ ଯୀଶୁଙ୍କ ଉପରେ
ଅଧିକାର ଓ କ୍ଷମତା ରହିଥିବା ଶାସନକର୍ତ୍ତାଙ୍କ ହାତରେ

ଯୀଶୁଙ୍କୁ ଦେଇଦେବେ।) ୨୧ସେହି ଲୋକମାନେ ଯୀଶୁଙ୍କୁ
କହିଲେ, "ଗୁରୁ, ଆମ୍ଭେ ଜାଣୁଛୁ ଯେ ଆପଣ ଯାହା
କହୁଛନ୍ତି ଓ ଉପଦେଶ ଦେଉଛନ୍ତି, ସେ ସବୁ ଠିକ୍।
ଆପଣ କାହାପ୍ରତି ପକ୍ଷପାତପୂର୍ଣ୍ଣ ଆଚରଣ କରୁନାହାଁନ୍ତି।
ଆପଣ ପରମେଶ୍ୱରଙ୍କ ମାର୍ଗ ବିଷୟରେ ଯେଉଁ ଉପଦେଶ
ଦେଉଛ, ତାହାସତ୍ୟ। ୨୨ଆମ୍ଭକୁ କୁହ। କାଇସରଙ୍କୁ କର
ଦେବା ଆମ୍ଭ ପକ୍ଷେ ଠିକ୍ ହେବ କି ନାହିଁ?"
୨୩କିନ୍ତୁ ଯୀଶୁ ଜାଣିଥିଲେ ଯେ ଏହି ଲୋକମାନେ
ତାହାଙ୍କୁ ଫାନ୍ଦରେ ପକାଇବାକୁ ଚାହୁଁଛନ୍ତି। ତେଣୁ ଯୀଶୁ
ସେମାନଙ୍କୁ କହିଲେ, ୨୪"ମୋତେ ଗୋଟିଏ ମୁଦ୍ରା ଦେଖାଅ
ମୁଦ୍ରା ଉପରେ କାହାର ନାମ ଅଛି ଏବଂ କାହାର ଛବି
ଅଛି?"

ସେମାନେ କହିଲେ, "କାଇସରଙ୍କର।"

୨୫ଯୀଶୁ ସେମାନଙ୍କୁ କହିଲେ, "ତେବେ ଯାହା
କାଇସରଙ୍କର, ତାହା କାଇସରଙ୍କୁ ଦେଇଦିଅ, ଯାହା
ପରମେଶ୍ୱରଙ୍କର ତାହା ପରମେଶ୍ୱରଙ୍କୁ ଦେଇଦିଅ।"
୨୬ଲୋକମାନେ ଯୀଶୁଙ୍କର ଏହି ବୁଦ୍ଧିପୂର୍ଣ୍ଣ ଉତ୍ତର ଶୁଣି
ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ କିଛି କହି ପାରିଲେନାହିଁ।
ସେମାନେ ଯୀଶୁଙ୍କୁ ସମସ୍ତଙ୍କ ଆଗରେ ଫାନ୍ଦରେ ପକାଇ
ପାରିଲେନାହିଁ। ଯୀଶୁ ଏଭଳି କିଛି କହିଲେ ନାହିଁ, ଯାହାକୁ
ସେମାନେ ଯୀଶୁଙ୍କ ବିରୁଦ୍ଧରେ ବ୍ୟବହାର କରିପାରିବେ।

## କେତେକ ସାଦ୍ଦୂକୀ ଯୀଶୁଙ୍କୁ ଫାନ୍ଦରେ ପକାଇବାକୁ ଚେଷ୍ଟା କଲେ

୨୭କେତେକ ସାଦ୍ଦୂକୀ ଯୀଶୁଙ୍କ ପାଖକୁ ଆସିଲେ।
(ସାଦ୍ଦୂକୀମାନେ ବିଶ୍ୱାସ କରନ୍ତି ଯେ ଲୋକେ ମୃତ୍ୟୁରୁ ପୁଣି
ବଞ୍ଚି ଉଠି ପାରିବେନାହିଁ।) ସେମାନେ ଯୀଶୁଙ୍କୁ ପଚାରିଲେ,
୨୮"ଗୁରୁ! ମୋଶା ଆମ୍ଭ ପାଇଁ ଲେଖିଥିଲେ ଯେ ଯଦି
ଜଣେ ବିବାହିତ ପୁରୁଷ କୌଣସି ସନ୍ତାନସନ୍ତତି ନଥାଇ
ମରିଯାଏ, ତେବେ ତାର ଭାଇ ନିଶ୍ଚୟ ସେହି ମୃତ ଭାଇର
ପତ୍ନୀକୁ ବିବାହ କରିବ। ତାହାହେଲେ ସେ ତା ମୃତ ଭାଇ
ପାଇଁ ସେହି ସ୍ତ୍ରୀ ଠାରୁ ସନ୍ତାନସନ୍ତତି ଉତ୍ପନ୍ନ କରି ପାରିବ।
୨୯ଥରେ ସାତ ଜଣ ଭାଇ ଥିଲେ। ବଡ ଭାଇଟି ବିବାହ
କରିଥିଲା। କୌଣସି ସନ୍ତାନ ନ ଥାଇ ସେ ଭାଇଟି
ମରିଗଲା। ୩୦ତାପରେ ସେହି ସ୍ତ୍ରୀ ଲୋକଟିକୁ ଦ୍ୱିତୀୟ ଭାଇ
ବିବାହ କଲା। କିନ୍ତୁ ସେ ମଧ୍ୟ ମରିଗଲା। ୩୧ତାପରେ
ତୃତୀୟ ଭାଇଟି ସେହି ସ୍ତ୍ରୀକୁ ବିବାହ କଲା ଓ ମରିଗଲା।
ଅନ୍ୟ ଭାଇମାନଙ୍କ ପ୍ରତିମଧ୍ୟ ସେହି ଏକା କଥା ଘଟିଲା।
ସେମାନେ ସମସ୍ତେ ମରିଗଲେ ଓ କାହାରିହେଲେ ସନ୍ତାନସନ୍ତତି
ଜନ୍ମ ହୋଇନଥିଲେ। ୩୨ଶେଷରେ ସେହି ସ୍ତ୍ରୀଟି ମଧ୍ୟ
ମରିଗଲା। ୩୩ସାତଭାଇଯାକ ତାକୁ ବିବାହ କରିଥିଲେ।
ତେବେ ଯେତେବେଳେ ଲୋକେ ମୃତ୍ୟୁରୁ ପୁଣି ଜୀବନ ନ
ପାଇ ଉଠିବେ, ସେତେବେଳେ ଏହି ସ୍ତ୍ରୀଟି କାହାର ପତ୍ନୀ
ହେବ?"
୩୪ଯୀଶୁ ସାଦ୍ଦୂକୀମାନଙ୍କୁ କହିଲେ, "ସଂସାରରେ
ଲୋକମାନେ ପରସ୍ପର ମଧ୍ୟରେ ବିବାହ କରିଥାନ୍ତି। ୩୫କିନ୍ତୁ
କେତେକ ଲୋକ ମୃତ୍ୟୁରୁ ପୁଣି ବଞ୍ଚି ଉଠିବାକୁ ଯୋଗ୍ୟ
ହେବେ ଓ ସେମାନେ ଏହି ଜୀବନ ପରେ ମଧ୍ୟ ପୁଣି
ଜୀବିତ ରହିବେ। ସେହି ଜୀବନରେ ସେମାନେ ବିବାହ
କରିବେ ନାହିଁ। ୩୬ସେହି ଜୀବନରେ ଲୋକମାନେ ସ୍ୱର୍ଗଦୂତଙ୍କ
ପରି ହୋଇଥାନ୍ତି ଓ ସେମାନେ କେବେହେଲେ ମରନ୍ତିନାହିଁ।
ସେମାନେ ପରମେଶ୍ୱରଙ୍କ ସନ୍ତାନ କାରଣ ମୃତ୍ୟୁରୁ ପୁଣି
ବଞ୍ଚି ଉଠିଥାନ୍ତି। ୩୭ମୋଶା ସ୍ପଷ୍ଟ ଭାବରେ ଦେଖେଇ
ଦେଇଛନ୍ତି ଯେ ଲୋକେ ମୃତ୍ୟୁରୁ ପୁଣିବଞ୍ଚି ଉଠନ୍ତି।
ମୋଶା ଯେତେବେଳେ 'ଜ୍ୱଳନ୍ତବୁଦା'* ବିଷୟରେ ଲେଖିଲେ,
ସେ କହିଥିଲେ ଯେ, 'ପ୍ରଭୁ (ପରମେଶ୍ୱର) ହେଉଛନ୍ତି
ଅବ୍ରହାମଙ୍କ ପରମେଶ୍ୱର, ଯିସ୍ହାକଙ୍କ ପରମେଶ୍ୱର ଓ
ଯାକୁବଙ୍କ ପରମେଶ୍ୱର'*। ୩୮ଯଦି ପରମେଶ୍ୱର କହିଛନ୍ତି
ଯେ, ସେ ସେମାନଙ୍କର ପରମେଶ୍ୱର, ତେବେ ଏ ଲୋକମାନେ
ପ୍ରକୃତରେ ମୃତ ନୁହନ୍ତି। ସେ କେବଳ ଜୀବିତ ଲୋକମାନଙ୍କ
ପରମେଶ୍ୱର। ଯେଉଁମାନେ ପରମେଶ୍ୱରଙ୍କ ଲୋକ, ସେମାନେ
ସମସ୍ତେ ଜୀବିତ ଅଟନ୍ତି।
୩୯ଧର୍ମଶାସ୍ତ୍ରୀମାନେ କହିଲେ, "ଗୁରୁ, ଆପଣଙ୍କ ଉତ୍ତର
ବହୁତ ଭଲ ଥିଲା।" ୪୦ଯୀଶୁଙ୍କୁ ଆଉ ଅଧିକ ପ୍ରଶ୍ନ
ପଚାରିବାକୁ କେହି ସାହାସ କଲେନାହିଁ।

## ଖ୍ରୀଷ୍ଟ କ'ଣ ଦାଉଦଙ୍କ ପୁତ୍ର?

୪୧ତାପରେ ଯୀଶୁ କହିଲେ, "ଲୋକେ କାହିଁକି କହୁଛନ୍ତି
ଯେ ଖ୍ରୀଷ୍ଟ ଦାଉଦଙ୍କ ପୁତ୍ର? ୪୨ଗୀତସଂହିତାରେ ଦାଉଦ
ନିଜେ କହିଛନ୍ତି:

'ପ୍ରଭୁ (ପରମେଶ୍ୱର) ମୋର ପ୍ରଭୁଙ୍କୁ (ଖ୍ରୀଷ୍ଟ) କହିଲେ:
ମୋର ଡାହାଣ ପଟେ ମୋ ପାଖରେ ବସ।
୪୩ ମୁଁ ତୁମ୍ଭର ଶତ୍ରୁମାନଙ୍କୁ ତୁମ୍ଭ ଶକ୍ତି ଅଧୀନରେ
ରଖିବେ।' ଗୀତସଂହିତା ୧୧୦:୧

୪୪ଦାଉଦ ଖ୍ରୀଷ୍ଟଙ୍କୁ 'ପ୍ରଭୁ' କହିଛନ୍ତି। କିନ୍ତୁ ଖ୍ରୀଷ୍ଟ ମଧ୍ୟ
ଦାଉଦଙ୍କ ପୁତ୍ର। ଏ ଉଭୟ କଥା କିପରି ସତ୍ୟ ହୋଇ
ପାରିବ?"

## ଧର୍ମଶାସ୍ତ୍ରୀମାନଙ୍କ ବିରୁଦ୍ଧରେ ଚେତାବନୀ

୪୫ସବୁଲୋକେ ଯୀଶୁଙ୍କ ଉପଦେଶ ଶୁଣୁଥିଲେ। ଯୀଶୁ
ଶିଷ୍ୟମାନଙ୍କୁ କହିଲେ, ୪୬"ଧର୍ମଶାସ୍ତ୍ରୀମାନଙ୍କଠାରୁ ସାବଧାନ
ରୁହ। ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ପରି ପୋଷାକପତ୍ର ପିନ୍ଧି
ବୁଲାବୁଲି କରିବାକୁ ସେମାନେ ଚାହାଁନ୍ତି। ହାଟବଜାରରେ
ଲୋକେ ତାହାଙ୍କୁ ସମ୍ମାନ ଦେଖାନ୍ତୁ ବୋଲି ସେମାନେ
ଭଲପାଆନ୍ତି। ଯିହୂଦୀ ପ୍ରାର୍ଥନାଗୃହମାନଙ୍କରେ ସବୁଠାରୁ ଶ୍ରେଷ୍ଠ
ଆସନଗୁଡିକ ପାଇବାକୁ ସେମାନେ ଭଲ ପାଆନ୍ତି। ଭୋଜି
ମାନଙ୍କରେ ସବୁଠାରୁ ପ୍ରଧାନ ଆସନରେ ବସିବାକୁ ସେମାନେ

---

**ଜ୍ୱଳନ୍ତା ବୁଦା** ଯାତ୍ରାପୁସ୍ତକ ୩:୧-୧୨

**'ପ୍ରଭୁ ... ଯାକୁବଙ୍କ ପରମେଶ୍ୱର'** ପୁରାତନ ନିୟମ(ଓଲ୍ଡ ଟେଷ୍ଟାମେଣ୍ଟ) ସମୟରେ ତିନିଜଣ ଇହୁଦୀ-ନେତା ଯାତ୍ରାପୁସ୍ତକ ୩:୬

ଭଲ ପାଆନ୍ତି। ୪୭କିନ୍ତୁ ସେମାନେ ବିଧବାମାନଙ୍କ ପ୍ରତି
ଅତ୍ୟନ୍ତ ନୀଚ ମନୋଭାବ ଦେଖାନ୍ତି। ସେମାନେ ବିଧବାମାନଙ୍କର
ଘରଦ୍ୱାର ଠକିକରି ନେଇ ଯାଆନ୍ତି। ସେମାନେ ଲମ୍ବାଲମ୍ବା
ପ୍ରାର୍ଥନା କରି ନିଜକୁ ଭଲ ବୋଲି ଦେଖେଇ ହେବାକୁ
ଚେଷ୍ଟା କରନ୍ତି। ପରମେଶ୍ୱର ଏହି ଲୋକମାନଙ୍କୁ କଠିନ
ଦଣ୍ଡ ଦେବେ।"

### ପ୍ରକୃତଦାନ

**୨୧** ଯୀଶୁ ଦେଖିଲେ ଯେ କେତେକ ଧନୀଲୋକ
ମନ୍ଦିରର ଦାନବାକ୍ସରେ ପରମେଶ୍ୱରଙ୍କ ପାଇଁ
ଦାନ ଦେଉଛନ୍ତି। ୨ଯୀଶୁ ଗୋଟିଏ ଗରିବ ବିଧବାକୁ
ଦେଖିଲେ। ସେହି ବିଧବା ଲୋକଟି ଦାନବାକ୍ସରେ ଦୁଇଟି
ତମ୍ବା ପଇସା ପକାଇଲା। ୩ଯୀଶୁ କହିଲେ, "ମୁଁ ତୁମ୍ଭକୁ
ସତ୍ୟ କହୁଛି, ଏହି ଗରିବ ବିଧବାଟି କେବଳ ଦୁଇଟି
ତମ୍ବାପଇସା ଦାନ ଦେଲା। କିନ୍ତୁ ପ୍ରକୃତରେ ସେ ଏହି
ଧନୀଲୋକମାନଙ୍କ ଠାରୁ ବହୁତ ଅଧିକ ଦେଲା।
୪ଧନୀଲୋକମାନଙ୍କର ପ୍ରଚୁର ଅର୍ଥ ଅଛି। ସେମାନେ
ସେମାନଙ୍କର ଦରକାର ନଥିବା ଅର୍ଥ ଦାନ କଲେ। ଏ
ସ୍ତ୍ରୀଲୋକଟି ବହୁତ ଗରୀବ। କିନ୍ତୁ ସେ ତାର ସର୍ବସ୍ୱ ଦାନ
କରିଦେଲା। ସେହି ଅର୍ଥ ତା'ର ବଞ୍ଚିବା ପାଇଁ ଦରକାର
ଥିଲା।"

### ମନ୍ଦିରର ଧ୍ୱଂସ

୫କେତେକ ଶିଷ୍ୟ ମନ୍ଦିର ବିଷୟରେ କଥାବାର୍ତ୍ତା
ହେଉଥିଲେ। ସେମାନେ କହିଲେ, "ଏହା ଗୋଟିଏ ସୁନ୍ଦର
ମନ୍ଦିର। ଏହା ସବୁଠାରୁ ଭଲ ପଥରରେ ତିଆରି ହୋଇଛି।
ଦେଖ ପରମେଶ୍ୱରଙ୍କୁ କିପରି ଭଲଭଲ ଦାନ ଅର୍ପଣ କରା
ଯାଇଛି!"
୬କିନ୍ତୁ ଯୀଶୁ କହିଲେ, "ଏବେ ତୁମ୍ଭେମାନେ ଏଠାରେ
ଯାହା ସବୁ ଦେଖୁଛ, ସମୟ ଆସିବ, ଯେତେବେଳେ ଏ
ସବୁ ଧ୍ୱଂସ ହୋଇଯିବ। ଏହି ଭବନଗୁଡ଼ିକର ପ୍ରତ୍ୟେକ
ପଥର ଭୂମିସାତ୍ ହୋଇ ପଡ଼ିବ। ଗୋଟିଏ
ହେଲେ ପଥର ଅନ୍ୟ ଗୋଟିଏ ପଥର ଉପରେ ରହି
ପାରିବନାହିଁ।"
୭କେତେକ ଶିଷ୍ୟ ଯୀଶୁଙ୍କୁ ପଚାରିଲେ, "ଗୁରୁ! ଏ ସବୁ
ଘଟଣା କେବେ ଘଟିବ? କି ପ୍ରକାରର ଲକ୍ଷଣ ଦ୍ୱାରା ଜଣା
ପଡ଼ିବ ଯେ ଏ ସବୁ ଘଟଣା ଘଟିବାର ସମୟ ଆସି
ଗଲାଣି?" ୮ଯୀଶୁ କହିଲେ, "ସାବଧାନ! ଭ୍ରାନ୍ତହୁଅ ନାହିଁ।
ମୋ ନାମ ବ୍ୟବହାର କରି ଅନେକ ଲୋକ ଆସିବେ।
ସେମାନେ କହିବେ, 'ମୁଁ ଖ୍ରୀଷ୍ଟ' ଏବଂ 'ଉପଯୁକ୍ତ ସମୟ
ଆସିଯାଇଛି।' କିନ୍ତୁ ତୁମ୍ଭେମାନେ ସେମାନଙ୍କୁ ଅନୁସରଣ
କରିବନାହିଁ। ୯ତୁମ୍ଭେମାନେ ଯେତେବେଳେ ଯୁଦ୍ଧ ଓ ବିଦ୍ରୋହର
ଜନରବ ଶୁଣିବ, କେବେ ଡରିଯିବ ନାହିଁ। ଏସବୁ ଘଟଣା
ନିଶ୍ଚୟ ପ୍ରଥମେ ଘଟିବ। କିନ୍ତୁ ଅନ୍ତିମ ସମୟ ଆସିବାକୁ
ବିଳମ୍ବ ହେବ।"
୧୦ଯୀଶୁ ସେମାନଙ୍କୁ କହିଲେ, "ଦେଶଦେଶ ବିରୁଦ୍ଧରେ
ଲଢ଼େଇ କରିବେ। ରାଜ୍ୟରାଜ୍ୟ ବିରୁଦ୍ଧରେ ଲଢ଼େଇ କରିବେ।
୧୧ଭୟାନକ ଭୂମିକମ୍ପ, ରୋଗ ଓ ଅମଙ୍ଗଳର ବିଷୟ ସବୁ
ଅନେକ ସ୍ଥାନରେ ଘଟିବ। କେତେକ ସ୍ଥାନରେ ମରୁଡ଼ି
ପଡ଼ିବ, ଲୋକେ ଖାଇବାକୁ ପାଇବେ ନାହିଁ। ଭୟଙ୍କର
ଘଟଣାମାନ ଘଟିବ। ଲୋକମାନଙ୍କୁ ଚେତାବନୀ ଦେବା
ପାଇଁ ଆକାଶରେ ଅନେକ ଆଶ୍ଚର୍ଯ୍ୟଜନକ ବିଷୟ ଦେଖାଯିବ।
୧୨"କିନ୍ତୁ ଏସବୁ ଘଟଣା ଘଟିବା ପୂର୍ବରୁ ଲୋକେ ତୁମ୍ଭମାନଙ୍କୁ
ବନ୍ଦୀ କରିନେବେ, ଓ ତୁମ୍ଭମାନଙ୍କୁ ଯନ୍ତ୍ରଣା ଦେବେ।
ଲୋକମାନେ ସେମାନଙ୍କର ପ୍ରାର୍ଥନାଗୃହମାନଙ୍କରେ ତୁମ୍ଭମାନଙ୍କର
ବିଚାର କରିବେ ଓ ତୁମ୍ଭମାନଙ୍କୁ କାରାଗାରରେ ବନ୍ଦୀ
କରିବେ। ରାଜା ଓ ଶାସନକର୍ତ୍ତାଙ୍କ ସାମନାରେ ତୁମ୍ଭମାନଙ୍କୁ
ହାଜର କରାଯିବ। ତୁମ୍ଭେମାନେ ମୋର ଅନୁସରଣ କରୁଥିବା
ଯୋଗୁ ଲୋକମାନେ ତୁମ୍ଭମାନଙ୍କ ପ୍ରତି ଏଭଳି ବ୍ୟବହାର
କରିବେ। ୧୩କିନ୍ତୁ ଏହା ତୁମ୍ଭମାନଙ୍କୁ ମୋ ବିଷୟରେ
କହିବାକୁ ସୁଯୋଗ ଦେବ। ୧୪ତୁମ୍ଭେମାନେ ନିଜକୁ ରକ୍ଷା
କରିବା ପାଇଁ କ'ଣ କହିବ, ସେଥି ପାଇଁ ଆଦୌ ବ୍ୟସ୍ତ
ହୁଅନାହିଁ। ୧୫ମୁଁ ତୁମ୍ଭକୁ କହିବାକୁ ଜ୍ଞାନ ପ୍ରଦାନ କରିବି।
ତୁମ୍ଭେମାନେ ଯାହା କହିବ, ତୁମ୍ଭର କୌଣସି ଶତ୍ରୁ ତାର
ଉତ୍ତର ଦେଇ ପାରିବେନାହିଁ। ୧୬ଏପରିକି ତୁମ୍ଭମାନଙ୍କର
ବାପାମାଆ, ଭାଇ, ସମ୍ପର୍କୀୟ ଓ ବନ୍ଧୁମାନେ ତୁମ୍ଭମାନଙ୍କର
ବିରୋଧୀ ହୋଇଯିବେ। ସେମାନେ ତୁମ୍ଭମାନଙ୍କ ମଧ୍ୟରୁ
କେତେକଙ୍କୁ ମାରିଦେବେ। ୧୭ତୁମ୍ଭେମାନେ ମୋର ଅନୁସରଣ
କରୁଥିବା ଯୋଗୁ ସବୁ ଲୋକେ ତୁମ୍ଭମାନଙ୍କୁ ଘୃଣା କରିବେ।
୧୮କିନ୍ତୁ ପ୍ରକୃତରେ ଏଥି ମଧ୍ୟରୁ କାହାରି ଦ୍ୱାରା ମଧ୍ୟ
ତୁମ୍ଭମାନଙ୍କ କ୍ଷତି ହେବନାହିଁ। ୧୯ଏହି ସବୁ ଘଟଣା ଭିତରେ
ତୁମ୍ଭେମାନେ ତୁମ୍ଭ ବିଶ୍ୱାସରେ ଦୃଢ଼ ରହିଲେ ନିଜକୁ ରକ୍ଷା
କରିପାରିବ।

### ଯିରୂଶାଲମର ଧ୍ୱଂସ

୨୦"ତୁମ୍ଭେମାନେ ଯିରୂଶାଲମର ଚାରିପଟେ ସୈନ୍ୟବାହିନୀଙ୍କୁ
ଘେରି ରହିଥିବାର ଦେଖିବ। ତେବେ ତୁମ୍ଭେମାନେ ଜାଣିପାରିବ
ଯେ ଯିରୂଶାଲମର ଧ୍ୱଂସ ହେବା ସମୟ ଆସି ପହଞ୍ଚି
ଗଲାଣି। ୨୧ସେତେବେଳେ ଯିହୂଦାର ଲୋକେ ପର୍ବତ
ଆଡ଼କୁ ପଳାଇଯିବା ଉଚିତ। ଯିରୂଶାଲମ ନଗର ଭିତରେ
ଥିବା ଲୋକେ ଯଥାଶୀଘ୍ର ନଗର ଛାଡ଼ି ଚାଲିଯିବା ଉଚିତ।
ଜଣେ ଯଦି ନଗର ବାହାରେ ଥିବ, ତେବେ ସେ ନଗର
ଭିତରକୁ ଯିବା ଉଚିତ ନୁହେଁ। ୨୨ପରମେଶ୍ୱର କେତେବେଳେ
ତାହାଙ୍କ ଲୋକମାନଙ୍କୁ ଦଣ୍ଡ ଦେବେ, ସେହି ସମୟ
ବିଷୟରେ ଭବିଷ୍ୟଦ୍‌ବକ୍ତାମାନେ ଅନେକ କଥା ଲେଖିଛନ୍ତି।
ମୁଁ ତୁମ୍ଭମାନଙ୍କୁ ସେହି ସମୟ ବିଷୟରେ କହୁଛି, ଯେତେବେଳେ
ସମସ୍ତ ଘଟଣା ନିଶ୍ଚିତ ରୂପରେ ଘଟିବ। ୨୩ଗର୍ଭବତୀ ସ୍ତ୍ରୀ
ଓ କୋଳରେ ଛୋଟ ଶିଶୁ ଥିବା ସ୍ତ୍ରୀମାନଙ୍କ ପାଇଁ ସେହି
ଦିନଗୁଡ଼ିକ ଅତ୍ୟନ୍ତ ଭୟାନକ ହେବ। କାରଣ ସେହି
ଦିନମାନଙ୍କରେ ଏହି ଦେଶ ଉପରକୁ ବହୁତ ବିପଦ ମାଡ଼ି
ଆସିବ। ଏବଂ ଏହି ଲୋକଙ୍କ ଉପରେ ପରମେଶ୍ୱର କ୍ରୋଧ
କରିବେ। ୨୪କେତେକ ଲୋକଙ୍କୁ ସୈନ୍ୟମାନେ ମାରିଦେବେ।
ଅନ୍ୟ କେତେକଙ୍କୁ ବନ୍ଦୀ କରି ଅନ୍ୟ ସବୁ ଦେଶକୁ
ପଠାଇ ଦିଆଯିବ। ଅଣଯିହୂଦୀଲୋକ ସେମାନଙ୍କର ସମୟ

ଶେଷ ନହେବା ପର୍ଯ୍ୟନ୍ତ ପବିତ୍ର ନଗର ଯିରୂଶାଲମକୁ
ପଦଦଳିତ କରିବେ।

### ଭୟ କରନାହିଁ

୨୫"ସୂର୍ଯ୍ୟ, ଚନ୍ଦ୍ର ଓ ତାରାମାନଙ୍କରେ ସଙ୍କେତ ରୂପକ
ଅନେକ ଅଦ୍‌ଭୁତ ବିଷୟ ଘଟିବ। ପୃଥିବୀରେ ଲୋକମାନେ
ନିରାଶ ଅନୁଭବ କରିବ। ସମୁଦ୍ର ଗୁଡ଼ିକ ଭୟଙ୍କର ରୂପ
ଧାରଣ କରିବ। ଲୋକେ କଣ ପାଇଁ ଏପରି ହେଲା,
ଜାଣିବେ ନାହିଁ। ୨୬ସଂସାରକୁ ମାଡ଼ି ଆସୁଥିବା ବିପଦକୁ
ଚିନ୍ତାକରି ଲୋକେ ଭୟରେ ମୂର୍ଚ୍ଛିତ ହୋଇଯିବେ। ଆକାଶ
ମଣ୍ଡଳର ପ୍ରତ୍ୟେକ ବିଷୟ ବଦଳି ଯିବ। ୨୭ସେତେବେଳେ
ଲୋକେ ମନୁଷ୍ୟ ପୁତ୍ରଙ୍କୁ ଶକ୍ତି ଓ ମହାଗୌରବ ସହିତ
ମେଘମାଳା ଉପରେ ଆସୁ ଥିବାର ଦେଖିବେ। ୨୮ଯେତେବେଳେ
ଏସବୁ ଘଟଣା ଘଟିବା ଆରମ୍ଭ ହୋଇଯିବ, ତୁମ୍ଭେମାନେ
ଭୟ କରିବନାହିଁ। ଉପରକୁ ଚାହିଁ ଖୁସି ହେବ, ଆଦୌ
ବ୍ୟସ୍ତ ହେବନାହିଁ। କାରଣ ତୁମ୍ଭମାନଙ୍କର ମୁକ୍ତି ସମୟ
ପାଖ ହୋଇଗଲାଣି ବୋଲି ଏଥିରୁ ଜାଣିବ।"

### ମୋର ବାକ୍ୟ ଅନନ୍ତକାଳସ୍ଥାୟୀ

୨୯ତାପରେ ଯୀଶୁ ଏହି ଦୃଷ୍ଟାନ୍ତଟି କହିଲେ: "ସବୁ ଗଛ
ଗୁଡ଼ିକୁ ଦେଖ। ଡିମ୍ବିରି ଗଛଟି ଗୋଟିଏ ଭଲ ଉଦାହରଣ।
୩୦ସେଗୁଡ଼ିକରେ ଯେତେବେଳେ ନୂଆ ପତ୍ର କଅଁଳେ,
ତୁମ୍ଭେମାନେ ଜାଣିଥାଅ ଯେ, ଗ୍ରୀଷ୍ମ ଋତୁ ଆସି ପହଞ୍ଚି
ଯାଇଛି। ୩୧ସେହିଭଳି ମୁଁ ତୁମ୍ଭମାନଙ୍କୁ ଯାହା କହୁଛି
ସେଗୁଡ଼ିକ ଘଟିବ। ଏହିସବୁ ଘଟଣା ଘଟିବା ଦେଖିଲେ
ତୁମ୍ଭେମାନେ ଜାଣି ପାରିବ ଯେ, ପରମେଶ୍ୱରଙ୍କ ରାଜ୍ୟ
ନିକଟ ହୋଇଗଲାଣି।
୩୨"ମୁଁ ତୁମ୍ଭମାନଙ୍କୁ ସତ୍ୟ କହୁଛି, ଏହି ସବୁରେ
ଲୋକେ ବଞ୍ଚିଥିବା ସମୟ ଭିତରେ ଏସବୁ ଘଟଣା ଘଟିବ।
୩୩ପୃଥିବୀ ଓ ଆକାଶ ଲୋପ ହୋଇଯାଇପାରେ। କିନ୍ତୁ
ମୋର ବାକ୍ୟ କଦାପି ଲୋପ ହେବନାହିଁ। ମୋର ବାକ୍ୟ
ଅନନ୍ତକାଳସ୍ଥାୟୀ।

### ସଦାବେଳେ ପ୍ରସ୍ତୁତ ଥାଅ

୩୪"ସାବଧାନ ରୁହ। ତୁମ୍ଭେମାନେ ମଦ୍ୟପାନ କରି
ମାତାଲ ହୋଇ ନିଜ ସମୟ ନଷ୍ଟ କରନାହିଁ। ସଂସାରିକ
ବସ୍ତୁଗୁଡ଼ିକ ବିଷୟରେ ଅତ୍ୟଧିକ ଚିନ୍ତିତ ହୋଇ ପଡ଼ନାହିଁ।
ସେଭଳି କଲେ ତୁମ୍ଭେମାନେ ଜଡ଼ ହୋଇଯିବ ଓ ଉଚିତ
କଥା କେବେ ଭାବି ପାରିବନାହିଁ। ଏବଂ ତୁମ୍ଭେମାନେ ପ୍ରସ୍ତୁତ
ନଥିବା ବେଳେ ଅନ୍ତିମକାଳ ଆସିଯାଇପାରେ। ୩୫ପୃଥିବୀରେ
ରହୁଥିବା ସମସ୍ତ ଲୋକମାନଙ୍କ ପାଖକୁ ଏହା ଏକ ଫାନ୍ଦ
ଭଳି ଆସିଯିବ। ୩୬ତେଣୁ ସଦାବେଳେ ପ୍ରସ୍ତୁତ ଥାଅ।
ଯେଉଁସବୁ ଘଟଣା ଘଟିବାକୁ ଯାଉଅଛି, ସେଗୁଡ଼ିକ ମଧ୍ୟଦେଇ
ନିରାପଦରେ ଗତି କରିବାକୁ ଶକ୍ତିଲାଭ ପାଇଁ ପ୍ରାର୍ଥନା
କର। ତୁମ୍ଭେମାନେ ଆତ୍ମବିଶ୍ୱାସର ସହିତ ମନୁଷ୍ୟପୁତ୍ରଙ୍କ
ଆଗରେ ଠିଆ ହୋଇ ପାରିବା ପାଇଁ ପ୍ରାର୍ଥନା
କର।"

୩୭ସେହି ଦିନଗୁଡ଼ିକରେ ଯୀଶୁ ଲୋକମାନଙ୍କୁ ମନ୍ଦିରରେ
ଉପଦେଶ ଦେଉଥିଲେ। ରାତ୍ରିକାଳରେ ସେ ନଗର ବାହାରକୁ
ଚାଲି ଯାଉଥିଲେ ଓ ସାରା ରାତି ଜୀତ ପର୍ବତ ଉପରେ
କଟାଉଥିଲେ। ୩୮ଲୋକମାନେ ମନ୍ଦିରକୁ ଯାଇ ଯୀଶୁଙ୍କ
ଉପଦେଶ ଶୁଣିବା ପାଇଁ, ପ୍ରତିଦିନ ଅତି ସକାଳୁ ଉଠି
ପଡ଼ୁଥିଲେ।

### ଯିହୂଦୀ ନେତାମାନେ ଯୀଶୁଙ୍କୁ ମାରିଦେବାକୁ ଚାହିଁଲେ

**୨୨** ଖମୀରଶୂନ୍ୟ ରୋଟୀ ପର୍ବ, ଯାହାକୁ ନିସ୍ତାର
ପର୍ବ ମଧ୍ୟ କୁହାଯାଏ, ତାହାର ସମୟ ନିକଟ
ହୋଇ ଆସୁଥିଲା। ୨ପ୍ରଧାନ ଯାଜକ ଓ ଧର୍ମଶାସ୍ତ୍ରୀମାନେ
ଯୀଶୁଙ୍କୁ ଜୀବନରେ ମାରିଦେବା ପାଇଁ ଉପାୟ ଖୋଜୁଥିଲେ।
କିନ୍ତୁ ସେମାନେ ଲୋକମାନଙ୍କୁ ଭୟ କରୁଥିଲେ।

### ଯୀଶୁଙ୍କ ବିରୁଦ୍ଧରେ ଯିହୂଦାଙ୍କ ଯୋଜନା

୩ଯୀଶୁଙ୍କର ବାରଜଣ ପ୍ରେରିତଙ୍କ ମଧ୍ୟରେ ଜଣକର
ନାମ ଥିଲା ଇଷ୍କାରିୟୋଥ ଯିହୂଦା। ଶୟତାନ ଯିହୂଦାଙ୍କ
ଶରୀର ମଧ୍ୟରେ ପ୍ରବେଶ କରି ତାହାଙ୍କୁ ଗୋଟିଏ ଖରାପ
କାମ କରିବା ପାଇଁ ପ୍ରବର୍ତ୍ତାଇଲା। ୪ଯିହୂଦା ଯାଇ ପ୍ରଧାନ
ଯାଜକ ଓ ମନ୍ଦିରର ସେନାପତିମାନଙ୍କ ସହିତ କଥାବାର୍ତ୍ତା
କଲା। ଯୀଶୁଙ୍କୁ ସେମାନଙ୍କ ହାତରେ ସମର୍ପଣ କରିବା
ପାଇଁ ଯିହୂଦା ସେମାନଙ୍କ ସହିତ ଏକ ମନ୍ତ୍ରଣା କଲା।
୫ଏଥିରେ ଯାଜକମାନେ ଖୁସି ହୋଇଗଲେ। ଯୀଶୁଙ୍କୁ ସେମାନଙ୍କ
ହାତରେ ଦେଇ ଦେଲେ ସେମାନେ ଯିହୂଦାକୁ ଅର୍ଥ
ଦେବାପାଇଁ ପ୍ରତିଶ୍ରୁତି ଦେଲେ। ୬ଯିହୂଦା ରାଜି ହେଲା। ସେ
ଯୀଶୁଙ୍କୁ ଯାଜକମାନଙ୍କ ହାତରେ ଧରେଇ ଦେବାପାଇଁ
ଗୋଟିଏ ସୁଯୋଗର ଅପେକ୍ଷାରେ ରହିଲା। ଯିହୂଦା ଚାହୁଁଥିଲା
ଯେ, ଯେତେବେଳେ କୌଣସି ଲୋକ ଉପସ୍ଥିତ ନଥିବେ,
ସେ ସେତିକିବେଳେ ଏ କାମ କରିବ।

### ନିସ୍ତାର ପର୍ବର ଖାଦ୍ୟ ତିଆରି

୭ଖମୀର ହୀନ ରୋଟୀ ପର୍ବର* ଦିନଟି ଆସିଗଲା।
ଏହି ଦିନ ଯିହୂଦୀମାନେ ନିସ୍ତାରପର୍ବର ମେଷଶାବକମାନଙ୍କୁ
ବଳି ଦିଅନ୍ତି। ୮ଯୀଶୁ ପିତର ଓ ଯୋହନଙ୍କୁ କହିଲେ,
"ତୁମ୍ଭେମାନେ ଯାଇ ଆମ୍ଭମାନଙ୍କର ଖାଇବା ପାଇଁ ନିସ୍ତାରପର୍ବର
ଖାଦ୍ୟ ପ୍ରସ୍ତୁତି କର।"
୯ପିତର ଓ ଯୋହନ ଯୀଶୁଙ୍କୁ ପଚାରିଲେ, "ଏ ଖାଦ୍ୟ
କେଉଁ ସ୍ଥାନରେ ଆମ୍ଭେ ପ୍ରସ୍ତୁତି କରିବୁ ବୋଲି ଆପଣ
ଚାହୁଁଛନ୍ତି?"
ଯୀଶୁ ସେମାନଙ୍କୁ କହିଲେ, ୧୦"ଶୁଣ! ତୁମ୍ଭେମାନେ
ନଗର ଭିତରକୁ ଯିବା ପରେ ଜଣେ ଲୋକକୁ ପାଣି
ମାଠିଆଟିଏ ନେଇ ଯାଉଥିବାର ଦେଖିବ। ତୁମ୍ଭେମାନେ ତା

---

**ଖମୀର ହୀନ ରୋଟୀ ପର୍ବ** ଯିହୂଦୀମାନଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ଉତ୍ସବ। ପୁରାତନ ନିୟମ ଅନୁସାରେ ଏହା ନିସ୍ତାର-ପର୍ବ ପରଦିନ ଆରମ୍ଭ ହେଉଥିଲା। ପରେ ଦୁଇଟି ଯାକ ପର୍ବ ମିଶି ଏକାକାର ହୋଇ ଯାଉଛି।

ପଛେପଛେ ଯିବ। ସେ ଗୋଟିଏ ଘର ଭିତରକୁ ଯିବ।
ତୁମ୍ଭେମାନେ ତା ସହିତ ଯିବ। ୧୧ତୁମ୍ଭେମାନେ ଘରମାଲିକଙ୍କୁ
ପଚାରିବ, 'ଗୁରୁ ପଚାରୁଛନ୍ତି ଯେ ସେ ଓ ତାହାଙ୍କର
ଶିଷ୍ୟମାନେ ନିସ୍ତାରପର୍ବର* ଖାଦ୍ୟ ଯେଉଁଠାରେ ଖାଇବେ,
ତୁମ୍ଭେ ତାହା ଆମ୍ଭକୁ ଦେଖାଇ ଦିଅ।' ୧୨ତାପରେ ଘରମାଲିକ
ତୁମ୍ଭମାନଙ୍କୁ ଉପର ମହଲାର ଗୋଟିଏ ବଡ ବଖରା
ଦେଖାଇଦେବେ। ଏ ବଖରାଟି ତୁମ୍ଭମାନଙ୍କ ପାଇଁ ସଜାଇ
ରଖା ଯାଇଥିବ। ସେଠାରେ ତୁମ୍ଭେମାନେ ନିସ୍ତାର ପର୍ବର
ଖାଦ୍ୟ ପ୍ରସ୍ତୁତ କରିବ।"
୧୩ପିତର ଓ ଯୋହନ ବାହାରିଗଲେ। ଯୀଶୁ ଯେଉଁଭଳି
କହିଥିଲେ, ସବୁ ଘଟଣା ସେହିଭଳି ଘଟିଲା। ସେମାନେ
ନିସ୍ତାର ପର୍ବର ଖାଦ୍ୟ ପ୍ରସ୍ତୁତ କଲେ।

### ଯୀଶୁଙ୍କ ରାତ୍ରଭୋଜନ

୧୪ସେମାନେ ନିସ୍ତାର ପର୍ବର ଖାଦ୍ୟ ଖାଇବାର ସମୟ
ହେଲା। ଯୀଶୁ ଓ ପ୍ରେରିତମାନେ ଖାଇ ବସିଲେ। ୧୫ଯୀଶୁ
ସେମାନଙ୍କୁ କହିଲେ, "ମୁଁ ମୋ ମୃତ୍ୟୁ ପୂର୍ବରୁ ତୁମ୍ଭମାନଙ୍କ
ସହିତ ଏକାଠି ଏହି ନିସ୍ତାର ପର୍ବର ଖାଦ୍ୟ ଖାଇବା ପାଇଁ
ଏକାନ୍ତ ଇଚ୍ଛା କରିଥିଲି। ୧୬ମୁଁ ତୁମ୍ଭମାନଙ୍କୁ କହୁଛି,
ପରମେଶ୍ୱରଙ୍କ ରାଜ୍ୟରେ ଏହାର ବାସ୍ତବ ଅର୍ଥ ସ୍ପଷ୍ଟ
ନହେବା ପର୍ଯ୍ୟନ୍ତ ମୁଁ କେବେହେଲେ ନିସ୍ତାର ପର୍ବର ଖାଦ୍ୟ
ଆଉ ଖାଇବି ନାହିଁ।"
୧୭ତାପରେ ଯୀଶୁ ଗୋଟିଏ ପାତ୍ରରେ ଅଙ୍ଗୁରରସ ନେଲେ।
ଏଥିପାଇଁ ସେ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ସେ
କହିଲେ, "ଏହି ପାତ୍ର ନିଅ, ଏଥିରେ ଥିବା ଅଙ୍ଗୁରରସ
ସମସ୍ତଙ୍କୁ ଦିଅ।" ୧୮ମୁଁ ତୁମ୍ଭମାନଙ୍କୁ କହୁଛି ପରମେଶ୍ୱରଙ୍କ
ରାଜ୍ୟ ନ ଆସିବା ପର୍ଯ୍ୟନ୍ତ ମୁଁ ପୁନର୍ବାର ଅଙ୍ଗୁରରସ ପାନ
କରିବି ନାହିଁ।"
୧୯ତାପରେ ଯୀଶୁ କିଛି ରୋଟୀ ନେଲେ। ରୋଟୀ ପାଇଁ
ସେ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ। ସେ ରୋଟୀକୁ
ଖଣ୍ଡଖଣ୍ଡ କରି ତାହା ପ୍ରେରିତମାନଙ୍କୁ ଦେଲେ। ତା'ପରେ
ଯୀଶୁ କହିଲେ, "ଏହି ରୋଟୀ ମୋର ଶରୀର। ଏହା ମୁଁ
ତୁମ୍ଭମାନଙ୍କ ପାଇଁ ଦେଉଛି। ମୋତେ ମନେ ରଖିବା ପାଇଁ
ଏହା କର।" ୨୦ସେହିଭଳି ରାତ୍ରଭୋଜନ ପରେ ଯୀଶୁ
ଅଙ୍ଗୁରରସର ପାତ୍ରଟି ଧରି କହିଲେ। "ଏହି ଅଙ୍ଗୁରରସ
ଦର୍ଶାଏ ଯେ ପରମେଶ୍ୱରଙ୍କ ତାହାଙ୍କ ଲୋକମାନଙ୍କ ସହିତ
ଗୋଟିଏ ନୂଆ ଚୁକ୍ତି କରି ଅଛନ୍ତି। ମୁଁ ତୁମ୍ଭମାନଙ୍କୁ
ଦେଉଥିବା ମୋର ରକ୍ତରେ ଏହି ଚୁକ୍ତି ଆରମ୍ଭ ହୁଏ।"*

### କିଏ ଯୀଶୁଙ୍କ ବିରୁଦ୍ଧରେ ଉଠିବ?

୨୧ଯୀଶୁ କହିଲେ, "ତୁମ୍ଭମାନଙ୍କ ଭିତରୁ ଜଣେ ଶୀଘ୍ର
ମୋ ପ୍ରତି ବିଶ୍ୱାସଘାତକତା କରିବ। ତାର ହାତ ମୋ
ହାତ ପାଖରେ ଏହି ଟେବୁଲ ଉପରେ ଅଛି। ୨୨ପରମେଶ୍ୱର
ଯେପରି ନିରୂପଣ କରିଛନ୍ତି, ମନୁଷ୍ୟପୁତ୍ର ସେହି ଅନୁସାରେ
ମୃତ୍ୟୁ ଭୋଗ କରିବେ। କିନ୍ତୁ ମନୁଷ୍ୟ ପୁତ୍ରଙ୍କୁ ଯେଉଁଲୋକ
ହତ ହେବାପାଇଁ ଶତ୍ରୁ ହାତରେ ଦେଇଦବ, ତା' ପକ୍ଷରେ
ଏହା ବହୁତ ଖରାପ ହେବ।"
୨୩ତା'ପରେ ପ୍ରେରିତମାନେ ପରସ୍ପର ପଚରାପଚରି ହେଲେ,
"ଆମ୍ଭଭିତରୁ କିଏ ଯୀଶୁଙ୍କ ପ୍ରତି ଏପରି ଆଚରଣ କରିବ?"

### ଜଣେ ସେବକ ଭଳି ହୁଅ

୨୪ସେମାନଙ୍କ ମଧ୍ୟରେ ସବୁଠାରୁ କିଏ ଶ୍ରେଷ୍ଠ ପ୍ରେରିତମାନେ
ସେହି ବିଷୟରେ ପରସ୍ପର ମଧ୍ୟରେ ବାଦାନୁବାଦ କରିବାକୁ
ଲାଗିଲେ। ୨୫କିନ୍ତୁ ଯୀଶୁ ସେମାନଙ୍କୁ କହିଲେ, "ଏହି
ସଂସାରର ଦେଶ ଗୁଡିକର ରାଜାମାନେ ସେମାନଙ୍କ ଲୋକଙ୍କ
ଉପରେ ଶାସନ କରନ୍ତି। ଯେଉଁ ଲୋକମାନଙ୍କର ଅନ୍ୟ
ଲୋକଙ୍କ ଉପରେ ଶାସନ କ୍ଷମତା ଥାଏ, ସେମାନେ ଅନ୍ୟ
ଲୋକଙ୍କ ପାଇଁ ଉପକାରୀ ବୋଲି ଖ୍ୟାତ ହୁଅନ୍ତି। ୨୬କିନ୍ତୁ
ତୁମ୍ଭେମାନେ ସେମାନଙ୍କ ପରି ନୁହଁ, ବରଂ ତୁମ୍ଭମାନଙ୍କ
ମଧ୍ୟରେ ଯେଉଁ ଲୋକ ସବୁଠାରୁ ବଡ, ସେ ସବୁଠାରୁ
ଛୋଟ ହେବା ଉଚିତ। ନେତା ସେବକ ଭଳି ହେବା
ଉଚିତ। ୨୭ସବୁଠାରୁ ଶ୍ରେଷ୍ଠ ଲୋକ କିଏ? ଟେବୁଲ
ପାଖରେ ଖାଇବାକୁ ବସିଥିବା ଲୋକ ନା ତାହାଙ୍କୁ ପରଶୁଥିବା
ଲୋକ? ତୁମ୍ଭେମାନେ ଭାବବଯେ ଖାଇବାକୁ ବସିଥିବା
ଲୋକଟି ଅଧିକ ମହତ। କିନ୍ତୁ ତୁମ୍ଭମାନଙ୍କ ମଧ୍ୟରେ ମୁଁ
ଜଣେ ସେବକ ଭଳି ରହିଛି।
୨୮"ଅନେକ ବାଧାବିଘ୍ନ ଭିତର ଦେଇ ତୁମ୍ଭେମାନେ ମୋ
ସହିତ ରହିଛ। ୨୯ମୋର ପରମପିତା ମୋତେ ଗୋଟିଏ
ରାଜ୍ୟ ଦେଇଛନ୍ତି। ମୋ ସହିତ ତୁମ୍ଭେମାନେ ମଧ୍ୟ ତାହା
ଉପରେ ଶାସନ କରିବାକୁ ମୁଁ ତୁମ୍ଭମାନଙ୍କୁ କ୍ଷମତା ଦେଉଛି।
୩୦ମୋ ରାଜ୍ୟରେ ମୋ ସହିତ ଟେବୁଲ ଉପରେ ତୁମ୍ଭେମାନେ
ଖିଆପିଆ କରିବ। ତୁମ୍ଭେମାନେ ସିଂହାସନଗୁଡିକ ଉପରେ
ବସି ଇସ୍ରାୟେଲର* ବାରଟି ଯାକ ଗୋଷ୍ଠୀର ବିଚାର
କରିବ।

### ବିଶ୍ୱାସ ହରାଅ ନାହିଁ

୩୧"କୃଷକ ତା'ର ଗହମକୁ ଚାଲୁଣୀରେ ଚଲାଇବା ଭଳି
ଶୟତାନ ତୁମ୍ଭମାନଙ୍କୁ ଚଲାଇବା ପାଇଁ ଅନୁମତି ପାଇଛି।
ଶିମୋନ! ହେ ଶିମୋନ, ୩୨ମୁଁ ପ୍ରାର୍ଥନା କରିଛି ଯେ ତୁମ୍ଭର
ବିଶ୍ୱାସ ଲୋପ ନ ହେଉ। ତୁମ୍ଭେମାନେ ମୋ ପାଖକୁ
ଫେରି ଆସିବା ସମୟରେ ନିଜ ଭାଇମାନଙ୍କୁ ବିଶ୍ୱାସରେ
ଦୃଢ଼ ହେବା ପାଇଁ ସାହାର୍ଯ୍ୟ କର।"

---

**ନିସ୍ତାର ପର୍ବ** ଯିହୂଦୀ ମାନଙ୍କର ମୁଖ୍ୟ ପବିତ୍ର ଦିବସ। ପ୍ରତିବର୍ଷ ଏହି ଦିନ ସେମାନେ ଏକ ସ୍ୱତନ୍ତ୍ର ଭୋଜନ କରୁଥିଲେ। ମୋଶାଙ୍କ ସମୟରେ ମିଶରରେ ସେମାନଙ୍କୁ ପରମେଶ୍ୱର ମୁକ୍ତ ଦେଇଥିବା ଘଟଣାକୁ ସ୍ମରଣ କରିବା ପାଇଁ ଏହା ପାଳିତ ହୁଏ।

**ପଦ-୧୯** କେତେକ ଗ୍ରୀକ୍ ପୁସ୍ତକରେ ପଦ-୧୯ର ଶେଷ ଅଂଶ ଓ ସମ୍ପୂର୍ଣ୍ଣ ପଦ-୨୦ ନାହିଁ।

**ଇସ୍ରାୟେଲ** ପ୍ରଥମେ ଇସ୍ରାୟେଲ ଯିହୂଦୀଙ୍କ ରାଷ୍ଟ୍ରଥିଲା। କିନ୍ତୁ ଏହି ନାମଟି ପରମେଶ୍ୱରଙ୍କ ଲୋକଙ୍କ ପାଇଁ ବ୍ୟବହୃତ ହୁଏ।

୩୩କିନ୍ତୁ ପିତର ଯୀଶୁଙ୍କୁ କହିଲେ, "ପ୍ରଭୁ, ମୁଁ ଆପଣଙ୍କ
ସହିତ କାରାଗାରକୁ ଯିବାକୁ ପ୍ରସ୍ତୁତ ଅଛି। ଏପରିକି ମୁଁ
ଆପଣଙ୍କ ସହିତ ମରିବା ପାଇଁ ମଧ୍ୟ ପ୍ରସ୍ତୁତ ଅଛି।"
୩୪ଯୀଶୁ କିନ୍ତୁ କହିଲେ, "ପିତର, ଆସନ୍ତାକାଲି ସକାଳେ
କୁକୁଡ଼ା ଡାକିବା ପୂର୍ବରୁ ତୁମ୍ଭେ କହିବ ଯେ, ତୁମ୍ଭେ
ମୋତେ ଜାଣିନାହିଁ। ଏକଥା ତୁମ୍ଭେ ତିନିଥର କହିବ।"

**ଅସ୍ତ୍ରବଧା ପାଇଁ ପ୍ରସ୍ତୁତ ରୁହ**

୩୫ତା'ପରେ ଯୀଶୁ ପ୍ରେରିତମାନଙ୍କୁ କହିଲେ, "ମୁଁ
ଲୋକମାନଙ୍କ ନିକଟରେ ଉପଦେଶ ଦେବାପାଇଁ ତୁମ୍ଭମାନଙ୍କୁ
ପଠାଇଥିଲି। ମୁଁ ତୁମ୍ଭମାନଙ୍କୁ ଟଙ୍କା, ଥଳି ଓ ଜୋତା ବିନା
ପଠାଇଥିଲି। ତୁମ୍ଭମାନଙ୍କର କୌଣସିଟିରେ ଅଭାବ ଥିଲା
କି?"

ପ୍ରେରିତମାନେ କହିଲେ, "ନା।"

୩୬ଯୀଶୁ ସେମାନଙ୍କୁ କହିଲେ, "କିନ୍ତୁ ଏବେ ଯଦି
ତୁମ୍ଭମାନଙ୍କ ପାଖରେ ଟଙ୍କା କି ଥଳି ଥାଏ, ତେବେ ତାହା
ନିଜ ସାଙ୍ଗରେ ନିଅ। ଯଦି ତୁମ୍ଭମାନଙ୍କର ଖଣ୍ଡାଟିଏ ନଥାଏ
ତେବେ ତୁମ୍ଭେମାନେ ନିଜର କୋଟ ମଧ୍ୟ ବିକିଦେଇ ଖଣ୍ଡା
କିଣ। ୩୭ଶାସ୍ତ୍ର କହେ:

"ଲୋକମାନେ କହିଲେ ଯେ ସେ ଜଣେ ଅପରାଧୀ।"
ଯିଶାଇୟ ୫୩:୧୨

ଏହି ଶାସ୍ତ୍ରର ବାକ୍ୟ ନିଶ୍ଚୟ ଘଟିବ, ଏହା ମୋ ବିଷୟରେ
ଲେଖାଥିଲା, ଏବଂ ଏହା ଏବେ ଘଟୁଛି।"
୩୮ଶିଷ୍ୟମାନେ କହିଲେ ଦେଖନ୍ତୁ ପ୍ରଭୁ ଏଠାରେ ଦୁଇଟି
ଖଣ୍ଡା

ଅଛି, ଯୀଶୁ କହିଲେ, "ଦୁଇଟି ଖଣ୍ଡା ଯଥେଷ୍ଟ।"

**ଯୀଶୁ ପ୍ରେରିତମାନଙ୍କୁ ପ୍ରାର୍ଥନା କରିବାକୁ କହିଲେ**

୩୯ଯୀଶୁ ଯିରୂଶାଲମ ନଗର ଛାଡି ଜୀତପର୍ବତ ଉପରକୁ
ଗଲେ। ସେ ଏପରି ଅଧିକାଂଶ ସମୟରେ କରୁଥିଲେ।
ତାହାଙ୍କର ଶିଷ୍ୟମାନେ ତାହାଙ୍କ ସହିତ ଗଲେ। ୪୦ସେଠାରେ
ପହଞ୍ଚି ଯୀଶୁ ଶିଷ୍ୟମାନଙ୍କୁ କହିଲେ, "ତୁମ୍ଭେମାନେ ଯେପରି
ପରୀକ୍ଷାରେ ନ ପଡ଼ ଏଥିପାଇଁ ପ୍ରାର୍ଥନା କର।"
୪୧ତାପରେ ଯୀଶୁ ସେମାନଙ୍କଠାରୁ ପ୍ରାୟ ପଚାଶ ମିଟର
ଦୂରକୁ ଗଲେ। ସେ, ଆଣ୍ଠୁ ମାଡ଼ି ବସି ପଡ଼ି ପାର୍ଥନା
କଲେ, ୪୨"ହେ ପରମପିତା, ଯଦି ଏହା ତୁମ୍ଭର ଇଚ୍ଛା,
ତେବେ ଦୁଃଖ 'ଯାତନାର ଏହି ପାନ ପାତ୍ର'* ମୋ ଠାରୁ
ଦୂର କର। କିନ୍ତୁ ଯାହା ତୁମ୍ଭର ଇଚ୍ଛା, ତାହା କର। ମୋ
ଇଚ୍ଛାରେ ନୁହେଁ।" ୪୩ତା'ପରେ ସ୍ୱର୍ଗରୁ ଜଣେ ଦୂତ ଆସି
ଦେଖାଦେଲେ। ସେହି ସ୍ୱର୍ଗ ଦୂତଙ୍କୁ ଯୀଶୁଙ୍କୁ ସାହାଯ୍ୟ
କରିବା ପାଇଁ ପଠାଯାଇଥିଲା। ୪୪ଯୀଶୁ ମର୍ମାନ୍ତିକ ପୀଡ଼ାରେ
ବୁଡ଼ି ରହି ଆହୁରି ଦୃଢ଼ ଭାବରେ ପ୍ରାର୍ଥନା କରିବାକୁ
ଲାଗିଲେ। ତାହାଙ୍କ ମୁହଁରୁ ଘନ ଘନ ରକ୍ତ ଟୋପା ଭଳି
ଝାଳ ବାହାରି ଆସି ଭୂଇଁରେ ପଡିଲା। ୪୫ଯୀଶୁ ପ୍ରାର୍ଥନା
କରିସାରି ଶିଷ୍ୟମାନଙ୍କ ପାଖକୁ ଫେରିଗଲେ। ସେମାନେ
ସମସ୍ତେ ଶୋଇ ପଡ଼ିଥିଲେ, (ସେମାନଙ୍କ ଦୁଃଖ ସେମାନଙ୍କୁ
ବହୁତ କ୍ଲାନ୍ତ କରି ପକାଇଥିଲା)। ୪୬ଯୀଶୁ ସେମାନଙ୍କୁ
କହିଲେ, "ତୁମ୍ଭେମାନେ କାହିଁକି ଶୋଇ ପଡ଼ିଛ? ଉଠ ଓ
ପରୀକ୍ଷାରେ ନ ପଡିବାକୁ ତଥା ଶକ୍ତିଲାଭ ପାଇଁ ପ୍ରାର୍ଥନା
କର"।

**ଯୀଶୁ ବନ୍ଦୀ ହେଲେ**

୪୭ଏସବୁ କଥା ଯୀଶୁ କହୁଥିବା ସମୟରେ ଦଳେ
ଲୋକ ସେଠାକୁ ଆସିଲେ। ବାର ଜଣ ପ୍ରେରିତଙ୍କ ମଧ୍ୟରୁ
ଜଣେ ପ୍ରେରିତ ସେହି ଲୋକମାନଙ୍କ ଦଳର ନେତୃତ୍ୱ
ନେଇଥିଲା। ସେ ଥିଲା ଯିହୂଦା। ଯୀଶୁଙ୍କୁ ଚୁମ୍ବନ ଦେଇ
ପାରିବା ପାଇଁ ଯିହୂଦା ଯୀଶୁଙ୍କ ପାଖକୁ ଆସିଲା।
୪୮କିନ୍ତୁ ଯୀଶୁ ତାହାଙ୍କୁ କହିଲେ, "ଯିହୁଦା, ତୁମ୍ଭେ
କ'ଣ ମନୁଷ୍ୟପୁତ୍ରଙ୍କୁ ତାହାଙ୍କ ଶତ୍ରୁମାନଙ୍କ ହାତରେ ଦେଇ
ଦେବାପାଇଁ ବନ୍ଧୁତାର ଚୁମ୍ବନକୁ ବ୍ୟବହାର କରୁଛ?"
୪୯ଯୀଶୁଙ୍କର ଶିଷ୍ୟମାନେ ମଧ୍ୟ ସେଠାରେ ଠିଆ ହୋଇଥିଲେ।
ଯାହା ଘଟୁଥିଲା, ସେମାନେ ସେ ସବୁ ଦେଖୁଥିଲେ,
ସେମାନେ ଯୀଶୁଙ୍କୁ କହିଲେ, "ପ୍ରଭୁ, ଆମ୍ଭେ କ'ଣ ଆମ୍ଭର
ଖଣ୍ଡାର ପ୍ରୟୋଗ କରିବୁ?" ୫୦ଏବଂ ଜଣେ ଶିଷ୍ୟ ଖଣ୍ଡା
ବ୍ୟବହାର କଲା। ମହାଯାଜକଙ୍କର ଚାକରର ଡାହାଣ
କାନଟି ସେ କାଟି ପକାଇଲା।
୫୧ଯୀଶୁ କହିଲେ, "ବନ୍ଦ କର!" ତାପରେ ଯୀଶୁ ସେହି
ଚାକରଟିର କାନ ଛୁଇଁ ସୁସ୍ଥ କରିଦେଲେ।
୫୨ଯୀଶୁଙ୍କୁ ବନ୍ଦୀ କରିବା ପାଇଁ ଯେଉଁ ଦଳ ଆସିଥିଲା,
ସେଥିରେ ପ୍ରଧାନ ଯାଜକ, ପ୍ରାଚୀନ, ଯିହୂଦୀ ନେତା ଓ
ଯିହୂଦୀ ସୈନ୍ୟମାନେ ଥିଲେ। ଯୀଶୁ ସେମାନଙ୍କୁ କହିଲେ,
"ତୁମ୍ଭେମାନେ ଖଣ୍ଡା ଓ ଠେଙ୍ଗା ଧରି ଏଠାକୁ କାହିଁକି
ଆସିଛ? ତୁମ୍ଭେମାନେ କ'ଣ ଭାବୁଛ ଯେ ମୁଁ ଗୋଟିଏ
ଅପରାଧୀ? ୫୩ମନ୍ଦିରରେ ମୁଁ ପ୍ରତ୍ୟେକ ଦିନ ତୁମ୍ଭମାନଙ୍କ
ସହିତ ରହୁଥିଲି। ତୁମ୍ଭେମାନେ ମୋତେ ସେଠାରେ ବନ୍ଦୀ
କରିନେବାକୁ କାହିଁକି ଚେଷ୍ଟା କଲନାହିଁ? କିନ୍ତୁ ଏହି
ସମୟରେ ଆସିଛି ଯେତେବେଳେ ଅନ୍ଧକାର (ପାପ) ରାଜତ୍ୱ
କରିଥାଏ।"

**ଯୀଶୁଙ୍କୁ ଜାଣିଛନ୍ତି ବୋଲି କହିବାକୁ ପିତରଙ୍କ ଭୟ**

୫୪ସେମାନେ ଯୀଶୁଙ୍କୁ ବନ୍ଦୀ କରି ମହାଯାଜକଙ୍କ ଘର
ଭିତରକୁ ନେଇଗଲେ। ପିତର ସେମାନଙ୍କ ପଛେପଛେ
ଗଲେ। କିନ୍ତୁ ସେ ଯୀଶୁଙ୍କ ପାଖାପାଖି ଆସୁ ନ ଥିଲେ।
୫୫ସୈନ୍ୟମାନେ ଅଗଣା ମଝିରେ ନିଆଁ ଜାଳି ଏକାଠି
ବସିଗଲେ। ପିତର ମଧ୍ୟ ସେମାନଙ୍କ ସହିତ ବସିଲେ।
୫୬ଜଣେ ଦାସୀ ପିତରଙ୍କୁ ସେଠାରେ ବସିଥିବାର ଦେଖିଲା।
ସେ ପିତରଙ୍କୁ ଜଳୁଥିବା ନିଆଁର ଆଲୁଅରେ ଦେଖିପାରିଲା।

---

**'ଯାତନାର ଏହି ପାନ ପାତ୍ର'** ଯୀଶୁ ତାଙ୍କ ନିଜପାଇଁ ଘଟିବାକୁ ଯାଉଥିବା ଅଘଟଣ ବିଷୟରେ କହୁଛନ୍ତି। ଅତ୍ୟନ୍ତ ଅସହନୀୟ ସ୍ୱାଦ ଯୁକ୍ତ ପାନୀୟ ଥିବା ପାତ୍ରରୁ ପିଇବା ଯେପରି କଠୋର, ଏହା ଗ୍ରହଣ କରିବା ସେହିପରି କଠୋର।

କନ୍ୟାଦାସୀଟି ମନ ଧାନ ଦେଇ ପିତରଙ୍କ ମୁହଁକୁ ଚାହିଁଲା।
ତା'ପରେ ସେ କହଲା, "ଏଲୋକ ମଧ ତାହାଙ୍କ ସହତ
ଥିଲା।"
୫୭କନ୍ତୁ ପିତର ଏକଥା ଅସ୍ୱୀକାର କଲେ। ସେ
କହଲେ, "ନା ଭଉଣୀ, ମୁଁ ତାହାଙ୍କୁ ଜାଣେନାହିଁ।" ୫୮ଅଳ୍ପ
କଛି ସମୟ ପରେ ଆଉ ଜଣେ ଲୋକ ପିତରଙ୍କୁ ଦେଖି
କହଲା, "ଯୀଶୁଙ୍କ ଅନୁଗମନ କରୁଥିବା ଲୋକଙ୍କ ମଧ୍ୟରୁ
ତୁମ୍ଭେ ମଧ ଜଣେ।"
କନ୍ତୁ ପିତର କହଲେ,"ନା,ମୁଁ ନୁହେଁ।"
୫୯ପ୍ରାୟ ଘଣ୍ଟାଏ ପରେ ଆଉ ଜଣେ ଲୋକ ଦୃଢ଼
ଭାବରେ କହଲା,"ଏହା ସତ୍ୟ। ଏ ଲୋକ ନଶ୍ଚୟ ତାହାଙ୍କ
ସହତ ଥିଲା। କାରଣ ସେ ତ ଗାଲୀଲୀୟ।" ସେହ
ଲୋକ କହଲା ଯେ ସେ ଏ ବଷୟରେ ସମ୍ପୂର୍ଣ୍ଣ ନଃସନ୍ଦେହ।
୬୦କନ୍ତୁ ପିତର କହଲେ, "ନା ଭାଇ! ତୁମ୍ଭେ ଯାହା
କହୁଛ, ମୁଁ ତାହା ଜାଣେନାହିଁ।"
ପିତର ଏକଥା କହବା ବେଳେ ସେହକ୍ଷଣି କୁକୁଡାଟିଏ
ଡ଼ାକଲା। ୬୧ତାପରେ ପ୍ରଭୁ ବୁଲପଡ ପିତରଙ୍କୁ ଏକ
ଲୟରେ ଚାହିଁଲେ। ପିତରଙ୍କର ମନେ ପଡଗଲା ଯେ, ପ୍ରଭୁ
ପୂର୍ବରୁ କହଥିଲେ, "ସକାଳେ କୁକୁଡ଼ା ଡ଼ାକବା ପୂର୍ବରୁ
ତୁମ୍ଭେ ମତେ ଜାଣି ନାହିଁ ବୋଲ ତିନଥର କହବ।"
୬୨ତା'ପରେ ପିତର ବାହାରକୁ ବାହାରଯାଇ ବ୍ୟାକୁଳ ଭାବରେ
କାନ୍ଦିବାକୁ ଲାଗିଲେ।

## ଲୋକମାନେ ଯୀଶୁଙ୍କୁ ଉପହାସ କଲେ

୬୩-୬୪କେତେକ ଲୋକ ଯୀଶୁଙ୍କୁ ଜଗିଥିଲେ। ସେମାନେ
ଯୀଶୁଙ୍କୁ ଥଟ୍ଟା କଲେ। ଯୀଶୁ ଯେପର ସେମାନଙ୍କୁ ଦେଖି
ନ ପାରନ୍ତ, ଏଥି ପାଇଁ ସେମାନେ ତାହାଙ୍କ ମୁହଁ ଘୋଡ଼ାଇ
ଦେଲେ। ସେମାନେ ଯୀଶୁଙ୍କୁ ପିଟିବାକୁ ଲାଗିଲେ। ସେମାନେ
ତାହାଙ୍କୁ ପଚାରଲେ, "ତୁମ୍ଭେ ପରା ଭବଷ୍ୟଦ୍‌ବକ୍ତା। କୁହ
ତ ଦେଖି, ତୁମ୍ଭକୁ କଏ ମାରଲା? ୬୫ଲୋକମାନେ ଯୀଶୁଙ୍କୁ
ଅନେକ କଦର୍ଯ୍ୟ କଥା କହବାକୁ ଲାଗିଲେ।

## ଯିହୂଦୀ ନେତାଙ୍କ ସାମନାରେ ଯୀଶୁ

୬୬ତ'ପରଦନ ସକାଳେ, ପ୍ରାଚୀନ ଯିହୂଦୀ ନେତା ଗଣ,
ପ୍ରଧାନ ଯାଜକ ଓ ଧର୍ମଶାସ୍ତ୍ରୀମାନେ ଏକାଠି ହେଲେ।
ସେମାନେ ଯୀଶୁଙ୍କୁ ସେମାନଙ୍କର ସର୍ବୋଚ୍ଚ ନ୍ୟାୟାଳୟକୁ
ନେଇଗଲେ ୬୭ସେମାନେ କହିଲେ, "ତୁମ୍ଭେ ଯଦ ଖ୍ରୀଷ୍ଟ,
ତେବେ ତାହା ଆମ୍ଭକୁ କୁହ।"
ଯୀଶୁ ସେମାନଙ୍କୁ ଉତ୍ତର ଦେଲେ, "ମୁଁ ଯଦ କୁହେ
ଯେ ମୁଁ ଖ୍ରୀଷ୍ଟ ତୁମ୍ଭେମାନେ ମୋତେ ବଶ୍ୱାସ କରବ ନାହିଁ।
୬୮ଏବଂ ମୁଁ ଯଦ ତୁମ୍ଭମାନଙ୍କୁ ପ୍ରଶ୍ନ ପଚାରେ, ତେବେ
ତୁମ୍ଭେମାନେ ତାର ଉତ୍ତର ଦେବନାହିଁ। ୬୯କନ୍ତୁ ବର୍ତ୍ତମାନଠାରୁ
ମନୁଷ୍ୟପୁତ୍ର ପରମେଶ୍ୱରଙ୍କ ସିଂହାସନରେ ଡାହାଣ ପଟେ
ବସିବେ।"
୭୦ସେମାନେ ସମସ୍ତେ କହଲେ, "ତେବେ କ'ଣ ତୁମ୍ଭେ
ପରମେଶ୍ୱରଙ୍କ ପୁତ୍ର?" ଯୀଶୁ ସେମାନଙ୍କୁ କହଲେ, "ହଁ,
ତୁମ୍ଭେ ଯାହା କହଛ, ତାହା ଠିକ୍।"
୭୧ସେମାନେ କହଲେ, "ତେବେ ଆମ୍ଭର ବର୍ତ୍ତମାନ
ଆଉ ସାକ୍ଷୀ କ'ଣ ଦରକାର? ଆମ୍ଭେ ତ ନଜେ ତାହାଙ୍କ
ମୁହଁରୁ ଏହା ଶୁଣଲୁ।"

## ଯୀଶୁଙ୍କୁ ରାଜ୍ୟପାଳ ପୀଲାତଙ୍କ ପ୍ରଶ୍ନ

୨୩ ସମସ୍ତେ ଉଠି ଠିଆହେଲେ। ସେମାନେ ଯୀଶୁଙ୍କୁ
ପୀଲାତଙ୍କ ପାଖକୁ ନେଇଗଲେ। ୨ସେମାନେ
ଯୀଶୁଙ୍କୁ ଦୋଷ ଦେବାକୁ ଲାଗିଲେ। ସେମାନେ ପୀଲାତଙ୍କୁ
କହଲେ, "ଆମ୍ଭର ଲୋକମାନଙ୍କୁ ବଭ୍ରାନ୍ତ କରବାକୁ ଚେଷ୍ଟା
କରୁଥିବା ବେଳେ ଆମ୍ଭେମାନେ ଏହାଙ୍କୁ ଧରଛୁ। ସେ
ଲୋକମାନଙ୍କୁ କହୁଛନ୍ତ ଯେ କାଇସରଙ୍କୁ କର ଦେବା
ଉଚତ ନୁହେଁ। ସେ ନଜକୁ ଖ୍ରୀଷ୍ଟ, ଜଣେ ରାଜା ବୋଲ
କହୁଛ।"
୩ପୀଲାତ ଯୀଶୁଙ୍କୁ ପଚାରଲେ, "ତୁମ୍ଭେ କ'ଣ
ଯିହୁଦୀମାନଙ୍କର ରାଜା?"
ଯୀଶୁ ଉତ୍ତର ଦେଲେ, "ହଁ ତାହା ଠିକ୍ କଥା।"
୪ପୀଲାତ ପ୍ରଧାନ ଯାଜକ ଏବଂ ଲୋକମାନଙ୍କୁ କହଲେ,
"ଏ ଲୋକର ମୁଁ କଛି ଭୁଲ ଦେଖି ପାରୁନାହିଁ,"
୫ସେମାନେ କନ୍ତୁ ବାରମ୍ବାର କହଲେ, "ସେ ଲୋକଙ୍କ
ମଧ୍ୟରେ ଗୋଳମାଳ ସୃଷ୍ଟି କରୁଛନ୍ତ। ଯିହୂଦାର ଚାରଆଡେ
ସେ ଲୋକଙ୍କୁ ଉପଦେଶ ଦେଉଛନ୍ତ। ସେ ଏହା
ଗାଲୀଲୀରେ ଆରମ୍ଭ କରଥିଲେ। ଏବେ ସେ ଏଠାରେ
ଅଛନ୍ତ।"

## ପୀଲାତ ଯୀଶୁଙ୍କୁ ହେରୋଦଙ୍କ ପାଖକୁ ପଠାଇଲେ

୬ପୀଲାତ ଏହା ଶୁଣି ପଚାରଲେ, ଏହ ଲୋକ କ'ଣ
ଗାଲୀଲୀର? ୭ପୀଲାତ ଜାଣିଲେ ଯେ, ଯୀଶୁ ହେରୋଦଙ୍କ
ଅଧିକାରକ୍ଷେତ୍ରର ଲୋକ। ହେରୋଦ ସେହ ସମୟରେ
ଯିରୂଶାଲମରେ ଥିଲେ। ତେଣୁ ପୀଲାତ ଯୀଶୁଙ୍କୁ ତାହାଙ୍କ
ପାଖକୁ ପଠାଇଦେଲେ। ୮ହେରୋଦ ଯୀଶୁଙ୍କୁ ଦେଖି ବହୁତ
ଖୁସି ହୋଇଗଲେ। ହେରୋଦ ଯୀଶୁଙ୍କ ବଷୟରେ ସବୁକଥା
ଶୁଣି ସାରଥିଲେ। ବହୁ ଆଗରୁ ଯୀଶୁଙ୍କୁ ଦେଖିବାକୁ ସେ
ଇଚ୍ଛା କରଥିଲେ। ହେରୋଦ ଯୀଶୁଙ୍କର ଗୋଟିଏ ଆଶ୍ଚର୍ଯ୍ୟକର୍ମ
ଦେଖିବାକୁ ଚାହୁଁଥିଲେ। ତେଣୁ ସେ ଆଶା କରୁଥିଲେ ଯେ,
ତାହାଙ୍କ ଆଗରେ ଯୀଶୁ କଛି ଆଶ୍ଚର୍ଯ୍ୟକର୍ମ ପ୍ରଦର୍ଶନ
କରବେ। ୯ହେରୋଦ ଯୀଶୁଙ୍କୁ ଅନେକ ପ୍ରଶ୍ନ ପଚାରଲେ।
କନ୍ତୁ ଯୀଶୁ କଛି ହେଲେ ଉତ୍ତର ଦେଲେନାହିଁ। ୧୦ପ୍ରଧାନ
ଯାଜକ ଓ ଧର୍ମଶାସ୍ତ୍ରୀମାନେ ସେଠାରେ ଠିଆ ହୋଇଥିଲେ।
ସେମାନେ ଯୀଶୁଙ୍କ ବରୁଦ୍ଧରେ ଅଭିଯୋଗ ଆଣି ଚତ୍କାର
କର କହୁଥିଲେ। ୧୧ତା'ପରେ ହେରୋଦ ଓ ତାହାଙ୍କ
ସୈନ୍ୟମାନେ ଯୀଶୁଙ୍କୁ ପରହାସ କଲେ। ତାହାଙ୍କୁ ରାଜକୀୟ
ପୋଷାକ ପିନ୍ଧାଇ ଦେଇ ସେମାନେ ଉପହାସ କଲେ।
ତାପରେ ହେରୋଦ ପୀଲାତଙ୍କ ପାଖକୁ ଯୀଶୁଙ୍କୁ ପଠାଇଦେଲେ।
୧୨ଅତୀତରେ ପିଲାତ ଓ ହେରୋଦଙ୍କ ମଧ୍ୟରେ ବରାବର
ଶତ୍ରୁତା ଲାଗିରହୁଥିଲା, କନ୍ତୁ ସେହ ଦନରୁ ସେ ଦୁହେଁ
ବନ୍ଧୁ ହୋଇଗଲେ।

## ଯୀଶୁଙ୍କର ମୃତ୍ୟୁ ନିଶ୍ଚିତ

୧୩ପୀଲାତ, ପ୍ରଧାନ ଯାଜକ ଓ ଯିହୂଦୀନେତାଙ୍କ ସହିତ
ସବୁ ଲୋକଙ୍କୁ ଏକାଠି ଡାକିଲେ। ୧୪ପୀଲାତ ସେମାନଙ୍କୁ
କହିଲେ, "ତୁମ୍ଭେମାନେ ଯୀଶୁଙ୍କୁ ମୋ ପାଖକୁ ଆଣିଛ।
ତୁମ୍ଭେମାନେ କହୁଛ ଯେ ସେ ଲୋକଙ୍କ ମଧ୍ୟରେ ଗୋଳମାଳ
ସୃଷ୍ଟି କରୁଛନ୍ତି। କିନ୍ତୁ ମୁଁ ତୁମ୍ଭମାନଙ୍କ ସମସ୍ତଙ୍କ ଉପସ୍ଥିତିରେ
ତାହାଙ୍କୁ ପ୍ରଶ୍ନ କରିଛି। ତାହାଙ୍କ ଠାରେ ମୁଁ କୌଣସି ଭୁଲ
ଦେଖିପାରିଲିନାହିଁ। ତୁମ୍ଭେମାନେ ଯାହା କହୁଛ, ଯୀଶୁ ସେଥିରେ
ଦୋଷୀ ନୁହନ୍ତି। ୧୫ତାଛଡ଼ା ହେରୋଦ ମଧ୍ୟ ତାହାଙ୍କ
ଠାରେ କୌଣସି ଭୁଲ ଦେଖି ନାହାଁନ୍ତି। ହେରୋଦ ଆମ୍ଭ
ପାଖକୁ ଯୀଶୁଙ୍କୁ ପଠାଇ ଦେଇଛନ୍ତି। ଦେଖ, ଯୀଶୁ କିଛି
ହେଲେ ଭୁଲ କାମ କରି ନାହାଁନ୍ତି। ତେଣୁ ତାହାଙ୍କୁ ବଧ
କରିବା ଠିକ୍ ହେବନାହିଁ। ୧୬ତେଣୁ ତାହାଙ୍କୁ ସାମାନ୍ୟ ଦଣ୍ଡ
ଦେବାପରେ ମୁଁ ତାହାଙ୍କୁ ମୁକ୍ତ କରି ଚାଲିଯିବାକୁ ଅନୁମତି
ଦେବି।" ୧୭ *

୧୮କିନ୍ତୁ ସବୁଲୋକେ ପାଟି କରି ଉଠିଲେ, "ତାହାଙ୍କୁ
ମାରିଦିଅ। ବାରବ୍ବାକୁ ମୁକ୍ତ କରିଦିଅ।" ୧୯(ବାରବ୍ବା
ନଗରରେ ଦଙ୍ଗା ଆରମ୍ଭ କରିଥିବା ଯୋଗୁ ଓ କେତେକଲୋକଙ୍କୁ
ହତ୍ୟାକରିଥିବା ଯୋଗୁ କାରାଗାରରେ ବନ୍ଦୀ ହୋଇ ରହିଥିଲା)।

୨୦ପୀଲାତ ଯୀଶୁଙ୍କୁ ମୁକ୍ତ କରି ଦେବାକୁ ଚାହୁଁଥିଲେ।
ତେଣୁ ପୁଣି ଥରେ ପୀଲାତ ସେମାନଙ୍କୁ କହିଲେ ଯେ ସେ
ଯୀଶୁଙ୍କୁ ଛାଡ଼ିଦେବେ। ୨୧କିନ୍ତୁ ଲୋକମାନେ ଚିତ୍କାର କରି
କହିଲେ, "ତାହାଙ୍କୁ ମାରିଦିଅ। ତାହାଙ୍କୁ କ୍ରୁଶରେ ଚଢ଼ାଇ
ମାରିଦିଅ।"

୨୨ତୃତୀୟ ଥର ପାଇଁ ପୀଲାତ ସେମାନଙ୍କୁ କହିଲେ,
"କାହିଁକି, ସେ କ'ଣ ଭୁଲ କରିଛନ୍ତି? ସେ ଦୋଷୀ
ନୁହନ୍ତି। ତାହାଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ ମୁଁ କୌଣସି
କାରଣ ଦେଖି ପାରୁନାହିଁ। ତେଣୁ ତାହାଙ୍କୁ ସାମାନ୍ୟ ଦଣ୍ଡ
ଦେବା ପରେ ମୁଁ ତାହାଙ୍କୁ ଛାଡ଼ିଦେବି।"

୨୩କିନ୍ତୁ ଲୋକମାନେ ଚିତ୍କାର କରିବାକୁ ଲାଗିଲେ।
ସେମାନେ ଦାବି କଲେ ଯେ ଯୀଶୁଙ୍କୁ କ୍ରୁଶରେ ଚଢ଼ାଇ
ମାରି ଦିଅ। ସେମାନଙ୍କର ପାଟିତୁଣ୍ଡ ଏତେ ତୀବ୍ର ହେଲାଯେ,
୨୪ପୀଲାତ ଲୋକଙ୍କ ଇଚ୍ଛା ଅନୁଯାୟୀ ନିର୍ଣ୍ଣୟ ନେଲେ।
୨୫ଲୋକମାନେ ବାରବ୍ବାକୁ ମୁକ୍ତ ହୋଇ ଚାଲି ଯିବାକୁ
ଚାହୁଁଥିଲେ। ବରବ୍ବା ନରହତ୍ୟା ଓ ବିଦ୍ରୋହ ଅପରାଧରେ
କାରାଗାରରେ ଥିଲା। ପୀଲାତ ବାରବ୍ବାଙ୍କୁ ମୁକ୍ତ କରିଦେଲେ।
ପୀଲାତ ଯୀଶୁଙ୍କୁ ମାରିଦେବା ପାଇଁ ଲୋକମାନଙ୍କ ହାତରେ
ସମର୍ପି ଦେଲେ। ଲୋକମାନେ ତାହା ଚାହୁଁଥିଲେ।

## ଯୀଶୁ କ୍ରୁଶରେ ହତ ହେଲେ

୨୬ସୈନ୍ୟମାନେ ଯୀଶୁଙ୍କୁ ମାରିଦେବା ପାଇଁ ନେଇଗଲେ।
ଠିକ୍ ସେହି ସମୟରେ ଜଣେ ଲୋକ ପଲ୍ଲୀଗ୍ରାମରୁ ଫେରି
ନଗର ଭିତରକୁ ଆସୁଥିଲା। ତାର ନାମ ଥିଲା ଶିମୋନ।
ଶିମୋନ କୁରୀଣ ନଗରର ଲୋକ ଥିଲା। ସୈନ୍ୟମାନେ
ଯୀଶୁଙ୍କ କ୍ରୁଶ ବହନ କରି ଯୀଶୁଙ୍କ ପଛରେ ଯିବାକୁ
ଶିମୋନକୁ ବାଧ୍ୟ କଲେ।

୨୭ବହୁ ସଂଖ୍ୟାରେ ଲୋକେ ଯୀଶୁଙ୍କ ପଛେପଛେ ଗଲେ।
କେତେକ ସ୍ତ୍ରୀଲୋକ ଦୁଃଖ କରୁଥିଲେ ଓ କାନ୍ଦୁଥିଲେ।
ସେମାନେ ଯୀଶୁଙ୍କ ପାଇଁ ଦୁଃଖ ଅନୁଭବ କରୁଥିଲେ।
୨୮କିନ୍ତୁ ଯୀଶୁ ବୁଲିପଡ଼ି ସେହି ସ୍ତ୍ରୀଲୋକମାନଙ୍କୁ କହିଲେ,
"ହେ ଯିରୂଶାଲମର ନାରୀଗଣ! ମୋ ପାଇଁ କାନ୍ଦ ନାହିଁ।
ତୁମ୍ଭେମାନେ ନିଜ ପାଇଁ ଓ ନିଜ ପିଲାମାନଙ୍କ ପାଇଁ କାନ୍ଦ।
୨୯ଏବେ ସମୟ ଆସୁଛି, ଯେତେବେଳେ ଲୋକମାନେ
କହିବେ, 'ଯେଉଁ ସ୍ତ୍ରୀଲୋମାନଙ୍କର ସନ୍ତାନସନ୍ତତି ନାହାଁନ୍ତି,
ସେମାନେ ସୁଖୀ। ଯେଉଁ ସ୍ତ୍ରୀଲୋକମାନେ ବନ୍ଧ୍ୟା, ସେମାନେ
ଧନ୍ୟ। ଯେଉଁ ସ୍ତ୍ରୀଲୋକମାନେ ସନ୍ତାନସନ୍ତତିକୁ ଜନ୍ମ ଦେଇ
ନାହାଁନ୍ତି ଏବଂ ତାହାଙ୍କର ଯତ୍ନ ନେଇ ନାହାଁନ୍ତି, ସେମାନେ
ଧନ୍ୟ।' ୩୦ତା'ପରେ ଲୋକମାନେ ପର୍ବତକୁ କହିବେ, ଆମ୍ଭ
ଉପରେ ଖସି ପଡ଼ ଲୋକେ ପାହାଡ଼କୁ କହିବେ 'ଆମ୍ଭକୁ
ଘୋଡ଼େଇ ଦିଅ।'* ୩୧ବର୍ତ୍ତମାନ ସମୟରେ ଯେତେବେଳେ
ଜୀବନ ଭଲରେ କଟୁଛି, ସେତେବେଳେ ଲୋକେ ଯଦି
ଏଭଳି ବ୍ୟବହାର କରିବେ, ତେବେ ଯେତେବେଳେ ଖରାପ
ସମୟ ଆସିବ, ସେତେବେଳେ ଅବସ୍ଥା କ'ଣ ହେବ?"*

୩୨ଯୀଶୁଙ୍କ ସହିତ ମୃତ୍ୟୁ ଦଣ୍ଡ ଦିଆଯିବା ପାଇଁ ଆଉ
ଦୁଇଜଣ ଅପରାଧୀଙ୍କୁ ମଧ୍ୟ ନିଆ ଯାଉଥିଲା। ୩୩'କପାଳ'
ନାମକ ସ୍ଥାନକୁ ଯୀଶୁ ଓ ସେହି ଦୁଇଜଣ ଅପରାଧୀଙ୍କୁ
ମଧ୍ୟ ନିଆଗଲା। ସେଠାରେ ସୈନ୍ୟମାନେ ଯୀଶୁଙ୍କୁ କ୍ରୁଶବିଦ୍ଧ
କଲେ। ସେମାନେ ସେହି ଅପରାଧୀମାନଙ୍କ ମଧ୍ୟରୁ ଜଣକୁ
ଯୀଶୁଙ୍କ ଡାହାଣ ପାଖରେ ଓ ଅନ୍ୟ ଜଣକୁ ଯୀଶୁଙ୍କ ବାମ
ପାଖରେ ରଖିଲେ। ୩୪ଯୀଶୁ କହିଲେ, "ହେ ପରମପିତା,
ଯେଉଁ ଲୋକମାନେ ମୋତେ ହତ୍ୟା କରୁଛନ୍ତି, ସେମାନଙ୍କୁ
କ୍ଷମା କର। କାରଣ ସେମାନେ କ'ଣ କରୁଛନ୍ତି,ତାହା
ସେମାନେ ଜାଣନ୍ତି ନାହିଁ।"*

ସୈନ୍ୟମାନେ ଗୁଳିବାଣ୍ଟ ସାହାଯ୍ୟରେ ଯୀଶୁଙ୍କ ପୋଷାକ
ବାଣ୍ଟି ନେଲେ। ୩୫ଲୋକମାନେ ସେଠାରେ ଠିଆ ହୋଇ
ଯୀଶୁଙ୍କୁ ଲକ୍ଷ୍ୟ କରୁଥିଲେ। ଯିହୂଦୀନେତାମାନେ ଯୀଶୁଙ୍କୁ
ଉପହାସ କରୁଥିଲେ। ସେମାନେ କହୁଥିଲେ, "ଯଦି ସେ
ପରମେଶ୍ୱରଙ୍କ ଦ୍ୱାରା ମନୋନୀତ ଖ୍ରୀଷ୍ଟ, ତେବେ ନିଜକୁ
ରକ୍ଷା କରନ୍ତୁ। ସେ ଅନ୍ୟ ଲୋକଙ୍କୁ ରକ୍ଷା କରିଥିଲେ।
ନୁହେଁ କି?"

୩୬ଏପରିକି ସୈନ୍ୟମାନେ ଯୀଶୁଙ୍କୁ ପ୍ରତି ଉପହାସ କଲେ
ଓ ତାହାଙ୍କୁ ଥଟ୍ଟା କରିଲେ। ସେମାନେ ଯୀଶୁଙ୍କ ପାଖକୁ
ଆସିଲେ ଓ ତାହାଙ୍କୁ ଅମ୍ଳରସ ଯାଚିଲେ। ୩୭ସୈନ୍ୟମାନେ

---

**ପଦସଂଖ୍ୟା ୧୭** ଲୂକଙ୍କର ଅଳ୍ପ କେତେକ ଗ୍ରୀକ ପୁସ୍ତକରେ ଏହି ପଦଟି ମିଶିଛି: "ପ୍ରତିବର୍ଷ ନିସ୍ତାର-ପର୍ବ ଅବସରରେ ପୀଲାତଙ୍କୁ ଲୋକମାନଙ୍କ ପାଇଁ ଜଣେ ବନ୍ଦୀକୁ ମୁକ୍ତ କରିବାକୁ ହେଉଥିଲା।"

**ଲୋକମାନେ ... ଘୋଡ଼େଇ ଦିଅ** ହୋଶେୟ ୧୦:୮

**ଲୋକେ ... କ'ଣ ହେବ?** ଯଦି ଗଛ ସବୁଜ ଥିବାବେଳେ ଲୋକେ ଏପରି କରିବେ, ତେବେ ଯେତେବେଳେ ଗଛ ଶୁଖିଯିବ, ସେତେବେଳେ କ'ଣ ହେବ?

**"ହେ ପରମେଶ୍ୱର ... ଜାଣନ୍ତି ନାହିଁ"** କେତେକ ମୂଳ ଗ୍ରୀକ୍ ଲେଖା ପ୍ରତୀକରେ ଏହି ଲେଖାନାହିଁ।

କହିଲେ, "ତୁମ୍ଭେ ଯଦି ଯିହୂଦୀମାନଙ୍କର ରାଜା, ତେବେ
ନିଜକୁ ରକ୍ଷାକର।" ୩୮କ୍ରୁଶରେ ଉପର ଭାଗରେ ଲେଖା
ଯାଇଥିଲା: "ଏ ଯିହୂଦୀ ମାନଙ୍କର ରାଜା।"
୩୯ଝୁଲୁଥିବା ଅପରାଧୀ ଦୁହିଁଙ୍କ ଭିତରୁ ଜଣେ ଯୀଶୁଙ୍କୁ
ନିନ୍ଦାକରି କହିବାକୁ ଲାଗିଲା, "ତୁମ୍ଭେ କ'ଣ ଖ୍ରୀଷ୍ଟ ନୁହଁ?
ତେବେ ତୁମ୍ଭେ ନିଜକୁ ରକ୍ଷା କର ଓ ଆମ୍ଭକୁ ମଧ୍ୟ ରକ୍ଷା
କର।"
୪୦କିନ୍ତୁ ଅନ୍ୟ ଅପରାଧୀଟି ତାହାକୁ ଗାଳି କରି କହିଲା,
"ତୁ କ'ଣ ପରମେଶ୍ୱରଙ୍କୁ ମଧ୍ୟ ଭୟ କରୁନାହୁଁ? ଆମ୍ଭେମାନେ
ଖୁବ୍ ଶୀଘ୍ର ମରିବାକୁ ଯାଉଛୁ। ୪୧ତୁ ଓ ମୁଁ ଉଭୟ
ଅପରାଧୀ। ଆମ୍ଭେ ଦୋଷ କରିଥିଲୁ। ତେଣୁ ଆମ୍ଭେ ଯାହା
ପାଇବାକୁ ଯୋଗ୍ୟ, ଆମ୍ଭେ ତାହା ପାଉଛୁ। କିନ୍ତୁ ଏହି
ଲୋକ କୌଣସି ଦୋଷ କରି ନାହାଁନ୍ତି।" ୪୨ତା'ପରେ
ସେହି ଅପରାଧୀଟି ଯୀଶୁଙ୍କୁ କହିଲା, "ଯୀଶୁ, ଆପଣ
ଯେତେବେଳେ ରାଜା ଭାବରେ ଆପଣଙ୍କ ଶାସନ ଆରମ୍ଭ
କରିବେ, ସେତେବେଳେ ମୋତେ ମନେ ପକାଇବେ।"
୪୩ଯୀଶୁ ତାହାକୁ କହିଲେ, "ଶୁଣ! ମୁଁ ଯାହା କହୁଛି
ତାହା ସତ୍ୟ। ଆଜି ତୁମ୍ଭେ ମୋ ସହିତ ପାରାଦୀଶରେ*
ପ୍ରବେଶ କରିବ।"

## ଯୀଶୁଙ୍କ ପ୍ରାଣତ୍ୟାଗ

୪୪ସେତେବେଳେ ପ୍ରାୟ ଦିନ ଦ୍ୱିପ୍ରହର ହୋଇଥିଲା।
କିନ୍ତୁ ଅପରାହ୍ନ ତିନିଟା ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ଅନ୍ଧକାରମୟ
ହୋଇଗଲା। ୪୫ସୂର୍ଯ୍ୟ ଦେଖାଯାଉନଥିଲା। ମନ୍ଦିରର ପରଦା
ଦୁଇଖଣ୍ଡ ହୋଇ ଚିରିଗଲା। ୪୬ଯୀଶୁ ପାଟି କରି କହିଲେ,"ହେ
ପରମପିତା, ମୁଁ ମୋର ଆତ୍ମା ତୁମ୍ଭକୁ ଦେଉଛି।" ଏହା
କହିବା ପରେ ଯୀଶୁ ପ୍ରାଣ ତ୍ୟାଗ କଲେ।
୪୭ସେନାଧକ୍ଷ ସେଠାରେ ଯାହା ଘଟିଲା, ଦେଖିଲେ। ସେ
ଏହି କଥା କହି ପରମେଶ୍ୱରଙ୍କୁ ପ୍ରଶଂସା କଲେ, "ମୁଁ
ଜାଣେ ଯେ, ଏହି ମନୁଷ୍ୟ ଜଣେ ଉତ୍ତମ ବ୍ୟକ୍ତି ଥିଲେ!"
୪୮ଅନେକ ଲୋକ ଏହି ଘଟଣା ଦେଖିବାକୁ ନଗରରୁ
ବାହାରି ଆସିଥିଲେ। ଏସବୁ ଦେଖି ସେମାନେ ଅତ୍ୟନ୍ତ
ଦୁଃଖ ପ୍ରକାଶ କଲେ ଏବଂ ଶେଷରେ ସେମାନେ ଫେରିଗଲେ।
୪୯ଯୀଶୁଙ୍କର ଅନ୍ତରଙ୍ଗ ବନ୍ଧୁମାନେ ସେଠାରେ ଉପସ୍ଥିତଥିଲେ।
ତା'ଛଡା ଯୀଶୁଙ୍କୁ ଗାଲିଲୀରୁ ଅନୁସରଣ କରି ଆସିଥିବା
ଅନେକ ସ୍ତ୍ରୀଲୋକ ସେଠାରେ ଥିଲେ। ସେମାନେ କ୍ରୁଶଠାରୁ
ଦୂରରେ ଠିଆହୋଇ ଏସବୁ ଦେଖୁଥିଲେ।

## ହାରାମାଥୀୟାର ଯୋସେଫ

୫୦-୫୧ଯିହୂଦୀମାନଙ୍କର ହାରାମାଥୀୟା ନଗରର ଜଣେ
ଲୋକ ସେଠାରେ ଥିଲେ। ତାହାଙ୍କ ନାମ ଯୋସେଫ। ସେ
ଯିହୂଦୀ ମହାସଭାର ଜଣେ ସଦସ୍ୟ ଥିଲେ। ସେ ଜଣେ
ଉତ୍ତମ ଓ ଧାର୍ମିକ ଲୋକଥିଲେ। ସେ ପରମେଶ୍ୱରଙ୍କ
ରାଜ୍ୟକୁ ଅପେକ୍ଷା କରୁଥିଲେ। ଅନ୍ୟ ଯିହୂଦୀ ନେତାମାନେ
ଯୀଶୁଙ୍କୁ ହତ୍ୟା କରିବାକୁ ସ୍ଥିର କଲାବେଳେ ସେ ସେଥିରେ
ରାଜି ହୋଇନଥିଲେ। ୫୨ଯୋସେଫ ପୀଲାତଙ୍କ ପାଖକୁ ଯାଇ
ଯୀଶୁଙ୍କ ଶରୀରକୁ ମାଗିଲେ। ପୀଲାତ ଯୋସେଫଙ୍କୁ ସେଥିପାଇଁ
ଅନୁମତି ଦେଲେ। ୫୩ତେଣୁ ଯୋସେଫ ଯୀଶୁଙ୍କ ଶରୀରକୁ
କ୍ରୁଶ ଉପରୁ ତଳକୁ ଓହ୍ଲାଇ ଆଣିଲେ। ତାହା ଗୋଟିଏ
ଲୁଗାରେ ସେ ଘୋଡାଇ ଦେଲେ। ସେ ଯୀଶୁଙ୍କ ଶରୀରକୁ
ନେଇ ପାହାଡକାନ୍ଥରେ ଖୋଳା ହୋଇଥିବା ଓ ପୂର୍ବରୁ
କେବେ ବ୍ୟବହୃତ ହୋଇନଥିବା କବର ମଧ୍ୟରେ ରଖିଲେ।
୫୪ଏହା ପ୍ରସ୍ତୁତିଦିବସର ଶେଷ ସମୟ ଥିଲା। ବିଶ୍ରାମଦିବସ
ପାଖେଇ ଆସୁଥିଲା।
୫୫ଯେଉଁ ସ୍ତ୍ରୀଲୋକମାନେ ଯୀଶୁଙ୍କୁ ଅନୁସରଣ କରି
ତାହାଙ୍କ ସହିତ ଗାଲିଲୀରୁ ଆସିଥିଲେ, ସେମାନେ
ଯୋସେଫଙ୍କ ପଛେ ପଛେ ଗଲେ। ସେମାନେ ଯାଇ
କବରଟି ଦେଖିଲେ। ଭିତରେ ଯେଉଁ ସ୍ଥାନରେ ଶରୀରଟି
ରଖାଗଲା, ସେହି ସ୍ଥାନଟି ମଧ୍ୟ ସେମାନେ ଦେଖିଲେ।
୫୬ତାପରେ ସେହି ସ୍ତ୍ରୀ ଲୋକମାନେ ଯୀଶୁଙ୍କ ଶରୀରରେ
ଲଗାଇବା ପାଇଁ ସୁଗନ୍ଧିତ ଦ୍ରବ୍ୟ ପ୍ରସ୍ତୁତ କରିବାକୁ ସେଠାରୁ
ଚାଲିଗଲେ।

ବିଶ୍ରାମ ଦିବସରେ ସେମାନେ ବିଶ୍ରାମ ନେଲେ। କାରଣ
ମୋଶାଙ୍କ ନିୟମ ଲୋକମାନଙ୍କୁ ଏହା କରିବାକୁ ଆଜ୍ଞା
ଦେଇଥାଏ।

## ଯୀଶୁ ମୃତ୍ୟୁରୁ ପୁନରୁତ୍ଥାନ ଖବର

୨୪ ସପ୍ତାହର ପ୍ରଥମ ଦିନ ଅତି ସକାଳୁ ସେହି ସ୍ତ୍ରୀ
ଲୋକମାନେ ଯେଉଁଠାରେ ଯୀଶୁଙ୍କ ଶରୀରକୁ
ରଖା ଯାଇଥିଲା, ସେହି ସ୍ଥାନକୁ ଆସିଲେ। ସେମାନେ
ନିଜେ ପ୍ରସ୍ତୁତ କରିଥିବା ସୁଗନ୍ଧିତ ଦ୍ରବ୍ୟ ସଙ୍ଗରେ ଆଣିଥିଲେ।
୨ସମାଧି ବନ୍ଦ କରିବା ପାଇଁ ତାର ପ୍ରବେଶଦ୍ୱାରରେ
ଗୋଟିଏ ବଡ ପଥର ଦିଆ ଯାଇଥିଲା। ସ୍ତ୍ରୀଲୋକମାନେ
ଦେଖିଲେ ଯେ ପଥରଟି ଗଡି ଯାଇଛି। ୩ସେମାନେ
ଭିତରକୁ ଗଲେ। କିନ୍ତୁ ସେମାନେ ସେଠାରେ ପ୍ରଭୁ ଯୀଶୁଙ୍କ
ଶରୀରକୁ ପାଇଲେନାହିଁ। ୪ସ୍ତ୍ରୀଲୋକମାନେ ଏ ଘଟଣାର
ରହସ୍ୟ କିଛି ବୁଝିପାରିଲେନାହିଁ। ଏହି ଘଟଣାରେ ସେମାନେ
ବିସ୍ମିତ ହୋଇଯାଇଥିବା ସମୟରେ ଉଜ୍ଜ୍ୱଳ ପୋଷାକ ପିନ୍ଧି
ଦୁଇଜଣ ସ୍ୱର୍ଗଦୂତ ସେମାନଙ୍କ ପାଖରେ ଠିଆହେଲେ। ୫ସ୍ତ୍ରୀ
ଲୋକମାନେ ଖୁବ୍ ଡରିଗଲେ। ସେମାନେ ତାହାଙ୍କର ମୁଣ୍ଡ
ନୁଆଁଇଲେ। ସେହି ଦୁଇଜଣ ଦୂତ ସେମାନଙ୍କୁ ପଚାରିଲେ,
"ତୁମ୍ଭେମାନେ ଜଣେ ମୃତ ଲୋକକୁ ଏଠାରେ କାହିଁକି
ଖୋଜୁଛ? ଏହାତ ମୃତ ଲୋକମାନଙ୍କର ସ୍ଥାନ। ୬ଯୀଶୁ
ଏଠାରେ ନାହାଁନ୍ତି, ସେ ମୃତ୍ୟୁରୁ ଜୀବିତ ହୋଇ ଉଠିଛନ୍ତି।
ସେ ଗାଲିଲୀରେ ଥିଲା ପର୍ଯ୍ୟନ୍ତ ତୁମ୍ଭମାନଙ୍କୁ କ'ଣ
କହିଥିଲେ, ତାହା ତୁମ୍ଭମାନଙ୍କର ମନେ ପଡୁଛି କି? ୭ଯୀଶୁ
କହିଥିଲେ ଯେ, ମନୁଷ୍ୟପୁତ୍ରଙ୍କୁ ଦୁଷ୍ଟ ଲୋକଙ୍କ ହାତରେ
କ୍ରୁଶରେ ମାରି ଦିଆଯିବା ପାଇଁ ଅବଶ୍ୟ ଦେଇ ଦିଆଯିବ।
କିନ୍ତୁ ସେ ପୁଣି ମୃତ୍ୟୁରୁ ତୃତୀୟ ଦିନ ଜୀବିତ ହୋଇ
ଉଠିବେ।" ୮ତା'ପରେ ଯୀଶୁ ଯାହା କହିଥିଲେ, ସେ କଥା
ସ୍ତ୍ରୀଲୋକମାନେ ମନେ ପକାଇଲେ।

---

**ପାରାଦୀଶରେ** ଗ୍ରୀକ ଶବ୍ଦ- 'ପାରାଦୀଶ' ଅର୍ଥାତ୍ ସ୍ୱର୍ଗରେ ପ୍ରବେଶ ଭଲଲୋକଙ୍କର ପୂର୍ବରୁ ଆରାମ କରିବା ସ୍ଥାନ।

୯ସେହି ସ୍ତ୍ରୀଲୋକମାନେ ସମାଧି ସ୍ଥାନ ଛାଡି ଏଗାର
ଜଣ ପ୍ରେରିତ ଓ ସମସ୍ତ ଅନ୍ୟ ଶିଷ୍ୟମାନଙ୍କ ପାଖରେ
ଯାଇ ପହଞ୍ଚିଲେ। ସମାଧି ଭିତରେ ଯାହା ଯାହା ଘଟିଥିଲା,
ସେତକ ଗୋଟି ଗୋଟି କରି ସେମାନଙ୍କୁ କହିଲେ।
୧୦ସେହି ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ମଗ୍‌ଦଲୀନୀ ମରିୟମ,
ଯୋହନ, ଯାକୁବଙ୍କ ମାଆ ମରିୟମ ଓ ଅନ୍ୟମାନେ
ଥିଲେ। ଏମାନେ ପ୍ରେରିତମାନଙ୍କୁ ସବୁ ବିଷୟ ଜଣାଇଲେ।
୧୧କିନ୍ତୁ ପ୍ରେରିତମାନେ ସ୍ତ୍ରୀଲୋକମାନଙ୍କ କଥାରେ ଆଦୌ
ବିଶ୍ୱାସ କଲେନାହିଁ। ସେମାନଙ୍କୁ ଏହା ପାଗଳା କଥା ପରି
ଲାଗିଲା। ୧୨କିନ୍ତୁ ପିତର ଉଠି ପଡିଲେ। ଏକଥା ଠିକ୍ କି
ନୁହେଁ, ତାହା ଦେଖିବା ପାଇଁ ସେ ସମାଧି ପାଖକୁ
ଦୌଡ଼ିଗଲେ। ସେ ଭିତରକୁ ଚାହିଁଲେ। କିନ୍ତୁ ସେ
କେବଳ ଯୀଶୁଙ୍କ ଉପରେ ଘୋଡାଇ ଦିଆଯାଇଥିବା ଲୁଗାପଟି
ସେଠାରେ ଦେଖିଲେ। ଯୀଶୁଙ୍କ ଶରୀର ସେଠାରେ ନଥିଲା।
ଯାହା ଘଟି ଯାଇଥିଲା, ସେଥିରେ ସେ ଆଶ୍ଚର୍ଯ୍ୟ ହୋଇ
ଏକାକୀ ରହିବା ପାଇଁ ଚାଲିଗଲେ।

## ଇମ୍ମାୟୁ ଗ୍ରାମକୁ ଯିବା ବାଟରେ

୧୩ସେହି ଦିନ ଯୀଶୁଙ୍କର ଦୁଇଜଣ ଶିଷ୍ୟ ଇମ୍ମାୟୁ
ନାମକ ଗାଁକୁ ଯାଉଥିଲେ। ଏ ସ୍ଥାନ ଯିରୂଶାଲମ ଠାରୁ
ପ୍ରାୟ ଏଗାର କିଲୋମିଟର ଦୂର। ୧୪ଯାହା ସବୁ ଘଟିଥିଲା,
ସେମାନେ ସେ ବିଷୟରେ କଥାବାର୍ତ୍ତା ହେଉଥିଲେ। ୧୫ସେ
ସବୁ ବିଷୟ ସେମାନେ ଆଲୋଚନା କଲାବେଳେ ନିଜେ ଯୀଶୁ
ତାହାଙ୍କ ପାଖକୁ ଆସିଲେ ଓ ତାହାଙ୍କ ସହିତ ଚାଲିବାକୁ
ଲାଗିଲେ। ୧୬(କିନ୍ତୁ ସେ ଦୁଇଜଣଙ୍କୁ ସେତେବେଳେ ଯୀଶୁଙ୍କୁ
ଚିହ୍ନିବା ପାଇଁ ବାଧା ଦିଆ ଗଲା।) ୧୭ତା’ପରେ ଯୀଶୁଙ୍କୁ
ପଚାରିଲେ, “ତୁମ୍ଭେମାନେ କାହା ବିଷୟରେ କଥାବାର୍ତ୍ତା
କରୁଛ? ଦୁଇଜଣ ଯାକ ଅଟକିଗଲେ। ସେମାଙ୍କର ମୁହଁ
ଅତ୍ୟନ୍ତ ଦୁଃଖିତ ଦେଖା ଯାଉଥିଲା। ୧୮ତାହାଙ୍କ ଭିତରୁ
କ୍ଲେୟପା ନାମକ ଲୋକଟି ଉତ୍ତର ଦେଲା, “ତୁମ୍ଭେ
ଯିରୂଶାଲମଠାରେ ରହୁଥିବା ଜଣେ ମାତ୍ର ଲୋକ ଯେକି
ଗତ କେତେ ଦିନ ଭିତରେ ଘଟି ଯାଇଥିବା ଘଟଣା
ଗୁଡିକ ବିଷୟରେ କିଛି ଜାଣନାହିଁ।”
୧୯ଯୀଶୁ ସେମାନଙ୍କୁ ପଚାରିଲେ, “ତୁମ୍ଭେମାନେ କେଉଁ
ଘଟଣା ଗୁଡିକ ବିଷୟରେ କହୁଛ?”
ଲୋକମାନେ ଯୀଶୁଙ୍କୁ କହିଲେ, “ନାଜରିତୀୟ ଯୀଶୁଙ୍କ
ବିଷୟରେ। ସେ ପରମେଶ୍ୱର ଓ ଲୋକମାନଙ୍କ ପାଇଁ
ଜଣେ ମହାନ ଭବିଷ୍ୟଦ୍‌ବକ୍ତା ଥିଲେ। ସେ ବହୁତ ଗୁଡ଼ିଏ
ଶକ୍ତିଶାଳୀ କାର୍ଯ୍ୟ କହିଥିଲେ ଓ କରିଥିଲେ। ୨୦କିନ୍ତୁ
ଆମ୍ଭର ପ୍ରଧାନ ଯାଜକ ଓ ଶାସକମାନେ ତାହାଙ୍କୁ ମୃତ୍ୟୁଦଣ୍ଡ
ଦିଆଯିବା ପାଇଁ ଅର୍ପଣ କରିଦେଲେ ଏବଂ ତାହାଙ୍କୁ କ୍ରୁଶରେ
ବଧ କଲେ। ୨୧ସେ ହିଁ ଯିଏ ଇସ୍ରାୟେଲକୁ ମୁକ୍ତ କରିବେ
ବୋଲି ଆମ୍ଭେମାନେ ଆଶା ରଖିଥିଲୁ। କିନ୍ତୁ ସେତିକିବେଳେ
ଏସବୁ ଘଟଣା ଘଟିଗଲା। ଏସବୁ ଛଡା ବର୍ତ୍ତମାନ ଯୀଶୁଙ୍କୁ
ହତ୍ୟା କରା ଯିବାର ତିନି ଦିନ ବିତି ଗଲାଣି। ୨୨କିନ୍ତୁ
ଆଜି ଆମ୍ଭ ଦଳର କେତେଜଣ ସ୍ତ୍ରୀଲୋକ ଆମ୍ଭକୁ ଗୋଟିଏ
ଆଶ୍ଚର୍ଯ୍ୟ ଜନକ କଥା କହିଲେ। ଯେଉଁ କବରରେ ଯୀଶୁଙ୍କ
ଶରୀରକୁ ରଖା ଯାଇଥିଲା, ସେହି ସ୍ଥାନକୁ ସେମାନେ ଆଜି
ଅତି ଭୋରରୁ ଯାଇଥିଲେ। ୨୩କିନ୍ତୁ ସେମାନେ ସେଠାରେ
ଯୀଶୁଙ୍କ ଶରୀରକୁ ପାଇଲେନାହିଁ। ସେମାନେ ସେଠାରେ
ସ୍ୱର୍ଗଦୂତଙ୍କୁ ଦର୍ଶନ କରିଥିବା କଥା ମଧ୍ୟ ଆମ୍ଭକୁ ଫେରିଆସି
କହିଲେ। ସ୍ୱର୍ଗଦୂତମାନେ ସେମାନଙ୍କୁ ଯୀଶୁ ଜୀବିତ ଥିବା
କଥା କହିଥିଲେ। ୨୪ତା’ପରେ ଆମ୍ଭ ଦଳ ଭିତରୁ କେତେ
ଜଣ ମଧ୍ୟ ସମାଧି ପାଖକୁ ଗଲେ। ସ୍ତ୍ରୀଲୋକମାନଙ୍କୁ
କହିବା ଅନୁସାରେ କବରଟି ମଧ୍ୟ ଖାଲି ଥିଲା, ସେମାନେ
ଭିତରକୁ ଚାହିଁଲେ, କିନ୍ତୁ ସେମାନେ ଯୀଶୁଙ୍କୁ ସେଠାରେ
ପାଇଲେ ନାହିଁ।”
୨୫ତା’ପରେ ଯୀଶୁ ସେହି ଦୁଇଜଣ ଲୋକଙ୍କୁ କହିଲେ,
“ତୁମ୍ଭେମାନେ କେତେ ବୋକା। ଭବିଷ୍ୟଦ୍‌ବକ୍ତାମାନେ ଯାହାସବୁ
କହିଥିଲେ,ସେହି ସତ୍ୟକୁ ବିଶ୍ୱାସ କରିବାରେ ତୁମ୍ଭେମାନେ
କେତେ ମନ୍ଥର। ୨୬ଭବିଷ୍ୟଦ୍‌ବକ୍ତାମାନେ କହିଥିଲେ ଯେ,
ଯୀଶୁ ତାହାଙ୍କ ମହିମାରେ ପ୍ରବେଶ କରିବା ପୂର୍ବରୁ ଏଭଳି
ଯାତନା ଭୋଗ କରିବେ।” ୨୭ତା’ପରେ ଯୀଶୁ ଶାସ୍ତ୍ରମାନଙ୍କରେ
ତାହାଙ୍କ ବିଷୟରେ ଯାହା ସବୁଲେଖା ଯାଇଥିଲା, ସେଗୁଡିକୁ
ଗୋଟି ଗୋଟି କରି ବୁଝାଇବାକୁ ଲାଗିଲେ। ଯୀଶୁ ମୋଶାଙ୍କ
ପୁସ୍ତକରୁ ଆରମ୍ଭ କରି ଅନ୍ୟ ଭବିଷ୍ୟଦ୍‌ବକ୍ତାମାନଙ୍କ ପର୍ଯ୍ୟନ୍ତ
ସମସ୍ତେ ତାହାଙ୍କ ବିଷୟରେ ଯାହାସବୁ କହିଥିଲେ, ସେଗୁଡିକ
ବୁଝାଇ ଦେଲେ।
୨୮ଯେଉଁ ଗାଁକୁ ସେମାନଙ୍କର ଯିବାକୁ ଥିଲା, ସେମାନେ
ସେ ଗାଁକୁ ପାଖରେ ପହଞ୍ଚିଗଲେ। ଯୀଶୁ ସେମାନଙ୍କ
ସହିତ ଏଭଳି ବ୍ୟବହାର କଲେ, ପ୍ରକୃତରେ ଯେପରି
ତାହାଙ୍କର ଆଗକୁ ଯିବାକୁ ଦରକାର ଅଛି। ୨୯କିନ୍ତୁ
ସେମାନେ ବହୁତ ଆଗ୍ରହର ସହିତ ଯୀଶୁଙ୍କୁ ଅନୁରୋଧ
କଲେ, “ଆମ୍ଭ ସାଙ୍ଗରେ ରହିଯାଅ। ସନ୍ଧ୍ୟାକାଳ ହେଲାଣି
ଦିନ ପ୍ରାୟ ସରିବା ଉପରେ।” ତେଣୁ ଯୀଶୁ ସେମାନଙ୍କ
ସହିତ ରହିବା ପାଇଁ ଘର ଭିତରକୁ ଗଲେ।
୩୦ଯୀଶୁ ସେମାନଙ୍କ ସହିତ ଖାଇବା ପାଇଁ ବସି
ପଡିଲେ। ସେ ହାତରେ କିଛି ରୋଟୀ ଧରିଲେ। ସେ
ଖାଦ୍ୟତକ ପାଇଁ ଧନ୍ୟବାଦ ଦେଲେ ଓ ରୋଟୀକୁ ଖଣ୍ଡଖଣ୍ଡ
କରି ସେମାନଙ୍କୁ ଦେଲେ। ୩୧ସେହି ସମୟରେ ସେହି
ଦୁଇଜଣଙ୍କର ଚକ୍ଷୁ ଖୋଲିଦିଆଗଲା ଓ ସେମାନେ ଯୀଶୁଙ୍କୁ
ଚିହ୍ନି ପାରିଲେ। କିନ୍ତୁ ଯୀଶୁ ସେମାନଙ୍କ ସାମନାରୁ ଅଦୃଶ୍ୟ
ହୋଇଗଲେ। ୩୨ତା’ପରେ ସେମାନେ ପରସ୍ପର କଥାବାର୍ତ୍ତା
ହେଲେ, “ଯେତେବେଳେ ଯୀଶୁ ଆମ୍ଭ ସହିତ ରାସ୍ତାରେ
କଥାବାର୍ତ୍ତା ହେଉଥିଲେ, ସେତେବେଳେ ଆମ୍ଭ ହୃଦୟ
ଭିତରେ ଅଗ୍ନି ଜଳି ଉଠିବା ଭଳି ମନେ ହେଉଥିଲା। ସେ
ଆମ୍ଭକୁ ଯେତେବେଳେ ଶାସ୍ତ୍ରର ବାସ୍ତବ ଅର୍ଥ ବୁଝାଉଥିଲେ,
ତାହା ଆମ୍ଭକୁ ଉତ୍ତେଜିତ କରି ଦେଉଥିଲା।”
୩୩ତା’ପରେ ସେମାନେ ଉଠି ପଡ଼ିଲେ ଓ ଯିରୂଶାଲମକୁ
ଫେରି ଗଲେ। ଯିରୂଶାଲମରେ ସେମାନେ ଯୀଶୁଙ୍କ ଶିଷ୍ୟଗଣ
ଓ ଏଗାରଜଣ ପ୍ରେରିତଙ୍କୁ ଏକତ୍ରିତ ହୋଇଥିବାର ଦେଖିଲେ।
୩୪ପ୍ରେରିତ ଓ ଅନ୍ୟ ଶିଷ୍ୟମାନେ କହୁଥିଲେ, “ପ୍ରକୃତରେ,
ପ୍ରଭୁ ମୃତ୍ୟୁରୁ ଜୀବିତ ଉଠିଛନ୍ତି। ସେ ଶିମୋନଙ୍କୁ ଦେଖା
ଦେଇଛନ୍ତି।”

୩୫ତା'ପରେ ଏହ ଦୁଇଜଣ ଲୋକ ରାସ୍ତାରେ ଯାହା
ସବୁ ଘଟିଥିଲା, ସେ ସମସ୍ତ ସେମାନଙ୍କ ଆଗରେ ବର୍ଣ୍ଣନା
କଲେ। ସେମାନେ କହଲେ, ଯୀଶୁ ରୋଟୀ ବାଣ୍ଟିବା
ସମୟରେ ସେମାନେ କପର ଯୀଶୁଙ୍କୁ ଚହ୍ନିପାରଲେ।

## ଯୀଶୁ ନଜ ଶିଷ୍ୟମାନଙ୍କ ଆଗରେ ଦେଖା ଦେଲେ

୩୬ଏହ ଦୁଇଜଣ ଲୋକ ଏହ ସବୁ କଥା ବର୍ଣ୍ଣନା
କରୁଥିବା ସମୟରେ ନଜେ ଯୀଶୁ ଶିଷ୍ୟଦଳଙ୍କ ଭିତରେ
ଠିଆ ହୋଇଥିଲେ। ଯୀଶୁ ସେମାନଙ୍କୁ କହଲେ, "ତୁମ୍ଭମାନଙ୍କ
ପ୍ରତି ଶାନ୍ତ ହେଉ।"
୩୭ଏଥିରେ ଶିଷ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ। ସେମାନେ
ଡରଗଲେ। ସେମାନେ ଭାବିଲେ ଯେ, ସେମାନେ ଗୋଟିଏ
ଭୂତ ଦେଖୁଛନ୍ତ। ୩୮କନ୍ତୁ ଯୀଶୁ କହଲେ, "ତୁମ୍ଭେମାନେ
କାହିଁକି ବ୍ୟସ୍ତ ହୋଇପଡୁଛ? ଯାହା ଦେଖୁଛ, ସେଥିରେ
କାହିଁକି ସନ୍ଦେହ କରୁଛ? ୩୯ମୋ ହାତକୁ ଚାହିଁ। ମୋ
ଗୋଡକୁ ଚାହିଁ। ଏହା ମୁଁ! ମୋତେ ଛୁଅଁ, ତୁମ୍ଭେମାନେ
ଦେଖ ଯେ, ମୋର ଏହା ଜୀବନ୍ତ ଶରୀର। ତୁମ୍ଭେମାନେ
ମୋତେ ଯେପର ଦେଖୁଛ, ଗୋଟିଏ ଭୂତର ସେ ଭଳି
ଶରୀର ହୋଇ ପାରବନାହିଁ।"
୪୦ଯୀଶୁ ସେମାନଙ୍କୁ ଏହ କଥା କହ ସାରବା ପରେ
ସେ ସେମାନଙ୍କୁ ତାହାଙ୍କ ହାତ ଓ ଗୋଡର ଆଘାତ ସବୁ
ଦେଖାଇଲେ। ୪୧ଶିଷ୍ୟମାନେ ବସ୍ମିତ ହୋଇଗଲେ। ସେମାନେ
ଯୀଶୁଙ୍କୁ ସଶରୀରରେ ଦେଖି ବହୁତ ଖୁସି ହୋଇଗଲେ।
ତଥାପି ସେମାନେ ଯାହା ଦେଖିଲେ, ତାହା ବଶ୍ୱାସ କର
ପାରଲେ ନାହିଁ। ଯୀଶୁ ସେମାନଙ୍କୁ କହଲେ, "ତୁମ୍ଭମାନଙ୍କ
ପାଖରେ କଛି ଖାଇବା ପଦାର୍ଥ ଅଛି କ?" ୪୨ସେମାନେ
ଯୀଶୁଙ୍କୁ ଖଣ୍ଡେ ରନ୍ଧା ମାଛ ଦେଲେ। ୪୩ଶିଷ୍ୟମାନେ
ଦେଖୁଥିବା ବେଳେ ଯୀଶୁ ମାଛ ନେଇ ଖାଇଲେ।
୪୪ଯୀଶୁ ସେମାନଙ୍କୁ କହଲେ, "ତୁମ୍ଭମାନଙ୍କ ପାଖରେ ମୁଁ
ଥିବା ବେଳର କଥା ମନେ ପକାଅ। ମୁଁ କହଥିଲ ଯେ
ମୋଶାଙ୍କ ନୟମରେ, ଭବଷ୍ୟଦ୍‌ବକ୍ତାଙ୍କ ପୁସ୍ତକରେ ଓ
ଗୀତସଂହତାରେ ମୋ ବଷୟରେ ଯାହା ସବୁ ଲେଖା
ଯାଇଛ, ସେଗୁଡକ ନଶ୍ଚୟ ଘଟିବ।"
୪୫ତାପରେ ଯୀଶୁ ଶିଷ୍ୟମାନଙ୍କୁ ସବୁ ଶାସ୍ତ୍ର ବଷୟ
ବୁଝାଇଲେ। ତାହାଙ୍କ ବଷୟରେ ଯାହା ସବୁ ଲେଖା
ଯାଇଥିଲା, ଯୀଶୁ ସେମାନଙ୍କୁ ସବୁ ବୁଝାଇଲେ। ୪୬ଯୀଶୁ
ସେମାନଙ୍କୁ କହଲେ, "ଖ୍ରୀଷ୍ଟଙ୍କୁ ମାର ଦଆଯିବ ଓ ମୃତ୍ୟୁରୁ
ତିନଦନ ପରେ ପୁଣି ସେ ବଞ୍ଚି ଉଠିବା କଥା ଲେଖା
ଅଛ। ୪୭-୪୮ତୁମ୍ଭେମାନେ ଏସବୁ ଘଟଣା ଘଟିବାର ଦେଖିଲ।
ତୁମ୍ଭେମାନେ ତା'ର ସାକ୍ଷୀ। ତୁମ୍ଭେମାନେ ଲେକମାନଙ୍କ
ପାଖକୁ ଯାଇ କୁହ ଯେ ସେମାନଙ୍କର ପାପ ଗୁଡକୁ କ୍ଷମା
କରାଯାଇପାରବ। ସେମାନଙ୍କୁ କୁହ ଯେ, ସେମାନେ ନଜର
ହୃଦୟ ପରବର୍ତ୍ତନ କରନ୍ତୁ ଏବଂ ନଜର ପାପ ପାଇଁ ଦୁଃଖ
ଅନୁଭବ କରନ୍ତୁ। ଯଦ ସେମାନେ ଏହା କରବେ, ତେବେ
ପରମେଶ୍ୱର ସେମାନଙ୍କୁ କ୍ଷମା କରଦେବେ। ତୁମ୍ଭେମାନେ
ଯିରୂଶାଲମରୁ ଆରମ୍ଭ କରବ ଓ ମୋ ନାମରେ ଏଗୁଡକ
ପ୍ରଚାର କରବ। ଏହ ସୁସମାଚାର ଏ ପୃଥିବୀରେ ନଶ୍ଚୟ
ସମସ୍ତଙ୍କୁ ଶୁଣେଇ ଦଆଯିବ। ୪୯ଶୁଣ! ମୋର ପରମପିତା
ତୁମ୍ଭମାନଙ୍କୁ ଯାହା ପ୍ରତିଶ୍ରୁତି ଦେଇଛନ୍ତ, ମୁଁ ତାହା ତୁମ୍ଭମାନଙ୍କ
ପାଖକୁ ପଠାଇବ। କନ୍ତୁ ସ୍ୱର୍ଗରୁ ସେହ ଶକ୍ତ ନପାଇବା
ପର୍ଯ୍ୟନ୍ତ ତୁମ୍ଭେମାନେ ନଶ୍ଚୟ ଯିରୂଶାଲମରେ ରହବ।"

## ଯୀଶୁ ସ୍ୱର୍ଗକୁ ଫେର ଗଲେ

୫୦ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ ଯିରୂଶାଲମରୁ ବେଥନଆକୁ
କଢ଼ାଇ ନେଇଗଲେ। ଯୀଶୁ ତାହାଙ୍କର ହାତ ଟେକ
ଶିଷ୍ୟମାନଙ୍କୁ ଆଶୀର୍ବାଦ କଲେ। ୫୧ଯୀଶୁ ସେମାନଙ୍କୁ ଆଶୀର୍ବାଦ
କରୁଥିବା ସମୟରେ ସେ ଶିଷ୍ୟମାନଙ୍କ ପାଖରୁ ଅଲଗା
ହୋଇଗଲେ ଓ ତାହାଙ୍କୁ ସ୍ୱର୍ଗକୁ ନଆଗଲା। ୫୨ଶିଷ୍ୟମାନେ
ସେଠାରେ ତାହାଙ୍କୁ ଆରାଧନା କଲେ। ତାପରେ ସେମାନେ
ଯିରୂଶାଲମକୁ ଫେରଗଲେ। ସେମାନେ ବହୁତ ଖୁସି ଥିଲେ।
୫୩ସେମାନେ ସବୁ ସମୟରେ ମନ୍ଦିରରେ ରହ ପରମେଶ୍ୱରଙ୍କ
ସ୍ତୁତି କରୁଥିଲେ।

# ଯୋହନ ଲିଖିତ ସୁସମାଚାର

## ଯୀଶୁଙ୍କର ଜଗତରେ ଆବିର୍ଭାବ

୧ ଜଗତ ଆରମ୍ଭର ପୂର୍ବରୁ 'ବାକ୍ୟ'* ଥିଲେ। ସେହି
ବାକ୍ୟ ପରମେଶ୍ୱରଙ୍କ ସହିତ ଥିଲେ। ସେହି ବାକ୍ୟ
ପରମେଶ୍ୱର ଥିଲେ। ୨ସେହି ବାକ୍ୟ ଆରମ୍ଭରୁ ପରମେଶ୍ୱରଙ୍କ
ସହିତ ଥିଲେ। ୩ତାହାଙ୍କ* ଦ୍ୱାରା ସବୁ କିଛି ସୃଷ୍ଟି
ହୋଇଛି। ଏହି ସଂସାରରେ ଏପରି କିଛି ବସ୍ତୁ ନାହିଁ, ଯାହା
ତାହାଙ୍କ ଦ୍ୱାରା ସୃଷ୍ଟି ହୋଇ ନାହିଁ। ୪ତାହାଙ୍କଠାରେ ଜୀବନ
ଥିଲା। ସେହି ଜୀବନ ପୃଥିବୀର ଲୋକମାନଙ୍କ ପାଇଁ
ଆଲୋକ ଥିଲା। ୫ସେହି ଆଲୋକ ଅନ୍ଧକାରରେ ଆଲୋକିତ
ହୁଏ। କିନ୍ତୁ ଅନ୍ଧକାର ଆଲୋକକୁ ଲୋପ କରି ପାରିନାହିଁ।
୬ଯୋହନ* ନାମକ ଜଣେ ବ୍ୟକ୍ତି ଥିଲେ। ତାହାଙ୍କୁ
ପରମେଶ୍ୱର ପଠାଇଥିଲେ। ୭ସେ ଲୋକମାନଙ୍କୁ ସେହି
ଆଲୋକ ବିଷୟରେ କହିବା ପାଇଁ ଆସିଥିଲେ। ତାହାଙ୍କ
ମାଧ୍ୟମରେ ସବୁ ଲୋକେ ଆଲୋକ (ଖ୍ରୀଷ୍ଟଙ୍କ) ବିଷୟରେ
ଶୁଣିପାରିଲେ ଓ ବିଶ୍ୱାସ କରି ପାରିଲେ। ୮ଯୋହନ ନିଜେ
ଆଲୋକ ନଥିଲେ। କିନ୍ତୁ ସେ ଲୋକମାନଙ୍କୁ ଆଲୋକ
ବିଷୟରେ କହିବା ପାଇଁ ଆସିଥିଲେ। ୯ଏହି ପ୍ରକୃତ
ଆଲୋକ ଜଗତକୁ ଆସୁଥିଲେ। ଏହି ପ୍ରକୃତ ଆଲୋକ
ସବୁ ଲୋକମାନଙ୍କୁ ଆଲୋକ ଦିଅନ୍ତି।
୧୦ସେହି ବାକ୍ୟ ଜଗତରେ ଥିଲେ। ତାହାଙ୍କ ଦ୍ୱାରା ଏ
ପୃଥିବୀର ସୃଷ୍ଟି ହେଲା, କିନ୍ତୁ ଏହି ଜଗତର ଲୋକମାନେ
ତାହାଙ୍କୁ ଚିହ୍ନି ପାରିଲେ ନାହିଁ। ୧୧ସେ ତାହାଙ୍କ ନିଜ
ଜଗତକୁ ଆସିଲେ, କିନ୍ତୁ ତାହାଙ୍କର ନିଜ ଲୋକମାନେ
ତାହାଙ୍କୁ ଗ୍ରହଣ କଲେ ନାହିଁ, ୧୨ଯେଉଁ ଅଳ୍ପ କେତେକ
ଲୋକ ତାହାଙ୍କୁ ଗ୍ରହଣ କଲେ, ସେମାନେ ତାହାଙ୍କ
ଉପରେ ବିଶ୍ୱାସ କଲେ। ଯେଉଁ ଲୋକମାନେ ତାହାଙ୍କୁ
ବିଶ୍ୱାସ କଲେ, ସେ ସେମାନଙ୍କୁ ପରମେଶ୍ୱରଙ୍କ ସନ୍ତାନ
ହେବାର ଅଧିକାର ପ୍ରଦାନ କଲେ, ୧୩ସେହି ସନ୍ତାନମାନେ
ଅନ୍ୟ ଶିଶୁ ପିଲାମାନଙ୍କ ପରି ଜନ୍ମ ହେଲେ ନାହିଁ।
ସେମାନେ ପିତା-ମାତାଙ୍କର ଇଚ୍ଛା କିମ୍ବା ଯୋଜନା ଅନୁସାରେ
ଜନ୍ମ ଗ୍ରହଣ ନ କରି ପରମେଶ୍ୱରଙ୍କ ଠାରୁ ଜନ୍ମ
ହୋଇଥିଲେ।
୧୪ସେହି ବାକ୍ୟ ମନୁଷ୍ୟ ହେଲେ ଓ ଆମ୍ଭମାନଙ୍କ
ସହିତ ବାସ କରିଲେ। ଆମ୍ଭେ ତାହାଙ୍କର ମହିମା ଦେଖିଲୁ।
ଏହି ମହିମା ପରମପିତାଙ୍କ ଏକମାତ୍ର ପୁତ୍ରଙ୍କର ଥିଲା।
ସେହି ବାକ୍ୟ ଅନୁଗ୍ରହ ଓ ସତ୍ୟରେ ପରିପୂର୍ଣ୍ଣ ଥିଲେ।
୧୫ଯୋହନ ଲୋକମାନଙ୍କୁ ତାହାଙ୍କ ବିଷୟରେ କହିଲେ।
ସେ କହିଲେ, "ମୁଁ ଯାହାଙ୍କ ବିଷୟରେ କହୁଥିଲି, ସେ
ଏହି। ମୁଁ କହିଲି, 'ମୋ ପରେ ଯିଏ ଆସୁଛନ୍ତି, ସେ ମୋ
ଠାରୁ ବହୁତ ଶ୍ରେଷ୍ଠ। ସେ ମୋ ପୂର୍ବରୁ ବାସ
କରୁଥିଲେ।'"
୧୬ବାକ୍ୟ' (ଖ୍ରୀଷ୍ଟ) ଅନୁଗ୍ରହ ଓ ସତ୍ୟରେ ପରିପୂର୍ଣ୍ଣ
ଥିଲେ। ଆମ୍ଭେ ତାହାଙ୍କ ଠାରୁ ପ୍ରଚୁର ଆଶୀର୍ବାଦ ପାଇଲୁ।
୧୭ମୋଶାଙ୍କ ଦ୍ୱାରା ଆମକୁ ନିୟମ (ବ୍ୟବସ୍ଥା) ମିଳିଲା, କିନ୍ତୁ
ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ଅନୁଗ୍ରହ ଓ ସତ୍ୟ(ମାର୍ଗ) ଆସିଲା।
୧୮ପରମେଶ୍ୱରଙ୍କୁ କୌଣସି ଲୋକ କେବେ ଦେଖି ନାହିଁ,
କିନ୍ତୁ ଏକ ମାତ୍ର ପୁତ୍ର(ଯୀଶୁ) ହେଉଛନ୍ତି ପରମେଶ୍ୱର। ସେ
ପରମ-ପିତାଙ୍କର ଅତି ନିକଟତମ। ପରମେଶ୍ୱର କିପରି
ଅଟନ୍ତି, ଏହା ପୁତ୍ର ଆମକୁ ଦେଖାଇ ଦେଇଛନ୍ତି।

## ଯୀଶୁଙ୍କ ବିଷୟରେ ଯୋହନ ଲୋକମାନଙ୍କୁ କହନ୍ତି

୧୯ଯିରୂଶାଲମରୁ ଯିହୂଦୀମାନେ କେତେକ ଯାଜକ ଓ
ଲେବୀୟମାନଙ୍କୁ ଯୋହନଙ୍କ ପାଖକୁ ପଠାଇଲେ। "ତୁମ୍ଭେ
କିଏ?" ଏହା ତାହାଙ୍କୁ ପଚାରିବା ପାଇଁ ଯିହୂଦୀମାନେ
ସେମାନଙ୍କୁ ପଠାଇଥିଲେ।
୨୦ଯୋହନ ସରଳ ଭାବରେ କହିଲେ। ସେ ଉତ୍ତର
ଦେବା ପାଇଁ ଅସ୍ୱୀକାର କଲେ ନାହିଁ। ଯୋହନ ସ୍ପଷ୍ଟ
ଭାବେ ଲୋକମାନଙ୍କୁ ଏହି କଥା କହିଲେ, "ମୁଁ ଖ୍ରୀଷ୍ଟ(ମଶୀହ)
ନୁହେଁ।"
୨୧ଯିହୂଦୀମାନେ ଯୋହନଙ୍କୁ ପଚାରିଲେ, ତାହାହେଲେ
"ତୁମ୍ଭେ କିଏ? ତୁମ୍ଭେ କ'ଣ ଏଲିୟ?"*
ସେ ଉତ୍ତର ଦେଲେ, "ନା, ମୁଁ ଏଲିୟ ନୁହେଁ।"
ଯିହୂଦୀମାନେ ପଚାରିଲେ, "ତୁମ୍ଭେ କ'ଣ ସେହି
ଭବିଷ୍ୟଦ୍‌ବକ୍ତା?"*
ଯୋହନ ଉତ୍ତର ଦେଲେ, "ନା, ମୁଁ ସେହି ଭବିଷ୍ୟଦ୍‌ବକ୍ତା
ନୁହେଁ।"
୨୨ତା'ପରେ ଯିହୂଦୀମାନେ ପଚାରିଲେ, "ତେବେ ତୁମ୍ଭେ
କିଏ? ତୁମ୍ଭେ ତୁମ ନିଜ ବିଷୟରେ କୁହ, ଆମ୍ଭକୁ

---

**"ବାକ୍ୟ"** ଏହା ଗ୍ରୀକ୍‌ର ଏକ ଶବ୍ଦ "ଲୋଗସ୍"ରୁ ଆସିଅଛି। ଏହାର ଅର୍ଥ- ସନ୍ଦେଶ ବା ବାର୍ତ୍ତା। ଏହି ବାର୍ତ୍ତା ହେଉଛନ୍ତି ଖ୍ରୀଷ୍ଟ, ଯାହାଙ୍କ ମାଧ୍ୟମରେ ଈଶ୍ୱର ଆପଣ କୁ ସମସ୍ତ ମାନବଜାତି ନିକଟରେ ପ୍ରକାଶ କଲେ।

**ତାହାଙ୍କ** ଅର୍ଥାତ୍, ଯୀଶୁ ଖ୍ରୀଷ୍ଟ।

**ଯୋହନ** ଖ୍ରୀଷ୍ଟଙ୍କ ଆଗମନର ପ୍ରଚାର କରୁଥିଲେ ମାଥିଉ:୩, ଲୂକ:୩

**ଏଲିୟ** ଖ୍ରୀ:ପୂ ୮୫୦ରେ ଭବିଷ୍ୟଦ୍‌ବକ୍ତା ମଲାଖି ୪:୫-୬

**ଭବିଷ୍ୟଦ୍‌ବକ୍ତା** ଦ୍ୱିତୀୟ ବିବରଣ ୧୮:୧୫-୧୯

ପଠାଇଥିବା ଲୋକମାନଙ୍କୁ କହିବା ପାଇଁ ଆମ୍ଭକୁ ଗୋଟିଏ
ଉତ୍ତର ଦିଅ। ତୁମ୍ଭେ ନିଜ ବିଷୟରେ କ'ଣ କହୁଛ?”
୨୩ଯୋହନ ସେମାନଙ୍କୁ ଭବିଷ୍ୟଦ୍‌ବକ୍ତା ଯିଶାଇୟଙ୍କ ବାଣୀ
କହିଲେ:

“ମୁଁ ମରୁଭୂମିରେ ଚିତ୍କାର କରୁଥିବା ଜଣେ ବ୍ୟକ୍ତିର
ସ୍ୱର: ‘ପ୍ରଭୁଙ୍କ ପାଇଁ ଗୋଟିଏ ସଳଖରାସ୍ତା ପ୍ରସ୍ତୁତ
କର।’” ଯିଶାଇୟ ୪୦:୩

୨୪ଫାରୂଶୀମାନେ ଏହି ଯିହୂଦୀମାନଙ୍କୁ ପଠାଇଥିଲେ।
୨୫ଏହି ଲୋକମାନେ ଯୋହନଙ୍କୁ କହିଲେ: “ତୁମ୍ଭେ କହୁଛ
ଯେ ତୁମ୍ଭେ ଖ୍ରୀଷ୍ଟ ନୁହଁ। ତୁମ୍ଭେ କହୁଛ ଯେ ତୁମ୍ଭେ ଏଲିୟ
ନୁହଁ କିମ୍ବା ସେହି ଭବିଷ୍ୟଦ୍‌ବକ୍ତା ନୁହଁ, ତେବେ ତୁମ୍ଭେ
କାହିଁକି ଲୋକମାନଙ୍କୁ ବାପ୍ତିଜିତ* ଦେଉଛ?”
୨୬ଯୋହନ ଉତ୍ତର ଦେଲେ, “ମୁଁ ଲୋକମାନଙ୍କୁ ଜଳରେ
ବାପ୍ତିଜିତ ଦେଉଛି। କିନ୍ତୁ ତୁମ୍ଭ ସହିତ ଏଠାରେ ଏପରି
ଜଣେ ବ୍ୟକ୍ତି ଅଛନ୍ତି ଯାହାଙ୍କୁ ତୁମ୍ଭେ ଜାଣି ନାହଁ। ୨୭ସେ
ବ୍ୟକ୍ତି ମୋ ପରେ ଆସୁଛନ୍ତି, ମୁଁ ତାହାଙ୍କ ଜୋତାର ଫିତା
ଫିଟାଇବା ପାଇଁ ଯୋଗ୍ୟ ନୁହେଁ।”
୨୮ଏହି ସବୁ ଘଟଣା ଯର୍ଦ୍ଦନ ନଦୀର ଆର ପଟେ ଥିବା
ବେଥାନୀ ଗ୍ରାମରେ ଘଟିଥିଲା। ଏହି ସ୍ଥାନରେ ଯୋହନ
ଲୋକମାନଙ୍କୁ ବାପ୍ତିଜିତ କରୁଥିଲେ।
୨୯ତହିଁ ଆରଦିନ ଯୋହନ ଯୀଶୁଙ୍କୁ ତାହାଙ୍କ ପାଖକୁ
ଆସିବାର ଦେଖିଲେ। ଯୋହନ କହିଲେ, “ଏହି ଦେଖ,
ପରମେଶ୍ୱରଙ୍କର ମେଷଶାବକ। ସେ ପୃଥିବୀର ପାପ ବୋହି
ନିଅନ୍ତି। ୩୦ମୁଁ ଆଗରୁ ଏହି ବ୍ୟକ୍ତିଙ୍କ ବିଷୟରେ କହିଥିଲି।
ମୁଁ କହିଥିଲି, ‘ମୋ ପରେ ଜଣେ ବ୍ୟକ୍ତି ଆସୁଛନ୍ତି, ସେ
ମୋଠାରୁ ଶ୍ରେଷ୍ଠ। ସେ ମୋ ପୂର୍ବରୁ ବାସ କରୁଥିଲେ। ସେ
ସର୍ବଦା ରହିଛନ୍ତି।’ ୩୧ମୁଁ ନିଜେ ମଧ୍ୟ ତାହାଙ୍କୁ ଜାଣି
ନଥିଲି। କିନ୍ତୁ ଇସ୍ରାୟେଲ ଯେପରି ଜାଣିପାରିବ ଯେ ଯୀଶୁ
ଖ୍ରୀଷ୍ଟ* ଅଟନ୍ତି। ଏଥିନିମନ୍ତେ ମୁଁ ଲୋକମାନଙ୍କୁ ଜଳରେ
ବାପ୍ତିଜିତ କରିବା ପାଇଁ ଆସିଥିଲି।”
୩୨-୩୩ତା'ପରେ ଯୋହନ କହିଲେ, “ଖ୍ରୀଷ୍ଟ କିଏ ବୋଲି
ମୁଁ ମଧ୍ୟ ଜାଣି ନଥିଲି। କିନ୍ତୁ ପରମେଶ୍ୱର ମୋତେ
ଲୋକମାନଙ୍କୁ ଜଳରେ ବାପ୍ତିଜିତ ଦେବା ପାଇଁ ପଠାଇଥିଲେ।
ଏବଂ ପରମେଶ୍ୱର ମୋତେ କହିଥିଲେ, ‘ତୁମ୍ଭେ ପବିତ୍ର
ଆତ୍ମାଙ୍କୁ ଅବତରଣ କରିବା ଓ ଜଣେ ବ୍ୟକ୍ତିଙ୍କ ଉପରେ
ସ୍ଥିର ହୋଇ ରହିବା ଦେଖିବ, ସେହି ବ୍ୟକ୍ତି ଯେକି
ପବିତ୍ରଆତ୍ମାଙ୍କ ଦ୍ୱାରା ବାପ୍ତିଜିତ ଦେବେ।’” ଯୋହନ କହିଲେ,
“ଏସବୁ ଘଟିବାର ମୁଁ ଦେଖିଛି। ସ୍ୱର୍ଗରୁ ଆତ୍ମା ଅବତରଣ
କରିବାର ମୁଁ ଦେଖିଲି। ସେହି ଆତ୍ମା ଗୋଟିଏ କପୋତ
ପରି ଦେଖା ଯାଉଥିଲେ ଓ ଯୀଶୁଙ୍କ ଉପରେ ବସି
ରହିଥିବାର ମୁଁ ଦେଖିଲି। ୩୪ତେଣୁ ମୁଁ ଲୋକମାନଙ୍କୁ ଏହା
କହେ: ‘ସେ (ଯୀଶୁ) ପରମେଶ୍ୱରଙ୍କର ପୁତ୍ର।’”

## ଯୀଶୁଙ୍କର ପ୍ରଥମ ଶିଷ୍ୟମାନେ

୩୫ତହିଁ ଆରଦିନ ଯୋହନ ପୁଣି ସେଠାରେ ଥିଲେ।
ତାହାଙ୍କ ସହିତ ତାହାଙ୍କର ଦୁଇ ଜଣ ଶିଷ୍ୟଥିଲେ।
୩୬ସେତେବେଳେ ଯୋହନ ଯୀଶୁଙ୍କୁ ଯିବାର ଦେଖିଲେ। ସେ
କହିଲେ, “ଦେଖ, ପରମେଶ୍ୱରଙ୍କର ମେଷଶାବକ।”
୩୭ସେହି ଦୁଇ ଜଣ ଶିଷ୍ୟ ଯୋହନଙ୍କ କଥା ଶୁଣିଲେ,
ତେଣୁ ସେମାନେ ଯୀଶୁଙ୍କ ଅନୁସରଣ କଲେ। ୩୮ଯୀଶୁ
ବୁଲି ପଡ଼ି ଦେଖିଲେ ଯେ, ସେହି ଦୁଇ ଜଣ ବ୍ୟକ୍ତି
ତାହାଙ୍କ ଅନୁସରଣ କରୁଛନ୍ତି। ସେ ପଚାରିଲେ, “ତୁମ୍ଭେମାନେ
କ'ଣ ଚାହଁ?”
ସେମାନେ ଉତ୍ତର ଦେଲେ, “ରବ୍‌ବୀ, ଆପଣ କେଉଁଠାରେ
ରହୁଛନ୍ତି?” (“ରବ୍‌ବୀ” ଅର୍ଥାତ୍ “ଗୁରୁ”)
୩୯ଯୀଶୁ ସେମାନଙ୍କୁ କହିଲେ, “ମୋ ସହିତ ଆସ,
ତୁମ୍ଭେମାନେ ଦେଖିବ।” ତେଣୁ ସେହି ଦୁଇ ଜଣ ଯୀଶୁଙ୍କ
ସହିତ ଗଲେ। ସେମାନେ ତାହାଙ୍କର ରହିବା ସ୍ଥାନ
ଦେଖିଲେ। ସେ ଦିନ ସେମାନେ ଯୀଶୁଙ୍କ ସହିତ ରହିଲେ।
ସେତେବେଳେ ସମୟ ପ୍ରାୟ ଚାରିଘଣ୍ଟା ହୋଇଥିଲା।
୪୦ଏହି ଦୁଇ ଜଣ ଲୋକ ଯୋହନଙ୍କଠାରୁ ଯୀଶୁଙ୍କ
ବିଷୟରେ ଶୁଣି ତାହାଙ୍କର ଅନୁସରଣ କରିଥିଲେ, ସେ
ଦୁଇ ଜଣଙ୍କ ମଧ୍ୟରୁ ଜଣେ ଥିଲେ ଆନ୍ଦ୍ରିୟ। ଆନ୍ଦ୍ରିୟ
ଶିମୋନ ପିତରଙ୍କର ଭାଇ ଥିଲେ। ୪୧ଆନ୍ଦ୍ରିୟ ପ୍ରଥମେ
ତାହାଙ୍କ ଭାଇ ଶିମୋନଙ୍କ ପାଖକୁ ଗଲେ। ସେ ଶିମୋନଙ୍କୁ
କହିଲେ, “ଆମ୍ଭେ ମଶୀହଙ୍କୁ ଭେଟିଛୁ।” (“ମଶୀହ” ଅର୍ଥାତ
“ଖ୍ରୀଷ୍ଟ।”)
୪୨ତା'ପରେ ଆନ୍ଦ୍ରିୟ ଶିମୋନଙ୍କୁ ଯୀଶୁଙ୍କ ପାଖକୁ ଆଣିଲେ।
ଯୀଶୁ ତାହାଙ୍କୁ ଚାହିଁ କହିଲେ, “ତୁମ୍ଭେ, ଯୋହନଙ୍କ ପୁତ୍ର
ଶିମୋନ। ତୁମ୍ଭକୁ କେଫା ନାମରେ ଡକା ହେବ।”
(“କେଫା” ଅର୍ଥାତ୍ “ପିତର।”)
୪୩ତା'ପରଦିନ ଯୀଶୁ ଗାଲୀଲୀକୁ ଯିବା ପାଇଁ ସ୍ଥିର
କଲେ। ସେ ଫିଲିପ୍ପଙ୍କୁ ଦେଖି କହିଲେ, “ମୋର ଅନୁସରଣ
କର।” ୪୪ଫିଲିପ୍ପ ମଧ୍ୟ ଆନ୍ଦ୍ରିୟ ଓ ପିତରଙ୍କ ପରି
ବେଥ୍‌ସାଇଦା ସହରର ଲୋକ ଥିଲେ। ୪୫ଫିଲିପ୍ପ
ନିଥନିୟେଲଙ୍କର ଦେଖା ପାଇ କହିଲେ, “ମୋଶା ବ୍ୟବସ୍ଥାରେ
ଯାହା ଲେଖିଥିଲେ, ତାହା ମନେ ପକାଅ। ମୋଶା ଜଣେ
ବ୍ୟକ୍ତିଙ୍କ ଆଗମନ ବିଷୟରେ ଲେଖିଥିଲେ।
ଭବିଷ୍ୟଦ୍‌ବକ୍ତାମାନେ ମଧ୍ୟ ତାହାଙ୍କ ବିଷୟରେ ଲେଖିଥିଲେ।
ଆମେ ତାହାଙ୍କୁ ଭେଟିଛୁ। ତାହାଙ୍କ ନାମ ଯୀଶୁ। ସେ
ଯୋସେଫଙ୍କର ପୁତ୍ର। ସେ ନାଜରିତରୁ ଆସିଛନ୍ତି।”
୪୬ନିଥନିୟେଲ ଫିଲିପ୍ପଙ୍କୁ କହିଲେ, “ନାଜରିତ, ନାଜରିତରୁ
କ'ଣ କୌଣସି ଉତ୍ତମ ବସ୍ତୁ ଉତ୍ପନ୍ନ ହୋଇପାରେ?”
ଫିଲିପ୍ପ ଉତ୍ତର ଦେଲେ, “ତୁମ୍ଭେ ଆସି ଦେଖ।”
୪୭ଯୀଶୁ ନିଥନିୟେଲଙ୍କୁ ତାହାଙ୍କ ଆଡ଼େ ଆସିବାର
ଦେଖିଲେ। ସେ କହିଲେ, “ଏହି ଲୋକ ପ୍ରକୃତରେ
ପରମେଶ୍ୱରଙ୍କର ଜଣେ ବ୍ୟକ୍ତି। ତାହାଙ୍କଠାରେ କୌଣସି
ଅସାଧୁତା ନାହିଁ।”
୪୮ନିଥନିୟେଲ ତାହାଙ୍କୁ ପଚାରିଲେ, “ଆପଣ ମୋତେ
କିପରି ଜାଣିଲେ?”

---

**ବାପ୍ତିଜିତ** ଜଳରେ ଡୁବନ
**ଖ୍ରୀଷ୍ଟ** ମସୀହ

ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ଡମ୍ବିର ଗଛ ତଳେ
ଦେଖିଥିଲ, ଫିଲିପ୍ପ ତୁମ୍ଭକୁ ମୋ ବଷୟରେ କହବା ପୂର୍ବରୁ
ମୁଁ ତୁମ୍ଭକୁ ଦେଖିଥିଲ।"
୪୯ତା'ପରେ ନଥନୟେଲ ଯୀଶୁଙ୍କୁ କହଲେ, "ହେ
ରାବ୍ବୀ (ଗୁରୁ), ଆପଣ ପରମେଶ୍ୱରଙ୍କ ପୁତ୍ର। ଆପଣ
ଇସ୍ରାୟେଲର ରାଜା।"
୫୦ଯୀଶୁ ନଥନୟେଲଙ୍କୁ କହଲେ, "ମୁଁ ତୁମ୍ଭକୁ କହଲ
ଯେ, ମୁଁ ତୁମ୍ଭକୁ ଡମ୍ବିର ଗଛ ତଳେ ଦେଖିଥିଲ।
ସେଥିପାଇଁ ତୁମ୍ଭେ ମୋତେ ବଶ୍ୱାସ କରୁଛ। କନ୍ତୁ ତୁମ୍ଭେ
ତା'ଠାରୁ ଆହୁର ଶ୍ରେଷ୍ଠତର ବଷୟ ଦେଖିବ।" ୫୧ଯୀଶୁ
ପୁଣି କହଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛ, ତୁମ୍ଭେମାନେ
ସ୍ୱର୍ଗକୁ ଖୋଲ ଯିବାର ଦେଖିବ। ତୁମ୍ଭେମାନେ ପରମେଶ୍ୱରଙ୍କ
'ଦୂତମାନଙ୍କୁ* ମନୁଷ୍ୟପୁତ୍ରଙ୍କ* ନକଟକୁ ଆରୋହଣ ଓ
ଅବତରଣ' କରୁଥିବାର ଦେଖିବ।"

## କାନାରେ ବବାହ

୨ ଦୁଇ ଦନ ପରେ ଗାଲୀଲୀର କାନା ସହରରେ
ଗୋଟିଏ ବବାହ ହେଲା। ଯୀଶୁଙ୍କ ମାଆ ସେଠାରେ
ଥିଲେ। ୨ସେହ ବବାହ ଉତ୍ସବକୁ ଯୀଶୁ ଓ ତାହାଙ୍କ
ଶିଷ୍ୟମାନେ ମଧ ନମନ୍ତ୍ରିତ ହୋଇଥିଲେ। ୩ସେହ ବବାହ
ଉତ୍ସବରେ ଯଥେଷ୍ଟ ପରମାଣରେ ଅଙ୍ଗୁରରସ ନଥିଲା।
ଅଙ୍ଗୁରରସ ସରଯିବା ପରେ ଯୀଶୁଙ୍କର ମାଆ ଆସି ତାହାଙ୍କୁ
କହଲେ, "ସେମାନଙ୍କର ଆଉ ଅଙ୍ଗୁରରସ ନାହିଁ।"
୪ଯୀଶୁ ଉତ୍ତର ଦେଲେ, "ପ୍ରିୟ ନାରୀ, କ'ଣ କରବାକୁ
ହେବ, ଏହା ତୁମ୍ଭେ ମୋତେ କହବା ଉଚତ ନୁହେଁ।
ମୋର ସମୟ ଏପର୍ଯ୍ୟନ୍ତ ଆସି ନାହିଁ।"
୫ଯୀଶୁଙ୍କର ମାଆ ସେବକମାନଙ୍କୁ କହଲେ, "ଯୀଶୁ
ଯେପର କହନ୍ତ, ତୁମ୍ଭେମାନେ ସେପର କର।"
୬ସେହ ସ୍ଥାନରେ ଛଅଟି ପଥରର ବଡ଼ ବଡ଼ ଜଳକୁଣ୍ଡ
ଥିଲା। ଯିହୂଦୀମାନେ ତାହାଙ୍କ ଶୁଚକରଣ ନୀତି ଅନୁସାରେ
ଏହ ଜଳକୁଣ୍ଡ ବ୍ୟବହାର କରୁଥିଲେ। ପ୍ରତ୍ୟେକ ଜଳକୁଣ୍ଡରେ
ପ୍ରାୟ ଶହେରୁ ଶହେ ପଚ୍ଚଶ ଲଟର ପାଣି ଧରୁଥିଲା।
୭ଯୀଶୁ ସେବକମାନଙ୍କୁ କହଲେ, "ସେହ ଜଳ କୁଣ୍ଡରେ
ପାଣି ଭର୍ତ୍ତି କର।" ତେଣୁ ସେବକମାନେ କୁଣ୍ଡରେ ପାଣି
ଭର୍ତ୍ତି କରଦେଲେ।
୮ତା'ପରେ ଯୀଶୁ ସେବକମାନଙ୍କୁ କହଲେ, "ବର୍ତ୍ତମାନ
ସେଥିରୁ କଛ ପାଣି କାଢ଼ି ନଅ। ଏହ ପାଣି ନେଇ
ଭୋଜିକର୍ତ୍ତାଙ୍କ ପାଖକୁ ଯାଅ।"
ତେଣୁ ସେମାନେ ସେହ ପାଣି ନେଇ ତାହାଙ୍କ ପାଖରେ
ପହଞ୍ଚିଲେ। ୯ତା'ପରେ ଭୋଜି ଦାୟିତ୍ୱରେ ଥିବା ମୁଖ୍ୟ
ଲୋକ ତାହାକୁ ଚାଖିଲେ। ସେହ ପାଣି ଏବେ ଅଙ୍ଗୁରରସରେ
ପରଣତ ହୋଇଯାଇଥିଲା। ସେ ଜାଣି ନଥିଲେ ଯେ ଏପର
ଅଙ୍ଗୁରରସ କେଉଁଠାରୁ ଆସିଲା? କନ୍ତୁ ସେହ ପାଣି
କାଢ଼ିଥିବା ସେବକମାନେ ଜାଣିଥିଲେ। ତା'ପରେ ଭୋଜିକର୍ତ୍ତା
ବରକୁ ଡାକଲେ। ୧୦ସେ ବରକୁ କହଲେ, "ଲୋକମାନେ
ସବୁବେଳେ ସବୁଠାରୁ ଉତ୍ତମ ଅଙ୍ଗୁରରସ ପ୍ରଥମେ ପିଇବାକୁ
ଦଅନ୍ତ। ଅତିଥିମାନେ ଯଥେଷ୍ଟ ପିଇ ତୃପ୍ତ ହେବାପରେ
ସେମାନେ ଶସ୍ତା ଅଙ୍ଗୁରରସ ଦଅନ୍ତ। କନ୍ତୁ ତୁମ୍ଭେ ତ
ଏପର୍ଯ୍ୟନ୍ତ ଉତ୍ତମ ଅଙ୍ଗୁରରସ ରଖିଛ।"
୧୧ଏହା ଯୀଶୁଙ୍କର ପ୍ରଥମ ଆଶ୍ଚର୍ଯ୍ୟକାର୍ଯ୍ୟ ଥିଲା। ସେ
ଏହ ଆଶ୍ଚର୍ଯ୍ୟକାମ ଗାଲୀଲୀର କାନା ସହରରେ କରଥିଲେ।
ଏହପର ସେ ତାହାଙ୍କ ମହମା ଦେଖାଇଲେ। ଏବଂ
ତାହାଙ୍କର ଶିଷ୍ୟମାନେ ତାହାଙ୍କ ଉପରେ ବଶ୍ୱାସ କଲେ।

## ମନ୍ଦିର ଭିତରେ ଯୀଶୁ

୧୨ତା'ପରେ ଯୀଶୁ କଫର୍ନାହୂମ ସହରକୁ ଗଲେ। ତାହାଙ୍କ
ସହତ ତାହାଙ୍କର ମାଆ, ତାହାଙ୍କର ଭାଇମାନେ ଓ
ତାହାଙ୍କର ଶିଷ୍ୟମାନେ ଗଲେ। ସେମାନେ ସମସ୍ତେ
କଫର୍ନାହୂମରେ କଛ ଦନ ରହଲେ। ୧୩ସେତେବେଳେ
ଯିହୂଦୀମାନଙ୍କର ନସ୍ତାରପର୍ବର ସମୟ ପାଖ ହୋଇଆସୁଥିଲା।
ତେଣୁ ଯୀଶୁ ଯିରୂଶାଲମକୁ ଗଲେ। ୧୪ସେହ ମନ୍ଦିର
ପରସରରେ ଯୀଶୁ ଲୋକମାନଙ୍କୁ ଗୋରୁ, ମେଣ୍ଢା ଓ
କପୋତ ବକ୍ରି କରବା ଦେଖିଲେ। କେତେକ ଲୋକଙ୍କୁ
ସେ ଟେବୁଲ ପାଖରେ ବସିଥିବାର ଦେଖିଲେ। ସେହ
ଲୋକମାନେ ଲୋକଙ୍କର ଟଙ୍କା ବନମୟ ଓ ବ୍ୟବସାୟ
ମଧ କରୁଥିଲେ। ୧୫ଯୀଶୁ କେତେ ଖଣ୍ଡ ଦଉଡ଼ିରେ
ଗୋଟିଏ ଛାଟ ତିଆର କଲେ। ତା'ପରେ ଯୀଶୁ ସେ
ସମସ୍ତ ଲୋକମାନଙ୍କୁ, ମେଣ୍ଢାଗୁଡ଼କୁ ଓ ଗୋରୁଗୁଡ଼କୁ ସେଠାରୁ
ଜୋର ଜବରଦସ୍ତି ତଡ଼ଦେଲେ। ସେ
ମୁଦ୍ରାବନମୟକାରୀମାନଙ୍କର ଟଙ୍କା ତଳେ ପକେଇ ମେଜଗୁଡ଼କ
ଓଲଟେଇ ଦେଲେ। ୧୬ତା'ପରେ ଯୀଶୁ କପୋତ
ବେପାରୀମାନଙ୍କୁ ଯାଇ କହଲେ, "ଏସବୁ ଜନଷ ଗୁଡ଼କ
ଏଠାରୁ ନେଇଯାଅ। ମୋର ପରମପିତାଙ୍କ ଘରକୁ ଗୋଟିଏ
ବଜାର ଭାବରେ ପରଣତ କର ନାହିଁ।"
୧୭ଏହ ସବୁ ଘଟଣା ଘଟିବା ବେଳେ ଯୀଶୁଙ୍କର
ଶିଷ୍ୟମାନେ ଶାସ୍ତ୍ରରେ ଲେଖାହୋଇଥିବା ଏହ ବାଣୀ ମନେ
ପକାଇଲେ:

> "ତୁମ୍ଭ ଗୃହ ପାଇଁ ମୋର ଅନୁରାଗ ମୋତେ ଗ୍ରାସ
> କରଦେବ।" ଗୀତସଂହତା ୬୯:୯

୧୮ଯିହୂଦୀମାନେ ଯୀଶୁଙ୍କୁ କହଲେ, "ଆମ୍ଭକୁ ଚହ୍ନ
ସ୍ୱରୂପେ ଏକ ଆଶ୍ଚର୍ଯ୍ୟ କାର୍ଯ୍ୟକର ଦେଖାଅ। ପ୍ରମାଣିତ
କର ଯେ, ଏସବୁ କରବା ପାଇଁ ତୁମ୍ଭର ଅଧିକାର ଅଛ।"
୧୯ଯୀଶୁ ଉତ୍ତର ଦେଲେ, "ଏହ ମନ୍ଦିରକୁ ନଷ୍ଟ କର
ଦଅ ଏବଂ ମୁଁ ଏହାକୁ ତିନ ଦନ ମଧରେ ପୁନର୍ବାର
ନର୍ମାଣ କର ଦେବ।"
୨୦ଯିହୁଦୀମାନେ କହଲେ, "ଏହ ମନ୍ଦିର ନର୍ମାଣ କରବା
ପାଇଁ ଲୋକମାନେ ଛୟାଳିଶ ବର୍ଷ ପର୍ଯ୍ୟନ୍ତ କାମ କରଥିଲେ।
ଆଉ ତୁମ୍ଭେ କ'ଣ ପ୍ରକୃତରେ ବଶ୍ୱାସ କରୁଛ, ତୁମ୍ଭେ ଏହା
ତିନ ଦନ ମଧରେ ନର୍ମାଣ କର ଦେବ?"

---

**ଦୂତମାନଙ୍କୁ** ଆଦପୁସ୍ତକ ୨୮:୧୨
**ମନୁଷ୍ୟପୁତ୍ର** ଯୀଶୁ ଦାନଏଲ-୭:୧୩-୧୪

୨୧କିନ୍ତୁ ଯୀଶୁ ଏହି ମନ୍ଦିର କହିବା ବେଳେ ନିଜ
ଶରୀରକୁ ଲକ୍ଷ୍ୟ କରି କହିଥିଲେ। ୨୨ଯୀଶୁ ମୃତ୍ୟୁରୁ ଉଠିଲା
ପରେ ତାହାଙ୍କ ଶିଷ୍ୟମାନେ ତାହାଙ୍କ କହିବା କଥା ମନେ
ପକାଇଥିଲେ। ତେଣୁ ତାହାଙ୍କର ଶିଷ୍ୟମାନେ ତାହାଙ୍କ
ବିଷୟରେ ଶାସ୍ତ୍ରରେ ଯାହା ଲେଖାଥିଲା ଓ ଯୀଶୁ ଯାହା
କହିଥିଲେ, ସେସବୁ କଥା ବିଶ୍ୱାସ କଲେ।)
୨୩ଯୀଶୁ ନିସ୍ତାରପର୍ବ ପାଇଁ ଯିରୂଶାଲମରେ ଥିଲେ।
ଅନେକ ଲୋକ ତାହାଙ୍କ ଉପରେ ବିଶ୍ୱାସ କରିଲେ କାରଣ
ସେମାନେ ତାହାଙ୍କ ଦ୍ୱାରା କରା ଯାଇଥିବା ଆଶ୍ଚର୍ଯ୍ୟ
କାର୍ଯ୍ୟମାନ ଦେଖିଲେ। ୨୪କିନ୍ତୁ ଯୀଶୁ ସେମାନଙ୍କୁ ଭରସା
କଲେ ନାହିଁ କାରଣ ସେ ସେହି ଲୋକମାନଙ୍କର ମନର
ଭାବନା ଜାଣିଥିଲେ। ୨୫ମନୁଷ୍ୟ ମନ ଭିତରେ କ'ଣ ଅଛି,
ତାହା ସେ ଭଲ ଭାବରେ ଜାଣିଥିଲେ। ତେଣୁ ତାହାଙ୍କୁ
ଲୋକମାନଙ୍କ ବିଷୟରେ ବୁଝେଇବା କାହାରି ଦରକାର
ନଥିଲା।

## ଯୀଶୁ ଓ ନୀକଦୀମ

୩ ନୀକଦୀମ ନାମକ ଜଣେ ବ୍ୟକ୍ତି ଥିଲେ। ସେ ଜଣେ
ଫାରୂଶୀ ଥିଲେ। ସେ ଯିହୂଦୀମାନଙ୍କର ଜଣେ ମୁଖ୍ୟ
ନେତା ଥିଲେ। ୨ସେ ଦିନେ ରାତିରେ ଯୀଶୁଙ୍କ ପାଖକୁ
ଆସିଲେ। ସେ କହିଲେ, "ରାବ୍ବୀ, ଆମ୍ଭେ ଜାଣିଛୁ ଯେ,
ତୁମ୍ଭେ ଏକ ଗୁରୁ, ପରମେଶ୍ୱରଙ୍କ ଦ୍ୱାରା ପଠାଯାଇ ଅଛ।
ତୁମ୍ଭେ ଯେଉଁ ସବୁ ଆଶ୍ଚର୍ଯ୍ୟକାର୍ଯ୍ୟ କରୁଛ, ସେଗୁଡ଼ିକ
ପରମେଶ୍ୱରଙ୍କ ସାହାଯ୍ୟ ନ ପାଇ କେହି କରି ପାରିବେ
ନାହିଁ।"
୩ଯୀଶୁ ତାହାଙ୍କୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ସତ୍ୟ
କହୁଛି। ପ୍ରତ୍ୟେକ ବ୍ୟକ୍ତି ନିଶ୍ଚିତ ରୂପେ ପୁନର୍ବାର ଜନ୍ମ
ହେବା ଆବଶ୍ୟକ। ଯଦି କୌଣସି ଲୋକ ପୁନର୍ବାର ଜନ୍ମ
ନହୁଏ, ତେବେ ସେ ଲୋକ ପରମେଶ୍ୱରଙ୍କର ରାଜ୍ୟରେ
କଦାପି ପ୍ରବେଶ କରି ପାରିବ ନାହିଁ।"
୪ନୀକଦୀମ ତାହାଙ୍କୁ କହିଲେ, "କିନ୍ତୁ ଯଦି କୌଣସି
ବ୍ୟକ୍ତି ବୃଦ୍ଧ ହୋଇ ସାରିଛି, ତେବେ ସେ କିପରି ପୁନର୍ବାର
ଜନ୍ମ ନେଇ ପାରିବ? ଜଣେ ଲୋକ କଦାପି ତାର ମାତାର
ଗର୍ଭରେ ଆଉ ଥରେ ପ୍ରବେଶ କରି ପାରିବ ନାହିଁ। ତେଣୁ
ଜଣେ ବ୍ୟକ୍ତି କଦାପି ଦ୍ୱିତୀୟ ଥର ଜନ୍ମ ଗ୍ରହଣ କରି
ପାରିବ ନାହିଁ।"
୫ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି,
ଜଣେ ଲୋକ ନିଶ୍ଚିତ ଭାବେ ଜଳ ଓ ଆତ୍ମାରୁ ଜନ୍ମ
ହେବା ଆବଶ୍ୟକ। ଯଦି କୌଣସି ଲୋକ ଜଳ ଓ
ଆତ୍ମାରୁ ଜନ୍ମ ହୋଇ ନଥାଏ, ତେବେ ସେ କଦାପି
ପରମେଶ୍ୱରଙ୍କ ରାଜ୍ୟ ଭିତରେ ପ୍ରବେଶ କରି ପାରିବ
ନାହିଁ। ୬ଜଣେ ଲୋକର ଶରୀର ତାର ପିତା-ମାତାଙ୍କଠାରୁ
ଜନ୍ମ ନିଏ। କିନ୍ତୁ ଜଣେ ଲୋକର ଆତ୍ମିକ ଜୀବନ
ଆତ୍ମାଙ୍କଠାରୁ ଜନ୍ମ ନିଏ। ୭ତେଣୁ ଆଶ୍ଚର୍ଯ୍ୟ ହୁଅ ନାହିଁ,
କାରଣ ତୁମ୍ଭକୁ କହିଲି ଯେ 'ତୁମ୍ଭେ ନିଶ୍ଚୟ ପୁନର୍ବାର ଜନ୍ମ
ହେବାକୁ ପଡ଼ିବ।' ୮ପବନ ତା' ଇଚ୍ଛା ଅନୁସାରେ ବହେ
ଓ ନିଜ ଇଚ୍ଛାରେ ଗତି କରେ। ତୁମ୍ଭେ ପବନ ବହିବାର
ଶବ୍ଦ ଶୁଣିଥାଅ, କିନ୍ତୁ ତୁମ୍ଭେ ଜାଣି ନ ଥାଅ, ପବନ
କେଉଁଠାରୁ ଆସେ ଓ କେଉଁଠାକୁ ଯାଏ। ଆତ୍ମାରୁ ଜନ୍ମ
ନେଇଥିବା ପ୍ରତ୍ୟେକ ଲୋକ ଠିକ୍ ସେହି ପରି।"
୯ନୀକଦୀମ ପଚାରିଲେ, "ଏସବୁ କିପରି ସମ୍ଭବ ହୋଇ
ପାରିବ?"
୧୦ଯୀଶୁ ତାହାଙ୍କୁ ଉତ୍ତର ଦେଲେ, "ତୁମ୍ଭେ ଇସ୍ରାୟେଲର
ଜଣେ ପ୍ରଧାନ ଗୁରୁ। କିନ୍ତୁ ତୁମ୍ଭେ ଏସବୁ କଥା ବୁଝି ପାରୁ
ନାହଁ? ୧୧ମୁଁ ତୁମ୍ଭକୁ ସତ୍ୟ କହୁଛି, ଆମ୍ଭେ ଯାହା ସବୁ
ଜାଣୁ ତାହା ସବୁ କହୁଛୁ, ଆମ୍ଭେ ଯାହା ଦେଖିଛୁ ତାହା
ତୁମ୍ଭକୁ କହୁଛୁ, କିନ୍ତୁ ଆମ୍ଭେ ତୁମ୍ଭମାନଙ୍କୁ ଯାହା କହୁଛୁ,
ତୁମ୍ଭେମାନେ ତାହା ଗ୍ରହଣ କରୁ ନାହଁ। ୧୨ମୁଁ ତୁମ୍ଭକୁ ଏ
ସଂସାରର ବିଷୟ ସବୁ କହିଛି। କିନ୍ତୁ ତୁମ୍ଭେ ମୋତେ
ବିଶ୍ୱାସ କରୁ ନାହଁ। ମୁଁ ଯଦି ତୁମ୍ଭକୁ ସ୍ୱର୍ଗ ବିଷୟରେ
କହିବି, ତେବେ ନିଶ୍ଚିତ ଭାବେ ତୁମ୍ଭେ ବିଶ୍ୱାସ କରିବ
ନାହଁ। ୧୩ମନୁଷ୍ୟପୁତ୍ର * କେବଳ ସେହି ଜଣେ ଯିଏ ସ୍ୱର୍ଗରୁ
ଆସିଛନ୍ତି, ଓ ସେ ହିଁ ଏକମାତ୍ର ଯିଏ ସ୍ୱର୍ଗକୁ ଯାଇଛନ୍ତି।
୧୪"ମୋଶା ମରୁଭୂମିରେ ସାପକୁ ଉପରକୁ ଉଠାଇଥିଲେ।*
ଠିକ୍ ସେହିପରି ମନୁଷ୍ୟପୁତ୍ର ମଧ୍ୟ ଉପରକୁ ଉଠାଯିବେ।
୧୫ଏହା ଦ୍ୱାରା ମନୁଷ୍ୟପୁତ୍ରଙ୍କଠାରେ ବିଶ୍ୱାସ କରୁଥିବା ପ୍ରତ୍ୟେକ
ଲୋକ ଅନନ୍ତ ଜୀବନ ଲାଭ କରିବ।"
୧୬ହଁ, ପରମେଶ୍ୱର ଏ ପୃଥିବୀକୁ ଏଡ଼େ ପ୍ରେମ କଲେ
ଯେ ସେ ତାହାଙ୍କ ଏକମାତ୍ର ପୁତ୍ରଙ୍କୁ ଦାନ କଲେ।
ପରମେଶ୍ୱର ତାହାଙ୍କ ପୁତ୍ରଙ୍କୁ ଦାନ କଲେ ଯେପରି
ତାହାଙ୍କ ପୁତ୍ରଙ୍କୁ ବିଶ୍ୱାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି, ବିନାଶ
ହେବେ ନାହିଁ, କିନ୍ତୁ ଅନନ୍ତ ଜୀବନ ପାଇବେ। ୧୭ପରମେଶ୍ୱର
ତାହାଙ୍କ ପୁତ୍ରଙ୍କୁ ଏ ଜଗତକୁ ପଠାଇଲେ। ସେ ତାହାଙ୍କୁ
ଜଗତର ବିଚାର କରିବା ପାଇଁ ପଠାଇ ନଥିଲେ। ମାତ୍ର
ଏହି ଜଗତ ଯେପରି ତାହାଙ୍କ ପୁତ୍ରଙ୍କ ଦ୍ୱାରା ଉଦ୍ଧାର
ପାଇବ, ସେଥିପାଇଁ ସେ ତାହାଙ୍କୁ ପଠାଇଥିଲେ।
୧୮ପରମେଶ୍ୱରଙ୍କ ପୁତ୍ରଙ୍କଠାରେ ବିଶ୍ୱାସ ରଖୁଥିବା ଲୋକ
କେବେ ବିଚାରିତ (ନିନ୍ଦିତ) ହୁଏ ନାହିଁ। ତାହାଙ୍କଠାରେ
ବିଶ୍ୱାସ ନ କରୁଥିବା ଲୋକ ବିଚାରିତ ହୋଇସାରିଛି।
କାରଣ ସେ ପରମେଶ୍ୱରଙ୍କର ଏକମାତ୍ର ପୁତ୍ରଙ୍କୁ ବିଶ୍ୱାସ
କଲା ନାହିଁ। ୧୯ଲୋକମାନଙ୍କର ବିଚାର ଏହି ବିଷୟ ଦ୍ୱାରା
ହୁଏ: ସେହି ଆଲୋକ ଜଗତକୁ ଆସିଲେ, କିନ୍ତୁ ଲୋକେ
ସେହି ଆଲୋକ ଚାହିଁଲେ ନାହିଁ, ସେମାନେ ଅନ୍ଧକାର
ଚାହିଁଲେ, କାରଣ ସେମାନେ ମନ୍ଦକାର୍ଯ୍ୟରେ ରତଥିଲେ।
୨୦ମନ୍ଦକାର୍ଯ୍ୟ କରୁଥିବା ପ୍ରତ୍ୟେକ ଲୋକ ଆଲୋକକୁ ଘୃଣା
କରେ। ସେ କେବେ ଆଲୋକକୁ ଆସିବ ନାହିଁ କାରଣ

---

**ମନୁଷ୍ୟପୁତ୍ର** ଏକ ନାମ ଯାହା ଯୀଶୁ ନିଜେ ବ୍ୟବହାର କରୁଥିଲେ। ଏହି ନାମ ମଶୀହଙ୍କୁ ମଧ୍ୟ ବୁଝାଏ, ଯିଏ କି ଈଶ୍ୱରଙ୍କ ମନୋନୀତ ଉଦ୍ଧାରକର୍ତ୍ତା।

**"ମୋଶା ... ଉଠାଇଥିଲେ"** ଯେତେବେଳେ ଈଶ୍ୱରଙ୍କ ଲୋକମାନେ ସାପକାମୁଡ଼ାରେ ମରୁଥିଲେ, ସେତେବେଳେ ଈଶ୍ୱର ମୋଶାଙ୍କୁ କହିଲେ ଏକ ପିତ୍ତଳର ସାପ ଏକ ସ୍ତମ୍ଭରେ ରଖିବାପାଇଁ ଏବଂ ଯେଉଁମାନେ ଦେଖିବେ ସେମାନେ ସୁସ୍ଥ ହେବେ ଗଣନା-୨୧:୪-୯

ଆଲୋକ ତା'ର କୃତ ସମସ୍ତ ମନ୍ଦକାର୍ଯ୍ୟ ଗୁଡ଼ିକୁ ଦେଖାଇ
ଦେବ। ୨୧କିନ୍ତୁ ଯେଉଁ ଲୋକ ସତ୍ୟପଥ ଅନୁସରଣ
କରେ, ସେ ଆଲୋକ ନିକଟକୁ ଆସେ। ତା'ପରେ
ଆଲୋକ ସ୍ପଷ୍ଟ ଦେଖାଇ ଦେବ ଯେ ସେ ଲୋକ ଯେଉଁ
କାର୍ଯ୍ୟ କରିଛି ତାହା ସେ ପରମେଶ୍ୱରଙ୍କ ମାଧ୍ୟମରେ
କରିଛି।*

### ଯୀଶୁ ଏବଂ ବାପ୍ତିଜକ ଯୋହନ

୨୨ଏହା ପରେ ଯୀଶୁ ଓ ତାହାଙ୍କର ଶିଷ୍ୟମାନେ ଯିହୂଦା
ଅଞ୍ଚଳକୁ ଗଲେ। ସେଠାରେ ଯୀଶୁ ତାହାଙ୍କ ଶିଷ୍ୟମାନଙ୍କ
ସହିତ ରହି ଲୋକଙ୍କୁ ବାପ୍ତିସ୍ମ* ଦେଲେ। ୨୩ଯୋହନ
ମଧ୍ୟ ଏନୋନ ଗ୍ରାମରେ ଲୋକମାନଙ୍କୁ ବାପ୍ତିଜିତ ଦେଉଥିଲେ।
ଏନୋନ ଶାଲମ ନଗର ନିକଟବର୍ତ୍ତୀ। ସେଠାରେ ପ୍ରଚୁର
ଜଳ ଥିବାରୁ ଯୋହନ ସେଠାରେ ବାପ୍ତିସ୍ମ ଦେଉଥିଲେ।
ଲୋକମାନେ ସେଠାକୁ ବାପ୍ତିଜିତ ହେବାପାଇଁ ଯାଉଥିଲେ।
୨୪(ଯୋହନ କାରାଗାରରେ ବନ୍ଦୀ ହେବା ପୂର୍ବରୁ ଏସବୁ
ଘଟିଥିଲା।)
୨୫ଯୋହନଙ୍କର କେତେକ ଶିଷ୍ୟଙ୍କ ସହିତ ଜଣେ
ଯିହୂଦୀଙ୍କ ଯୁକ୍ତି-ତର୍କ ହେଲା। ସେମାନେ ତାହାଙ୍କ ସହିତ
ଧର୍ମ ସଂକ୍ରାନ୍ତୀୟ ଶୁଚିକରଣ ବିଷୟରେ ତର୍କ କରୁଥିଲେ।
୨୬ତେଣୁ ଶିଷ୍ୟମାନେ ଆସି ଯୋହନଙ୍କୁ କହିଲେ, "ହେ
ଗୁରୁ, ତୁମ୍ଭ ସହିତ ଯର୍ଦ୍ଦନ ନଦୀର ଆର ପାଖରେ ଯେଉଁ
ଲୋକ ଥିଲେ, ତାହାଙ୍କୁ ମନେ ପକାଅ। ତୁମ୍ଭେ ସେହି
ଲୋକ ବିଷୟରେ ଲୋକମାନଙ୍କୁ କହିଥିଲ। ସେହି ଲୋକ
ବାପ୍ତିସ୍ମ ଦେଉଛନ୍ତି ଓ ଅନେକ ଲୋକ ତାହାଙ୍କ ପାଖକୁ
ଯାଉଛନ୍ତି।"
୨୭ଯୋହନ ଉତ୍ତର ଦେଲେ, "ପରମେଶ୍ୱର ଗୋଟିଏ
ଲୋକକୁ ଯାହା ଦିଅନ୍ତି, ସେ କେବଳ ସେତିକି ପାଏ।
୨୮ତୁମ୍ଭେମାନେ ନିଜେ ମୋର କହିବା ଶୁଣିଛ ଯେ 'ମୁଁ
ଖ୍ରୀଷ୍ଟ ନୁହେଁ। ତାହାଙ୍କ ପାଇଁ ପଥ ତିଆରି କରିବା
ଉଦ୍ଦେଶ୍ୟରେ ଈଶ୍ୱର ମୋତେ ପଠାଇଛନ୍ତି।' ୨୯କନ୍ୟା
କେବଳ ବରର। ବରକୁ ସାହାଯ୍ୟ କରୁଥିବା ବନ୍ଧୁ ବର
ଆସିବା ପର୍ଯ୍ୟନ୍ତ ଶୁଣେ ଓ ଅପେକ୍ଷା କରେ। ବରର ସ୍ୱର
ଶୁଣି ସେହି ବନ୍ଧୁ ବହୁତ ଖୁସି ହୁଏ। ମୁଁ ଏବେ ସେହି
ଭଳି ଆନନ୍ଦ ପାଉଛି। ଏହା ମୋର ଆନନ୍ଦର ସମୟ।
୩୦ଯୀଶୁଙ୍କର ଅବଶ୍ୟ ବୃଦ୍ଧି ହେଉ। ଏବଂ ମୋର ପ୍ରୟୋଜନୀୟତା
ଅବଶ୍ୟ କମି ଯାଉ।

### ସ୍ୱର୍ଗରୁ ଆସିବା ଜଣେ ବ୍ୟକ୍ତି

୩୧"ସ୍ୱର୍ଗରୁ ଆସିଥିବା ବ୍ୟକ୍ତି ଅନ୍ୟ ଲୋକମାନଙ୍କ ଅପେକ୍ଷା
ଶ୍ରେଷ୍ଠ। ପୃଥିବୀରୁ ଆସିଥିବା ବ୍ୟକ୍ତି ପୃଥିବୀର ଅଟନ୍ତି।
ସେହି ବ୍ୟକ୍ତି ପୃଥିବୀରେ ଥିବା ବସ୍ତୁ ବିଷୟରେ କହନ୍ତି।
କିନ୍ତୁ ଯେଉଁ ବ୍ୟକ୍ତି ସ୍ୱର୍ଗରୁ ଆସନ୍ତି, ସେ ଅନ୍ୟ ସମସ୍ତଙ୍କଠାରୁ
ଶ୍ରେଷ୍ଠ। ୩୨ସେ ଯାହା ଦେଖିଛନ୍ତି ଓ ଶୁଣିଛନ୍ତି ସେହି
ବିଷୟରେ କୁହନ୍ତି। କିନ୍ତୁ ସେ କହିଥିବା କଥା ସବୁ
ଲୋକେ ଗ୍ରହଣ କରନ୍ତି ନାହିଁ। ୩୩ସେ କହୁଥିବା କଥା
ଗୁଡ଼ିକୁ ଯେଉଁ ଲୋକ ଗ୍ରହଣ କରେ, ସେ ପ୍ରମାଣ ଦିଏ
ଯେ ପରମେଶ୍ୱର ଯାହା କହନ୍ତି ତାହା ସତ୍ୟ। ୩୪ପରମେଶ୍ୱର
ତାହାଙ୍କୁ ପଠାଇଛନ୍ତି। ପରମେଶ୍ୱର ଯାହା କହିଥାନ୍ତି, ସେ
ତାହା କହନ୍ତି। ପରମେଶ୍ୱର ସମ୍ପୂର୍ଣ୍ଣ ଭାବେ ତାହାଙ୍କୁ
ପବିତ୍ରଆତ୍ମା ପ୍ରଦାନ କରିଛନ୍ତି। ୩୫ପରମପିତା ପୁତ୍ରଙ୍କୁ ଭଲ
ପାଆନ୍ତି। ସେ ତାହାଙ୍କୁ ସମସ୍ତ ବିଷୟର ଉପରେ କ୍ଷମତା
ପ୍ରଦାନ କରିଛନ୍ତି। ୩୬ପୁତ୍ରଙ୍କୁ ବିଶ୍ୱାସ କରୁଥିବା ଲୋକ
ଅନନ୍ତ ଜୀବନ ପାଆନ୍ତି। କିନ୍ତୁ ପୁତ୍ରଙ୍କୁ ଅବଜ୍ଞା କରୁଥିବା
ଲୋକ କଦାପି ଅନନ୍ତ ଜୀବନ ଲାଭ କରିବ ନାହିଁ। ସେହି
ଲୋକମାନଙ୍କ ଉପରେ ପରମେଶ୍ୱରଙ୍କର କ୍ରୋଧ ରହିବ।"

### ଜଣେ ଶମିରୋଣୀୟା ସ୍ତ୍ରୀ ସହିତ ଯୀଶୁଙ୍କର କଥାବାର୍ତ୍ତା

୪ ଯୋହନଙ୍କ ଅପେକ୍ଷା ଯୀଶୁ ଅଧିକ ଶିଷ୍ୟ କରୁଥିବାର
ଓ ବାପ୍ତିଜିତ ଦେଉଥିବାର ଖବର ଫାରୂଶୀମାନେ
ଶୁଣିଲେ। ୨(କିନ୍ତୁ ଯୀଶୁ ପ୍ରକୃତରେ ଲୋକମାନଙ୍କୁ ବାପ୍ତିସ୍ମ
ଦେଉ ନ ଥିଲେ। ତାହାଙ୍କ ଶିଷ୍ୟମାନେ ତାହାଙ୍କ ପାଇଁ
ଲୋକଙ୍କୁ ବାପ୍ତିସ୍ମ ଦେଉଥିଲେ।) ଯୀଶୁ ଜାଣିଥିଲେ ଯେ
ଫାରୂଶୀମାନେ ତାହାଙ୍କ ସମ୍ବନ୍ଧରେ ଶୁଣିଛନ୍ତି। ୩ତେଣୁ ସେ
ସେତେବେଳେ ଯିହୂଦା ପ୍ରଦେଶ ଛାଡ଼ି ପୁଣି ଥରେ ଗାଲୀଲୀକୁ
ଚାଲିଗଲେ। ୪ଯୀଶୁ ଗାଲୀଲୀ ଗଲାବେଳେ ତାହାଙ୍କୁ ଶମିରୋଣ
ଅଞ୍ଚଳ ବାଟ ଦେଇ ଯିବାକୁ ହେଲା।
୫ଯୀଶୁ ଶମିରୋଣର ସୁଖାରରେ ଆସି ପହଞ୍ଚିଲେ। ଏହି
ନଗରଟି ଯାକୁବ ତାହାଙ୍କ ପୁତ୍ର ଯୋସେଫଙ୍କୁ ଦେଇଥିବା
ଜମି ପାଖରେ ଥିଲା। ୬ଯାକୁବଙ୍କ କୂଅ ସେଠାରେ ଥିଲା।
ଯୀଶୁ ଚାଲି ଚାଲି କ୍ଳାନ୍ତ ହୋଇ ପଡ଼ିଥିଲେ। ତେଣୁ ସେ
କୂଅ ପାଖରେ ବସି ପଡ଼ିଲେ। ଏହା ମଧ୍ୟାହ୍ନ ସମୟ ଥିଲା।
୭ସେତିକିବେଳେ ଜଣେ ଶମିରୋଣୀୟା ସ୍ତ୍ରୀ ସେହି କୂଅରୁ
ପାଣି ନେବା ପାଇଁ ଆସିଲା। ଯୀଶୁ ତାକୁ କହିଲେ,
"ମୋତେ ଦୟାକରି ମୁନ୍ଦେ ପାଣି ପିଇବାକୁ ଦିଅ।" ୮(ସେ
ସମୟରେ ତାହାଙ୍କ ଶିଷ୍ୟମାନେ କିଛି ଖାଦ୍ୟ କିଣିବା ପାଇଁ
ନଗରକୁ ଯାଇଥିଲେ)।
୯ସେହି ଶମିରୋଣୀୟା ସ୍ତ୍ରୀ ଜଣକ ତାହାଙ୍କୁ କହିଲା,
"ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ ଆପଣ ମୋତେ ପାଣି
ପିଇବାକୁ ମାଗୁଛନ୍ତି। ଆପଣ ଜଣେ ଯିହୂଦୀ ଓ ମୁଁ ଜଣେ
ଶମିରୋଣୀୟା ସ୍ତ୍ରୀ।" (ଯିହୂଦୀମାନେ ଶମିରୋଣୀୟଙ୍କ ସହିତ
ବନ୍ଧୁତା କରନ୍ତି ନାହିଁ)।
୧୦ଯୀଶୁ ଉତ୍ତର ଦେଲେ, "ତୁମ୍ଭେ ପରମେଶ୍ୱର ଦେଉଥିବା
ଜିନିଷ ବିଷୟରେ ଜାଣି ନାହିଁ। ତୁମ୍ଭକୁ ଜଳ ମାଗୁଥିବା
ବ୍ୟକ୍ତି, ଅର୍ଥାତ ମୁଁ କିଏ ତାହା ମଧ୍ୟ ତୁମ୍ଭେ ଜାଣି ନାହିଁ।
ତୁମ୍ଭେ ଯଦି ଏସବୁ କଥା ଜାଣିଥାନ୍ତ ତେବେ ତୁମ୍ଭେ
ମୋତେ ମାଗନ୍ତ ଓ ମୁଁ ତୁମ୍ଭକୁ ଜୀବନ୍ତ ଜଳ ଦିଅନ୍ତି।"
୧୧ସେହି ସ୍ତ୍ରୀ ଲୋକଟି କହିଲା, "ମହାଶୟ, ଆପଣ
କେଉଁଠାରୁ ସେହି ଜୀବନ୍ତ ଜଳ ପାଇବେ? କୂଅଟି ଅତି
ଗଭୀର ଓ ପାଣି କାଢ଼ିବା ପାଇଁ ଆପଣଙ୍କ ପାଖରେ କିଛି

---

**୧୬-୨୧ ପଦ** ଅନେକ ପଣ୍ଡିତ ଭାବନ୍ତି ଏହା ଯୀଶୁଙ୍କର ବାକ୍ୟ।

**ବାପ୍ତିସ୍ମ** ଜଳରେ ଡୁବନ କରିବା।

ନାହିଁ। ୧୨ଆପଣ କ'ଣ ଆମ ପୂର୍ବପୁରୁଷ ଯାକୁବଙ୍କ ଠାରୁ
ଶ୍ରେଷ୍ଠ? ଯାକୁବ ହିଁ ଆମ୍ଭକୁ ଏହି କୂଅ ଦେଇଥିଲେ। ସେ
ନିଜେ ଏହି କୂଅରୁ ଜଳ ପିଉଥିଲେ। ତାହାଙ୍କର ପୁତ୍ରମାନେ
ଓ ସବୁ ପଶୁମାନେ ମଧ୍ୟ ଏହି କୂଅରୁ ଜଳ ପିଉଥିଲେ।"
୧୩ଯୀଶୁ ଉତ୍ତର ଦେଲେ, "ପ୍ରତ୍ୟେକ ଲୋକ ଏହି ଜଳ
ପାନ କରିବା ପରେ ପୁଣି ତୃଷାର୍ତ୍ତ ହେବ। ୧୪କିନ୍ତୁ ମୁଁ
ଯେଉଁ ଜଳ ପିଇବାକୁ ଦେବ, ତାହା ଯେଉଁ ଲୋକ ପିଇବ
ସେ କଦାପି ତୃଷାର୍ତ୍ତ ହେବ ନାହିଁ। ମୁଁ ତାହାକୁ ଯେଉଁ
ଜଳ ଦେବ, ତାହା ଅନନ୍ତ ଜୀବନ ଜଳର ଝର ସ୍ୱରୁପେ
ସର୍ବଦା ପ୍ରବାହିତ ହେବ।"
୧୫ସେ ସ୍ତ୍ରୀଲୋକଟି ଯୀଶୁଙ୍କୁ କହିଲା, "ମହାଶୟ, ମୋତେ
ସେହି ଜଳ ଦିଅନ୍ତୁ। ମୁଁ ଆଉ ଯେପରି ଆଉ କେବେ
ତୃଷାର୍ତ୍ତ ହେବ ନାହିଁ। ମୋତେ ଏଠାକୁ ଆଉ କେବେ ଜଳ
ନେବା ପାଇଁ ଆସିବାକୁ ପଡ଼ିବ ନାହିଁ।"
୧୬ଯୀଶୁ ତାକୁ କହିଲେ, "ଯାଅ, ତୁମ୍ଭ ସ୍ୱାମୀଙ୍କୁ ଡାକି
ଏଠାକୁ ଆସ।"
୧୭ସ୍ତ୍ରୀ ଲୋକଟି କହିଲା, "କିନ୍ତୁ ମୋର ସ୍ୱାମୀ ନାହିଁ।"
ଯୀଶୁ କହିଲେ, "ଠିକ୍ କଥା କହୁଛ ତୁମ୍ଭର ସ୍ୱାମୀ
ନାହିଁ। ୧୮ପ୍ରକୃତରେ ତୁମ୍ଭର ପାଞ୍ଚଜଣ ସ୍ୱାମୀ ଥିଲେ। ତୁମ୍ଭେ
ବର୍ତ୍ତମାନ ଯେଉଁ ଲୋକ ସହିତ ରହୁଛ, ସେ ତୁମ୍ଭର ସ୍ୱାମୀ
ନୁହେଁ। ତୁମ୍ଭେ ମୋତେ ସତ୍ୟ କହିଲ।"
୧୯ସ୍ତ୍ରୀ ଲୋକଟି କହିଲା, "ମହାଶୟ, ମୁଁ ଜାଣିପାରୁଛି,
ଆପଣ ଜଣେ ଭବିଷ୍ୟଦ୍‌ବକ୍ତା। ୨୦ଆମ୍ଭର ପିତୃପୁରୁଷମାନେ
ଏହି ପର୍ବତରେ ଉପାସନା କରୁଥିଲେ। କିନ୍ତୁ ଯିହୂଦୀମାନେ
କୁହନ୍ତି ଯେ ଯିରୂଶାଲମ ହେଉଛି ଉପାସନା କରିବା
ନିମନ୍ତେ ଯଥାର୍ଥ ସ୍ଥାନ।"
୨୧ଯୀଶୁ ତାହାକୁ କହିଲେ, "ହେ ନାରୀ, ମୋତେ
ବିଶ୍ୱାସ କର। ଏପରି ସମୟ ଆସୁଛି ଯେତେବେଳେ
ତୁମ୍ଭେମାନେ ପରମପିତାଙ୍କର ଉପାସନା ଏ ପର୍ବତରେ କିମ୍ବା
ଯିରୂଶାଲମରେ କରିବ ନାହିଁ। ୨୨ତୁମ୍ଭେ ଶମିରୋଣୀୟମାନେ
କିଛି ନ ଜାଣି ନ ବୁଝି ଉପାସନା କର। କିନ୍ତୁ ଆମ୍ଭେ
ଯିହୂଦୀମାନେ କାହାକୁ ଉପାସନା କରୁ, ସବୁ ଜାଣୁ।
ଯିହୂଦୀମାନଙ୍କଠାରୁ ପରିତ୍ରାଣ ଏ ଜଗତକୁ ଆସେ। ୨୩ଏପରି
ସମୟ ଆସୁଛି, ଯେତେବେଳେ ପ୍ରକୃତ ଉପାସକମାନେ
ପରମପିତାଙ୍କୁ ଆତ୍ମା ଓ ସତ୍ୟରେ ଉପାସନା କରିବେ।
ସେହି ସମୟ ବର୍ତ୍ତମାନ ଉପସ୍ଥିତ। ସେହିଭଳି ଲୋକମାନଙ୍କୁ,
ପରମପିତା ନିଜର ଉପାସକ-ରୂପେ ଗ୍ରହଣ କରିବାକୁ
ଚାହାଁନ୍ତି। ୨୪ପରମେଶ୍ୱର ହିଁ ଆତ୍ମା। ତେଣୁ ପରମେଶ୍ୱରଙ୍କ
ଉପାସନା କରୁଥିବା ଲୋକମାନେ ଆତ୍ମା ଓ ସତ୍ୟ ସହିତ
ତାହାଙ୍କର ଉପାସନା କରିବା ଉଚିତ।"
୨୫ସେହି ସ୍ତ୍ରୀ ଲୋକଟି କହିଲା, "ମୁଁ ଜାଣେ ଯେ
ମଶୀହ ଆସୁଛନ୍ତି।" (ମଶୀହଙ୍କୁ ଖ୍ରୀଷ୍ଟ କହନ୍ତି।)
"ଯେତେବେଳେ ମଶୀହ ଆସିବେ, ସେତେବେଳେ ସେ
ଆମ୍ଭମାନଙ୍କୁ ସବୁ କଥା ବୁଝାଇ ଦେବେ।"
୨୬ଯୀଶୁ ତାହାକୁ କହିଲେ, "ଯେଉଁ ଲୋକ ବର୍ତ୍ତମାନ
ତୁମ୍ଭ ସହିତ କଥାବାର୍ତ୍ତା କରୁଛି। ସେ ନିଜେ ମଶୀହ
ଅଟେ।"
୨୭ସେହି ସମୟରେ ଯୀଶୁଙ୍କର ଶିଷ୍ୟମାନେ ନଗରରୁ
ଫେରିଲେ। ସେମାନେ ଯୀଶୁଙ୍କୁ ଗୋଟିଏ ସ୍ତ୍ରୀଲୋକ ସହିତ
କଥା ହେବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। କିନ୍ତୁ କେହି
ତାହାଙ୍କୁ ଏପରି କିଛି ପ୍ରଶ୍ନ ପଚାରିଲେ ନାହିଁ, "ତୁମ୍ଭେ କ'ଣ
ଚାହଁ?" କିମ୍ବା "ତୁମ୍ଭେ କାହିଁକି ତା ସହିତ କଥାବାର୍ତ୍ତା
ହେଉଛ?"
୨୮ତା'ପରେ ସେ ସ୍ତ୍ରୀଲୋକ ତା କଳସୀ ପାଣି ଛାଡ଼ି
ନଗରକୁ ଚାଲିଗଲା। ସେଠାରେ ପହଞ୍ଚି ସେ ଲୋକମାନଙ୍କୁ
କହିଲା, ୨୯"ମୁଁ ଯାହା କିଛି କରିଛି, ପ୍ରତ୍ୟେକ କଥା
ମୋତେ ଜଣେ ଲୋକ କହିଦେଲେ। ତୁମ୍ଭେ ସେହି
ଲୋକଙ୍କୁ ଦେଖିବ ଆସ। ସେ ବୋଧେ ଖ୍ରୀଷ୍ଟ ହୋଇ
ପାରନ୍ତି।" ୩୦ତେଣୁ ଲୋକମାନେ ନଗର ଛାଡ଼ି ଯୀଶୁଙ୍କୁ
ଦେଖିବାକୁ ଗଲେ। ୩୧ସ୍ତ୍ରୀଲୋକଟି ନଗରରେ ଥିବା ସମୟରେ,
ଯୀଶୁଙ୍କ ଶିଷ୍ୟମାନେ ତାହାଙ୍କୁ ଅନୁରୋଧ କଲେ, "ଗୁରୁ
କିଛି ଭୋଜନ କରନ୍ତୁ।"
୩୨କିନ୍ତୁ ଯୀଶୁ ଉତ୍ତର ଦେଲେ, "ମୋ ପାଖରେ ଏପରି
ଖାଦ୍ୟ ଅଛି, ଯାହା ବିଷୟରେ ତୁମ୍ଭେମାନେ ଜାଣି ନାହିଁ।"
୩୩ତେଣୁ ଶିଷ୍ୟମାନେ ନିଜ-ନିଜ ମଧ୍ୟରେ କଥାବାର୍ତ୍ତା
ହେଲେ "ତାହାଙ୍କ ଲାଗି କିଏ ଖାଦ୍ୟ ଆଣିଲା କି?"
୩୪ଯୀଶୁ କହିଲେ, "ଯେଉଁ ପରମେଶ୍ୱର ମୋତେ
ପଠାଇଛନ୍ତି, ତାହାଙ୍କର ଇଚ୍ଛା ପାଳନ କରିବା ଓ ତାହାଙ୍କର
କାର୍ଯ୍ୟ ପୂର୍ଣ୍ଣ କରିବା ହେଉଛି ମୋର ଆହାର। ୩୫ତୁମ୍ଭେମାନେ
ଯେତେବେଳେ କିଛି ରୋପଣ କର ସେତେବେଳେ ତୁମ୍ଭେ
ସର୍ବଦା କୁହ, 'ଶସ୍ୟ କଟା ହେବା ପାଇଁ ଆହୁରି ଚାରି
ମାସ ବାକି ଅଛି।' କିନ୍ତୁ ମୁଁ ତୁମ୍ଭକୁ କହୁଛି, ତୁମ୍ଭମାନଙ୍କର
ଆଖି ଖୋଲ। ଲୋକମାନଙ୍କୁ ଦେଖ। ସେମାନେ ଅମଳ
ପାଇଁ ପ୍ରସ୍ତୁତ କ୍ଷେତ୍ରତୁଲ୍ୟ ଅଟନ୍ତି। ୩୬ବର୍ତ୍ତମାନ ମଧ୍ୟ ଯେଉଁ
ଲୋକ ଶସ୍ୟ କାଟେ, ତାକୁ ମଜୁରି ଦିଆ ଯାଉଛି। ସେ
ଅନନ୍ତ ଜୀବନ ପାଇଁ ଶସ୍ୟ ସଂଗ୍ରହ କରୁଛି। ତେଣୁ
ବୁଣାଳି ଓ କଟାଳି ଉଭୟ ମିଳି ଆନନ୍ଦିତ କରିବେ।
୩୭କଥାରେ ଅଛି 'ଜଣେ ଲୋକ ବୁଣେ ଏବଂ ଅନ୍ୟ ଜଣେ
ଫସଲ କାଟେ', ଏହି ଉକ୍ତିଟି ସତ୍ୟ। ୩୮ତୁମ୍ଭେ ଯାହା ବୁଣି
ନଥିଲ ତାହା କାଟିବା ପାଇଁ ମୁଁ ତୁମ୍ଭକୁ ପଠାଇଥିଲି। ଅନ୍ୟ
ଲୋକମାନେ କାମ କଲେ, ଆଉ ତୁମ୍ଭେମାନେ ସେମାନଙ୍କ
କାମରୁ ଲାଭ ପାଇଲ।"
୩୯ସେ ସହରର ଶମିରୋଣୀୟମାନଙ୍କ ଭିତରୁ ଅନେକ
ଯୀଶୁଙ୍କୁ ବିଶ୍ୱାସ କଲେ। ସେ ସ୍ତ୍ରୀଲୋକ ଯୀଶୁଙ୍କ ବିଷୟରେ
ଯାହା କହିଥିଲା ସେଥିପାଇଁ ସେମାନେ ବିଶ୍ୱାସ କଲେ। ସେ
ସେମାନଙ୍କୁ କହିଲା, "ଯୀଶୁ ମୋତେ ମୁଁ କରିଥିବା ପ୍ରତ୍ୟେକ
ଘଟଣାମାନ କହିଲେ।" ୪୦ଶମିରୋଣୀୟମାନେ ଯୀଶୁଙ୍କ ପାଖକୁ
ଗଲେ। ସେମାନେ ତାହାଙ୍କୁ ସେମାନଙ୍କ ସହିତ କିଛି ଦିନ
ରହିବା ପାଇଁ ଅନୁରୋଧ କଲେ। ତେଣୁ ଯୀଶୁ ସେଠାରେ
ଦୁଇ ଦିନ ରହିଲେ। ୪୧ଯୀଶୁଙ୍କଠାରୁ ବାଣୀ ଶୁଣି ବହୁତ
ଲୋକ ତାହାଙ୍କଠାରେ ବିଶ୍ୱାସ କଲେ।
୪୨ଲୋକମାନେ ସେ ସ୍ତ୍ରୀକୁ କହିଲେ, "ପ୍ରଥମେ ଆମ୍ଭେ
ତୁମ୍ଭ କଥା ଶୁଣି ଯୀଶୁଙ୍କୁ ବିଶ୍ୱାସ କରିଥିଲୁ କିନ୍ତୁ ବର୍ତ୍ତମାନ
ଆମ୍ଭେ ନିଜେ ତାହାଙ୍କ କଥା ଶୁଣି ବିଶ୍ୱାସ କରୁଛୁ। ଆମ୍ଭେ

ବର୍ତ୍ତମାନ ଜାଣୁଛୁ ଯେ ସେ ହେଉଛନ୍ତି ପ୍ରକୃତରେ ଜଗତର
ତ୍ରାଣକର୍ତ୍ତା।”

## ଜଣେ ରାଜକର୍ମଚାରୀଙ୍କ ପୁତ୍ରକୁ ଯୀଶୁ ସୁସ୍ଥ କଲେ

୪୩ସେଠାରେ ଦୁଇ ଦିନ ରହିବା ପରେ ଯୀଶୁ ଗାଲିଲୀକୁ
ଯାତ୍ରା କଲେ। ୪୪(ଯୀଶୁ ପୂର୍ବରୁ କହିଥିଲେ ଯେ ଜଣେ
ଭାବବାଦୀ ନିଜ ଦେଶରେ ସମ୍ମାନ ପାଏ ନାହିଁ।) ୪୫ପୁଣି
ଯୀଶୁ ଯେତେବେଳେ ଗାଲିଲୀରେ ପହଞ୍ଚିଲେ, ସେଠାରେ
ଲୋକେ ତାହାଙ୍କୁ ସ୍ୱାଗତ କଲେ। ପୂର୍ବରୁ ଯିରୂଶାଲମରେ
ନିସ୍ତାରପର୍ବ ବେଳେ ସେମାନେ ତାହାଙ୍କର କାର୍ଯ୍ୟ ସବୁ
ଦେଖିଥିଲେ। ସେହି ଲୋକମାନେ ପର୍ବ ସମୟରେ ମଧ୍ୟ
ଉପସ୍ଥିତ ଥିଲେ।

୪୬ଯୀଶୁ ଗାଲିଲୀର କାନା ନଗରକୁ ପୁଣି ଥରେ
ଗଲେ। କାନାରେ ସେ ଜଳକୁ ଅଙ୍ଗୁରରସରେ ପରିଣତ
କରିଥିଲେ। ରାଜାଙ୍କର ଜଣେ ମୁଖ୍ୟକର୍ମଚାରୀ କଫର୍ନାହୂମ
ନଗରରେ ବାସ କରୁଥିଲେ। ଏହି ବ୍ୟକ୍ତିଙ୍କର ପୁତ୍ର ଅସୁସ୍ଥ
ଥିଲା। ୪୭ସେହି ବ୍ୟକ୍ତି ଶୁଣିଲେ ଯେ ଯୀଶୁ ଯିହୂଦା
ପ୍ରଦେଶରୁ ଆସିଛନ୍ତି ଓ ବର୍ତ୍ତମାନ ଗାଲିଲୀରେ ଅଛନ୍ତି
ତେଣୁ ସେ ବ୍ୟକ୍ତି କାନାରେ ଯୀଶୁଙ୍କୁ ଦେଖା କଲେ।
କଫର୍ନାହୂମକୁ ଆସି ତାହାଙ୍କର ପୁତ୍ରକୁ ସୁସ୍ଥ କରିବା ପାଇଁ
ସେ ଯୀଶୁଙ୍କୁ ନିବେଦନ କଲେ। ତାହାଙ୍କର ପୁତ୍ର ମୃତ
ପ୍ରାୟ ହୋଇଥିଲା। ୪୮ଯୀଶୁ ତାହାଙ୍କୁ କହିଲେ, “ତୁମ୍ଭେମାନେ
ଅଲୌକିକ ଓ ଆଶ୍ଚର୍ଯ୍ୟଜନକ କାର୍ଯ୍ୟମାନ ନ ଦେଖିଲେ
ତୁମ୍ଭେମାନେ ମୋତେ ବିଶ୍ୱାସ କରିବ ନାହିଁ।”

୪୯ରାଜକର୍ମଚାରୀଜଣକ କହିଲେ, “ମହାଶୟ, ମୋ ପୁତ୍ର
ମରିବା ପୂର୍ବରୁ ଆପଣ ମୋ ଘରକୁ ଆସନ୍ତୁ।”

୫୦ଯୀଶୁ ଉତ୍ତର ଦେଲେ, “ଯାଅ, ତୁମ୍ଭର ପୁଅ ବଞ୍ଚିବ।”

ଯୀଶୁଙ୍କ କଥା ସେ ବ୍ୟକ୍ତିଟି ଶୁଣି ବିଶ୍ୱାସ କଲେ ଓ
ଘରକୁ ଚାଲିଗଲେ। ୫୧ଘରକୁ ଯିବା ବାଟରେ ତାହାଙ୍କର
କେତେଜଣ ଚାକର ଆସି ତାହାଙ୍କୁ ଭେଟିଲେ। ସେମାନେ
ତାହାଙ୍କୁ କହିଲେ, “ତୁମ୍ଭର ପୁଅ ସୁସ୍ଥ ହେଲାଣି।”

୫୨“ପିଲାର ଅବସ୍ଥା କେଉଁ ସମୟଠାରୁ ଭଲ ଆଡ଼କୁ
ଗତି କଲା?” ସେ ପଚାରିଲେ।

ଚାକରମାନେ କହିଲେ, “ଗତକାଲି ପ୍ରାୟ ଗୋଟିଏ
ବେଳୁ ତା’ର ଜ୍ୱର ଛାଡ଼ିଗଲା।”

୫୩“ତୁମ୍ଭର ପୁଅ ବଞ୍ଚିବ,” ବୋଲି ଯୀଶୁ ଠିକ୍ ସେହି
ସମୟରେ କହିଥିଲେ, ଏହା ପିଲାର ବାପା ଜାଣିଲେ।
ତେଣୁ ସେହି ରାଜକର୍ମଚାରୀ ଓ ତାହାଙ୍କର ସମସ୍ତ ପରିବାରବର୍ଗ
ଯୀଶୁଙ୍କଠାରେ ବିଶ୍ୱାସ କଲେ।

୫୪ଯିହୂଦା ପ୍ରଦେଶରୁ ଗାଲିଲୀକୁ ଆସିବା ପରେ ଯୀଶୁଙ୍କର
ଏହା ଦ୍ୱିତୀୟ ଆଶ୍ଚର୍ଯ୍ୟକାର୍ଯ୍ୟ ଥିଲା।

## ପୋଖରୀ ପାଖରେ ଯୀଶୁ ଜଣେ ଲୋକକୁ ସୁସ୍ଥ କଲେ

୫ ଏହା ପରେ ଯୀଶୁ ଯିହୂଦୀମାନଙ୍କର ଗୋଟିଏ ବିଶେଷ
ପର୍ବ ଥିବାରୁ ସେ ଯିରୂଶାଲମକୁ ଗଲେ। ୨ଯିରୂଶାଲମରେ
ପାଞ୍ଚୋଟି ମଣ୍ଡପ ଥିବା ଗୋଟିଏ ପୋଖରୀ ଥିଲା। ଯିହୂଦୀ
ଭାଷାରେ ଏହାକୁ ବେଥେସ୍ଦା (ଦୟାଗୃହ) କହନ୍ତି। ଏହା
ମେଷଦ୍ୱାର ପାଖରେ ଥିଲା। ୩ବହୁତ ଅସୁସ୍ଥ ଲୋକେ
ପୋଖରୀ ପାଖ ମଣ୍ଡପ ଗୁଡ଼ିକରେ ପଡ଼ିରହୁଥିଲେ। ସେମାନଙ୍କ
ମଧ୍ୟରୁ କେତେକ ଅନ୍ଧ, ଛୋଟା ଓ ପକ୍ଷାଘାତଗ୍ରସ୍ତ ରୋଗୀ
ଥିଲେ। ୪*ଏହାର କାରଣ, ଜଣେ ସ୍ୱର୍ଗଦୂତ ବେଳେବେଳେ
ଆସି ପୋଖରୀର ପାଣିକୁ ହଲାଉଥିଲେ। ସେତେବେଳେ
ଯେଉଁ ରୋଗୀ ପ୍ରଥମେ ପାଣି ଭିତରକୁ ଯାଉଥିଲା, ସେ
ସୁସ୍ଥ ହୋଇ ଯାଉଥିଲା। ୫ସେଠାରେ ଜଣେ ଲୋକ
ପଡ଼ିରହି ଥିଲା, ସେ ବିଗତ ୩୮ ବର୍ଷଧରି ରୋଗଗ୍ରସ୍ତ
ଥିଲା। ୬ଯୀଶୁ ସେହି ଲୋକକୁ ସେଠାରେ ପଡ଼ି ରହିଥିବା
ଦେଖିଲେ। ସେ ଜାଣିଲେ, ଯେ ସେ ଲୋକଟି ବହୁତ ବର୍ଷ
ହେଲାଣି ରୋଗରେ ପଡ଼ିଛି। ତେଣୁ ଯୀଶୁ ତାକୁ ପଚାରିଲେ,
“ତୁମ୍ଭେ କ’ଣ ସୁସ୍ଥ ହେବାକୁ ଚାହଁ?”

୭ସେ ରୋଗୀଟି ଉତ୍ତର ଦେଲା, “ମହାଶୟ, ପାଣି
ହଲିବା ସମୟରେ ପାଣି ଭିତରକୁ ଯିବାରେ ସାହାଯ୍ୟ
କରିବା ପାଇଁ ମୋର କେହି ଲୋକ ନାହାଁନ୍ତି। ମୁଁ ପ୍ରଥମେ
ପାଣି ଭିତରକୁ ଯିବା ପାଇଁ ଚେଷ୍ଟା କଲାବେଳେ ଅନ୍ୟ
ଜଣେ ମୋ ପୂର୍ବରୁ ପାଣି ଭିତରକୁ ଚାଲିଯାଆନ୍ତି।”

୮ତା’ପରେ ଯୀଶୁ କହିଲେ, “ଠିଆ ହୁଅ। ତୁମ୍ଭର
ବିଛଣା ଉଠାଇ ଚାଲ।” ୯ସଙ୍ଗେସଙ୍ଗେ ଲୋକଟି ସୁସ୍ଥ
ହୋଇଗଲା। ସେ ତା’ ବିଛଣା ଉଠେଇ ଚାଲିବାକୁ ଆରମ୍ଭ
କଲା।

ଏହି ଘଟଣା ବିଶ୍ରାମବାର ଦିନ ହୋଇଥିଲା। ୧୦ତେଣୁ
ଯିହୂଦୀମାନେ ସୁସ୍ଥ ହୋଇଥିବା ଲୋକକୁ କହିଲେ, “ଆଜି
ବିଶ୍ରାମବାର। ବିଶ୍ରାମବାରରେ ତୁମ୍ଭେ ବିଛଣା ବୋହି ନେଇ
ଯିବା ଆମ୍ଭର ନିୟମ ବିରୁଦ୍ଧ କାର୍ଯ୍ୟ।”

୧୧କିନ୍ତୁ ଲୋକଟି କହିଲା, “ମୋତେ ଯିଏ ସୁସ୍ଥ କଲେ,
ସେ ମୋତେ କହିଲେ ‘ତୁମ୍ଭର ବିଛଣା ନିଅ ଓ ଚାଲ।’”

୧୨ଯିହୂଦୀମାନେ ସେ ଲୋକକୁ ପଚାରିଲେ, “ଯିଏ
ତୁମ୍ଭକୁ ଆଜି ବିଛଣା ଉଠେଇ ଚାଲିବାକୁ କହିଲା, ସେ
କିଏ?”

୧୩କିନ୍ତୁ ସୁସ୍ଥ ହୋଇଥିବା ଲୋକଟି, ସେ ବ୍ୟକ୍ତିଟି କିଏ
ତାହା ଜାଣି ନ ଥିଲା। ସେହି ଜାଗାରେ ବହୁତ ଲୋକଥିଲେ
ଓ ଯୀଶୁ ସେଠାରୁ ଚାଲି ଯାଇଥିଲେ।

୧୪ପରେ ଯୀଶୁ ସେହି ଲୋକକୁ ମନ୍ଦିର ପରିସରରେ
ଦେଖିଲେ। ସେ ତାକୁ କହିଲେ, “ଦେଖ, ତୁମ୍ଭେ ବର୍ତ୍ତମାନ
ସୁସ୍ଥ ହୋଇଯାଇଛ। ତେଣୁ ତୁମ୍ଭେ ଆଉ ପାପ କର
ନାହିଁ। ଯଦି ତୁମ୍ଭେ ପାପ କରିବ, ତେବେ ତୁମ୍ଭର
ଏହାଠାରୁ ଅଧିକ କ୍ଷତି ହୋଇପାରେ।”

୧୫ତା’ପରେ ଲୋକଟି ସେହି ଯିହୂଦୀମାନଙ୍କ ପାଖକୁ
ଗଲା। ସେ ସେମାନଙ୍କୁ କହିଲା ଯେ ଯୀଶୁ ତାକୁ ସୁସ୍ଥ
କରିଛନ୍ତି।

---

**ପଦସଂଖ୍ୟା ୪** ଏହି ପଦଟି କେବଳ କେତେକ ପରବର୍ତ୍ତୀ ହସ୍ତଲିପିରେ ମିଳେ।

୧୬ଯୀଶୁ ବିଶ୍ରାମବାରରେ ଏହିସବୁ (ସୁସ୍ଥ) କାର୍ଯ୍ୟ କରୁଥିଲେ।
ତେଣୁ ଯିହୂଦୀମାନେ ଯୀଶୁଙ୍କ ପ୍ରତି ଖରାପ ବ୍ୟବହାର
କରିବା ଆରମ୍ଭ କଲେ। ୧୭କିନ୍ତୁ ଯୀଶୁ ଯିହୂଦୀମାନଙ୍କୁ
କହିଲେ, "ମୋର ପିତା ସର୍ବଦା କାର୍ଯ୍ୟରତ, ଅତଏବ ମୁଁ
ମଧ୍ୟ କାର୍ଯ୍ୟ କରେ।"
୧୮ଏଥିପାଇଁ ଯିହୂଦୀ ନେତାମାନେ ତାହାଙ୍କୁ ହତ୍ୟା
କରିବା ପାଇଁ ଆହୁରି ଅଧିକ ଚେଷ୍ଟା କଲେ। ଯିହୂଦୀମାନେ
କହିଲେ, "ପ୍ରଥମେ ଯୀଶୁ ବିଶ୍ରାମବାରର ନିୟମ ଭାଙ୍ଗିଲେ।
ତା'ପରେ ସେ ପରମେଶ୍ୱରଙ୍କୁ ନିଜର ପିତା ବୋଲି
କହିଲେ। ସେ ନିଜକୁ ପରମେଶ୍ୱରଙ୍କ ସହିତ ସମାନ
କରିଲେ।"

## ଯୀଶୁଙ୍କଠାରେ ପରମେଶ୍ୱରଙ୍କ ଶକ୍ତି ଅଛି

୧୯କିନ୍ତୁ ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି,
ପୁତ୍ର ଏକାକୀ କିଛି କରିପାରନ୍ତି ନାହିଁ। ଯାହା ତାହାଙ୍କ
ପିତା କରୁଥିବା ପୁତ୍ର ଦେଖନ୍ତି, ସେ ତାହାହିଁ କରନ୍ତି
କାରଣ ପିତା ଯାହା କରନ୍ତି ପୁତ୍ର ମଧ୍ୟ ସେହିସବୁ କରନ୍ତି।
୨୦ପିତା ପୁତ୍ରକୁ ପ୍ରେମ କରନ୍ତି। ପିତା ନିଜେ କରିଥିବା
ପ୍ରତ୍ୟେକ କାର୍ଯ୍ୟ ପୁତ୍ରକୁ ଦେଖାନ୍ତି। (ଏହି ରୋଗୀଟି ସୁସ୍ଥ
ହୋଇଗଲା।) ଆଉ ତୁମ୍ଭେମାନେ ଯେପରି ଆଶ୍ଚର୍ଯ୍ୟାନ୍ୱିତ
ହୁଅ, ଏ ନିମନ୍ତେ ପିତା ପୁତ୍ରଙ୍କୁ ଏହାଠାରୁ ଆହୁରି ମହତ୍
କର୍ମ ଦେଖାଇବେ। ୨୧ପରମପିତା ମୃତଲୋକଙ୍କୁ ଉଠାନ୍ତି ଓ
ସେମାନଙ୍କୁ ଜୀବନଦାନ କରନ୍ତି। ଠିକ୍ ସେହିପରି ପୁତ୍ର
ମଧ୍ୟ ନିଜ ଇଚ୍ଛା ଅନୁସାରେ ଲୋକଙ୍କୁ ଜୀବନଦାନ
କରନ୍ତି। ୨୨ପିତା କାହାର ବିଚାର କରନ୍ତି ନାହିଁ। କିନ୍ତୁ ସେ
ପୁତ୍ରଙ୍କୁ ବିଚାର କରିବାର ସମସ୍ତ କ୍ଷମତା ଅର୍ପଣ କରିଛନ୍ତି।
୨୩ଈଶ୍ୱର ଏହା କଲେ କାରଣ ସମସ୍ତେ ପିତାଙ୍କୁ ଯେପରି
ସମ୍ମାନ ଦେଉଛନ୍ତି, ସେହିପରି ପୁତ୍ରଙ୍କୁ ମଧ୍ୟ ସମ୍ମାନ
ଦେବେ। ଯଦି କୌଣସି ଲୋକ ପୁତ୍ରକୁ ସମ୍ମାନ ଦିଏ
ନାହିଁ, ତେବେ ସେ ପିତାଙ୍କୁ ମଧ୍ୟ ସମ୍ମାନ ଦିଏ ନାହିଁ।
ପିତା ପୁତ୍ରକୁ ପଠାଇଛନ୍ତି।
୨୪"ମୁଁ ତୁମ୍ଭକୁ ସତ୍ୟ କହୁଛି ଯେ, ଯଦି କୌଣସି
ବ୍ୟକ୍ତି ମୋର କହିବା କଥା ଶୁଣେ ଓ ମୋତେ ଯିଏ
ପଠାଇଛନ୍ତି ତାହାଙ୍କଠାରେ ବିଶ୍ୱାସ କରେ, ତେବେ ସେ
ବ୍ୟକ୍ତି ଅନନ୍ତ ଜୀବନ ଲାଭ କରିଅଛି। ସେ ବ୍ୟକ୍ତି ଦୋଷୀ
ବୋଲି ବିଚାରିତ ହେବ ନାହିଁ। ସେ ମୃତ୍ୟୁକୁ ପାର ହୋଇ
ଜୀବନ ଭିତରେ ପ୍ରବେଶ କରି ସାରିଛି। ୨୫ମୁଁ ତୁମ୍ଭକୁ
ସତ୍ୟ କହୁଛି, ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମୟ ଆସୁଛି। ସେ
ସମୟ ଆସି ଗଲାଣି। ପାପ ଦ୍ୱାରା ମୃତ ଲୋକମାନେ
ଈଶ୍ୱରଙ୍କ ପୁତ୍ରଙ୍କ ସ୍ୱର ଶୁଣିବେ। ପୁତ୍ରଙ୍କର ସ୍ୱର ଶୁଣି
ଗ୍ରହଣ କରିଥିବା ଲୋକମାନେ, ଅନନ୍ତ ଜୀବନ ଲାଭ
କରିବେ। ୨୬ସ୍ୱୟଂ ପରମପିତା ହେଉଛନ୍ତି ଜୀବନର ଉତ୍ସ।
ଅତଏବ ସେ ପୁତ୍ରଙ୍କୁ ଜୀବନଦାନ କରିବା ପାଇଁ ଅନୁମତି
ଦେଇଛନ୍ତି। ୨୭ଲୋକଙ୍କର ବିଚାର କରିବା ପାଇଁ ସେ
ପୁତ୍ରଙ୍କୁ କ୍ଷମତା ଦେଇଛନ୍ତି। କାରଣ ସେ ମନୁଷ୍ୟ ପୁତ୍ର*
ଅଟନ୍ତି। ୨୮ତୁମ୍ଭେ ଏଥିରେ ଆଶ୍ଚର୍ଯ୍ୟ ହୁଅ ନାହିଁ। ଏପରି
ସମୟ ଆସୁଛି, ଯେତେବେଳେ ସମାଧିସ୍ଥ ସମସ୍ତ ମୃତ
ଲୋକମାନେ ତାହାଙ୍କର ସ୍ୱର ଶୁଣିବେ। ୨୯ସେମାନେ
ସେମାନଙ୍କର ସମାଧିରୁ ବାହାରିବେ। ଜୀବନରେ ସତ୍
କାର୍ଯ୍ୟ କରିଥିବା ଲୋକମାନେ ଉଠିବେ ଓ ଅନନ୍ତ ଜୀବନ
ପାଇବେ। କିନ୍ତୁ କୁକାର୍ଯ୍ୟ କରିଥିବା ଲୋକମାନେ ଦୋଷୀ
ଭାବରେ ବିଚାରିତ ହେବା ପାଇଁ ଉଠିବେ।

## ଯୀଶୁଙ୍କର ଯିହୂଦୀମାନଙ୍କ ସହିତ କଥାବାର୍ତ୍ତା ପ୍ରବୃତ୍ତ

୩୦"ମୁଁ ଏକୁଟିଆ କିଛି କରିପାରିବି ନାହିଁ। ମୁଁ କେବଳ
ପରମେଶ୍ୱରଙ୍କ କହିବା ଅନୁସାରେ ବିଚାର କରେ। ତେଣୁ
ମୋର ବିଚାର ଠିକ୍, କାରଣ ମୁଁ ନିଜକୁ ସନ୍ତୁଷ୍ଟ କରିବା
ପାଇଁ ଚେଷ୍ଟା କରେ ନାହିଁ। କିନ୍ତୁ ପରମେଶ୍ୱରଙ୍କୁ ସନ୍ତୁଷ୍ଟ
କରିବା ପାଇଁ ମୁଁ ଇଚ୍ଛା କରେ, ଯିଏ ମୋତେ ପଠାଇଛନ୍ତି।
୩୧"ମୁଁ ଯଦି ଲୋକମାନଙ୍କୁ ମୋ ନିଜ ବିଷୟରେ
କୁହେ, ଓ ସେମାନଙ୍କୁ ମୋର ସାକ୍ଷ୍ୟ ଦିଏ, ସେମାନେ
ମୋର ସାକ୍ଷ୍ୟ ଗ୍ରହଣ କରିବେ ନାହିଁ। ୩୨କିନ୍ତୁ ଅନ୍ୟ
ଜଣେ ଅଛନ୍ତି, ଯିଏକି ଲୋକମାନଙ୍କୁ ମୋର ବିଷୟରେ
ସାକ୍ଷ୍ୟ ଦିଅନ୍ତି। ଏବଂ ମୁଁ ଜାଣେ, ମୋ ବିଷୟରେ ସେ
ଯାହା କହନ୍ତି, ତାହା ସବୁ ସତ୍ୟ।
୩୩"ତୁମ୍ଭେ ଯୋହନଙ୍କ ପାଖକୁ ଲୋକ ପଠାଇଛ। ସେ
ତୁମ୍ଭମାନଙ୍କୁ ସତ୍ୟ ସମ୍ବନ୍ଧରେ କହିଛନ୍ତି। ୩୪ମୋ ବିଷୟରେ
ସାକ୍ଷ୍ୟ ଦେବା ପାଇଁ କୌଣସି ବ୍ୟକ୍ତିର ପ୍ରୟୋଜନ ନାହିଁ
କିନ୍ତୁ ମୁଁ ତୁମ୍ଭକୁ ଏହି ସବୁ କହୁଛି ଯେପରି ତୁମ୍ଭେମାନେ
ତାହାଦ୍ୱାରା ଉଦ୍ଧାର ପାଇ ପାରିବ। ୩୫ଯୋହନ ଗୋଟିଏ
ପ୍ରଦୀପ ପରି ଜଳି ଆଲୋକ ଦେଇଥିଲେ। ଏବଂ ତୁମ୍ଭେମାନେ
ସେହି ଆଲୋକ କିଛି କ୍ଷଣ ପାଇଁ ଉପଭୋଗ କରି ଖୁସି
ହେଲ।
୩୬"କିନ୍ତୁ ମୋ ପାଖରେ ମୋ ସମ୍ବନ୍ଧରେ ଗୋଟିଏ
ପ୍ରମାଣ ଅଛି, ଯାହା ଯୋହନଙ୍କ ପ୍ରମାଣଠାରୁ ଅଧିକ
ମହତ୍ତ୍ୱପୂର୍ଣ୍ଣ। ମୁଁ ଯାହା ସବୁ କରୁଛି, ତାହା ସବୁ ମୋର
ପ୍ରମାଣ। ପରମପିତା ମୋତେ ଏସବୁ କରିବା ପାଇଁ
ଦେଇଥିଲେ। ଏହିସବୁ କାର୍ଯ୍ୟରୁ ଏହା ପ୍ରମାଣିତ ହୁଏ ଯେ
ପରମପିତା ମୋତେ ପଠାଇଛନ୍ତି। ୩୭ପରମପିତା ମୋତେ
ପଠାଇଛନ୍ତି ଓ ନିଜେ ମୋ ବିଷୟରେ ପ୍ରମାଣ ଦେଇଛନ୍ତି।
କିନ୍ତୁ ତୁମ୍ଭେ କେବେ ତାହାଙ୍କର ସ୍ୱର ଶୁଣିନାହିଁ। ତାହାଙ୍କର
କିପରି ରୂପ, ତାହା ମଧ୍ୟ ତୁମ୍ଭେ ଦେଖିନାହିଁ। ୩୮ପରମପିତାଙ୍କର
ଉପଦେଶ ତୁମ୍ଭଠାରେ ବାସ କରିନାହିଁ। ଏହାର କାରଣ,
ସେ ପଠାଇଥିବା ବ୍ୟକ୍ତିଠାରେ ତୁମ୍ଭେମାନେ ବିଶ୍ୱାସ ରଖି
ନାହିଁ। ୩୯ତୁମ୍ଭେମାନେ ଯତ୍ନ ସହକାରେ ଧର୍ମ ଶାସ୍ତ୍ରଗୁଡ଼ିକ
ଅଧ୍ୟୟନ କରୁଛ। କାରଣ ତୁମ୍ଭେମାନେ ବିଶ୍ୱାସ କର ଯେ,
ସେହି ଧର୍ମଶାସ୍ତ୍ର ଦ୍ୱାରା ହିଁ ତୁମ୍ଭେମାନେ ଅନନ୍ତ ଜୀବନ
ପାଇବ। ସେହି ଧର୍ମଶାସ୍ତ୍ର ଗୁଡ଼ିକ ମୋ ବିଷୟରେ କହନ୍ତି।
୪୦କିନ୍ତୁ ତୁମ୍ଭେମାନେ ଅନନ୍ତ ଜୀବନ ପାଇବା ପାଇଁ ମୋ
ନିକଟକୁ ଆସୁ ନାହିଁ।

---

**ମନୁଷ୍ୟ ପୁତ୍ର** ଦାନିଏଲ ୭:୧୩-୧୪ ଅନୁସାରେ ଏହା ଉଦ୍ଧାରକର୍ତ୍ତାଙ୍କୁ ବୁଝାଏ।

୪୧"ମୁଁ ଲୋକମାନଙ୍କଠାରୁ ପ୍ରଶଂସା ଚାହୁଁ ନାହିଁ। ୪୨କିନ୍ତୁ
ମୁଁ ତୁମ୍ଭକୁ ଜାଣେ। ମୁଁ ଜାଣେ ଯେ ତୁମ୍ଭ ହୃଦୟରେ
ପରମେଶ୍ୱରଙ୍କ ପ୍ରେମ ନାହିଁ। ୪୩ମୁଁ ମୋର ପରମପିତାଙ୍କଠାରୁ
ଆସିଛି। ମୁଁ ତାହାଙ୍କ ପାଇଁ କଥା କହେ। କିନ୍ତୁ ତୁମ୍ଭେମାନେ
ମୋତେ ଗ୍ରହଣ କରୁ ନାହିଁ। କିନ୍ତୁ ଯେତେବେଳେ ଅନ୍ୟ
କିଏ ଆସି କେବଳ ତା ନିଜ ବିଷୟରେ କହିବ ସେତେବେଳେ
ତୁମ୍ଭେ ତାକୁ ଗ୍ରହଣ କରିବ। ୪୪ତୁମ୍ଭେମାନେ ପରସ୍ପରଠାରୁ
ପ୍ରଶଂସା ପାଇବା ପାଇଁ ଭଲ ପାଅ। କିନ୍ତୁ ଏକମାତ୍ର
ପରମେଶ୍ୱରଙ୍କ ପାଖରୁ ଯେଉଁ ପ୍ରଶଂସା ଆସେ, ତାହା
ପାଇବା ପାଇଁ ତୁମ୍ଭେ ଆଦୌ ଚେଷ୍ଟା କରୁ ନାହିଁ।
ତାହାହେଲେ ତୁମ୍ଭେ ଏକଥା କିପରି ବିଶ୍ୱାସ କରି ପାରିବ।
୪୫ଭାବ ନାହିଁ ଯେ ମୁଁ ପରମପିତାଙ୍କ ଆଗରେ ତୁମ୍ଭ
ବିରୁଦ୍ଧରେ ଅଭିଯୋଗ କରିବି। ମୋଶା ହେଉଛନ୍ତି ଜଣେ,
ଯିଏ ତୁମ୍ଭ ବିରୁଦ୍ଧରେ ଅଭିଯୋଗ କରନ୍ତି। ତୁମ୍ଭେ ମୋଶାଙ୍କଠାରେ
ଭରସା ରଖିଛ ଯେ ସେ ତୁମ୍ଭକୁ ଉଦ୍ଧାର କରିବେ। ୪୬ଯଦି
ପ୍ରକୃତରେ ତୁମ୍ଭେମାନେ ମୋଶାଙ୍କୁ ବିଶ୍ୱାସ କରିଛ, ତେବେ
ତୁମ୍ଭେ ମୋତେ ମଧ୍ୟ ବିଶ୍ୱାସ କରିବ। କାରଣ ମୋଶା
ମୋ ବିଷୟରେ ଲେଖିଥିଲେ। ୪୭କିନ୍ତୁ ତୁମ୍ଭେ ମୋଶାଙ୍କର
ଲେଖିବା କଥା ବିଶ୍ୱାସ କରୁ ନାହିଁ। ତେଣୁ ତୁମ୍ଭେମାନେ
ମୋ କଥାରେ ବିଶ୍ୱାସ କରି ପାରିବ ନାହିଁ।"

### ଯୀଶୁ ୫୦୦୦(ପାଞ୍ଚ ହଜାର)ରୁ ଅଧିକ ଲୋକଙ୍କୁ ଖୁଆଇଲେ

୬ ଏହା ପରେ ଯୀଶୁ ଗାଲିଲୀ ହ୍ରଦ (ଅର୍ଥାତ୍ ତିବିରିଆ
ହ୍ରଦ) ପାରି ହୋଇ ଆରପାରିକି ଗଲେ। ୨ତାହାଙ୍କ
ପଛେ ପଛେ ବହୁତ ଲୋକ ଗଲେ। ସେମାନେ ତାହାଙ୍କୁ
ଅନୁସରଣ କଲେ, କାରଣ ଯୀଶୁ କି ପ୍ରକାରେ ରୋଗୀମାନଙ୍କୁ
ସୁସ୍ଥ କରି ଆପଣା ଶକ୍ତି ପ୍ରକାଶ କଲେ ତାହା ସେମାନେ
ଦେଖିଥିଲେ। ୩ଯୀଶୁ ପାହାଡ଼ ଉପରକୁ ଚଢ଼ିଗଲେ। ସେଠାରେ
ତାହାଙ୍କର ଶିଷ୍ୟମାନଙ୍କ ଗହଣରେ ବସିଲେ। ୪ଯିହୂଦୀମାନଙ୍କର
ନିସ୍ତାରପର୍ବର ସମୟ ପାଖ ହୋଇଯାଇଥିଲା।
୫ଯୀଶୁ ଦେଖିଲେ ଲୋକମାନେ ବହୁ ସଂଖ୍ୟାରେ ତାହାଙ୍କ
ପାଖକୁ ଆସୁଛନ୍ତି। ସେ ଫିଲିପ୍ପଙ୍କୁ କହିଲେ, "ଫିଲିପ୍ପ, ଏହି
ଲୋକମାନଙ୍କୁ ଖୁଆଇବା ପାଇଁ ଆମ୍ଭେ କେଉଁଠାରୁ ଯଥେଷ୍ଟ
ଖାଦ୍ୟ କିଣି ପାରିବା?" ୬(ସେ ଏକଥା ଫିଲିପ୍ପଙ୍କୁ ପରୀକ୍ଷା
କରିବା ପାଇଁ ପଚାରିଲେ, କାରଣ ସେ ତାହାଙ୍କ ନିଜ
ଯୋଜନା ବିଷୟରେ ଜାଣିଥିଲେ।)
୭ଫିଲିପ୍ପ ଉତ୍ତର ଦେଲେ, "ଏଠାରେ ଥିବା ପ୍ରତ୍ୟେକଙ୍କୁ
ଖଣ୍ଡେ-ଖଣ୍ଡେ ରୋଟୀ କିଣି ଦେବା ପାଇଁ ଆମ୍ଭ ସମସ୍ତଙ୍କୁ
ମାସେ ପର୍ଯ୍ୟନ୍ତ କାମ କରି ଉପାର୍ଜନ କରିବାକୁ ପଡ଼ିବ।"
୮ସେଠାରେ ଆଉଜଣେ ଶିଷ୍ୟ, ଆନ୍ଦ୍ରିୟ ଉପସ୍ଥିତ ଥିଲେ,
ସେ ଶିମୋନ ପିତରଙ୍କର ଭାଇ। ଆନ୍ଦ୍ରିୟ କହିଲେ;୯
"ଏଠାରେ ଜଣେ ବାଳକ ଅଛି। ତା'ପାଖରେ ପାଞ୍ଚୋଟି
ରୋଟୀ ଓ ଦୁଇଟି ଛୋଟମାଛ ଅଛି। କିନ୍ତୁ ଏତେ
ଲୋକଙ୍କ ପାଇଁ ତାହା ଯଥେଷ୍ଟ ହେବ ନାହିଁ।"
୧୦ଯୀଶୁ କହିଲେ, "ସମସ୍ତଙ୍କୁ ବସିବାକୁ କୁହ।" ସେଠାରେ
ପ୍ରଚୁର ଘାସ ଥିଲା। ସେଠାରେ ପ୍ରାୟ ପାଞ୍ଚ ହଜାର ପୁରୁଷ
ବସିଥିଲେ। ୧୧ଯୀଶୁ ରୋଟୀ ନେଇ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେଲେ ଓ ବସିଥିବା ଲୋକମାନଙ୍କୁ ତାହା ବାଣ୍ଟିଲେ। ସେ
ମାଛକୁ ମଧ୍ୟ ସେହିପରି ବାଣ୍ଟିଲେ। ସେ ଲୋକମାନଙ୍କୁ
ମନଇଚ୍ଛା ଖାଇବାକୁ ଦେଲେ।
୧୨ସବୁ ଲୋକମାନେ ଯଥେଷ୍ଟ ପରିମାଣରେ ଖାଇଲେ।
ସେମାନେ ଖାଇ ସାରିବା ପରେ ଯୀଶୁ ଶିଷ୍ୟମାନଙ୍କୁ
କହିଲେ, "ବଳକା ମାଛ ଓ ରୋଟୀ ଏକାଠି କର, କିଛି
ନଷ୍ଟ କର ନାହିଁ।" ୧୩ତେଣୁ ଶିଷ୍ୟମାନେ ବଳକା ଥିବା
ଖାଦ୍ୟ ଏକାଠି କଲେ। ଲୋକମାନେ କେବଳ ମାତ୍ର
ପାଞ୍ଚୋଟି ରୋଟୀରୁ ଖାଇବା ଆରମ୍ଭ କରିଥିଲେ କିନ୍ତୁ ଏବେ
ଶିଷ୍ୟମାନେ ବଳକା ଖାଦ୍ୟକୁ ବାରଟି ଟୋକାଇରେ ଭର୍ତ୍ତି
କଲେ।
୧୪ଲୋକମାନେ ଯୀଶୁଙ୍କର ଏହି ଆଶ୍ଚର୍ଯ୍ୟକାର୍ଯ୍ୟ ଦେଖି
କହିଲେ, "ସେ ନିଶ୍ଚୟ ଜଣେ ଭବିଷ୍ୟଦ୍‌ବକ୍ତା, ଯିଏ କି
ଏହି ଜଗତକୁ ଆସିଛନ୍ତି।"
୧୫ଯୀଶୁ ଜାଣିଥିଲେ ଯେ ଲୋକମାନେ ତାହାଙ୍କୁ ରାଜା
କରିବା ପାଇଁ ଚାହୁଁଥିଲେ। ଯେତେବେଳେ ତାହାଙ୍କୁ ଧରି
ନେଇ ରାଜା କରିବାର ଯୋଜନା ଲୋକେ କରିଲେ,
ସେତେବେଳେ ସେ, ସେହି ସ୍ଥାନ ଛାଡ଼ି ଏକୁଟିଆ ପାହାଡ଼
ଉପରକୁ ଚାଲିଗଲେ।

### ଯୀଶୁ ପାଣିରେ ଚାଲିଲେ

୧୬ତାହାଙ୍କ ଶିଷ୍ୟମାନେ ସେହି ସନ୍ଧ୍ୟାରେ ଗାଲିଲୀ
ହ୍ରଦକୁ ଗଲେ। ୧୭ଅନ୍ଧାର ହୋଇଯାଇଥିଲା, ତଥାପି ଯୀଶୁ
ସେମାନଙ୍କ ପାଖକୁ ଫେରିଲେ ନାହିଁ। ତେଣୁ ସେମାନେ
ଡଙ୍ଗାରେ ବସି ହ୍ରଦର ଆର ପାରିରେ ଥିବା କଫର୍ନାହୂମ
ଆଡ଼େ ଗଲେ। ୧୮ଖୁବ୍ ଜୋରରେ ପବନ ବହୁଥିଲା।
ହ୍ରଦରେ ବଡ଼ ବଡ଼ ଢେଉ ଉଠିଲା। ୧୯ସେମାନେ ଆହୁଲା
ମାରି ପ୍ରାୟ ପାଞ୍ଚ କିମ୍ବା ଛଅ କିଲୋମିଟର ପର୍ଯ୍ୟନ୍ତ
ଗଲେ। ତା'ପରେ ସେମାନେ ଯୀଶୁଙ୍କୁ ଦେଖିଲେ। ସେ
ପାଣି ଉପରେ ଚାଲୁଥିଲେ। ସେ ଡ଼ଙ୍ଗା ଆଡ଼କୁ ଆସୁଥିଲେ।
ଶିଷ୍ୟମାନେ ଡରି ଗଲେ। ୨୦କିନ୍ତୁ ଯୀଶୁ ସେମାନଙ୍କୁ
କହିଲେ, "ଭୟ କର ନାହିଁ। ଏହିତ ମୁଁ ନିଜେ।" ୨୧ଯୀଶୁ
ଏକଥା କହିବା ପରେ ଶିଷ୍ୟମାନେ ତାହାଙ୍କୁ ଡ଼ଙ୍ଗା ଭିତରକୁ
ଆଣି ଖୁସି ହେଲେ। ତା'ପରେ ଡଙ୍ଗାଟି ଲକ୍ଷ୍ୟ ସ୍ଥଳରେ
ଆସି ପହଞ୍ଚିଲା।

### ଲୋକମାନେ ଯୀଶୁଙ୍କୁ ଖୋଜିଲେ

୨୨ତହିଁ ଆରଦିନ ହ୍ରଦର ଆର ପଟେ କେତେକ
ଲୋକ ରହିଗଲେ। ଯୀଶୁ ତାହାଙ୍କ ଶିଷ୍ୟମାନଙ୍କ ସହିତ
ଡଙ୍ଗାରେ ଯାଇ ନାହାଁନ୍ତି, ଏହି ବିଷୟ ସେହି ଲୋକମାନେ
ଜାଣି ନଥିଲେ। ସେମାନେ ଜାଣିଥିଲେ ଯେ, ଶିଷ୍ୟମାନେ
ଯୀଶୁଙ୍କୁ ଏକାକୀ ଛାଡ଼ି ଦେଇ ଡଙ୍ଗାରେ ଚାଲିଗଲେ।
ସେମାନେ ଜାଣିଥିଲେ ଯେ, ସେଠାରେ କେବଳ ସେହି
ଗୋଟିଏ ମାତ୍ର ଡଙ୍ଗା ଥିଲା। ୨୩କିନ୍ତୁ ସେତେବେଳେ
ତିବିରିଆରୁ କେତେକ ଡଙ୍ଗା ଆସିଲା। ଲୋକମାନେ ଯେଉଁ
ସ୍ଥାନରେ ପୂର୍ବ ଦିନ ଖାଇଥିଲେ ସେଠାରେ ଡଙ୍ଗା ଗୁଡ଼ିକ

ଆସି ରହଲା। ସେହି ସ୍ଥାନରେ ପ୍ରଭୁ ଯୀଶୁ ଧନ୍ୟବାଦ
ଦେବା ପରେ ସେମାନେ ରୋଟୀ ଖାଇଥିଲେ। ୨୪ଲୋକମାନେ
ସେଠାରେ ଯୀଶୁ ଓ ତାହାଙ୍କର ଶିଷ୍ୟମାନେ ନଥିବା
ଦେଖିଲେ। ତେଣୁ ଲୋକମାନେ ଡଙ୍ଗାଗୁଡ଼ିକରେ ଯାତ୍ରାକରି
ଯୀଶୁଙ୍କୁ ଖୋଜିବା ପାଇଁ କଫର୍ନାହୂମକୁ ଗଲେ।

### ଯୀଶୁ, ଜୀବନ ସ୍ୱରୂପ ଖାଦ୍ୟ

୨୫ଲୋକମାନେ ହ୍ରଦର ଆରପଟେ ଯୀଶୁଙ୍କୁ ପାଇଲେ।
ସେମାନେ ତାହାଙ୍କୁ ପଚାରିଲେ, "ଗୁରୁ, ଆପଣ ଏଠାକୁ
କେତେବେଳେ ଆସିଲେ?" ୨୬ଯୀଶୁ ଉତ୍ତର ଦେଲେ,
"ତୁମ୍ଭେମାନେ ମୋତେ କାହିଁକି ଖୋଜୁଛ? ମୁଁ କରିଥିବା
ଆଶ୍ଚର୍ଯ୍ୟକାର୍ଯ୍ୟ ଗୁଡ଼ିକ ମୋର ଶକ୍ତିକୁ ପ୍ରମାଣିତ କରୁଥିବାରୁ
ତୁମ୍ଭେ ମୋତେ ଖୋଜୁଛ କି? ତା' ନୁହେଁ। ମୁଁ ତୁମ୍ଭକୁ
ସତ୍ୟ କହୁଛି, ରୋଟୀ ଖାଇ ସନ୍ତୁଷ୍ଟ ହୋଇଥିବାରୁ ତୁମ୍ଭେମାନେ
ମୋତେ ଖୋଜୁଛ। ୨୭ପୃଥିବୀର ଖାଦ୍ୟ ପଦାର୍ଥ ନଷ୍ଟ
ହୋଇଯାଏ। ତେଣୁ ତୁମ୍ଭେ ସେହିଭଳି ଖାଦ୍ୟ ପାଇବା ପାଇଁ
କାର୍ଯ୍ୟ କର ନାହିଁ, ବରଂ ତୁମ୍ଭେମାନେ ଏଭଳି କାର୍ଯ୍ୟ କର
ଯାହା ଭଲ ହୋଇ ରହିଥିବ ଓ ତୁମ୍ଭକୁ ସବୁ ଦିନ ପାଇଁ
ଜୀବନ ଦେବ। ମନୁଷ୍ୟ ପୁତ୍ର ସେହିପରି ଖାଦ୍ୟ ତୁମ୍ଭକୁ
ଦେବେ। ପରମେଶ୍ୱର ଦେଖାଇଛନ୍ତି ଯେ, ସେ ମନୁଷ୍ୟ
ପୁତ୍ରଙ୍କ ସହିତ ଅଛନ୍ତି।"
୨୮ଲୋକମାନେ ଯୀଶୁଙ୍କୁ ପଚାରିଲେ, "ଆମ୍ଭେ କ'ଣ
କ'ଣ କରିବା ଉଚିତ ବୋଲି ପରମେଶ୍ୱର ଚାହାଁନ୍ତି?"
୨୯ଯୀଶୁ ଉତ୍ତର ଦେଲେ, "ପରମେଶ୍ୱର ଚାହାଁନ୍ତି, ଯେ
ସେ ଯାହାଙ୍କୁ ପଠାଇଛନ୍ତି, ତାହାଙ୍କଠାରେ ତୁମ୍ଭେମାନେ
ବିଶ୍ୱାସ କର।"
୩୦ତେଣୁ ଲୋକମାନେ ପଚାରିଲେ, "ତୁମ୍ଭକୁ ଯେ
ପରମେଶ୍ୱର ପଠାଇଛନ୍ତି, ଏକଥା ତୁମ୍ଭେ କେଉଁ ଆଶ୍ଚର୍ଯ୍ୟକାର୍ଯ୍ୟ
ଦ୍ୱାରା ପ୍ରମାଣ କରି ଦେଖାଇବ? ତୁମ୍ଭେ ଯଦି କୌଣସି
ଆଶ୍ଚର୍ଯ୍ୟକାର୍ଯ୍ୟ ଆମ୍ଭକୁ କରି ଦେଖାଇବ, ତେବେ ଆମ୍ଭେ
ତୁମ୍ଭକୁ ବିଶ୍ୱାସ କରିବୁ। ତୁମ୍ଭେ କ'ଣ କରିବ? ୩୧ଆମ୍ଭର
ପିତୃପୁରୁଷମାନେ ମରୁଭୂମିରେ ମାନ୍ନା* ଖାଇଥିଲେ, ତାହା
ପରମେଶ୍ୱର ସେମାନଙ୍କୁ ଦେଇଥିଲେ। ଧର୍ମଶାସ୍ତ୍ରରେ ଲେଖା
ଅଛି: 'ପରମେଶ୍ୱର ସେମାନଙ୍କୁ ସ୍ୱର୍ଗରୁ ଖାଦ୍ୟ ଖାଇବାକୁ
ଦେଇଥିଲେ।'"*
୩୨ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି, ସ୍ୱର୍ଗର
ଖାଦ୍ୟ ତୁମ୍ଭ ଲୋକମାନଙ୍କୁ ଦେଇଥିବା ଲୋକ ମୋଶା
ନୁହନ୍ତି। ମୋର ପରମପିତା ତୁମ୍ଭମାନଙ୍କୁ ସ୍ୱର୍ଗର ପ୍ରକୃତ
ଖାଦ୍ୟ ଖାଇବାକୁ ଦିଅନ୍ତି। ୩୩ପରମେଶ୍ୱରଙ୍କର ଖାଦ୍ୟ
କ'ଣ? ପରମେଶ୍ୱରଙ୍କର ଖାଦ୍ୟ ହେଉଛି ଜଣେ ବ୍ୟକ୍ତି ଯିଏ
ଜଗତକୁ ଜୀବନ ଦେବା ପାଇଁ ସ୍ୱର୍ଗରୁ ଓହ୍ଲାଇଛନ୍ତି।"
୩୪ଲୋକମାନେ କହିଲେ, "ମହାଶୟ, ଆମ୍ଭକୁ ସବୁବେଳେ
ଏହି ଖାଦ୍ୟ ଖାଇବାକୁ ଦିଅନ୍ତୁ।"
୩୫ତାପରେ ଯୀଶୁ କହିଲେ, "ମୁଁ ସେହି ଜୀବନଦାୟକ
ଖାଦ୍ୟ। ମୋ ନିକଟକୁ ଯେ କେହି ଆସେ ସେ କଦାପି
ଭୋକିଲା ରହିବ ନାହିଁ। ମୋତେ ଯିଏ ବିଶ୍ୱାସ କରେ,
ସେ କେବେ ତୃଷିତ ହେବ ନାହିଁ। ୩୬ମାତ୍ର ମୁଁ ତୁମ୍ଭକୁ
ପୂର୍ବରୁ କହିଛି ଯେ, ତୁମ୍ଭେ ମୋତେ ଦେଖିଅଛ, କିନ୍ତୁ
ତୁମ୍ଭେ ତଥାପି ବିଶ୍ୱାସ କରୁନାହଁ। ୩୭ମୋର ପରମପିତା
ମୋତେ ମୋ ଲୋକମାନଙ୍କୁ ଦେଇଛନ୍ତି। ସେମାନେ ପ୍ରତ୍ୟେକ
ମୋ ପାଖକୁ ଆସିବେ। ମୁଁ ସର୍ବଦା ମୋପାଖକୁ ଆସୁଥିବା
ପ୍ରତ୍ୟେକଙ୍କୁ ଗ୍ରହଣ କରିବି। ୩୮ମୁଁ ପରମେଶ୍ୱରଙ୍କର ଇଚ୍ଛା
ଅନୁଯାୟୀ କାର୍ଯ୍ୟ କରିବାପାଇଁ ସ୍ୱର୍ଗରୁ ଆସିଅଛି। ମୁଁ ନିଜ
ଇଚ୍ଛା ଅନୁଯାୟୀ କାର୍ଯ୍ୟ କରିବା ପାଇଁ ଆସି ନାହିଁ।
୩୯ପରମେଶ୍ୱର ଯେଉଁମାନଙ୍କୁ ମୋତେ ଦେଇଛନ୍ତି, ମୁଁ
ସେମାନଙ୍କ ମଧ୍ୟରୁ ଜଣକୁ ହେଲେ କଦାପି ହରାଇବି
ନାହିଁ। ମୁଁ ସେମାନଙ୍କୁ ଶେଷ ଦିନରେ ନିଶ୍ଚୟ ଉଥାପନ
କରିବି। ଯିଏ ମୋତେ ପଠାଇଛନ୍ତି ସେ ଚାହାଁନ୍ତି ମୁଁ ସେହି
କାର୍ଯ୍ୟ କରେ। ୪୦ପ୍ରତ୍ୟେକ ଲୋକ ଯିଏ ପୁତ୍ରଙ୍କୁ ଦେଖେ
ଏବଂ ତାହାଙ୍କଠାରେ ବିଶ୍ୱାସ କରେ, ସେ ଅନନ୍ତ ଜୀବନ
ଲାଭ କରେ। ମୁଁ ସେ ଲୋକକୁ ଶେଷଦିନରେ ଉଥାପନ
କରିବି। ଏହା ପରମପିତାଙ୍କର ଇଚ୍ଛା।"
୪୧"ମୁଁ ସ୍ୱର୍ଗରୁ ଓହ୍ଲାଇଥିବା ଖାଦ୍ୟ," ବୋଲି ଯୀଶୁ
କହିବାରୁ ଯିହୂଦୀମାନେ ଯୀଶୁଙ୍କ ବିରୁଦ୍ଧରେ ଅଭିଯୋଗ
ପ୍ରଚାର କଲେ। ୪୨ଯିହୂଦୀମାନେ କହିଲେ, "ଏ ଯୀଶୁ
ଅଟନ୍ତି। ଆମ୍ଭେ ତାହାଙ୍କ ପିତା ମାତାଙ୍କୁ ଜାଣିଛୁ। ଯୀଶୁ
କେବଳ ଯୋସେଫଙ୍କର ପୁତ୍ର। 'ସେ କିପରି ସ୍ୱର୍ଗରୁ
ଓହ୍ଲାଇଛି ବୋଲି କହୁଛି?'"
୪୩କିନ୍ତୁ ଯୀଶୁ କହିଲେ, "ତୁମ୍ଭେମାନେ ଅଭିଯୋଗ
କରିବା ବନ୍ଦକର। ୪୪ପରମପିତା ମୋତେ ପଠାଇଛନ୍ତି। ସେ
ଲୋକମାନଙ୍କୁ ମୋ ନିକଟକୁ ଆଣନ୍ତି। ମୁଁ ସେହି ଲୋକମାନଙ୍କୁ
ଶେଷଦିନରେ ଉଥାପନ କରିବି। ଯଦି ପରମପିତା କୌଣସି
ଲୋକକୁ ମୋ ନିକଟକୁ ନ ଆଣିବେ, ତେବେ ସେ
ଲୋକ ମୋ ପାଖକୁ ଆସିପାରିବ ନାହିଁ। ୪୫ଭାବବାଣୀରେ
ଏହିପରି ଲେଖା ଅଛି: 'ପରମେଶ୍ୱର ଲୋକମାନଙ୍କୁ ଶିକ୍ଷା
ଦେବେ।'* ଲୋକମାନେ ପରମପିତାଙ୍କ କଥା ଶୁଣନ୍ତି, ଓ
ତାହାଙ୍କଠାରୁ ଶିକ୍ଷା ପାଆନ୍ତି। ତା'ପରେ ମୋ' ପାଖକୁ ସେ
ଲୋକମାନେ ଆସନ୍ତି। ୪୬ମୁଁ କହିବା ଅର୍ଥ ନୁହେଁ ଯେ,
କୌଣସି ବ୍ୟକ୍ତି ପରମପିତାଙ୍କୁ ଦେଖିଛି। ପରମପିତାଙ୍କୁ
କେବଳ ସେହି ଜଣେ ଦେଖିଛନ୍ତି, ଯିଏ କି ପରମେଶ୍ୱରଙ୍କଠାରୁ
ଆସିଛନ୍ତି। ସେହି ଲୋକ ପରମପିତାଙ୍କୁ ଦେଖିଛନ୍ତି। ୪୭ମୁଁ
ତୁମ୍ଭକୁ ସତ୍ୟ କହୁଛି, ଯଦି କୌଣସି ବ୍ୟକ୍ତି ବିଶ୍ୱାସ କରେ
ତେବେ ସେ ଅନନ୍ତ-ଜୀବନ ଲାଭ କରେ। ୪୮ମୁଁ ନିଜେ
ସେହି ଜୀବନଦାୟକ ଖାଦ୍ୟ। ୪୯ତୁମ୍ଭର ପିତୃପୁରୁଷମାନେ
ପ୍ରାନ୍ତରରେ ପରମେଶ୍ୱର ଦେଇଥିବା ମାନ୍ନା (ଖାଦ୍ୟ) ଖାଇଥିଲେ।
କିନ୍ତୁ ସେମାନେ ଅନ୍ୟ ଲୋକଙ୍କ ପରି ମରିସାରିଲେଣି।
୫୦ମୁଁ ସ୍ୱର୍ଗରୁ ଓହ୍ଲାଇଥିବା ସେହି ଖାଦ୍ୟ। ଯଦି କୌଣସି
ଲୋକ ଏହି ଖାଦ୍ୟ ଖାଏ ତେବେ ସେ କଦାପି ମରିବ
ନାହିଁ। ୫୧ମୁଁ ସ୍ୱର୍ଗରୁ ଓହ୍ଲାଇଥିବା ଜୀବନ୍ତ ଖାଦ୍ୟ। ଯଦି

---

**ମାନ୍ନା** ଏକ ପ୍ରକାର ଖାଦ୍ୟ।

**'ପରମେଶ୍ୱର ... ଦେଇଥିଲେ'** ଗୀତସଂହିତା ୭୮:୨୪

**'ପରମେଶ୍ୱର ... ଦେବେ।'** ଯିଶାଇୟ ୫୪:୧୩

କୌଣସି ଲୋକ ଏ ଖାଦ୍ୟ ଖାଏ, ତେବେ ସେ ଚିରଦିନ
ପାଇଁ ବଞ୍ଚି ରହିବ। ଏହି ଖାଦ୍ୟ ହେଉଛି ମୋର ଶରୀର।
ମୁଁ ମୋର ଶରୀର ଦେଇଦେବି, ତଦ୍ୱାରା ଜଗତର ଲୋକମାନେ
ଜୀବନ ପାଇପାରିବେ।”
୫୨ତା’ପରେ ଯିହୂଦୀମାନେ ପରସ୍ପର ଭିତରେ ଯୁକ୍ତିତର୍କ
କରିବାକୁ ଲାଗିଲେ। ସେମାନେ କହିଲେ, “ଏ ଲୋକ
କିପରି ଆମ୍ଭମାନଙ୍କୁ ତା’ର ଶରୀର ଖାଇବା ପାଇଁ ଦେଇ
ପାରିବ?”
୫୩ଯୀଶୁ କହିଲେ, “ମୁଁ ତୁମ୍ଭକୁ ସତ୍ୟ କହୁଛି, ତୁମ୍ଭେ
ନିଶ୍ଚୟ ମନୁଷ୍ୟପୁତ୍ରଙ୍କ ମାଂସ ଖାଇବ। ତୁମ୍ଭେ ନିଶ୍ଚୟ
ତାହାଙ୍କ ରକ୍ତ ପିଇବ। ଯଦି ତୁମ୍ଭେ ଏହା ନ କରିବ,
ତେବେ ତୁମ୍ଭ ଭିତରେ ପ୍ରକୃତ ଜୀବନ ନାହିଁ। ୫୪ଯେଉଁ
ବ୍ୟକ୍ତି ମୋ ମାଂସ ଖାଏ ଓ ମୋ ରକ୍ତ ପିଏ, ସେ
ଅନନ୍ତଜୀବନ ପାଏ। ମୁଁ ସେହି ଲୋକକୁ ଶେଷ ଦିନରେ
ମୃତ୍ୟୁରୁ ଉଠେଇବି। ୫୫ମୋର ମାଂସ ପ୍ରକୃତ ଆହାର।
ମୋର ରକ୍ତ ପ୍ରକୃତ ପାନୀୟ। ୫୬ଯଦି କୌଣସି ବ୍ୟକ୍ତି
ମୋ ମାଂସ ଖାଏ ଓ ମୋର ରକ୍ତ ପିଏ, ତେବେ ସେହି
ବ୍ୟକ୍ତି ମୋ ଭିତରେ ରହେ ଓ ମୁଁ ତା’ ଭିତରେ ରୁହେ।
୫୭ପରମପିତା ମୋତେ ପଠାଇଛନ୍ତି। ପରମପିତା ଜୀବନ୍ତ ଓ
ତାହାଙ୍କ ହେତୁ ମୁଁ ଜୀବିତ। ତେଣୁ ଯେଉଁ ଲୋକ ମୋତେ
ଭୋଜନ କରେ, ସେ ମୋ’ ହେତୁ ଜୀବିତ ରହିବ। ୫୮ମୁଁ
ସେହି ଖାଦ୍ୟଭଳି ନୁହେଁ, ଯାହାକୁ ଆମ୍ଭ ପିତୃପୁରୁଷମାନେ
ମରୁଭୂମିରେ ଖାଇଥିଲେ। ସେମାନେ ସେ ଖାଦ୍ୟ ଖାଇଲେ,
କିନ୍ତୁ ଅନ୍ୟମାନଙ୍କ ପରି ସେମାନେ ମୃତ୍ୟୁବରଣ କଲେ। ମୁଁ
ସ୍ୱର୍ଗରୁ ଆସିଥିବା ଖାଦ୍ୟ। ଏହି ଖାଦ୍ୟ ଯେଉଁ ଲୋକ ଖାଏ
ସେ ଅନନ୍ତକାଳ ପାଇଁ ଜୀବିତ ରହେ।” ୫୯ଯୀଶୁ କଫର୍ନାହୂମର
ସମାଜଗୃହରେ ଏହି ସବୁ କଥା ଉପଦେଶ ଦେଉଥିଲେ।

## ଯୀଶୁଙ୍କୁ ଅନୁଗମନ କରୁଥିବା ଅନେକ ଲୋକ ତାହାଙ୍କୁ ଛାଡ଼ି ଚାଲିଗଲେ

୬୦ଯୀଶୁଙ୍କର ଶିଷ୍ୟମାନେ ଏହି ସବୁ କଥା ଶୁଣିଲେ।
ସେମାନଙ୍କ ଭିତରୁ ଅନେକ କହିଲେ, “ଏ ଉପଦେଶ
ଗ୍ରହଣ କରିବା କଷ୍ଟକର। ଏହି ଉପଦେଶ କିଏ ଗ୍ରହଣ
କରିପାରିବ?”
୬୧ଯୀଶୁ ଜାଣିଲେ ଯେ ତାହାଙ୍କର ଶିଷ୍ୟମାନେ ଏ
ବିଷୟରେ ଆପତ୍ତି କରୁଛନ୍ତି। ତେଣୁ ସେ କହିଲେ, “ଏ
ଉପଦେଶ କ’ଣ ତୁମ୍ଭକୁ ଅସୁବିଧାରେ ପକାଉଛି? ୬୨ତେବେ
ମନୁଷ୍ୟପୁତ୍ର ଯେଉଁଠାରୁ ଆସିଥିଲେ, ପୁନର୍ବାର ସେ ସ୍ଥାନକୁ
ଫେରିଯିବେ, ଏହା ମଧ୍ୟ କ’ଣ ତୁମ୍ଭକୁ ବ୍ୟତିବ୍ୟସ୍ତ କରୁଛି?
୬୩ଶରୀର ମନୁଷ୍ୟକୁ ଜୀବନଦାନ କରେନାହିଁ। ଆତ୍ମା ଜୀବନ
ଦିଏ। ମୁଁ ତୁମ୍ଭକୁ ଯାହା କହିଲି ତାହା ଆତ୍ମା, ତେଣୁ
ଏସବୁ ବିଷୟ ଜୀବନ ଦିଏ। ୬୪କିନ୍ତୁ ତୁମ୍ଭ ଭିତରୁ
କେତେକ ବିଶ୍ୱାସ କରୁ ନାହିଁ। ଯୀଶୁ ବିଶ୍ୱାସ ନ କରୁଥିବା
ଲୋକଙ୍କୁ ପ୍ରଥମରୁ ଜାଣି ଥିଲେ ଏବଂ ପରେ ଯିଏ
ବିଶ୍ୱାସଘାତକତା କରିବ ସେହି ଲୋକକୁ ମଧ୍ୟ ସେ
ଜାଣିଥିଲେ। ୬୫ଯୀଶୁ କହିଲେ, “ସେଥିପାଇଁ ମୁଁ କହିଥିଲି,
‘ଯଦି ପରମପିତା କୌଣସି ଲୋକକୁ ମୋ ନିକଟକୁ
ଆସିବାକୁ ଅନୁମତି ଦିଅନ୍ତି ନାହିଁ ତେବେ ସେ ଲୋକ
ମୋ ନିକଟକୁ ଆସିପାରିବ ନାହିଁ।’”
୬୬ଯୀଶୁ ଏ କଥା କହିବା ପରେ ତାହାଙ୍କର ଅନେକ
ଶିଷ୍ୟ ତାହାଙ୍କୁ ଛାଡ଼ି ଚାଲିଗଲେ। ସେମାନେ ଆଉ
ତାହାଙ୍କର ଅନୁଗମନ କଲେ ନାହିଁ।
୬୭ଯୀଶୁ ବାରଜଣ ପ୍ରେରିତଙ୍କୁ ପଚାରିଲେ, “ତୁମ୍ଭେମାନେ
ମଧ୍ୟ କ’ଣ ମୋତେ ଛାଡ଼ିଯିବା ପାଇଁ ଚାହଁ କି?”
୬୮ଶିମୋନ ପିତର ଉତ୍ତର ଦେଲେ, “ପ୍ରଭୁ, ଆମେ
କାହା ପାଖକୁ ଯିବୁ? ତୁମ୍ଭ ପାଖରେ ଅନନ୍ତ-ଜୀବନ ଅଛି।
୬୯ଆମ୍ଭେ ତୁମ୍ଭଠାରେ ବିଶ୍ୱାସ କରୁ। ଆମ୍ଭେ ଜାଣୁ ଯେ
ତୁମ୍ଭେ ପରମେଶ୍ୱରଙ୍କ ନିକଟରୁ ଆସିଥିବା ପବିତ୍ର ବ୍ୟକ୍ତି।”
୭୦ଯୀଶୁ ଉତ୍ତର ଦେଲେ, “ମୁଁ ତୁମ୍ଭ ବାରଜଣଙ୍କୁ
ମନୋନୀତ କଲି। କିନ୍ତୁ ତୁମ୍ଭ ଭିତରୁ ଜଣେ ଶୟତାନ।”
୭୧ଯୀଶୁ ଶିମୋନ ଇଷ୍କାରିୟୋଥର ପୁତ୍ର ଯିହୂଦାକୁ ଲକ୍ଷ୍ୟ
କରି ଏହା କହିଥିଲେ। ସେ ବାର ଜଣଙ୍କ ମଧ୍ୟରୁ ଜଣେ
ଥିଲା। ପରେ ସେହି ଯିହୂଦା ତାହାଙ୍କ ବିରୁଦ୍ଧରେ ବିଶ୍ୱାସଘାତକତା
କରିଥିଲା।

## ଯୀଶୁ ଓ ତାହାଙ୍କର ଭାଇମାନେ

୭ ଏହା ପରେ ଯୀଶୁ ଗାଲିଲୀ ପ୍ରଦେଶରେ ଭ୍ରମଣ
କରିବାକୁ ଲାଗିଲେ। ସେ ଯିହୂଦାରେ ଯାତ୍ରା କରିବା
ପାଇଁ ଚାହୁଁ ନ ଥିଲେ, କାରଣ ଯିହୂଦୀମାନେ ତାହାଙ୍କୁ
ହତ୍ୟା କରିବା ପାଇଁ ଚାହୁଁଥିଲେ। ୨ଯିହୂଦୀମାନଙ୍କର ବାର୍ଷିକ
କୁଟୀରବାସ ପର୍ବର ସମୟ ଆସିଲା। ୩ତେଣୁ ଯୀଶୁଙ୍କର
ଭାଇମାନେ ତାହାଙ୍କୁ କହିଲେ, “ଏ ସ୍ଥାନ ଛାଡ଼ି ଓ ପର୍ବ
ସକାଶେ ଯିହୂଦା ପ୍ରଦେଶକୁ ଯାଅ। ଯେପରି, ତୁମ୍ଭର
ଶିଷ୍ୟମାନେ ସେଠାରେ ତୁମ୍ଭେ କରୁଥିବା ଆଶ୍ଚର୍ଯ୍ୟ କାର୍ଯ୍ୟଗୁଡ଼ିକ
ଦେଖି ପାରିବେ। ୪ଯଦି କୌଣସି ଲୋକ ଚାହେଁ ଯେ
ସମସ୍ତେ ତାହାଙ୍କୁ ଜାଣନ୍ତୁ, ତେବେ ସେ ତା’ର କାର୍ଯ୍ୟସୂଚୀ
ଲୁଚେଇବା ଉଚିତ ନୁହେଁ। ତୁମ୍ଭେ ନିଜକୁ ଜଗତ ଆଗରେ
ପ୍ରକାଶ କର। ତୁମ୍ଭେ କରୁଥିବା ଆଶ୍ଚର୍ଯ୍ୟକାର୍ଯ୍ୟ ସବୁ
ସେମାନଙ୍କୁ ଦେଖିବାକୁ ଦିଅ।“ ୫(ଯୀଶୁଙ୍କର ଭାଇମାନେ
ସୁଦ୍ଧା ତାହାଙ୍କୁ ବିଶ୍ୱାସ କରୁନଥିଲେ) ୬ଯୀଶୁ ତାହାଙ୍କ
ଭାଇମାନଙ୍କୁ କହିଲେ, “ମୋ ପାଇଁ ଏପର୍ଯ୍ୟନ୍ତ ଉପଯୁକ୍ତ
ସମୟ ଆସି ନାହିଁ। କିନ୍ତୁ ତୁମ୍ଭମାନଙ୍କର (ଯିବା) ପାଇଁ
ସମସ୍ତ ସମୟ ଉପଯୁକ୍ତ। ୭ସଂସାର ତୁମ୍ଭକୁ ଘୃଣା କରି
ପାରିବ ନାହିଁ। ସଂସାର ମୋତେ ଘୃଣା କରେ, କାରଣ ମୁଁ
ଜଗତର ଲୋକମାନଙ୍କୁ ସେମାନଙ୍କର କାର୍ଯ୍ୟଗୁଡ଼ିକ ମନ୍ଦ
ବୋଲି କହେ। ୮ତେଣୁ ତୁମ୍ଭେମାନେ ପର୍ବକୁ ଯାଅ। ମୁଁ
ବର୍ତ୍ତମାନ ପର୍ବକୁ ଯିବି ନାହିଁ। ମୋ ପାଇଁ ଏପର୍ଯ୍ୟନ୍ତ
ଉପଯୁକ୍ତ ସମୟ ଆସି ନାହିଁ।” ୯ଏକଥା କହିବା ପରେ
ଯୀଶୁ ଗାଲିଲୀରେ ରହିଗଲେ।
୧୦ତେଣୁ ଯୀଶୁଙ୍କର ଭାଇମାନେ ପର୍ବକୁ ଗଲେ। ସେମାନେ
ଗଲା ପରେ ଯୀଶୁ ମଧ୍ୟ ଗଲେ। ସେ ଲୋକମାନଙ୍କ
ଦୃଷ୍ଟିଗୋଚର ହେଲେ ନାହିଁ। ୧୧ଯିହୂଦୀୟମାନେ ପର୍ବରେ
ଯୀଶୁଙ୍କୁ ଖୋଜିଲେ। ସେମାନେ ପଚାରିଲେ, “ସେହି ଲୋକଟି
କାହିଁ?”

୧୨ସେଠାରେ ବହୁତ ଲୋକ ଥିଲେ। ସେମାନଙ୍କ ମଧ୍ୟରୁ
ଅନେକେ ଗୋପନରେ ନିଜ ନିଜ ଭିତରେ ଯୀଶୁଙ୍କ
ବିଷୟରେ କଥାବାର୍ତ୍ତା ହେଉଥିଲେ। କେତେକ ଲୋକ
କହିଲେ, "ସେ ଜଣେ ଉତ୍ତମ ଲୋକ।" କିନ୍ତୁ ଅନ୍ୟମାନେ
କହୁଥିଲେ, "ନା, ସେ ଲୋକମାନଙ୍କୁ ପ୍ରତାରଣା କରୁଛି।"
୧୩କିନ୍ତୁ ଲୋକମାନଙ୍କ ମଧ୍ୟରେ ଏପରି କେହି ସାହସୀ
ନଥିଲେ, ଯିଏ କି ଯୀଶୁଙ୍କ ବିଷୟରେ ଖୋଲା ଖୋଲି
ଭାବରେ କହିବ। ଲୋକମାନେ ଯିହୂଦୀୟ ନେତାମାନଙ୍କୁ
ଭୟ କରୁଥିଲେ।

## ଯିରୂଶାଲମରେ ଯୀଶୁଙ୍କର ଉପଦେଶ

୧୪ପର୍ବ ପ୍ରାୟ ଅଧାଅଧି ଶେଷ ହୋଇ ଯାଇଥିଲା।
ତା'ପରେ ଯୀଶୁ ମନ୍ଦିର ପରିସରକୁ ଯାଇ ଉପଦେଶ
ଦେବାରେ ଲାଗିଲେ। ୧୫ଯିହୂଦୀମାନେ ଆଶ୍ଚର୍ଯ୍ୟ ହେଲେ।
ସେମାନେ କହିଲେ, "ଏ ଲୋକ କେବେ ବିଦ୍ୟାଳୟରେ
ପଢି ନାହିଁ। ଏତେ ବିଷୟବସ୍ତୁ ସେ କିପରି ଜାଣିଲା?"
୧୬ଯୀଶୁ ଉତ୍ତର ଦେଲେ, "ମୁଁ ଯାହା ଉପଦେଶ
ଦେଉଛି, ତାହା ମୋ ନିଜର ନୁହେଁ। ମୋର ଶିକ୍ଷାଗୁଡ଼ିକ
ମୋତେ ପଠାଇଥିବା ପରମେଶ୍ୱରଙ୍କଠାରୁ ଆସିଛି।
୧୭ପରମେଶ୍ୱର ଯାହା ଚାହାଁନ୍ତି ଯଦି କୌଣସି ବ୍ୟକ୍ତି ସେହି
ଅନୁଯାୟୀ କାର୍ଯ୍ୟ କରେ, ମୋର ଉପଦେଶ ପରମେଶ୍ୱରଙ୍କଠାରୁ
ଆସିଛି ନା ନାହିଁ, ତାହା ସେ ଜାଣିପାରିବ। ସେ ବ୍ୟକ୍ତି
ଜାଣିପାରିବ ଯେ ଏ ଉପଦେଶ ମୋ ନିଜର ନୁହେଁ।
୧୮ଯେଉଁ ଲୋକ ନିଜର ଚିନ୍ତାଧାରା ପ୍ରଚାର କରେ, ସେ
ନିଜ ପାଇଁ ସମ୍ମାନ ଚାହେଁ କିନ୍ତୁ ଯେଉଁଲୋକ ନିଜ
ପ୍ରେରଣକର୍ତ୍ତାଙ୍କର ସମ୍ମାନ ଚାହେଁ, ସେ ସତ୍ୟ କହେ। ତା'
ପାଖରେ କିଛି ମିଥ୍ୟା ନାହିଁ। ୧୯ଏହା ସତ୍ୟ ଯେ ମୋଶା
ତୁମକୁ ନିୟମ (ବ୍ୟବସ୍ଥା) ଦେଇଛନ୍ତି। କିନ୍ତୁ ତୁମ୍ଭମାନଙ୍କ
ମଧ୍ୟରୁ କେହି ସେ ନିୟମ ମାନୁ ନାହିଁ। ତୁମ୍ଭେ ମୋତେ
କାହିଁକି ମାରି ଦେବା ପାଇଁ ଚେଷ୍ଟା କରୁଛ?"
୨୦ଲୋକମାନେ କହିଲେ, "ତୁମ୍ଭ ଭିତରେ ଗୋଟିଏ
ଭୂତ ପ୍ରବେଶ କରି ତୁମ୍ଭକୁ ପାଗଳ କରିଦେଇଛି। ଆମ୍ଭେ
ତୁମ୍ଭକୁ ମାରିବାକୁ ଚେଷ୍ଟାକରୁ ନାହୁଁ।"
୨୧ଯୀଶୁ ସେମାନଙ୍କୁ କହିଲେ, "ମୁଁ ଗୋଟିଏ ଆଶ୍ଚର୍ଯ୍ୟକାର୍ଯ୍ୟ
କଲି, ଏବଂ ତୁମ୍ଭେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲ। ୨୨ମୋଶା
ତୁମ୍ଭକୁ ସୁନ୍ନତ ବିଧି ପାଳନ କରିବା ପାଇଁ ନିୟମ ଦେଲେ,
(କିନ୍ତୁ ପ୍ରକୃତରେ ମୋଶା ତୁମ୍ଭକୁ ସୁନ୍ନତ ବିଷୟ ଦେଇ
ନାହାଁନ୍ତି। ଏହାତ ମୋଶାଙ୍କ ପୂର୍ବରୁ ଥିବା ଲୋକମାନଙ୍କ
ପାଖରୁ ଆସିଛି)। ତେଣୁ ତୁମ୍ଭେ ବେଳେ ବେଳେ ବିଶ୍ରାମବାର
ଦିନ ଗୋଟିଏ ବାଳକକୁ ସୁନ୍ନତ* କରିଥାଅ। ୨୩ଏଥିରୁ
ଜଣାପଡ଼େ ଯେ, କୌଣସି ଲୋକକୁ ମୋଶାଙ୍କର ନିୟମ
ପାଳନ କରିବା ପାଇଁ ବିଶ୍ରାମବାର ଦିନ ସୁନ୍ନତ କରା
ଯାଇପାରେ। ତେଣୁ ମୁଁ ଯଦି ବିଶ୍ରାମବାର ଦିନ କୌଣସି
ଲୋକର ସମ୍ପୂର୍ଣ୍ଣ ଦେହକୁ ସୁସ୍ଥ କଲି ତେବେ ତୁମ୍ଭେ
କାହିଁକି ରାଗୁଛ? ୨୪କୌଣସି ବିଷୟର ବାହ୍ୟରୂପ ଦେଖି
ବିଚାର କର ନାହିଁ। ପ୍ରକୃତରେ ଯାହା ଠିକ୍, ତଦନୁଯାୟୀ
ବିଚାର କର।"

## ଯୀଶୁ କ'ଣ ପ୍ରକୃତରେ ଖ୍ରୀଷ୍ଟ- ଜନତାଙ୍କ ମଧ୍ୟରେ ଆଲୋଡ଼ନ

୨୫ଯିରୂଶାଲମରେ ବାସ କରୁଥିବା କେତେକ ଲୋକ
କହିଲେ, "ଏହି ଲୋକକୁ ସେମାନେ ମାରିବା ପାଇଁ
ଚାହାଁନ୍ତି। ୨୬କିନ୍ତୁ ସେ ପ୍ରକାଶରେ ପ୍ରଚାର କରୁଛି, ତାହାଙ୍କୁ
ସମସ୍ତେ ଦେଖୁଛନ୍ତି ଓ ଶୁଣୁଛନ୍ତି। କୌଣସି ଲୋକ ତାହାର
ପ୍ରଚାର ବନ୍ଦ କରିବା ପାଇଁ ଚେଷ୍ଟା କରୁ ନାହିଁ। ବୋଧହୁଏ
ନେତାମାନେ ମନସ୍ଥ କଲେ ଯେ, ସେ ପ୍ରକୃତରେ ଖ୍ରୀଷ୍ଟ।
୨୭କିନ୍ତୁ ଆମ୍ଭେ ଜାଣୁ ଏହି ବ୍ୟକ୍ତି କେଉଁଠାରୁ ଆସିଛି।
ଯେତେବେଳେ ପ୍ରକୃତ ଖ୍ରୀଷ୍ଟ ଆସିବେ, ସେତେବେଳେ
କେହି ତାହାଙ୍କର ଆସିବା ସ୍ଥାନ ଜାଣିପାରିବେ ନାହିଁ।"
୨୮ଯୀଶୁ ମନ୍ଦିରରେ ଉପଦେଶ ଦେଉ ଦେଉ, ଉଚ୍ଚ
ସ୍ୱରରେ କହିଲେ, "ହଁ, ତୁମ୍ଭେ ମୋତେ ଜାଣ ଓ ମୁଁ
କେଉଁଠାରୁ ଆସିଛି ତାହା ମଧ୍ୟ ଜାଣ। କିନ୍ତୁ ମୁଁ ମୋର
ନିଜ ଅଧିକାର ବଳରେ ଆସି ନାହିଁ। ମୁଁ ସତ୍ୟ ପରମେଶ୍ୱରଙ୍କ
ଦ୍ୱାରା ପଠାଯାଇଛି। ତୁମ୍ଭେ ତାହାଙ୍କୁ ଜାଣି ନାହିଁ। ୨୯କିନ୍ତୁ
ମୁଁ ତାହାଙ୍କୁ ଜାଣିଛି ଓ ମୁଁ ତାହାଙ୍କ ପାଖରୁ ଆସିଛି। ସେ
ମୋତେ ପଠାଇଛନ୍ତି।"
୩୦ଯୀଶୁ ଏ କଥା କହିବା ବେଳେ ଲୋକମାନେ
ତାହାଙ୍କୁ ଧରିବା ପାଇଁ ଚେଷ୍ଟା କଲେ। କିନ୍ତୁ କେହି
ତାହାଙ୍କୁ ଛୁଇଁ ପାରିଲେ ନାହିଁ। ସେତେବେଳେ ମଧ୍ୟ
ତାହାଙ୍କୁ ହତ୍ୟା କରିବାର ଉଚିତ୍ ସମୟ ହୋଇ ନ ଥିଲା।
୩୧ବହୁତ ଲୋକ ଯୀଶୁଙ୍କୁ ବିଶ୍ୱାସ କଲେ। ଲୋକମାନେ
କହିଲେ, "ଆମ୍ଭେ ଖ୍ରୀଷ୍ଟଙ୍କ ଆଗମନ ପାଇଁ ଅପେକ୍ଷା
କରିଛୁ। ଏହି ବ୍ୟକ୍ତି ଯେଉଁ ସବୁ ଆଶ୍ଚର୍ଯ୍ୟକାର୍ଯ୍ୟ କରିଛନ୍ତି,
ଖ୍ରୀଷ୍ଟ ଆସିଲେ ଏହା ଅପେକ୍ଷା କଣ ଅଧିକ କରିବେ? ନା,
ଏହି ବ୍ୟକ୍ତି ନିଶ୍ଚୟ ଖ୍ରୀଷ୍ଟ ହୋଇଥିବେ।"

## ଯୀଶୁଙ୍କୁ ବନ୍ଦୀ କରିବା ପାଇଁ ଯିହୂଦୀମାନଙ୍କର ଚେଷ୍ଟା

୩୨ଲୋକମାନେ ଯୀଶୁଙ୍କ ବିଷୟରେ ଏହି କଥାମାନ
କହୁଥିବାର ଫାରୂଶୀମାନେ ଶୁଣିଲେ। ତେଣୁ ମୁଖ୍ୟ ଯାଜକମାନେ
ଓ ଫାରୂଶୀମାନେ ଯୀଶୁଙ୍କୁ ବନ୍ଦୀ କରିବା ପାଇଁ ମନ୍ଦିରରେ
କେତେକ ସୈନ୍ୟଙ୍କୁ ପଠାଇଲେ। ୩୩ତା'ପରେ ଯୀଶୁ କହିଲେ,
"ମୁଁ ତୁମ୍ଭ ସହିତ ଆଉ ଅଳ୍ପ ସମୟ ରହିବି। ମୋତେ
ଯିଏ ପଠାଇଛନ୍ତି ମୁଁ ତାହାଙ୍କ ନିକଟକୁ ଫେରିଯିବି।
୩୪ତୁମ୍ଭେମାନେ ମୋତେ ଖୋଜିବ, କିନ୍ତୁ ମୋତେ ପାଇବ
ନାହିଁ। ଆଉ, ମୁଁ ଯେଉଁଠାରେ ଥିବି, ସେଠାକୁ ତୁମ୍ଭେମାନେ
ଯାଇ ପାରିବ ନାହିଁ।" ୩୫ଯିହୂଦୀମାନେ ପରସ୍ପର କୁହାକୁହି
ହେଲେ, "ଏ ଲୋକ ଏପରି କେଉଁଠାକୁ ଯିବ ଯେ, ଆମ୍ଭେ
ତାହାକୁ ପାଇବା ନାହିଁ। ସେ କ'ଣ ଗ୍ରୀକ୍ ନଗରଗୁଡ଼ିକୁ
ଯିବ ଯେଉଁଠାରେ ଆମ୍ଭ ଲୋକମାନେ ରହନ୍ତି? ସେ
ସେଠାରେ ଗ୍ରୀକ୍ ଲୋକମାନଙ୍କୁ ଶିକ୍ଷା ଦେବକି? ୩୬ଏହି

---

**ସୁନ୍ନତ** ଅଗ୍ରଚର୍ମ କାଟିବା ବିଧିକୁ ବୁଝାଏ। ପ୍ରତ୍ୟେକ ଯିହୂଦୀ ବାଳକକୁ ଏହା କରାଯାଉ ଥିଲା। ଏହା ଏକ ଚିହ୍ନ ସ୍ୱରୂପ ଯାହା ଈଶ୍ୱର ଅବ୍ରାହାମଙ୍କ ସହିତ କରିଥିଲେ। ଆଦିପୁସ୍ତକ ୧୭:୯-୧୪

ଲୋକ କହୁଛି, 'ତୁମ୍ଭେ ମୋତେ ଖୋଜିବ, କିନ୍ତୁ ମୋତେ
ପାଇବନାହିଁ।" ସେ ପୁଣି କହୁଛି, 'ମୁଁ ଯେଉଁଠି ରହିବି,
ତୁମ୍ଭେ ଆସି ପାରିବନାହିଁ।' ଏହାର ଅର୍ଥ କ'ଣ?"

### ଯୀଶୁ ପବିତ୍ରଆତ୍ମାଙ୍କ ବିଷୟରେ କହିଲେ

୩୭ପର୍ବର ଶେଷ ଦିନ ଆସିଲା। ସେହି ପ୍ରଧାନ ଦିନରେ
ଯୀଶୁ ଠିଆ ହୋଇ ଉଚ୍ଚ ସ୍ୱରରେ କହିଲେ, "ଯଦି
କୌଣସି ଲୋକ ତୃଷାର୍ତ୍ତ, ତେବେ ସେ ମୋ ନିକଟକୁ
ଆସି ପାନ କରୁ। ୩୮ଯଦି କୌଣସି ଲୋକ ମୋଠାରେ
ବିଶ୍ୱାସ କରେ, ତେବେ ତା'ର ହୃଦୟରୁ ଜୀବନ୍ତ ଜଳ
ପ୍ରବାହିତ ହେବ। ଏହି କଥା ଧର୍ମ ଶାସ୍ତ୍ରରେ ଲେଖା
ଅଛି।" ୩୯ଯୀଶୁ ପବିତ୍ରଆତ୍ମାଙ୍କ ବିଷୟରେ କହୁଥିଲେ।
ଯୀଶୁ ଏପର୍ଯ୍ୟନ୍ତ ମୃତ୍ୟୁ ଭୋଗ କରି ନଥିବାରୁ ଓ ସେ
ମହିମାପ୍ରାପ୍ତ ହୋଇ ନ ଥିବାରୁ ଲୋକମାନଙ୍କୁ ଏପର୍ଯ୍ୟନ୍ତ
ପବିତ୍ର ଆତ୍ମା ଦିଆ ଯାଇ ନଥିଲା। କିନ୍ତୁ ପରେ, ଯେଉଁ
ଲୋକମାନେ ଯୀଶୁଙ୍କୁ ବିଶ୍ୱାସ କରିବେ, ସେମାନେ ପବିତ୍ର
ଆତ୍ମା ଲାଭ କରିବେ।

### ଯୀଶୁଙ୍କ ସମ୍ବନ୍ଧରେ ଲୋକମାନଙ୍କର ତର୍କ

୪୦ଯୀଶୁଙ୍କ ଏହି କଥା ଲୋକମାନେ ଶୁଣିଲେ। କେତେକ
ଲୋକ କହିଲେ, "ଏହିଲୋକ ପ୍ରକୃତରେ ସେହି
ଭବିଷ୍ୟଦ୍‌ବକ୍ତା।"

୪୧ଅନ୍ୟମାନେ କହିଲେ, "ସେ ଖ୍ରୀଷ୍ଟ।"

ଅନ୍ୟମାନେ କହିଲେ, "ଗାଲିଲୀରୁ ଖ୍ରୀଷ୍ଟ ଆସିବେ
ନାହିଁ। ୪୨ଧର୍ମଶାସ୍ତ୍ର କୁହେ ଯେ ଖ୍ରୀଷ୍ଟ ଦାଉଦଙ୍କ ପରିବାରରୁ
ଆସିବେ। ଏବଂ ଧର୍ମଶାସ୍ତ୍ର କୁହେ ଯେ, ଖ୍ରୀଷ୍ଟ ଦାଉଦଙ୍କ
ବାସସ୍ଥଳ ବେଥଲେହମ ନଗରରୁ ଆସିବେ।" ୪୩ତେଣୁ
ଲୋକମାନେ ଯୀଶୁଙ୍କ ବିଷୟରେ ଭିନ୍ନ-ଭିନ୍ନ ମତ ଦେଲେ।
୪୪ଲୋକମାନଙ୍କ ମଧ୍ୟରୁ କେତେକ ଯୀଶୁଙ୍କୁ ବନ୍ଦୀ କରିବା
ପାଇଁ ଚାହିଁଲେ। କିନ୍ତୁ କେହି ଜଣେ ହେଲେ ଏହା
କରିବାକୁ ଚେଷ୍ଟା କଲେ ନାହିଁ।

### ଯିହୂଦୀ ନେତାମାନେ ବିଶ୍ୱାସ କରିବାକୁ ମନା କଲେ

୪୫ମନ୍ଦିରର ସୈନ୍ୟମାନେ ମୁଖ୍ୟଯାଜକ ଓ ଫାରୂଶୀମାନଙ୍କ
ପାଖକୁ ଫେରି ଆସିଲେ। ଯାଜକମାନେ ଓ ଫରୂଶୀମାନେ
ସେମାନଙ୍କୁ ପଚାରିଲେ, "ତୁମ୍ଭେମାନେ ଯୀଶୁଙ୍କୁ କାହିଁକି ବନ୍ଦୀ
କରି ଆଣିଲ ନାହିଁ?"

୪୬ମନ୍ଦିରର ସୈନ୍ୟମାନେ ଉତ୍ତର ଦେଲେ, "ସେ ଯାହା
କହୁଛନ୍ତି, ତାହା ଅନ୍ୟ ସମସ୍ତଙ୍କ କଥାଠାରୁ ଅଧିକ
ମୂଲ୍ୟବାନ୍।"

୪୭ଫାରୂଶୀମାନେ କହିଲେ, "ତାହା ହେଲେ ଯୀଶୁ
ତୁମ୍ଭମାନଙ୍କୁ ମଧ୍ୟ ବୋକା ବନେଇଛନ୍ତି। ୪୮କୌଣସି ନେତା
କ'ଣ ତାଙ୍କୁ ବିଶ୍ୱାସ କରିଛନ୍ତି? ନା। ଆମ୍ଭ ଫାରୂଶୀମାନଙ୍କ
ମଧ୍ୟରୁ କ'ଣ ତାହାଙ୍କୁ କେହି ବିଶ୍ୱାସ କରିଛନ୍ତି? ନା।
୪୯ଏହି ଯେଉଁ ଲୋକମାନେ ନିୟମ (ବ୍ୟବସ୍ଥା) ବିଷୟରେ
କିଛି ଜାଣିନ୍ତନି, ସେମାନେ ଶାପଗ୍ରସ୍ତ।"

୫୦କିନ୍ତୁ ସେହି ଦଳରେ ନୀକଦୀମ ଥିଲେ। ସେ ଏହା
ପୂର୍ବରୁ ଯୀଶୁଙ୍କୁ ଦେଖିବା ପାଇଁ ଯାଇଥିଲେ।* ୫୧ସେ
କହିଲେ, "ଆମ୍ଭର ପ୍ରଥା ଯେ କୌଣସି ଲୋକର କଥା
ପ୍ରଥମେ ନଶୁଣି ବିଚାର କରିବ ନାହିଁ। ସେ କ'ଣ
କରିଛନ୍ତି, ଆମ୍ଭେ ନ ଜାଣି ତାହାଙ୍କର ବିଚାର କରି ପାରିବା
ନାହିଁ।"

୫୨ଯିହୂଦୀନେତାମାନେ ଉତ୍ତର ଦେଲେ, "ତୁମ୍ଭେ କ'ଣ
ସେହି ଗାଲୀଲୀୟମାନଙ୍କ ମଧ୍ୟରୁ ଜଣେ? ଧର୍ମଶାସ୍ତ୍ରଗୁଡ଼ିକୁ
ଅନୁସନ୍ଧାନ କର। ତୁମ୍ଭେ ଜାଣି ପାରିବ, କୌଣସି ଭବିଷ୍ୟଦ୍‌ବକ୍ତା
ଗାଲୀଲୀରୁ ଆସନ୍ତି ନାହିଁ।"

---

(ପ୍ରାଚୀନତମ ଓ 'ଯୋହନ'ର ସବୁଠାରୁ ଭଲ ଗ୍ରୀକ୍ ପ୍ରତିଗୁଡ଼ିକରେ
୭:୫୩ ଠାରୁ ୮:୧୧ ପର୍ଯ୍ୟନ୍ତ ପଦଗୁଡ଼ିକ ନାହିଁ।)

### ବ୍ୟଭିଚାର ପାପରେ ଧରାଯାଇଥିବା ସ୍ତ୍ରୀ

୫୩ତା'ପରେ ସେ ସ୍ଥାନ ଛାଡ଼ି ସମସ୍ତ ଯିହୂଦୀ ନେତାମାନେ
ନିଜ-ନିଜ ଘରକୁ ଗଲେ।

୮ ଯୀଶୁ ଜୀତପର୍ବତକୁ* ଗଲେ। ୨ତହିଁ ଆରଦିନ ଅତି
ସକାଳୁ ସେ ମନ୍ଦିରକୁ ଫେରିଆସିଲେ। ସବୁ ଲୋକମାନେ
ଯୀଶୁଙ୍କ ପାଖକୁ ଆସିଲେ। ସେ ବସି ଲୋକମାନଙ୍କୁ ଶିକ୍ଷା
ଦେଲେ। ୩ବ୍ୟବସ୍ଥା ଶାସ୍ତ୍ରଜ୍ଞମାନେ, ଶିକ୍ଷକମାନେ ଓ
ଫାରୂଶୀମାନେ ଜଣେ ସ୍ତ୍ରୀଲୋକକୁ ସେଠାକୁ ଆଣିଲେ।
ସେହି ସ୍ତ୍ରୀଲୋକଟି ବ୍ୟଭିଚାର କଲାବେଳେ ଧରା ପଡ଼ିଥିଲା।
ଯିହୂଦୀମାନେ ତାହାକୁ ଲୋକମାନଙ୍କ ଆଗରେ ଠିଆ ହେବା
ପାଇଁ ବାଧ୍ୟ କଲେ। ୪ସେମାନେ ଯୀଶୁଙ୍କୁ କହିଲେ, "ଗୁରୁ,
ଏହି ସ୍ତ୍ରୀଲୋକଟି ଜଣେ ପୁରୁଷ ସହିତ ବ୍ୟଭିଚାର କଲାବେଳେ
ଧରା ପଡ଼ିଛି। ସେ ପୁରୁଷ ତା'ର ସ୍ୱାମୀ ନୁହେଁ।
୫ମୋଶାଙ୍କର ନିୟମ ଆଦେଶ ଦିଏ ଯେ ଏଭଳି କାର୍ଯ୍ୟ
କରୁଥିବା ପ୍ରତ୍ୟେକ ସ୍ତ୍ରୀକୁ ଆମ୍ଭେ ପଥର ଫୋପାଡ଼ି
ମାରିଦେବା ଉଚିତ। କିନ୍ତୁ ଆମ୍ଭେ କ'ଣ କରିବା ଉଚିତ
ବୋଲି ଆପଣ କହୁଛନ୍ତି?" ୬ଯିହୂଦୀୟମାନେ ଯୀଶୁଙ୍କୁ
ଛନ୍ଦିବା ପାଇଁ ଏଭଳି ପ୍ରଶ୍ନ ପଚାରୁଥିଲେ।
ସେମାନେ ଯୀଶୁଙ୍କର ଭୁଲ ଧରିବାକୁ ଚାହୁଁଥିଲେ। ତାହାହେଲେ
ସେମାନେ ତାହାଙ୍କ ବିରୁଦ୍ଧରେ ଅଭିଯୋଗ ଆଣିପାରିବେ।
କିନ୍ତୁ ଯୀଶୁ ଆଣ୍ଠେଇ ଆଙ୍ଗୁଳି ସାହାଯ୍ୟରେ ଭୂମି ଉପରେ
କିଛି ଲେଖିବାରେ ଲାଗିଲେ। ୭ଯିହୂଦୀନେତାମାନେ ତାହାଙ୍କୁ
ଅବିରତ ପ୍ରଶ୍ନ ପଚାରିବାରେ ଲାଗିଲେ। ତେଣୁ ଯୀଶୁ ଠିଆ
ହୋଇ କହିଲେ, "ଏଠାରେ ଏଭଳି କୌଣସି ଲୋକ
ଉପସ୍ଥିତ ଅଛନ୍ତି, ଯିଏ କେବେ ପାପ କରି ନାହିଁ?
ସେହିଭଳି ପାପ ନ କରିଥିବା ଲୋକ ଏହି ସ୍ତ୍ରୀଲୋକକୁ
ପ୍ରଥମେ ପଥର ଫିଙ୍ଗୁ।" ୮ତାପରେ ଯୀଶୁ ପୁଣି ଆଣ୍ଠେଇ
ଭୂଇଁରେ ଲେଖିବାକୁ ଲାଗିଲେ।

---

**ନୀକଦୀମ ... ଯାଇଥିଲେ** ନୀକଦୀମ ଯୀଶୁଙ୍କ ନିକଟକୁ ଯାଇ
କଥାବାର୍ତ୍ତା ହେବା ବିଷୟ ଯୋହନ ୩:୧-୨୧ ରେ ଅଛି।

**ଜୀତ ପର୍ବତ** ଯିରୂଶାଲମ ପାଖରେ ଥିବା ଏକ ପର୍ବତ
ବିଶେଷ।

୯ଯେଉଁମାନେ ଯୀଶୁଙ୍କର ଏ କଥା ଶୁଣୁଥିଲେ ସେମାନେ
ସେଠାରୁ ଜଣ-ଜଣ ହୋଇ ଚାଲି ଗଲେ। ଆଗେ ବୟସ୍କ
ଲୋକେ ଓ ତା'ପରେ ଅନ୍ୟମାନେ ଚାଲିଗଲେ। କେବଳ
ଯୀଶୁ ଓ ସେହି ସ୍ତ୍ରୀଲୋକଟି ସେଠାରେ ରହିଗଲେ।
୧୦ଯୀଶୁ ମୁଣ୍ଡ ଟେକି ତାହାକୁ ପଚାରିଲେ, "ସେମାନେ
କୁଆଡ଼େ ଗଲେ? କ'ଣ କେହି ତୁମକୁ ଦଣ୍ଡନୀୟ ବୋଲି
ବିଚାର କଲେ ନାହିଁ?"
୧୧ସେ ସ୍ତ୍ରୀଲୋକଟି ଉତ୍ତର ଦେଲା, "ନା, ଆଜ୍ଞା
ସେମାନଙ୍କ ମଧ୍ୟରୁ କେହି ମୋତେ ଦଣ୍ଡନୀୟ ବୋଲି
ବିଚାର କଲେ ନାହିଁ।"
ତା'ପରେ ଯୀଶୁ କହିଲେ, "ତେଣୁ, ମୁଁ ମଧ୍ୟ ତୁମକୁ
ଦଣ୍ଡନୀୟ ବୋଲି ବିଚାର କରୁ ନାହିଁ। ତୁମ୍ଭେ ବର୍ତ୍ତମାନ
ଯାଇପାର, କିନ୍ତୁ ଆଉ କେବେ ପାପ କରିବ ନାହିଁ।"

### ଯୀଶୁ ହେଉଛନ୍ତି ଜଗତର ଆଲୋକ

୧୨ପରେ, ଯୀଶୁ ପୁଣି ଲୋକମାନଙ୍କୁ ଉପଦେଶ ଦେଲେ।
ସେ କହିଲେ, "ମୁଁ ଜଗତର ଆଲୋକ, ମୋତେ ଯେଉଁ
ଲୋକ ଅନୁସରଣ କରେ, ସେ କେବେ ଅନ୍ଧକାରରେ
ଚାଲିବ ନାହିଁ। ସେ ଲୋକ ଜୀବନ ପ୍ରଦାନକାରୀ ଆଲୋକ
ପାଇବ।"
୧୩କିନ୍ତୁ ଫାରୂଶୀମାନେ ଯୀଶୁଙ୍କୁ କହିଲେ, "ତୁମ୍ଭେ
ଯେତେବେଳେ ତୁମ୍ଭ ନିଜ ସାକ୍ଷ୍ୟ ଦେଉଛ, ସେତେବେଳେ
ତୁମ୍ଭେ କେବଳ ଏସବୁ କଥା ସତ୍ୟ ବୋଲି କହୁଛ। ତେଣୁ
ଆମ୍ଭେ ତୁମ୍ଭର ଏସବୁ କଥା ଗ୍ରହଣ କରିପାରିବୁ ନାହିଁ।"
୧୪ଯୀଶୁ ଉତ୍ତର ଦେଲେ, "ହଁ, ମୁଁ ମୋ ବିଷୟରେ
ଏସବୁ କଥା କହୁଛି, କିନ୍ତୁ ମୁଁ ଯାହା କହୁଛି, ଲୋକେ
ବିଶ୍ୱାସ କରି ପାରିବେ। କାରଣ ମୁଁ ଜାଣେ, ମୁଁ କେଉଁଠାରୁ
ଆସିଛି ଓ ମୁଁ କେଉଁଆଡ଼େ ଯାଉଛି। ମୁଁ ତୁମ୍ଭମାନଙ୍କ ଭଳି
ନୁହେଁ। ତୁମ୍ଭେ ଜାଣି ନାହିଁ, ମୁଁ କେଉଁଠାରୁ ଆସିଛି ଓ
କେଉଁଠାକୁ ଯାଉଛି। ୧୫ପୃଥିବୀର ଲୋକମାନଙ୍କୁ ବିଚାର
କଲା ଭଳି ତୁମ୍ଭେ ମୋର ବିଚାର କରୁଛ। ମୁଁ କାହାର
ବିଚାର କରୁ ନାହିଁ। ୧୬କିନ୍ତୁ ମୁଁ ଯଦି ବିଚାର କରେ,
ତେବେ ମୋ ବିଚାର ଠିକ୍ ହୁଅନ୍ତା। କାରଣ ମୁଁ ଏକୁଟିଆ
ନୁହେ, ମୋ' ସହିତ ମୋର ପ୍ରେରଣକର୍ତ୍ତା ପରମପିତା
ଅଛନ୍ତି। ୧୭ତୁମ୍ଭର ବିଧି ବ୍ୟବସ୍ଥା କୁହେ ଯେ କୌଣସି
ଘଟଣା ସମ୍ବନ୍ଧରେ ଯଦି ଦୁଇ ଜଣ ସାକ୍ଷୀ ସମାନ କଥା
କହନ୍ତି, ତେବେ ତୁମ୍ଭେ ନିଶ୍ଚୟ ସେମାନଙ୍କ କଥା ଗ୍ରହଣ
କରିବ। ୧୮ମୁଁ ମୋ ନିଜ ସମ୍ବନ୍ଧରେ ଜଣେ ସାକ୍ଷୀ, ଓ
ମୋତେ ପଠାଇଥିବା ପରମପିତା ମୋର ଆଉ ଜଣେ
ସାକ୍ଷୀ।"
୧୯ଲୋକମାନେ ପଚାରିଲେ, "ତୁମ୍ଭର ପିତା କାହାନ୍ତି?"
ଯୀଶୁ ଉତ୍ତର ଦେଲେ, "ତୁମ୍ଭେ ମୋତେ ଜାଣି ନାହିଁ
ଓ ମୋ ପରମପିତାଙ୍କୁ ମଧ୍ୟ ଜାଣି ନାହିଁ। କିନ୍ତୁ ତୁମ୍ଭେ
ଯଦି ମୋତେ ଜାଣିଥାନ୍ତ, ତେବେ ମୋ ପରମପିତାଙ୍କୁ ମଧ୍ୟ
ଜାଣିଥାନ୍ତ।" ୨୦ଯୀଶୁ ଏସବୁ କଥା ମନ୍ଦିର ପରିସରରେ
ଉପଦେଶ ଦେଲାବେଳେ କହିଲେ। ଦାନ-ପାତ୍ରରେ ଦାନ
ପକାଉଥିବା ସ୍ଥାନ ନିକଟରେ ଯୀଶୁ ଠିଆ ହୋଇଥିଲେ।
କିନ୍ତୁ କେହି ଲୋକ ତାହାଙ୍କୁ ବନ୍ଦୀ କଲେ ନାହିଁ।
ଯୀଶୁଙ୍କର ଉଚିତ ସମୟ ସେପର୍ଯ୍ୟନ୍ତ ଆସି ନଥିଲା।

### ଯିହୂଦୀମାନେ ଯୀଶୁଙ୍କ ବିଷୟରେ ବୁଝି ପାରିଲେ ନାହିଁ

୨୧ଯୀଶୁ ପୁନର୍ବାର ଲୋକମାନଙ୍କୁ କହିଲେ, "ମୁଁ ତୁମ୍ଭକୁ
ଛାଡ଼ି ଚାଲିଯିବି। ତୁମ୍ଭେ ମୋତେ ଖୋଜିବ। କିନ୍ତୁ ତୁମ୍ଭେ
ନିଜ ପାପ ସହିତ ମରିବ। ମୁଁ ଯେଉଁ ସ୍ଥାନକୁ ଯାଉଛି,
ତୁମ୍ଭେ ସେଠାକୁ ଯାଇପାରିବ ନାହିଁ।"
୨୨ତେଣୁ ଯିହୂଦୀମାନେ ପରସ୍ପରକୁ ପଚାରିଲେ, "ଯୀଶୁ
କ'ଣ ଆତ୍ମହତ୍ୟା କରିବେ? ସେଥିପାଇଁ କଣ ସେ କହିଲେ
ଯେ 'ମୁଁ ଯେଉଁଠାକୁ ଯାଉଛି ତୁମ୍ଭେମାନେ ସେଠାକୁ ଆସି
ପାରିବ ନାହିଁ?'"
୨୩କିନ୍ତୁ ଯୀଶୁ ସେହି ଯିହୂଦୀମାନଙ୍କୁ କହିଲେ, "ତୁମ୍ଭେମାନେ
ଏହି ସ୍ଥାନରୁ ସୃଷ୍ଟ, କିନ୍ତୁ ମୁଁ ଉର୍ଦ୍ଧ୍ୱରୁ ଆସିଛି। ତୁମ୍ଭେମାନେ
ଏ ପୃଥିବୀର ଲୋକ, କିନ୍ତୁ ମୁଁ ପୃଥିବୀର ଲୋକ ନୁହେଁ।
୨୪ମୁଁ ତୁମ୍ଭକୁ କହିଥିଲି ଯେ ତୁମ୍ଭେ ତୁମ୍ଭ ପାପଗୁଡ଼ିକରେ
ମରିବ। ମୁଁ ଯେ ସେହି ବ୍ୟକ୍ତି ତୁମ୍ଭେ ଏହା ବିଶ୍ୱାସ ନ
କଲେ ତୁମ୍ଭ ନିଜ ପାପଗୁଡ଼ିକରେ ତୁମ୍ଭେ ମରିବ।"
୨୫ଯିହୂଦୀମାନେ ପଚାରିଲେ, "ତୁମ୍ଭେ କିଏ, ଆମ୍ଭମାନଙ୍କୁ
କୁହ।"
ଯୀଶୁ ଉତ୍ତର ଦେଲେ, "ମୁଁ ନିଜ ବିଷୟରେ ପ୍ରଥମରୁ
ଯାହା କହିଆସିଛି, ମୁଁ ସେହି। ୨୬ମୋର ତୁମ୍ଭ ବିଷୟରେ
ଅନେକ କିଛି କହିବାକୁ ଅଛି। ମୁଁ ତୁମ୍ଭର ବିଚାର
କରିପାରେ, କିନ୍ତୁ ମୋର ପ୍ରେରଣକର୍ତ୍ତା ମୋତେ ଯାହା
କହି ପଠାଇଛନ୍ତି, ମୁଁ ପୃଥିବୀର ଲୋକମାନଙ୍କୁ ତାହା
କହୁଛି, ଏବଂ ସେ ସତ୍ୟ କହନ୍ତି।" ୨୭ଯୀଶୁ କାହା
ବିଷୟରେ କହୁଥିଲେ, ଏକଥା ଲୋକମାନେ ବୁଝି ନଥିଲେ।
ଯୀଶୁ ପରମପିତାଙ୍କ ବିଷୟରେ କହୁଥିଲେ। ୨୮ତେଣୁ ଯୀଶୁ
ସେମାନଙ୍କୁ କହିଲେ, "ତୁମ୍ଭେମାନେ ମନୁଷ୍ୟପୁତ୍ରଙ୍କୁ
ଉର୍ଦ୍ଧ୍ୱକୁ(ବଧକରିବାକୁ) ଉଠାଇବ। ସେତେବେଳେ ମୁଁ ଯେ
ସେହି ବ୍ୟକ୍ତି ତାହା ତୁମ୍ଭେ ବୁଝି ପାରିବ। ମୁଁ ନିଜେ ଯାହା
କରୁଛି, ଏସବୁ ମୋ ନିଜ ଅଧିକାରରୁ କରୁ ନାହିଁ,
ପରମପିତା ମୋତେ ଯାହା ଶିକ୍ଷା ଦେଇଛନ୍ତି ସେହି କଥା
ଯେ କେବଳ ମୁଁ କହୁଛି, ଏହା ତୁମ୍ଭେ ପରେ ଜାଣି
ପାରିବ। ୨୯ମୋତେ ଯେ (ପରମେଶ୍ୱର) ପଠାଇଛନ୍ତି, ସେ
ମୋ ସହିତ ଅଛନ୍ତି। ତାହାଙ୍କ ସନ୍ତୋଷଜନକ କାର୍ଯ୍ୟ ମୁଁ
ସର୍ବଦା କରେ। ତେଣୁ ସେ ମୋତେ ଏକୁଟିଆ କରି ଛାଡ଼ି
ନାହାଁନ୍ତି।" ୩୦ଯୀଶୁ ଏକଥା କହିଲାବେଳେ ତାହାଙ୍କୁ ଅନେକ
ଲୋକ ବିଶ୍ୱାସ କଲେ।

### ପାପରୁ ମୁକ୍ତ ପାଇବା ବିଷୟରେ ଯୀଶୁ କହିଲେ

୩୧ଯୀଶୁ ତାହାଙ୍କୁ ବିଶ୍ୱାସ କରୁଥିବା ଯିହୂଦୀମାନଙ୍କୁ
କହିଲେ, "ଯଦି ତୁମ୍ଭେ ମୋର ଶିକ୍ଷା ସବୁବେଳେ ମାନି
ଚାଲିବ, ତେବେ ତୁମ୍ଭେ ମୋର ପ୍ରକୃତ ଶିଷ୍ୟ ହେବ।
୩୨ତୁମ୍ଭେ ସତ୍ୟକୁ ଜାଣିବ ଓ ସେହି ସତ୍ୟ ତୁମ୍ଭକୁ ମୁକ୍ତ
କରିବ।"

୩୩ଯିହୂଦୀମାନେ ଉତ୍ତର ଦେଲେ, "ଆମ୍ଭେମାନେ ଅବ୍ରାହାମଙ୍କ
ବଂଶଧର। ଆମ୍ଭେ କେବେହେଲେ କ୍ରୀତଦାସ ହୋଇନାହୁଁ।
ତେଣୁ ତୁମ୍ଭେ କାହିଁକି କହୁଛ ଯେ ଆମ୍ଭେ ମୁକ୍ତ
ହେବୁ?"
୩୪ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି।
ପ୍ରତ୍ୟେକ ପାପ କରୁଥିବା ଲୋକ ହେଉଛି ଜଣେ କ୍ରୀତଦାସ।
ପାପ ତା'ର ପ୍ରଭୁ। ୩୫ଜଣେ କ୍ରୀତଦାସ ଗୋଟିଏ ପରିବାରରେ
ସର୍ବଦା ରହେ ନାହିଁ। କିନ୍ତୁ ଜଣେ ପୁତ୍ର ଗୋଟିଏ
ପରିବାର-ଭୁକ୍ତ ହୋଇ ସବୁବେଳେ ରୁହେ। ୩୬ତେଣୁ ଯଦି
ସେହି ପୁତ୍ର ତୁମ୍ଭକୁ ମୁକ୍ତ ଦିଅନ୍ତି, ତେବେ ତୁମ୍ଭେ
ପ୍ରକୃତରେ ମୁକ୍ତ ପାଇବ। ୩୭ମୁଁ ଜାଣେ ଯେ, ତୁମ୍ଭେ
ଅବ୍ରାହାମଙ୍କ ବଂଶଧର। କିନ୍ତୁ ତୁମ୍ଭେ ମୋତେ ହତ୍ୟା
କରିବାକୁ ଚାହୁଁ, ଯେହେତୁ ତୁମ୍ଭେ ମୋର ଉପଦେଶ ଗ୍ରହଣ
କରିବା ପାଇଁ ଚାହୁଁନାହିଁ। ୩୮ମୋତେ ପରମପିତା ଯାହା
ଦେଖାଇଛନ୍ତି, ତାହା ମୁଁ ତୁମ୍ଭକୁ କହୁଛି। କିନ୍ତୁ ତୁମ୍ଭେମାନେ
ତୁମ୍ଭ ପିତା ଯାହା କହିଛନ୍ତି ତାହା କରୁଛ।"
୩୯ଯିହୂଦୀମାନେ କହିଲେ, "ଅବ୍ରାହାମ ଆମ୍ଭମାନଙ୍କର
ପିତା।"
ଯୀଶୁ କହିଲେ, "ଯଦି ତୁମ୍ଭେ ପ୍ରକୃତରେ ଅବ୍ରାହମଙ୍କ
ସନ୍ତାନ, ତେବେ ତୁମ୍ଭେମାନେ ଅବ୍ରାହାମ କରିଥିବା କାର୍ଯ୍ୟମାନ
କରିବ। ୪୦ମୁଁ ତୁମ୍ଭକୁ ପରମେଶ୍ୱରଙ୍କଠାରୁ ଶୁଣିଥିବା ସତ୍ୟ
କଥା କହୁଛି। କିନ୍ତୁ ତୁମ୍ଭେମାନେ ମୋତେ ହତ୍ୟା କରିବା
ପାଇଁ ଚେଷ୍ଟା କରୁଛ। ଅବ୍ରାହାମ କିନ୍ତୁ ସେପରି କିଛି କରି
ନଥିଲେ। ୪୧ତୁମ୍ଭେ ସବୁ ତୁମ୍ଭର ନିଜ ପିତା କରିଥିବା
କାର୍ଯ୍ୟଗୁଡ଼ିକ କରୁଛ।"
କିନ୍ତୁ ଯିହୂଦୀମାନେ କହିଲେ, "ଆମ୍ଭେ ସେ ଭଳି
ସନ୍ତାନ ନୋହୁଁ, ଯେଉଁମାନେ ତାହାଙ୍କ ପିତାଙ୍କ ପରିଚୟ
ଜାଣନ୍ତି ନାହିଁ। ପରମେଶ୍ୱର ଆମ୍ଭର ପରମପିତା। ସେ
ଆମ୍ଭର ଏକମାତ୍ର ପରମପିତା।"
୪୨ଯୀଶୁ ସେହି ଯିହୂଦୀମାନଙ୍କୁ କହିଲେ, "ଯଦି ପରମେଶ୍ୱର
ପ୍ରକୃତରେ ତୁମ୍ଭର ପରମପିତା, ତେବେ ତୁମ୍ଭେ ମୋତେ
ଭଲ ପାଇବା ଉଚିତ। ମୁଁ ପରମେଶ୍ୱରଙ୍କ ପାଖରୁ ଆସିଛି
ଓ ବର୍ତ୍ତମାନ ମୁଁ ଏଠାରେ ଅଛି। ମୁଁ ମୋ କ୍ଷମତା
ଅନୁସାରେ ଆସିନାହିଁ। ପରମେଶ୍ୱର ମୋତେ ଏଠାକୁ
ପଠାଇଛନ୍ତି। ୪୩ମୁଁ ଯାହା ସବୁ କହୁଛି, ତାହା ତୁମ୍ଭେ ବୁଝି
ପାରୁ ନାହିଁ। ଏହାର କାରଣ ହେଲା, ତୁମ୍ଭେ ମୋ
ଉପଦେଶ ଗ୍ରହଣ କରି ପାରୁ ନାହିଁ। ୪୪ଶୟତାନ ହେଉଛି
ତୁମ୍ଭର ପିତା। ତୁମ୍ଭେ ତାହାର ଅଟ। ତୁମ୍ଭେ ତାର ଇଚ୍ଛା
ଅନୁସାରେ କାର୍ଯ୍ୟ କରୁଛ। ପ୍ରଥମରୁ ସେ ଜଣେ ଖୁଣୀ।
ସେ ସର୍ବଦା ସତ୍ୟର ବିରୁଦ୍ଧ। ତା' ଭିତରେ କୌଣସି
ସତ୍ୟତା ନାହିଁ। ସେ ତାର ସ୍ୱଭାବରୁ ମିଛୁଆ। ସେ
ମିଥ୍ୟାବାଦୀ, ସେ ମିଥ୍ୟାର ଜନ୍ମଦାତା। ୪୫ମୁଁ ସତ୍ୟ କହେ।
ସେଥିପାଇଁ ତୁମ୍ଭେ ମୋତେ ବିଶ୍ୱାସ କରୁନାହିଁ। ୪୬ତୁମ୍ଭମାନଙ୍କ
ମଧ୍ୟରୁ କେହି ଜଣେ ଏ କଥା ପ୍ରମାଣ କରିପାରିବ ଯେ,
ମୁଁ ପାପ ପାଇଁ ଦୋଷୀ? ଯଦି ମୁଁ ସତ୍ୟ କହେ, ତେବେ
ମୋତେ କାହିଁକି ବିଶ୍ୱାସ କରୁନାହିଁ? ୪୭ଯେଉଁ ଲୋକ
ପରମେଶ୍ୱରଙ୍କର, ସେ ପରମେଶ୍ୱର ଯାହା କହନ୍ତି ଗ୍ରହଣ
କରେ। କିନ୍ତୁ ତୁମ୍ଭେ ପରମେଶ୍ୱରଙ୍କ କଥା ଗ୍ରହଣ କରୁ
ନାହିଁ, କାରଣ ତୁମ୍ଭେ ପରମେଶ୍ୱରଙ୍କର ନୁହଁ।"

## ଯୀଶୁ ନିଜ ବିଷୟରେ ଓ ଅବ୍ରାହାମଙ୍କ ବିଷୟରେ କହିଲେ

୪୮ଯିହୂଦୀମାନେ ଉତ୍ତର ଦେଲେ, "ଆମ୍ଭେମାନେ କହୁଛୁ,
ତୁମ୍ଭେ ଜଣେ ଶମିରୋଣୀୟ। ତୁମ୍ଭ ଭିତରେ ଗୋଟିଏ ଭୂତ
ରହିଛି ଓ ସେ ତୁମ୍ଭକୁ ପାଗଳ କରିଦେଇଛି। ଆମ୍ଭର ଏହି
କଥା କ'ଣ ଠିକ ନୁହେଁ କି?"
୪୯ଯୀଶୁ ଉତ୍ତର ଦେଲେ, "ମୋ ଭିତରେ ଭୂତ ନାହିଁ।
ମୁଁ ମୋ ପରମପିତାଙ୍କୁ ସମ୍ମାନ ଦିଏ। କିନ୍ତୁ ତୁମ୍ଭେ ମୋତେ
ସମ୍ମାନ ଦେଉ ନାହିଁ। ୫୦ମୁଁ ନିଜେ ସମ୍ମାନ ପାଇବା ପାଇଁ
ଚେଷ୍ଟା କରୁନାହିଁ। ମାତ୍ର ଜଣେ ଅଛନ୍ତି, ଯିଏ ମୋ
ନିମନ୍ତେ ସମ୍ମାନ ଇଚ୍ଛା କରନ୍ତି। ସେ ହେଉଛନ୍ତି ବିଚାରକ।
୫୧ମୁଁ ତୁମ୍ଭକୁ ସତ୍ୟ କହୁଛି, ଯଦି କେହି ମୋ ଉପଦେଶ
ମାନେ, ତେବେ ସେ ଲୋକ କେବେ ମରିବ ନାହିଁ।"
୫୨ଯିହୂଦୀମାନେ ଯୀଶୁଙ୍କୁ କହିଲେ, "ଆମ୍ଭେ ବର୍ତ୍ତମାନ
ଜାଣିଲୁ ଯେ, ତୁମ୍ଭ ଭିତରେ ଗୋଟିଏ ଭୂତ ଅଛି। ଏପରିକି
ଅବ୍ରାହାମ ମରିଥିଲେ ଓ ଭବିଷ୍ୟଦ୍‌ବକ୍ତାମାନେ ମଧ୍ୟ ମରିଥିଲେ।
କିନ୍ତୁ ତୁମ୍ଭେ କହୁଛ, 'ମୋ ଉପଦେଶ ମାନିବା ଲୋକ
କଦାପି ମରିବ ନାହିଁ।' ୫୩ତୁମ୍ଭେ କ'ଣ ଭାବୁଛ ଯେ, ତୁମ୍ଭେ
ଆମ୍ଭ ପିତା ଅବ୍ରାହାମଙ୍କଠାରୁ ମହାନ୍? ଅବ୍ରାହାମ ତ'ମରି
ଗଲେ ଓ ଭବିଷ୍ୟଦ୍‌ବକ୍ତାମାନେ ମଧ୍ୟ ମରିଗଲେ। ତୁମ୍ଭେ
ନିଜକୁ କିଏ ବୋଲି ଭାବୁଛ?"
୫୪ଯୀଶୁ ଉତ୍ତର ଦେଲେ, "ଯଦି ମୁଁ ନିଜକୁ ସମ୍ମାନ
ଦିଅନ୍ତି, ତେବେ ସେ ସମ୍ମାନର କିଛି ମୂଲ୍ୟ ନାହିଁ।
ମୋତେ ଯିଏ ସମ୍ମାନ ଦିଅନ୍ତି, ସେ ମୋର ପରମ ପିତା।
ଏବଂ ତୁମ୍ଭେମାନେ କହୁଛ, ସେ ତୁମ୍ଭର ପରମେଶ୍ୱର।
୫୫କିନ୍ତୁ ତୁମ୍ଭେ ତାହାଙ୍କୁ ପ୍ରକୃତରେ ଜାଣି ନାହିଁ। ମୁଁ
ତାହାଙ୍କୁ ଜାଣେ। ଯଦି ମୁଁ କୁହେ ଯେ, ମୁ ତାହାଙ୍କୁ ଜାଣେ
ନାହିଁ, ତେବେ ମୁଁ ତୁମ୍ଭମାନଙ୍କ ଭଳି ମିଥ୍ୟାବାଦୀ ହେବି।
କିନ୍ତୁ ମୁଁ ତାହାଙ୍କୁ ଅବଶ୍ୟ ଜାଣେ, ସେ ଯାହା କହନ୍ତି, ମୁଁ
ସେଗୁଡ଼ିକ ପାଳନ କରେ। ୫୬ମୋର ଆଗମନ ଦେଖି
ପାରିବେ ବୋଲି ଆଶାକରି ତୁମ ପିତା ଅବ୍ରାହାମ ବହୁତ
ଖୁସି ହୋଇଥିଲେ। ସେ ସେହି ଦିନଟି ଦେଖିଲେ ଓ ଖୁସି
ହେଲେ।"
୫୭ଯିହୂଦୀମାନେ ଯୀଶୁଙ୍କୁ କହିଲେ, "କ'ଣ ତୁମ୍ଭେ
ଅବ୍ରାହାମଙ୍କୁ କଦାପି ଦେଖିନାହଁ! ତୁମ୍ଭର ବୟସ ତ ପଚାଶ
ବର୍ଷ ବି ନୁହେଁ।"
୫୮ଯୀଶୁ ଉତ୍ତର ଦେଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି,
ଅବ୍ରାହାମଙ୍କ ଜନ୍ମ ପୂର୍ବରୁ, ମୁଁ ନିଜେ ଅଛି।" ୫୯ଯୀଶୁ
ଏକଥା କହିବାବେଳେ ଲୋକମାନେ ତାହାଙ୍କୁ ମାରିବା ପାଇଁ
ପଥର ଉଠେଇଲେ। ମାତ୍ର ସେ ଲୁଚି ଗଲେ ଓ ପରେ
ମନ୍ଦିର ପରିସରରୁ ବାହାରି ଚାଲିଗଲେ।

## ଯୀଶୁ ଜଣେ ଜନ୍ମାନ୍ଧକୁ ଦୃଷ୍ଟିଶକ୍ତି ଦେଲେ

୯ ଯୀଶୁ ଯାଉଥିବା ବେଳେ ଜଣେ ଅନ୍ଧକୁ ଦେଖିଲେ।
ସେ ଲୋକଟି ଜନ୍ମରୁ ଅନ୍ଧ ଥିଲା। ୨ଯୀଶୁଙ୍କର

ଶିଷ୍ୟମାନେ ତାହାଙ୍କୁ ପଚାରିଲେ, “ଗୁରୁ, ଏହି ଲୋକଟି
ଜନ୍ମରୁ ଅନ୍ଧ। କିନ୍ତୁ ସେ କାହାର ପାପ ହେତୁ ଅନ୍ଧ
ହୋଇ ଜନ୍ମ ହେଲା? ଏହା ତା’ ନିଜର ପାପ ନା ତା
ପିତା-ମାତାଙ୍କର?”
୩ଯୀଶୁ ଉତ୍ତର ଦେଲେ, “ଏହା ତାର ପାପ କିମ୍ବା ତା’
ବାପା-ମାଙ୍କର ପାପ ତାକୁ ଅନ୍ଧ କରି ନାହିଁ। ଏହି
ଲୋକଟି ଅନ୍ଧ ହୋଇ ଜନ୍ମ ହୋଇଛି, ଯେପରି ଏହି
ଲୋକକୁ ମୁଁ ସୁସ୍ଥ କଲାବେଳେ ଲୋକମାନଙ୍କ ଆଗରେ
ପରମେଶ୍ୱରଙ୍କ ଶକ୍ତି ପ୍ରଦର୍ଶିତ ହୋଇପାରିବ। ୪ଦିନ ଥାଉଁ
ଥାଉଁ ମୋର ପ୍ରେରଣକର୍ତ୍ତାଙ୍କ କାର୍ଯ୍ୟ ଆମେ ଅବିରତ
କରିବା ଉଚିତ୍। ରାତି ଆସୁଅଛି। ରାତିରେ କେହି କାର୍ଯ୍ୟ
କରିପାରିବେ ନାହିଁ। ୫ମୁଁ ଜଗତରେ ଥିବା ପର୍ଯ୍ୟନ୍ତ ଜଗତ
ନିମନ୍ତେ ଆଲୋକ ଅଟେ ଓ ସମସ୍ତଙ୍କୁ ଆଲୋକ
ଦେଉଥିବି।”
୬ଯୀଶୁ ଏକଥା କହିଲାପରେ ଭୂଇଁରେ ଛେପ ପକାଇ
କାଦୁଅ କରି, ସେହି କାଦୁଅକୁ ନେଇ ସେ ସେହି ଜନ୍ମାନ୍ଧ
ଲୋକଟିର ଆଖିରେ ଲଗେଇଦେଲେ। ୭ଯୀଶୁ ତାହାଙ୍କୁ
କହିଲେ, “ଯାଅ, ଶିଲୋହ ପୋଖରୀରେ ଧୋଇ ଦିଅ।”
(ଶିଲୋହ ପଦର ଅର୍ଥ ‘ପ୍ରେରିତ।’) ତା’ପରେ ସେ ଅନ୍ଧ
ଲୋକଟି ପୋଖରୀରେ ଧୋଇ ହୋଇ ଆସିଲା। ସେ
ବର୍ତ୍ତମାନ ଦେଖିପାରୁଥିଲା।
୮କେତେକ ଲୋକ ଏହି ଲୋକଟିକୁ ପ୍ରଥମେ ଭିକ
ମାଗିବା ଦେଖିଥିଲେ। ସେହି ଲୋକମାନେ ଓ ଲୋକଟିର
ପଡ଼ୋଶୀମାନେ ତାହାଙ୍କୁ ଦେଖି କହିଲେ, “ଦେଖ, ଯିଏ
ସବୁବେଳେ ବସି ଭିକ ମାଗୁଥାଏ ଏ ଲୋକଟି ସେହି
ନୁହେଁ କି?”
୯କେତେକ କହିଲେ, “ହଁ, ଏ ସେହି ଲୋକ।” କିନ୍ତୁ
ଅନ୍ୟ ଲୋକମାନେ କହିଲେ, “ନାଁ, ଏ ସେହି ଲୋକ
ନୁହେଁ। ଏ ଲୋକଟି ତା’ରି ଭଳି ଦେଖାଯାଉଛି।”
ତେଣୁ ସେ ଲୋକ ନିଜେ କହିଲା, “ମୁଁ ସେହି ଲୋକ,
ଯିଏ ପ୍ରଥମେ ଅନ୍ଧ ଥିଲା।”
୧୦ଲୋକମାନେ ତାକୁ ପଚାରିଲେ, “କ’ଣ ହେଲା?
ତୁମେ କିପରି ଦୃଷ୍ଟି ଶକ୍ତି ପାଇଲ?” ୧୧ସେ ଲୋକଟି
ଉତ୍ତର ଦେଲା “ଲୋକମାନେ ଯାହାଙ୍କୁ ଯୀଶୁ ବୋଲି
କହନ୍ତି, ସେ ଛେପ ଦ୍ୱାରା ମାଟିକୁ କାଦୁଅ କରି ମୋ
ଆଖିରେ ବୋଳିଦେଲେ। ତା’ପରେ ସେ ମୋତେ ଶିଲୋହ
ପୋଖରୀରେ ଧୋଇହେବା ପାଇଁ କହିଲେ। ତାପରେ ମୁଁ
ସେହି ପୋଖରୀରେ ଧୋଇହେବା ପରେ ଦେଖିପାରିଲି।”
୧୨ଲୋକମାନେ ତାହାକୁ ପଚାରିଲେ, “ସେ ଲୋକ
କେଉଁଠି ଅଛନ୍ତି?”
ଲୋକଟି କହିଲା, “ମୁଁ ଜାଣେ ନାହିଁ।”

## ଯୀଶୁ ସୁସ୍ଥ କରିଥିବା ଲୋକକୁ ଯିହୂଦୀମାନଙ୍କର ପ୍ରଶ୍ନ

୧୩ଏହା ପରେ ଲୋକମାନେ ସେ ଲୋକଟିକୁ ଫାରୂଶୀମାନଙ୍କ
ପାଖକୁ ନେଇଗଲେ। ଏହି ଲୋକଟି ପୂର୍ବରୁ ଅନ୍ଧ ଥିଲା,
୧୪ଯୀଶୁ କାଦୁଅ କରିଥିଲେ ଓ ତା’ ଆଖି ସୁସ୍ଥ କରି
ଥିଲେ। ସେ ଏ କାର୍ଯ୍ୟ ବିଶ୍ରାମବାର ଦିନ କରିଥିଲେ।
୧୫ତେଣୁ ଫାରୂଶୀମାନେ ମଧ୍ୟ ସେ ଲୋକକୁ ପଚାରିଲେ,
“ତୁମେ କିପରି ଦୃଷ୍ଟିଶକ୍ତି ପାଇଲ?”
ସେ କହିଲା, “ସେ ମୋ ଆଖିରେ କାଦୁଅ ଲଗେଇଦେଲେ।
ଧୋଇବା ପରେ ମୁଁ ଏବେ ଦେଖି ପାରୁଛି।”
୧୬କେତେକ ଫାରୂଶୀମାନେ କହିଲେ, “ଏ ଲୋକ
ବିଶ୍ରାମବାରର ନିୟମ ମାନୁ ନାହିଁ। ତେଣୁ ସେ ପରମେଶ୍ୱରଙ୍କ
ପାଖରୁ ଆସି ନାହିଁ।”
ଅନ୍ୟମାନେ କହିଲେ, “ଜଣେ ପାପୀ କେବେ ଏଭଳି
ଆଶ୍ଚର୍ଯ୍ୟକାର୍ଯ୍ୟ କରି ପାରିବ ନାହିଁ।” ଏହା ଯିହୂଦୀମାନଙ୍କ
ମଧ୍ୟରେ ମତଭେଦ ହେଲା।
୧୭ଯିହୂଦୀମାନେ ସେହି ଲୋକକୁ ଆଉ ଥରେ ପଚାରିଲେ,
“ଏହି ଲୋକ (ଯୀଶୁ) ତୁମକୁ ସୁସ୍ଥ କଲା ଓ ତୁମେ ଦେଖି
ପାରିଲ। ତୁମେ ତା’ ବିଷୟରେ କ’ଣ କହୁଛ?”
ସେହି ଲୋକଟି ଉତ୍ତର ଦେଲା, “ସେ ଜଣେ
ଭବିଷ୍ୟଦ୍‌ବକ୍ତା।”
୧୮ଯିହୂଦୀମାନେ ତଥାପି ତାହାର ସୁସ୍ଥ ହେବା ବିଷୟ
ବିଶ୍ୱାସ କଲେ ନାହିଁ। ସେ ଲୋକର ପିତା-ମାତାଙ୍କୁ ନ
ଡାକିବା ପର୍ଯ୍ୟନ୍ତ ସେମାନେ ମୋଟେ ବିଶ୍ୱାସ କଲେ ନାହିଁ
ଯେ, ସେ ଲୋକଟି ଅନ୍ଧ ଥିଲା ଓ ତାକୁ ସେ ଦେଖି
ପାରୁଛି। ୧୯ଯିହୂଦୀମାନେ ତା’ର ପିତା-ମାତାଙ୍କୁ ପଚାରିଲେ,
“ଇଏ କ’ଣ ତୁମ ପୁଅ? ତୁମେ କହୁଛ ଯେ, ସେ
ଜନ୍ମାନ୍ଧ। ତେବେ ସେ ବର୍ତ୍ତମାନ କିପରି ଦେଖି ପାରୁଛି?”
୨୦ପିତା-ମାତା ଉତ୍ତର ଦେଲେ, “ଆମେ ଜାଣୁ ଯେ
ଇଏ ଆମ ପୁଅ ଓ ସେ ଜନ୍ମରୁ ଅନ୍ଧ ଥିଲା। ୨୧କିନ୍ତୁ
ଆମେ ଜାଣିନୁ, ସେ ଏବେ କିପରି ଦେଖି ପାରୁଛି? ତାକୁ
କିଏ ତାର ଦୃଷ୍ଟିଶକ୍ତି ଦେଲା, ତାହା ଆମେ ଜାଣିନାହୁଁ।
ତାକୁ ପଚାର। ନିଜ କଥା ନିଜେ କହିବା ପାଇଁ ତାର
ବୟସ ହେଲାଣି।” ୨୨ଯିହୂଦୀ ନେତାମାନଙ୍କୁ ଭୟ କରି
ତାର ପିତା-ମାତା ଏପରି କହିଲେ। ସେମାନେ ସେତେବେଳେକୁ
ସ୍ଥିର କରି ସାରିଥିଲେ ଯେ, ଯେଉଁ ବ୍ୟକ୍ତି ଯୀଶୁଙ୍କୁ ମଶୀହ
ବୋଲି କହିବ, ସେମାନେ ତାକୁ ଦଣ୍ଡ ଦେବେ ଓ ସେହି
ଲୋକମାନଙ୍କୁ ପ୍ରାର୍ଥନା-ଗୃହରୁ ବାହାର କରିଦେବେ। ୨୩ତେଣୁ
ତାର ପିତା-ମାତା କହିଲେ, “ତା’ର ଯଥେଷ୍ଟ ବୟସ
ହୋଇଛି। ତାକୁ ପଚାର।”
୨୪ତେଣୁ ଯିହୂଦୀ ନେତାମାନେ ସେହି ପୂର୍ବରୁ ଅନ୍ଧଥିବା
ଲୋକକୁ ଆଉଥରେ ଭିତରକୁ ଡାକିଲେ। ସେମାନେ
କହିଲେ, “ତୁମେ ସତ୍ୟ କହି ପରମେଶ୍ୱରଙ୍କୁ ଗୌରବ
ଦେବା ଉଚିତ। ଆମେ ଜାଣୁ ଯେ, ଏହି ଲୋକ (ଯୀଶୁ)
ଜଣେ ପାପୀ।”
୨୫ଲୋକଟି ଉତ୍ତର ଦେଲା, “ସେ ପାପୀ କି ନାହିଁ, ମୁଁ
ଜାଣିନାହିଁ। କିନ୍ତୁ ମୁଁ ଅନ୍ଧ ଥିଲି ଓ ବର୍ତ୍ତମାନ ଦେଖିପାରୁଛି।”
୨୬ଯିହୂଦୀ ନେତାମାନେ ପଚାରିଲେ, “ସେ ତୁମକୁ କ’ଣ
କରିଲା? ସେ ତୁମ ଆଖିକୁ କିପରି ଭଲ କରି ଦେଲା?”
୨୭ସେ ଲୋକ କହିଲା, “ମୁଁ ସେ କଥା ତୁମକୁ ଆଗରୁ
କହିସାରିଛି। କିନ୍ତୁ ତୁମେ ମୋ କଥା ଶୁଣୁନାହଁ। ତୁମେ
ପୁଣି କାହିଁକି ଶୁଣିବା ପାଇଁ ଚାହୁଁଛ? ତୁମେ ମଧ୍ୟ କ’ଣ
ତାହାଙ୍କର ଶିଷ୍ୟ ହେବା ପାଇଁ ଚାହୁଁଛ?”

୨୮ଯିହୂଦୀନେତାମାନେ ଖୁବ୍ ରାଗିଯାଇ ତାକୁ ଗାଳିଦେଲେ।
ତା'ପରେ ସେମାନେ କହିଲେ, "ତୁମେ ସେହି ଲୋକର
ଶିଷ୍ୟ। କିନ୍ତୁ ଆମେ ମୋଶାଙ୍କର ଶିଷ୍ୟ। ୨୯ଆମେ ଜାଣୁ,
ପରମେଶ୍ୱର ମୋଶାଙ୍କୁ କଥା କହିଛନ୍ତି। କିନ୍ତୁ ଏ ଲୋକ
କେଉଁଠାରୁ ଆସିଛି, ଆମେ ତାହା ସୁଦ୍ଧା ଜାଣିନାହୁଁ।"
୩୦ଲୋକଟି ଉତ୍ତର ଦେଲା, "ଏହା ବଡ଼ ଆଶ୍ଚର୍ଯ୍ୟ
କଥା। ଯୀଶୁ କେଉଁଠାରୁ ଆସିଛନ୍ତି ତୁମେ ଜାଣିନାହିଁ। କିନ୍ତୁ
ସେ ମୋ ଆଖି ଭଲ କରି ଦେଇଛନ୍ତି। ୩୧ଆମେ ସମସ୍ତେ
ଜାଣୁ ଯେ, ପରମେଶ୍ୱର ପାପୀଙ୍କ କଥା ଶୁଣନ୍ତି ନାହିଁ।
କିନ୍ତୁ ଯେଉଁ ଲୋକ ପରମେଶ୍ୱରଙ୍କ ଉପାସନା କରେ ଓ
ତାହାଙ୍କ କଥା ପାଳନ କରେ ପରମେଶ୍ୱର ତା'ର କଥା
ଶୁଣନ୍ତି। ୩୨ଆଜି ପର୍ଯ୍ୟନ୍ତ କେହି କେବେ ଜଣେ ଜନ୍ମାନ୍ଧର
ଆଖି ଖୋଲି ପାରି ନ ଥିଲେ। ୩୩ଏ ଲୋକ ନିଶ୍ଚିତ
ରୂପରେ ପରମେଶ୍ୱରଙ୍କ ପାଖରୁ ଆସିଛି, ନହେଲେ ସେ
ଏଭଳି କିଛି କାର୍ଯ୍ୟ କରି ପାରି ନଥାନ୍ତା।"
୩୪ଯିହୂଦୀମାନେ ଉତ୍ତର ଦେଲେ, "ତୁମେ ତ ସମ୍ପୂର୍ଣ୍ଣ
ପାପରୁ ଜନ୍ମ ହୋଇଛ। ତୁମେ କ'ଣ ଆମକୁ ଶିକ୍ଷା ଦେବା
ପାଇଁ ଚେଷ୍ଟା କରୁଛ?" ଏହା କହି ସେମାନେ ତାକୁ
ଜବରଦସ୍ତ ତଡ଼ି ଦେଲେ।

## ଆତ୍ମିକ ଅନ୍ଧତା

୩୫ଯୀଶୁ ଶୁଣିଲେ ଯେ, ଯିହୂଦୀନେତାମାନେ ସେ ଲୋକକୁ
ଜବରଦସ୍ତ ତଡ଼ି ଦେଇଛନ୍ତି। ଯୀଶୁ ସେ ଲୋକକୁ ଖୋଜି
ପାଇଲେ। ଏବଂ ସେ ତାହାକୁ ପଚାରିଲେ, "ତୁମେ କ'ଣ
ମନୁଷ୍ୟପୁତ୍ରଙ୍କୁ ବିଶ୍ୱାସ କର?"
୩୬ସେ ଲୋକଟି ପଚାରିଲା, "ଆଜ୍ଞା, ମନୁଷ୍ୟ ପୁତ୍ର
କିଏ? ମୋତେ କୁହନ୍ତୁ ଯେପରି ମୁଁ ତାହାଙ୍କଠାରେ ବିଶ୍ୱାସ
କରି ପାରେ।"
୩୭ଯୀଶୁ ତାହାକୁ କହିଲେ, "ତୁମେ ତାହାଙ୍କୁ ଦେଖି
ସାରିଛ। ତୁମ୍ଭ ସହିତ ବର୍ତ୍ତମାନ ଯିଏ କଥା ହେଉଛନ୍ତି,
ସେ ସେହି ମନୁଷ୍ୟପୁତ୍ର।"
୩୮ସେ ଲୋକଟି ଉତ୍ତର ଦେଲା, "ହଁ, ପ୍ରଭୁ ମୁଁ ବିଶ୍ୱାସ
କରେ।" ସେ ମୁଣ୍ଡ ନୁଆଁଇ ଯୀଶୁଙ୍କୁ ପ୍ରଣାମ କଲା।
୩୯ଯୀଶୁ କହିଲେ, "ମୁଁ ଜଗତକୁ ଆସିଛି, ଯେପରି ଏ
ଜଗତ ବିଚାରିତ ହେବ। ମୁଁ ଆସିଛି ଯେପରି ଅନ୍ଧ
ଲୋକମାନେ ଦେଖି ପାରିବେ। ଏବଂ ଯେଉଁମାନେ ଦେଖି
ପାରୁଛନ୍ତି ବୋଲି ମନେମନେ ଭାବୁଛନ୍ତି, ସେମାନେ ଅନ୍ଧ
ହେବେ।"
୪୦ଯୀଶୁଙ୍କ ପାଖରେ କେତେକ ଫାରୂଶୀ ଥିଲେ। ସେମାନେ
ଯୀଶୁଙ୍କର ଏପରି କହିବା ଶୁଣିଲେ। ସେମାନେ ପଚାରିଲେ,
"କ'ଣ? ତା ମାନେ ତୁମେ କହୁଛ ଯେ ଆମେ ମଧ୍ୟ
ଅନ୍ଧ?"
୪୧ଯୀଶୁ କହିଲେ, "ତୁମେ ଯଦି ପ୍ରକୃତରେ ଅନ୍ଧ(ଅବୋଧ)
ହୋଇଥାନ୍ତ, ତେବେ ଦୋଷୀ ବିବେଚିତ ହୁଅନ୍ତ ନାହିଁ।
କିନ୍ତୁ ତୁମେ କହୁଛ ଯେ ତୁମେ ଦେଖି ପାରୁଛ, ତେଣୁ
ତୁମେ ଦୋଷୀ।"

## ମେଷପାଳକ ଓ ତା'ର ମେଷ

୧୦ ଯୀଶୁ କହିଲେ, "ମୁଁ ତୁମ୍ଭକୁ ସତ୍ୟ କହୁଛି, ଯଦି
କୌଣସି ଲୋକ ମେଷଶାଳରେ ପ୍ରବେଶ କରେ,
ତେବେ ସେ ଦ୍ୱାର ବାଟେ ଯିବା ଉଚିତ୍। ଯଦି ସେ ଅନ୍ୟ
ବାଟ ଚଢ଼ି ଭିତରକୁ ଯାଏ, ତେବେ ସେ ଚୋର। ସେ
ନିଶ୍ଚୟ ମେଣ୍ଢା ଚୋରି କରିବା ପାଇଁ ଚେଷ୍ଟା କରୁଛି। ୨କିନ୍ତୁ
ଯେଉଁ ଲୋକ ମେଣ୍ଢାମାନଙ୍କର ଯତ୍ନ ନିଏ, ସେ ଫାଟକ
ଭିତର ଦେଇ ଯାଏ। ସେ ହିଁ ମେଷପାଳକ। ୩ଫାଟକ
ଜଗୁଆଳୀ ମେଷପାଳକ ପାଇଁ ଫାଟକ ଖୋଲେ। ମେଣ୍ଢାମାନେ
ମେଷପାଳକର କଥା ଶୁଣନ୍ତି। ମେଷପାଳକ ତା'ର ମେଣ୍ଢାକୁ
ନାମ ଧରି ଡାକେ ଓ ବାହାରେ ଚରାଏ। ୪ସେ ସବୁ
ମେଣ୍ଢାମାନଙ୍କୁ ବାହାରକୁ ଆଣେ, ସେମାନଙ୍କ ଆଗେ-ଆଗେ
ଚାଲେ ଓ ମେଣ୍ଢାମାନେ ତାହାର ଅନୁସରଣ କରନ୍ତି, କାରଣ
ମେଣ୍ଢାମାନେ ତା'ର ସ୍ୱର ଜାଣନ୍ତି। ୫କିନ୍ତୁ ମେଣ୍ଢାମାନେ
ଅପରିଚିତ ଲୋକର ଅନୁସରଣ କରନ୍ତି ନାହିଁ। ସେମାନେ
ତା ପାଖରୁ ଦୌଡ଼ି ପଳାନ୍ତି, କାରଣ ସେମାନେ ଅପରିଚିତ
ଲୋକର ସ୍ୱର ଚିହ୍ନନ୍ତି ନାହିଁ।" ୬ଯୀଶୁ ଲୋକମାନଙ୍କୁ ଏହି
କାହାଣୀ କହିଲେ। କିନ୍ତୁ ଲୋକମାନେ ତାହାଙ୍କ ଏହି
କାହାଣୀର ଅର୍ଥ ବୁଝିପାରିଲେ ନାହିଁ।

## ଯୀଶୁ ଉତ୍ତମ ମେଷପାଳକ

୭ତେଣୁ ଯୀଶୁ ଆଉଥରେ କହିଲେ, "ମୁଁ ତୁମକୁ ସତ୍ୟ
କହୁଛି, ମୁଁ ହେଉଛି ମେଣ୍ଢାମାନଙ୍କ ଫାଟକ। ୮ମୋ ପୂର୍ବରୁ
ଯେଉଁ ଲୋକମାନେ ଆସିଥିଲେ, ସେମାନେ ଚୋର ଓ
ଡକାୟତ। ମେଣ୍ଢାମାନେ ସେମାନଙ୍କ କଥା ଶୁଣିଲେ ନାହିଁ।
୯ମୁଁ ଫାଟକ। ଯେଉଁ ବ୍ୟକ୍ତି ମୋ (ଫାଟକ) ଦେଇ
ପ୍ରବେଶ କରେ, ସେ ରକ୍ଷା ପାଇବ। ସେହି ଲୋକ
ଭିତରକୁ ଆସିପାରିବ ଓ ବାହାରକୁ ଯାଇ ପାରିବ। ତା'ର
ଯାହା ଦରକାର, ସେ ସବୁ ପାଇବ। ୧୦ଜଣେ ଚୋର
ଚୋରି, ହତ୍ୟା ଓ ନଷ୍ଟ କରିବା ପାଇଁ ଆସେ। କିନ୍ତୁ ମୁଁ
ସେମାନଙ୍କୁ ପୂର୍ଣ୍ଣ ଓ ଉତ୍ତମ ଜୀବନ ଦେବା ପାଇଁ ଆସିଛି।
୧୧"ମୁଁ ଉତ୍ତମ ମେଷପାଳକ। ଉତ୍ତମ ମେଷପାଳକ
ମେଣ୍ଢାମାନଙ୍କ ପାଇଁ ତା'ର ଜୀବନ ଦିଏ। ୧୨ମେଣ୍ଢା ରଖିବା
ପାଇଁ ଯେଉଁ ମୂଲିଆକୁ ରଖାଯାଇଛି, ସେ ଲୋକ ମେଷପାଳକ
ଠାରୁ ଭିନ୍ନ। ମେଷଗୁଡ଼ିକ ମୂଲିଆର ନୁହଁନ୍ତି। ତେଣୁ ସେ
ଗଧିଆ ଆସିବା ଦେଖିଲେ ମେଣ୍ଢାମାନଙ୍କୁ ଏକୁଟିଆ ଛାଡ଼ି
ଦୌଡ଼ି ପଳାଏ। ତା'ପରେ ଗଧିଆ ମେଣ୍ଢାମାନଙ୍କ ଉପରକୁ
କୁଦା ମାରେ ଓ ସେମାନଙ୍କୁ ଛିନ୍ନଭିନ୍ନ କରି ଦିଏ। ୧୩ସେ
ଲୋକଟି ଦୌଡ଼ି ପଳାଏ, କାରଣ ସେ ମୂଲିଆ। ସେ
ପ୍ରକୃତରେ ମେଣ୍ଢାମାନଙ୍କର ଯତ୍ନ ନିଏ ନାହିଁ।
୧୪-୧୫"ମୁଁ ମେଷପାଳକ ଯିଏ କି ମେଣ୍ଢାମାନଙ୍କର ଯତ୍ନ
ନିଏ। ମୁଁ ମୋର ମେଣ୍ଢାକୁ ଜାଣେ ଯେପରି, ପରମପିତା
ମୋତେ ଜାଣନ୍ତି। ମୁଁ ଯେପରି ପରମପିତାଙ୍କୁ ଜାଣେ,
ସେହିପରି ମୋର ମେଣ୍ଢାମାନେ ମୋତେ ଜାଣନ୍ତି। ମୁଁ ଏ
ମେଣ୍ଢାମାନଙ୍କ ପାଇଁ ଜୀବନ ଦିଏ। ୧୬ମୋର ଅନ୍ୟ
ମେଣ୍ଢାମାନେ ମଧ୍ୟ ଅଛନ୍ତି। ସେମାନେ ଏହି ପଲରେ
ନାହାଁନ୍ତି। ମୁଁ ସେମାନଙ୍କୁ ମଧ୍ୟ ଆଣିବ। ସେମାନେ ମୋର

ସ୍ୱର ଶୁଣିବେ। ଭବିଷ୍ୟତରେ ଗୋଟିଏ ପଲ ହେବ, ଓ
ସେ ପଲର ଜଣେ ମେଷପାଳକ ହେବେ। ୧୭ପରମପିତା
ମୋତେ ପ୍ରେମ କରନ୍ତି କାରଣ ମୁଁ ମୋ ଜୀବନ ଦିଏ। ମୁଁ
ଜୀବନ ଦିଏ, ଯେହେତୁ ମୁଁ ପୁନର୍ବାର ସେହି ଜୀବନ ଲାଭ
କରିପାରେ। ୧୮ମୋ'ଠାରୁ କେହି ମୋ ଜୀବନ ନେଇ
ପାରିବ ନାହିଁ। ମୁଁ ସ୍ୱେଚ୍ଛାରେ ମୋ ଜୀବନ ଦିଏ। ମୋର
ଜୀବନ ଦେବାର ଅଧିକାର ଅଛି। ଏବଂ ମୋର ପୁନର୍ବାର
ଜୀବନ ଫେରି ପାଇବାର ମଧ୍ୟ ଅଧିକାର ରହିଛି। ଏହି
କଥା ମୋତେ ପରମପିତା କହିଛନ୍ତି।"

୧୯ଯୀଶୁଙ୍କର ଉକ୍ତ ସମସ୍ତ କଥା ଶୁଣିବା ପରେ
ଯିହୂଦୀମାନଙ୍କ ମଧ୍ୟରେ ପୁନର୍ବାର ଭିନ୍ନ ମତ ପ୍ରକାଶ
ପାଇଲା। ୨୦ସେମାନଙ୍କ ମଧ୍ୟରୁ ଅନେକ ଯିହୂଦୀ କହିଲେ,
"ଜଣେ ଭୂତ ତା ଭିତରକୁ ଆସିଛି ଓ ତାହାଙ୍କୁ ପାଗଳ
କରିଦେଇଛି। ଏ ଭଳି ଲୋକର କଥା ଶୁଣି ଲାଭ ନାହିଁ।"

୨୧କିନ୍ତୁ ଅନ୍ୟ ଯିହୂଦୀମାନେ କହିଲେ, "ନିଜ ଭିତରେ
ଭୂତ ରହିଥିବା ଜଣେ ଲୋକ ଏଭଳି କଥା କହେ ନାହିଁ।
ଗୋଟିଏ ଭୂତ କ'ଣ କେବେ ଅନ୍ଧ ଲୋକର ଆଖି ଭଲ
କରି ଦେଇ ପାରିବ? ନା!"

### ଯୀଶୁଙ୍କ ବିରୁଦ୍ଧରେ ଯିହୁଦୀମାନେ

୨୨ସେତେବେଳେ ଶୀତଋତୁ। ଯିରୂଶାଲମରେ 'ମନ୍ଦିର
ପ୍ରତିଷ୍ଠା' ପର୍ବ ପଡ଼ିଲା। ୨୩ଯୀଶୁ ମନ୍ଦିରରେ ଶଲୋମନଙ୍କର
ମଣ୍ଡପରେ ବୁଲୁ ଥିଲେ। ୨୪ଯିହୂଦୀମାନେ ଯୀଶୁଙ୍କ ଚାରିପାଖେ
ଘେରିଗଲେ। ସେମାନେ ପଚାରିଲେ, "ତୁମେ କେତେ
ସମୟ ପର୍ଯ୍ୟନ୍ତ ନିଜ ବିଷୟରେ ଆମକୁ ସନ୍ଦେହରେ
ରଖିବ? ଯଦି ତୁମେ ନିଜେ ଖ୍ରୀଷ୍ଟ, ତେବେ ଆମକୁ ସ୍ପଷ୍ଟ
ଭାବରେ କୁହ।"

୨୫ଯୀଶୁ ଉତ୍ତର ଦେଲେ, "ମୁଁ ତୁମକୁ କହି ସାରିଛି
କିନ୍ତୁ ତୁମେ ବିଶ୍ୱାସ କରୁ ନାହଁ। ମୁଁ ମୋର ପରମପିତାଙ୍କ
ନାମରେ ଅନେକ ଆଶ୍ଚର୍ଯ୍ୟକାର୍ଯ୍ୟ କରିଛି। ସେହି
ଆଶ୍ଚର୍ଯ୍ୟକାର୍ଯ୍ୟ ସବୁ ଦର୍ଶାଏ ଯେ, ମୁଁ କିଏ। ୨୬କିନ୍ତୁ ତୁମେ
ବିଶ୍ୱାସ କରୁନାହଁ, କାରଣ ତୁମେ ମୋର ମେଣ୍ଢା ନୁହଁ।
୨୭ମୋ ସ୍ୱର ମୋ ମେଣ୍ଢାମାନେ ଶୁଣନ୍ତି। ମୁଁ ସେମାନଙ୍କୁ
ଜାଣେ ଓ ସେମାନେ ମୋତେ ଅନୁସରଣ କରନ୍ତି। ୨୮ମୁଁ
ନିଜ ମେଣ୍ଢାମାନଙ୍କୁ ଅନନ୍ତ ଜୀବନ ଦିଏ। ସେମାନେ
କଦାପି ମରିବେ ନାହିଁ। ସେମାନଙ୍କୁ ମୋ ହାତରୁ କେହି
ଛଡ଼େଇ ନେଇ ପାରିବେ ନାହିଁ। ୨୯ମୋ ପରମପିତା
ମୋତେ ମୋର ମେଣ୍ଢାମାନଙ୍କୁ ଦେଇଛନ୍ତି। ସେ ସମସ୍ତଙ୍କଠାରୁ
ମହାନ୍। ମୋ' ପରମପିତାଙ୍କ ହାତରୁ କୌଣସି ଲୋକ
ମୋ ମେଣ୍ଢା ଚୋରି କରିପାରିବ ନାହିଁ। ୩୦ପରମପିତା ଓ
ମୁଁ ଏକ।"

୩୧ଯିହୂଦୀମାନେ ଯୀଶୁଙ୍କୁ ମାରିବା ପାଇଁ ପୁଣି ପଥର
ଉଠେଇଲେ। ୩୨କିନ୍ତୁ ଯୀଶୁ ସେମାନଙ୍କୁ କହିଲେ, "ମୁଁ
ପରମପିତାଙ୍କ ନିର୍ଦ୍ଦେଶ ଅନୁସାରେ ବହୁତ ଆଶ୍ଚର୍ଯ୍ୟ କାର୍ଯ୍ୟ
କରି ସାରିଛି। ତୁମେ ସେସବୁ ଦେଖିଛ। ତେବେ କେଉଁ
ଭଲ କାର୍ଯ୍ୟ ହେତୁ ତୁମେ ମୋତେ ହତ୍ୟା କରିବା ପାଇଁ
ଚେଷ୍ଟା କରୁଛ?"

୩୩ଯିହୂଦୀମାନେ ଉତ୍ତର ଦେଲେ, "ଆମେ ତୁମକୁ
କୌଣସି ଭଲ କାମ କରିଥିବାରୁ ମାରୁନାହୁଁ। କିନ୍ତୁ ତୁମେ
ଯାହା କହୁଛ, ତାହା ପରମେଶ୍ୱରଙ୍କ ବିରୁଦ୍ଧରେ କହୁଛ।
ତୁମେ ଜଣେ ମନୁଷ୍ୟ ମାତ୍ର, କିନ୍ତୁ ତୁମେ ନିଜକୁ
ପରମେଶ୍ୱର ସହିତ ସମାନ ବୋଲି କହୁଛ। ସେଥିପାଇଁ
ଆମେ ତୁମକୁ ପଥରରେ ମାରି ଦେବାପାଇଁ ଚାହୁଁଛୁ।"

୩୪ଯୀଶୁ ଉତ୍ତର ଦେଲେ, "ତୁମ ବ୍ୟବସ୍ଥାରେ ଏହା
ଲେଖା ଅଛି, 'ମୁଁ (ପରମେଶ୍ୱର) କହିଛି, ତୁମ୍ଭେମାନେ
ଈଶ୍ୱରଗଣ।'[*] ୩୫ଏହି ଧର୍ମଶାସ୍ତ୍ର କୁହେ ଯେ ଯେଉଁମାନେ
ପରମେଶ୍ୱରଙ୍କର ବାର୍ତ୍ତା ଗ୍ରହଣ କରନ୍ତି, ସେମାନେ ଈଶ୍ୱରଗଣ।
ଆଉ ଶାସ୍ତ୍ରର ବାକ୍ୟ ସର୍ବଦା ସତ୍ୟ। ୩୬ତେବେ ତୁମେ
କାହିଁକି କହୁଛ ଯେ, ମୁଁ ଯାହା କହୁଛି ପରମେଶ୍ୱରଙ୍କ
ବିରୁଦ୍ଧରେ କହୁଛି। କାରଣ ମୁଁ କହିଛି, 'ମୁଁ ପରମେଶ୍ୱରଙ୍କର
ପୁତ୍ର।' ମୋତେ ପରମେଶ୍ୱର ବାଛିଛନ୍ତି ଓ ଏ ଜଗତକୁ
ପଠାଇଛନ୍ତି।' ୩୭ମୋର ପରମପିତା ଯାହା କରନ୍ତି, ମୁଁ ଯଦି
ତାହା କରେ ନାହିଁ, ତେବେ ମୁଁ ଯାହା କୁହେ ତାହା
ବିଶ୍ୱାସ କର ନାହିଁ। ୩୮କିନ୍ତୁ ଯଦି ମୋର ପରମପିତା
ଯାହା କରନ୍ତି, ମୁଁ ତାହା କରୁଥାଏ, ତେବେ ତୁମେ ମୋ
କାର୍ଯ୍ୟ ଗୁଡ଼ିକରେ ବିଶ୍ୱାସ ରଖିବା ଉଚିତ। ତୁମେ ମୋଠାରେ
ବିଶ୍ୱାସ ନ କଲେ ମଧ୍ୟ ମୋ କାର୍ଯ୍ୟରେ ବିଶ୍ୱାସ କରିବା
ଉଚିତ। ତେବେ ତୁମେ ଜାଣି ପାରିବ ଓ ବୁଝି ପାରିବ
ଯେ ପରମପିତା ମୋଠାରେ ଅଛନ୍ତି ଓ ମୁଁ ତାହାଙ୍କଠାରେ
ଅଛି।"

୩୯ଯିହୂଦୀମାନେ ଯୀଶୁଙ୍କୁ ଧରିବା ପାଇଁ ପୁଣି ଥରେ
ଚେଷ୍ଟା କଲେ, କିନ୍ତୁ ସେ ସେମାନଙ୍କ ହାତରୁ ଖସି
ଗଲେ।

୪୦ତାପରେ ଯୀଶୁ ଯର୍ଦ୍ଦନ ନଦୀର ଅପର ପାର୍ଶ୍ୱରେ
ପହଞ୍ଚିଲେ। ଯୋହନ ପ୍ରଥମେ ଯେଉଁଠାରେ ବାପ୍ତିସ୍ମ ଦେଉଥିଲେ,
ସେ ସେହି ସ୍ଥାନକୁ ଆସିଲେ, ଓ ସେଠାରେ ରହିଲେ।
୪୧ତାହାଙ୍କ ପାଖକୁ ଅନେକ ଲୋକ ଆସିଲେ। ଲୋକମାନେ
କହିଲେ, "ଯୋହନ ଯଦ୍ୟପି କୌଣସି ଆଶ୍ଚର୍ଯ୍ୟକାର୍ଯ୍ୟ
କରିନଥିଲେ, କିନ୍ତୁ ସେ ଏହି ଲୋକ (ଯୀଶୁ) ବିଷୟରେ
ଯାହା କହିଥିଲେ, ତାହା ସବୁ ସତ୍ୟ।" ୪୨ସେଠାରେ
ଯୀଶୁଙ୍କୁ ଅନେକ ଲୋକ ବିଶ୍ୱାସ କଲେ।

### ଲାଜାରଙ୍କ ମୃତ୍ୟୁ

୧୧ ଲାଜାର ନାମକ ଜଣେ ବ୍ୟକ୍ତି ଅସୁସ୍ଥ ଥିଲେ।
ସେ ବେଥନିଆ ନଗରରେ ରହୁଥିଲେ। ସେଠାରେ
ମରିୟମ ଓ ତାହାଙ୍କ ଭଉଣୀ ମାର୍ଥା ବାସ ମଧ୍ୟ କରୁଥିଲେ।
୨ସେହି ମରିୟମ ପରେ ପ୍ରଭୁ ଯୀଶୁଙ୍କ ପାଦରେ ଅତି
ମୂଲ୍ୟବାନ ଅତର ଢାଳି ନିଜ କେଶରେ ପାଦ ପୋଛି
ଦେଇଥିଲେ। ସେମାନଙ୍କର ଭାଇ ଲାଜାର ଅସୁସ୍ଥ ଥିଲେ।
୩ତେଣୁ ମରିୟମ ଓ ମାର୍ଥା ଯୀଶୁଙ୍କୁ ଜଣାଇବା ପାଇଁ
ଗୋଟିଏ ଲୋକ ପଠାଇଲେ। ସେମାନେ କହି ପଠାଇଲେ,
"ପ୍ରଭୁ, ତୁମର ପ୍ରିୟ ବନ୍ଧୁ ଲାଜାର ପୀଡ଼ିତ ଅଛନ୍ତି।"

---

[*] **'ମୁଁ ... ଈଶ୍ୱରଗଣ'** ଗୀତସଂହିତା ୮୨:୬

୪ଯୀଶୁ ଏହି କଥା ଶୁଣି କହିଲେ, "ତାହାର ପୀଡ଼ା
ମୃତ୍ୟୁଜନକ ନୁହେଁ। କିନ୍ତୁ ତା'ର ଅସୁସ୍ଥତା ପରମେଶ୍ୱରଙ୍କର
ଗୌରବ ନିମନ୍ତେ। ପରମେଶ୍ୱରଙ୍କର ପୁତ୍ର ଏହା ଦ୍ୱାରା
ଗୌରବାନ୍ୱିତ ହେବେ।" ୫ଯୀଶୁ ମାର୍ଥା, ତା'ର ଭଉଣୀ
ମରିୟମ ଓ ଲାଜାରଙ୍କୁ ବହୁତ ଭଲ ପାଉଥିଲେ। ୬ସେ
ଲାଜାରଙ୍କ ଅସୁସ୍ଥତାର ଖବର ପାଇ ସେ ଯେଉଁଠି ଥିଲେ
ସେଠାରେ ଆହୁରି ଦୁଇ ଦିନ ରହିଗଲେ। ୭ତାପରେ ଯୀଶୁ
ତାହାଙ୍କର ଶିଷ୍ୟମାନଙ୍କୁ କହିଲେ, "ଚାଲ, ଆମେ ଯିହୂଦା
ପ୍ରଦେଶକୁ ଫେରିଯିବା।"
୮ଶିଷ୍ୟମାନେ କହିଲେ, "ଗୁରୁ, ଯିହୂଦାରେ ତ' ଆପଣଙ୍କୁ
ଯିହୂଦୀ ନେତାମାନେ ପଥରରେ ମାରିବାକୁ ଚେଷ୍ଟା କରୁଥିଲେ।
ଏହା ଅଳ୍ପଦିନ ପୂର୍ବେ ହୋଇଥିଲା। ଆପଣ ପୁଣି ସେଠାକୁ
ଫେରିଯିବାକୁ ଚାହାଁନ୍ତି?"
୯ଯୀଶୁ ଉତ୍ତର ଦେଲେ, "ଦିନ ମଧ୍ୟରେ ବାର ଘଣ୍ଟା
ଆଲୋକ ଥାଏ। ଜଣେ ଲୋକ ଦିନ ବେଳେ ଚାଲିଲେ
ସେ ଝୁଣ୍ଟେ ନାହିଁ କି ପଡ଼େ ନାହିଁ, କାରଣ ସଂସାରର
ଆଲୋକରେ ସେ ଦେଖିପାରେ। ୧୦କିନ୍ତୁ ରାତିରେ ଜଣେ
ଲୋକ ଝୁଣ୍ଟେ, କାରଣ ରାତି ବେଳେ ତାକୁ ଦେଖିବାରେ
ସାହାଯ୍ୟ କରିବା ପାଇଁ ଆଲୋକ ନଥାଏ।"
୧୧ଯୀଶୁ ଏକଥା କହିବା ସାରିବା ପରେ, କହିଲେ,
"ଆମର ବନ୍ଧୁ ଲାଜାର ବର୍ତ୍ତମାନ ଶୋଇଛନ୍ତି। ମୁଁ ତାହାଙ୍କୁ
ଉଠେଇବା ପାଇଁ ସେଠାକୁ ଯାଉଛି।"
୧୨ଶିଷ୍ୟମାନେ ଉତ୍ତର ଦେଲେ, "କିନ୍ତୁ ପ୍ରଭୁ, ଯଦି ସେ
ଶୋଇଛନ୍ତି, ତେବେ ସେ ସୁସ୍ଥ ହୋଇ ଯିବେ।"
୧୩ଯୀଶୁଙ୍କର କହିବା ଅର୍ଥ ଥିଲା, ଯେ ଲାଜାର ମୃତ।
କିନ୍ତୁ ତାହାଙ୍କର ଶିଷ୍ୟମାନେ ବୁଝିଲେ ଯେ ସେ ସାଧାରଣ
ଶୋଇବା ବିଷୟରେ କହୁଛନ୍ତି। ୧୪ତେଣୁ ଯୀଶୁ ସ୍ପଷ୍ଟରୂପେ
କହିଲେ, "ଲାଜାର ମରିଯାଇଛନ୍ତି, ୧୫ମୁଁ ଖୁସି ଯେ ମୁଁ
ସେଠାରେ ନଥିଲି। ମୁଁ ତୁମ୍ଭମାନଙ୍କ ନିମନ୍ତେ ଆନନ୍ଦ କରୁଛି
କାରଣ ବର୍ତ୍ତମାନ ତୁମ୍ଭେମାନେ ମୋଠାରେ ବିଶ୍ୱାସ କରିବ।
ଚାଲ, ଆମେ ବର୍ତ୍ତମାନ ତାହାଙ୍କ ପାଖକୁ ଯିବା।"
୧୬ତା'ପରେ ଥୋମା ଯାହାଙ୍କୁ ଦିଦୁମ* କୁହାଯାଉଥିଲା
ସେ ଅନ୍ୟ ଶିଷ୍ୟଙ୍କୁ କହିଲେ, "ଚାଲ ଆମ୍ଭେମାନେ ମଧ୍ୟ
ଯିବା ଓ ଯୀଶୁଙ୍କ ସହିତ ଯିହୂଦାରେ ମରିବା"

## ବେଥନିଆରେ ଯୀଶୁ

୧୭ଯୀଶୁ ବେଥନୀଆରେ ପହଞ୍ଚିଲେ। ସେ ଦେଖିଲେ,
ଲାଜାରଙ୍କର ମୃତ୍ୟୁ ହୋଇ କବରସ୍ଥ ହେବାର ଚାରି ଦିନ
ହୋଇଗଲାଣି। ୧୮ବେଥନିଆ ଯିରୂଶାଲମଠାରୁ ପ୍ରାୟ ତିନି
କିଲୋମିଟର ଦୂର। ୧୯ଅନେକ ଯିହୂଦୀ ମାର୍ଥା ଓ ମରିୟମଙ୍କ
ପାଖକୁ ଆସିଥିଲେ। ସେମାନେ ମାର୍ଥା ଓ ମରିୟମଙ୍କୁ
ସେମାନଙ୍କର ଭାଇ ଲାଜାର ସକାଶୁ ସାନ୍ତ୍ୱନା ଦେବା ପାଇଁ
ଆସିଥିଲେ।
୨୦ଯୀଶୁ ଆସୁଛନ୍ତି ବୋଲି ମାର୍ଥା ଶୁଣିଲେ। ସେ
ଯୀଶୁଙ୍କୁ ସ୍ୱାଗତ କରିବା ପାଇଁ ଗଲେ। କିନ୍ତୁ ମରିୟମ
ଘରେ ରହିଲେ। ୨୧ମାର୍ଥା ଯୀଶୁଙ୍କୁ କହିଲେ, "ପ୍ରଭୁ, ଯଦି
ଆପଣ ଏଠାରେ ଥାଆନ୍ତେ, ତେବେ ମୋର ଭାଇ ମରି
ନଥାନ୍ତା। ୨୨କିନ୍ତୁ ଏବେ ମଧ୍ୟ ମୁଁ ଜାଣେ ଯେ ଆପଣ
ଯାହା କିଛି ମାଗିବେ, ପରମେଶ୍ୱର ତାହା ଦେବେ।"
୨୩ଯୀଶୁ କହିଲେ, "ତୁମର ଭାଇ ପୁଣି ଥରେ ବଞ୍ଚି
ଉଠିବ।"
୨୪ମାର୍ଥା ଉତ୍ତର ଦେଲେ, "ମୁଁ ଜାଣେ, ପୁନରୁତ୍ଥାନ
ଦିନ ଯେତେବେଳେ ସମସ୍ତେ ମୃତ୍ୟୁରୁ ବଞ୍ଚି ଉଠିବେ,
ସେତେବେଳେ ସେ ମଧ୍ୟ ମୃତ୍ୟୁରୁ ବଞ୍ଚି ଉଠିବ।"
୨୫ଯୀଶୁ ତାକୁ କହିଲେ, "ମୁଁ ସେହି ପୁନରୁତ୍ଥାନ ଓ
ଜୀବନ, ମୋଠାରେ ବିଶ୍ୱାସ କରୁଥିବା ଲୋକ ମୃତ୍ୟୁ ପରେ
ପୁଣି ବଞ୍ଚି ଉଠିବ ଓ ଜୀବିତ ରହିବ। ୨୬ମୋ'ଠାରେ
ରହୁଥିବା ଓ ବିଶ୍ୱାସ କରୁଥିବା ଲୋକ କଦାପି ମରିବ
ନାହିଁ। ମାର୍ଥା, ତୁମେ କ'ଣ ଏହା ବିଶ୍ୱାସ କର?"
୨୭ମାର୍ଥା ଉତ୍ତର ଦେଲେ, "ହଁ, ପ୍ରଭୁ, ମୁଁ ଆପଣଙ୍କୁ
ଖ୍ରୀଷ୍ଟ ବୋଲି ବିଶ୍ୱାସ କରେ। ଆପଣ ପରମେଶ୍ୱରଙ୍କର
ପୁତ୍ର। ଯାହାଙ୍କର ଏହି ଜଗତକୁ ଆସିବାର ଥିଲା, ଆପଣ
ସେହି ବ୍ୟକ୍ତି ଅଟନ୍ତି।"

## ଯୀଶୁ କାନ୍ଦିଲେ

୨୮ମାର୍ଥା ଏ ସବୁ କଥା କହିବା ପରେ ଭଉଣୀ
ମରିୟମ ପାଖକୁ ଗଲେ। ସେ ମରିୟମଙ୍କ ସହିତ ଏକୁଟିଆ
କଥାବାର୍ତ୍ତା ହେଲେ। ସେ କହିଲେ, "ଏଠାରେ ଗୁରୁ
ଅଛନ୍ତି, ସେ ତୁମକୁ ଖୋଜୁଛନ୍ତି।" ୨୯ମରିୟମ ଏ କଥା
ଶୁଣି ଯୀଶୁଙ୍କ ପାଖକୁ ସଙ୍ଗେସଙ୍ଗେ ଆସିଲେ। ୩୦ଯୀଶୁ
ସେହି ସମୟ ପର୍ଯ୍ୟନ୍ତ ଗ୍ରାମକୁ ଆସି ନଥିଲେ। ମାର୍ଥା
ତାହାଙ୍କୁ ଯେଉଁ ସ୍ଥାନରେ ଦେଖିଥିଲେ, ସେ ପର୍ଯ୍ୟନ୍ତ ସେ
ସେହିଠାରେ ଥିଲେ। ୩୧ଯିହୂଦୀମାନେ ମରିୟମଙ୍କ ସହିତ
ଘରେ ଥିଲେ। ସେମାନେ ତାହାଙ୍କୁ ସାନ୍ତ୍ୱନା ଦେଉଥିଲେ।
ସେମାନେ ମରିୟମଙ୍କୁ ହଠାତ୍ ଠିଆ ହୋଇ ତରବରରେ
ବାହାରକୁ ଯିବା ଦେଖିଲେ। ସେମାନେ ଭାବିଲେ ବୋଧେ
ସେ ଲାଜାରଙ୍କ କବର ପାଖକୁ କାନ୍ଦିବାକୁ ଯାଉଛନ୍ତି।
ତେଣୁ ସେମାନେ ତାହାଙ୍କ ପଛେପଛେ ଗଲେ। ୩୨ମରିୟମ
ଯୀଶୁ ରହିଥିବା ସ୍ଥାନକୁ ଗଲେ। ଯୀଶୁଙ୍କୁ ଦେଖି ସେ
ତାହାଙ୍କ ପାଦ ତଳେ ପଡ଼ିଗଲେ। ମରିୟମ କହିଲେ,
"ପ୍ରଭୁ, ଆପଣ ଯଦି ଏଠାରେ ଥାଆନ୍ତେ, ତେବେ ମୋ
ଭାଇ ମରି ନ ଥାଆନ୍ତା।"
୩୩ଯୀଶୁ ମରିୟମଙ୍କୁ କାନ୍ଦିବାର ଦେଖିଲେ। ସେ
ଯିହୂଦୀମାନଙ୍କୁ ତାହାଙ୍କ ସହିତ ଆସିବାର ଦେଖିଲେ। ସେମାନେ
ମଧ୍ୟ କାନ୍ଦୁଥିଲେ। ଯୀଶୁ ବହୁତ ଦୁଃଖ ଅନୁଭବ କଲେ ଓ
ଅନ୍ତରରେ ଅତ୍ୟାଧିକ ବ୍ୟଥା ଅନୁଭବ କଲେ। ୩୪ଯୀଶୁ
କହିଲେ, "ତୁମେ ଲାଜାରଙ୍କୁ କେଉଁଠାରେ ରଖିଛ?" ସେମାନେ
କହିଲେ, "ପ୍ରଭୁ ଆସି ଦେଖନ୍ତୁ।"
୩୫ଯୀଶୁ କାନ୍ଦିଲେ।
୩୬ଯିହୂଦୀମାନେ କହିଲେ, "ଦେଖ, ଯୀଶୁ ଲାଜାରଙ୍କୁ
କେତେ ସ୍ନେହ କରୁଥିଲେ।"

---

**ଦିଦୁମ** ଅର୍ଥାତ୍ ଯମଜ।

୩୭କନ୍ତୁ କେତେକ ଯିହୂଦୀ କହଲେ, “ଯୀଶୁ ଅନ୍ଧ
ଲୋକଙ୍କର ଆଖି ଭଲ କର ଦେଇଥିଲେ। ତେବେ ସେ
ଲାଜାରଙ୍କୁ ମରଣ ମୁଖରୁ ବଞ୍ଚାଇ ରଖିବା ପାଇଁ କାହିଁକି
କଛି କର ପାରଲେ ନାହିଁ।”

### ଯୀଶୁ ମୃତ ଲାଜାରଙ୍କୁ ଜୀବନ ଦେଲେ

୩୮ଯୀଶୁ ପୁଣି ବହୁତ ବ୍ୟତିବ୍ୟସ୍ତ ହେଲେ। ସେ
ଲାଜାରଙ୍କ କବର ନକଟକୁ ଆସିଲେ। ତାହା ଗୋଟିଏ
ଗୁହା ଥିଲା ଓ ତା ମୁହଁରେ ଗୋଟିଏ ବଡ଼ ପଥର
ଘୋଡ଼େଇ ଦଆ ଯାଇଥିଲା। ୩୯ଯୀଶୁ କହଲେ, “ଏ
ପଥରକୁ ଘୁଞ୍ଚାଇ ଦଅ।”
ମାର୍ଥା କହଲେ, “ପ୍ରଭୁ ସେ ମରବାର ଚାରଦନ
ହୋଇଗଲାଣି। ତେଣୁ ବଡ଼ ଦୁର୍ଗନ୍ଧ ହେଉଥିବ।” ମାର୍ଥା
ମୃତ ଲୋକର ଭଉଣୀ ଥିଲେ। ୪୦ଯୀଶୁ ତାହାଙ୍କୁ କହଲେ,
“ମୁଁ ତୁମକୁ ଯାହା କହଥିଲ, ତାହା ମନେପକାଅ। ମୁଁ
ତୁମକୁ କହଥିଲ, ଯଦ ତୁମେ ବଶ୍ୱାସ କରବ ତେବେ
ପରମେଶ୍ୱରଙ୍କର ଗୌରବ ଦେଖି ପାରବ।”
୪୧ତେଣୁ ସେମାନେ ପଥର ବାହାର କଲେ। ତା’ପରେ
ଯୀଶୁ ଉର୍ଦ୍ଧ୍ୱକୁ ଚାହିଁ କହଲେ, “ହେ ପରମପିତା, ତୁମକୁ
ଧନ୍ୟବାଦ ଦେଉଅଛି, କାରଣ ତୁମେ ମୋ କଥା ଶୁଣିଛ।
୪୨ମୁଁ ଜାଣେ ଯେ, ତୁମେ ସବୁବେଳେ ମୋ କଥା ଶୁଣ।
ମାତ୍ର ତୁମେ ମୋତେ ପଠାଇଛ ବୋଲ ଏଠାରେ ଠିଆ
ହୋଇଥିବା ଲୋକମାନେ ଯେପର ବଶ୍ୱାସ କରବେ, ସେଥିପାଇଁ
ମୁଁ ଏହା କହଲ।” ୪୩ଏହା ପରେ ଯୀଶୁ ଉଚ୍ଚ ସ୍ୱରରେ
ଡାକଲେ, “ଲାଜାର, ବାହାର ଆସ।” ୪୪ମୃତ ଲୋକଟି
ବାହାର ଆସିଲେ। ତାହାଙ୍କର ହାତ ଗୋଡ଼ରେ ଖଣ୍ଡଖଣ୍ଡ
କନା ଗୁଡ଼େଇ ହୋଇଥିଲା। ତାହାଙ୍କ ମୁହଁରେ ଗୋଟିଏ
ରୁମାଲ ବନ୍ଧା ହୋଇଥିଲା।
ଯୀଶୁ ଲୋକମାନଙ୍କୁ କହଲେ, “କନାଗୁଡ଼କ କାଢି ନଅ
ଓ ତାହାଙ୍କୁ ଯିବାକୁ ଦଅ।”

### ଯୀଶୁଙ୍କୁ ମାରବା ପାଇଁ ଯିହୂଦୀନେତାମାନଙ୍କର ଯୋଜନା

୪୫ସେଠାରେ ମରୟମଙ୍କୁ ଦେଖା କରବା ନମନ୍ତେ
ଅନେକ ଯିହୂଦୀ ଆସିଥିଲେ। ସେମାନେ ସମସ୍ତେ ଯୀଶୁଙ୍କର
କାର୍ଯ୍ୟ ଦେଖିଲେ। ସେମାନଙ୍କ ଭିତରୁ ଅନେକ ଯିହୂଦୀ
ତାହାଙ୍କୁ ବଶ୍ୱାସ କଲେ। ୪୬କନ୍ତୁ କେତେକ ଯିହୂଦୀ
ଫାରୂଶୀମାନଙ୍କ ପାଖକୁ ଫେରଗଲେ। ସେମାନେ ଫାରୂଶୀମାନଙ୍କୁ
ଯୀଶୁ କରଥିବା କାର୍ଯ୍ୟ ବର୍ଣ୍ଣନା କଲେ। ୪୭ତା’ପରେ ମୁଖ୍ୟ
ଯାଜକ ଓ ଫାରୂଶୀମାନେ ଯିହୂଦୀ ପରଷଦର ଗୋଟିଏ
ସଭା ଡାକଲେ। ସେମାନେ କହଲେ, “ଆମର କ’ଣ
କରବା ଉଚତ? ଏହ ଲୋକ ବହୁତ ଆଶ୍ଚର୍ଯ୍ୟକାର୍ଯ୍ୟ
କରୁଛ। ୪୮ଯଦ ଆମେ ତାକୁ ଏଭଳ କାର୍ଯ୍ୟ କରବା ପାଇଁ
ଛାଡ଼ଦେବା, ତାହାକୁ ସମସ୍ତେ ବଶ୍ୱାସ କରବେ। ତା’ପରେ
ରୋମୀୟମାନେ ଆସି ଆମ ମନ୍ଦିର ଓ ଆମ ଜାତି
ଉଭୟକୁ ନଷ୍ଟ କରଦେବେ।”
୪୯ସେମାନଙ୍କ ମଧ୍ୟରୁ କୟାଫା ନାମକ ଜଣେ ବ୍ୟକ୍ତି
ଥିଲେ। ସେ ସେହ ବର୍ଷପାଇଁ ମହାଯାଜକ ଥିଲେ।
କୟାଫା କହଲେ, “ତୁମେ ସବୁ କଛ ଜାଣି ନାହିଁ।
୫୦ସମଗ୍ର ଜାତି ଧ୍ୱଂସ ପାଇବା ଅପେକ୍ଷା ଜଣେ ଲୋକ
ଜନସାଧାରଣଙ୍କ ପାଇଁ ମରବା ଉତ୍ତମ। କନ୍ତୁ ତୁମେ ତାହା
ଅନୁଭବ କରୁନାହିଁ।”
୫୧କୟାଫା ନଜେ ସେହ କଥା ଭାବ ପାର ନଥିଲେ।
ଯେ ସେ ବାସ୍ତବରେ ଭବଷ୍ୟଦ୍‌ବାଣୀ କରଥିଲେ, ଯୀଶୁ
ଯିହୂଦୀୟ ଜାତି ପାଇଁ ପ୍ରାଣ ଦେବେ। ୫୨ହଁ, ଯୀଶୁ ଯିହୂଦୀ
ଲୋକମାନଙ୍କ ପାଇଁ ନଜ ଜୀବନ ଦେବେ। କନ୍ତୁ ସେ
ପରମେଶ୍ୱରଙ୍କ ଅନ୍ୟ ସନ୍ତାନମାନଙ୍କ ପାଇଁ ମଧ୍ୟ ଜୀବନ
ଦେବେ, ଯେଉଁମାନେ ଜଗତର ଚାରଆଡ଼େ ଛିନ୍ନ ଭିନ୍ନ
ହୋଇ ରହଛନ୍ତ। ସେମାନଙ୍କୁ ଏକାଠି କରବା ପାଇଁ ଓ
ସମସ୍ତଙ୍କୁ ଏକ କରବା ପାଇଁ ଯୀଶୁ ମୃତ୍ୟୁ ଭୋଗ
କରବେ।
୫୩ସେହ ଦନଠାରୁ ଯିହୂଦୀ ନେତାମାନେ ଯୀଶୁଙ୍କୁ ହତ୍ୟା
କରବା ପାଇଁ ଯୋଜନା କଲେ। ୫୪ତେଣୁ ଯୀଶୁ ଯିହୂଦୀମାନଙ୍କ
ମଧ୍ୟରେ ଖୋଲାଖୋଲ ଭାବରେ ଯାତ୍ରା କରବା ବନ୍ଦ କର
ଦେଲେ। ସେ ଯିରୂଶାଲମ ଛାଡ଼ ମରୁଭୂମି ପାଖ ଥିବା
ଗୋଟିଏ ସ୍ଥାନକୁ ଚାଲଗଲେ। ସେହ ସହରର ନାମ
ଏଫ୍ରୟିମ। ସେ ସେଠାରେ ନଜ ଶିଷ୍ୟମାନଙ୍କ ସହତ
ରହଲେ।
୫୫ଯିହୂଦୀମାନଙ୍କର ପବତ୍ର ନସ୍ତାରପର୍ବର ସମୟ ପାଖ
ହୋଇ ଆସିଲା। ଅନେକ ଲୋକ ନସ୍ତାରପର୍ବ ପୂର୍ବରୁ
ଗ୍ରାମାଞ୍ଚଳରୁ କଛ ଦନ ଆଗରୁ ଯିରୂଶାଲମରେ ଆସି
ପହଞ୍ଚିଲେ, ସେମାନେ ପର୍ବ ପାଇଁ ନଜକୁ ପବତ୍ର କରବା
ଉଦ୍ଦେଶ୍ୟରେ ବଶେଷ କର୍ମ କରବାକୁ ଗଲେ। ୫୬ସେମାନେ
ଯୀଶୁଙ୍କୁ ଖୋଜିଲେ। ସେମାନେ ମନ୍ଦିର ପରସରରେ ପରସ୍ପରକୁ
ପଚାରଲେ, “ସେ କ’ଣ ନସ୍ତାରପର୍ବକୁ ଆସୁଛନ୍ତ? ତୁମେ
କ’ଣ ଭାବୁଛ?” ୫୭କନ୍ତୁ ମହାଯାଜକ ଓ ଫାରୂଶୀମାନେ
ଯୀଶୁଙ୍କ ସମ୍ବନ୍ଧରେ ଗୋଟିଏ ବଶେଷ ଆଦେଶ ଦେଇଥିଲେ।
ସେମାନେ ଘୋଷଣା କରଥିଲେ ଯେ, ଯୀଶୁ କେଉଁଠାରେ
ଅଛନ୍ତ ଏହା ଜାଣିଥିବା ବ୍ୟକ୍ତ ସଙ୍ଗେସଙ୍ଗେ ସେମାନଙ୍କୁ
ଜଣାଇବ। ତେବେ ମୁଖ୍ୟ ଯାଜକ ଓ ଫାରୂଶୀମାନେ
ଯୀଶୁଙ୍କୁ ବନ୍ଦୀ କରପାରବେ।

### ତାହାଙ୍କ ବନ୍ଧୁମାନଙ୍କ ସହ ବେଥନିଆରେ ଯୀଶୁ

୧୨ ଯୀଶୁ ନସ୍ତାରପର୍ବ ଉତ୍ସବର ଛଅ ଦନ ପୂର୍ବରୁ
ବେଥନିଆକୁ ଗଲେ। ଲାଜାର ବେଥନଆରେ
ରହୁଥିଲେ। (ତାହାଙ୍କୁ ଯୀଶୁ ମୃତ୍ୟୁରୁ ଉଠେଇ ଥିଲେ।)
୨ସେଠାରେ ଯୀଶୁଙ୍କ ପାଇଁ ଗୋଟିଏ ଭୋଜି ପ୍ରସ୍ତୁତ
ହୋଇଥିଲା। ମାର୍ଥା ଖାଦ୍ୟ ପରବେଷଣ କରୁଥିଲେ। ଯୀଶୁଙ୍କ
ସହତ ଅନ୍ୟ ଲୋକମାନଙ୍କ ମଧ୍ୟରେ ଲାଜାର ମଧ୍ୟ
ଖାଉଥିଲେ। ୩ମରୟମ ଅଧ ଲଟର ଅତି ମୂଲ୍ୟବାନ
ବଶୁଦ୍ଧ ଜଟାମାଂସୀର ଅତର ଆଣି ଯୀଶୁଙ୍କ ପାଦରେ ଢାଳ
ଦେଲେ। ତା’ପରେ ସେ ତାହାଙ୍କ ପାଦ ନଜ କେଶରେ
ପୋଛ ଦେଲେ। ଘରଟି ଅତର ସୁବାସରେ ମହକ
ଉଠିଲା।

୪ଇଷ୍କାରିୟୋଥ ଯିହୂଦା ସେଠାରେ ଥିଲା। ଯିହୂଦା ଯୀଶୁଙ୍କର
ଶିଷ୍ୟମାନଙ୍କ ମଧ୍ୟରୁ ଜଣେ ଥିଲା। (ସେ ପରେ ଯୀଶୁଙ୍କର
ବିରୁଦ୍ଧାଚରଣ କରିଥିଲା।) ଯିହୂଦା ମରିୟମଙ୍କ ଏହି କାର୍ଯ୍ୟ
ପସନ୍ଦ କଲେ ନାହିଁ। ସେ କହିଲେ, ୫"ସେହି ଅତରର
ମୂଲ୍ୟ ତିନିଶହ ରୂପା ଟଙ୍କା। ଏହାକୁ ବିକ୍ରି କରି ସେହି
ଟଙ୍କା ଗରିବ ଲୋକମାନଙ୍କୁ ଦେବା ଉଚିତ ଥିଲା," ୬କିନ୍ତୁ
ଯିହୂଦା ଗରୀବ ଲୋକମାନଙ୍କ ପ୍ରତି ପ୍ରକୃତରେ ଚିନ୍ତିତ
ନଥିଲା। ସେ ନିଜେ ଚୋର ଥିବାରୁ ଏକଥା କହିଲା। ସେ
ଶିଷ୍ୟମାନଙ୍କ ପାଇଁ ଟଙ୍କା-ବାକ୍ସ(ଆୟବ୍ୟୟ) ନିଜ ପାଖରେ
ରଖୁଥିଲା। ସେ ପ୍ରାୟ ସେହି ବାକ୍ସରୁ ଟଙ୍କା ଚୋରି
କରୁଥିଲା।

୭ଯୀଶୁ ଉତ୍ତର ଦେଲେ, "ମରିୟମକୁ ବାଧା ଦିଅ
ନାହିଁ। ସେ ଅତର ସଞ୍ଚୟ କରି ମୋର ସମାଧି କ୍ରିୟାର
ପ୍ରସ୍ତୁତି ପାଇଁ ଆଜି ଏହା କରିଛି। ୮ତୁମ ପାଖରେ
ସବୁବେଳେ ଗରୀବ ଲୋକେ ରହିଥିବେ, କିନ୍ତୁ ମୁଁ ସର୍ବଦା
ତୁମ ସହିତ ରହିବିନାହିଁ।"

## ଲାଜାରଙ୍କ ବିରୁଦ୍ଧରେ ଷଡଯନ୍ତ୍ର

୯ଯୀଶୁ ବେଥନିଆରେ ଥିବା କଥା ଅନେକ ଯିହୂଦୀମାନେ
ଶୁଣିଲେ। ତେଣୁ ସେମାନେ ତାହାଙ୍କୁ ଦେଖିବା ପାଇଁ
ସେଠାକୁ ଗଲେ। ସେମାନେ ଲାଜାରଙ୍କୁ ମଧ୍ୟ ଦେଖିବାକୁ
ଗଲେ। ଲାଜାରଙ୍କୁ ଯୀଶୁ ମୃତ୍ୟୁରୁ ଉଠେଇ ଥିଲେ, ୧୦ତେଣୁ
ମୁଖ୍ୟ ଯାଜକମାନେ ଲାଜାରଙ୍କୁ ହତ୍ୟା କରିବା ପାଇଁ ମଧ୍ୟ
ଯୋଜନା କଲେ। ୧୧ଅନେକ ଯିହୂଦୀ ଲାଜାରଙ୍କ ହେତୁ
ସେମାନଙ୍କର ନେତାମାନଙ୍କୁ ଛାଡ଼ି ଯୀଶୁଙ୍କୁ ବିଶ୍ୱାସ କରୁଥିଲେ।
ସେଥି ପାଇଁ ଯିହୂଦୀ ନେତାମାନେ ଲାଜାରଙ୍କୁ ମଧ୍ୟ ମାରିବା
ପାଇଁ ଚେଷ୍ଟା କଲେ।

## ଯିରୂଶାଲମରେ ଯୀଶୁଙ୍କ ପ୍ରବେଶ

୧୨ତହିଁ ଆରଦିନ ଲୋକମାନେ ଯିରୂଶାଲମରେ ଶୁଣିଲେ
ଯେ, ଯୀଶୁ ସେଠାକୁ ଆସୁଛନ୍ତି। ଏହି ଲୋକମାନେ
ଅନେକ ସଂଖ୍ୟାରେ ନିସ୍ତାରପର୍ବ ପାଇଁ ଆସିଥିଲେ। ୧୩ସେମାନେ
ଖଜୁରୀ ବାହୁଙ୍ଗା ଧରି ଯୀଶୁଙ୍କୁ ଦେଖା କରିବା ପାଇଁ
ଗଲେ। ସେ ଲୋକମାନେ ଖୁବ୍ ଜୋରରେ କହିଲେ,

> "ତାହାଙ୍କୁ ପ୍ରଶଂସା କର, ସ୍ୱାଗତ କର, ଯିଏ ପ୍ରଭୁଙ୍କ
> ନାମରେ ଆସନ୍ତି। ପରମେଶ୍ୱର ତାହାଙ୍କୁ ଆଶୀର୍ବାଦ
> କର, ପରମେଶ୍ୱର ଇସ୍ରାୟେଲର ରାଜାଙ୍କୁ ଆଶୀର୍ବାଦ
> କରନ୍ତୁ।" ଗୀତସଂହିତା ୧୧୮:୨୫-୨୬

୧୪ଯୀଶୁ ଗୋଟିଏ ଗଧ ପାଇଲେ ଓ ତା' ଉପରେ
ଚଢ଼ିଲେ। ଏହା ଶାସ୍ତ୍ରର ବାଣୀ ପରି ସଫଳ ହେଲା।
ଏଥିରେ ଲେଖାଥିଲା,

> ୧୫ "ହେ ସିୟୋନ ନଗର, ଭୟ କର ନାହିଁ। ଦେଖ,
> ତୁମର ରାଜା ଆସୁଛନ୍ତି। ସେ ଗୋଟିଏ ଗଧଛୁଆ
> ଉପରେ ବସି ଆସୁଛନ୍ତି।" ଯିଖରିୟ ୯:୯

୧୬ଯୀଶୁଙ୍କର ଶିଷ୍ୟମାନେ ସେତେବେଳେ ଏହି ଘଟଣାର
ଅର୍ଥ ବୁଝିପାରି ନ ଥିଲେ। କିନ୍ତୁ ଯୀଶୁ ଯେତେବେଳେ
ମହିମାନ୍ୱିତ ହେଲେ ସେତେବେଳେ ସେମାନେ ବୁଝି ପାରିଲେ
ଯେ, ଏହା ତାହାଙ୍କ ବିଷୟରେ ଲେଖାଯାଇଥିଲା। ତା'ପରେ
ଶିଷ୍ୟମାନେ ମନେ ପକାଇଲେ ଯେ ସେମାନେ ଯୀଶୁଙ୍କ
ପ୍ରତି ଏହା ସବୁ କରିଛନ୍ତି।

## ଲୋକମାନେ ଯୀଶୁଙ୍କ ବିଷୟରେ କହିଲେ

୧୭ଯୀଶୁ ଯେତେବେଳେ ଲାଜାରଙ୍କୁ ମରଣ ପରେ
ଉଠେଇଲେ ଓ ତାହାଙ୍କୁ କବର ଭିତରୁ ବାହାରକୁ ଆସିବାକୁ
କହିଲେ, ସେତେବେଳେ ତାହାଙ୍କ ସହିତ ବହୁତ ଲୋକ
ଥିଲେ। ସେହି ଲୋକମାନେ ଯୀଶୁଙ୍କ କାର୍ଯ୍ୟ ବିଷୟରେ
ଅନ୍ୟ ଲୋକମାନଙ୍କୁ କହୁଥିଲେ। ୧୮ଯେତେବେଳେ ସେମାନେ
ଶୁଣିଲେ ଯେ ଏହି ଆଶ୍ଚର୍ଯ୍ୟକାର୍ଯ୍ୟ ଯୀଶୁଙ୍କ ଦ୍ୱାରା ହୋଇଛି,
ଅନେକ ଲୋକ ତାହାଙ୍କୁ ଭେଟିବା ପାଇଁ ଗଲେ। ୧୯ତେଣୁ
ଫାରୂଶୀମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ,
"ଦେଖ, ଆମର ଯୋଜନା କାମ କରୁନାହିଁ। ସାରା ଜଗତ
ତାହାଙ୍କର ଅନୁସରଣ କରିଲେଣି।"

## ଜୀବନ ଓ ମୃତ୍ୟୁ ବିଷୟରେ ଯୀଶୁଙ୍କ କଥା

୨୦ନିସ୍ତାର ପର୍ବରେ ଉପାସନା କରିବା ପାଇଁ ଯିରୂଶାଲମ
ଯାଇଥିବା ଲୋକମାନଙ୍କ ମଧ୍ୟରୁ କେତେକ ଗ୍ରୀକ ଲୋକଥିଲେ।
୨୧ସେହି ଗ୍ରୀକ୍ ଲୋକମାନେ ଫିଲିପ୍ପଙ୍କ ପାଖକୁ ଗଲେ।
(ଫିଲିପ୍ପ ଗାଲିଲୀର ବେଥ୍‌ସାଇଦାବାସୀ ଥିଲେ।) ଗ୍ରୀକ୍
ଲୋକମାନେ କହିଲେ, "ମହାଶୟ; ଆମେ ଯୀଶୁଙ୍କୁ ଦେଖିବାକୁ
ଚାହୁଁ।" ୨୨ଫିଲିପ୍ପ ଆନ୍ଦ୍ରିୟଙ୍କୁ ଯାଇ ଏକଥା ଜଣାଇଲେ।
ତା'ପରେ ଆନ୍ଦ୍ରିୟ ଓ ଫିଲିପ୍ପ ଯୀଶୁଙ୍କୁ ଯାଇ କହିଲେ।

୨୩ଯୀଶୁ ସେମାନଙ୍କୁ କହିଲେ, "ବର୍ତ୍ତମାନ ମନୁଷ୍ୟ
ପୁତ୍ରଙ୍କର ଗୌରବ ପାଇବା ସମୟ ଆସିଯାଇଛି। ୨୪ମୁଁ
ତୁମକୁ ସତ୍ୟ କହୁଛି। ଗୋଟିଏ ଗହମ ଦାନା ଭୂମିରେ
ପଡ଼ି ନିଶ୍ଚୟ ମରିବା ଆବଶ୍ୟକ। ତା ପରେ ଏହା ବଢ଼ି
ବହୁତ ଶସ୍ୟ ଦିଏ। କିନ୍ତୁ ଯଦି ଏହା କଦାପି ମରେ ନାହିଁ,
ତେବେ ଏହା ସର୍ବଦା ଗୋଟିଏ ମଞ୍ଜି ହୋଇ ରହିଥାଏ।
୨୫ନିଜ ଜୀବନକୁ ଭଲ ପାଉଥିବା ବ୍ୟକ୍ତି ଏହା ହରାଇବ।
ନିଜ ଜାଗତିକ ଜୀବନକୁ ଘୃଣା କରୁଥିବା ଲୋକ ଏହାକୁ
ସୁରକ୍ଷିତ ରଖିବ। ସେ ଅନନ୍ତ ଜୀବନ ପାଇଁ ତାହା ପାଇ
ପାରିବ। ୨୬ମୋର ସେବା କରୁଥିବା ଲୋକେ ନିଶ୍ଚୟ
ମୋର ଅନୁସରଣ କରନ୍ତୁ। ତେବେ ମୋର ସେବକମାନେ
ମୁଁ ଯେଉଁଠାରେ ଥିବି, ସେଠାରେ ମୋ ସହିତ ରହିବେ।
ଯେଉଁ ଲୋକମାନେ ମୋର ସେବା କରୁଥିବେ, ମୋର
ପରମପିତା ସେମାନଙ୍କୁ ସମ୍ମାନ ଦେବେ।

## ଯୀଶୁ ନିଜ ମୃତ୍ୟୁ ବିଷୟରେ କହିଲେ

୨୭"ବର୍ତ୍ତମାନ ମୁଁ ବହୁତ ଉଦ୍‌ବିଗ୍ନ ଅଛି। ମୁଁ କ'ଣ
କହିବି? 'ହେ ପରମପିତା, ମୋତେ ଏ ଯନ୍ତ୍ରଣାଦାୟକ
ସମୟରୁ ଉଦ୍ଧାର କର', ଏଭଳି କହି କ'ଣ ମୁଁ ପ୍ରାର୍ଥନା
କରିବି? ନା, କାରଣ ମୁଁ ତ' ଯନ୍ତ୍ରଣା ଭୋଗିବି ବୋଲି

ଆସିଛି। ୨୮ହେ ପରମପିତା, ଆପଣା ନାମକୁ ଗୌରବାନ୍ୱିତ
କର।"
ସେତେବେଳେ ସ୍ୱର୍ଗରୁ ଏହି ବାଣୀ ଶୁଭିଲା, "ମୁଁ ସେହି
ନାମକୁ ଗୌରବାନ୍ୱିତ କରିଛି। ମୁଁ ତାହା ଆଉ ଥରେ
କରିବି।"
୨୯ସେଠାରେ ଠିଆ ହୋଇଥିବା ଲୋକମାନେ ଏହି ବାଣୀ
ଶୁଣିଲେ। ସେମାନେ ତାହା ମେଘ ଗର୍ଜନ ବୋଲି କହିଲେ।
କିନ୍ତୁ ଅନ୍ୟମାନେ କହିଲେ, "ଯୀଶୁଙ୍କୁ ଜଣେ ସ୍ୱର୍ଗଦୂତ
କଥା କହିଲେ।"
୩୦ଯୀଶୁ ଲୋକମାନଙ୍କୁ କହିଲେ, "ସେହି ବାଣୀ ତୁମ
ପାଇଁ ଥିଲା, ମୋ ପାଇଁ ନୁହେଁ। ୩୧ବର୍ତ୍ତମାନ ଜଗତର
ବିଚାରର ସମୟ ଉପସ୍ଥିତ, ଏହି ଜଗତର ଶାସକ ବିତାଡ଼ିତ
ହେବାର ଏହା ହେଉଛି ସମୟ। ୩୨ମୁଁ ଜଗତରୁ ଉର୍ଦ୍ଧ୍ୱକୁ
ଉଥିତ ହେବି। ଯେତେବେଳେ ଏହା ଘଟିବ, ମୁଁ ସବୁ
ଲୋକମାନଙ୍କୁ ମୋ ନିକଟକୁ ନେଇ ଯିବି।" ୩୩ଯୀଶୁ
କେଉଁ ପ୍ରକାରର ମୃତ୍ୟୁବରଣ କରିବେ, ତାହା ଦେଖାଇବା
ପାଇଁ ସେ ଏହା କହିଲେ।
୩୪ଲୋକମାନେ କହିଲେ, "ଆମ ବ୍ୟବସ୍ଥା କୁହେ ଯେ,
ଖ୍ରୀଷ୍ଟ ଚିରଦିନ ପାଇଁ ଜୀବିତ ରହିବେ। ତେବେ ତୁମେ
କାହିଁକି କହୁଛ ଯେ 'ମନୁଷ୍ୟ ପୁତ୍ର ନିଶ୍ଚୟ ଉର୍ଦ୍ଧ୍ୱକୁ ଯିବେ?
ଏହି ମନୁଷ୍ୟ ପୁତ୍ର କିଏ?"
୩୫ଯୀଶୁ କହିଲେ, "ତୁମ୍ଭମାନଙ୍କ ପାଖରେ ଆଲୋକ
ଆଉ ଅଳ୍ପ ସମୟ ପାଇଁ ରହିବ। ତେଣୁ ଆଲୋକ ତୁମ
ପାଖରେ ଥିବା ପର୍ଯ୍ୟନ୍ତ ଚାଲ। ତେବେ ଅନ୍ଧକାର ତୁମକୁ
ଧରି ପାରିବ ନାହିଁ। ଅନ୍ଧକାରରେ ଚାଲୁଥିବା ବ୍ୟକ୍ତି
କେଉଁଆଡ଼େ ଯାଉଛି ଜାଣି ପାରେ ନାହିଁ। ୩୬ତେଣୁ ତୁମ
ପାଖରେ ଆଲୋକ ଥିବା ପର୍ଯ୍ୟନ୍ତ ତା'ଠାରେ ତୁମେ ବିଶ୍ୱାସ
ରଖ। ତେବେ ତୁମ୍ଭେମାନେ ଆଲୋକର ସନ୍ତାନ ହେବ।"
ଯୀଶୁ ଏକଥା କହିବା ପରେ ସେମାନଙ୍କ ପାଖରୁ ଚାଲି
ଗଲେ। ସେ ଏପରି ସ୍ଥାନରେ ରହିଲେ, ଯେଉଁଠି ଲୋକମାନେ
ତାହାଙ୍କୁ ପାଇଲେ ନାହିଁ।

## ଯୀଶୁଙ୍କୁ ବିଶ୍ୱାସ କରିବା ପାଇଁ ଯିହୁଦୀମାନେ ଅସ୍ୱୀକାର କଲେ

୩୭ଯୀଶୁ ବହୁତ ଗୁଡ଼ିଏ ଆଶ୍ଚର୍ଯ୍ୟକାର୍ଯ୍ୟ କଲେ। ଲୋକମାନେ
ଏ ସବୁ ଦେଖିବା ସତ୍ତ୍ୱେ ତାହାଙ୍କୁ ବିଶ୍ୱାସ କଲେ ନାହିଁ।
୩୮ଅତଏବ ଭବିଷ୍ୟଦ୍‌ବକ୍ତା ଯିଶାଇୟ ଯାହା କହିଥିଲେ
ତାହା ସତ୍ୟ ହେଲା, ସେ କହିଥିଲେ,

"ହେ ପ୍ରଭୁ, ଆମ କହିଥିବା କଥାରେ କିଏ ବିଶ୍ୱାସ
କରିଛି? କିଏ ପ୍ରଭୁଙ୍କର ଶକ୍ତି ଦେଖିଛି?"
ଯିଶାଇୟ-୫୩:୧

୩୯ସେମାନେ ବିଶ୍ୱାସ କରି ପାରି ନଥିଲେ, କାରଣ
ଯିଶାଇୟ ଆହୁରି ମଧ୍ୟ କହିଥିଲେ:

୪୦ "ପରମେଶ୍ୱର ଲୋକମାନଙ୍କୁ ଅନ୍ଧ କରିଛନ୍ତି। ସେ
ସେମାନଙ୍କର ହୃଦୟ କଠିନ କରିଦେଇଛନ୍ତି। ସେମାନେ
ଯେପରି ଆଖିରେ ଦେଖିପାରିବେ ନାହିଁ ଓ ବୁଦ୍ଧିରେ
ବୁଝିପାରିବେ ନାହିଁ ସେଥି ନିମନ୍ତେ ପରମେଶ୍ୱର
ଏହା କରିଅଛନ୍ତି। ତା'ପରେ ମୁଁ ସେମାନଙ୍କୁ ସୁସ୍ଥ
କରିବି।" ଯିଶାଇୟ ୬:୧୦

୪୧ଯିଶାଇୟ ଏକଥା କହିଥିଲେ, କାରଣ ସେ ପ୍ରଭୁଙ୍କର
ଗୌରବ ଦେଖିଥିଲେ। ତେଣୁ ସେ ତାହାଙ୍କ (ଯୀଶୁଙ୍କ)
ବିଷୟରେ ଏହା କହିଲେ।
୪୨କିନ୍ତୁ ଯୀଶୁଙ୍କୁ ଅନେକ ଲୋକ ବିଶ୍ୱାସ କଲେ।
ଏପରିକି, ଅନେକ ଯିହୂଦୀ ନେତାମାନେ ମଧ୍ୟ ତାହାଙ୍କ
ଠାରେ ବିଶ୍ୱାସ କଲେ। କିନ୍ତୁ ସେମାନେ ଫାରୂଶୀମାନଙ୍କୁ
ଭୟ କରୁଥିଲେ। ତେଣୁ ସେମାନେ ତାହାଙ୍କ ବିଶ୍ୱାସ
ସମ୍ବନ୍ଧରେ ଖୋଲାଖୋଲି ଭାବେ କହିଲେ ନାହିଁ। ସେମାନେ
ଡରିଲେ, କାଳେ ଫାରୂଶୀମାନେ ସେମାନଙ୍କୁ ପ୍ରାର୍ଥନା-ଗୃହରୁ
ବାହାର କରିଦେବେ। ୪୩ସେ ଲୋକମାନେ ପରମେଶ୍ୱରଙ୍କ
ପ୍ରଶଂସା ଅପେକ୍ଷା ଲୋକଙ୍କର ପ୍ରଶଂସା ପାଇବାକୁ ଭଲ
ପାଉଥିଲେ।

## ଯୀଶୁଙ୍କ ଶିକ୍ଷା ଲୋକଙ୍କୁ ବିଚାର କରିବ

୪୪ତା'ପରେ ଯୀଶୁ ଚିତ୍କାର କରି କହିଲେ, "ମୋଠାରେ
ଯେଉଁ ଲୋକ ବିଶ୍ୱାସ ରଖେ, ସେ ପ୍ରକୃତରେ ମୋ ଠାରେ
ନୁହେଁ ମାତ୍ର ଯେ ମୋତେ ପଠାଇଛନ୍ତି, ତାହାଙ୍କଠାରେ
ବିଶ୍ୱାସ ରଖେ। ୪୫ମୋତେ ଯେଉଁ ଲୋକ ଦେଖେ, ସେ
ପ୍ରକୃତରେ ମୋର ପ୍ରେରଣ କର୍ତ୍ତାଙ୍କୁ ଦେଖେ। ୪୬ମୁଁ
ଆଲୋକ ଓ ମୁଁ ଏ ଜଗତକୁ ଆସିଛି। ମୋର ଆସିବାର
କାରଣ, ମୋଠାରେ ବିଶ୍ୱାସ ରଖିଥିବା ପ୍ରତ୍ୟେକ ଲୋକ
କେବେ ଅନ୍ଧାରରେ ରହିବ ନାହିଁ।
୪୭ମୁଁ ଲୋକମାନଙ୍କର ବିଚାର କରିବା ପାଇଁ ଆସି
ନାହିଁ। ମାତ୍ର ମୁଁ ଏ ଜଗତର ଲୋକଙ୍କୁ ଉଦ୍ଧାର କରିବା
ଉଦ୍ଦେଶ୍ୟରେ ଆସିଛି। ଯେଉଁମାନେ ମୋ ଶିକ୍ଷା ଶୁଣନ୍ତି
କିନ୍ତୁ ତାହା ଅମାନ୍ୟ କରନ୍ତି ମୁଁ ସେହି ଲୋକମାନଙ୍କର
ବିଚାର କରିବା ପାଇଁ ଆସି ନାହିଁ। ୪୮ଜଣେ ବିଚାରକ
ଅଛନ୍ତି, ଯିଏ ବିଚାର କରିବେ କି, କେଉଁ ଲୋକ ମୋତେ
ବିଶ୍ୱାସ କରୁ ନାହିଁ ଓ ମୋ କଥା ଗ୍ରହଣ କରୁ ନାହିଁ। ମୁଁ
ଯେଉଁ ଉପଦେଶ ଶିକ୍ଷା ଦେଇଛି, ତାହା ଦ୍ୱାରା ସେହି
ଲୋକ ଶେଷ ଦିନରେ ବିଚାରିତ ହେବ। ୪୯ଏହାର କାରଣ
ହେଉଛି, ମୁଁ ଯାହା ଶିକ୍ଷା ଦେଇଛି ତାହା ମୋର ନୁହେଁ।
ମୋର ପ୍ରେରଣ କର୍ତ୍ତା ପରମପିତା ମୋତେ କ'ଣ କହିବାକୁ
ଓ କ'ଣ ଉପଦେଶ ଦେବାକୁ ପଡ଼ିବ ତାହା କହିଛନ୍ତି।
୫୦ମୁଁ ଜାଣେ, ମୋ ପରମପିତା ଯାହା ଆଦେଶ ଦିଅନ୍ତି,
ସେହିଠାରୁ ଅନନ୍ତ ଜୀବନ ଆସେ। ତେଣୁ ମୁଁ ଯାହା
କହିଛି, ତାହା କହିବା ପାଇଁ ମୋତେ ପରମପିତା କହିଛନ୍ତି।"

## ଯୀଶୁ ତାହାଙ୍କ ଶିଷ୍ୟମାନଙ୍କର ପାଦ ଧୋଇଲେ

୧୩ ସେତେବେଳେ ଯିହୂଦୀମାନଙ୍କର ନିସ୍ତାର ପର୍ବ
ସମୟ ପ୍ରାୟ ହୋଇଯାଇଥିଲା। ଯୀଶୁ ଜାଣିଥିଲେ,
ତାହାଙ୍କର ଜଗତକୁ ଛାଡ଼ି ଯିବାର ସମୟ ଉପସ୍ଥିତ

ହୋଇଗଲାଣି। ବର୍ତ୍ତମାନ ସେ ତାହାଙ୍କ ପରମପିତାଙ୍କ ନିକଟକୁ
ଫେରିଯିବେ। ସେ ସବୁବେଳେ ଏହି ଜଗତରେ ଥିବା
ତାହାଙ୍କ ନିଜର ହୋଇଯାଇଥିବା ଲୋକମାନଙ୍କୁ ଭଲ
ପାଉଥିଲେ। ସେ ସେମାନଙ୍କ ପ୍ରତି ତାହାଙ୍କର ଗଭୀର ଓ
ଚୁଡ଼ାନ୍ତ ପ୍ରେମ ଦେଖାଇଥିଲେ।
୨ଯୀଶୁ ଓ ତାହାଙ୍କ ଶିଷ୍ୟମାନେ ସନ୍ଧ୍ୟା ଭୋଜନରେ
ବସିଥିଲେ। ଶିମୋନର ପୁତ୍ର ଇଷ୍କାରିୟୋଥ ଯିହୂଦାଙ୍କୁ ଯୀଶୁଙ୍କ
ବିରୁଦ୍ଧରେ ଶୟତାନ ପ୍ରବର୍ତ୍ତାଇ ସାରିଥିଲା। ୩ପରମପିତା
ଯୀଶୁଙ୍କୁ ସବୁ ବିଷୟରେ କ୍ଷମତା ଦେଇଥିଲେ। ଯୀଶୁ ଏହା
ଜାଣିଥିଲେ। ସେ ପରମେଶ୍ୱରଙ୍କଠାରୁ ଆସିଛନ୍ତି ବୋଲି ମଧ୍ୟ
ଜାଣିଥିଲେ। ସେ ତାହାଙ୍କ ପାଖକୁ ଫେରିଯାଉଛନ୍ତି ବୋଲି
ମଧ୍ୟ ଜାଣିଥିଲେ। ୪ସେମାନେ ଖାଇବା ସମୟରେ ଯୀଶୁ
ଠିଆ ହୋଇ ପିନ୍ଧିଥିବା ଲମ୍ବା ପୋଷାକଟି ଖୋଲିଦେଲେ।
ସେ ଅଣ୍ଟାରେ ଗୋଟିଏ ତଉଲିଆ ଗୁଡେଇ ହୋଇ ପଡିଲେ।
୫ତା'ପରେ ସେ ପାତ୍ରରେ ଜଳ ଭର୍ତ୍ତି କଲେ, ଓ
ଶିଷ୍ୟମାନଙ୍କର ପାଦ ଧୋଇବା ଆରମ୍ଭ କଲେ। ସେ
ଅଣ୍ଟାରେ ବାନ୍ଧିଥିବା ତଉଲିଆରେ ସେମାନଙ୍କର ପାଦ
ପୋଛିଲେ।
୬ଯୀଶୁ ଶିମୋନ ପିତରଙ୍କ ପାଖକୁ ଆସିଲେ। କିନ୍ତୁ
ପିତର ତାହାଙ୍କୁ କହିଲେ, "ପ୍ରଭୁ, ତୁମେ ମୋର ପାଦ
ଧୋଇବା ଉଚିତ ନୁହେଁ।"
୭ଯୀଶୁ କହିଲେ, "ତୁମେ ଏବେ ଜାଣିପାରୁ ନାହିଁ ଯେ,
ମୁଁ କ'ଣ କରୁଛି। କିନ୍ତୁ ପରେ ତୁମେ ବୁଝିବ।"
୮ପିତର କହିଲେ, "ନା, ଆପଣ ମୋ ପାଦ କେବେ
ଧୋଇବେ ନାହିଁ।"
ଯୀଶୁ ଉତ୍ତର ଦେଲେ, "ଯଦି ମୁଁ ତୁମ ପାଦ ଧୋଇବି
ନାହିଁ, ତେବେ ତୁମେ କଦାପି ମୋର ଲୋକମାନଙ୍କ ମଧ୍ୟରୁ
ଜଣେ ହେବ ନାହିଁ।"
୯ଶିମୋନ ପିତର ଉତ୍ତର ଦେଲେ, "ହେ ପ୍ରଭୁ, ତୁମେ
ମୋର ପାଦ ଧୋଇବା ପରେ ମୋର ହାତ ଓ ମୁଣ୍ଡ ମଧ୍ୟ
ଧୋଇ ଦିଅ।"
୧୦ଯୀଶୁ କହିଲେ, "ଜଣେ ଲୋକ ସ୍ନାନ କରିବାପରେ
ତା'ର ସମ୍ପୂର୍ଣ୍ଣ ଶରୀରଟା ନିର୍ମଳ ହୋଇଯାଏ। କେବଳ
ତା'ର ପାଦ ସେ ଧୋଇବା ଦରକାର। ମୁଁ ଜାଣେ
ତୁମ୍ଭେମାନେ ପରିଷ୍କାର ହୋଇଛ, କିନ୍ତୁ ତୁମ୍ଭମାନଙ୍କ ଭିତରୁ
ସମସ୍ତେ ପରିଷ୍କାର ନୁହନ୍ତି।" ୧୧ଯୀଶୁ ଜାଣିଥିଲେ ଯେ କିଏ
ତାହାଙ୍କ ବିରୁଦ୍ଧରେ ଉଠିବ, ତେଣୁ ସେ କହିଲେ, "ତୁମ୍ଭମାନଙ୍କ
ଭିତରୁ ସମସ୍ତେ ପରିଷ୍କାର ନୁହଁନ୍ତି।"
୧୨ଯୀଶୁ ଶିଷ୍ୟମାନଙ୍କ ପାଦ ଧୋଇସାରିଲେ। ତା'ପରେ
ସେ ଲୁଗାପଟା ପିନ୍ଧି ମେଜ ପାଖରେ ପୁଣି ବସିଲେ, ଯୀଶୁ
ପଚାରିଲେ, "ମୁଁ ତୁମ ପାଇଁ କ'ଣ କରିଲି, ତୁମେ ତାହା
ବୁଝିପାରିଲ କି? ୧୩ତୁମେ ମୋତେ 'ଗୁରୁ' ଓ 'ପ୍ରଭୁ'
କହୁଛ। ଅବଶ୍ୟ, ଏହା ଠିକ୍, କାରଣ ମୁଁ ତାହା ଅଟେ।"
୧୪ମୁଁ ତୁମର ଗୁରୁ ଓ ପ୍ରଭୁ। କିନ୍ତୁ ମୁଁ ତୁମର ପାଦ
ଗୋଟିଏ ସେବକ ରୂପେ ଧୋଇଲି। ତେଣୁ ତୁମେ ମଧ୍ୟ
ପରସ୍ପରର ପାଦ ଧୋଇବା ଉଚିତ। ୧୫ମୁଁ ଏହା ତୁମ ପାଇଁ
ଗୋଟିଏ ଆଦର୍ଶ ସ୍ୱରୂପ କରିଲି। ତେଣୁ ତୁମେ ପରସ୍ପର
ମଧ୍ୟରେ ଏହିପରି କରିବ। ୧୬ମୁଁ ଏହା ସତ୍ୟ କହୁଛି,
ଜଣେ ସେବକ ତାର ପ୍ରଭୁଠାରୁ ବଡ଼ ନୁହେଁ। ଯେଉଁ
ଲୋକକୁ କିଛି କାର୍ଯ୍ୟ କରିବା ପାଇଁ ପଠାଯାଇଛି, ସେ
ପ୍ରେରଣକର୍ତ୍ତାଙ୍କ ଠାରୁ ବଡ଼ ନୁହେଁ। ୧୭ଯଦି ତୁମେ ଏହା
ସବୁ ଜାଣି ତେବେ ତୁମେ ଏହି କାର୍ଯ୍ୟ କରି ଖୁସି ହେବ।
୧୮"ମୁଁ ତୁମ ସମସ୍ତଙ୍କ ବିଷୟରେ କହୁନାହିଁ। ମୁଁ
ଯେଉଁମାନଙ୍କୁ ବାଛିଛି, ସେମାନଙ୍କୁ ଜାଣେ। କିନ୍ତୁ ଶାସ୍ତ୍ରରେ
ଯାହା ଲେଖାଅଛି, ତାହା ନିଶ୍ଚୟ ଘଟିବ: 'ଯେଉଁଲୋକ
ମୋ ସହିତ ଖାଏ, ସେ ମୋ ବିରୁଦ୍ଧରେ ଠିଆ ହେବ।'
୧୯ବର୍ତ୍ତମାନ ଏହା ନଘଟିବା ପୂର୍ବରୁ ମୁଁ ତୁମକୁ ଏକଥା
କହୁଛି। ତେଣୁ ଯେତେବେଳେ ଏହା ଘଟିବ, ତୁମେ ବିଶ୍ୱାସ
କରିବ-ମୁଁ, ସେହି ଅଟେ। ୨୦ମୁଁ ତୁମକୁ ସତ୍ୟ କହୁଛି,
ମୋତେ ପଠାଇଥିବା ବ୍ୟକ୍ତିକୁ ଯିଏ ଗ୍ରହଣ କରେ ସେ
ମୋତେ ଗ୍ରହଣ କରେ। ମୋତେ ଯେଉଁ ଲୋକ
ଗ୍ରହଣ କରେ, ସେ ମୋର ପ୍ରେରଣକର୍ତ୍ତାଙ୍କୁ ମଧ୍ୟ ଗ୍ରହଣ
କରେ।"

## ଯୀଶୁ ତାହାଙ୍କ ବିଶ୍ୱାସଘାତକ ବିଷୟରେ କହିଲେ

୨୧ଯୀଶୁ ଏକଥା କହିବା ପରେ ସେ ବହୁତ ଦୁଃଖିତ
ହେଲେ। ସେ ମୁକ୍ତରେ କହିଲେ, "ମୁଁ ତୁମକୁ ସତ୍ୟ
କହୁଛି, ତୁମ୍ଭମାନଙ୍କ ମଧ୍ୟରୁ ଜଣେ ମୋ
ବିରୁଦ୍ଧରେ ଯିବ।"
୨୨ଯୀଶୁଙ୍କର ଶିଷ୍ୟମାନେ ସମସ୍ତେ ପରସ୍ପରକୁ ଚାହିଁଲେ।
ସେମାନେ ବୁଝି ପାରିଲେ ନାହିଁ ଯେ ଯୀଶୁ କାହା
ବିଷୟରେ କହୁଛନ୍ତି। ୨୩ଯୀଶୁଙ୍କ ପାଖରେ ଆଉ ଜଣେ
ଶିଷ୍ୟ ବସିଥିଲା। ଯୀଶୁ ତାହାକୁ ବହୁତ ଭଲ ପାଉଥିଲେ।
୨୪ଶିମୋନ ପିତର, ସେହି ଶିଷ୍ୟକୁ ଯୀଶୁ କାହା ସମ୍ବନ୍ଧରେ
କହୁଛନ୍ତି ତାହା ତାହାଙ୍କୁ ପଚାରିବା ପାଇଁ ଠାରିଲେ।
୨୫ସେ ଶିଷ୍ୟ ଜଣଙ୍କ ଯୀଶୁଙ୍କର ଆହୁରି ପାଖକୁ ଆଉଜି
ପଡ଼ି ପଚାରିଲେ, "ପ୍ରଭୁ କିଏ ତୁମ ବିରୁଦ୍ଧରେ ଯିବ?"
୨୬ଯୀଶୁ ଉତ୍ତର ଦେଲେ, "ମୁଁ ଏହି ରୋଟୀଖଣ୍ଡିକ
ପାତ୍ରରେ ବୁଡ଼େଇ ଯାହାକୁ ଦେବି, ସେହି ଲୋକ ମୋ
ବିରୁଦ୍ଧରେ ଯିବ।" ତେଣୁ ଯୀଶୁ ଖଣ୍ଡେ ରୋଟୀ ନେଇ
ପାତ୍ରରେ ବୁଡ଼େଇଲେ ଓ ଶିମୋନଙ୍କ ପୁତ୍ର ଇଷ୍କାରିୟୋଥ
ଯିହୂଦାକୁ ଦେଲେ। ୨୭ଯିହୂଦା ରୋଟୀ ନେଲାବେଳେ ଶୟତାନ
ତା'ଭିତରେ ପ୍ରବେଶ କଲା। ଯୀଶୁ ଯିହୂଦାକୁ କହିଲେ,
"ତୁମେ ଯାହା କରିବା କଥା, ତାହା ଶୀଘ୍ର କର।" ୨୮ଯୀଶୁ
ଏକଥା ଯିହୂଦାଙ୍କୁ କାହିଁକି କହିଲେ ତାହା ମେଜ ପାଖରେ
ବସିଥିବା ଲୋକମାନଙ୍କ ଭିତରୁ କେହିହେଲେ ବୁଝିପାରିଲେ
ନାହିଁ। ୨୯ଯିହୂଦା ଦଳର ସାମୁହିକ ଟଙ୍କା-ବାକ୍ସ ନିଜ
ପାଖରେ ରଖୁଥିଲା। ତେଣୁ କେତେକ ଶିଷ୍ୟ ଭାବିଲେ ଯେ
ଯୀଶୁ ତାକୁ ପର୍ବ ପାଇଁ କିଛି କିଣିବାକୁ କହିଲେ। କିମ୍ବା
ସେମାନେ ଏକଥା ମଧ୍ୟ ଭାବିଲେ, ଯୀଶୁ ବୋଧେ ଯିହୂଦାକୁ
ଦରିଦ୍ରମାନଙ୍କୁ କିଛି ଦାନ ଦେବା ପାଇଁ କହିଲେ।
୩୦ଯିହୂଦା ଯୀଶୁ ଦେଇଥିବା ରୋଟୀ ଗ୍ରହଣ କଲେ।
ତା'ପରେ ଯିହୂଦା ବାହାରି ଚାଲିଗଲେ। ସେତେବେଳେ ରାତ୍ରି
ହୋଇଥିଲା।

### ଯୀଶୁ ନିଜର ମୃତ୍ୟୁ ବିଷୟରେ କହିଲେ

[31]ଯିହୂଦା ଗଲା ପରେ ଯୀଶୁ କହିଲେ, "ବର୍ତ୍ତମାନ
ମନୁଷ୍ୟପୁତ୍ର ଗୌରବ ପାଉଛନ୍ତି। ପରମେଶ୍ୱର ମଧ୍ୟ ମନୁଷ୍ୟ
ପୁତ୍ରଙ୍କଦ୍ୱାରା ଗୌରବ ପାଉଛନ୍ତି। [32]ଯଦି ପରମେଶ୍ୱର
ତାହାଙ୍କ ମାଧ୍ୟମରେ ଗୌରବ ଅର୍ଜନ କରନ୍ତି, ତେବେ
ପରମେଶ୍ୱର ତାହାଙ୍କଠାରେ ପୁତ୍ରଙ୍କୁ ଗୌରବ ଦେବେ। ସେ
ତାହାଙ୍କୁ ଅତି ଶୀଘ୍ର ଗୌରବାନ୍ୱିତ କରିବେ।"
[33]ଯୀଶୁ କହିଲେ, "ମୋର ପିଲାମାନେ, ମୁଁ ତୁମ୍ଭମାନଙ୍କ
ସହିତ ମାତ୍ର ଅଳ୍ପ ସମୟ ପାଇଁ ରହିବି। ତୁମେ ମୋତେ
ଖୋଜିବ। ମୁଁ ଯିହୂଦୀମାନଙ୍କୁ ଯାହା କହିଛି, ତାହା ମୁଁ
ବର୍ତ୍ତମାନ ତୁମକୁ କହୁଛି। ମୁଁ ଯେଉଁଠିକୁ ଯାଉଛି, ତୁମେ
ସେଠାକୁ ଆସିପାରିବ ନାହିଁ।
[34]"ମୁଁ ତୁମକୁ ଗୋଟିଏ ନୂତନ ଆଜ୍ଞା ଦେଉଛି।
ତୁମ୍ଭେମାନେ ପରସ୍ପରକୁ ପ୍ରେମ କର। ମୁଁ ତୁମ୍ଭମାନଙ୍କୁ
ଯେପରି ପ୍ରେମ କରିଛି, ତୁମ୍ଭେମାନେ ପରସ୍ପରକୁ ସେହିପରି
ପ୍ରେମ କରିବା ଉଚିତ। [35]ତୁମେ ଯଦି ପରସ୍ପରକୁ ପ୍ରେମ
କରିବ, ତେବେ ସମସ୍ତେ ଜାଣିବେ ଯେ ତୁମ୍ଭେମାନେ
ମୋର ଶିଷ୍ୟ।"

### ଯୀଶୁ କହିଲେ ଯେ ପିତର ତାହାଙ୍କୁ ଅସ୍ୱୀକାର କରିବେ

[36]ଶିମୋନ ପିତର ଯୀଶୁଙ୍କୁ ପଚାରିଲେ, "ପ୍ରଭୁ, ତୁମେ
କେଉଁଆଡ଼େ ଯାଉଛ?" ଯୀଶୁ ଉତ୍ତର ଦେଲେ, "ମୁଁ
ଯେଉଁଆଡ଼େ ଯାଉଛି, ତୁମେ ମୋର ପଛେ-ପଛେ ଏବେ
ସେଠାକୁ ଯାଇ ପାରିବ ନାହିଁ। କିନ୍ତୁ ପରେ ତୁମେ ମୋର
ଅନୁଗମନ କରିବ।"
[37]ପିତର ପଚାରିଲେ, "ପ୍ରଭୁ, ମୁଁ ବର୍ତ୍ତମାନ କାହିଁକି
ତୁମର ପଛେ ପଛେ ଯାଇ ପାରିବି ନାହିଁ? ମୁଁ ତୁମ ପାଇଁ
ମରିବାକୁ ମଧ୍ୟ ପ୍ରସ୍ତୁତ।"
[38]ଯୀଶୁ ଉତ୍ତର ଦେଲେ, "ତୁମେ କ'ଣ ପ୍ରକୃତରେ
ମୋ ପାଇଁ ଜୀବନ ଦେବ? ମୁଁ ତୁମକୁ ସତ୍ୟ କହୁଛି,
କୁକୁଡ଼ା ଡାକିବା ପୂର୍ବରୁ ତୁମେ ମୋତେ ଚିହ୍ନିନାହିଁ ବୋଲି
ତିନିଥର ଅସ୍ୱୀକାର କରିବ।"

### ଯୀଶୁ ତାହାଙ୍କ ଶିଷ୍ୟମାନଙ୍କୁ ସାନ୍ତ୍ୱନା ଦେଲେ

**୧୪** ଯୀଶୁ କହିଲେ, "ତୁମ୍ଭମାନଙ୍କର ହୃଦୟ ଦୁଃଖିତ
ନ ହେଉ। ପରମେଶ୍ୱରଙ୍କଠାରେ ବିଶ୍ୱାସ ରଖିଥାଅ।
ମୋଠାରେ ମଧ୍ୟ ବିଶ୍ୱାସ ରଖ, [2]ମୋର ପରମପିତାଙ୍କ
ଘରେ ଅନେକ ଗୁଡ଼ିଏ ବଖରା ଅଛି। ତାହା ନ ହୋଇଥିଲେ
ମୁଁ ତୁମକୁ ଏହା କହି ନଥାନ୍ତି। ମୁଁ ତୁମ ପାଇଁ ଗୋଟିଏ
ସ୍ଥାନ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ସେଠାକୁ ଯାଉଛି। [3]ମୁଁ
ଯାଇ ତୁମ ପାଇଁ ସ୍ଥାନ ପ୍ରସ୍ତୁତ କଲା ପରେ ଫେରି
ଆସିବି। ତା'ପରେ ତୁମକୁ ମୋ ସହିତ ନେଇଯିବି। ମୁଁ
ଯେଉଁଠାରେ ରହିବି ତୁମ୍ଭେମାନେ ମଧ୍ୟ ସେଠାରେ ମୋ
ସହିତ ରହିପାରିବ। [4]ମୁଁ ଯେଉଁଠାକୁ ଯାଉଛି, ତୁମ୍ଭେମାନେ
ସେଠାକୁ ଯିବାର ପଥ ଜାଣ।"
[5]ଥୋମା କହିଲେ, "ପ୍ରଭୁ, ଆପଣ କେଉଁଆଡ଼େ ଯାଉଛନ୍ତି,
ଆମେ ଜାଣି ନାହୁଁ। ତେଣୁ ସେଠାକୁ ଯିବାର ପଥ ଆମେ
ଜାଣିବୁ କିପରି?"
[6]ଯୀଶୁ ଉତ୍ତର ଦେଲେ, "ମୁଁ ପଥ। ମୁଁ ସତ୍ୟ ଓ
ଜୀବନ। ପରମପିତାଙ୍କ ପାଖକୁ ଯିବାପାଇଁ ମୁଁ ହେଉଛି
ଏକମାତ୍ର ପଥ। [7]ତୁମେ ଯଦି ମୋତେ ପ୍ରକୃତରେ ଜାଣିଥାନ୍ତ,
ତେବେ ପରମପିତାଙ୍କୁ ମଧ୍ୟ ଜାଣିଥାଆନ୍ତ। ବର୍ତ୍ତମାନ ତୁମେ
ତାହାଙ୍କୁ ଜାଣିଛ ଓ ତାହାଙ୍କୁ ଦେଖିଛ।"
[8]ଫିଲିପ୍ପ ଯୀଶୁଙ୍କୁ କହିଲେ, "ପ୍ରଭୁ, ଆମକୁ ପରମପିତାଙ୍କୁ
ଦେଖାନ୍ତୁ। ଆମର ସେତିକି ଦରକାର।"
[9]ଯୀଶୁ ଉତ୍ତର ଦେଲେ, "ଫିଲିପ୍ପ, ମୁଁ ତୁମ ସହିତ
ଦୀର୍ଘ ସମୟଧରି ରହିଛି। ସେଥିପାଇଁ ତୁମେ ମୋତେ
ଜାଣିବା ଉଚିତ। ମୋତେ ଯିଏ ଦେଖିଛି, ସେ ପରମପିତାଙ୍କୁ
ମଧ୍ୟ ଦେଖିଛି। ତେଣୁ ତୁମେ ମୋତେ କାହିଁକି କହୁଛ,
'ଆମକୁ ପରମପିତାଙ୍କୁ ଦେଖାଅ?' [10]ତୁମେ କ'ଣ ପ୍ରକୃତରେ
ବିଶ୍ୱାସ କର ଯେ, ମୁଁ ପରମପିତାଙ୍କଠାରେ ଓ ପରମପିତା
ମୋଠାରେ ଅଛନ୍ତି? ମୁଁ ତୁମକୁ ଯାହା-ଯାହା କହିଛି ତାହା
ମୋଠାରୁ ଆସି ନାହିଁ। ପରମପିତା ମୋ ଭିତରେ ଅଛନ୍ତି,
ଓ ସେ ତାହାଙ୍କ କାର୍ଯ୍ୟ କରୁଛନ୍ତି। [11]ମୁଁ ପରମପିତାଙ୍କ
ଠାରେ ଓ ପରମପିତା ମୋ ଠାରେ ଅଛନ୍ତି। ତୁମେ ମୋର
ଏହି କଥା ବିଶ୍ୱାସ କର। କିମ୍ବା ମୁଁ ଯେଉଁ ସବୁ
ଆଶ୍ଚର୍ଯ୍ୟକାର୍ଯ୍ୟ କରିଛି ସେଥିପାଇଁ ବିଶ୍ୱାସ କର। [12]ମୁଁ
ତୁମକୁ ସତ୍ୟ କହୁଛି। ମୋଠାରେ ବିଶ୍ୱାସ କରୁଥିବା ବ୍ୟକ୍ତି,
ମୁଁ ଯାହା କରିଛି, ତାହା କରିବ। ହଁ, ସେ ମୁଁ କରିଥିବା
କାମଠାରୁ ମଧ୍ୟ ଅଧିକ ବଡ଼ କାମ କରିବ, କାରଣ ମୁଁ
ପରମପିତାଙ୍କ ନିକଟକୁ ଯାଉଛି। [13]ତୁମେ ମୋ ନାମରେ
ଯାହା ମାଗିବ, ମୁଁ ତାହା ତୁମ ପାଇଁ କରିବି। ଏହା ଦ୍ୱାରା
ପୁତ୍ରଙ୍କ ମାଧ୍ୟମରେ ପରମପିତାଙ୍କ ଗୌରବ ପ୍ରକାଶିତ ହେବ।
[14]ମୋ' ନାମରେ ତୁମେ ଯାହା ମାଗିବ, ମୁଁ
ତାହା କରିବି।

### ପବିତ୍ରଆତ୍ମାଙ୍କର ପ୍ରତିଜ୍ଞା

[15]"ମୋତେ ଯଦି ତୁମେ ପ୍ରେମ କର, ତେବେ ମୋର
ଆଜ୍ଞା ଅନୁସାରେ ତୁମେ କାମ କରିବ। [16]ମୁଁ ପରମପିତାଙ୍କୁ
କହିବି ଓ ସେ ତୁମକୁ ଆଉ ଜଣେ ସାହାଯ୍ୟକାରୀଙ୍କୁ
ଦେବେ। ସେ ସେହି ସାହାଯ୍ୟକାରୀଙ୍କୁ ତୁମ ପାଖରେ
ସର୍ବଦା ରହିବା ପାଇଁ ଦେବେ। [17]ସେହି ସାହାଯ୍ୟକାରୀ
ଜଣକ ସତ୍ୟମୟ ଆତ୍ମା। ଏ ଜଗତ ତାହାଙ୍କୁ ଗ୍ରହଣ କରି
ପାରିବ ନାହିଁ। ଯେହେତୁ ଜଗତ ତାହାଙ୍କୁ ଦେଖୁନାହିଁ ବା
ଜାଣି ନାହିଁ। କିନ୍ତୁ ତୁମେ ତାହାଙ୍କୁ ଜାଣିଛ। ସେ ତୁମ
ସହିତ ରହନ୍ତି, ଓ ତୁମ ହୃଦୟରେ ବାସ କରିବେ।
[18]"ମୁଁ ତୁମକୁ ଅନାଥ ପିଲାମାନଙ୍କ ପରି ଛାଡିଯିବି
ନାହିଁ। ମୁଁ ତୁମ ପାଖକୁ ଫେରିଆସିବି। [19]ଜଗତର
ବାସିନ୍ଦାମାନେ ଖୁବ୍ ଅଳ୍ପ ସମୟ ପରେ ମୋତେ ଆଉ
ଦେଖି ପାରିବେ ନାହିଁ। କିନ୍ତୁ ତୁମେ ମୋତେ ଦେଖି
ପାରିବ। ତୁମ୍ଭେମାନେ ଜୀବିତ ରହିବ, କାରଣ ମୁଁ ଜୀବିତ।
[20]ତୁମେ ସେଦିନ ଜାଣିବ ଯେ, ମୁଁ ପରମପିତାଙ୍କଠାରେ
ରହିଛି। ତୁମେ ଜାଣିବ ଯେ, ତୁମେ ମୋ'ଠାରେ ଓ ମୁଁ

ତୁମଠାରେ ଅଛି। ୨୧ଯେଉଁ ଲୋକ ମୋର ଆଜ୍ଞା ଜାଣେ
ଓ ପାଳନ କରେ, ସେ ଲୋକ ପ୍ରକୃତରେ ମୋତେ ପ୍ରେମ
କରେ। ମୋତେ ପ୍ରେମ କରୁଥିବା ଲୋକକୁ ମୋ ପରମ-ପିତା
ମଧ୍ୟ ପ୍ରେମ କରିବେ। ମୁଁ ମଧ୍ୟ ତାକୁ ପ୍ରେମ କରିବି ଓ
ନିଜକୁ ତା' ନିକଟରେ ପ୍ରକାଶ କରିବି।"
୨୨ତା'ପରେ ଯିହୂଦା (ଇଷ୍କାରିୟୋଥ ନୁହଁନ୍ତି) ତାହାଙ୍କୁ
ପଚାରିଲେ, "କିନ୍ତୁ ପ୍ରଭୁ ଆପଣ କାହିଁକି ଆମଠାରେ ନିଜକୁ
ଦେଖାଇବା ପାଇଁ ଯୋଜନା କରୁଛନ୍ତି, ସାରା ଜଗତକୁ
କାହିଁକି ଦେଖାଉ ନାହାଁନ୍ତି।"
୨୩ଯୀଶୁ ଉତ୍ତର ଦେଲେ, "ଯଦି କେହି ମୋତେ ପ୍ରେମ
କରେ ତେବେ ସେ ମୋହର ଉପଦେଶ ପାଳନ କରିବ।
ମୋର ପରମପିତା ତାକୁ ଭଲ ପାଇବେ। ମୋର ପରମପିତା
ଓ ମୁଁ ସେହି ଲୋକ ପାଖକୁ ଆସିବୁ ଓ ତା ସହିତ
ରହିବୁ। ୨୪କିନ୍ତୁ ଯେଉଁଲୋକ ମୋତେ ପ୍ରେମ କରେ
ନାହିଁ, ସେ ମୋର ଉପଦେଶ ମାନେ ନାହିଁ। ମୋଠାରୁ
ଯେଉଁ ଉପଦେଶ ତୁମେ ଶୁଣୁଛ, ତାହା ପ୍ରକୃତରେ ମୋର
ନୁହେଁ। ଏହା ମୋତେ ପଠାଇ ଥିବା ପରମ-ପିତାଙ୍କର।
୨୫"ମୁଁ ତୁମ ସହିତ ଥିବା ସମୟରେ ଏହି ସବୁ କଥା
ତୁମ୍ଭମାନଙ୍କୁ କହିଛି। ୨୬କିନ୍ତୁ ତୁମକୁ ସାହାଯ୍ୟକାରୀ ସବୁ
ଶିକ୍ଷା ଦେବେ। ମୁଁ ତୁମକୁ କହିଥିବା ସମସ୍ତ କଥା ମନେ
ରଖିବାପାଇଁ ସେ ସାହାଯ୍ୟ ମଧ୍ୟ କରିବେ। ଏହି ସାହାଯ୍ୟକାରୀ
ହେଉଛନ୍ତି ପବିତ୍ରଆତ୍ମା, ଯାହାଙ୍କୁ ପରମପିତା ମୋ ନାମରେ
ପଠାଇବେ।
୨୭"ମୁଁ ତୁମକୁ ଶାନ୍ତି ଦେଇ ଯାଉଛି। ଏହି ଶାନ୍ତି ମୋ
ନିଜର, ଯାହା ମୁଁ ତୁମକୁ ଦେଉଛି। ଜଗତ ଯେପରି ଶାନ୍ତି
ଦିଏ, ତା'ଠାରୁ ଭିନ୍ନ ଶାନ୍ତି ମୁଁ ତୁମକୁ ଦେଉଛି। ତେଣୁ
ମନରେ ଦୁଃଖ କର ନାହିଁ। ଭୟ ମଧ୍ୟ କର ନାହିଁ।
୨୮ତୁମେ ମୋର କଥା ଶୁଣିଛ ଯେ 'ମୁଁ ଯାଉଛି, କିନ୍ତୁ ମୁଁ
ପୁଣି ତୁମ ପାଖକୁ ଫେରିବି।' ଯଦି ତୁମେ ମୋତେ
ପ୍ରକୃତରେ ପ୍ରେମ କରୁଥାଅ, ତେବେ ମୋ ପାଇଁ ତୁମେ
ଖୁସି ହେବ; କାରଣ ବର୍ତ୍ତମାନ ମୁଁ ପରମପିତାଙ୍କ ନିକଟକୁ
ଯାଉଛି। ପରମପିତା ମୋଠାରୁ ମହାନ୍। ୨୯ଏ ସମସ୍ତ
ଘଟଣା ଘଟିବା ପୂର୍ବରୁ ମୁଁ ତୁମକୁ ସବୁ ବର୍ତ୍ତମାନ
ଜଣାଇଦେଲି, ଯେପରି ଏସବୁ ଘଟିଲା ବେଳେ ତୁମେ
ବିଶ୍ୱାସ କରିବ। ୩୦ମୁଁ ତୁମ ସହିତ ବେଶି ସମୟ
କଥାବାର୍ତ୍ତା ହେବି ନାହିଁ। ଏ ଜଗତର ଶାସକ (ଶୟତାନ)
ଆସୁଛି। ମୋ ଉପରେ ତା'ର କୌଣସି କ୍ଷମତା ନାହିଁ।
୩୧କିନ୍ତୁ ଏହି ଜଗତ ଜାଣିବା ଉଚିତ ଯେ, ମୁଁ ପରମପିତାଙ୍କୁ
ପ୍ରେମ କରେ। ତେଣୁ ପରମପିତା ମୋତେ ଯେପରି
କହିଛନ୍ତି, ମୁଁ ଠିକ୍ ସେପରି କରିବି। ଚାଲ ଯିବା। ଆମେ
ଏ ସ୍ଥାନ ତ୍ୟାଗ କରିବା।"

## ଯୀଶୁ ଅଙ୍ଗୁରଲତା ସଦୃଶ

୧୫ ଯୀଶୁ କହିଲେ, "ମୁଁ ହେଉଛି ପ୍ରକୃତ ଅଙ୍ଗୁର
ଲତା, ଓ ମୋର ପରମପିତା ମାଳୀ ଅଟନ୍ତି।
୨ମୋଠାରେ ଥିବା ଯେଉଁ ଶାଖାରେ ଫଳ ଫଳେ ନାହିଁ,
ସେ ତାକୁ କାଟିଦିଅନ୍ତି। ଯେଉଁ ଶାଖାରେ ଫଳ ଫଳି
ଥାଏ, ସେ ସେଗୁଡ଼ିକ ଆହୁରି ଅଧିକ ଫଳ ପ୍ରଦାନ କରିବା
ପାଇଁ ଅଗ କଟାକଟି କରି ପରିଷ୍କାର କରନ୍ତି। ୩ମୁଁ ତୁମକୁ
ଯେଉଁ ଉପଦେଶ ଦେଇଛି, ତାହା ଦ୍ୱାରା ତୁମେ ପରିଷ୍କୃତ
ହୋଇସାରିଅଛ। ୪ମୋ'ଠାରେ ରୁହ ଓ ମୁଁ ତୁମ୍ଭଠାରେ
ରହିବି। ଗୋଟିଏ ଶାଖା ଏକୁଟିଆ ଅଲଗାରେ କେବେ
ଫଳ ଦେବ ନାହିଁ। ଏହା ଲତାରେ ଲାଗି ରହିବା ଉଚିତ।
ତୁମ୍ଭେମାନେ ମଧ୍ୟ ଏକା ଥାଇ ଫଳ ଫଳି ପାରିବ ନାହିଁ।
ତେଣୁ ତୁମେ ମୋ ସହିତ ମିଶି ରହିବା ଉଚିତ।
୫"ମୁଁ ଅଙ୍ଗୁରଲତା ଓ ତୁମ୍ଭେମାନେ ଶାଖା। ଯେଉଁଲୋକ
ମୋ'ଠାରେ ରହେ, ଓ ମୁଁ ତା'ଠାରେ ରହେ, ସେହି
ଲୋକ ପ୍ରଚୁର ଫଳ ଫଳେ। କିନ୍ତୁ ମୋ ବିନା ସେ କିଛି
କରି ପାରିବ ନାହିଁ। ୬ଯଦି କେହି ବ୍ୟକ୍ତି ମୋଠାରେ
ରୁହେ ନାହିଁ, ତେବେ ତାକୁ ଶାଖା ପରି ଫିଙ୍ଗି ଦିଆଯିବ।
ସେହି ଫିଙ୍ଗା ଯାଇଥିବା ଶାଖା ଶୁଖିଯାଏ। ଲୋକମାନେ
ଶୁଖିଲା ଶାଖାକୁ ଉଠାଇ ନିଆଁରେ ଫୋପାଡି ଦିଅନ୍ତି।
ସେଗୁଡିକ ଜଳି ଯାଏ।
୭"ମୋଠାରେ ରୁହ ଓ ମୋର ଉପଦେଶ ପାଳନ
କର। ଯଦି ତୁମେ ଏହା କର, ତେବେ ଯାହା ଇଚ୍ଛାକର,
ତାହା ମାଗ ଆଉ ତାହା ତୁମକୁ ଦିଆଯିବ। ୮ତୁମ୍ଭେମାନେ
ପ୍ରଚୁର ଫଳ ଉତ୍ପାଦନ କରି ଓ ମୋର ଶିଷ୍ୟ ବୋଲି
ଦର୍ଶାଇ ଦିଅ। ଏହା ଦ୍ୱାରା ମୋର ପରମପିତା ଗୌରବ
ପାଇବେ। ୯ମୋ ପରମପିତା ମୋତେ ଯେପରି ପ୍ରେମ
କରୁଥିଲେ, ମୁଁ ତୁମକୁ ସେପରି ପ୍ରେମ କରିଛି। ବର୍ତ୍ତମାନ
ମୋ ପ୍ରେମରେ ସ୍ଥିର ରୁହ। ୧୦ମୁଁ ମୋର ପରମପିତାଙ୍କର
ଆଜ୍ଞା ମାନିଛି ଓ ମୁଁ ତାହାଙ୍କ ପ୍ରେମରେ ରହିଛି।
ସେହିପରି ତୁମେ ଯଦି ମୋର ଆଜ୍ଞା ପାଳନ କରିବ,
ତୁମେ ମୋ ପ୍ରେମରେ ରହିବ। ୧୧ମୁଁ ତୁମକୁ ଏସବୁ କଥା
କହିଛି, ତାହାଲେ ମୁଁ ଯେପରି ଆନନ୍ଦରେ ଅଛି, ତୁମେ
ମଧ୍ୟ ମୋପରି ଆନନ୍ଦ ପାଇବ। ମୁଁ ଚାହେଁ, ତୁମର ଆନନ୍ଦ
ସଂମ୍ପୂର୍ଣ୍ଣ ହେଉ। ୧୨ମୁଁ ତୁମକୁ ଏହି ଆଜ୍ଞା ଦେଉଛି!
ଯେପରି ମୁଁ ତୁମକୁ ପ୍ରେମ କରିଛି ତୁମ୍ଭେମାନେ ମଧ୍ୟ
ପରସ୍ପରକୁ ସେହିପରି ପ୍ରେମ କର। ୧୩ନିଜ ବନ୍ଧୁମାନଙ୍କ
ପାଇଁ ପ୍ରାଣ ଦେଇ ଜଣେ ବ୍ୟକ୍ତି ସର୍ବୋତ୍କୃଷ୍ଟ ପ୍ରେମ
ଦେଖାଇ ପାରିବ। ୧୪ତୁମେ ଯଦି ମୋ କହିବା ଅନୁଯାୟୀ
କାମ କର, ତେବେ ତୁମ୍ଭେମାନେ ମୋର ବନ୍ଧୁ। ୧୫ମୁଁ
ତୁମ୍ଭମାନଙ୍କୁ ବର୍ତ୍ତମାନ ସେବକ ବୋଲି କହୁନାହିଁ। ଜଣେ
ସେବକ, ତା'ର ମୁନିବ କ'ଣ କରେ, ଜାଣେ ନାହିଁ। କିନ୍ତୁ
ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ ବନ୍ଧୁ ବୋଲି କହୁଛି, କାରଣ ମୁଁ
ପରମପିତାଙ୍କଠାରୁ ଯାହା ସବୁ ଶୁଣିଛି ତାହା କହିଛି।
୧୬ତୁମ୍ଭେ ମୋତେ ମନୋନୀତ କରିନାହିଁ, କିନ୍ତୁ ମୁଁ ତୁମକୁ
ମନୋନୀତ କରିଛି। ମୁଁ ତୁମକୁ ଏହି କାର୍ଯ୍ୟ ଦେଇଛି,
ଯେପରି ତୁମେ ଯାଇ ଫଳ ଫଳିବ। ମୁଁ ଚାହେଁ, ତୁମ
ଜୀବନରେ ଏହି ଫଳ ଲାଗିରହୁ। ସେଥିରେ ମୋ ନାମ
ନେଇ ଯାହା ମାଗିବ, ପରମପିତା ତୁମକୁ ତାହା ଦେବେ।
୧୭ଏହା ମୋର ଆଦେଶ, ତୁମ୍ଭେମାନେ ପରସ୍ପରକୁ ପ୍ରେମ
କର।

### ଯୀଶୁ ଶିଷ୍ୟମାନଙ୍କୁ ସତର୍କ କରନ୍ତି

୧୮"ଯଦି ତୁମକୁ ଜଗତ ଘୃଣା କରେ, ତେବେ ମନେ
ରଖ, ତୁମମାନଙ୍କୁ ଘୃଣା କରିବା ପୂର୍ବରୁ ଜଗତ ମୋତେ
ଘୃଣା କରିଛି। ୧୯ତୁମ୍ଭେମାନେ ଯଦି ଏ ଜଗତର ହୋଇଥାଆନ୍ତ,
ତେବେ ସଂସାର ତୁମ୍ଭମାନଙ୍କୁ ଭଲ ପାଉଥାଆନ୍ତା, ଯେପରି
ଏହା ନିଜ ଲୋକକୁ ଭଲ ପାଏ। କିନ୍ତୁ ମୁଁ ତୁମକୁ ଜଗତ
ଭିତରୁ ବାଛିଚି। ତେଣୁ ତୁମେ ଏ ଜଗତର ନୁହଁ।
ସେଥିପାଇଁ ଜଗତ ତୁମକୁ ଘୃଣା କରେ। ୨୦ମୁଁ ତୁମକୁ
ଯାହା କହିଥିଲି ତାହା ମନେ ରଖ: ଜଣେ ଚାକର ତାର
ମୁନିବଠାରୁ ବଡ ନୁହେଁ। ଯଦି ଲୋକମାନେ ମୋତେ
ତାଡ଼ନା କଲେ ତେବେ ସେମାନେ ତୁମକୁ ମଧ୍ୟ ତାଡ଼ନା
କରିବେ। ଯଦି ସେମାନେ ମୋର ଉପଦେଶ ମାନିଲେ,
ତେବେ ତୁମର ଉପଦେଶ ମଧ୍ୟ ମାନିବେ। ୨୧ଲୋକମାନେ
ମୋ ଯୋଗୁ ତୁମ ପ୍ରତି ଏଭଳି ବ୍ୟବହାର କରିବେ।
କାରଣ ସେମାନେ ମୋର ପ୍ରେରଣକର୍ତ୍ତାଙ୍କୁ ଜାଣନ୍ତି ନାହିଁ।
୨୨ମୁଁ ଯଦି ଆସି ନଥାନ୍ତି ଓ ଏଜଗତର ଲୋକମାନଙ୍କୁ
କହିନଥାନ୍ତି, ତେବେ ସେମାନେ ପାପରେ ଦୋଷୀ ବୋଲି
ବିବେଚିତ ହୁଅନ୍ତେ ନାହିଁ। କିନ୍ତୁ ମୁଁ ବର୍ତ୍ତମାନ ସେମାନଙ୍କୁ
କହିଛି। ତେଣୁ ତାହାଙ୍କ ପାପ ପାଇଁ ସେମାନଙ୍କ ପାଖରେ
କୌଣସି ଆଳ ନାହିଁ। ୨୩ମୋତେ ଘୃଣା କରୁଥିବା ବ୍ୟକ୍ତି
ମୋର ପରମପିତାଙ୍କୁ ମଧ୍ୟ ଘୃଣା କରେ। ୨୪ମୁଁ ଯେଉଁ
ଆଶ୍ଚର୍ଯ୍ୟକାର୍ଯ୍ୟ ସେ ଲୋକମାନଙ୍କ ମଧ୍ୟରେ କରିଛି, ତାହା
କୌଣସି ଲୋକ କେବେ କରିନାହିଁ। ଯଦି ମୁଁ ସେହି
କାର୍ଯ୍ୟ କରିନଥାନ୍ତି, ତେବେ ସେମାନେ ପାପଦ୍ୱାରା ଦୋଷୀ
ସାବ୍ୟସ୍ତ ହୋଇନଥାଆନ୍ତେ। କିନ୍ତୁ ସେମାନେ ମୋର ସେହି
ଆଶ୍ଚର୍ଯ୍ୟକାର୍ଯ୍ୟ କରିବା ଦେଖିଛନ୍ତି। ତଥାପି ସେମାନେ
ମୋତେ ଓ ପରମପିତାଙ୍କୁ ଘୃଣା କରନ୍ତି। ୨୫ଏସବୁ ଘଟିବା
ଦ୍ୱାରା ତାହାଙ୍କ ବିଧି ବ୍ୟବସ୍ଥାରେ ଯାହା ଲେଖାଥିଲା ତାହା
ସତ୍ୟ ହେଲା: 'ସେମାନେ ମୋତେ ବିନା କାରଣରେ ଘୃଣା
କଲେ।'*

୨୬"ମୁଁ ପରମପିତାଙ୍କପାଖରୁ ତୁମ୍ଭମାନଙ୍କ ନିକଟକୁ ସେହି
ସାହାଯ୍ୟକାରୀଙ୍କୁ ପଠାଇବି। ସେହି ସାହାର୍ଯ୍ୟକାରୀ ସତ୍ୟମୟ
ଆତ୍ମା ଅଟନ୍ତି। ସେ ପରମପିତାଙ୍କ ପାଖରୁ ଆସନ୍ତି। ସେ
ଯେତେବେଳେ ଆସିବେ, ସେ ମୋ ବିଷୟରେ କହିବେ।
୨୭ତୁମେ ମୋ ବିଷୟରେ ଲୋକମାନଙ୍କୁ ମଧ୍ୟ କହିବ,
କାରଣ ତୁମେମାନେ ପ୍ରଥମରୁ ମୋ ସହିତ ରହିଛ।

**୧୬** "ମୁଁ ତୁମକୁ ଏହିସବୁ କଥା କହିଛି, ଯେପରି
ଲୋକମାନେ ତୁମର ବିଶ୍ୱାସ ନଷ୍ଟ କରି ନ
ପାରନ୍ତି। ୨ତୁମମାନଙ୍କୁ ଲୋକମାନେ ସେମାନଙ୍କର ପ୍ରାର୍ଥନା-
ଗୃହଗୁଡ଼ିକରୁ ବାହାର କରିଦେବେ। ହଁ, ଏପରି ସମୟ
ଆସୁଛି ଯେତେବେଳେ ଲୋକମାନେ ଭାବିବେ ଯେ ତୁମକୁ
ବଧ କରିବା ଦ୍ୱାରା ସେମାନେ ପରମେଶ୍ୱରଙ୍କ ସେବା
କରୁଛନ୍ତି। ୩କାରଣ ସେମାନେ ପରମପିତାଙ୍କୁ ଜାଣି ନାହାଁନ୍ତି
ଓ ସେମାନେ ମୋତେ ମଧ୍ୟ ଜାଣି ନାହାଁନ୍ତି। ୪ମୁଁ ତୁମକୁ
ଏସବୁ କଥା ବର୍ତ୍ତମାନ କହିଛି, ତେଣୁ ଯେତେବେଳେ
ଏସବୁ ଘଟିବାର ସମୟ ଆସିବ, ସେତେବେଳେ ତୁମ୍ଭେମାନେ
ମନେ ପକାଇବ ଯେ ମୁଁ ତୁମକୁ ସତର୍କ କରିଥିଲି।

### ପବିତ୍ରଆତ୍ମାଙ୍କର କାର୍ଯ୍ୟ

"ମୁଁ ତୁମ୍ଭମାନଙ୍କ ସହିତ ଥିବାବେଳେ ଆରମ୍ଭରୁ ଏସବୁ
କଥା ତୁମମାନଙ୍କୁ କହି ନଥିଲି। ୫ବର୍ତ୍ତମାନ ମୁଁ ମୋର
ପ୍ରେରଣକର୍ତ୍ତାଙ୍କ ପାଖକୁ ଯାଉଛି। କିନ୍ତୁ ତୁମ୍ଭମାନଙ୍କ ମଧ୍ୟରୁ
ମୋତେ କେହି ପଚାରୁନାହିଁ, "ତୁମେ କେଉଁଆଡେ ଯାଉଛ?"
୬ତୁମମାନଙ୍କ ହୃଦୟ ଦୁଃଖରେ ପରିପୂର୍ଣ୍ଣ କାରଣ ମୁଁ ତୁମକୁ
ଏସବୁ କହିଲି। ୭କିନ୍ତୁ ମୁଁ ତୁମକୁ ସତ୍ୟ କହୁଛି ଯେ
ମୋର ଚାଲିଯିବା ତୁମମାନଙ୍କ ପାଇଁ ମଙ୍ଗଳଜନକ ଅଟେ।
କାରଣ ମୁଁ ଚାଲିଗଲାପରେ, ମୁଁ ତୁମପାଖକୁ ସେହି
ସାହାଯ୍ୟକାରୀଙ୍କୁ ପଠାଇବି। କିନ୍ତୁ ଯଦି ମୁଁ ନ ଯାଏ,
ତେବେ ସାହାର୍ଯ୍ୟକାରୀ ଆସିବେ ନାହିଁ। ୮"ସେ ଯେତେବେଳେ
ଆସିବେ, ସେତେବେଳେ ସେ ଜଗତର ଲୋକମାନଙ୍କୁ ଏହି
କଥାଗୁଡ଼ିକର ସତ୍ୟତା ବିଷୟରେ, ପାପ ବିଷୟରେ,
ଈଶ୍ୱରଙ୍କଠାରେ ଧାର୍ମିକତା ବିଚାର ଇତ୍ୟାଦି ବିଷୟରେ
ପ୍ରମାଣ ଦେବେ। ୯ସେହି ସାହାଯ୍ୟକାରୀ ପ୍ରମାଣ ଦେବେ
ଯେ ଲୋକମାନଙ୍କଠାରେ ପାପ ରହିଛି, କାରଣ ସେମାନେ
ମୋଠାରେ ବିଶ୍ୱାସ କରନ୍ତି ନାହିଁ। ୧୦ପରମେଶ୍ୱରଙ୍କ ସହିତ
ମୋର ସୁସଂପର୍କ ସମ୍ବନ୍ଧରେ ସେ ସେମାନଙ୍କୁ ପ୍ରମାଣ
ଦେବେ, କାରଣ ମୁଁ ପରମପିତାଙ୍କ ପାଖକୁ ଯାଉଛି।
ତା'ପରେ ଆଉ ତୁମେ ମୋତେ ଦେଖିବ ନାହିଁ। ୧୧ସେହି
ସାହାଯ୍ୟକାରୀ ବିଚାରର ସତ୍ୟତା ବିଷୟରେ ଜଗତକୁ
ପ୍ରମାଣ ଦେବେ, କାରଣ ଏହି ଜଗତର ଶାସକର ବିଚାର
ହୋଇ ସାରିଲାଣି।

୧୨"ମୋର ତୁମକୁ କହିବା ପାଇଁ ବହୁତ କଥା ଅଛି।
କିନ୍ତୁ ସେତେ ମାତ୍ରାରେ ସେଗୁଡ଼ିକ ବର୍ତ୍ତମାନ ତୁମେ ଗ୍ରହଣ
କରିପାରିବ ନାହିଁ। ୧୩କିନ୍ତୁ ଯେତେବେଳେ ସତ୍ୟମୟ ଆତ୍ମା
ଆସିବେ, ସେତେବେଳେ ସେ ତୁମକୁ ସମସ୍ତ ସତ୍ୟ
ପଥରେ କଢ଼ାଇନେବେ। ସେ ତାହାଙ୍କ ନିଜର କଥା
କହିବେ ନାହିଁ। ସେ କେବଳ ଯାହା ଶୁଣିବେ, ତାହା
କହିବେ। ସେ ତୁମକୁ ଭବିଷ୍ୟତର ଘଟଣା ବିଷୟରେ
କହିବେ। ୧୪ପବିତ୍ରଆତ୍ମା ମୋ ପାଇଁ ଗୌରବ ଆଣିବେ।
ସେ ମୋଠାରୁ ସମସ୍ତ ସତ୍ୟବିଷୟ ଗ୍ରହଣ କରି ତୁମକୁ
କହିବେ। ୧୫ପରମପିତାଙ୍କର ସବୁ କିଛି ମୋର। ସେଥିପାଇଁ
ମୁଁ କହିଲି, ପବିତ୍ରଆତ୍ମା ମୋଠାରୁ ସବୁ ନେଇ ତୁମକୁ
କହିବେ।

### ଦୁଃଖ ସୁଖରେ ପରିଣତ ହେବ।

୧୬"ତୁମେ ମୋତେ ଅଳ୍ପ ସମୟ ପରେ ଆଉ ଦେଖିବ
ନାହିଁ। ତା'ପରେ ଆଉ ଅଳ୍ପ ସମୟ ପରେ ତୁମେ ମୋତେ
ପୁଣି ଦେଖିବ।"

୧୭କେତେଜଣ ଶିଷ୍ୟ ପରସ୍ପରକୁ କହିଲେ, "ଯୀଶୁଙ୍କର
ଏପରି କହିବା ଅର୍ଥ କ'ଣ, 'ଅଳ୍ପ ସମୟ ପରେ ତୁମେ
ମୋତେ ଦେଖି ପାରିବ ନାହିଁ। ପୁଣି ଆଉ ଅଳ୍ପକ୍ଷଣ ପରେ

---

**'ସେମାନେ ... କଲେ'** ଗୀତସଂହିତା ୩୫:୧୯, ୬୯:୪

ତୁମେ ମୋତେ ଦେଖିପାରିବ।" ପିତାଙ୍କ ନିକଟକୁ ଯିବାର
ଅର୍ଥ କ'ଣ? ତାହାଙ୍କ କଥାର ଅର୍ଥ ତ ଆମେ କିଛି ବୁଝି
ପାରୁନାହୁଁ। ୧୮ଶିଷ୍ୟମାନେ ପଚାରିଲେ, ତାହାଙ୍କ କହିବା
ଅନୁସାରେ "ସେହି 'ଅଳ୍ପ ସମୟର ଅର୍ଥ କ'ଣ?' ସେ
ଏପରି କ'ଣ କହୁଛନ୍ତି ଆମେ ବୁଝିପାରୁନାହୁଁ।"
୧୯ଯୀଶୁ ଜାଣିଲେ ଯେ ଶିଷ୍ୟମାନେ ତାହାଙ୍କୁ ଏ
ବିଷୟରେ ପଚାରିବା ପାଇଁ ଇଚ୍ଛା କରୁଛନ୍ତି। ତେଣୁ ସେ
ଶିଷ୍ୟମାନଙ୍କୁ କହିଲେ, "ମୋ କଥାର ଅର୍ଥ କ'ଣ, ତାହା
ତୁମେ ପରସ୍ପରକୁ ପଚାରୁଛ।" ମୁଁ କହିଲି, "ଅଳ୍ପକ୍ଷଣ
ପରେ ତୁମେ ମୋତେ ଦେଖିପାରିବ ନାହିଁ ଓ ପୁଣି ଆଉ
ଅଳ୍ପ ସମୟ ପରେ ତୁମେ ମୋତେ ଦେଖିପାରିବ। ୨୦ମୁଁ
ତୁମକୁ ସତ୍ୟ କହୁଛି, ତୁମେ କାନ୍ଦିବ, ଓ ଦୁଃଖିତ ହେବ,
କିନ୍ତୁ ଜଗତ ଆନନ୍ଦିତ ହେବ। ତୁମେ ଦୁଃଖୀ ହେବ, କିନ୍ତୁ
ତୁମର ଦୁଃଖ ଆନନ୍ଦରେ ପରିଣତ ହେବ, ୨୧ଯେତେବେଳେ
ଜଣେ ସ୍ତ୍ରୀଲୋକ ଗୋଟିଏ ସନ୍ତାନକୁ ଜନ୍ମ ଦିଏ, ସେ
ଯନ୍ତ୍ରଣା ଭୋଗ କରେ କାରଣ ତାର ଜନ୍ମ ଦେବାର ସମୟ
ଆସିଯାଏ। କିନ୍ତୁ ତାର ସନ୍ତାନ ଜନ୍ମ ହେବା ପରେ ସେ
କଷ୍ଟ ଭୁଲିଯାଏ। ଜଗତରେ ସନ୍ତାନଟିଏ ଜନ୍ମ ହୋଇଥିବା
କାରଣରୁ ସେ ଏବେ ଖୁସି ଅନୁଭବ କରେ। ୨୨ଏହିପରି
ତୁମ କ୍ଷେତ୍ରରେ ମଧ୍ୟ ତାହା ଘଟିବ। ବର୍ତ୍ତମାନ ତୁମେ
ଦୁଃଖୀତ। କିନ୍ତୁ ମୁଁ ତୁମକୁ ପୁଣି ଭେଟିବି, ଓ ତୁମେ ଖୁସି
ହେବ। କେହି ତୁମର ଆନନ୍ଦ ନେଇ ଯିବ ନାହିଁ।
୨୩ସେହିଦିନ ତୁମେ ମୋତେ କିଛି ମାଗିବ ନାହିଁ। ମୁଁ
ତୁମକୁ ସତ୍ୟ କହୁଛି, ମୋ ନାମରେ ତୁମେ ଯାହା
ପରମପିତାଙ୍କୁ ମାଗିବ, ସେ ତାହା ଦେବେ। ୨୪ଏପର୍ଯ୍ୟନ୍ତ
ତୁମେ ମୋ ନାମରେ କିଛି ମାଗି ନାହଁ। ମାଗ, ତୁମ୍ଭେମାନେ
ପାଇବ ଓ ତୁମର ଆନନ୍ଦ ପରିପୂର୍ଣ୍ଣ ହେବ।

### ପୃଥିବୀ ଉପରେ ବିଜୟ

୨୫"ମୁଁ ତୁମକୁ ସାଙ୍କେତିକ ଭାବରେ ଏ ସମସ୍ତ ବିଷୟ
କହିଛି। କିନ୍ତୁ ସମୟ ଆସୁଛି, ଯେତେବେଳେ ମୁଁ ତୁମକୁ
ଏସବୁ ଏପରି ଭାବରେ କହିବି ନାହିଁ। ମୁଁ ତୁମକୁ
ପରମପିତାଙ୍କ ବିଷୟରେ ସରଳ ଭାଷାରେ କହିବି। ୨୬ତୁମେ
ସେହିଦିନ ପରମପିତାଙ୍କୁ ମୋ ନାମରେ ଅନେକ ବିଷୟ
ମାଗିବ। ମୁଁ କହୁଛି, ତୁମ ପାଇଁ ମୋତେ ପରମପିତାଙ୍କୁ
କିଛି କହିବାର ଆବଶ୍ୟକତା ପଡିବ ନାହିଁ। ୨୭ପରମପିତା
ତୁମକୁ ପ୍ରେମ କରନ୍ତି। ସେ ତୁମକୁ ପ୍ରେମ କରନ୍ତି କାରଣ
ତୁମେ ମୋତେ ପ୍ରେମ କରିଛ। ସେ ତୁମକୁ ପ୍ରେମ କରନ୍ତି
କାରଣ ମୁଁ ପରମେଶ୍ୱରଙ୍କ ଠାରୁ ଆସିଛି ବୋଲି ତୁମେ
ବିଶ୍ୱାସ କରିଛ। ୨୮ମୁଁ ଏହି ଜଗତକୁ ପରମପିତାଙ୍କଠାରୁ
ଆସିଛି। ବର୍ତ୍ତମାନ ମୁଁ ଏହି ପୃଥିବୀ ଛାଡି ପରମେଶ୍ୱରଙ୍କ
ପାଖକୁ ଫେରିଯାଉଛି।"
୨୯ଯୀଶୁଙ୍କର ଶିଷ୍ୟମାନେ କହିଲେ, "ତୁମେ ବର୍ତ୍ତମାନ
ଆମକୁ ସ୍ପଷ୍ଟ ଭାବରେ କହୁଛ। ବୁଝି ନ ପାରିଲା ଭଳି
କଷ୍ଟକର ଶବ୍ଦ ତୁମେ କହୁନାହଁ। ୩୦ଆମେ ବର୍ତ୍ତମାନ
ଦେଖି ପାରୁଛୁ ଯେ ତୁମେ ସବୁ କିଛି ଜାଣ। ତୁମେ
ଜଣଙ୍କୁ ତା'ର ପ୍ରଶ୍ନ ପଚାରିବା ପୂର୍ବରୁ ଉତ୍ତର କହିପାର।
ଏହା ଦ୍ୱାରା ଆମର ବିଶ୍ୱାସ ହୋଇଛି ଯେ ତୁମେ
ପରମେଶ୍ୱରଙ୍କ ଠାରୁ ଆସିଛ।"
୩୧ଯୀଶୁ କହିଲେ, "ତେବେ ବର୍ତ୍ତମାନ ତୁମେ ବିଶ୍ୱାସ
କରୁଛ? ୩୨ଶୁଣ! ସମୟ ଆସୁଛି ଯେତେବେଳେ ତୁମେ
ଛିନ୍ନ-ଭିନ୍ନ ହୋଇଯିବ। ତୁମମାନଙ୍କୁ ମଧ୍ୟରୁ ପ୍ରତ୍ୟେକ ନିଜ
ନିଜର ଘର ଭିତରକୁ ଛିନ୍ନ-ଭିନ୍ନ ହୋଇ ଚାଲିଯିବ। ସେହି
ସମୟ ଆସି ପହଞ୍ଚିଛି। ତୁମେ ମୋତେ ଏକାକୀ ଛାଡି
ଦେବ। ମୁଁ ଏକୁଟିଆ ଥିବି। କିନ୍ତୁ ମୁଁ କଦାପି ଏକୁଟିଆ
ନୁହେଁ, କାରଣ ପରମପିତା ସବୁବେଳେ ମୋ ସହିତ
ଅଛନ୍ତି। ୩୩ମୋ'ଠାରେ ତୁମେମାନେ ଯେପରି ଶାନ୍ତି ପାଇବ,
ଏଥିପାଇଁ ମୁଁ ତୁମମାନଙ୍କୁ ଏସମସ୍ତ କଥା କହିଲି। ଏହି
ଜଗତରେ ତୁମେ କଷ୍ଟ ପାଇବ। କିନ୍ତୁ ସାହସୀ ହୁଅ ମୁଁ
ଜଗତକୁ ଜୟ କରିଛି।"

### ଯୀଶୁ ତାହାଙ୍କର ଶିଷ୍ୟମାନଙ୍କ ପାଇଁ ପ୍ରାର୍ଥନା କରନ୍ତି

୧୭ ଯୀଶୁ ଏସମସ୍ତ କଥା କହିସାରିବା ପରେ ସ୍ୱର୍ଗ
ଆଡ଼େ ଚାହିଁଲେ। ସେ ପ୍ରାର୍ଥନା କଲେ, "ହେ
ପରମପିତା, ବର୍ତ୍ତମାନ ସମୟ ଉପସ୍ଥିତ ହୋଇଛି। ତୁମେ
ତୁମର ପୁତ୍ରଙ୍କୁ ଗୌରବ ଦିଅ, ଯେପରି ପୁତ୍ର ତୁମକୁ
ଗୌରବ ଦେଇ ପାରିବେ। ୨ତୁମେ ତାହାଙ୍କୁ ସମସ୍ତ
ଲୋକଙ୍କ ଉପରେ କ୍ଷମତା ଦେଇଛ। ଯେପରି ତୁମେ
ତାହାଙ୍କୁ ଯେଉଁମାନଙ୍କ ପାଇଁ ଦେଇଛ, ସେସମସ୍ତଙ୍କୁ ସେହି
ପୁତ୍ର ଅନନ୍ତ-ଜୀବନ ଦିଅନ୍ତି। ୩ତୁମେ ଯେ ଏକମାତ୍ର ସତ୍ୟ
ପରମେଶ୍ୱର, ତୁମ୍ଭଙ୍କୁ ଓ ଯାହାଙ୍କୁ ତୁମେ ପଠାଇଛ, ସେହି
ଯୀଶୁ ଖ୍ରୀଷ୍ଟଙ୍କୁ ଜାଣିବା ହିଁ ଅନନ୍ତ ଜୀବନ ଅଟେ। ୪ତୁମେ
ମୋତେ ଯେଉଁ କାମ ଦେଇଥିଲ ତାହା ମୁଁ କରିସାରିଛି।
ମୁଁ ତୁମକୁ ଏ ସଂସାରରେ ଗୌରବାନ୍ୱିତ କରିଛି। ୫ବର୍ତ୍ତମାନ,
ପରମପିତା ତୁମର ଉପସ୍ଥିତିରେ ମୋତେ ଗୌରବ ଦିଅ।
ଜଗତ ଆରମ୍ଭ ହେବାପୂର୍ବରୁ, ମୋର ତୁମ ସହିତ ଯେଉଁ
ଗୌରବ ଥିଲା, ସେହି ଗୌରବ ତୁମେ ମୋତେ ଦିଅ।
୬"ତୁମେ ପୃଥିବୀର କେତେକ ଲୋକଙ୍କୁ ମୋତେ
ଦେଲ। ମୁଁ ସେମାନଙ୍କଠାରେ ତୁମକୁ ପ୍ରକାଶ କରିଛି।
ସେମାନେ ତୁମର ଥିଲେ, ଓ ତୁମେ ସେମାନଙ୍କୁ ମୋତେ
ଦେଲ। ସେମାନେ ତୁମର ଶିକ୍ଷା ପାଳନ କରିଛନ୍ତି।
୭ବର୍ତ୍ତମାନ ସେମାନେ ଜାଣନ୍ତି, ତୁମେ ମୋତେ ଯାହା ସବୁ
ଦେଇଛ, ସେ ସବୁ ତୁମ ପାଖରୁ ଆସେ। ୮ମୋତେ ତୁମେ
ଯେଉଁ ଉପଦେଶ ଦେଇଥିଲ, ମୁଁ ସେହି ଉପଦେଶ ଏହି
ଲୋକଙ୍କୁ ଦେଇଛି। ସେମାନେ ତାହା ଗ୍ରହଣ କରିଛନ୍ତି।
ସେମାନେ ଜାଣି ପାରିଲେ ଯେ, ମୁଁ ପ୍ରକୃତରେ ତୁମଠାରୁ
ଆସିଛି ଓ ତୁମେ ମୋତେ ପଠାଇଛ ବୋଲି ସେମାନେ
ବିଶ୍ୱାସ କରିଛନ୍ତି। ୯ମୁଁ ସେମାନଙ୍କ ପାଇଁ ଏବେ ପ୍ରାର୍ଥନା
କରୁଛି। ମୁଁ ପୃଥିବୀର ଲୋକମାନଙ୍କପାଇଁ ପ୍ରାର୍ଥନା କରୁ
ନାହିଁ। ମୁଁ ସେହିମାନଙ୍କ ପାଇଁ ପ୍ରାର୍ଥନା କରୁଛି, ଯେଉଁମାନଙ୍କୁ
ତୁମେ ମୋତେ ଦେଇଥିଲ। କାରଣ ସେମାନେ ତୁମର
ଅଟନ୍ତି। ୧୦ମୋର ଯାହା ସବୁ ଅଛି, ସବୁ ତୁମର ଏବଂ
ତୁମର ଯାହା ଅଛି, ସବୁ ମୋର। ଏହି ଲୋକମାନେ
ମୋତେ ଗୌରବାନ୍ୱିତ କରନ୍ତି। ୧୧ମୁଁ ବର୍ତ୍ତମାନ ତୁମ

ପାଖକୁ ଆସୁଛି। ମୁଁ ବର୍ତ୍ତମାନ ଜଗତରେ ଆଉ ରହିବି
ନାହିଁ। କିନ୍ତୁ ଏହି ଲୋକମାନେ ଜଗତରେ ରହିଛନ୍ତି। ହେ
ପବିତ୍ର ପରମପିତା, ତୁମେ ସେମାନଙ୍କୁ ନିରାପଦରେ ରଖ।
ତୁମ ନାମର ଶକ୍ତି ଦ୍ୱାରା ସେମାନଙ୍କୁ ନିରାପଦରେ ରଖ
(ଯେଉଁ ନାମ ତୁମେ ମୋତେ ଦେଇଥିଲ)। ଯେପରି ତୁମେ
ଓ ମୁଁ ଏକ, ସେମାନେ ସେହିପରି ଏକ ହୋଇ ପାରିବେ।
୧୨ମୁଁ ଯେତେବେଳେ ସେମାନଙ୍କ ସହିତ ଥିଲି, ମୁଁ ସେମାନଙ୍କୁ
ନିରାପଦରେ ରଖିଥିଲି। ମୁଁ ତୁମ ନାମର ଶକ୍ତି ବଳରେ
ସେମାନଙ୍କୁ ନିରାପଦରେ ରଖିଥିଲି। ସେହି ନାମ ତୁମେ
ମୋତେ ଦେଇଥିଲ। ମୁଁ ସେମାନଙ୍କୁ ସୁରକ୍ଷିତ କଲି।
ସେମାନଙ୍କ ଭିତରୁ କେବଳ ଜଣେ(ଯିହୂଦା) ବିନାଶ ପାଇଁ
ଉଦ୍ଦିଷ୍ଟ ଥିଲା। ଧର୍ମଶାସ୍ତ୍ର ଯେପରି ସଫଳ ହୁଏ ସେଥିପାଇଁ
ସେ ନଷ୍ଟ ହେଲା।

୧୩"ମୁଁ ତୁମପାଖକୁ ଏବେ ଆସୁଛି। କିନ୍ତୁ ମୁଁ ଜଗତରେ
ଥାଉ ଥାଉ ଏହିସବୁ ପାଇଁ ପ୍ରାର୍ଥନା କରୁଛି। ମୁଁ ଏହିସବୁ
କହେ, ଯେପରି ଏହି ଲୋକମାନେ ମୋଠାରେ ଥିବା
ଆନନ୍ଦ ପାଇ ପାରିବେ। ମୁଁ ଚାହେଁ, ସେମାନେ ସେମାନଙ୍କ
ଭିତରେ ମୋର ପୂର୍ଣ୍ଣ-ଆନନ୍ଦ ପାଆନ୍ତୁ। ୧୪ମୁଁ ସେମାନଙ୍କୁ
ତୁମର ଉପଦେଶ ଦେଇଛି। ଏହି ଜଗତର ଲୋକମାନେ
ତାହାଙ୍କୁ ଘୃଣା କରେ। ଜଗତ ଏହି ଲୋକମାନଙ୍କୁ ଘୃଣା
କରେ, କାରଣ ସେମାନେ ଜଗତର ନୁହଁନ୍ତି ଓ ଯେପରି
ମୁଁ ମଧ୍ୟ ଏହି ପୃଥିବୀର ନୁହେଁ। ୧୫ମୁଁ ତୁମକୁ ସେମାନଙ୍କୁ
ଜଗତରୁ ନେଇଯିବାପାଇଁ କହୁନାହିଁ। ମୁଁ ତୁମକୁ ସେମାନଙ୍କୁ
ପାପାତ୍ମା(ଶୟତାନ) ଠାରୁ ନିରାପଦରେ ରଖିବା ପାଇଁ କହୁଛି।
୧୬ମୁଁ ଯେପରି ଜଗତର ନୁହେଁ, ସେମାନେ ସେହିପରି ଏହି
ଜଗତର ନୁହଁନ୍ତି। ୧୭ତେଣୁ ତୁମେ ତୁମର ସତ୍ୟ ଦ୍ୱାରା
ସେମାନଙ୍କୁ ତୁମର ସେବା ପାଇଁ ପ୍ରସ୍ତୁତ କରାଅ। ତୁମର
ଉପଦେଶ ହେଉଛି ସତ୍ୟ। ୧୮ମୁଁ ସେମାନଙ୍କୁ ଜଗତ
ମଧ୍ୟକୁ ପଠାଇ ଦେଇଛି ଯେପରି ତୁମେ ମୋତେ ଏହି
ଜଗତକୁ ପଠାଇଲ। ୧୯ମୁଁ ନିଜକୁ ସେବା ପାଇଁ ପ୍ରସ୍ତୁତ
କରୁଛି। ମୁଁ ସେମାନଙ୍କ ପାଇଁ ଏହା କରୁଛି ଯେହେତୁ
ସେମାନେ ତୁମର ସେବା ପାଇଁ ପ୍ରକୃତରେ ପ୍ରସ୍ତୁତ
ହୋଇପାରିବେ।

୨୦"ମୁଁ ଏହି ଲୋକମାନଙ୍କ ପାଇଁ ପ୍ରାର୍ଥନା କରେ ଓ
ଏହି ଲୋକମାନଙ୍କର ଶିକ୍ଷା ହେତୁ ମୋଠାରେ ବିଶ୍ୱାସ
କରିବାକୁ ଯାଉଥିବା ସମସ୍ତ ଲୋକମାନଙ୍କ ପାଇଁ ମଧ୍ୟ
ପ୍ରାର୍ଥନା କରୁଛି। ୨୧ହେ ପରମପିତା, ମୁଁ ତୁମଠାରେ
ପ୍ରାର୍ଥନା କରେ ଯେପରି ମୋ ଉପରେ ବିଶ୍ୱାସ ରଖୁଥିବା
ଲୋକମାନେ ଏକ ହୋଇପାରିବେ। ତୁମେ ମୋ'ଠାରେ
ରହିଛ ଓ ମୁଁ ତୁମଠାରେ ଅଛି। ମୁଁ ପ୍ରାର୍ଥନା କରେ, ଏହି
ଲୋକମାନେ ଆମଠାରେ ଯେପରି ଏକ ହୋଇ ପାରିବେ।
ତଦ୍ଦ୍ୱାରା ଜଗତ ବିଶ୍ୱାସ କରିବ, ଯେ ତୁମେ ମୋତେ
ପଠାଇଅଛ। ୨୨ମୋତେ ତୁମେ ଯେଉଁ ଗୌରବ ଦେଇଥିଲ,
ମୁଁ ତାହା ଏହି ଲୋକମାନଙ୍କୁ ଦେଇଛି। ଏହି ଗୌରବ
ଦେବାର କାରଣ ହେଉଛି ଯେ, ଯେପରି 'ତୁମେ ଓ ମୁଁ
ଏକ, ସେପରି ସେମାନେ ମଧ୍ୟ ଏକ ହୋଇପାରିବେ।'
୨୩ମୁଁ ସେମାନଙ୍କଠାରେ ରହିବି ଓ ତୁମେ ମୋଠାରେ
ରହିବ। ତେଣୁ ସେମାନେ ସଂପୂର୍ଣ୍ଣଭାବେ ଏକ ହୋଇପାରିବେ।
ତାହା ହେଲେ ପରେ ଜଗତ ଜାଣିପାରିବ ଯେ, ତୁମେ
ମୋତେ ପଠାଇଛ। ଏ ଜଗତ ଜାଣିବ ଯେ, ତୁମେ
ମୋତେ ଯେପରି ପ୍ରେମ କରୁଥିଲ ଠିକ୍ ସେହିପରି ଏହି
ଲୋକମାନଙ୍କୁ ମଧ୍ୟ ପ୍ରେମ କରୁଛ।

୨୪ହେ ପରମପିତା, ତୁମେ ମୋତେ ଯେଉଁ ଲୋକମାନଙ୍କୁ
ଦେଇଛ, ମୁଁ ଚାହେଁ, ମୁଁ ଥିବା ପ୍ରତ୍ୟେକ ସ୍ଥାନରେ
ସେମାନେ ମୋ ସହିତ ରୁହନ୍ତୁ। ମୁଁ ଇଚ୍ଛା କରେ,
ସେମାନେ ମୋର ଗୌରବ ଦେଖନ୍ତୁ। ଏହି ଗୌରବ ତୁମେ
ମୋତେ ଦେଇଛ, କାରଣ ତୁମେ ପୃଥିବୀ ସୃଷ୍ଟି ହେବା
ପୂର୍ବରୁ ମୋତେ ପ୍ରେମ କଲ। ୨୫ହେ ପରମପିତା ତୁମେ
ହେଉଛ ଉତ୍ତମ। ଏହି ଜଗତ ତୁମକୁ ଚିହ୍ନି ନାହିଁ କିନ୍ତୁ ମୁଁ
ତୁମକୁ ଚିହ୍ନେ। ଏହି ଲୋକମାନେ ଜାଣନ୍ତି ଯେ, ତୁମେ
ମୋତେ ପଠାଇଛ। ୨୬ତୁମେ କିପରି, ତାହା ମୁଁ,
ସେମାନଙ୍କଠାରେ ପ୍ରକାଶ କରିଛି। ଏବଂ ପୁନର୍ବାର
ସେମାନଙ୍କଠାରେ ପ୍ରକାଶ କରିବ। ତାପରେ ମୋ ପ୍ରତି
ତୁମର ଯେପରି ପ୍ରେମ ରହିଛି, ସେହିପରି ପ୍ରେମ ତାହାଙ୍କଠାରେ
ରହିବ ଓ ମୁଁ ସେମାନଙ୍କଠାରେ ବାସ କରିବ।"

## ଯୀଶୁ ବନ୍ଦୀ ହେଲେ

୧୮ ଯୀଶୁ ଏହି ପ୍ରାର୍ଥନା କରି ସାରିବା ପରେ,
ଶିଷ୍ୟମାନଙ୍କ ସହିତ ଚାଲିଗଲେ। ସେମାନେ
କିଦ୍ରୋଣ ଉପତ୍ୟକା ପାର ହୋଇଗଲେ। ଆର ପଟେ
ଜଲପାଇ ବୃକ୍ଷର ଗୋଟିଏ ବଗିଚା ଥିଲା। ଯୀଶୁ ଓ ତାହାଙ୍କ
ଶିଷ୍ୟମାନେ ସେଠାକୁ ଗଲେ।

୨ଯିହୂଦା ଏହି ସ୍ଥାନ ଜାଣିଥିଲା। କାରଣ ଯୀଶୁ ପ୍ରାୟ
ତାହାଙ୍କ ଶିଷ୍ୟମାନଙ୍କ ସହିତ ସେହି ସ୍ଥାନକୁ ଯାଉଥିଲେ।
ସେହି ଯିହୂଦା ହିଁ ଯୀଶୁଙ୍କ ବିରୁଦ୍ଧରେ ଗଲା। ୩ତେଣୁ ସେ
ଦଳେ ସୈନ୍ୟଙ୍କୁ ନେଇ ବଗିଚାକୁ ଗଲା। ସେ ମୁଖ୍ୟ
ଯାଜକ ଓ ଫାରୂଶୀମାନଙ୍କ ମଧ୍ୟରୁ କେତେକ ପ୍ରହରୀମାନଙ୍କୁ
ମଧ୍ୟ ଆଣିଥିଲା। ସେମାନେ ମଶାଲ, ଲଣ୍ଠନ ଓ ଅସ୍ତ୍ର-ଶସ୍ତ୍ର
ଆଣି ସେଠାରେ ପହଞ୍ଚିଲେ।

୪ତାହାଙ୍କପ୍ରତି କ'ଣ ଘଟିବ, ସେ କଥା ଯୀଶୁ ଆଗରୁ
ଜାଣିଥିଲେ। ସେ ସେମାନଙ୍କ ନିକଟକୁ ଯାଇ ପଚାରିଲେ,
"ତୁମେ କାହାକୁ ଖୋଜୁଛ?"

୫ସେହି ଲୋକମାନେ ଉତ୍ତର ଦେଲେ, 'ନାଜରିତୀୟ
ଯୀଶୁଙ୍କୁ।' ଯୀଶୁ କହିଲେ, 'ମୁଁ ନିଜେ ସେହି ଯୀଶୁ।'
(ଯୀଶୁଙ୍କ ବିରୁଦ୍ଧରେ ଯାଇଥିବା ଯିହୂଦା ମଧ୍ୟ ସେମାନଙ୍କ
ସହିତ ଠିଆ ହୋଇଥିଲା।) ୬ଯେତେବେଳେ ଯୀଶୁ କହିଲେ,
"ମୁଁ ଯୀଶୁ," ଲୋକମାନେ ପଛକୁ ଘୁଞ୍ଚିଯାଇ ତଳେ
ପଡ଼ିଗଲେ।

୭ଯୀଶୁ ସେମାନଙ୍କୁ ପୁଣି ଥରେ ପଚାରିଲେ, "ତୁମେ
କାହାକୁ ଖୋଜୁଛ?"

ସେମାନେ କହିଲେ, "ନାଜରିତୀୟ ଯୀଶୁଙ୍କୁ।"

୮ଯୀଶୁ କହିଲେ, "ମୁଁ ତ କହିଲି ଯେ ମୁଁ ସେହି
ଯୀଶୁ। ଯଦି ତୁମେ ମୋତେ ଖୋଜୁଛ, ତେବେ ଏହି ଅନ୍ୟ

ଲୋକମାନଙ୍କୁ ଏଠାରୁ ଯିବାକୁ ଛାଡ଼ିଦିଅ।” ୯ଏପରି ଘଟିଲା
ଯେହେତୁ ପୂର୍ବରୁ ତାହାଙ୍କ ଦ୍ୱାରା କଥିତ ବାଣୀ ସତ୍ୟ
ହେବ: “ମୁଁ ତୁମେ ଦେଇଥିବା ଜଣେ ଲୋକକୁ ମଧ୍ୟ
ହରେଇ ନାହିଁ।”
୧୦ଶିମୋନ ପିତରଙ୍କ ପାଖରେ ଗୋଟିଏ ଖଣ୍ଡା ଥିଲା।
ସେ ଖଣ୍ଡା ବାହାର କରି ମୁଖ୍ୟ ଯାଜକଙ୍କ ଚାକରକୁ
ଆଘାତ କଲେ। ସେ ଚାକରର ଡାହାଣ କାନ କଟି ଗଲା।
(ସେହି ଚାକରର ନାମ ମାଲ୍‌ଖ ଥିଲା।) ୧୧ଯୀଶୁ ପିତରଙ୍କୁ
କହିଲେ, “ତୁମେ ଖଣ୍ଡା ଖାପରେ ରଖି ଦିଅ। ପରମପିତା
ମୋତେ ଏହି ପିଆଲା ପିଇବାକୁ ଦେଇଛନ୍ତି, ମୁଁ ଏହା
ଗ୍ରହଣ କରିବା ଉଚିତ।

## ଯୀଶୁ ହାନାନଙ୍କ ଆଗକୁ ଅଣାଗଲେ

୧୨ତାପରେ, ସୈନ୍ୟମାନେ, ଓ ସେମାନଙ୍କ ସେନାପତିମାନେ
ଓ ଯିହୂଦୀମାନଙ୍କର ପ୍ରହରୀମାନେ ଯୀଶୁଙ୍କୁ ବନ୍ଦୀ କଲେ।
୧୩ସେମାନେ ତାହାଙ୍କୁ ବାନ୍ଧିଲେ ଓ ହାନାନଙ୍କ ନିକଟକୁ
ଘେନିଗଲେ। ହାନାନ କୟାଫାଙ୍କର ଶ୍ୱଶୁର ଥିଲେ। ସେହି
ବର୍ଷ କୟାଫା ମହାଯାଜକ ଥିଲେ। ୧୪କୟାଫା ଯିହୂଦୀମାନଙ୍କୁ
ପରାମର୍ଶ ଦେଇଥିଲେ, “ସବୁ ଲୋକମାନଙ୍କ ମଙ୍ଗଳ ପାଇଁ
ଜଣେ ପ୍ରାଣ ଦେବା ବରଂ ଭଲ।”

## ଯୀଶୁଙ୍କୁ ଜାଣିନାହାନ୍ତି ବୋଲି ପିତର ମିଥ୍ୟା କହିଲେ

୧୫ଶିମୋନ ପିତର ଓ ଅନ୍ୟ ଜଣେ ଶିଷ୍ୟ ଯୀଶୁଙ୍କ
ସହିତ ଗଲେ। ସେହି ଶିଷ୍ୟଜଣ ମହାଯାଜକଙ୍କୁ ଜାଣିଥିଲେ।
ତେଣୁ ସେ ଯୀଶୁଙ୍କ ସହିତ ମହାଯାଜକଙ୍କ ଘର ଅଗଣା
ପର୍ଯ୍ୟନ୍ତ ଗଲେ। ୧୬କିନ୍ତୁ ପିତର ଫାଟକ ବାହାରେ
ଅପେକ୍ଷା କଲେ। ମହାଯାଜକଙ୍କୁ ଜାଣିଥିବା ସେହି ଶିଷ୍ୟ
ଜଣକ ବାହାରକୁ ଫେରି ଆସିଲେ। ସେ ଫାଟକ ଜଗିଥିବା
ଦାସୀକୁ କହି ସେ ପିତରଙ୍କୁ ଭିତରକୁ ଆଣିଲେ। ୧୭ସେହି
ଦାସୀ ପିତରଙ୍କୁ ପଚାରିଲା, “ତୁମେ ବି କ’ଣ ଏହି
ଲୋକର ଶିଷ୍ୟମାନଙ୍କ ମଧ୍ୟରୁ ଜଣେ?”
ପିତର ଉତ୍ତର ଦେଲେ, “ନା, ମୁଁ ନୁହେଁ।”
୧୮ଶୀତ ହେଉଥିଲା। ଦାସ ଓ ପ୍ରହରୀମାନେ ନିଆଁ
ଜାଳିଥିଲେ। ସେମାନେ ନିଆଁ ଚାରିପଟେ ଠିଆ ହୋଇ
ଦେହକୁ ସେକୁଥିଲେ। ପିତର ମଧ୍ୟ ସେଠାରେ ସେମାନଙ୍କ
ସହିତ ଠିଆ ହୋଇ ଥିଲେ।

## ଯୀଶୁଙ୍କୁ ମହାଯାଜକଙ୍କ ପ୍ରଶ୍ନ

୧୯ମହାଯାଜକ ଯୀଶୁଙ୍କୁ ତାହାଙ୍କ ଶିଷ୍ୟମାନଙ୍କ ବିଷୟରେ
ପ୍ରଶ୍ନ ପଚାରିଲେ। ସେ ଯୀଶୁଙ୍କୁ ତାହାଙ୍କ ଶିକ୍ଷା ବିଷୟରେ
ପ୍ରଶ୍ନ କଲେ। ୨୦ଯୀଶୁ ଉତ୍ତର ଦେଲେ, “ମୁଁ ଲୋକମାନଙ୍କୁ
ସବୁବେଳେ ଖୋଲାଖୋଲି ଭାବେ ଶିକ୍ଷା ଦେଇଛି। ମୁଁ
ସର୍ବଦା ପ୍ରାର୍ଥନାଗୃହ ଓ ମନ୍ଦିରରେ ଶିକ୍ଷା ଦେଇ ଆସିଛି।
ସେଠାରେ ସବୁ ଯିହୂଦୀମାନେ ଏକତ୍ର ହୁଅନ୍ତି। ମୁଁ କୌଣସି
ବିଷୟ ଗୁପ୍ତ ଭାବରେ କହି ନାହିଁ। ୨୧ତୁମେ ମୋତେ
କାହିଁକି ପ୍ରଶ୍ନ ପଚାରୁଛ? ମୋର ଶିକ୍ଷା ଶୁଣିଥିବା ଲୋକଙ୍କୁ
ପଚାର, ମୁଁ କ’ଣ କହିଥିଲି, ସେମାନେ ଜାଣନ୍ତି।”
୨୨ଯୀଶୁ ଏହି କଥା କହିବାବେଳେ ଯୀଶୁଙ୍କ ପାଖରେ
ଠିଆ ହୋଇଥିବା ଜଣେ ପ୍ରହରୀ ତାହାଙ୍କୁ ପ୍ରହାର କଲା।
ସେ କହିଲା, “ତୁମେ ମହାଯାଜକଙ୍କୁ ସେପରି ଉତ୍ତର
ଦେବା ଉଚିତ ନୁହେଁ।”
୨୩ଯୀଶୁ ଉତ୍ତର ଦେଲେ, “ଯଦି ମୁଁ କିଛି ଭୁଲ କହିଲି
ତେବେ ଏଠାରେ ଥିବା ପ୍ରତ୍ୟେକଙ୍କୁ ମୋର ଭୁଲ ଜଣାଇଦିଅ।
ଯଦି ମୋର କହିବା ଠିକ୍, ତେବେ ମୋତେ ତୁମେ
କାହିଁକି ମାରିଲ?”
୨୪ତେଣୁ ହାନାନ ଯୀଶୁଙ୍କୁ ବନ୍ଧା ହୋଇଥିବା ଅବସ୍ଥାରେ
ମହାଯାଜକ କୟାଫାଙ୍କ ନିକଟକୁ ପଠାଇଦେଲେ।

## ପିତର ପୁନର୍ବାର ମିଥ୍ୟା କହିଲେ

୨୫ଶିମୋନ ପିତର ନିଆଁ ପାଖେ ଠିଆ ହୋଇ ସେକି
ହେଉଥିଲେ। ଅନ୍ୟ ଲୋକମାନେ ତାହାଙ୍କୁ ପଚାରିଲେ,
“ତୁମେ କ’ଣ ଏହି ଲୋକର ଶିଷ୍ୟମାନଙ୍କ ଭିତରୁ ଜଣେ?
କିନ୍ତୁ ପିତର ମନା କଲେ।
ସେ କହିଲେ, “ନା, ମୁଁ ନୁହେଁ।”
୨୬ମହାଯାଜକଙ୍କର ଜଣେ ଦାସ ସେଠାରେ ଥିଲା।
ପିତର ଯେଉଁ ଲୋକର କାନ କାଟିଦେଇଥିଲେ, ସେ
ସେହି ଦାସର ସମ୍ପର୍କୀୟ। ତେଣୁ ସେ କହିଲା, “ମୁଁ
ଭାବୁଛି, ମୁଁ ବଗିଚାରେ ଏହି ଲୋକ ସହିତ ତୁମକୁ
ଦେଖିଥିଲି।”
୨୭କିନ୍ତୁ ପିତର ପୁଣି ଥରେ କହିଲେ, “ନା, ମୁଁ
ତାହାଙ୍କ ସହିତ ନଥିଲି।” ଠିକ୍ ସେତିକିବେଳେ ଗୋଟିଏ
କୁକୁଡ଼ା ଡ଼ାକିଲା।

## ଯୀଶୁଙ୍କୁ ପୀଲାତଙ୍କ ସମ୍ମୁଖକୁ ଆଣାଗଲେ

୨୮ତା’ପରେ ସେମାନେ ଯୀଶୁଙ୍କୁ କୟାଫାଙ୍କ ଘରୁ ରୋମୀୟ
ରାଜ୍ୟପାଳଙ୍କ ନିଅରକୁ ନେଇଗଲେ। ସେତେବେଳେ ପାହାନ୍ତିଆ
ସମୟ। ଯିହୂଦୀମାନେ ନିଅର ଭିତରକୁ ଗଲେ ନାହିଁ।
ସେମାନେ ନିଜକୁ ଅପବିତ୍ର କରିବାପାଇଁ ଚାହୁଁ ନ ଥିଲେ,
କାରଣ ସେମାନେ ନିସ୍ତାରପର୍ବର ଭୋଜନ ଖାଇବା ପାଇଁ
ଚାହୁଁଥିଲେ। ୨୯ତେଣୁ ପୀଲାତ ନିଅର ବାହାରେ ଯିହୂଦୀମାନଙ୍କ
ପାଖକୁ ଗଲେ। ସେ ପଚାରିଲେ, “ଏହି ଲୋକ ବିରୁଦ୍ଧରେ
ତୁମ୍ଭମାନଙ୍କର ଅଭିଯୋଗ କ’ଣ?”
୩୦ସେମାନେ ଉତ୍ତର ଦେଲେ, “ସେ ଜଣେ ମନ୍ଦ
ଲୋକ। ସେଥିପାଇଁ ଆମେ ତାହାକୁ ତୁମ ନିକଟକୁ
ଆଣିଛୁ।”
୩୧ପୀଲାତ ଯିହୂଦୀମାନଙ୍କୁ କହିଲେ, “ତୁମେ ତାହାକୁ
ନେଇଯାଅ, ଓ ତୁମ ନିୟମ(ବ୍ୟବସ୍ଥା) ଅନୁସାରେ ତାହାର
ବିଚାର କର।” ଯିହୂଦୀମାନେ କହିଲେ, “କିନ୍ତୁ ଆପଣଙ୍କର
ଆଇନ ଅନୁସାରେ ଆମେ କାହାକୁ ମୃତ୍ୟୁଦଣ୍ଡ ଦେଇପାରିବୁ
ନାହିଁ।” ୩୨(ଏହାଦ୍ୱାରା ସେ କିପରି ମରିବେ, ସେ ବିଷୟରେ
ଯୀଶୁଙ୍କର ବାଣୀ ସତ୍ୟ ହେଲା।)
୩୩ତା’ପରେ ପୀଲାତ ନିଅର ଭିତରକୁ ଚାଲିଗଲେ। ସେ
ଯୀଶୁଙ୍କୁ ଆପଣା ନିକଟକୁ ଡାକିଲେ। ତାହାଙ୍କୁ ପଚାରିଲେ,
“ତୁମେ କ’ଣ ଯିହୂଦୀମାନଙ୍କର ରାଜା?”

୩୪ଯୀଶୁ କହିଲେ, “ଏହା ତୁମ ନିଜର ପ୍ରଶ୍ନ, ନା
ଅନ୍ୟମାନେ ତୁମକୁ ମୋ ବିଷୟରେ କହିଛନ୍ତି?”
୩୫ପୀଲାତ କହିଲେ, “ମୁଁ ଜଣେ ଯିହୂଦୀ ନୁହେଁ। ତୁମ
ନିଜର ଲୋକମାନେ ଓ ସେମାନଙ୍କର ପ୍ରଧାନଯାଜକମାନେ
ତୁମକୁ ମୋ ପାଖକୁ ଆଣିଛନ୍ତି। ତୁମେ କ’ଣ ଦୋଷ
କରିଛ?”
୩୬ଯୀଶୁ କହିଲେ, “ମୋର ରାଜ୍ୟ ଏ ଜଗତର ନୁହେଁ।
ଯଦି ଏହା ଜଗତର ହୋଇଥାନ୍ତା, ତେବେ ମୋର ଦାସମାନେ
ଯୁଦ୍ଧ କରିଥାଆନ୍ତେ ଓ ମୋତେ ଯିହୂଦୀମାନେ ଧରିପାରି ନ
ଥାନ୍ତେ। କିନ୍ତୁ ମୋ ରାଜ୍ୟ ଅନ୍ୟ ଏକ ସ୍ଥାନରେ।”
୩୭ପୀଲାତ କହିଲେ, “ତେବେ ତୁମେ ଜଣେ ରାଜା।”
ଯୀଶୁ ଉତ୍ତର ଦେଲେ, “ତୁମେ ମୋତେ ରାଜା ବୋଲି
କହୁଛ। ଏହା ସତ୍ୟ। ମୁଁ ଏଥିପାଇଁ ଜନ୍ମ ନେଇଛି।
ଲୋକମାନଙ୍କୁ ସତ୍ୟ ବିଷୟରେ କହିବା ପାଇଁ; ସେଥିପାଇଁ
ମୁଁ ଜଗତକୁ ଆସିଛି। ସତ୍ୟକୁ ଭଲପାଉଥିବା ପ୍ରତ୍ୟେକ
ଲୋକ ମୋ କଥା ଶୁଣନ୍ତି।”
୩୮ପୀଲାତ କହିଲେ, “ସତ୍ୟ କ’ଣ?” ସେ ଏହା
କହିବା ପରେ ପୁଣି ଯିହୂଦୀମାନଙ୍କ ପାଖକୁ ଗଲେ। ପୀଲାତ
କହିଲେ, “ଏହି ଲୋକ ବିରୁଦ୍ଧରେ କୌଣସି ଅଭିଯୋଗ ମୁଁ
ପାଉ ନାହିଁ। ୩୯ପ୍ରତ୍ୟେକ ବର୍ଷ ନିସ୍ତାର ପର୍ବ ବେଳେ
ମୋଠାରୁ ଜଣେ ବନ୍ଦୀର ମୁକ୍ତି ମାଗିବା ନିମନ୍ତେ ତୁମ୍ଭମାନଙ୍କର
ପ୍ରଥା ଅଛି। ତେଣୁ ତୁମେ ଯଦି ଚାହଁ, ମୁଁ ଏହି
‘ଯିହୂଦୀମାନଙ୍କ ରାଜା’ଙ୍କୁ ମୁକ୍ତି ଦେବି।”
୪୦ମାତ୍ର ଯିହୂଦୀମାନେ ଚିତ୍କାର କଲେ, “ନା, ଏ
ଲୋକକୁ ନୁହେଁ। ବାରବ୍ବାକୁ ମୁକ୍ତି ଦିଅ।” (ବାରବ୍ବା
ଜଣେ ଧର୍ମ ଦ୍ରୋହୀ ଥିଲା।)

୧୯ ତା’ପରେ ପୀଲାତ ଯୀଶୁଙ୍କୁ ନେଇ ଯାଇ କୋରଡ଼ା
ପ୍ରହାର କରିବା ପାଇଁ ଆଦେଶ ଦେଲେ।
୨ସୈନିକମାନେ କଣ୍ଟା ଗଛର ମୁକୁଟ ତିଆରି କରି ତାହାଙ୍କ
ମୁଣ୍ଡରେ ପିନ୍ଧାଇଲେ। ତା’ପରେ ସେମାନେ ତାହାଙ୍କୁ ବାଇଗଣୀ
ରଙ୍ଗର ପୋଷାକ ପିନ୍ଧାଇଲେ। ୩ସୈନିକମାନେ ଯୀଶୁଙ୍କ
ପାଖକୁ ବହୁତ ଥର ଆସିଲେ ଓ କହିଲେ, “ହେ!
ଯିହୂଦୀମାନଙ୍କ ରାଜା।” ସେମାନେ ଯୀଶୁଙ୍କୁ ଚାପୁଡ଼ା
ମାରିଲେ।
୪ପୀଲାତ ପୁଣି ଥରେ ବାହାରକୁ ଆସି ଯିହୂଦୀମାନଙ୍କୁ
କହିଲେ, “ବର୍ତ୍ତମାନ ମୁଁ ତାହାଙ୍କୁ ତୁମ୍ଭମାନଙ୍କ ଆଗକୁ
ଆଣୁଛି। ମୁଁ ତୁମ୍ଭମାନଙ୍କୁ ଜଣାଇ ଦେବାକୁ ଚାହେଁ ଯେ, ମୁଁ
ତାହାଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ପାଉ ନାହିଁ।”
୫ତାପରେ ଯୀଶୁ ବାହାରକୁ ଆସିଲେ। ସେ କଣ୍ଟାର ମୁକୁଟ
ଓ ବାଇଗଣୀ ରଙ୍ଗର ପୋଷାକ ପିନ୍ଧିଥିଲେ। ପୀଲାତ
କହିଲେ, “ଦେଖ, ସେହି ଲୋକ।”
୬ତାହାଙ୍କୁ ଦେଖିଲା ମାତ୍ରେ ପ୍ରଧାନ ଯାଜକଗଣ ଓ
ଯିହୂଦୀ ପ୍ରହରୀମାନେ ଚିତ୍କାର କଲେ, “ତାକୁ କ୍ରୁଶରେ
ଚଢ଼ାଇ ମାର, ତାକୁ କ୍ରୁଶରେ ଚଢ଼ାଇ ମାର।”
କିନ୍ତୁ ପୀଲାତ କହିଲେ, “ତୁମେମାନେ ତାହାଙ୍କୁ ନେଇ
କ୍ରୁଶରେ ଚଢ଼ାଇ ମାର, କିନ୍ତୁ ମୁଁ ତାହାଙ୍କ ବିରୁଦ୍ଧରେ
କୌଣସି ଅଭିଯୋଗ ପାଉ ନାହିଁ।”
୭ଯିହୂଦୀମାନେ ଉତ୍ତର ଦେଲେ, “ଆମର ବିଧିବ୍ୟବସ୍ଥା
ଅନୁସାରେ ସେ ମୃତ୍ୟୁଦଣ୍ଡ ପାଇବା ଉଚିତ କାରଣ ସେ
ନିଜକୁ ପରମେଶ୍ୱରଙ୍କର ପୁତ୍ର ବୋଲି କହିଅଛି।”
୮ପୀଲାତ ଏହା ଶୁଣି ଆହୁରି ଭୟଭୀତ ହେଲେ। ୯ସେ
ନିଅର ଭିତରକୁ ଫେରିଗଲେ ଓ ଯୀଶୁଙ୍କୁ ପଚାରିଲେ,
“ତୁମେ କେଉଁଠାରୁ ଆସିଛ?” ମାତ୍ର ଯୀଶୁ କିଛି ଉତ୍ତର
ଦେଲେ ନାହିଁ। ୧୦ପୀଲାତ କହିଲେ, “ତୁମେ କ’ଣ ମୋ
ସହିତ କଥା କହିବ ନାହିଁ? ମନେରଖ, ତୁମକୁ ମୁକ୍ତି
ଦେବାକୁ କିମ୍ବା କ୍ରୁଶରେ ଚଢ଼ାଇବାକୁ ମଧ୍ୟ ମୋର କ୍ଷମତା
ଅଛି।”
୧୧ଯୀଶୁ ଉତ୍ତର ଦେଲେ, “ମୋ’ ଉପରେ ଆପଣଙ୍କର
ଯେଉଁ କ୍ଷମତା ଅଛି ବୋଲି ଆପଣ କହୁଛନ୍ତି, କେବଳ
ସେହି କ୍ଷମତା ପରମେଶ୍ୱର ଆପଣଙ୍କୁ ଦେଇଅଛନ୍ତି। ତେଣୁ
ଯିଏ ମୋତେ ଆପଣଙ୍କ ପାଖରେ ସମର୍ପଣ କରିଛି, ତା’ର
ପାପ ଆହୁରି ଗୁରୁତର।”
୧୨ଏହାପରେ ପୀଲାତ ଯୀଶୁଙ୍କୁ ମୁକ୍ତି ଦେବାକୁ ଚେଷ୍ଟା
କଲେ। କିନ୍ତୁ ଯିହୂଦୀମାନେ ଚିତ୍କାର କରି କହିଲେ,
“ଆପଣ ଯଦି ଏ ବ୍ୟକ୍ତିକୁ ମୁକ୍ତ କରିଦିଅନ୍ତି, ତେବେ
ଆପଣ କାଇସରଙ୍କର ବନ୍ଧୁ ନୁହଁନ୍ତି। ଯିଏ ନିଜକୁ ରାଜା
ବୋଲି ଦାବୀ କରୁଛି, ସେ କାଇସରଙ୍କ ବିରୋଧୀ।”
୧୩ପୀଲାତ ଯିହୂଦୀମାନଙ୍କର ଏହି କଥା ଶୁଣିଲେ। ତେଣୁ
ସେ ଯୀଶୁଙ୍କୁ ‘ପ୍ରସ୍ତରମଣ୍ଡପ’ ନାମକ ସ୍ଥାନକୁ ଆଣିଲେ।
(ଯିହୂଦୀମାନଙ୍କ ଭାଷାରେ ଏହାର ନାମ ‘ଗବ୍ବଥା’ ଅଟେ)।
ପୀଲାତ ପ୍ରସ୍ତରମଣ୍ଡପରେ ଥିବା ବିଚାରାସନରେ ବସିଲେ।
୧୪ସେଦିନ ନିସ୍ତାରପର୍ବ ସପ୍ତାହର ପ୍ରସ୍ତୁତି ଦିନର ମଧ୍ୟାହ୍ନ
ସମୟ ଥିଲା। ପୀଲାତ ଯିହୂଦୀମାନଙ୍କୁ କହିଲେ, “ତୁମର
ରାଜାଙ୍କୁ ଦେଖ।”
୧୫ଯିହୂଦୀମାନେ ଚିତ୍କାର କଲେ, “ତାକୁ ଦୂରକୁ ନେଇଯାଅ।
ତାକୁ କ୍ରୁଶରେ କଣ୍ଟାବିଦ୍ଧ କରି ମାରିଦିଅ।”
ପୀଲାତ ଯିହୂଦୀମାନଙ୍କୁ ପଚାରିଲେ, “ତୁମେ କ’ଣ ଚାହଁ
ଯେ, ମୁଁ ତୁମ ରାଜାଙ୍କୁ କ୍ରୁଶରେ ଚଢ଼ାଇ ମାରିବି?”
ମୁଖ୍ୟ ଯାଜକମାନେ ଉତ୍ତର ଦେଲେ, “କାଇସର
କେବଳ ଆମର ରାଜା।”
୧୬ତେଣୁ ପୀଲାତ ଯୀଶୁଙ୍କୁ କ୍ରୁଶରେ ମାରିବାପାଇଁ ସେମାନଙ୍କ
ହାତରେ ସମର୍ପି ଦେଲେ।

## ଯୀଶୁ କ୍ରୁଶରେ ହତ ହେଲେ

ସୈନିକମାନେ ଯୀଶୁଙ୍କୁ ନେଇଗଲେ। ୧୭ଯୀଶୁ ତାହାଙ୍କ
ନିଜର କ୍ରୁଶ ବୋହି “କପାଳସ୍ଥଳ” ନାମକ ସ୍ଥାନକୁ ଗଲେ।
(ଏବ୍ରୀ ଭାଷାରେ ସେହିସ୍ଥାନକୁ ‘ଗଲଗଥା’ କହନ୍ତି।) ୧୮ସେହି
‘ଗଲଗଥା’ରେ ସେମାନେ ଯୀଶୁଙ୍କୁ କ୍ରୁଶବିଦ୍ଧ କଲେ। ଯୀଶୁଙ୍କୁ
ମଝିରେ ରଖି ତାହାଙ୍କର ଦୁଇ ପାର୍ଶ୍ୱରେ ଆଉ ଦୁଇଜଣଙ୍କୁ
ମଧ୍ୟ କ୍ରୁଶବିଦ୍ଧ କଲେ। ୧୯ପୀଲାତ ଗୋଟିଏ ସଙ୍କେତ ଲେଖି
ଯୀଶୁଙ୍କ କ୍ରୁଶରେ ଟଙ୍ଗେଇଲେ। ସେଥିରେ ଲେଖାଥିଲା,
“ନାଜରିତୀୟ ଯୀଶୁ, ଯିହୂଦୀମାନଙ୍କର ରାଜା।” ୨୦ଯୀଶୁଙ୍କର
କ୍ରୁଶବିଦ୍ଧ ହେବା ସ୍ଥାନ ନଗରର ନିକଟବର୍ତ୍ତୀ ହୋଇଥିବା
କାରଣରୁ ଅନେକ ଯିହୁଦୀ ସେହି ସଙ୍କେତ ପଢ଼ିଲେ। ଏହା

ଏବ୍ରୀ, ଲାଟିନ୍ ଓ ଗ୍ରୀକ୍ ଭାଷାରେ ଲେଖାହୋଇ ଥିଲା।
୨୧ମୁଖ୍ୟ ଯାଜକମାନେ ପିଲାତଙ୍କୁ କହିଲେ, "ଯିହୂଦୀମାନଙ୍କ
ରାଜା", ଏହି କଥା ଲେଖନ୍ତୁ ନାହିଁ। କିନ୍ତୁ ଏହି ଲୋକ
ନିଜକୁ 'ମୁଁ ଯିହୂଦୀମାନଙ୍କ ରାଜା ବୋଲି କହିଲା' ବୋଲି
ଲେଖନ୍ତୁ।
୨୨ପିଲାତ ଉତ୍ତର ଦେଲେ, "ମୁଁ ଯାହା ଲେଖିଛି, ତାହା
ପରିବର୍ତ୍ତନ କରିବି ନାହିଁ।"
୨୩ଯୀଶୁଙ୍କୁ କ୍ରୁଶବିଦ୍ଧ କଲାପରେ ସୈନିକମାନେ ତାହାଙ୍କର
ଲୁଗାପଟା ନେଇଗଲେ। ସେମାନେ ତାହାଙ୍କର ବସ୍ତ୍ର ଚାରି
ଭାଗ କଲେ। ପ୍ରତ୍ୟେକ ସୈନିକ ଗୋଟିଏ ଭାଗ ରଖିଲେ।
ସେମାନେ ତାହାଙ୍କର ପିନ୍ଧା ପୋଷାକ ମଧ୍ୟ ନେଇଗଲେ।
ଏହା ତଳୁ ଉପର ପର୍ଯ୍ୟନ୍ତ ବିନା ସିଲେଇରେ ଗୋଟିଏ
ପୋଷାକ ଥିଲା। ୨୪ତେଣୁ ସେମାନେ ପରସ୍ପର କଥା
ହେଲେ, "ଆମେ ଏହାକୁ ଚିରି ଭାଗ କରିବାନାହିଁ। ଏହା
କିଏ ପାଇବ, ତାହା ଜାଣିବାପାଇଁ ଆମେ ଗୁଲିବାଣ୍ଟ କରିବା
ଉଚିତ।" ଏହାଦ୍ୱାରା ଧର୍ମଶାସ୍ତ୍ରର ଉକ୍ତି ସତ୍ୟ ହେଲା:

"ସେମାନେ ନିଜ-ନିଜ ମଧ୍ୟରେ ମୋର ବସ୍ତ୍ର ଭାଗ
କଲେ ଓ ମୋର ପିନ୍ଧା ପୋଷାକ ପାଇଁ ଗୁଲିବାଣ୍ଟ
କଲେ।" ଗୀତସଂହିତା ୨୨:୧୮

ତେଣୁ ସୈନିକମାନେ ତାହା କଲେ।
୨୫ଯୀଶୁଙ୍କର ମା' ତାହାଙ୍କ କ୍ରୁଶ ନିକଟରେ ଠିଆ
ହୋଇଥିଲେ, ସେଠାରେ ତାହାଙ୍କର ମାଉସୀ, କ୍ଲୋପାଙ୍କ ସ୍ତ୍ରୀ
ମରିୟମ, ଓ ମଗ୍ଦଲୀନୀ ମରିୟମ ମଧ୍ୟ ଠିଆ ହୋଇଥିଲେ।
୨୬ଯୀଶୁ ତାହାଙ୍କ ମାଆଙ୍କୁ ଦେଖିଲେ। ସେ ତାହାଙ୍କର ଅତି
ପ୍ରିୟ ଶିଷ୍ୟକୁ ମଧ୍ୟ ତାହାଙ୍କ ମା'ଙ୍କ ପାଖରେ ଠିଆ
ହୋଇଥିବା ଦେଖିଲେ। ତାହାଙ୍କ ମାଆଙ୍କୁ କହିଲେ, "ପ୍ରିୟ
ନାରୀ, ଏ ତୁମର ପୁଅ!" ୨୭ତାପରେ ଯୀଶୁ ତାହାଙ୍କର
ସେହି ଶିଷ୍ୟଙ୍କୁ କହିଲେ, "ଦେଖ, ଏଠାରେ ତୁମର
ମାଆ।" ତେଣୁ ଏହି ଶିଷ୍ୟ ଜଣକ ଯୀଶୁଙ୍କ ମାଆଙ୍କୁ
ତାହାଙ୍କ ଘରକୁ ନେଇଗଲେ।

## ଯୀଶୁଙ୍କର ମୃତ୍ୟୁବରଣ କଲେ

୨୮ଏବେ ସମସ୍ତ କିଛି ଶେଷ ହୋଇଯାଇଛି, ଯୀଶୁ ଏହା
ଜାଣିଲେ। ଧର୍ମଶାସ୍ତ୍ରବାଣୀ ସତ୍ୟ ହେବା ପାଇଁ ସେ
କହିଲେ, "ମୋତେ ଶୋଷ କରୁଛି।"* ୨୯ସେଠାରେ
ଗୋଟିଏ ପାତ୍ରରେ ଭର୍ତ୍ତି ଖଟା-ପିତା ସ୍ୱାଦଯୁକ୍ତ ରସ
ରଖାଯାଇଥିଲା। ସେମାନେ ଖଣ୍ଡେ ସ୍ପଞ୍ଜକୁ ରସରେ ବୁଡେଇ
ଏଜୋପ ନଳରେ ଲଗାଇ ଯୀଶୁଙ୍କ ମୁଖ ପାଖକୁ ବଢ଼ାଇଲେ।
୩୦ଯୀଶୁ ତାହା ଚାଖିଲେ। ତାପରେ ସେ କହିଲେ, "ସମାପ୍ତ
ହେଲା"। ତାପରେ ସେ ମୁଣ୍ଡ ନୁଆଁଇ ପ୍ରାଣତ୍ୟାଗ କଲେ।
୩୧ସେଦିନ ନିସ୍ତାରପର୍ବର ପ୍ରସ୍ତୁତି ଦିନ ଥିଲା। ତହିଁ
ଆରଦିନ ବିଶେଷ ବିଶ୍ରାମବାର ଥିଲା। ତେଣୁ ଯିହୂଦୀମାନେ
ଚାହୁଁ ନଥିଲେ ଯେ, ମୃତ ଶରୀରଗୁଡ଼ିକ କ୍ରୁଶ ଉପରେ
ବିଶ୍ରାମବାର ଦିନ ପର୍ଯ୍ୟନ୍ତ ଝୁଲି ରହୁ। ତେଣୁ ସେମାନେ
ପିଲାତଙ୍କୁ ଅନୁରୋଧ କଲେ ଯେ, ସେ ଯୀଶୁ ଓ ଅନ୍ୟ
ଦୁଇ ଜଣଙ୍କର ଗୋଡ ଭାଙ୍ଗିଦେବାପାଇଁ ଆଦେଶ ଦିଅନ୍ତୁ।
ଯେପରି ସେମାନେ ଶୀଘ୍ର ମରିଯିବେ ଓ ସେମାନଙ୍କର
ଦେହ କ୍ରୁଶରୁ ଓହ୍ଲାଇବା ପାଇଁ ତାଙ୍କୁ ଅନୁମତି ମାଗିଲେ।
୩୨ତେଣୁ ସୈନିକମାନେ ଆସିଲେ ଓ ଯୀଶୁଙ୍କ ପାଖରେ
କ୍ରୁଶରେ ଝୁଲୁଥିବା ପ୍ରଥମ ଲୋକଟିର ଗୋଡ଼ ଭାଙ୍ଗିଦେଲେ।
କିନ୍ତୁ ତା'ପରେ ସେମାନେ ଅନ୍ୟ ଲୋକଟିର ଗୋଡ଼
ଭାଙ୍ଗିଦେଲେ। ୩୩କିନ୍ତୁ ସେମାନେ ଯେତେବେଳେ ଯୀଶୁଙ୍କୁ
ପାଖକୁ ଆସିଲେ, ସେତେବେଳେ ସେମାନେ ଦେଖିଲେ
ଯେ, ସେ ମରି ସାରିଲେଣି। ତେଣୁ ସେମାନେ ତାହାଙ୍କ
ଗୋଡ ଭାଙ୍ଗିଲେ ନାହିଁ। ୩୪କିନ୍ତୁ ଜଣେ ସୈନିକ ବର୍ଚ୍ଛା
ଦ୍ୱାରା ତାହାଙ୍କର କକ୍ଷଦେଶକୁ ବିଦ୍ଧ କଲା। ସଙ୍ଗେସଙ୍ଗେ
ତହିଁରୁ ରକ୍ତ ଓ ଜଳ ବାହାରି ଆସିଲା। ୩୫(ଯିଏ ଏହା
ଦେଖିଛନ୍ତି ସେ ଏହା ବର୍ଣ୍ଣନା କରିଛନ୍ତି। ଯଦ୍ୱାରା ତୁମେ
ମଧ୍ୟ ଶୁଣି ବିଶ୍ୱାସ କରିବ। ସେ ଯାହା କହନ୍ତି, ତାହା
ସତ୍ୟ। ସେ ଜାଣନ୍ତି ଯେ ସେ ସତ୍ୟ କହନ୍ତି।) ୩୬ଏସବୁ
ଘଟିଛି, ଅତଏବ ଧର୍ମଶାସ୍ତ୍ରରେ ଯାହା ଲେଖା ଅଛି, ତାହା
ସତ୍ୟ ହେବ, "ତାହାଙ୍କର ଗୋଟିଏ ହାଡ ମଧ୍ୟ ଭାଙ୍ଗି ଯିବ
ନାହିଁ।"* ୩୭ଅନ୍ୟ ସ୍ଥାନରେ ଧର୍ମଶାସ୍ତ୍ରରେ ଲେଖାଅଛି:
"ସେମାନେ ଯାହାଙ୍କୁ ବର୍ଚ୍ଛା ଦ୍ୱାରା ଆଘାତ କଲେ, ତାହାଙ୍କୁ
ଲୋକମାନେ ଦେଖିବେ।"*

## ଯୀଶୁଙ୍କର ସମାଧି

୩୮ଏହା ପରେ ଆରିମାଥିୟାର ଯୋସେଫ ନାମକ
ଜଣେ ଲୋକ ପିଲାତଙ୍କୁ ଯୀଶୁଙ୍କର ଶରୀରଟି ମାଗିଲେ।
(ଯୋସେଫ ଯୀଶୁଙ୍କର ଜଣେ ଶିଷ୍ୟ ଥିଲେ। କିନ୍ତୁ ସେ
ଲୋକମାନଙ୍କୁ ତାହା କହିଲେ ନାହିଁ, କାରଣ ସେ ଯିହୂଦୀମାନଙ୍କୁ
ଭୟ କରୁଥିଲେ।) ପିଲାତ ଯୋସେଫଙ୍କୁ ଯୀଶୁଙ୍କର ଶରୀର
ନେବାପାଇଁ ଅନୁମତି ଦେଲେ। ତେଣୁ ଯୋସେଫ ଆସି
ଯୀଶୁଙ୍କର ଶରୀର ନେଇଗଲେ। ୩୯ନୀକଦୀମ ମଧ୍ୟ ଯୋସେଫଙ୍କ
ସହିତ ଗଲେ। ସେ ପ୍ରଥମେ ଯୀଶୁଙ୍କ ସହିତ ରାତ୍ରିରେ
ସାକ୍ଷାତ କରିବାକୁ ଯାଇଥିଲେ ଓ ତାହାଙ୍କ ସହିତ କଥା
ହୋଇଥିଲେ। ସେ ଯୀଶୁଙ୍କ ଦେହରେ ଲଗାଇବା ପାଇଁ
ପ୍ରାୟ ପଚିଶ କିଲୋଗ୍ରାମ ଗନ୍ଧରସ ମିଶ୍ରିତ ଅଗୁରୁ ଘେନି
ଆସିଲେ। ୪୦ଯିହୂଦୀମାନଙ୍କର ସମାଧି ଦେବା ପ୍ରଥାନୁସାରେ
ସେମାନେ ଦୁହେଁ ଯୀଶୁଙ୍କର ମୃତଦେହକୁ ସୁଗନ୍ଧି ଅଗୁରୁ
ସହିତ ପତଳା ଲୁଗାରେ ଗୁଡେଇ ଦେଲେ। ୪୧ଯୀଶୁଙ୍କୁ
ଯେଉଁଠାରେ କ୍ରୁଶବିଦ୍ଧ କରାଯାଇଥିଲା, ସେହି ସ୍ଥାନ ପାଖରେ
ଗୋଟିଏ ବଗିଚା ଥିଲା। ସେହି ବଗିଚାରେ ଗୋଟିଏ ନୂଆ
କବର ଥିଲା, ଯେଉଁଥିରେ ପୂର୍ବରୁ କାହାକୁ ସମାଧି ଦିଆ
ଯାଇ ନ ଥିଲା, ୪୨ବିଶ୍ରାମବାର ଆରମ୍ଭ ହେବା ପୂର୍ବରୁ
ତାହାର ପ୍ରସ୍ତୁତି କାର୍ଯ୍ୟ ଶେଷ କରିବା ପାଇଁ ସେମାନେ

---

**"ମୋତେ ... କରୁଛି"** ଗୀତସଂହିତା ୨୨:୧୫, ୬୯:୨୧

**"ତାହାଙ୍କର ... ନାହିଁ"** ଗୀତସଂହିତା ୩୪:୨୦; ଯାତ୍ରାବିବରଣି ୧୨:୪୬ ଓ ଗଣନା ପୁସ୍ତକ ୯:୧୨ ଅନୁସାରେ

**"ସେମାନେ ... ଦେଖିବେ।"** ଯିଖରିୟ ୧୨:୧୦

ଯୀଶୁଙ୍କୁ ସେଠାରେ ସମାଧିସ୍ଥ କଲେ, କାରଣ ସେହି
ସମାଧିଟି ପାଖରେ ଥିଲା।

## ଯୀଶୁଙ୍କର କେତେକ ଶିଷ୍ୟ ସମାଧିକୁ ଖାଲିପଡ଼ିଥିବା ଦେଖିଲେ

୨୦ ୧ରବିବାର ଦିନ ପାହାନ୍ତିଆରେ ମଗ୍‌ଦଲୀନୀ
ମରିୟମ ଯୀଶୁଙ୍କର କବର ନିକଟକୁ ଆସିଲେ।
ସେତେବେଳେ ତଥାପି ଅନ୍ଧାର ଥିଲା। ସେ ଦେଖିଲେ ଯେ,
ବହୁତ ବଡ ପଥରଟି କବର ଦ୍ୱାର ପାଖରୁ ଦୂରକୁ ଘୁଞ୍ଚି
ଯାଇଛି। ୨ତେଣୁ ମରିୟମ, ଶିମୋନ ପିତର ଓ ଅନ୍ୟ
ଜଣେ ଶିଷ୍ୟ (ଯାହାଙ୍କୁ ଯୀଶୁ ପ୍ରେମ କରୁଥିଲେ) ସେମାନଙ୍କ
ନିକଟକୁ ଦୌଡ଼ିଗଲେ, ଓ ସେ ସେମାନଙ୍କୁ କହିଲେ,
"ସେମାନେ ପ୍ରଭୁଙ୍କର ମୃତଦେହକୁ କବର ଭିତରୁ
ନେଇଯାଇଛନ୍ତି। ସେମାନେ ତାହାଙ୍କୁ କେଉଁଠାରେ ରଖିଛନ୍ତି
ଆମେ ଜାଣି ନାହୁଁ।"
୩ତେଣୁ ପିତର ଓ ଅନ୍ୟଶିଷ୍ୟ କବର ନିକଟକୁ ଯିବାକୁ
ବାହାରିଲେ। ୪ସେମାନେ ଦୁହେଁ ଦୌଡ଼ୁଥିଲେ, କିନ୍ତୁ
ପିତରଙ୍କଠାରୁ ଅନ୍ୟ ଶିଷ୍ୟଜଣକ ଜୋର୍‌ରେ ଦୌଡ଼ୁଥିଲେ।
ତେଣୁ ସେ ପ୍ରଥମେ କବର ପାଖରେ ପହଞ୍ଚିଲେ। ୫ସେ
ନଇଁପଡି ଭିତରକୁ ଚାହିଁ ପତଳା ଆଚ୍ଛାଦନ-ବସ୍ତ୍ର ସେଠାରେ
ପଡିଥିବା ଦେଖିଲେ, କିନ୍ତୁ ଭିତରକୁ ଗଲେ ନାହିଁ।
୬ତା'ପରେ ତାହାଙ୍କ ପଛରେ ଶିମୋନ ପିତର ଆସି
ପହଞ୍ଚିଲେ। ପିତର କବର ଭିତରକୁ ଗଲେ ଏବଂ ସେ
ମଧ୍ୟ ସେଠାରେ ପତଳା ଆଚ୍ଛାଦନ-ବସ୍ତ୍ର ପଡ଼ିଥିବାର ଦେଖିଲେ।
୭ଯେଉଁ ଲୁଗାଟି ଯୀଶୁଙ୍କ ମୁଣ୍ଡରେ ଗୁଡ଼ା ହୋଇଥିଲା ତାହା
ସେ ଦେଖିଲେ। ତାହା ପତଳା ବସ୍ତ୍ର ପାଖରେ ନଥାଇ
ଅଲଗା ଜାଗାରେ ଗୁଡ଼େଇ ହୋଇ ପଡିଥିଲା। ପତଳା-ଆଚ୍ଛାଦନ
ବସ୍ତ୍ର ସହିତ ତାହା ପଡ଼ି ନଥିଲା। ୮ଏହାପରେ ଅନ୍ୟଶିଷ୍ୟ
ଜଣକ ମଧ୍ୟ ଭିତରକୁ ଗଲେ, ସେହି ଶିଷ୍ୟ ଜଣକ କବର
ପାଖରେ ଆଗ ପହଞ୍ଚିଥିଲେ। ସେ ସମସ୍ତ ଘଟଣା ଦେଖିଲେ
ଓ ବିଶ୍ୱାସ କଲେ। ୯(ଧର୍ମଶାସ୍ତ୍ର ଅନୁସାରେ 'ଯୀଶୁ ମୃତ୍ୟୁରୁ
ଅବଶ୍ୟ ପୁର୍ନଜୀବିତ ହେବେ', ଏହାର ଅର୍ଥ ସେହି ଶିଷ୍ୟମାନେ
ଏ ପର୍ଯ୍ୟନ୍ତ ବୁଝି ପାରି ନ ଥିଲେ।)

## ମଗ୍‌ଦଲୀନୀ ମରିୟମଙ୍କୁ ଯୀଶୁ ଦେଖାଦେଲେ

୧୦ତା'ପରେ ଶିଷ୍ୟମାନେ ଘରକୁ ଫେରିଗଲେ। ୧୧କିନ୍ତୁ
ମରିୟମ କବର ବାହାରେ ଠିଆ ହୋଇ କାନ୍ଦୁଥିଲେ। ସେ
କାନ୍ଦୁଥିବାବେଳେ ନଇଁପଡି କବର ଭିତରକୁ ଚାହିଁଲେ।
୧୨ସେ ଦୁଇ ଜଣ ସ୍ୱର୍ଗଦୂତଙ୍କୁ ଧଳା ଲୁଗା ପିନ୍ଧି ଯୀଶୁଙ୍କ
ଶରୀର ଯେଉଁଠାରେ ଥିଲା, ତାହା ପାଖରେ ବସିବାର
ଦେଖିଲେ। ଜଣେ ସ୍ୱର୍ଗଦୂତ ଯୀଶୁଙ୍କ ମୁଣ୍ଡ ରହିଥିବା
ଜାଗାରେ ଓ ଅନ୍ୟ ଜଣେ ପାଦ ରହିଥିବା ଜାଗାରେ
ବସିଥିଲେ।
୧୩ସେମାନେ ମରିୟମଙ୍କୁ ପଚାରିଲେ, "ହେ ନାରୀ,
ତୁମେ କାହିଁକି କାନ୍ଦୁଛ?"
ମରିୟମ ଉତ୍ତର ଦେଲେ, "ମୋର ପ୍ରଭୁଙ୍କ ଶରୀର
କେତେକ ଲୋକ ନେଇଯାଇଛନ୍ତି। ସେମାନେ ତାହାଙ୍କୁ
କେଉଁଠି ରଖିଛନ୍ତି, ତାହା ମୁଁ ଜାଣିନାହିଁ।" ୧୪ସେ ଏହା
କହି ବୁଲି ପଡ଼ିଲେ। ସେ ଯୀଶୁଙ୍କୁ ସେଠାରେ ଠିଆ
ହୋଇଥିବା ଦେଖିଲେ। କିନ୍ତୁ ମରିୟମ ତାହାଙ୍କୁ ଚିହ୍ନିଲେ
ନାହିଁ।
୧୫ଯୀଶୁ ତାହାଙ୍କୁ ପଚାରିଲେ, "ହେ ନାରୀ, ତୁମେ
କାହିଁକି କାନ୍ଦୁଛ? ତୁମେ କାହାକୁ ଖୋଜୁଛ?"
ମରିୟମ ଭାବିଲେ, ଏହି ଲୋକ ହିଁ ବଗିଚାର ଯତ୍ନ
ନିଅନ୍ତି। ତେଣୁ ସେ ତାହାଙ୍କୁ କହିଲେ, "ଆଜ୍ଞା, ଆପଣ
କ'ଣ ଯୀଶୁଙ୍କୁ ନେଇଯାଇଛନ୍ତି? ତାହାଙ୍କୁ ଆପଣ କେଉଁଠି
ରଖିଛନ୍ତି? ମୋତେ କୁହନ୍ତୁ, ମୁଁ ଯାଇ ତାହାଙ୍କୁ ଘେନି
ଆସିବି।"
୧୬ଯୀଶୁ ତାହାଙ୍କୁ କହିଲେ, "ମରିୟମ,"।
ମରିୟମ ତାହାଙ୍କ ଆଡ଼େ ବୁଲିପଡ଼ି ଯିହୂଦୀୟ ଭାଷାରେ
କହିଲେ, "ରବ୍‌ବୂନୀ" (ଅର୍ଥାତ 'ଗୁରୁ')।
୧୭ଯୀଶୁ ତାହାଙ୍କୁ କହିଲେ, "ମୋତେ ଧର ନାହିଁ। ମୁଁ
ଏପର୍ଯ୍ୟନ୍ତ ପରମପିତାଙ୍କ ପାଖକୁ ଯାଇନାହିଁ। କିନ୍ତୁ ତୁମେ
ଯାଇ ମୋର ଭାଇମାନଙ୍କୁ କୁହ ଯେ, ମୁଁ ମୋର ଓ ତୁମର
ପରମପିତାଙ୍କ ପାଖକୁ ଫେରିଯାଉଛି। ମୁଁ ମୋର ଓ ତୁମର
ପରମେଶ୍ୱରଙ୍କ ପାଖକୁ ଯାଉଅଛି।"
୧୮ମଗ୍‌ଦଲୀନୀ ମରିୟମ ଶିଷ୍ୟମାନଙ୍କ ପାଖକୁ ଗଲେ ଓ
ସେମାନଙ୍କୁ କହିଲେ, "ମୁଁ ପ୍ରଭୁଙ୍କୁ ଦେଖିଲି।" ସେ
ସେମାନଙ୍କୁ ଯୀଶୁ କହିଥିବା କଥା ଶୁଣାଇଲେ।

## ଯୀଶୁ ଶିଷ୍ୟମାନଙ୍କୁ ଦର୍ଶନ ଦେଲେ

୧୯ସେଦିନ ରବିବାର ଥିଲା। ସନ୍ଧ୍ୟାରେ ସବୁ ଶିଷ୍ୟମାନେ
ଏକାଠିହେଲେ। ଯିହୂଦୀ ନେତାମାନଙ୍କ ଭୟରେ ଶିଷ୍ୟମାନେ
ଘରର ସବୁ କବାଟ ବନ୍ଦ କରିଦେଇଥିଲେ। ତା'ପରେ
ଯୀଶୁ ଆସି ସେମାନଙ୍କ ମଧ୍ୟରେ ଠିଆ ହୋଇଗଲେ। ସେ
କହିଲେ, "ତୁମ୍ଭମାନଙ୍କର ଶାନ୍ତି ହେଉ।" ୨୦ଯୀଶୁ ଏକଥା
କହିବା ପରେ ଶିଷ୍ୟମାନଙ୍କୁ ତାହାଙ୍କ ହାତ ଗୋଡ଼ ଦେଖାଇଲେ।
ଶିଷ୍ୟମାନେ ପ୍ରଭୁଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲେ।
୨୧ଯୀଶୁ ପୁନର୍ବାର କହିଲେ, "ତୁମ୍ଭମାନଙ୍କର ଶାନ୍ତି
ହେଉ। ମୋତେ ପରମପିତା ଯେପରି ପଠାଇଥିଲେ, ମୁଁ
ସେହିପରି ତୁମକୁ ବର୍ତ୍ତମାନ ପଠାଉଛି।" ୨୨ଯୀଶୁ ଏହିକଥା
କହିବା ପରେ ଶିଷ୍ୟମାନଙ୍କ ଉପରେ ପ୍ରଶ୍ୱାସ ଛାଡ଼ିଲେ।
ସେ କହିଲେ, "ପବିତ୍ରଆତ୍ମାଙ୍କୁ ଗ୍ରହଣ କର। ୨୩ଯଦି ତୁମେ
ଲୋକମାନଙ୍କର ପାପ କ୍ଷମା କରିବ ତେବେ ସେମାନଙ୍କର
ପାପ କ୍ଷମା କରାହେବ। ଯଦି ତୁମେ ଲୋକମାନଙ୍କର ପାପ
କ୍ଷମା କରିବନାହିଁ, ତେବେ ସେମାନଙ୍କର ପାପ କ୍ଷମା କରା
ହେବ ନାହିଁ।"

## ଥୋମାଙ୍କୁ ଯୀଶୁ ଦର୍ଶନ ଦେଲେ

୨୪ଥୋମା (ଯାହାଙ୍କୁ ଦିଦୁମ କୁହାଯାଉଥିଲା) ଯୀଶୁ
ଆସିଲା ବେଳେ ଶିଷ୍ୟମାନଙ୍କ ସହିତ ନଥିଲେ। ସେ
ବାରଜଣ ଶିଷ୍ୟଙ୍କ ମଧ୍ୟରୁ ଜଣେ ଥିଲେ। ୨୫ଅନ୍ୟ ଶିଷ୍ୟମାନେ
ଥୋମାଙ୍କୁ କହିଲେ, "ଆମେ ପ୍ରଭୁଙ୍କୁ ଦେଖିଲୁ।" ଥୋମା
କହିଲେ, "ମୁଁ ତାହାଙ୍କ ହାତରେ କଣ୍ଟାର କ୍ଷତ ଦାଗ

ନଦେଖିଲା ପର୍ଯ୍ୟନ୍ତ ବିଶ୍ୱାସ କରିବି ନାହିଁ। ମୁଁ ମୋର
ଆଙ୍ଗୁଠି ସେହି କଣ୍ଟାର ଦାଗରେ ନ ରଖିବା, ଓ ତାହାଙ୍କ
କକ୍ଷଦେଶରେ ମୋର ହାତ ନଦେବା ପର୍ଯ୍ୟନ୍ତ, ମୁଁ ବିଶ୍ୱାସ
କରିବି ନାହିଁ।”

[26]ଗୋଟିଏ ସପ୍ତାହ ପରେ ଶିଷ୍ୟମାନେ ପୁଣି ଘର
ଭିତରେ ଥିଲେ। ଥୋମା ସେମାନଙ୍କ ସହିତ ଥିଲେ।
କବାଟରେ ତାଲା ପଡ଼ିଥିଲା। କିନ୍ତୁ ଯୀଶୁ ଆସି ସେମାନଙ୍କ
ମଧ୍ୟରେ ଠିଆ ହେଲେ। ସେ କହିଲେ, “ତୁମ୍ଭମାନଙ୍କର
ଶାନ୍ତି ହେଉ।” [27]ତା'ପରେ ଯୀଶୁ ଥୋମାଙ୍କୁ କହିଲେ,
“ଏଠାରେ ତୁମର ଆଙ୍ଗୁଠି ରଖ। ମୋ ହାତକୁ ଦେଖ।
ମୋ କକ୍ଷଦେଶରେ ତୁମ ହାତ ରଖ। ଅବିଶ୍ୱାସ ନକରି
ବିଶ୍ୱାସ କର।”

[28]ଥୋମା ଯୀଶୁଙ୍କୁ କହିଲେ, “ମୋର ପ୍ରଭୁ, ମୋର
ପରମେଶ୍ୱର।”

[29]ଯୀଶୁ ଥୋମାଙ୍କୁ କହିଲେ, “ତୁମେ ମୋତେ ଦେଖିବାରୁ
ବିଶ୍ୱାସ କରୁଛ। ମାତ୍ର ଯେଉଁ ଲୋକମାନେ ମୋତେ ନ
ଦେଖି ବିଶ୍ୱାସ କରନ୍ତି, ସେମାନେ ପ୍ରକୃତରେ ଆଶୀର୍ବାଦର
ଯୋଗ୍ୟ।”

### ଯୋହନ ଏହି ବହି ଲେଖିବାର କାରଣ

[30]ଯୀଶୁ ଅନେକ ଗୁଡ଼ିଏ ଅନ୍ୟ ଆଶ୍ଚର୍ଯ୍ୟକାର୍ଯ୍ୟ କଲେ।
ସେଗୁଡ଼ିକୁ ତାହାଙ୍କ ଶିଷ୍ୟମାନେ ଦେଖିଲେ। ସେହି
ଆଶ୍ଚର୍ଯ୍ୟକାର୍ଯ୍ୟ ଗୁଡ଼ିକ ଏ ବହିରେ ଲେଖାଯାଇନାହିଁ, [31]କିନ୍ତୁ
ଏହି ପୁସ୍ତକରେ ଏହି ସବୁ ଲେଖାହୋଇଛି ଯେପରି ତୁମେ
ବିଶ୍ୱାସ କରିବ ଯେ ଯୀଶୁ ହେଉଛନ୍ତି ଖ୍ରୀଷ୍ଟ ଓ ପରମେଶ୍ୱରଙ୍କର
ପୁତ୍ର ଅଟନ୍ତି ଓ ବିଶ୍ୱାସ କରି, ତୁମ୍ଭେମାନେ ତାହାଙ୍କ
ନାମଦ୍ୱାରା ଜୀବନ ପାଇବ।

### ସାତ ଜଣ ଶିଷ୍ୟଙ୍କୁ ଯୀଶୁ ଦେଖାଦେଲେ

**୨୧** ତା'ପରେ ଯୀଶୁ ନିଜକୁ ଶିଷ୍ୟମାନଙ୍କ ଆଗରେ
ଦେଖାଦେଲେ। ସେ ତିବିରିଆ ହ୍ରଦ ଗାଲୀଲୀ
କୂଳରେ ସେମାନଙ୍କୁ ଦେଖାଦେଇଥିଲେ। ସେ ଏହିପରି
ଭାବରେ ଦର୍ଶନ ଦେଇଥିଲେ: [2]ଯୀଶୁଙ୍କର କେତେକ ଶିଷ୍ୟ
ଏକତ୍ର ହୋଇଥିଲେ, ସେମାନେ ହେଲେ ଶିମୋନ ପିତର,
ଥୋମା, (ଡାକନାମ ଦିଦୁମ)। ଗାଲୀଲୀର କାନାନବାସୀ
ନିଥନିୟେଲ, ଜେବଦୀର ପୁତ୍ରମାନେ, ଓ ଦୁଇଜଣ ଅନ୍ୟ
ଶିଷ୍ୟ। [3]ଶିମୋନ ପିତର କହିଲେ, “ମୁଁ ମାଛ ଧରିବାକୁ
ଯାଉଛି।” ଅନ୍ୟ ଶିଷ୍ୟମାନେ କହିଲେ, “ଆମେ ତୁମ
ସହିତ ଯିବୁ।” ତେଣୁ ସବୁ ଶିଷ୍ୟମାନେ ଯାଇ ନୌକାରେ
ବସିଲେ। ସେମାନେ ମାଛ ଧରିବାକୁ ସାରା ରାତି ଚେଷ୍ଟା
କଲେ, କିନ୍ତୁ କିଛି ଧରିପାରିଲେ ନାହିଁ।

[4]ପରଦିନ ଅତି ସକାଳୁ ଯୀଶୁ ହ୍ରଦ କୂଳରେ ଠିଆ
ହୋଇଥିଲେ। କିନ୍ତୁ ଶିଷ୍ୟମାନେ ତାହାଙ୍କୁ ଯୀଶୁ ବୋଲି
ଜାଣି ନ ଥିଲେ। [5]ତା'ପରେ ଶିଷ୍ୟମାନଙ୍କୁ କହିଲେ,
“ବନ୍ଧୁମାନେ, ତୁମେ କିଛି ମାଛ ଧରିଛ କି?”

ଶିଷ୍ୟମାନେ ଉତ୍ତର ଦେଲେ, “ନା।”

[6]ଯୀଶୁ କହିଲେ, “ତୁମର ଜାଲ ନୌକାର ଡାହାଣ ପଟ
ପାଣିରେ ପକାଅ। ତୁମେ ସେଠାରେ ମାଛ ପାଇବ।”
ଶିଷ୍ୟମାନେ ସେହିପରି କଲେ। ସେମାନେ ଏତେ ମାଛ
ଧରିଲେ ଯେ, ସେମାନେ ଜାଲକୁ ନୌକା ପର୍ଯ୍ୟନ୍ତ ଟାଣି
ପାରିଲେ ନାହିଁ।

[7]ଯୀଶୁ ଯେଉଁଶିଷ୍ୟଙ୍କୁ ପ୍ରେମ କରୁଥିଲେ, ସେ ପିତରଙ୍କୁ
କହିଲେ, “ଏ ତ ପ୍ରଭୁ।” ପିତର ଏ ତ ପ୍ରଭୁ ବୋଲି
ଶୁଣି ତାହାଙ୍କ ପୋଷାକ ପିନ୍ଧିଲେ। (କାରଣ ସେ କାର୍ଯ୍ୟ
କରିବା ପାଇଁ ସବୁ ବସ୍ତ୍ର ଖୋଲି ଦେଇଥିଲେ।) ତା'ପରେ
ସେ ପାଣିକୁ ଡେଇଁ ପଡ଼ିଲେ। [8]ଅନ୍ୟ ଶିଷ୍ୟମାନେ
ନୌକାରେ କୂଳକୁ ଗଲେ। ସେମାନେ ମାଛରେ ଭର୍ତ୍ତି
ହୋଇଥିବା ଜାଲ ଭିଡ଼ିଲେ। ସେମାନେ କୂଳରୁ ବେଶୀ
ଦୂରରେ ନଥିଲେ, ଦୂରତ୍ୱ ପ୍ରାୟ ନବେମିଟର ଥିଲା।
[9]ଶିଷ୍ୟମାନେ ଯେତେବେଳେ ନୌକାରୁ ବାହାରି କୂଳରେ
ପହଞ୍ଚିଲେ, ସେମାନେ ସେତେବେଳେ ରଡ଼ନିଆଁ ଜଳୁଥିବାର
ଦେଖିଲେ। ସେଠାରେ ନିଆଁ ଉପରେ ମାଛ ଥିଲା, ଓ କିଛି
ରୋଟୀ ମଧ୍ୟ ଥିଲା। [10]ତା'ପରେ ଯୀଶୁ କହିଲେ, “ତୁମ୍ଭେମାନେ
ଧରିଥିବା କିଛି ମାଛ ଆଣ।”

[11]ଶିମୋନ ପିତର ନୌକା ଭିତରକୁ ଗଲେ, ଓ ଜାଲ
କୂଳକୁ ଟାଣିଲେ। ଏହା ବଡ଼-ବଡ଼ ମାଛରେ ପୂର୍ଣ୍ଣ ଥିଲା।
ସେଥିରେ ୧୫୩ଟି ମାଛ ଥିଲା। ମାଛ ଗୁଡ଼ିକ ବହୁତ
ଓଜନିଆ ଥିଲା କିନ୍ତୁ ଜାଲ ଛିଣ୍ଡି ନଥିଲା। [12]ଯୀଶୁ
ସେମାନଙ୍କୁ କହିଲେ, “ଆସ ଓ ଖାଅ।” ଶିଷ୍ୟମାନଙ୍କ
ଭିତରେ କେହି ଜଣେ ହେଲେ ପଚାରିବା ପାଇଁ ସାହସ
କଲେନାହିଁ, ତୁମେ କିଏ?” କାରଣ ସେମାନେ ଜାଣିଥିଲେ
ଯେ, ସେ ପ୍ରଭୁ। [13]ଯୀଶୁ ଖାଦ୍ୟ ନିକଟକୁ ଆସି ରୋଟୀ
ଘେନି ସେମାନଙ୍କୁ ଦେଲେ। ସେ ସେମାନଙ୍କୁ ମାଛ ମଧ୍ୟ
ଦେଲେ।

[14]ଯୀଶୁ ମୃତ୍ୟୁରୁ ବଞ୍ଚି ଉଠିବା ପରେ ଶିଷ୍ୟମାନଙ୍କୁ ଏହି
ତୃତୀୟ ଥର ପାଇଁ ଦର୍ଶନ ଦେଲେ।

### ପିତରଙ୍କ ସହିତ ଯୀଶୁ କଥା ହେଲେ

[15]ସେମାନେ ଖାଇବା ପରେ ଯୀଶୁ ଶିମୋନ ପିତରଙ୍କୁ
କହିଲେ, “ଯୋହନଙ୍କର ପୁତ୍ର ଶିମୋନ। ତୁମେ କ'ଣ
ମୋତେ ଏମାନଙ୍କ ଅପେକ୍ଷା ଅଧିକ ଭଲ ପାଉଛ?”

ପିତର ଉତ୍ତର ଦେଲେ, “ହଁ ପ୍ରଭୁ, ଆପଣ ଜାଣନ୍ତି
ଯେ ମୁଁ ଆପଣଙ୍କୁ ପ୍ରେମ କରେ।”

ଯୀଶୁ ତାହାଙ୍କୁ କହିଲେ, “ମୋର ମେଷଶାବକମାନଙ୍କୁ
ଚରାଅ।”

[16]ତା'ପରେ ଯୀଶୁ ପୁଣି ତାହାଙ୍କୁ କହିଲେ, “ଯୋହନଙ୍କ
ପୁତ୍ର, ଶିମୋନ, ତୁମେ କ'ଣ ମୋତେ ପ୍ରେମ କର?”

ପିତର ଉତ୍ତର ଦେଲେ, “ହଁ, ପ୍ରଭୁ, ଆପଣ ଜାଣନ୍ତି,
ମୁଁ ଆପଣଙ୍କୁ ପ୍ରେମ କରେ।”

ତା'ପରେ ଯୀଶୁ କହିଲେ, “ମୋର ମେଷମାନଙ୍କୁ ପ୍ରତିପାଳନ
କର।”

[17]ପୁଣି ତୃତୀୟ ଥର ସେ ତାହାଙ୍କୁ ପଚାରିଲେ,
“ଯୋହନଙ୍କ ପୁତ୍ର ଶିମୋନ, ତୁମେ ମୋତେ ପ୍ରେମ କର
କି?”

ପିତର ଦୁଃଖିତ ହେଲେ, ଯେହେତୁ ଯୀଶୁ ତାହାଙ୍କୁ
ତିନି ଥର ସେହି କଥା ପଚାରିଲେ, “ମୋତେ ପ୍ରେମ କର
କି?”

ପିତର କହିଲେ, “ପ୍ରଭୁ, ଆପଣ ସବୁ ଜାଣିଛନ୍ତି। ମୁଁ
ଆପଣଙ୍କୁ ପ୍ରେମ କରେ ବୋଲି ଆପଣ ଜାଣନ୍ତି।” ଯୀଶୁ
ପିତରଙ୍କୁ କହିଲେ, “ମୋ ମେଷମାନଙ୍କୁ ଚରାଅ। ୧୮ମୁଁ
ତୁମକୁ ସତ୍ୟ କହୁଛି ତୁମେ ଯେତେବେଳେ ଯୁବକ ଥିଲ,
ସେତେବେଳେ ତୁମେ ଅଣ୍ଟାରେ ନିଜ ଲୁଗା ଭିଡ଼ି ଇଚ୍ଛାନୁସାରେ
ଯେ କୌଣସି ସ୍ଥାନକୁ ଯାଉଥିଲ। ମାତ୍ର ବୃଦ୍ଧ ବୟସରେ
ତୁମେ ହାତ ବଢ଼ାଇବ ଓ ଯେଉଁଆଡ଼େ ତୁମର ଯିବାକୁ
ଇଚ୍ଛା ନଥିବ, ସେହିଠାକୁ ଅନ୍ୟମାନେ ତୁମକୁ ନେଇଯିବେ।”
୧୯(ପରମେଶ୍ୱରଙ୍କର ଗୌରବ ପାଇଁ ପିତର କିପରି ଭାବେ
ମୃତ୍ୟୁ ବରଣ କରିବେ, ଏହା ଜଣାଇବା ଉଦ୍ଦେଶ୍ୟରେ ଯୀଶୁ
ସେପରି କହିଥିଲେ।) ଏହା ପରେ ଯୀଶୁ ତାହାଙ୍କୁ କହିଲେ,
“ମୋର ଅନୁଗମନ କର।”

୨୦ପିତର ବୁଲି ପଡ଼ି ଦେଖିଲେ ଯେ ଯେଉଁ ଶିଷ୍ୟଙ୍କୁ
ଯୀଶୁ ପ୍ରେମ କରୁଥିଲେ, ସେ ସେମାନଙ୍କ ଅନୁଗମନ
କରୁଛନ୍ତି। (ସେହି ରାତ୍ରି-ଭୋଜବେଳେ, ସେହି ଶିଷ୍ୟ
ଯୀଶୁଙ୍କ ଶରୀରରେ ଆଉଜି ପଡ଼ି, ପଚାରି ଥିଲେ, “ପ୍ରଭୁ,
ଆମ ଭିତରୁ କିଏ ଆପଣଙ୍କ ବିରୁଦ୍ଧରେ ଯିବ?”) ୨୧ସେହି
ଶିଷ୍ୟଙ୍କୁ ପଛରେ ଆସୁଥିବା ଦେଖି ପିତର ପଚାରିଲେ,
“ପ୍ରଭୁ, ତାହାଙ୍କ ବିଷୟରେ କ'ଣ ହେବ?”

୨୨ଯୀଶୁ ଉତ୍ତର ଦେଲେ, “ମୋର ପୁନରାଗମନ ସମୟ
ପର୍ଯ୍ୟନ୍ତ ସେ ବଞ୍ଚି ରହୁ ବୋଲି ଯଦି ମୁଁ ଇଚ୍ଛା କରେ,
ତେବେ ସେଥିରେ ତୁମର କ'ଣ ଅଛି? ତୁମେ ମୋର
ଅନୁଗମନ କର।”

୨୩ତେଣୁ ଭାଇମାନଙ୍କ ଶିଷ୍ୟ ମଧ୍ୟରେ ଗୋଟିଏ କାହାଣୀ
ପ୍ରଚାରିତ ହେଲା। ସେମାନେ କହୁଥିଲେ ଯେ, ଯୀଶୁ ଯେଉଁ
ଶିଷ୍ୟଙ୍କୁ ପ୍ରେମ କରୁଛନ୍ତି, ସେହି ଶିଷ୍ୟ ମରିବେ ନାହିଁ।
କିନ୍ତୁ ଯୀଶୁ ଏକଥା କହି ନ ଥିଲେ ଯେ, ସେ ମରିବ
ନାହିଁ। ସେ କେବଳ କହିଲେ, “ମୋର ପୁନରାଗମନ
ସମୟ ପର୍ଯ୍ୟନ୍ତ ସେ ବଞ୍ଚି ରହୁ ବୋଲି ଯଦି ମୁଁ ଇଚ୍ଛା
କରେ, ତେବେ ସେଥିରେ ତୁମର କଣ ଅଛି?”

୨୪ସେହି ଶିଷ୍ୟ ଏ ସବୁ କଥା କହୁଛନ୍ତି। ସେ
ହେଉଛନ୍ତି ସେହି ବ୍ୟକ୍ତି ଯେ କି ଏସବୁ କଥା ଲେଖିଛନ୍ତି।
ଆମେ ଜାଣୁ, ସେ ଯାହା କହନ୍ତି ତାହା ସତ୍ୟ।

୨୫ଯୀଶୁ ଆହୁରି ଅନେକ କାର୍ଯ୍ୟ କରିଥିଲେ। ମୁଁ ମନେ
କରେ ଯେ, ଯୀଶୁଙ୍କ ବିଷୟରେ ସମସ୍ତ ବିଷୟ ଯଦି
ଲେଖା ହୋଇ ଥାଆନ୍ତା, ତେବେ ସେହି ପୁସ୍ତକ ଗୁଡ଼ିକ
ରଖିବା ପାଇଁ ସାରା ଜଗତରେ ସ୍ଥାନ ହୁଅନ୍ତା ନାହିଁ।

# ପ୍ରେରିତମାନଙ୍କ କାର୍ଯ୍ୟର ବିବରଣ

**ଲୂକଙ୍କ ଦ୍ୱାରା ରଚିତ ଦ୍ୱିତୀୟ ପୁସ୍ତକ**

୧ ହେ ଥୀୟଫିଲ, ମୁଁ ମୋର ପ୍ରଥମ ପୁସ୍ତକରେ
ଯୀଶୁଙ୍କର ସମସ୍ତ କାର୍ଯ୍ୟ ଓ ଉପଦେଶଗୁଡ଼ିକ ବିଷୟରେ
ଲେଖିଛି। ୨ମୁଁ ଯୀଶୁଙ୍କର ସଂମ୍ପୂର୍ଣ୍ଣ ଜୀବନ ସମ୍ପର୍କରେ
ଆରମ୍ଭରୁ ତାହାଙ୍କୁ ସ୍ୱର୍ଗକୁ ନିଆଯିବା ପର୍ଯ୍ୟନ୍ତ ସବୁକିଛି
ଲେଖିଛି। ଏହା ଘଟିବା ପୂର୍ବରୁ ଯୀଶୁ ନିଜେ ବାଛିଥିବା
ପ୍ରେରିତମାନଙ୍କ ସହିତ କଥାବାର୍ତ୍ତା ହୋଇଥିଲେ। ପବିତ୍ର
ଆତ୍ମାଙ୍କ ସାହାର୍ଯ୍ୟରେ ଯୀଶୁ, ପ୍ରେରିତମାନେ* କ'ଣ କରିବା
ଉଚିତ, ସେହି କଥା କହିଲେ। ୩ଏହି ଘଟଣାଟି ଯୀଶୁଙ୍କର
ମୃତ୍ୟୁ ପରେ ଘଟିଥିଲା। କିନ୍ତୁ ଅନେକ ଶକ୍ତିଯୁକ୍ତ କାର୍ଯ୍ୟ
ଦ୍ୱାରା ସେ ପ୍ରମାଣିତ କରି ଦେଖେଇ ଦେଲେ ଯେ, ସେ
ଜୀବିତ ଥିଲେ। ମୃତ୍ୟୁ ପରେ ପୁନର୍ଜୀବିତ ହୋଇ ଉଠିଥିବାର
ଚାଳିଶ ଦିନ ପର୍ଯ୍ୟନ୍ତ ପ୍ରେରିତମାନେ ଯୀଶୁଙ୍କୁ ଅନେକ ଥର
ଦେଖିଲେ। ଯୀଶୁ ପରମେଶ୍ୱରଙ୍କର ରାଜ୍ୟ ବିଷୟରେ
ପ୍ରେରିତମାନଙ୍କୁ କହିଲେ। ୪ଦିନେ ଯେତେବେଳେ ଯୀଶୁ
ସେମାନଙ୍କ ସାଙ୍ଗରେ ଭୋଜନ କରୁଥିଲେ ସେତେବେଳେ
ସେ ପ୍ରେରିତମାନଙ୍କୁ ଯିରୂଶାଲମ ନ ଛାଡିବାପାଇଁ କହିଲେ।
ଯୀଶୁ କହିଲେ, "ପରମେଶ୍ୱର ତୁମ୍ଭମାନଙ୍କୁ କିଛି ପ୍ରତିଜ୍ଞା
ଦେଇଛନ୍ତି। ମୁଁ ତୁମ୍ଭମାନଙ୍କୁ ଏହି ପ୍ରିତିଜ୍ଞା ବିଷୟରେ
ଆଗରୁ କହି ସାରିଛି। ତେଣୁ ସେହି ପ୍ରତିଜ୍ଞା ନ ପାଇବା
ପର୍ଯ୍ୟନ୍ତ ତୁମ୍ଭେମାନେ ଯିରୂଶାଲମରେ ଅପେକ୍ଷାରେ ରୁହ।
୫ଯୋହନ ଲୋକମାନଙ୍କୁ ଜଳରେ ବାପ୍ତିସ୍ମ ଦେଇଥିଲେ,
କିନ୍ତୁ ଅଳ୍ପ ଦିନ ଭିତରେ ତୁମ୍ଭେମାନେ ପବିତ୍ରଆତ୍ମାଙ୍କ ଦ୍ୱାରା
ବାପ୍ତିଜିତ ହେବ।"

**ଯୀଶୁ ସ୍ୱର୍ଗକୁ ନିଆଗଲେ**

୬ପ୍ରେରିତମାନେ ଏକାଠି ହୋଇ ଯୀଶୁଙ୍କୁ ପଚାରିଲେ,
"ପ୍ରଭୁ, ଆପଣ ଯିହୂଦୀମାନଙ୍କୁ ସେମାନଙ୍କର ରାଜ୍ୟ ଏହି
ସମୟରେ ପୁନର୍ବାର ଦେଉଅଛନ୍ତି କି?"
୭ଯୀଶୁ ସେମାନଙ୍କୁ କହିଲେ, "କେବଳ ପରମେଶ୍ୱରଙ୍କର
ଅଧିକାର ଅଛି ଯେ, ସେ ତାରିଖ ଓ ସମୟ ଗୁଡ଼ିକ
ବିଷୟରେ ନିଷ୍ପତ୍ତି ଗ୍ରହଣ କରିପାରିବେ। ତୁମ୍ଭେମାନେ ସେ
ବିଷୟରେ ଜାଣି ପାରିବ ନାହିଁ। ୮କିନ୍ତୁ ପବିତ୍ର ଆତ୍ମା
ତୁମ୍ଭମାନଙ୍କ ପାଖକୁ ଆସିବେ। ତା'ପରେ ତୁମ୍ଭେମାନେ ଶକ୍ତି
ପାଇବ। ତୁମ୍ଭେମାନେ ମୋର ସାକ୍ଷୀ ହେବ। ତୁମ୍ଭେମାନେ
ମୋ ବିଷୟରେ ଲୋକମାନଙ୍କୁ କହିବ। ପ୍ରଥମେ ଯିରୂଶାଲମର
ଲୋକମାନଙ୍କୁ, ତା'ପରେ ତୁମ୍ଭେମାନେ ସମଗ୍ର ଯିହୂଦା
ପ୍ରଦେଶ, ଶମିରୋଣ ଓ ପୃଥିବୀର ସମସ୍ତ ଅଞ୍ଚଳର
ଲୋକମାନଙ୍କୁ କହିବ।"
୯ଯୀଶୁ ପ୍ରେରିତମାନଙ୍କୁ ଏତିକି କହିବା ପରେ ତାହାଙ୍କୁ
ଆକାଶକୁ ଉଠେଇ ନିଆଗଲା। ପ୍ରେରିତମାନେ ଦେଖୁଥିବା
ସମୟରେ ଯୀଶୁ ଖଣ୍ଡେ ମେଘ ଭିତରକୁ ଚାଲିଗଲେ, ଓ
ସେମାନେ ତାହାଙ୍କୁ ଆଉ ଦେଖିପାରିଲେ ନାହିଁ। ୧୦ଯୀଶୁ
ଚାଲି ଯାଉଥିଲେ ଓ ପ୍ରେରିତମାନେ ଆକାଶକୁ ଚାହିଁ
ରହିଥିଲେ। ହଠାତ୍ ଦୁଇଜଣ ଧଳା ବସ୍ତ୍ର ପିନ୍ଧିଥିବା ପୁରୁଷ
(ସ୍ୱର୍ଗଦୂତ) ସେମାନଙ୍କ ପାଖରେ ଆସି ଠିଆହେଲେ। ୧୧ସେହି
ଦୁଇଜଣ ପୁରୁଷ ପ୍ରେରିତମାନଙ୍କୁ କହିଲେ, "ହେ ଗାଲୀଲୀର
ଲୋକେ, ତୁମ୍ଭେମାନେ ଏଠାରେ ଠିଆହୋଇ ଆକାଶ ଆଡେ
କାହିଁକି ଚାହିଁଛ? ଏହି ଯୀଶୁଙ୍କୁ ଯେପରି ତୁମ୍ଭମାନଙ୍କ ମଧ୍ୟରୁ
ଉଠାଇ ନିଆଗଲା, ସେ ସ୍ୱର୍ଗକୁ ଗଲେ, ଓ ତୁମ୍ଭେମାନେ
ତାହାଙ୍କୁ ଉପରକୁ ଯିବାର ଯେପରି ଦେଖିଲ, ସେହିପରି
ସେ ପୁଣି ଫେରିଆସିବେ।"

**ଜଣେ ନୂଆ ପ୍ରେରିତଙ୍କ ନିର୍ବାଚନ**

୧୨ତାପରେ ପ୍ରେରିତମାନେ ଜୀତ ନାମକ ପର୍ବତରୁ
ଯିରୂଶାଲମ ଫେରି ଆସିଲେ। (ଏହି ପର୍ବତ ଯିରୂଶାଲମଠାରୁ
ପ୍ରାୟ ଦୁଇ କିଲୋମିଟର ଦୂର)। ୧୩ପ୍ରେରିତମାନେ ସେଠାରେ
ପହଞ୍ଚି ଉପରମହଲାର ଏକ କୋଠରୀ ଭିତରକୁ ଗଲେ,
ସେଠାରେ ସେମାନେ ରହିଲେ। ଏ ପ୍ରେରିତମାନେ –ପିତର,
ଯୋହନ, ଯାକୁବ, ଆନ୍ଦ୍ରିୟ, ଫିଲିପ୍ପ, ଥୋମା, ବାର୍ଥଲମି,
ମାଥିଉ, ଆଲଫିର ପୁତ୍ର ଯାକୁବ, ସାହସୀ ଶିମୋନ ଓ
ଯାକୁବର ପୁତ୍ର ଯିହୂଦା ଥିଲେ।
୧୪ପ୍ରେରିତମାନେ ସମସ୍ତେ ଏକାଠି ଥିଲେ, ଓ ଗୋଟିଏ
ଉଦ୍ଦେଶ୍ୟରେ ଏକମନ ହୋଇ ନିରନ୍ତର ପ୍ରାର୍ଥନା କରୁଥିଲେ।
ସେମାନଙ୍କ ସହିତ କେତେ ଜଣ ସ୍ତ୍ରୀ, ଯୀଶୁଙ୍କ ମାତା
ମରିୟମ ଓ ଯୀଶୁଙ୍କର ଭାଇମାନେ ମଧ୍ୟ ଥିଲେ।
୧୫ସେହି ସମୟରେ ସେଠାରେ ପ୍ରାୟ ଶହେକୋଡିଏ
ଜଣ ବିଶ୍ୱାସୀ ଏକତ୍ର ହୋଇଥିଲେ। ପିତର ସେମାନଙ୍କ
ମଧ୍ୟରେ ଠିଆ ହୋଇ କହିଲେ, ୧୬"ଭାଇମାନେ, ଧର୍ମଶାସ୍ତ୍ରରେ
ପବିତ୍ର ଆତ୍ମା ଦାଉଦଙ୍କ ମୁଖ ଦ୍ୱାରା କହିଛନ୍ତି ଯେ, କିଛି
ଗୋଟିଏ ନିଶ୍ଚୟ ଘଟିବ। ସେ ଏହା ଯିହୂଦାଙ୍କ ବିଷୟରେ
କହିଥିଲେ। ୧୭ଯିହୂଦା ଆମ୍ଭ ଦଳରେ ଥିଲା ଓ ଆମ୍ଭ ସହିତ
ଏକତ୍ର ସେବା କାର୍ଯ୍ୟ କରିଥିଲା, ପବିତ୍ର ଆତ୍ମା କହିଥିଲେ
ଯେ ଯେଉଁଲୋକମାନେ ଯୀଶୁଙ୍କୁ ବନ୍ଦୀ କରିବାକୁ ଯିବେ
ଯିହୂଦା ସେମାନଙ୍କର ନେତା ହେବ।"

---

**ପ୍ରେରିତମାନେ** ଯୀଶୁଙ୍କ ଶିଷ୍ୟମାନେ

୧୮ଯିହୂଦାକୁ ଏହି ଘୃଣ୍ୟ କାମ କରିବା ପାଇଁ ଟଙ୍କା
ଦିଆଯାଇଥିଲା। ସେଥିରେ ସେ ଗୋଟିଏ ଜମି କିଣି ଦେଲା।
କିନ୍ତୁ ସେ ନିଜେ ମୁଣ୍ଡ ମାଡ଼ ହୋଇ ପଡିଲା। ପରେ
ତା'ର ପେଟ ଫାଟିଗଲା, ଓ ଅନ୍ତବୁଜୁଳା ବାହାରି ପଡିଲା।
୧୯ଏହି କଥା ଯିରୂଶାଲମ ବାସିନ୍ଦାମାନେ ସମସ୍ତେ ଜାଣିଲେ।
ଏଣୁ ସେମାନେ ତାହାଙ୍କ ନିଜ-ନିଜ ଭାଷାରେ ଏହି ଜମିକୁ
"ହକଲଦମା" ଅର୍ଥାତ "ରକ୍ତ କ୍ଷେତ୍ର'ବୋଲି କହିଲେ।")
୨୦ପିତର ପୁଣି କହିଲେ, "ଗୀତସଂହିତାରେ ଯିହୂଦା
ସଂପର୍କରେ ଲେଖା ଯାଇଅଛି:

'ତା'ର ବାସଗୃହ ଜନ ଶୂନ୍ୟ ହେଉ, ସେଠାରେ
କୌଣସି ବ୍ୟକ୍ତି ବାସ ନ କରନ୍ତୁ।'
ଗୀତସଂହିତା ୬୯:୨୫

ଏବଂ ଆହୁରି ମଧ ଲେଖାଅଛି:

'ତାହାଙ୍କୁ ଅର୍ପଣ କରାଯାଇଥିବା କାର୍ଯ୍ୟ ଅନ୍ୟ କେହି
ବ୍ୟକ୍ତି କରନ୍ତୁ।' ଗୀତସଂହିତା ୧୦୯:୮

୨୧-୨୨ତେଣୁ ମୃତମାନଙ୍କ ମଧ୍ୟରୁ ଯୀଶୁଙ୍କର ପୁନରୁତ୍ଥାନର
ସାକ୍ଷୀ ହେବା ନିମନ୍ତେ ଆଉ ଜଣେ ଆମ୍ଭ ସହିତ ଯୋଗ
ଦେବା ନିତାନ୍ତ ଜରୁରୀ ଅଟେ। ତେଣୁ ପ୍ରଭୁ ଯୀଶୁ ଆମ୍ଭ
ସହିତ ଥିବା ସମୟରେ ସେତେବେଳେ ଆମ୍ଭମାନଙ୍କ ଭିତରେ
ଯେତେ ଜଣ ଥିଲେ ସେମାନଙ୍କ ମଧ୍ୟରୁ ଆଉ ଜଣକୁ ହିଁ
ବଛାଯିବ। ଅନ୍ୟଭାଷାରେ କହିବାକୁ ଗଲେ, ଯୋହନଙ୍କ
ଦ୍ୱାରା ବାପ୍ତିଜିତ ହେବା ଦିନଠାରୁ ଯୀଶୁଙ୍କୁ ଆମ୍ଭମାନଙ୍କ
ମଧ୍ୟରୁ ଉର୍ଦ୍ଧ୍ୱକୁ ନିଆ ହୋଇ ଯିବା ପର୍ଯ୍ୟନ୍ତ ଏହି ଲୋକ
ଜଣଙ୍କ ଆମ୍ଭ ସଙ୍ଗରେ ରହିଥିବା ଉଚିତ।"
୨୩ଏଥିପାଇଁ ପ୍ରେରିତମାନେ ଦୁଇଜଣ ଲୋକଙ୍କ ନାମ
ପ୍ରସ୍ତାବ କଲେ। ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି
ଯୋସେଫ, ଯାହାଙ୍କୁ ବର୍ଶବ୍ବା ବୋଲି ଯାଉଥିଲା (ଏହାଙ୍କୁ
ଯୁସ୍ତ ମଧ୍ୟ କୁହାଯାଉଥିଲା) ଏବଂ ଅନ୍ୟ ଜଣେ ମଥିୟ।
୨୪ପୁଣି ପ୍ରେରିତମାନେ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ,
"ପ୍ରଭୁ, ତୁମ୍ଭେ ସମସ୍ତଙ୍କ ମନକଥା ଜାଣିଛ। ଏହି ସେବା
କାର୍ଯ୍ୟ ଓ ପ୍ରେରିତ ପଦ ଛାଡ଼ିଦେଇ ଯିହୂଦା ନିଜ ସ୍ଥାନକୁ
ଚାଲିଯାଇଛି। ୨୫ସେହି ପଦରେ ପ୍ରେରିତ ହେବା ନିମନ୍ତେ
ତୁମ୍ଭେ ଏହି ଦୁଇ ଜଣଙ୍କ ମଧ୍ୟରୁ କାହାକୁ ପସନ୍ଦ କରିଛ,
ତାହା ଆମ୍ଭମାନଙ୍କୁ ଦେଖାଇଦିଅ।" ୨୬ତାପରେ ପ୍ରେରିତମାନେ
ଏହି ଦୁହିଁଙ୍କ ନାମରେ ଗୁଳା ପକାଇଲେ। କାଗଜରେ
ଲେଖାଥିବା ଗୁଳା ମଥିୟଙ୍କ ନାମରେ ଉଠିଲା। ଏହିପରି
ସେ ଅନ୍ୟ ଏଗାର ଜଣ ପ୍ରେରିତଙ୍କ ସହିତ ଜଣେ ପ୍ରେରିତ
ହିସାବରେ ଗଣିତ ହେଲେ।

## ପବିତ୍ର ଆତ୍ମାଙ୍କର ଆଗମନ

୨ ଯେତେବେଳେ ପେଣ୍ଟିକଷ୍ଟ* ଦିନ ଆସିଲା ସେମାନେ
ସମସ୍ତେ ଗୋଟିଏ ସ୍ଥାନରେ ଏକାଠି ଜମା ହେଲେ।
୨ସେତେବେଳେ ହଠାତ୍ ଆକାଶରୁ ଗୋଟିଏ ଶବ୍ଦ ଶୁଣାଗଲା।
ଏହି ଶବ୍ଦ ଗୋଟିଏ ଭୀଷଣ ଝଡ଼ ବହିବା ପରି ଥିଲା।
ଶବ୍ଦଟି ସେମାନେ ଯେଉଁଘର ଭିତରେ ବସିଥିଲେ ସେହି
ଘରର ଗୃହଆଡ଼େ ବ୍ୟାପି ଗଲା। ୩ସେମାନେ ଅଗ୍ନିଶିଖା
ପରି କିଛି ଦେଖିଲେ। ଏହି ଅଗ୍ନି ଶିଖାସବୁ ଭାଗଭାଗ
ହୋଇ ସେଠାରେ ଥିବା ପ୍ରତ୍ୟେକ ବ୍ୟକ୍ତିର ଉପରେ
ରହିଲା। ୪ସମସ୍ତେ ପବିତ୍ରଆତ୍ମାରେ ପରିପୂର୍ଣ୍ଣ ହେଲେ।
ପବିତ୍ରଆତ୍ମାଙ୍କ ଦ୍ୱାରା ପାଉଥିବା ଶକ୍ତି ସାହାଯ୍ୟରେ ସେମାନେ
ଭିନ୍ନଭିନ୍ନ ଭାଷାରେ କଥା କହିବାକୁ ଆରମ୍ଭ କଲେ।
୫ସେ ସମୟରେ ପୃଥିବୀର ସବୁ ଦେଶରୁ ଯିହୂଦୀ
ଭକ୍ତମାନେ ଆସି ଯିରୂଶାଲମରେ ରହୁଥିଲେ। ୬ଏହି ଶବ୍ଦ
ଶୁଣିବା ମାତ୍ରେ ସେମାନଙ୍କ ଭିତରୁ ବହୁତ ଲୋକ ଆସି
ଜମା ହୋଇଗଲେ। ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ,
କାରଣ ସେମାନେ ନିଜେ ଯେଉଁ ଭାଷାରେ କଥା ହେଉଥିଲେ,
ପ୍ରେରିତମାନେ ସେହି ସେହି ଭାଷାରେ କଥା ହେଉଥିବାର
ଶୁଣିଲେ। ୭ଏଥିରେ ଯିହୂଦୀମାନେ ଆଶ୍ଚର୍ଯ୍ୟ ହୋଇ ପରସ୍ପର
ମଧ୍ୟରେ କଥାବାର୍ତ୍ତା ହେଲେ, "ଦେଖ, ଏହିପରି କଥା
କହିଥିବା ଏହି ସମସ୍ତ ଲୋକେ ଗାଲିଲୀର ନୁହଁନ୍ତି କି?
୮କିନ୍ତୁ ଆମ୍ଭେମାନେ ସେମାନଙ୍କୁ ଆମ୍ଭ ମାତୃଭାଷାରେ କଥା
କହିବାର କିପରି ଶୁଣୁଛୁ? ଏହା କିପରି ସମ୍ଭବ! ୯ଆମ୍ଭେ
ଏଠାରୁ ଭିନ୍ନଭିନ୍ନ ସ୍ଥାନରୁ ଆସିଛୁ। ପାର୍ଥୀୟ, ମାଦୀୟ, ଓ
ଏଲାମୀୟ ପୁଣି ମେସପଟାମିଆର ଲୋକମାନେ, ୧୦ଏବଂ
ଯିହୂଦା, କାପ୍ପାଦକିଆ, ପନ୍ତ, ଓ ଆସିଆ, ଫ୍ରୁଗିଆ ଓ
ପମ୍ଫୂଲିଆ, ମିଶର ନିବାସୀ, କୂରୀଣୀ ନିକଟବର୍ତ୍ତୀ ଲିବୟା
ପ୍ରଦେଶ ଲୋକେ, ରୋମ ନଗରରୁ ଆସିଥିବା ତଥା
କ୍ରୀତୀୟ ଓ ଆରବୀୟ ପରିଦର୍ଶକ ଗଣ। ଆମ୍ଭ ଭିତରୁ
କେତେଜଣ ଜନ୍ମରୁ ଯିହୂଦୀ ଏବଂ ଅନ୍ୟକେତେକ ଯିହୂଦୀ
ଧର୍ମଗ୍ରହଣ କରିଥିବା ଲୋକମାନେ। ୧୧ଆମ୍ଭେ ସମସ୍ତେ ଭିନ୍ନ
ଭିନ୍ନ ଦେଶରୁ ଆସିଛୁ। କିନ୍ତୁ ଆମ୍ଭେ ଏହି ଲୋକମାନଙ୍କଠାରୁ
ଆମ୍ଭ ନିଜ ଭାଷା କହିବାର ଶୁଣୁଛୁ। ସେମାନେ ପରମେଶ୍ୱରଙ୍କର
ମହତ୍ ଓ ଆଶ୍ଚର୍ଯ୍ୟ ପୂର୍ଣ୍ଣ କାର୍ଯ୍ୟକୁ ଆମ୍ଭ ଭାଷାରେ ବର୍ଣ୍ଣନା
କରୁଛନ୍ତି। ଆମ୍ଭେ ଏହା ବୁଝି ପାରୁଛୁ।" ୧୨ସେମାନେ
ସମସ୍ତେ ଆଶ୍ଚର୍ଯ୍ୟ ଓ ବିଭ୍ରାନ୍ତ ହୋଇ ପଡିଲେ। ସେମାନେ
ପରସ୍ପର ଭିତରେ ପଚାରାପଚାରି ହେଲେ, "ଏ ସବୁ କ'ଣ
ହେଉଛି?" ୧୩କିନ୍ତୁ ଅନ୍ୟ ଲୋକମାନେ ପ୍ରେରିତମାନଙ୍କୁ
ଉପହାସ କରି କହିଲେ, "ଏମାନେ ସମସ୍ତେ ମଦପିଇ
ମାତାଲ ହୋଇଛନ୍ତି।"

## ପିତରଙ୍କର ଲୋକମାନଙ୍କୁ ସମ୍ବୋଧନ

୧୪ପିତର ସେହି ଏଗାର ଜଣ ପ୍ରେରିତଙ୍କ ସହ ଠିଆହୋଇ
ସେହି ଲୋକମାନଙ୍କୁ ବଡ ପାଟିରେ କହିଲେ, "ହେ
ଯିହୂଦୀୟମାନେ, ହେ ଯିରୂଶାଲମ ବସିନ୍ଦାମାନେ, ସମସ୍ତେ
ମୋ କଥା ଶୁଣ। ୧୫ତୁମ୍ଭେମାନେ ଯାହା ଅନୁମାନ କରୁଛ

**ପେଣ୍ଟିକଷ୍ଟ** ଯିହୁଦୀମାନଙ୍କର ଶସ୍ୟ କାଟିବା ପର୍ବ ଯାହା ନିସ୍ତାର ପର୍ବର ୫୦ ଦିନ ପରେ ଆରମ୍ଭ ହୋଇଥାଏ।

ଯେ, ଏମାନେ ମାତାଲ, ତାହା ନୁହେଁ, କାରଣ ବର୍ତ୍ତମାନ
ତ' ସକାଳ ନ'ଟା ବାଜିଛି। ୧୬ଏବେ ଯାହା ଘଟୁଛି ସେ
ବିଷୟରେ ଭାବବାଦୀ ଯୋୟେଲ କହିଥିଲେ: ପରମେଶ୍ୱର
କହନ୍ତି,

୧୭ 'ମୁଁ ଶେଷ ସମୟରେ ସମସ୍ତଙ୍କ ଉପରେ ମୋର
ଆତ୍ମା ଢାଳି ଦେବି। ଯାହାଦ୍ୱାରା ତୁମ୍ଭମାନଙ୍କର ପୁଅ
ଝିଅମାନେ ଭବିଷ୍ୟତ ବାଣୀ କହିପାରିବେ। ତୁମ୍ଭମାନଙ୍କର
ଯୁବକମାନେ ଦର୍ଶନ ପାଇବେ, ଓ ବୃଦ୍ଧ ଲୋକମାନେ,
ସ୍ୱପ୍ନ ଦେଖିବେ।
୧୮ ହଁ, ସେତେବେଳେ ମୁଁ ନିଜ ସେବକ ସେବିକାମାନଙ୍କ
ଉପରେ ନିଜ ଆତ୍ମା ଢାଳି ଦେବି, ସେମାନେ
ଭବିଷ୍ୟତ ବାଣୀ କହିବେ।
୧୯ ମୁଁ ଉପରିସ୍ଥ ଆକାଶରେ ବିସ୍ମୟଜନକ କାର୍ଯ୍ୟ ଓ
ନୀଚସ୍ଥ ପୃଥିବୀରେ ରକ୍ତ, ନିଆଁ, ମେଘ, ଧୂଆଁର
ଚିହ୍ନମାନ ଦେଖାଇବି।
୨୦ ପ୍ରଭୁଙ୍କର ସେହି ମହତ୍ ଓ ପ୍ରସିଦ୍ଧ ଦିନ ଆସିବା
ପୂର୍ବରୁ ସୂର୍ଯ୍ୟ କଳା ଓ ଚନ୍ଦ୍ର ରକ୍ତ ବର୍ଣ୍ଣ ହୋଇଯିବ।
୨୧ ସେତେବେଳେ ଯେ କେହି ପ୍ରଭୁଙ୍କ ନାମ ଉଚ୍ଚାରଣ
କରିବ, ସେ ଉଦ୍ଧାର ପାଇବ।'

ଯୋୟେଲ ୨:୨୮-୩୨

୨୨"ହେ ଇସ୍ରାୟେଲର ଲୋକମାନେ, ଏହି ସବୁ କଥା
ଶୁଣ: ନାଜରିତୀୟ ଯୀଶୁ ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ
ଯାହାଙ୍କୁ ଈଶ୍ୱର ପଠାଇ ଥିଲେ। ଯୀଶୁ ଯେଉଁସବୁ ଶକ୍ତିଶାଳୀ
କାର୍ଯ୍ୟ ଏବଂ ଆଶ୍ଚର୍ଯ୍ୟ ଘଟଣା ସବୁ କରିଥିଲେ, ତାହାଦ୍ୱାରା
ପରମେଶ୍ୱର ତୁମ୍ଭମାନଙ୍କ ନିକଟରେ ଏହା ପ୍ରମାଣିତ କରିଛନ୍ତି।
୨୩ତୁମ୍ଭେମାନେ ସମସ୍ତେ ଏସବୁ ଦେଖିଛ ଓ ଏସବୁ ଯେ
ନିର୍ଘାତ ସତ୍ୟ ତାହା ଜାଣିଛ। ଏହି ଯୀଶୁଙ୍କୁ ପରମେଶ୍ୱରଙ୍କର
ନିଶ୍ଚିତ ଯୋଜନା ଓ ପୂର୍ବ ଜ୍ଞାନ ଅନୁସାରେ ତୁମ୍ଭମାନଙ୍କୁ
ସମର୍ପି ଦିଆ ଯାଇଥିଲା। କିନ୍ତୁ ତୁମ୍ଭେମାନେ ଦୁଷ୍ଟମାନଙ୍କ
ସାହାଯ୍ୟରେ ତାହାଙ୍କୁ କ୍ରୁଶରେ ଚଢ଼େଇ କଣ୍ଟା ବାଡ଼େଇ
ହତ୍ୟା କରିଦେଲ। ୨୪କିନ୍ତୁ ପରମେଶ୍ୱର ଏସବୁ ଘଟିବ
ବୋଲି ଆଗରୁ ଜାଣିଥିଲେ। ସେଥିପାଇଁ ସେ ଯୀଶୁଙ୍କୁ
ମୃତ୍ୟୁର ଯନ୍ତ୍ରଣାରୁ ମୁକ୍ତ କରି ତାହାଙ୍କୁ ପୁଣି ବଞ୍ଚାଇଲେ।
ମୃତ୍ୟୁ ତାହାଙ୍କୁ ବାନ୍ଧି ରଖିପାରିଲାନାହିଁ। ୨୫ଦାଉଦ ତାହାଙ୍କ
ବିଷୟରେ କହିଥିଲେ,

'ମୁଁ ସର୍ବଦା ପ୍ରଭୁଙ୍କୁ ମୋ ସମ୍ମୁଖରେ ଦେଖୁଥିଲି।
ସେ ମୋତେ ନିରାପଦରେ ରଖିବା ପାଇଁ ମୋର
ଡାହାଣ ପାଖରେ ରହନ୍ତି।
୨୬ ଏହା ଦ୍ୱାରା ମୋର ମନ ପ୍ରଫୁଲ୍ଲିତ ହେଲା ଓ ମୋ
ମୁହଁରୁ ଆନନ୍ଦଜନକ କଥା ବାହାରିଲା।
୨୭ ମୋ ଶରୀର ମଧ୍ୟ ଭରସାରେ ବଞ୍ଚି ରହିବ,
ଯେହେତୁ ତୁମ୍ଭେ ମୋର ଆତ୍ମାକୁ ମୃତ୍ୟୁ ସ୍ଥାନରେ
ଛାଡି ଦେବ ନାହିଁ। ତୁମ୍ଭେ ନିଜର ପବିତ୍ର ବ୍ୟକ୍ତିକୁ
କବରରେ କ୍ଷୟ ହେବାକୁ ଦେବ ନାହିଁ।
୨୮ ତୁମ୍ଭେ ମୋତେ ଜୀବନର ପଥ ଦେଖାଇ ଅଛ।
ତୁମ୍ଭ ଉପସ୍ଥିତିରେ ମୋତେ ବହୁତ ଆନନ୍ଦ ମିଳିବ।'

ଗୀତସଂହିତା ୧୬:୮-୧୧

୨୯"ମୋର ଭାଇମାନେ, ମୁଁ ବିଶ୍ୱାସର ସହିତ ଆମ୍ଭ ପୂର୍ବ
ପୁରୁଷ ଦାଉଦଙ୍କ ବିଷୟରେ ତୁମ୍ଭମାନଙ୍କୁ କହି ପାରିବି।
ସେ ମୃତ୍ୟୁ ବରଣ କରି କବରସ୍ଥ ହୋଇଛନ୍ତି, ଏବଂ
ତାହାଙ୍କର ଏହି କବର ଅଦ୍ୟାବଧି ଆମ୍ଭ ନିକଟରେ ଅଛି।
୩୦ଦାଉଦ ଜଣେ ଭାବବାଦୀ ଥିଲେ। ସେ ଜାଣିଥିଲେ,
ପରମେଶ୍ୱର ତାହାଙ୍କ ପାଖରେ ପ୍ରତିଜ୍ଞା କରିଥିଲେ ଯେ,
ସେ ତାହାଙ୍କ ବଂଶଧର ମଧ୍ୟରୁ ଜଣଙ୍କୁ ତାହାଙ୍କ ସିଂହାସନରେ
ବସାଇବେ। ୩୧ଏଣୁ ଭବିଷ୍ୟତରେ ଯାହା ଘଟିବା,ତାହା
ଦାଉଦ ପୂର୍ବରୁ ଜାଣିପାରି ଖ୍ରୀଷ୍ଟଙ୍କ ସମ୍ପର୍କରେ କହିଥିଲେ,

ତାହାଙ୍କ ମୃତ୍ୟୁର ସ୍ଥାନରେ ଛାଡ଼ି ଦିଆ ଯାଇନାହିଁ ଓ
ତାହାଙ୍କର ଦେହ କବରରେ ପଚିସଢ଼ି ଯାଇନାହିଁ।'

ଦାଉଦ ଏହି ସ୍ଥାନରେ ଯୀଶୁଖ୍ରୀଷ୍ଟଙ୍କର ମୃତମାନଙ୍କ ମଧ୍ୟରୁ
ପୁନରୁତ୍ଥାନ ସମ୍ବନ୍ଧରେ କହିଥିଲେ। ୩୨ଏହି ଯୀଶୁଙ୍କୁ ପରମେଶ୍ୱର
ଯେ ମୃତ୍ୟୁରୁ ଉଠାଇଛନ୍ତି, ଆମ୍ଭେମାନେ ସେଥିରେ ନିଜେ
ସାକ୍ଷୀ ଅଛୁ। ୩୩ଯୀଶୁଙ୍କୁ ସ୍ୱର୍ଗକୁ ଉଠାଇ ନିଆ ଯାଇଛି।
ସେ ବର୍ତ୍ତମାନ ପରମେଶ୍ୱରଙ୍କର ଡାହାଣ ପଟେ ଅଛନ୍ତି।
ପରମ ପିତା ଯୀଶୁଙ୍କୁ ପବିତ୍ରଆତ୍ମା ଦେଇଛନ୍ତି। ପରମେଶ୍ୱର
ଏହି ପବିତ୍ରଆତ୍ମା ଦେବାପାଇଁ ଆଗରୁ ଶପଥ କରିଥିଲେ।
ତେଣୁ ଯୀଶୁ ପବିତ୍ରଆତ୍ମାଙ୍କୁ ଢ଼ାଳି ଦେଉଛନ୍ତି। ବର୍ତ୍ତମାନ
ତୁମ୍ଭେମାନେ ଏହା ଦେଖୁଅଛ ଓ ଶୁଣୁଅଛ। ୩୪ଦାଉଦ ସ୍ୱର୍ଗ
ଆରୋହଣ କରି ନାହାଁନ୍ତି। ଯୀଶୁ ସ୍ୱର୍ଗ ଆରୋହଣ
କରିଥିଲେ। ଦାଉଦ ନିଜେ ଏହିକଥା କହିଛନ୍ତି:

'ପ୍ରଭୁ ମୋର ପ୍ରଭୁଙ୍କୁ କହିଲେ:
୩୫ ମୁଁ ତୁମ୍ଭର ଶତ୍ରୁମାନଙ୍କୁ ତୁମ୍ଭର ପାଦ ତଳକୁ ନ
ଆଣିବା ପର୍ଯ୍ୟନ୍ତ ତୁମ୍ଭେ ମୋର ଡାହାଣ ପଟେ
ବସିଥାଅ।' ଗୀତସଂହିତା ୧୧୦:୧

୩୬"ତେଣୁ ଇସ୍ରାୟେଲର ସମସ୍ତେ ଏହା ଭଲ ଭାବରେ
ଜାଣନ୍ତୁ ଯେ, ଏହି ଯେଉଁ ଯୀଶୁଙ୍କୁ ତୁମ୍ଭେମାନେ କ୍ରୁଶରେ
ବଧ କରିଛ, ପରମେଶ୍ୱର ତାହାଙ୍କୁ ପ୍ରଭୁ ଓ ମଶୀହ
ପଦରେ ନିଯୁକ୍ତ କରିଛନ୍ତି।"
୩୭ଲୋକମାନେ ଏପ୍ରକାର କଥା ଶୁଣି ବହୁତ ଦୁଃଖିତ
ହେଲେ। ସେମାନେ ପିତର ଓ ଅନ୍ୟ ପ୍ରେରିତମାନଙ୍କୁ
ପଚାରିଲେ, "ଭାଇମାନେ, ଆମ୍ଭେ କ'ଣ କରିବା?"
୩୮ପିତର ସେମାନଙ୍କୁ କହିଲେ, "ତୁମ୍ଭେମାନେ ତୁମ୍ଭମାନଙ୍କର
ହୃଦୟ ଓ ଜୀବନ ପରିବର୍ତ୍ତନ କର। ତୁମ୍ଭମାନଙ୍କ ମଧ୍ୟରୁ
ପ୍ରତ୍ୟେକଙ୍କୁ ନିଜ ପାପ ପାଇଁ କ୍ଷମା ପାଇବା ନିମନ୍ତେ ଯୀଶୁ
ଖ୍ରୀଷ୍ଟଙ୍କ ନାମରେ ବାପ୍ତିସ୍ମ ନେବାକୁ ପଡିବ। ତେବେ
ତୁମ୍ଭେମାନେ ପବିତ୍ର ଆତ୍ମାର ଦାନ ପାଇବ। ୩୯ଏହି ପ୍ରତିଜ୍ଞା
ତୁମ୍ଭମାନଙ୍କ ପାଇଁ ଦିଆଯାଇଛି। ଆହୁରି ମଧ୍ୟ ଏହା ତୁମ୍ଭର

ପିଲାମାନଙ୍କ ପାଇଁ ଓ ଯେଉଁମାନେ ବହୁତ ଦୂରରେ ଅଛନ୍ତି
ସେମାନଙ୍କ ପାଇଁ ଦିଆଯାଇଛି। ଯେଉଁମାନଙ୍କୁ ପରମେଶ୍ୱର,
ଆମ୍ଭମାନଙ୍କ ପ୍ରଭୁ, ଡାକନ୍ତି ସେ ସମସ୍ତଙ୍କ ପାଇଁ ଏହି
ପ୍ରତିଜ୍ଞା ଦିଆଯାଇଛି।”
୪୦ପିତର ସେମାନଙ୍କୁ ଚେତନା ଦେଇ କହିଲେ, “ଏହି
ବର୍ତ୍ତମାନ ମନ୍ଦ ଲୋକମାନଙ୍କଠାରୁ ନିଜକୁ ରକ୍ଷାକର।”
୪୧ଯେଉଁମାନେ ତାହାଙ୍କର ଏହି କଥା ଗ୍ରହଣ କଲେ
ସେମାନେ ବାପ୍ତିଜିତ ହେଲେ। ସେଦିନ ସେହି ବିଶ୍ୱାସୀ
ଦଳ ସହିତ ଆହୁରି ପ୍ରାୟ ତିନି ହଜାର ଲୋକ ଯୋଗ
ଦେଲେ। ୪୨ବିଶ୍ୱାସୀ ଲୋକମାନେ ଏକାଠି ମିଳିତ ହେବାକୁ
ଲାଗିଲେ। ପ୍ରେରିତମାନଙ୍କ ଉପଦେଶ ଶୁଣିବାକୁ ସେମାନେ
ସେମାନଙ୍କର ସମୟ ଦେଲେ। ବିଶ୍ୱାସୀମାନେ ପରସ୍ପରର
ସହଭାଗୀ ହେଲେ। ସେମାନେ ରୋଟୀ ବାଣ୍ଟି ଖାଇବାରେ
ଏବଂ ପ୍ରାର୍ଥନା କରିବାରେ ସମୟ ଦେଲେ।

## ବିଶ୍ୱାସୀମାନଙ୍କ ମଧ୍ୟରେ ସହଭାଗୀତା

୪୩ପ୍ରେରିତମାନେ ବହୁତ ଶକ୍ତିଶାଳୀ ଓ ବହୁତ ଆଶ୍ଚର୍ଯ୍ୟପୂର୍ଣ୍ଣ
କାର୍ଯ୍ୟ କରୁଥିଲେ। ପ୍ରତ୍ୟେକ ଲୋକର ପରମେଶ୍ୱରଙ୍କ ପ୍ରତି
ଅତି ଭକ୍ତି ଥିଲା। ୪୪ସମସ୍ତ ବିଶ୍ୱାସୀମାନେ ଏକାଠି ରହିଲେ
ଏବଂ ସେମାନଙ୍କ ପାଖରେ ଯାହା ସବୁ ଥିଲା, ସେଥିରେ
ସମସ୍ତେ ଭାଗୀଦାର ହେଲେ। ୪୫ସେମାନେ ନିଜନିଜର ସବୁ
ସମ୍ପତ୍ତି ଓ ଜିନିଷପତ୍ର ବିକିଦେଲେ, ଓ ସମସ୍ତ ଲୋକମାନଙ୍କୁ
ସେମାନଙ୍କ ନିଜନିଜ ଆବଶ୍ୟକତା ଅନୁସାରେ ବାଣ୍ଟିଦେଲେ।
୪୬ପ୍ରତିଦିନ ସେମାନେ ଏକାଠି ହୋଇ ଉପାସନା ମନ୍ଦିରରେ
ପରସ୍ପରକୁ ଭେଟୁଥିଲେ। ସେ ସମସ୍ତଙ୍କର ଲକ୍ଷ୍ୟ ଏକ
ଥିଲା। ସେମାନେ ସେମାନଙ୍କ ଘରେ ଏକତ୍ର ଖାଉଥିଲେ,
ଏବଂ ଆନନ୍ଦପୂର୍ଣ୍ଣ ହୃଦୟରେ ପରସ୍ପରକୁ ଏଥିର ଅଂଶୀ
କରାଉଥିଲେ। ୪୭ବିଶ୍ୱାସୀମାନେ ପରମେଶ୍ୱରଙ୍କର ପ୍ରଶଂସା
କଲେ। ସବୁ ଲୋକମାନେ ସେମାନଙ୍କୁ ଭଲ ପାଉଥିଲେ।
ପ୍ରତିଦିନ ଅଧିକରୁ ଅଧିକ ଲୋକ ପରିତ୍ରାଣ ପାଉଥିଲେ।
ପରିତ୍ରାଣ ପାଉଥିବା ଲୋକମାନଙ୍କୁ ପ୍ରଭୁ ବିଶ୍ୱାସୀମାନଙ୍କ
ଦଳରେ ସଂଯୁକ୍ତ କରୁଥିଲେ।

## ପିତର ଛୋଟା ଲୋକକୁ ସୁସ୍ଥ କଲେ।

୩ ଦିନେ ପିତର ଓ ଯୋହନ ଏକାଠି ମନ୍ଦିର ପରିସରକୁ
ଗଲେ। ସେତେବେଳେ ଦିନ ତିନିଟା ହୋଇଥିଲା ଓ
ତାହା ପ୍ରତିଦିନର ପ୍ରାର୍ଥନାର ସମୟ ଥିଲା। ୨ସେମାନେ
ଉପାସନା ମନ୍ଦିର ପରିସର ମଧ୍ୟରେ ଯାଉଥିବା ସମୟରେ
ଜଣେ ଲୋକ ସେଠାରେ ଥିଲା। ସେ ଜନ୍ମରୁ ଛୋଟା
ହୋଇଥିବାରୁ ଚାଲିପାରୁ ନ ଥିଲା। ସେମାନେ ତାହାକୁ
ସବୁଦିନ ମନ୍ଦିରରୁ ‘ସୁନ୍ଦର ଫାଟକ’ ପାଖରେ ବସେଇ
ଦେଉଥିଲେ। ସେ ମନ୍ଦିରକୁ ଯାଉଥିବା ଲୋକମାନଙ୍କ ଠାରୁ
ପଇସା ମାଗୁଥିଲା। ୩ସେ ଯେତେବେଳେ ପିତର ଓ
ଯୋହନଙ୍କୁ ମନ୍ଦିର ଭିତରକୁ ଯିବାର ଦେଖିଲା, ସେତେବେଳେ
ସେ ସେମାନଙ୍କୁ ପଇସା ମାଗିଲା। ୪ଯୋହନ ଓ ପିତର ତା
ଆଡ଼କୁ ଅନାଇ କହିଲେ, “ଆମ୍ଭ ଆଡେ ଚାହଁ।” ୫ସେ
କିଛି ପାଇବା ଆଶାରେ ସେମାନଙ୍କ ଆଡେ ଦେଖିଲା।
୬କିନ୍ତୁ ପିତର କହିଲେ, “ମୋ ପାଖରେ ସୁନା ବା ରୂପା
ନାହିଁ, କିନ୍ତୁ ଯାହା ଅଛି ତାହା ମୁଁ ତୁମ୍ଭକୁ ଦେଉଛି।
ନାଜରିତୀୟ ଯୀଶୁ ଖ୍ରୀଷ୍ଟଙ୍କ ନାମରେ ଉଠ ଓ ଚାଲ।”
୭ଏହା କହି ପିତର ତା’ର ଡାହାଣ ହାତ ଧରି ଉଠେଇଲେ।
ସଙ୍ଗେ ସଙ୍ଗେ ତା’ ଗୋଡ଼ ଓ ପାଦ ଶକ୍ତ ହୋଇଗଲା।
ସେ ଡେଇଁ ପଡ଼ି ଚାଲିବାକୁ ଆରମ୍ଭ କଲା। ୮ସେ ନାଚିନାଚି
ପରମେଶ୍ୱରଙ୍କୁ ପ୍ରଶଂସା କରି ସେମାନଙ୍କ ସହିତ ଉପାସନା
ମନ୍ଦିରକୁ ଗଲା। ୯ସମସ୍ତେ ତାହାକୁ ଚାଲିବାର ଓ ପରମେଶ୍ୱରଙ୍କର
ପ୍ରଶଂସା କରିବାର ଦେଖିଲେ। ୧୦ଲୋକମାନେ ତାହାକୁ
ଚିହ୍ନିପାରିଲେ ଯେ ଏ ସେହି ଲୋକ ଯିଏ କି ଉପାସନା
ମନ୍ଦିରର ‘ସୁନ୍ଦର ଫାଟକ’ ପାଖରେ ବସି ଭିକ ମାଗୁଥିଲା।
ସେମାନେ ତାହାର ଏହି ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ
ହୋଇଗଲେ। ଏହା କିପରି ସମ୍ଭବ ହେଲା, ତାହା ସେମାନେ
ବୁଝିପାରୁ ନଥିଲେ।

## ପିତରଙ୍କ ଲୋକମାନଙ୍କୁ ଉପଦେଶ

୧୧ସେ ସୁସ୍ଥ ଲୋକଟି ପିତର ଓ ଯୋହନଙ୍କ ପାଖେ
ପାଖେ ରହିଲା। ତେଣୁ ସମସ୍ତେ ଆଶ୍ଚର୍ଯ୍ୟ ହୋଇ “ଶଲୋମନଙ୍କ
ମଣ୍ଡପ” ରେ ସେମାନଙ୍କ ପାଖକୁ ଦୌଡ଼ି ଆସିଲେ।
୧୨ତାହା ଦେଖି ପିତର ଲୋକମାନଙ୍କୁ କହିଲେ, “ହେ
ଇସ୍ରାୟେଲର ଲୋକମାନେ, ତୁମ୍ଭେମାନେ ଏହା ଦେଖି
କାହିଁକି ଆଶ୍ଚର୍ଯ୍ୟ ହେଉଅଛ? ତୁମ୍ଭେମାନେ ଆମ୍ଭକୁ ଏପରି
କାହିଁକି ଦେଖୁଛ, ଯେପରିକି ଆମ୍ଭେ ଆମ୍ଭ ଶକ୍ତି ବା ଭକ୍ତି
ବଳରେ ଏହି ଲୋକକୁ ଚାଲିବାକୁ ଦେଲୁ। ୧୩ନା! ପରମେଶ୍ୱର
ଏହା କରିଛନ୍ତି। ସେ ଅବ୍ରାହାମ, ଯିସ୍ହାକ ଓ ଯାକୁବଙ୍କ
ପରମେଶ୍ୱର ଅଟନ୍ତି। ସେ ଆମ୍ଭର ସମସ୍ତ ପୂର୍ବ ପୁରୁଷଙ୍କ
ପରମେଶ୍ୱର ଅଟନ୍ତି। ସେ ତାହାଙ୍କ ମହାନ ସେବକ
ଯୀଶୁଙ୍କୁ ଗୌରବାନ୍ୱିତ କରିଅଛନ୍ତି। ମାତ୍ର ତୁମ୍ଭେମାନେ
ଯୀଶୁଙ୍କୁ ମୃତ୍ୟୁଭୋଗ କରିବା ନିମନ୍ତେ ସମର୍ପଣ କରିଦେଲେ।
ପୀଲାତ ଯୀଶୁଙ୍କୁ ମୁକ୍ତ କରିବାକୁ ସ୍ଥିର କରିଥିଲେ, କିନ୍ତୁ
ତୁମ୍ଭେମାନେ ଯୀଶୁଙ୍କୁ ଚାହିଁନାହିଁ ବୋଲି ପୀଲାତଙ୍କୁ କହିଲ।
୧୪ତୁମ୍ଭେମାନେ ଜଣେ ପବିତ୍ର ଓ ଧାର୍ମିକ ଲୋକକୁ ଅସ୍ୱୀକାର
କଲ ଓ ଜଣେ ହତ୍ୟାକାରୀକୁ ତାହାଙ୍କ ବଦଳରେ ତୁମ୍ଭମାନଙ୍କ
ପାଇଁ ମୁକ୍ତ କରିଦେବା ପାଇଁ ଚାହିଁଲ। ୧୫ଜୀବନ ଦାନ
କରୁଥିବା ବ୍ୟକ୍ତିକୁ ତୁମ୍ଭେମାନେ ହତ୍ୟା କଲ, ମାତ୍ର
ପରମେଶ୍ୱର ତାହାଙ୍କୁ ମୃତ୍ୟୁରୁ ଉଠାଇଲେ। ଆମ୍ଭେ ସମସ୍ତେ
ଏହାର ସାକ୍ଷୀ ଆମ୍ଭେମାନେ ବି ଏହା ନିଜ ଆଖିରେ
ଦେଖିଅଛୁ। ୧୬ଏ ଯେଉଁ ଲୋକକୁ ତୁମ୍ଭେମାନେ ଦେଖୁଛ ଓ
ଚିହ୍ନିଛ, ସେ ଯୀଶୁଙ୍କ ନାମରେ ଶକ୍ତି ପାଇ ଚାଲି ପାରିଲା।
ଯୀଶୁଙ୍କ ନାମରେ ଆମ୍ଭମାନଙ୍କର ବିଶ୍ୱାସ ଅଛି। ହିଁ,
କେବଳ ଯୀଶୁଙ୍କ ଉପରେ ଥିବା ବିଶ୍ୱାସ ତାକୁ ସମ୍ପୂର୍ଣ୍ଣ
ରୂପେ ଆରୋଗ୍ୟ କରିଦେଲା ଆଉ ତାହା ତୁମ୍ଭେମାନେ
ଦେଖିଲ।
୧୭“ଭାଇମାନେ, ମୁଁ ଜାଣେ, ଯେ, ତୁମ୍ଭେମାନେ ମଧ୍ୟ
କ’ଣ କରୁଛ, ତାହା ନ ବୁଝି ଯୀଶୁଙ୍କ ପ୍ରତି ଏପରି କଲ।
ତୁମ୍ଭମାନଙ୍କର ନେତାମାନେ ମଧ୍ୟ କ’ଣ କରୁଅଛନ୍ତି, ତାହା
ବୁଝିପାରି ନଥିଲେ। ୧୮ପରମେଶ୍ୱର ଖ୍ରୀଷ୍ଟଙ୍କର ଦୁଃଖ ଭୋଗିବା

ବିଷୟରେ ପୂର୍ବରୁ ସବୁ କଥା ଭାବବାଦୀମାନଙ୍କ ମୁଖଦ୍ୱାରା
କହି ସାରିଥିଲେ। ବର୍ତ୍ତମାନ ପରମେଶ୍ୱର ଏ ସବୁ ଘଟଣା
ଘଟାଉଛନ୍ତି। [୧୯]ଏଥିପାଇଁ ତୁମ୍ଭେମାନେ ତୁମ୍ଭମାନଙ୍କର ହୃଦୟ
ଓ ଜୀବନ ପରିବର୍ତ୍ତନ କରି ପରମେଶ୍ୱରଙ୍କ ପାଖକୁ
ଫେରିଆସ, ତେବେ ସେ ତୁମ୍ଭମାନଙ୍କର ପାପସବୁ କ୍ଷମା
କରିଦେବେ। [୨୦]ଏପରି କଲେ ପ୍ରଭୁ ତୁମ୍ଭମାନଙ୍କୁ ଆତ୍ମିକ
ଶାନ୍ତି ଦେବେ। ତାହାଙ୍କ ମନୋନୀତ ଖ୍ରୀଷ୍ଟ ଯୀଶୁଙ୍କୁ ମଧ୍ୟ
ସେ ତୁମ୍ଭମାନଙ୍କ ପାଖକୁ ପଠାଇ ଦେବେ। [୨୧]ପୁନର୍ବାର
ସମସ୍ତ କାର୍ଯ୍ୟ ସୁସମ୍ପନ୍ନ ହେବା ପର୍ଯ୍ୟନ୍ତ ଯୀଶୁଙ୍କୁ ସ୍ୱର୍ଗରେ
ରହିବାକୁ ପଡିବ। ଏହି ସମୟ ବିଷୟରେ ପରମେଶ୍ୱର
ବହୁତ ଆଗରୁ ଭାବବାଦୀମାନଙ୍କ ମାଧ୍ୟମରେ କହିଛନ୍ତି।
[୨୨]ମୋଶା କହିଛନ୍ତି, 'ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ଜଣେ
ଭାବବାଦୀ ଦେବେ। ସେହି ଭାବବାଦୀ ତୁମ୍ଭମାନଙ୍କ (ଯିହୂଦୀ)
ମଧ୍ୟରୁ ଆସିବେ। ସେ ମୋ' ପରି ହେବେ। ସେ ଯାହା
କହିବେ, ତାହା ତୁମ୍ଭମାନଙ୍କୁ ମାନିବାକୁ ପଡ଼ିବ। [୨୩]ଯେଉଁ
ଲୋକ ତାହାଙ୍କ କଥାରି ବାଧ ହେବନାହିଁ ତା'ର ମୃତ୍ୟୁ
ଘଟିବ ଓ ପରମେଶ୍ୱରଙ୍କ ଲୋକମାନଙ୍କ ମଧ୍ୟରୁ ସେ
ବିଚ୍ଛିନ୍ନ କରିଦିଆଯିବ।'* [୨୪]ହଁ, ଶାମୁୟେଲ ଓ ତାହାଙ୍କ
ପରେ ଆସିଥିବା ସମସ୍ତ ଭାବବାଦୀମାନେ ଏହି ସମୟ
ବିଷୟରେ ଘୋଷଣା କରିଛନ୍ତି। [୨୫]ତୁମ୍ଭେମାନେ ସେହି
ଭାବବାଦୀମାନଙ୍କର ଉତ୍ତରାଧିକାରୀ। ପରମେଶ୍ୱର ତୁମ୍ଭମାନଙ୍କ
ପୂର୍ବପୁରୁଷମାନଙ୍କ ସହିତ ଯେଉଁ ଚୁକ୍ତି କରିଥିଲେ, ତୁମ୍ଭେମାନେ
ମଧ୍ୟ ତାର ଉତ୍ତରାଧିକାରୀ। ସେ ଅବ୍ରାହାମଙ୍କୁ କହିଥିଲେ,
'ତୁମ୍ଭମାନଙ୍କ ସନ୍ତାନମାନଙ୍କ ଦ୍ୱାରା ଜଗତରେ ସବୁ ଲୋକ
ଆଶୀର୍ବାଦ ପାଇବେ।'* [୨୬]ପରମେଶ୍ୱର ତୁମ୍ଭମାନଙ୍କୁ ଆଶୀର୍ବାଦ
କରିବାପାଇଁ ପ୍ରଥମେ ଆପଣାର ବିଶେଷ ସେବକ ଯୀଶୁଙ୍କୁ
ପଠାଇଛନ୍ତି। ତୁମ୍ଭେମାନେ ଯେପରି ମନ୍ଦକାର୍ଯ୍ୟରୁ ବିମୁଖ
ହୁଅ, ଏଥିପାଇଁ ସେ ଏପରି କରିଛନ୍ତି।"

## ଯିହୂଦୀଙ୍କ ସଭା ସମ୍ମୁଖରେ ପିତର ଏବଂ ଯୋହନ

**୪** ପିତର ଓ ଯୋହନ ଲୋକମାନଙ୍କ ସହ କଥାବାର୍ତ୍ତା
କରୁଥିବା ସମୟରେ କେତେକ ଲୋକ ସେମାନଙ୍କ
ପାଖକୁ ଆସିଲେ। ସେମାନେ ଯାଜକ, ମନ୍ଦିରର ଜଗୁଆଳୀମାନଙ୍କ
ସେନାପତି ଓ କେତେକ ସାଦୂକୀ ଥିଲେ। [୨]ସେମାନେ
ରାଗିଯାଇଥିଲେ କାରଣ ପିତର ଓ ଯୋହନ ଲୋକମାନଙ୍କୁ
ଉପଦେଶ ଦେଇଥିଲେ, ଓ ଯୀଶୁଙ୍କ ପୁନରୁତ୍ଥାନ ପରି ସବୁ
ମୃତ ବ୍ୟକ୍ତିମାନଙ୍କର ଯେ ଉତ୍ଥାନ ହେବ, ଏହି କଥା
ଘୋଷଣା କରୁଥିଲେ। [୩]ତେଣୁ ସେମାନେ କାରାଗାରରେ
ବନ୍ଦୀ କରିଦେଲେ। ସନ୍ଧ୍ୟା ହୋଇଯାଇ ଥିବାରୁ ସେମାନଙ୍କୁ
ପର ଦିନ ପର୍ଯ୍ୟନ୍ତ ବନ୍ଦୀ କରି ରଖିଲେ। [୪]କିନ୍ତୁ ଉପଦେଶ
ଶୁଣିବା ଲୋକମାନଙ୍କ ମଧ୍ୟରୁ ଅନେକ ଲୋକ ସେମାନଙ୍କ
ବାର୍ତ୍ତା ବିଶ୍ୱାସ କଲେ। ତେଣୁ, ବର୍ତ୍ତମାନ ସେଠାରେ ପ୍ରାୟ
ପାଞ୍ଚହଜାର ପୁରୁଷ ବିଶ୍ୱାସୀ ଥିଲେ।

[୫]ତହିଁ ଆରଦିନ ସେମାନଙ୍କର ନେତାମାନେ, ପ୍ରାଚୀନମାନେ
ଓ ଆଇନର ଶିକ୍ଷକମାନେ ଯିରୂଶାଲମରେ ଏକାଠି ହେଲେ।
[୬]ସେଠାରେ ହାନାନ ମହାଯାଜକ, କୟାଫା, ଯୋହନ,
ଆଲେକ୍‌ଜାଣ୍ଡାର ଓ ମହାଯାଜକୀୟ ପରିବାରର ସମସ୍ତେ
ମଧ୍ୟ ଉପସ୍ଥିତ ଥିଲେ। [୭]ସେମାନେ ପ୍ରେରିତମାନଙ୍କୁ ସାମନାରେ
ଠିଆ କରି ପଚାରିଲେ, "ତୁମ୍ଭେମାନେ କେଉଁ କ୍ଷମତା କିମ୍ବା
କେଉଁ ଅଧିକାରରେ ଏହି କାର୍ଯ୍ୟ କଲ? ତୁମ୍ଭେମାନେ ଏ
ଛୋଟା ଲୋକଟିକୁ କିପରି ସୁସ୍ଥ କରି ପାରିଲ?"
[୮]ତାପରେ ପିତର ପବିତ୍ର ଆତ୍ମା ଦ୍ୱାରା ପରିପୂର୍ଣ୍ଣ ହୋଇ
ସେମାନଙ୍କୁ କହିଲେ, "ହେ ଲୋକମାନଙ୍କର ନେତାମାନେ
ଓ ପ୍ରାଚୀନ ଲୋକମାନେ! [୯]ଏହି ଛୋଟା ଲୋକଟି ପ୍ରତି
କରାଯାଇଥିବା ଉତ୍ତମ କର୍ମରେ କ'ଣ ଆପଣମାନେ ଆମ୍ଭକୁ
ଆଜି ପ୍ରଶ୍ନ ପଚାରୁଛନ୍ତି? ଆପଣମାନେ କ'ଣ ପଚାରୁଛନ୍ତି
ଯେ କେଉଁ ବିଷୟ ଦ୍ୱାରା ସେ ସୁସ୍ଥ ହୋଇପାରିଲା?
[୧୦]ତେବେ, ତୁମ୍ଭେମାନେ ସମସ୍ତେ ଓ ସମସ୍ତ ଇସ୍ରାୟେଲୀୟ
ଲୋକମାନେ ଏହା ଜାଣିରଖିବା ଉଚିତ ଯେ, ଏହା ନାଜରିତୀୟ
ଯୀଶୁଖ୍ରୀଷ୍ଟଙ୍କ ନାମରେ ଏହି ଲୋକଟି ସୁସ୍ଥ ହୋଇଛି।
ତୁମ୍ଭେମାନେ ସେହି ଯୀଶୁଙ୍କୁ କ୍ରୁଶରେ କଣ୍ଟାବିଦ୍ଧ କରିଛ,
ମାତ୍ର ପରମେଶ୍ୱର ତାହାଙ୍କୁ ମୃତ୍ୟୁର ଉଠାଇଛନ୍ତି। ତାହାଙ୍କ
ଦ୍ୱାରା ଏହି ଛୋଟା ଲୋକଟି ସମ୍ପୂର୍ଣ୍ଣ ଭାବରେ ସୁସ୍ଥ
ହୋଇଛି। ସେ ବର୍ତ୍ତମାନ ତୁମ୍ଭମାନଙ୍କ ସମ୍ମୁଖରେ ଠିଆ
ହୋଇଛି। [୧୧]ଯୀଶୁ ହେଉଛନ୍ତି

> 'ସେହି ପଥର ଯାହାଙ୍କୁ ତୁମ୍ଭେ, ଅତଏବ ନିର୍ମାଣ
> କର୍ତ୍ତାମାନେ, ହେୟଜ୍ଞାନ କରି ଥିଲ। କିନ୍ତୁ ସେହି
> ପଥର ଆଜି ମୁଖ୍ୟପଥର ହୋଇ ପାରିଛି।'
>
> ଗୀତସଂହିତା ୧୧୮:୨୨

[୧୨]ତାହାଙ୍କ ବ୍ୟତୀତ ଅନ୍ୟ କାହା ପାଖରେ ଉଦ୍ଧାର ନାହିଁ,
କାରଣ ଏହି ଆକାଶ ତଳେ ଦିଆଯାଇଥିବା ଅନ୍ୟ କୌଣସି
ନାମ ନାହିଁ ଯାହା ଦ୍ୱାରା କି ଆମ୍ଭେ ଉଦ୍ଧାର
ପାଇପାରିବା।"
[୧୩]ସେମାନେ ଯେତେବେଳେ ପିତର ଓ ଯୋହନଙ୍କର
ଏପରି ସାହସ ଦେଖିଲେ ଓ ଜାଣି ପାରିଲେ ଯେ
ସେମାନେ ଅଶିକ୍ଷିତ ଓ ସାଧାରଣ ଲୋକ, ସେମାନେ
ବହୁତ ଆଶ୍ଚର୍ଯ୍ୟ ହେଲେ। ସେମାନେ ଏହା ମଧ୍ୟ ବୁଝିପାରିଲେ
ଯେ, ସେମାନେ ଯୀଶୁଙ୍କ ସାଙ୍ଗରେ ଥିଲେ। [୧୪]ସେମାନେ
ଦେଖିଲେ, ସେହି ଛୋଟା ଲୋକଟି ସୁସ୍ଥ ହୋଇ ପ୍ରେରିତମାନଙ୍କ
ପାଖରେ ଠିଆ ହୋଇଛି। ତେଣୁ ସେମାନେ ପ୍ରେରିତମାନଙ୍କ
ବିରୁଦ୍ଧରେ କିଛି କହିପାରିଲେ ନାହିଁ। [୧୫]ସେମାନଙ୍କୁ ସଭାରୁ
ଚାଲିଯିବା ପାଇଁ ଆଦେଶ ଦେଲେ। ତା'ପରେ ନେତାମାନେ
କ'ଣ କରିବେ, ସେ ବିଷୟରେ ପରସ୍ପର ମଧ୍ୟରେ କଥାବାର୍ତ୍ତା
ହେଲେ। [୧୬]ସେମାନେ କହିଲେ, "ଏ ଲୋକମାନଙ୍କ ପ୍ରତି
ଆମ୍ଭେ କ'ଣ କରିବା? ଯିରୂଶାଲମର ପ୍ରତ୍ୟେକ ଲୋକ
ଜାଣିଛନ୍ତି ଯେ, ସେମାନେ ଗୋଟିଏ ଅସାଧାରଣ କାର୍ଯ୍ୟ
କରିଛନ୍ତି। ଆମ୍ଭେ ଏହା ଅସ୍ୱୀକାର କରିପାରିବା ନାହିଁ।
[୧୭]ଆମ୍ଭେ ସେମାନଙ୍କୁ ଯୀଶୁଙ୍କ ବିଷୟରେ କିଛି ନ କହିବାପାଇଁ

---

**'ପରମେଶ୍ୱର ... କରିଦିଆଯିବ'** ଦ୍ୱିତୀୟ ବିବରଣୀ ୧୮:୧୫,୧୯
**'ତୁମ୍ଭମାନଙ୍କ ... ପାଇବେ।'** **ଆଦିପୁସ୍ତକ** ୨୨:୧୮; ୨୬:୪

ଭୟ ଦେଖାଇବା। ଫଳରେ, ଲୋକମାନଙ୍କ ମଧ୍ୟରେ ଏକଥା
ଅଧିକ ବ୍ୟାପି ପାରିବ ନାହିଁ।”
୧୮ତେଣୁ ସେମାନେ ପ୍ରେରିତମାନଙ୍କୁ ଭିତରକୁ ଡାକିଲେ
ଓ ଯୀଶୁଙ୍କ ନାମରେ କୌଣସି କଥା ବା ଉପଦେଶ ନ
ଦେବାପାଇଁ ଆଦେଶ ଦେଲେ। ୧୯କିନ୍ତୁ ଯୋହନ ଓ ପିତର
ସେମାନଙ୍କୁ ଉତ୍ତର ଦେଲେ, “ପରମେଶ୍ୱରଙ୍କ ଆଜ୍ଞା ଅପେକ୍ଷା
ତୁମ୍ଭମାନଙ୍କର ଆଜ୍ଞା ପାଳନ କରିବା ଆମ୍ଭର ଉଚିତ କି
ନାହିଁ, ତାହା ତୁମ୍ଭେମାନେ ବିଚାର କର। ୨୦ଆମ୍ଭେ ଯାହା
ଦେଖିଛୁ ଓ ଯାହା ଶୁଣିଛୁ ତାହା ଲୋକମାନଙ୍କୁ ନ କହି
ରହିପାରିବୁ ନାହିଁ।” ୨୧-୨୨ସେମାନେ ପ୍ରେରିତମାନଙ୍କୁ ଦଣ୍ଡ
ଦେବାପାଇଁ ବାଟ ପାଇଲେ ନାହିଁ, କାରଣ ଲୋକେ ଏ
ଘଟଣା ପାଇଁ ପରମେଶ୍ୱରଙ୍କର ଗୁଣଗାନ କରୁଥିଲେ।
ତେଣୁ ସେ ସେମାନଙ୍କୁ ଆଉ ଥରେ ଭୟ ଦେଖାଇଲେ
ଏବଂ ସେମାନଙ୍କୁ ମୁକ୍ତ କରିଦେଲେ। ଏହି ଅସାଧାରଣ
କାର୍ଯ୍ୟ ପରମେଶ୍ୱରଙ୍କର ଗୋଟିଏ ପ୍ରମାଣ ଥିଲା। (ସୁସ୍ଥ
ହୋଇଥିବା ଲୋକଟିର ବୟସ ଚାଳିଶି ବର୍ଷରୁ ଅଧିକ
ଥିଲା)।

### ପିତର ଓ ଯୋହନ ବିଶ୍ୱାସୀମାନଙ୍କ ପାଖକୁ ଫେରିଆସିଲେ

୨୩ପିତର ଓ ଯୋହନ ଯିହୂଦୀ ନେତାମାନଙ୍କ ସଭା ଛାଡ଼ି
ନିଜନିଜ ବନ୍ଧୁମାନଙ୍କୁ ପାଖକୁ ଆସିଲେ। ମୁଖ୍ୟ ଯାଜକମାନେ
ଏବଂ ପ୍ରାଚୀନ ନେତାମାନେ ସେମାନଙ୍କୁ ଯାହା ସବୁ
କହିଥିଲେ, ସେ ସବୁ କଥା ନିଜ ଦଳର ଲୋକଙ୍କୁ
କହିଲେ। ୨୪ଯେତେବେଳେ ବିଶ୍ୱାସୀମାନେ ସମସ୍ତେ ଏହା
ଶୁଣିଲେ, ସେମାନେ ଏକ ମନରେ ମିଳିତ ଭାବେ ପ୍ରାର୍ଥନା
କଲେ, “ହେ ପ୍ରଭୁ, ତୁମ୍ଭେ ଆକାଶ, ପୃଥିବୀ, ସମୁଦ୍ର ଓ
ସେଥିରେ ଥିବା ସବୁ କିଛି ସୃଷ୍ଟି କରିଛ। ୨୫ଆମ୍ଭମାନଙ୍କର
ପୂର୍ବପୁରୁଷ ଦାଉଦ ତୁମ୍ଭର ସେବକ ଥିଲେ। ସେ ପବିତ୍ରଆତ୍ମାଙ୍କ
ଦ୍ୱାରା ଚାଳିତ ହୋଇ ଏହି କଥା ଲେଖିଛନ୍ତି,

‘ଏହି ଜାତିର ଲୋକେ କାହିଁକି କଳି କରୁଛନ୍ତି? ଏ
ଜଗତରେ ଲୋକେ କାହିଁକି ପରମେଶ୍ୱରଙ୍କ ବିରୁଦ୍ଧରେ
କୁମନ୍ତ୍ରଣା କରୁଛନ୍ତି? ଏହା ସବୁ ନିରର୍ଥକ।
୨୬ ପୃଥିବୀର ରାଜାମାନେ ଯୁଦ୍ଧ ପାଇଁ ପ୍ରସ୍ତୁତି ଚଳାଇଲେ
ଓ ଶାସକମାନେ ପ୍ରଭୁ ଓ ଖ୍ରୀଷ୍ଟଙ୍କ ବିରୁଦ୍ଧରେ ଠିଆ
ହେଲେ।’ ଗୀତସଂହିତା ୨:୧-୨

୨୭ଯେତେବେଳେ ହେରୋଦ, ପନ୍ତିୟ ପୀଲାତ, ଇସ୍ରାଏଲ
ଅନ୍ୟଦେଶୀୟମାନେ ମିଳିତ ହୋଇ ଏହି ସହରରେ ଜମା
ହୋଇ ତୁମ୍ଭର ପବିତ୍ର ସେବକ ଯୀଶୁଙ୍କ ବିରୁଦ୍ଧରେ ଠିଆ
ହେଲେ ସେତେବେଳେ ଏହା ପ୍ରକୃତରେ ସଫଳ ହେଲା।
ସେହି ଯୀଶୁଙ୍କୁ ତୁମ୍ଭେ ଖ୍ରୀଷ୍ଟ ରୂପେ ମନୋନୀତ କରିଥିଲ।
୨୮ଏହି ଯେଉଁ ଲୋକମାନେ ଯୀଶୁଙ୍କ ବିରୁଦ୍ଧରେ ଏକତ୍ର
ମନ୍ତ୍ରଣା କଲେ ସେମାନେ ତୁମ୍ଭର ଯୋଜନାକୁ ସଫଳ
କଲେ। ତୁମ୍ଭର ଇଚ୍ଛା ଓ ଶକ୍ତି ଅନୁସାରେ ଏହା ଘଟିଲା।
୨୯ହେ ପ୍ରଭୁ, ବର୍ତ୍ତମାନ ସେମାନେ କ’ଣ କହୁଅଛନ୍ତି, ତାହା
ଶୁଣ। ସେମାନେ ଆମ୍ଭମାନଙ୍କୁ ଭୟ ଦେଖାଉଛନ୍ତି। ପ୍ରଭୁ,
ଆମ୍ଭେମାନେ ତୁମ୍ଭର ସେବକ ଅଟୁ, ତେଣୁ ତୁମ୍ଭେ ଯାହା
ଚାହଁ, ତାହା ନିର୍ଭୟରେ କହିବା ପାଇଁ ଆମ୍ଭକୁ ସାହାଯ୍ୟ
କର। ୩୦ତୁମ୍ଭର ଶକ୍ତି ଆମ୍ଭକୁ ଦେଖାଅ, ଯଦ୍ଦ୍ୱାରା ଆମ୍ଭେ
ସାହସର ସହିତ ତୁମ୍ଭର ପବିତ୍ର ସେବକ ଯୀଶୁଙ୍କ ନାମରେ
ରୋଗୀମାନଙ୍କୁ ସୁସ୍ଥ କରିବା, ନାନାଦି ଚିହ୍ନ ଦେଖାଇବା ଓ
ଆଶ୍ଚର୍ଯ୍ୟକାର୍ଯ୍ୟମାନ କରିପାରିବା।”
୩୧ପ୍ରାର୍ଥନା ସରିବା ପରେ ଯେଉଁ ପ୍ରାର୍ଥନା ଘରେ,
ସମସ୍ତେ ଏକାଠି ହୋଇଥିଲେ, ସେହି ଘର କମ୍ପି ଉଠିଲା।
ସେମାନେ ସମସ୍ତେ ପବିତ୍ର ଆତ୍ମାରେ ପୂର୍ଣ୍ଣ ହୋଇଗଲେ, ଓ
ପରମେଶ୍ୱରଙ୍କର ବାର୍ତ୍ତା ସାହସର ସହିତ କହିବାକୁ ଲାଗିଲେ।

### ବିଶ୍ୱାସୀମାନଙ୍କର ପରସ୍ପର ସହଭାଗିତା

୩୨ବିଶ୍ୱାସୀକାରୀମାନଙ୍କର ଏକ ମନ, ଏକ ଆତ୍ମା ଥିଲା।
ସେମାନଙ୍କ ମଧ୍ୟରୁ କେହି କୌଣସି ଜିନିଷକୁ ନିଜର
ବୋଲି କହୁ ନ ଥିଲେ। ସେମାନଙ୍କ ପାଖରେ ଯାହା ଥିଲା,
ସେଥିରେ ସମସ୍ତେ ଭାଗୀଦାର ଥିଲେ। ୩୩ପ୍ରଭୁ ଯୀଶୁ ଯେ
ପ୍ରକୃତରେ ମୃତମାନଙ୍କ ମଧ୍ୟରୁ ଉଠିଅଛନ୍ତି, ଏହା ପ୍ରେରିତମାନେ
ମହାଶକ୍ତିର ସହିତ ସାକ୍ଷ୍ୟ ଦେଲେ। ପରମେଶ୍ୱର ସମସ୍ତ
ବିଶ୍ୱାସୀଙ୍କୁ ବହୁତ ଆଶୀର୍ବାଦ କଲେ। ୩୪ସେମାନଙ୍କ ମଧ୍ୟରେ
କାହାର କିଛି ଅଭାବ ନ ଥିଲା। ଯାହାର ଘର ବା ଜମି
ଥିଲା, ସେ ତାହାକୁ ବିକ୍ରି କରି ଦେଉଥିଲା। ୩୫ସେମାନେ
ସେହି ଧନ ପ୍ରେରିତମାନଙ୍କ ପାଦତଳେ ରଖି ଦେଉଥିଲେ।
ପ୍ରତ୍ୟେକଙ୍କ ନିଜ ଆବଶ୍ୟକତା ଅନୁସାରେ ଟଙ୍କା ବଣ୍ଟାଗଲା।
୩୬ଯୋସେଫ ନାମରେ ଜଣେ ବିଶ୍ୱାସୀ ଥିଲେ।
ପ୍ରେରିତମାନେ ତାହାଙ୍କୁ “ବର୍ଣ୍ଣବ୍ବା” ନାମରେ ଡାକୁ ଥିଲେ।
(ଏହି ନାମର ଅର୍ଥ, “ସାହାଯ୍ୟକାରୀ”) ସେ କୁପ୍ରୀୟ
ଜାତିର ଜଣେ ଲେବୀୟ ଥିଲେ। ୩୭ଯୋସେଫଙ୍କର ଖଣ୍ଡିଏ
କ୍ଷେତ ଥିଲା। ସେ ତାହାକୁ ବିକ୍ରି କରିଦେଲେ ଓ ବିକ୍ରୀଲବ୍ଧ
ସମସ୍ତ ଟଙ୍କା ଆଣି ପ୍ରେରିତମାନଙ୍କୁ ଦେଇଦେଲେ।

### ହନନୀୟ ଓ ଶଫୀରା

୫ ହନନୀୟ ନାମକ ଜଣେ ଲୋକଥିଲେ, ତାହାଙ୍କ
ସ୍ତ୍ରୀଙ୍କର ନାମ ଥିଲା ଶଫୀରା, ତାହାଙ୍କର କିଛି ଜମି
ବିକ୍ରି କରିଦେଲେ। ୨ସେ ତା ସ୍ତ୍ରୀକୁ ଜଣାଇ ତା’ର
ସମ୍ମତିରେ ଏହି ସମ୍ପତ୍ତି ବିକ୍ରିର କିଛି ଟଙ୍କା ନିଜ ପାଖରେ
ରଖିଲା ଓ ବାକିଟଙ୍କା ଆଣି ପ୍ରେରିତମାନଙ୍କ ଚରଣରେ
ରଖିଲା। ୩ଏହା ଦେଖି ପିତର କହିଲେ, “ହେ ହନନୀୟ,
ତୁମ୍ଭେ କାହିଁକି ଶୟତାନକୁ ତୁମ୍ଭ ହୃଦୟକୁ ନିୟନ୍ତ୍ରଣ
କରିବାକୁ ଦେଲ? ତୁମ୍ଭେ ମିଛ କହିଲ, ପବିତ୍ରଆତ୍ମାଙ୍କୁ
ଠକିବାକୁ ଚେଷ୍ଟା କଲ; ତୁମ୍ଭେ ସମ୍ପତ୍ତି ବିକ୍ରି କଲ, କିନ୍ତୁ
କାହିଁକି ସେହି ଟଙ୍କାର କିଛି ଅଂଶ ନିଜ ପାଇଁ ଲୁଚାଇ
ରଖିଲ। ୪ସେ ସମ୍ପତ୍ତି କ’ଣ ବିକ୍ରି ପୂର୍ବରୁ ତୁମ୍ଭର ନ
ଥିଲା? ବିକ୍ରି ପରେ ସେ ସମ୍ପତ୍ତିର ମୂଲ୍ୟ କ’ଣ ତୁମ୍ଭ
ଅଧିକାରରେ ନଥିଲା? ତେବେ ତୁମ୍ଭେ ମନ ଭିତରେ ଏପରି
ଖରାପ କଥା କାହିଁକି ଭାବିଲ? ଏହା ଦ୍ୱାରା ତୁମ୍ଭେ
ମନୁଷ୍ୟମାନଙ୍କ ଆଗରେ ମିଥ୍ୟା କହିଲ ନାହିଁ ବରଂ ତୁମ୍ଭେ
ପରମେଶ୍ୱରଙ୍କୁ ମିଥ୍ୟା କହିଲ।” ୫ଏକଥା ଶୁଣିବା ମାତ୍ରେ

ହନନୟ ଭୂମିରେ ପଡ଼ି ମରିଗଲା। ଏ କଥା ଶୁଣି
ଲୋକମାନେ ବହୁତ ଡ଼ରିଗଲେ। [୬]ତା'ପରେ ଯୁବକମାନେ
ତାହାକୁ ଲୁଗାରେ ଗୁଡେଇ ନେଇ ବାହାରକୁ ଚାଲିଗଲେ ଓ
କବର ଦେଇଦେଲେ।

[୭]ପ୍ରାୟ ତିନିଘଣ୍ଟା ବିତିଗଲା ପରେ ତା' ସ୍ତ୍ରୀ ଶଫୀରା
ସେଠାରେ ପହଞ୍ଚିଲା। ସେ ଏହି ଘଟଣା ବିଷୟରେ କିଛି
ମଧ ଜାଣି ନ ଥିଲା। [୮]ପିତର ତାହାକୁ ପଚାରିଲେ,
"ମୋତେ କୁହ, ତୁମ୍ଭେ ତୁମ୍ଭ ଜମି ସେତିକି ଦାମ୍‌ରେ ବିକ୍ରି
କରିଛ କି?"

ସେ ଉତ୍ତର ଦେଲା, "ହଁ, ସେହି ଦାମରେ।"

[୯]ତାପରେ ପିତର କହିଲେ, "ତୁମ୍ଭେମାନେ ଦୁହେଁ
ପ୍ରଭୁଙ୍କ ଆତ୍ମାକୁ ପରୀକ୍ଷା କରିବା ପାଇଁ କାହିଁକି ଏକମତ
ହେଲ? ଦେଖ, ଯେଉଁମାନେ ତୁମ୍ଭର ସ୍ୱାମୀକୁ କବର
ଦେଇଛନ୍ତି, ସେମାନେ ଦ୍ୱାର ପାଖରେ ପହଞ୍ଚିଗଲେଣି।
ତୁମ୍ଭକୁ ମଧ ସେମାନେ ବାହାରକୁ ଟାଣି ନେଇଯିବେ।"
[୧୦]ସେ ସ୍ତ୍ରୀ ଲୋକଟି ମଧ ତାହାଙ୍କ ପାଦତଳେ ପଡ଼ି
ମରିଗଲା। ତା'ପରେ ଯୁବକମାନେ ଭିତରକୁ ଆସିଲେ, ଓ
ତାହାକୁ ମୃତ ଦେଖି ବାହାରକୁ ନେଇଗଲେ ଓ ତାହାର
ସ୍ୱାମୀ ପାଖରେ ତାହାକୁ କବର ଦେଲେ। [୧୧]ମଣ୍ଡଳୀର
ସମସ୍ତ ବିଶ୍ୱାସୀ ଓ ଅନ୍ୟ ସମସ୍ତ ଲୋକ, ଯେଉଁମାନେ ଏ
କଥା ଶୁଣିଲେ, ବହୁତ ଭୟଭୀତ ହେଲେ।

### ପରମେଶ୍ୱରଙ୍କଠାରୁ ପ୍ରମାଣ

[୧୨]ପ୍ରେରିତମାନଙ୍କ ଦ୍ୱାରା ଲୋକମାନଙ୍କ ମଧରେ ବହୁତ
ଗୁଡ଼ିଏ ଚିହ୍ନ ଓ ଆଶ୍ଚର୍ଯ୍ୟ କାର୍ଯ୍ୟମାନ କରାଗଲା। ସେମାନେ
ସମସ୍ତେ ଗୋଟିଏ ଉଦ୍ଦେଶ୍ୟରେ ଶଲୋମନଙ୍କ ମଣ୍ଡପରେ
ଏକାଠି ହେଲେ। [୧୩]ସେମାନଙ୍କ ସହିତ ଏକତ୍ର ଠିଆ
ହେବାପାଇଁ କେହି ହେଲେ ସାହସ କଲେ ନାହିଁ। ସବୁଲୋକ
ପ୍ରେରିତମାନଙ୍କର ଖୁବ୍ ପ୍ରଶଂସା କଲେ। [୧୪]ଉଭୟ ପୁରୁଷ
ଓ ସ୍ତ୍ରୀ ଅଧିକରୁ ଅଧିକ ପ୍ରଭୁଙ୍କୁ ବିଶ୍ୱାସ କଲେ।
ସେମାନେ ବିଶ୍ୱାସୀଙ୍କ ଦଳରେ ସଂଯୁକ୍ତ ହେଲେ। [୧୫]ତେଣୁ
ଲୋକମାନେ ରୋଗୀମାନଙ୍କୁ ରାସ୍ତାକୁ ବହି ଆଣିଲେ, ଯେପରିକି
ପିତରଙ୍କ ଛାଇ ଯିବା ଆସିବା ସମୟରେ ରୋଗୀମାନଙ୍କ
ଉପରେ ପଡି ପାରିବ। ଏହାଦ୍ୱାରା ସେହି ରୋଗୀମାନେ
ସୁସ୍ଥ ହୋଇପାରିବେ। [୧୬]ଯିରୂଶାଲମରେ ଆଖପାଖ
ସହରଗୁଡିକରୁ ଲୋକମାନେ ସେମାନଙ୍କ ରୋଗୀମାନଙ୍କୁ ଓ
ଯେଉଁମାନେ ଭୂତମାନଙ୍କ ଦ୍ୱାରା ବ୍ୟତିବ୍ୟସ୍ତ ହେଉଥିଲେ,
ସେମାନଙ୍କୁ ନେଇ ଆସୁଥିଲେ ଓ ସମସ୍ତେ ସୁସ୍ଥ
ହୋଇଯାଉଥିଲେ।

### ଯିହୂଦୀ ମାନଙ୍କର ପ୍ରେରିତମାନଙ୍କୁ କ୍ଷାନ୍ତ କରିବାକୁ ଚେଷ୍ଟା

[୧୭]ମହାଯାଜକ ଓ ତାହାଙ୍କର ସବୁ ବନ୍ଧୁମାନେ, (ସାଦ୍ଦୂକୀ
ଦଳ) ଈର୍ଷାନ୍ୱିତ ହୋଇ ସେମାନଙ୍କ ବିରୁଦ୍ଧରେ ଠିଆହେଲେ।
[୧୮]ସେମାନେ ପ୍ରେରିତମାନଙ୍କୁ ବନ୍ଦୀକରି କାରାଗାରରେ ରଖିଲେ।
[୧୯]କିନ୍ତୁ ପ୍ରଭୁଙ୍କର ଜଣେ ସ୍ୱର୍ଗଦୂତ ରାତିରେ ସେହି କାରାଗାରର
କବାଟ ଖୋଲି ସେମାନଙ୍କୁ ବାହାର କରିଦେଲେ ଓ
କହିଲେ, [୨୦]"ତୁମ୍ଭେମାନେ ମନ୍ଦିରକୁ ଯାଇ, ଠିଆ ହୁଅ ଓ
ଲୋକମାନଙ୍କୁ ପ୍ରଭୁ ଯୀଶୁଙ୍କ ଦତ୍ତ ଏହି ନୂତନ ଜୀବନ
ବିଷୟରେ କୁହ।" [୨୧]ଏହାଶୁଣି ପ୍ରେରିତମାନେ ସକାଳୁ
ମନ୍ଦିରକୁ ଯାଇ ଲୋକମାନଙ୍କୁ ଉପଦେଶ ଦେଲେ।

ଏହି ସମୟରେ ମହାଯାଜକ ଓ ତାହାଙ୍କର ବନ୍ଧୁମାନେ
ସେହି ମନ୍ଦିରର ଅନ୍ୟ ପାଖରେ ପହଞ୍ଚି ଇସ୍ରାୟେଲର
ବିଶିଷ୍ଟ ଲୋକମାନଙ୍କର ଏକ ସଭା ଡାକଲେ। ସେମାନେ
ପ୍ରେରିତମାନଙ୍କୁ କାରାଗାରରୁ ଆଣିବା ପାଇଁ କିଛି ଲୋକଙ୍କୁ
ପଠାଇଲେ। [୨୨]କିନ୍ତୁ ସେହି ଲୋକମାନେ କାରାଗାରରେ
ପ୍ରେରିତମାନଙ୍କୁ ନପାଇ ଫେରିଗଲେ ଓ ଯାଇ ସେମାନଙ୍କୁ
ଏହି ଖବର ଦେଲେ, [୨୩]"ଆମ୍ଭେ କାରାଗାରରେ ଭଲ
ଭାବରେ ତାଲା ପଡ଼ିଥିବାର ଦେଖିଲୁ ଓ ଜଗୁଆଳୀମାନଙ୍କୁ
ଦ୍ୱାର ପାଖରେ ଠିଆ ହେବାର ମଧ ଦେଖିଲୁ। କିନ୍ତୁ
ଆମ୍ଭେ ଯେତେବେଳେ କାରାଗାର ଖୋଲି ଦେଖିଲୁ,
ସେତେବେଳେ ସେଠାରେ କେହି ନଥିଲେ।" [୨୪]ଏକଥା
ଶୁଣି ମନ୍ଦିରର ସେନାପତି ଓ ମହାଯାଜକ ବିବ୍ରତ ହୋଇପଡ଼ିଲେ
ଓ "ଏହାର ପରିଣାମ କ'ଣ ହେବ, ଏହା ଭାବି ସମସ୍ତେ
ହତବୁଦ୍ଧି ହେଲେ।" [୨୫]ଠିକ୍ ସେହି ସମୟରେ ଜଣେ ଆସି
ସେମାନଙ୍କୁ କହିଲା, "ତୁମ୍ଭେମାନେ ଯେଉଁମାନଙ୍କୁ କାରାଗାରରେ
ବନ୍ଦୀ କରି ରଖିଥିଲ ସେମାନେ ମନ୍ଦିରରେ ଠିଆ ହୋଇ
ଲୋକମାନଙ୍କୁ ଉପଦେଶ ଦେଉଛନ୍ତି।" [୨୬]ତେଣୁ ସେନାପତି
ସେହି ଲୋକମାନଙ୍କୁ ସାଙ୍ଗରେ ନେଇ ପ୍ରେରିତମାନଙ୍କୁ
ନେଇ ଆସିଲେ। ସେମାନେ ପ୍ରେରିତମାନଙ୍କୁ ଜୋର ଜବରଦସ୍ତି
କରି ଆଣିଲେ ନାହିଁ କାରଣ ସେମାନେ ଭୟ କଲେ, ଯଦି
ସେମାନେ ଏପରି କରିବେ, ତେବେ ଲୋକମାନେ ହୁଏତ
ସେମାନଙ୍କୁ ପଥର ଫୋପାଡିବେ।

[୨୭]ସେମାନେ ପ୍ରେରିତମାନଙ୍କୁ ଭିତରକୁ ଆଣି ମହାସଭାରେ
ଉପସ୍ଥିତ କରାଇଲେ। ତା'ପରେ ମହାଯାଜକ ସେମାନଙ୍କୁ
ପଚାରିଲେ, [୨୮]"ଆମ୍ଭେ ତୁମ୍ଭମାନଙ୍କୁ ଯୀଶୁଙ୍କନାମରେ ଶିକ୍ଷା
ନ ଦେବାପାଇଁ କଠୋର ଆଦେଶ ଦେଇଥିଲୁ କିନ୍ତୁ
ତୁମ୍ଭେମାନେ ନିଜନିଜ ଶିକ୍ଷା ଦ୍ୱାରା ଯିରୂଶାଲମକୁ ପୂର୍ଣ୍ଣ
କରିଦେଇଛ। ତୁମ୍ଭେମାନେ ଏଲୋକର ମୃତ୍ୟୁ ଦୋଷ
ଆମ୍ଭମାନଙ୍କ ଉପରେ ଲଦି ଦେବାପାଇଁ ଚାହୁଁଛ।"

[୨୯]ପିତର ଓ ଅନ୍ୟ ପ୍ରେରିତମାନେ ଉତ୍ତର ଦେଲେ,
"ଆମ୍ଭେମାନେ ମନୁଷ୍ୟମାନଙ୍କ ଆଜ୍ଞା ଅପେକ୍ଷା ପରମେଶ୍ୱରଙ୍କ
ଆଜ୍ଞା ନିଶ୍ଚୟ ମାନିବୁ। [୩୦]ତୁମ୍ଭେମାନେ ଯେଉଁ ଯୀଶୁଙ୍କୁ
କ୍ରୁଶରେ ଝୁଲେଇ ହତ୍ୟା କରିଛ ତାହାଙ୍କୁ ଆମ୍ଭ ପିତୃପୁରୁଷ
ମାନଙ୍କର ପରମେଶ୍ୱର ମୃତ୍ୟୁରୁ ଉଠାଇଛନ୍ତି। [୩୧]ପରମେଶ୍ୱର
ଇଶ୍ରାୟେଲର ଲୋକମାନଙ୍କ ହୃଦୟ ଓ ଜୀବନ ପରିବର୍ତ୍ତନ
କରିବା ପାଇଁ ତାହାଙ୍କୁ ନେତା ଓ ଉଦ୍ଧାରକର୍ତ୍ତା କରି ନିଜ
ଡାହାଣ ପଟେ ସ୍ଥାପିତ କରିଛନ୍ତି। [୩୨]ଆମ୍ଭେ ସମସ୍ତେ ଏ
ଘଟଣାଗୁଡିକର ସାକ୍ଷୀ। ପବିତ୍ର ଆତ୍ମା ମଧ୍ୟ ଏ ଘଟଣାଗୁଡିକର
ସାକ୍ଷୀ। ପରମେଶ୍ୱର ନିଜର ଆଜ୍ଞା ମାନୁଥିବା ଲୋକମାନଙ୍କୁ
ପବିତ୍ର ଆତ୍ମାଙ୍କୁ ଦେଇଛନ୍ତି। ସେମାନେ ମଧ ଏହାର
ସାକ୍ଷୀ।"

[୩୩]ଯିହୂଦୀୟ ନେତାମାନେ ଏକଥା ଶୁଣି ଭୀଷଣ ରାଗିଗଲେ
ଓ ପ୍ରେରିତମାନଙ୍କୁ ହତ୍ୟା କରିବାପାଇଁ ଯୋଜନା କଲେ।

୩୪କିନ୍ତୁ ସେହି ସଭାରେ ଆଇନ ଶିକ୍ଷକ ଗମଲୀୟେଲ
ନାମକ ଜଣେ ସମ୍ମାନଜନକ ଫାରୂଶୀ ଠିଆହୋଇ ପ୍ରେରିତମାନଙ୍କୁ
କିଛି ସମୟ ପାଇଁ ବାହାରକୁ ଯିବାପାଇଁ ଆଦେଶ ଦେଲେ।
୩୫ତାପରେ ସେ ସେମାନଙ୍କୁ କହିଲେ, "ହେ ଇଶ୍ରାୟେଲର
ଲୋକମାନେ, ତୁମ୍ଭେମାନେ ଏହି ଲୋକମାନଙ୍କ ପାଇଁ ଯାହା
କରିବାକୁ ଯାଉଛ ସେଥିପାଇଁ ସାବଧାନ ରୁହ। ୩୬ଏହା
ପୂର୍ବରୁ ଥିଉଦା ନାମକ ଜଣେ ଲୋକ ନିଜକୁ ବହୁତ ବଡ
ବୋଲି ଭାବୁଥିଲା। ପ୍ରାୟ ଚାରିଶହ ଲୋକ ତାହାର ଅନୁଗାମୀ
ଥିଲେ। କିନ୍ତୁ ତାହାକୁ ମାରିଦିଆଗଲା। ପରେ ତା'ର ସମସ୍ତ
ଶିଷ୍ୟମାନେ ଛିନ୍ନଭିନ୍ନ ହୋଇ ପଳାଇଗଲେ। ଏହି ସମସ୍ତର
କୌଣସି ଫଳ ହେଲାନାହିଁ। ୩୭ତାହାଙ୍କ ପରେ ଜନଗଣନା
ସମୟରେ ଗାଲିଲୀ ଦେଶର ଯିହୂଦା ନାମକ ଜଣେ ବ୍ୟକ୍ତି
ବାହାରିଲେ। ସେ ମଧ୍ୟ କେତେକ ଲୋକଙ୍କୁ ନିଜର ଶିଷ୍ୟ
କଲେ। କିନ୍ତୁ ତାହାଙ୍କୁ ମଧ୍ୟ ମାରି ଦିଆଗଲା। ତାହାଙ୍କର
ସମସ୍ତ ଅନୁଗାମୀମାନେ ଛିନ୍ନଭିନ୍ନ ହୋଇ ପଳାଇ ଗଲେ।
୩୮ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ କହୁଛି, ଏହି ଲୋକମାନଙ୍କଠାରୁ
ଦୂରରେ ରୁହ। ସେମାନଙ୍କୁ ଏକୁଟିଆ ଛାଡିଦିଅ। ଯଦି
ସେମାନଙ୍କର ମନ୍ତ୍ରଣା ବା ଏହି କାମ ମନୁଷ୍ୟମାନଙ୍କ ପକ୍ଷରୁ
ହୋଇଥାଏ, ତେବେ ତାହା ବିଫଳ ହେବ। ୩୯କିନ୍ତୁ ଯଦି
ଏହା ପରମେଶ୍ୱରଙ୍କଠାରୁ ହୋଇଥାଏ, ତେବେ ତୁମ୍ଭେମାନେ
ସେମାନଙ୍କ କାମ ବନ୍ଦ କରିପାରିବନାହିଁ। ତୁମ୍ଭେମାନେ
ନିଜକୁ ପରମେଶ୍ୱରଙ୍କ ବିରୁଦ୍ଧରେ ଲଢ଼ିବାର ଦେଖିବ।"

ସେମାନେ ତାହାଙ୍କ ଉପଦେଶ ମାନିଲେ। ୪୦ସେମାନେ
ପ୍ରେରିତମାନଙ୍କୁ ଭିତରକୁ ଡାକି ନେଇ ପ୍ରହାର କଲେ।
ସେମାନଙ୍କୁ ଯୀଶୁଙ୍କ ନାମରେ କିଛି ନ କହିବାପାଇଁ
ଆଦେଶ ଦେଲେ। ତା'ପରେ ସେମାନଙ୍କୁ ଛାଡି ଦେଲେ।
୪୧ପ୍ରେରିତମାନେ ମହାସଭା ଛାଡି ଚାଲିଗଲେ। ସେମାନେ
ଖୁସି ହେଲେ ଯେ, ସେମାନଙ୍କୁ ଯୀଶୁଙ୍କ ନାମରେ ଅପମାନ
ସହିବାକୁ ଯୋଗ୍ୟ ବିବେଚିତ କରାଯାଇଛି। ୪୨ପ୍ରେରିତମାନେ
ପ୍ରତିଦିନ ମନ୍ଦିରରେ ଓ ଘରେ ଘରେ ଏହି ସୁସମାଚାର
ଦେଲେ ଯେ ଯୀଶୁ ହେଉଛନ୍ତି ଖ୍ରୀଷ୍ଟ। ସେମାନେ ପ୍ରଚାର
କାର୍ଯ୍ୟ ଆଦୌ ବନ୍ଦ କଲେ ନାହିଁ।

### ବିଶେଷ କାର୍ଯ୍ୟ ପାଇଁ ସାତଜଣଙ୍କୁ ବାଛିଲେ।

୬ ଏହି ସମୟ ମଧ୍ୟରେ ଶିଷ୍ୟମାନଙ୍କ ସଂଖ୍ୟା ବଢ଼ିଗଲା।
ସେତେବେଳେ ଗ୍ରୀକ୍ ଭାଷା କହୁଥିବା ଯିହୂଦୀମାନେ
ଏବ୍ରୀଭାଷା କହୁଥିବା ଯିହୁଦୀମାନଙ୍କ ବିରୁଦ୍ଧରେ ଅଭିଯୋଗ
କଲେ। ସେମାନଙ୍କ ବିଧବାମାନଙ୍କୁ ଉଚିତ ପରିମାଣରେ
ଖାଦ୍ୟ ବଣ୍ଟା ନ ଯାଉଥିବା କାରଣରୁ ଏପରି ବଚସା
ହେଲା। ୨ତେଣୁ ପ୍ରେରିତମାନେ ସଂପୂର୍ଣ୍ଣ ଶିଷ୍ୟ ମଣ୍ଡଳୀକୁ
ଡାକି କହିଲେ, "ଆମ୍ଭେ ପରମେଶ୍ୱରଙ୍କର ବାକ୍ୟ ପ୍ରଚାରରେ
ଅବହେଳା କରିବା ଠିକ୍ ହେବନାହିଁ। ଖାଦ୍ୟ ବଣ୍ଟନରେ
ସମୟ ଦେବା ଅପେକ୍ଷା ପ୍ରଚାର କାର୍ଯ୍ୟ ଚାଲୁ ରଖିବା
ଆମ୍ଭପକ୍ଷେ ଯଥାର୍ଥ ହେବ। ୩ଏଥିପାଇଁ ହେ ଭାଇମାନେ,
ତୁମ୍ଭେମାନେ ନିଜ ଭିତରୁ ସାତ ଜଣ ପୁରୁଷଙ୍କୁ ବାଛ।
ସେମାନେ ଯେପରି ଲୋକମାନଙ୍କ ଦୃଷ୍ଟିରୁ ଉତ୍ତମ, ପବିତ୍ର
ଆତ୍ମା ଓ ଜ୍ଞାନରେ ପୂର୍ଣ୍ଣ ହୋଇଥିବେ। ଆମ୍ଭେମାନେ
ସେମାନଙ୍କୁ ଏହି କାମ କରିବାପାଇଁ ଦେବୁ। ୪ତେବେ
ଆମ୍ଭେମାନେ ଆମ୍ଭର ସମସ୍ତ ସମୟ ଶିକ୍ଷାଦାନ ଓ ପ୍ରାର୍ଥନାରେ
ଦେଇପାରିବୁ।"

୫ସେହି ଦଳର ସମସ୍ତେ ଏହି ଚିନ୍ତାଧାରାକୁ ପସନ୍ଦ
କଲେ। ସେମାନେ ନିଜ ମଧ୍ୟରୁ ସ୍ତିଫାନ(ଯେ କି ପବିତ୍ର
ଆତ୍ମା ଓ ବିଶ୍ୱାସରେ ପରିପୂର୍ଣ୍ଣ ଥିଲେ), ଫିଲିପ୍ପ, ପ୍ରଖର,
ନୀକାନୋର, ତୀମୋନ, ପାର୍ମିନା ଓ ନୀକଲାୟଙ୍କୁ (ସେ
ଆନ୍ତିୟଖିଅରୁ ଆସିଥିଲେ ଓ ଯିହୂଦୀ ଧର୍ମରୁ ଧର୍ମାନ୍ତରୀତ
ହୋଇଥିଲେ) ମନୋନୀତ କଲେ। ୬ସେମାନେ ଏହି
ଲୋକମାନଙ୍କୁ ପ୍ରେରିତମାନଙ୍କ ପାଖରେ ଉପସ୍ଥିତ କରାଇଲେ।
ପ୍ରେରିତମାନେ ପ୍ରାର୍ଥନା କରି ସେମାନଙ୍କ ଉପରେ ହାତ
ରଖିଲେ।

୭ଏହିପରି ଭାବରେ ପରମେଶ୍ୱରଙ୍କର ବାକ୍ୟ ଚାରିଆଡ଼େ
ବ୍ୟାପିଗଲା। ଯିରୂଶାଲମରେ ଶିଷ୍ୟମାନଙ୍କର ସଂଖ୍ୟା ବହୁତ
ବଢ଼ିଗଲା। ଏପରିକି ଯିହୂଦୀଯାଜକମାନଙ୍କ ମଧ୍ୟରୁ ଅନେକ
ବିଶ୍ୱାସ କଲେ ଓ ପାଳନ କଲେ।

### ସ୍ତିଫାନଙ୍କ ବିରୁଦ୍ଧରେ ଯିହୂଦୀମାନେ

୮ସ୍ତିଫାନ ପରମେଶ୍ୱରଙ୍କଠାରୁ ପ୍ରାପ୍ତ ଅନୁଗ୍ରହ ଓ ଶକ୍ତିରେ
ପରିପୂର୍ଣ୍ଣ ଥିଲେ। ସେ ଲୋକମାନଙ୍କ ମଧ୍ୟରେ ବିଭିନ୍ନ
ପ୍ରକାରର ଆଶ୍ଚର୍ଯ୍ୟ କର୍ମ କରୁଥିଲେ ଓ ଈଶ୍ୱରଙ୍କ ଶକ୍ତିର
ପ୍ରମାଣ ଦେଉଥିଲେ। ୯କେତେକ ଯିହୂଦୀ ଆସି ସ୍ତିଫାନଙ୍କ
ସହିତ ଯୁକ୍ତିତର୍କ କଲେ। ସେମାନେ କୁରୀଣୀୟ, ଲିବର୍ତ୍ତୀନ,
କିଲିକିଆ ଓ ଏସିଆ ଦେଶର ଯିହୂଦୀ ଥିଲେ। ସେମାନେ
ଯିହୂଦୀମାନଙ୍କର ଆଲେକଜାଣ୍ଡ୍ରୀୟ ପ୍ରାର୍ଥନା ଗୃହର ସଭ୍ୟଥିଲେ।
୧୦କିନ୍ତୁ ସେମାନେ ସ୍ତିଫାନଙ୍କର ଜ୍ଞାନ ଓ ଆତ୍ମା ସମ୍ମୁଖରେ
ଯୁକ୍ତିବାଢ଼ି ପାରିଲେନାହିଁ। ୧୧ତା'ପରେ ସେମାନେ କେତେକ
ଲୋକଙ୍କୁ ଲାଞ୍ଚ ଦେଇ ଏହା କୁହାଇଲେ, "ଆମ୍ଭେ ତାହାଙ୍କୁ
ପରମେଶ୍ୱର ଓ ମୋଶାଙ୍କର ବିରୁଦ୍ଧରେ ଖରାପ କଥା
କହୁଥିବାର ଶୁଣିଲୁ।" ୧୨ଏହା କରିବା ଦ୍ୱାରା ସେମାନେ
ପୁରୁଖା ଯିହୂଦୀ ନେତାଙ୍କୁ ଆଇନର ଶିକ୍ଷକମାନଙ୍କୁ ଓ
ଲୋକମାନଙ୍କୁ ଉତ୍ତେଜିତ କଲେ ଓ ସ୍ତିଫାନଙ୍କୁ ଧରିନେଇ
ମହାସଭାକୁ ନେଇ ଆସିଲେ। ୧୩ସେମାନେ କେତେ ଜଣ
ମିଥ୍ୟା ସାକ୍ଷୀଙ୍କୁ ଆଣିଲେ। ସେମାନେ କହିଲେ, "ଏଲୋକ
ସର୍ବଦା ଏହି ପବିତ୍ର ସ୍ଥାନ ଓ ମୋଶାଙ୍କ ବ୍ୟବସ୍ଥା
ବିରୁଦ୍ଧରେ କୁହେ। ୧୪ଆମ୍ଭେମାନେ ତାହାକୁ କହିବାର
ଶୁଣିଛୁ ଯେ ନାଜରୀତର ଯୀଶୁ ଏହି ସ୍ଥାନକୁ ନଷ୍ଟ
କରିଦେବେ, ଓ ମୋଶା ଆମ୍ଭକୁ ଦେଇଥିବା ବ୍ୟବସ୍ଥା
ପରିବର୍ତ୍ତନ କରି ଦେବେ।" ୧୫ଏହାଶୁଣି ମହାସଭାର ସମସ୍ତେ
ତାହାଙ୍କ ଆଡ଼କୁ ସ୍ଥିର ଦୃଷ୍ଟିରେ ଦେଖିଲେ। ତାହାଙ୍କ ମୁଖ
ସ୍ୱର୍ଗଦୂତଙ୍କ ମୁଖ ପରି ଦେଖାଗଲା ଓ ସେମାନେ ତାହା
ଦେଖିଲେ।

### ସ୍ତିଫାନଙ୍କ ଭାଷଣ

୭ ମହାଯାଜକ ସ୍ତିଫାନଙ୍କୁ ପଚାରିଲେ, "ଏସବୁ କଥା
କ'ଣ ସତ୍ୟ?" ୨ସେ ଉତ୍ତର ଦେଲେ, "ମୋର
ଯିହୂଦୀ ପିତାମାନେ ଓ ଭାଇମାନେ, ମୋ କଥା ଶୁଣ।

ଆମ୍ଭର ପିତା ଅବ୍ରାହାମ ହାରୋଣ ନଗରରେ ବାସ କରିବା
ପୂର୍ବରୁ ଯେତେବେଳେ ମେସପଟାମିଆରେ ଥିଲେ,
ସେତେବେଳେ ଗୌରବମୟ ପରମେଶ୍ୱର ତାହାଙ୍କୁ ଦର୍ଶନ
ଦେଇ କହିଲେ, [3]'ତୁମ୍ଭେ ନିଜ ଦେଶ ଓ ବନ୍ଧୁବର୍ଗଙ୍କୁ ଛାଡି
ମୁଁ ତୁମ୍ଭକୁ ଯେଉଁ ଦେଶ ଦେଖାଇବି, ସେ ଦେଶକୁ
ଚାଲିଯାଅ।'* [4]ତେଣୁ ସେ କଲଦୀୟମାନଙ୍କ ସ୍ଥାନ ତ୍ୟାଗ
କରି ହାରଣରେ ବାସ କଲେ। ତାହାଙ୍କ ପିତାଙ୍କ ମୃତ୍ୟୁ
ପରେ ପରମେଶ୍ୱର ତାହାଙ୍କୁ ଏଠାକୁ ଆଣିଲେ, ଯେଉଁଠି
ତୁମ୍ଭେମାନେ ବର୍ତ୍ତମାନ ରହୁଛ। [5]ପରମେଶ୍ୱର ତାହାଙ୍କୁ କିଛି
ଦେଲେ ନାହିଁ। ଏପରିକି ଗୋଟିଏ ଫୁଟେ ଜାଗା ମଧ୍ୟ
ନୁହେଁ। ସେତେବେଳେ ତାହାଙ୍କର କିଛି ପିଲାପିଲି ନଥିଲା।
ପରମେଶ୍ୱର ତାହାଙ୍କୁ ଓ ତାହାଙ୍କର ଭବିଷ୍ୟତ ଉତ୍ତରାଧିକାରୀଙ୍କୁ
ଏହି ଭୂମି ଏକ ଅଧିକାର ରୂପେ ଦେବାପାଇଁ ପ୍ରତିଜ୍ଞା
କରିଥିଲେ। [6]ପରମେଶ୍ୱର ତାହାଙ୍କୁ ଏହିକଥା କହିଥିଲେ,
'ତୁମ୍ଭର ସନ୍ତାନମାନେ ବିଦେଶରେ ଦାସ୍ୟ କର୍ମ କରିବେ।
ସେମାନେ ତାହାଙ୍କୁ ଚାରିଶହ ବର୍ଷ ପର୍ଯ୍ୟନ୍ତ ଖରାପ ବ୍ୟବହାର
କରିବେ।'* [7]ପରମେଶ୍ୱର କହିଲେ, 'ଯେଉଁମାନେ ସେମାନଙ୍କୁ
ଦାସ କରି ରଖିଛନ୍ତି, ମୁଁ ସେମାନଙ୍କୁ ଦଣ୍ଡ ଦେବି।
ତାପରେ ସେମାନେ ସେଠାରୁ ଆସି ଏହିସ୍ଥାନରେ ମୋତେ
ପୂଜା କରିବେ।'* [8]ଏହିପରି ପରମେଶ୍ୱର ଅବ୍ରାହାମଙ୍କୁ ଏହି
ଚୁକ୍ତି ପାଇଁ ସୁନ୍ନତର ଚିହ୍ନ ପ୍ରଦାନ କଲେ। ସେ ଯିସ୍‌ହାକଙ୍କର
ପିତା ହେଲେ। ଯିସହାକଙ୍କ ଜନ୍ମର ଅଷ୍ଟମଦିନ ଅବ୍ରାହାମ
ତାହାଙ୍କର ସୁନ୍ନତ କଲେ, ଓ ଯିସ୍‌ହାକ ତାହାଙ୍କର ପୁତ୍ର
ଯାକୁବର ସୁନ୍ନତ କଲେ। ପୁଣି ଯାକୁବ ତାହାଙ୍କ ବାରଜଣ
ପୁତ୍ରଙ୍କର ସୁନ୍ନତ କଲେ, ଏହି ପୁତ୍ରମାନେ ଆମ୍ଭ ଗୋଷ୍ଠୀଗୁଡିକର
ପିତା ହେଲେ।

[9]"ସେହି ପୂର୍ବପୁରୁଷମାନେ ଯୋସେଫଙ୍କର ପ୍ରତି ଈର୍ଷା
କରି ତାହାଙ୍କୁ ମିସର ଦେଶର ଜଣେ ଦାସ ଭାବରେ ବିକ୍ରି
କରିଦେଲେ। କିନ୍ତୁ ପରମେଶ୍ୱର ଯୋସେଫଙ୍କ ସହିତ
ଥିଲେ। [10]ସେ ତାହାଙ୍କୁ ସବୁ ଅସୁବିଧାରୁ ରକ୍ଷା କଲେ।
ସେ ତାହାଙ୍କୁ ଜ୍ଞାନ ଦେଲେ, ଓ ମିସର ଦେଶର ରାଜା
ଫାରୋଙ୍କର ଅନୁଗ୍ରହ ପାଇବା ପାଇଁ ସକ୍ଷମ କରାଇଲେ।
ସେ ତାହାଙ୍କୁ ମିସର ଦେଶର ଶାସକ ଓ ସମସ୍ତ ରାଜକୀୟ
ସମ୍ପତ୍ତିର ଶାସନକର୍ତ୍ତା କରିଦେଲେ। [11]ସେ ସମୟରେ
ସମଗ୍ର ମିସର ଓ କିଣାନ ଦେଶରେ ଦୁର୍ଭିକ୍ଷ ପଡିବାରୁ
ଲୋକେ ବହୁତ କଷ୍ଟରେ ପଡିଲେ। ଆମ୍ଭର ପୂର୍ବ ପୁରୁଷମାନେ
ଖାଇବାକୁ କିଛି ପାଇଲେ ନାହିଁ। [12]ମିସରରେ ଶସ୍ୟଥିବା
ଖବର ଶୁଣି ଯାକୁବ ପ୍ରଥମେ ଆମ୍ଭପୂର୍ବ ପୁରୁଷମାନଙ୍କୁ
ସେଠାକୁ ପଠାଇଲେ। [13]ସେମାନଙ୍କର ଦ୍ୱିତୀୟ ଥର ଯିବା
ସମୟରେ ଯୋସେଫ ନିଜ ଭାଇମାନଙ୍କ ପାଖରେ ପରିଚିତ
ହେଲେ ଓ ଫାରୋ ଯୋସେଫଙ୍କ ପରିବାର ବିଷୟରେ
ଜାଣିଲେ। [14]ତେଣୁ ଯୋସେଫ ତାହାଙ୍କ ଭାଇମାନଙ୍କୁ ପଠାଇ
ନିଜ ପିତା ଯାକୁବ ଓ ସମସ୍ତ ସଂମ୍ପର୍କୀୟଙ୍କୁ ନିଜ ପାଖକୁ
ଡକେଇ ଆଣିଲେ। ସେମାନେ ସମୁଦାୟ ୭୫ ଜଣ
ଥିଲେ। [15]ତା'ପରେ ଯାକୁବ ମିସର ଦେଶକୁ ଗଲେ।
ସେଠାରେ ସେ ନିଜେ ଓ ଆମ୍ଭର ପୂର୍ବପୁରୁଷମାନେ ମୃତ୍ୟୁ
ବରଣ କଲେ। [16]ସେମାନଙ୍କୁ ଶିଖେମକୁ ନିଆଯାଇ କବର
ଦିଆଗଲା। ଶିଖେମର ଏହି କବର ସ୍ଥାନକୁ ଅବ୍ରାହାମ
ହମୋରର ପୁତ୍ରମାନଙ୍କୁ ପାଖରୁ କିଛି ରୂପା ଟଙ୍କା ଦେଇ
କିଣିଥିଲେ।

[17]"ଇତି ମଧ୍ୟରେ ମିସର ଦେଶର ଇସ୍ରାୟେଲ
ଲୋକମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଲା। ପରମେଶ୍ୱର
ଅବ୍ରାହାମଙ୍କୁ ଯେଉଁସବୁ ପ୍ରତିଜ୍ଞା କରିଥିଲେ ତାହା ସତ୍ୟରେ
ପରିଣତ ହୋଇଥିଲା। [18]ସେସମୟରେ ଆଉ ଜଣେ ରାଜା
ମିସରକୁ ରାଜତ୍ୱ କରିବାପାଇଁ ଆରମ୍ଭ କଲେ। ସେ
ଯୋସେଫଙ୍କୁ ଜାଣି ନ ଥିଲେ। [19]ସେ ନୂଆ ରାଜା ଆମ୍ଭ
ଲୋକଙ୍କ ପ୍ରତି ନିଷ୍ଠୁର ଥିଲେ। ସେ ଆମ୍ଭ ପୂର୍ବପୁରୁଷମାନଙ୍କୁ
ପ୍ରତି ଦୁର୍ବ୍ୟବହାର କଲେ। ରାଜା ସେମାନଙ୍କର ଶିଶୁମାନଙ୍କୁ
ମାରିବା ପାଇଁ ବାହାରେ ପକେଇଦେବାକୁ ସେମାନଙ୍କୁ ବାଧ୍ୟ
କଲେ। [20]ଏହି ସମୟରେ ମୋଶା ଜନ୍ମ ଗ୍ରହଣ କଲେ।
ସେ ବହୁତ ସୁନ୍ଦର ଥିଲେ। ତାହିଙ୍କୁ ପିତାଙ୍କ ଘରେ
ତିନିମାସ ପର୍ଯ୍ୟନ୍ତ ଲାଳନପାଳନ କରାଗଲା। [21]ତାହାଙ୍କୁ
ବାହାରେ ପକାଇ ଦେବାବେଳେ ଫାରୋଙ୍କର କନ୍ୟା ତାହାଙ୍କୁ
ନେଲେ, ଏବଂ ନିଜ ପୁତ୍ର ଭାବରେ ପାଳିଲେ। [22]ମୋଶା
ମିସରବାସୀମାନଙ୍କର ସମସ୍ତ ବିଦ୍ୟାରେ ଶିକ୍ଷିତ ହେଲେ।
ସେ ନିଜ ବକ୍ତବ୍ୟ ଓ କାମରେ ଶକ୍ତିଶାଳୀ ଥିଲେ।

[23]"ତାହାଙ୍କୁ ଚାଳିଶ ବର୍ଷ ବୟସ ହେବାବେଳେ ସେ
ନିଜ ଭାଇମାନଙ୍କୁ ତଥା ଇସ୍ରାୟେଲ ଲୋକମାନଙ୍କୁ ସାକ୍ଷାତ
କରିବାପାଇଁ ଇଚ୍ଛା କଲେ। [24]ମୋଶା ସେଠାରେ ଜଣେ
ମିସରୀୟ ଜଣେ ଯିହୂଦୀ ସହିତ ଅନ୍ୟାୟ କରୁଥିବାର
ଦେଖିଲେ। ତେଣୁ ସେ ଯିହୂଦୀୟ ଜଣଙ୍କୁ ରକ୍ଷା କରିବାକୁ
ଯାଇ ମିସରୀୟକୁ ଦଣ୍ଡଦେଲେ। ସେ ତାହାକୁ ଏପରି
ଆଘାତ କଲେ ଯେ, ମିସରୀୟ ଜଣକ ସେହିଠାରେ
ମରିଗଲା। [25]ମୋଶା ଭାବିଲେ ଯେ, ପରମେଶ୍ୱର ସେମାନଙ୍କର
ମୁକ୍ତି ପାଇଁ ତାହାଙ୍କୁ ଏହି କାର୍ଯ୍ୟରେ ଲଗାଇ ଅଛନ୍ତି, ତାହା
ତାହାଙ୍କ ଯିହୂଦୀୟ ଭାଇମାନେ ବୁଝିବେ, ମାତ୍ର ସେମାନେ
ତାହା ବୁଝିଲେ ନାହିଁ। [26]ତା' ପରଦିନ ସେ ଦୁଇଜଣ
ଯିହୂଦୀ ଲୋକଙ୍କୁ ପରସ୍ପର ମଧ୍ୟରେ କଳି କରୁଥିବାର
ଦେଖିଲେ। ସେ ସେମାନଙ୍କ ମଧ୍ୟରେ ଶାନ୍ତି ସ୍ଥାପନ
କରିବାକୁ ଚେଷ୍ଟା କଲେ, ଓ କହିଲେ, 'ହେ ଲୋକମାନେ,
ତୁମ୍ଭେମାନେ ପରସ୍ପର ଭାଇଭାଇ। ତୁମ୍ଭେମାନେ ପରସ୍ପର
ଭିତରେ କାହିଁକି କଳି କରୁଛ?' [27]ଏହାଶୁଣି ପଡୋଶୀପ୍ରତି
ଅନ୍ୟାୟ କରୁଥିବା ଲୋକଟି ମୋଶାଙ୍କୁ ଠେଲିଦେଇ କହିଲା,
'ତୁମ୍ଭକୁ ଆମ୍ଭ ଶାସକ ଓ ବିଚାରକ ରୂପେ କିଏ ନିଯୁକ୍ତ
ଦେଲା? [28]ଗତକାଲି ତୁମ୍ଭେ ଯେପରି ମିସରୀୟକୁ ମାରିଦେଲ
ସେହିପରି କଣ ମୋତେ ମାରି ଦେବାପାଇଁ ଚାହୁଁଛ?'*
[29]ମୋଶା ଏହାଶୁଣି ଅତିଶୀଘ୍ର ମିସରରୁ ଚାଲିଗଲେ, ଓ

---

**'ତୁମ୍ଭେ ନିଜ ... ଚାଲିଯାଅ'** ଆଦିପୁସ୍ତକ ୧୨:୧

**'ତୁମ୍ଭର ... କରିବେ'** ଆଦିପୁସ୍ତକ ୧୫:୧୩-୧୪

**'ଯେଉଁମାନେ ... କରିବେ'** ଆଦିପୁସ୍ତକ ୧୫:୧୪; ଯାତ୍ରା ୩:୧୨

**'ତୁମ୍ଭକୁ ... ଦେବାପାଇଁ ଚାହୁଁଛ?'** ଯାତ୍ରାପୁସ୍ତକ ୨:୧୪

ମିଦିୟନ ଦେଶରେ ଜଣେ ବିଦେଶୀ ହୋଇ ରହିଲେ।
ସେଠାରେ ତାହାଙ୍କର ଦୁଇଟି ପୁତ୍ର ହେଲେ।
୩୦"ଦୀର୍ଘ ଚାଳିଶ ବର୍ଷ ଅତିବାହିତ ହେବା ପରେ ଜଣେ
ସ୍ୱର୍ଗଦୂତ ସୀନୟ ପର୍ବତ ନିକଟରେ ଥିବା ମରୁଭୂମିରେ
ଗୋଟିଏ ଜ୍ୱଳନ୍ତା ବୁଦାର ଅଗ୍ନିଶିଖାରେ ମୋଶାଙ୍କୁ ଦର୍ଶନ
ଦେଲେ। ୩୧ମୋଶା ସେ ଦୃଶ୍ୟ ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ
ହୋଇଗଲେ। ତାହାକୁ ଭଲଭାବେ ଦେଖିବା ପାଇଁ ନିକଟକୁ
ଯିବାବେଳକୁ ସେ ପ୍ରଭୁଙ୍କର ସ୍ୱର ଶୁଣିଲେ: ୩୨'ମୁଁ ତୁମ୍ଭ
ପୂର୍ବପୁରୁଷମାନଙ୍କର ପରମେଶ୍ୱର। ଅବ୍ରାହାମ, ଯିସ୍ହାକ ଓ
ଯାକୁବର ପରମେଶ୍ୱର।'* ଏହା ଶୁଣି ମୋଶା ଭୟରେ
ଥରିଲେ ଓ ଆଉ ଦେଖିବା ପାଇଁ ସାହସ କଲେ ନାହିଁ।
୩୩ତା'ପରେ ପ୍ରଭୁ ତାହାଙ୍କୁ କହିଲେ, 'ତୁମ୍ଭେ ପାଦରୁ
ପାଦୁକା କାଢ଼ିଦିଅ, କାରଣ ଯେଉଁ ସ୍ଥାନରେ ତୁମ୍ଭେ ଠିଆ
ହୋଇଛ ତାହା ପବିତ୍ର ଭୂମି। ୩୪ମୁଁ ମିସର ଦେଶରେ ମୋ
ଲୋକମାନଙ୍କୁ କରାଯାଉଥିବା ସମସ୍ତ ଦୁର୍ବ୍ୟବହାର ଦେଖିଛି।
ମୁଁ ସେମାନଙ୍କର କ୍ରନ୍ଦନ ଶୁଣିଲି। ମୁଁ ସେମାନଙ୍କୁ ମୁକ୍ତ
ଦେବାପାଇଁ ଓହ୍ଲାଇ ଆସିଛି। ଏଥିପାଇଁ ତୁମ୍ଭେ ଆସ। ମୁଁ
ତୁମ୍ଭକୁ ମିସର ଦେଶକୁ ପଠାଇବି।'*
୩୫"ଯେଉଁ ମୋଶାଙ୍କୁ ସେମାନେ ଅବଜ୍ଞା କରି କହିଥିଲେ,
'କିଏ ତୁମ୍ଭକୁ ଶାସକ ଓ ବିଚାରକ କଲା?' ସେହି
ମୋଶାଙ୍କୁ ହିଁ ବର୍ତ୍ତମାନ ପରମେଶ୍ୱର ସେମାନଙ୍କର ଶାସନକର୍ତ୍ତା
ଓ ମୁକ୍ତିଦାତା କରି ପଠାଇଲେ। ଯେଉଁ ସ୍ୱର୍ଗଦୂତ ମୋଶାଙ୍କୁ
ବୁଦାଭିତରେ ଦର୍ଶନ ଦେଇଥିଲେ ସେହି ସ୍ୱର୍ଗଦୂତଙ୍କ ସାହାଯ୍ୟରେ
ପରମେଶ୍ୱର ମୋଶାଙ୍କୁ ପଠାଇଲେ। ୩୬ତେଣୁ ମୋଶା
ମିସର ଦେଶରେ ଓ ସୂଫ ସମୁଦ୍ରରେ ତଥା ମରୁଭୂମିରେ
ଚାଳିଶ ବର୍ଷ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ଆଶ୍ଚର୍ଯ୍ୟପୂର୍ଣ୍ଣ ଚିହ୍ନ
ଓ କାର୍ଯ୍ୟମାନ କରି ସେମାନଙ୍କୁ ବାହାରକୁ ଆଣିଲେ।
୩୭ସେହି ମୋଶା ଇଶ୍ରାୟେଲର ସନ୍ତାନମାନଙ୍କୁ କହିଲେ,
'ପରମେଶ୍ୱର ତୁମ୍ଭମାନଙ୍କ ମଧ୍ୟରୁ ମୋପରି ଜଣେ ଭାବବାଦୀଙ୍କୁ
ସୃଷ୍ଟି କରିବେ।'* ୩୮ଏହି ମୋଶା ମରୁଭୂମିରେ ଯିହୂଦୀମାନଙ୍କ
ମଣ୍ଡଳୀରେ ଥିଲେ। ଯେଉଁ ସ୍ୱର୍ଗଦୂତ ସୀନୟ ପର୍ବତରେ
ରହି ତାହାଙ୍କ ସହିତ କଥାବାର୍ତ୍ତା ହୋଇଥିଲେ, ସେହି
ସ୍ୱର୍ଗଦୂତ ଆମ୍ଭ ପିତୃପୁରୁଷ ମୋଶାଙ୍କ ସହିତ ଥିଲେ, ମୋଶା
ପରମେଶ୍ୱରଙ୍କ ଠାରୁ ଜୀବନଦାନକାରୀ ଆଜ୍ଞା ପାଇଥିଲେ।
ଏହି ଆଜ୍ଞାସବୁ ମୋଶା ଆମ୍ଭମାନଙ୍କୁ ଦେଲେ।
୩୯"କିନ୍ତୁ ଆମ୍ଭ ପୂର୍ବପୁରୁଷମାନେ ତାହାଙ୍କୁ ମାନିବା ପାଇଁ
ଇଚ୍ଛା କଲେ ନାହିଁ। ସେମାନେ ତାହାଙ୍କୁ ଗ୍ରହଣ କରିବାକୁ
ମନା କଲେ ଓ ମିସରକୁ ଫେରି ଯିବାପାଇଁ ଇଚ୍ଛା କଲେ।
୪୦ସେମାନେ ହାରୋଣଙ୍କୁ ଯାଇ କହିଲେ, 'ଆମ୍ଭମାନଙ୍କର
ପଥ ଦେଖାଇବା ପାଇଁ କେତେ ଜଣ ଦେବତାଙ୍କୁ ନିର୍ମାଣ
କର। ଏହି ଯେଉଁ ମୋଶା ଆମ୍ଭମାନଙ୍କୁ ମିସରରୁ ବାହାର
କରି ଆଣିଥିଲେ, ତାହାଙ୍କର କଣ ହେଲା ଆମ୍ଭେ ଜାଣି
ନାହୁଁ।'* ୪୧ସେହି ସମୟରେ ସେମାନେ ଗୋଟିଏ ବାଛୁରୀର
ମୂର୍ତ୍ତି ତିଆରି କରି ସେହି ମୂର୍ତ୍ତି ଆଗରେ ବଳି ଦେଲେ।
ସେମାନେ ନିଜ ହାତ ତିଆରି ଜିନିଷ ଦେଖି ବହୁତ ଖୁସି
ହେଲେ। ୪୨କିନ୍ତୁ ପରମେଶ୍ୱର ସେମାନଙ୍କଠାରୁ ବିମୁଖ
ହେଲେ। ସେ ସେମାନଙ୍କୁ ଆକାଶସ୍ଥ ଭଣ୍ଡ ଦେବତାମାନଙ୍କର
ପୂଜା କରିବାପାଇଁ ଛାଡ଼ିଦେଲେ। ଏହି ବିଷୟରେ
ଭାବବାଦୀମାନଙ୍କର ପୁସ୍ତକରେ ଯେପରି ଲେଖାଅଛି,

'ହେ ଇସ୍ରାୟେଲର ଲୋକମାନେ, ତୁମ୍ଭେମାନେ ଚାଳିଶ
ବର୍ଷ ପର୍ଯ୍ୟନ୍ତ ପ୍ରାନ୍ତରରେ ମୋ ଉଦ୍ଦେଶ୍ୟରେ ପଶୁବଳି
ଓ ନୈବେଦ୍ୟ ଉତ୍ସର୍ଗ କରିନାହିଁ।
୪୩ ତୁମ୍ଭେମାନେ ତୁମ୍ଭମାନଙ୍କ ସହିତ ମୋଲଖର ତମ୍ବୁ
ଏବଂ ନକ୍ଷତ୍ର ଦେବତା ରମ୍ଫାର ମୂର୍ତ୍ତୀକୁ ମଧ୍ୟ ବୋହି
ନେଇଯାଇଥିଲ। ଏଗୁଡ଼ିକୁ ତୁମ୍ଭେମାନେ ପୂଜା
କରିବାପାଇଁ ତିଆରି କରିଥିଲ। ତେଣୁ ମୁଁ ମଧ୍ୟ
ତୁମ୍ଭମାନଙ୍କୁ ବାବିଲନର ଆରପାରିକୁ ପଠାଇଦେବି।'
ଆମୋଷ ୫:୨୫-୨୭

୪୪"ଆମ୍ଭ ପୂର୍ବପୁରୁଷମାନଙ୍କ ପବିତ୍ର ତମ୍ବୁ ମଧ୍ୟ ପ୍ରାନ୍ତରରେ
ଥିଲା। ପରମେଶ୍ୱର ମୋଶାଙ୍କୁ ଗୋଟିଏ ନକ୍ସା ଦେଖାଇଲେ,
ଏବଂ ସେ ଦେଖିଥିବା ନକ୍ସା ଅନୁସାରେ ଗୋଟିଏ ତମ୍ବୁ
ତିଆରି କରିବାକୁ ତାହାଙ୍କୁ କହିଥିଲେ। ୪୫ଆମ୍ଭର
ପୂର୍ବପୁରୁଷମାନେ ସେହି ପବିତ୍ର ତମ୍ବୁ ସାଙ୍ଗରେ ଆଣିଥିଲେ।
ସେହି ସମୟରେ ଯିହୋଶୂୟଙ୍କ ନେତୃତ୍ୱରେ ସେମାନେ
ଅନ୍ୟଜାତି ଗଣର ଦେଶ ଅଧିକାର କରି ନେଇଥିଲେ।
ଏହି ଜାତିମାନଙ୍କୁ ଆମ୍ଭ ପୂର୍ବପୁରୁଷମାନଙ୍କ ସାମନାରେ
ବାହାର କରିଦେଲେ। ତମ୍ବୁଟି ଦାଉଦଙ୍କ ସମୟ ପର୍ଯ୍ୟନ୍ତ
ଥିଲା। ୪୬ଦାଉଦ ପରମେଶ୍ୱରଙ୍କ କୃପା ପ୍ରାପ୍ତ ହେଲେ। ସେ
ଯାକୁବର ପରମେଶ୍ୱରଙ୍କ ପାଇଁ ଗୋଟିଏ ମନ୍ଦିର ତୋଳିବାକୁ
ଅନୁମତି ଦେବାପାଇଁ ପରମେଶ୍ୱରଙ୍କୁ ଅନୁରୋଧ କଲେ।
୪୭କିନ୍ତୁ ଶଲମୋନ ତାହାଙ୍କ ପାଇଁ ଗୋଟିଏ ମନ୍ଦିର ନିର୍ମାଣ
କଲେ।
୪୮"ମାତ୍ର ସର୍ବୋପରିସ୍ଥ ପରମେଶ୍ୱର କୌଣସି ହାତ
ତିଆରି ମନ୍ଦିରରେ ବାସ କରନ୍ତି ନାହିଁ। ଭବିଷ୍ୟଦ୍‌ବକ୍ତା
ଏହିପରି ଲେଖନ୍ତି,

ସ୍ୱର୍ଗ ମୋହର ସିଂହାସନ।
୪୯ ପୃଥିବୀ ମୋହର ପାଦପୀଠ। ତୁମ୍ଭେମାନେ ମୋ
ପାଇଁ କି ପ୍ରକାରର ମନ୍ଦିର ନିର୍ମାଣ କରିବ? ମୋର
ବିଶ୍ରାମ ନେବାପାଇଁ ସ୍ଥାନ କେଉଁଠି?
୫୦ ମନେରଖ, ମୁଁ ଏସବୁ ସୃଷ୍ଟି କରିଛି।'"
ଯିଶାଇୟ ୬୬:୧-୨

୫୧ସ୍ତିଫାନ କହିଲେ, "ହେ ଯିହୂଦୀଲୋକମାନେ, ତୁମ୍ଭେମାନେ
କେଡ଼େ ଜିଦ୍‌ଖୋର୍! ତୁମ୍ଭମାନଙ୍କର ହୃଦୟ ପରମେଶ୍ୱରଙ୍କର
ନୁହେଁ। ତୁମ୍ଭେମାନେ ତାହାଙ୍କ କଥା ଶୁଣିବାକୁ ମନା

---

**'ମୁଁ ତୁମ୍ଭ ... ପରମେଶ୍ୱର'** ଯାତ୍ରାପୁସ୍ତକ ୩:୬
**'ତୁମ୍ଭେ ... ପଠାଇବି'** ଯାତ୍ରାପୁସ୍ତକ ୩:୫-୧୦
**'ପରମେଶ୍ୱର ... କରିବେ'** ଦ୍ୱିତୀୟ ବିବରଣୀ ୧୮:୧୫
**'ଆମ୍ଭମାନଙ୍କର ... ନାହୁଁ'** ଯାତ୍ରାପୁସ୍ତକ ୩୨:୧

କରୁଛ। ତୁମ୍ଭେମାନେ ସର୍ବଦା ପବିତ୍ର ଆତ୍ମାଙ୍କର ବିରୋଧ
କରୁଛ। ତୁମ୍ଭେମାନେ ସବୁ ତୁମ୍ଭମାନଙ୍କର ପୂର୍ବପୁରୁଷମାନଙ୍କ
ପରି ହେଉଛ। ୫୨ତୁମ୍ଭମାନଙ୍କର ପୂର୍ବପୁରୁଷମାନେ କୌଣସି
ଭାବବାଦୀଙ୍କୁ ତାଡ଼ନା ନ କରି ଛାଡ଼ି ନାହାଁନ୍ତି। ଏହି
ଭାବବାଦୀମାନେ ପୂର୍ବରୁ ସେହି ଧାର୍ମିକ ବ୍ୟକ୍ତିଙ୍କର ଆଗମନ
କଥା କହିଥିଲେ। କିନ୍ତୁ ତୁମ୍ଭମାନଙ୍କର ପୂର୍ବପୁରୁଷମାନେ
ସେହି ଲୋକମାନଙ୍କୁ ମଧ୍ୟ ମାରି ଦେଇଥିଲେ। ବର୍ତ୍ତମାନ
ତୁମ୍ଭେମାନେ ସେହି ଧାର୍ମିକବ୍ୟକ୍ତିଙ୍କୁ ପ୍ରତାରିତ ଓ ହତ୍ୟା
କରିଛ। ୫୩ତୁମ୍ଭେମାନେ ପରମେଶ୍ୱରଙ୍କ ସ୍ୱର୍ଗଦୂତଙ୍କ ଦ୍ୱାରା
ମୋଶାଙ୍କୁ ଦିଆଯାଇଥିବା ବ୍ୟବସ୍ଥାକୁ ଗ୍ରହଣ କରିଛ, କିନ୍ତୁ
ତାହାର ବାଧ୍ୟ ହୋଇନାହିଁ।"

## ସ୍ତିଫାନଙ୍କ ହତ୍ୟା

୫୪ଯିହୂଦୀ ନେତାମାନେ ଏହା ଶୁଣି ସ୍ତିଫାନଙ୍କର ଉପରେ
ଭୀଷଣ ରାଗି ଦାନ୍ତ କଡ଼ମଡ଼ କଲେ। ୫୫କିନ୍ତୁ ସ୍ତିଫାନ
ପବିତ୍ର ଆତ୍ମାରେ ପୂର୍ଣ୍ଣ ହୋଇ ଆକାଶକୁ ଚାହିଁଲେ।
ସେଠାରେ ସେ ପରମେଶ୍ୱରଙ୍କ ଗୌରବ ଦେଖିଲେ। ସେ
ଯୀଶୁଙ୍କୁ ପରମେଶ୍ୱରଙ୍କ ଡାହାଣ ପଟେ ଠିଆ ହେବାର
ଦେଖିଲେ। ୫୬ସ୍ତିଫାନ କହିଲେ, "ଦେଖ, ମୁଁ ସ୍ୱର୍ଗକୁ
ଖୋଲା ଅବସ୍ଥାରେ ଓ ପରମେଶ୍ୱରଙ୍କ ଡାହାଣ ପଟେ
ମନୁଷ୍ୟପୁତ୍ରଙ୍କୁ ଠିଆ ହେବାର ଦେଖୁଛି।"

୫୭ଏଥିରେ ଯିହୂଦୀ ନେତାମାନେ କାନରେ ହାତ ଦେଇ
ଖୁବ୍ ଜୋରରେ ପାଟି କଲେ। ସେମାନେ ଏକାଠି ହୋଇ
ସ୍ତିଫାନଙ୍କ ଆଡକୁ ଦୌଡ଼ିଲେ। ୫୮ସେମାନେ ତାହାଙ୍କୁ
ନଗରବାହାରକୁ ଟାଣି ନେଇ ପଥର ମାରିବା ଆରମ୍ଭ
କରିଦେଲେ। ସାକ୍ଷୀମାନେ ଶାଉଲ ନାମକ ଜଣେ ଯୁବକର
ପାଖରେ ସେମାନଙ୍କର ଲୁଗାପଟା ରଖିଲେ। ୫୯ପଥର
ଫୋପାଡିବା ସମୟରେ ସ୍ତିଫାନ ପ୍ରାର୍ଥନା କରି କହିଲେ,
"ହେ ପ୍ରଭୁ ଯୀଶୁ, ମୋ ଆତ୍ମାକୁ ଗ୍ରହଣ କର।"
୬୦ତା'ପରେ ସେ ଆଣ୍ଠୁମାଡ଼ି ପଡ଼ି ଜୋରରେ
କହିଲେ, "ହେ ପ୍ରଭୁ, ଏହି ପାପ ନିମନ୍ତେ ଏମାନଙ୍କୁ
ଅପରାଧୀ ଗଣନା କରନାହିଁ।" ଏହା କହି ସେ ମୃତ୍ୟୁବରଣ
କଲେ।

୮ ସ୍ତିଫାନଙ୍କ ମୃତ୍ୟୁ ଯେ ଯଥାର୍ଥ, ଏହା ଶାଉଲ
ସମର୍ଥନ କରୁଥିଲେ।

## ବିଶ୍ୱାସୀମାନଙ୍କ ଉପରେ ଅତ୍ୟାଚାର

୨-୩କେତେକ ନିଷ୍ଠାପର ଲୋକ ସ୍ତିଫାନଙ୍କୁ କବର
ଦେଲେ, ଓ ତାହାଙ୍କ ପାଇଁ ବହୁତ କାନ୍ଦିଲେ। ସେହିଦିନ
ଯିରୂଶାଲମରେ ଥିବା ବିଶ୍ୱାସୀମାନଙ୍କ ବିରୁଦ୍ଧରେ ଗୋଟିଏ
ଭୀଷଣ ତାଡ଼ନା ହେଲା। ପ୍ରେରିତମାନଙ୍କ ବ୍ୟତିତ ଅନ୍ୟ
ସମସ୍ତ ବିଶ୍ୱାସୀ ଯିହୂଦା ଓ ଶମିରୋଣ ଦେଶର ବିଭିନ୍ନ
ସ୍ଥାନରେ ଛିନ୍ନଭିନ୍ନ ହୋଇଗଲେ। କିନ୍ତୁ ଶାଉଲ ଘରେ-ଘରେ
ପଶି ପୁରୁଷ ଓ ସ୍ତ୍ରୀ ମାନଙ୍କୁ ଟାଣି ଆଣି କାରାଗାରରେ
ରଖିଲେ, ଓ ମଣ୍ଡଳୀ ଧ୍ୱଂସ କରିବା ପାଇଁ ଚେଷ୍ଟା କଲେ।
୪ଯେଉଁମାନେ ଛିନ୍ନ-ଭିନ୍ନ ହୋଇଯାଇଥିଲେ, ସେହି ଲୋକମାନେ
ଚାରିଆଡ଼େ ଯାଇ ସୁସମାଚାର କହିଲେ।

## ଶମିରୋଣରେ ଫିଲିପ୍ପଙ୍କର ପ୍ରଚାର

୫ଫିଲିପ୍ପ ଶମିରୋଣ ନଗରକୁ ଯାଇ ଖ୍ରୀଷ୍ଟଙ୍କ ବିଷୟରେ
ସେମାନଙ୍କ ନିକଟରେ ପ୍ରଚାର କଲେ। ୬ସେଠାକାର
ଲୋକମାନେ ଫିଲିପ୍ପଙ୍କର କଥା ଶୁଣିଲେ, ଓ ତାହାଙ୍କ ଦ୍ୱାରା
କରାଯାଇଥିବା ଆଶ୍ଚର୍ଯ୍ୟ କାର୍ଯ୍ୟ ସବୁ ଦେଖି ତାହାଙ୍କ
କଥାରେ ଅଧିକ ମନ ଦେଲେ। ୭ବହୁତ ଲୋକଙ୍କ
ଭିତରେ ଭୂତମାନେ ଥିଲେ। କିନ୍ତୁ ସେମାନଙ୍କୁ ବାହାର
କରିଦେଲେ। ବାହାରକୁ ଆସିବା ବେଳେ ଭୂତମାନେ
ଉଚ୍ଚସ୍ୱରରେ ପାଟି କରୁଥିଲେ। ବହୁତ ପକ୍ଷାଘାତୀ ଏବଂ
ଛୋଟା ଲୋକ ମଧ୍ୟ ଫିଲିପ୍ପଙ୍କ ଦ୍ୱାରା ଆରୋଗ୍ୟ ହେଲେ।
୮ଏଥିଯୋଗୁ, ସେ ନଗରର ଲୋକମାନେ ବହୁତ ଖୁସି
ହେଲେ।

୯ସେହି ନଗରରେ ଶିମୋନ ନାମକ ଜଣେ ଲୋକ
ଥିଲା। ଫିଲିପ୍ପ ସେଠାକୁ ଆସିବା ପୂର୍ବରୁ ଶିମୋନ ଯାଦୁଖେଳ
ଦେଖାଇ ଶମିରୋଣର ବାସିନ୍ଦାମାନଙ୍କୁ ବିସ୍ମିତ କରିଦେଇଥିଲା।
ସେ ନିଜକୁ ବଡ଼ ମହାପୁରୁଷ ବୋଲି କହୁଥିଲା। ୧୦ତେଣୁ
ସାନ ଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଶିମୋନଙ୍କ ପ୍ରତି ଧ୍ୟାନ
ଦେଲେ। ଲୋକେ କହିଲେ, "ଏହି ଲୋକଠାରେ ପରମେଶ୍ୱରଙ୍କ
ଶକ୍ତି ଅଛି। ଯାହାକୁ କି 'ମହାନ ଶକ୍ତି' ବୋଲି କୁହାଯାଏ।"
୧୧ଶିମୋନ ଲୋକମାନଙ୍କୁ ବହୁତ ସମୟ ପର୍ଯ୍ୟନ୍ତ ଯାଦୁ
ବିଦ୍ୟାରେ ମୁଗ୍ଧ କରିପାରୁଥିବା କଥା ସମସ୍ତେ ଶୁଣିଲେ।
୧୨କିନ୍ତୁ ଯେତେବେଳେ ସେମାନେ ଫିଲିପ୍ପଙ୍କଠାରୁ ପରମେଶ୍ୱରଙ୍କ
ରାଜ୍ୟ ଓ ଯୀଶୁଖ୍ରୀଷ୍ଟଙ୍କ ଶକ୍ତି ବିଷୟକ ସୁସମ୍ବାଦ ଶୁଣିଲେ,
ସେତେବେଳେ ସେମାନେ ଫିଲିପ୍ପଙ୍କ କଥାରେ ବିଶ୍ୱାସ କରି
ବାପ୍ତିଜିତ ହେଲେ। ୧୩ଶିମୋନ ନିଜେ ମଧ୍ୟ ଏହା ବିଶ୍ୱାସ
କଲେ ଓ ବାପ୍ତିଜିତ ହୋଇ ଫିଲିପ୍ପଙ୍କ ସହିତ ରହିଲେ।
ସେ ଅସାଧାରଣ, ଆଶ୍ଚର୍ଯ୍ୟପୂର୍ଣ୍ଣ କାର୍ଯ୍ୟ ଓ ଚିହ୍ନମାନ ଦେଖି
ବିସ୍ମିତ ହେଲେ।

୧୪ପ୍ରେରିତମାନେ ଯିରୂଶାଲମରେ ଶୁଣିଲେ ଯେ, ଶମିରୋଣର
ଲୋକ ପରମେଶ୍ୱରଙ୍କ ବାକ୍ୟ ଗ୍ରହଣ କରିଛନ୍ତି। ତେଣୁ
ସେମାନେ ପିତର ଓ ଯୋହନଙ୍କୁ ସେମାନଙ୍କ ପାଖକୁ
ପଠାଇଲେ। ୧୫ପିତର ଓ ଯୋହନ ସେଠାରେ ପହଞ୍ଚି
ଶମିରୋଣ ବାସିନ୍ଦାମାନଙ୍କ ପାଇଁ ପ୍ରାର୍ଥନା କଲେ ଯେପରିକି
ସେମାନେ ପବିତ୍ରଆତ୍ମାଙ୍କୁ ଗ୍ରହଣ କରି ପାରିବେ। ୧୬ସେମାନେ
କେବଳ ପ୍ରଭୁ ଯୀଶୁଙ୍କ ନାମରେ ବାପ୍ତିଜିତ ହୋଇଥିଲେ।
କିନ୍ତୁ ସେ ପର୍ଯ୍ୟନ୍ତ କାହା ଉପରେ ପବିତ୍ରଆତ୍ମା ଅଧିଷ୍ଠିତ
ହୋଇନଥିଲେ। ୧୭ତା'ପରେ ପ୍ରେରିତମାନେ ଲୋକମାନଙ୍କ
ଉପରେ ନିଜ ହାତ ରଖିବାରୁ ସେମାନେ ପବିତ୍ରଆତ୍ମାଙ୍କୁ
ଗ୍ରହଣ କଲେ।

୧୮ପ୍ରେରିତମାନଙ୍କ ହାତ ରଖିବା ଦ୍ୱାରା ପବିତ୍ରଆତ୍ମା ପ୍ରାପ୍ତ
ହେବା ଶିମୋନ ଦେଖିଲା। ତେଣୁ ଶିମୋନ ପ୍ରେରିତମାନଙ୍କୁ
ଟଙ୍କା ଯାଚି କହିଲା, ୧୯"ମୋତେ ମଧ୍ୟ ଏହି ଶକ୍ତି ଦିଅ,
ଯେପରିକି ମୁଁ ଯାହା ଉପରେ ହାତ ରଖିବି, ସେ
ପବିତ୍ରଆତ୍ମା ପାଇପାରିବ।"

୨୦ପିତର ତାହାକୁ କହିଲେ, "ତୁମ୍ଭେ ଓ ତୁମ୍ଭର ଟଙ୍କା
ସବୁଦିନ ପାଇଁ ନଷ୍ଟ ହୋଇଯାଉ, କାରଣ ତୁମ୍ଭେ ଭାବିଲ
ଯେ, ପରମେଶ୍ୱରଙ୍କ ଦାନ ଟଙ୍କାରେ କିଣି ହେବ।

୨୧ପରମେଶ୍ୱରଙ୍କ ପ୍ରତି ତୁମ୍ଭର ହୃଦୟ ନିର୍ମଳ ନ ଥିବାରୁ
ତୁମ୍ଭେ ଆମ୍ଭ ସହିତ ଏ କାମରେ ଭାଗ ନେଇ ପାରିବ
ନାହିଁ। ୨୨ତେଣୁ ତୁମ୍ଭ ହୃଦୟ ପରିବର୍ତ୍ତନ କର ଓ ତୁମ୍ଭର
ଏହି ଦୁଷ୍କର୍ମରୁ ବିମୁଖ ହୋଇ ପ୍ରଭୁଙ୍କୁ ପ୍ରାର୍ଥନା କର।
ହୁଏତ ପରମେଶ୍ୱର ତୁମ୍ଭର ହୃଦୟରେ ଥିବା ପାପ ଚିନ୍ତାକୁ
କ୍ଷମା କରିପାରନ୍ତି। ୨୩ମୁଁ ଦେଖୁଛି, ତୁମ୍ଭ ମନରେ ତିକ୍ତତା
ପୂରିରହିଛି ଓ ପାପ ତୁମ୍ଭ ଉପରେ କର୍ତ୍ତୃତ୍ୱ କରୁଛି।"
୨୪ଶିମୋନ ଉତ୍ତର ଦେଲା, "ତୁମ୍ଭେ କହିଥିବା କୌଣସି
କଥା ଯେପରି ମୋ ପ୍ରତି ଘଟିବ ନାହିଁ, ସେଥିପାଇଁ ତୁମ୍ଭେ
ଦୁହେଁ ମୋ ପାଇଁ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କର।"
୨୫ପ୍ରେରିତମାନେ ଶମିରୋଣର ଅନେକ ଗ୍ରାମରେ
ଶୁଭସମାଚାର କହି ଯିରୂଶାଲମକୁ ଫେରିଗଲେ। ସେମାନେ
ଫେରିବା ସମୟରେ ଶମିରୋଣୀୟମାନଙ୍କର ବହୁତ ଗ୍ରାମରେ
ସୁସମାଚାର ପ୍ରଚାର କଲେ।

## ଫିଲିପ୍ପଙ୍କର ଇଥିଓପିଆରୁ ଆସିଥିବା ଲୋକଙ୍କୁ ଶିକ୍ଷା

୨୬ପ୍ରଭୁଙ୍କର ଜଣେ ସ୍ୱର୍ଗ ଦୂତ ଫିଲିପଙ୍କୁ କହିଲେ,
"ପ୍ରସ୍ତୁତ ହୁଅ। ଯିରୂଶାଲମରୁ ମରୁଭୂମି ଦେଇ ଯେଉଁ ରାସ୍ତା
ଗଜାକୁ ଯାଉଅଛି, ସେହି ରାସ୍ତାରେ ଯାଅ।" ୨୭ଫିଲିପ୍ପ
ପ୍ରସ୍ତୁତ ହୋଇ ବାହାରିଲେ। ସେହି ରାସ୍ତାରେ ଜଣେ
ନପୁଂସକ ସଙ୍ଗରେ ଦେଖାହେଲା। ସେହି ନପୁଂସକ ଇଥିଓପିଆରୁ
ଆସିଥିଲେ। ସେ କାଣ୍ଡାକି ନାମ୍ନୀ ରାଣୀଙ୍କର ଜଣେ ଉଚ୍ଚ
ପଦସ୍ଥ କର୍ମଚାରୀ ଥିଲେ। ସେ ତାହାଙ୍କର ସମସ୍ତ ସମ୍ପତ୍ତିର
ଦାୟିତ୍ୱରେ ଥିଲେ। ନପୁଂସକ ଜଣକ ଉପାସନା କରିବା
ପାଇଁ ଯିରୂଶାଲମକୁ ଯାଇଥିଲେ। ୨୮ସେ ରଥରେ ବସି
ଫେରିବା ସମୟରେ ଭାବବାଦୀ ଯିଶାଇୟଙ୍କର ପୁସ୍ତକରୁ
ପଢୁଥିଲେ। ୨୯ସେତେବେଳେ ପବିତ୍ରଆତ୍ମା ଫିଲିପ୍ପଙ୍କୁ କହିଲେ,
"ତୁମ୍ଭେ ସେ ରଥ ପାଖକୁ ଯାଇ ସେଠାରେ ରୁହ।"
୩୦ଫିଲିପ୍ପ ରଥ ପାଖକୁ ଯାଇ ତାହାଙ୍କୁ ଯିଶାଇୟ ଭାବବାଦୀଙ୍କର
ପୁସ୍ତକ ପଢ଼ିବାର ଶୁଣିଲେ। ସେ ତାହାଙ୍କୁ ପଚାରିଲେ,
"ତୁମ୍ଭେ ଯାହା ପଢୁଛ, ତାହା କ'ଣ ବୁଝିପାରୁଛ?"
୩୧ସେ ନପୁଂସକ କହିଲେ, "ଯଦି କେହି ଏହା
ବୁଝିବାକୁ ସାହାଯ୍ୟ କରିବେନାହିଁ, ତେବେ ମୁଁ ଏହା କିପରି
ବୁଝିବି?" ତେଣୁ ସେ ଫିଲିପ୍ପଙ୍କୁ ରଥରେ ଚଢ଼ି ନିଜ
ପାଖରେ ବସିବାପାଇଁ ଅନୁରୋଧ କଲେ। ୩୨ସେ ଶାସ୍ତ୍ରର
ପାଠ କରୁଥିବା ଅଂଶ ଏହା ଥିଲା:

"ତାହାଙ୍କୁ ଗୋଟିଏ ମେଣ୍ଢା ପରି ବଧ ହେବା ପାଇଁ
ବଧସ୍ଥାନକୁ ନିଆଗଲା। ଗୋଟିଏ ମେଣ୍ଢା ଛୁଆ
ଯେପରି ଲୋମଛେଦକ ସାମନାରେ ଚୁପ୍ ହୋଇ
ଠିଆ ହୁଏ, ସେହିପରି ସେ ଚୁପ ହୋଇ ଠିଆ
ହେଲେ।
୩୩ ତାହାଙ୍କୁ ଅପମାନିତ କରାଗଲା, ଓ ତାହାଙ୍କର ସମସ୍ତ
ଅଧିକାର କାଢ଼ି ନିଆଗଲା। ଏହି ପୃଥିବୀରେ ତାହାଙ୍କର
ଜୀବନକାଳ ଶେଷ ହେଲା। କିଏ ତାହାଙ୍କ ବଂଶ
ବିଷୟରେ କଥାବାର୍ତ୍ତା କରିବ?"

ଯିଶାଇୟ ୫୩:୭-୮

୩୪ନପୁଂସକ ଫିଲିପ୍ପଙ୍କୁ କହିଲେ, "ମୋତେ ଦୟାକରି
କୁହ, କାହା ବିଷୟରେ ଭବିଷ୍ୟଦ୍‌ବକ୍ତା ଏହା କହୁଛନ୍ତି?
ସେ ତାହାଙ୍କ ନିଜ ବିଷୟରେ କହୁଛନ୍ତି ନା ଆଉ କାହା
ବିଷୟରେ କହୁଛନ୍ତି?" ୩୫ତା'ପରେ ଫିଲିପ୍ପ ଶାସ୍ତ୍ର ସେହି
ବାକ୍ୟରୁ ଆରମ୍ଭ କରି ଯୀଶୁଙ୍କର ସୁସମାଚାର ପର୍ଯ୍ୟନ୍ତ
ତାହାଙ୍କୁ କହିଲେ।
୩୬ସେମାନେ ଏହିପରି ଯାଉ ଯାଉ ଜଳଥିବା ଗୋଟିଏ
ଜାଗାରେ ପହଞ୍ଚିଲେ, ଓ ନପୁଂସକ ଜଣକ କହିଲେ,
"ଦେଖ, ଏଠାରେତ ଜଳ ଅଛି। ଏବେ ମୋର ବାପ୍ତିଜିତ
ହେବାର କିଛି ଅସୁବିଧା ଅଛି କି?" ୩୭* ୩୮ତା'ପରେ
ସେ ରଥ ରଖିବାକୁ ଆଦେଶ ଦେଲେ। ତାପରେ ଫିଲିପ୍ପ
ଓ ନପୁଂସକ ଦୁହେଁ ଜଳ ଭିତରକୁ ଓହ୍ଲାଇ ଗଲେ ଓ
ଫିଲିପ୍ପ ତାହାଙ୍କୁ ବାପ୍ତିସ୍ମ ଦେଲେ। ୩୯ସେମାନେ ଦୁହେଁ
ଜଳ ଭିତରୁ ଉଠି ଆସିବା ପରେ ପ୍ରଭୁଙ୍କର ଆତ୍ମା
ଫିଲିପ୍ପଙ୍କୁ ନେଇଗଲେ। ନପୁଂସକ ତାହାଙ୍କୁ ଆଉ ଦେଖିପାରିଲେ
ନାହିଁ। ସେ ଖୁସିରେ ତାହାଙ୍କ ବାଟରେ ଚାଲିଗଲେ।
୪୦କିନ୍ତୁ ଫିଲିପ୍ପ ଅଷ୍ଦୋଦ ନଗରରେ ଦେଖାଦେଲେ ଓ
କାଇସରୀଆ ନଗରକୁ ଯିବା ବାଟରେ ସବୁ ସହରରେ
ଲୋକମାନଙ୍କୁ ସୁସମାଚାର ପ୍ରଚାର କରି ଚାଲିଲେ।

## ଶାଉଲଙ୍କ ହୃଦୟ ପରିବର୍ତ୍ତନ

୯ ଶାଉଲ ଯିରୂଶାଲମରେ ପ୍ରଭୁଙ୍କ ଅନୁସରଣ
କାରୀମାନଙ୍କ ବିରୁଦ୍ଧରେ ହତ୍ୟାର ଭୟ ଦେଖାଇବା
ପାଇଁ ଚେଷ୍ଟା କଲେ। ୨ସେ ମହାଯାଜକଙ୍କ ପାଖକୁ ଯାଇ
ଦମ୍ମେସକ ନଗରର ଯିହୂଦୀ ପ୍ରାର୍ଥନାଗୃହ ଗୁଡ଼ିକୁ ପତ୍ର ସବୁ
ଲେଖିବା ନିମନ୍ତେ କହିଲେ। ଯେପରି ଏହାଦ୍ୱାରା ସେ
ଯେତେବେଳେ ଖ୍ରୀଷ୍ଟଙ୍କ ପଥ ଅନୁସରଣକାରୀ କୌଣସି
ପୁରୁଷ ବା ସ୍ତ୍ରୀକୁ ଦେଖନ୍ତି, ସେତେବେଳେ ସେମାନଙ୍କୁ
ବନ୍ଦୀ କରି ଯିରୂଶାଲମକୁ ନେଇ ଆସିପାରିବେ।
୩ସେ ଦମ୍ମେସକ ନିକଟକୁ ଆସିଲେ। ହଠାତ୍ ସ୍ୱର୍ଗରୁ
ଗୋଟିଏ ଆଲୋକ ତାହାଙ୍କ ଚାରିପଟେ ଉଦ୍‌ଭାସିତ ହୋଇଗଲା।
୪ସେ ଭୂମିରେ ପଡ଼ିଗଲେ। ସେ ଗୋଟିଏ ସ୍ୱର ଶୁଣିବାକୁ
ପାଇଲେ, "ଶାଉଲ, ଶାଉଲ, ତୁମ୍ଭେ ମୋତେ କାହିଁକି
ତାଡ଼ନା ଦେଉଛ?"
୫ଶାଉଲ କହିଲେ, "ପ୍ରଭୁ, ତୁମ୍ଭେ କିଏ?"
ସେ କହିଲେ, "ମୁଁ ଯୀଶୁ, ଯାହାଙ୍କୁ ତୁମ୍ଭେ ତାଡ଼ନା
କରୁଛ। ୬ଏବେ ଉଠ ଓ ନଗରକୁ ଯାଅ। ସେଠାରେ
ତୁମ୍ଭକୁ କ'ଣ କରିବାକୁ ହେବ, ତାହା ତୁମ୍ଭକୁ ଜଣେ
କହିବେ।"
୭ତାହାଙ୍କ ସହିତ ଯାତ୍ରା କରୁଥିବା ଲୋକମାନେ ଆଶ୍ଚର୍ଯ୍ୟ
ହୋଇ ଠିଆ ହେଲେ। ସେମାନେ ଏହି କଥା ଶୁଣିଲେ,

---

**ପଦସଂଖ୍ୟା ୩୭** କେତେକ ନୂତନ ସଂସ୍କରଣ ଗୁଡ଼ିକରେ ୩୭ ପଦ ଯୋଗ କରାଯାଇଛି। "ଫିଲିପ୍ପ ଉତ୍ତର ଦେଲେ, "ଯଦି ତୁମ୍ଭେ ହୃଦୟର ସହ ବିଶ୍ୱାସ କରୁଛ, ତେବେ ବାପ୍ତିଜିତ ହୋଇପାର।" ନପୁଂସକ କହିଲେ "ହଁ, ମୁଁ ବିଶ୍ୱାସ କରେ ଯେ, ଯୀଶୁଖ୍ରୀଷ୍ଟ ପରମେଶ୍ୱରଙ୍କର ପୁତ୍ର।"

କିନ୍ତୁ କାହାକୁ ସେଠାରେ ଦେଖିଲେ ନାହିଁ। ୮ଶାଉଲ
ଭୂମିଉପରୁ ଉଠିଲେ, କିନ୍ତୁ କିଛି ଦେଖି ପାରିଲେ ନାହିଁ।
ତେଣୁ ଲୋକମାନେ ତାହାଙ୍କର ହାତ ଧରି ଦମ୍ମେସକକୁ
ନେଇଗଲେ। ୯ସେ ତିନି ଦିନ ପର୍ଯ୍ୟନ୍ତ କିଛି ଦେଖି
ପାରିଲେ ନାହିଁ ଓ କିଛି ଖିଆପିଆ ମଧ୍ୟ କଲେ ନାହିଁ।
୧୦ହନନିୟ ନାମକ ଜଣେ ଯୀଶୁଙ୍କର ଶିଷ୍ୟ ଦମ୍ମେସକରେ
ଥିଲେ। ପ୍ରଭୁ ତାହାଙ୍କୁ ଦର୍ଶନ ଦେଇ କହିଲେ, "ହନନିୟ!"
ହନନୀୟ କହିଲେ, "ପ୍ରଭୁ, ମୁଁ ଏଠାରେ ଅଛି।"
୧୧ପ୍ରଭୁ ତାହାଙ୍କୁ କହିଲେ, "ଉଠ ଓ ସଳଖ ନାମକ
ରାସ୍ତାକୁ ଯାଅ ଏବଂ ଯିହୂଦାଙ୍କ ଘରେ ତାର୍ଷ ନଗରର
ଶାଉଲ ନାମକ ଜଣେ ବ୍ୟକ୍ତିର ସନ୍ଧାନ ନିଅ। ଯେହେତୁ
ସେ ପ୍ରାର୍ଥନା କରୁଅଛି। ୧୨ଏହି ଶାଉଲ ଗୋଟିଏ ଦର୍ଶନ
ଦେଖିଅଛି ଯେ, ହନନିୟ ନାମକ ଜଣେ ଲୋକ ତା'
ନିକଟକୁ ଆସି, ତା' ଉପରେ ହାତଥୋଇ ପ୍ରାର୍ଥନା କରୁଅଛି,
ଓ ତାହାଦ୍ୱାରା ସେ ପୁଣି ଦେଖିପାରୁଛି।"
୧୩ହନନିୟ ଉତ୍ତର ଦେଲେ, "ପ୍ରଭୁ, ମୁଁ ବହୁତ
ଲୋକଙ୍କଠାରୁ ଏହି ଲୋକ ବିଷୟରେ ଶୁଣିଛି। ମୁଁ ଶୁଣିଛି
ଯେ, ସେ ଯିରୂଶାଲମରେ ଆପଣଙ୍କ ପବିତ୍ର ଲୋକମାନଙ୍କ
ପ୍ରତି ବହୁତ ଅତ୍ୟାଚାର କରିଛି। ୧୪ଏଠାରେ ମଧ୍ୟ ସେହି
ଲୋକଟି ପ୍ରଧାନ ଯାଜକମାନଙ୍କଠାରୁ କ୍ଷମତା ପାଇ ଆପଣଙ୍କୁ
ବିଶ୍ୱାସ କରୁଥିବା ସମସ୍ତ ଲୋକମାନଙ୍କୁ ବନ୍ଦୀ କରିବାପାଇଁ
ଆସିଛି।"
୧୫କିନ୍ତୁ ପ୍ରଭୁ ତାହାଙ୍କୁ କହିଲେ, "ତୁମ୍ଭେ ଯାଅ, କାରଣ
ଏହି ଲୋକକୁ ମୁଁ ଏକ ବିଶେଷ କାର୍ଯ୍ୟ ପାଇଁ ବାଛିଛି।
ଅଣଯିହୂଦୀ, ରାଜା ଓ ଇସ୍ରାୟେଲର ଲୋକମାନଙ୍କ ଆଗରେ
ସେ ମୋ ନାମରେ ସାକ୍ଷ୍ୟ ଦେବ। ୧୬ମୋ ନାମ ପାଇଁ
ତାହାକୁ ଯେ, କେତେ କଷ୍ଟ ଦେଇ ଯିବାକୁ ହେବ ମୁଁ
ନିଜେ ତାହାକୁ ଜଣାଇବି।"
୧୭ତେଣୁ ହନନିୟ ଯିହୂଦାଙ୍କ ଘରକୁ ଯାଇ ଶାଉଲଙ୍କ
ଉପରେ ହାତ ରଖିଲେ, ଓ କହିଲେ, "ଭାଇ ଶାଉଲ!
ପ୍ରଭୁ ଯୀଶୁ ମୋତେ ପଠାଇଛନ୍ତି, ସେ ତୁମ୍ଭର ଆସିବା
ବାଟରେ ତୁମ୍ଭକୁ ଦର୍ଶନ ଦେଇଥିଲେ, ଯେପରି ତୁମ୍ଭେ ପୁଣି
ଥରେ ଦେଖିପାରିବ ଓ ପବିତ୍ରଆତ୍ମାରେ ପରିପୂର୍ଣ୍ଣ
ହୋଇପାରିବ।" ୧୮ଏହି କଥା କହିବା ସଙ୍ଗେସଙ୍ଗେ ଶାଉଲଙ୍କ
ଆଖିରୁ ମାଛ କାତି ପରି କିଛି ଖସି ପଡ଼ିଲା। ସେ ଦେଖି
ପାରିଲେ। ତାପରେ ସେ ଉଠି ବାପ୍ତିଜିତ ହେଲେ। ୧୯କିଛି
ଖାଦ୍ୟ ଖାଇବା ପରେ ତାହାଙ୍କର ବଳ ଆସିଲା। ସେ
ଦମ୍ମେସକ ନଗରରେ ଶିଷ୍ୟମାନଙ୍କ ସହିତ କିଛି ସମୟ
ରହିଲେ।

## ଦମ୍ମେସକରେ ଶାଉଲଙ୍କ ପ୍ରଚାର

୨୦ତାପରେ ଶାଉଲ ସିଧା ଯିହୂଦୀ ପ୍ରାର୍ଥନାଗୃହମାନଙ୍କରେ
ପହଞ୍ଚି ସେଠାରେ ଯୀଶୁଙ୍କ ବିଷୟରେ ପ୍ରଚାର କଲେ। ସେ
ଲୋକମାନଙ୍କୁ କହିବାକୁ ଲାଗିଲେ, "ଯୀଶୁ ପରମେଶ୍ୱରଙ୍କର
ପୁତ୍ର ଅଟନ୍ତି।"
୨୧ତାହାଙ୍କ କଥା ଶୁଣୁଥିବା ସମସ୍ତ ଲୋକ ଆଶ୍ଚର୍ଯ୍ୟ
ହେଲେ। ସେମାନେ କହିଲେ, "ଏ କ'ଣ ସେହି ଲୋକ
ନୁହେଁ, ଯିଏ ଏହି ନାମରେ ବିଶ୍ୱାସ କରୁଥିବା ଯିରୂଶାଲମର
ଲୋକମାନଙ୍କୁ ତାଡ଼ନା କରୁଥିଲା? ଏହି ଲୋକ କ'ଣ ସେ
ନୁହେଁ, ଯେ କି ସେମାନଙ୍କୁ ବାନ୍ଧି ନେଇ ପ୍ରଧାନଯାଜକମାନଙ୍କ
ପାଖକୁ ନେଇଯିବା ପାଇଁ ଏଠାକୁ ଆସିଥିଲା।"
୨୨କିନ୍ତୁ ଶାଉଲ ଅଧିକ ଶକ୍ତିଶାଳୀ ହୋଇ ଉଠିଲେ।
ସେ ପ୍ରମାଣ କରିଦେଲେ ଯେ ଯୀଶୁ ହେଉଛନ୍ତି ଖ୍ରୀଷ୍ଟ।
ତାହାଙ୍କ ପ୍ରମାଣ ସବୁ ଏତେ ଦୃଢ଼ଥିଲା ଯେ, ଦମ୍ମେସକର
ଯିହୂଦୀମାନେ ଏ ବିଷୟରେ ତାହାଙ୍କ ସହିତ ଯୁକ୍ତି କରିପାରୁ
ନ ଥିଲେ।

## ଶାଉଲ ଯିହୂଦୀଙ୍କଠାରୁ ରକ୍ଷା ପାଇବା

୨୩ଅନେକ ଦିନ ବିତିଗଲା ପରେ ଯିହୂଦୀମାନେ ଶାଉଲଙ୍କୁ
ମାରିଦେବା ପାଇଁ ଷଡ଼ଯନ୍ତ୍ର କଲେ। ୨୪ଯିହୂଦୀମାନେ ତାହାଙ୍କୁ
ମାରିବାପାଇଁ ଦିନରାତି ନଗରର ଫାଟକଗୁଡିକ ପାଖରେ
ଜଗି ବସିଲେ। କିନ୍ତୁ ଶାଉଲ ଏହା ଜାଣିପାରିଲେ। ୨୫କିନ୍ତୁ
ତାହାଙ୍କର ଅନୁସରଣକାରୀ ତାହାଙ୍କୁ ଦିନେ ରାତିରେ
ଟୋକେଇରେ ନେଇ ନଗରର ପାଚେରୀ ଆରପଟେ
ଛାଡ଼ିଦେଲେ।

## ଯିରୂଶାଲମରେ ଶାଉଲ

୨୬ଶାଉଲ ଯିରୂଶାଲମରେ ପହଞ୍ଚି ବିଶ୍ୱାସୀ ଶିଷ୍ୟମାନଙ୍କ
ସହିତ ଯୋଗଦେବା ପାଇଁ ଚେଷ୍ଟା କଲେ, କିନ୍ତୁ ସେମାନେ
ସମସ୍ତେ ତାହାଙ୍କୁ ଭୟ କରୁଥିଲେ। ସେ ଯେ ପ୍ରକୃତରେ
ଯୀଶୁଙ୍କର ଶିଷ୍ୟ ହୋଇଅଛନ୍ତି, ଏହା ଶିଷ୍ୟମାନେ ବିଶ୍ୱାସ
କଲେ ନାହିଁ। ୨୭ମାତ୍ର ବର୍ଣ୍ଣବ୍ବା, ଶାଉଲଙ୍କୁ ଗ୍ରହଣ କଲେ
ଓ ତାହାଙ୍କୁ ସାଙ୍ଗରେ ନେଇ ପ୍ରେରିତମାନଙ୍କ ପାଖକୁ
ଗଲେ। ଦମ୍ମେସକକୁ ଯିବା ବାଟରେ ଶାଉଲ କିପରି
ପ୍ରଭୁଙ୍କ ଦର୍ଶନ ପାଇଥିଲେ, ଓ ପ୍ରଭୁ ତାହାଙ୍କ ସହ କିପରି
କଥା ହେଲେ, ଏହା ପ୍ରେରିତମାନଙ୍କୁ ବୁଝାଇ କହିଲେ।
ଶାଉଲ ଦମ୍ମେସକରେ କିପରି ନିର୍ଭୀକ ଭାବରେ ଯୀଶୁଙ୍କ
ନାମରେ ପ୍ରଚାର କରିଥିଲେ, ଏହା ସବୁ ମଧ୍ୟ ସେ
ସେମାନଙ୍କୁ ବୁଝାଇ ଦେଲେ।
୨୮ତାପରେ ଶାଉଲ ସେମାନଙ୍କ ସହିତ ରହି, ଯିରୂଶାଲମର
ପ୍ରତ୍ୟେକ ସ୍ଥାନରେ ପ୍ରଭୁଙ୍କର ନାମରେ ସାହସର ସହିତ
ପ୍ରଚାର କଲେ। ୨୯ସେ ଗ୍ରୀକ୍ ଭାଷାଭାଷୀ ଯିହୂଦୀମାନଙ୍କ
ସହିତ କଥାବାର୍ତ୍ତା କରୁଥିଲେ, ଏବଂ ବାଦାନୁବାଦ ମଧ୍ୟ
କରୁଥିଲେ। କିନ୍ତୁ ସେମାନେ ତାହାଙ୍କୁ ମାରିବା ପାଇଁ ଚେଷ୍ଟା
କଲେ। ୩୦ଭାଇମାନେ ଏହା ଜାଣିପାରି ତାହାଙ୍କୁ କାଇସରୀଆ
ନଗରରୁ ଆଣି ତାର୍ଷ ନଗରକୁ ପଠାଇଦେଲେ।
୩୧ଏହାଦ୍ୱାରା ଯିହୂଦା, ଶମିରୋଣ ଓ ଗାଲିଲୀର ମଣ୍ଡଳୀରେ
ଶାନ୍ତି ଥିଲା, ଓ ଏହା ଶକ୍ତିଶାଳୀ ହେଉଥିଲା। ବିଶ୍ୱାସୀମାନଙ୍କ
ସଂଖ୍ୟା ବଢ଼ିବାରେ ଲାଗିଲା। ପ୍ରଭୁଙ୍କ ଭୟ ଓ ପବିତ୍ର
ଆତ୍ମାର ସହାୟତା ପାଇ ସେମାନେ ରହୁଥିଲେ।
୩୨ଇତିମଧ୍ୟରେ ପିତର ବିଭିନ୍ନ ଅଞ୍ଚଳ ବୁଲିବୁଲି ଶେଷରେ
ଲୂଦ ନଗରରେ ରହୁଥିବା ସାଧୁମାନଙ୍କ ପାଖରେ ଆସି
ପହଞ୍ଚିଲେ। ୩୩ସେଠାରେ ସେ ଏନିୟ ନାମକ ଜଣେ
ପକ୍ଷାଘାତ ରୋଗୀକୁ ଦେଖିଲେ। ସେ ଆଠ ବର୍ଷ ଯାଏ

ଶଯ୍ୟାଶାୟୀ ଅବସ୍ଥାରେ ପଡ଼ିଥିଲା। ୩୪ପିତର ତାହାଙ୍କୁ କହିଲେ,
"ଏନିୟ, ଯୀଶୁ ଖ୍ରୀଷ୍ଟ ତୁମ୍ଭକୁ ସୁସ୍ଥ କରୁଛନ୍ତି, ଉଠ ଓ
ତୁମ୍ଭ ବିଛଣା ନିଜେ ସଜାଡ଼। ଏହା କହିବା ମାତ୍ରେ ସେ
ଉଠିଗଲା।" ୩୫ଏହା ଦେଖି ଲୂଦ ଓ ଶାରୋଣର ସମସ୍ତ
ବାସିନ୍ଦାମାନେ ମନ ଫେରଣ କରି ପ୍ରଭୁଙ୍କଠାରେ ବିଶ୍ୱାସ
କଲେ।

## ଲୂଦ ଓ ଯାଫୋରେ ପିତର

୩୬ଟାବୀଥା ନାମକ ଜଣେ ଶିଷ୍ୟା ଯାଫୋ ନଗରରେ
ରହୁଥିଲେ। (ଯାହାର ଗ୍ରୀକ ଅନୁବାଦ ଦର୍କା ଅର୍ଥାତ୍
ହରିଣୀ)। ସେ ସବୁବେଳେ ଗରୀବ ଲୋକମାନଙ୍କୁ ଦାନ
ଦେଉଥିଲେ ଓ ଲୋକମାନଙ୍କର ଉପକାର କରୁଥିଲେ।
୩୭ପିତର ଯେତେବେଳେ ଲୂଦରେ ଥିଲେ, ସେତେବେଳେ
ସେ ଅସୁସ୍ଥ ହୋଇ ମରିଗଲେ। ଲୋକମାନେ ତାହାଙ୍କର
ଶରୀରକୁ ଧୋଇ ଉପର ମହଲାର କୋଠରୀରେ ଶୁଆଇ
ଦେଲେ। ୩୮ଯାଫୋର ବିଶ୍ୱାସୀ ଶିଷ୍ୟମାନେ ଶୁଣିଲେ ଯେ,
ପିତର ଲୂଦରେ ଅଛନ୍ତି। ଲୂଦ ଯାଫୋର ପାଖରେ ଥିଲା।
ତେଣୁ ସେମାନେ ଦୁଇଜଣଙ୍କୁ ପିତରଙ୍କ ପାଖକୁ ପଠାଇ
ଏହି ନିବେଦନ କଲେ, "ଆମ୍ଭ ପାଖକୁ ଶୀଘ୍ର ଆସନ୍ତୁ।"
୩୯ତେଣୁ ପିତର ପ୍ରସ୍ତୁତ ହେଲେ ଏବଂ ସେମାନଙ୍କ ସହିତ
ଗଲେ। ସେ ଯେତେବେଳେ ପହଞ୍ଚିଲେ, ସେମାନେ ତାହାଙ୍କୁ
ଉପର କୋଠରୀକୁ ନେଇ ଗଲେ। ପିତରଙ୍କ ଚାରିପାଖେ
ବିଧବାମାନେ ଠିଆହୋଇ କାନ୍ଦୁଥିଲେ। ଟାବୀଥା ସେମାନଙ୍କ
ସହିତ ଜୀବିତ ଥିବା ସମୟରେ ଯେଉଁ କୁର୍ତ୍ତା ଓ ଅନ୍ୟ
ଲୁଗାପଟା ତିଆରି କରିଥିଲେ, ସେଗୁଡ଼ିକ ସେମାନେ ପିତରଙ୍କୁ
ଦେଖାଇଲେ। ୪୦ପିତର କୋଠରୀ ଭିତରୁ ସମସ୍ତଙ୍କୁ ବାହାର
କରି ଆଣ୍ଠୁମାଡ଼ି ପ୍ରାର୍ଥନା କଲେ। ତା'ପରେ ସେ ଟାବୀଥାଙ୍କ
ଶରୀର ପାଖକୁ ଯାଇ କହିଲେ, "ଟାବୀଥା, ଉଠ।" ସେ
ଆଖି ଖୋଲିଲେ ଓ ପିତରଙ୍କୁ ଦେଖି ଉଠି ବସିଲେ।
୪୧ପିତର ତାହାଙ୍କର ହାତ ଧରି ଉଠେଇଲେ ଓ ବିଶ୍ୱାସୀମାନଙ୍କୁ
ଓ ବିଧବାମାନଙ୍କୁ କୋଠରୀ ମଧ୍ୟକୁ ଡାକିଲେ ଓ ଟାବୀଥାଙ୍କୁ
ଜୀବିତ ଦେଖାଇଲେ। ୪୨ଏହି ଖବର ଯାଫୋର ଚାରିଆଡ଼େ
ବ୍ୟାପିଗଲା। ଅନେକ ଲୋକ ପ୍ରଭୁଙ୍କ ପାଖରେ ବିଶ୍ୱାସ
କଲେ। ୪୩ତା'ପରେ ପିତର ଯାଫୋ ନଗରରେ ଶିମୋନ
ନାମକ ଜଣେ ଚର୍ମକାରଙ୍କ ଘରେ ବହୁତ ଦିନ
ରହିଲେ।

## ପିତର ଓ କର୍ଣ୍ଣୀଲିୟ

**୧୦** କାଇସରୀଆ ନଗରରେ କର୍ଣ୍ଣୀଲିୟ ନାମକ ଜଣେ
ଲୋକ ଥିଲେ। ଇଟାଲିଆ ନାମକ ରୋମୀୟ
ସୈନ୍ୟବାହିନୀର ଏକ ବିଭାଗରେ ପଦାଧିକାରୀ ଥିଲେ।
୨ସେ ଜଣେ ଧାର୍ମିକ ଲୋକ ଥିଲେ, ଓ ତାହାଙ୍କ ଗୃହରେ
ବାସ କରୁଥିବା ଲୋକମାନଙ୍କ ସହ ସେ ସତ୍ୟ ପରମେଶ୍ୱରଙ୍କର
ଉପାସନା କରୁଥିଲେ। ସେ ଗରିବମାନଙ୍କୁ ବହୁତ ଦାନ
ଦେଉଥିଲେ ଓ ସବୁବେଳେ ପରମେଶ୍ୱରଙ୍କ ନିକଟରେ
ପ୍ରାର୍ଥନା କରୁଥିଲେ। ୩ଦିନେ ଅପରାହ୍ନ ପ୍ରାୟ ତିନିଟା
ସମୟରେ ସେ ଏକ ଦର୍ଶନ ଦେଖିଲେ। ସେ ଜଣେ
ସ୍ୱର୍ଗଦୂତଙ୍କୁ ତାହାଙ୍କ ନିକଟକୁ ଆସୁଥିବାର ସ୍ପଷ୍ଟ ଭାବେ
ଦେଖିଲେ। ସେ ତାହାଙ୍କୁ କହିଲେ, "କର୍ଣ୍ଣୀଲିୟ।"
୪କର୍ଣ୍ଣୀଲିୟ ତାହାଙ୍କ ଆଡକୁ ଚାହିଁଲେ, ଏବଂ ଭୟରେ
କହିଲେ, "ମହାଶୟ, ଆପଣ କ'ଣ ଚାହାଁନ୍ତି?"
ସ୍ୱର୍ଗଦୂତ ତାହାଙ୍କୁ କହିଲେ, "ପରମେଶ୍ୱର ତୁମ୍ଭର
ପ୍ରାର୍ଥନା ଶୁଣିଅଛନ୍ତି। ତୁମ୍ଭେ ଗରୀବମାନଙ୍କୁ ଯେଉଁସବୁ ଦାନ
ଦେଇଅଛ, ତାହା ମଧ୍ୟ ସେ ଦେଖିଅଛନ୍ତି। ତେଣୁ ସେ
ତୁମ୍ଭକୁ ସ୍ମରଣ କରିଅଛନ୍ତି।" ୫ବର୍ତ୍ତମାନ ଯାଫୋ ନଗରକୁ
ତୁମ୍ଭେ ତୁମ୍ଭର ଲୋକମାନଙ୍କୁ ପଠାଇ ଶିମୋନ ନାମକ
ଗୋଟିଏ ଲୋକଙ୍କୁ ସେଠାରୁ ଆଣ। ସେହି ଶିମୋନ,
ପିତର ନାମରେ ମଧ୍ୟ ପରିଚିତ। ୬ପିତର ସମୁଦ୍ରକୂଳ
ପାଖରେ ରହୁଥିବା ଶିମୋନ ନାମକ ଜଣେ ଚର୍ମକାରଙ୍କ
ସଂଗେ ରହୁଛନ୍ତି।" ୭ଏହା କହି ସ୍ୱର୍ଗଦୂତ ଚାଲିଗଲେ।
ଏହାପରେ କର୍ଣ୍ଣୀଲିୟ ନିଜର ବ୍ୟକ୍ତିଗତ ସହକାରୀ ମଧ୍ୟରୁ
ତାହାଙ୍କର ଦୁଇଜଣ ସେବକ ଓ ଜଣେ ନିଷ୍ଠାପର ସୈନିକଙ୍କୁ
ଡାକିଲେ। ୮ସେ ସେମାନଙ୍କୁ ସମସ୍ତ ଘଟଣା କହି ଯାଫୋକୁ
ପଠାଇଲେ।
୯ତହିଁ ଆରଦିନ ସେମାନେ ଯାଫୋ ନଗର ନିକଟରେ
ପହଞ୍ଚିଲେ, ସେତେବେଳେ ପିତର ଛାତ ଉପରକୁ ପ୍ରାର୍ଥନା
କରିବାପାଇଁ ଯାଇଥିଲେ। ତାହାପ୍ରାୟ ଦ୍ୱିପହର ସମୟ ଥିଲା।
୧୦ତେଣୁ ପିତରଙ୍କୁ ବହୁତ ଭୋକ ଲାଗିବାରୁ ସେ ଖାଇବା
ପାଇଁ ଇଚ୍ଛା କରୁଥିଲେ। ସେମାନେ ପିତରଙ୍କ ନିମନ୍ତେ
ଖାଦ୍ୟ ତିଆରି କରୁଥିବା ସମୟରେ ସେ ଗୋଟିଏ ସ୍ୱପ୍ନ
ଦେଖିଲେ। ୧୧ସେ ଦେଖିଲେ ଯେ, ସ୍ୱର୍ଗ ଖୋଲିଗଲା ଓ
ତା' ଭିତରୁ ଗୋଟିଏ ବଡ଼ ଚାଦର ଭଳି କିଛି ଗୋଟାଏ
ଚାରି କୋଣ ଧରା ହୋଇ ତଳକୁ ପୃଥିବୀକୁ ଖସୁଛି।
୧୨ତାଭିତରେ ପୃଥିବୀର ବିଭିନ୍ନ ପ୍ରକାରର ପଶୁପକ୍ଷୀ ଓ
ସରୀସୃପ ପ୍ରାଣୀମାନ ଥିଲେ। ୧୩ତାପରେ ତାହାଙ୍କୁ ଗୋଟିଏ
ବାଣୀ ଶୁଭିଲା, "ପିତର, ଉଠ, ଏହି ପଶୁମାନଙ୍କ ମଧ୍ୟରୁ
ଯେ କୌଣସିଟିକୁ ମାରି ଓ ଖାଅ।"
୧୪ପିତର କହିଲେ, "ନା ପ୍ରଭୁ। ମୁଁ କେବେ କୌଣସି
ଅପବିତ୍ର ବା ଅପରିଷ୍କାର ଖାଦ୍ୟ ଖାଇ ନାହିଁ।"
୧୫ମାତ୍ର ସେହି ସ୍ୱର ତାହାଙ୍କୁ ପୁଣି କହିଲେ, "ପରମେଶ୍ୱର
ଯେଉଁ ବିଷୟକୁ ପବିତ୍ର କରିଛନ୍ତି, ତୁମ୍ଭେ ତାକୁ ଅପବିତ୍ର
କୁହନାହିଁ।" ୧୬ଏହିପରି ତିନିଥର ହେବାପରେ ସେ ଜିନିଷଟି
ହଠାତ୍ ସ୍ୱର୍ଗକୁ ଉଠି ଚାଲିଗଲା।
୧୭ପିତର ଯେଉଁ ଦୃଶ୍ୟ ଦେଖି ଥିଲେ, ତାର ଅର୍ଥ
ବିଷୟରେ ଚିନ୍ତା କରି ହତବୁଦ୍ଧି ହୋଇ ପଡିଲେ। ଏହି
ସମୟରେ କର୍ଣ୍ଣୀଲିୟଙ୍କ ଯେଉଁ ଲୋକମାନେ ଶିମୋନଙ୍କର
ଘର ଖୋଜୁଥିଲେ, ସେମାନେ ଆସି ଫାଟକ ନିକଟରେ
ଠିଆହୋଇଥିଲେ। ୧୮ସେମାନେ ତାହାଙ୍କୁ ଡାକିଲେ ଓ
ପିତର ନାମରେ ପରିଚିତ ଶିମୋନ ସେଠାରେ ଅତିଥି
ଭାବରେ ରହିଛନ୍ତି କି ନାହିଁ ପଚାରିଲେ।
୧୯ସେପର୍ଯ୍ୟନ୍ତ ପିତର ସେହି ଦର୍ଶନ ବିଷୟରେ ଚିନ୍ତା
କରୁଥିଲେ। ସେହି ସମୟରେ ପବିତ୍ରଆତ୍ମା ତାହାଙ୍କୁ କହିଲେ,
"ଶୁଣ, ତିନିଜଣ ଲୋକ ତୁମ୍ଭକୁ ଖୋଜୁଛନ୍ତି। ୨୦ତେଣୁ ଉଠ

ଓ ତଳକୁ ଯାଅ। ସେହି ଲୋକମାନଙ୍କ ସହିତ ଯାଅ ଓ
ସେମାନଙ୍କୁ କିଛି ପଚାରନାହିଁ। କାରଣ ମୁଁ ସେମାନଙ୍କୁ
ପଠାଇଛି।" ୨୧ପିତର ତଳକୁ ଗଲେ ଓ ସେମାନଙ୍କୁ
କହିଲେ, "ତୁମ୍ଭେମାନେ ଯାହାକୁ ଖୋଜୁଛ ମୁଁ ସେହିଲୋକ।
ତୁମ୍ଭେମାନେ ଏଠାକୁ କାହିଁକି ଆସିଛ?"
୨୨ସେମାନେ ତାହାଙ୍କୁ କହିଲେ, "ଆମ୍ଭମାନଙ୍କୁ
ସୈନ୍ୟବାହିନୀର ଅଧିକାରୀ କର୍ଣ୍ଣିଲିୟ ପଠାଇଛନ୍ତି। ସେ
ପରମେଶ୍ୱରଙ୍କୁ ଭୟ କରୁଥିବା ଜଣେ ଉତ୍ତମ ବ୍ୟକ୍ତି।
ତାହାଙ୍କୁ ଯିହୂଦୀମାନେ ବହୁତ ସମ୍ମାନ ଦିଅନ୍ତି। ଜଣେ
ପବିତ୍ର ସ୍ୱର୍ଗଦୂତ କର୍ଣ୍ଣିଲିୟଙ୍କୁ ଦର୍ଶନ ଦେଇ ତୁମ୍ଭକୁ
ତାହାଙ୍କ ଘରକୁ ନିମନ୍ତ୍ରଣ କରିବା ପାଇଁ କହିଛନ୍ତି, ଯେପରି
ସେ ତୁମ୍ଭ ନିକଟରୁ କଥା ଶୁଣିପାରନ୍ତି।" ୨୩ତେଣୁ ପିତର
ସେମାନଙ୍କୁ ଭିତରକୁ ଡାକିଲେ ଓ ରାତିରେ ରହିବାକୁ
ଜାଗାଟିଏ ଦେଲେ।
ତହିଁ ଆରଦିନ ସେ ସେମାନଙ୍କ ସହିତ ପ୍ରସ୍ତୁତ ହୋଇ
ଚାଲିଗଲେ। ଯାଫୋର କେତେକ ଭାଇମାନେ ମଧ୍ୟ ତାହାଙ୍କ
ସହିତ ଆସିଥିଲେ। ୨୪ତହିଁ ଆରଦିନ ସେ କାଇସରୀୟା
ନଗରରେ ପହଞ୍ଚିଲେ। କର୍ଣ୍ଣିଲିୟ ନିଜର ବନ୍ଧୁବାନ୍ଧବ ଓ
ଘନିଷ୍ଠ ବନ୍ଧୁମାନଙ୍କୁ ଡକାଇ ସେମାନଙ୍କ ଅପେକ୍ଷାରେ ଥିଲେ।
୨୫ପିତର ଘରେ ପ୍ରବେଶ କରିବା ବେଳେ କର୍ଣ୍ଣିଲିୟ
ତାହାଙ୍କୁ ସାକ୍ଷାତ କରି ତାହାଙ୍କ ପାଦତଳେ ପଡି ପ୍ରଣାମ
କଲେ। ୨୬ପିତର ତାହାଙ୍କୁ ଉଠାଇ ଦେଇ କହିଲେ,
"ଉଠ, ମୁଁ ତୁମ୍ଭପରି କେବଳ ଜଣେ ମଣିଷ।" ୨୭ପିତର
ତାହାଙ୍କ ସହିତ କଥା ହେଉ ହେଉ ଭିତରକୁ ଗଲେ।
ସେଠାରେ ସେ ବହୁତ ଲୋକମାନଙ୍କୁ ଏକତ୍ରିତ ହେବାର
ଦେଖିଲେ। ୨୮ସେ ସେମାନଙ୍କୁ କହିଲେ, "ତୁମ୍ଭେମାନେ
ଜାଣିଛ ଯେ, କୌଣସି ଯିହୂଦୀ ଅନ୍ୟ ସହିତ ମିଶିବା ବା
ଅନ୍ୟ ଜାତିର ଲୋକଙ୍କ ଘରକୁ ଯିବା ଯିହୂଦୀୟ ବ୍ୟବସ୍ଥା
ବିରୁଦ୍ଧ। କିନ୍ତୁ କୌଣସି ଲୋକକୁ 'ଅପବିତ୍ର' ଓ 'ଅପରିଚ୍ଛନ୍ନ'
ନ କହିବା ପାଇଁ ପରମେଶ୍ୱର ମୋତେ ଦେଖାଇଛନ୍ତି।
୨୯ତେଣୁ ମୁଁ ନିମନ୍ତ୍ରଣ ପାଇ ବିନା ଆପତ୍ତିରେ ଏଠାକୁ
ଚାଲିଆସିଲି। ମୋତେ ବର୍ତ୍ତମାନ କୁହ, ତୁମ୍ଭେମାନେ ମୋତେ
କାହିଁକି ଡକାଇଥିଲ?"
୩୦କର୍ଣ୍ଣିଲିୟ କହିଲେ, "ମୁଁ ଠିକ୍ ଚାରିଦିନ ଆଗରୁ
ମୋ ଘରେ ଅପରାହ୍ନ ପ୍ରାୟ ତିନିଟା ବେଳେ ପ୍ରାର୍ଥନା
କରୁଥିଲି। ସେତେବେଳେ ହଠାତ୍ ଜଣେ ସ୍ୱର୍ଗଦୂତ, ଉଜ୍ଜ୍ୱଳ
ଓ ଝଲସୁଥିବା ବସ୍ତ୍ର ପିନ୍ଧି ମୋ ସାମନାରେ ଠିଆ
ହୋଇଗଲେ। ୩୧ସେ କହିଲେ, 'କର୍ଣ୍ଣିଲିୟ, ପରମେଶ୍ୱର
ତୁମ୍ଭର ପ୍ରାର୍ଥନା ଶୁଣିଛନ୍ତି ଓ ତୁମ୍ଭେ ଗରିବମାନଙ୍କୁ ଦେଇଥିବା
ଦାନ ମନେ ରଖିଛନ୍ତି। ୩୨ତେଣୁ ଯାଫୋକୁ ଲୋକ ପଠାଇ
ପିତର ନାମରେ ପରିଚିତ ଶିମୋନଙ୍କୁ ଏଠାକୁ ଡକାଅ। ସେ
ସମୁଦ୍ର କୂଳରେ ଚର୍ମକାର ଶିମୋନଙ୍କ ଘରେ ରହୁଛନ୍ତି।'
୩୩ତେଣୁ ମୁଁ ଆପଣଙ୍କୁ ସଙ୍ଗେସଙ୍ଗେ ଡ଼କାଇ ପଠାଇଲି।
ଆପଣ ଏଠାକୁ ଆସି ଭଲ କରିଛନ୍ତି। ପ୍ରଭୁ ଆପଣଙ୍କୁ
ଯାହା କହିବାପାଇଁ ଆଦେଶ ଦେଇଛନ୍ତି, ତାହା ଶୁଣିବାପାଇଁ
ଆମ୍ଭେ ସମସ୍ତେ ଏଠାରେ ପ୍ରଭୁଙ୍କ ସମ୍ମୁଖରେ ଅପେକ୍ଷା କରି
ରହିଛୁ।"

## କର୍ଣ୍ଣିଲିୟଙ୍କ ଘରେ ପିତରଙ୍କ ଶିକ୍ଷା

୩୪ପିତର କହିବା ଆରମ୍ଭ କଲେ, "ମୁଁ ବର୍ତ୍ତମାନ
ପ୍ରକୃତରେ ବୁଝିପାରୁଛି, ପରମେଶ୍ୱରଙ୍କ ଦୃଷ୍ଟିରେ ପ୍ରତ୍ୟେକ
ଲୋକ ସମାନ। ତାହାଙ୍କ ପାଖରେ କୌଣସି ଭେଦଭାବ
ନାହିଁ। ୩୫କିନ୍ତୁ ପରମେଶ୍ୱର ତାହାଙ୍କୁ ଉପାସନା କରୁଥିବା
ଓ ଉତ୍ତମ କର୍ମ କରୁଥିବା ଲୋକଙ୍କୁ ଗ୍ରହଣ କରନ୍ତି।
୩୬ପରମେଶ୍ୱର ଇସ୍ରାୟେଲ ଲୋକମାନଙ୍କ ପାଖକୁ ତାହାଙ୍କ
ସମାଚାର ପଠାଇଥିଲେ। ସେ ମଧ୍ୟ ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା
ତାହାଙ୍କର ଶାନ୍ତି ସୁସମାଚାର ପଠାଇଛନ୍ତି। ସେ ସମସ୍ତଙ୍କର
ପ୍ରଭୁ। ୩୭ଯୋହନଙ୍କ ଦ୍ୱାରା ବାପ୍ତିସ୍ମ ସମ୍ପର୍କରେ ପ୍ରଚାର
ହେବାପରେ ଗାଲିଲୀଠାରୁ ଆରମ୍ଭ କରି ସାରା ଯିହୂଦାରେ
ଯାହାସବୁ ଘଟିଲା, ତାହା ତୁମ୍ଭେମାନେ ଜାଣିଛ। ୩୮ତୁମ୍ଭେମାନେ
ନାଜରିତୀୟ ଯୀଶୁଙ୍କ ବିଷୟରେ ମଧ୍ୟ ଜାଣିଛ। ପରମେଶ୍ୱର
ତାହାଙ୍କୁ ପବିତ୍ରଆତ୍ମା ଓ ଶକ୍ତିରେ ପୂର୍ଣ୍ଣକରି ଖ୍ରୀଷ୍ଟରୂପେ
ଅଭିଷିକ୍ତ କରିଥିଲେ। ଯୀଶୁ ଚତୁର୍ଦ୍ଦିଗକୁ ଯାଇ ଲୋକଙ୍କ
ଉପକାର କରୁଥିଲେ। ଶୟତାନର ଅତ୍ୟାଚାର ଅଧୀନରେ
ରହିଥିବା ଲୋକଙ୍କୁ ସେ ସୁସ୍ଥ କରିଦେଉଥିଲେ। ଏହିସବୁ
ଦ୍ୱାରା ପ୍ରମାଣିତ ହେଉଥିଲା ଯେ, ପରମେଶ୍ୱର ତାହାଙ୍କ
ସହିତ ଥିଲେ। ୩୯ଯୀଶୁ ଯିହୂଦା ଦେଶରେ ଓ ଯିରୂଶାଲମରେ
ଯାହା ସବୁ କରିଥିଲେ ସେହିସବୁ ଆମ୍ଭେ ନିଜେ ଦେଖିଅଛୁ।
ଆମ୍ଭେ ତାହାର ସାକ୍ଷୀ ଅଟୁ। ସେମାନେ ତାହାଙ୍କୁ ବଧ
କଲେ। କାଠ ନିର୍ମିତ କ୍ରୁଶରେ ସେମାନେ ତାହାଙ୍କୁ ଚଢ଼ାଇ
ହତ୍ୟାକଲେ। ୪୦କିନ୍ତୁ ତାହାଙ୍କ ମୃତ୍ୟୁର ତିନିଦିନ ପରେ
ପରମେଶ୍ୱର ତାହାଙ୍କୁ ମୃତମାନଙ୍କ ମଧ୍ୟରୁ ପୁନର୍ଜୀବିତ କରି
ଉଠାଇଲେ ଓ ଲୋକଙ୍କ ନିକଟରେ ତାହାଙ୍କୁ ଦେଖାଇଲେ।
୪୧ମାତ୍ର ଯୀଶୁ ସବୁ ଲୋକମାନଙ୍କୁ ଦେଖାଗଲେ ନାହିଁ।
ପରମେଶ୍ୱର ଯେଉଁମାନଙ୍କୁ ତାହାଙ୍କ ସାକ୍ଷୀରୂପେ ପୂର୍ବରୁ
ମନୋନୀତ କରିଥିଲେ, ସେହିମାନେ କେବଳ ତାହାଙ୍କୁ
ଦେଖିପାରିଲେ। ଆମ୍ଭେମାନେ ସେହି ସାକ୍ଷୀ ଅଟୁ। ଯୀଶୁ
ମୃତ୍ୟୁରୁ ଉଠିଲାପରେ ଆମ୍ଭେମାନେ ତାହାଙ୍କ ସହିତ ଖାଇଥିଲୁ
ଓ ପିଇଥିଲୁ। ୪୨ଯୀଶୁ ଆମ୍ଭମାନଙ୍କୁ ଲୋକମାନଙ୍କ ପାଖରେ
ସୁସମାଚାର ପ୍ରଚାର କରିବାପାଇଁ ଆଦେଶ ଦେଲେ। ପୁଣି
ଜୀବିତ ଓ ମୃତମାନଙ୍କର ବିଚାରକ ହେବା ନିମନ୍ତେ
କେବଳ ଏକମାତ୍ର ସେ ଯେ ନିଯୁକ୍ତ ପାଇଛନ୍ତି, ଏହାର
ସାକ୍ଷ୍ୟ ଦେବାପାଇଁ ମଧ୍ୟ କହିଲେ। ୪୩ଯେ କେହି ଯୀଶୁଙ୍କଠାରେ
ବିଶ୍ୱାସ କରିବ,ସେ ପାପକ୍ଷମା ପାଇବ। ପରମେଶ୍ୱର ଯୀଶୁଙ୍କ
ନାମରେ ସେହି ବ୍ୟକ୍ତିର ସମସ୍ତ ପାପ କ୍ଷମା କରିଦେବେ।
ସମସ୍ତ ଭାବବାଦୀଙ୍କ ଦ୍ୱାରା କଥିତ ଏହି ବାକ୍ୟ ନିଶ୍ଚିତ
ସତ୍ୟ ଅଟେ।"

## ଅଣଯିହୂଦୀମାନଙ୍କ ଉପରେ ପବିତ୍ର ଆତ୍ମାଙ୍କର ଅଧିଷ୍ଠାନ

୪୪ପିତର ଏହିକଥା କହିବା ସମୟରେ ସୁସମାଚାର
ଶୁଣୁଥିବା ସମସ୍ତ ଲୋକମାନଙ୍କ ଉପରେ ପବିତ୍ର ଆତ୍ମା
ଓହ୍ଲାଇ ଆସିଲେ। ୪୫ଯେଉଁ ଯିହୂଦୀ ବିଶ୍ୱାସୀମାନେ ପିତରଙ୍କ
ସଙ୍ଗେ ଆସିଥିଲେ ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ଯେ,
ଅଣଯିହୂଦୀମାନଙ୍କୁ ମଧ୍ୟ ପବିତ୍ର ଆତ୍ମା ଦିଆଗଲା। ୪୬ସେମାନଙ୍କ
ଭିନ୍ନଭିନ୍ନ ଭାଷାରେ କଥା ହେବା ଓ ପରମେଶ୍ୱରଙ୍କୁ ପ୍ରଶଂସା

କରିବାର ମଧ୍ୟ ଶୁଣିଲେ। ୪୭ତା'ପରେ ପିତର କହିଲେ,
"ଏହି ଲୋକମାନଙ୍କୁ ବାପ୍ତିଜିତ ହେବାନିମନ୍ତେ କେହି କ'ଣ
କେବେ ଜଳ ଯୋଗାଇ ଦେବାପାଇଁ ମନା କରିପାରିବ?
ସେମାନେ ମଧ୍ୟ ଆମ୍ଭପରି ପବିତ୍ର ଆତ୍ମାଙ୍କୁ ଗ୍ରହଣ କରିଛନ୍ତି!"
୪୮ତେଣୁ ପିତର ଯୀଶୁଖ୍ରୀଷ୍ଟଙ୍କ ନାମରେ ବାପ୍ତିଜିତ ହେବାପାଇଁ
କର୍ଣ୍ଣୀଲିୟ, ତାହାଙ୍କର ଆତ୍ମୀୟସ୍ୱଜନ ଓ ବନ୍ଧୁମାନଙ୍କୁ ଆଦେଶ
ଦେଲେ। ତା'ପରେ ଲୋକମାନେ ପିତରଙ୍କୁ ସେମାନଙ୍କ
ସହିତ ଆଉ କିଛି ଦିନ ରହିବପାଇଁ ଅନୁରୋଧ କଲେ।

## ପିତର ଯିରୂଶାଲମ ଫେରିଆସିଲେ

୧୧ ଯିହୂଦାରେ ପ୍ରେରିତମାନେ ଓ ଭାଇମାନେ ଶୁଣିବାକୁ
ପାଇଲେ ଯେ, ଅଣଯିହୂଦୀ ଲୋକମାନେ ମଧ୍ୟ
ପରମେଶ୍ୱରଙ୍କ ସୁସମାଚାର ଗ୍ରହଣ କରିଛନ୍ତି। ୨ତେଣୁ
ପିତର ଯିରୂଶାଲମରେ ପହଞ୍ଚିବା ପରେ ସୁନ୍ନତ ହୋଇଥିବା
ଲୋକମାନେ ତାହାଙ୍କୁ ସମାଲୋଚନା କଲେ। ୩ସେମାନେ
କହିଲେ, "ତୁମ୍ଭେ ସୁନ୍ନତ ନ ହୋଇଥିବା ଲୋକଙ୍କ ଘରକୁ
ଯାଇଛ ଓ ସେମାନଙ୍କ ସହିତ ଭୋଜନ ମଧ୍ୟ କରିଛ।"
୪ତେଣୁ ପିତର ସେମାନଙ୍କୁ ସମସ୍ତ ଘଟଣାମାନ ବୁଝାଇ
କହିଲେ, ୫"ମୁଁ ଯାଫୋ ନଗରରେ ପ୍ରାର୍ଥନା କଲାବେଳେ
ଗୋଟିଏ ଦିବ୍ୟଦର୍ଶନ ଦେଖିଲି। ଗୋଟିଏ ଚଦର ଚାରିକୋଣରୁ
ଧରାଯାଇ ସ୍ୱର୍ଗରୁ ମୋ ଆଡ଼କୁ ଖସିଆସୁଥିବାର ମୁଁ ଦେଖିଲି।
୬ମୁଁ ମନୋଯୋଗ ସହିତ ନିରୀକ୍ଷଣ କରି ଦେଖିଲି ଯେ,
ସେଥିରେ ଚାରିପାଦ ବିଶିଷ୍ଟ ପଶୁ, ଜଙ୍ଗଲୀ ଜନ୍ତୁ, ସରୀସୃପ,
ଓ ଆକାଶର ପକ୍ଷୀସବୁ ଅଛନ୍ତି। ୭ତାପରେ ମୁଁ ଗୋଟିଏ
ସ୍ୱର ଶୁଣିଲି, 'ପିତର, ଉଠ। ଏମାନଙ୍କ ଭିତରୁ କୌଣସିଟିକୁ
ମାରି ଖାଅ।' ୮କିନ୍ତୁ ମୁଁ କହିଲି, 'ପ୍ରଭୁ, ମୁଁ ଏହାକଦାପି
କରିବି ନାହିଁ, କାରଣ ମୁଁ କେବେ ଅପବିତ୍ର ଓ ଅପରିଷ୍କାର
ଖାଦ୍ୟ ଖାଇନାହିଁ।' ୯ଏହି ସ୍ୱର ମୁଁ ସ୍ୱର୍ଗରୁ ଦ୍ୱିତୀୟ ଥର
ପୁଣି ଶୁଣିଲି, 'ପରମେଶ୍ୱର ଯାହା ସବୁ ପବିତ୍ର କରିଛନ୍ତି,
ତାହା ତୁମ୍ଭର ଅପବିତ୍ର ବୋଲି କହିବା ଉଚିତ ନୁହେଁ।'
୧୦ଏହିପରି ତିନିଥର ହେବାପରେ, ଏହା ସବୁ ସ୍ୱର୍ଗକୁ
ଉଠାଇ ନିଆଗଲା। ୧୧ଠିକ୍ ସେହି ସମୟରେ ତିନିଜଣ
ମଣିଷ ଆମ୍ଭେ ରହୁଥିବା ଘରକୁ ଆସିଲେ। ସେମାନଙ୍କୁ
କାଇସରୀଆରୁ ମୋ ପାଖକୁ ପଠାଯାଇଥିଲା। ୧୨ମୋତେ
ସେମାନଙ୍କ ସହିତ ବିନା ସଙ୍କୋଚରେ ଯିବାପାଇଁ ପବିତ୍ରଆତ୍ମା
ନିର୍ଦ୍ଦେଶ ଦେଲେ। ମୋ ସାଙ୍ଗରେ ଏଠାରେଥିବା ଏହି ଛଅ
ଜଣ ବିଶ୍ୱାସୀ ଭାଇ ମଧ୍ୟ ଆସିଥିଲେ। ଆମ୍ଭେମାନେ
କର୍ଣ୍ଣୀଲିୟଙ୍କ ଘରକୁ ଗଲୁ। ୧୩କର୍ଣ୍ଣୀଲିୟ କିପରି ତାହାଙ୍କ
ଘରେ ଜଣେ ସ୍ୱର୍ଗଦୂତଙ୍କୁ ଦେଖିଲେ, ସେହିସବୁ ଆମ୍ଭକୁ
କହିଲେ। ଏହି ଦୂତ ତାହାଙ୍କୁ କହିଲେ, 'ଯାଫୋ ନଗରକୁ
ଲୋକ ପଠାଇ ପିତର ନାମରେ ପରିଚିତ ଶିମୋନଙ୍କୁ
ଆଣ। ୧୪ସେ ତୁମ୍ଭକୁ ଓ ତୁମ୍ଭ ଘରେ ରହୁଥିବା ଲୋକମାନଙ୍କୁ
ବାକ୍ୟ କହିବେ, ଯାହା ଦ୍ୱାରା ତୁମ୍ଭେ ସମସ୍ତେ ରକ୍ଷା
ପାଇବ।' ୧୫ମୁଁ କହିବାକୁ ଆରମ୍ଭ କଲାମାତ୍ରେ, ପବିତ୍ରଆତ୍ମା
ସେମାନଙ୍କ ଉପରେ ଓହ୍ଲାଇ ଆସିଲେ, ଯେପରି ଆମ୍ଭ
ଉପରେ ପ୍ରଥମରେ ଓହ୍ଲାଇ ଆସିଥିଲେ। ୧୬ସେତେବେଳେ
ମୋର ପ୍ରଭୁଙ୍କର କଥା ମନେ ପଡ଼ିଲା। ସେ କହିଥିଲେ,
'ଯୋହନ ଲୋକମାନଙ୍କୁ ଜଳରେ ବାପ୍ତିସ୍ମ କରାଇଥିଲେ,
କିନ୍ତୁ ତୁମ୍ଭେମାନେ ପବିତ୍ର ଆତ୍ମାରେ ବାପ୍ତିଜିତ ହେବ।'
୧୭ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରିବାରୁ ପରମେଶ୍ୱର
ଆମ୍ଭକୁ ଯେପରି ପବିତ୍ର ଆତ୍ମା ଦାନ ଦେଇଥିଲେ, ସେହିପରି
ଯଦି ସେ ସେମାନଙ୍କୁ ସେହି ସମାନ ଦାନ ଦେଲେ,
ତେବେ ମୁଁ ପରମେଶ୍ୱରଙ୍କ ମାର୍ଗରେ ବାଧା ଦେବା ପାଇଁ
କିଏ?"
୧୮ଯିହୂଦୀୟ ବିଶ୍ୱାସୀମାନେ ଏକଥା ଶୁଣି ଆଉ ଯୁକ୍ତିତର୍କ
କଲେ ନାହିଁ। ସେମାନେ ପରମେଶ୍ୱରଙ୍କର ପ୍ରଶଂସା କଲେ,
ପୁଣି କହିଲେ, "ଏହାର ଅର୍ଥ ଯେ, ପରମେଶ୍ୱର ଆମପରି
ଅନ୍ୟ ଜାତିର ଲୋକମାନଙ୍କୁ ମଧ୍ୟ ଅନୁତାପ କରି ପ୍ରକୃତ
ଜୀବନର ଅଧିକାରୀ ହେବା ନିମନ୍ତେ ସୁଯୋଗ
ଦେଇଛନ୍ତି।"

## ଆନ୍ତିୟଖିଆରେ ସୁସମାଚାର

୧୯ସ୍ତିଫାନ୍ ମୃତ ହେବାପରେ ଯେଉଁ ତାଡ଼ନା ଘଟିଲା,
ସେଥିସକାଶୁ ବିଶ୍ୱାସୀମାନେ ଚାରିଆଡ଼େ ଛିନ୍ନଭିନ୍ନ ହୋଇଗଲେ।
ସେମାନଙ୍କ ମଧ୍ୟରୁ କେତେଜଣ ଫୈନୀକିଆ, କୁପ୍ର ଓ
ଆନ୍ତିୟଖିଆକୁ ଗଲେ। ସେଠାରେ ସେମାନେ ଯିହୂଦୀମାନଙ୍କ
ବ୍ୟତୀତ ଅନ୍ୟ କାହାରି ନିକଟରେ ସୁସମାଚାର ପ୍ରଚାର
କଲେ ନାହିଁ। ୨୦ଏହି ବିଶ୍ୱାସୀମାନଙ୍କ ମଧ୍ୟରେ କେତେଜଣ
କୁପ୍ର ଓ କୁରୀଣୀର ଲୋକ ଥିଲେ। ସେମାନେ ଆନ୍ତିୟଖିଆକୁ
ଆସି ଗ୍ରୀକ (ଅଣଯିହୂଦୀ) ମାନଙ୍କୁ ମଧ୍ୟ ଯୀଶୁ ଖ୍ରୀଷ୍ଟଙ୍କର
ସୁସମାଚାର ଦେଲେ। ୨୧ପ୍ରଭୁ ସେହି ବିଶ୍ୱାସୀମାନଙ୍କୁ ସାହାଯ୍ୟ
କରୁଥିଲେ। ତେଣୁ ଅନେକ ଲୋକ ବିଶ୍ୱାସ କଲେ ଓ
ପ୍ରଭୁଙ୍କର ଅନୁଗମନ କଲେ।
୨୨ଆନ୍ତିୟଖିଆର ଏହି ନୂଆ ବିଶ୍ୱାସୀମାନଙ୍କ ବିଷୟରେ
ଯିରୂଶାଲମର ବିଶ୍ୱାସୀ ମଣ୍ଡଳୀ ଶୁଣିବାକୁ ପାଇଲେ। ତେଣୁ
ସେମାନେ ବର୍ଣ୍ଣବ୍ବାଙ୍କୁ ଆନ୍ତିୟଖିଆକୁ ପଠାଇଦେଲେ।
୨୩ବର୍ଣ୍ଣବ୍ବା ସେଠାରେ ପହଞ୍ଚି ସେହି ଲୋକମାନଙ୍କୁ ପରମେଶ୍ୱର
ଦେଇଥିବା ଆଶୀର୍ବାଦ ଦେଖି ବହୁତ ଖୁସି ହେଲେ। ସେ
ସେମାନଙ୍କୁ ଆତୁରି ଉତ୍ସାହିତ କଲେ। ସେ ସେମାନଙ୍କୁ
କହିଲେ, "ତୁମ୍ଭର ବିଶ୍ୱାସ କଦାପି ହରାଅ ନାହିଁ,
ସର୍ବାନ୍ତଃକରଣରେ ପ୍ରଭୁଙ୍କର ବାଧ୍ୟ ହୁଅ।" ୨୪ବର୍ଣ୍ଣବ୍ବା
ଜଣେ ଉତ୍ତମ ବ୍ୟକ୍ତି ଥିଲେ। ସେ ପବିତ୍ରଆତ୍ମା ଓ
ବିଶ୍ୱାସରେ ପୂର୍ଣ୍ଣଥିଲେ। ତେଣୁ ଅନେକ ଲୋକ ତାହାଙ୍କ
ଲାଗି ପ୍ରଭୁଯୀଶୁଙ୍କର ଶିଷ୍ୟ ହେଲେ।
୨୫ବର୍ଣ୍ଣବ୍ବା ଶାଉଲଙ୍କୁ ଖୋଜିବା ପାଇଁ ତାର୍ଷ ନଗରକୁ
ଯାତ୍ରା କଲେ। ୨୬ଯେତେବେଳେ ସେ ତାହାଙ୍କୁ ପାଇଲେ,
ସେ ତାହାଙ୍କୁ ଆନ୍ତିୟଖିଆକୁ ନେଇ ଆସିଲେ। ଶାଉଲ ଓ
ବର୍ଣ୍ଣବ୍ବା ସେଠାରେ ବର୍ଷେ ପର୍ଯ୍ୟନ୍ତ ରହିଲେ ଓ ଯେତେଥର
ବିଶ୍ୱାସୀମାନଙ୍କ ଦଳ ସେମାନଙ୍କ ନିକଟକୁ ଆସିଲେ, ସେମାନେ
ସେମାନଙ୍କୁ ସାକ୍ଷାତ କଲେ ଓ ବହୁତ ଲୋକଙ୍କୁ ଉପଦେଶ
ଦେଲେ। ଆନ୍ତିୟଖିଆରେ ଯୀଶୁଙ୍କ ଅନୁଗମନକାରୀମାନେ
ପ୍ରଥମରେ ଖ୍ରୀଷ୍ଟିଆନ ନାମରେ ନାମିତ ହେଲେ।
୨୭ସେତେବେଳେ କେତେକ ଭବବାଦୀ ଯିରୂଶାଲମରୁ
ଆନ୍ତିୟଖିଆକୁ ଆସିଲେ। ୨୮ସେମାନଙ୍କ ମଧ୍ୟରେ ଆଗାବ

ନାମକ ଜଣେ ଭାବବାଦୀ ଥିଲେ। ସେ ପବିତ୍ରଆତ୍ମାରେ
ପୂର୍ଣ୍ଣହୋଇ ଭବିଷ୍ୟଦ୍‌ବାଣୀ କହିଲେ, “ଏ ସମଗ୍ର ପୃଥିବୀରେ
ମହାଦୁର୍ଭିକ୍ଷ ପଡ଼ିବ, ସେହି ସମୟରେ ଲୋକମାନେ କିଛି
ଖାଇବାକୁ ପାଇବେ ନାହିଁ।” ଏହି ଦୁର୍ଭିକ୍ଷ କ୍ଲାଉଦିଅ
କାଇସରଙ୍କ ସମୟରେ ପଡ଼ିଥିଲା। ୨୯ସେଥିପାଇଁ ବିଶ୍ୱାସୀମାନେ
ସ୍ଥିର କଲେ ଯେ, ସେମାନେ ଯଥାଶକ୍ତି ସାହାଯ୍ୟ ପଠାଇବେ।
ପ୍ରତ୍ୟେକ ବିଶ୍ୱାସୀ ନିଜର ସାଧ୍ୟମତେ ସାହାଯ୍ୟ ଦେବାପାଇଁ
ଯୋଜନା କଲେ। ୩୦ସେମାନେ ସବୁ ପଇସା ଏକାଠି କରି
ଶାଉଲ ଓ ବର୍ଣ୍ଣବ୍‌ବାଙ୍କୁ ଦେଲେ। ଶାଉଲ ଓ ବର୍ଣ୍ଣବ୍‌ବା
ତାହା ଆଣି ଯିହୂଦାର ପ୍ରାଚୀନ ବ୍ୟକ୍ତିମାନଙ୍କ ହାତରେ
ଅର୍ପଣ କଲେ।

## ବିଶ୍ୱାସୀମଣ୍ଡଳୀ ଉପରେ ହେରୋଦଙ୍କର ଅତ୍ୟାଚାର

**୧୨** ରାଜା ହେରୋଦ ସେ ସମୟରେ ମଣ୍ଡଳୀରେ
କେତେକ ଲୋକଙ୍କ ଉପରେ ଅତ୍ୟାଚାର କରିବା
ଆରମ୍ଭ କରିଦେଲେ। ୨ସେ ଯୋହନଙ୍କ ଭାଇ ଯାକୁବଙ୍କୁ
ଖଣ୍ଡାରେ ହତ୍ୟା କରିଦେଲେ। ୩ଯିହୂଦୀୟ ମାନଙ୍କୁ ଏଘଟଣାରେ
ଖୁସି ହେବାର ଦେଖି ପିତରଙ୍କୁ ମଧ୍ୟ ବନ୍ଦୀ କରିବାପାଇଁ
ଆଗେଇଲେ। (ଏହା ଯିହୂଦୀୟ ନିସ୍ତାରପର୍ବ ଦିନର ଘଟଣା)।
୪ତା’ପରେ ହେରୋଦ ପିତରଙ୍କୁ ବନ୍ଦୀ କରି କାରାଗାରରେ
ରଖିଲେ। ତାହାଙ୍କୁ ଜଗିବା ପାଇଁ ଷୋହଳ ଜଣ ପ୍ରହରୀ
ରହିଲେ। ହେରୋଦଙ୍କ ଉଦ୍ଦେଶ୍ୟ ଥିଲା ନିସ୍ତାର ପର୍ବ
ପରେ ସେ ପିତରଙ୍କୁ ଲୋକମାନଙ୍କ ସାମନାକୁ ଆଣିବେ।
୫ତେଣୁ ପିତର କାରାଗାରରେ ବନ୍ଦୀ ହୋଇ ରହିଲେ।
ତାହାଙ୍କ ପାଇଁ ମଣ୍ଡଳୀର ସମସ୍ତେ ପରମେଶ୍ୱରଙ୍କ ନିକଟରେ
ନିରବଚ୍ଛିନ୍ନ ଭାବରେ ପ୍ରାର୍ଥନା କଲେ।

## ପିତରଙ୍କୁ ଜେଲରୁ ମୁକ୍ତି।

୬ହେରୋଦ ଯେଉଁଦିନ ପିତରଙ୍କୁ ବିଚାର ପାଇଁ ବାହାରକୁ
ଆଣିବା ନିମନ୍ତେ ଯୋଜନା କରିଥିଲେ, ତା’ପୂର୍ବ ରାତିରେ
ପିତର ଦୁଇଟି ଶିକୁଳିରେ ବନ୍ଧା ହୋଇ ଦୁଇଜଣ ସୈନିକଙ୍କ
ମଝିରେ ଶୋଇଥିଲେ। ବହୁତ ଜଗୁଆଳୀମାନେ ଫାଟକ
ପାଖରେ ରହି କାରାଗାରକୁ ଜଗି ରହିଥିଲେ। ୭ହଠାତ୍
ପ୍ରଭୁଙ୍କର ଜଣେ ଦୂତ ଆସି ସେଠାରେ ଉଭା ହେଲେ।
କୋଠରୀଟି ଉଜ୍ଜ୍ୱଳ ଆଲୋକରେ ଆଲୋକିତ ହୋଇଗଲା।
ସେ ପିତରଙ୍କୁ ହଲେଇ ଦେଇ କହିଲେ, “ଶୀଘ୍ର ଉଠ।”
ସେହି ସମୟରେ ତାହାଙ୍କ ହାତରୁ ସବୁ ଶିକୁଳି ଖସିପଡିଲା
୮ସେ ସ୍ୱର୍ଗଦୂତ ପିତରଙ୍କୁ କହିଲେ, “ଲୁଗାପଟା ଓ ଜୋତା
ପିନ୍ଧ।” ସେ ପିନ୍ଧିଲେ। ସେ ପୁଣି କହିଲେ, “ତୁମ୍ଭର
ଚାଦର ଘୋଡ଼େଇ ହୁଅ, ଓ ମୋତେ ଅନୁସରଣ କର।”
୯ପିତର ତାହାଙ୍କୁ ଅନୁସରଣ କଲେ। ସ୍ୱର୍ଗଦୂତ ଯେ
ପ୍ରକୃତରେ ଏହି ଘଟଣାଟି ଘଟାଉଛନ୍ତି ଏହା ପିତର
ଅନୁଭବ କରିପାରିଲେ ନାହିଁ। ସେ ଭାବୁଥିଲେ, ଯେ ସେ
ଏକ ଦର୍ଶନ ଦେଖୁଅଛନ୍ତି। ୧୦ସେମାନେ ପ୍ରଥମ ଓ ଦ୍ୱିତୀୟ
ପ୍ରହରୀଙ୍କୁ ଟପି ଗୋଟିଏ ଲୁହା ଫାଟକ ପାଖକୁ ଆସିଲେ।
ଏହା କାରାଗାରକୁ ନଗରରୁ ବିଚ୍ଛିନ୍ନ କରୁଥିଲା। ଏହା
ଆପେଆପେ ଖୋଲିଗଲା, ଓ ସେମାନେ ବାହାରକୁ ଚାଲିଗଲେ।
ସେମାନେ ଗୋଟିଏ ଗଳିର ଶେଷ ଆଡକୁ ଗଲାପରେ
ହଠାତ୍ ସ୍ୱର୍ଗଦୂତଜଣକ ପିତରଙ୍କୁ ଛାଡି ଚାଲିଗଲେ।
୧୧ତା’ପରେ ପିତର ଜାଣିପାରିଲେ ତାହାଙ୍କୁ ଯାହା ସବୁ
ହେଲା ଏବଂ କହିଲେ, “ମୁଁ ବର୍ତ୍ତମାନ ଜାଣିଲି, ଏହା
ପ୍ରକୃତରେ ସତ୍ୟ ଅଟେ। ପ୍ରଭୁ ପ୍ରକୃତରେ ତାହାଙ୍କ
ସ୍ୱର୍ଗଦୂତଙ୍କୁ ପଠାଇ ହେରୋଦଙ୍କ କବଳରୁ ମୋତେ ଉଦ୍ଧାର
କଲେ, ଓ ଯିହୂଦୀୟମାନଙ୍କ ସମସ୍ତ ମନ୍ଦ ଆଶାକୁ ବ୍ୟର୍ଥ
କଲେ।”
୧୨ଏହା ଅନୁଭବ କଲାପରେ, ସେ ଯୋହନଙ୍କ ମାତା
ମରିୟମଙ୍କ ଘରକୁ ଗଲେ। ଯୋହନଙ୍କୁ ମାର୍କ ମଧ୍ୟ କୁହା
ଯାଉଥିଲା। ସେଠାରେ ଅନେକ ଲୋକ ଏକାଠି ହୋଇ
ପ୍ରାର୍ଥନା କରୁଥିଲେ। ୧୩ପିତର କବାଟରେ ଠକ୍‌ଠକ୍ କରନ୍ତେ
ରୋଦା ନାମକ ଜଣେ ଚାକରାଣୀ କବାଟ ଖୋଲିବାକୁ
ଆସିଲା। ୧୪ସେ ପିତରଙ୍କର ସ୍ୱର ଜାଣିପାରି ଏତେ ଖୁସୀ
ହୋଇଗଲା ଯେ, ସେ କବାଟ ନଖୋଲି ଭିତରକୁ ଦୌଡ଼ିଗଲା।
ଭିତରକୁ ଦୌଡ଼ିଯାଇ ସେ ସମସ୍ତଙ୍କୁ କହିଲା, “ପିତର
କବାଟ ପାଖରେ ଠିଆ ହୋଇଛନ୍ତି!” ୧୫ବିଶ୍ୱାସୀମାନେ
ରୋଦାର କଥା ଶୁଣି ତାହାକୁ କହିଲେ “ତୁ ପାଗଳୀ”,
କିନ୍ତୁ ସେ ତା କଥା ସତ୍ୟ ବୋଲି ଦୃଢ଼ଭାବେ କହିବାକୁ
ଲାଗିଲା। ସେମାନେ କହିଲେ, “ସେ ନିଶ୍ଚୟ ପିତରଙ୍କର
ଦୂତ।”
୧୬କିନ୍ତୁ ପିତର କବାଟରେ ଠକ୍ ଠକ୍ କରି ଚାଲିଥିଲେ।
ବିଶ୍ୱାସୀମାନେ ଯେତେବେଳେ କବାଟ ଖୋଲିଲେ ସେତେବେଳେ
ପିତରଙ୍କୁ ଦେଖି ବିସ୍ମିତ ହୋଇଗଲେ। ୧୭ପିତର ସେମାନଙ୍କୁ
ହାତରେ ଠାରି ଚୁପ୍ ରହିବାକୁ କହିଲେ। ପ୍ରଭୁ କିପରି
ତାହାଙ୍କୁ କାରାଗାରରୁ ବାହାରକରି ଆଣିଲେ, ସେ ସବୁ
କଥା ପିତର ସେମାନଙ୍କୁ ବୁଝାଇ କହିଲେ। ସେ ଏବିଷୟରେ
ଯାକୁବ ଓ ଅନ୍ୟଭାଇମାନଙ୍କୁ ଜଣେଇବା ପାଇଁ କହିଲେ।
ତା’ପରେ ସେ ଅନ୍ୟ ସ୍ଥାନକୁ ଚାଲିଗଲେ।
୧୮ତହିଁଆରଦିନ ସକାଳ ହେବାରୁ ସୈନ୍ୟମାନେ ଅତି
ବିବ୍ରତ ହୋଇଗଲେ। ପିତରଙ୍କ ପ୍ରତି କ’ଣ ଘଟିଥିବ, ଏହା
ଭାବି ସେମାନେ ଚିନ୍ତିତ ହୋଇପଡ଼ିଲେ। ୧୯ହେରୋଦ
ତାହାଙ୍କୁ ଖୋଜିଲେ, କିନ୍ତୁ ପାଇଲେ ନାହିଁ। ତା’ପରେ ସେ
ଜଗୁଆଳୀମାନଙ୍କୁ ପଚରାଉଚରା କରିସାରି, ସେମାନଙ୍କୁ
ମୃତ୍ୟୁଦଣ୍ଡରେ ଦଣ୍ଡିତ ଦେଲେ।

## ହେରୋଦ ଅଗ୍ରିପ୍ପାଙ୍କ ମୃତ୍ୟୁ

ତା’ପରେ ହେରୋଦ ଯିହୂଦା ପ୍ରଦେଶରୁ ଯାଇ
କାଇସରୀଆଠାରେ ରହିଲେ। ୨୦ହେରୋଦ ସୋର ଓ
ସୀଦୋନର ଲୋକମାନଙ୍କ ଉପରେ ଭୀଷଣ ରାଗିଥିଲେ।
ସେମାନେ ଦଳଦଳ ହୋଇ ତାହାଙ୍କୁ ଦେଖିବାକୁ ଆସିଲେ।
ସେମାନେ ରାଜାଙ୍କର ବ୍ୟକ୍ତିଗତ ଚାକର ବ୍ଲାସ୍ତଙ୍କ ସାହାଯ୍ୟ
ନେଲେ। ସେମାନେ ହେରୋଦଙ୍କ ସହିତ ଶାନ୍ତିସନ୍ଧି ରଖିଲେ,
କାରଣ ରାଜାଙ୍କ ଦେଶରୁ ସେମାନଙ୍କ ଦେଶକୁ ଖାଦ୍ୟ
ଆସୁଥିଲା।
୨୧ହେରୋଦ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ସେମାନଙ୍କୁ ଦେଖା
କରିବାପାଇଁ ସ୍ଥିର କଲେ। ସେଦିନ ସେ ରାଜକୀୟ ବସ୍ତ୍ର

ପିନ୍ଧି ସିଂହାସନରେ ବସି ଲୋକମାନଙ୍କୁ ଭାଷଣ ଦେଲେ।
୨୨ଲୋକମାନେ ପାଟିକରି କହିଲେ, "ଏହା ଦେବତାର
ସ୍ୱର, ମନୁଷ୍ୟର ନୁହେଁ।" ୨୩ହେରୋଦ ନିଜର ଏହି
ପ୍ରଶଂସା ଶୁଣିଲେ, କିନ୍ତୁ ସେ ପରମେଶ୍ୱରଙ୍କୁ ତାହାଙ୍କର
ସମ୍ମାନ ଜଣାଇଲେ ନାହିଁ। ତେଣୁ ପ୍ରଭୁଙ୍କର ଜଣେ ଦୂତ
ହଠାତ୍ ତାହାଙ୍କୁ ଅସୁସ୍ଥ କରିଦେଲେ। ତାହାଙ୍କ ଶରୀର
ମଧ୍ୟରେ ଥିବା କୀଟମାନେ ତାହାଙ୍କୁ ଖାଇ ଦେଲେ ଓ ସେ
ମରିଗଲେ।
୨୪କିନ୍ତୁ ପରମେଶ୍ୱରଙ୍କର ସୁସମାଚାର ଚାରିଆଡେ
ବ୍ୟାପିଗଲା। ଅଧିକରୁ ଅଧିକ ଲୋକମାନେ ଏହି ସୁସମାଚାର
ଦ୍ୱାରା ପ୍ରଭାବିତ ହେଲେ। ବିଶ୍ୱାସୀମାନଙ୍କ ସଂଖ୍ୟା ବୃଦ୍ଧି
ପାଇବାକୁ ଲାଗିଲା।
୨୫ବର୍ଣ୍ଣବ୍ବା ଓ ଶାଉଲ ଯିରୂଶାଲମରେ କାମ ସାରି
ଆନ୍ତିୟଖିଆକୁ ଫେରିଗଲେ। ସେମାନଙ୍କ ସହିତ ମାର୍କ
ନାମରେ ପରିଚିତ ଯୋହନ ଥିଲେ।

### ବର୍ଣ୍ଣବ୍ବା ଓ ଶାଉଲଙ୍କୁ ଏକ ବିଶେଷ କର୍ମ ଦିଆଗଲା

୧୩ ଆନ୍ତିୟଖିଆ ମଣ୍ଡଳୀରେ କେତେକ ଭବିଷ୍ୟଦ୍‌ବକ୍ତା
ଓ ଶିକ୍ଷକ ଥିଲେ। ସେମାନେ ହେଲେ; ବର୍ଣ୍ଣବ୍ବା,
ଶିମିୟୋନ (ଏହାଙ୍କୁ ନିଗର ବୋଲି କୁହାଯାଉଥିଲା) କୁରୀଣୀୟ
ଲୁକିୟ, ମନହେମ୍ (ଯିଏ ହେରୋଦ ରାଜାଙ୍କ ସହିତ
ବଢ଼ିଥିଲେ) ଓ ଶାଉଲ। ୨ସେମାନେ ପ୍ରଭୁଙ୍କର ସେବା ଓ
ଉପବାସ କରୁଥିବା ସମୟରେ ପବିତ୍ରଆତ୍ମା ସେମାନଙ୍କୁ
କହିଲେ, "ତୁମ୍ଭେମାନେ ମୋ ପାଇଁ ବର୍ଣ୍ଣବ୍ବା ଓ ଶାଉଲଙ୍କୁ
ସ୍ୱତନ୍ତ୍ର ଭାବେ ଛାଡି ଦିଅ। ମୁଁ ସେମାନଙ୍କୁ ଗୋଟିଏ
ବିଶେଷ କାମ କରିବାପାଇଁ ଡାକିଛି।"
୩ତେଣୁ ସେମାନେ ଉପବାସ ଓ ପ୍ରାର୍ଥନା କରିବାପରେ
ବର୍ଣ୍ଣବ୍ବା ଓ ଶାଉଲଙ୍କ ଉପରେ ହସ୍ତାର୍ପଣ* କରି ବିଦାୟ
କଲେ।

### ବର୍ଣ୍ଣବ୍ବା ଓ ଶାଉଲଙ୍କର କୁପ୍ର ଉପଦ୍ୱୀପକୁ ଯାତ୍ରା

୪ବର୍ଣ୍ଣବ୍ବା ଓ ଶାଉଲ ପବିତ୍ର ଆତ୍ମାଙ୍କ ଦ୍ୱାରା ପ୍ରେରିତ
ହୋଇ ସେଲୂକିଆ ନଗରକୁ ଗଲେ। ସେଠାରୁ ସେମାନେ
କୁପ୍ର ଉପଦ୍ୱୀପକୁ ଯାତ୍ରା କଲେ। ୫ସେମାନେ ସାଲାମି
ନଗରରେ ପହଞ୍ଚି ଯିହୂଦୀମାନଙ୍କର ପ୍ରାର୍ଥନାଗୃହ ଗୁଡ଼ିକରେ
ପରମେଶ୍ୱରଙ୍କର ବାକ୍ୟ ପ୍ରଚାର କଲେ। ଯୋହନ ମାର୍କ
ମଧ୍ୟ ସେମାନଙ୍କୁ ସାହାଯ୍ୟ କରୁଥିଲେ।
୬ସେମାନେ ଉପଦ୍ୱୀପରେ ସର୍ବତ୍ର ବୁଲିବୁଲି ପାଫ ନଗରରେ
ପହଞ୍ଚିଲେ। ସେଠାରେ ସେମାନେ ବର୍ଯୀଶୁ ନାମକ ଜଣେ
ଯିହୂଦୀ ଭଣ୍ଡଭବିଷ୍ୟଦ୍‌ବକ୍ତାକୁ ଦେଖିଲେ। ସେ ଲୋକମାନଙ୍କ
ନିକଟରେ ଯାଦୁକର୍ମ ଦ୍ୱାରା ନାନା କାର୍ଯ୍ୟ ଦେଖାଉଥିଲା।
୭ସେହି ବର୍ଯୀଶୁ ରାଜ୍ୟପାଳ ସେର୍ଗୀୟ ପାଉଲଙ୍କର ମିତ୍ର
ଥିଲେ। ସେର୍ଗୀୟ ପାଉଲ ଜଣେ ବିବେକୀ, ଓ ଜ୍ଞାନୀ
ଲୋକ ଥିଲେ, ପରମେଶ୍ୱରଙ୍କର ବାକ୍ୟ ଶୁଣିବାକୁ ଚାହୁଁଥିଲେ।
ତେଣୁ ସେ ବର୍ଣ୍ଣବ୍ବା ଓ ଶାଉଲଙ୍କୁ ଡ଼କାଇ ପଠାଇଲେ।
୮ମାତ୍ର ଅଲ୍ଲୀମା (ଏହା ବର୍ଯୀଶୁର ଗ୍ରୀକ୍ ନାମ) ବର୍ଣ୍ଣବ୍ବା ଓ
ଶାଉଲଙ୍କୁ ବାଧା ଦେଲା। ଅଲ୍ଲୀମା ରାଜ୍ୟପାଳଙ୍କୁ ଯୀଶୁଙ୍କ
ବିଶ୍ୱାସ ପଥରୁ ଦୂରେଇ ଦେବାପାଇଁ ଚେଷ୍ଟା କଲା। ୯ତେଣୁ
ପାଉଲ ନାମରେ ମଧ୍ୟ ପରିଚିତ ଶାଉଲ ପବିତ୍ର ଆତ୍ମାରେ
ପୂର୍ଣ୍ଣ ହୋଇ ଅଲ୍ଲୀମା ଯାଦୁକରକୁ କଠୋର ଦୃଷ୍ଟିରେ ଚାହିଁ
ତାହାକୁ କହିଲେ, "ଆରେ ଶୟତାନର ପୁତ୍ର! ତୁମ୍ଭେ ସମସ୍ତ
ପ୍ରକାର ସଠିକ୍ କାର୍ଯ୍ୟର ଶତ୍ରୁ! ତୁମ୍ଭେ ସବୁପ୍ରକାର ମନ୍ଦ
କାର୍ଯ୍ୟ ଓ ମିଥ୍ୟାରେ ପରିପୂର୍ଣ୍ଣ ଅଟ। ତୁମ୍ଭେ ସର୍ବଦା
ପ୍ରଭୁଙ୍କ ସତ୍ୟକୁ ମିଥ୍ୟାରେ ପରିଣତ କରିବାକୁ ଚେଷ୍ଟା
କରିଥାଅ। ୧୧ଏବେ ଦେଖ, ତୁମ୍ଭ ଉପରେ ପ୍ରଭୁଙ୍କର ହାତ
ଅଛି। ତୁମ୍ଭେ ଅନ୍ଧ ହୋଇଯିବ ଓ କିଛି ସମୟ ପାଇଁ
ସୂର୍ଯ୍ୟ ଆଲୁଅ ମଧ୍ୟ ଦେଖି ପାରିବ ନାହିଁ।"
ପ୍ରକୃତରେ ଅଲ୍ଲୀମାଙ୍କୁ ହଠାତ୍ ସବୁ ଅନ୍ଧାର ଦେଖାଗଲା,
ଓ ସେ ଏଣେତେଣେ ଅଣ୍ଡାଳିହେବାକୁ ଲାଗିଲେ। ସେ
ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଗୋଟିଏ ଲୋକ ଖୋଜିଲେ,
ଯିଏ କି ତାହାଙ୍କ ହାତ ଧରି ବାଟ ଦେଖାଇ ପାରିବ।
୧୨ଯେତେବେଳେ ରାଜ୍ୟପାଳ ସେର୍ଗୀୟ ପାଉଲ ଏହା ଦେଖିଲେ,
ସେ ପ୍ରଭୁଙ୍କଠାରେ ବିଶ୍ୱାସ କଲେ। ସେ ପ୍ରଭୁଙ୍କର ଉପଦେଶ
ଶୁଣି ବିସ୍ମିତ ହେଲେ।

### ପାଉଲ ଓ ବର୍ଣ୍ଣବ୍ବାଙ୍କର କୁପ୍ରରୁ ପ୍ରସ୍ଥାନ

୧୩ପାଉଲ ଓ ତାହାଙ୍କର ବନ୍ଧୁମାନେ ପାଫ ନଗର ଛାଡି
ସମୁଦ୍ର ପଥରେ ପଂଫୂଲିଆର ପର୍ଗୀକୁ ଆସିଲେ। କିନ୍ତୁ
ଯୋହନ ମାର୍କ ସେମାନଙ୍କୁ ଛାଡ଼ି ଯିରୂଶାଲମକୁ ଫେରିଆସିଲେ।
୧୪ସେମାନେ ପର୍ଗୀରୁ ଯାତ୍ରା କରି ପିସିଦିଆର ଆନ୍ତିୟଖିଆ
ନଗରରେ ଆସି ପହଞ୍ଚିଲେ। ଆନ୍ତିୟଖିଆରେ ବିଶ୍ରାମ
ଦିନରେ ସେମାନେ ଯିହୂଦୀମାନଙ୍କର ପ୍ରାର୍ଥନାଗୃହରେ ଯାଇ
ବସିଲେ। ୧୫ସେଠାରେ ମୋଶାଙ୍କ ପ୍ରଦତ୍ତ ବ୍ୟବସ୍ଥା ଓ
ଭବିଷ୍ୟଦ୍‌ବକ୍ତାମାନଙ୍କର ଲେଖାଗୁଡିକ ପଢ଼ାଯିବା ପରେ
ନେତାମାନେ ପାଉଲ ଓ ବର୍ଣ୍ଣବ୍ବାଙ୍କୁ ନିକଟକୁ ଏହା କହି
ପଠାଇଲେ, "ଭାଇମାନେ, ଲୋକମାନଙ୍କ ପାଇଁ ଯଦି
ତୁମ୍ଭମାନଙ୍କର କିଛି ନିଷ୍ଠାର ଉପଦେଶ ଥାଏ, ତେବେ
କୁହ।"
୧୬ତେଣୁ ପାଉଲ ଠିଆ ହୋଇ ହାତରେ ସଙ୍କେତ
ଦେଲେ ଏବଂ କହିଲେ, "ହେ ଇସ୍ରାୟେଲୀୟ ଲୋକମାନେ
ଓ ପ୍ରକୃତ ପରମେଶ୍ୱରଙ୍କୁ ଉପାସନା କରୁଥିବା
ଅନ୍ୟଜାତୀୟମାନେ, ଅନୁଗ୍ରହ କରି ମୋ କଥା ଶୁଣ।
୧୭ଇସ୍ରାୟେଲର ପରମେଶ୍ୱର ଆମ୍ଭ ପୂର୍ବପୁରୁଷମାନଙ୍କୁ
ବାଛିନେଲେ। ମିସରରେ ବିଦେଶୀ ଭାବେ ସେମାନେ ରହୁଥିବା
ବେଳେ ପରମେଶ୍ୱର ଆମ୍ଭ ଲୋକମାନଙ୍କୁ ସଫଳତା ଦେଲେ।
ସେ ତାହାଙ୍କ ମହାନ୍ ଶକ୍ତି ବଳରେ ସେଠାରୁ ସେମାନଙ୍କୁ
ବାହାର ମଧ୍ୟ କରି ଆଣିଲେ। ୧୮ପରମେଶ୍ୱର ଚାଳିଶ ବର୍ଷ
ପର୍ଯ୍ୟନ୍ତ ମରୁଭୂମିରେ ସେମାନଙ୍କର ଆଚରଣ ସହିଲେ।
୧୯ପରମେଶ୍ୱର କିଣାନ ଦେଶର ସାତଗୋଟି ଜାତିକୁ ନଷ୍ଟ
କରି ସେହି ଗୁଡ଼ିକ ଇସ୍ରାୟେଲୀୟମାନଙ୍କୁ ଦେଲେ। ୨୦ଏହି

---

**ହସ୍ତାର୍ପଣ** ଏହା ଏକ ଚିହ୍ନ ସ୍ୱରୂପ ଯେ ଏହି ବ୍ୟକ୍ତିମାନେ ପରମେଶ୍ୱରଙ୍କ ବିଶେଷ କାମପାଇଁ ମନୋନୀତ ହେଲେ।

ସବୁ ଦେଶ ଉତ୍ତରାଧିକାରୀ ଭାବରେ ଦେଲେ ଓ ଏହା
୪୫୦ ବର୍ଷ ପର୍ଯ୍ୟନ୍ତ ସେମାନେ ଅଧିକାର କଲେ।
"ତା'ପରେ ସେ ସେମାନଙ୍କୁ ଭବିଷ୍ୟଦ୍‌ବକ୍ତା ଶାମୁୟେଲଙ୍କ
ସମୟ ପର୍ଯ୍ୟନ୍ତ ବିଚାର କର୍ତ୍ତାମାନଙ୍କୁ ଦେଲେ। ୨୧ଏହାପରେ
ସେମାନେ ଜଣେ ରାଜା ଚାହିଁଲେ। ପରମେଶ୍ୱର ସେମାନଙ୍କୁ
ବିନ୍ୟାମୀନ ଗୋଷ୍ଠୀ କୀଶର ପୁତ୍ର ଶାଉଲଙ୍କୁ ରାଜାରୂପେ
ଦେଲେ। ସେ ଚାଳିଶି ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ।
୨୨ଶାଉଲଙ୍କୁ ବାହାର କରିଦେଲାପରେ ପରମେଶ୍ୱର ଦାଉଦଙ୍କୁ
ସେମାନଙ୍କ ରାଜା ଭାବରେ ମନୋନୀତ କଲେ। ପରମେଶ୍ୱର
ଦାଉଦଙ୍କ ବିଷୟରେ ସାକ୍ଷ୍ୟ ଦେଇ କହିଲେ, 'ମୁଁ ମୋର
ମନର ମତ ଅନୁସାରେ ଯିଶୀୟର ପୁତ୍ର ଦାଉଦଙ୍କୁ ପାଇଅଛି।
ସେ ମୋ ଇଚ୍ଛା ଅନୁସାରେ ସବୁ ବିଷୟ କରିବେ।'
୨୩ପରମେଶ୍ୱର ତାହାଙ୍କର ପ୍ରତିଜ୍ଞା ଅନୁଯାୟୀ ଏହି ଦାଉଦଙ୍କ
ବଂଶର ଜଣଙ୍କୁ ଇସ୍ରାୟେଲର ଉଦ୍ଧାରକର୍ତ୍ତା ଭାବରେ ଆଣିଅଛନ୍ତି,
ସେ ହେଉଛନ୍ତି ଖ୍ରୀଷ୍ଟ ଯୀଶୁ। ୨୪ତାହାଙ୍କ ଆସିବା ପୂର୍ବରୁ
ଯୋହନ ଇସ୍ରାୟେଲର ସମସ୍ତ ଲୋକମାନଙ୍କୁ ପ୍ରଚାର କରି
କହିଥିଲେ ଯେ, ସେମାନଙ୍କ ଜୀବନରେ ପରିବର୍ତ୍ତନ ହୋଇ
ଥିବାର ଚିହ୍ନ ସ୍ୱରୂପ ସେମାନେ ବାପ୍ତିସ୍ମ ନେବା ଆବଶ୍ୟକ।
୨୫ଯୋହନ ତାହାଙ୍କ କାର୍ଯ୍ୟ ପୂର୍ଣ୍ଣ କରି କହିଲେ, 'ମୋତେ
ତୁମ୍ଭେମାନେ କିଏ ବୋଲି ଭାବୁଛ? ମୁଁ ଖ୍ରୀଷ୍ଟ ନୁହେଁ। ଯେ
ମୋ ପରେ ଆସୁଛନ୍ତି, ତାହାଙ୍କର ଜୋତା ଫିତା ଫିଟାଇବା
ପାଇଁ ମଧ୍ୟ ମୁଁ ଯୋଗ୍ୟ ନୁହେଁ।'
୨୬"ହେ ଭାଇମାନେ, ଅବ୍ରାହାମଙ୍କ ପୁତ୍ରମାନେ ଓ ପ୍ରକୃତ
ପରମେଶ୍ୱରଙ୍କୁ ଉପାସନା କରୁଥିବା ଅନ୍ୟଜାତୀୟମାନେ,
ଆମ୍ଭମାନଙ୍କ ପାଇଁ ଏହି ପରିତ୍ରାଣର ସୁସମାଚାର
ପଠାଯାଇଛି। ୨୭ଯିରୂଶାଲମ ବାସିନ୍ଦାମାନେ ଓ
ଯିହୂଦୀନେତାମାନେ ଯୀଶୁଙ୍କୁ ଚିହ୍ନି ପାରିଲେ ନାହିଁ। ସେମାନେ
ତାହାଙ୍କୁ ଦଣ୍ଡ ଦେଲେ। ଏହି ପ୍ରକାରେ ସେମାନେ
ଭବିଷ୍ୟଦ୍‌ବକ୍ତାମାନଙ୍କ ବାକ୍ୟ ସଫଳ କଲେ।
ଭବିଷ୍ୟଦ୍‌ବକ୍ତାମାନଙ୍କର ଏହି ବାକ୍ୟ ସବୁ ପ୍ରତି ବିଶ୍ରାମ
ଦିବସରେ ପଢାଯାଏ। ୨୮ସେମାନେ ତାହାଙ୍କର ମୃତ୍ୟୁ ଦଣ୍ଡ
ଦେବାର କିଛି କାରଣ ନ ପାଇ ତାହାଙ୍କୁ ମାରିଦେବାପାଇଁ
ପୀଲାତଙ୍କୁ କହିଲେ। ୨୯ତାହାଙ୍କ ବିଷୟରେ ସବୁ ଲେଖା
ହୋଇଥିବା ଘଟଣାମାନ ପୂର୍ଣ୍ଣ ହେଲା ପରେ ସେମାନେ
ତାହାଙ୍କୁ କ୍ରୁଶରୁ ତଳକୁ ଓହ୍ଲାଇ ଆଣି କବର ମଧ୍ୟରେ
ରଖିଦେଲେ। ୩୦କିନ୍ତୁ ପରମେଶ୍ୱର ତାହାଙ୍କୁ ମୃତ୍ୟୁରୁ ପୁନରୁତ୍ଥିତ
କଲେ। ୩୧ସେ ତାହାଙ୍କ ସହିତ ଗାଲିଲୀରୁ ଯିରୂଶାଲମକୁ
ଆସିଥିବା ଲୋକମାନଙ୍କୁ ବହୁତ ଦିନ ପର୍ଯ୍ୟନ୍ତ ଦର୍ଶନ
ଦେଲେ। ସେମାନେ ଲୋକମାନଙ୍କ ଆଗରେ ଏବେ ତାହାଙ୍କର
ସାକ୍ଷୀ ଅଟନ୍ତି। ୩୨ଆମ୍ଭ ପୂର୍ବ ପୁରୁଷମାନଙ୍କ ପ୍ରତିଜ୍ଞା
କରାଯାଇଥିବା ଅନୁସାରେ ଆମ୍ଭେ ତୁମ୍ଭମାନଙ୍କୁ ସୁସମାଚାର
ଶୁଣାଉଛୁ। ୩୩ପରମେଶ୍ୱର ସେହି ପ୍ରତିଜ୍ଞାକୁ ଆମ୍ଭପରି
ତାହାଙ୍କର ସନ୍ତାନମାନଙ୍କ ନିମନ୍ତେ ପୂର୍ଣ୍ଣ କରିଛନ୍ତି। ଏହିପରି
ଏହା ଗୀତସଂହିତାରେ ଲେଖାଅଛି:

'ତୁମ୍ଭେ ମୋ ପୁତ୍ର, ଆଜି ମୁଁ ତୁମ୍ଭର ପିତା ହେଲି।'
ଗୀତସଂହିତା ୨:୭

୩୪ପରମେଶ୍ୱର ଯୀଶୁଙ୍କୁ ମୃତ୍ୟୁରୁ ପୁନରୁତ୍ଥିତ କଲେ, ଯେପରି
ତାହାଙ୍କର ଶରୀର ପୁଣିଥରେ କବରପ୍ରାପ୍ତ ହୋଇ କ୍ଷୟ ନ
ହୁଏ। ଏ ବିଷୟରେ ସେ କହିଲେ,

'ମୁଁ ଦାଉଦଙ୍କ ନିକଟରେ ପ୍ରତିଜ୍ଞା କରିଥିବା ପବିତ୍ର
ଓ ପ୍ରକୃତ ଆଶୀର୍ବାଦ ତୁମ୍ଭମାନଙ୍କୁ ଦେବି।'
ଯିଶାଇୟ ୫୫:୩

୩୫ପବିତ୍ର ବାକ୍ୟର ଅନ୍ୟ ସ୍ଥାନରେ ମଧ୍ୟ ଲେଖାଅଛି,

'ତୁମ୍ଭେ ନିଜର ପବିତ୍ର ବ୍ୟକ୍ତିଙ୍କୁ କବରରେ କ୍ଷୟ
ହେବାକୁ ଦେବନାହିଁ।' ଗୀତସଂହିତା ୧୬:୧୦

୩୬ଦାଉଦ ତାହାଙ୍କ ଯୁଗରେ ପରମେଶ୍ୱରଙ୍କର ଇଚ୍ଛା ଅନୁସାରେ
ସେବାକାର୍ଯ୍ୟ କରି ସାରିଲାପରେ ଦେହତ୍ୟାଗ କରିଥିଲେ।
ଦାଉଦଙ୍କୁ ତାହାଙ୍କ ପୂର୍ବପୁରୁଷମାନଙ୍କ ସହିତ ସମାଧି ଦିଆଗଲା,
ଓ ସେ କ୍ଷୟ ପ୍ରାପ୍ତ ହେଲେ। ୩୭କିନ୍ତୁ ପରମେଶ୍ୱର ଯାହାଙ୍କୁ
ମୃତ୍ୟୁରୁ ଉଠେଇଲେ ସେ କ୍ଷୟପ୍ରାପ୍ତ ହୋଇ ନଥିଲେ। ୩୮-
୩୯ତେଣୁ ଭାଇମାନେ, ତୁମ୍ଭମାନଙ୍କର ଜାଣିବା ଉଚିତ ଯେ,
କେବଳ ଏହି ଜଣଙ୍କ ଦ୍ୱାରା ହିଁ ତୁମ୍ଭମାନଙ୍କର ସମସ୍ତ ପାପ
କ୍ଷମା ହୋଇପାରେ। ମୋଶାଙ୍କ ବ୍ୟବସ୍ଥା ଦ୍ୱାରା ତୁମ୍ଭେମାନେ
ଯେଉଁ ମୁକ୍ତି ପାଇ ପାରିବ ନାହିଁ; ତାହାଙ୍କଠାରେ ବିଶ୍ୱାସ
କରି ତୁମ୍ଭେମାନେ ସେହିସବୁ ପାପରୁ ମୁକ୍ତି ପାଇ ପାରିବ।
୪୦ତେଣୁ ସାବଧାନ ରୁହ ଯେ, ଭବିଷ୍ୟଦ୍‌ବକ୍ତାମାନେ ଯାହା
କହିଥିଲେ, ତାହା ଯେପରି ତୁମ୍ଭମାନଙ୍କ ପ୍ରତି ନ ଘଟେ।
୪୧ଭବିଷ୍ୟଦ୍‌ବକ୍ତାମାନେ କହିଲେ,

'ଦେଖ, ଅବଜ୍ଞାକାରୀ ଲୋକମାନେ, ତୁମ୍ଭେମାନେ
ଆଶ୍ଚର୍ଯ୍ୟ ହୋଇ ପାର ଓ ତାପରେ ମରିବାକୁ
ଯାଇଥାଅ; କାରଣ ମୁଁ ତୁମ୍ଭମାନଙ୍କ ସମୟରେ,
ଏପରି ଗୋଟିଏ କାର୍ଯ୍ୟ କରିବି ଯାହା ତୁମ୍ଭମାନଙ୍କୁ
କେହି କହିଲେ ସୁଦ୍ଧା ତୁମ୍ଭେମାନେ ବିଶ୍ୱାସ କରିବ
ନାହିଁ।'" ହବକ୍‌କୂକ୍ ୧:୫

୪୨ପାଉଲ ଓ ବର୍ଣ୍ଣବ୍ବା ସେଠାରୁ ଗଲାବେଳେ ଲୋକମାନେ
ସେମାନଙ୍କୁ ଆଗାମୀ ବିଶ୍ରାମ ଦିବସରେ ଏହି ସବୁକଥା
ଆହୁରି କହିବାପାଇଁ ଅନୁରୋଧ କଲେ। ୪୩ସଭା ସମାପ୍ତ
ହେବାପରେ ଅନେକ ଯିହୂଦୀୟ ଲୋକ ଓ ଯିହୂଦୀ ଧର୍ମ
ଗ୍ରହଣ କରିଥିବା ଅନ୍ୟଜାତୀୟମାନେ ପାଉଲ ଓ ବର୍ଣ୍ଣବ୍ବାଙ୍କୁ
ଅନୁସରଣ କଲେ। ସେମାନେ ସେମାନଙ୍କ ସହିତ କଥାବାର୍ତ୍ତା
ହୋଇ ସେମାନଙ୍କୁ ପରମେଶ୍ୱରଙ୍କ ଅନୁଗ୍ରହରେ ସ୍ଥିରହୋଇ
ରହିବାପାଇଁ କହିଲେ।
୪୪ପରବର୍ତ୍ତୀ ବିଶ୍ରାମବାରରେ ସହରର ପ୍ରାୟସବୁ ଲୋକ
ପ୍ରଭୁଙ୍କ ବାକ୍ୟ ଶୁଣିବା ପାଇଁ ଏକାଠି ହେଲେ। ୪୫ଯିହୂଦୀୟମାନେ
ଲୋକମାନଙ୍କର ଭିଡ଼ ଦେଖି ଈର୍ଷା କଲେ। ସେମାନେ
ପାଉଲଙ୍କ କଥାକୁ ବିରୋଧ କରି ଅପମାନଜନକ ଶବ୍ଦ
ସବୁ ପ୍ରୟୋଗ କଲେ। ୪୬କିନ୍ତୁ ପାଉଲ ଓ ବର୍ଣ୍ଣବ୍ବା

ସାହସର ସହିତ କହିଲେ, "ପରମେଶ୍ୱରଙ୍କର ସୁସମାଚାର
ତୁମ୍ଭମାନଙ୍କ ନିକଟରେ ପ୍ରଥମେ କୁହାଯିବା ଆବଶ୍ୟକ ଥିଲା।
କିନ୍ତୁ ତୁମ୍ଭେମାନେ ତାହା ଅସ୍ୱୀକାର କରିବାରୁ ତୁମ୍ଭେମାନେ
ଅନନ୍ତ ଜୀବନ ପାଇଁ ନିଜକୁ ଯୋଗ୍ୟ ଭାବି ନ ଥିବାରୁ
ଆମ୍ଭେମାନେ ଅନ୍ୟଜାତୀୟମାନଙ୍କ ପାଖକୁ ଯିବା। ୪୭ପ୍ରଭୁ
ଆମ୍ଭକୁ ଏହି ଆଦେଶ ଦେଇଛନ୍ତି:

> 'ମୁଁ ତୁମ୍ଭକୁ ଅନ୍ୟ ଜାତୀୟମାନଙ୍କ ପାଇଁ ଗୋଟିଏ ଆଲୋକ ସଦୃଶ କରିଅଛି। ଏହା ଦ୍ୱାରା ପୃଥିବୀର ଶେଷ ଭାଗ ପର୍ଯ୍ୟନ୍ତ ତୁମ୍ଭେମାନେ ପରିତ୍ରାଣ ଆଣି ପାରିବ।'"
> ଯିଶାଇୟ ୪୯:୬

୪୮ଅନ୍ୟ ଜାତୀୟ ଲୋକମାନେ ଏହା ଶୁଣି ଖୁସି
ହେଲେ ଓ ପ୍ରଭୁଙ୍କର ସୁସମାଚାରର ପ୍ରଶଂସା କଲେ, ଓ
ଯେଉଁମାନେ ଅନନ୍ତ ଜୀବନ ନିମନ୍ତେ ମନୋନୀତ
ହୋଇଥିଲେ, ସେହି ଲୋକମାନେ ପ୍ରଭୁଙ୍କଠାରେ ବିଶ୍ୱାସ
କଲେ।
୪୯ଏହିପରି ପ୍ରଭୁଙ୍କର ବାର୍ତ୍ତା ଦେଶର ଚାରିଆଡେ ବ୍ୟାପିଗଲା।
୫୦ଯିହୂଦୀୟମାନେ ଯିହୂଦୀଧର୍ମର ଉଚ୍ଚବଂଶୀୟ ସ୍ତ୍ରୀ ଲୋକଙ୍କୁ
ଓ ନଗରର ମୁଖ୍ୟ ବ୍ୟକ୍ତିମାନଙ୍କୁ ଉତ୍ତେଜିତ କରାଇଲେ।
ସେମାନେ ପାଉଲ ଓ ବର୍ଣ୍ଣବ୍ବା ବିରୁଦ୍ଧରେ ଅନ୍ୟମାନଙ୍କୁ
ପ୍ରବର୍ତ୍ତାଇଲେ। ସେମାନେ ସେମାନଙ୍କୁ ତାଡ଼ନା କରିବା
ଆରମ୍ଭ କଲେ ଓ ସେମାନଙ୍କୁ ସେହି ଅଞ୍ଚଳରୁ ବାହାର
କରିଦେଲେ। ୫୧ପାଉଲ ଓ ବର୍ଣ୍ଣବ୍ବା ସେମାନଙ୍କ ବିରୁଦ୍ଧରେ
ଆପଣା ଆପଣା ପାଦତଳ ଧୂଳି ଝାଡିଦେଇ ଇକନିୟ
ନଗରକୁ ଚାଲିଗଲେ। ୫୨କିନ୍ତୁ ଶିଷ୍ୟମାନେ ଆନନ୍ଦ ଓ
ପବିତ୍ର ଆତ୍ମାରେ ପରିପୂର୍ଣ୍ଣ ହୋଇଗଲେ।

## ଇକନିୟରେ ପାଉଲ ଓ ବର୍ଣ୍ଣବ୍ବା

୧୪ ପାଉଲ ଓ ବର୍ଣ୍ଣବ୍ବା ଦୁହେଁ ଇକନିୟ ନଗରରେ
ଯିହୂଦୀୟମାନଙ୍କର ପ୍ରାର୍ଥନାଗୃହକୁ ଗଲେ।
ସେଠାରେ ସେମାନେ ଏଭଳି ଭାବରେ ପ୍ରଭୁଙ୍କ ବାକ୍ୟ
ପ୍ରଚାର କଲେ ଯେ, ଉଭୟ ଯିହୂଦୀୟ ଓ ଅନ୍ୟ ଜାତିର
ଅନେକ ଲୋକ ବିଶ୍ୱାସ କଲେ। ୨ମାତ୍ର ଯେଉଁ ଯିହୂଦୀୟମାନେ
ଅବିଶ୍ୱାସ କରୁଥିଲେ, ସେମାନେ ଅନ୍ୟ ଜାତୀୟ ଲୋକମାନଙ୍କ
ମନରେ ଭାଇମାନଙ୍କ ବିରୁଦ୍ଧରେ ଖରାପ ଧାରଣା ଜନ୍ମାଇଲେ।
୩ତଥାପି ପାଉଲ ଓ ବର୍ଣ୍ଣବ୍ବା ସେଠାରେ ଅନେକ ଦିନ
ରହିଲେ ଓ ପ୍ରଭୁଙ୍କର କଥା ସାହସର ସହିତ ପ୍ରଚାର
କଲେ। ସେମାନଙ୍କ ମାଧ୍ୟମରେ ପ୍ରଭୁ ଆଶ୍ଚର୍ଯ୍ୟକାର୍ଯ୍ୟ ସବୁ
କଲେ, ଓ ଅନୁଗ୍ରହର ବାକ୍ୟ ପ୍ରଚାର କଲେ। ୪ନଗରର
ଲୋକମାନେ ଦୁଇ ଦଳରେ ଭାଗ ହୋଇଗଲେ। କେତେକ
ଯିହୂଦୀୟମାନଙ୍କ ପକ୍ଷରେ ଓ ଅନ୍ୟ ଦଳ ପ୍ରେରିତମାନଙ୍କ
ପକ୍ଷରେ ଥିଲେ।
୫ଅନ୍ୟଜାତୀୟ ଓ ଯିହୂଦୀୟ ଲୋକମାନେ ସେମାନଙ୍କ
ସହ ଖରାପ ବ୍ୟବହାର କରିବାପାଇଁ ଓ ସେମାନଙ୍କ
ଉପରେ ପଥର ପକାଇବା ନିମନ୍ତେ ନେତାମାନଙ୍କ ସହିତ
ମିଶିଲେ। ୬ପାଉଲ ଓ ବର୍ଣ୍ଣବ୍ବା ଏହା ଜାଣିପାରି ଲୁକାଅନିଆର
ଲୁସ୍ତ୍ରା ଦର୍ବୀ ନଗର ଓ ଚାରିପାଖ ଅଞ୍ଚଳକୁ ଚାଲିଗଲେ।
୭ସେଠାରେ ସେମାନେ ସୁସମାଚାର ପ୍ରଚାର କଲେ।

## ଲୁସ୍ତ୍ରା ଓ ଦର୍ବୀରେ ପାଉଲ

୮ଲୁସ୍ତ୍ରାରେ ଗୋଟିଏ ଛୋଟା ଥିଲା। ସେ ଲୋକଟି
ଜନ୍ମରୁ ଛୋଟା ଥିଲା। ସେ କେବେ ଚାଲି ପାରୁ ନ ଥିଲା।
୯ସେ ବସି ପାଉଲଙ୍କ କଥା ଶୁଣୁଥିଲା। ପାଉଲ ତାକୁ
ସିଧାସଳଖ ଅନାଇ ଦେଖିଲେ ଯେ ସେ ସୁସ୍ଥ ହୋଇପାରିବ
ବୋଲି ତା'ର ବିଶ୍ୱାସ ଅଛି। ୧୦ସେ ଖୁବ୍ ଜୋରରେ
କହିଲେ, "ପାଦରେ ଭରା ଦେଇ ସିଧା ଠିଆ ହୁଅ।" ସେ
ଛୋଟା ଲୋକଟି ଡେଇଁ ପଡିଲା ଓ ଚାଲିବାକୁ ଆରମ୍ଭ
କଲା। ୧୧ଲୋକମାନେ ପାଉଲଙ୍କର ଏ କାମ ଦେଖି
ଲୁକାଅନିଆ ଭାଷାରେ ଖୁବ୍ ଜୋରରେ କହିଲେ,
"ଦେବତାମାନେ ମନୁଷ୍ୟ ରୂପରେ ଆମ୍ଭ ପାଖକୁ ଆସିଛନ୍ତି।"
୧୨ଲୋକମାନେ ବର୍ଣ୍ଣବ୍ବାଙ୍କୁ ବୃହସ୍ପତି ଓ ପାଉଲ ପ୍ରଧାନ
ବକ୍ତା ହେବାରୁ ତାହାଙ୍କୁ ବୁଧ ବୋଲି କହିଲେ। ୧୩ସେହି
ନଗର ସାମନାରେ ସ୍ଥାପିତ ବୃହସ୍ପତି ମନ୍ଦିରର ଯାଜକ
କେତୋଟି ବଳଦ ଓ ଫୁଲମାଳ ଆଣି ପହଞ୍ଚିଲେ। ଯାଜକ
ଓ ଲୋକମାନେ, ପାଉଲ ଓ ବର୍ଣ୍ଣବ୍ବାଙ୍କୁ ଏହା ଉତ୍ସର୍ଗ
କରିବା ପାଇଁ ଇଚ୍ଛା କରୁଥିଲେ।
୧୪କିନ୍ତୁ ବର୍ଣ୍ଣବ୍ବା ଓ ପାଉଲ ଏହା ଶୁଣି ନିଜ ବସ୍ତ୍ର
ଚିରି ପକାଇଲେ। ସେମାନେ ଲୋକମାନଙ୍କ ଆଡ଼କୁ ଦୌଡ଼ି
ପାଟିକରି କହିବାକୁ ଲାଗିଲେ: ୧୫"ହେ ଲୋକମାନେ
ତୁମ୍ଭେମାନେ ଏପରି କାହିଁକି କରୁଛ? ଆମ୍ଭେ ତୁମ୍ଭମାନଙ୍କପରି
କେବଳ ମଣିଷ। ଆମ୍ଭେ ତୁମ୍ଭମାନଙ୍କୁ ସୁସମାଚାର କହିବା
ପାଇଁ ଆସିଛୁ। ତୁମ୍ଭମାନଙ୍କୁ ଏହି ମୂଲ୍ୟହୀନ ବିଷୟଗୁଡ଼ିକ
ଠାରୁ ଦୂରେଇ ରହି ଜୀବନ୍ତ ପରମେଶ୍ୱରଙ୍କ ଆଡ଼କୁ
ଫେରାଇବା ପାଇଁ ଆମ୍ଭେ ଆସିଛୁ। ସେହି ପରମେଶ୍ୱର
ଆକାଶ, ପୃଥିବୀ, ସମୁଦ୍ର ଓ ତନ୍ମଧ୍ୟସ୍ଥ ସମସ୍ତ ବିଷୟ ସୃଷ୍ଟି
କରିଛନ୍ତି। ୧୬ଅତୀତରେ ସବୁ ଜାତିର ଲୋକମାନଙ୍କୁ ନିଜ
ନିଜ ରାସ୍ତାରେ ଚାଲିବା ପାଇଁ ସେ ଅନୁମତି ଦେଇଥିଲେ।
୧୭କିନ୍ତୁ ସେ ତୁମ୍ଭମାନଙ୍କ ନିକଟରେ ନିଜର ସାକ୍ଷ୍ୟ ଦେଇ
ଅଛନ୍ତି। କାରଣ ସେ ତୁମ୍ଭମାନଙ୍କ ପାଇଁ ବହୁତ ଭଲ କାମ
କରିଛନ୍ତି। ସେ ତୁମ୍ଭକୁ ସ୍ୱର୍ଗରୁ ବର୍ଷା ଓ ଋତୁ ଅନୁସାରେ
ଶସ୍ୟ ଦେଇଛନ୍ତି। ସେ ତୁମ୍ଭମାନଙ୍କୁ ଖାଦ୍ୟ ଦିଅନ୍ତି। ସେ
ତୁମ୍ଭମାନଙ୍କର ହୃଦୟ ଆନନ୍ଦରେ ଭରି ଦିଅନ୍ତି।" ୧୮ଏସବୁ
କଥା କହି ପାଉଲ ଓ ବର୍ଣ୍ଣବ୍ବା ଅତିକଷ୍ଟରେ ସେମାନଙ୍କର
ଉଦ୍ଦେଶ୍ୟରେ ନୈବେଦ୍ୟ ଉତ୍ସର୍ଗ କରିବାରୁ ଲୋକମାନଙ୍କୁ
ବନ୍ଦ କଲେ।
୧୯କିନ୍ତୁ ତା'ପରେ କେତେକ ଯିହୂଦୀ ଆନ୍ତିୟଖିଆ ଓ
ଇକନିୟରୁ ଆସିଲେ। ସେମାନେ ଲୋକମାନଙ୍କୁ ମତାଇ
ପାଉଲଙ୍କୁ ପଥର ମାରିଲେ। ସେ ମରିଗଲେଣି ଭାବି
ସେମାନେ ତାହାଙ୍କୁ ନଗର ବାହାରକୁ ଟାଣି ଆଣିଲେ।
୨୦କିନ୍ତୁ ଶିଷ୍ୟମାନେ ପାଉଲଙ୍କ ଚାରିପାଖେ ଘେରି ଯିବାରୁ
ସେ ଉଠି ହୋଇ ନଗରକୁ ଚାଲିଗଲେ। ତହୁଁ ଆରଦିନ
ସେ ବର୍ଣ୍ଣବ୍ବାଙ୍କ ସହିତ ଦର୍ବୀ ନଗରକୁ ଚାଲିଗଲେ।

## ସିରିଆ ଦେଶର ଆନ୍ତିୟଖିଆକୁ ଫେରିବା

[୨୧]ପାଉଲ ଓ ବର୍ଣ୍ଣବ୍‌ବା ଦର୍ବୀ ନଗରରେ ସୁସମାଚାର
ପ୍ରଚାର କଲେ। ବହୁତ ଲୋକ ଯୀଶୁଙ୍କର ଶିଷ୍ୟ ହେଲେ।
ତା'ପରେ ବର୍ଣ୍ଣବ୍‌ବା ଓ ପାଉଲ ଲୁସ୍ତ୍ରା, ଇକନିୟ ଓ
ଆନ୍ତିୟଖିଆକୁ ଫେରିଗଲେ। [୨୨]ସେମାନେ ସେ ସ୍ଥାନଗୁଡ଼ିକରେ
ଶିଷ୍ୟମାନଙ୍କ ଆତ୍ମାକୁ ସବଳ କଲେ ଓ ବିଶ୍ୱାସରେ
ବୃଦ୍ଧିପାଇବା ପାଇଁ ଉତ୍ସାହିତ କଲେ। ସେମାନେ କହିଲେ,
"ପରମେଶ୍ୱରଙ୍କ ରାଜ୍ୟରେ ପ୍ରବେଶ କରିବା ନିମନ୍ତେ ଆମ୍ଭକୁ
ଅନେକ ଦୁଃଖ କଷ୍ଟ ଭୋଗ କରିବାକୁ ପଡିବ।" [୨୩]ପାଉଲ
ଓ ବର୍ଣ୍ଣବ୍‌ବା ସେମାନଙ୍କ ପାଇଁ ପ୍ରତି ମଣ୍ଡଳୀରେ ପ୍ରାଚୀନମାନଙ୍କୁ
ନିଯୁକ୍ତ ଦେଲେ। ସେମାନେ ଏହି ପ୍ରାଚୀନମାନଙ୍କ ପାଇଁ
ଉପବାସ ଓ ପ୍ରାର୍ଥନା କଲେ। ଏହି ପ୍ରାଚୀନମାନେ ପ୍ରଭୁ
ଯୀଶୁଙ୍କଠାରେ ବିଶ୍ୱାସ କରିଥିଲେ। ତେଣୁ ପାଉଲ ଓ
ବର୍ଣ୍ଣବ୍‌ବା ସେମାନଙ୍କୁ ପ୍ରଭୁଙ୍କ ପାଖରେ ସମର୍ପଣ କଲେ।

[୨୪]ସେମାନେ ପିସିଦିଆ ଦେଇ ପମ୍ଫୂଲିଆରେ ପହଞ୍ଚିଲେ।
[୨୫]ସେମାନେ ପର୍ଗୀରେ ସୁସମାଚାର ପ୍ରଚାର କଲାପରେ
ଆତ୍ତାଲିଆ ନଗରରେ ପହଞ୍ଚିଲେ। [୨୬]ସେଠାରୁ ସେମାନେ
ଆନ୍ତିୟଖିଆକୁ ସମୁଦ୍ର ପଥରେ ଚାଲିଗଲେ। ଏହି ସ୍ଥାନରେ
ବିଶ୍ୱାସୀମାନେ ସେମାନଙ୍କୁ ଏହି କାର୍ଯ୍ୟ କରିବା ପାଇଁ
ପ୍ରଭୁଙ୍କ ନିକଟରେ ସମର୍ପିତ କରି ପଠାଇଥିଲେ। ସେମାନେ
ଏହି କାର୍ଯ୍ୟ ପୂର୍ଣ୍ଣ କଲେ।

[୨୭]ପାଉଲ ଓ ବର୍ଣ୍ଣବ୍‌ବା ସେଠାରେ ପହଞ୍ଚିବା ପରେ
ମଣ୍ଡଳୀକୁ ଏକାଠି କଲେ। ପରମେଶ୍ୱର ସେମାନଙ୍କ ସହିତ
ଯାହା କିଛି କରିଥିଲେ ତାହା ସେମାନଙ୍କୁ କହିଲେ ଓ
ପରମେଶ୍ୱର ଅନ୍ୟ ଜାତୀୟ ଲୋକଙ୍କ ପାଇଁ କିପରି
ବିଶ୍ୱାସର ରାସ୍ତା ଖୋଲିଲେ, ତାହା ସେମାନେ ବର୍ଣ୍ଣନା
କଲେ। ସେମାନେ ସେଠାରେ ଖ୍ରୀଷ୍ଟଙ୍କ ଶିଷ୍ୟମାନଙ୍କ ସହିତ
ଅନେକ ଦିନ ପର୍ଯ୍ୟନ୍ତ ରହିଲେ।

## ଯିରୂଶାଲମରେ ସଭା

**୧୫** କେତେକ ଲୋକ ଯିହୂଦାରୁ ଆନ୍ତିୟଖିଆକୁ
ଆସିଲେ। ସେମାନେ ଭାଇମାନଙ୍କୁ ଏହି ଶିକ୍ଷା
ଦେଲେ, "ତୁମ୍ଭେମାନେ ଯଦି ମୋଶାଙ୍କର ବ୍ୟବସ୍ଥା ଅନୁସାରେ
ସୁନ୍ନତ ନହୁଅ, ତେବେ ତୁମ୍ଭେମାନେ ପରିତ୍ରାଣ ପାଇପାରିବ
ନାହିଁ।" [୨]ପାଉଲ ଓ ବର୍ଣ୍ଣବ୍‌ବା ସେମାନଙ୍କ ସହିତ ରାଜି
ନହୋଇ ବହୁତ ଯୁକ୍ତି କଲେ। ଏହି ପ୍ରଶ୍ନ ଉପରେ ବିଚାର
ଆଲୋଚନା ଲାଗି ପାଉଲ, ବର୍ଣ୍ଣବ୍‌ବା ଓ ଅନ୍ୟ କେତେକଙ୍କୁ
ଯିରୂଶାଲମରେ ପ୍ରେରିତ ଓ ପ୍ରାଚୀନମାନଙ୍କ ପାଖକୁ ଯିବାପାଇଁ
ନିଯୁକ୍ତ ଦିଆଗଲା।

[୩]ଖ୍ରୀଷ୍ଟିୟ ମଣ୍ଡଳୀ ଦ୍ୱାରା ସେମାନଙ୍କୁ ପଠାଗଲା। ସେମାନେ
ଫୈନୀକିଆ ଓ ଶମିରୋଣ ଦେଇ ଗଲେ। ଅନ୍ୟ ଜାତୀୟ
ଲୋକମାନେ କିପରି ପରମେଶ୍ୱରଙ୍କ ପ୍ରତି ମନ ଫେରାଇଛନ୍ତି,
ଏହା ସେମାନେ ସେଠାରେ କହିଲେ। ଏହା ଶୁଣି ଭାଇମାନେ
ବହୁତ ଖୁସି ହେଲେ। [୪]ପାଉଲ, ବର୍ଣ୍ଣବ୍‌ବା ଓ ଅନ୍ୟମାନେ
ଯିରୂଶାଲମରେ ପହଞ୍ଚିଲେ। ପ୍ରେରିତ, ପ୍ରାଚୀନ ଓ ଅନ୍ୟ
ବିଶ୍ୱାସୀମାନେ ସେଠାରେ ସେମାନଙ୍କୁ ସ୍ୱାଗତ କଲେ।
ପରମେଶ୍ୱର ସେମାନଙ୍କ ସହିତ ଯାହା ସବୁ କରିଥିଲେ,
ସେ ସବୁକଥା ସେମାନେ କହିଲେ। [୫]କିନ୍ତୁ ଫାରୂଶୀମାନଙ୍କ
ଦଳର କେତେକ ବିଶ୍ୱାସୀ ଲୋକ ଠିଆ ହୋଇ କହିଲେ,
"ଅନ୍ୟ ଜାତୀୟମାନଙ୍କୁ ନିଶ୍ଚିତରୂପେ ସୁନ୍ନତ ହେବାକୁ ପଡ଼ିବ
ଓ ମୋଶାଙ୍କ ବ୍ୟବସ୍ଥା ମାନିବାକୁ ପଡ଼ିବ।"

[୬]ପ୍ରେରିତ ଓ ପ୍ରାଚୀନମାନେ ଏ ସମସ୍ୟା ଉପରେ
ବିଚାର କରିବାପାଇଁ ଏକତ୍ରିତ ହେଲେ। [୭]ବହୁତ ବାଦବିବାଦ
ପରେ ପିତର ଠିଆ ହେଲେ ଓ ସେମାନଙ୍କୁ କହିଲେ,
"ଭାଇମାନେ, ତୁମ୍ଭେମାନେ ଜାଣ, ଯେ ଅନ୍ୟଜାତୀୟମାନେ
ଯେପରି ସୁସମାଚାର ବାର୍ତ୍ତା ଶୁଣିପାରନ୍ତି ଓ ତାହା ଶୁଣି
ବିଶ୍ୱାସ କରିପାରନ୍ତି ଏଥିନିମନ୍ତେ ପରମେଶ୍ୱର ବହୁପୂର୍ବରୁ
ତୁମ୍ଭମାନଙ୍କ ମଧ୍ୟରୁ ମୋତେ ବାଛିଥିଲେ। [୮]ପରମେଶ୍ୱର
ସମସ୍ତଙ୍କ ଅନ୍ତରର ଭାବନା ଜାଣନ୍ତି। ସେ ସେହି
ଅନ୍ୟଜାତୀୟମାନଙ୍କୁ ଗ୍ରହଣ କଲେ। ପରମେଶ୍ୱର ଆମ୍ଭକୁ
ଯେପରି ପବିତ୍ର ଆତ୍ମାଙ୍କୁ ଦାନ କରିଥିଲେ, ସେହିପରି
ସେମାନଙ୍କୁ ମଧ୍ୟ ପବିତ୍ରଆତ୍ମା ଦାନ କରିଅଛନ୍ତି। [୯]ଏହାଦ୍ୱାରା
ପରମେଶ୍ୱର ଆମ୍ଭମାନଙ୍କର ଓ ସେମାନଙ୍କ ମଧ୍ୟରେ କୌଣସି
ତଫାତ ରଖିଲେ ନାହିଁ। ସେ ସେମାନଙ୍କର ବିଶ୍ୱାସ ଦ୍ୱାରା
ସେମାନଙ୍କର ହୃଦୟକୁ ପବିତ୍ର କରିଲେ। [୧୦]ତେଣୁ, ତୁମ୍ଭେମାନେ
କାହିଁକି ଶିଷ୍ୟମାନଙ୍କ କାନ୍ଧରେ ଯୁଆଳି ରଖି ପରମେଶ୍ୱରଙ୍କୁ
ପରୀକ୍ଷା କରୁଛ? ଆମ୍ଭେମାନେ କିମ୍ବା ଆମ୍ଭର ପୂର୍ବପୁରୁଷମାନେ
ତ ଏହି ଯୁଆଳି ଭାର ସହି ପାରିଲେ ନାହିଁ। [୧୧]ଆମ୍ଭର
ବିଶ୍ୱାସ ଯେ ଆମ୍ଭେ ଓ ଏଲୋକମାନେ ପ୍ରଭୁ ଯୀଶୁଙ୍କ
ଅନୁଗ୍ରହ ଦ୍ୱାରା ରକ୍ଷା ପାଇଛୁ।"

[୧୨]ତା'ପରେ ସମସ୍ତେ ନୀରବ ହୋଇଗଲେ। ସେମାନେ
ବର୍ଣ୍ଣବ୍‌ବା ଓ ପାଉଲଙ୍କ କଥା ଶୁଣିଲେ। ପରମେଶ୍ୱର ଅନ୍ୟ
ଜାତୀୟ ମାନଙ୍କମଧ୍ୟରେ ସେମାନଙ୍କ ଜରିଆରେ, ଯେଉଁସବୁ
ଆଶ୍ଚର୍ଯ୍ୟକର୍ମ ଓ ଚିହ୍ନମାନ କରିଥିଲେ, ସେ ସବୁ ପାଉଲ
ଓ ବର୍ଣ୍ଣବ୍‌ବା ବର୍ଣ୍ଣନା କଲେ। [୧୩]ସେମାନେ କହିବାପରେ
ଯାକୁବ ଉତ୍ତର ଦେଲେ, "ଭାଇମାନେ, ମୋ କଥା ଶୁଣ।
[୧୪]ପରମେଶ୍ୱର କିପରି ପ୍ରଥମ ଥର ଅନ୍ୟ ଜାତୀୟ
ଲୋକମାନଙ୍କ ପାଇଁ ନିଜର ପ୍ରେମ ଦେଖାଇଲେ ଓ
ସେମାନଙ୍କୁ ଗ୍ରହଣ କରି ତାହାଙ୍କର ଲୋକରେ ପରିଣତ
କଲେ; ତାହା ଶିମୋନ ବର୍ଣ୍ଣନା କରିଅଛନ୍ତି। [୧୫]ଏହା
ଭାବବାଦୀମାନେ ମଧ୍ୟ ଏହିକଥା କହିଅଛନ୍ତି। ଏହା ଏହିପରି
ଲେଖାଯାଇଛି:

[୧୬] 'ଏହା ପରେ ମୁଁ ପୁନର୍ବାର ଫେରି ଆସିବି ଏବଂ
ଦାଉଦର ଭଗ୍ନଗୃହ ପୁଣି ନିର୍ମାଣ କରିବି। ମୁଁ
ଏହାର ନଷ୍ଟ ହୋଇଯାଇଥିବା ଅଂଶ ପୁଣି ଥରେ
ନିର୍ମାଣ କରି ଠିକ୍ କରିଦେବି।
[୧୭] ପ୍ରଭୁ ଏହି କଥା କହନ୍ତି, ଅବଶିଷ୍ଟ ମାନବଜାତି ଓ
ଅନ୍ୟ ଜାତୀୟ ଲୋକମାନେ, ଯେଉଁମାନେ ମୋ
ନାମରେ ପରିଚିତ ହୁଅନ୍ତି, ସେମାନେ ମୋତେ
ଖୋଜିବେ। ଯେଉଁପ୍ରଭୁ ଏହି ସମସ୍ତ ଘଟଣା ଘଟାନ୍ତି,
ସେ ସ୍ୱୟଂ ଏହା କହିଅଛନ୍ତି।
[୧୮] ଏହା ଯୁଗ ଆରମ୍ଭରୁ ଜଣାଅଛି।'

ଆମୋଷ ୯:୧୧-୧୨

୧୯"ସେଥିପାଇଁ, ମୁଁ ଭାବୁଛି, ପରମେଶ୍ୱରଙ୍କ ପ୍ରତି ଫେରୁଥିବା ଅନ୍ୟ ଜାତୀୟ ଲୋକମାନଙ୍କୁ କଷ୍ଟ ଦେବା ଆମ୍ଭମାନଙ୍କ ପକ୍ଷରେ ଉଚିତ ନୁହେଁ। ୨୦ଏହା ବଦଳରେ ଆମ୍ଭେ ସେମାନଙ୍କୁ ଲେଖିବା ଉଚିତ ଯେ:

ତୁମ୍ଭେମାନେ ମୂର୍ତ୍ତିମାନଙ୍କୁ ଦିଆଯାଇଥିବା ଅପବିତ୍ର ଖାଦ୍ୟ ଖାଅ ନାହିଁ। ଯୌନ ପାପ କରନାହିଁ। ରକ୍ତ ଖାଅ ନାହିଁ। ତଣ୍ଟି ଚିପି ମରାଯାଇଥିବା କୌଣସି ପଶୁର ମାଂସ ଖାଅନାହିଁ।

୨୧ସେମାନେ ଏସବୁ କରିବା ଉଚିତ ନୁହେଁ, କାରଣ ଆରମ୍ଭରୁ ମୋଶାଙ୍କ ବ୍ୟବସ୍ଥା ପାଠ କରୁଥିବା ଲୋକେ ପ୍ରତି ନଗରରେ ଏବେ ମଧ୍ୟ ଅଛନ୍ତି ଏବଂ ତାହାଙ୍କର ବ୍ୟବସ୍ଥା ପ୍ରାର୍ଥନାଗୃହମାନଙ୍କରେ ପ୍ରତି ବିଶ୍ରାମବାରରେ ପାଠ କରାଯାଏ।"

## ଅନ୍ୟ ଯିହୂଦୀ ବିଶ୍ୱାସୀମାନଙ୍କୁ ପତ୍ର

୨୨ଏହାପରେ ପ୍ରେରିତ, ପ୍ରାଚୀନ ଓ ସମଗ୍ର ମଣ୍ଡଳୀ, ସେମାନଙ୍କ ମଧ୍ୟରୁ କେତେକ ଲୋକଙ୍କୁ ବାଛିଲେ। ସେମାନେ ପାଉଲ ଓ ବର୍ଣ୍ଣବ୍ବାଙ୍କ ସହିତ ସେମାନଙ୍କୁ ଆନ୍ତିୟଖିଆକୁ ପଠାଇବା ପାଇଁ ସ୍ଥିର କଲେ। ସେମାନେ ଯିହୂଦା (ଯାହାଙ୍କର ଅନ୍ୟନାମ ଥିଲା, ବର୍ଶବ୍ବା) ଓ ଶୀଲାଙ୍କୁ ବାଛିଲେ। ଏହିମାନେ ଭାଇମାନଙ୍କ ମଧ୍ୟରେ ନେତା ଥିଲେ। ୨୩ସେମାନେ ତାହାଙ୍କ ହାତରେ ଏହି ଚିଠି ଦେଲେ:

ଆନ୍ତିୟଖିଆ, ସିରିଆ, କିଲିକିଆସ୍ଥ ଅନ୍ୟଜାତୀୟ ବିଶ୍ୱାସୀ ଭାଇମାନଙ୍କୁ ପ୍ରେରିତ, ପ୍ରାଚୀନ ଓ ଅନ୍ୟ ଭାଇମାନଙ୍କର ନମସ୍କାର।

୨୪ଆମ୍ଭେ ଶୁଣିଲୁ ଯେ ଆମ୍ଭଭିତରୁ କେତେକ ଲୋକ ଆମ୍ଭଠାରୁ ଆଦେଶ ନପାଇ ତୁମ୍ଭମାନଙ୍କୁ ସେମାନଙ୍କ କଥା ଦ୍ୱାରା ଅସୁବିଧାରେ ପକାଇଛନ୍ତି ଓ ତୁମ୍ଭମାନଙ୍କୁ ବ୍ୟତିବ୍ୟସ୍ତ କରୁଛନ୍ତି। ୨୫ସେଥିପାଇଁ ଆମ୍ଭେ ଏକମତ ଓ ସ୍ଥିର ହୋଇ କେତେକ ଲୋକଙ୍କୁ ବାଛିଛୁ। ଆମ୍ଭେ ସେମାନଙ୍କୁ ଆମ୍ଭର ପ୍ରିୟ ବର୍ଣ୍ଣବ୍ବା ଓ ପାଉଲଙ୍କ ସହିତ ପଠାଇବୁ। ୨୬ବର୍ଣ୍ଣବ୍ବା ଓ ପାଉଲ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ନାମ ପାଇଁ ସେମାନଙ୍କର ଜୀବନକୁ ଉତ୍ସର୍ଗ କରିଛନ୍ତି। ୨୭ସେଥିପାଇଁ ଆମ୍ଭେ ଯିହୂଦା ଓ ଶୀଲାଙ୍କୁ ତୁମ୍ଭମାନଙ୍କ ପାଖକୁ ପଠାଇଲୁ। ସେମାନେ ତୁମ୍ଭମାନଙ୍କୁ ମୌଖିକଭାବେ ମଧ୍ୟ ଏହି ସବୁ କଥା କହିବେ। ୨୮ପବିତ୍ର ଆତ୍ମା ଓ ଆମ୍ଭମାନଙ୍କୁ ଏହା ଉଚିତ ମନେହେଲା ଯେ, ତୁମ୍ଭେମାନେ ଏହି କେତୋଟି ବିଷୟ ଛଡ଼ା ଆଉ ଅଧିକ ବୋଝରେ ଭାରାକ୍ରାନ୍ତ ହେବା ଠିକ୍ ନୁହେଁ। ତେଣୁ ଏହି କେତୋଟି ଆବଶ୍ୟକୀୟ ବିଷୟଗୁଡ଼ିକ ତୁମ୍ଭେମାନେ କରିବ:

୨୯ତୁମ୍ଭେମାନେ ମୂର୍ତ୍ତିଗୁଡ଼ିକ ନିକଟରେ ସମର୍ପିତ ଖାଦ୍ୟ ଖାଇବ ନାହିଁ। ତୁମ୍ଭେମାନେ ରକ୍ତ ଖାଇବ ନାହିଁ। ତଣ୍ଟି ଚିପି ମରାଯାଇଥିବା ପଶୁମାନଙ୍କୁ ତୁମ୍ଭେମାନେ ଖାଇବ ନାହିଁ। ତୁମ୍ଭେମାନେ ଯୌନ ପାପ ସବୁ କରିବ ନାହିଁ।

ଯଦି ତୁମ୍ଭେମାନେ ଏସବୁ ଜିନିଷଠାରୁ ନିଜକୁ ଅଲଗା ରଖିବ, ତେବେ ତୁମ୍ଭେମାନେ ଉତ୍ତମ କାର୍ଯ୍ୟ କରିବ। ବିଦାୟ।"

୩୦ତାପରେ ବର୍ଣ୍ଣବ୍ବା, ପାଉଲ, ଯିହୂଦା ଓ ଶୀଲା ଯିରୂଶାଲମରୁ ଆନ୍ତିୟଖିଆକୁ ଯାତ୍ରା କଲେ। ସେଠାରେ ସେମାନେ ଏକାଠି ହୋଇଥିବା ବିଶ୍ୱାସୀମାନଙ୍କୁ ପତ୍ର ଦେଲେ। ୩୧ଆନ୍ତିୟଖିଆର ବିଶ୍ୱାସୀମାନେ ଏ ପତ୍ର ପଢ଼ି ଆନନ୍ଦିତ ହେଲେ। କାରଣ ଏହା ସେମାନଙ୍କୁ ଅତ୍ୟନ୍ତ ଉତ୍ସାହିତ କରି ଥିଲା। ୩୨ଯିହୂଦା ଓ ଶୀଲା ଦୁହେଁ ମଧ୍ୟ ଭାବବାଦୀ ଥିଲେ। ସେମାନେ ଭାଇମାନଙ୍କୁ ଉତ୍ସାହ ଦେଇ ଅନେକ କଥା କହିଲେ, ଓ ସେମାନଙ୍କୁ ଶକ୍ତିଯୁକ୍ତ କଲେ। ୩୩ସେଠାରେ କିଛି ଦିନ ରହିବାପରେ ଯେଉଁମାନେ ସେମାନଙ୍କୁ ପଠାଇଥିଲେ, ଯିରୂଶାଲମର ସେହି ଭାଇମାନଙ୍କ ପାଖକୁ ଫେରି ଯିବା ପାଇଁ ଶାନ୍ତିରେ ବିଦାୟ ଦେଲେ। ୩୪*

୩୫କିନ୍ତୁ ପାଉଲ ଓ ବର୍ଣ୍ଣବ୍ବା ଆନ୍ତିୟଖିଆରେ ରହିଲେ, ଏବଂ ଅନ୍ୟମାନଙ୍କ ସହିତ ସେମାନେ ଲୋକମାନଙ୍କୁ ପ୍ରଭୁଙ୍କର ବାକ୍ୟ ଶିକ୍ଷା ଦେଲେ, ଏବଂ ସୁସମାଚାର ପ୍ରଚାର କଲେ।

## ପାଉଲ ଓ ବର୍ଣ୍ଣବ୍ବା ଅଲଗା ହୋଇଗଲେ

୩୬ପାଉଲ କିଛି ଦିନ ପରେ ବର୍ଣ୍ଣବ୍ବାଙ୍କୁ କହିଲେ, "ଚାଲ, ଆମ୍ଭେମାନେ ଫେରିବା ଆଉ ଆମ୍ଭେମାନେ ପ୍ରଭୁଙ୍କର ବାକ୍ୟ ଯେଉଁ ପ୍ରତ୍ୟେକ ସହରରେ ପ୍ରଚାର କରିଛୁ, ସେହି ସବୁ ସହରକୁ ଯାଇ ଆମ୍ଭ ଭାଇମାନଙ୍କୁ ଦେଖିବା, ଆଉ ସେମାନଙ୍କ ଭଲମନ୍ଦ ବୁଝିବା।" ୩୭ବର୍ଣ୍ଣବ୍ବା ସେମାନଙ୍କ ସହିତ ମାର୍କ ନାମରେ ପରିଚିତ ଯୋହନଙ୍କୁ ନେବାପାଇଁ ଚାହିଁଲେ। ୩୮କିନ୍ତୁ ପାଉଲ ତାହାଙ୍କୁ ସାଙ୍ଗରେ ନ ନେବାପାଇଁ ଜୋରଦେଲେ, କାରଣ ସେ ପୂର୍ବରୁ ପଫୂଲିଆରେ ସେମାନଙ୍କ ସହିତ ଏହି କାର୍ଯ୍ୟରେ ସାଙ୍ଗରେ ନ ରହି ସେମାନଙ୍କୁ ତ୍ୟାଗ କରି ଚାଲି ଆସିଥିଲେ। ୩୯ଏଥିପାଇଁ ସେମାନଙ୍କ ମଧ୍ୟରେ ଘୋର ମତଭେଦ ହେଲା। ଏହା ଫଳରେ, ପାଉଲ ଓ ବର୍ଣ୍ଣବ୍ବା ପରସ୍ପର ଠାରୁ ଅଲଗା ହୋଇଗଲେ। ବର୍ଣ୍ଣବ୍ବା ମାର୍କଙ୍କୁ ନେଇ ଜଳ ପଥରେ କୁପ୍ର ଉପଦ୍ୱୀପକୁ ଚାଲିଗଲେ। ୪୦ପାଉଲ ଶୀଲାଙ୍କୁ ତାହାଙ୍କ ସହିତ ନେବାପାଇଁ ବାଛିଲେ। ଆନ୍ତିୟଖିଆରେ ଭାଇମାନେ ପାଉଲଙ୍କୁ ପ୍ରଭୁଙ୍କ ଅନୁଗ୍ରହ ଓ ତତ୍ତ୍ୱାବଧାନରେ ସମର୍ପଣ କରି ବିଦାୟ ଦେଲେ। ୪୧ପାଉଲ ଓ ଶୀଲା ସିରିଆ ଓ କିଲିକିଆ ଦେଶ

---

**ପଦ ସଂଖ୍ୟା:୩୪** କେତେକ ଗ୍ରୀକ୍ ଲିପିରେ ଏହିପରି ଲେଖାଯାଏ। "ମାତ୍ର ଶୀଲା ସେଠାରେ ରହିବା ପାଇଁ ସ୍ଥିର କଲେ।"

ଦେଇ ଗଲେ ଓ ମଣ୍ଡଳୀଗୁଡ଼ିକୁ ଶକ୍ତିଶାଳୀ ହେବାପାଇଁ
ସାହାଯ୍ୟ କଲେ।

## ତୀମଥି ପାଉଲ ଓ ଶୀଲାଙ୍କ ସହିତ ଗଲେ

୧୬ ପାଉଲ ଦର୍ବୀ ଓ ଲୁସ୍ତ୍ରା ନଗରକୁ ଗଲେ।
ସେଠାରେ ତୀମଥି ନାମକ ଜଣେ ଶିଷ୍ୟ ଥିଲେ।
ସେ ଜଣେ ବିଶ୍ୱାସୀନୀ ଯିହୂଦୀ ସ୍ତ୍ରୀଙ୍କର ପୁତ୍ର ଥିଲେ କିନ୍ତୁ
ତାହାଙ୍କର ପିତା ଗ୍ରୀକ୍ ଥିଲେ। ୨ତୀମଥିଙ୍କୁ ଲୁସ୍ତ୍ରା ଓ
ଇକନିୟର ଭାଇମାନେ ବହୁତ ପ୍ରଶଂସା କରୁଥିଲେ। ୩ପାଉଲ
ତୀମଥିଙ୍କୁ ନିଜ ସହିତ ନେବାପାଇଁ ଇଚ୍ଛା କଲେ। ତାହାଙ୍କର
ପିତା ଗ୍ରୀକ୍ ବୋଲି ସମସ୍ତେ ଜାଣିଥିଲେ। ତେଣୁ ପାଉଲ
ତାହାଙ୍କୁ ଯିହୂଦୀମାନଙ୍କ ହେତୁ ସୁନ୍ନତ କରିଦେଲେ। ୪ସେମାନେ
ନଗରରୁ ନଗର ଭ୍ରମଣ କଲାବେଳେ ଯିରୂଶାଲମରେ ଥିବା
ପ୍ରେରିତ ଓ ପ୍ରାଚୀନ ମାନଙ୍କର ଉପଦେଶ ଓ ନିଷ୍ପତ୍ତିଗୁଡ଼ିକ
ବିଷୟରେ ବିଶ୍ୱାସୀମାନଙ୍କୁ କହୁଥିଲେ ଓ ସେହି ଉପଦେଶଗୁଡ଼ିକୁ
ପାଳନ କରିବାକୁ ସେମାନଙ୍କୁ ପ୍ରବର୍ତ୍ତାଉଥିଲେ। ୫ତେଣୁ
ମଣ୍ଡଳୀଗୁଡ଼ିକର ସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗୁଥିଲା ଓ
ସେଗୁଡ଼ିକ ବିଶ୍ୱାସରେ ଶକ୍ତିଶାଳୀ ହେଉଥିଲେ।

## ଏସିଆରୁ ବାହାରକୁ ଯିବା ପାଇଁ ପାଉଲଙ୍କୁ ଆଦେଶ

୬ପାଉଲ ଓ ତାହାଙ୍କ ସହିତ ଥିବା ଲୋକମାନେ
ଫ୍ରୁଗିଆ ଓ ଗାଲାତୀୟ ଅଞ୍ଚଳ ଦେଇଗଲେ। ସେମାନଙ୍କୁ
ପବିତ୍ର ଆତ୍ମା ଏସିଆରେ ପ୍ରଭୁଙ୍କର କଥା ପ୍ରଚାର କରିବାକୁ
ଅନୁମତି ଦେଲେ ନାହିଁ। ୭ସେମାନେ ମୂସିଆ ଦେଶକୁ
ଆସିଲା ପରେ ବିଥୂନିଆକୁ ଯିବାପାଇଁ ଚେଷ୍ଟା କଲେ।
କିନ୍ତୁ, ଯୀଶୁଙ୍କ ଆତ୍ମା ସେମାନଙ୍କୁ ଯିବାପାଇଁ ଅନୁମତି
ଦେଲେ ନାହିଁ। ୮ତା'ପରେ ସେମାନେ ମୂସିଆ ଦେଶ ଛାଡ଼ି
ତ୍ରୋୟା ନଗରକୁ ଆସିଲେ। ୯ରାତିରେ ପାଉଲ ଏକ ଦର୍ଶନ
ପାଇଲେ। ସେଥିରେ ସେ ଜଣେ ମାକିଦନିଆର ଲୋକକୁ
ତାହାଙ୍କ ଆଗରେ ଠିଆ ହୋଇ ଥିବାର ଦେଖିଲେ। ସେ
ପାଉଲଙ୍କୁ କହିଲେ, "ତୁମ୍ଭେ ମାକିଦନିଆକୁ ଆସି ଆମ୍ଭକୁ
ସାହାଯ୍ୟ କର।" ୧୦ପାଉଲ ଦର୍ଶନ ପାଇବା ପରେ ଆମ୍ଭେ
ସଙ୍ଗେସଙ୍ଗେ ମାକିଦନିଆକୁ ଯିବାପାଇଁ ପ୍ରସ୍ତୁତ ହେଲୁ।
ଆମ୍ଭେ ହୃଦୟଙ୍ଗମ କଲୁ ଯେ, ପ୍ରଭୁ ସେମାନଙ୍କ ନିକଟରେ
ସୁସମାଚାର ପହଞ୍ଚାଇବା ପାଇଁ ଆମ୍ଭକୁ ଡାକିଛନ୍ତି।

## ଲୂଦିଆଙ୍କ ହୃଦୟ ପରିବର୍ତ୍ତନ

୧୧ଆମ୍ଭେ ତ୍ରୋୟା ନଗରରୁ ଜଳଯାତ୍ରାରେ ସାମଥ୍ରାକୀ
ଉପଦ୍ୱୀପରେ ପହଞ୍ଚିଲୁ। ତା ଆରଦିନ ଆମ୍ଭେ ନିୟାପଲି
ନଗରକୁ ଗଲୁ। ୧୨ସେଠାରୁ ଆମ୍ଭେ ମାକିଦନିଆ ଜିଲ୍ଲାର
ଗୋଟିଏ ପ୍ରଧାନ ନଗର ଫିଲିପ୍ପୀକୁ ଗଲୁ। ଏହା
ରୋମୀୟମାନଙ୍କର ନଗର ଥିଲା। ଆମ୍ଭେ ସେହି ନଗରରେ
କିଛି ଦିନ ରହିଲୁ।
୧୩ବିଶ୍ରାମବାର ଦିନ ଆମ୍ଭେ ନଗରଦ୍ୱାର ବାହାରେ ନଦୀ
କୂଳ ଆଡ଼େ ଗଲୁ। ଆମ୍ଭେ ଭାବିଥିଲୁ ଯେ, ସେଠାରେ
ପ୍ରାର୍ଥନା କରିବା ପାଇଁ ଗୋଟିଏ ସ୍ଥାନ ଥିବ। ଆମ୍ଭେ
ସେଠାରେ ବସିଲୁ, ଓ ସେଠାରେ ଏକତ୍ରିତ ହୋଇଥିବା
ସ୍ତ୍ରୀମାନଙ୍କ ସହିତ କଥା ହେଲୁ। ୧୪ସେଠାରେ ଲୂଦିଆ
ନାମକ ଜଣେ ସ୍ତ୍ରୀ ଲୋକ ଥିଲା। ସେ ଥୁୟାଥୀରା ନଗରର
ବାଇଗଣୀ ରଙ୍ଗର ଲୁଗା ବ୍ୟବସାୟୀ ଥିଲା। ସେ ସତ୍ୟ
ପରମେଶ୍ୱରଙ୍କୁ ଉପାସନା କରୁଥିଲା, ଓ ଆମ୍ଭ କଥା
ଶୁଣୁଥିଲା। ପାଉଲଙ୍କ କଥା ଶୁଣିବା ପାଇଁ ପ୍ରଭୁ ତାହାଙ୍କ
ହୃଦୟ ଖୋଲି ଦେଇଥିଲେ। ୧୫ସେ ଓ ତାର ଘରେ
ରହୁଥିବା ସମସ୍ତେ ବାପ୍ତିଜିତ ହେବାପରେ, ସେ ଆମ୍ଭମାନଙ୍କୁ
ଅନୁରୋଧ କରି ଡାକି କହିଲା, "ତୁମ୍ଭେମାନେ ଯଦି
ମୋତେ ପ୍ରଭୁଙ୍କଠାରେ ଜଣେ ପ୍ରକୃତ ବିଶ୍ୱାସୀ ବୋଲି
ଭାବୁଛ, ତେବେ ମୋ ଘରେ ଆସି ରୁହ।" ଏହିପରି ସେ
ଆମ୍ଭମାନଙ୍କୁ ତା'ର ଘରକୁ ଯିବାପାଇଁ ରାଜି କରାଇଲା।

## ପାଉଲ ଓ ଶୀଲା କାରାଗାରରେ

୧୬ଦିନେ ଆମ୍ଭେ ପ୍ରାର୍ଥନାଗୃହକୁ ଯିବା ସମୟରେ ଗୋଟିଏ
ଚାକରାଣୀକୁ ଦେଖିଲୁ। ତା'ଦେହରେ ଏପରି ଆତ୍ମାଟିଏ *
ଥିଲା, ଯାହା ଦ୍ୱାରା ସେ ଭବିଷ୍ୟତ କଥା ସବୁ କହି
ପାରୁଥିଲା। ସେ ଏହିପରି ଭବିଷ୍ୟତର କଥାସବୁ କହି
ତା'ମାଲିକମାନଙ୍କ ପାଇଁ ବହୁତ ଧନ ଉପାର୍ଜନ କରୁଥିଲା।
୧୭ସେ ପାଉଲ ଓ ଆମ୍ଭମାନଙ୍କର ଅନୁସରଣ କଲା, ଓ
ଜୋରରେ କହିଲା, "ଏହି ଲୋକମାନେ ସର୍ବୋପରିସ୍ଥ
ପରମେଶ୍ୱରଙ୍କର ସେବକ। ସେମାନେ ତୁମ୍ଭମାନଙ୍କୁ ମୁକ୍ତିର
ପଥ ବିଷୟରେ କହୁଛନ୍ତି।" ୧୮ସେ ଏପରି ବହୁତ ଦିନ
ପର୍ଯ୍ୟନ୍ତ କଲା, ପାଉଲ ଏଥିରେ ବିରକ୍ତ ହୋଇପଡ଼ିଲେ।
ସେ ସେହି ଆତ୍ମାକୁ କହିଲେ, "ମୁଁ ଯୀଶୁଙ୍କ ନାମରେ
ଆଦେଶ ଦେଉଛି, ଏହି ଝିଅଟି ଦେହରୁ ବାହାରିଯା।"
ସେହି ସମୟରେ ସେ ଆତ୍ମାଟି ବାହାରକୁ ଚାଲିଆସିଲା।
୧୯ସେହି ବାଳିକାର ମାଲିକମାନେ ଏସବୁ ଦେଖିଲେ।
ସେମାନେ ଜାଣିପାରିଲେ ଯେ, ସେମାନେ ଆଉ ଏ ବାଳିକା
ଦ୍ୱାରା ଧନ ଉପାର୍ଜନ କରିପାରିବେ ନାହିଁ। ତେଣୁ ସେମାନେ
ପାଉଲ ଓ ଶୀଲାଙ୍କୁ ଧରି ବଜାର ରାସ୍ତାକୁ ସେମାନଙ୍କୁ ଟାଣି
ନେଲେ ଏବଂ ନଗରକର୍ତ୍ତୃପକ୍ଷଙ୍କ ଆଗରେ ସେମାନଙ୍କୁ ଠିଆ
କରାଇଲେ। ୨୦ସେମାନଙ୍କୁ ନଗରପାଳମାନଙ୍କ ପାଖରେ ପହଞ୍ଚାଇ
କହିଲେ, "ଏମାନେ ଯିହୂଦୀୟଲୋକ। ଏମାନେ ଆମ୍ଭ
ନଗରରେ ବହୁତ ଉପଦ୍ରବ ସୃଷ୍ଟି କରୁଛନ୍ତି। ୨୧ଆମ୍ଭେମାନେ
ରୋମୀୟ। ଏଣୁ ଏମାନେ ଲୋକମାନଙ୍କୁ ଯେଉଁ କଥା
କହୁଛନ୍ତି, ସେହି ପ୍ରଥାଗୁଡ଼ିକ ଆମ୍ଭମାନଙ୍କ ଗ୍ରହଣ ଯୋଗ୍ୟ
ନୁହେଁ। ତେଣୁ ଆମ୍ଭେ ଏସବୁ କରିପାରିବୁ ନାହିଁ।" ୨୨ତା'ପରେ
ଲୋକମାନେ ପାଉଲ ଓ ଶୀଲାଙ୍କୁ ଆକ୍ରମଣ କରିବା
ନିମନ୍ତେ ସେମାନଙ୍କ ବିରୁଦ୍ଧରେ ଯୋଗ ଦେଲେ।
ନଗରପାଳମାନେ ସେମାନଙ୍କର ଲୁଗାପଟା ଛିଣ୍ଡାଇ ଦେଲେ,
ଓ ସେମାନଙ୍କୁ ବେତଆଘାତ ଦ୍ୱାରା ଦଣ୍ଡ ଦେବାପାଇଁ
ଆଦେଶ ଦେଲେ। ୨୩ସେମାନେ ସେମାନଙ୍କୁ ବହୁତ ମାଡ଼
ମାରିବା ପରେ କାରାଗାରରେ ବନ୍ଦୀ କଲେ। ସେମାନଙ୍କୁ
ସାବଧାନରେ ଜଗିବାପାଇଁ କାରାଧ୍ୟକ୍ଷଙ୍କୁ ଆଦେଶ ଦେଲେ।

---

**ଆତ୍ମାଟିଏ** ଗୋଟିଏ ଶଇତାନରେ ଆତ୍ମା। ଏହା ପାଇଁ ସେ ବିଶେଷଜ୍ଞାନର ଅଧିକାରିଣୀ ହୋଇ ପାରୁଥିଲା।

୨୪ସେ ଏପରି ଆଦେଶ ପାଇ ସେମାନଙ୍କୁ ଭିତର କୋଠରୀ
ଭିତରେ ରଖିଦେଲେ। ସେ ସେମାନଙ୍କର ଗୋଡ ବଡବଡ
କାଠ ଗଣ୍ଡି ସହିତ ବାନ୍ଧି ପକାଇଦେଲେ।

୨୫ପାଉଲ ଓ ଶୀଲା ମଧ୍ୟରାତ୍ରି ବେଳେ ପରମେଶ୍ୱରଙ୍କୁ
ପ୍ରାର୍ଥନା ଓ ସ୍ତୁତି ଗାନ କରୁଥିଲେ। ଅନ୍ୟ ବନ୍ଦୀମାନେ
ତାହାସବୁ ଶୁଣୁଥିଲେ। ୨୬ହଠାତ୍ ଖୁବ୍ ଜୋରରେ ଭୂମିକମ୍ପ
ହେଲା। ଏହାଦ୍ୱାରା କାରାଗାରର ମୂଳଦୁଆ ଟଳମଳ ହେଲା।
ଦେଖୁଦେଖୁ ସବୁ ଦ୍ୱାର ଖୋଲିଗଲା, ଓ ସମସ୍ତ ବନ୍ଦୀଙ୍କର
ଶିକୁଳି ଖୋଲିଗଲା। ୨୭କାରାଧ୍ୟକ୍ଷ ନିଦରୁ ଉଠି ବସିଲେ।
କାରାଗାରର ଦୁଆର ଗୁଡିକ ଖୋଲାଥିବାର ଦେଖି, ସେ
ନିଜକୁ ହତ୍ୟା କରିବା ଉଦ୍ଦେଶ୍ୟରେ ନିଜର ଖଣ୍ଡା ଟାଣି
ଆଣିଲେ। ସେ ଭାବିଲେ ଯେ, ବନ୍ଦୀମାନେ ଖସି ପଳାଇ
ଯାଇଛନ୍ତି। ୨୮କିନ୍ତୁ ପାଉଲ ଚିତ୍କାର କରି କହିଲେ,
"ଆମ୍ଭେ ସମସ୍ତେ ଏଠାରେ ଅଛୁ। ନିଜର କ୍ଷତି କରନାହିଁ।"

୨୯ସେ ସଙ୍ଗେସଙ୍ଗେ ଗୋଟିଏ ଦୀପ ଆଣିବାପାଇଁ ଆଦେଶ
ଦେଇ ଦୌଡ଼ି ଆସି ଭୟରେ ଥରଥର ପାଉଲ ଓ ଶୀଲାଙ୍କ
ପାଦ ତଳେ ପଡିଗଲେ। ୩୦ତା'ପରେ ସେ ସେମାନଙ୍କୁ
ବାହାରକୁ ଆଣି ପଚାରିଲେ, ମହାଶୟମାନେ, "ପରିତ୍ରାଣ
ପାଇବା ପାଇଁ ମୋର କ'ଣ କରିବା ଆବଶ୍ୟକ?"

୩୧ସେମାନେ ତାହାଙ୍କୁ କହିଲେ, "ପ୍ରଭୁ ଯୀଶୁଙ୍କଠାରେ
ବିଶ୍ୱାସ କର। ଏହି ଭାବରେ ତୁମ୍ଭେ ଓ ତୁମ୍ଭ ଘରେ
ରହୁଥିବା ସମସ୍ତେ ଉଦ୍ଧାର ପାଇପାରିବେ।" ୩୨ପାଉଲ ଓ
ଶୀଲା ତା'କୁ ଓ ତା'ଘରେ ରହୁଥିବା ସମସ୍ତଙ୍କୁ ପ୍ରଭୁଙ୍କର
ବାକ୍ୟ ପ୍ରଚାର କଲେ। ୩୩କାରାଗାରର ଅଧିକାରୀ ସେମାନଙ୍କୁ
ନେଇ ସେହି ମଧ୍ୟ ରାତ୍ରିରେ ସେମାନଙ୍କର କ୍ଷତ ବିକ୍ଷତ
ଜାଗା ଗୁଡିକୁ ଧୋଇ ସଫା କଲେ। ତାପରେ ତୁରନ୍ତ ସେ
ଓ ତାହାଙ୍କର ସମସ୍ତ ପରିବାର ବାପ୍ତିଜିତ ହେଲେ।
୩୪ତା'ପରେ ସେହି କାରାଧ୍ୟକ୍ଷ ପାଉଲ ଓ ଶୀଲାଙ୍କୁ ଘରକୁ
ଡାକି ନେଇ ଖାଇବାକୁ ଦେଲେ। ସେ ଓ ତାହାଙ୍କର
ପରିବାରର ସମସ୍ତେ ଆନନ୍ଦିତ ହେଲେ।

୩୫ସକାଳ ହେବାରୁ ବିଚାରକର୍ତ୍ତାମାନେ "ସେ ଲୋକମାନଙ୍କୁ
ଛାଡି ଦିଅ" ଏହି ବାର୍ତ୍ତା ଦେଇ କେତେକ ସୈନିକଙ୍କୁ
ପଠାଇଲେ।

୩୬କାରାଧ୍ୟକ୍ଷ ପାଉଲଙ୍କୁ କହିଲେ ଯେ, "ବିଚାରକର୍ତ୍ତାମାନେ
ଆପଣମାନଙ୍କୁ ଛାଡ଼ି ଦେବାପାଇଁ କହି ପଠାଇଛନ୍ତି। ତେଣୁ
ଆପଣମାନେ ବର୍ତ୍ତମାନ ବାହାରକୁ ଶାନ୍ତିରେ ଯାଇପାରନ୍ତି।"

୩୭କିନ୍ତୁ ପାଉଲ ସୈନିକମାନଙ୍କୁ କହିଲେ, "ସେମାନେ
ଆମ୍ଭକୁ ବିନା ବିଚାରରେ ଜନସାଧାରଣଙ୍କ ସାମନାରେ
ମାରିଛନ୍ତି। ଆମ୍ଭେ ରୋମୀୟ ନାଗରିକ। କିନ୍ତୁ ଆମ୍ଭକୁ
କାରାଗାରରେ ବନ୍ଦୀ କରି ରଖାଯାଇଛି। ବର୍ତ୍ତମାନ ସେମାନେ
ଆମ୍ଭକୁ ଚୁପ କରି ଛାଡ଼ି ଦେବାପାଇଁ କହୁଛନ୍ତି? ଏହା
ଆଦୌ ହୋଇପାରିବ ନାହିଁ।" ତେଣୁ ସେମାନେ ନିଜେ
ଆସି ବିଚାରକର୍ତ୍ତାମାନଙ୍କୁ କହିଲେ।

୩୮ସେମାନେ ପାଉଲ ଓ ଶୀଲାଙ୍କୁ ରୋମୀୟ ଜାଣି
ଡରିଗଲେ। ୩୯ତେଣୁ ସେମାନେ ଆସି ପାଉଲ ଓ ଶୀଲାଙ୍କୁ
କ୍ଷମା ମାଗିଲେ, ଓ ସେମାନଙ୍କୁ କାରାଗାରରୁ ମୁକ୍ତ କଲେ।
ତା'ପରେ ସେମାନେ ପାଉଲ ଓ ଶୀଲାଙ୍କୁ ନଗର ଛାଡ଼ିବା
ପାଇଁ ଅନୁରୋଧ କଲେ। ୪୦ପାଉଲ ଓ ଶୀଲା କାରାଗାରରୁ
ବାହାରକୁ ଆସି ଲୁଦିୟାର ଘରକୁ ଆସିଲେ। ସେଠାରେ
ଭାଇମାନଙ୍କୁ ଦେଖି ସେମାନେ ସେମାନଙ୍କୁ ଉତ୍ସାହର
ବାଣୀ ଶୁଣାଇଲେ। ତା'ପରେ ସେମାନେ ସେ ସ୍ଥାନରୁ
ଚାଲିଗଲେ।

## ପାଉଲ ଓ ଶୀଲାଙ୍କର ଥେସଲନୀକୀରେ ପ୍ରବେଶ।

୧୭ ପାଉଲ ଓ ଶୀଲା ଆଂଫିପଲି ଓ ଆପଲ୍ଲୋନିଆ
ନଗର ଦେଇ ଥେସଲନୀକୀ ନଗରରେ
ପହଞ୍ଚିଲେ। ସେଠାରେ ଯିହୂଦୀୟମାନଙ୍କର ଗୋଟିଏ ପ୍ରାର୍ଥନାଗୃହ
ଥିଲା। ୨ପାଉଲ ସେମାନଙ୍କ ପାଖକୁ ଗଲେ। ଏପରି ସେ
ସର୍ବଦା କରୁଥିଲେ। ସେ ତିନି ବିଶ୍ରାମବାର ଦିନ ପର୍ଯ୍ୟନ୍ତ
ସେମାନଙ୍କ ସହିତ ଶାସ୍ତ୍ର ଆଲୋଚନା କଲେ। ୩ସେ ପବିତ୍ର
ବାକ୍ୟ ବୁଝେଇଲେ, ଓ ସେମାନଙ୍କୁ ପ୍ରମାଣ ଦେଇ କହିଲେ
ଯେ, ଖ୍ରୀଷ୍ଟଙ୍କର ଦୁଃଖଭୋଗ କରିବାର ଓ ମୃତ୍ୟୁରୁ
ପୁନର୍ଜୀବିତ ହେବାର ଆବଶ୍ୟକତା ଥିଲା। ପାଉଲ କହିଲେ,
"ଏହି ଯୀଶୁ, ଯାହାଙ୍କ ବିଷୟରେ ମୁଁ ତୁମ୍ଭମାନଙ୍କ ନିକଟରେ
ପ୍ରଚାର କରୁଛି, ସେ ହେଉଛନ୍ତି ଖ୍ରୀଷ୍ଟ।" ୪ସେମାନଙ୍କ
ମଧ୍ୟରୁ କେତେକ ଲୋକ ପରିବର୍ତ୍ତିତ ହେଲେ, ଏବଂ
ପାଉଲ ଓ ଶୀଲାଙ୍କ ସହିତ ଯୋଗ ଦେଲେ। ସତ୍ୟ
ପରମେଶ୍ୱରଙ୍କୁ ପୂଜା କରୁଥିବା ଅନେକ ଗ୍ରୀକ୍‌ଲୋକ ଓ
ଅନେକ ପ୍ରଭାବଶାଳୀ ସ୍ତ୍ରୀ-ମାନେ ମଧ୍ୟ ସେମାନଙ୍କ ସହିତ
ଯୋଗଦେଲେ।

୫କିନ୍ତୁ ଅବିଶ୍ୱାସୀ ଯିହୂଦୀୟମାନେ ଈର୍ଷାପରାୟଣ ହୋଇ
ବଜାରରୁ ଦୁଷ୍ଟଲୋକଙ୍କ ମଧ୍ୟରୁ ଗୋଟିଏ ଦଳ ଏକାଠି
କଲେ, ଓ ନଗରରେ ଗଣ୍ଡଗୋଳ ସୃଷ୍ଟିକଲେ। ସେମାନେ
ନଗରରେ ଉପଦ୍ରବ କରି ଯାସୋନଙ୍କ ଘର ଉପରେ
ଆକ୍ରମଣ କଲେ। ସେମାନେ ପାଉଲ ଓ ଶୀଲାଙ୍କୁ ଲୋକମାନଙ୍କ
ଆଗକୁ ଧରି ଆଣିବାପାଇଁ ଚେଷ୍ଟା କଲେ। ୬ସେମାନେ
ତାହାଙ୍କୁ ନପାଇ ଯାସୋନ ଓ କେତେକ ଭାଇମାନଙ୍କୁ
ନଗରକର୍ତ୍ତାମାନଙ୍କ ନିକଟକୁ ଟାଣି ନେଲେ। ସେମାନେ
ପାଟି କରି କହିଲେ, "ଏହି ଲୋକମାନେ ସାରା ଜଗତରେ
ଭୟଙ୍କର ଅରାଜକତା ସୃଷ୍ଟି କରୁଛନ୍ତି। ସେମାନେ ବର୍ତ୍ତମାନ
ଏଠାକୁ ମଧ୍ୟ ଆସିଲେଣି।" ୭ଯାସୋନ ସେହିମାନଙ୍କୁ ଆଣି
ନିଜ ଘରେ ରଖିଛି। ଯୀଶୁ ନାମରେ ଯେ ଆଉ ଜଣେ
ରାଜା ଅଛି, ଏହା କହି ସେମାନେ ସମସ୍ତେ ଦାବୀ କରି
କାଇସରଙ୍କ ନିୟମର ବିରୁଦ୍ଧାଚରଣ କରୁଛନ୍ତି।"

୮ଜନସମୂହ ଓ ନଗରର ଶାସନକର୍ତ୍ତାମାନେ ସେମାନଙ୍କ
କଥା ଶୁଣି ବିଚଳିତ ହୋଇପଡିଲେ। ୯ପରେ
ସେମାନେ ଯାସୋନ ଓ ଅନ୍ୟମାନଙ୍କ ଠାରୁ ଜାମିନ ନେଇ
ଛାଡ଼ିଦେଲେ।

## ପାଉଲ ଓ ଶୀଲାଙ୍କର ବେରେୟାରେ ପ୍ରବେଶ

୧୦ପାଉଲ ଓ ଶୀଲାଙ୍କୁ ଭାଇମାନେ ସେହି ରାତିରେ
ସାଙ୍ଗେସାଙ୍ଗେ ବେରେୟା ନଗରକୁ ପଠାଇ ଦେଲେ।
ସେମାନେ ସେଠାରେ ପହଞ୍ଚି ଯିହୂଦୀୟମାନଙ୍କ ପ୍ରାର୍ଥନାଗୃହକୁ
ଗଲେ। ୧୧ସେଠାରେ ଲୋକମାନେ ଥେସଲନୀକୀୟ

ଲୋକମାନଙ୍କ ଅପେକ୍ଷା ବେଶି ଭଦ୍ର ଓ ଉତ୍ତମ ଥିଲେ।
ସେମାନେ ପାଉଲ ଓ ଶୀଲାଙ୍କର କଥା ଅତି ଉତ୍ସୁକତାର
ସହ ଶୁଣିଲେ। ସେମାନଙ୍କର କଥା ସତ୍ୟ ନା ମିଥ୍ୟା, ଏହି
କଥା ଜାଣିବା ପାଇଁ ସେମାନେ ପ୍ରତିଦିନ ଶାସ୍ତ୍ର ପରୀକ୍ଷା
କରି ଦେଖିଲେ। ୧୨ଅତଏବ, ଅନେକ ଯିହୂଦୀୟ ଲୋକ
ବିଶ୍ୱାସକଲେ। ଅନେକ ସମ୍ଭ୍ରାନ୍ତ ଗ୍ରୀକ ସ୍ତ୍ରୀ ଓ ପୁରୁଷମାନେ
ମଧ୍ୟ ବିଶ୍ୱାସ କଲେ। ୧୩ଥେସଲନୀକୀୟ ଯିହୂଦୀୟମାନେ
ବେରୟା ନଗରରେ ପାଉଲ ପରମେଶ୍ୱରଙ୍କର ବାକ୍ୟ
ପ୍ରଚାର କରୁଛନ୍ତି ବୋଲି ଜାଣିପାରିଲେ। ତେଣୁ ସେମାନେ
ସେଠାକୁ ଆସି ଆନ୍ଦୋଳନ କରି ଲୋକସମୂହକୁ ମତେଇଲେ।
୧୪ସେଥିପାଇଁ ଭାଇମାନେ ପାଉଲଙ୍କୁ ସମୁଦ୍ର କୂଳକୁ ପଠାଇ
ଦେଲେ, କିନ୍ତୁ ଶୀଲା ଓ ତୀମଥି ସେଠାରେ ରହିଲେ।
୧୫ଯେଉଁମାନେ ପାଉଲଙ୍କୁ ସଙ୍ଗରେ ନେଇ ଯାଇଥିଲେ
ସେମାନେ ତାହାଙ୍କୁ ଆଥୀନୀ ନଗର ପର୍ଯ୍ୟନ୍ତ ପହଞ୍ଚାଇ
ଦେଲେ। ପାଉଲ ସେମାନଙ୍କ ଦ୍ୱାରା ଖବର ଦେଲେ ଯେ,
ଶୀଲା ଓ ତୀମଥି ଆସି ତାହାଙ୍କ ସହିତ ଯୋଗଦାନ
କରନ୍ତୁ। ତାପରେ ସେମାନେ ଫେରି ଗଲେ।

**ଆଥୀନୀ ନଗରରେ ପାଉଲ**

୧୬ପାଉଲ ଆଥୀନୀ ନଗରରେ ଶୀଲା ଓ ତୀମଥିଙ୍କୁ
ଅପେକ୍ଷା କରିଥାଆନ୍ତି। ନଗର ସାରା ମୂର୍ତ୍ତିଗୁଡ଼ିକରେ ପୂର୍ଣ୍ଣ
ହୋଇଥିବାର ଦେଖି ସେ ହୃଦୟରେ ଅତି ମାତ୍ରାରେ ବିବ୍ରତ
ହୋଇପଡିଲେ। ୧୭ତେଣୁ ସତ୍ୟ ପରମେଶ୍ୱରଙ୍କୁ ଉପାସନା
କରୁଥିବା ଯିହୂଦୀୟ ଓ ଗ୍ରୀକ୍ ଲୋକମାନଙ୍କ ସହିତ ସେ
ପ୍ରାର୍ଥନାଗୃହ ଏବଂ ବଜାରକୁ ଆସୁଥିବା ଲୋକମାନଙ୍କ ସହିତ
ସେ ପ୍ରତିଦିନ କଥାବାର୍ତ୍ତା କଲେ। ୧୮ତେଣୁ କେତେକ
ଏପିକୂରୀୟ ଓ ସ୍ତୋୟିକ ଦାର୍ଶନିକମାନେ ତାହାଙ୍କ ସହିତ
ଯୁକ୍ତିତର୍କ କଲେ।

ସେମାନଙ୍କ ଭିତରୁ କେତେକ କହିଲେ, "ଏ ଲୋକଟି
କ'ଣ କହୁଛି ତାହା ସେ ଜାଣେ ନାହିଁ?" ପାଉଲ
ସେମାନଙ୍କୁ ଯୀଶୁଙ୍କ ମୃତ୍ୟୁରୁ ପୁନରୁତ୍ଥାନ ସୁସମାଚାର ସମ୍ବନ୍ଧରେ
କହୁଥିଲେ। ଅନ୍ୟମାନେ କହିଲେ, "ଦେଖ, ଏ ଲୋକଟି
କୌଣସି ବିଦେଶୀ ଦେବଦେବୀଙ୍କ ବିଷୟରେ କହୁଛି।
ସେମାନେ ଏପରି କହିଲେ, କାରଣ ପାଉଲ ଯୀଶୁ ଓ
ତାହାଙ୍କର ମୃତ୍ୟୁରୁ ପୁନର୍ଜୀବିତ ହୋଇ ଉଠିବା କଥା
ପ୍ରଚାର କରୁଥିଲେ।" ୧୯ସେମାନେ ପାଉଲଙ୍କୁ ଆରୟପାଗ
ସଭା ପାଖକୁ ନେଇଗଲେ। ସେମାନେ ତାହାଙ୍କୁ ପଚାରିଲେ,
"ତୁମ୍ଭେ ଉପଦେଶ ଦେଉଥିବା ଏହି ନୂଆ ଶିକ୍ଷା କ'ଣ,
ତାହା ଆମ୍ଭେ ଜାଣି ପାରିବୁ କି? ୨୦ତୁମ୍ଭେ ଆମ୍ଭ ନିକଟରେ
କେତେକ ଅଦ୍‌ଭୁତବିଚାରମାନ ଉପସ୍ଥାପିତ କରୁଛ, ଓ
ଆମ୍ଭେମାନେ ସେଗୁଡ଼ିକ କ'ଣ, ତାହା ଜାଣିବାକୁ ଚାହୁଁ।"
୨୧(ଆଥୀନୀୟ ବାସିନ୍ଦାମାନେ ଓ ସେଠାରେ ରହୁଥିବା ବିଦେଶୀ
ଲୋକମାନେ କିଛି କାର୍ଯ୍ୟ ନ କରି କେବଳ ନୂତନ
ବିଷୟମାନ ଶୁଣିବାରେ ଓ କଥା କହିବାରେ ସମୟ
କାଟୁଥିଲେ)।
୨୨ପାଉଲ ଆରୟପାଗ ସଭାର ସାମନାରେ ଠିଆ ହୋଇ
କହିଲେ, "ହେ ଆଥୀନୀୟ ଲୋକମାନେ, ମୁଁ ଦେଖୁଛି,
ତୁମ୍ଭେମାନେ ସବୁ ବିଷୟରେ ଅତି ଧାର୍ମିକ। ୨୩ମୁଁ ନଗରର
ଚାରିପାଖରେ ଭ୍ରମଣ କରି, ତୁମ୍ଭମାନଙ୍କର ପୂଜା କରୁଥିବା
ବସ୍ତୁମାନ ଦେଖିଲି। ମୁଁ ଗୋଟିଏ ବେଦୀ ଦେଖିଲି ଯାହା
ଉପରେ ଲେଖାଥିଲା, 'ଏକ ଈଶ୍ୱର ଯାହାଙ୍କୁ ଆମ୍ଭେ
ଜାଣିନାହୁଁ।' ତେଣୁ ତୁମ୍ଭେମାନେ ନ ଜାଣି ଯାହା ପୂଜା
କରୁଛ, ମୁଁ ତାହାଙ୍କୁ ତୁମ୍ଭମାନଙ୍କ ଆଗରେ ପ୍ରଚାର କରୁଛି।
୨୪ପରମେଶ୍ୱର ଏ ପୃଥିବୀରେ ଓ ଏଥିରେ ଥିବା ସମସ୍ତ
ବସ୍ତୁର କର୍ତ୍ତା। ସେ ସ୍ୱର୍ଗ ଓ ପୃଥିବୀର ପ୍ରଭୁ ହୋଇ
ଥିବାରୁ ସେ ମଣିଷ ନିର୍ମିତ ମନ୍ଦିର ଗଡ଼ିକରେ ରୁହନ୍ତି
ନାହିଁ। ୨୫ସେ ପରମେଶ୍ୱର ଜୀବନ ଓ ପ୍ରାଣବାୟୁ ପ୍ରଦାନ
କରନ୍ତି। ସେ ମନୁଷ୍ୟମାନଙ୍କର ସାହାଯ୍ୟ ଲୋଡ଼ନ୍ତି ନାହିଁ।
ତାହାଙ୍କର କୌଣସି ଅଭାବ ନାହିଁ। ୨୬ପରମେଶ୍ୱର ଗୋଟିଏ
ମନୁଷ୍ୟଠାରୁ ସମୁଦାୟ ମନୁଷ୍ୟ ଜାତିକୁ ତିଆରି କରିଛନ୍ତି।
ସେଥିପାଇଁ ସେମାନେ ପୃଥିବୀର ସର୍ବତ୍ର ରହନ୍ତି। ସେ
ସେମାନଙ୍କ ପାଇଁ ପୂର୍ବରୁ ନିର୍ଦ୍ଧାରିତ ସମୟ ଓ ସ୍ଥାନର
ସୀମା ମଧ୍ୟ ସ୍ଥିର କରିଛନ୍ତି, ୨୭ଯେପରି ସେମାନେ ପରମେଶ୍ୱରଙ୍କୁ
ଖୋଜି ପାଇ ପାରିବେ। ସେମାନେ ତାହାଙ୍କ ନିକଟକୁ ଯାଇ
ତାହାଙ୍କୁ ପାଇବା ପାଇଁ ଚେଷ୍ଟା କରିପାରନ୍ତି ଯଦ୍ୟପି ସେ
ଆମ୍ଭମାନଙ୍କ ମଧ୍ୟରୁ କାହାରିଠାରୁ ଦୂରରେ ନାହାଁନ୍ତି।

୨୮ 'କାରଣ ଆମ୍ଭେ ତାହାଙ୍କ ସହିତ ବାସ କରୁ,
ତାହାଙ୍କ ସହିତ ଗତି କରୁ, ଓ ତାହାଙ୍କଠାରେ
ଆମ୍ଭର ଅସ୍ତିତ୍ୱ ଅଛି।'

ତୁମ୍ଭମାନଙ୍କ ମଧ୍ୟରୁ କେତେକ କବି ମଧ୍ୟ ଏହା କହିଛନ୍ତି
ଯେ,

'ଆମ୍ଭେମାନେ ତାହାଙ୍କର ସନ୍ତାନ।'

୨୯ଯେହେତୁ ଆମ୍ଭେମାନେ ପରମେଶ୍ୱରଙ୍କ ସନ୍ତାନ ତେଣୁ
ଆମ୍ଭେମାନେ ପରମେଶ୍ୱରଙ୍କୁ ମନୁଷ୍ୟର କୌଶଳ ଓ କଳ୍ପନାରେ
ତିଆରି ପ୍ରତିମା ବୋଲି ଭାବିବା ନାହିଁ, ବା ସୁନା କି ରୂପା
କି ପଥର ବୋଲି ମଧ୍ୟ ଭାବିବା ନାହିଁ। ୩୦ପୂର୍ବରୁ
ପରମେଶ୍ୱର ଲୋକମାନଙ୍କର ଏହି ନିର୍ବୋଧତା ଉପେକ୍ଷା
କରିଥିଲେ। ମାତ୍ର ବର୍ତ୍ତମାନ ସେ ସାରା ପୃଥିବୀର ଲୋକମାନଙ୍କୁ
ଅନୁତାପ କରି ଫେରିଆସିବା ପାଇଁ ଆଦେଶ ଦିଅନ୍ତି।
୩୧ସେ ଜଣଙ୍କୁ ନ୍ୟାୟ ବିଚାର ପାଇଁ ନିଯୁକ୍ତ ଦେଇଛନ୍ତି।
ସେ ଗୋଟିଏ ଦିନ ସ୍ଥିର କରିଛନ୍ତି, ଯେଉଁଦିନ ସେହି
ସମଗ୍ର ବିଶ୍ୱକୁ ତାହାଙ୍କ ଦ୍ୱାରା ନ୍ୟାୟ ସହିତ ବିଚାର
କରିବେ। ସେ ପ୍ରତ୍ୟେକଙ୍କ ଆଗରେ ଯୀଶୁଙ୍କର ମୃତ୍ୟୁରୁ
ବଞ୍ଚି ଉଠିବା କଥାର ପ୍ରମାଣ ଦେଇଛନ୍ତି।"
୩୨ଯେତେବେଳେ ସେମାନେ ଯୀଶୁ ମୃତ୍ୟୁରୁ ପୁନର୍ଜୀବିତ
ହୋଇଥିବା ବିଷୟରେ ଶୁଣିଲେ, ସେମାନଙ୍କ ଭିତରୁ କେତେଜଣ
ତାହାଙ୍କୁ ଉପହାସ କଲେ। ଆଉ କେତେକ କହିଲେ,
"ଆମ୍ଭେ ପରେ ଏ ବିଷୟରେ ତୁମ୍ଭଠାରୁ ଅଧିକ ଶୁଣିବୁ।"
୩୩ତେଣୁ ପାଉଲ ସେମାନଙ୍କୁ ଛାଡ଼ି ଚାଲିଗଲେ। ୩୪କେତେକ
ପାଉଲଙ୍କ ସହିତ ଯୋଗଦାନ କଲେ ଓ ବିଶ୍ୱାସ କଲେ।
ସେମାନଙ୍କ ଭିତରେ ଆରୟପାଗୀୟ ସଭାର ସଦସ୍ୟ ଦିୟନୁସିୟ

ଓ ଦାମାରି ନାମକ ଜଣେ ସ୍ତ୍ରୀଲୋକ ଓ ଅନ୍ୟମାନେ ମଧ୍ୟ
ଥିଲେ।

## ପାଉଲ କରିନ୍ଥରେ

୧୮ ପାଉଲ ଆଥୀନୀ ନଗର ଛାଡି କରିନ୍ଥ ନଗରକୁ
ଆସିଲେ। [୨]ସେଠାରେ ସେ ପନ୍ତ ଦେଶୀୟ
ଆକ୍ୱିଲା ନାମକ ଜଣେ ଯିହୂଦୀୟକୁ ଭେଟିଲେ। ସେ ତାର
ସ୍ତ୍ରୀ ପ୍ରୀସ୍କିଲ୍ଲା ସହିତ ସଦ୍ୟ ଇତାଲିଆ ଦେଶରୁ ଆସିଥିଲେ।
ସେ ସମୟରେ କ୍ଲାଉଦିଅ ସମ୍ରାଟ ସମସ୍ତ ଯିହୂଦୀୟମାନଙ୍କୁ
ରୋମ୍ ଛାଡ଼ି ଚାଲିଯିବାପାଇଁ ଆଦେଶ ଦେଇଥିଲେ। ତେଣୁ
ସେମାନେ ଇତାଲିଆ ଛାଡି ଚାଲିଆସି ଥିଲେ। ପାଉଲ
ସେମାନଙ୍କୁ ଦେଖିବା ପାଇଁ ଯାଇଥିଲେ। [୩]ସେମାନେ ତମ୍ବୁ
ବ୍ୟବସାୟୀ ଥିଲେ। ପାଉଲ ମଧ୍ୟ ସେହି ବ୍ୟବସାୟୀ
ଥିଲେ। ତେଣୁ ସେ ମଧ୍ୟ ସେମାନଙ୍କ ସହିତ ରହି ସେହି
କାମ କଲେ। [୪]ପାଉଲ ପ୍ରତି ବିଶ୍ରାମବାର ଦିନ
ପ୍ରାର୍ଥନାସଭାଗୃହରେ ଯିହୂଦୀୟ ଓ ଗ୍ରୀକ୍‌ମାନଙ୍କ ସହିତ ଚର୍ଚ୍ଚା
କରୁଥିଲେ, ଓ ଉପଦେଶ ଦ୍ୱାରା ସେମାନଙ୍କର ବିଶ୍ୱାସ
ଜନ୍ମାଇବାକୁ ଚେଷ୍ଟା କରୁଥିଲେ।
[୫]ଶୀଲା ଓ ତୀମଥି ମାକିଦନିଆରୁ କରିନ୍ଥକୁ ଆସିବା
ପରେ ପାଉଲ ତାହାଙ୍କର ସବୁ ସମୟ ସୁସମାଚାର ପ୍ରଚାର
କରିବାରେ ଦେଲେ। ସେ ଯିହୂଦୀୟମାନଙ୍କ ଆଗରେ ପ୍ରମାଣିତ
କରି ଦେଲେ ଯେ, ଯୀଶୁ ଖ୍ରୀଷ୍ଟ ଅଟନ୍ତି। [୬]କିନ୍ତୁ ସେମାନେ
ଯେତେବେଳେ ତାହାଙ୍କୁ ବାଧା ଦେଲେ, ଓ ନାନା ଖରାପ
କଥା କହିଲେ, ପାଉଲ ଏହାର ବିରୁଦ୍ଧରେ ନିଜର ଲୁଗାପଟାର
ଧୂଳି ଝାଡ଼ି ଦେଲେ। ସେ କହିଲେ, "ଯଦି ତୁମ୍ଭେମାନେ
ଉଦ୍ଧାର ପାଉନାହଁ ତାହାହେଲେ ଏହା ମୋର ଦୋଷ
ନୁହେଁ। ମୁଁ ସମସ୍ତ ଚେଷ୍ଟା କରି ସାରିଛି। ମୁଁ ଏବେଠାରୁ
ଅଣଯିହୂଦୀମାନଙ୍କ ପାଖକୁ ଯିବି।" [୭]ପାଉଲ ପ୍ରାର୍ଥନାଗୃହ
ଛାଡ଼ି ସତ୍ୟ ପରମେଶ୍ୱରଙ୍କର ଜଣେ ଉପାସକ ତିତସ
ଯୁସ୍ତଙ୍କ ଘରକୁ ଗଲେ। ତାହାଙ୍କ ଘର ପ୍ରାର୍ଥନାଗୃହ ପାଖରେ
ଥିଲା। [୮]କ୍ରୀଷ୍ପ ସେ ପ୍ରାର୍ଥନାଗୃହର ମୁଖ୍ୟ ଥିଲେ। ସେ ଓ
ତାହାଙ୍କର ପରିବାରର ସମସ୍ତେ ପ୍ରଭୁଙ୍କୁ ବିଶ୍ୱାସ କଲେ।
ଅନେକ କରିନ୍ଥୀୟ ଲୋକମାନେ ପାଉଲଙ୍କ ଶିକ୍ଷା ଶୁଣିଲେ,
ବିଶ୍ୱାସ କଲେ ଓ ବାପ୍ତିଜିତ ହେଲେ।
[୯]ଦିନେ ରାତିରେ ପ୍ରଭୁ ପାଉଲଙ୍କୁ ସ୍ୱପ୍ନରେ କହିଲେ,
"ଭୟ କର ନାହିଁ। ନୀରବ ରୁହ ନାହିଁ। କଥା କୁହ।
[୧୦]ମୁଁ ତୁମ୍ଭ ସହିତ ଅଛି। କେହି ତୁମ୍ଭର କିଛି କ୍ଷତି
କରିବେ ନାହିଁ। ମୋର ଅନେକ ଲୋକ ଏ ନଗରରେ
ଅଛନ୍ତି।" [୧୧]ତେଣୁ ପାଉଲ ସେଠାରେ ଦେଢ଼ ବର୍ଷ ପର୍ଯ୍ୟନ୍ତ
ରହିଲେ, ଓ ସେମାନଙ୍କୁ ପରମେଶ୍ୱରଙ୍କ ସୁସମାଚାର ବିଷୟରେ
ଉପଦେଶ ଦେଲେ।

## ପାଉଲଙ୍କୁ ଗାଲ୍ଲିୟୋନଙ୍କ ସମ୍ମୁଖକୁ ଅଣା ଯିବା

[୧୨]ଗାଲ୍ଲିୟୋନ୍ ଆଖାୟାର ରାଜ୍ୟପାଳ ହେଲେ। ସେ
ସମୟରେ ଯିହୂଦୀୟମାନେ ମିଳିତ ଭାବରେ ଚେଷ୍ଟା କରି
ପାଉଲଙ୍କୁ ଆକ୍ରମଣ କଲେ। ସେମାନେ ତାହାଙ୍କୁ ଅଦାଲତକୁ
ନେଇଗଲେ। [୧୩]ସେମାନେ କହିଲେ, "ଏହି ଲୋକ ଯେଉଁ
ଉପାୟରେ ପରମେଶ୍ୱରଙ୍କ ଉପାସନା କରିବାପାଇଁ ଲୋକମାନଙ୍କୁ
ମତାଇ ଅଛି, ତାହା ଆମ୍ଭ ବ୍ୟବସ୍ଥାର ବିରୁଦ୍ଧ ଅଟେ।"
[୧୪]ପାଉଲ କହିବା ଆରମ୍ଭ କରିବା ମାତ୍ରେ ଗାଲ୍ଲିୟୋନ
ଯିହୂଦୀୟମାନଙ୍କୁ କହିଲେ, "ଯଦି ଏହା କୌଣସି ଅପରାଧ
ବା କୌଣସି ସାଂଘାତିକ ଦୁର୍ବ୍ୟବହାର ବିଷୟରେ ଅଭିଯୋଗ
ହୋଇଥାନ୍ତା ତେବେ ତୁମ୍ଭମାନଙ୍କର କଥା ଶୁଣିବା ମୋର
କର୍ତ୍ତବ୍ୟ ହୋଇଥାନ୍ତା, [୧୫]କିନ୍ତୁ ତୁମ୍ଭ ବ୍ୟବସ୍ଥାରେ ଲେଖାଥିବା
ବାକ୍ୟ ଓ ନାମ ବିରୁଦ୍ଧରେ ଏହି ବଚସା ସୃଷ୍ଟି ହୋଇଥିବାରୁ
ତୁମ୍ଭେମାନେ ନିଜେ-ନିଜେ ଏହାର ସମାଧାନ କର। ଏହି
ସବୁ ବିଷୟରେ ମୁଁ କୌଣସି ବିଚାର କରିବି ନାହିଁ।"
[୧୬]ସେ ଏହା କହି ସେମାନଙ୍କୁ ଅଦାଲତରୁ ବାହାର
କରିଦେଲେ।"
[୧୭]ତା'ପରେ ସେମାନେ ପ୍ରାର୍ଥନାଗୃହର ପ୍ରଧାନ କର୍ତ୍ତା
ସୋସ୍ଥିନାଙ୍କୁ ଧରିନେଇ ଅଦାଲତ ସାମନାରେ ପିଟିଲେ।
କିନ୍ତୁ ଗାଲ୍ଲିୟୋନ ଏଥିପ୍ରତି ମୋଟେ ଦୃଷ୍ଟି ଦେଲେ ନାହିଁ।

## ପାଉଲଙ୍କ ଆନ୍ତିୟଖିଆକୁ ଫେରିବା

[୧୮]ପାଉଲ ସେଠାରେ ଭାଇମାନଙ୍କ ସହିତ ଅନେକ ଦିନ
ରହିଲେ। ତାପରେ ସେ ବିଦାୟ ନେଇ ଜଳପଥରେ
ସିରିଆ ଦେଶକୁ ଗଲେ। ତାହାଙ୍କ ସହିତ ପ୍ରୀସ୍କିଲ୍ଲା ଓ
ଆକ୍ୱିଲା ମଧ୍ୟ ଗଲେ। ପରମେଶ୍ୱରଙ୍କ ନିକଟରେ ଏକ
ଶପଥ କରିଥିବାରୁ ପାଉଲ କେଙ୍କ୍ରେୟାରେ ଲଣ୍ଡା ହେଲେ।
[୧୯]ତା'ପରେ ସେମାନେ ଏଫିସ ନଗରରେ ପହଞ୍ଚିଲେ।
ସେଠାରେ ପାଉଲ ପ୍ରୀସ୍କିଲ୍ଲା, ଓ ଆକ୍ୱିଲାଙ୍କୁ ଛାଡ଼ି ନିଜେ
ପ୍ରାର୍ଥନାଗୃହରେ ପ୍ରବେଶ କଲେ, ଓ ଯିହୂଦୀୟମାନଙ୍କ ସହିତ
କଥାବାର୍ତ୍ତା କଲେ। [୨୦]ସେମାନେ ତାହାଙ୍କୁ ସେଠାରେ ଆଉ
କିଛି ଦିନ ରହିବାକୁ କହିଲେ, କିନ୍ତୁ ସେ ରାଜି ହେଲେ
ନାହିଁ। [୨୧]ସେ ଗଲାବେଳେ କହିଲେ, "ଯଦି ପରମେଶ୍ୱର
ଚାହାଁନ୍ତି, ତେବେ ମୁଁ ପୁଣି ତୁମ୍ଭମାନଙ୍କ ପାଖକୁ ଆସିବି।"
ତା'ପରେ ସେ ଜଳପଥରେ ଏଫିସରୁ ବିଦାୟ ନେଲେ।
[୨୨]ପାଉଲ କାଇସରୀଆରେ ପହଞ୍ଚି ଯିରୂଶାଲମର ମଣ୍ଡଳୀକୁ
ଯାଇ ସେମାନଙ୍କ ସହିତ ସାକ୍ଷାତ କଲେ। ତା'ପରେ ସେ
ଆନ୍ତିୟଖିଆ ନଗରକୁ ଗଲେ। [୨୩]ସେଠାରେ ପାଉଲ କିଛି
ଦିନ ରହିଲେ। ତାପରେ ସେ ଗାଲାତୀୟ ଓ ଫ୍ରୁଗିଆ
ଅଞ୍ଚଳକୁ ଚାଲିଗଲେ। ସେଠାରେ ସେ ସହରରୁ ସହର
ବୁଲି ଯୀଶୁଙ୍କର ସମସ୍ତ ଶିଷ୍ୟମାନଙ୍କୁ ବଳବାନ୍ କଲେ।

## ଏଫିସ ଓ କରିନ୍ଥରେ ଆପଲ୍ଲ

[୨୪]ଆପଲ୍ଲ ନାମକ ଜଣେ ଯିହୂଦୀୟ ସେଠାରେ ଥିଲେ।
ତାହାଙ୍କର ଜନ୍ମସ୍ଥାନ ଆଲେକ୍‌ଜାଣ୍ଡ୍ରିୟା। ସେ ଏଫିସ ନଗରକୁ
ଆସିଲେ। ସେ ଜଣେ ଅତି ଭଲ ବକ୍ତାଥିଲେ। ଧର୍ମ
ଶାସ୍ତ୍ରରେ ତାହାଙ୍କର ବହୁତ ଭଲ ଜ୍ଞାନ ଥିଲା। [୨୫]ତାହାଙ୍କୁ
ପ୍ରଭୁଙ୍କ ପଥ ବିଷୟରେ ଶିକ୍ଷା ଦିଆଯାଇ ଥିଲା, ଓ ସେ
ଉତ୍ସାହଜନକ ଆତ୍ମାରେ ପୂର୍ଣ୍ଣ ହୋଇ କଥା କହୁଥିଲେ।
କେବଳ ଯୋହନଙ୍କର ବାପ୍ତିସ୍ମ ବିଷୟରେ ଜାଣିଥିଲେ ମଧ୍ୟ
ସେ ଯୀଶୁଙ୍କ ବିଷୟରେ ସମ୍ପୂର୍ଣ୍ଣ ଶିକ୍ଷା ଠିକ୍ ଭାବରେ
ଦେଉଥିଲେ। [୨୬]ସେ ନିର୍ଭୟରେ ପ୍ରାର୍ଥନାଗୃହରେ କହିବା

ଆରମ୍ଭ କଲେ। ପ୍ରିସ୍କିଲ୍ଲା ଓ ଆକ୍ୱିଲା ତାହାଙ୍କ କଥା ଶୁଣି
ତାହାଙ୍କୁ ନିଜ ପାଖକୁ ନେଇ ଆସିଲେ। ସେମାନେ
ପରମେଶ୍ୱରଙ୍କ ପଥ ବିଷୟରେ ଆହୁରି ପରିଷ୍କାର ଭାବରେ
ତାହାଙ୍କୁ ବୁଝାଇ ଦେଲେ। ୨୭ସେ ଯେତେବେଳେ ଆଖାୟାକୁ
ବାହାରିଲେ, ସେତେବେଳେ ଭାଇମାନେ ତାହାଙ୍କୁ ଉତ୍ସାହିତ
କଲେ। ସେମାନେ ତାହାଙ୍କୁ ସ୍ୱାଗତ କରିବାପାଇଁ ଶିଷ୍ୟମାନଙ୍କୁ
ପତ୍ର ଲେଖିଲେ। ସେ ସେଠାରେ ପହଞ୍ଚି, ପରମେଶ୍ୱରଙ୍କ
ଅନୁଗ୍ରହରେ ବିଶ୍ୱାସ କରିଥିବା ଲୋକମାନଙ୍କର ବହୁତ
ସାହାଯ୍ୟ କଲେ। ୨୮କାରଣ ସେ ଯିହୂଦୀମାନଙ୍କ ସହିତ
ସର୍ବସାଧାରଣରେ ଦୃଢ଼ଭାବେ ଯୁକ୍ତିତର୍କ କରି ସେମାନଙ୍କୁ
ପରାସ୍ତ କଲେ ଓ ଧର୍ମଶାସ୍ତ୍ରରୁ ପ୍ରମାଣ କରି ଦେଖାଇଦେଲେ,
ଯେ କେବଳ ଯୀଶୁ ଖ୍ରୀଷ୍ଟ ଅଟନ୍ତି।

### ପାଉଲ ଏଫିସ ନଗରରେ

୧୯ ଆପଲ୍ଲ କରିନ୍ଥରେ ଥିଲାବେଳେ ପାଉଲ ବିଭିନ୍ନ
ସ୍ଥାନସବୁ ଦେଇ ଯାତ୍ରା କରି ଏଫିସରେ ଆସି
ପହଞ୍ଚିଲେ। ତା'ପରେ ପାଉଲ ସେଠାରେ ସେ ଯୋହନଙ୍କ
କେତେକ ଶିଷ୍ୟଙ୍କୁ ଦେଖିଲେ। ୨ପାଉଲ ସେମାନଙ୍କୁ ପଚାରିଲେ,
"ତୁମ୍ଭେମାନେ ବିଶ୍ୱାସୀ ହେଲାବେଳେ ପବିତ୍ର ଆତ୍ମାଙ୍କୁ ପ୍ରାପ୍ତ
ହୋଇଥିଲ କି?"
ସେହି ଶିଷ୍ୟମାନେ ତାହାଙ୍କୁ କହିଲେ, "ଜଣେ ପବିତ୍ରଆତ୍ମା
ଯେ ଅଛନ୍ତି, ଏହା ଆମ୍ଭେମାନେ ଆଦୌ ଶୁଣି ନାହୁଁ।"
୩ସେ ପୁଣି ପଚାରିଲେ, "ତେବେ ତୁମ୍ଭେମାନେ କେଉଁଥିରେ
ବାପ୍ତିଜିତ ହୋଇଥିଲ?"
ସେମାନେ କହିଲେ, "ଯୋହନ ତୁବକ ଯେଉଁ ବାପ୍ତିସ୍ମ
ବିଷୟ ଶିକ୍ଷା ଦେଇଥିଲେ।"
୪ପାଉଲ ଏହାଶୁଣି କହିଲେ, "ଯୋହନଙ୍କର ବାପ୍ତିସ୍ମର
ଉଦ୍ଦେଶ୍ୟ ଥିଲା, ଲୋକମାନେ ଯେପରି ନିଜର ମନ
ପରିବର୍ତ୍ତନ କରନ୍ତି। ତେଣୁ ଯେଉଁମାନେ ତାହାଙ୍କ ନିକଟକୁ
ଆସୁଥିଲେ ସେ ସେହି ଲୋକମାନଙ୍କୁ ତାହାଙ୍କ ପରେ
ଆସୁଥିବା ବ୍ୟକ୍ତି, ଅର୍ଥାତ୍, ଯୀଶୁଙ୍କଠାରେ ବିଶ୍ୱାସ କରିବା
ନିମନ୍ତେ କହୁଥିଲେ।"
୫ସେମାନେ ଏକଥା ଶୁଣି ପ୍ରଭୁ ଯୀଶୁଙ୍କ ନାମରେ
ବାପ୍ତିଜିତ ହେଲେ। ୬ପାଉଲ ଯେତେବେଳେ ସେମାନଙ୍କ
ଉପରେ ହାତ ରଖିଲେ, ପବିତ୍ରଆତ୍ମା ସେମାନଙ୍କ ଉପରେ
ଓହ୍ଲାଇ ଆସିଲେ। ସେମାନେ ବିଭିନ୍ନ ପ୍ରକାର ଭାଷା ଓ
ଭବିଷ୍ୟଦ୍‌ବାଣୀ କହିବାକୁ ଲାଗିଲେ। ୭ସେମାନେ ସମୁଦାୟ
ବାର ଜଣ ଥିଲେ।
୮ତା'ପରେ ପାଉଲ ପ୍ରାର୍ଥନାଗୃହରେ ପ୍ରବେଶ କରି
ତିନିମାସ ପର୍ଯ୍ୟନ୍ତ ସାହସର ସହିତ ଯିହୂଦୀମାନଙ୍କ ସହିତ
ପରମେଶ୍ୱରଙ୍କ ରାଜ୍ୟ ବିଷୟରେ କହିଲେ। ସେ ସେମାନଙ୍କୁ
ପରମେଶ୍ୱରଙ୍କ ରାଜ୍ୟ ବିଷୟରେ କହି ସେମାନଙ୍କୁ ଗ୍ରହଣ
କରିବା ପାଇଁ ରାଜି କରାଇଲେ। ୯ମାତ୍ର ସେମାନଙ୍କ ଭିତରୁ
କେତେକ ଜିଦ୍‌ଖୋର ହୋଇ ବିଶ୍ୱାସ କଲେ ନାହିଁ।
ସେମାନେ ଲୋକମାନଙ୍କ ଆଗରେ ଖ୍ରୀଷ୍ଟଙ୍କ ପଥ ବିଷୟରେ
ବହୁତ ଖରାପ କଥା କହିବାକୁ ଲାଗିଲେ। ତେଣୁ ପାଉଲ
ସେମାନଙ୍କୁ ଛାଡି କେବଳ ଯୀଶୁଙ୍କର ଶିଷ୍ୟମାନଙ୍କୁ ସାଙ୍ଗରେ
ରଖିଲେ। ସେ ପ୍ରତିଦିନ ତୁରାନ୍ନର ବିଦ୍ୟାଳୟକୁ ଯାଇ
ଆଲୋଚନା କରୁଥିଲେ। ୧୦ଏହିପରି ଦୁଇ ବର୍ଷ ବିତିଗଲା,
ଏଥିପାଇଁ ଏସିଆର ସମସ୍ତ ବାସିନ୍ଦାମାନେ ଅର୍ଥାତ୍
ଉଭୟ ଯିହୂଦୀୟ ଓ ଗ୍ରୀକ୍‌ମାନେ ପ୍ରଭୁଙ୍କ କଥା ଶୁଣିବାକୁ
ପାଇଲେ।

### ସ୍କେବାଙ୍କ ପୁତ୍ରମାନେ

୧୧ପରମେଶ୍ୱର ପାଉଲଙ୍କ ମାଧ୍ୟମରେ ଅତି ଅସାଧାରଣ
କାର୍ଯ୍ୟମାନ କରୁଥିଲେ। ୧୨ତେଣୁ ପାଉଲ ସ୍ପର୍ଶ କରୁଥିବା
ରୁମାଲ ଓ ଗାମୁଛା ନେଇ ରୋଗୀମାନଙ୍କ ଉପରେ ପକାଇ
ଦେଉଥିଲେ ଓ ଏହିଭଳି ସେମାନେ ରୋଗରୁ ସୁସ୍ଥ
ହୋଇଯାଉଥିଲେ। ସେମାନଙ୍କ ମଧ୍ୟରୁ ଭୂତାତ୍ମା ମଧ୍ୟ
ଚାଲିଯାଉଥିଲା।
୧୩ଭୂତାତ୍ମାକୁ ଦୂର କରିବାପାଇଁ ଏଣେତେଣେ ବୁଲୁଥିବା
କେତେକ ଯିହୂଦୀୟମାନେ ମଧ୍ୟ ଭୂତାତ୍ମାକୁ ଛଡ଼ାଇବା
ନିମନ୍ତେ ପ୍ରଭୁ ଯୀଶୁଙ୍କ ନାମକୁ ବ୍ୟବହାର କରିବାପାଇଁ
ଚେଷ୍ଟା କଲେ। ସେମାନେ କହିଲେ, "ଯେଉଁ ଯୀଶୁଙ୍କୁ
ପାଉଲ ପ୍ରଚାର କରୁଛନ୍ତି ମୁଁ ତୁମ୍ଭକୁ ତାହାଙ୍କ ନାମରେ
ଆଦେଶ ଦେଉଛି।" ୧୪ସ୍କେବାଙ୍କର ସାତ ଜଣ ପୁତ୍ର
ଏହିପରି କରୁଥିଲେ। (ସ୍କେବା ଜଣେ ଯିହୂଦୀୟ ମୁଖ୍ୟ
ଯାଜକ ଥିଲେ)।
୧୫କିନ୍ତୁ ଜଣେ ଭୂତାତ୍ମା ସେମାନଙ୍କୁ କହିଲା, "ମୁଁ
ଯୀଶୁଙ୍କୁ ଚିହ୍ନେ ଓ ପାଉଲଙ୍କୁ ମଧ୍ୟ ଜାଣେ। କିନ୍ତୁ
ତୁମ୍ଭେମାନେ କିଏ?"
୧୬ଏହା କହି ସେହି ଭୂତାତ୍ମା ଥିବା ଲୋକଟି ସେମାନଙ୍କ
ଉପରେ ଡେଇଁ ପଡିଲା। ସେ ସେମାନଙ୍କୁ ମାରି ପରାସ୍ତ
କଲା। ତେଣୁ ସେମାନେ ସମସ୍ତେ ସେ ଘରୁ ଉଲଗ୍ନ ଓ
କ୍ଷତବିକ୍ଷତ ହୋଇ ଦୌଡ଼ି ଚାଲିଗଲେ। ୧୭ଏକଥା ଏଫିସ
ନଗରର ସମସ୍ତ ଯିହୂଦୀୟ ଓ ଗ୍ରୀକ୍‌ମାନେ ଜାଣି ଭୟ
କଲେ। ଏହାଦ୍ୱାରା ପ୍ରଭୁ ଯୀଶୁଙ୍କର ନାମ ଅଧିକ ଗୌରବାନ୍ୱିତ
ହେଲା। ୧୮ସେମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସ କରୁଥିଲେ,
ସେହି ଲୋକମାନେ ଆସି ସମସ୍ତଙ୍କ ସାକ୍ଷାତରେ ନିଜର
କୁକର୍ମ ସବୁ ସ୍ୱୀକାର କଲେ। ୧୯ଯେଉଁଲୋକମାନେ ଯାଦୁକର୍ମ
କରୁଥିଲେ, ସେମାନେ ସେମାନଙ୍କର ସବୁ ବହିଗୁଡ଼ିକ
ଏକାଠି କରି ଆଣି ସମସ୍ତଙ୍କ ସମ୍ମୁଖରେ ପୋଡି ପକାଇଲେ।
ସେମାନେ ଏହି ଗୁଡିକର ଦାମ ହିସାବ କରି ଦେଖିଲେ
ଯେ, ଏହାପ୍ରାୟ ପଚାଶ ହଜାର ରୌପ୍ୟମୁଦ୍ରା ମୂଲ୍ୟର ବହି
ଥିଲା। ୨୦ଏହିପରି ଭାବରେ ପ୍ରଭୁଙ୍କର କଥା ଅଧିକ
ପ୍ରଭାବଶାଳୀ ହୋଇ ଚାରିଆଡେ ବ୍ୟାପିବାକୁ ଲାଗିଲା ଏବଂ
ଅଧିକରୁ ଅଧିକ ଲୋକ ପ୍ରଭୁଙ୍କଠାରେ ବିଶ୍ୱାସ କଲେ।

### ପାଉଲଙ୍କର ଯାତ୍ରା ଯୋଜନା

୨୧ପାଉଲ ଏସବୁ ଘଟଣା ପରେ ମାକିଦନିଆ ଓ
ଆଖାୟା ବାଟ ଦେଇ ଯିରୂଶାଲମ ଯିବାପାଇଁ ନିର୍ଣ୍ଣୟ
କଲେ। ସେ କହିଲେ ଯେ, "ଯିରୁଶାଲମ ଗଲାପରେ ମୁଁ
ରୋମକୁ ଯିବା କଥା।" ୨୨ତେଣୁ ସେ ତାହାଙ୍କର ଦୁଇଜଣ
ସାହାଯ୍ୟକାରୀ ଅର୍ଥାତ୍ ତୀମଥି ଓ ଏରାଷ୍ଟଙ୍କୁ ମାକିଦନିଆକୁ

ପଠାଇଲେ। ସେ ନଜେ ଆଉ କଛ ଅଧିକ ସମୟ
ଏସିଆରେ କଟାଇଲେ।

### ଏଫିସରେ ଉପଦ୍ରବ

୨୩ସେସମୟରେ 'ପରମେଶ୍ୱରଙ୍କ ପଥ' ବଷୟରେ ଗୋଟିଏ
ବଡ ଧରଣର ଆନ୍ଦୋଳନ ହେଲା। ୨୪ସେଠାରେ ଦୀମୀତ୍ରିୟ
ନାମକ ଜଣେ ରୁପା ବଣିଆ ଥିଲା। ସେ ଦେବୀ ଆର୍ତ୍ତେମୀର
ରୁପା ମନ୍ଦିର ନର୍ମାଣ କରୁଥିଲା। ସେ ରୁପା କାରୀଗରମାନଙ୍କୁ
ବହୁତ କାର୍ଯ୍ୟ ଯୋଗାଇ ଦେଉଥିଲା। ୨୫ସେ ସେମାନଙ୍କୁ,
ଓ ଏହ କାମ କରୁଥିବା ଅନ୍ୟ କର୍ମୀମାନଙ୍କୁ ଏକାଠି କର
କହଲା, "ହେ ଲୋକମାନେ, ତୁମ୍ଭେମାନେ ଜାଣିଛ ଯେ,
ଆମ୍ଭେ ଏ କାମରୁ ବହୁତ ଲାଭ କରୁଛୁ। ୨୬ତୁମ୍ଭେମାନେ
ଦେଖୁଛ ଓ ଶୁଣୁଛ ଯେ, ଏହ ପାଉଲ କେବଳ ଏଫିସ
ନଗରରେ ନୁହେଁ, ପୁରା ଏସିଆରେ ଲୋକମାନଙ୍କୁ ମତେଇ
ପ୍ରଭାବତ କରୁଛ। ସେ କହୁଛ ଯେ, ମନୁଷ୍ୟର ହାତ
ତିଆର ଦେବତାମାନେ ପ୍ରକୃତ ଦେବତା ନୁହଁନ୍ତ। ୨୭ଏହାଦ୍ୱାରା
କେବଳ ଆମ୍ଭ କାର୍ଯ୍ୟର କ୍ଷତି ଘଟିବ ନାହିଁ ମାତ୍ର
ମହାଦେବୀ ଆର୍ତ୍ତେମୀର ମନ୍ଦିରର ମଧ କୌଣସି ଗୁରୁତ୍ୱ
ରହବ ନାହିଁ। ସମଗ୍ର ଏସିଆ ଓ ପୃଥିବୀର ଲୋକମାନେ
ଯେଉଁ ଦେବୀଙ୍କୁ ପୂଜା କରନ୍ତ, ତାହାର ମହମା ମଧ ନଷ୍ଟ
ହୋଇଯିବ।"

୨୮ସେମାନେ ଏହା ଶୁଣି ଭୀଷଣ ରାଗିଗଲେ ଓ ଚିତ୍କାର
କର କହଲେ, "ଏଫିସୀୟମାନଙ୍କର ଆର୍ତ୍ତେମୀ ମହାଦେବୀ
ମହାନ୍ ଅଟନ୍ତ।" ୨୯ସମ୍ପୂର୍ଣ୍ଣ ସହରରେ ଚହଳ ପଡଗଲା।
ପାଉଲଙ୍କ ସହଯାତ୍ରୀ ମାକଦନୀୟା ନବାସୀ ଗାୟ ଓ
ଆରସ୍ତାର୍ଖଙ୍କୁ ଧରନେଇ ସେମାନେ ଖେଳ ପଡ଼ିଆ ଆଡକୁ
ଦୌଡଲେ। ୩୦ପାଉଲ ଭିତରକୁ ଯିବାପାଇଁ ଇଚ୍ଛା କଲେ
କନ୍ତୁ ଶିଷ୍ୟମାନେ ତାହାଙ୍କୁ ଯିବାକୁ ଦେଲେ ନାହିଁ।
୩୧ସେହ ଦେଶର କେତେକ ନେତାମାନେ ପାଉଲଙ୍କର ବନ୍ଧୁ
ଥିଲେ। ସେମାନେ ତାହାଙ୍କୁ ଖେଳପଡ଼ିଆ ପାଖକୁ ନ
ଯିବାପାଇଁ ଅନୁରୋଧ କର ଖବର ପଠାଇଲେ। ୩୨ଏହ
ସମୟ ଭିତରେ ନାନା ଲୋକ ନାନା କଥା କହଲେ ଓ
ପାଟିକଲେ। ଅଧିକାଂଶ ଲୋକମାନେ ସେମାନଙ୍କର ଏକାଠି
ହେବାର କାରଣ ଜାଣି ନ ଥିଲେ। ଏହା ଫଳରେ
ସଭାରେ ପାଟିଗୁଣ୍ଡ ହେଉଥିଲା। ୩୩ସେତେବେଳେ
ଯିହୂଦୀୟମାନେ ଆଲେକ୍‌ଜାଣ୍ଡରକୁ ଆଗକୁ ପଠାଇଥିଲେ ଓ
ତାହାଙ୍କୁ କଛ କହବା ପାଇଁ ଉପଦେଶ ଦେଉଥିଲେ।
ଆଲେକଜାଣ୍ଡର ଲୋମାନଙ୍କ ଆଗରେ ହାତ ହଲେଇ
ସେମାନଙ୍କୁ ବୁଝାଇବା ପାଇଁ ଚେଷ୍ଟା କରୁଥିଲେ। ୩୪କନ୍ତୁ
ଯେତେବେଳେ ଲୋକମାନେ ଆଲେକ୍‌ଜାଣ୍ଡରଙ୍କୁ ଜଣେ ଯିହୂଦୀୟ
ବୋଲ ଜାଣି ପାରଲେ, ସେତେବେଳେ ସେମାନେ ଦୁଇ
ଘଣ୍ଟା ପର୍ଯ୍ୟନ୍ତ ଚିତ୍କାର କଲେ ଓ କହଲେ, "ଏଫିସୀୟମାନଙ୍କର
ମହାଦେବୀ ଆର୍ତ୍ତେମୀ ମହାନ୍ ଅଟନ୍ତ...।"

୩୫ଏହାଶୁଣି ନଗରର ବେବର୍ତ୍ତା ଜନଗହଳକୁ ଶାନ୍ତ
କରେଇ କହଲେ, "ହେ ଏଫିସୀୟ ବାସିନ୍ଦାମାନେ, ସାରା
ପୃଥିବୀର କଏ ନ ଜାଣେ ଯେ, ଏଫିସ ନଗର, ଆର୍ତ୍ତେମୀ
ମହାଦେବୀ ଓ ସ୍ୱର୍ଗରୁ ପଡଥିବା ପବତ୍ର ଶିଳାର ମନ୍ଦିରର
ରକ୍ଷକ ଅଟେ? ୩୬ଏକଥା କେହ ଅସତ୍ୟ ବୋଲ କହପାରବେ
ନାହିଁ। ତେଣୁ ତୁମ୍ଭେମାନେ ଶାନ୍ତ ରହବାଉଚତ। ପ୍ରଥମେ
କଛ ନ ଭାବ ତୁମ୍ଭେମାନେ କଛ କରବା ଅନୁଚତ।
୩୭ତୁମ୍ଭେମାନେ ଯେଉଁ ଲୋକମାନଙ୍କୁ ଏଠାକୁ ଆଣିଛ,
ସେମାନେ କୌଣସି ମନ୍ଦିର ଲୁଟ କର ନାହାଁନ୍ତ ବା ଆମ୍ଭ
ଦେବୀଙ୍କର ଅପମାନ କର ନାହାଁନ୍ତ।" ୩୮ସେ କହଲେ,
"ଆମ୍ଭର ବଚାରାଳୟ ଅଛ ଓ ବଚାରକମାନେ ମଧ ଅଛନ୍ତ।
ଯଦ କାହାର ବରୁଦ୍ଧରେ ଦୀମୀତ୍ରିୟ ବା ତାର କାରୀଗରମାନଙ୍କର
କୌଣସି ଅଭିଯୋଗ ଥାଏ, ସେମାନେ ସେଠାକୁ ଯାଇ
ପରସ୍ପର ବରୁଦ୍ଧରେ ଅଭିଯୋଗ ଆଣି ପାରନ୍ତ। ୩୯ମାତ୍ର
ତୁମ୍ଭମାନଙ୍କର ଯଦ ଆଉ କଛ ବଷୟ ଅଛ, ତେବେ ତାହା
ନୟମିତ ଜନସଭାରେ ବଚାର କରାଯାଇ ପାରବ। ୪୦ଆଜିର
ଜନ ସଭାରେ ଆନ୍ଦୋଳନ ସକାଶେ ଆମ୍ଭେ ଦୋଷୀ
ହୋଇପାରୁ, ଯେହେତୁ ଆମ୍ଭପାଖରେ ଏହାର କୌଣସି
ଯଥାର୍ଥ କାରଣ ନାହିଁ।" ୪୧ଏହା କହ ସେ ସଭା
ଭାଙ୍ଗିଲେ। ତା'ପରେ ସେ ଲୋକମାନଙ୍କୁ ଘରକୁ ଯିବାପାଇଁ
କହଲେ। ସମସ୍ତେ ଚାଲଗଲେ।

### ପାଉଲଙ୍କ ମାକଦନଆ ଓ ଗ୍ରୀସ୍ ଯାତ୍ରା

**୨୦** ଉତ୍ତେଜନା ଶାନ୍ତ ହେବା ପରେ ପାଉଲ ଯୀଶୁଙ୍କର
ଶିଷ୍ୟମାନଙ୍କୁ ଡକାଇ ପଠାଇଲେ ଓ ସେମାନଙ୍କୁ
ଉତ୍ସାହତ କଲେ। ତାପରେ ସେମାନଙ୍କଠାରୁ ବଦାୟ ନେଇ
ସେ ମାକଦନଆକୁ ଯାତ୍ରା କଲେ। ୨ସେହ ଅଞ୍ଚଳ ଦେଇ
ଯିବାବେଳେ ଯୀଶୁଙ୍କ ଅନୁଗାମୀ ଲୋକମାନଙ୍କୁ ବଳପ୍ରଦାନ
କରବା ପାଇଁ ସେ ସେମାନଙ୍କୁ ଉତ୍ସାହନଜକ କଥା
କହଲେ। ତାପରେ ସେ ଗ୍ରୀସ୍‌ରେ ପହଞ୍ଚିଲେ। ୩ସେଠାରେ
ସେ ତିନମାସ ପର୍ଯ୍ୟନ୍ତ ରହଲେ। ସେଠାରୁ ସୁରଆକୁ
ଜଳଯାତ୍ରା କରବାପାଇଁ ଚାହିଁଲେ। କନ୍ତୁ ଯିହୂଦୀମାନେ
ତାହାଙ୍କ ବରୁଦ୍ଧରେ ଷଡଯନ୍ତ୍ର କରବାରୁ ସେ ମାକଦନଆକୁ
ଫେରି ଯିବାପାଇଁ ସ୍ଥିର କଲେ। ୪ତାହାଙ୍କ ସହତ ବେରୟା
ନଗରର ପୁରଙ୍କ ପୁତ୍ର ସୋପାତ୍ର, ଥେସଲନୀକୀୟର ଆରସ୍ତାର୍ଖ
ଓ ସେକୁନ୍ଦ, ଦର୍ବୀର ଗାୟ, ଓ ତୀମଥି, ଏସିଆର ତୁଖିକ
ଓ ତ୍ରଫିମ ଗଲେ। ୫ଏମାନେ ସମସ୍ତେ ଆଗେ ଯାଇ
ତ୍ରୋୟା ନଗରରେ ଅମ୍ଭମାନଙ୍କୁ ଅପେକ୍ଷା କଲେ। ୬ଖମୀରବହୀନ
ରୋଟୀର ପର୍ବ ପରେ ଆମ୍ଭେ ଫିଲପ୍ପୀ ନଗରରୁ ଜଳପଥରେ
ସେମାନଙ୍କ ପାଖରେ ତ୍ରୋୟାରେ ପହଞ୍ଚିଲୁ। ଆମ୍ଭେ ସେଠାରେ
ସାତ ଦନ ପର୍ଯ୍ୟନ୍ତ ରହଲୁ।

### ପାଉଲଙ୍କର ତ୍ରୋୟା ଯାତ୍ରା

୭ଆମ୍ଭେ ସପ୍ତାହର ପ୍ରଥମ ଦନ ପ୍ରଭୁଭୋଜର ରୋଟୀ
ଭାଙ୍ଗିବା ପାଇଁ ଏକାଠି ହେବା ବେଳେ ପାଉଲ ସେମାନଙ୍କୁ
ପ୍ରଭୁଙ୍କ କଥା କହବା ଆରମ୍ଭ କଲେ। କାରଣ ସେ
ତହିଁଆର ଦନ ଚାଲଯିବା ପାଇଁ ଯୋଜନା କର ମଧ୍ୟରାତ୍ରି
ପର୍ଯ୍ୟନ୍ତ ସେମାନଙ୍କୁ ଉପଦେଶ ଦେଲେ। ୮ଆମ୍ଭେ ଯେଉଁଠି
ଏକାଠି ହୋଇଥିଲୁ, ସେହ ଉପରଘରେ ଅନେକ ଗୁଡଏ
ଦୀପ ଥିଲା। ୯ଇଉତୁଖ ନାମକ ଜଣେ ଯୁବକ ଝରକା
କଡ଼ରେ ବସି ଖୁବ୍ ନଦରେ ଶୋଇ ପଡଥିଲା। ପାଉଲ

କହି ଚାଲୁଥିଲାବେଳେ ସେ ନିଘୋଡ଼ ନିଦରେ ଶୋଇପଡ଼ି
ତିନି ମହଲାରୁ ଖସି ପଡ଼ିଲା। ଯେତେବେଳେ ସେମାନେ
ତାହାକୁ ଉଠାଇଲେ, ସେ ମରିସାରିଥିଲା। ୧୦ପାଉଲ ତଳକୁ
ଆସି ଆଣ୍ଠେଇ ପଡ଼ିଲେ, ଓ ତାହାକୁ ନିଜ ହାତରେ
ଟେକିନେଲେ, ଓ କହିଲେ, "ତୁମ୍ଭେମାନେ ବ୍ୟସ୍ତ ହୁଅ
ନାହିଁ। ସେ ଏବେ ଜୀବିତ ହେବ।" ୧୧ତାପରେ ପାଉଲ
ଉପରକୁ ଯାଇ ରୋଟୀ ଭାଙ୍ଗି ଖାଇଲେ। ସେ ସେମାନଙ୍କ
ସହିତ ଅଧିକ ସମୟ ପାହାନ୍ତିଆ ପର୍ଯ୍ୟନ୍ତ କଥାବାର୍ତ୍ତା କରି
ପ୍ରସ୍ଥାନ କଲେ। ୧୨ସେମାନେ ଯୁବକକୁ ଜୀବିତ ପାଇ
ଘରକୁ ନେଇ ଗଲେ, ଓ ବହୁତ ଆଶ୍ୱସ୍ତ ହେଲେ।

## ତ୍ରୋୟାରୁ ମିତୁଲୀନୀକୁ ଯାତ୍ରା

୧୩ଆମ୍ଭେମାନେ ସେଠାରୁ ଜାହାଜରେ ଆସସ୍ ନଗରକୁ
ଯାତ୍ରା କଲୁ। ସେଠାରୁ ପାଉଲଙ୍କୁ ନେବାପାଇଁ ଭାବିଥିଲୁ।
ସେ ସ୍ଥଳ ମାର୍ଗରେ ଚାଲି ଯିବାପାଇଁ ଇଚ୍ଛା କଲେ।
୧୪ପରେ ପାଉଲ ଆମ୍ଭ ସହିତ ଆସସ ନଗରରେ ଦେଖାଦେଲେ।
ସେ ଆମ୍ଭ ସହିତ ଜାହାଜରେ ଚଢ଼ିଲେ, ଓ ମିତୁଲୀନୀ
ନାମକ ବନ୍ଦର ନଗରୀକୁ ଆସିଲୁ। ୧୫ତହିଁ ଆରଦିନ ଆମ୍ଭେ
ସେଠାରୁ ଜାହାଜରେ ଖିଅ ଉପଦ୍ୱୀପ ସାମନାରେ ଆସି
ପହଞ୍ଚିଲୁ। ତାପରେ ଦ୍ୱିତୀୟ ଦିନ ଆମ୍ଭେ ମୀଲୀତ ନଗରରେ
ପହଞ୍ଚିଲୁ। ୧୬ପାଉଲ ଏସିଆରେ ଅଧିକ ସମୟ ରହିବାପାଇଁ
ଇଚ୍ଛା କରୁ ନଥିଲେ। ସେ ଏଫିସରେ ନ ଅଟକିବା ପାଇଁ
ନିର୍ଣ୍ଣୟ କଲେ। ସମ୍ଭବହେଲେ ସେ ପେଣ୍ଟିକଷ୍ଟ ଦିନ ସୁଦ୍ଧା
ଯିରୂଶାଲମରେ ପହଞ୍ଚିବାପାଇଁ ତର-ତର ହେଉଥିଲେ।

## ପାଉଲଙ୍କର ଏଫିସ ନଗରର ପ୍ରାଚୀନ ଲୋକଙ୍କ ସହିତ କଥାବାର୍ତ୍ତା।

୧୭ପାଉଲ ମୀଲୀତ ଠାରୁ ଏଫିସକୁ ଲୋକ ପଠାଇ
ମଣ୍ଡଳୀର ପ୍ରାଚୀନମାନଙ୍କୁ ଡକାଇଲେ। ୧୮ସେ ସେମାନଙ୍କୁ
ଆସି ପହଞ୍ଚିବା ପରେ କହିଲେ, "ମୁଁ ଏସିଆରେ ପହଞ୍ଚିବାର
ପ୍ରଥମ ଦିନଠାରୁ ତୁମ୍ଭମାନଙ୍କ ପାଖରେ ଅଛି। ତୁମ୍ଭମାନଙ୍କ
ସହିତ ରହିଲା ବେଳେ ମୁଁ କିଭଳି ଜୀବନଯାପନ କରିଛି,
ତାହା ତୁମ୍ଭେମାନେ ଜାଣ। ୧୯ଯିହୂଦୀମାନେ ମୋ ବିରୁଦ୍ଧରେ
ବହୁତ ଷଡଯନ୍ତ୍ର କରିଛନ୍ତି। ସେମାନେ ମୋତେ ବହୁତ
ଅସୁବିଧାରେ ପକାଇଛନ୍ତି। ତଥାପି ମୁଁ ସମ୍ପୂର୍ଣ୍ଣ ନମ୍ରତାର
ସହିତ ଅଶ୍ରୁପାତ କରି ପ୍ରଭୁଙ୍କର ସେବା କରିଛି। ୨୦ଯେଉଁ
ସବୁ ବିଷୟ ତୁମ୍ଭମାନଙ୍କ ନିମନ୍ତେ ମଙ୍ଗଳଜନକ, ସେହିସବୁ
ତୁମ୍ଭମାନଙ୍କ ନିକଟରେ ମୁଁ ବିନା ସଙ୍କୋଚରେ ପ୍ରଚାର
କରିଛି। ଜନସାଧାରଣଙ୍କ ସାମନାରେ ଓ ଘରେଘରେ ବୁଲି
ମୁଁ ତୁମ୍ଭମାନଙ୍କୁ ଉପଦେଶ ଦେଇଛି। ୨୧ମୁଁ ଯିହୂଦୀ ଓ
ଗ୍ରୀକ ଏବଂ ସମସ୍ତ ଲୋକମାନଙ୍କୁ ମନ ପରିବର୍ତ୍ତନ କରି
ପରମେଶ୍ୱରଙ୍କ ନିକଟକୁ ଆସିବା ଓ ଆମ୍ଭମାନଙ୍କ ପ୍ରଭୁ
ଯୀଶୁଙ୍କଠାରେ ବିଶ୍ୱାସ କରିବା ନିମନ୍ତେ ଚେତାଇ ଦେଇଅଛି।
୨୨କିନ୍ତୁ ମୁଁ ବର୍ତ୍ତମାନ ପବିତ୍ର ଆତ୍ମାଙ୍କର ବାଧ୍ୟ ହୋଇ
ଯିରୂଶାଲମକୁ ଯାଉଛି। ମୁଁ ଜାଣିନାହିଁ, ମୋର ସେଠାରେ
କ'ଣ ହେବ। ୨୩ମୋତେ ପବିତ୍ର ଆତ୍ମା ଜଣାଉଅଛନ୍ତି ଯେ
ପ୍ରତି ନଗରରେ ମୁଁ କାରାବରଣ ଓ ଅସୁବିଧା ଭୋଗ
କରିବି। ୨୪କିନ୍ତୁ, ମୁଁ ପ୍ରଭୁ ଯୀଶୁଙ୍କଠାରୁ ପରମେଶ୍ୱରଙ୍କ
ଅନୁଗ୍ରହଜନକ ସୁସମାଚାର ଘୋଷଣା କରିବାର ଯେଉଁ
କାର୍ଯ୍ୟ ଓ ସେବା ପଦ ପାଇଅଛି, ତାହା ସମ୍ପୂର୍ଣ୍ଣ କରିବା
ନିମନ୍ତେ ପ୍ରାଣପଣ ଚେଷ୍ଟା କରୁଛି। ଏଥିପାଇଁ ମୋ ନିଜର
ଜୀବନକୁ ନିତାନ୍ତ ମୂଲ୍ୟହୀନ ମଣୁଅଛି।
୨୫"ମୁଁ ଯେଉଁମାନଙ୍କ ନିକଟରେ ପରମେଶ୍ୱରଙ୍କ ରାଜ୍ୟବିଷୟ
ଘୋଷଣା କରିଥିଲି, ଅର୍ଥାତ୍ ତୁମ୍ଭେମାନେ, ତୁମ୍ଭମାନଙ୍କ
ମଧ୍ୟରୁ କେହିହେଲେ ବର୍ତ୍ତମାନଠାରୁ ମୋତେ ଆଉ
କେବେହେଲେ ଦେଖିବାକୁ ପାଇବ ନାହିଁ; ଏହା ମୁଁ ଜାଣେ।
୨୬ତେଣୁ ମୁଁ ଆଜି ତୁମ୍ଭକୁ ଗୋଟିଏ କଥା କହୁଛି। ମୁଁ
ତୁମ୍ଭମାନଙ୍କର ରକ୍ତପାତ ଦୋଷରୁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଅଟେ।
୨୭କାରଣ ମୁଁ ତୁମ୍ଭମାନଙ୍କୁ ଆଗରେ ପରମେଶ୍ୱରଙ୍କର ସମସ୍ତ
ଇଚ୍ଛା ବିନାସଙ୍କୋଚରେ ଜଣାଇ ସାରିଛି। ୨୮ତେଣୁ ତୁମ୍ଭେମାନେ
ସମସ୍ତେ ନିଜେନିଜେ ସାବଧାନ ରୁହ। ପୁଣି ପବିତ୍ର ଆତ୍ମା
ଯେଉଁ ମେଷପଲ ଉପରେ ତୁମ୍ଭମାନଙ୍କୁ ମେଷପାଳକ ରୂପେ
ନିଯୁକ୍ତ କରିଅଛନ୍ତି, ସେମାନଙ୍କ ବିଷୟରେ ସତର୍କ ରୁହ; ଓ
ଯେଉଁ ମଣ୍ଡଳୀକୁ ପରମେଶ୍ୱର ଆପଣା ରକ୍ତରେ କ୍ରୟ
କରିଅଛନ୍ତି ତାହାର ଯତ୍ନ ନିଅ। ୨୯ମୁଁ ଜାଣେ, ମୋ
ଗଲାପରେ ଜଙ୍ଗଲୀ ଗଧିଆ ତୁମ୍ଭମାନଙ୍କ ମଧ୍ୟକୁ ଆସିବେ।
ସେମାନେ ଏହି ମେଷ ପଲକୁ ନଷ୍ଟ କରିବାପାଇଁ ଚେଷ୍ଟା
କରିବେ। ୩୦ଏପରିକି ତୁମ୍ଭମାନଙ୍କ ଭିତରୁ ମଧ୍ୟ କେତେଜଣ
ଲୋକ ବାହାରିବେ ଓ ଭୁଲ କଥା ଉପଦେଶ ଦେଇ
ଶିଷ୍ୟମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବେ। ୩୧ତେଣୁ
ତୁମ୍ଭେମାନେ ସାବଧାନ ହୋଇରୁହ। ତୁମ୍ଭେମାନେ ମନେ
ପକାଅ ଯେ, ମୁଁ ତିନି ବର୍ଷ ପର୍ଯ୍ୟନ୍ତ ତୁମ୍ଭମାନଙ୍କ ପାଖରେ
ରହି ଆଖିର ଲୁହରେ ପ୍ରତ୍ୟେକଙ୍କୁ ଦିନରାତି ସତର୍କ ବାଣୀ
ଶୁଣାଇ ଥିଲି।
୩୨"ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ ପରମେଶ୍ୱରଙ୍କ ନିକଟରେ
ଓ ତାହାଙ୍କ ଅନୁଗ୍ରହଜନକ ବାକ୍ୟ ନିକଟରେ ସମର୍ପଣ
କରୁଅଛି। ଏହି ବାକ୍ୟ ହିଁ ତୁମ୍ଭମାନଙ୍କୁ ଶକ୍ତିଶାଳୀ କରିବ
ଓ ପରମେଶ୍ୱର ତାହାଙ୍କର ସମସ୍ତ ପବିତ୍ର ଲୋକମାନଙ୍କୁ
ଦେଇଥିବା ଅଧିକାର ତୁମ୍ଭମାନଙ୍କୁ ପ୍ରଦାନ କରିବେ। ୩୩ମୁଁ
ଯେତେବେଳେ ତୁମ୍ଭମାନଙ୍କ ସହିତ ଥିଲି, ସେତେବେଳେ ମୁଁ
କେବେ କାହାର ଟଙ୍କା ଓ ସୁନ୍ଦର ବସ୍ତ୍ର ପ୍ରତି ଲୋଭ
ଦେଖାଇ ନାହିଁ। ୩୪ତୁମ୍ଭେମାନେ ଜାଣିଛ ଯେ, ମୁଁ ନିଜେ
ମୋର ଓ ମୋ ସହିତ ରହିଥିବା ଲୋକମାନଙ୍କର ଆବଶ୍ୟକତା
ପୂରଣ କରିବା ପାଇଁ ନିଜ ହାତରେ କାର୍ଯ୍ୟ କରିଛି।
୩୫ମୋର ସମସ୍ତ କାର୍ଯ୍ୟ ଦ୍ୱାରା ମୁଁ ତୁମ୍ଭମାନଙ୍କୁ ଏହି ଆଦର୍ଶ
ଦେଖାଇଅଛି ଯେ, ଏହିପରି ପରିଶ୍ରମ କରି ଆମ୍ଭେ ଗରିବମାନଙ୍କୁ
ସାହାଯ୍ୟ କରିବା ଉଚିତ। ଆମ୍ଭେ ସମସ୍ତେ ପ୍ରଭୁ ଯୀଶୁଙ୍କର
ଏହି ବାକ୍ୟ ମନେ ରଖିବା ଉଚିତ ଯେ, 'ଗ୍ରହଣ କରିବା
ଅପେକ୍ଷା ଦାନ ଦେବା ଅଧିକ ଶ୍ରେଷ୍ଠ ଅଟେ।'"
୩୬ଏକଥା କହିବାପରେ ପାଉଲ ଆଣ୍ଠୁମାଡ଼ି ବସିଲେ ଓ
ସମସ୍ତଙ୍କ ସହିତ ପ୍ରାର୍ଥନା କଲେ। ୩୭ସେମାନେ ସମସ୍ତେ
ବହୁତ କାନ୍ଦିଲେ ଓ ପାଉଲଙ୍କୁ କୁଣ୍ଢେଇ ଧରି ଚୁମ୍ବନ
ଦେଲେ। ୩୮ସେମାନେ ତାହାଙ୍କୁ ଆଉ ଦେଖିପାରିବେ ନାହିଁ
ବୋଲି ପାଉଲ କହିଥିବା କଥା ସେମାନଙ୍କୁ ବହୁତ ଦୁଃଖ

ଦେଇଥିଲା। ସେମାନେ ସମସ୍ତେ ତାହାଙ୍କୁ ଜାହାଜ ପର୍ଯ୍ୟନ୍ତ
ଛାଡ଼ିବାକୁ ଯାଇ ବିଦାୟ ଦେଲେ।

## ପାଉଲଙ୍କ ଯିରୂଶାଲମ ଯାତ୍ରା

**୨୧** ଆମ୍ଭେମାନେ ସେମାନଙ୍କଠାରୁ ବିଦାୟ ନେଲୁ।
ତା'ପରେ ଆମ୍ଭେ ସିଧା କୋସ୍ ଉପଦ୍ୱୀପକୁ
ଜଳଯାତ୍ରା କଲୁ। ତହିଁ ଆରଦିନ ଆମ୍ଭେ ସେଠାରୁ ରୋଦା
ଉପଦ୍ୱୀପକୁ ଆସିଲୁ। ପୁଣି ସେଠାରୁ ଆମ୍ଭେ ପାତାରାରେ
ପହଞ୍ଚିଲୁ। ୨ପାତାରାରେ ଫୈନୀକୀଆକୁ ଯାଉଥିବା ଗୋଟିଏ
ଜାହାଜ ପାଇ ଆମ୍ଭେ ସେଥିରେ ଚଢ଼ିଲୁ, ଓ ଯାତ୍ରା କଲୁ।
୩ଆମ୍ଭେ ଯାଇ କୁପ୍ର ଉପଦ୍ୱୀପ ପାଖରେ ପହଞ୍ଚି ତାର ବାମ
ପଟେ ସୁରିଆକୁ ଯାତ୍ରା କଲୁ। ଆମ୍ଭେ ସୋର ନଗରରେ
ଓହ୍ଲାଇଲୁ, କାରଣ ସେଠାରେ ଜାହାଜରୁ ମାଲ ଖଲାସ
କରିବାକୁ ଥିଲା। ୪ଆମ୍ଭେ ସେଠାରେ ଯୀଶୁଙ୍କର କେତେକ
ଶିଷ୍ୟମାନଙ୍କୁ ଦେଖିଲୁ। ସେମାନଙ୍କ ସହିତ ସାତ ଦିନ
ପର୍ଯ୍ୟନ୍ତ ରହିଲୁ। ସେମାନେ ପବିତ୍ର ଆତ୍ମାଙ୍କ ଦ୍ୱାରା ପାଉଲଙ୍କୁ
ଯିରୁଶାଲମ ନ ଯିବା ପାଇଁ ଚେତାବନୀ ଦେଲେ। ୫ସମୟ
ପୂରିଗଲା ପରେ ଆମ୍ଭେ ସେଠାରୁ ବିଦାୟ ନେଲୁ। ସେତେବେଳେ
ସେମାନେ ସମସ୍ତେ ସ୍ତ୍ରୀ, ପିଲାମାନଙ୍କ ସହିତ ନଗର ବାହାର
ପର୍ଯ୍ୟନ୍ତ ଆମ୍ଭ ସହିତ ଆସିଲେ। ଆମ୍ଭେ ସମସ୍ତେ ସମୁଦ୍ର
କୂଳରେ ଆଣ୍ଠୁ ମାଡ଼ି ପ୍ରାର୍ଥନା କଲୁ। ଆମ୍ଭେ ସମସ୍ତେ
ପରସ୍ପରଠାରୁ ବିଦାୟ ନେଇ ଜାହାଜରେ ଚଢ଼ିଲୁ। ଶିଷ୍ୟମାନେ
ନିଜନିଜ ଘରକୁ ଫେରିଗଲେ।
୭ସୋର ନଗରରୁ ଆମ୍ଭେ ଆମ୍ଭର ଯାତ୍ରା ଆରମ୍ଭ କଲୁଁ
ଓ ପ୍ତଲମାଇରେ ପହଞ୍ଚିଲୁ। ସେଠାରେ ଭାଇମାନଙ୍କୁ
ଅଭିନନ୍ଦନ ଜଣାଇ ସେମାନଙ୍କ ସହିତ ଗୋଟିଏ ଦିନ
ରହିଲୁ। ୮ଆମ୍ଭେ ତହିଁ ଆରଦିନ କାଇସରୀଆ ନଗରରେ
ପହଞ୍ଚିଲୁ। ତା'ପରେ ଆମ୍ଭେ ସୁସମାଚାର ପ୍ରଚାରକ ଫିଲିପ୍ପଙ୍କ
ଘରେ ପ୍ରବେଶ କଲୁ। ସେ ସାତ ଜଣ ବିଶେଷ ସେବକମାନଙ୍କ
ମଧ୍ୟରୁ ଜଣେ ଥିଲେ। ଆମ୍ଭେମାନେ ତାହାଙ୍କ ସହିତ
ରହିଲୁ। ୯ତାହାଙ୍କର ଚାରୋଟି ଅବିବାହିତା ଝିଅ ଥିଲେ।
ସେମାନେ ଭାବବାଦିନୀ ଥିଲେ। ୧୦ସେଠାରେ ଆମ୍ଭେ ବହୁତ
ଦିନ ରହିଲା ପରେ ଯିହୂଦା ଦେଶରୁ ଆଗାବ ନାମରେ
ଜଣେ ଭବିଷ୍ୟଦ୍‌ବକ୍ତା ଆସି ପହଞ୍ଚିଲେ। ୧୧ସେ ଆମ୍ଭପାଖକୁ
ଆସି ପାଉଲଙ୍କ କଟିବନ୍ଧନ ମାଗି ନେଇ ନିଜ ହାତଗୋଡ଼
ବାନ୍ଧି ପକେଇଲେ ଓ କହିଲେ, "ପବିତ୍ର ଆତ୍ମା ଏପରି
କହନ୍ତି ଏହି କଟିବନ୍ଧନ ଯାହାର ଅଟେ, 'ତାହାଙ୍କୁ ଯିରୂଶାଲମରେ
ଯିହୂଦୀମାନେ ଏହିପରି ବାନ୍ଧି ପକାଇବେ। ସେମାନେ ତାହାଙ୍କୁ
ଅଣଯିହୂଦୀମାନଙ୍କ ହାତରେ ସମର୍ପଣ କରିବେ।'"
୧୨ଆମ୍ଭେମାନେ ଓ ଅନ୍ୟ ବିଶ୍ୱାସୀମାନେ ଏହି କଥା
ଶୁଣି ପାଉଲଙ୍କୁ ଯିରୂଶାଲମ ନଯିବା ପାଇଁ ବହୁତ ଅନୁରୋଧ
କଲୁ। ୧୩କିନ୍ତୁ ପାଉଲ କହିଲେ, "ତୁମ୍ଭେମାନେ କାହିଁକି
କାନ୍ଦୁଛ? ତୁମ୍ଭେମାନେ କାହିଁକି ଏପରି ମୋତେ ଦୁଃଖିତ
କରୁଛ? ଯିରୂଶାଲମରେ ମୁଁ ବନ୍ଧା ହେବା ପାଇଁ ଯେ
କେବଳ ପ୍ରସ୍ତୁତ ଅଛି, ତାହା ନୁହେଁ, ମାତ୍ର ମୁଁ ପ୍ରଭୁ
ଯୀଶୁଙ୍କ ନାମରେ ମରିବା ପାଇଁ ମଧ୍ୟ ପ୍ରସ୍ତୁତ ଅଛି।"
୧୪ସେ ଆମ୍ଭ କଥାରେ ପ୍ରଭାବିତ ନ ହେବାରୁ ଆମ୍ଭେମାନେ
ଚୁପ୍ ରହିଲୁ। ଆମ୍ଭେ କହିଲୁ, "ପ୍ରଭୁଙ୍କର ଯାହା ଇଚ୍ଛା,
ତାହା ହିଁ ହେଉ।"
୧୫ଏହି ସମସ୍ତ ଦିନ ବିତିଗଲା ପରେ ଆମ୍ଭେ ନିଜର
ସାମଗ୍ରୀ ପ୍ରସ୍ତୁତ କଲୁଁ, ଓ ଯିରୂଶାଲମ ପାଇଁ ଯାତ୍ରା ଆରମ୍ଭ
କଲୁ। ୧୬କାଇସରୀଆରେ ଥିବା ଯୀଶୁଙ୍କ କେତେକ ଶିଷ୍ୟ
ଆମ୍ଭ ସହିତ ଆସିଲେ। ସେମାନେ ଆମ୍ଭକୁ କୁପ୍ର ଉପଦ୍ୱୀପର
ମନାସୋନ (ସେ କି ଯୀଶୁଙ୍କ ପ୍ରଥମ ଶିଷ୍ୟମାନଙ୍କ ମଧ୍ୟରେ
ଜଣେ) ନାମକ ଜଣେ ଶିଷ୍ୟଙ୍କ ଘରକୁ ନେଇଗଲେ।
ସେଠାରେ ଆମ୍ଭେ ରାତି କଟାଇବା କଥା ଥିଲା।

## ପାଉଲଙ୍କ ଯାକୁବଙ୍କ ସହିତ ମିଳନ

୧୭ଆମ୍ଭେମାନେ ଯିରୂଶାଲମରେ ପହଞ୍ଚିବା ମାତ୍ରେ ଆମ୍ଭକୁ
ଭାଇମାନେ ଖୁସିରେ ସ୍ୱାଗତ ଜଣାଇଲେ। ୧୮ତା' ପରଦିନ
ପାଉଲ ଆମ୍ଭମାନଙ୍କ ସାଙ୍ଗରେ ଯାକୁବଙ୍କୁ ଭେଟିବାକୁ ଗଲେ।
ସବୁ ପ୍ରାଚୀନ ଲୋକମାନେ ସମସ୍ତେ ସେଠାରେ ଉପସ୍ଥିତ
ଥିଲେ। ୧୯ପାଉଲ ସେମାନଙ୍କୁ ଅଭିନନ୍ଦନ ଜଣାଇଲେ।
ପରମେଶ୍ୱର ତାହାଙ୍କ ସେବାକାର୍ଯ୍ୟ ମାଧ୍ୟମରେ ଅଣଯିହୂଦୀମାନଙ୍କ
ମଧ୍ୟରେ ଯେଉଁ ସବୁ କାର୍ଯ୍ୟ କରିଛନ୍ତି, ସେସବୁ ସେ
ସେମାନଙ୍କୁ ଗୋଟିଗୋଟି କରି କହିଲେ। ୨୦ସେମାନେ ଏହା
ଶୁଣି ପରମେଶ୍ୱରଙ୍କର ପ୍ରଶଂସା କଲେ। ସେମାନେ ପାଉଲଙ୍କୁ
କହିଲେ, "ଭାଇ, ତୁମ୍ଭେ ଦେଖିଛ ଯେ, ହଜାରହଜାର
ଯିହୂଦୀମାନେ ବିଶ୍ୱାସୀ ହୋଇ ଅଛନ୍ତି। କିନ୍ତୁ ସେମାନେ
ମନେ କରନ୍ତି ଯେ, ବ୍ୟବସ୍ଥା ପାଳନ କରିବା ଅଧିକ
ମହତ୍ତ୍ୱପୂର୍ଣ୍ଣ ଅଟେ। ୨୧ସେମାନେ ତୁମ୍ଭ ବିଷୟରେ ଶୁଣିଛନ୍ତି
ଯେ, ତୁମ୍ଭେ ଅଣଯହୂଦୀମାନଙ୍କ ଦେଶରେ ରହୁଥିବା
ଯିହୂଦୀମାନଙ୍କୁ, ମୋଶାଙ୍କର ବ୍ୟବସ୍ଥା ତ୍ୟାଗ କରିବା ପାଇଁ
ଶିକ୍ଷା ଦେଉଛ। ତୁମ୍ଭେ ସେମାନଙ୍କୁ ସେମାନଙ୍କ ପିଲାମାନଙ୍କର
ସୁନ୍ନତ ନ କରିବା ପାଇଁ ଓ ଯିହୂଦୀ ରୀତିନୀତି ଗୁଡ଼ିକୁ ନ
ମାନିବା ପାଇଁ ଶିକ୍ଷା ଦେଇଛ। ୨୨ତେଣୁ ଆମ୍ଭକୁ କଣ
କରିବା ଉଚିତ୍? ତୁମ୍ଭେ ଯେ ଏଠାକୁ ଆସିଛ, ଏହା
ସେମାନେ ନିଶ୍ଚୟ ଶୁଣିବାକୁ ପାଇବେ। ୨୩ତେଣୁ ଆମ୍ଭ
କହିବା ଅନୁସାରେ କାମ କର। ଆମ୍ଭ ପାଖରେ ପରମେଶ୍ୱରଙ୍କ
ଠାରେ ମାନତ କରିଥିବାର ଚାରି ଜଣ ଲୋକ ଅଛନ୍ତି।
୨୪ତୁମ୍ଭେ ସେମାନଙ୍କୁ ସାଙ୍ଗରେ ନେଇ ସେମାନଙ୍କ ସହିତ
ଆପଣାକୁ ଶୁଚିକର ଓ ତୁମ୍ଭେ ସେମାନଙ୍କର ମୁଣ୍ଡ ଲଣ୍ଡା
ହେବାପାଇଁ ଖର୍ଚ୍ଚ ଦିଅ। ଏହା ଦ୍ୱାରା ସମସ୍ତେ ଭାବିବେ ଯେ,
ସେମାନେ ତୁମ୍ଭ ବିଷୟରେ ଯାହା ସବୁ ଶୁଣିଛନ୍ତି ତାହା
ମିଥ୍ୟା। ସେମାନେ ଦେଖିବେ ଯେ, ତୁମ୍ଭେ ନିଜ ଜୀବନରେ
ମୋଶାଙ୍କ ବ୍ୟବସ୍ଥା ମାନି ଚଳୁଛ। ୨୫ଆମ୍ଭେ ଅଣଯିହୂଦୀ
ବିଶ୍ୱାସୀ ଲୋକମାନଙ୍କୁ ପତ୍ର ଲେଖିଛୁ। ଆମ୍ଭେ ସେମାନଙ୍କୁ
ଲେଖିସାରିଛୁ:

'ମୂର୍ତ୍ତିକୁ ସମର୍ପିତ ହୋଇଥିବା ଖାଦ୍ୟ ଖାଅ ନାହିଁ।
ରକ୍ତ ଖାଅ ନାହିଁ। ତୁମ୍ଭେମାନେ କୌଣସି ପ୍ରକାରର
ଯୌନ ସମ୍ବନ୍ଧୀୟ ପାପ କାର୍ଯ୍ୟ କର ନାହିଁ।'"

୨୬ତେଣୁ ପାଉଲ ତହିଁ ଆର ଦିନ ସେହି ଚାରି ଜଣ
ଲୋକଙ୍କୁ ସାଙ୍ଗରେ ନେଇ ଆପଣାକୁ ଶୁଚି କଲେ।

ତା'ପରେ ସେ ମନ୍ଦିରକୁ ଯାଇ କେଉଁ ଦିନ କ୍ରିୟା
ସମାରୋହର ଦିନ ପୂରି ଯିବ ଓ ସେମାନଙ୍କ ମଧ୍ୟରୁ
ପ୍ରତ୍ୟେକଙ୍କ ପାଇଁ ଦାନ ଦିଆ ଯିବ, ସେହି ବିଷୟରେ
ଘୋଷଣା କଲେ।
୨୭ସାତଦିନ ପୂରି ଯିବା ଦିନ ଏସିଆର କେତେକ
ଯିହୂଦୀମାନେ ତାହାଙ୍କୁ ମନ୍ଦିରରେ ଦେଖିଲେ। ସେମାନେ
ସମଗ୍ର ଲୋକଙ୍କୁ ତାହାଙ୍କ ବିରୁଦ୍ଧରେ ଉତ୍ତେଜିତ କଲେ ଓ
ତାହାଙ୍କୁ ଧରି ପକେଇଲେ। ୨୮ସେମାନେ ଖୁବ୍ ଜୋରରେ
ଚିତ୍କାର କରି କହିଲେ, "ହେ ଇସ୍ରାୟେଲୀୟ ଲୋକମାନେ,
ଆମ୍ଭକୁ ସାହାଯ୍ୟ କର। ଏ ଲୋକ ଆମ୍ଭ ଲୋକମାନଙ୍କ
ବିରୁଦ୍ଧରେ, ଆମ୍ଭ ବ୍ୟବସ୍ଥା ଓ ଏହି ସ୍ଥାନ ବିରୁଦ୍ଧରେ ସବୁ
ଲୋକମାନଙ୍କୁ ଶିକ୍ଷା ଦେଉଛି। ସେ ବର୍ତ୍ତମାନ କେତେକ
ଗ୍ରୀକ୍ ଲୋକମାନଙ୍କୁ ମଧ୍ୟ ମନ୍ଦିର ଭିତରକୁ ଆଣିଛି ଓ
ଆମ୍ଭର ଏହି ପବିତ୍ର ସ୍ଥାନକୁ ଅପବିତ୍ର କରିଛି।" ୨୯(ସେମାନେ
ଆଗରୁ ଏଫିସର ତ୍ରଫିମ ସହିତ ପାଉଲଙ୍କୁ ଦେଖିଥିଲେ।
ତ୍ରଫିମ ଜଣେ ଗ୍ରୀକ୍‌ଲୋକ ଥିଲେ। ତେଣୁ ସେମାନେ
ଅନୁମାନ କରି ନେଲେ ଯେ, ପାଉଲ ତାହାଙ୍କୁ ମନ୍ଦିରକୁ
ଆଣିଥିବେ।)
୩୦ପୁରା ନଗରଟାରେ ଉତ୍ତେଜନା ସୃଷ୍ଟି ହୋଇଗଲା।
ଲୋକମାନେ ଏକାଠି ଦୌଡ଼ି ଯାଇ ପାଉଲଙ୍କୁ ମନ୍ଦିର
ଭିତରୁ ଟାଣି ନେଇ ଗଲେ। ସଙ୍ଗେସଙ୍ଗେ ଦ୍ୱାର ଗୁଡ଼ିକ
ବନ୍ଦ ହୋଇଗଲା। ୩୧ଲୋକମାନେ ପାଉଲଙ୍କୁ ହତ୍ୟା କରିବା
ପାଇଁ ଚେଷ୍ଟା କରୁଥିବା ସମୟରେ ରୋମୀୟ ସେନାପତିଙ୍କ
ନିକଟରେ ଏହି ଖବର ପହଞ୍ଚିଲା। ସେ ଜାଣିବାକୁ ପାଇଲେ
ଯେ ସମଗ୍ର ଯିରୂଶାଲମରେ ଉତ୍ତେଜନା ଖେଳି ଯାଇଛି।
୩୨ସେ ସଙ୍ଗେସଙ୍ଗେ କେତେକ ସୈନ୍ୟ ଓ ଅଧିକାରୀମାନଙ୍କ
ସହିତ ଆସି ପହଞ୍ଚିଲେ। ସେ ପାଉଲଙ୍କୁ ହତ୍ୟା କରିବାକୁ
ଉଦ୍ୟମ ହେଉଥିବା ଯିହୂଦୀମାନଙ୍କ ପାଖକୁ ଗଲେ। ସେମାନେ
ସେନାପତି ଓ ସୈନ୍ୟ-ସାମନ୍ତଙ୍କୁ ଦେଖି ପାଉଲଙ୍କୁ ମାଡ଼
ମାରିବା ବନ୍ଦ କଲେ। ୩୩ତା'ପରେ ସେନାପତି ପାଖକୁ
ଆସିଲେ, ଓ ପାଉଲଙ୍କୁ ବନ୍ଦୀ କଲେ। ସେ ପାଉଲଙ୍କୁ
ଦୁଇଟି ଶିକୁଳିରେ ବାନ୍ଧି ଦେବା ପାଇଁ ସୈନ୍ୟମାନଙ୍କୁ
ଆଦେଶ ଦେଲେ। ତା'ପରେ ପାଉଲ କିଏ ଓ ସେ କଣ
କରିଛନ୍ତି ବୋଲି ସେନାପତି ପଚାରିଲେ। ୩୪ଲୋକ ଗହଳି
ଭିତରୁ ଲୋକେ ଚିତ୍କାର କରି ଭିନ୍ନ-ଭିନ୍ନ କଥା କହିଲେ।
ସେନାପତି ଏପରି କୋଳାହଳ ଦେଖି କାହାର କଥା ସତ୍ୟ
ତାହା ଠିକ୍ ଭାବରେ ଜାଣି ପାରିଲେ ନାହିଁ। ତେଣୁ ସେ
ପାଉଲଙ୍କୁ ସୈନ୍ୟ ନିବାସକୁ ନେଇ ଯିବା ପାଇଁ ଆଦେଶ
ଦେଲେ। ସବୁ ଲୋକମାନେ ତାହାଙ୍କ ପଛେପଛେ ଚିତ୍କାର
କରି ଯାଉଥିଲେ। ୩୫ଲୋକମାନେ ଅତ୍ୟନ୍ତ ହିଂସ୍ରକ ହୋଇ
ଉଠିବାରୁ ପାହାଚ ନିକଟରେ ସୈନିକମାନେ ପାଉଲଙ୍କୁ
ଟେକି ନେଇଗଲେ। ୩୬ତଥାପି ଲୋକ ସମୂହ
ତାହାଙ୍କ ପଛରେ ଯାଉଯାଉ ପାଟି କଲେ, "ତାହାଙ୍କୁ
ହତ୍ୟାକର।"
୩୭ସେନାନିବାସକୁ ନେବା ସମୟରେ ସେନାପତିଙ୍କୁ ପାଉଲ
ପଚାରିଲେ, "ମୁଁ ଆପଣଙ୍କୁ କିଛି କହିବା ଅଧିକାର ଅଛି
କି?"
ସେନାପତି ତାହାଙ୍କୁ ପଚାରିଲେ, "ତୁମ୍ଭେ କଣ ଗ୍ରୀକ୍
ଭାଷା ଜାଣ? ୩୮ତେବେ ତୁମ୍ଭେ କଣ ସେ ମିସରୀୟ
ଲୋକ ନୁହଁ, ଯିଏ କିଛି ବର୍ଷ ପୂର୍ବେ ସରକାରଙ୍କ
ବିରୁଦ୍ଧରେ ବିଦ୍ରୋହ କରିଥିଲା ଓ ଚାରି ହଜାର ଆତଙ୍କବାଦୀଙ୍କୁ
ନେଇ ମରୁଭୂମିକୁ ଚାଲିଯାଇଥିଲା।"
୩୯ପାଉଲ କହିଲେ, "ମୁଁ କିଲିକିଆର ତାର୍ଷ ନଗରର
ଜଣେ ଯିହୂଦୀ। ଗୋଟିଏ ପ୍ରଧାନ ନଗରର ମୁଁ ଜଣେ
ନାଗରିକ। ତେଣୁ ମୁଁ ଲୋକମାନଙ୍କୁ କଥା କହିବା ପାଇଁ
ଆପଣଙ୍କଠାରୁ ଅନୁମତି ଚାହୁଁଛି।"
୪୦ପାଉଲ ସେନାପତିଙ୍କଠାରୁ ଅନୁମତି ପାଇ ପାହାଚ
ଉପରେ ଠିଆ ହୋଇଗଲେ। ସେ ଲୋକମାନଙ୍କୁ ହାତରେ
ସଙ୍କେତ କରିବା ହେତୁ ସମସ୍ତେ ଅତି ଶାନ୍ତ ହୋଇଗଲେ।
ତା'ପରେ ସେ ଏବ୍ରୀ ଭାଷାରେ କହିଲେ।

## ପାଉଲଙ୍କ ଭାଷଣ

୨୨ ପାଉଲ କହିଲେ, "ଭାଇମାନେ ଓ
ପିତାମାନେ,ଯେହେତୁ ମୁଁ ମୋର ନିଜ ସପକ୍ଷରେ
କଥା କହୁଛି, ତେଣୁ ଆପଣମାନେ ମୋ କଥା ଶୁଣନ୍ତୁ।"
୨ସେମାନେ ପାଉଲଙ୍କୁ ଯିହୂଦୀ ଭାଷାରେ କହିବାର ଶୁଣି
ଆହୁରି ଅଧିକ ଶାନ୍ତ ହୋଇଗଲେ। ତା'ପରେ ପାଉଲ
କହିଲେ, ୩"ମୁଁ ଜଣେ ଯିହୂଦୀୟ ଲୋକ। ମୋର ଜନ୍ମ
କିଲିକିଆ ଦେଶର ତାର୍ଷ ନଗରରେ। କିନ୍ତୁ ଏହି ନଗରରେ
ମୋର ଲାଳନପାଳନ ହୋଇଥିଲା। ମୁଁ ଆମ୍ଭ ପିତୃପୁରୁଷଙ୍କ
ନିୟମ ଗୁଡ଼ିକ ବିଷୟରେ ଗୁରୁ ଗମଲୀୟେଲ ପାଖରୁ
ବହୁତ ଯତ୍ନ ସହକାରେ ତାଲିମ ପାଇଛି। ତୁମ୍ଭମାନଙ୍କ ପରି,
ମୁଁ ମଧ୍ୟ ପରମେଶ୍ୱରଙ୍କ ନିମନ୍ତେ ଅତି ଉତ୍ସାହୀ ଥିଲି। ୪ମୁଁ
ଯୀଶୁଙ୍କ ପଥରେ ଯାଉଥିବା ଲୋକମାନଙ୍କୁ ତାଡ଼ନା ଓ କଷ୍ଟ
ଦେଉଥିଲି। ମୁଁ ପୁରୁଷ ଓ ସ୍ତ୍ରୀ ଲୋକମାନଙ୍କୁ ବନ୍ଦୀ କରି
କାରାଗାରରେ ରଖିଥିଲି। ୫ମହାଯାଜକ ଓ ପ୍ରାଚୀନ
ଲୋକମାନଙ୍କର ସମ୍ପୂର୍ଣ୍ଣ ପରିଷଦ ଏ କଥାର ସାକ୍ଷୀ ଅଟନ୍ତି।
ମୁଁ ସେମାନଙ୍କଠାରୁ ଦମ୍ମେସକରେ ଥିବା ସେମାନଙ୍କର
ଭାଇମାନଙ୍କ ପାଖକୁ ପତ୍ର ନେଇ ଯାଇଥିଲି। ସେଠାରେ
ଥିବା ଯୀଶୁଙ୍କର ଶିଷ୍ୟମାନେ ଯେପରି ଦଣ୍ଡ ପାଇପାରନ୍ତି,
ଏଥିନିମନ୍ତେ ସେମାନଙ୍କୁ ବନ୍ଦୀ କରି ଯିରୂଶାଲମକୁ ନେଇ
ଆସିବା ପାଇଁ ମୁଁ ଯାଉଥିଲି।

## ପାଉଲଙ୍କ ମନପରିବର୍ତ୍ତନ

୬"ମୁଁ ଦମ୍ମେସକର ନିକଟବର୍ତ୍ତୀ ହେଲାବେଳେ ହଠାତ୍
ଗୋଟାଏ ଘଟଣା ଘଟିଲା। ଦମ୍ମେସକରେ ପହଞ୍ଚିବା ବେଳେ
ପ୍ରାୟ ଦ୍ୱିପହର ହୋଇଥିଲା। ସେତେବେଳେ ହଠାତ୍ ଆକାଶରୁ
ଗୋଟିଏ ଉଜ୍ଜ୍ୱଳ ଆଲୋକ ମୋ ଚାରି ପାଖରେ ପ୍ରକାଶିତ
ହେଲା। ୭ମୁଁ ତଳେ ପଡ଼ିଗଲି। ସେତେବେଳେ ମୋତେ
ଗୋଟିଏ ବାଣୀ ଶୁଭିଲା, 'ଶାଉଲ, ଶାଉଲ, ତୁମ୍ଭେ କାହିଁକି
ମୋତେ ତାଡ଼ନା କରୁଛ?' ୮ମୁଁ ପଚାରିଲି, 'ଆପଣ କିଏ,
ପ୍ରଭୁ?' ସେ ମୋତେ କହିଲେ, 'ମୁଁ ସେହି ନାଜରିତୀୟ
ଯୀଶୁ, ଯାହାକୁ ତୁମ୍ଭେ ତାଡନା କରୁଅଛ।' ୯ମୋ ସହିତ
ଥିବା ଲୋକମାନେ ମଧ୍ୟ ସେହି ଆଲୋକ ଦେଖି ପାରିଲେ।

କିନ୍ତୁ ସେମାନେ ମୋତେ କୁହାଯିବା ବାକ୍ୟ ଶୁଣି ବୁଝି
ପାରିଲେ ନାହିଁ। ୧୦ମୁଁ ପଚାରିଲି, 'ପ୍ରଭୁ ମୁଁ କଣ କରିବି?'
ପ୍ରଭୁ ମୋତେ କହିଲେ, 'ଉଠ ଦମ୍ମେସକ ନଗରକୁ ଯାଅ।'
ଯେଉଁସବୁ କାର୍ଯ୍ୟ ନିମନ୍ତେ ତୁମ୍ଭକୁ ମନୋନୀତ କରାଯାଇଛି,
ତାହା ସେଠାରେ ତୁମ୍ଭକୁ କୁହାଯିବ।' ୧୧ମୁଁ, କିଛି ଦେଖିପାରୁ
ନଥିଲି, କାରଣ ସେହି ଆଲୋକର ତେଜ ମୋତେ ଅନ୍ଧ
କରି ପକାଇଥିଲା। ସେଥିପାଇଁ ମୋର ବନ୍ଧୁମାନେ ମୋ
ହାତ ଧରି ଦମ୍ମେସକ ନେଇଗଲେ।
୧୨"ହନନୀୟ ନାମକ ଜଣେ ଭକ୍ତ ଦମ୍ମେସକ ନଗରରେ
ଥିଲେ। ସେ ମୋଶାଙ୍କ ବ୍ୟବସ୍ଥା ମାନୁଥିଲେ। ସେଠାରେ
ରହୁଥିବା ସମସ୍ତ ଯିହୂଦୀୟମାନେ ତାହାଙ୍କୁ ସମ୍ମାନ ଦେଉଥିଲେ।
୧୩ହନନୀୟ ମୋ ପାଖରେ ଆସି ଠିଆ ହୋଇ କହିଲେ,
'ହେ ଭାଇ ଶାଉଲ, ତୁମ୍ଭେ ପୁଣି ଥରେ ଦେଖିବାକୁ ପାଅ।'
ମୁଁ ସେହି ମୁହୂର୍ତ୍ତରେ ତାହାଙ୍କୁ ଦେଖିପାରିଲି। ୧୪ସେ
ମୋତେ କହିଲେ, 'ଆମ୍ଭମାନଙ୍କ ପୈତୃକ ପରମେଶ୍ୱର
ତାହାଙ୍କର ଇଚ୍ଛା ଜାଣିବା ନିମନ୍ତେ, ଓ ସେହି ଧାର୍ମିକ
ବ୍ୟକ୍ତିଙ୍କୁ ଦେଖିବା ଓ ତାହାଙ୍କ ମୁଖର କଥା ଶୁଣିବା
ନିମନ୍ତେ ତୁମ୍ଭକୁ ମନୋନୀତ କରି ଅଛନ୍ତି। ୧୫କାରଣ
ତୁମ୍ଭେ ସମସ୍ତ ଲୋକମାନଙ୍କ ପାଖରେ ତାହାଙ୍କର ସାକ୍ଷୀ
ହେବ। ତୁମ୍ଭେ ଯାହା ଯାହା ଦେଖିଛ ଓ ଶୁଣିଛ, ତାହା
ସମସ୍ତଙ୍କୁ କହିବ। ୧୬ତୁମ୍ଭେ ବର୍ତ୍ତମାନ ଆଉ ଅପେକ୍ଷା କର
ନାହିଁ। ଶୀଘ୍ର ଉଠ ଓ ବାପ୍ତିଜିତ ହୁଅ ଏବଂ ଯୀଶୁଙ୍କ
ନାମରେ ତୁମ୍ଭର ପାପରୁ ଧୋଇ ହୁଅ।'
୧୭"ତା'ପରେ ମୁଁ ଯିରୂଶାଲମକୁ ଫେରି ଆସିଲି। ସେଠାରେ
ମନ୍ଦିରରେ ଦିନେ ପ୍ରାର୍ଥନା କଲାବେଳେ ମୁଁ ଗୋଟିଏ ଦର୍ଶନ
ଦେଖିଲି। ୧୮ସେହି ସମୟରେ ମୁଁ ଯୀଶୁଙ୍କୁ ଦର୍ଶନ କଲି।
ସେ ମୋତେ କହିଲେ, 'ତୁମ୍ଭେ ସଙ୍ଗେ-ସଙ୍ଗେ ଯିରୂଶାଲମ
ଛାଡ଼ି ଦିଅ, କାରଣ ତୁମ୍ଭେ ମୋ ବିଷୟରେ ଯାହା କହିବ,
ସେମାନେ ଗ୍ରହଣ କରିବେ ନାହିଁ।' ୧୯କିନ୍ତୁ ମୁଁ କହିଲି,
'ପ୍ରଭୁ, ଏ ଲୋକମାନେ ତ ସମସ୍ତେ ଜାଣନ୍ତି ଯେ ମୁଁ
ପ୍ରତ୍ୟେକ ପ୍ରାର୍ଥନା ଗୃହକୁ ଯାଇ ସେଠାରେ ତୁମ୍ଭକୁ ବିଶ୍ୱାସ
କରୁଥିବା ଲୋକମାନଙ୍କୁ ବନ୍ଦୀ କରୁଥିଲି, ଏବଂ ମାଡ଼
ମାରୁଥିଲି। ୨୦ତୁମ୍ଭର ସାକ୍ଷୀ ସ୍ତିଫାନଙ୍କ ରକ୍ତ ବହିଯାଉଥିବା
ସମୟରେ ମୁଁ ସେଠାରେ ଠିଆ ହୋଇ ସେହି କାର୍ଯ୍ୟକୁ
ସମର୍ଥନ କରୁଥିଲି। ମୁଁ ତାହାଙ୍କୁ ହତ୍ୟା କରୁଥିବା ଲୋକମାନଙ୍କର
ଲୁଗାପଟାକୁ ଜଗିଥିଲି, ଏସବୁ କଥା ସେମାନେ ଜାଣନ୍ତି।'
୨୧କିନ୍ତୁ ପ୍ରଭୁ ମୋତେ କହିଲେ, 'ତୁମ୍ଭେ ଯାଅ। ମୁଁ ତୁମ୍ଭକୁ
ବହୁତ ଦୂର ଅଣଯିହୂଦୀ ଦେଶ ଗୁଡ଼ିକୁ ପଠାଇବି।'"
୨୨ପାଉଲ ଏକଥା କହିବା ପର୍ଯ୍ୟନ୍ତ ଯିହୂଦୀୟମାନେ
ଶୁଣୁଥିଲେ। ତା'ପରେ ସେମାନେ ସମସ୍ତେ ମିଶି ଖୁବ୍
ଜୋରରେ ପାଟି କରି କହିଲେ, "ଏ ଲୋକକୁ ପୃଥିବୀରୁ
ଦୂର କର। କାରଣ ସେ ବଞ୍ଚିରହିବା ପାଇଁ ଯୋଗ୍ୟ
ନୁହଁ।" ୨୩ସେମାନେ ଚିତ୍କାର କରି ନିଜନିଜ ଲୁଗାପଟା
ବାହାର କରି ଫୋପାଡ଼ ଦେଲେ ଓ ଶୂନ୍ୟକୁ ଧୂଳି
ଫୋପାଡ଼ିଲେ। ୨୪ତା'ପରେ ସେନାପତି ପାଉଲଙ୍କୁ ସୈନ୍ୟ
ନିବାସ ଭିତରକୁ ନେଇଯିବା ପାଇଁ ଆଦେଶ ଦେଲେ।
କାହିଁକି ଲୋକମାନେ ତାହାଙ୍କ ବିରୁଦ୍ଧରେ ଏଭଳି ପାଟିତୁଣ୍ଡ
କରୁଥିଲେ, ତାହା ଜାଣିବା ପାଇଁ କୋରଡ଼ା ପ୍ରହାର ଦ୍ୱାରା
ପାଉଲଙ୍କୁ ପଚାରିବା ନିମନ୍ତେ ସେ ସୈନିକମାନଙ୍କୁ ଆଦେଶ
ଦେଲେ। ୨୫ସେମାନେ ପାଉଲଙ୍କୁ କୋରଡ଼ା ମାରିବା ପାଇଁ
ବାନ୍ଧୁଥିବା ସମୟରେ ପାଉଲ ସେଠାରେ ଠିଆ ହୋଇଥିବା
ଜଣେ ସେନା ଅଧିକାରୀଙ୍କୁ କହିଲେ, "ଜଣେ ରୋମୀୟ
ନାଗରିକ, ଯେ କି ଦୋଷୀ ବୋଲି ପ୍ରମାଣିତ ହୋଇ ନାହିଁ,
ତାହାକୁ କୋରଡ଼ା ମାରିବା କ'ଣ ଆଇନ ସଙ୍ଗତ ଅଟେ?"
୨୬ଏ କଥା ଅଧିକାରୀ ଶୁଣି ସେନାଧକ୍ଷଙ୍କୁ ଜଣାଇଲେ।
ଅଧିକାରୀ କହିଲେ, "ତୁମ୍ଭେ ଜାଣ, ତୁମ୍ଭେ କଣ କରୁଛ?
ଏ ଲୋକ ଜଣେ ରୋମୀୟ ନାଗରିକ?"
୨୭ତେଣୁ ସେନାଧକ୍ଷ ଯାଇ ପାଉଲଙ୍କୁ ପଚାରିଲେ, "ମୋତେ
କୁହ, ତୁମ୍ଭେ କଣ ପ୍ରକୃତରେ ଜଣେ ରୋମୀୟ ନାଗରିକ?"
ପାଉଲ ଉତ୍ତର ଦେଲେ, "ହଁ।"
୨୮ସେନାଧାକ୍ଷ କହିଲେ, "ମୁଁ ଜଣେ ରୋମୀୟ ନାଗରିକ
ହେବାପାଇଁ ପ୍ରଚୁର ଟଙ୍କା ଦେଇଥିଲି।"
ପାଉଲ କହିଲେ, "କିନ୍ତୁ ମୁଁ ଜଣେ ରୋମୀୟ ନାଗରିକ
ଭାବେ ଜନ୍ମ ନେଇଥିଲି।"
୨୯ପାଉଲ ଜଣେ ରୋମୀୟ ନାଗରିକ ବୋଲି ଜାଣିବା
ପରେ ତାହାଙ୍କୁ ପ୍ରଶ୍ନ କରିବା ପାଇଁ ଯାଉଥିବା ଲୋକମାନେ
ସଙ୍ଗେସଙ୍ଗେ ତାହାଙ୍କୁ ଛାଡ଼ି ଚାଲିଗଲେ। ସେନାଧକ୍ଷ ମଧ
ତାହାଙ୍କୁ ବାନ୍ଧି ବେତ୍ରାଘାତ କରିବା ପାଇଁ ଆଦେଶ ଦେଇଥିବାରୁ
ଡରିଗଲେ।

## ପାଉଲ ଯିହୂଦୀ ନେତାମାନଙ୍କ ସହିତ କଥାବାର୍ତ୍ତା ହେଲେ

୩୦ତହିଁ ଆର ଦିନ ସେନାଧକ୍ଷ ଜାଣିବା ପାଇଁ ଚାହିଁଲେ,
ଯିହୂଦୀମାନେ ପ୍ରକୃତରେ ପାଉଲଙ୍କ ବିରୁଦ୍ଧରେ କଣ
ଦୋଷାରୋପ କରୁଥିଲେ। ତେଣୁ ସେ ପାଉଲଙ୍କୁ ମୁକ୍ତ
କରିଦେଲେ ଏବଂ ଯିହୂଦୀ ମୁଖ୍ୟ ଯାଜକମାନଙ୍କୁ ଓ ସମଗ୍ର
ଯିହୂଦୀ ମହାସଭା ଏକାଠି ହେବାକୁ ଆଦେଶ ଦେଲେ।
ତା'ପରେ ସେନାଧକ୍ଷ ପାଉଲଙ୍କର ଶିକୁଳି ଖୋଲିଦେଲେ।
ସେ ପାଉଲଙ୍କୁ ମହାସଭା ସମ୍ମୁଖରେ ବିଚାର ପାଇଁ ଠିଆ
କରାଇଲେ।

**୨୩** ପାଉଲ ଏକ ଲୟରେ ମହାସଭାକୁ ଚାହିଁ
କହିଲେ, "ହେ ମୋର ଭାଇମାନେ! ମୁଁ ଆଜି
ପର୍ଯ୍ୟନ୍ତ ଉତ୍ତମ ବିବେକ ଅନୁସାରେ କର୍ମ କରି ପରମେଶ୍ୱରଙ୍କ
ସମ୍ମୁଖରେ ଜୀବନ ଅତିବାହିତ କରିଛି।" ୨ଏହାଶୁଣି ମହାଯାଜକ
ହନାନୀୟ ତାହାଙ୍କ ପାଖରେ ଠିଆ ହୋଇଥିବା ଲୋକମାନଙ୍କୁ
ତାହାଙ୍କ ମୁହଁରେ ଚାପୁଡ଼ା ମାରିବା ପାଇଁ ଆଦେଶ ଦେଲେ।
୩ପାଉଲ ହନାନୀୟଙ୍କୁ କହିଲେ, "ପରମେଶ୍ୱର ତୁମ୍ଭକୁ ମଧ
ଆଘାତ କରିବେ। ତୁମ୍ଭେ ଗୋଟିଏ ମଇଳା କାନ୍ଥ ପରି
ଯାହା ଉପରେ ଧଳା ରଙ୍ଗ ବୋଳା ଯାଇଛି। ତୁମ୍ଭେ
ବ୍ୟବସ୍ଥା ଅନୁଯାୟୀ ମୋର ନ୍ୟାୟ କରିବା ପାଇଁ
ବସିଛ, କିନ୍ତୁ ବ୍ୟବସ୍ଥା ବିରୁଦ୍ଧରେ ମୋତେ ଆଘାତ
ଦେବାପାଇଁ ଆଦେଶ ଦେଉଛ। ଏହା ମୋଶାଙ୍କ ବ୍ୟବସ୍ଥା
ବିରୁଦ୍ଧ।"
୪ପାଉଲଙ୍କ ପାଖରେ ଠିଆ ହୋଇଥିବା ଲୋକମାନେ
କହିଲେ, "ତୁମ୍ଭେ ପରମେଶ୍ୱରଙ୍କର ମହାଯାଜକଙ୍କୁ ସେପରି

କଥା କହିପାରିବ ନାହିଁ। ତୁମ୍ଭେ ଏପରି କହି ତାହାଙ୍କୁ
ଅପମାନ କରୁଛ।”
୫ପାଉଲ ଉତ୍ତର ଦେଲେ, “ଭାଇମାନେ, ମୁଁ ତାହାଙ୍କୁ
ମହାଯାଜକ ବୋଲି ଜାଣି ନଥିଲି। ଏହା ଧର୍ମଶାସ୍ତ୍ରରେ
ଲେଖାଅଛି, ‘ତୁମ୍ଭର ନିଜ ଲୋକଙ୍କ ନେତା ବିଷୟରେ
ଖରାପ କଥା କହିବା ଉଚିତ ନୁହେଁ।’*”
୬ସଭାରେ ସେମାନଙ୍କ ଭିତରୁ କେତେକ ଲୋକ ସାଦୂକୀ
ଓ ଅନ୍ୟ କେତେକ ଫାରୂଶୀ ମଧ୍ୟ ଥିଲେ। ଏହି ପାଉଲ
ଜାଣିପାରିଲେ। ତେଣୁ ସେ ଖୁବ୍ ଜୋର୍‌ରେ କହିଲେ,
“ହେ ଭାଇମାନେ, ମୁଁ ଜଣେ ଫାରୂଶୀ ଓ ମୋ ପିତା ମଧ୍ୟ
ଫାରୂଶୀ ଥିଲେ। ମୁଁ ଲୋକମାନଙ୍କର ମୃତ୍ୟୁରୁ ପୁନରୁତ୍ଥାନରେ
ବିଶ୍ୱାସ କରେ। ଏହି ବିଶ୍ୱାସ ପାଇଁ ମୁଁ ଆଜି ଏଠାରେ
ଏହି ବିଚାରର ସମ୍ମୁଖୀନ ହେଉଛି।”
୭ପାଉଲ ଏପରି କହିବା ମାତ୍ରେ ଫାରୂଶୀ ଓ ସାଦୂକୀମାନଙ୍କ
ମଧ୍ୟରେ ବହୁତ ତର୍କ-ବିତର୍କ ହେଲା। ସଭା ଦୁଇ ଦଳରେ
ଭାଗ ହୋଇଗଲା। ୮ସାଦୂକୀମାନେ ବିଶ୍ୱାସ କରନ୍ତି ଯେ
ମୃତ ଲୋକମାନଙ୍କର ପୁନରୁତ୍ଥାନ ହୁଏନାହିଁ କି କୌଣସି
ସ୍ୱର୍ଗଦୂତ କିମ୍ବା ଆତ୍ମା କେହି ନାହାଁନ୍ତି। କିନ୍ତୁ ଫାରୂଶୀମାନେ
ଏ ଦୁଇବିଷୟକୁ ବିଶ୍ୱାସ କରନ୍ତି। ୯ତେଣୁ ଯିହୂଦୀମାନେ
ଭୀଷଣ ପାଟି ତୁଣ୍ଡ କଲେ। ଫାରୂଶୀ ଦଳର କେତେଜଣ
ବ୍ୟବସ୍ଥା ଶିକ୍ଷକ ଠିଆ ହୋଇ ପାଉଲଙ୍କ ସପକ୍ଷରେ ଯୁକ୍ତି
କଲେ। ସେମାନେ କହିଲେ, “ଆମ୍ଭେ ଏ ଲୋକର କିଛି
ଦୋଷ ଦେଖିବାକୁ ପାଉନାହୁଁ। ହୁଏତ କୌଣସି ଆତ୍ମା କିମ୍ବା
ସ୍ୱର୍ଗଦୂତ ଏ ଲୋକ ସହିତ କଥାବାର୍ତ୍ତା ହୋଇଥିଲେ।”
୧୦ଧୀରେଧୀରେ ଗଣ୍ଡଗୋଳ ବଢ଼ି ହିଂସ୍ରକ ହୋଇଉଠିଲା।
ସେନାଧକ୍ଷ ଭାବିଲେ, ବୋଧେ ଲୋକେ ପାଉଲଙ୍କୁ ଖଣ୍ଡଖଣ୍ଡ
କରି ପକାଇବେ। ତେଣୁ ପାଉଲଙ୍କୁ ସେମାନଙ୍କ ନିକଟରୁ
ନେଇଆସି ସୈନ୍ୟ ନିବାସ ଭିତରୁ ନେଇ ଯିବା ନିମନ୍ତେ
ସୈନିକମାନଙ୍କୁ ଆଦେଶ ଦେଲେ।
୧୧ସେହି ରାତିରେ ପ୍ରଭୁ ପାଉଲଙ୍କ ପାଖରେ ଠିଆ
ହୋଇ କହିଲେ, “ସାହସୀ ହୁଅ। ତୁମ୍ଭେ ମୋ ବିଷୟରେ
ଯିରୂଶାଲମରେ ଯେପରି ସାକ୍ଷ୍ୟ ଦେଇଛ ଠିକ୍ ସେହିପରି
ରୋମରେ ମଧ୍ୟ ଦେବ।”
୧୨ତହିଁ ଆର ଦିନ କେତେକ ଯିହୂଦୀ ଗୋଟିଏ
ଯୋଜନା କଲେ। ସେମାନେ ପାଉଲଙ୍କୁ ହତ୍ୟା କରିବା
ପାଇଁ ଚାହିଁଲେ। ତାହାଙ୍କୁ ହତ୍ୟା ନ କରିବା ପର୍ଯ୍ୟନ୍ତ
ସେମାନେ ଅନ୍ନଜଳ ସ୍ପର୍ଶ କରିବେ ନାହିଁ ବୋଲି ଶପଥ
କଲେ। ୧୩ଚାଳିଶ ଜଣରୁ ଅଧିକ ଯିହୂଦୀ ଏହି ଷଡ଼ଯନ୍ତ୍ର
କଲେ। ୧୪ସେମାନେ ମୁଖ୍ୟ ଯାଜକ ଓ ପ୍ରାଚୀନମାନଙ୍କ
ପାଖକୁ ଯାଇ କହିଲେ, “ଆମ୍ଭେ ପ୍ରତିଜ୍ଞା କରିଛୁ ଯେ,
ପାଉଲଙ୍କୁ ବଧ ନକରିବା ପର୍ଯ୍ୟନ୍ତ, କେହି ଭୋଜନ ସ୍ପର୍ଶ
କରିବୁ ନାହିଁ। ୧୫ତେଣୁ ତୁମ୍ଭେ ଆମ୍ଭ ପାଇଁ ଏହି କାମ
କରିବ। ତୁମ୍ଭେ ନିଜ ତରଫରୁ ସେନାଧକ୍ଷ ଓ ସମସ୍ତ
ଯିହୂଦୀୟ ନେତାମାନଙ୍କ ପାଖକୁ ସମ୍ବାଦ ଦେବ। ତୁମ୍ଭେ
ସେନାଧକ୍ଷଙ୍କୁ କହିବ ଯେ ତୁମ୍ଭେ ପାଉଲଙ୍କୁ ବାହାରକୁ
ଆଣିବା ପାଇଁ ଚାହିଁ, କାରଣ ତୁମ୍ଭର ତାହାଙ୍କୁ ଅନେକ ପ୍ରଶ୍ନ
ପଚାରିବାର ଅଛି। ଆମ୍ଭେ ତାହାଙ୍କୁ ଏଠାରେ ପହଞ୍ଚିବା
ପୂର୍ବରୁ ବାଟରେ ହତ୍ୟା କରିବା ପାଇଁ ପ୍ରସ୍ତୁତ ଅଛୁ।”
୧୬ପାଉଲଙ୍କର ଭଣଜା ଏ ଷଡ଼ଯନ୍ତ୍ର ବିଷୟରେ ଶୁଣିଲେ।
ସେ ସେନାମାନଙ୍କ ସୈନ୍ୟନିବାସକୁ ଯାଇ ପାଉଲଙ୍କୁ ଏ
ବିଷୟରେ କହିଲେ। ୧୭ତାପରେ ପାଉଲ ଜଣେ ସେନା
ଅଧିକାରୀଙ୍କୁ ଡ଼ାକି କହିଲେ, “ଏହି ଯୁବକକୁ ସେନାଧକ୍ଷଙ୍କ
ନିକଟକୁ ନେଇଯାଅ। ତା'ର ତାହାଙ୍କୁ କିଛି କହିବାର
ଅଛି।” ୧୮ତେଣୁ ସେନା ଅଧିକାରୀ ତାହାକୁ ସେନାଧକ୍ଷଙ୍କ
ନିକଟକୁ ନେଇଗଲା ଓ କହିଲା, “ବନ୍ଦୀ ପାଉଲ ଏଯୁବକକୁ
ଆପଣଙ୍କ ନିକଟକୁ ପଠାଇଛନ୍ତି। ସେ ଆପଣଙ୍କୁ କିଛି
କହିବାକୁ ଚାହେଁ।”
୧୯ସେନାଧକ୍ଷ ଯୁବକର ହାତ ଧରି ନିରୋଳା ସ୍ଥାନକୁ
ନେଇ ପଚାରିଲେ, “ତୁମ୍ଭେ ମୋତେ କଣ କହିବାକୁ
ଚାହିଁ?”
୨୦ସେ କହିଲା, “ଯିହୂଦୀମାନେ ପାଉଲଙ୍କୁ ଆହୁରି
ଅଧିକ ପ୍ରଶ୍ନ ପଚାରିବାର ବାହାନାରେ ଆସନ୍ତା କାଲି
ତାହାଙ୍କର ମହାସଭାକୁ ଆଣିବା ଉଦ୍ଦେଶ୍ୟରେ ଆପଣଙ୍କୁ
କହିବାକୁ ସ୍ଥିର କରିଛନ୍ତି। ୨୧କିନ୍ତୁ ଆପଣ ସେମାନଙ୍କ
କଥା ବିଶ୍ୱାସ କରିବେ ନାହିଁ। ଚାଳିଶ ଜଣରୁ ଅଧିକ
ଯିହୂଦୀୟ ଲୁଚିଛନ୍ତି ଏବଂ ପାଉଲଙ୍କୁ ହତ୍ୟା କରିବା ପାଇଁ
ଅପେକ୍ଷା କରିଛନ୍ତି। ସେମାନେ ତାହାଙ୍କୁ ନ ମାରିବା
ପର୍ଯ୍ୟନ୍ତ ଅନ୍ନଜଳ ସ୍ପର୍ଶ କରିବେ ନାହିଁ ବୋଲି ପ୍ରତିଜ୍ଞା
କରିଛନ୍ତି, ଏବେ ସେମାନେ ଆପଣଙ୍କ ସମ୍ମତିକୁ ଅପେକ୍ଷା
କରି ପ୍ରସ୍ତୁତ ଅଛନ୍ତି।”
୨୨ସେନାଧକ୍ଷ ସେହି ଯୁବକଙ୍କୁ ଆଦେଶ ଦେଲେ ଯେ
ସେ ତାହାଙ୍କୁ ଏକଥା କହିଛି ବୋଲି କାହାକୁ ଯେପରି
ନକୁହେ, “ଓ ଏହା କହି ତାହାଙ୍କୁ ପଠାଇଦେଲେ।”

## ପାଉଲଙ୍କୁ କାଇସରୀଆକୁ ସ୍ଥାନାନ୍ତରିତ

୨୩ସେନାଧକ୍ଷ ଦୁଇ ଜଣ ସେନାପତିଙ୍କୁ ଡାକି କହିଲେ,
“ଆଜି ରାତି ନ'ଟା ବେଳେ କାଇସରୀଆକୁ ଯିବା ପାଇଁ
୨୦୦ ପଦାତିକ ସୈନ୍ୟ, ୭୦ ଜଣ ଅଶ୍ୱାରୋହୀ, ୨୦୦
ବର୍ଚ୍ଛାଧାରୀଙ୍କୁ ପ୍ରସ୍ତୁତ କର। ୨୪ନିରାପଦରେ ଯିବା ପାଇଁ
କେତେକ ଘୋଡ଼ାକୁ ପାଉଲଙ୍କ ପାଇଁ ପ୍ରସ୍ତୁତ କର ଓ
ରାଜ୍ୟପାଳ ଫେଲୀକ୍ସଙ୍କ ପାଖରେ ଉପସ୍ଥିତ କରାଅ।”
୨୫ସେନାଧକ୍ଷ ରାଜ୍ୟପାଳଙ୍କୁ ଗୋଟିଏ ପତ୍ର ଲେଖିଲେ, ପତ୍ରର
ମର୍ମ ହେଲା;

୨୬“ମହାମହିମ ରାଜ୍ୟପାଳ ଫେଲୀକ୍ସଙ୍କୁ କ୍ଲାଉଦିଅ
ଲୂସିୟାଙ୍କର ନମସ୍କାର।
୨୭ଯିହୂଦୀମାନେ ଏହି ଲୋକକୁ ଧରି ନେଇ
ହତ୍ୟା କରିବା ପାଇଁ ଚେଷ୍ଟା କରୁଥିଲେ। ମୁଁ
ଘଟଣାସ୍ଥଳରେ ସୈନ୍ୟମାନଙ୍କ ସହିତ ପହଞ୍ଚିଲି ଓ
ତାହାଙ୍କୁ ରକ୍ଷା କଲି। ମୁଁ ଜାଣିବାକୁ ପାଇଲି ସେ
ଜଣେ ରୋମୀୟ ନାଗରିକ। ୨୮ମୁଁ ଏହି ଲୋକକୁ
ସେମାନଙ୍କର ମହାସଭାକୁ ନେଇ ତାହା ବିରୁଦ୍ଧରେ

---

**‘ତୁମ୍ଭର ... ନୁହେଁ’** ଯାତ୍ରା ପୁସ୍ତକ ୨୨:୨୮

ଥିବା ଅଭିଯୋଗ ଜାଣିବାକୁ ଚାହୁଁଥିଲି। ୨୯ତାପରେ
ମୁଁ ଜାଣିବାକୁ ପାଇଲି ଯେ, ସେ ସେମାନଙ୍କ ବ୍ୟବସ୍ଥା
ସମ୍ବନ୍ଧୀୟ ବିଷୟ ଗୁଡ଼ିକରେ ଅଭିଯୁକ୍ତ ହୋଇଛି।
କିନ୍ତୁ ସେ କାରାଦଣ୍ଡ ବା ପ୍ରାଣଦଣ୍ଡ ପାଇବାର
କୌଣସି ଦୋଷ କରି ନାହିଁ। ୩୦ହଠାତ୍ ମୁଁ ତାକୁ
ହତ୍ୟା କରିବାକୁ ଷଡ଼ଯନ୍ତ୍ର କରା ଯାଇଥିବାର ଖବର
ପାଇଲି। ତେଣୁ ମୁଁ ତାକୁ ସଙ୍ଗେସଙ୍ଗେ ଆପଣଙ୍କ
ନିକଟକୁ ପଠାଇଲି। ମୁଁ ତାର ଅଭିଯୋଗକାରୀମାନଙ୍କୁ
କହିଲି ଯେ, ସେମାନେ ଆପଣଙ୍କ ନିକଟରେ ଅଭିଯୋଗ
କରନ୍ତୁ।”

୩୧ତେଣୁ ତାହାଙ୍କ ଆଦେଶ ଅନୁସାରେ, ସୈନିକମାନେ
ପାଉଲଙ୍କୁ ଧରି ନେଲେ ଏବଂ ରାତିରେ ଆନ୍ତିପାତ୍ରି ନଗରକୁ
ଆଣିଲେ। ୩୨ତହିଁ ଆରଦିନ ପାଉଲଙ୍କୁ କାଇସରୀଆରେ
ପହଞ୍ଚାଇବାର ଦାୟିତ୍ୱ ଅଶ୍ୱାରୋହୀମାନଙ୍କୁ ଦେଇ ପଦାତିକ
ସୈନ୍ୟମାନେ ସୈନ୍ୟ ନିବାସକୁ ଫେରି ଆସିଲେ। ୩୩ସେମାନେ
କାଇସରିଆରେ ପହଞ୍ଚି ରାଜ୍ୟପାଳଙ୍କୁ ପତ୍ରଟି ଦେଲେ।
ତା'ପରେ ସେମାନେ ପାଉଲଙ୍କୁ ତାହାଙ୍କ ହାତରେ ସମର୍ପଣ
କଲେ। ୩୪ରାଜ୍ୟପାଳ ପତ୍ର ପଢ଼ି ପାଉଲ କେଉଁ ପ୍ରଦେଶର
ଲୋକ ବୋଲି ପଚାରିଲେ। ସେ ଜାଣିବାକୁ ପାଇଲେ ଯେ
ପାଉଲ କିଲିକିଆର ଲୋକ। ୩୫ରାଜ୍ୟପାଳ କହିଲେ, “ତୁମ୍ଭର
ଅଭିଯୋଗକାରୀମାନେ ଏଠାରେ ପହଞ୍ଚିବା ପରେ, ମୁଁ ତୁମ୍ଭ
ବିଷୟରେ ଶୁଣିବି।” ସେ ପାଉଲଙ୍କୁ ହେରୋଦଙ୍କର ପ୍ରାସାଦରେ
ରଖିବା ପାଇଁ ଆଦେଶ ଦେଲେ।

### ପାଉଲଙ୍କ ଉପରେ ଯିହୂଦୀମାନଙ୍କର ଅଭିଯୋଗ

**୨୪** ହାନାନ ମହାଯାଜକ ପାଞ୍ଚଦିନ ପରେ କେତେକ
ଯିହୂଦୀୟ ନେତା ଓ ତର୍ତ୍ତୁଲ୍ଲ ନାମକ ଜଣେ
ଓକିଲଙ୍କୁ ନେଇ କାଇସରିଆରେ ପହଞ୍ଚିଲେ। ସେଠାରେ
ସେମାନେ ରାଜ୍ୟପାଳଙ୍କ ସାମନାରେ ପାଉଲଙ୍କ ବିରୁଦ୍ଧରେ
ଅଭିଯୋଗ କଲେ। ୨ତେଣୁ ପାଉଲଙ୍କୁ ଡକା ହେଲା।
ତର୍ତ୍ତୁଲ୍ଲ ତାହାଙ୍କ ବିରୁଦ୍ଧରେ ଅଭିଯୋଗ କରି କହିଲେ,
“ହେ ମହାମାନ୍ୟ ଫେଲୀକ୍ସ! ଆମ୍ଭ ଲୋକମାନେ ଆପଣଙ୍କ
ସକାଶେ ବହୁତ ଶାନ୍ତିରେ ଜୀବନଯାପନ କରୁଛନ୍ତି, ତେଣୁ
ଆମ୍ଭେ ଆପଣଙ୍କୁ ଧନ୍ୟବାଦ ଜଣାଉଅଛୁ। ଆପଣଙ୍କ ଦୂରଦୃଷ୍ଟି
ଯୋଗୁ ଏ ଜାତି ନିମନ୍ତେ ବହୁତ ଉନ୍ନତିକର କାର୍ଯ୍ୟ
ହୋଇପାରୁଛି। ୩ଏଥିପାଇଁ ଆମ୍ଭେ ସବୁପ୍ରକାର ଓ ସର୍ବଦା
ଆପଣଙ୍କ ନିକଟରେ ଅତ୍ୟନ୍ତ କୃତଜ୍ଞ। ୪ଏବେ ମୁଁ ଆପଣଙ୍କର
ଅଧିକ ସମୟ ନଷ୍ଟ କରିବାକୁ ଇଚ୍ଛା ନକରି, ସଂକ୍ଷେପରେ
ଆମ୍ଭ କଥା କହିବି। ତେଣୁ ଆପଣ ଧୈର୍ଯ୍ୟ ଧରି ଆମ୍ଭ
କଥା ଶୁଣନ୍ତୁ। ୫ଏ ବ୍ୟକ୍ତି ଜଣେ ଗଣ୍ଡଗୋଳକାରୀ। ସେ
ସାରା ପୃଥିବୀର ଯିହୂଦୀମାନଙ୍କ ମଧ୍ୟରେ ବିଦ୍ରୋହ ସୃଷ୍ଟି
କରୁଛି ଓ ଆନ୍ଦୋଳନ କରିବା ପାଇଁ ମତାଉଛି। ସେ
ନାଜରିତୀୟ ସମ୍ପ୍ରଦାୟର ଜଣେ ମୁଖ୍ୟ ନେତା। ୬ଏପରିକି
ସେ ମନ୍ଦିରକୁ ଅପବିତ୍ର କରିବା ପାଇଁ ମଧ୍ୟ ଚେଷ୍ଟା
କରୁଥିଲା। କିନ୍ତୁ ସେତିକିବେଳେ ଆମ୍ଭେ ତାହାକୁ ଧରିନେଲୁ।
[* ଆପଣ ନିଜେ ତାକୁ ପରୀକ୍ଷା କରି ତାହାଠାରୁ ଆମ୍ଭେ
ତା'ଙ୍କ ବିରୁଦ୍ଧରେ କରିଥିବା ସମସ୍ତ ଅଭିଯୋଗର ସତ୍ୟାସତ୍ୟ
ଜାଣି ପାରିବେ।” ୯ତା'ପରେ ସମସ୍ତ ଯିହୂଦୀମାନେ ଏହି
ଅଭିଯୋଗ ସତ୍ୟ ବୋଲି କହିଲେ।

୧୦ରାଜ୍ୟପାଳ ଯେତେବେଳେ ପାଉଲଙ୍କୁ କହିବା ପାଇଁ
ଆଦେଶ ଦେଲେ, ସେତେବେଳେ ପାଉଲ ଉତ୍ତର ଦେଇ
କହିଲେ, “ମୁଁ ଜାଣେ ଯେ ଆପଣ ଅନେକ ବର୍ଷ ଧରି ଏ
ଜାତିର ବିଚାରକର୍ତ୍ତା ଭାବରେ କାର୍ଯ୍ୟ କରିଆସୁଛନ୍ତି। ତେଣୁ
ଆପଣଙ୍କ ସମ୍ମୁଖରେ ମୁଁ ଆନନ୍ଦରେ ମୋର ପକ୍ଷସମର୍ଥନ
କରୁଅଛି। ୧୧ଆପଣ ନିଜେ ଜାଣି ପାରିବେ ଯେ ମୁଁ
କେବଳ ଉପାସନା କରିବା ପାଇଁ ମାତ୍ର ବାରଦିନ ପୂର୍ବରୁ
ଯିରୂଶାଲମରେ ପହଞ୍ଚିଥିଲି। ୧୨ସେମାନେ ମୋତେ ମନ୍ଦିରରେ
ବା କୌଣସି ପ୍ରାର୍ଥନାଗୃହରେ ବା ସହରରେ କାହାରି ସହ
ଯୁକ୍ତି ତର୍କ କରିବା ବା ଭିଡ଼ ଜମେଇବାର ଦେଖି ନାହାଁନ୍ତି।
୧୩ଏହି ଲୋକମାନେ ମୋ ବିରୁଦ୍ଧରେ ଯେଉଁ ଅଭିଯୋଗ
କରୁଛନ୍ତି, ତାହାର ପ୍ରମାଣ ସେମାନେ ଦେଇ ପାରିବେ
ନାହିଁ। ୧୪କିନ୍ତୁ ମୁଁ ଗୋଟିଏ କଥା ଆପଣଙ୍କୁ କହୁଛି,
ଏମାନେ ଯେଉଁମାନଙ୍କୁ ଗୋଟିଏ ‘ଦଳ’ ବୋଲି କହନ୍ତି,
ସେହି ମତାନୁଯାୟୀ ମୁଁ ମୋର ପୂର୍ବପୁରୁଷମାନଙ୍କ
ପରମେଶ୍ୱରଙ୍କର ଉପାସନା କରେ। କିନ୍ତୁ ମୋଶାଙ୍କ ବ୍ୟବସ୍ଥା
ଯାହା ସବୁ ଶିକ୍ଷା ଦିଏ, ଓ ଭାବବାଦୀ ପୁସ୍ତକରେ ଯାହା
ସବୁ ଲେଖାଅଛି, ସେ ସବୁ ମୁଁ ଦୃଢ଼ରୂପେ ବିଶ୍ୱାସ କରେ।
୧୫ଏହି ବ୍ୟକ୍ତିମାନଙ୍କ ଭଳି, ମୁଁ ମଧ୍ୟ ପରମେଶ୍ୱରଙ୍କଠାରେ
ଏହି ଭରସା ରଖିଛି ଯେ, ଉଭୟ ଉତ୍ତମ ଓ ଦୁଷ୍ଟ
ଲୋକମାନଙ୍କର ମୃତ୍ୟୁରୁ ପୁନରୁତ୍ଥାନ ହେବ। ୧୬ସେଥିପାଇଁ
ମୁଁ ପରମେଶ୍ୱର ଓ ଲୋକମାନଙ୍କ ପାଖରେ ଯାହା ଠିକ୍
ବୋଲି ଅନୁଭବ କରେ, ତାହା ଅନୁଯାୟୀ କାର୍ଯ୍ୟ କରିବା
ପାଇଁ ସର୍ବଦା ଚେଷ୍ଟା କରେ।

୧୭“ମୁଁ ବହୁତ ବର୍ଷ ପର୍ଯ୍ୟନ୍ତ ଯିରୁଶାଲମରୁ ଦୂରରେ
ଥିଲି। ତା ପରେ ମୋ ଦରିଦ୍ର ଯିହୂଦୀମାନଙ୍କୁ ଅର୍ଥ
ସାହାଯ୍ୟ ଦେବା ପାଇଁ ଓ ପରମେଶ୍ୱରଙ୍କ ପାଖରେ ଦାନ
ଉତ୍ସର୍ଗ କରିବା ପାଇଁ ଯିରୁଶାଲମକୁ ଫେରିଲି। ୧୮ମୁଁ
ମନ୍ଦିରରେ ନିଜକୁ ଶୁଚି କରିବାକୁ ଯାଇଥିଲି। ଶୁଚିକରଣ
ଉତ୍ସବ ସରିଗଲାପରେ କେତେକ ଯିହୂଦୀମାନେ ସେଠାରେ
ମୋତେ ଦେଖିଲେ। ମୁଁ ସେଠାରେ କୌଣସି ଗଣ୍ଡଗୋଳ
ସୃଷ୍ଟି କରିନାହିଁ କି ମୋ ସହିତ କୌଣସି ଲୋକ ମଧ୍ୟ
ନଥିଲେ। ୧୯ସେ ସମୟରେ ଏସିଆର କେତେକ ଯିହୂଦୀ
ସେଠାରେ ଥିଲେ। ଯଦି ସେମାନଙ୍କର ମୋ ବିରୁଦ୍ଧରେ
କିଛି ଆପତ୍ତି ଥାଏ ତେବେ ସେମାନେ ଆପଣଙ୍କ ନିକଟରେ
ଉପସ୍ଥିତ ହେବା ଉଚିତ୍, ୨୦ନଚେତ୍ ଆପଣ ଏଠାରେ
ଉପସ୍ଥିତ ଥିବା ଯିହୂଦୀୟମାନଙ୍କୁ ପଚାରନ୍ତୁ, ସେମାନଙ୍କ
ପରିଷଦ ସଭାରେ, ସେମାନଙ୍କ ସମ୍ମୁଖରେ ମୁଁ ଯେତେବେଳେ

---

**ପଦ ସଂଖ୍ୟା ୬-୮** ମାତ୍ର ଲୂସିୟା ସେନାଧ୍ୟକ୍ଷ ଆସି ତାଙ୍କୁ ଆମ ନିକଟରୁ ଜବରଦସ୍ତି ନେଇଗଲେ। ସେ ଅଭିଯୋଗକାରୀମାନଙ୍କୁ ଆପଣଙ୍କୁ ନିକଟକୁ ଆସିବା ପାଇଁ ଆଦେଶ ଦେଲେ। ଏହା କେତେକ ମୂଳ ପ୍ରତୀକରେ ନାହିଁ।

ଠିଆ ହେଲି, ସେତେବେଳେ ସେମାନେ ମୋଠାରେ କଣ
ସବୁ ଦୋଷ ଦେଖିଲେ? ୨୧ମୁଁ କେବଳ ଗୋଟିଏ କଥା
ସେମାନଙ୍କ ମଧ୍ୟରେ ଠିଆ ହୋଇ ଜୋରରେ କହିଥିଲି
ଯେ, 'ମୃତ୍ୟୁରୁ ଲୋକମାନଙ୍କର ପୁନରୁତ୍‌ଥାନ ହେବ ବୋଲି
ବିଶ୍ୱାସ କରୁଥିବାରୁ ମୋର ଆଜି ସଭା ସମ୍ମୁଖରେ ବିଚାର
ହେଉଛି।'"
୨୨ଫେଲିକ୍ସ୍ ଖ୍ରୀଷ୍ଟଙ୍କର ମାର୍ଗ ବିଷୟରେ ଭଲ ଭାବରେ
ଜାଣିଥିବାରୁ ଶୁଣାଣି ସ୍ଥଗିତ ରଖିଲେ। ସେ କହିଲେ,
"ସେନାଧ୍ୟକ୍ଷ ଲୁସିୟା ଆସିବା ପରେ ମୁଁ ତୁମ୍ଭମାନଙ୍କ ବିଚାର
କରିବି।" ୨୩ଫେଲିକ୍ସ୍ ଶତସେନାପତିଙ୍କ ଜିମାରେ ପାଉଲଙ୍କୁ
ରଖିବା ପାଇଁ ଆଦେଶ ଦେଲେ। ସେ ତାହାଙ୍କୁ ନଜରବନ୍ଦୀରେ
ରଖି କିଛି ସ୍ୱାଧୀନତା ଦେବା ପାଇଁ ମଧ୍ୟ ଆଜ୍ଞା ଦେଲେ।
ପାଉଲଙ୍କ ବନ୍ଧୁମାନେ ଯଦି ତାହାଙ୍କ ନିକଟକୁ କୌଣସି
ଆବଶ୍ୟକୀୟ ଜିନିଷ ନେଇ ଆସନ୍ତି, ତେବେ ସେମାନଙ୍କୁ
ବାଧା ନ ଦେବା ନିମନ୍ତେ ମଧ୍ୟ ସେ ସେହି ଶତସେନାପତିଙ୍କୁ
ଆଦେଶ ଦେଲେ।

### ଫେଲିକ୍ସ୍ ଓ ତାହାଙ୍କ ସ୍ତ୍ରୀଙ୍କ ସହିତ ପାଉଲଙ୍କର କଥା

୨୪କିଛି ଦିନ ପରେ ଫେଲିକ୍ସ୍ ତାହାଙ୍କ ସ୍ତ୍ରୀ ଦ୍ରୁସିଲ୍ଲାଙ୍କୁ
ନେଇ ଆସିଲେ। ସେ ଯିହୂଦୀ ଥିଲେ। ଫେଲିକ୍ସ୍
ପାଉଲଙ୍କୁ ଡକାଇ ତାହାଙ୍କଠାରୁ ଖ୍ରୀଷ୍ଟ ଯୀଶୁଙ୍କଠାରେ ବିଶ୍ୱାସ
ବିଷୟରେ ଶୁଣିଲେ। ୨୫କିନ୍ତୁ ପାଉଲ ଯେତେବେଳେ
ଧାର୍ମିକ ଜୀବନ, ଆତ୍ମସଂଯମ ଓ ଆଗାମୀ ବିଚାର ବିଷୟରେ
କହିଲେ, ସେତେବେଳେ ଫେଲିକ୍ସ୍ ଭୟଭୀତ ହୋଇଗଲେ।
ଫେଲିକ୍ସ୍ କହିଲେ, "ବର୍ତ୍ତମାନ ତୁମ୍ଭେ ଯାଅ। ମୋର
ସମୟ ହେଲେ ମୁଁ ତୁମ୍ଭକୁ ଡାକିବି।" ୨୬କିନ୍ତୁ ଫେଲିକ୍ସ୍
ପାଉଲଙ୍କ ସହିତ କଥା ହେବାର ଆଉ ଗୋଟିଏ କାରଣ
ଥିଲା। ସେ ଆଶା କରିଥିଲେ ଯେ ପାଉଲ ତାହାଙ୍କୁ ଟଙ୍କା
ଲାଞ୍ଚ ଦେବେ। ତେଣୁ ସେ ପାଉଲଙ୍କୁ ଅନେକଥର ଡକାଇ
କଥା ହେଉଥିଲେ।
୨୭କିନ୍ତୁ ଏହିପରି ଦୁଇ ବର୍ଷ ବିତିଗଲାପରେ ପର୍କିୟ
ଫେଷ୍ଟ ରାଜ୍ୟପାଳ ହେଲେ। ଫେଲିକ୍ସ୍ ଆଉ ରାଜ୍ୟପାଳ
ପଦରେ ରହିଲେ ନାହିଁ। ତେଣୁ ଫେଲିକ୍ସ୍ ଯିହୂଦୀୟମାନଙ୍କୁ
ସନ୍ତୁଷ୍ଟ କରିବା ପାଇଁ ପାଉଲଙ୍କୁ ବନ୍ଦୀ ଅବସ୍ଥାରେ କାରାଗାରରେ
ରଖି ଚାଲିଗଲେ।

### ପାଉଲଙ୍କର କାଇସରୀଆ ଦେଖିବା ଇଚ୍ଛା

**୨୫** ତା'ପରେ ଫେଷ୍ଟ ରାଜ୍ୟପାଳ ହେଲେ। ସେ
ସେହି ପ୍ରଦେଶରେ ତିନି ଦିନ ରହିଲେ ଓ
ତା'ପରେ କାଇସରୀଆରୁ ଯିରୂଶାଲମ ଚାଲିଗଲେ। ୨ସେଠାରେ
ମୁଖ୍ୟ ଯାଜକମାନେ ଓ ଅନ୍ୟ ଯିହୂଦୀ ନେତାମାନେ
ତାହାଙ୍କୁ ସାକ୍ଷାତ କରି ପାଉଲଙ୍କ ବିରୁଦ୍ଧରେ ସେମାନଙ୍କର
ଅଭିଯୋଗ ଆଗତ କଲେ। ୩ସେମାନେ ପାଉଲଙ୍କୁ ଯିରୂଶାଲମକୁ
ପଠାଇଦେବା ପାଇଁ ତାହାଙ୍କୁ ଅନୁରୋଧ କଲେ। କାରଣ
ସେମାନେ ତାହାଙ୍କୁ ରାସ୍ତାରେ ହତ୍ୟା କରିବାର ଷଡ଼ଯନ୍ତ୍ର
କରିଥିଲେ। ୪କିନ୍ତୁ ଫେଷ୍ଟ କହିଲେ, "ପାଉଲ କାଇସରୀଆରେ
ରହିବେ ଓ ମୁଁ ଶୀଘ୍ର ଯାଇ ପହଞ୍ଚିବି।" ୫ତୁମ୍ଭମାନଙ୍କ
ମଧ୍ୟରୁ କେତେକ ନେତା ମଧ୍ୟ ମୋ ସହିତ ଚାଲନ୍ତୁ। ଯଦି
ପାଉଲ କିଛି ଭୁଲ କରିଛନ୍ତି, ତେବେ ସେମାନେ ତାହାଙ୍କ
ବିରୁଦ୍ଧରେ ଅଭିଯୋଗ ଆଣନ୍ତୁ।"
୬ତା'ପରେ ଫେଷ୍ଟ ସେମାନଙ୍କ ସହିତ ଆଠ ଦଶ
ଦିନରହି କାଇସରୀଆକୁ ଚାଲିଗଲେ। ତହିଁ ଆର ଦିନ ସେ
ବିଚାର ଆସନରେ ବସିଲେ, ଓ ପାଉଲଙ୍କୁ ଡକାଇ ପଠାଇଲେ।
୭ପାଉଲ କୋଠରୀକୁ ଆସିବା ପରେ ଯିରୂଶାଲମରୁ ଯେଉଁ
ଯିହୂଦୀମାନେ ଆସିଥିଲେ, ସେମାନେ ତାହାଙ୍କ ଚାରିପାଖେ
ଠିଆ ହୋଇଗଲେ। ସେମାନେ ତାହାଙ୍କ ବିରୁଦ୍ଧରେ
ବହୁଗୁରୁତର ଅଭିଯୋଗମାନ କଲେ, କିନ୍ତୁ କିଛି ପ୍ରମାଣ
କରିପାରିଲେ ନାହିଁ। ୮ପାଉଲ ଆତ୍ମରକ୍ଷାର ସୁଯୋଗ ପାଇ
ଉତ୍ତର ଦେଲେ, "ମୁଁ ଯିହୂଦୀୟ ବ୍ୟବସ୍ଥା କିମ୍ବା ମନ୍ଦିର
କିମ୍ବା କାଇସରଙ୍କ ବିରୁଦ୍ଧରେ କୌଣସି ଦୋଷ କରି
ନାହିଁ।"
୯କିନ୍ତୁ ଫେଷ୍ଟ ଯିହୂଦୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ
ପଚାରିଲେ, "ତୁମ୍ଭେ ମୋ ଦ୍ୱାରା ଏହି ଅଭିଯୋଗ ସମ୍ବନ୍ଧରେ
ବିଚାର କରା ଯିବା ପାଇଁ ଯିରୁଶାଲମ ଯିବା ପାଇଁ ଚାହୁଁଛ
କି?"
୧୦ପାଉଲ କହିଲେ, "ମୁଁ ବର୍ତ୍ତମାନ କାଇସରଙ୍କ ବିଚାର
ଆସନ ସମ୍ମୁଖରେ ଠିଆ ହୋଇଛି। ଏଠାରେ ହିଁ ମୋର
ବିଚାର ହେବ। ମୁଁ ଯିହୂଦୀୟମାନଙ୍କ ପ୍ରତି ଯେ କୌଣସି
ଭୁଲ କରି ନାହିଁ, ଏହା ଆପଣ ଜାଣନ୍ତି। ୧୧ମୁଁ ଯଦି
କୌଣସି ଦୋଷ କରିଥାଏ, ଓ ମୃତ୍ୟୁ ଯୋଗ୍ୟ କୌଣସି
କାର୍ଯ୍ୟ କରିଥାଏ, ତେବେ ମୁଁ ମୃତ୍ୟୁ ବରଣ କରିବା ପାଇଁ
ପ୍ରସ୍ତୁତ ଅଛି। କିନ୍ତୁ ଯଦି ଏ ଅଭିଯୋଗକାରୀ ମାନଙ୍କର
କଥାରେ ସତ୍ୟତା ନାହିଁ ତେବେ ମୋତେ କେହି
ସେମାନଙ୍କ ହାତରେ ସମର୍ପଣ କରି ପାରିବେ ନାହିଁ। ତେଣୁ
ମୁଁ କାଇସରଙ୍କ ନିକଟରେ ବିଚାର ପାଇଁ ଆବେଦନ
କରୁଛି।"
୧୨ଫେଷ୍ଟ ତାହାଙ୍କ ପରାମର୍ଶ ଦାତାମାନଙ୍କ ସହିତ ଏ
ବିଷୟରେ କଥା ହେଲେ। ସେ କହିଲେ, "ତୁମ୍ଭେ କାଇସରଙ୍କ
ନିକଟରେ ଆବେଦନ କରିଛ। ତେଣୁ ତୁମ୍ଭେ ତାହାଙ୍କ
ନିକଟକୁ ଯିବ।"

### ପାଉଲ ହେରୋଦ ଆଗ୍ରିପ୍ପାଙ୍କ ସାମନାରେ ଉପସ୍ଥିତ ହେଲେ

୧୩କିଛି ଦିନ ପରେ ଆଗ୍ରିପ୍ପା ରାଜା ଓ ରାଣୀ ବର୍ଣ୍ଣୀକୀ
ଫେଷ୍ଟଙ୍କ ସାଙ୍ଗରେ ଦେଖା କରିବାକୁ କାଇସରୀଆ ନଗରକୁ
ଗଲେ। ୧୪ସେମାନେ ସେହି ସ୍ଥାନରେ ବହୁତ ଦିନ
ରହିଲେ। ଫେଷ୍ଟ ରାଜାଙ୍କ ଆଗରେ ପାଉଲଙ୍କ ଅଭିଯୋଗ
ବିଷୟରେ କହିଲେ। ସେ ତାହାଙ୍କୁ କହିଲେ, "ଏଠାରେ
ଜଣେ ଲୋକ ଅଛି। ଫେଲିକ୍ସ ତାକୁ ବନ୍ଦୀ ରୂପେ ରଖି
ଯାଇଛନ୍ତି। ୧୫ମୁଁ ଯିରୂଶାଲମରେ ରହିବା ସମୟରେ ମୁଖ୍ୟ
ଯାଜକମାନେ ଓ ଯିହୂଦୀମାନଙ୍କ ପ୍ରାଚୀନମାନେ ମୋ ନିକଟରେ
ତା ବିରୁଦ୍ଧରେ ଅଭିଯୋଗ କରିଥିଲେ। ସେମାନେ ତାର
ମୃତ୍ୟୁ ଦଣ୍ଡ ଚାହୁଁଥିଲେ। ୧୬ମୁଁ ସେମାନଙ୍କୁ ଉତ୍ତର ଦେଲି,
'ଯେତେବେଳେ କୌଣସି ବ୍ୟକ୍ତି କୌଣସି ଦୋଷ ପାଇଁ
ଅଭିଯୁକ୍ତ ହୁଏ, ସେ ନିଜ ଅଭିଯୋଗକାରୀମାନଙ୍କର ମୁଖାମୁଖି

ନ ହେବା ପର୍ଯ୍ୟନ୍ତ ଓ ନିଜ ବିରୁଦ୍ଧରେ ଆଗତ ଅଭିଯୋଗର
ଉତ୍ତର ନ ଦେବା ପର୍ଯ୍ୟନ୍ତ ରୋମୀୟମାନେ ସେହି ଲୋକଙ୍କୁ
ଅନ୍ୟ କାହାକୁ ବିଚାର ପାଇଁ ଦିଅନ୍ତି ନାହିଁ।' 17ତେଣୁ ଏହି
ଯିହୂଦୀୟମାନେ ବିଚାର ପାଇଁ କାଇସରୀଆକୁ ଆଣିବାରୁ ମୁଁ
ସମୟ ନଷ୍ଟ ନକରି ତହିଁ ଆର ଦିନ ବିଚାର ସ୍ଥାନରେ
ବସିଲି, ଓ ସେହି ଲୋକଙ୍କୁ ବିଚାରାଳୟକୁ ଆଣିବା ପାଇଁ
ଆଦେଶ ଦେଲି। 18ଯିହୂଦୀମାନେ ଠିଆ ହୋଇ ତାହାଙ୍କୁ
ଦୋଷୀ କଲେ। କିନ୍ତୁ କୌଣସି ଖରାପ ଅପରାଧ ପାଇଁ
ସେମାନେ ତାଙ୍କୁ ଅଭିଯୁକ୍ତ କରି ପାରିଲେ ନାହିଁ। 19ତା'
ପରିବର୍ତ୍ତେ ସେମାନେ କେବଳ ନିଜ ଧର୍ମ ଓ ଯୀଶୁ ନାମକ
ଜଣେ ମୃତ ବ୍ୟକ୍ତି ବିଷୟରେ ଯୁକ୍ତି ତର୍କ କଲେ। କିନ୍ତୁ
ପାଉଲ ଯୀଶୁଙ୍କୁ ଜୀବିତ ବୋଲି ଦାବୀ କଲେ। 20ମୁଁ ଏ
ସବୁ ବିଷୟରେ ବେଶି ଜାଣି ନଥିଲି। ତେଣୁ ମୁଁ କିଛି
ପ୍ରଶ୍ନ ପଚାରିଲି ନାହିଁ। ମୁଁ ପାଉଲଙ୍କୁ ପଚାରିଲି, 'ଏହି
ଅଭିଯୋଗଗୁଡ଼ିକର ବିଚାର ପାଇଁ ତୁମ୍ଭେ ଯିରୂଶାଲମ ଯିବାକୁ
ଚାହୁଁଛ କି?' 21କିନ୍ତୁ ପାଉଲ ବନ୍ଦୀଗୃହରେ ରହିବା ପାଇଁ
ଓ ସମ୍ରାଟଙ୍କ ଦ୍ୱାରା ବିଚାର ହେବା ପାଇଁ ଅନୁରୋଧ
କଲେ। ତେଣୁ ମୁଁ ତାହାଙ୍କୁ ସମ୍ରାଟଙ୍କ ପାଖକୁ ପଠାଇବାର
ବ୍ୟବସ୍ଥା କରିବା ପର୍ଯ୍ୟନ୍ତ ବନ୍ଦୀଗୃହରେ ରହିବା ପାଇଁ
ଆଦେଶ ଦେଲି।"

22ତା'ପରେ ଆଗ୍ରିପ୍ପା ଫେଷ୍ଟଙ୍କୁ କହିଲେ, "ମୁଁ ସେହି
ଲୋକଠାରୁ ନିଜେ ଶୁଣିବାକୁ ଚାହେଁ।"

ଫେଷ୍ଟ କହିଲେ, "ଆପଣ ଆସନ୍ତା କାଲି ତା'ଠାରୁ
ଶୁଣିବେ।"

23ତହିଁ ଆର ଦିନ ଆଗ୍ରିପ୍ପା ଓ ବର୍ଣ୍ଣୀକୀ ମହାଆଡ଼ମ୍ବରରେ
ଉଚ୍ଚପଦସ୍ଥ ସାମରିକ କର୍ମଚାରୀ ତଥା ନଗରର ମୁଖ୍ୟ
ବ୍ୟକ୍ତିଙ୍କ ସହିତ ବିଚାରାଳୟରେ ପ୍ରବେଶ କଲେ। ଫେଷ୍ଟଙ୍କ
ଆଦେଶ ଅନୁଯାୟୀ ପାଉଲଙ୍କୁ ସେଠାକୁ ଅଣାଗଲା। 24ତା'ପରେ
ଫେଷ୍ଟ କହିଲେ, "ହେ ରାଜା ଆଗ୍ରିପ୍ପା, ଓ ଉପସ୍ଥିତ ଭଦ୍ର
ବ୍ୟକ୍ତି ବୃନ୍ଦ, ଏ ହେଉଛନ୍ତି ସେହି ଲୋକ, ଯାହାଙ୍କ
ବିଷୟରେ ଉଭୟ ଯିରୂଶାଲମ ଓ ଏଠାରେ ଥିବା ସମସ୍ତ
ଯିହୂଦୀୟ ଲୋକମାନେ ମୋ ନିକଟରେ ଚିତ୍କାର କରି
ଆବେଦନ କରିଛନ୍ତି ଯେ, ତାହାଙ୍କୁ ଆଉ ବଞ୍ଚିରହିବାକୁ
ଦିଆ ନ ଯାଉ। 25କିନ୍ତୁ ମୁଁ ଯେତେବେଳେ ତାହାଙ୍କର
ବିଚାର କଲି ସେତେବେଳେ ତାହାଙ୍କର କିଛି ଭୁଲ ଦେଖିଲି
ନାହିଁ। ତାହାଙ୍କୁ ମୃତ୍ୟୁଦଣ୍ଡ ଦେଲା ଭଳି କୌଣସି କାରଣ
ଦେଖିଲି ନାହିଁ। ସେ ସମ୍ରାଟଙ୍କ ନିକଟରେ ବିଚାରିତ ହେବା
ପାଇଁ ଆବେଦନ କରିଥିବାରୁ ମୁଁ ତାହାଙ୍କୁ ପାଖକୁ ରୋମ
ପଠାଇବା ପାଇଁ ସ୍ଥିର କଲି। 26କିନ୍ତୁ ମୁଁ ପ୍ରକୃତରେ ଜାଣି
ପାରୁନାହିଁ, ସମ୍ରାଟଙ୍କୁ ତା' ବିଷୟରେ କଣ ଲେଖିବି? ତେଣୁ
ମୁଁ ତାଙ୍କୁ ଆପଣମାନଙ୍କ ପାଖକୁ ଓ ହେ ରାଜା ଆଗ୍ରିପ୍ପା
ବିଶେଷ କରି ଆପଣଙ୍କ ପାଖକୁ ଆଣିଛି। ମୋର ଆଶା,
ଆପଣ ତାଙ୍କୁ ପ୍ରଶ୍ନ ପଚାରି ପାରିବେ, ଓ କାଇସରଙ୍କୁ
ଲେଖିବା ପାଇଁ ମୋତେ କିଛି କହିବେ। 27ତେଣୁ ମୁଁ
ଭାବୁଛି, ଜଣେ ବନ୍ଦୀ ବିରୁଦ୍ଧରେ କୌଣସି ଅଭିଯୋଗ
ନଲେଖି ସମ୍ରାଟଙ୍କ ପାଖକୁ ପଠାଇବା ମୋର ମୂର୍ଖାମୀ
ହେବ।"

## ରାଜା ଆଗ୍ରିପ୍ପାଙ୍କ ସମ୍ମୁଖରେ ପାଉଲ

26 ଆଗ୍ରିପ୍ପା ପାଉଲଙ୍କୁ କହିଲେ, "ତୁମ୍ଭକୁ ନିଜ
ସପକ୍ଷରେ କହିବା ପାଇଁ ଅନୁମତି ଦିଆଗଲା।"
ତାପରେ ପାଉଲ ନିଜ ହାତ ପ୍ରସାରିତ କରି ନିଜ
ପକ୍ଷରେ କହିବାକୁ ଲାଗିଲେ। 2ହେ ରାଜା ଆଗ୍ରିପ୍ପା, "ମୁଁ
ନିଜକୁ ଭାଗ୍ୟବାନ ମନେ କରୁଛି, କାରଣ ମୁଁ ଆଜି
ଆପଣଙ୍କ ସମ୍ମୁଖରେ ଯିହୁଦୀମାନଙ୍କ ଦ୍ୱାରା ଅଭିଯୋଗ
ବିରୁଦ୍ଧରେ ମୋ ପକ୍ଷର ଉତ୍ତର ଦେବା ପାଇଁ ସମର୍ଥ
ହୋଇପାରିଛି। 3ଏକଥା ସତ୍ୟ ଯେ, ଆପଣ ଯିହୂଦୀୟ
ପରମ୍ପରା ଓ ସେମାନେ ଯୁକ୍ତି କରୁଥିବା ବିଷୟରେ ଉତ୍ତମ
ଜ୍ଞାନ ରଖିଛନ୍ତି। ତେଣୁ ମୋର କଥା ଧୈର୍ଯ୍ୟ ସହକାରେ
ଶୁଣିବା ପାଇଁ ମୁଁ ଆପଣଙ୍କୁ ଅନୁରୋଧ କରୁଛି।

4"ସମସ୍ତ ଯିହୂଦୀୟମାନେ ମୋର ସମ୍ପୂର୍ଣ୍ଣ ଜୀବନ ବିଷୟରେ
ଜାଣନ୍ତି। ମୁଁ ପିଲାଦିନରୁ ନିଜ ଦେଶରେ ଓ ପରେ
ଯିରୂଶାଲମରେ କିପରି ବାସ କରିଥିଲି, ତାହା ସେମାନେ
ଜାଣନ୍ତି। 5ସେମାନେ ମୋତେ ବହୁତ ଦିନରୁ ଜାଣନ୍ତି।
ସେମାନେ ଯଦି ଚାହାଁନ୍ତି ତେବେ ସାକ୍ଷ୍ୟ ଦେଇ ପାରନ୍ତି
ଯେ, ମୁଁ ଜଣେ ଉତ୍ତମ ଫାରୂଶୀ ଥିଲି। ଯିହୂଦୀୟ ଧର୍ମ
ବ୍ୟବସ୍ଥାକୁ ଫାରୂଶୀମାନେ ଅନ୍ୟ କୌଣସି ଯିହୂଦୀୟ ଦଳର
ଲୋକଙ୍କ ଅପେକ୍ଷା ଅଧିକ ଦୃଢ଼ ଭାବରେ ମାନନ୍ତି।
6ଆମ୍ଭମାନଙ୍କ ପୂର୍ବପୁରୁଷଙ୍କ ନିକଟରେ ପରମେଶ୍ୱର ଯେଉଁ
ପ୍ରତିଜ୍ଞା କରିଥିଲେ, ସେହି ପ୍ରତିଜ୍ଞା ଉପରେ ନିର୍ଭର
କରିଥିବାରୁ ମୋର ଆଜି ବିଚାର ହେଉଛି। 7ଯେଉଁ
ପ୍ରତିଜ୍ଞାକୁ ଇସ୍ରାୟେଲର ବାରୋଟି ଗୋଷ୍ଠୀ ମଧ୍ୟ ଗ୍ରହଣ
କରିବାକୁ ଆଶା କରନ୍ତି, ଓ ଏହାରି ଉପରେ ନିର୍ଭର କରି
ଦିନରାତି ପରମେଶ୍ୱରଙ୍କୁ ପୂଜା କରନ୍ତି, ମୁଁ ମଧ୍ୟ ସେହି
ପ୍ରତିଜ୍ଞା ଗ୍ରହଣ କରିବା ପାଇଁ ଆଶା କରିଛି। ହେ ରାଜା!
ସେହି ପ୍ରତିଜ୍ଞା ଉପରେ ମୋର ଆଶା ଓ ବିଶ୍ୱାସ ଥିବାରୁ
ଯିହୂଦୀମାନେ ମୋ ବିରୁଦ୍ଧରେ ଅଭିଯୋଗ କରୁଛନ୍ତି।
8ପରମେଶ୍ୱର ଯେ ଲୋକମାନଙ୍କୁ ମୃତ୍ୟୁରୁ ପୁନରୁତ୍ଥିତ କରି
ପାରିବେ, ଏକଥା ଆପଣମାନେ କାହିଁକି ଅସମ୍ଭବ ବୋଲି
ଭାବୁଛନ୍ତି?

9"ମୁଁ ଯେତେବେଳେ ଫାରୂଶୀଥିଲି, ସେତେବେଳେ ମୁଁ
ମଧ୍ୟ ନାଜରିତୀୟ ଯୀଶୁଙ୍କ ବିରୁଦ୍ଧରେ ଅନେକ କାର୍ଯ୍ୟ
କରିବି ବୋଲି ଭାବୁଥିଲି। 10ଏ ଭଳି କରୁଥିବା ବେଳେ ମୁଁ
ଯିରୂଶାଲମରେ ପରମେଶ୍ୱରଙ୍କର ଅନେକ ଲୋକଙ୍କୁ ବନ୍ଦୀ
କରି କାରାଗାରରେ ରଖିଥିଲି। ଯୀଶୁଙ୍କ ଅନୁସରଣକାରୀଙ୍କୁ
ଯେତେବେଳେ ମୃତ୍ୟୁଦଣ୍ଡ ଦିଆଯାଉଥିଲା, ସେତେବେଳେ ମୁଁ
ମଧ୍ୟ ଏହା ଠିକ୍ ବୋଲି ଭାବି ସେଥିରେ ପୂର୍ଣ୍ଣ ସମ୍ମତ
ହୋଇଥିଲି। ମୁଁ ପରମେଶ୍ୱରଙ୍କର ଅନେକ ଲୋକମାନଙ୍କୁ
ଧରି ଆଣି କାରାଗାରରେ ବନ୍ଦୀ କରି ରଖୁଥିଲି, କାରଣ
ଏପରି କରିବା ନିମନ୍ତେ ମୁଁ ମହାଯାଜକମାନଙ୍କଠାରୁ କ୍ଷମତା
ପାଇଥିଲି। 11ମୁଁ ସେମାନଙ୍କୁ ପ୍ରାର୍ଥନାଗୃହ ସବୁରେ ଦଣ୍ଡ
ଦେଇଥିଲି। ମୁଁ ସେମାନଙ୍କୁ ଖ୍ରୀଷ୍ଟଙ୍କ ବିରୁଦ୍ଧରେ କହିବା
ପାଇଁ ବାଧ କରିଥିଲି। ମୁଁ ସେମାନଙ୍କ ବିରୁଦ୍ଧରେ ଏତେ
ଭୀଷଣ ଭାବରେ ରାଗି ଯାଇଥିଲି ଯେ ସେମାନଙ୍କୁ ଅତ୍ୟାଚାର
କରିବା ପାଇଁ ବିଦେଶୀ ନଗର ଗୁଡ଼ିକୁ ମଧ୍ୟ ଯାଇଥିଲି।

### ଯୀଶୁଙ୍କ ବିଷୟରେ ପାଉଲଙ୍କ ବର୍ଣ୍ଣନା

୧୨"ଏଥିରେ ମୁଖ୍ୟ ଯାଜକମାନେ ମୋତେ ଦମ୍ମେସକ
ନଗରକୁ ଯିବା ପାଇଁ ଅନୁମତି ଓ କ୍ଷମତା ଦେଲେ। ୧୩ମୁଁ
ଦମ୍ମେସକକୁ ଯାଉଥିଲି। ସେତେବେଳେ ଖରାବେଳ ହୋଇଥିଲା।
ହଠାତ୍ ମୁଁ ଆକାଶରେ ଗୋଟିଏ ଆଲୋକ ଦେଖିଲି।
ସେହି ଆଲୋକ ସୂର୍ଯ୍ୟଙ୍କଠାରୁ ମଧ୍ୟ ଅଧିକ ଉଜ୍ଜ୍ୱଳ ଥିଲା।
ତାହା ମୋର ଓ ମୋ ସହିତ ଯାଉଥିବା ଲୋକଙ୍କ
ଚାରିପଟେ ଝଲସୁ ଥିଲା। ୧୪ଆମ୍ଭେ ସମସ୍ତେ ତଳେ
ପଡ଼ିଗଲୁ। ସେତେବେଳେ ମୁଁ ଏବ୍ରୀ ଭାଷାରେ ଗୋଟିଏ ସ୍ୱର
ମୋତେ କହୁଥିବାର ଶୁଣିଲି, 'ଶାଉଲ, ଶାଉଲ, ତୁମ୍ଭେ
ମୋତେ କାହିଁକି ତାଡ଼ନା ଦେଉଛ? କଣ୍ଟାମୁନରେ ଗୋଇଠା
ମାରିବା ତୁମ୍ଭପାଇଁ ଅସମ୍ଭବ ଅଟେ।' ୧୫ମୁଁ ପଚାରିଲି, 'ପ୍ରଭୁ,
ଆପଣ କିଏ?' ସେ କହିଲେ, 'ମୁଁ ସେହି ଯୀଶୁ, ଯାହାଙ୍କୁ
ତୁମ୍ଭେ ତାଡ଼ନା କରୁଛ।' ୧୬ତୁମ୍ଭେ ଏବେ ଠିଆହୁଅ। ମୁଁ
ତୁମ୍ଭକୁ ଜଣେ ସେବକରୂପେ ନିଯୁକ୍ତ କରିବା ପାଇଁ ତୁମ୍ଭ
ନିକଟରେ ଦେଖା ଦେଇଅଛି। ତୁମ୍ଭେ ମୋ ବିଷୟରେ
ଯାହା ଦେଖିଲ, ଓ ଯାହା ମୁଁ ତୁମ୍ଭକୁ ଦେଖାଇବି, ତୁମ୍ଭେ
ତା'ର ସାକ୍ଷୀ ହେବ। ୧୭ମୁଁ ତୁମ୍ଭକୁ ତୁମ୍ଭ ନିଜ ଓ ଅନ୍ୟ
ଦେଶର ଲୋକମାନଙ୍କଠାରୁ ରକ୍ଷା କରିବି। ସେମାନଙ୍କର
ଆଖି ଖୋଲି ଦେବାପାଇଁ ମୁଁ ତୁମ୍ଭକୁ ପଠାଉଛି। ୧୮ତୁମ୍ଭେ
ସେହି ଲୋକମାନଙ୍କୁ ସତ୍ୟ ପଥ ଦେଖାଇବ ଓ ସେମାନଙ୍କୁ
ଅନ୍ଧକାରରୁ ଆଲୋକକୁ ଆଣିବ। ତୁମ୍ଭେ ସେମାନଙ୍କୁ
ଶୟତାନର ଶକ୍ତି ନିକଟରୁ ଦୂରେଇ ନେଇ ପରମେଶ୍ୱରଙ୍କ
ପାଖକୁ ଆଣିବ। ତେବେ ସେମାନଙ୍କର ପାପକୁ କ୍ଷମା
କରାଯିବ। ଯେଉଁମାନେ ମୋତେ ବିଶ୍ୱାସ କରି ପବିତ୍ର
ହୋଇଛନ୍ତି ସେମାନଙ୍କ ମଧ୍ୟରେ ସେମାନେ ସ୍ଥାନ
ପାଇବେ।'"

### ପାଉଲଙ୍କ ନିଜ କାର୍ଯ୍ୟ ବିଷୟରେ କହିବା

୧୯ପାଉଲ କହିଲେ, "ହେ ମହାରାଜା ଆଗ୍ରିପ୍ପା' ମୁଁ
ସେହି ସ୍ୱର୍ଗୀୟ ଦର୍ଶନର ବାଧ୍ୟ ହେଲି। ୨୦ମୁଁ ପ୍ରଥମେ
ଦମ୍ମେସକ ନଗରରେ, ପରେ ଯିରୂଶାଲମରେ, ସମଗ୍ର
ଯିହୂଦା ଓ ଅଣଯିହୂଦୀ ଦେଶମାନଙ୍କରେ ମଧ୍ୟ ପ୍ରଚାର
କଲି। ମୁଁ ସେମାନଙ୍କୁ ଅନୁତାପ କରି ପରମେଶ୍ୱରଙ୍କ
ପାଖକୁ ଫେରିବା ପାଇଁ କହିଲି। ସେମାନଙ୍କ ହୃଦୟ
ପରିବର୍ତ୍ତନ ପାଇଁ ଉଚିତ କାର୍ଯ୍ୟକରିବା ପାଇଁ ମଧ୍ୟ କହିଲି।
୨୧ଏଥିପାଇଁ ମନ୍ଦିରରେ ଥିବା ସମୟରେ ଯିହୂଦୀମାନେ
ମୋତେ ବନ୍ଦୀ କଲେ, ଓ ମାରିବାକୁ ଚେଷ୍ଟା କଲେ।
୨୨କିନ୍ତୁ ମୋତେ ପରମେଶ୍ୱର ସାହାଯ୍ୟ କଲେ। ସେ ଆଜି
ପର୍ଯ୍ୟନ୍ତ ମୋତେ ସାହାଯ୍ୟ କରିଆସୁଛନ୍ତି। ପରମେଶ୍ୱରଙ୍କ
ସାହାଯ୍ୟ ପାଇ ମୁଁ ଏଠାରେ ଠିଆ ହୋଇଛି। ଉଭୟ
ପ୍ରଭାବଶାଳୀ ଓ ସାଧାରଣ ଲୋକମାନଙ୍କୁ, ମୁଁ ଦେଖିଥିବା
କଥା କହୁଛି। ମୁଁ କିଛି ନୂଆ କଥା କହୁ ନାହିଁ। ମୋଶା
ଓ ଭାବବାଦୀମାନେ ଯାହା ସବୁ ଘଟିବ ବୋଲି କହିଛନ୍ତି,
ମୁଁ ସେହି କଥା କହୁଛି। ୨୩ସେମାନେ କହିଛନ୍ତି, ଖ୍ରୀଷ୍ଟ
ମୃତ୍ୟୁବରଣ କରିବେ ଓ ମୃତ୍ୟୁରୁ ପୁନରୁତ୍ଥିତ ହେଉଥିବା
ପ୍ରଥମ ବ୍ୟକ୍ତି ହେବେ। ମୋଶା ଓ ଭାବବାଦୀମାନେ
କହିଛନ୍ତି, କେବଳ ଖ୍ରୀଷ୍ଟ ଯିହୂଦୀ ଓ ଅଣଯିହୂଦୀମାନଙ୍କୁ
ଆଲୋକ ଦେଖାଇବେ।"

### ପାଉଲଙ୍କର ଆଗ୍ରିପ୍ପାଙ୍କ ଧାରଣା ବଦଳେଇବାର ଚେଷ୍ଟା

୨୪ପାଉଲ ଆତ୍ମରକ୍ଷା ପାଇଁ ଏହି ସବୁ କଥା କହୁଥିଲାବେଳେ,
ଫେଷ୍ଟ ଖୁବ୍ ଜୋରରେ କହିଲେ, "ପାଉଲ, ତୁମ୍ଭେ
ପାଗଳ। ବହୁତ ପଢ଼ିବା କାରଣରୁ ତୁମ୍ଭେ ପାଗଳ
ହୋଇଯାଇଛ।"

୨୫ପାଉଲ ଏହା ଶୁଣି ଉତ୍ତର ଦେଲେ, "ହେ ମହାମାନ୍ୟ
ଫେଷ୍ଟ, ମୁଁ ପାଗଳ ନୁହେଁ। ମୋର ସବୁ କଥା ସତ୍ୟ ଓ
ଯୁକ୍ତିଯୁକ୍ତ। ୨୬ରାଜା ଆଗ୍ରିପ୍ପା ଏସବୁ କଥା ଜାଣନ୍ତି। ତାହାଙ୍କୁ
ଏହା ସ୍ପଷ୍ଟ ଭାବରେ କହି ପାରିବି, କାରଣ ମୁଁ ଜାଣେ ଯେ,
ତାହାଙ୍କ ଦୃଷ୍ଟିରୁ ଏ ସମସ୍ତ ବିଷୟ ବାଦ୍ ଯାଇନାହିଁ,
ଯେହେତୁ ଏହିସବୁ କୌଣସି ଗୁପ୍ତ ସ୍ଥାନରେ କରାଯାଇ
ନାହିଁ। ୨୭ହେ ରାଜା ଆଗ୍ରିପ୍ପା, ଆପଣ କଣ ଭାବବାଦୀମାନଙ୍କ
ଲେଖାରେ ବିଶ୍ୱାସ କରନ୍ତି କି? ମୁଁ ଜାଣେ, ଆପଣ ବିଶ୍ୱାସ
କରନ୍ତି।"

୨୮ଆଗ୍ରିପ୍ପା ପାଉଲଙ୍କୁ କହିଲେ, "ତୁମ୍ଭେ କ'ଣ ଏତେ
ସହଜରେ ମୋତେ ଖ୍ରୀଷ୍ଟିୟାନ କରିଦେବ ବୋଲି ଭାବୁଛ?"
୨୯ପାଉଲ ଉତ୍ତର ଦେଲେ, "ପରମେଶ୍ୱର କରନ୍ତୁ, ଶୀଘ୍ର
ବା ବିଳମ୍ବରେ ହେଉ, ଆପଣ ଓ ଅନ୍ୟସମସ୍ତେ, ମୋ
କଥା ଶୁଣି, ପରିତ୍ରାଣ ପାଆନ୍ତୁ ଓ କୌଣସି ବନ୍ଧନ ବିନା
ମୋ ପରି ହୁଅନ୍ତୁ।"

୩୦ତାପରେ ରାଜା, ରାଜ୍ୟପାଳ, ରାଣୀ ବର୍ଣ୍ଣୀକୀ ଓ
ଅନ୍ୟମାନେ ସମସ୍ତେ ଠିଆ ହେଲେ ଓ ପ୍ରସ୍ଥାନ କଲେ।
୩୧ସେମାନେ ବିଚାର ଗୃହ ଛାଡ଼ୁଥିଲା ବେଳେ ପରସ୍ପର ସହିତ
କଥାବାର୍ତ୍ତା ହେଲେ। ସେମାନେ କହିଲେ, "ଏହି ଲୋକକୁ
ମାରିଦେବା କିମ୍ବା ବନ୍ଦୀ କରିବା ଉଚିତ ନୁହେଁ। ସେ
ପ୍ରକୃତରେ କିଛି ଖରାପ କାର୍ଯ୍ୟ କରିନାହିଁ।" ୩୨ଆଗ୍ରିପ୍ପା
ଫେଷ୍ଟଙ୍କୁ କହିଲେ, "ଆମ୍ଭେ ଏହି ଲୋକକୁ ମୁକ୍ତ
ଦେଇପାରିଥାନ୍ତୁ, କିନ୍ତୁ ସେ ଯଦି କାଇସରଙ୍କୁ ଆବେଦନ
କରି ନ ଥାଆନ୍ତା।"

### ପାଉଲଙ୍କର ରୋମକୁ ଜଳଯାତ୍ରା

**୨୭** ଇତାଲିଆକୁ ଜାହାଜରେ ଯାତ୍ରା କରିବା ପାଇଁ
ସ୍ଥିର ହେବାରୁ ପାଉଲ ଓ ଅନ୍ୟ ବନ୍ଦୀମାନଙ୍କୁ
ଦାୟିତ୍ୱ ଯୂଲିଅ ନାମକ ଶତସେନାପତିଙ୍କ ହସ୍ତରେ ଅର୍ପଣ
କରାଗଲା। ସେହି ଯୂଲିଅ ସମ୍ରାଟଙ୍କର ସେନା ବାହିନୀରେ
ଚାକିରୀ କରୁଥିଲେ। ଆମ୍ଭେମାନେ ଆଦ୍ରାମୁତ୍ତୀୟରୁ ଗୋଟିଏ
ଜାହାଜରେ ଉଠିଲୁ। ସେହି ଜାହାଜଟି ଏସିଆ ଉପକୂଳବର୍ତ୍ତୀ
ବନ୍ଦରଗୁଡ଼ିକୁ ଯାଉଥିଲା। ଥେସଲନୀକୀର ଆରିସ୍ତାର୍ଖ ନାମକ
ଜଣେ ମାକିଦନିଆ ଅଧିବାସୀ ଆମ୍ଭ ସହିତ ଥିଲେ। ୩ତହିଁ
ଆରଦିନ ଆମ୍ଭେ ସୀଦୋନରେ ପହଞ୍ଚିଲୁ। ଯୂଲିଅ ପାଉଲଙ୍କ
ପ୍ରତି ଦୟା ଦେଖେଇ ତାହାଙ୍କୁ ତାହାଙ୍କର ବନ୍ଧୁମାନଙ୍କ
ସହିତ ସାକ୍ଷାତ କରିବା ପାଇଁ ଅନୁମତି ଦେଲେ। ପାଉଲଙ୍କ
ବନ୍ଧୁମାନେ ତାହାଙ୍କର ଆବଶ୍ୟକତା ପୂର୍ଣ୍ଣ କଲେ। ୪ତା'ପରେ
ଆମ୍ଭେ ସୀଦୋନ ନଗର ଛାଡ଼ିଲୁ। ସେ ସମୟରେ ପ୍ରତିକୂଳ

ପବନ ବହୁଥିଲା । ତେଣୁ ଆମ୍ଭେ ସାଇପ୍ରସ୍ ଉପଦ୍ୱୀପ ନିକଟ
ଦେଇ ଜଳଯାତ୍ରା କଲୁ । ୫ତା'ପରେ ଆମ୍ଭେ କିଲିକିୟା ଓ
ପଂଫୁଲିଆ କୂଳେକୂଳେ ଯାଇ ଲୁକିଆ ଦେଶର ମୁରା
ନଗରୀରେ ପହଞ୍ଚିଲୁ । ୬ସେଠାରେ ଯୁଲିଅ ଆଲେକଜାଣ୍ଡ୍ରିଆର
ଜାହାଜଟିଏ ଇଟାଲିଆକୁ ଯାଉଥିବାର ପାଇଲେ । ସେ
ଆମ୍ଭମାନଙ୍କୁ ସେଥିରେ ଚଢ଼ାଇ ଦେଲେ ।
୭ଆମ୍ଭେମାନେ କିଛି ଦିନ ଧୀରେ ଧୀରେ ଯାତ୍ରା କଲୁ ।
ଶେଷରେ ବହୁତ ଅସୁବିଧାର ସମ୍ମୁଖୀନ ହୋଇ କ୍ନିଦ
ପହଞ୍ଚିଲୁ । କିନ୍ତୁ ଖୁବ୍ ଜୋର୍‌ରେ ପବନ ବହୁଥିବାରୁ ଆମ୍ଭେ
ଆଗକୁ ଯାଇ ପାରିଲୁନାହିଁ । ତେଣୁ ଆମ୍ଭେ ସାଲ୍ମୋନୀର
ନିକଟ କ୍ରୀତୀ ଦ୍ୱୀପ ଉପକୂଳ ଦେଇ ଯାତ୍ରା କଲୁ । ୮ଆମ୍ଭେ
କୂଳେକୂଳେ ବହୁତ କଷ୍ଟରେ ଯାତ୍ରା କଲୁ । ତାପରେ ଆମ୍ଭେ
ଲାସାୟା ନଗର ପାଖ 'ସୁନ୍ଦର ବନ୍ଦର' ନାମକ ସ୍ଥାନରେ
ପହଞ୍ଚିଲୁ ।
୯ଏହିପରି ବହୁତ ସମୟ ବିତିଗଲା । ସେତେବେଳେ
ଯିହୂଦୀୟ ଉପବାସ ଦିବସର ପରବର୍ତ୍ତୀ ସମୟ ହୋଇ
ଥିବାରୁ, ଦୀର୍ଘ ଯାତ୍ରା ପାଇଁ ପାଗ ବିପଦପୂର୍ଣ୍ଣ ହୋଇ
ଆସୁଥିଲା । ତେଣୁ ପାଉଲ ସେମାନଙ୍କୁ ସାବଧାନ କରେଇ
କହିଲେ, "ହେ ବନ୍ଧୁଗଣ! ମୁଁ ଭାବୁଛି, ଆମ୍ଭମାନଙ୍କର ଆଉ
ଆଗକୁ ଯାତ୍ରା କରିବା ବିପଦଜନକ ହେବ । ୧୦ଏହା ଦ୍ୱାରା
ଯେ କେବଳ ଜାହାଜ ଓ ଜିନିଷପତ୍ରର କ୍ଷତି ଘଟିବ ତାହା
ନୁହେଁ, ହୁଏତ ଆମ୍ଭମାନଙ୍କର ଜୀବନ ମଧ୍ୟ ଚାଲିଯାଇପାରେ ।"
୧୧କିନ୍ତୁ ସେନାଧିକାରୀ, ପାଉଲଙ୍କ କହିଥିବା କଥା ଅପେକ୍ଷା
ଜାହାଜର କ୍ୟାପଟେନ୍ ଓ ମାଲିକଙ୍କ କଥାକୁ ଅଧିକ
ବିଶ୍ୱାସ କଲେ । ୧୨ସେହି ବନ୍ଦରଟି ଶୀତ କଟେଇବା ପାଇଁ
ଅନୁପଯୁକ୍ତ ଥିଲା । ତେଣୁ ଜାହାଜର ଅଧିକାଂଶ ନାବିକ
ଫୋନୀକ୍ସ୍‌ରେ ପହଞ୍ଚିବା ଆଶାରେ ସେଠାରେ ଆମ୍ଭ ସହିତ
ଯିବା ପାଇଁ ଓ ଶୀତଋତୁ କଟେଇବା ପାଇଁ ପରାମର୍ଶ
ଦେଲେ । ଫୋନୀକ୍ସ୍ କ୍ରୀଟି ଉପଦ୍ୱୀପର ଗୋଟିଏ ନଗର ।
ଫୋନୀକ୍ସ୍ ଗୋଟିଏ ବନ୍ଦର । ତାହା ଉଭୟ ଉତ୍ତରପୂର୍ବ ଓ
ଦକ୍ଷିଣ ପୂର୍ବ ଦିଗକୁ ଥିଲା ।

### ତୋଫାନ

୧୩ତାପରେ ବହୁତ ପବନ ଦକ୍ଷିଣ ଦିଗରୁ ବୋହିଲା ।
ଜାହାଜରେ ଥିବା ଲୋକମାନେ ଭାବିଲେ, "ଆମ୍ଭେ ଯେଉଁ
ପବନ ବହିବା ଇଚ୍ଛା କରିଥିଲୁ, ତାହା ଆମ୍ଭେ ପାଇଲୁ ।"
ତେଣୁ ଆମ୍ଭେ ଲଙ୍ଗର ଉଠେଇ କ୍ରୀଟି ଉପଦ୍ୱୀପର କୂଳେକୂଳେ
ଯାତ୍ରା କଲୁ । ୧୪ମାତ୍ର ଅଳ୍ପ ସମୟ ପରେ ହଠାତ୍ ପାଗ
ବଦଳିଗଲା । "ଉତ୍ତର ପୂର୍ବୀୟ" ନାମକ ପବନ, ଦ୍ୱୀପଆଡୁ
ପ୍ରଚଣ୍ଡ ବେଗରେ ବୋହିବାକୁ ଲାଗିଲା । ୧୫ଏହା ଜାହାଜକୁ
ଆଘାତ କରି ସମୁଦ୍ର ଭିତରକୁ ଠେଲି ନେଲା । ଜାହାଜ
ପବନରେ ସ୍ଥିର ହୋଇ ରହି ନପାରିବାରୁ ଆମ୍ଭେ ତାକୁ
ଭାସିଯିବା ପାଇଁ ଛାଡ଼ି ଦେଲୁ । ୧୬ତାପରେ ଆମ୍ଭେ କ୍ଲାଉଦ
ନାମକ ଉପଦ୍ୱୀପ ଉହାଡ଼ରେ ଜାହାଜ ଚଳାଇଲୁ । ସେଠାରେ
ଗୋଟିଏ ଜୀବନରକ୍ଷକ ଡ଼ଙ୍ଗାକୁ ବହୁ କଷ୍ଟରେ ଆମ୍ଭେ
ଜାହାଜ ଉପରକୁ ଉଠାଇବାକୁ ସମର୍ଥ ହେଲୁ । ୧୭କେବଳ
ତାହାକୁ ଜାହାଜ ଭିତରକୁ ନେଲୁ । ତାହାକୁ ଏକାଠି ଧରି
ରଖିବା ପାଇଁ ଜାହାଜର ଚାରିପଟେ ଦଉଡ଼ିରେ ବାନ୍ଧି
ଦେଲେ । ନାବିକମାନେ ଚୋରାବାଲିରେ ଜାହାଜ ଲାଗିଯିବାର
ଭୟ କଲେ । ତେଣୁ ସେମାନେ ଉପର ପାଲ ଗୁଡ଼ିକ
ଖସେଇ ପବନରେ ଜାହାଜଟିକୁ ଭସେଇ ଦେଲେ । ୧୮ତହିଁ
ଆରଦିନ ସେମାନେ ଝଡ଼ର ପ୍ରବଳ ବେଗରେ ବଢ଼ିବାରୁ
ମାଲ ଗୁଡ଼ିକ ସମୁଦ୍ରରେ ପକେଇ ଦେଲେ । ୧୯ତୃତୀୟ ଦିନ
ସେମାନେ ନିଜ ହାତରେ ଜାହାଜର ସରଞ୍ଜାମ ସବୁ ପାଣିକୁ
ଫୋପାଡ଼ି ଦେଲେ । ୨୦ଆମ୍ଭେ ବହୁତ ଦିନ ପର୍ଯ୍ୟନ୍ତ ସୂର୍ଯ୍ୟ
କି ତାରା କିଛି ଦେଖି ପାରିଲୁ ନାହିଁ । ପ୍ରଚଣ୍ଡ ଝଡ଼
ବତାସର ବେଗ କମିଲା ନାହିଁ । ଆମ୍ଭେମାନେ ଜୀବନ ରକ୍ଷା
କରିବାର ସମସ୍ତ ଆଶା ହରେଇ ବସିଲୁ । ଆମ୍ଭେ ଭାବିଲୁ,
ଆମ୍ଭର ମୃତ୍ୟୁ ଘଟିବ । ଅନେକ ଦିନ ପର୍ଯ୍ୟନ୍ତ ଆମ୍ଭେମାନେ
କେହି କିଛି ଖାଇ ନଥିଲୁ ।
୨୧ଶେଷରେ ପାଉଲ ସେମାନଙ୍କୁ କହିଲେ, "ବନ୍ଧୁଗଣ,
ତୁମ୍ଭେମାନେ ଯଦି ମୋ କଥା ଶୁଣି କ୍ରୀଟି ଉପଦ୍ୱୀପରୁ
ଜାହାଜ ଛାଡ଼ି ନଥାନ୍ତ, ତେବେ ତୁମ୍ଭମାନଙ୍କର ଏ ଜାହାଜ
ନଷ୍ଟ ହୋଇ ନଥାନ୍ତା ଓ ଏତେ କ୍ଷତି ଘଟି ନ ଥାନ୍ତା ।
୨୨କିନ୍ତୁ ବର୍ତ୍ତମାନ ମୋହର କଥାଶୁଣ ଓ ସାହସ ଧର ।
କାରଣ ତୁମ୍ଭମାନଙ୍କ ମଧ୍ୟରୁ କାହାରି ଜୀବନ ଯିବ ନାହିଁ ।
କେବଳ ଜାହାଜଟି ନଷ୍ଟ ହୋଇଯିବ । ୨୩ମୁଁ ଯେଉଁ
ପରମେଶ୍ୱରଙ୍କର ସେବା କରେ, ତାହାଙ୍କର ଜଣେ ଦୂତ
ଗତକାଲି ରାତିରେ ମୋ ପାଖରେ ଠିଆ ହୋଇ କହିଲେ,
୨୪'ଭୟ କରନାହିଁ, ପାଉଲ! ତୁମ୍ଭେ ନିଶ୍ଚୟ କାଇସରଙ୍କ
ସମ୍ମୁଖକୁ ଯିବ । ପରମେଶ୍ୱର ତୁମ୍ଭ ହେତୁ ତୁମ୍ଭର ସମସ୍ତ
ସହଯାତ୍ରୀଙ୍କ ଜୀବନ ରକ୍ଷା କରିବେ ।' ୨୫ତେଣୁ ବନ୍ଧୁଗଣ!
ଖୁସୀ ହୁଅ । ମୁଁ ପରମେଶ୍ୱରଙ୍କୁ ବିଶ୍ୱାସ କରେ । ତାହାଙ୍କ
ଦୂତ ମୋତେ ଯେପରି କହିଛନ୍ତି, ଠିକ୍ ସେହିପରି ଘଟିବ ।
୨୬କିନ୍ତୁ ଆମ୍ଭେ କୌଣସି ଉପଦ୍ୱୀପ କୂଳରେ ଖଣ୍ଡ ବିଖଣ୍ଡ
ହୋଇ ପଡ଼ିବୁ ।"
୨୭ଝଡ଼ର ଚଉଦ ଦିନରେ ପ୍ରାୟ ମଧ୍ୟ ରାତ୍ରି ସମୟରେ
ଆମ୍ଭ ଜାହାଜ ଆଦ୍ରିୟା ସମୁଦ୍ରର ପାଖରେ ଭାସୁଥିଲା । ଆମ୍ଭ
ନାବିକମାନେ କୌଣସି ସ୍ଥଳ ଭାଗରେ ନିକଟବର୍ତ୍ତୀ ହୋଇଛନ୍ତି
ବୋଲି ସନ୍ଦେହ କଲେ । ୨୮ସେମାନେ ଗୋଟିଏ କଡ଼ରେ
ଓଜନ ଓହଳିଥିବା ଦଉଡ଼ି ସାହାଯ୍ୟରେ ମାପ କରି
ସେଠାରେ ଜଳର ଗଭୀରତା ୧୨୦ ଫୁଟ ବୋଲି ଦେଖିଲେ ।
କିଛି ସମୟ ପରେ ସେମାନେ ପୁଣି ମାପି ତାହା ୯୦
ଫୁଟ ଗଭୀର ଥିବାର ଦେଖିଲେ । ୨୯ସେମାନେ ଭୟ
କଲେ, ଯେ କାଳେ ଜାହାଜ ଭାସି-ଭାସି ଯାଇ ପଥରରେ
ଧକ୍କା ହୋଇଯିବ । ତେଣୁ ସେମାନେ ଜାହାଜର ପଛପଟେ
ଚାରୋଟି ଲଙ୍ଗର ପକାଇ ଦିନ ହେବା ପାଇଁ ଅପେକ୍ଷା
କଲେ । ୩୦କେତେକ ନାବିକ ଜାହାଜ ଛାଡ଼ି ଚାଲିଯିବାକୁ
ଚାହିଁଲେ । ତେଣୁ ସେମାନେ ଜୀବନରକ୍ଷକ ଡ଼ଙ୍ଗାକୁ ପାଣିରେ
ଖସେଇ ଦେଲେ । ଯାହା ଫଳରେ ଅନ୍ୟମାନେ ଭାବିବେ
ଯେ, ନାବିକମାନେ ଜାହାଜ ସାମନାରେ ଅଧିକ ଲଙ୍ଗର
ପକାଇବାକୁ ଯାଉଛନ୍ତି । ୩୧କିନ୍ତୁ ପାଉଲ ସେନାଧିକାରୀଙ୍କୁ
ଓ ସୈନିକମାନଙ୍କୁ କହିଲେ, "ଏମାନେ ଯଦି ଜାହାଜରେ
ନ ରହିବେ, ତେବେ ତୁମ୍ଭେମାନେ କେହି ରକ୍ଷା ପାଇବ

ନାହିଁ ।” ୩୨ତେଣୁ ସୈନିକମାନେ ଜୀବନରକ୍ଷକ ଡ଼ଙ୍ଗାର
ଦଉଡ଼ି କାଟି ଦେଲେ ଓ ତାହାକୁ ପାଣିରେ ପକେଇ
ଦେଲେ ।

୩୩ପାହାନ୍ତିଆ ସମୟର ଠିକ୍ ପୂର୍ବରୁ ପାଉଲ ସେମାନଙ୍କୁ
କିଛି ଖାଦ୍ୟ ଖାଇବା ପାଇଁ ଅନୁରୋଧ କଲେ । ସେ
କହିଲେ, “ତୁମ୍ଭେମାନେ ଉତ୍କଣ୍ଠାର ସହିତ ଅପେକ୍ଷା କରିଛ
ଓ ଆଜିକୁ ଚଉଦ ଦିନ ଧରି ତୁମ୍ଭେମାନେ ଖାଦ୍ୟ ସ୍ପର୍ଶ
କରି ନାହଁ । ୩୪ବର୍ତ୍ତମାନ ବଞ୍ଚିବା ପାଇଁ ତୁମ୍ଭମାନଙ୍କର କିଛି
ଖାଦ୍ୟ ଖାଇବା ନିହାତି ଆବଶ୍ୟକ । ତୁମ୍ଭମାନଙ୍କ ମଧ୍ୟରୁ
କାହାରି ମୁଣ୍ଡର ଗୋଟିଏ ବାଳ ମଧ୍ୟ, ନଷ୍ଟ ହେବ ନାହିଁ ।”
୩୫ଏତିକି କହିବା ପରେ ପାଉଲ କିଛି ରୋଟୀ ନେଇ
ସମସ୍ତଙ୍କ ଆଗରେ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ, ଓ
ସେଥିରୁ ଖଣ୍ଡେ ଛିଣ୍ଡେଇ ଖାଇବାକୁ ଆରମ୍ଭ କଲେ ।
୩୬ଏଥିରେ ସେମାନେ ସମସ୍ତେ ଉତ୍ସାହିତ ହେଲେ ଓ
ସେମାନେ ମଧ୍ୟ ଖାଇବା ଆରମ୍ଭ କଲେ । ୩୭(ଜାହାଜରେ
ସର୍ବ ମୋଟ ୨୭୬ ଜଣ ଥିଲେ) । ୩୮ଆମ୍ଭେ ଯଥେଷ୍ଟ
ପରିମାଣରେ ଖାଇବା ପରେ ଜାହାଜରେ ଥିବା ଗହମକୁ
ସେମାନେ ସମୁଦ୍ରରେ ଫିଙ୍ଗି ଦେଲେ, ଯଦ୍ୱାରା ଜାହାଜ
ହାଲୁକା ହୋଇଗଲା ।

### ଜାହାଜ ନଷ୍ଟ ହୋଇଗଲା

୩୯ଦିନ ହେଲା, ମାତ୍ର ନାବିକମାନେ ସେହି ସ୍ଥାନଟି ଚିହ୍ନି
ପାରିଲେ ନାହିଁ । ସେମାନେ ଗୋଟିଏ ଉପସାଗର କୂଳରେ
ବାଲିତଟ ଦେଖିଲେ । ସମ୍ଭବ ହେଲେ ସେହି କୂଳରେ
ଜାହାଜ ଲଗେଇବା ପାଇଁ ସ୍ଥିରକଲେ । ୪୦ସେମାନେ ଲଙ୍ଗର
ଗୁଡ଼ିକ କାଟି ସମୁଦ୍ରରେ ଫିଙ୍ଗି ଦେଲେ । ସେମାନେ ମଙ୍ଗର
ଦଉଡ଼ି ଫିଟେଇ ପବନରେ ସାମନା ପାଲଟି ଉଠାଇଲେ ।
ତାପରେ ସେମାନେ ବାଲିତଟ ଆଡ଼କୁ ଯାତ୍ରା କଲେ ।
୪୧କିନ୍ତୁ ଜାହାଜଟି ଦୁଇଟି ସମୁଦ୍ରର ସଙ୍ଗମ ସ୍ଥାନରେ
ଗୋଟିଏ ବାଲିଚଡ଼ାଠାରେ ଧକ୍‌କା ଖାଇ ଲାଗିଗଲା । ତେଣୁ
ଜାହାଜର ଆଗ ଅଂଶ ଅଚଳ ହୋଇଗଲା ଓ ପଛ ଭାଗ
ଲହରୀ ଧକ୍‌କାରେ ଭାଙ୍ଗି ଖଣ୍ଡଖଣ୍ଡ ହୋଇଗଲା ।

୪୨ବନ୍ଦୀମାନେ କାଳେ ପହଁରି ଖସି ପଳେଇବେ, ସେଥିପାଇଁ
ସୈନ୍ୟମାନେ ଭୟରେ ସେମାନଙ୍କୁ ହତ୍ୟା କରିବା ପାଇଁ
ଚିନ୍ତା କଲେ । ୪୩କିନ୍ତୁ ସେନା ଅଧିକାରୀ ଯୁଲିଅ ପାଉଲଙ୍କୁ
ରକ୍ଷା କରିବା ପାଇଁ ଚାହିଁଲେ । ତେଣୁ ବନ୍ଦୀ ଲୋକମାନଙ୍କୁ
ମାରିଦେବା ପାଇଁ ସେ ସୈନିକମାନଙ୍କୁ ଅନୁମତି ଦେଲେ
ନାହିଁ । ସେ ପହଁରି ଜାଣିଥିବା ଲୋକଙ୍କୁ ସମୁଦ୍ରକୁ ଡେଇଁ
ପଡ଼ି ପହଁରିପହଁରି କୂଳକୁ ଯିବା ପାଇଁ ଆଦେଶ ଦେଲେ ।
୪୪ସେ ଅନ୍ୟମାନଙ୍କୁ ଜାହାଜର କୌଣସି କାଠ ପଟା ବା
ଭଙ୍ଗା ଅଂଶକୁ ଧରି ବା ଭେଳା ସାହାଯ୍ୟରେ କୂଳକୁ ଯିବା
ପାଇଁ କହିଲେ । ଏହିପରି ଭାବରେ ସମସ୍ତେ ନିରାପଦରେ
କୂଳରେ ଆସି ପହଞ୍ଚିଲେ । କାହାରି ମୃତ୍ୟୁ ହେଲା ନାହିଁ ।

### ମେଲିଟୀ ଦ୍ୱୀପରେ ପାଉଲ

୨୮ ଆମ୍ଭେ ନିରାପଦରେ କୂଳରେ ପହଞ୍ଚିବା ପରେ
ଜାଣିଲୁ ଯେ, ସେହି ଉପଦ୍ୱୀପର ନାମ ମେଲିଟୀ
ସେତେବେଳେ ବର୍ଷା ହେଉଥିଲା । ୨ବହୁତ ଥଣ୍ଡା ଲାଗୁଥିଲା,
ଦ୍ୱୀପର ବାସିନ୍ଦାମାନେ ଆମ୍ଭମାନଙ୍କ ପ୍ରତି ବହୁତ ଦୟା
ଦେଖାଇଲେ । ସେମାନେ ଆମ୍ଭପାଇଁ ନିଆଁ ଜଳେଇ ଆମ୍ଭକୁ
ସ୍ୱାଗତ କଲେ । ୩ପାଉଲ ବିଡ଼ାଏ କାଠ ଏକତ୍ର କରି
ନିଆଁରେ ପକାଇଲେ । ସେତେବେଳେ ନିଆଁର ଉତ୍ତାପ
ହେତୁ ଗୋଟିଏ ବିଷାକ୍ତ ସାପ ବାହାରି ପାଉଲଙ୍କ ହାତକୁ
କାମୁଡ଼ି ଦେଲା । ୪ସେଠାର ବାସିନ୍ଦାମାନେ ତାହାଙ୍କ ହାତରେ
ସାପ ଝୁଲୁ ଥିବାର ଦେଖିଲେ । ସେମାନେ ନିଜନିଜ
ଭିତରେ କୁହା କୁହି ହେଲେ, “ଏ ଲୋକଟା ନିଶ୍ଚୟ
ହତ୍ୟାକାରୀ । ଯଦିଓ ଏ ଲୋକ ସମୁଦ୍ରରୁ ରକ୍ଷା ପାଇଲା,
କିନ୍ତୁ ନ୍ୟାୟ ଏହାକୁ ବଞ୍ଚିବା ପାଇଁ ଦେଲା ନାହିଁ ।” ୫ମାତ୍ର
ପାଉଲ ହାତ ଛାଟିଆଡ଼ି ସାପଟିକୁ ନିଆଁରେ ଫିଙ୍ଗି ଦେଲେ ।
ଏଥିରେ ତାହାଙ୍କର କିଛି କ୍ଷତି ହେଲା ନାହିଁ । ୬ଲୋକେ
ଆଶା କରି ଥିଲେ ସେ ଫୁଲି ଯିବ ବା ତଳେ ପଡ଼ି
ମରିଯିବ । କିନ୍ତୁ ବହୁତ ସମୟ ପରେ ମଧ୍ୟ ତାହାଙ୍କର
କିଛି କ୍ଷତି ହେବାର ସେମାନେ ଦେଖିଲେ ନାହିଁ । ତେଣୁ
ପାଉଲଙ୍କ ପ୍ରତି ସେମାନଙ୍କର ଧାରଣା ବଦଳିଗଲା । ତାହାଙ୍କୁ
ପରମେଶ୍ୱର ବୋଲି ଭାବିଲେ ।

୭ସେହି ଅଞ୍ଚଳ ନିକଟରେ ଦ୍ୱୀପର ଜଣେ ମୁଖ୍ୟ
ଲୋକଙ୍କର କେତେ ଖଣ୍ଡି ଜମି ଥିଲା । ତାହାଙ୍କର ନାମ
ପୁବ୍ଲିୟ । ସେ ତାହାଙ୍କ ଘରକୁ ନେଇ ଆମ୍ଭକୁ ତିନି ଦିନ
ପର୍ଯ୍ୟନ୍ତ ରଖି ଅତିଥି ସତ୍କାର କଲେ । ୮ସେହି ସମୟରେ
ପୁବ୍ଲିୟଙ୍କ ପିତା ଜ୍ୱର ଓ ଝାଡ଼ାରେ ଶଯ୍ୟାଶାୟୀ ଥିଲେ ।
ପାଉଲ ତାହାଙ୍କ ପାଖକୁ ଯାଇ ପ୍ରାର୍ଥନା କଲେ । ପ୍ରାର୍ଥନା
ପରେ ସେ ତାହାଙ୍କ ଉପରେ ହାତ ରଖି ତାହାଙ୍କୁ ସୁସ୍ଥ
କରିଦେଲେ । ୯ଏପରି ହେବାର ଦେଖି ଦ୍ୱୀପରେ ଥିବା
ଅନ୍ୟ ପୀଡ଼ିତ ଲୋକମାନେ ମଧ୍ୟ ଆସି ସୁସ୍ଥ ହେଲେ ।
୧୦ସେମାନେ ଆମ୍ଭକୁ ବହୁତ ଉପହାର ସହିତ ସମ୍ମାନ
ଦେଲେ । ଆମ୍ଭେ ସେଠାରେ ତିନି ମାସ ପର୍ଯ୍ୟନ୍ତ ରହିଲୁ ।
ଆମ୍ଭେ ଜଳଯାତ୍ରାରେ ବାହାରିବା ସମୟରେ ସେମାନେ
ଆମ୍ଭକୁ ଆବଶ୍ୟକୀୟ ଜିନିଷମାନ ମଧ୍ୟ ଦେଲେ ।

### ପାଉଲଙ୍କ ରୋମକୁ ଗଲେ

୧୧ଆମ୍ଭେ ତିନି ମାସ ପରେ ଆଲେକଜାଣ୍ଡ୍ରିଆ ନଗରୀର
ଗୋଟିଏ ଜାହାଜରେ ଚଢ଼ି ପୁଣି ଯାତ୍ରା କଲୁ । ତାର ନାମ
ମିଥୁନ ଥିଲା । ଏହି ଜାହାଜଟି ମେଲିଟୀ ଦ୍ୱୀପରେ ଶୀତକାଳ
ବିତାଇଥିଲା । ୧୨ଆମ୍ଭେମାନେ ସେଥିରେ ସୁରକୁସା ନଗରୀରେ
ପହଞ୍ଚି ସେଠାରେ ତିନି ଦିନ ରହିଲୁ । ୧୩ସେଠାରୁ ବାହାରି
ଆମ୍ଭେ ରେଗିୟ ନଗରରେ ପହଞ୍ଚିଲୁ । ସେଠାରେ ଗୋଟିଏ
ଦିନ ରହିବା ପରେ ଦକ୍ଷିଣା ପବନ ବହିଲା । ଆମ୍ଭେ
ଦ୍ୱିତୀୟ ଦିନ ପୁତେଅଲୀ ନଗରରେ ପହଞ୍ଚିଲୁ । ୧୪ସେଠାରେ
ଆମ୍ଭେ କେତେକ ଭାଇମାନଙ୍କୁ ଭେଟିଲୁ । ସେମାନେ ଆମ୍ଭକୁ
ସେଠାରେ ସାତ ଦିନ ରହିବାକୁ ଅନୁରୋଧ କଲେ ।
ତା’ପରେ ଆମ୍ଭେ ରୋମକୁ ଆସିଲୁ । ୧୫ରୋମରେ ଥିବା
ଭାଇମାନେ ଆମ୍ଭ ଆସିବା ବିଷୟରେ ଖବର ପାଇଥିଲେ ।
ସେମାନେ “ଆପ୍ପିୟଙ୍କ ହାଟ” ଓ “ତିନି ସରେଇ ଘର”
ସ୍ଥାନ ପର୍ଯ୍ୟନ୍ତ ଆମ୍ଭକୁ ଭେଟିବାକୁ ଆସିଥିଲେ । ସେମାନଙ୍କୁ

ଦେଖି ପାଉଲ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲେ ଓ
ଉତ୍ସାହିତ ହେଲେ।

### ରୋମରେ ପାଉଲ

୧୬ତା’ପରେ ଆମ୍ଭେ ରୋମ ଗଲୁ, ପାଉଲଙ୍କୁ ରୋମରେ
ଏକାକୀ ରହିବା ପାଇଁ ଅନୁମତି ମିଳିଲା। କିନ୍ତୁ ତାହାଙ୍କ
ପାଖରେ ଜଣେ ସୈନିକ ସବୁବେଳେ ଜଗି ରହିଲା।
୧୭ପାଉଲ ତିନି ଦିନ ପରେ ଯିହୂଦୀନେତାମାନଙ୍କୁ
ଡକାଇଲେ। ସେମାନେ ଏକତ୍ରିତ ହେଲା ପରେ ସେ
ସେମାନଙ୍କୁ କହିଲେ, “ଭାଇମାନେ, ମୁଁ ଯଦି ଆମ୍ଭ ଲୋକମାନଙ୍କ
ବିରୁଦ୍ଧରେ ବା ଆମ୍ଭ ପୂର୍ବ ପୁରୁଷମାନଙ୍କ ପରମ୍ପରା ବିରୁଦ୍ଧରେ
କିଛି କରି ନଥିଲି, ତଥାପି ମୋତେ ଯିରୂଶାଲମରେ ବନ୍ଦୀ
କରି ରୋମୀୟମାନଙ୍କ ପାଖରେ ସମର୍ପିତ କରାଗଲା।
୧୮ରୋମୀୟମାନେ ମୋତେ ଅନେକ ପ୍ରଶ୍ନ ପଚାରିଲେ। କିନ୍ତୁ
ସେମାନେ ମୋଠାରେ ମୃତ୍ୟୁଦଣ୍ଡ ଯୋଗ୍ୟ କୌଣସି ଦୋଷ
ପାଇଲେ ନାହିଁ। ତେଣୁ ସେମାନେ ମୋତେ ମୁକ୍ତ କରି
ଦେବା ପାଇଁ ଚାହିଁଲେ। ୧୯କିନ୍ତୁ ଯିହୂଦୀମାନେ ଏ ନିଷ୍ପତ୍ତିରେ
ଆପତ୍ତି କଲେ। ତେଣୁ ମୁଁ କାଇସରଙ୍କ ନିକଟରେ
ଆବେଦନ କରିବା ପାଇଁ ବାଧ୍ୟ ହେଲି। ମୋର କିନ୍ତୁ ନିଜ
ଲୋକମାନଙ୍କ ବିରୁଦ୍ଧରେ କୌଣସି ଆପତ୍ତି ଅଭିଯୋଗ
ନାହିଁ। ୨୦ଏଇଥିପାଇଁ ମୁଁ ତୁମ୍ଭମାନଙ୍କ ସଙ୍ଗେ ସାକ୍ଷାତ
କରିବା ଓ କଥା ହେବା ପାଇଁ ଚାହିଁଲି। ଇସ୍ରାଯେଲର
ଭରସାରେ ବିଶ୍ୱାସ କରୁଥିବା ହେତୁ ମୁଁ ଆଜି ଏହି
ଶିକୁଳିରେ ବନ୍ଧା ହୋଇଛି।”
୨୧ଯିହୂଦୀ ନେତାମାନେ ଏହା ଶୁଣି ପାଉଲଙ୍କୁ କହିଲେ,
“ଆମ୍ଭେମାନେ ତୁମ୍ଭ ବିଷୟରେ ଯିହୂଦା ଦେଶରୁ କୌଣସି
ପତ୍ର ପାଇ ନାହୁଁ। ଆମ୍ଭେ ଯିରୂଶାଲମରୁ ଆସିଥିବା
ଭାଇମାନଙ୍କଠାରୁ ତୁମ୍ଭ ବିରୁଦ୍ଧରେ କିଛି ଖବର ବା ମନ୍ଦ
ସୂଚନା ପାଇ ନାହୁଁ। ୨୨ଆମ୍ଭେ ତୁମ୍ଭଠାରୁ ତୁମ୍ଭ ବିଚାରଗୁଡ଼ିକ
ବିଷୟରେ ଶୁଣିବାକୁ ଚାହୁଁଛୁ। ଆମ୍ଭେ ଜାଣୁ ଯେ ଏହି
ଦଳର ନିନ୍ଦା ସବୁଠାରେ ହେଉଛି।”
୨୩ତେଣୁ ସେମାନେ ତାହାଙ୍କ ପାଖକୁ ଆସିବା ପାଇଁ
ଗୋଟିଏ ଦିନ ସ୍ଥିର କଲେ। ବହୁ ସଂଖ୍ୟାରେ ଲୋକମାନେ
ତାହାଙ୍କ ରହିବା ସ୍ଥାନକୁ ଆସିଲେ। ପାଉଲ ସେମାନଙ୍କୁ
ପରମେଶ୍ୱରଙ୍କ ରାଜ୍ୟ ବିଷୟରେ ପ୍ରମାଣ ସହିତ ସବୁ କଥା
ବୁଝାଇ ଦେଲେ। ସେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ମୋଶାଙ୍କ
ବ୍ୟବସ୍ଥା ଓ ଭାବବାଦୀଙ୍କ ଶାସ୍ତ୍ରରୁ ଯୀଶୁଙ୍କ ବିଷୟ ବୁଝାଇ
ସେମାନଙ୍କୁ ବିଶ୍ୱାସ କରାଇବା ପାଇଁ ଚେଷ୍ଟା କଲେ।
୨୪ସେମାନଙ୍କ ମଧ୍ୟରୁ କେତେ ଜଣ ଯିହୂଦୀ ପାଉଲଙ୍କ କଥା
ବିଶ୍ୱାସ କଲେ, କିନ୍ତୁ କେତେକ ବିଶ୍ୱାସ କଲେ ନାହିଁ।
୨୫ସେମାନେ ଶେଷରେ ନିଜ-ନିଜ ଭିତରେ ତର୍କବିତର୍କ
କରି ବିଦାୟ ନେଲେ। ସେତେବେଳେ ପାଉଲ ସେମାନଙ୍କୁ
କହିଲେ, “ପବିତ୍ର ଆତ୍ମା ଭାବବାଦୀ ଯିଶାଇୟଙ୍କ ଦ୍ୱାରା
ତୁମ୍ଭମାନଙ୍କର ପୂର୍ବପୁରୁଷମାନଙ୍କୁ ସତ୍ୟ କଥା କହିଥିଲେ।
୨୬ସେ କହିଲେ,

‘ଏହି ଲୋକମାନଙ୍କ ପାଖକୁ ଯାଅ, ଓ ସେମାନଙ୍କୁ
କୁହ ଯେ ତୁମ୍ଭେମାନେ ଶୁଣିବ, କିନ୍ତୁ ବୁଝିବ ନାହିଁ।
ତୁମ୍ଭେମାନେ ଚାହିଁଥିବ, ଓ ଦେଖୁଥିବ କିନ୍ତୁ ତୁମ୍ଭେ
ଯାହା ଦେଖିବ, ତାହା ବୁଝିବ ନାହିଁ।
୨୭ ହଁ, ଏଠାରେ ଏହି ଲୋକମାନଙ୍କର ମନ କଠୋର
ହୋଇ ଯାଇଛି। ଏ ଲୋକମାନଙ୍କର କାନ ଅଛି
କିନ୍ତୁ ଏମାନେ ଶୁଣିପାରୁ ନାହାଁନ୍ତି। ଏମାନେ ସତ
କଥା ଦେଖିବା ପାଇଁ ଆଖି ବନ୍ଦ କରି ଦେଉଛନ୍ତି।
ନ ହେଲେ ହୁଏତ ସେମାନେ ସେମାନଙ୍କ ଆଖିରେ
ଦେଖି ପାରନ୍ତେ, କାନରେ ଶୁଣି ପାରନ୍ତେ ଓ ବୁଝି
ପାରନ୍ତେ। ଏହାଦ୍ୱାରା, ସେମାନେ ମନଫେରାଇ ମୋ’
ନିକଟକୁ ଆସନ୍ତେ ଓ ମୁଁ ସେମାନଙ୍କୁ ସୁସ୍ଥ କରନ୍ତି।’
ଯିଶାଇୟ ୬:୯-୧୦

୨୮“ତେଣୁ ମୁଁ ଚାହେଁ ତୁମ୍ଭେମାନେ ଜାଣିରଖ ଯେ,
ପରମେଶ୍ୱର ତାହାଙ୍କର ଏହି ପରିତ୍ରାଣର ସମ୍ବାଦ ଅଣଯିହୂଦୀ
ଲୋକମାନଙ୍କ ପାଖକୁ ପଠାଇଛନ୍ତି। ସେମାନେ ତାହାକୁ
ଶୁଣିବେ, ପୁଣି ଗ୍ରହଣ କରିବେ।” ୨୯*
୩୦ପାଉଲ ଦୁଇ ବର୍ଷ ପର୍ଯ୍ୟନ୍ତ ନିଜର ଭଡ଼ା ଘରେ
ରହିଲେ। ୩୧ଯେତେଲୋକ ପାଉଲଙ୍କୁ ଦେଖିବା ପାଇଁ
ଆସୁଥିଲେ ସେ ସମସ୍ତଙ୍କୁ ସେ ସ୍ୱାଗତ କଲେ ଓ ପାଉଲ
ମୁକ୍ତ ଭାବରେ, ବିନା ବାଧାରେ ପୁଣି ଅତି ସାହସର ସହିତ
ପରମେଶ୍ୱରଙ୍କ ରାଜ୍ୟ ଓ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ବିଷୟରେ
ପ୍ରଚାର କଲେ। ପୁଣି ସେହି ଶିକ୍ଷା ଦେବାରୁ କେହି ହେଲେ
ତାହାଙ୍କୁ ଅଟକାଇବା ପାଇଁ ଚେଷ୍ଟା କଲେ ନାହିଁ।

---

**ପଦ ସଂଖ୍ୟା ୨୯** ଏହି କଥା କହିବା ପରେ ଯିହୂଦୀମାନେ ନିଜନିଜ ଭିତରେ ବହୁତ ଯୁକ୍ତିତର୍କ କରି ଚାଲି ଗଲେ।

# ରୋମୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କ ପତ୍ର

୧ ଖ୍ରୀଷ୍ଟ ଯୀଶୁଙ୍କ ଜଣେ କ୍ରୀତ ଦାସ ପାଉଲଙ୍କ ଠାରୁ
ନମସ୍କାର। ପରମେଶ୍ୱର ମୋତେ ତାହାଙ୍କର ପ୍ରେରିତ
ଭାବରେ ଡ଼ାକିଲେ। ତାହାଙ୍କର ସୁସମାଚାର ଲୋକମାନଙ୍କୁ
କହିବା ପାଇଁ ମୁଁ ବଛା ହେଲି।
୨ ପରମେଶ୍ୱର, ଏହି ସୁସମାଚାର ନିଜ ଲୋକଙ୍କୁ ଦେବା
ପାଇଁ ବହୁ ଆଗରୁ ପ୍ରତିଜ୍ଞା କରି ଥିଲେ। ପରମେଶ୍ୱର,
ନିଜ ଭବିଷ୍ୟଦ୍‌ବକ୍ତାମାନଙ୍କୁ ବ୍ୟବହାର କରି ଏହି ପ୍ରତିଜ୍ଞା
କରିଥିଲେ। ସେହି ପ୍ରତିଜ୍ଞା ପବିତ୍ର ଶାସ୍ତ୍ରରେ ଲେଖା
ହୋଇଛି। ୩ ଏହି ସୁସମାଚାର ପରମେଶ୍ୱରଙ୍କ ପୁତ୍ର ତଥା
ଆମ୍ଭମାନଙ୍କ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧରେ ଅଟେ। ୪ ସେ
ଦାଉଦଙ୍କ ବଂଶରେ ମନୁଷ୍ୟ ରୂପରେ ଜନ୍ମ ହୋଇଥିଲେ।
କିନ୍ତୁ, ପବିତ୍ର ଆତ୍ମା ଦ୍ୱାରା ପୁନରୁଥାନର ଫଳ ସ୍ୱରୂପ ସେ
ମହାନ ଶକ୍ତି ସହିତ ପରମେଶ୍ୱରଙ୍କର ପୁତ୍ର ରୂପେ ଘୋଷିତ
ହେଲେ। ୫ ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ପରମେଶ୍ୱର ମୋତେ
ବାର୍ତ୍ତାବହ ହେବାର ବିଶେଷ କାର୍ଯ୍ୟ ଦେଇଛନ୍ତି। ପରମେଶ୍ୱର,
ଏହା ଦ୍ୱାରା ସମସ୍ତ ଜାତିର ଲୋକଙ୍କ ମନରେ ତାହାଙ୍କ
ପ୍ରତି ବିଶ୍ୱାସ ଜନ୍ମାଇବା ଓ ତାହାଙ୍କୁ ମାନିବା ପାଇଁ ଏହି
କାମ ମୋତେ ଦେଲେ। ମୁଁ ଏହି କାମ ଯୀଶୁ ଖ୍ରୀଷ୍ଟଙ୍କ
ପାଇଁ କରୁଛି। ୬ ତୁମ୍ଭେମାନେ ମଧ୍ୟ ଯୀଶୁ ଖ୍ରୀଷ୍ଟଙ୍କର ହେବା
ପାଇଁ ଡକା ଯାଇଛ।
୭ ତୁମ୍ଭେମାନେ ପରମେଶ୍ୱରଙ୍କ ପବିତ୍ର ଲୋକ ବୋଲି
ବଛା ଯାଇ ଥିବାରୁ, ମୁଁ ତୁମ୍ଭମାନଙ୍କୁ ଏହି ପତ୍ର ଲେଖୁଛି।
ତୁମ୍ଭମାନଙ୍କୁ ଅନୁଗ୍ରହ ଓ ଶାନ୍ତି ପ୍ରାପ୍ତ ହେଉ। ଆମ୍ଭ
ପରମପିତା ପରମେଶ୍ୱର ଓ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ଅନୁଗ୍ରହ
ଓ ଶାନ୍ତି ତୁମ୍ଭମାନଙ୍କୁ ମିଳୁ।

## ଧନ୍ୟବାଦ ପ୍ରାର୍ଥନା

୮ ସର୍ବପ୍ରଥମେ ମୁଁ କହିବାକୁ ଚାହେଁ ଯେ ତୁମ୍ଭ ସମସ୍ତଙ୍କ
ପାଇଁ ମୁଁ ମୋର ପରମେଶ୍ୱରଙ୍କୁ ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା
ଧନ୍ୟବାଦ ଦେଉଛି। ମୁଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଉଛି
କାରଣ ତୁମ୍ଭମାନଙ୍କର ବିଶ୍ୱାସ ବିଷୟରେ ସାରା ସଂସାର
ଚର୍ଚ୍ଚା
କରୁଛି। ୯ ପ୍ରତିଥର ମୁଁ ପ୍ରାର୍ଥନା କଲା ବେଳେ ତୁମ୍ଭମାନଙ୍କୁ
ସ୍ମରଣ କରୁଛି। ୧୦ ପରମେଶ୍ୱର ଜାଣନ୍ତି ଯେ ଏହା ସତ୍ୟ।
ପରମେଶ୍ୱରଙ୍କ ପୁତ୍ରଙ୍କ ବିଷୟରେ ସୁସମାଚାର ଲୋକମାନଙ୍କୁ
ଶୁଣାଇବା ଦ୍ୱାରା ମୁଁ ପରମେଶ୍ୱରଙ୍କୁ ମୋ ଅନ୍ତରର ସହ
ଉପାସନା କରୁଛି। ମୁଁ ପ୍ରାର୍ଥନା କରେ ଯେ, ତୁମ୍ଭମାନଙ୍କ
ପାଖକୁ ଯିବା ପାଇଁ ମୋତେ ଅନୁମତି ମିଳୁ। ପରମେଶ୍ୱର
ଇଚ୍ଛା କଲେ ଏହା ସମ୍ଭବ ହେବ। ୧୧ ମୁଁ ତୁମ୍ଭମାନଙ୍କୁ
ଦେଖିବାକୁ ବହୁତ ଇଚ୍ଛା କରେ। ତୁମ୍ଭମାନଙ୍କୁ କିଛି ଆତ୍ମିକ
ଅନୁଗ୍ରହଦାନ ଦେଇ ଶକ୍ତିଶାଳୀ କରାଇବା ମୋର ଇଚ୍ଛା।
୧୨ ମୋର କହିବାର ଅର୍ଥ ଏହି ଯେ ଆମ୍ଭେମାନେ ଏକ
ଆରେକକୁ ନିଜନିଜର ବିଶ୍ୱାସ ଦ୍ୱାରା ସାହାଯ୍ୟ କରିବା।
ତୁମ୍ଭମାନଙ୍କ ବିଶ୍ୱାସ ମୋତେ ଓ ମୋ ବିଶ୍ୱାସ ତୁମ୍ଭମାନଙ୍କୁ
ସାହାଯ୍ୟ କରିବ। ୧୩ ଭାଇ ଓ ଭଉଣୀମାନେ, ମୁଁ ତୁମ୍ଭମାନଙ୍କୁ
ଜଣାଇବାକୁ ଚାହେଁ ଯେ, ପୂର୍ବରୁ ମୁଁ ବହୁତ ଥର
ତୁମ୍ଭମାନଙ୍କ ପାଖକୁ ଆସିବାକୁ ଚେଷ୍ଟା କରିଛି, କିନ୍ତୁ
ଏପର୍ଯ୍ୟନ୍ତ ମୋତେ ତୁମ୍ଭମାନଙ୍କ ପାଖକୁ ଆସିବାକୁ ବାଧା
ପାଇଛି। ତୁମ୍ଭମାନଙ୍କୁ ଆତ୍ମିକ ଭାବରେ ବଢ଼ିବାରେ ସାହାଯ୍ୟ
କରିବା ପାଇଁ ମୁଁ ଆସିବାକୁ ଇଚ୍ଛା କରିଥିଲି। ଅନ୍ୟ
ଅଣଯିହୂଦୀମାନଙ୍କୁ ମୁଁ ଯେପରି ସାହାଯ୍ୟ କରିଥିଲି, ସେହିପରି
ତୁମ୍ଭମାନଙ୍କୁ ମୁଁ ସାହାଯ୍ୟ କରିବାକୁ ଚାହେଁ।
୧୪ ମୁଁ ଗ୍ରୀକ୍ ବା ବର୍ବର, ବୁଦ୍ଧିମାନ ବା ମୂର୍ଖ ସମସ୍ତଙ୍କୁ
ସେବା କରିବାକୁ ଉଚିତ ମନେ କରେ। ୧୫ ସେଥିପାଇଁ ମୁଁ
ରୋମରେ ରହୁଥିବା ତୁମ୍ଭ ସମସ୍ତଙ୍କୁ ସୁସମାଚାର ଦେବାକୁ
ଇଚ୍ଛା କରୁଛି।
୧୬ ମୁଁ ଏହି ସୁସମାଚାର ପାଇଁ ଗର୍ବ ଅନୁଭବ କରୁଛି।
ଏହି ସୁସମାଚାର ହେଉଛି ଶକ୍ତି, ଯାହା ଦ୍ୱାରା ପରମେଶ୍ୱର
ତାହାଙ୍କୁ ବିଶ୍ୱାସ କରୁଥିବା ପ୍ରତ୍ୟେକ ଲୋକଙ୍କୁ ଉଦ୍ଧାର
କରନ୍ତି। ପ୍ରଥମେ ଯିହୂଦୀମାନଙ୍କୁ ଓ ପରେ ଅଣଯିହୂଦୀମାନଙ୍କୁ
ମଧ୍ୟ। ୧୭ ପରମେଶ୍ୱର ଲୋକମାନଙ୍କୁ କିପରି ତାଙ୍କ ପାଇଁ
ଧାର୍ମିକ କରନ୍ତି ତାହା ସୁସମାଚାର ଦର୍ଶାଇଥାଏ। ବିଶ୍ୱାସ
ଦ୍ୱାରା ପରମେଶ୍ୱରଙ୍କ ପାଇଁ ଧାର୍ମିକତା ଆରମ୍ଭ ହୁଏ ଓ
ବିଶ୍ୱାସରେ ଶେଷ ହୁଏ। ଯେପରି ଧର୍ମଶାସ୍ତ୍ରରେ କୁହା
ଯାଇଛି, "ବିଶ୍ୱାସ ଦ୍ୱାରା ଧାର୍ମିକ ଅନନ୍ତକାଳ ଜୀବିତ
ରହେ।"*

## ସମସ୍ତେ ପାପ କରିଛନ୍ତି

୧୮ ପରମେଶ୍ୱରଙ୍କ କ୍ରୋଧ ସ୍ୱର୍ଗରୁ ପ୍ରକାଶିତ ହୋଇଛି।
ଲୋକମାନଙ୍କ ଦ୍ୱାରା ପରମେଶ୍ୱରଙ୍କ ବିରୁଦ୍ଧରେ କରାଯାଉଥିବା
ପ୍ରତ୍ୟେକ କୁକର୍ମ ଓ ଭୁଲକର୍ମ ପାଇଁ ପରମେଶ୍ୱର କ୍ରୋଧ
କରନ୍ତି। ସେମାନଙ୍କ ପାଖରେ ସତ୍ୟ ଅଛି, କିନ୍ତୁ ସେମାନେ
ନିଜର ମନ୍ଦ ଜୀବନ ଦ୍ୱାରା ତାହା ଲୁଚାନ୍ତି। ୧୯ ପରମେଶ୍ୱରଙ୍କ
ବିଷୟକ ସମସ୍ତ ଜ୍ଞାନ ଲୋକମାନଙ୍କ ପାଇଁ ସ୍ପଷ୍ଟ କରା
ଯାଇ ସାରିଥିବାରୁ, ପରମେଶ୍ୱର ତାହାଙ୍କର କ୍ରୋଧ ଦେଖାନ୍ତି।
ପ୍ରକୃତରେ, ପରମେଶ୍ୱର ନିଜ ବିଷୟରେ ଯାହା ଜଣାଇବା

---

**"ବିଶ୍ୱାସ ଦ୍ୱାରା … ରହେ"** ହବକ୍‌କୂକ୍ ୨:୪

କଥା, ସେ ସମସ୍ତ କଥା ସ୍ପଷ୍ଟ ଭାବରେ ଦେଖାଇ
ଦେଇଛନ୍ତି। ୨୦ପରମେଶ୍ୱରଙ୍କ ବିଷୟରେ କେତେକ ତଥ୍ୟ
ଲୋକେ ଦେଖି ପାରିବେ ନାହିଁ ତାହାଙ୍କର ଅନନ୍ତ ଶକ୍ତି ଓ
ପରମେଶ୍ୱରତ୍ୱ (ତାହାଙ୍କୁ ପରମେଶ୍ୱର ବୋଲି ପ୍ରମାଣିତ
କରୁଥିବା ସମସ୍ତ କଥା)। କିନ୍ତୁ ଜଗତର ସୃଷ୍ଟିର ଆରମ୍ଭରୁ
ସେ ଗୁଡ଼ିକ ଲୋକମାନଙ୍କ ବୁଝିବା ପାଇଁ ସହଜ କରି
ଯାଇଛି। ଏ ଗୁଡ଼ିକ ପରମେଶ୍ୱର ସୃଷ୍ଟି କରିଥିବା ବସ୍ତୁଗୁଡ଼ିକରୁ
ସ୍ପଷ୍ଟ ହୋଇ ଥାଏ। ସେଥିପାଇଁ ମନ୍ଦ କାର୍ଯ୍ୟ କରିବା ପାଇଁ
ଲୋକମାନଙ୍କ ପାଖରେ କୌଣସି ବାହାନା ନାହିଁ। ୨୧ଲୋକେ
ପରମେଶ୍ୱରଙ୍କୁ ଜାଣିଥିଲେ। କିନ୍ତୁ ସେମାନେ ପରମେଶ୍ୱରଙ୍କୁ
ଗୌରବ ଦେଲେ ନାହିଁ ଓ ତାହାଙ୍କୁ ଧନ୍ୟବାଦ ଜଣାଇଲେ
ନାହିଁ। ଲୋକଙ୍କ ଚିନ୍ତାଧାରା ନିରର୍ଥକ ହେଲା। ସେମାନଙ୍କର
ଜ୍ଞାନ ଅନ୍ଧକାରରେ ଭରିଗଲା। ୨୨ଲୋକେ ନିଜକୁ ବୁଦ୍ଧିମାନ
ବୋଲି କହିଲେ କିନ୍ତୁ ପ୍ରକୃତରେ ସେମାନେ ମୂର୍ଖ ହୋଇଗଲେ।
୨୩ସେମାନେ ପରମେଶ୍ୱରଙ୍କ ଚିରସ୍ଥାୟୀ ମହିମାକୁ ଛାଡ଼ି
ଦେଲେ। ଲୋକେ ସେହି ମହିମାକୁ ମୂର୍ତ୍ତିପୂଜା ଦ୍ୱାରା
ବେପାର କଲେ। ଲୋକେ ଏହି ମୂର୍ତ୍ତିଗୁଡ଼ିକୁ ପକ୍ଷୀ, ପଶୁ
ଓ ସରୀସୃପ ରୂପ ପ୍ରଦାନ କଲେ।

୨୪ଲୋକେ ସର୍ବଦା ମନ୍ଦ କର୍ମ କରିବାକୁ ଇଚ୍ଛା କଲେ।
ସେମାନେ ପାପରେ ପୂର୍ଣ୍ଣ ଥିଲେ। ପରମେଶ୍ୱର ସେମାନଙ୍କୁ
ନିଜର ପାପ ମାର୍ଗରେ ଯିବା ପାଇଁ ଛାଡ଼ି ଦେଲେ।
ସେଥିପାଇଁ ସେମାନେ ଯୌନପାପରେ ପରିପୂର୍ଣ୍ଣ ହେଲେ ଓ
ନିଜ ନିଜ ଶରୀରକୁ ପରସ୍ପର ସହିତ ମନ୍ଦ କର୍ମରେ
ନିୟୋଜିତ ରଖିଲେ, ଯା'ଦ୍ୱାରା ସେମାନଙ୍କ ଶରୀର ନିନ୍ଦିତ
ହେଲା। ୨୫ଲୋକେ ପରମେଶ୍ୱରଙ୍କ ସତ୍ୟ ବଦଳରେ ମିଥ୍ୟାକୁ
ଗ୍ରହଣ କଲେ। ସେମାନେ ସୃଷ୍ଟ ବସ୍ତୁ ଗୁଡ଼ିକର ଉପାସନା
ଓ ସେବା କଲେ। ସେମାନେ ଏହି ବସ୍ତୁ ଗୁଡ଼ିକର
ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କୁ ଉପାସନା କଲେ ନାହିଁ। ପରମେଶ୍ୱର
ସର୍ବଦା ପ୍ରଶଂସାର ପାତ୍ର। ଆମେନ୍।

୨୬ସେଥିପାଇଁ ପରମେଶ୍ୱର ସେମାନଙ୍କୁ ସେହି ଲଜ୍ଜାଜନକ
କାର୍ଯ୍ୟ କରିବା ପାଇଁ ଛାଡ଼ିଦେଲେ। ୨୭ସେହିଭଳି ପୁରୁଷମାନେ
ମଧ୍ୟ ସ୍ତ୍ରୀମାନଙ୍କ ସ୍ୱାଭାବିକ ସଙ୍ଗ ଛାଡ଼ି ପରସ୍ପର ଭିତରେ
କାମନାରେ ଲିପ୍ତ ହେଲେ। ପୁରୁଷମାନେ ଅନ୍ୟ ପୁରୁଷମାନଙ୍କ
ସହିତ ଅଶୋଭନୀୟ ବ୍ୟବହାର କଲେ। ନିଜର ମନ୍ଦ
କାର୍ଯ୍ୟ ପାଇଁ ସେମାନେ ନିଜ ଦେହରେ ଦଣ୍ଡ ଭୋଗିଲେ।

୨୮ପରମେଶ୍ୱରଙ୍କ ବିଷୟରେ ପ୍ରକୃତ ଜ୍ଞାନ ପ୍ରାପ୍ତ କରିବାକୁ
ଲୋକେ ଗୁରୁତ୍ୱ ଦେଲେ ନାହିଁ। ସେଥିପାଇଁ ପରମେଶ୍ୱର
ସେମାନଙ୍କୁ ସେମାନଙ୍କ ବିକୃତ ଚିନ୍ତାରେ ରହିବାକୁ ଛାଡ଼ି
ଦେଲେ ଓ ସେମାନେ ଅନୁଚିତ କର୍ମକରି ରହିଲେ।
୨୯ସେହି ଲୋକମାନେ ସମସ୍ତ ପ୍ରକାରର ପାପ, ମନ୍ଦଭାବନା,
ସ୍ୱାର୍ଥ ଓ ଘୃଣାରେ ପରିପୂର୍ଣ୍ଣ ଥିଲେ। ସେମାନେ ହତ୍ୟା,
ଝଗଡ଼ା, ମିଛ, ଛନ୍ଦ-କପଟତା ଓ ଅନ୍ୟମାନଙ୍କର ମନ୍ଦ
ଚିନ୍ତାରେ ବୁଡ଼ି ରହନ୍ତି। ୩୦ସେମାନେ ପରଚର୍ଚ୍ଚା କରନ୍ତି,
ପରନିନ୍ଦା କରନ୍ତି, ଓ ଏକ ଆରେକ ବିରୁଦ୍ଧରେ ମନ୍ଦ କଥା
କୁହନ୍ତି। ସେମାନେ ପରମେଶ୍ୱରଙ୍କୁ ଘୃଣା କରନ୍ତି। ସେମାନେ
ଉଦ୍ଧତ, ଆତ୍ମଗର୍ବୀ ଓ ଅହଂକାରୀ। ସେମାନେ ମନ୍ଦକର୍ମ
କରିବା ପାଇଁ ବାଟ ଖୋଜୁ ଥାଆନ୍ତି। ୩୧ସେମାନେ ନିଜର
ପିତାମାତାଙ୍କୁ ମାନନ୍ତି ନାହିଁ। ସେମାନେ ମୂର୍ଖ ସେମାନେ
ନିଜର କଥା ରଖନ୍ତି ନାହିଁ ଓ ସେମାନେ ଅନ୍ୟ ଲୋକମାନଙ୍କ
ପ୍ରତି ଦୟାଭାବ ପ୍ରଦର୍ଶନ କରନ୍ତି ନାହିଁ। ୩୨ସେମାନେ
ପରମେଶ୍ୱରଙ୍କ ବ୍ୟବସ୍ଥା ଜାଣନ୍ତି। ସେମାନେ ଜାଣନ୍ତି ଯେ
ପରମେଶ୍ୱରଙ୍କ ବ୍ୟବସ୍ଥା କୁହେ, ଯେଉଁ ଲୋକ ଏହି ଭଳି
ଜୀବନ ଯାପନ କରୁଛି, ସେ ମରିବା ଉଚିତ। କିନ୍ତୁ
ସେମାନେ ଏହି ମନ୍ଦକାର୍ଯ୍ୟ ଗୁଡ଼ିକ କରି ଚାଲନ୍ତି। ଯେଉଁ
ଲୋକମାନେ ଏହିଭଳି କାମ କରନ୍ତି, ସେମାନଙ୍କୁ ମଧ୍ୟ
ସେମାନେ ସମର୍ଥନ କରନ୍ତି।

### ଯିହୂଦୀମାନେ! ତୁମ୍ଭେମାନେ ମଧ୍ୟ ପାପୀ

୨ ଯଦି ତୁମ୍ଭେ ଭାବୁଛ ଯେ ତୁମ୍ଭେମାନେ ଅନ୍ୟ
ଲୋକଙ୍କର ନ୍ୟାୟବିଚାର କରି ପାରିବ ତା ହେଲେ
ତୁମ୍ଭେ ଭୁଲ କରୁଛ। ତୁମ୍ଭେମାନେ ନିଜେ ମଧ୍ୟ ପାପର
ଦୋଷୀ। ତୁମ୍ଭେ ଅନ୍ୟମାନଙ୍କର ନ୍ୟାୟ ବିଚାର କରୁଛ,
ହେଲେ ତୁମ୍ଭେ ମଧ୍ୟ ସେମାନଙ୍କ ପରି ମନ୍ଦ କାମ କରୁଛ।
ଅତଏବ ଯେତେବେଳେ ତୁମ୍ଭେ ସେମାନଙ୍କର ନ୍ୟାୟବିଚାର
କରୁଛ, ସେତେବେଳେ ପ୍ରକୃତରେ ନିଜକୁ ଅପରାଧୀ ବୋଲି
ନ୍ୟାୟବିଚାର କରୁଛ। ୨ପରମେଶ୍ୱର, ଯେଉଁମାନେ ଏପରି
ମନ୍ଦକର୍ମ କରନ୍ତି ତାହାଙ୍କର ନ୍ୟାୟ ବିଚାର କରନ୍ତି। ଏହା
ଆମ୍ଭେମାନେ ଜାଣୁ ଯେ, ପରମେଶ୍ୱରଙ୍କର ନ୍ୟାୟ ବିଚାର
ଠିକ୍ ଅଟେ। ୩ତୁମ୍ଭେ ଭୁଲ କାମ କରୁଥିବା ଲୋକଙ୍କର
ନ୍ୟାୟବିଚାର କରୁଛ। କିନ୍ତୁ ତୁମ୍ଭେ ନିଜେ ମଧ୍ୟ ସେହି
ଭଳି ଭୁଲ କାମ କରୁଛ। ସେଥିପାଇଁ ତୁମ୍ଭେ ଜାଣ ଯେ
ପରମେଶ୍ୱର ନିଶ୍ଚିତ ଭାବରେ ତୁମ୍ଭର ନ୍ୟାୟବିଚାର କରିବେ।
ତୁମ୍ଭେ ବିଚାରରୁ ରକ୍ଷା ପାଇ ପାରିବ ନାହିଁ। ୪ପରମେଶ୍ୱର
ତୁମ୍ଭ ପ୍ରତି ଅତି ଦୟାଳୁ। ସେ ତୁମ୍ଭ ପ୍ରତି ଧୈର୍ଯ୍ୟବାନ।
ପରମେଶ୍ୱର ଅପେକ୍ଷା କରିଛନ୍ତି ଯେ ତୁମ୍ଭେ ବଦଳି ଯାଅ।
କିନ୍ତୁ ତୁମ୍ଭେ ତାହାଙ୍କର ଦୟାଳୁତା ବିଷୟରେ ଆଦୌ ଭାବୁ
ନାହିଁ। ଏହା ହୋଇ ପାରେ ଯେ, ତୁମ୍ଭେ ସମ୍ଭବତଃ
ବୁଝିପାରୁ ନାହିଁ ଯେ ତୁମ୍ଭକୁ ନିଜର ହୃଦୟ ଓ ଜୀବନ
ବଦଳାଇବା ପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ ପରମେଶ୍ୱର
ତୁମ୍ଭ ପ୍ରତି ଦୟାଳୁ ହୋଇଛନ୍ତି। ୫କିନ୍ତୁ ତୁମ୍ଭେମାନେ କଠିନ
ଓ ଅନୁତାପବିହୀନ। ତୁମ୍ଭେ ବଦଳିବା ପାଇଁ ନାରାଜ।
ସେଥିପାଇଁ ତୁମ୍ଭେ ନିଜର ଦଣ୍ଡକୁ ଅଧିକରୁ ଅଧିକ ବଢ଼ାଉଛ।
ଯେଉଁ ଦିନ ପରମେଶ୍ୱର ନିଜର କ୍ରୋଧ ଦେଖାଇବେ,
ସେହି ଦିନ ତୁମ୍ଭେ ସେହି ଦଣ୍ଡ ପାଇବ। ସେହି ଦିନ
ଲୋକେ ପରମେଶ୍ୱରଙ୍କର ଠିକ୍ ନ୍ୟାୟବିଚାର ଦେଖିବେ।
୬ପରମେଶ୍ୱର ପ୍ରତ୍ୟେକ ଲୋକଙ୍କୁ ନିଜ ନିଜର କର୍ମ
ଅନୁସାରେ ପୁରସ୍କାର ବା ଦଣ୍ଡ ଦେବେ। ୭କେତେକ
ଲୋକ ପରମେଶ୍ୱରଙ୍କର ମହିମା, ସମ୍ମାନ ଓ ପରମେଶ୍ୱର
ଦେବାକୁ ଥିବା ଅନନ୍ତ ଜୀବନ ପାଇଁ ବଞ୍ଚନ୍ତି। ଯେଉଁମାନେ
ସର୍ବଦା ଭଲ କାମ କରି ଧୈର୍ଯ୍ୟପୂର୍ବକ ଏହି ଗୁଡ଼ିକ ପାଇଁ
ଜୀବନ ଧାରଣ କରନ୍ତି, ସେହି ଲୋକମାନଙ୍କୁ ପରମେଶ୍ୱର
ଅନନ୍ତ ଜୀବନ ପ୍ରଦାନ କରିବେ। ୮କିନ୍ତୁ ଯେଉଁମାନେ
ସ୍ୱାର୍ଥୀ ଓ ସତ୍ୟକୁ ଅନୁସରଣ କରିବା ପାଇଁ ମନା କରନ୍ତି
ଓ ମନ୍ଦ ମାର୍ଗ ଅବଲମ୍ବନ କରନ୍ତି, ପରମେଶ୍ୱର ସେମାନଙ୍କୁ

ଦଣ୍ଡ ଦେବେ। ୯ମନ୍ଦକାମ କରୁଥିବା ପ୍ରତ୍ୟେକ ଲୋକକୁ
ପରମେଶ୍ୱର ଦୁଃଖ ଓ ସଂକଟରେ ପକାଇବେ। ଯିହୂଦୀମାନଙ୍କୁ
ପ୍ରଥମେ, ପରେ ଅଣଯିହୂଦୀମାନଙ୍କୁ ମଧ୍ୟ। ୧୦କିନ୍ତୁ ପରମେଶ୍ୱର,
ଭଲ କାମ କରୁଥିବା ପ୍ରତ୍ୟେକ ଲୋକକୁ ଗୌରବ, ସମ୍ମାନ
ଓ ଶାନ୍ତି ପ୍ରଦାନ କରିବେ-ପ୍ରଥମେ ଯିହୂଦୀମାନଙ୍କୁ ଓ ପରେ
ଅଣଯିହୂଦୀମାନଙ୍କୁ ମଧ୍ୟ। ୧୧ପରମେଶ୍ୱର ପ୍ରତ୍ୟେକ ଲୋକଙ୍କ
ପ୍ରତି ସମାନ ଭାବରେ ନ୍ୟାୟବିଚାର କରନ୍ତି।

୧୨ଯେଉଁ ଲୋକମାନେ ବ୍ୟବସ୍ଥା ଜାଣିଛନ୍ତି ଓ
ଯେଉଁଲୋକମାନେ ବ୍ୟବସ୍ଥା ବିଷୟରେ ଶୁଣି ନାହାଁନ୍ତି, ପାପ
କର୍ମ କଲା ବେଳେ ସମସ୍ତେ ସମାନ। ଲୋକେ ଯେଉଁମାନେ
ବ୍ୟବସ୍ଥା ଜାଣି ନାହାଁନ୍ତି ଓ ପାପ କରୁଛନ୍ତି, ସେମାନେ ନଷ୍ଟ
ହୋଇ ଯିବେ। ଓ ସେହି ପରି, ଯେଉଁମାନେ ବ୍ୟବସ୍ଥା
ଜାଣିଛନ୍ତି ଓ ପାପ କରୁଛନ୍ତି, ବ୍ୟବସ୍ଥା ଅନୁସାରେ ସେମାନଙ୍କର
ନ୍ୟାୟବିଚାର ହେବ। ୧୩ବ୍ୟବସ୍ଥାକୁ କେବଳ ଶୁଣିଥିଲେ
କେହି ପରମେଶ୍ୱରଙ୍କ ପ୍ରତି ଧାର୍ମିକ ହୋଇ ପାରିବ ନାହିଁ।
ବ୍ୟବସ୍ଥାକୁ ସମଗ୍ର ଭାବରେ ପାଳନ କଲେ ହିଁ ବ୍ୟବସ୍ଥା,
ଲୋକମାନଙ୍କୁ, ପରମେଶ୍ୱରଙ୍କ ପ୍ରତି ଧାର୍ମିକ ବୋଲି ପ୍ରମାଣିତ
କରେ। ୧୪ଅଣ ଯିହୂଦୀମାନଙ୍କର କୌଣସି ବ୍ୟବସ୍ଥା ନାହିଁ।
କିନ୍ତୁ ଯେତେବେଳେ ସେମାନେ ସ୍ୱାଭାବିକ ଭାବରେ ବ୍ୟବସ୍ଥା
ଅନୁଯାୟୀ ନ ଜାଣି ମଧ୍ୟ କାମ କରନ୍ତି, ସେତେବେଳେ
ସେ ଗୁଡ଼ିକ ହିଁ ବ୍ୟବସ୍ଥା ହୋଇ ଯାଏ। ସେମାନଙ୍କର
ବ୍ୟବସ୍ଥା ନଥିଲେ ମଧ୍ୟ ଏହା ସତ୍ୟ। ୧୫ସେମାନେ ହୃଦୟରେ
ଜାଣି ପାରନ୍ତି ଯେ କଣ ଠିକ୍ ଓ କଣ ଭୁଲ। ଯାହା ଠିକ୍
ତାହା ବ୍ୟବସ୍ଥା ଚାହେଁ। ସେମାନେ ଠିକ୍ ଓ ଭୁଲ
ବିଷୟରେ ଯାହା ଅନୁଭବ କରନ୍ତି, ତାହା ଦେଖାଇ ମଧ୍ୟ
ଦିଅନ୍ତି। ବେଳେବେଳେ ସେମାନଙ୍କ ବିଚାର ସେମାନଙ୍କୁ
କୁହେ ଯେ, ସେମାନେ ମନ୍ଦ କାମ କଲେ ସେମାନେ
ଦୋଷୀ ହୁଅନ୍ତି ଓ ବେଳେବେଳେ ସେମାନଙ୍କ ବିଚାର
ସେମାନଙ୍କୁ କୁହେ ଯେ, ସେମାନେ ଉତ୍ତମ କାମ କଲେ,
ସେମାନେ ନିଜକୁ ଦୋଷୀ ବିବେଚିତ କରନ୍ତି ନାହିଁ।
୧୬ଯେଉଁ ଦିନ ପରମେଶ୍ୱର ଲୋକମାନଙ୍କ ଭିତରେ ଥିବା
ଗୁପ୍ତ କଥା ଗୁଡ଼ିକର ନ୍ୟାୟବିଚାର କରିବେ ସେହି ଦିନ
ଏହି କଥା ଘଟିବ। ମୁଁ ଯେଉଁ ସୁସମାଚାର ଲୋକମାନଙ୍କୁ
କହୁଛି, ତାହା କୁହେ ଯେ, ପରମେଶ୍ୱର ଖ୍ରୀଷ୍ଟ ଯୀଶୁଙ୍କ
ଦ୍ୱାରା, ଲୋକମାନଙ୍କର ନ୍ୟାୟବିଚାର କରିବେ।

## ଯିହୂଦୀ ଓ ବ୍ୟବସ୍ଥା

୧୭ତୁମ୍ଭ ବିଷୟରେ କଣ? ତୁମ୍ଭେ କହୁଛ ତୁମ୍ଭେ ଜଣେ
ଯିହୂଦୀ। ତୁମ୍ଭର ବ୍ୟବସ୍ଥା ଉପରେ ଭରସା ଅଛି ଓ ଗର୍ବ
କର ଯେ, ତୁମ୍ଭେ ପରମେଶ୍ୱରଙ୍କ ନିକଟରେ ଅଛ।
୧୮ତୁମ୍ଭେ ଜାଣ ଯେ, ତୁମ୍ଭେ କଣ କରିବ ବୋଲି
ପରମେଶ୍ୱର ଚାହାଁନ୍ତି। ଏବଂ ତୁମ୍ଭେ ଜାଣିଛ ଯେ କେଉଁ
ବିଷୟ ଗୁଡ଼ିକ ମହତ୍ତ୍ୱପୂର୍ଣ୍ଣ, କାରଣ ତୁମ୍ଭେ ବ୍ୟବସ୍ଥା
ଶିଖିଛ। ୧୯ତୁମ୍ଭେ ଭାବୁଛ ଯେ, ଯେଉଁ ଲୋକମାନେ ସତ୍ୟ
ମାର୍ଗ ବିଷୟରେ ଜାଣନ୍ତି ନାହିଁ, ତୁମ୍ଭେ ସେମାନଙ୍କର ମାର୍ଗ
ଦର୍ଶକ। ତୁମ୍ଭେ ଭାବୁଛ ଯେ, ଯେଉଁମାନେ ଅନ୍ଧକାରରେ
ଅଛନ୍ତି ସେମାନଙ୍କ ପାଇଁ ତୁମ୍ଭେ ଆଲୁଅ ସଦୃଶ। ୨୦ତୁମ୍ଭେ
ଭାବୁଛ ଯେ, ଯେଉଁମାନେ ମୂର୍ଖ, ସେମାନଙ୍କୁ ସତ୍ୟ ଦେଖାଇ
ପାରିବ। ଏବଂ ତୁମ୍ଭେ ଭାବୁଛ ଯେ, ଯେଉଁମାନଙ୍କର ଏବେ
ମଧ୍ୟ ଶିଖିବା ଆବଶ୍ୟକ, ସେମାନଙ୍କର ତୁମ୍ଭେ ଶିକ୍ଷକ।
ତୁମ୍ଭ ପାଖରେ ବ୍ୟବସ୍ଥା ଅଛି ସେଥିପାଇଁ ତୁମ୍ଭେ ଭାବୁଛ
ଯେ ତୁମ୍ଭେ ସବୁ କିଛି ଜାଣିଛ ଓ ତୁମ୍ଭ ପାଖରେ ସତ୍ୟ
ଅଛି। ୨୧ତୁମ୍ଭେ ଅନ୍ୟ ଲୋକଙ୍କୁ ଶିକ୍ଷା ଦେଉଛ। ସେ
ଦୃଷ୍ଟିରୁ ତୁମ୍ଭେ ନିଜକୁ ଶିକ୍ଷା କାହିଁକି ଦେଉନାହଁ? ତୁମ୍ଭେ
ଲୋକଙ୍କୁ କହୁଛ ଚୋରୀକର ନାହିଁ। କିନ୍ତୁ ତୁମ୍ଭେ ନିଜେ
ଚୋରୀ କରୁଛ। ୨୨ତୁମ୍ଭେ କହୁଛ ଲୋକେ ବ୍ୟଭିଚାର ପାପ
କରିବା କଥା ନୁହେଁ। କିନ୍ତୁ ତୁମ୍ଭେ ନିଜେ ସେହି ପାପରେ
ଦୋଷୀ। ତୁମ୍ଭେ ମୂର୍ତ୍ତିକୁ ଘୃଣା କରିଥାଅ। ୨୩କିନ୍ତୁ ତୁମ୍ଭେ
ମନ୍ଦିରରୁ ଚୋରୀ କରୁଛ। ତୁମ୍ଭେ ପରମେଶ୍ୱରଙ୍କ ବ୍ୟବସ୍ଥା
ପାଇଁ ଗର୍ବ କରୁଛ। କିନ୍ତୁ ତୁମ୍ଭେ ସେହି ବ୍ୟବସ୍ଥା ଭଙ୍ଗ
କରି ପରମେଶ୍ୱରଙ୍କୁ ଲଜ୍ଜା ଦେଉଛ। ୨୪ପବିତ୍ର-ଶାସ୍ତ୍ରରେ*
ଲେଖା ଅଛି, "ଅଣ ଯିହୂଦୀମାନେ ପରମେଶ୍ୱରଙ୍କ ବିଷୟରେ
ମନ୍ଦ କଥା, ଯିହୂଦୀମାନଙ୍କ ପାଇଁ ହିଁ କୁହନ୍ତି।"*

୨୫ଯଦି ତୁମ୍ଭେ ବ୍ୟବସ୍ଥା* ପାଳନ କରୁଛ ତାହେଲେ
ତୁମ୍ଭର ସୁନ୍ନତ* ହେବାର ମୂଲ୍ୟ ଅଛି। କିନ୍ତୁ ତୁମ୍ଭେ ଯଦି
ବ୍ୟବସ୍ଥା ଭଙ୍ଗ କରୁଛ ତାହେଲେ ତୁମ୍ଭେ ସୁନ୍ନତ ନ ହେବା
ସହିତ ସମାନ। ୨୬ଅଣଯିହୂଦୀମାନେ ସୁନ୍ନତ ହୁଅନ୍ତି ନାହିଁ।
କିନ୍ତୁ ସେମାନେ ଯଦି ବ୍ୟବସ୍ଥା କହିବା ଭଳି ଆଚରଣ
କରନ୍ତି, ତାହେଲେ ସେମାନେ ସୁନ୍ନତ ହେବା ଭଳି
ହେଲେ। ୨୭ତୁମ୍ଭ, ଯିହୂଦୀମାନଙ୍କର ଲିଖିତ ବ୍ୟବସ୍ଥା ଅଛି
ଓ ସୁନ୍ନତ ମଧ୍ୟ, କିନ୍ତୁ ତୁମ୍ଭେମାନେ ବ୍ୟବସ୍ଥା ଭଙ୍ଗ କରୁଛ।
ଅତଏବ ଶାରୀରିକ ଭାବେ ସୁନ୍ନତ ନ ହୋଇ ବ୍ୟବସ୍ଥା
ପାଳନ କରୁଥିବା ଲୋକେ ଦେଖାଇ ଦେବେ ଯେ ତୁମ୍ଭେ
ଦୋଷୀ ଅଟ।

୨୮ଜଣେ କେବଳ ଶରୀରରେ ଯିହୂଦୀ, କିନ୍ତୁ ପ୍ରକୃତରେ
ଯିହୂଦୀ ନୁହେଁ। ପ୍ରକୃତ ସୁନ୍ନତ କେବଳ ବାହାର ଶରୀରର
ନୁହେଁ। ୨୯ଜଣେ ଲୋକ ଯଦି ପ୍ରକୃତରେ ଯିହୂଦୀ ସେ
ଅନ୍ତରରୁ ଯିହୂଦୀ ଅଟେ। ପ୍ରକୃତ ସୁନ୍ନତ ହୃଦୟରେ ହିଁ
କରା ଯାଇଥାଏ। ଏହା ଆତ୍ମା* ଦ୍ୱାରା କରା ଯାଇ ଥାଏ।
ଆକ୍ଷରିକ ଭାବରେ ନୁହେଁ। ଯେଉଁ ଲୋକ ହୃଦୟରେ ଆତ୍ମା
ଦ୍ୱାରା ସୁନ୍ନତ ହୋଇ ଥାଏ ସେ ପରମେଶ୍ୱରଙ୍କ ଠାରୁ
ପ୍ରଶଂସା ପାଏ, ମଣିଷମାନଙ୍କ ଠାରୁ ନୁହେଁ।

୩ ଅତଏବ ଯିହୂଦୀମାନଙ୍କ ଠାରେ କଣ ଅଧିକ ଅଛି
ଯାହା ଅନ୍ୟ ଲୋକମାନଙ୍କ ଠାରେ ନାହିଁ? ଅସୁନ୍ନତ
ହେବାରେ କ'ଣ ବିଶେଷ ମୂଲ୍ୟ ଅଛି? ୨ହିଁ ଯିହୂଦୀ
ମାନଙ୍କଠାରେ ଅନେକ କିଛି ବିଶେଷ ବିଷୟ ଅଛି।

---

**ପବିତ୍ର ଶାସ୍ତ୍ର** ପ୍ରାଚୀନ ସୁସମାଚାର (ପୁରାତନ ନିୟମ)

**"ଅଣ ଯିହୂଦୀ ... କୁହନ୍ତି"** ଯିଶାଇୟ ୫୨.୫ ରୁ ଉଦ୍ଧୃତ

**ବ୍ୟବସ୍ଥା** ଅର୍ଥ ପରମେଶ୍ୱରଙ୍କ ନିୟମ।

**ସୁନ୍ନତ** ଲିଙ୍ଗର ଉପରି ଚମଡ଼ା କଟା ଯିବା। ପ୍ରତ୍ୟେକ ଯିହୂଦୀ ବାଳକର ଏହା କରା ଯାଇଥାଏ।

**ଆତ୍ମା** ପବିତ୍ର ଆତ୍ମା। ପରମେଶ୍ୱରଙ୍କ ଆତ୍ମା, ଯୀଶୁ ଖ୍ରୀଷ୍ଟଙ୍କ ଆତ୍ମା।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ଏହ ଯେ, ସେମାନଙ୍କୁ ସର୍ବପ୍ରଥମେ
ପରମେଶ୍ୱର ତାହାଙ୍କ ଉପଦେଶ ଗୁଡ଼ିକୁ ସମର୍ପିତ କଲେ।
୩ଏହା ସତ୍ୟ ଯେ, କେତେକ ଯିହୂଦୀ ପରମେଶ୍ୱରଙ୍କର
ବଶ୍ୱସ୍ତ ନଥିଲେ। କନ୍ତୁ ସେମାନଙ୍କ ଅବଶ୍ୱସ୍ତତା କ'ଣ
ପରମେଶ୍ୱରଙ୍କୁ ନଜ ପ୍ରତିଜ୍ଞା ରଖିବାରେ ବାଧା ଦେବ?
୪କେବେ ନୁହେଁ। ଯଦ ପ୍ରତ୍ୟେକ ଲୋକ ଅସତ୍ ହୁଅନ୍ତ,
ତେବେ ମଧ ପରମେଶ୍ୱର ସତ୍ୟ ହୋଇ ରହବେ।
ଶାସ୍ତ୍ରରେ ଲେଖା ଅଛ ଯେ:

"ତୁମ୍ଭେ ତୁମ୍ଭର କହୁଥିବା ବଷୟ ଦ୍ୱାରା ଧାର୍ମିକ
ବୋଲ ପ୍ରମାଣିତ ହେବ, ଓ ନ୍ୟାୟ ବଗ୍ଚାର ହେଲାବେଳେ
ତୁମ୍ଭେ ବଜୟ ଲାଭ କରବ।"
ଗୀତସଂହତା ୫୧:୪

୫ଆମ୍ଭେ ଯେତେବେଳେ ଭୁଲ କରୁ, ସେଥିରୁ ସ୍ପଷ୍ଟ
ଭାବରେ ଜଣା ପଡ଼େ ଯେ ପରମେଶ୍ୱର ହେଉଛନ୍ତ ଠିକ୍।
ସେଥିପାଇଁ ପରମେଶ୍ୱର ଯେତେବେଳେ ଆମ୍ଭକୁ ଦଣ୍ଡ
ଦଅନ୍ତ, କଣ ଆମ୍ଭେ କହ ପାରବା ଯେ, ସେ ଅନ୍ୟାୟୀ?
୬(ମୁଁ କେତେକ ଲୋକଙ୍କ ଭାବବାର ଢଙ୍ଗ ବଷୟରେ
କହୁଛ।) ନା! ଯଦ ପରମେଶ୍ୱର ଆମ୍ଭକୁ ଦଣ୍ଡ ଦେଇ
ପାରବେ ନାହିଁ, ତା'ହେଲେ ସେ ସଂସାରର ବଗ୍ଚାର କର
ପାରବେ ନାହିଁ।
୭ଜଣେ ଲୋକ କହ ପାରେ, "ଯେତେବେଳେ ମୁଁ ମିଛ
କହେ ତାହା ପ୍ରକୃତରେ ପରମେଶ୍ୱରଙ୍କୁ ଅଧିକତର ମହମା
ପ୍ରଦାନ କରେ, କାରଣ ମୋ ମିଛ, ପରମେଶ୍ୱରଙ୍କ ସତ୍ୟକୁ
ପ୍ରକାଶ କରେ।" ସେଥିପାଇଁ ମୋତେ ପାପୀ ବୋଲ
କାହିଁକ ବଗ୍ଚାର କରାଗଲା? ୮ଏହ ସମାନ କଥା କହବା
ହେଲା, "ଆମ୍ଭେ ନଶ୍ଚୟ ମନ୍ଦ କାମ କରବା, କାରଣ ତା'
ଦ୍ୱାରା ଭଲ ଆସିବ।" ଅନେକ ଲୋକ ଆମ୍ଭକୁ ସମାଲୋଚନା
କରନ୍ତ ଓ ମିଛରେ କୁହନ୍ତ ଯେ ଆମ୍ଭେ ସେହ ଶିକ୍ଷା
ଦେଉଛୁ। ଯେଉଁମାନେ ଏ ଭଳ କଥା କୁହନ୍ତ ସେମାନେ
ଠିକ୍ ନୁହଁନ୍ତ ଓ ସେମାନଙ୍କୁ ଦଣ୍ଡ ଦେବା ଉଚତ।

## ସମସ୍ତେ ଦୋଷୀ

୯ସେଥିପାଇଁ ଅନ୍ୟ ଲୋକମାନଙ୍କଠାରୁ ଆମ୍ଭେ ଯିହୂଦୀଗଣ
କଣ ଭଲ? ନା। ଯିହୂଦୀ ଓ ଅଣ ଯିହୂଦୀ ସମସ୍ତେ
ସମାନ ବୋଲ ଆମ୍ଭେ ଆଗରୁ କହ ସାରଛୁ। ସେମାନେ
ସମସ୍ତେ ନଜନଜ ପାପ ପାଇଁ ଦୋଷୀ। ୧୦ଶାସ୍ତ୍ରରେ ଏହ
ପର ଲେଖା ଅଛ:

"କେହ ହେଲେ ଧାର୍ମିକ ନାହିଁ, ଜଣେ ମଧ ନୁହେଁ!
୧୧ ବୁଝିବା ଲୋକ ଜଣେ ମଧ ନାହିଁ, ପରମେଶ୍ୱରଙ୍କୁ
ପ୍ରକୃତରେ ଖୋଜୁ ଥିବା ଲୋକ ଜଣେ ନାହିଁ।
୧୨ ସମସ୍ତେ ସତ୍ୟ ମାର୍ଗ ଭୁଲ ଯାଇଛନ୍ତ, ଓ ସମସ୍ତେ
ମୂଲ୍ୟହୀନ ହୋଇ ଯାଇଛନ୍ତ। ସେଠାରେ କେହ
ନାହିଁ ଯିଏ ଭଲ କରେ। ଏପରକ ଜଣେ ମଧ
ନୁହେଁ।" ଗୀତସଂହତା ୧୪:୧-୩

୧୩ "ମଣିଷ ମାନଙ୍କର ମୁହଁ ଖୋଲା କବର ଭଳ
ଅଟେ, ସେମାନେ ମିଛ ପାଇଁ ତାଙ୍କ ଜିହ୍ୱାକୁ
ବ୍ୟବହାର କରନ୍ତ।" ଗୀତସଂହତା ୫:୯

"ସେମାନଙ୍କର କଥା ସାପର ବଷ ଭଳ ଅଟେ।"
ଗୀତସଂହତା ୧୪୦:୩

୧୪ "ଅଭିଶାପ ଓ କଟୁତାରେ ସେମାନଙ୍କର କଥା ପୂର୍ଣ୍ଣ
ହୋଇଥାଏ।" ଗୀତସଂହତା ୧୦:୭

୧୫ "ଲୋକେ ଅନ୍ୟକୁ ଆଘାତ ଓ ହତ୍ୟା କରବା ପାଇଁ
ସର୍ବଦା ପ୍ରସ୍ତୁତ
୧୬ ସେମାନେ ବନାଶ କରବା ଓ କ୍ଲେଶ ଦେବା ପାଇଁ
ସର୍ବତ୍ର ଯାଆନ୍ତ।
୧୭ ଲୋକେ ଶାନ୍ତର ମାର୍ଗ ଜାଣନ୍ତ ନାହିଁ।"
ଯିଶାଇୟ ୫୯:୭-୮

୧୮ "ସେମାନଙ୍କର ଆଖିରେ ପରମେଶ୍ୱରଙ୍କ ପ୍ରତି ଭୟ
ବା ସମ୍ମାନ ଭାବ ନାହିଁ।"
ଗୀତସଂହତା ୩୬:୧

୧୯ବ୍ୟବସ୍ଥାରେ ଯେଉଁ କଥା ଗୁଡ଼ିକ କୁହା ଯାଇଛ,
ତାହା ବ୍ୟବସ୍ଥାଧିନ ରହଥିବା ଲୋକଙ୍କ ପାଇଁ ପ୍ରୟୋଜନ।
ଏହ ବ୍ୟବସ୍ଥା ଗୁଡ଼ିକ ସମସ୍ତ ଯିହୂଦୀ ଲୋକଙ୍କୁ ଆଳ
ଦେଖାଇବାରୁ ଅଟକାଏ, ଏବଂ ସମଗ୍ର ସଂସାରର ଲୋକମାନଙ୍କୁ
ପରମେଶ୍ୱରଙ୍କ ନ୍ୟାୟବଗ୍ଚାରକୁ ଆଣେ। ୨୦ଏହାର କାରଣ
ହେଲା, କୌଣସି ଲୋକ ବ୍ୟବସ୍ଥା ପାଳନ କରବା ଦ୍ୱାରା
ପରମେଶ୍ୱରଙ୍କ ସହତ ଧାର୍ମିକ ହୁଏ ନାହିଁ। ବ୍ୟବସ୍ଥା
କେବଳ ଆମ୍ଭର ପାପ ବଷୟରେ ଆମ୍ଭକୁ ସାବଧାନ
କରାଏ।

## ପରମେଶ୍ୱର ମଣିଷମାନଙ୍କୁ ଧାର୍ମିକ କପର କରନ୍ତ?

୨୧କନ୍ତୁ ବନା ବ୍ୟବସ୍ଥାରେ ଲୋକମାନଙ୍କୁ ଧାର୍ମିକ କରବା
ପାଇଁ ପରମେଶ୍ୱରଙ୍କର ଗୋଟିଏ ନୂତନ ମାର୍ଗ ଅଛ। ସେ
ଆମ୍ଭକୁ ସେହ ନୂତନ ପଥ ଦେଖାଇ ଦେଇଛନ୍ତ। ଏହ
ନୂତନ ପଥ ବଷୟରେ ବ୍ୟବସ୍ଥା ଓ ଭବଷ୍ୟଦ୍‌ବକ୍ତା ଆମ୍ଭକୁ
କହୁଛନ୍ତ। ୨୨ଯୀଶୁ ଖ୍ରୀଷ୍ଟଙ୍କ ଠାରେ ବଶ୍ୱାସ ଦ୍ୱାରା ପରମେଶ୍ୱର
ଲୋକମାନଙ୍କୁ ଧାର୍ମିକ କରନ୍ତ। ଯୀଶୁ ଖ୍ରୀଷ୍ଟଙ୍କଠାରେ ବଶ୍ୱାସ
ରଖୁଥିବା ସମସ୍ତ ଲୋକଙ୍କ ପାଇଁ ପରମେଶ୍ୱର ଏହା
କରନ୍ତ। ସବୁ ଲୋକେ ହେଉଛନ୍ତ ସମାନ। ୨୩ସମସ୍ତେ
ପାପ କରଛନ୍ତ ଓ ପରମେଶ୍ୱରଙ୍କ ମହମା ପାଇବାରେ ଊଣା
ପଡ଼ିଛନ୍ତ। ୨୪ପରମେଶ୍ୱରଙ୍କ ଅନୁଗ୍ରହ ଦ୍ୱାରା ଲୋକେ ତାହାଙ୍କ
ଦୃଷ୍ଟିରେ ଧାର୍ମିକ ହୁଅନ୍ତ। ଏହା ବନା ମୂଲ୍ୟର ଅନୁଗ୍ରହଦାନ
ଅଟେ। ଖ୍ରୀଷ୍ଟ ଯୀଶୁଙ୍କ ମାଧମରେ ପାପରୁ ମୁକ୍ତ ହୋଇ
ଲୋକେ ପରମେଶ୍ୱରଙ୍କ ଦୃଷ୍ଟିରେ ଧାର୍ମିକ ହୁଅନ୍ତ।
୨୫ଲୋକମାନଙ୍କୁ ବଶ୍ୱାସ ଜରଆରେ, ପାପରୁ କ୍ଷମା କରବା
ଉଦ୍ଦେଶ୍ୟରେ ପରମେଶ୍ୱର ଯୀଶୁଙ୍କୁ ପଥ ଭାବରେ ଦେଇଥିଲେ।

ଯୀଶୁଙ୍କ ରକ୍ତ ବା ମୃତ୍ୟୁ ଦ୍ୱାରା ପରମେଶ୍ୱର କ୍ଷମା କରନ୍ତି।
ଯୀଶୁଙ୍କୁ ଦେବା ଦ୍ୱାରା ଏହା ପ୍ରମାଣିତ କରେ ଯେ
ପରମେଶ୍ୱର ସର୍ବଦା ନ୍ୟାୟ କରନ୍ତି। [୨୬]ପୂର୍ବରୁ ପରମେଶ୍ୱର
ଧୈର୍ଯ୍ୟ ଧରି ରହିଥିବା ଲୋକମାନଙ୍କୁ ସେମାନଙ୍କର ପାପ
ପାଇଁ ଦଣ୍ଡ ନଦେଇ ଉଚିତ କାର୍ଯ୍ୟ କରିଥିଲେ। ସେ
ନିଜର ଧାର୍ମିକତା ପ୍ରକାଶ କରିବା ପାଇଁ ଏବେ ଯୀଶୁଙ୍କୁ
ପଠାଇଲେ। ପରମେଶ୍ୱର ଯେ, ନିଜେ ନ୍ୟାୟବାନ ତାହା
ଦେଖାଇବା ପାଇଁ ଯୀଶୁଙ୍କଠାରେ ବିଶ୍ୱାସ ରଖି ଥିବା ଯେ
କୌଣସି ଲୋକକୁ ଧାର୍ମିକ କଲେ।

[୨୭]ତା'ହେଲେ ଆମ୍ଭର ଗର୍ବ କରିବାର କିଛି ଅଛି କି?
ନା! କାହିଁକି ନୁହେଁ? କାରଣ, ବିଶ୍ୱାସର ମାର୍ଗ ଦ୍ୱାରା ସମସ୍ତ
ପ୍ରକାରର ଗର୍ବ କରିବା ବିଷୟକୁ ବାଦ୍ କରା ଯାଇଛି।
[୨୮]ଏହାର କାରଣ ହେଲା ଜଣେ ଲୋକ ବ୍ୟବସ୍ଥା ପାଳନ
କରିବା ଦ୍ୱାରା ନୁହେଁ ବରଂ ବିଶ୍ୱାସ ଦ୍ୱାରା ପରମେଶ୍ୱରଙ୍କ
ପ୍ରତି ଧାର୍ମିକ ଗଣିତ ହୁଏ। ଏ କଥାରେ ଆମ୍ଭେ ବିଶ୍ୱାସ
କରୁ। [୨୯]ପରମେଶ୍ୱର କେବଳ ଯିହୂଦୀମାନଙ୍କର ପରମେଶ୍ୱର
ନୁହଁନ୍ତି। ଅଣଯିହୂଦୀମାନଙ୍କର ମଧ୍ୟ ସେ ପରମେଶ୍ୱର ଅଟନ୍ତି।
[୩୦]ପରମେଶ୍ୱର ହେଉଛନ୍ତି ମାତ୍ର ଜଣେ, ସେ ଯିହୂଦୀମାନଙ୍କୁ
ସେମାନଙ୍କ ବିଶ୍ୱାସ ଆଧାରରେ ତାହାଙ୍କ ସହିତ ଧାର୍ମିକ
କରିବେ। ଅଣଯିହୂଦୀମାନଙ୍କୁ ମଧ୍ୟ ସେମାନଙ୍କର ବିଶ୍ୱାସ
ପାଇଁ ସେ ଧାର୍ମିକ କରିବେ। [୩୧]ଏଠାରେ ପ୍ରଶ୍ନ ଉଠେ ଯେ
ଆମ୍ଭେ କ'ଣ ବିଶ୍ୱାସର ମାର୍ଗ ଅନୁସରଣ କରିବା ଦ୍ୱାରା
ବ୍ୟବସ୍ଥାକୁ ନଷ୍ଟ କରୁଛୁ କି? ନା! ଏହା ସତ୍ୟ ନୁହେଁ।
ବରଂ ବ୍ୟବସ୍ଥା ଆମ୍ଭଠାରୁ ଯାହା ଆଶା କରେ, ତାହା
ହେବା ପାଇଁ ବିଶ୍ୱାସ ଆମ୍ଭକୁ ସୁଯୋଗ ପ୍ରଦାନ କରେ।

## ଅବ୍ରାହାମଙ୍କର ଉଦାହରଣ

୪ ତା ହେଲେ ଆମର ଜାଗତିକ ପୂର୍ବ ପୁରୁଷ ଅବ୍ରାହାମଙ୍କ
ବିଷୟରେ କ'ଣ କହି ପାରିବା? [୨]ସେ ବିଶ୍ୱାସ
ବିଷୟରେ କ'ଣ ଶିଖିଲେ? ଅବ୍ରାହାମ ଯଦି ନିଜର କର୍ମ
ପାଇଁ ଧାର୍ମିକ ବୋଲି ଧରା ହେଲେ, ତା'ହେଲେ, ସେଥିରେ
ତାହାଙ୍କର ଗର୍ବ କରିବା କଥା। କିନ୍ତୁ ଅବ୍ରାହାମ ପରମେଶ୍ୱରଙ୍କ
ଆଗରେ ଗର୍ବ କରି ପାରିଲେ ନାହିଁ। [୩]ଶାସ୍ତ୍ର କୁହେ:
"ଅବ୍ରାହାମ ପରମେଶ୍ୱରଙ୍କଠାରେ ବିଶ୍ୱାସ ରଖିଲେ। ପରମେଶ୍ୱର
ତାହାଙ୍କର ବିଶ୍ୱାସକୁ ଗ୍ରହଣ କଲେ। ଏହା ଦ୍ୱାରା ପରମେଶ୍ୱରଙ୍କ
ପ୍ରତି ଅବ୍ରାହାମ ଧାର୍ମିକ ହେଲେ।"*

[୪]କାମ କରୁଥିବା ଲୋକକୁ ମଜୁରୀ ବା ଦରମା ଦେବା
ଦାନ ନୁହେଁ। ସେ ମଜୁରୀ ବା ଦରମା ଅର୍ଜନ କରେ।
[୫]କିନ୍ତୁ ଜଣେ ଲୋକ ପରମେଶ୍ୱରଙ୍କ ପ୍ରତି ଧାର୍ମିକ ହେବା
ଭଳି କାମ କରି ପାରେ ନାହିଁ। ତାହାର ପରମେଶ୍ୱରଙ୍କ
ପ୍ରତି ବିଶ୍ୱାସ ରହିବା ଉଚିତ। ତା ହେଲେ ପରମେଶ୍ୱର
ସେ ଲୋକର ବିଶ୍ୱାସକୁ ଗ୍ରହଣ କରନ୍ତି ଓ ଏହା ତାହାକୁ
ପରମେଶ୍ୱରଙ୍କ ପ୍ରତି ଧାର୍ମିକ କରେ। ପରମେଶ୍ୱର ମନ୍ଦ
ଲୋକକୁ ମଧ୍ୟ ଧାର୍ମିକ କରି ପାରନ୍ତି। [୬]ଦାଉଦ ସେହି
କଥା କହୁଛନ୍ତି: ମଣିଷ ଯାହା କରିଛି ତାହାର ହିସାବ ନ
କରି ପରମେଶ୍ୱର ଯେତେବେଳେ ତାହାକୁ ଧାର୍ମିକ ହିସାବରେ
ଗଣନା କରନ୍ତି, ସେ ଲୋକ ହିଁ ପ୍ରକୃତରେ ଧନ୍ୟ:

[୭]"ଲୋକେ ପ୍ରକୃତରେ ଧନ୍ୟ, ଯେତେବେଳେ ସେମାନଙ୍କର
ଅପରାଧ କ୍ଷମା କରା ଯାଏ, ଓ ଯେତେବେଳେ
ସେମାନଙ୍କର ପାପଗୁଡ଼ିକୁ ଢାଙ୍କି ଦିଆ ଯାଏ!
[୮]ଓ ସେ ଲୋକମାନେ ପ୍ରକୃତରେ ଧନ୍ୟ, ଯେତେବେଳେ
ପାପରହିତ ଭାବେ ପରମେଶ୍ୱର ତାହାଙ୍କୁ ଗ୍ରହଣ କରି
ନେଇଛନ୍ତି।"

ଗୀତସଂହିତା ୩୨:୧-୨

[୯]ତେବେ ଏହି ଖୁସି କଣ କେବଳ ସୁନ୍ନତ ହୋଇଥିବା
ଯିହୂଦୀମାନଙ୍କ ପାଇଁ ଅଟେ? ବା ଯେଉଁ ଅଣଯିହୂଦୀମାନେ
ସୁନ୍ନତ ହୋଇ ନାହାଁନ୍ତି ସେମାନଙ୍କ ପାଇଁ ମଧ୍ୟ ଅଟେ?
ଆମ୍ଭେ କହି ସାରିଛୁ ଯେ, ପରମେଶ୍ୱର ଅବ୍ରାହାମଙ୍କ
ବିଶ୍ୱାସକୁ ଗ୍ରହଣ କଲେ ଓ ସେହି ବିଶ୍ୱାସ ଅବ୍ରାହାମକୁ
ତାଙ୍କ ପ୍ରତି ଧାର୍ମିକ କଲା। [୧୦]ଏହା ଘଟିଲା କପରି?
ପରମେଶ୍ୱର ଅବ୍ରାହାମଙ୍କୁ ସୁନ୍ନତ ହେବାପରେ ଗ୍ରହଣ କଲେ,
ନା ସୁନ୍ନତ ହେବା ପୂର୍ବରୁ ଗ୍ରହଣ କଲେ? ସେ ସୁନ୍ନତ
ହୋଇ ସାରିଲା ପରେ ଏହା ପ୍ରକୃତରେ ଘଟିନାହିଁ, କିନ୍ତୁ
ସେ ସୁନ୍ନତ ନ ହୋଇଥିଲା ବେଳେ ଏହା ଘଟିଛି।*
[୧୧]ପରମେଶ୍ୱର ଗ୍ରହଣ କରି ନେଇଛନ୍ତି ବୋଲି ପ୍ରମାଣିତ
କରିବା ଲାଗି ଅବ୍ରାହାମଙ୍କୁ ପରେ ସୁନ୍ନତ କରା ଯାଇ ଥିଲା।
ଏହି ସୁନ୍ନତ ପ୍ରମାଣ କରୁଛି ଯେ ସୁନ୍ନତ ହେବା ପୂର୍ବରୁ
ପରମେଶ୍ୱରଙ୍କ ପ୍ରତି ସେ ଧାର୍ମିକ ଥିଲେ। ସେଥିପାଇଁ,
ଯେଉଁମାନେ ପରମେଶ୍ୱରଙ୍କୁ ବିଶ୍ୱାସ କରନ୍ତି ଓ ସୁନ୍ନତ
ହୋଇ ନାହାଁନ୍ତି, ସେ ସମସ୍ତ ଲୋକଙ୍କର ପିତା ଅବ୍ରାହାମ
ଅଟନ୍ତି। ସେମାନେ ବିଶ୍ୱାସ କରନ୍ତି ଓ ଏହି କାରଣରୁ
ସେମାନେ ପରମେଶ୍ୱରଙ୍କ ପାଇଁ ଧାର୍ମିକ ବୋଲି ନିରୂପିତ
ହୁଅନ୍ତି। [୧୨]ଅସୁନ୍ନତ ଲୋକଙ୍କର ପିତା ମଧ୍ୟ ଅବ୍ରାହାମ।
ସୁନ୍ନତ ହୋଇଥିବା କାରଣରୁ ଅବ୍ରାହାମ ସେମାନଙ୍କର ପିତା
ନୁହଁନ୍ତି। ସୁନ୍ନତ ହେବା ପୂର୍ବରୁ ଅବ୍ରାହାମଙ୍କର ଯେଉଁ
ବିଶ୍ୱାସ ଥିଲା, ଯଦି ସେମାନେ ମଧ୍ୟ ସେହି ବିଶ୍ୱାସ ଗ୍ରହଣ
କରନ୍ତି, ତା'ହେଲେ ଅବ୍ରାହାମ ସେମାନଙ୍କର ପିତା।

## ବିଶ୍ୱାସ ମାଧ୍ୟମରେ ପରମେଶ୍ୱରଙ୍କ ପ୍ରତିଜ୍ଞା

[୧୩]ଅବ୍ରାହାମ ଓ ତାହାଙ୍କର ବଂଶଜମାନଙ୍କୁ ପ୍ରତିଜ୍ଞା ମିଳିଥିଲା
ଯେ ସେମାନେ ସଂସାରର ଉତ୍ତରାଧିକାରୀ ହେବେ। କିନ୍ତୁ
ଅବ୍ରାହାମ ଏହି ପ୍ରତିଶ୍ରୁତି ବ୍ୟବସ୍ଥା ପାଳନ କରିଥିବାରୁ ମିଳି
ନଥିଲା। ବିଶ୍ୱାସ ଦ୍ୱାରା ସେ ପରମେଶ୍ୱରଙ୍କଠାରେ ଧାର୍ମିକ
ହୋଇଥିବାରୁ ତାହାଙ୍କୁ ଏହି ପ୍ରତିଶ୍ରୁତି ମିଳିଥିଲା। [୧୪]ବ୍ୟବସ୍ଥା
ପାଳନ କରିବା ଦ୍ୱାରା, ଯଦି ଜଣେ ଲୋକ ପରମେଶ୍ୱର
ଯାହା ପ୍ରତିଜ୍ଞା ଦେଇଥିଲେ ତାହା ପାଏ, ତା ହେଲେ
ବିଶ୍ୱାସର କିଛି ଅର୍ଥ ନାହିଁ ଓ ପ୍ରତିଜ୍ଞାର କିଛି ମୂଲ୍ୟ

---

**"ଅବ୍ରାହାମ ... ଧାର୍ମିକ ହେଲେ"** ଆଦିପୁସ୍ତକ ୧୫:୬

**ପରମେଶ୍ୱର ତାଙ୍କୁ ... ଘଟିଛି** ଆଦିପୁସ୍ତକ ୧୭:୯-୧୪

ନାହିଁ । ୧୫କାରଣ ବ୍ୟବସ୍ଥା ପାଳନ ନ କରିବା ଦ୍ୱାରା
ବ୍ୟବସ୍ଥା ପରମେଶ୍ୱରଙ୍କର କ୍ରୋଧ ଆଣିଥାଏ । କିନ୍ତୁ ଯଦି
ବ୍ୟବସ୍ଥା ନ ଥାନ୍ତା, ତା'ହେଲେ ଅବାଧ ହେବାର ପ୍ରଶ୍ନ
ଉଠିବ ନାହିଁ ।
୧୬ସେଥିପାଇଁ ବିଶ୍ୱାସ ଦ୍ୱାରା ଲୋକେ ପରମେଶ୍ୱରଙ୍କ
ପ୍ରତିଜ୍ଞା ପାଆନ୍ତି । ପ୍ରତିଜ୍ଞା ଯେପରି ଏକ ବିନାମୂଲ୍ୟର ଦାନ
ହୋଇପାରେ ସେଥିପାଇଁ ଏପରି ଘଟେ, ଯଦି ବିନା
ମୂଲ୍ୟରେ ପ୍ରତିଜ୍ଞା ଦାନ ମିଳେ ତା'ହେଲେ ଅବ୍ରାହାମଙ୍କ
ବଂଶର ସବୁ ଲୋକେ ପ୍ରତିଜ୍ଞା ପାଇବା ସୁନିଶ୍ଚିତ । ଏହି
ପ୍ରତିଜ୍ଞା କେବଳ ବ୍ୟବସ୍ଥାଧିନ ରହିଥିବା ଲୋକଙ୍କ ପାଇଁ
ନୁହେଁ । ଅବ୍ରାହାମ ଭଳି ବିଶ୍ୱାସ ପୂର୍ବକ ଜୀବନ ଯାପନ
କରୁଥିବା ସମସ୍ତ ଲୋକଙ୍କ ପାଇଁ ଏହି ପ୍ରତିଜ୍ଞା ରହିଛି ।
ଅବ୍ରାହାମ ଆମ୍ଭ ସମସ୍ତଙ୍କର ପିତା । ୧୭ଶାସ୍ତ୍ରରେ ଲେଖା
ଅଛି, "ମୁଁ ତୁମ୍ଭକୁ (ଅବ୍ରାହାମ) ଅନେକ ଗୁଡ଼ିଏ ଜାତିର
ପିତା ଘୋଷିତ କରିଛି ।"* ପରମେଶ୍ୱରଙ୍କ ଆଗରେ ଏହା
ସତ୍ୟ ଅଟେ । ଅବ୍ରାହାମ ଯେଉଁ ପରମେଶ୍ୱରଙ୍କୁ ବିଶ୍ୱାସ
କରିଥିଲେ, ସେହି ପରମେଶ୍ୱର ମୃତ ଲୋକଙ୍କୁ ଜୀବନ
ପ୍ରଦାନ କରନ୍ତି ଓ ଯେଉଁ ଘଟଣା ଅଦ୍ୟାପି ଘଟି ନାହିଁ
ସେଗୁଡ଼ିକ ଘଟିବା କଥା ନିର୍ଣ୍ଣୟ କରନ୍ତି ।
୧୮ଅବ୍ରାହାମଙ୍କର ସନ୍ତାନ ହେବାର ଆଶା ନ ଥିଲା । କିନ୍ତୁ
ଅବ୍ରାହାମ ପରମେଶ୍ୱରଙ୍କୁ ବିଶ୍ୱାସ କଲେ ଓ ଭରସାକୁ
ବଜାୟ ରଖିଲେ । ସେଥିପାଇଁ ସେ ଅନେକ ଜାତିର ପିତା
ହେଲେ । ପରମେଶ୍ୱର ତାହାଙ୍କୁ କହିଥିଲେ: "ତୁମ୍ଭର ଅଗଣିତ
ବଂଶଧର ହେବେ ।"* ୧୯ଅବ୍ରାହାମଙ୍କୁ ୧୦୦ ବର୍ଷ ବୟସ
ହୋଇଥିଲା, ଅତଏବ ପିଲାପିଲି ହେବା ସମୟ ଚାଲି ଯାଇ
ଥିଲା । ତାହାଙ୍କ ସ୍ତ୍ରୀ ସାରା ମଧ୍ୟ ସନ୍ତାନ ଜନ୍ମ କରି
ପାରିବେ ନାହିଁ, ଅବ୍ରାହାମ ଏ କଥା ଭାବିଥିଲେ । ୨୦କିନ୍ତୁ
ପରମେଶ୍ୱରଙ୍କ ପ୍ରତି ତାହାଙ୍କର ବିଶ୍ୱାସ ଦୁର୍ବଳ ହେଲା
ନାହିଁ । ପରମେଶ୍ୱର ତାହାଙ୍କୁ ଯାହା ପ୍ରତିଶ୍ରୁତି ଦେଇଛନ୍ତି
ତାହା ସେ କରିବାରେ ସମର୍ଥ ଏଥିରେ ଅବ୍ରାହାମ ଟିକେ
ହେଲେ ସନ୍ଦେହ କଲେ ନାହିଁ । ବରଂ ତାହାଙ୍କର ବିଶ୍ୱାସ
ଅଧିକ ଦୃଢ଼ ହେଲା ଓ ସେ ପରମେଶ୍ୱରଙ୍କୁ ଗୌରବ
ଦେଲେ । ୨୧ଅବ୍ରାହାମ ଦୃଢ଼ ଭାବରେ ଅନୁଭବ କଲେ ଯେ
ପରମେଶ୍ୱର ଯାହା ପ୍ରତିଶ୍ରୁତି ଦେଇଛନ୍ତି, ତାହା କରିବାରେ
ସେ ସକ୍ଷମ ଥିଲେ । ୨୨ସେଥିପାଇଁ ପରମେଶ୍ୱର, "ଅବ୍ରାହାମଙ୍କ
ବିଶ୍ୱାସକୁ ଗ୍ରହଣ କଲେ । ସେ ବିଶ୍ୱାସ ଅବ୍ରାହାମଙ୍କୁ
ପରମେଶ୍ୱରଙ୍କ ପ୍ରତି ଧାର୍ମିକ କରି ରଖିଥିଲା ।"* ୨୩ପରମେଶ୍ୱର
ଅବ୍ରାହାମଙ୍କ ବିଶ୍ୱାସ ଗ୍ରହଣ କଲେ, ଏହି ବାକ୍ୟ ଗୁଡ଼ିକ
କେବଳ ଅବ୍ରାହାମଙ୍କ ପାଇଁ ଲେଖା ଯାଇ ନ ଥିଲା । ୨୪ଏହି
ବାକ୍ୟ ଗୁଡ଼ିକ ଆମ୍ଭ ପାଇଁ ମଧ୍ୟ ଲେଖା ଯାଇ ଥିଲା ।
ଆମ୍ଭେ ବିଶ୍ୱାସ କରୁଥିବା ଯୋଗୁ ପରମେଶ୍ୱର ଆମ୍ଭକୁ ମଧ୍ୟ
ଗ୍ରହଣ କରିବେ । ଆମ୍ଭେ ତାହାଙ୍କୁ ବିଶ୍ୱାସ କରୁ ଯିଏ
ଆମ୍ଭର ପ୍ରଭୁ ଯୀଶୁଙ୍କୁ ମୃତ୍ୟୁରୁ ପୁନର୍ଜୀବିତ କଲେ ।
୨୫ଆମ୍ଭର ପାପ ଲାଗି ଯୀଶୁଙ୍କୁ ମୃତ୍ୟୁଠାରେ ସମର୍ପିତ କରା
ହେଲା । ଆମ୍ଭକୁ ପରମେଶ୍ୱରଙ୍କଠାରେ ଧାର୍ମିକ କରିବା ଲାଗି
ଯୀଶୁ ମୃତ୍ୟୁରୁ ପୁନର୍ଜୀବିତ ହେଲେ ।

## ପରମେଶ୍ୱରଙ୍କ ପ୍ରତି ଧାର୍ମିକ

୫ ଆମ୍ଭର ବିଶ୍ୱାସ ହେତୁ ଆମ୍ଭକୁ ପରମେଶ୍ୱରଙ୍କଠାରେ
ଧାର୍ମିକ କରାଯାଇଛି । ସେଥିପାଇଁ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ
ମାଧ୍ୟମରେ ପରମେଶ୍ୱରଙ୍କ ସହିତ ଆମ୍ଭେ ଶାନ୍ତିରେ ଅଛୁ ।
ବିଶ୍ୱାସ ଦ୍ୱାରା ଖ୍ରୀଷ୍ଟ ଆମ୍ଭକୁ ପରମେଶ୍ୱରଙ୍କ ଅନୁଗ୍ରହର
ଅଧୀନ କଲେ । ୨ଏବେ ଆମ୍ଭେ ଏହି ଅନୁଗ୍ରହରେ ରହିଛୁ
ଓ ଆମ୍ଭେ ପରମେଶ୍ୱରଙ୍କ ଏହି ମହିମାରେ ଭାଗୀଦାର
ହୋଇଥିବା ଆଶାରେ ଆନନ୍ଦିତ । ୩ଆମ୍ଭେମାନେ ଆମ୍ଭର
କ୍ଲେଶଗୁଡ଼ିକ ଥାଇ ମଧ୍ୟ ଆନନ୍ଦିତ । ଆମ୍ଭେ ଏହି କଷ୍ଟଗୁଡ଼ିକ
ପାଇଁ କାହିଁକି ଆନନ୍ଦିତ? କାରଣ ଆମ୍ଭେ ଜାଣୁ ଯେ ଏହି
କଷ୍ଟ ଗୁଡ଼ିକ ଆମ୍ଭକୁ ଅଧିକ ଧୈର୍ଯ୍ୟବାନ କରାଏ । ୪ଏହି
ଧୈର୍ଯ୍ୟ ପ୍ରମାଣ କରେ ଯେ, ଆମ୍ଭେ ବଳବାନ ଓ ଏହି
ପ୍ରମାଣ ଆମ୍ଭକୁ ଭରସା ପ୍ରଦାନ କରେ । ୫ଏହି ଭରସା
ଆମ୍ଭକୁ କେବେ ହେଲେ ନିରାଶ କରିବ ନାହିଁ । କିଣ
ପାଇଁ? କାରଣ ପରମେଶ୍ୱର ଆମ୍ଭର ହୃଦୟ ଗୁଡ଼ିକୁ ପୂର୍ଣ୍ଣ
କରିବା ପାଇଁ ତାହାଙ୍କର ପ୍ରେମ ଢ଼ାଳିଦେଲେ । ପରମେଶ୍ୱର
ପବିତ୍ର ଆତ୍ମା ମାଧ୍ୟମରେ ତାହାଙ୍କର ପ୍ରେମ ଦେଇଛନ୍ତି ।
ପରମେଶ୍ୱରଙ୍କ ତରଫରୁ ଆମ୍ଭ ପାଇଁ ପବିତ୍ର ଆତ୍ମା ଅନୁଗ୍ରହ
ଦାନ ଭାବରେ ଆସିଥିଲେ ।
୬ଆମ୍ଭେ ଦୁର୍ବଳ ଥିବା ବେଳେ ଖ୍ରୀଷ୍ଟ ଆମ୍ଭ ପାଇଁ ମରି
ଥିଲେ । ଆମ୍ଭେ ପରମେଶ୍ୱରଙ୍କ ବିରୁଦ୍ଧରେ ଜୀବନଯାପନ
କରୁଥିଲୁ, ତଥାପି ଯଥାର୍ଥ ସମୟରେ ଖ୍ରୀଷ୍ଟ ଆମ୍ଭ ପାଇଁ
ମରି ଥିଲେ । ୭ଅନ୍ୟ ଲୋକ ଯେତେ ଭଲ ହେଲେ ମଧ୍ୟ,
ଖୁବ କମ୍ ଲୋକ ଅନ୍ୟକୁ ବଞ୍ଚାଇବା ପାଇଁ ମୃତ୍ୟୁ ବରଣ
କରିବେ । ଯଦି ଲୋକଟି ଅତି ଭଲ ହୋଇ ଥାଏ ତେବେ
ତା ନିମନ୍ତେ କିଏ ଜଣେ ମୃତ୍ୟୁ ବରଣ କରିବା ପାଇଁ
ସାହସ କରିବ । ୮କିନ୍ତୁ ଆମ୍ଭେ ସମସ୍ତେ ପାପୀ ଥିବା
ସମୟରେ ସୁଦ୍ଧା ଖ୍ରୀଷ୍ଟ ଆମ୍ଭ ପାଇଁ ମୃତ୍ୟୁ ବରଣ କଲେ ।
ଏହା ଦ୍ୱାରା ପରମେଶ୍ୱର ପ୍ରମାଣିତ କଲେ ଯେ ସେ ଆମ୍ଭକୁ
ବହୁତ ଭଲ ପାଆନ୍ତି ।
୯ଆମ୍ଭେ ଖ୍ରୀଷ୍ଟଙ୍କର ରକ୍ତ ଦ୍ୱାରା ପରମେଶ୍ୱରଙ୍କ ପ୍ରତି
ଧାର୍ମିକ ହୋଇଛୁ । ସେଥି ପାଇଁ ଖ୍ରୀଷ୍ଟଙ୍କ ମାଧ୍ୟମରେ ଆମ୍ଭେ
ପରମେଶ୍ୱରଙ୍କର କ୍ରୋଧରୁ ନିଶ୍ଚିତ ଭାବେ ରକ୍ଷା ପାଇବା ।
୧୦ମୋ କହିବା ଅର୍ଥ ଯେ ଆମ୍ଭେ ପରମେଶ୍ୱରଙ୍କର ଶତ୍ରୁ
ହୋଇଥିଲେ ମଧ୍ୟ, ସେ ନିଜ ପୁତ୍ରଙ୍କ ମୃତ୍ୟୁ ଦ୍ୱାରା ଆମ୍ଭ
ସହିତ ବନ୍ଧୁତା ସ୍ଥାପନ କରିଛନ୍ତି । ସେଥିପାଇଁ ଏବେ
ଯେହେତୁ ଆମ୍ଭେ ପରମେଶ୍ୱରଙ୍କର ମିତ୍ର, ପରମେଶ୍ୱର ତାଙ୍କ
ପୁତ୍ରଙ୍କ ଜୀବନ ମାଧ୍ୟମରେ ଆମ୍ଭକୁ ନିଶ୍ଚିତ ଭାବରେ ରକ୍ଷା
କରିବେ । ୧୧ଆମ୍ଭେ ଯେ କେବଳ ରକ୍ଷା ପାଇବୁ ତା
ନୁହେଁ, ବରଂ ଏବେ ଆମ୍ଭେ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ମାଧ୍ୟମରେ
ପରମେଶ୍ୱରଙ୍କ ଠାରେ ମଧ୍ୟ ଅତ୍ୟଧିକ ଆନନ୍ଦିତ ହେତୁ
କେବଳ ଯୀଶୁଙ୍କ ପାଇଁ ଆମ୍ଭେ ଆଜି ପରମେଶ୍ୱରଙ୍କ ମିତ୍ର
ଅଟୁ ।

---

**"ମୁଁ ତୁମକୁ ... କରିଛି"** ଆଦିପୁସ୍ତକ ୧୭:୫
**"ତୁମର ଅଗଣିତ ବଂଶଧର ହେବେ"** ଆଦିପୁସ୍ତକ ୧୫:୫
**"ଅବ୍ରାହାମଙ୍କ ... ରଖିଥିଲା"** ଆଦିପୁସ୍ତକ ୧୫:୬

### ଆଦମ ଓ ଯୀଶୁ

୧୨ଜଣେ ଲୋକ (ଆଦମ) ପାଇଁ ସଂସାରକୁ ପାପ
ଆସିଲା। ପାପ ସହିତ ମୃତ୍ୟୁ ଆସିଲା। ସେଥିପାଇଁ ସମସ୍ତେ
ନିଶ୍ଚୟ ମରିବେ, କାରଣ ସମସ୍ତେ ପାପ କରିଛନ୍ତି।
୧୩ମୋଶା ବ୍ୟବସ୍ଥା ଦେବା ପୂର୍ବରୁ ପାପ ସଂସାରରେ ଥିଲା।
କିନ୍ତୁ ପରମେଶ୍ୱର, ବ୍ୟବସ୍ଥା ନଥିବା କାରଣରୁ ଲୋକମାନଙ୍କୁ
ପାପରେ ପାପୀ ମାନି ନଥିଲେ। ୧୪କିନ୍ତୁ ଆଦମଙ୍କ ସମୟରୁ
ମୋଶାଙ୍କ ସମୟ ସୁଦ୍ଧା, ପ୍ରତ୍ୟେକ ଲୋକକୁ ମରିବାକୁ
ପଡ଼ିଲା। ପରମେଶ୍ୱରଙ୍କର ଆଦେଶ ଅମାନ୍ୟ କରି ପାପ
କରିଥିବା ହେତୁ ଆଦମ ମଲା। କିନ୍ତୁ, ଯେଉଁ ଲୋକମାନେ
ଆଦମ ଭଳି ପାପ କରି ନଥିଲେ, ସେମାନଙ୍କୁ ମଧ
ମରିବାକୁ ହେଲା।

ଭବିଷ୍ୟତରେ ଯେଉଁ ଜଣଙ୍କର (ଖ୍ରୀଷ୍ଟଙ୍କର) ଆସିବା
କଥା, କେତେକାଂଶରେ ସେ ଆଦମଙ୍କ ଭଳି । ୧୫କିନ୍ତୁ,
ପରମେଶ୍ୱରଙ୍କ ଅନୁଗ୍ରହଦାନ ଆଦମର ପାପ ପରି ନୁହେଁ।
ଜଣେ ଲୋକର ପାପ କାରଣରୁ ଅନେକ ଲୋକ ମୃତ୍ୟୁ
ବରଣ କଲେ। କିନ୍ତୁ ପରମେଶ୍ୱରଙ୍କଠାରୁ ଲୋକେ ଯେଉଁ
ଅନୁଗ୍ରହ ପାଇଲେ, ତାହା ବହୁତ ଅଧିକ ଥିଲା। ଅନେକ
ଲୋକ ଜଣେ ଲୋକର ଅନୁଗ୍ରହ ହେତୁ ଜୀବନରୂପ
ଅନୁଗ୍ରହଦାନ ପାଇଲେ। ୧୬ଆଦମ ଥରେ ପାପ କଲା
ପରେ ସେ ଦୋଷୀ ବୋଲି ସାବ୍ୟସ୍ତ ହେଲା। କିନ୍ତୁ
ପରମେଶ୍ୱରଙ୍କର ଅନୁଗ୍ରହଦାନ ଏହାଠାରୁ ଭିନ୍ନ ଅଟେ।
ଅନେକ ପାପ ପରେ ପରମେଶ୍ୱରଙ୍କର ଅନୁଗ୍ରହଦାନ ଆସିଲା।
ଓ ଏହି ଅନୁଗ୍ରହଦାନ ଲୋକଙ୍କୁ ପରମେଶ୍ୱରଙ୍କ ପ୍ରତି
ଧାର୍ମିକ କରାଇଲା। ୧୭ଜଣେ ଲୋକ ପାପ କଲା, ସେଥିପାଇଁ
ସେ ଜଣକ ଲାଗି, ମୃତ୍ୟୁ ସମସ୍ତଙ୍କ ଉପରେ ରାଜତ୍ୱ କଲା।
କିନ୍ତୁ ଏବେ କିଛି ଲୋକ ପରମେଶ୍ୱରଙ୍କ ପୂର୍ଣ୍ଣ ଦୟା ଓ
ତାହାଙ୍କର 'ଧାର୍ମିକ' ହେବା ଭଳି ବିରାଟ ଅନୁଗ୍ରହଦାନକୁ
ମଧ ଗ୍ରହଣ କରନ୍ତି। ଏହା ନିଶ୍ଚିତ ଯେ ସେ ଲୋକମାନେ
ପ୍ରକୃତ ଜୀବନ ପ୍ରାପ୍ତ କରିବେ, ଓ ସେହି ଲୋକମାନେ
ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ଶାସନ କରିବେ।

୧୮ଅତଏବ ଯେପରି ଆଦମର ଗୋଟିଏ ପାପ ସମସ୍ତ
ଲୋକଙ୍କୁ (ମୃତ୍ୟୁରେ) ଦଣ୍ଡିତ କଲା, ସେହି ଭଳି ଯୀଶୁ
ଖ୍ରୀଷ୍ଟ କରିଥିବା ଗୋଟିଏ ଧାର୍ମିକ କାମ ସମସ୍ତ ଲୋକଙ୍କୁ
ପରମେଶ୍ୱରଙ୍କ ପ୍ରତି ଧାର୍ମିକ କରି ରଖିବ। ଓ ତାହା
ସେହି ଲୋକମାନଙ୍କ ପାଇଁ ପ୍ରକୃତ ଜୀବନ ଆଣି ଦେବ।
୧୯ଜଣେ ଲୋକ ପରମେଶ୍ୱରଙ୍କୁ ଅବଜ୍ଞା କଲା ଓ ଅନେକ
ଲୋକ ପାପୀ ହୋଇ ଗଲେ। କିନ୍ତୁ ସେହିପରି ଜଣେ
ଲୋକ ପରମେଶ୍ୱରଙ୍କୁ ମାନିଲା ଓ ଅନେକ ଲୋକ ଧାର୍ମିକ
ହୋଇ ଯିବେ। ୨୦ଲୋକମାନେ ଅଧିକ ପାପ କରିବା ପାଇଁ
ବ୍ୟବସ୍ଥା ଆସିଲା, କିନ୍ତୁ ଯେତେବେଳେ ଲୋକେ ଅଧିକ
ପାପ କଲେ, ପରମେଶ୍ୱର ସେମାନଙ୍କୁ ପ୍ରଚୁର ମାତ୍ରାରେ
ତାହାଙ୍କ ଅନୁଗ୍ରହ ପ୍ରଦାନ କଲେ। ୨୧ଆମ୍ଭମାନଙ୍କୁ ଶାସନ
କରିବା ପାଇଁ ପାପ ଥରେ ମୃତ୍ୟୁକୁ ବ୍ୟବହାର କଲା। କିନ୍ତୁ
ପରମେଶ୍ୱର ନିଜର ଅଧିକ ଅନୁଗ୍ରହ ପ୍ରଦାନ କଲେ ଯାହା
ଦ୍ୱାରା ଅନୁଗ୍ରହ ଶାସନ କଲା ଓ ଲୋକେ ପରମେଶ୍ୱରଙ୍କ
ପ୍ରତି ଧାର୍ମିକ ହୋଇ ରହିଲେ। ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ
ଦ୍ୱାରା ଏହା ଅନନ୍ତ ଜୀବନ ଆଣିଲା।

### ପାପ ପାଇଁ ମୃତ, କିନ୍ତୁ ଖ୍ରୀଷ୍ଟଙ୍କ ପ୍ରତି ଜୀବିତ

୬ ତା ହେଲେ ତୁମ୍ଭେମାନେ ଭାବୁଛ ଯେ ଆମ୍ଭେ
ସର୍ବଦା ପାପ କରି ଚାଲି ଥିବା ଯାହା ପାଇଁ
ପରମେଶ୍ୱର ଆମ୍ଭକୁ ଆହୁରି ଅଧିକ ଅନୁଗ୍ରହ ପ୍ରଦାନ
କରିବେ? ୨ନା! ଆମ୍ଭେ ଆମ୍ଭର ପୁରାତନ ପାପ ପୂର୍ଣ୍ଣ
ଜୀବନ ପ୍ରତି ମରିଯାଇଛୁ। ତା'ହେଲେ ଆମ୍ଭେ ଆଉ ପାପ
କରି ଚାଲି ପାରିବା କି? ୩ତୁମ୍ଭେମାନେ କଣ ମନେ ରଖିଛ
କି ଯେତେବେଳେ ଆମ୍ଭେ ସମସ୍ତେ ବାପ୍ତିଜିତ ହେଲୁ,
ସେତେବେଳେ ଯୀଶୁ ଖ୍ରୀଷ୍ଟଙ୍କର ଅଂଶ ହୋଇଗଲୁ। ଆମ୍ଭର
ବାପ୍ତିଜିତ ହେବାରେ ଆମ୍ଭେ ତାହାଙ୍କର ମୃତ୍ୟୁର ମଧ
ଭାଗୀଦାର ହେଲୁ। ୪ଅତଏବ ଆମ୍ଭେ ଯେତେବେଳେ ବାପ୍ତିଜିତ
ହେଲୁ, ଆମ୍ଭେ ଯୀଶୁ ଖ୍ରୀଷ୍ଟଙ୍କ ଭିତରେ ସମାଧି ପ୍ରାପ୍ତ
ହୋଇ ଗଲୁ, ଓ ତାହାଙ୍କ ମୃତ୍ୟୁର ଭାଗୀଦାର ହେଲୁ।
ଖ୍ରୀଷ୍ଟଙ୍କ ସହିତ କବରସ୍ଥ ହେବା ଦ୍ୱାରା ଆମ୍ଭେ ପୁନରୁତ୍ଥିତ
ହୋଇ ନୂତନ ଜୀବନ ଯାପନ କରିବା। ପରମପିତାଙ୍କର
ଆଶ୍ଚର୍ଯ୍ୟ ଶକ୍ତି ଦ୍ୱାରା ଯେପରି ଖ୍ରୀଷ୍ଟ ମୃତ୍ୟୁରୁ ପୁନର୍ଜୀବିତ
ହେଲେ, ସେହି ଭଳି ଏହା ଘଟିଲା।

୫ଖ୍ରୀଷ୍ଟ ମୃତ୍ୟୁ ବରଣ କଲେ, ଓ ଆମ୍ଭେ ମଧ ମୃତ୍ୟୁ
ଦ୍ୱାରା ଖ୍ରୀଷ୍ଟଙ୍କ ସହିତ ସଂଯୁକ୍ତ ହୋଇଛୁ। ଖ୍ରୀଷ୍ଟ ମୃତ୍ୟୁରୁ
ଜୀବିତ ହେବା ଭଳି ଆମ୍ଭେ ମଧ ମୃତ୍ୟୁରୁ ଜୀବିତ ହୋଇ
ତାହାଙ୍କ ସହିତ ସଂଯୁକ୍ତ ହେବା। ୬ଆମ୍ଭେ ଜାଣୁ ଯେ,
ଆମ୍ଭର ପୂର୍ବ ଜୀବନ, ଖ୍ରୀଷ୍ଟଙ୍କ ସହିତ କ୍ରୁଶ ଉପରେ
ତାହାଙ୍କ ସହିତ ମୃତ ହୋଇ ଯାଇଛି। ଆମ୍ଭର ପାପପୂର୍ଣ୍ଣ
ଶରୀର ଆମ୍ଭ ଉପରେ ରାଜତ୍ୱ ନକରିବା ପାଇଁ ଏପରି
ଘଟିଲା। ତା'ପରେ ଆମ୍ଭେ ପାପର ଦାସ ହେବୁ ନାହିଁ।
୭ଯେଉଁ ଲୋକ ମରିଯାଇଛି, ସେ ପାପର ଦାସତ୍ୱରୁ ମୁକ୍ତ
ହୋଇ ଯାଇଛି।

୮ଆମ୍ଭେ ଯଦି ଖ୍ରୀଷ୍ଟଙ୍କ ସହିତ ମୃତ୍ୟୁ ବରଣ କରିଛୁ,
ତା'ହେଲେ ଜାଣୁ ଯେ ଆମ୍ଭେ ମଧ ତାହାଙ୍କ ସହିତ
ଜୀବିତ ରହିବା। ୯ଖ୍ରୀଷ୍ଟ ମୃତ୍ୟୁରୁ ଉଠି ଥିଲେ, ଓ ଆମ୍ଭେ
ଜାଣୁ ଯେ ସେ ପୁନଃ ମରିବେ ନାହିଁ। ଏବେ ମୃତ୍ୟୁର
ତାଙ୍କ ଉପରେ ଆଉ କୌଣସି କର୍ତ୍ତୃତ୍ୱ ନାହିଁ। ୧୦ଯେତେବେଳେ
ଖ୍ରୀଷ୍ଟ ମରି ଥିଲେ, ସେ ପାପର ଶକ୍ତିକୁ ଥରେ ମାତ୍ର
ହରାଇବା ପାଇଁ ମରି ଥିଲେ-ଏହା ସବୁ ଦିନ ପାଇଁ
ଯଥେଷ୍ଟ ଥିଲା। ଏବେ ସେ ଯେଉଁ ଜୀବନ ଯାପନ କରନ୍ତି
ତାହା ପରମେଶ୍ୱରଙ୍କ ପାଇଁ କରନ୍ତି। ୧୧ସେହି ଭଳି
ତୁମ୍ଭେମାନେ ମଧ ପାପର ଶକ୍ତି ବିଷୟରେ ନିଜକୁ ମୃତ
ବୋଲି ଭାବିବା ଉଚିତ। ତୁମ୍ଭେମାନେ ଖ୍ରୀଷ୍ଟ ଯୀଶୁଙ୍କ
ମାଧମରେ ପରମେଶ୍ୱରଙ୍କ ପାଇଁ ଜୀବିତ ବୋଲି ଅନୁଭବ
କର।

୧୨କିନ୍ତୁ ପାପ ଯେପରି ତୁମ୍ଭମାନଙ୍କର ଶରୀରକୁ ରାଜତ୍ୱ
ନ କରୁ। ତୁମ୍ଭମାନଙ୍କର ପାପପୂର୍ଣ୍ଣ ସ୍ୱଭାବ ଦ୍ୱାରା ତୁମ୍ଭେମାନେ
ଯେପରି ଶାସିତ ନ ହୁଅ। ୧୩ପାପର ସେବା କରିବା ପାଇଁ

ତୁମ୍ଭମାନଙ୍କ ଶରୀରର ଅଙ୍ଗ ଗୁଡ଼ିକକୁ ଅନୁମତି ଦିଅ ନାହିଁ।
ମନ୍ଦ କାମ କରିବା ପାଇଁ ଶରୀରକୁ ବ୍ୟବହାର କରି
ନାହିଁ। ତା’ ପରିବର୍ତ୍ତେ ନିଜକୁ ପରମେଶ୍ୱରଙ୍କଠାରେ ସମର୍ପଣ
କର। ଯେଉଁମାନେ ମରି ଥିଲେ ଓ ଏବେ ଜୀବିତ ଅଛନ୍ତି
ସେ ଲୋକଙ୍କ ଭଳି ହୁଅ। ନିଜ ଶରୀରର ଅଙ୍ଗ ଗୁଡ଼ିକୁ
ଭଲ କାମ କରିବା ପାଇଁ ପରମେଶ୍ୱରଙ୍କଠାରେ ସମର୍ପଣ
କର। ୧୪ପାପ ତୁମ୍ଭମାନଙ୍କର ସ୍ୱାମୀ ହେବ ନାହିଁ। କାରଣ
ତୁମ୍ଭେମାନେ ବ୍ୟବସ୍ଥାର ବନ୍ଧନରେ ନୁହଁ। ତୁମ୍ଭେମାନେ
ଏବେ ପରମେଶ୍ୱରଙ୍କ ଅନୁଗ୍ରହରେ ଜୀବିତ ଅଛ।

## ଧାର୍ମିକତାର ଦାସ

୧୫ତା ହେଲେ ଆମ୍ଭେ କଣ କରିବା ଉଚିତ? ଆମ୍ଭେ
ବ୍ୟବସ୍ଥାର ଅଧୀନ ନୋହୁଁ, କିନ୍ତୁ ଅନୁଗ୍ରହର ଅଧୀନ ବୋଲି
କଣ ପାପ କରି ଚାଲିଥିବା? ଅବଶ୍ୟ ନୁହେଁ ! ୧୬ଏହା
ନିଶ୍ଚିତ ଭାବରେ ତୁମ୍ଭେମାନେ ଜାଣ ଯେ ଯେତେବେଳେ
ତୁମ୍ଭେମାନେ ଦାସ ଭଳି ନିଜକୁ ସମର୍ପଣ କର, ସେତେବେଳେ
ତୁମ୍ଭେମାନେ ପ୍ରକୃତରେ ସେହି ଲୋକର ଦାସ ଅଟ।
ଯେଉଁ ଲୋକକୁ ତୁମ୍ଭେମାନେ ମାନିବ ସେ ହେଉଛି ତୁମ୍ଭର
ମାଲିକ। ତୁମ୍ଭେମାନେ ପାପର ଚାକର ହୋଇ ପାରିବ ବା
ପରମେଶ୍ୱରଙ୍କୁ ମାନିବ। ପାପ ଆଧାତ୍ମିକ ମୃତ୍ୟୁ ଆଣି ଦିଏ।
କିନ୍ତୁ ପରମେଶ୍ୱରଙ୍କୁ ମାନିଲେ, ପରମେଶ୍ୱରଙ୍କଠାରେ
ତୁମ୍ଭେମାନେ ଧାର୍ମିକ ବୋଲି ଗଣିତ ହୁଅ। ୧୭ଅତୀତରେ
ତୁମ୍ଭେମାନେ ପାପର ଦାସ ଥିଲ, ପାପ ତୁମ୍ଭମାନଙ୍କୁ
ନିୟନ୍ତ୍ରଣ କରି ରଖିଥିଲା। କିନ୍ତୁ ପରମେଶ୍ୱରଙ୍କୁ ଧନ୍ୟବାଦ
ଦିଅ, ଯେ ତୁମ୍ଭମାନଙ୍କୁ ଯାହା ଶିକ୍ଷା ଦିଆଗଲା ତାହା
ତୁମ୍ଭେମାନେ ସମସ୍ତ ହୃଦୟ ସହ ପାଳନ କଲ। ୧୮ତୁମ୍ଭମାନଙ୍କୁ
ପାପରୁ ମୁକ୍ତ କରା ହେଲା ଓ ଏବେ ତୁମ୍ଭେମାନେ
ଧାର୍ମିକତାର ଦାସ ହୋଇଛ। ୧୯ଲୋକେ ଜାଣିଥିବା ଗୋଟିଏ
ଉଦାହରଣ ଦେଇ ମୁଁ ଏ କଥା ତୁମ୍ଭମାନଙ୍କୁ ବୁଝାଉଛି।
ଏହାକୁ ବୁଝିବା କଷ୍ଟକର ହୋଇଥିବା କାରଣରୁ ମୁଁ ଏହି
ଭଳି ବୁଝାଉଛି। ଅତୀତରେ ତୁମ୍ଭେମାନେ ନିଜ ଶରୀରର
ଅଙ୍ଗ ଗୁଡ଼ିକୁ ପାପର ଦାସ ହେବାକୁ ଓ ମନ୍ଦ କର୍ମରେ
ନିଯୁକ୍ତ କରିଥିଲ। ଫଳ ସ୍ୱରୂପ ତୁମ୍ଭେମାନେ ପରମେଶ୍ୱରଙ୍କ
ବିରୁଦ୍ଧରେ ଜୀବନ ଯାପନ କରୁଥିଲ। ଠିକ୍ ସେହି ଭଳି
ଏବେ ତୁମ୍ଭମାନଙ୍କ ଶରୀରର ଅଙ୍ଗ ଗୁଡ଼ିକୁ ଭଲ କାମ
କରିବା ପାଇଁ ସମର୍ପଣ କର। ତେବେ ତୁମ୍ଭେମାନେ
କେବଳ ପରମେଶ୍ୱରଙ୍କ ପାଇଁ ବଞ୍ଚିବ।

୨୦ଅତୀତରେ ତୁମ୍ଭେମାନେ ପାପର ଦାସ ଥିଲ ଓ ଯାହା
ଉତ୍ତମ ତାହା (ଜୀବନ ଯାପନ) ତୁମ୍ଭମାନଙ୍କୁ ନିୟନ୍ତ୍ରିତ କରି
ନ ଥିଲା। ୨୧ତୁମ୍ଭେମାନେ ମନ୍ଦ କାମ କରୁଥିଲ। ଏବେ
ତୁମ୍ଭେମାନେ ସେଭଳି କର୍ମ ପାଇଁ ଲଜ୍ଜିତ। ସେ କାମ
ଗୁଡ଼ିକ କଣ ତୁମ୍ଭମାନଙ୍କୁ ସାହାଯ୍ୟ କଲା? ନା, ସେ କର୍ମ
ଗୁଡ଼ିକ କେବଳ ଆଧାତ୍ମିକ ମୃତ୍ୟୁ ଆଣି ଥାଏ। ୨୨କିନ୍ତୁ
ଏବେ ତୁମ୍ଭେମାନେ ପାପରୁ ମୁକ୍ତ। ତୁମ୍ଭେମାନେ ଏବେ
ପରମେଶ୍ୱରଙ୍କର ଦାସ ଓ ଏହା କେବଳ ପରମେଶ୍ୱରଙ୍କ
ପାଇଁ ତୁମ୍ଭମାନଙ୍କୁ ଜୀବନ ଆଣି ଦେବ। ତା ପରେ
ତୁମ୍ଭେମାନେ ସଦାକାଳ ପାଇଁ ଅନନ୍ତ ଜୀବନ ପାଇବ।
୨୩ପାପର ସ୍ୱାଭାବିକ ପରିଣତି ମୃତ୍ୟୁ। କିନ୍ତୁ ପରମେଶ୍ୱର,
ଆମ୍ଭର ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କଠାରେ ଅନୁଗ୍ରହଦାନ ଭାବରେ
ତାହାଙ୍କ ଲୋକମାନଙ୍କୁ ଅନନ୍ତ ଜୀବନ ଦିଅନ୍ତି।

## ବିବାହର ଦୃଷ୍ଟାନ୍ତ

୭ ଭାଇ ଓ ଭଉଣୀଗଣ, ତୁମ୍ଭେମାନେ ବ୍ୟବସ୍ଥା ଜାଣ।
ତୁମ୍ଭେମାନେ ଜାଣ ଯେ ଯେତେବେଳେ ଜଣେ
ଲୋକ ଜୀବିତ, ବ୍ୟବସ୍ଥା ତାହାକୁ ନିୟନ୍ତ୍ରିତ କରେ। ୨ମୁଁ
ତୁମ୍ଭମାନଙ୍କୁ ଗୋଟିଏ ଉଦାହରଣ ଦେଉଛି। ଜଣେ ବିବାହିତା
ସ୍ତ୍ରୀଲୋକ ତାହାର ସ୍ୱାମୀ ଜୀବିତ ଥିବା ସମୟ ପର୍ଯ୍ୟନ୍ତ
ତା’ ସହିତ ଆବଦ୍ଧ ହୋଇ ରହିଥାଏ। କିନ୍ତୁ ଯେତେବେଳେ
ତାହାର ସ୍ୱାମୀ ମରି ଯାଏ ସେ ବିବାହର ନିୟମରୁ ମୁକ୍ତ
ହୋଇ ଯାଏ। ୩କିନ୍ତୁ ଯେତେବେଳେ ଜଣେ ସ୍ତ୍ରୀଲୋକ
ତାହାର ସ୍ୱାମୀ ଜୀବିତ ଥିବା ଅବସ୍ଥାରେ, ଆଉ ଜଣକୁ
ବିବାହ କରେ, ବ୍ୟବସ୍ଥା କୁହେ ଯେ, ସେ ବ୍ୟଭିଚାରର
ଦୋଷରେ ଦୋଷୀ। କିନ୍ତୁ ଯଦି ସେ ସ୍ତ୍ରୀଲୋକର ସ୍ୱାମୀ
ମରି ଯାଏ, ତାହେଲେ ସେ ସ୍ତ୍ରୀଲୋକଟି ବିବାହର ବନ୍ଧନ
(ବ୍ୟବସ୍ଥା)ରୁ ମୁକ୍ତ ହୋଇ ଯାଏ। ଅତଏବ, ଯଦି ସେହି
ସ୍ତ୍ରୀଲୋକ ସ୍ୱାମୀର ମୃତ୍ୟୁ ପରେ ଆଉ ଜଣକୁ ବିବାହ
କରେ, ସେ ବ୍ୟଭିଚାରର ଦୋଷରେ ଆଉ ଦୋଷୀ ହୁଏ
ନାହିଁ।

୪ଠିକ୍ ସେହି ଭଳି, ମୋ ଭାଇ (ଓ ଭଉଣୀ)ଗଣ,
ତୁମ୍ଭମାନଙ୍କର ପୁରୁଣା ବ୍ୟକ୍ତିତ୍ୱ ମରିଯାଇଛି ଓ ତୁମ୍ଭେମାନେ
ଖ୍ରୀଷ୍ଟଙ୍କ ଶରୀର ମାଧ୍ୟମରେ ବ୍ୟବସ୍ଥାରୁ ମୁକ୍ତ ହୋଇଯାଇଛ।
ଏବେ ତୁମ୍ଭେମାନେ ଅନ୍ୟ ଜଣକର ଅଟ। ତୁମ୍ଭେମାନେ
ମୃତ୍ୟୁରୁ ବଞ୍ଚି ଉଠିଥିବା ଖ୍ରୀଷ୍ଟଙ୍କର ଅଟ। ଆମ୍ଭେ ଯୀଶୁ
ଖ୍ରୀଷ୍ଟଙ୍କର ଅଟୁ, ସେଥିପାଇଁ ଆମ୍ଭେ ପରମେଶ୍ୱରଙ୍କ ସେବାରେ
ନିୟୋଜିତ ହୋଇ ପାରିବା। ୫ଅତୀତରେ, ଆମ୍ଭେ ଆମ୍ଭର
ପାପପୂର୍ଣ୍ଣ ଶରୀର ଦ୍ୱାରା ନିୟନ୍ତ୍ରିତ ହେଉଥିଲୁ। ଆମ୍ଭ ଦ୍ୱାରା
ବ୍ୟବସ୍ଥା ପାପପୂର୍ଣ୍ଣ କାମ କରାଉ ଥିଲା। ଓ ଏହି ପାପପୂର୍ଣ୍ଣ
କାମ ସବୁ ଆମ୍ଭର ଶରୀରକୁ ନିୟନ୍ତ୍ରିତ କରୁଥିଲା। ଅତଏବ
ଏହି କର୍ମ ଆମ୍ଭର ଆଧାତ୍ମିକ ମୃତ୍ୟୁ ଘଟାଉ ଥିଲା।
୬ଅତୀତର ବ୍ୟବସ୍ଥା ଆମ୍ଭକୁ ବନ୍ଦୀ ଭଳି ବାନ୍ଧି ରଖି ଥିଲା।
କିନ୍ତୁ ଆମ୍ଭର ପୁରୁଣା ବ୍ୟକ୍ତିତ୍ୱ ଏବେ ମରି ଯାଇଛି ଓ
ଆମ୍ଭେ ବ୍ୟବସ୍ଥାରୁ ମୁକ୍ତ ହୋଇ ସାରିଛୁ। ଅତଏବ ଆମ୍ଭେ
ପ୍ରାଚୀନ ପଦ୍ଧତି ଲିଖିତ ବ୍ୟବସ୍ଥା ଅନୁସାରେ ପରମେଶ୍ୱରଙ୍କ
ସେବା କରୁନାହୁଁ। ଆମ୍ଭେ ପରମେଶ୍ୱରଙ୍କ ନୂତନ-ପଦ୍ଧତିରେ
ଆତ୍ମାରେ ସେବା କରୁ ଅଛୁ।

## ପାପ ସହିତ ଆମର ସଂଘର୍ଷ

୭ତୁମ୍ଭେ ଭାବି ପାର ଯେ, ମୁଁ କହୁଛି ପାପ ଓ ବ୍ୟବସ୍ଥା
ହେଉଛି ଏକା କଥା। ଏହା ସତ୍ୟ ନୁହେଁ। କିନ୍ତୁ ବ୍ୟବସ୍ଥା
ହେଉଛି ଏକମାତ୍ର ଉପାୟ ଯାହା ଦ୍ୱାରା ମୁଁ ପାପର ଅର୍ଥ
ଜାଣି ପାରିଲି। ମୁଁ କେବେ ହେଲେ ଜାଣି ପାରି ନ ଥାନ୍ତି,
“ଲୋଭ କରିବା” ଅର୍ଥ କଣ। କିନ୍ତୁ ବ୍ୟବସ୍ଥା କହିଲା
“ଅନ୍ୟମାନଙ୍କ ବସ୍ତୁ ପାଇବା ପାଇଁ କେବେହେଲେ ଲୋଭ

କର ନାହିଁ।”* ୮ଏହି ଆଦେଶ ଅନୁସାରେ ମୋ ଭିତରେ
ସମସ୍ତ ପ୍ରକାରର ଭୁଲ ବସ୍ତୁ ପ୍ରତି ପାପ ଇଚ୍ଛା ଜାଗ୍ରତ
କରାଇଲା। ସେଥିପାଇଁ ଉକ୍ତ ଆଦେଶ ହେତୁ ପାପ ମୋ
ପାଖକୁ ଆସିଲା। କିନ୍ତୁ ବ୍ୟବସ୍ଥା ବିନା ପାପର କୌଣସି
ଶକ୍ତି ନାହିଁ। ୯ବ୍ୟବସ୍ଥା ଜାଣିବା ପୂର୍ବରୁ, ବ୍ୟବସ୍ଥା ବିନା ମୁଁ
ଜୀବିତ ଥିଲି। କିନ୍ତୁ ଯେତେବେଳେ ବ୍ୟବସ୍ଥାର ଆଦେଶ
ମୋ ପାଖକୁ ଆସିଲା, ସେତେବେଳେ ପାପ ଜୀବିତ ହେଲା
ଓ ପାପ ହେତୁ ଆତ୍ମିକ ଭାବରେ ମୁଁ ମୃତ୍ତ ହେଲି।
୧୦ଆଦେଶର ଆଜ୍ଞା ଥିଲା ଜୀବନ ଦାନ କିନ୍ତୁ ମୋ ପାଇଁ
ଆଜ୍ଞା ଆଣିଲା ମୃତ୍ୟୁ। ୧୧ଏହି ଆଜ୍ଞାକୁ ବ୍ୟବହାର କରି
ପାପ ମୋତେ ମୂର୍ଖ ପ୍ରମାଣିତ କରିବା ପାଇଁ ସୁଯୋଗ
ପାଇଲା। ମୋତେ ଆତ୍ମିକ ଭାବରେ ମୃତ କରାଇବାରେ
ପାପ ଏହି ଆଜ୍ଞାକୁ ବ୍ୟବହାର କଲା।

୧୨ଅତଏବ ବ୍ୟବସ୍ଥା ହେଉଛି ପବିତ୍ର ଓ ଆଜ୍ଞା ମଧ୍ୟ
ପବିତ୍ର, ଠିକ୍ ଓ ଉତ୍ତମ। ୧୩ଏହାର କଣ ଏହି ଅର୍ଥ ଯେ
ଯାହା ଭଲ, ତାହାହିଁ ମୋ ପାଇଁ ମୃତ୍ୟୁ ଆଣିଲା? କିନ୍ତୁ
ଯାହା ଭଲ ପାପ ତାହାକୁ ହିଁ ବ୍ୟବହାର କରି ମୋ ପାଇଁ,
ମୃତ୍ୟୁ ଆଣିଲା। ଏହା ହେଲା, ଯେପରି ମୁଁ ଜାଣିପାରିବି
ପାପ କ’ଣ? ପାପ ହେଉଛି ଅତିଶୟ ମନ୍ଦ, ଏହା
ଜଣାଇବା ପାଇଁ ଏପରି ଘଟିଲା, ଓ ଆଜ୍ଞାର ବ୍ୟବହାର
ମଧ୍ୟ ଏହାହିଁ ଦେଖାଇବା ପାଇଁ ହେଲା।

## ମଣିଷର ଦ୍ୱନ୍ଦ୍ୱ

୧୪ମୁଁ ଜାଣେ ଯେ ବ୍ୟବସ୍ଥା ହେଉଛି ଆତ୍ମିକ। କିନ୍ତୁ ମୁଁ
ଆତ୍ମିକ ନୁହେଁ। ପାପର ଦାସ ଭଳି ମୁଁ ତା’ ପାଖରେ ବିକ୍ରି
ହୋଇ ଯାଇଛି। ମୁଁ ଯାହାକରେ ତାହା ମୁଁ ବୁଝେ ନାହିଁ।
୧୫ଯେଉଁ ଭଲ କାମ ମୁଁ କରିବାକୁ ଇଚ୍ଛା କରେ, ମୁଁ
କରେ ନାହିଁ। ଓ ଯେଉଁ ମନ୍ଦ କାମ କରିବାକୁ ମୁଁ ଘୃଣା
କରେ, ସେହି କାମ କରେ। ୧୬ଯେଉଁ କାମ କରିବାକୁ ମୁଁ
ଚାହେଁ ନାହିଁ, ଯଦି ମୁଁ ତାହା କରେ, ତାହାର ଅର୍ଥ ଯେ,
ବ୍ୟବସ୍ଥା ଭଲ ବୋଲି ମୁଁ ସମର୍ଥନ କରେ। ୧୭କିନ୍ତୁ ମୁଁ,
ପ୍ରକୃତରେ ଏହି ମନ୍ଦ କର୍ମ କରି ନ ଥାଏ। ମୋ ଭିତରେ
ଥିବା ପାପର ସ୍ୱଭାବ ଏହି ସବୁ କାମ କରେ। ୧୮ମୁଁ ଏହା
ଜାଣେ ଯେ ମୋ ଭିତରେ କିଛି ଭଲ ନାହିଁ। ମୋ କହିବା
ଅର୍ଥ ଯେ, ମୋର ଶରୀରରେ କୌଣସି ଭଲ ବିଷୟ
ନାହିଁ। ୧୯ମୁଁ ଭଲ କାମ କରିବାକୁ ଇଚ୍ଛା କରେ। କିନ୍ତୁ
ମୁଁ ଏହା କରେ ନାହିଁ। ୨୦ମୁଁ ମନ୍ଦ କାମ କରେ ଯାହା ମୁଁ
କରିବାକୁ ଚାହେଁ ନାହିଁ। ତାହାର ଅର୍ଥ ମୁଁ ପ୍ରକୃତରେ
ଏସବୁ କରେ ନାହିଁ। ମୋ ଭିତରେ ଥିବା ପାପ ଏହି ସବୁ
କାମ କରେ।

୨୧ସେହି ଭଳି ମୁଁ ଏହି ବ୍ୟବସ୍ଥାଟି ଶିଖିଛି: ଯେତେବେଳେ
ମୁଁ ଭଲ କାମ କହିବାକୁ ଇଚ୍ଛା କରେ, ମନ୍ଦ ମୋ
ପାଖେପାଖେ ଥାଏ। ୨୨ମୋ ମନରେ, ମୁଁ ପରମେଶ୍ୱରଙ୍କର
ବ୍ୟବସ୍ଥାରେ ସୁଖୀ। ୨୩କିନ୍ତୁ ମୋ ଶରୀରରେ ମୁଁ ଆଉ
ଗୋଟିଏ ବ୍ୟବସ୍ଥା କାମ କରୁଥିବାର ଦେଖୁଛି। ସେମାନେ
ଗ୍ରହଣ କରୁଥିବା ବ୍ୟବସ୍ଥା ସହିତ ମୋ ଶରୀରର ବ୍ୟବସ୍ଥା
ସଂଘର୍ଷ କରୁଛି। ମୋ ଶରୀରରେ କାମ କରୁଥିବା ଏହି
ବ୍ୟବସ୍ଥାଟି ପାପର ବ୍ୟବସ୍ଥା ଅଟେ, ଓ ସେହି ବ୍ୟବସ୍ଥା
ମୋତେ ବନ୍ଦୀ କରି ପକାଏ। ୨୪ଏହା ଭୟଙ୍କର ଅଟେ!
ମୋତେ ଏହି ଶରୀରରୁ, ଯାହା ମୋ ପାଇଁ ମୃତ୍ୟୁ ଆଣେ,
କିଏ ରକ୍ଷା କରିବ? ପରମେଶ୍ୱର ମୋତେ ରକ୍ଷା କରିବେ।
୨୫ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ମାଧ୍ୟମରେ ପରମେଶ୍ୱରଙ୍କ
ଧନ୍ୟବାଦ ହେଉ। ଅତଏବ-ମୋ ମନ ସହିତ ମୁଁ ପରମେଶ୍ୱରଙ୍କ
ବ୍ୟବସ୍ଥାର ଦାସ।

କିନ୍ତୁ ପାପପୂର୍ଣ୍ଣ ସ୍ୱଭାବରେ ମୁଁ ପାପଯୁକ୍ତ ନିୟମର
ଦାସ।

## ଆତ୍ମାରେ ଜୀବନ

୮ ଅତଏବ ଏବେ ଯେଉଁମାନେ ଖ୍ରୀଷ୍ଟ ଯୀଶୁଙ୍କଠାରେ
ଅଛନ୍ତି, ସେମାନେ ଦୋଷୀ ବୋଲି ବିଚାରିତ ହୁଅନ୍ତି
ନାହିଁ। ୨ମୁଁ ଦୋଷୀ ବୋଲି ବିଚାରିତ ହେଉ ନାହିଁ
କାହିଁକି? କାରଣ ଖ୍ରୀଷ୍ଟ ଯୀଶୁଙ୍କଠାରେ ଆତ୍ମାର ବ୍ୟବସ୍ଥା
ଜୀବନ ଦିଏ ଓ ତାହା ମୋତେ ମୁକ୍ତ କରିଛି। ପାପ ଓ
ମୃତ୍ୟୁ ଆଣୁଥିବା ବ୍ୟବସ୍ଥାରୁ ଏହା ମୋତେ ମୁକ୍ତ କରିଛି।
୩ଆମ୍ଭର ପାପପୂର୍ଣ୍ଣ ସ୍ୱଭାବ ଦ୍ୱାରା ବ୍ୟବସ୍ଥା ଶକ୍ତିହୀନ
ହୋଇପାରେ। କିନ୍ତୁ ବ୍ୟବସ୍ଥା ଯାହା କରି ପାରି ନ ଥିଲା,
ତାହା ପରମେଶ୍ୱର କଲେ। ପରମେଶ୍ୱର ନିଜର ପୁତ୍ରକୁ
ସେଇ ମାନବ ଶରୀର ପ୍ରଦାନ କରି ପୃଥିବୀକୁ ପଠାଇଲେ,
ଯେଉଁ ଶରୀରକୁ ଅନ୍ୟମାନେ ପାପ କାମରେ ଲଗାନ୍ତି।
ପାପର ପ୍ରାୟଶ୍ଚିତ୍ତ ପାଇଁ ପରମେଶ୍ୱର ତାହାଙ୍କ ପୁତ୍ରଙ୍କୁ
ପଠାଇଲେ। ସେଥିପାଇଁ ପରମେଶ୍ୱର ପାପକୁ ବିନାଶ
କରିବା ପାଇଁ ମାନବ ଶରୀରକୁ ବ୍ୟବହାର କଲେ।
୪ବ୍ୟବସ୍ଥା ଆମ୍ଭକୁ ଯେପରି ହେବା ପାଇଁ ଚାହେଁ, ସେହି
ଭଳି ହେବା ପାଇଁ ପରମେଶ୍ୱର ଏପରି କଲେ। ଆମ୍ଭେ
ଏବେ ପାପପୂର୍ଣ୍ଣ ମାନବ ସ୍ୱଭାବ ଅନୁସାରେ ନୁହେଁ ବରଂ
ଆତ୍ମା ଅନୁସାରେ ଜୀବନ ଯାପନ କରୁଛୁ।

୫ଯେଉଁ ଲୋକମାନେ ତାହାଙ୍କର ପାପପୂର୍ଣ୍ଣ ଶରୀର
ଅନୁସାରେ ଜୀବନ ଯାପନ କରନ୍ତି, ସେମାନେ ସବୁବେଳେ
ତାହାଙ୍କ ପାପପୂର୍ଣ୍ଣ ଶରୀରର କଥା ଅନୁସାରେ ଚିନ୍ତା
କରନ୍ତି। କିନ୍ତୁ ଯେଉଁ ଲୋକମାନେ ଆତ୍ମା ଅନୁସାରେ
ଜୀବନ ଯାପନ କରନ୍ତି, ସେମାନେ ସର୍ବଦା ଆତ୍ମା ଅନୁସାରେ
ଚିନ୍ତା କରନ୍ତି। ୬ଯଦି ଜଣେ ଲୋକର ବିଚାର ପାପପୂର୍ଣ୍ଣ
ଶରୀର ଦ୍ୱାରା ନିୟନ୍ତ୍ରିତ ହୁଏ, ତାହେଲେ ଆତ୍ମିକ ମୃତ୍ୟୁ
ହୁଏ। କିନ୍ତୁ ଯଦି ଜଣକର ବିଚାର ଆତ୍ମା ଦ୍ୱାରା ନିୟନ୍ତ୍ରିତ
ହୁଏ, ତାହେଲେ ସେଠାରେ ଜୀବନ ଓ ଶାନ୍ତି ଅଛି। ୭ଏହା
କାହିଁକି ସତ୍ୟ? କାରଣ ଯଦି ଜଣେ ଲୋକର ବିଚାର
ତାହାର ପାପପୂର୍ଣ୍ଣ ଶରୀର ଦ୍ୱାରା ନିୟନ୍ତ୍ରିତ ହୁଏ, ତାହେଲେ
ସେ ଲୋକ ପରମେଶ୍ୱରଙ୍କର ବିରୋଧୀ। ସେ ଲୋକ
ପରମେଶ୍ୱରଙ୍କର ବ୍ୟବସ୍ଥା ମାନିବାକୁ ମନା କରେ। ପ୍ରକୃତରେ
ସେ ଲୋକ ପରମେଶ୍ୱରଙ୍କର ବ୍ୟବସ୍ଥା ମାନିବା ପାଇଁ
ଅସମର୍ଥ। ୮ଯେଉଁ ଲୋକମାନେ ତାହାଙ୍କର ପାପପୂର୍ଣ୍ଣ

---

**“ଅନ୍ୟମାନଙ୍କ ... ନାହିଁ”** ଯାତ୍ରା ପୁସ୍ତକ ୨୦:୧୭; ଦ୍ୱିତୀୟ
ବିବରଣ ୫:୨୧

ଶରୀର ଦ୍ୱାରା ଶାସିତ ସେମାନେ ପରମେଶ୍ୱରଙ୍କୁ ଖୁସି କରି
ପାରିବେ ନାହିଁ।
୯କିନ୍ତୁ, ତୁମ୍ଭେମାନେ ନିଜର ପାପପୂର୍ଣ୍ଣ ଶରୀର ଦ୍ୱାରା
ଶାସିତ ନୁହଁ। ଯଦି ପ୍ରକୃତରେ ଖ୍ରୀଷ୍ଟଙ୍କର ଆତ୍ମା ତୁମ୍ଭମାନଙ୍କ
ଭିତରେ ଅଛି, ତା'ହେଲେ ତୁମ୍ଭେମାନେ ଆତ୍ମା ଦ୍ୱାରା
ଶାସିତ ହେଉଛ। କିନ୍ତୁ ଯଦି କୌଣସି ଲୋକ ଭିତରେ
ଖ୍ରୀଷ୍ଟଙ୍କର ଆତ୍ମା ନାହିଁ, ତା' ହେଲେ ସେ ଲୋକ
ଖ୍ରୀଷ୍ଟଙ୍କର ନୁହେଁ। ୧୦ପାପ ହେତୁ ତୁମ୍ଭମାନଙ୍କ ଶରୀର
ସବୁବେଳେ ମୃତ ହୋଇ ରହିବ। କିନ୍ତୁ ଯଦି ଖ୍ରୀଷ୍ଟ
ତୁମ୍ଭମାନଙ୍କ ଭିତରେ ଅଛନ୍ତି, ତା'ହେଲେ ଆତ୍ମା ତୁମ୍ଭମାନଙ୍କୁ
ଜୀବନ ପ୍ରଦାନ କରିବେ, କାରଣ ଖ୍ରୀଷ୍ଟ ତୁମ୍ଭମାନଙ୍କୁ
ପରମେଶ୍ୱରଙ୍କ ସହିତ ଧାର୍ମିକ କରିଛନ୍ତି। ୧୧ପରମେଶ୍ୱର
ଯୀଶୁଙ୍କୁ ମୃତ୍ୟୁରୁ ପୁନର୍ଜୀବିତ କରିଛନ୍ତି। ଓ ଯଦି ପରମେଶ୍ୱରଙ୍କ
ଆତ୍ମା ତୁମ୍ଭମାନଙ୍କ ଭିତରେ ଅଛି, ତା'ହେଲେ ତୁମ୍ଭମାନଙ୍କର
ମୃତ ଶରୀରକୁ ମଧ୍ୟ ସେ ତାହାଙ୍କର ଆତ୍ମାଙ୍କ ଦ୍ୱାରା
ଜୀବନ ପ୍ରଦାନ କରିବେ।
୧୨ସୁତରାଂ, ମୋ ଭାଇ ଓ ଭଉଣୀମାନେ, ଆମ୍ଭ ପାପପୂର୍ଣ୍ଣ
ଶରୀର ଦ୍ୱାରା ଆମ୍ଭେ ଶାସିତ ନୋହୁଁ। ଆମ୍ଭେ ଆମ୍ଭର
ପାପପୂର୍ଣ୍ଣ ଶରୀରର ଇଚ୍ଛା ଅଧୀନରେ ନୋହୁଁ। ୧୩ଯଦି
ତୁମ୍ଭେମାନେ ତୁମ୍ଭ ପାପପୂର୍ଣ୍ଣ ଶରୀର ଅନୁସାରେ ମନ୍ଦ କାମ
ପାଇଁ ନିଜ ଜୀବନକୁ ବ୍ୟବହାର କର, ତାହେଲେ ତୁମ୍ଭେମାନେ
ଆତ୍ମିକ ରୂପରେ ମରିଯିବ। କିନ୍ତୁ ଯଦି ତୁମ୍ଭେମାନେ
ଆତ୍ମାଙ୍କୁ ଶରୀର ମାଧ୍ୟମରେ ମନ୍ଦ କାମ କରିବାକୁ ରୋକିବା
ପାଇଁ ବ୍ୟବହାର କର, ତା'ହେଲେ ତୁମ୍ଭେମାନେ ପ୍ରକୃତ
ଜୀବନ ପାଇବ।
୧୪ଯେଉଁମାନେ ନିଜ ଜୀବନରେ ପରମେଶ୍ୱରଙ୍କର ଆତ୍ମାଙ୍କୁ
ନେତୃତ୍ୱ ଦିଅନ୍ତି ସେମାନେ ପରମେଶ୍ୱରଙ୍କର ପ୍ରକୃତ ସନ୍ତାନ।
୧୫ଯେଉଁ ଆତ୍ମାଙ୍କୁ ଆମ୍ଭେ ପାଇଛୁ, ସେ ଆତ୍ମା ଆମ୍ଭକୁ
ଆଉ ଦାସ ହେବାକୁ ଦେବେ ନାହିଁ କି ଆମ୍ଭ ପାଇଁ
ଭୟର କାରଣ ହେବେ ନାହିଁ। ଆମ୍ଭ ଭିତରେ ଯେଉଁ
ଆତ୍ମା ଅଛନ୍ତି ସେ ଆମ୍ଭକୁ ପରମେଶ୍ୱରଙ୍କର ସନ୍ତାନ କରି
ଦିଅନ୍ତି। ଓ ସେହି ଆତ୍ମାଙ୍କ ସହିତ ଆମ୍ଭେ କହୁ, "ପିତା,
ପ୍ରିୟ ପିତା।" ୧୬ଆମ୍ଭେ ପରମେଶ୍ୱରଙ୍କର ସନ୍ତାନ ବୋଲି
କହିବା ଲାଗି ସେହି ଆତ୍ମା ଆମ୍ଭ ଆତ୍ମା ସହିତ ଯୋଡ଼ି
ହୁଅନ୍ତି। ୧୭ଆମ୍ଭେ ଯଦି ପରମେଶ୍ୱରଙ୍କର ସନ୍ତାନ, ତା
ହେଲେ ପରମେଶ୍ୱର ତାହାଙ୍କ ଲୋକଙ୍କ ପାଇଁ ଯେଉଁ
ଆଶୀର୍ବାଦ ରଖିଛନ୍ତି, ତାହା ଆମ୍ଭକୁ ମିଳିବ। ଆମ୍ଭେ ଏହା
ପରମେଶ୍ୱରଙ୍କଠାରୁ ପାଇବୁ। ଖ୍ରୀଷ୍ଟଙ୍କ ସହିତ ଆମ୍ଭେ ମଧ୍ୟ
ଏହି ଆଶୀର୍ବାଦ ପାଇବୁ। କିନ୍ତୁ ଖ୍ରୀଷ୍ଟ ଭଳି ଆମ୍ଭେ କଷ୍ଟ
ପାଇବା ଦରକାର। ତାହା ହେଲେ ଖ୍ରୀଷ୍ଟଙ୍କ ଭଳି ଆମ୍ଭେ
ମଧ୍ୟ ମହିମାର ଅଧିକାରୀ ହେବା।

## ଆମକୁ ଭବିଷ୍ୟତରେ ମହିମା ମିଳିବ

୧୮ଆମ୍ଭେ ଦୁଃଖ ଭୋଗ କରୁଛୁ। କିନ୍ତୁ ଯେଉଁ ଗୌରବ
ଆମ୍ଭକୁ ଭବିଷ୍ୟତରେ ମିଳିବ ତା ତୁଳନାରେ ଆମ୍ଭର
ବର୍ତ୍ତମାନର ଦୁଃଖ କିଛି ନୁହେଁ। ୧୯ପରମେଶ୍ୱର ଯାହା କିଛି
ସୃଷ୍ଟି କରିଛନ୍ତି, ସେହି ସବୁ ବଡ଼ ଆଶାରେ ସେହି
ସମୟକୁ ଅପେକ୍ଷା କରିଛନ୍ତି ଯେ କେତେବେଳେ ପରମେଶ୍ୱର
ସଂସାରକୁ ଜଣାଇ ଦେବେ ଯେ, କେଉଁମାନେ ତାହାଙ୍କର
ସନ୍ତାନ ଅଟନ୍ତି। ସମଗ୍ର ସଂସାର ଏହି ଘଟଣା ଘଟିବା ପାଇଁ
ଚାହିଁ ରହିଛି। ୨୦ପରମେଶ୍ୱର ଯାହା କିଛି ସୃଷ୍ଟି କରିଥିଲେ
ତାହା ଅସାର ହୋଇଗଲା। ଏହା ସଂସାରର ପସନ୍ଦ ନଥିଲା,
କିନ୍ତୁ ପରମେଶ୍ୱର ଏହା କରିବା ପାଇଁ ସ୍ଥିର କରି ଥିଲେ।
କିନ୍ତୁ ଏହି ଭରସା ଥିଲା: ୨୧ଯେପରି ପରମେଶ୍ୱର ସୃଷ୍ଟି
କରିଥିବା ପ୍ରତ୍ୟେକ ବସ୍ତୁ ବିନାଶରୁ ମୁକ୍ତ ହେବ। ଏହି
ଭରସା ଥିଲା ଯେ ପରମେଶ୍ୱରଙ୍କ ସନ୍ତାନମାନଙ୍କ ପାଇଁ
ଯାହା କିଛି ନିର୍ମିତ ହୋଇଛି ସେଗୁଡ଼ିକ ସେହି ସ୍ୱାଛନ୍ଦ୍ୟ ଓ
ମହିମାର ଭାଗୀ ହେବେ।
୨୨ଆମ୍ଭେ ଜାଣୁ ଯେ ପରମେଶ୍ୱରଙ୍କ ନିର୍ମିତ ପ୍ରତ୍ୟେକ
ବିଷୟ, ଏବେ ସୁଦ୍ଧା ସନ୍ତାନକୁ ଜନ୍ମଦେବା ପ୍ରସବ ବେଦନା
ସହିତ ପ୍ରତୀକ୍ଷାରତ ସ୍ତ୍ରୀଲୋକ ଭଳି, ଅପେକ୍ଷାରେ ଅଛି।
୨୩କେବଳ ସଂସାର ନୁହେଁ, ଆମ୍ଭେ ମଧ୍ୟ ସେହିପରି
ବେଦନାପୂର୍ବକ ଅପେକ୍ଷାରେ ଅଛୁ। ପରମେଶ୍ୱରଙ୍କର ପ୍ରତିଜ୍ଞାର
ପ୍ରଥମ ଫଳ ସ୍ୱରୂପ ଆମ୍ଭେ ଆତ୍ମାକୁ ପାଇଲୁ। ସେଥିପାଇଁ
ଆମ୍ଭେ ଅପେକ୍ଷା କରିଛୁ ଯେ, ପରମେଶ୍ୱର ଆମ୍ଭକୁ
ତାହାଙ୍କର ନିଜ ସନ୍ତାନ ଭାବେ ସୃଷ୍ଟି କରିବା କାମ ସମାପ୍ତ
କରନ୍ତୁ। ଅର୍ଥାତ ଆମ୍ଭମାନେ ଶରୀରଗୁଡ଼ିକ ମୁକ୍ତ ପାଇଁ
ଅପେକ୍ଷା କରିଛୁ। ୨୪ଆମ୍ଭେ ପରିତ୍ରାଣ ପାଇଥିଲୁ ଓ ଆମ୍ଭର
ଏହି ଭରସା ଅଛି। ଯାହା ପାଇଁ ଆମ୍ଭେ ଭରସା କରୁଛୁ
ଯଦି ଆମ୍ଭେ ତାହାକୁ ଦେଖି ପାରୁ, ତା' ହେଲେ ତାହା
ପ୍ରକୃତରେ ଭରସା ନୁହେଁ। ମଣିଷ, ଯାହା ତା' ପାଖରେ
ଏବେ ଅଛି, ସେ ଗୁଡ଼ିକ ପାଇଁ ଭରସା କରେ ନାହିଁ।
୨୫କିନ୍ତୁ ଯାହା ଆମ୍ଭ ପାଖରେ ଏବେ ସୁଦ୍ଧା ନାହିଁ ତା ପାଇଁ
ଆମ୍ଭେ ଭରସାରେ ଅଛୁ। ଆମ୍ଭେ ଏହା ପାଇଁ ଧୈର୍ଯ୍ୟପୂର୍ବକ
ଅପେକ୍ଷା କରି ରହିଛୁ।
୨୬ଆତ୍ମା ମଧ୍ୟ ଆମ୍ଭକୁ ସାହାଯ୍ୟ କରୁଛନ୍ତି, ଆମ୍ଭେ ଅତି
ଦୁର୍ବଳ କିନ୍ତୁ ଆତ୍ମା ଆମ୍ଭର ଦୁର୍ବଳତାରେ ଆମ୍ଭକୁ ସାହାଯ୍ୟ
କରୁଛନ୍ତି। କଣ ଓ କିପରି ପ୍ରାର୍ଥନା କରିବ ଉଚିତ, ତାହା
ଆମ୍ଭେ ଜାଣୁ ନାହିଁ। କିନ୍ତୁ ଆତ୍ମା ନିଜ ତରଫରୁ ପରମେଶ୍ୱରଙ୍କୁ
ଆମ୍ଭ ପାଇଁ ପ୍ରାର୍ଥନା କରନ୍ତି। ଆତ୍ମା ଆମ୍ଭ ପାଇଁ
ପରମେଶ୍ୱରଙ୍କଠାରେ ଭିକ୍ଷା ମାଗନ୍ତି। ଆତ୍ମା ଯେତେ ଗଭୀର
ଭାବନା ସହିତ ପରମେଶ୍ୱରଙ୍କୁ କୁହନ୍ତି ତାହା ଶବ୍ଦରେ
ବର୍ଣ୍ଣନା କରାଯାଇ ପାରିବ ନାହିଁ। ୨୭ଲୋକମାନଙ୍କର ହୃଦୟରେ
କ'ଣ ଅଛି ପରମେଶ୍ୱର ତାହା ଦେଖି ପାରନ୍ତି। ପରମେଶ୍ୱର
ଆତ୍ମାର ମନରେ କ'ଣ ଅଛି ତାହା ଜାଣନ୍ତି, କାରଣ ଆତ୍ମା
ପରମେଶ୍ୱର ଯେପରି ଇଚ୍ଛା କରନ୍ତି, ସେହି ଭଳି ତାଙ୍କ
ଲୋକମାନଙ୍କ ପାଇଁ କରନ୍ତି।
୨୮ଆମ୍ଭେ ଜାଣୁ ଯେ, ଯେଉଁମାନେ ତାହାଙ୍କୁ ପ୍ରେମ
କରନ୍ତି ସେମାନଙ୍କ ପାଇଁ ପରମେଶ୍ୱର ପ୍ରତ୍ୟେକ ବିଷୟରେ
ମଙ୍ଗଳ ଜନ୍ମାନ୍ତି। ପରମେଶ୍ୱର ଏହି ଲୋକମାନଙ୍କୁ ବାଛିଛନ୍ତି,
କାରଣ ଏହାହିଁ ତାହାଙ୍କର ଯୋଜନା ଥିଲା। ୨୯ପରମେଶ୍ୱର
ସଂସାର ତିଆରି କରିବ ପୂର୍ବରୁ ଏହି ଲୋକମାନଙ୍କୁ
ଜଣାଇଥିଲେ। ଏବଂ ପରମେଶ୍ୱର ନିର୍ଣ୍ଣୟ କରିଥିଲେ ଯେ
ସେହି ଲୋକମାନେ ତାହାଙ୍କର ପୁତ୍ର ଭଳି ହୁଅନ୍ତୁ।

ତାହେଲେ ଯୀଶୁ ଅନେକ ଭାଇ ଓ ଭଉଣୀ ମାନଙ୍କ
ଭିତରେ ପ୍ରଥମଜାତ* ବୋଲି ଧରା ହେବେ। ୩୦ପରମେଶ୍ୱରଙ୍କ
ଯୋଜନା ସେମାନଙ୍କ ପାଇଁ ହେଲା ଯେ ସେମାନେ
ତାହାଙ୍କର ପୁତ୍ର ଭଳି ହେବେ। ସେ ଏହି ଲୋକମାନଙ୍କୁ
ଡାକିଲେ। ପରମେଶ୍ୱର ସେମାନଙ୍କୁ ନିଜ ପ୍ରତି ଧାର୍ମିକ
କଲେ। ଏବଂ ପରମେଶ୍ୱର ଯେଉଁମାନଙ୍କୁ ନିଜ ପ୍ରତି ଧାର୍ମିକ
କଲେ, ସେହି ଲୋକମାନଙ୍କୁ ମହିମା ଦେଲେ।

## ଖ୍ରୀଷ୍ଟ ଯୀଶୁରେ ପରମେଶ୍ୱରଙ୍କ ପ୍ରେମ

୩୧ସେଥିପାଇଁ ଆମ୍ଭେ ଏହି ବିଷୟରେ କ'ଣ କହିବା?
ଯଦି ପରମେଶ୍ୱର ଆମ୍ଭ ସହିତ ଅଛନ୍ତି, ତାହେଲେ
କୌଣସି ଲୋକ ଆମ୍ଭକୁ ପରାଜିତ କରି ପାରିବ ନାହିଁ।
୩୨ପରମେଶ୍ୱର ଆମ୍ଭ ପାଇଁ ସବୁ କିଛି କରିବେ। ପରମେଶ୍ୱର
ନିଜର ପୁତ୍ରକୁ ସୁଦ୍ଧା ଧରି ରଖିଲେ ନାହିଁ କିନ୍ତୁ ଆମ୍ଭ
ସମସ୍ତଙ୍କ ପାଇଁ ଦେଇ ଦେଲେ। ଏଣୁ ସେ ତାଙ୍କ ସହ
ଆମ୍ଭକୁ ସବୁ ବିଷୟ ଦେବେ। ୩୩ପରମେଶ୍ୱର ଯାହାଙ୍କୁ
ବାଛିଛନ୍ତି, ସେ ଲୋକମାନଙ୍କୁ କିଏ ବା ଅଭିଯୁକ୍ତ କରି
ପାରିବ? କେହି ନୁହେଁ! ପରମେଶ୍ୱର ହିଁ ସେହି ଲୋକମାନଙ୍କୁ
ଧାର୍ମିକ କରନ୍ତି। ୩୪କିଏ କହି ପାରିବ ଯେ ପରମେଶ୍ୱରଙ୍କ
ଲୋକମାନେ ଦୋଷୀ? କେହି ନୁହେଁ। ଆମ୍ଭ ପାଇଁ ଯୀଶୁ
ଖ୍ରୀଷ୍ଟ ମଲେ, କିନ୍ତୁ ତାହାହିଁ ସବୁ କିଛି ନୁହେଁ। ସେ
ମୃତ୍ୟୁରୁ ମଧ୍ୟ ଜୀବିତ ହେଲେ। ସେ ଏବେ ପରମେଶ୍ୱରଙ୍କ
ଡାହାଣ ପଟରେ ଅଛନ୍ତି ଓ ଆମ୍ଭ ପାଇଁ ପରମେଶ୍ୱରଙ୍କୁ
ଭିକ୍ଷା ମାଗୁଛନ୍ତି। ୩୫ଖ୍ରୀଷ୍ଟଙ୍କର ପ୍ରେମ ଠାରୁ ଆମ୍ଭକୁ କିଏ
କ'ଣ ଅଲଗା କରି ପାରେ? ନା! କଷ୍ଟ କ'ଣ ଆମ୍ଭକୁ
ଖ୍ରୀଷ୍ଟଙ୍କର ପ୍ରେମରୁ ଅଲଗା କରି ପାରେ? ନା! ସମସ୍ୟା ବା
ତାଡ଼ନା କ'ଣ ଖ୍ରୀଷ୍ଟଙ୍କର ଶତ୍ରୁମାନଙ୍କ ଆଘାତ ଆମ୍ଭକୁ
ଖ୍ରୀଷ୍ଟଙ୍କର ପ୍ରେମରୁ ଅଲଗା କରି ପାରେ? ନା! ଯଦି ଆମ୍ଭ
ପାଖରେ ଖାଦ୍ୟ ବା ଲୁଗାପଟା ନାହିଁ, ତା ହେଲେ ତାହା
କ'ଣ ଖ୍ରୀଷ୍ଟଙ୍କର ପ୍ରେମରୁ ଆମ୍ଭକୁ ଅଲଗା କରି ପାରେ?
ନା! ବିପଦ ବା ମୃତ୍ୟୁ ହେଉନା କାହିଁକି ତାହା କ'ଣ
ଆମ୍ଭକୁ ଖ୍ରୀଷ୍ଟଙ୍କର ପ୍ରେମରୁ ଅଲଗା କରି ପାରେ? ନା!
୩୬ଶାସ୍ତ୍ରରେ ଏହିପରି ଲେଖା ଅଛି:

> "ତୁମ୍ଭ ପାଇଁ (ଖ୍ରୀଷ୍ଟ) ସର୍ବଦା ଆମ୍ଭେ ମୃତ୍ୟୁର
> ବିପଦରେ ଅଛୁ। ଲୋକ ଭାବୁଛନ୍ତି, ଆମ୍ଭର ମୂଲ୍ୟ
> ବଳି ହେବାକୁ ଥିବା ମେଣ୍ଢାମାନଙ୍କଠାରୁ ଅଧିକ କିଛି
> ନୁହେଁ।"
>
> ଗୀତସଂହିତା ୪୪:୨୨

୩୭କିନ୍ତୁ ଏ ସବୁରେ ଆମ୍ଭ ପ୍ରତି ପ୍ରେମ ପ୍ରଦର୍ଶିତ
କରିଥିବା ପରମେଶ୍ୱରଙ୍କ ଦ୍ୱାରା ଆମ୍ଭେ ପୂର୍ଣ୍ଣ ବିଜୟୀ।
୩୮-୩୯ହିଁ। ମୁଁ ଜାଣେ ଯେ କୌଣସି ବିଷୟ ଆମ୍ଭକୁ
ପରମେଶ୍ୱରଙ୍କ ପ୍ରେମରୁ ବଞ୍ଚିତ କରି ପାରିବ ନାହିଁ।
ମୃତ୍ୟୁ ନୁହେଁ, ଜୀବନ ନୁହେଁ, ସ୍ୱର୍ଗଦୂତମାନେ ନୁହଁନ୍ତି,
ଆତ୍ମିକ ଶକ୍ତି ଗୁଡ଼ିକ ନୁହଁନ୍ତି, ଏବେ କିଛି ନୁହେଁ,
ଭବିଷ୍ୟରେ କିଛି ନୁହେଁ, କୌଣସି ଶକ୍ତି ନୁହେଁ, ଉଚ୍ଚରେ
କିଛି ନୁହେଁ, ଗଭୀରରେ କିଛି ନୁହେଁ, ସମଗ୍ର ସୃଷ୍ଟି
ସଂସାରରେ କିଛି ନୁହେଁ; ଖ୍ରୀଷ୍ଟ ଯୀଶୁ ଆମ୍ଭ ପ୍ରଭୁଙ୍କଠାରେ
ଥିବା ପରମାତ୍ମାଙ୍କ ପ୍ରେମ ଠାରୁ ଆମ୍ଭକୁ କେହି ଅଲଗା
କରି ପାରିବେ ନାହିଁ।

## ପରମେଶ୍ୱର ଓ ଯିହୂଦୀ ଲୋକେ

୯ ମୁଁ ଖ୍ରୀଷ୍ଟଙ୍କଠାରେ ଅଛି, ଓ ମୁଁ ସତ୍ୟ କହୁଛି। ମୁଁ
ମିଛ କହୁ ନାହିଁ। ପବିତ୍ରଆତ୍ମା ଦ୍ୱାରା ମୋର ଭାବନା
ନିୟନ୍ତ୍ରିତ। ଏହି ଭାବନା ମୋତେ କୁହେ ଯେ ମୁଁ ମିଛ
କୁହେ ନାହିଁ। ୨ମୋର ଅଶେଷ ଦୁଃଖ ଅଛି, ଓ ମୁଁ
ଯିହୂଦୀମାନଙ୍କ ଲାଗି ଅଧିକ ବେଦନାଗ୍ରସ୍ତ ଅଛି। ୩ସେମାନେ
ମୋର ଭାଇ ଓ ଭଉଣୀ। ସେମାନେ ଏହି ସଂସାରରେ
ମୋର ପରିବାର। ମୁଁ ସେମାନଙ୍କୁ ସାହାଯ୍ୟ କରିପାରେ। ମୁଁ
ନିଜେ ଅଭିଶପ୍ତ ହେବା ପାଇଁ ଇଚ୍ଛୁକ, ଓ ଖ୍ରୀଷ୍ଟଙ୍କଠାରୁ
ପୃଥକ ରହି ଶାପଗ୍ରସ୍ତ ହୋଇ ପାରେ। ୪ସେମାନେ
ଇସ୍ରାୟେଲୀୟ ଲୋକ। ସେମାନେ ପରମେଶ୍ୱରଙ୍କର ବଛା
ଯାଇଥିବା ସନ୍ତାନ। ସେମାନଙ୍କ ପାଖରେ ପରମେଶ୍ୱରଙ୍କ
ମହିମା ଅଛି ଓ ସେମାନେ ପରମେଶ୍ୱର ଲୋକମାନଙ୍କ
ସହିତ କରିଥିବା ଚୁକ୍ତିର ସହଭାଗୀ। ପରମେଶ୍ୱର ସେମାନଙ୍କୁ
ମୋଶାଙ୍କ ବ୍ୟବସ୍ଥା ଓ ଉପାସନାର ସଠିକ ପଦ୍ଧତି ଦେଇଛନ୍ତି।
ପରମେଶ୍ୱର ସେମାନଙ୍କୁ ତାହାଙ୍କର ପ୍ରତିଶ୍ରୁତିମାନ ଦେଇଛନ୍ତି।
୫ସେମାନେ ଆମ୍ଭର ପୂର୍ବପୁରୁଷ ମାନଙ୍କର ବଂଶଧର ଅଟନ୍ତି।
ସେମାନେ ସଂସାରରେ ଖ୍ରୀଷ୍ଟଙ୍କର ପରିବାର। ସମସ୍ତ ବିଷୟରେ
ଖ୍ରୀଷ୍ଟ ପରମେଶ୍ୱର ଅଟନ୍ତି। ତାହାଙ୍କୁ ସର୍ବଦା ପ୍ରଶଂସା କର।
ଆମେନ୍।

୬ମୁଁ ଯିହୂଦୀମାନଙ୍କ ଲାଗି ଦୁଃଖ ପ୍ରକାଶ କରୁଛି।
ପରମେଶ୍ୱର ତାହାଙ୍କର ପ୍ରତିଶ୍ରୁତି ରକ୍ଷା କଲେ ନାହିଁ ବୋଲି
ନୁହେଁ, କାରଣ ଇସ୍ରାୟେଲର କେବଳ ଅଳ୍ପ କିଛି ଲୋକ
ହିଁ ପ୍ରକୃତରେ ପରମେଶ୍ୱରଙ୍କର ଲୋକ। ୭ଅବ୍ରାହମଙ୍କ
କେବଳ ଅଳ୍ପ କିଛି ସନ୍ତାନ ହିଁ ପ୍ରକୃତରେ ପରମେଶ୍ୱରଙ୍କର
ସନ୍ତାନ। ଅବ୍ରାହମଙ୍କୁ ପରମେଶ୍ୱର କହିଥିଲେ: "ଯିସ୍‌ହାକ
ଦ୍ୱାରା ତୁମ୍ଭର ବିଧି ସଂଗତ ବଂଶବୃଦ୍ଧି ହେବ।"* ୮ଏହାର
ଅର୍ଥ ଯେ ଅବ୍ରାହମଙ୍କ ବଂଶର ସମସ୍ତେ ପରମେଶ୍ୱରଙ୍କର
ପ୍ରକୃତ ସନ୍ତାନ ନୁହଁନ୍ତି। କେବଳ ଯେଉଁମାନେ ପରମେଶ୍ୱରଙ୍କ
ପ୍ରତିଜ୍ଞା ଦ୍ୱାରା ପରମେଶ୍ୱରଙ୍କ ସନ୍ତାନ ହୋଇଥିଲେ ସେହିମାନେ
ଅବ୍ରାହାମଙ୍କ ପ୍ରକୃତ ସନ୍ତାନ ହେଲେ। ୯ପରମେଶ୍ୱରଙ୍କ
ପ୍ରତିଜ୍ଞା ଏହିପରି ଥିଲା: "ଉଚିତ୍ ସମୟ ଉପସ୍ଥିତ ହେଲେ
ମୁଁ ଫେରିବି ଓ ସାରା ପୁତ୍ର ଜନ୍ମ କରିବ।"*

୧୦କେବଳ ଏତିକି ନୁହେଁ। ଆମ୍ଭର ପୂର୍ବ ପୁରୁଷ
ଇସହାକଙ୍କ ଠାରୁ ରେବୀକା ଦୁଇଟି ସନ୍ତାନଲାଭ କରିଥିଲେ।

---

**ପ୍ରଥମଜାତ** ପରମେଶ୍ୱରଙ୍କ ପରିବାରରେ ଯୀଶୁ ପରମେଶ୍ୱରଙ୍କ ମହିମା ପାଇବାରେ ପ୍ରଥମ, ବୋଲି ଏହାର ଅର୍ଥ ଗ୍ରହଣ କରା ଯାଇପାରେ।

**"ଯିସ୍‌ହାକ … ହେବ"** ଆଦିପୁସ୍ତକ ୨୧:୧୨

**"ଉଚିତ … କରିବ"** ଆଦିପୁସ୍ତକ ୧୮:୧୦,୧୪

୧୧-୧୨ଦୁଇଟି ପୁତ୍ର ଜନ୍ମ ହେବା ପୂର୍ବରୁ ଓ ସେମାନେ
କୌଣସି ଭଲ ବା ମନ୍ଦ କାମ କରି ନଥିବା ପୂର୍ବରୁ
ପରମେଶ୍ୱର ରେବୀକାକୁ କହିଥିଲେ, ବଡ଼ ପୁତ୍ରଟି ସାନଟିର
ସେବା କରିବ। ପରମେଶ୍ୱରଙ୍କ ମନୋନୟନ ତାହାଙ୍କ
ଯୋଜନା ଉପରେ ଆଧାରିତ ଥିଲା ଓ ଯାହା ସେ
ଗ୍ରହିଁଥିଲେ ସେହି କାରଣରୁ ହେଲା। ୧୩ଶାସ୍ତ୍ର କୁହେ: "ମୁଁ
ଯାକୁବକୁ ଭଲ ପାଇଲି କିନ୍ତୁ, ଏସୌକୁ ନୁହେଁ।"*
୧୪ତା'ହେଲେ ଏ ବିଷୟରେ ଆମ୍ଭେ କଣ କହିବା?
କ'ଣ ପରମେଶ୍ୱର ଅନ୍ୟାୟୀ? ୧୫ନା, ଆମ୍ଭେ ଏପରି କହି
ପାରିବା ନାହିଁ। ପରମେଶ୍ୱର ମୋଶାଙ୍କୁ କହିଥିଲେ, "ମୁଁ
ଯାହାକୁ ଦୟା କରିବା ପାଇଁ ଇଚ୍ଛା କରିବି ମୁଁ ତାହା ପ୍ରତି
ଦୟା ଦେଖାଇବି। ମୁଁ ଯାହାକୁ କରୁଣା ଦେଖାଇବା ପାଇଁ
ଇଚ୍ଛା କରିବି ମୁଁ ତାହାକୁ କରୁଣା ଦେଖାଇବି।"* ୧୬ଅତଏବ,
ପରମେଶ୍ୱରଙ୍କ ଦୟା ଉପରେ ଏହା ନିର୍ଭରକରେ, ଜଣେ
ଲୋକର ଇଚ୍ଛା ବା ଚେଷ୍ଟା ଉପରେ ନୁହେଁ। ୧୭ଧର୍ମଶାସ୍ତ୍ରରେ
ଯେପରି ପରମେଶ୍ୱର ଫାରୋକୁ* କହନ୍ତି: "ତୁମ୍ଭକୁ ମୁଁ
ଏହି ଏକ ମାତ୍ର ଉଦ୍ଦେଶ୍ୟ ପାଇଁ ତୁମ୍ଭକୁ ରାଜା କରିଛି,
ଯଦ୍ଦ୍ୱାରା ତୁମ୍ଭ ମାଧ୍ୟମରେ ମୁଁ ମୋର ଶକ୍ତି ଦେଖାଇ ପାରିବି
ଓ ଅତଏବ ମୋର ନାମ ସମଗ୍ର ବିଶ୍ୱରେ ଘୋଷିତ ହେଉ
ବୋଲି ମୋର ଇଚ୍ଛା।"* ୧୮ଅତଏବ ଯେଉଁମାନଙ୍କୁ ପରମେଶ୍ୱର
ଦୟା ଦେଖାଇବାକୁ ଗ୍ରହାଁନ୍ତି ସେମାନଙ୍କୁ ସେ ଦୟା
ଦେଖାନ୍ତି ଓ ଯେଉଁମାନଙ୍କୁ ସେ କଠୋର କରିବାକୁ
ଗ୍ରହାଁନ୍ତି, ସେମାନଙ୍କୁ ସେ କଠୋର କରନ୍ତି। ୧୯ତାହେଲେ
ତୁମ୍ଭେ ମୋତେ ପ୍ରଶ୍ନ କରି ପାରି ଯେ "ସେ ଆମ୍ଭର
ଦୋଷ କାହିଁକି ଧରନ୍ତି?" ୨୦ତୁମ୍ଭେ କେବଳ ଜଣେ ମଣିଷ।
ପରମେଶ୍ୱରଙ୍କୁ ଓଲଟି ପ୍ରଶ୍ନ ପଚାରିବାର ଅଧିକାର ତୁମ୍ଭର
ନାହିଁ। ମାଟି କଳଶୀଟି କୁମ୍ଭାରକୁ ପ୍ରଶ୍ନ କରେ ନାହିଁ ଯେ
"ତୁମ୍ଭେ ମୋତେ ଏପରି ଭାବେ କାହିଁକି ଗଢିଲ?" ୨୧କୁମ୍ଭାରର
ଅଧିକାର ରହିଛି ଯେ ସେ ମାଟି ପିଣ୍ଡୁଳାଟି ନେଇ ବିଶେଷ
ପ୍ରୟୋଜନ ନିମନ୍ତେ ଗୋଟିଏ ଓ ସାଧାରଣ ପ୍ରୟୋଜନ
ନିମନ୍ତେ ଅନ୍ୟ ପାତ୍ରଟିଏ ତିଆରି କରିବ।
୨୨ଠିକ୍ ସେହିଭଳି ପରମେଶ୍ୱର ମଧ୍ୟ ନିଜର କ୍ରୋଧ ଓ
ଶକ୍ତି ପ୍ରଦର୍ଶନ କରିବା ପାଇଁ ଗ୍ରହିଁଥିଲେ। ସେ ଖୁବ୍
ଧୈର୍ଯ୍ୟର ସହିତ ତାହାଙ୍କ କ୍ରୋଧ ଓ ବିନାଶ ପାତ୍ରମାନଙ୍କୁ
ସହି ନେଇଥିଲେ। ୨୩ପରମେଶ୍ୱର ତାହାଙ୍କର ଦୟାପାତ୍ରମାନଙ୍କୁ
ନିଜ ମହିମାର ଧନ ଦେଖାଇବା ଲାଗି ଧୈର୍ଯ୍ୟପୂର୍ବକ
ଅପେକ୍ଷା କରିଥିଲେ। ୨୪ସେମାନଙ୍କୁ ତାହାଙ୍କ ମହିମା ଦେବା
ପାଇଁ ପ୍ରସ୍ତୁତ କଲେ। ୨୫ଆମ୍ଭେମାନେ ସେହି ଲୋକ।
ପରମେଶ୍ୱର କେବଳ ଯିହୂଦୀମାନଙ୍କ ଭିତରୁ ନୁହେଁ, କିନ୍ତୁ
ଅଣଯିହୂଦୀମାନଙ୍କ ଭିତରୁ ମଧ୍ୟ ଆମ୍ଭମାନଙ୍କୁ ଡାକିଲେ।
ହୋଶେୟ ପୁସ୍ତକରେ ଏହି ପରି ଲେଖା ଅଛି:

"ଯେଉଁ ଲୋକମାନେ ମୋର ନଥିଲେ ସେମାନେ
ମୋର ଲୋକ ବୋଲି ମୁଁ ଡାକିବି। ଓ ଯେଉଁମାନଙ୍କୁ
ମୁଁ ପ୍ରେମ କରୁ ନଥିଲି, ସେହି ଲୋକମାନଙ୍କୁ ମୁଁ
ପ୍ରିୟ ବୋଲି ଡାକିବି।"

ହୋଶେୟ ୨:୨୩

୨୬ "ଏବଂ ଯେଉଁ ସ୍ଥାନରେ ପରମେଶ୍ୱର କହିଥିଲେ,
'ତୁମ୍ଭେମାନେ ମୋ ଲୋକ ନୁହଁ'- ସେହି ସ୍ଥାନରେ
ସେମାନେ ଜୀବିତ ପରମେଶ୍ୱରଙ୍କ ସନ୍ତାନ
ବୋଲାଇବେ।" ହୋଶେୟ ୧:୧୦

୨୭ଏବଂ ଇଶ୍ରାୟେଲ ବିଷୟରେ ଯିଶାଇୟ ଘୋଷଣା
କରି କୁହନ୍ତି:

"ସମୁଦ୍ରର ବାଲିକଣିକା ପରି ଇଶ୍ରାୟେଲର
ଲୋକମାନଙ୍କ ସଂଖ୍ୟା ଅସଂଖ୍ୟ। କିନ୍ତୁ ସେମାନଙ୍କ
ଭିତରୁ ଖୁବ୍ ଅଳ୍ପ ଲୋକ ରକ୍ଷା ପାଇ ପାରିବେ।
୨୮କାରଣ ପ୍ରଭୁ ନିଜ ନ୍ୟାୟ ବଳରେ ବିଚାର କରି
ପୃଥିବୀର ଲୋକଙ୍କୁ ଶୀଘ୍ର ସମାପ୍ତ କରି ଦେବେ।"*

୨୯ଯିଶାଇୟ ଆହୁରି ମଧ୍ୟ କହିଥିଲେ:

"ପ୍ରଭୁ ସର୍ବଶକ୍ତିମାନ। ସେ ତାହାଙ୍କ ଲୋକମାନଙ୍କ
ଭିତରୁ କେତେକଙ୍କୁ ଆମ୍ଭ ପାଇଁ ବଞ୍ଚାଇ ରଖିଲେ।
ସେ ଏପରି କରି ନଥିଲେ ଆମ୍ଭ ଅବସ୍ଥା ଏବେ
ସଦୋମ ଓ ଗମୋରା* ଭଳି ହୋଇ ଯାଇ
ଥାଆନ୍ତା।"*

୩୦ତା' ହେଲେ ଏ ସବୁର ଅର୍ଥ କ'ଣ? ଏହାର ଅର୍ଥ
ଯେ, ଅଣଯିହୂଦୀମାନେ ପରମେଶ୍ୱରଙ୍କ ପାଇଁ ଧାର୍ମିକ ହେବା
ପାଇଁ ଯତ୍ନଶୀଳ ନୁହଁନ୍ତି। କିନ୍ତୁ ସେମାନେ ପରମେଶ୍ୱରଙ୍କ
ଦ୍ୱାରା ନିଜ ବିଶ୍ୱାସ ହେତୁ ଧାର୍ମିକ ହେଲେ। ୩୧ଇଶ୍ରାୟେଲର
ଲୋକେ ଧାର୍ମିକ ହେବା ପାଇଁ ବ୍ୟବସ୍ଥା ପାଳନ କରି ମଧ୍ୟ
କୃତକାର୍ଯ୍ୟ ହେଲେ ନାହିଁ। ୩୨କାରଣ ସେମାନଙ୍କର ବିଶ୍ୱାସ
ନଥିଲା ଯେ ସେମାନେ ନିଜର କାର୍ଯ୍ୟ ଦ୍ୱାରା ଧାର୍ମିକ ହେବା
ପାଇଁ ଚେଷ୍ଟା କଲେ ତେଣୁ ସେମାନେ ଝୁଣ୍ଟି ପଡ଼ିବା
ପଥରରେ ଝୁଣ୍ଟି ପଡ଼ିଲେ। ୩୩ଧର୍ମଶାସ୍ତ୍ର ସେ ପଥର
ବିଷୟରେ କୁହେ:

---

**"ମୁଁ ... ନୁହେଁ"** ମଲାଖି ୧:୨-୩

**"ମୁଁ ଯାହାକୁ ... କରୁଣା ଦେଖାଇବି"** ଯାତ୍ରାପୁସ୍ତକ ୩୩:୧୯

**ଫାରୋ** ମିଶରର ରାଜାମାନଙ୍କ ପାଇଁ ଏହା ଏକ ଉପାଧି ସ୍ୱରୂପ

**"ତୁମ୍ଭକୁ ମୁଁ ... ମୋର ଇଚ୍ଛା"** ଯାତ୍ରାପୁସ୍ତକ ୯:୧୬

**"ସମୁଦ୍ରର ବାଲିକଣିକା ... କରି ଦେବେ"** ଯିଶାଇୟ ୧୦:୨୨-୨୩

**ସଦୋମ ଓ ଗମୋରା** ମନ୍ଦଲୋକ ରହୁଥିବା ଦୁଇଟି ସହର। ପରମେଶ୍ୱର ଏହି ସହରଗୁଡ଼ିକୁ ନଷ୍ଟ କରି ସେମାନଙ୍କୁ ଦଣ୍ଡ ଦେଇଥିଲେ।

**"ପ୍ରଭୁ ... ଯାଇ ଥାଆନ୍ତା"** ଯିଶାଇୟ ୧:୯

“ଦେଖ, ମୁଁ ସିୟୋନଠାରେ ପଥରଟିଏ ରଖିଛି ଏହି
ପଥରଟି ଲୋକମାନଙ୍କୁ ପକାଇ ଦିଏ। ଏହି ପଥରଟି
ଲୋକମାନଙ୍କୁ ପାପ କରିବା ପାଇଁ ପ୍ରବର୍ତ୍ତାଏ କିନ୍ତୁ
ଯେଉଁ ଲୋକ ସେ ପଥରଟିରେ ବିଶ୍ୱାସ କରେ
ସେ ଲଜ୍ଜିତ ହେବ ନାହିଁ।”

ଯିଶାଇୟ ୮:୧୪; ୨୮:୧୬

୧୦ ଭାଇ ଓ ଭଉଣୀମାନେ, ମୁଁ ପରମେଶ୍ୱରଙ୍କୁ
ପ୍ରାର୍ଥନା କରୁଛି ଓ ଏକାନ୍ତ ଭାବରେ ଇଚ୍ଛା
କରୁଛି ଯେ ଯିହୂଦୀଲୋକେ ରକ୍ଷା ପାଆନ୍ତୁ। ୨ମୁଁ ବିଶ୍ୱାସ
ପୂର୍ବକ ସେମାନଙ୍କ ବିଷୟରେ କହି ପାରେ, ଯେ ସେମାନେ
ପ୍ରକୃତରେ ପରମେଶ୍ୱରଙ୍କୁ ଅନୁସରଣ କରିବା ପାଇଁ ଚାହାଁନ୍ତି
କିନ୍ତୁ ଠିକ୍ ବାଟ ଜାଣନ୍ତି ନାହିଁ। ୩ସେମାନେ ଜାଣି ନଥିଲେ
ଯେ, ପରମେଶ୍ୱର କିପରି ତାହାଙ୍କ ସହିତ ଲୋକମାନଙ୍କୁ
ଧାର୍ମିକ କରନ୍ତି। ସେମାନେ ଧାର୍ମିକ ହେବା ପାଇଁ ନିଜର
ଉପାୟ ଦ୍ୱାରା ଚେଷ୍ଟା କଲେ। ଅତଏବ ସେମାନେ ଧାର୍ମିକତା
ବୋଲି ଗଣିତ ପରମେଶ୍ୱରଙ୍କ ମାର୍ଗର ଅନୁସରଣ କଲେ
ନାହିଁ। ୪ଖ୍ରୀଷ୍ଟ ବ୍ୟବସ୍ଥାକୁ ସମାପ୍ତ କଲେ ଯେପରି, ତାହାଙ୍କୁ
ବିଶ୍ୱାସ କରୁଥିବା ପ୍ରତ୍ୟେକ ଲୋକ ପରମେଶ୍ୱରଙ୍କଠାରେ
ଧାର୍ମିକ ହୋଇପାରିବ।
୫ବ୍ୟବସ୍ଥା ପାଳନ ଦ୍ୱାରା ଧାର୍ମିକ ହେବା ବିଷୟରେ
ମୋଶା କହିଛନ୍ତି: “ଯେଉଁଲୋକ ବ୍ୟବସ୍ଥା ପାଳନ ଦ୍ୱାରା
ଜୀବନ ପାଇବା ପାଇଁ ଚେଷ୍ଟା କରେ, ସେ ନିଜର କାର୍ଯ୍ୟ
ବ୍ୟବସ୍ଥା ଅନୁସାରେ କରିବା ଆବଶ୍ୟକ।”* ୬କିନ୍ତୁ ବିଶ୍ୱାସ
ଦ୍ୱାରା ଧାର୍ମିକ ହେବା ବିଷୟରେ ଶାସ୍ତ୍ର ଏହିପରି କୁହେ:
“ନିଜେ ନିଜକୁ ପଚାର ନାହିଁ ଯେ ‘ସ୍ୱର୍ଗକୁ କିଏ ଯିବ?’”
(ଅର୍ଥାତ୍ “କିଏ ସ୍ୱର୍ଗରୁ ଖ୍ରୀଷ୍ଟଙ୍କୁ ପୃଥିବୀକୁ ଆଣିବ?”) ୭“ଓ
ଏପରି କୁହ ନାହିଁ ଯେ, ‘ପାତାଳକୁ କିଏ ଯିବ?’”(ଅର୍ଥାତ୍
“ମୃତମାନଙ୍କ ଭିତରୁ ଖ୍ରୀଷ୍ଟଙ୍କୁ ଉପରକୁ କିଏ ଆଣିବ?”)
୮ଶାସ୍ତ୍ର କୁହେ: “ପରମେଶ୍ୱରଙ୍କର ଶିକ୍ଷା ତୁମ୍ଭ ପାଖରେ
ଅଛି; ଏହା ତୁମ୍ଭ ମୁହଁରେ ଓ ତୁମ୍ଭ ହୃଦୟରେ ଅଛି।”*
ଆମ୍ଭେ ଲୋକମାନଙ୍କୁ ଘୋଷଣା କରୁଥିବା ସେହି ଶିକ୍ଷାଟି
ବିଶ୍ୱାସର ଶିକ୍ଷା ଅଟେ। ୯ଯଦି ତୁମ୍ଭେ ନିଜ ମୁହଁରେ କୁହ,
“ଯୀଶୁ ପ୍ରଭୁ ଅଟନ୍ତି,” ଓ ତୁମ୍ଭର ମନ ବିଶ୍ୱାସ କରେ
ଯେ, ପରମେଶ୍ୱର ଯୀଶୁଙ୍କୁ ମୃତ୍ୟୁର ଉଠାଇ ଆଣି ଥିଲେ;
ତେବେ ତୁମ୍ଭେ ଉଦ୍ଧାର ପାଇଯିବ। ୧୦ହୃଦୟରେ ବିଶ୍ୱାସ
ଦ୍ୱାରା ଆମ୍ଭେ ପରମେଶ୍ୱରଙ୍କ ପ୍ରତି ଧାର୍ମିକ ହେଉ ଓ ମୁଖ
ଦ୍ୱାରା କହି ବିଶ୍ୱାସକୁ ପ୍ରକାଶ କଲେ ଆମ୍ଭେ ଉଦ୍ଧାର
ପାଉ। ୧୧ଶାସ୍ତ୍ର କୁହେ: “ଯିଏ ତାହାଙ୍କୁ (ଖ୍ରୀଷ୍ଟଙ୍କୁ) ବିଶ୍ୱାସ
କରେ ସେ ଲଜ୍ଜିତ ହେବ ନାହିଁ।”* ୧୨ଏଠାରେ “ଯିଏ”
ର ଅର୍ଥ ଯିହୂଦୀ ଓ ଅଣଯିହୂଦୀମାନଙ୍କ ଭିତରେ ଭେଦ ନ
ଥିବା ସୂଚାଏ। ସମସ୍ତ ଲୋକଙ୍କର ଜଣେ ପ୍ରଭୁ। ଯେଉଁ
ଲୋକେ ତାହାଙ୍କୁ ବିଶ୍ୱାସ କରନ୍ତି, ପରମେଶ୍ୱର ସେମାନଙ୍କୁ
ଅନେକ ଆଶୀର୍ବାଦ କରନ୍ତି। ୧୩ଶାସ୍ତ୍ର କୁହେ: “ପ୍ରଭୁଙ୍କୁ
ବିଶ୍ୱାସ କରୁଥିବା ପ୍ରତ୍ୟେକ ଲୋକ ପରିତ୍ରାଣ ପାଇବ।”*
୧୪କିନ୍ତୁ ଲୋକେ ବିଶ୍ୱାସ କଲା ପରେ ହିଁ ପ୍ରଭୁଙ୍କୁ
ସାହାଯ୍ୟ ପାଇଁ ଡାକି ପାରିବେ। ତାହାଙ୍କ ବିଷୟରେ ଶୁଣି
ସାରିଲା ପରେ ହିଁ, ଲୋକେ ତାହାଙ୍କ ବିଷୟରେ ବିଶ୍ୱାସ
କରି ପାରିବେ। କିଏ ଜଣେ ସେମାନଙ୍କୁ କହିଲା ପରେ ହିଁ
ଲୋକେ ତାହାଙ୍କ ବିଷୟରେ ଶୁଣି ପାରିବେ। ୧୫ଏହି
ଉପଦେଶ ଦେବା ଲୋକ ଜଣଙ୍କୁ କାହା ଦ୍ୱାରା ନ
ପଠାଗଲେ ବା ସେ କିପରି ଉପଦେଶ ଦେବ? ଶାସ୍ତ୍ରରେ
ଲେଖା ଅଛି: “ସୁସମାଚାର ଦେବା ପାଇଁ ଆସିବା ଲୋକର
ପାଦ କେଡେ ସୁନ୍ଦର ଅଟେ।”*
୧୬ମାତ୍ର ସମସ୍ତେ ସୁସମାଚାରକୁ ଗ୍ରହଣ କରି ନାହାଁନ୍ତି।
ଯିଶାଇୟ କହନ୍ତି: “ହେ ପ୍ରଭୁ, ଆମ୍ଭ ଉପଦେଶଗୁଡ଼ିକ କିଏ
କ’ଣ ବିଶ୍ୱାସ କଲା?”* ୧୭ସୁସମାଚାର ଶୁଣିଲେ ବିଶ୍ୱାସ
ହୁଏ ଓ ଜଣେ କିଏ ଖ୍ରୀଷ୍ଟଙ୍କ ବିଷୟରେ କହିଲେ ଲୋକେ
ଶୁଣନ୍ତି।
୧୮କିନ୍ତୁ ମୁଁ ପଚାରୁଛି: “କଣ ଲୋକେ ସୁସମାଚାର ଶୁଣି
ନାହାଁନ୍ତି?” ହିଁ ସେମାନେ ଶୁଣିଛନ୍ତି। ଶାସ୍ତ୍ର କୁହେ:

“ସେମାନଙ୍କର ସ୍ୱର ଜଗତର ସର୍ବତ୍ର ଖେଳି ଗଲା।
ସେମାନଙ୍କ ବାକ୍ୟ ଜଗତର ପ୍ରାନ୍ତରର ଶେଷଭାଗ
ପର୍ଯ୍ୟନ୍ତ ଖେଳିଗଲା।”

ଗୀତସଂହିତା ୧୯:୪

୧୯ପୁନର୍ବାର ମୁଁ ପଚାରୁଛି: “କଣ ଇସ୍ରାୟେଲର ଲୋକେ
ବୁଝି ପାରି ନଥିଲେ?” ହିଁ ସେମାନେ ବୁଝିଥିଲେ। ପ୍ରଥମେ
ମୋଶା କହିଛନ୍ତି:

“ଜାତୀୟ (ଇସ୍ରାୟେଲୀୟ) ଚରିତ୍ର ନଥିବା ଲୋକଙ୍କ
ଦ୍ୱାରା ମୁଁ ତୁମ୍ଭ ଭିତରେ ଈର୍ଷା ଜାତ କରାଇବି।
ନିର୍ବୋଧ ଲୋକଙ୍କ ଦ୍ୱାରା ମୁଁ ତୁମ୍ଭ ଭିତରେ କ୍ରୋଧ
ଜାତ କରାଇବି।”

ଦ୍ୱିତୀୟ ବିବରଣ ୩୨:୨୧

୨୦ଏହା ପରେ ଯିଶାଇୟ ନିର୍ଭୟ ହୋଇ କହନ୍ତି:

“ଯେଉଁ ଲୋକମାନେ ମୋତେ ଖୋଜୁ ନଥିଲେ
ସେମାନେ ମୋତେ ପାଇଲେ। ଯେଉଁମାନେ ଖୋଜି
ନାହାଁନ୍ତି ସେମାନଙ୍କ ପାଇଁ ମୁଁ ନିଜକୁ ପ୍ରକାଶ
କଲି।”

ଯିଶାଇୟ ୬୫:୧

---

**“ଯେଉଁଲୋକ ... ଆବଶ୍ୟକ”** ଲେବୀୟ ପୁସ୍ତକ ୧୮:୫
**ପଦସଂଖ୍ୟା ୬-୮** ଦ୍ୱିତୀୟ ବିବରଣ ୩୦:୧୨-୧୪
**“ଯିଏ ... ନାହିଁ”** ଯିଶାଇହ ୨୮:୧୬
**“ପ୍ରଭୁଙ୍କୁ ... ପାଇବ”** ଯୋୟେଲ ୨:୩୨
**“ସୁସମାଚାର ... ଅଟେ”** ଯିଶାଇହ ୫୨:୭
**“ହେ ପ୍ରଭୁ ... ବିଶ୍ୱାସ କଲା?”** ଯିଶାଇହ ୫୩:୧

୨୧କିନ୍ତୁ ଇସ୍ରାୟେଲ ଲୋକଙ୍କ ବିଷୟରେ ପରମେଶ୍ୱର ଏହା
କହନ୍ତି, "ମୁଁ ଏହି ଲୋକଙ୍କ ପାଇଁ ଦିନ ସାରା ଅପେକ୍ଷା
କରି ଥିଲେ ମଧ୍ୟ, ସେମାନେ ମୋତେ ମାନିଲେ ନାହିଁ ଓ
ଅନୁସରଣ କଲେ ନାହିଁ।"*

## ପରମେଶ୍ୱର ତାହାଙ୍କ ଲୋକମାନଙ୍କୁ ଭୁଲି ନାହାଁନ୍ତି

**୧୧** ତା'ହେଲେ ମୁଁ ପ୍ରଶ୍ନ କରୁଛି: "କଣ ପରମେଶ୍ୱର
ନିଜ ଲୋକମାନଙ୍କୁ ପରିତ୍ୟାଗ କରନ୍ତି କି?"
ନା! ମୁଁ ଜଣେ ଇସ୍ରାୟେଲୀୟ ଲୋକ। ମୁଁ ଅବ୍ରାହମଙ୍କ
ପରିବାରର ଅଟେ। ବିନ୍ୟାମୀନଙ୍କ ଗୋଷ୍ଠୀରେ ଜାତ। ୨ସେମାନେ
ଜନ୍ମ ହେବା ପୂର୍ବରୁ ପରମେଶ୍ୱର ଇସ୍ରାୟେଲୀୟମାନଙ୍କୁ
ବାଛିଥିଲେ। ପରମେଶ୍ୱର ସେମାନଙ୍କୁ ତ୍ୟାଗ କରି ନାହାଁନ୍ତି।
ଏଲିୟ ଯେତେବେଳେ ପରମେଶ୍ୱରଙ୍କଠାରେ ଇସ୍ରାୟେଲ
ଲୋକମାନଙ୍କ ବିରୁଦ୍ଧରେ ପ୍ରାର୍ଥନା କରୁଥିଲେ, ତାହାଙ୍କ
ବିଷୟରେ ଶାସ୍ତ୍ର ଯାହା କୁହେ, ତୁମ୍ଭେ ଜାଣିଛ? ୩ଏଲିୟ
କହିଥିଲେ: "ପ୍ରଭୁ, ଲୋକେ ତୁମ୍ଭର ଭବିଷ୍ୟଦ୍‌ବକ୍ତାଗଣଙ୍କୁ
ବଧ କରିଛନ୍ତି, ଓ ତୁମ୍ଭର ଯଜ୍ଞବେଦି ସବୁ ଭାଙ୍ଗିଛନ୍ତି।
କେବଳ ମୁଁ ଜଣେ ଭବିଷ୍ୟଦ୍‌ବକ୍ତା ବଞ୍ଚିଛି, ସେମାନେ
ମୋତେ ମଧ୍ୟ ମାରି ଦେବା ପାଇଁ ଚେଷ୍ଟା କରୁଛନ୍ତି।"*
୪କିନ୍ତୁ ତାହାଙ୍କୁ ପରମେଶ୍ୱରଙ୍କର ଉତ୍ତର କ'ଣ ଥିଲା?
"ବାଆଲ ଆଗରେ ଆଣ୍ଠୁମାଡ଼ି ନଥିବା ସାତହଜାର ଲୋକଙ୍କୁ
ଏବେ ମଧ୍ୟ ମୁଁ ନିଜ ପାଇଁ ରଖିଛି।"* ୫ପରମେଶ୍ୱରଙ୍କ
ଅନୁଗ୍ରହ ଦ୍ୱାରା ବଛା ଯାଇଥିବା ଏବେ ମଧ୍ୟ କେତେକ
ଲୋକ ଅଛନ୍ତି। ୬ଯଦି ପରମେଶ୍ୱର ଅନୁଗ୍ରହ ହେତୁ
ସେମାନଙ୍କୁ ମନୋନୀତ କରିଛନ୍ତି, ତା'ହେଲେ ଲୋକମାନେ
ନିଜେ କରିଥିବା କାର୍ଯ୍ୟ ହେତୁ ପରମେଶ୍ୱରଙ୍କ ଲୋକ
ହୋଇ ନାହାଁନ୍ତି। ଯଦି କାର୍ଯ୍ୟ ଦ୍ୱାରା ତାହା ହୋଇଥାନ୍ତା
ତେବେ ଅନୁଗ୍ରହର କ'ଣ ବା ଅର୍ଥ ହେବ? ତା'ହେଲେ
କଣ ହେଲା?
୭ଇସ୍ରାୟେଲର ଲୋକେ ଯାହା ପାଇଁ (ପରମେଶ୍ୱରଙ୍କ
ଠାରେ ଧାର୍ମିକ ହେବା) ଚେଷ୍ଟା କରିଥିଲେ, କିନ୍ତୁ ସଫଳ
ହେଲେ ନାହିଁ। କିନ୍ତୁ ପରମେଶ୍ୱରଙ୍କ ଦ୍ୱାରା ବଛା ଯାଇଥିବା
ଲୋକେ ଧାର୍ମିକ ହେଲେ। ଅନ୍ୟ ସମସ୍ତେ ଜଡ଼ ହୋଇ
ପରମେଶ୍ୱରଙ୍କ କଥା ଶୁଣିବା ପାଇଁ ମନା କଲେ। ୮ଶାସ୍ତ୍ରରେ
ଯେପରି ଲେଖା ଅଛି:

"ପରମେଶ୍ୱର ଲୋକମାନଙ୍କୁ ଶୁଆଇ ଦେଲେ।"
ଯିଶାଇୟ ୨୯:୧୦

"ସେମାନେ ସତ୍ୟକୁ ଦେଖି ନ ପାରନ୍ତୁ ସେଥିପାଇଁ
ପରମେଶ୍ୱର ସେମାନଙ୍କର ଆଖି ବନ୍ଦ କରି ଦେଲେ,
ସେମାନେ ସତ୍ୟକୁ ଶୁଣି ନ ପାରନ୍ତୁ ସେଥିପାଇଁ
ପରମେଶ୍ୱର ସେମାନଙ୍କର କାନ ବନ୍ଦ କରି ଦେଲେ।
ଏହି ଦଶା ଏବେ ସୁଦ୍ଧା ଲାଗି ରହିଛି।"
ଦ୍ୱିତୀୟ ବିବରଣ ୨୯:୪

୯ଦାଉଦ କୁହନ୍ତି:

"ସେ ଲୋକମାନେ ନିଜର ଭୋଜନରେ ଛନ୍ଦି ଓ
ବାନ୍ଧି ହୋଇ ଯାଆନ୍ତୁ, ତାହାଙ୍କର ପତନ ହେଉ ଓ
ସେମାନଙ୍କୁ ଦଣ୍ଡ ମିଳୁ।
୧୦ ସେମାନଙ୍କର ଆଖି ସତ୍ୟକୁ ଦେଖି ନ ପାରିବା
ପାଇଁ ବନ୍ଦ ହୋଇ ଯାଉ। ସର୍ବଦା ପାଇଁ ସେମାନଙ୍କର
ଅଣ୍ଟା ନଇଁ ପଡୁ।"
ଗୀତସଂହିତା ୬୯:୨୨-୨୩

୧୧ତା'ହେଲେ ମୁଁ କହୁଛି: ଯିହୂଦୀମାନଙ୍କର ପତନ
ସେମାନଙ୍କୁ ନଷ୍ଟ କରିଥିଲା କି। ବରଂ ସେମାନଙ୍କର ଭୁଲ
ଅଣଯିହୂଦୀମାନଙ୍କ ଲାଗି ମୁକ୍ତି ଆଣିଲା। ଏହା ଦ୍ୱାରା
ଯିହୂଦୀମାନଙ୍କ ଭିତରେ ଉତ୍ସାହ ଭାବ ଜାଗ୍ରତ ହେଲା।
୧୨ଯିହୂଦୀମାନଙ୍କର ତ୍ରୁଟୀ ଏହି ସଂସାର ପାଇଁ ଆଶୀର୍ବାଦର
ଧନ ସ୍ୱରୂପ ହେଲା, ସେମାନେ ଯାହା ହରାଇଲେ, ତାହା
ଅଣଯିହୂଦୀମାନଙ୍କ ପାଇଁ ଆଶୀର୍ବାଦର ଧନ ଆଣି ଦେଲା।
ତେଣୁ ପରମେଶ୍ୱର ଯାହା ଚାହୁଁଛନ୍ତି ସେହି ଅନୁସାରେ ପୂର୍ଣ୍ଣ
ସଂଖ୍ୟକ ଯିହୂଦୀମାନେ ଯେତେବେଳେ ଚାଲିବେ, ସେତେବେଳେ
ସଂସାର ନିଶ୍ଚିତ ରୂପେ ଅଧିକ ମାତ୍ରାରେ ଆଶୀର୍ବାଦର ଧନ
ପ୍ରାପ୍ତ କରିବ!
୧୩ଏବେ ମୁଁ ଅଣଯିହୂଦୀମାନଙ୍କ ପାଇଁ କହୁଛି। କାରଣ
ମୁଁ ବିଶେଷ ଭାବରେ ଅଣଯିହୂଦୀମାନଙ୍କ ନିକଟକୁ ପ୍ରେରିତ
ହୋଇଛି। ମୁଁ ପୂର୍ଣ୍ଣ ମନ ପ୍ରାଣରେ ଏହି କାମ କରିବି।
୧୪ମୁଁ ଆଶା କରେ ଯେ ନିଜ ଲୋକମାନଙ୍କ ଭିତରେ
ଉଦଯୋଗ ଆଣି ତାହାଙ୍କ ଭିତରୁ କେତେକ ଲୋକଙ୍କୁ
ଉଦ୍ଧାର କରି ପାରିବି। ୧୫ଯିହୁଦୀମାନଙ୍କୁ ପରମେଶ୍ୱର ଅସ୍ୱୀକାର
କରି ଦେଲାପରେ, ସେ ସଂସାରର ଅନ୍ୟ ଲୋକମାନଙ୍କ
ସହିତ ମୈତ୍ରୀ କଲେ। ଅତଏବ, ଯିହୂଦୀମାନଙ୍କୁ ପୁନଃ
ଗ୍ରହଣ କରିବା ଅର୍ଥ ସଂସାରର ଅନ୍ୟ ଲୋକମାନଙ୍କ ପାଇଁ
ମୃତ୍ୟୁରୁ ପୁନର୍ଜୀବନ ଆଣିବା।
୧୬ଆମ୍ଭ ଭୋଜନର ପ୍ରଥମ ଭାଗଟି ଯଦି ପରମେଶ୍ୱରଙ୍କୁ
ସମର୍ପଣ କରି ଯାଏ, ତା' ହେଲେ ସମସ୍ତ ଭୋଜନ ପବିତ୍ର
ହୁଏ। ଯଦି କୌଣସି ଗଛର ଚେର ପବିତ୍ର, ତା'ହେଲେ
ସେହି ଗଛର ସମସ୍ତ ଡାଳ ମଧ୍ୟ ପବିତ୍ର।
୧୭ଧରି ନିଅ ଗୋଟିଏ ଜୀତବୃକ୍ଷର ଶାଖାଗୁଡ଼ିକ ଭାଙ୍ଗି
ଯାଇଛି। ଗୋଟିଏ ଅନ୍ୟ ଜଙ୍ଗଲୀ ଜୀତଗଛର ଶାଖାଗୁଡ଼ିକୁ
ଆଣି ପ୍ରଥମ ଗଛ ସହିତ ସଂଯୁକ୍ତ କରା ହେଲା। ତୁମ୍ଭେ
ଅଣଯିହୂଦୀମାନେ ସେହି ଜଙ୍ଗଲୀ ଜୀତଗଛ ଭଳି। ତୁମ୍ଭେମାନେ
ସେହି ପ୍ରଥମ ଗଛମାନଙ୍କଠାରୁ ଶକ୍ତି ଓ ଜୀବନ ପ୍ରାପ୍ତ
କରୁଛ। ୧୮ସେଥିପାଇଁ, ପ୍ରଥମ ଗଛର ସେ ଭଙ୍ଗା ଡାଳ
ଗୁଡ଼ିକ ନିମନ୍ତେ ତୁମ୍ଭମାନଙ୍କର ଗର୍ବ କରିବାର କୌଣସି
କାରଣ ନାହିଁ। କାରଣ ତୁମ୍ଭେମାନେ ପ୍ରଥମ ଗଛର

---

**"ମୁଁ … ନାହିଁ"** ଯିଶାଇୟ ୬୫:୨
**"ପ୍ରଭୁ … କରୁଛନ୍ତି"** ପ୍ରଥମ ରାଜାବଳୀ ୧୯:୧୦, ୧୪
**"ବାଆଲ … ରଖିଛି"** ପ୍ରଥମ ରାଜାବଳୀ ୧୯:୧୮

ଚେରକୁ ଜୀବନ ପ୍ରଦାନ କରୁ ନାହଁ, ବରଂ ସେହ ଚେର
ତୁମ୍ଭମାନଙ୍କୁ ଜୀବନ ପ୍ରଦାନ କରୁଛି। ୧୯ତୁମ୍ଭେମାନେ କହ
ପାର, "ସେ ଗଛର ଡାଳ ଗୁଡ଼ିକ ଭାଙ୍ଗି ପଡ଼ିବାରୁ ମୁଁ ତା'
ସହତ ସଂଯୁକ୍ତ ହେଲି।" ୨୦ଏହା ସତ୍ୟ କନ୍ତୁ ସେ ଡାଳ
ଗୁଡ଼ିକ ଭାଙ୍ଗି ପଡ଼ିବାର କାରଣ ହେଉଛି ସେମାନଙ୍କର
ଅବଶ୍ୱାସ। କନ୍ତୁ ତୁମ୍ଭେମାନେ ତୁମ୍ଭମାନଙ୍କ ବଶ୍ୱାସ ହେତୁ
ସେହ ଗଛର ଅଂଶୀ ହୋଇ ପାରଛ। ଅତଏବ ଗର୍ବ
କରବା ପରବର୍ତ୍ତେ ଭୟ କରବା ଦରକାର। ୨୧ବଶ୍ୱାସ ନ
କରବା ହେତୁ ଯଦ ପରମେଶ୍ୱର ପ୍ରଥମ ଗଛର ଶାଖା
ଗୁଡ଼ିକୁ ଭାଙ୍ଗି ଦେଲେ, ତାହେଲେ ତୁମ୍ଭେମାନେ ମଧ୍ୟ
ବଶ୍ୱାସ ନ ରଖି ପାରଲେ ପରମେଶ୍ୱର ତୁମ୍ଭମାନଙ୍କୁ ବଛିନ୍ନ
କର ଦେବେ।

୨୨ଅତଏବ ବୁଝିବା ଦରକାର ଯେ, ପରମେଶ୍ୱର ଅତି
ଦୟାଳୁ, କନ୍ତୁ ସେ ଅତି କଠୋର ମଧ୍ୟ ହୋଇ ପାରବେ।
ପରମେଶ୍ୱର ତାହାଙ୍କୁ ଅନୁସରଣ ନ କରୁଥିବା ଲୋକମାନଙ୍କୁ
ଦଣ୍ଡ ଦଅନ୍ତ, କନ୍ତୁ ତୁମ୍ଭେମାନେ ତାହାଙ୍କ ଅନୁଗ୍ରହରେ
ରହଲେ ସେ, ତୁମ୍ଭମାନଙ୍କ ପ୍ରତି ଦୟାଳୁ ହୁଅନ୍ତ।
ଅନ୍ୟ ପକ୍ଷରେ ଯଦ ତୁମ୍ଭେମାନେ ତାହାଙ୍କୁ ଅନୁସରଣ ନ
କର ତା'ହେଲେ ତୁମ୍ଭେମାନେ ମଧ୍ୟ (ଗଛରୁ) କଟାଯାଇ
ଫିଙ୍ଗି ଦଆ ଯିବ। ୨୩ଯିହୂଦୀମାନେ ଯଦ ପୁନଃ ପରମେଶ୍ୱରଙ୍କୁ
ବଶ୍ୱାସ କରନ୍ତି, ତା'ହେଲେ ସେ ଯିହୂଦୀମାନଙ୍କୁ ପୁନଃ
ଗ୍ରହଣ କର ନେବେ। ସେମାନଙ୍କୁ ନଜ ପୂର୍ବ ସ୍ଥାନ
ଦେବାପାଇଁ ପରମେଶ୍ୱର ସମର୍ଥ ହେବେ। ୨୪ତୁମ୍ଭେମାନେ
ଜଙ୍ଗଲୀ ଜୀତଗଛର କଟାଯାଇଥିବା ଶାଖା। ତୁମ୍ଭେମାନେ
ଭଲ ଜୀତଗଛ ସହତ ସଂଯୁକ୍ତ ହୋଇଛ। କନ୍ତୁ ଏହା
ସ୍ୱାଭାବକ। ଅତଏବ, ସେହ ଯିହୂଦୀମାନେ ପ୍ରକୃତରେ
ନଜର ବୃକ୍ଷ ସହତ ପୁନର୍ବାର ସଂଯୁକ୍ତ ହୋଇପାରବେ।

୨୫ଭାଇ ଓ ଭଉଣୀମାନେ, ମୁଁ ଏହ ନଗୂଢ଼ ସତ୍ୟ
ବଷୟରେ ତୁମ୍ଭେମାନେ ଅଜଣା ରହ ଯାଅ; ଏ କଥା
ଚାହେଁ ନାହଁ। ଏହ ସତ୍ୟ ତୁମ୍ଭମାନଙ୍କୁ ଜାଣିବାରେ ସାହାଯ୍ୟ
କରବ ଯେ, ତୁମ୍ଭେମାନେ ସର୍ବଜ୍ଞ ନୁହଁ। ଏହ କଥା ସତ୍ୟ
ଯେ, ଇଶ୍ରାୟେଲର ଗୋଟିଏ ଅଂଶର ଲୋକଙ୍କୁ ଅବାଧ
କରାଯାଇଛି। ଯେତେବେଳେ ପୂର୍ଣ୍ଣ ସଂଖ୍ୟକ ଅଣଯିହୂଦୀ
ପରମେଶ୍ୱରଙ୍କ ନଜ ଲୋକ ହୋଇଯିବେ, ତାହେଲେ ଏହ
ସ୍ଥିତିରେ ପରବର୍ତ୍ତନ ଘଟିବ। ୨୬ଏହ ଭଳ ସମଗ୍ର ଇଶ୍ରାୟେଲ
ଉଦ୍ଧାର ପାଇବ। ଶାସ୍ତ୍ରରେ ଲେଖାଅଛି:

"ସିୟୋନ* ଠାରୁ ଉଦ୍ଧାରକାରୀ ଆସିବେ। ସେ
ଯାକୁବ ପରବାର ସମସ୍ତ ମନ୍ଦଗୁଡ଼ିକୁ ଦୂର କରବେ।
୨୭ ଓ ମୁଁ ସେହ ଲୋକମାନଙ୍କର ପାପ ଗୁଡ଼ିକୁ ହରଣ
କଲା ପରେ ଏହ ଚୁକ୍ତି କରବ।"

ଯିଶାଇୟ ୫୯:୨୦-୨୧; ୨୭:୯

୨୮ଯିହୂଦୀମାନେ ସୁସମାଚାର ଗ୍ରହଣ କରୁ ନଥିବାରୁ,
ପରମେଶ୍ୱରଙ୍କ ଶତ୍ରୁ। ଏହା ତୁମ୍ଭ ଅଣଯିହୂଦୀମାନଙ୍କୁ ସାହାଯ୍ୟ
କରଛି। କନ୍ତୁ ଯିହୂଦୀମାନେ ଏବେ ମଧ୍ୟ ପରମେଶ୍ୱରଙ୍କର
ମନୋନୀତ ଲୋକ। ତାହାଙ୍କ ପୂର୍ବଜମାନଙ୍କୁ ଦେଇଥିବା
ପ୍ରତିଜ୍ଞା ହେତୁ, ପରମେଶ୍ୱର ସେମାନଙ୍କୁ ଖୁବ ଭଲ
ପାଆନ୍ତ। ୨୯ପରମେଶ୍ୱର ଯେଉଁମାନଙ୍କୁ ଡାକନ୍ତ ଓ ଯେଉଁ
ଦାନଗୁଡ଼ିକ ଦଅନ୍ତ; ସେମାନଙ୍କ ପ୍ରତି ପରମେଶ୍ୱର ନଜର
ମନ କେବେ ହେଲେ ପରବର୍ତ୍ତନ କରନ୍ତ ନାହଁ। ୩୦ଆଗରୁ
ତୁମ୍ଭେମାନେ ପରମେଶ୍ୱରଙ୍କୁ ଅବଜ୍ଞା କରୁଥିଲ। କନ୍ତୁ
ବର୍ତ୍ତମାନ ଯିହୂଦୀମାନଙ୍କର ଅବଜ୍ଞାର ଫଳସ୍ୱରୂପ, ତୁମ୍ଭେମାନେ
ଅନୁଗ୍ରହ ପ୍ରାପ୍ତ କରଛ। ୩୧ଏବେ ଯିହୂଦୀମାନେ ଅବଜ୍ଞା
କରୁଛନ୍ତ, କାରଣ ପରମେଶ୍ୱର ତୁମ୍ଭମାନଙ୍କୁ ଅନୁଗ୍ରହ କରୁଛନ୍ତ।
କନ୍ତୁ ଏହା ଘଟିଲା, ଯେହେତୁ ସେମାନେ ମଧ୍ୟ ପରମେଶ୍ୱରଙ୍କ
ଅନୁଗ୍ରହ ଲାଭ କର ପାରବେ। ୩୨ସବୁ ଲୋକେ ପରମେଶ୍ୱରଙ୍କୁ
ଅବଜ୍ଞା କରୁଛନ୍ତ। ସମସ୍ତଙ୍କୁ ସେ ଅବାଧ ସ୍ଥିତିରେ
ପକାଇଛନ୍ତ ଯେପର ସେ ସମସ୍ତଙ୍କୁ ଦୟା ଦେଖାଇ
ପାରବେ।

## ପରମେଶ୍ୱର ଧନ୍ୟ

୩୩ପରମେଶ୍ୱରଙ୍କ ଧନ ବହୁତ ମହାନ୍! ତାଙ୍କ ବୁଦ୍ଧି ଓ
ଜ୍ଞାନର ସୀମା ନାହଁ! ସେ ନଷ୍ପତ୍ତି କପର ନଅନ୍ତ କେହ
ବୁଝାଇ ପାରବ ନାହଁ। ୩୪କେହ ହେଲେ ପରମେଶ୍ୱରଙ୍କ
ପଥସବୁ ବୁଝି ପାରବେ ନାହଁ। ଶାସ୍ତ୍ର କୁହେ:

"ପ୍ରଭୁଙ୍କର ମନକୁ କଏ ଜାଣିଛି? କଏ ପରମେଶ୍ୱରଙ୍କୁ
ପରାମର୍ଶ ଦେଇ ପାରବ କ?"

ଯିଶାଇୟ ୪୦:୧୩

୩୫ "କଏ କେବେହେଲେ ପରମେଶ୍ୱରଙ୍କୁ ଋଣ ବା
ଦେଇଛ? ଯେ ପରମେଶ୍ୱର ପ୍ରତ୍ୟୁପକାରରେ କଛି
ଦେବେ।"

ଆୟୁବ ୪୧:୧୧

୩୬ପରମେଶ୍ୱର ସମସ୍ତ ସୃଷ୍ଟି କରଛନ୍ତ। ପ୍ରତ୍ୟେକ ବଷୟ
ତାହାଙ୍କ ମାଧ୍ୟମରେ ଓ ତାହାଙ୍କ ପାଇଁ ରହଛି। ତାହାଙ୍କର
ଗୌରବ ସର୍ବଦା ହେଉ। ଆମେନ୍।

## ନଜ ଜୀବନ ପ୍ରଭୁଙ୍କୁ ଅର୍ପଣ କର

୧୨ ସେଥିପାଇଁ ହେ ଭାଇ ଓ ଭଉଣୀମାନେ!
ପରମେଶ୍ୱରଙ୍କ ଅନୁଗ୍ରହକୁ ସ୍ମରଣ କର, ତୁମ୍ଭେ
ମାନେ ନଜର ଜୀବନକୁ, ଏକ ଜୀବନ୍ତ ବଳଦାନ ସ୍ୱରୂପ
ପରମେଶ୍ୱରଙ୍କୁ ଅର୍ପଣ କର। ଏହା କେବଳ ତାହାଙ୍କୁ
ସମର୍ପିତ ହେବ। ଏହା ପରମେଶ୍ୱରଙ୍କୁ ଅତି ପ୍ରସନ୍ନ କରବ।
ଏହ ସମର୍ପଣ, ତୁମ୍ଭମାନଙ୍କ ପାଇଁ ପରମେଶ୍ୱରଙ୍କ ଆତ୍ମୀକ
ଉପାସନା ଅଟେ। ୨ଏହାପରେ ଏହ ସଂସାରର ରୀତି
ଅନୁସାରେ ଆଚରଣ କର ନାହଁ, ବରଂ ନୂତନ ଚନ୍ତନ
ମାର୍ଗରେ ନଜର ଅନ୍ତରକୁ ପରବର୍ତ୍ତିତ କର। ତେବେ
ପରମେଶ୍ୱର ତୁମ୍ଭମାନଙ୍କ ପାଇଁ କ'ଣ ଇଚ୍ଛା କରନ୍ତ,
ତୁମ୍ଭେମାନେ ଜାଣି ପାରବ। ତୁମ୍ଭେମାନେ ଜାଣି ପାରବ
ଯେ, କେଉଁ ବଷୟ ଗୁଡ଼ିକ ଭଲ, ପରମେଶ୍ୱରଙ୍କୁ ପ୍ରିୟ ଓ
ସିଦ୍ଧ।

---

**ସିୟୋନ** ଯିରୂଶାଲମର ଅନ୍ୟ ଏକ ନାମ

³ପରମେଶ୍ୱର ମୋତେ ବିଶେଷ ଅନୁଗ୍ରହ ପ୍ରଦାନ କରିଥିବାରୁ
ମୋର ତୁମ୍ଭ ସମସ୍ତଙ୍କୁ କହିବା କଥା ଯେ, ନିଜକୁ
ଅନ୍ୟଠାରୁ ଭଲ ଭାବ ନାହିଁ। ପରମେଶ୍ୱର ଯେଉଁ ପ୍ରକାରର
ବିଶ୍ୱାସ ତୁମ୍ଭକୁ ଦେଇଛନ୍ତି, ସେହି ଅନୁସାରେ ତୁମ୍ଭ ନିଜକୁ
ନମ୍ର ମନେ କର। ⁴ଯେପରି ଆମ୍ଭ ସମସ୍ତଙ୍କର ଶରୀରଟିଏ
ଅଛି ଓ ଏହି ଶରୀରରେ ଅନେକ ପ୍ରକାରର ଅଙ୍ଗ ଅଛି।
ଏହି ଅଙ୍ଗଗୁଡ଼ିକ ଏକା ଭଳି କାମ କରନ୍ତି ନାହିଁ। ⁵ସେହି
ଭଳି ଆମ୍ଭେ ସଂଖ୍ୟାରେ ଅନେକ ଲୋକ, କିନ୍ତୁ ଯୀଶୁ
ଖ୍ରୀଷ୍ଟଙ୍କ ଠାରେ ଆମ୍ଭେ ଏକ ଶରୀରର ବିଭିନ୍ନ ଅଙ୍ଗ ଭଳି
ଆମ୍ଭେ ପ୍ରତ୍ୟେକ ଅନ୍ୟର ପରିପୂରକ। ⁶ଏହି ଭଳି ଆମ୍ଭକୁ
ପରମେଶ୍ୱରଙ୍କ ଅନୁଗ୍ରହରୁ, ବିଭିନ୍ନ ସବୁ ଅନୁଗ୍ରହ ଦାନମାନ
ମିଳିଛି। ଜଣେ ତା'ଠାରେ ଥିବା ବିଶ୍ୱାସ ଅନୁସାରେ ତାହାକୁ
ବ୍ୟବହାର କରୁ। ଯଦି କାହାକୁ ଭବିଷ୍ୟଦ୍‌ବାଣୀର ଦାନ
ମିଳିଛି, ତା'ହେଲେ ସେ ନିଜର ବିଶ୍ୱାସ ଅନୁସାରେ
ଭବିଷ୍ୟଦ୍‌ବାଣୀ କରୁ। ⁷ଯଦି କାହାକୁ ସେବା କରିବା ପାଇଁ
ଅନୁଗ୍ରହ ଦାନ ମିଳିଛି ତେବେ ସେ ନିଜକୁ ସେବା ପାଇଁ
ଅର୍ପଣ କରୁ। ଯଦି କାହାକୁ ଶିକ୍ଷା ବା ଉପଦେଶ ଦେବା
ଅନୁଗ୍ରହ ଦାନ ମିଳିଛି, ତା ହେଲେ ସେ ନିଜକୁ ପ୍ରଚାର
କାର୍ଯ୍ୟରେ ଲଗାଇ ଦେଉ। ⁸ଯଦି କାହାକୁ ଅନ୍ୟ ଲୋକମାନଙ୍କୁ
ସାନ୍ତ୍ୱନା ଦେବାର ଅନୁଗ୍ରହ ଦାନ ମିଳିଛି, ତା'ହେଲେ ସେ
ଲୋକମାନଙ୍କୁ ସାନ୍ତ୍ୱନା ଦେଉ। ଯଦି କାହାକୁ ଦାନ ଦେବା
ଅନୁଗ୍ରହ ଦାନ ମିଳିଛି ତା'ହେଲେ ସେ ଖୋଲା ମନରେ
ଦାନ କରୁ। ଯଦି କାହାକୁ ନେତୃତ୍ୱ ନେବାର ଅନୁଗ୍ରହ
ଦାନ ମିଳିଛି, ତା'ହେଲେ ସେ ମନ ପ୍ରାଣ ଢାଳି ନେତୃତ୍ୱ
ଦେଉ। ଯଦି କାହାକୁ ଅନ୍ୟମାନଙ୍କୁ ଦୟା ଦେଖାଇବା
ଅନୁଗ୍ରହ ଦାନ ମିଳିଛି ତା'ହେଲେ ସେ ଆନନ୍ଦ ମନରେ
ଦୟା ଦେଖାଉ।

⁹ତୁମ୍ଭର ପ୍ରେମ ନିଷ୍କପଟ ହେଉ। ମନ୍ଦକୁ ଘୃଣା କର।
¹⁰ଭଲ କାର୍ଯ୍ୟରେ ଜଡ଼ିତ ହୁଅ। ଭାଇ ଓ ଭଉଣୀଙ୍କ ଭଳି
ସମର୍ପିତ ରହି ଜଣେ ଅନ୍ୟ ଜଣକୁ ଦୟାର ସହ ପ୍ରେମ
କରୁ। ତୁମ୍ଭେ ନିଜେ ଯେତିକି ସମ୍ମାନ ଚାହିଁ, ତା'ଠାରୁ
ଅଧିକ ସମ୍ମାନ ଏହି ଭାଇଭଉଣୀ ମାନଙ୍କୁ ଦିଅ। ¹¹ପରମେଶ୍ୱରଙ୍କ
କାମ କରିବାରେ ଉତ୍ସାହ ପ୍ରକାଶ କର। ତାଙ୍କ ସେବା
କାର୍ଯ୍ୟରେ ଆଳସ୍ୟ କର ନାହିଁ। ପରମେଶ୍ୱରଙ୍କୁ ସେବା
କଲାବେଳେ ଆତ୍ମିକ ଭାବରେ ଉଦ୍‌ଯୋଗ ହୁଅ। ¹²ଭରସା
ଥିବାରୁ ପ୍ରସନ୍ନ ରୁହ। ଅସୁବିଧାର ସମ୍ମୁଖୀନ ହେବା ବେଳେ
ତୁମ୍ଭେ ଧୈର୍ଯ୍ୟ ଧର। ନିରନ୍ତର ପ୍ରାର୍ଥନା କର। ¹³ପରମେଶ୍ୱରଙ୍କ
ନିଜ ଲୋକମାନଙ୍କର କାମରେ ସାହାଯ୍ୟ କର। ଯେଉଁମାନଙ୍କୁ
ସାହାଯ୍ୟ ଦରକାର ସେମାନଙ୍କ ପ୍ରତି ଦୃଷ୍ଟି ରଖ,ନିଜ ଘରକୁ
ସେମାନଙ୍କୁ ଅତିଥି ଭାବରେ ସ୍ୱାଗତ କର।

¹⁴ଯେଉଁମାନେ ତୁମ୍ଭମାନଙ୍କ ପ୍ରତି ମନ୍ଦ ଆଚରଣ କରୁଛନ୍ତି
ସେମାନଙ୍କ ପ୍ରତି ତୁମ୍ଭେ ଭଲ ଆଚରଣ କର। ସେମାନଙ୍କୁ
ଅଭିଶାପ ଦିଅ ନାହିଁ, ବରଂ ସେମାନଙ୍କୁ ଭଲ କଥା କୁହ।
¹⁵ଯେତେବେଳେ ଅନ୍ୟମାନେ ପ୍ରସନ୍ନ, ତୁମ୍ଭେମାନେ ସେମାନଙ୍କ
ସହିତ ପ୍ରସନ୍ନ ହୁଅ। ଅନ୍ୟମାନେ ଦୁଃଖିତ ଥିଲା ବେଳେ
ତୁମ୍ଭେମାନେ ତାହାଙ୍କ ସହିତ ଦୁଃଖିତ ହୁଅ। ¹⁶ନିଜ
ଭିତରେ ମିଳିମିଶି ଶାନ୍ତିରେ ରୁହ। ଗର୍ବ କର ନାହିଁ।
ଯେଉଁମାନେ ଅନ୍ୟମାନଙ୍କ ଦୃଷ୍ଟିରେ ମହତ୍ତ୍ୱପୂର୍ଣ୍ଣ ନୁହଁନ୍ତି,
ସେମାନଙ୍କ ସହିତ ସାଙ୍ଗ ହେବା ପାଇଁ ଇଚ୍ଛୁକ ହୁଅ।
ନିଜକୁ ବୁଦ୍ଧିମାନ ବୋଲି ଭାବ ନାହିଁ।

¹⁷ମନ୍ଦର ପ୍ରତିବଦଳରେ କାହାରି ପ୍ରତି ମନ୍ଦ କର
ନାହିଁ। ଯାହାକୁ ସବୁ ଲୋକ ଭଲ ବୋଲି ଚିନ୍ତା କରନ୍ତି
ସେହିଭଳି କାମ କରିବା ତୁମ୍ଭର ଲକ୍ଷ ହେଉ। ¹⁸ଲୋକଙ୍କ
ସହିତ ଶାନ୍ତିରେ ରହିବା ପାଇଁ ଯଥାସାଧ୍ୟ ଚେଷ୍ଟା କର।
¹⁹ତୁମ୍ଭମାନଙ୍କ ପ୍ରତି ଭୁଲ କରି ଥିବା ଲୋକକୁ ନିଜ
ତରଫରୁ ଦଣ୍ଡ ଦିଅ ନାହିଁ। ତାହାକୁ ପରମେଶ୍ୱରଙ୍କ କ୍ରୋଧ
ଦ୍ୱାରା ଦଣ୍ଡିତ ହେବା ଲାଗି ଅପେକ୍ଷା କର। ଶାସ୍ତ୍ରରେ
ଲେଖା ଅଛି: ପରମେଶ୍ୱର କହିଛନ୍ତି, "ଦଣ୍ଡ ଦେବା ମୋର
କାମ। ମୁଁ ଲୋକମାନଙ୍କୁ ପ୍ରତିଦାନ ଦେବି।"* ²⁰କିନ୍ତୁ
ତୁମ୍ଭେମାନେ ଏପରି କରିବା ଉଚିତ୍: "ଯଦି ତୁମ୍ଭର ଶତ୍ରୁ
ଭୋକରେ ଅଛି, ତାହାକୁ ଖାଇବାକୁ ଦିଅ, ଯଦି ତୁମ୍ଭର
ଶତ୍ରୁ ତୃଷିତ ଅଛି, ତାହାକୁ ପିଇବାକୁ ଦିଅ। ଏପରି କଲେ
ତୁମ୍ଭେ ତାହାକୁ ଲଜ୍ଜିତ କରି ପାରିବ।"* ²¹ମନ୍ଦ ଦ୍ୱାରା
ହାରି ଯାଅ ନାହିଁ। ତୁମ୍ଭେ ଭଲ କାମ କରି ମନ୍ଦକୁ
ହରାଇବାକୁ ଚେଷ୍ଟା କର।

**୧୩** ପ୍ରତ୍ୟେକ ଲୋକର ସରକାରୀ ଶାସକମାନଙ୍କ
ଅଧୀନତା ସ୍ୱୀକାର କରିବା ଉଚିତ୍। କାରଣ
ସେମାନଙ୍କ ଏହି କ୍ଷମତା ପରମେଶ୍ୱରଙ୍କ ଦ୍ୱାରା ଦିଆଯାଇଛି
ଏବଂ ବର୍ତ୍ତମାନ ଯେଉଁମାନେ ଅଧିକାରୀ, ପରମେଶ୍ୱରଙ୍କ
ଦ୍ୱାରା ସେମାନଙ୍କୁ ଏହି କ୍ଷମତା ପ୍ରଦାନ କରା ଯାଇଛି।
²ଅତଏବ ଅଧିକାର ବିରୋଧ କରୁଥିବା ଲୋକମାନେ
ପ୍ରକୃତରେ ପରମେଶ୍ୱରଙ୍କ ଆଜ୍ଞାର ବିରୋଧୀ। ଏପରି
ବିରୋଧ କରୁଥିବା ଲୋକ, ନିଜ ପାଇଁ ଦଣ୍ଡ ପାଇବା
ବ୍ୟବସ୍ଥା କରି ଥାଏ। ³ଯେଉଁମାନେ ଠିକ କାମ କରନ୍ତି,
ଶାସକଙ୍କୁ ଭୟ କରିବାର କୌଣସି କାରଣ ସେମାନଙ୍କଠାରେ
ନାହିଁ, କିନ୍ତୁ ଯେଉଁମାନେ ମନ୍ଦ ବା ଭୁଲ କାମ କରନ୍ତି
ସେମାନେ ଭୟ କରିବାକୁ ବାଧ୍ୟ। ଶାସକମାନଙ୍କ ଭୟରୁ
ମୁକ୍ତ ପାଇବା ପାଇଁ ଏକ ମାତ୍ର ଉପାୟ ହେଉଛି ଭଲ
କାମ କରିବା। ଭଲ କାମ କଲେ ଶାସକମାନେ ତୁମ୍ଭର
ପ୍ରଶଂସା କରିବେ। ⁴ତୁମ୍ଭକୁ ସାହାଯ୍ୟ କରିବା ପାଇଁ ଶାସକ
ହେଉଛନ୍ତି ପରମେଶ୍ୱରଙ୍କ ସେବକ। କିନ୍ତୁ ତୁମ୍ଭେ ଭୁଲ
କଲେ ଭୟ କରିବ। ଶାସକର ଦଣ୍ଡ ଦେବା କ୍ଷମତା ଅଛି,
ସେ ସେହି କ୍ଷମତାର ପ୍ରୟୋଗ କରି ମନ୍ଦ କାମ କରୁଥିବା
ଲୋକକୁ ଦଣ୍ଡ ଦେବେ। ⁵ସେଥିପାଇଁ ଶାସକଙ୍କ ଆଜ୍ଞା
ପାଳନ କରିବାକୁ ତୁମ୍ଭେ ବାଧ୍ୟ। ପାଳନ ନ କରିବା
କାରଣରୁ ଯେ ଦଣ୍ଡିତ ହେବ, ସେଥିପାଇଁ ଆଜ୍ଞା ପାଳନ
କର ନାହିଁ। ଅଧିକନ୍ତୁ ଶାସନକୁ ମାନିବା ଠିକ୍ କାମ
ବୋଲି ଜାଣିଥିବାରୁ ତୁମ୍ଭେ ଏପରି କରିବା ଉଚିତ୍।

⁶ଏହି ଦୃଷ୍ଟିରୁ ତୁମ୍ଭେମାନେ ସରକାରକୁ କର ମଧ୍ୟ
ଦିଅ। ସେମାନେ ପରମେଶ୍ୱରଙ୍କ ସେବାରେ ରହିଛନ୍ତି, ଏବଂ
ସେହି କାର୍ଯ୍ୟ କରିବା ପାଇଁ ନିଜର ସଂପୂର୍ଣ୍ଣ ସମୟ

---

**"ଦଣ୍ଡ ... ଦେବି"** ଦ୍ୱିତୀୟ ବିବରଣୀ ୩୨:୩୫
**"ଯଦି ... ପାରିବ"** ହିତୋପଦେଶ ୨୫:୨୧-୨୨

ଦେଉଛନ୍ତି । [୭]ସମାଜରେ ଯାହାଙ୍କର ଯାହା ପ୍ରାପ୍ୟ ତାହାଙ୍କୁ
ତାହା ଦିଅ । ଯାହାଙ୍କୁ ଶୁଳ୍କ ଦେବା କଥା ତାହାଙ୍କୁ ସମସ୍ତ
ପ୍ରକାରର ଶୁଳ୍କ ଦେଇ ଦିଅ । ଯାହାଙ୍କୁ ଭୟ ସହିତ
ଆଦର କରିବା କଥା ସେମାନଙ୍କୁ ଭୟ ଓ ଆଦର କର ।
ଯାହାଙ୍କୁ ସମ୍ମାନ ଦେବା କଥା ସେମାନଙ୍କୁ ସମ୍ମାନ ଦିଅ ।

## ଅନ୍ୟ ଲୋକଙ୍କୁ ପ୍ରେମ କରିବା ହିଁ ବ୍ୟବସ୍ଥା ଅଟେ

[୮]କାହାର ଋଣୀ ହୁଅ ନାହିଁ । କିନ୍ତୁ ପରସ୍ପର ପ୍ରତି
ପ୍ରେମର ଋଣରେ ଋଣୀ ହୁଅ । ଯେଉଁ ଲୋକ ପ୍ରତିବାସୀଙ୍କୁ
ପ୍ରେମ କରେ ସେ ସଂପୂର୍ଣ୍ଣ ବ୍ୟବସ୍ଥା ମାନିଛି । [୯]ମୁଁ ଏପରି
କହୁଛି, କାରଣ ବ୍ୟବସ୍ଥା କୁହେ: "ବ୍ୟଭିଚାର କର ନାହିଁ,
କାହାକୁ ବଧ କର ନାହିଁ, କୌଣସି ଜିନିଷ ଚୋରୀ କର
ନାହିଁ, ଅନ୍ୟ ଲୋକର ଜିନିଷ ପ୍ରତି ଲୋଭ ରଖ
ନାହିଁ ।"* ଏହି ସମସ୍ତ ଆଦେଶ ଗୁଡ଼ିକ ଓ ଅନ୍ୟ ସମସ୍ତ
ଆଦେଶଗୁଡ଼ିକ ସାରାଂଶ ଭାବେ ଏହି ବ୍ୟବସ୍ଥାର ଅନ୍ତର୍ଗତ
ଅଟେ, ଯଥା: "ନିଜକୁ ପ୍ରେମ କଲା ଭଳି ଅନ୍ୟ (ବା
ପ୍ରତିବାସୀ)କୁ ପ୍ରେମ କର ।"* [୧୦]ପ୍ରେମ ଅନ୍ୟ ଲୋକକୁ
ଆଘାତ କରେ ନାହିଁ, ଅତଏବ ପ୍ରେମ କରିବା ସଂପୂର୍ଣ୍ଣ
ବ୍ୟବସ୍ଥା ପାଳନର ସମକକ୍ଷ ।

[୧୧]ମୁଁ ଏହି ସମସ୍ତ କଥା କହୁଛି, କାରଣ ଆମ୍ଭର ଏହି
ସମୟଟି ଅତି ମହତ୍ତ୍ୱପୂର୍ଣ୍ଣ । ନିଦ୍ରାରୁ ଜାଗ୍ରତ ହେବାର
ସମୟ ଉପସ୍ଥିତ ହୋଇଅଛି । ଆରମ୍ଭ କାଳରେ ବିଶ୍ୱାସ
କରିବା ତୁଳନାରେ ଏବେ ଆମ୍ଭେ ଉଦ୍ଧାର ପାଇବା କାଳର
ନିକଟତର ହୋଇଛୁ । [୧୨]'ରାତି' ପ୍ରାୟଃ କଟି ଗଲାଣି ।
'ଦିନ' ପ୍ରାୟଃ ଏହିଠାରେ । ଅତଏବ ଅନ୍ଧକାରରେ କରୁଥିବା
କାମ (ପାପ) ଆମ୍ଭେ ବନ୍ଦ କରିବା ଉଚିତ । ଆମ୍ଭେ
ପ୍ରକାଶରେ ହେଉଥିବା ଭଲ କାମ କରିବା ପାଇଁ ପ୍ରସ୍ତୁତ
ରହିବା ଉଚିତ । [୧୩]ଆମ୍ଭେ ଉତ୍ତମ ଲୋକଙ୍କ ଭଳି, ଦିବସର
ଲୋକଙ୍କ ଭଳି ଠିକ୍ ଭାବରେ ରହିବା ଉଚିତ । ଆମ୍ଭେ
ଖର୍ଚ୍ଚାନ୍ତ ରସରଙ୍ଗରେ ମାତିବା ଠିକ୍ ନୁହେଁ । ମାତାଲ ହେବା
ଉଚିତ ନୁହେଁ । ଯୌନଗତ ପାପକର୍ମ ଓ ଅନ୍ୟ ସମସ୍ତ
ଭୋଗ ବିଳାସରେ ଲିପ୍ତ ହେବା ଠିକ୍ ନୁହେଁ । ଯୁକ୍ତିତର୍କ
କରିବା ଓ ଈର୍ଷାଳୁ ହେବା ଉଚିତ ନୁହେଁ । [୧୪]ନିଜର
ପାପପୂର୍ଣ୍ଣ ସ୍ୱାର୍ଥପର ଇଚ୍ଛାକୁ ତୃପ୍ତି କରିବାରେ ଲାଗି ନରହି
ଆମ୍ଭେ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ ପରିଧାନ କରିବା ଉଚିତ ।

## ଅନ୍ୟ ଲୋକଙ୍କୁ ସମାଲୋଚନା କର ନାହିଁ

୧୪ ଯେଉଁ ଲୋକର ବିଶ୍ୱାସ ଦୁର୍ବଳ, ସେ ଲୋକକୁ
ନିଜ ଦଳ ଭିତରେ ଗ୍ରହଣ କରିବା ପାଇଁ ମନା
କର ନାହିଁ । ସେହି ଲୋକର ଭିନ୍ନ ମତ ପାଇଁ, ତା ସହିତ
ଯୁକ୍ତିତର୍କ କର ନାହିଁ । [୨]ଜଣେ ଲୋକ କୌଣସି ପ୍ରକାରର
ଖାଦ୍ୟ ଖାଇ ପାରିବ ବୋଲି ବିଶ୍ୱାସ କରିପାରେ । କିନ୍ତୁ
ଯଦି ଅନ୍ୟ ଜଣକର ବିଶ୍ୱାସ ଦୁର୍ବଳ, ସେ କେବଳ
ଶାକାହାରୀ ଭୋଜନ ଖାଏ । [୩]ଯେଉଁ ଲୋକ ସମସ୍ତ ପ୍ରକାର
ଖାଦ୍ୟ ଖାଇ ପାରେ ସେ ଗର୍ବ କରିବା ଉଚିତ ନୁହେଁ
ଯେ, ସେ ଶାକାହାରୀ ଲୋକଠାରୁ ଅଧିକ ଭଲ । ସେହିପରି
ଶାକାହାରୀ ଲୋକ ସ୍ଥିର ନ କରୁ ଯେ, ସମସ୍ତ ପ୍ରକାର
ଭୋଜନ କରୁଥିବା ଲୋକ ମନ୍ଦ ଅଟେ । ପରମେଶ୍ୱର
ତାହାକୁ ଗ୍ରହଣ କରିଛନ୍ତି । [୪]ତୁମ୍ଭେ ଅନ୍ୟ ଲୋକର
ଚାକରକୁ ବିଚାର କର ନାହିଁ । ତାହାର ମାଲିକ କେବଳ
ଜାଣିପାରେ ଯେ ଚାକରଟି ଭଲ କିମ୍ବା ମନ୍ଦ । ଏବଂ
ପରମେଶ୍ୱର ସେବକମାନେ ଯୋଗ୍ୟ, କାରଣ ପରମେଶ୍ୱର
ସେମାନଙ୍କୁ ଯୋଗ୍ୟ ବିବେଚିତ କରିଛନ୍ତି ।

[୫]ଜଣେ ଲୋକ ବିଶ୍ୱାସ କରି ପାରେ ଯେ, ଗୋଟିଏ
ଦିନ, ଅନ୍ୟ ଦିନ ଗୁଡ଼ିକ ତୁଳନାରେ ବିଶିଷ୍ଟ ଅଟେ ।
ସେହିପରି ଅନ୍ୟ ଜଣେ ଲୋକ ସମସ୍ତ ଦିନ ଗୁଡ଼ିକୁ
ସମାନ ମହତ୍ତ୍ୱ ପ୍ରଦାନ କରି ପାରେ । ପ୍ରତ୍ୟେକ ଲୋକ
ନିଜର ବିଶ୍ୱାସ ନେଇ ମନରେ ନିଶ୍ଚିତ ହେବା ଉଚିତ ।
[୬]ଯେଉଁ ଲୋକ ଗୋଟିଏ ଦିନକୁ ଅନ୍ୟ ଦିନ ଗୁଡ଼ିକ
ତୁଳନାରେ ବିଶେଷ ମହତ୍ତ୍ୱ ଦିଏ, ତାହା ସେ ପ୍ରଭୁଙ୍କ ପାଇଁ
ସେପରି କରେ । ଯେଉଁ ଲୋକ ସମସ୍ତ ପ୍ରକାର ଖାଦ୍ୟ
ଖାଏ, ତାହା ସେ ପ୍ରଭୁଙ୍କ ପାଇଁ କରେ । ଖାଦ୍ୟ ପାଇଁ ସେ
ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଏ । ଯେଉଁ ଲୋକ କେତେକ
ପ୍ରକାରର ଖାଦ୍ୟ ଖାଇବାକୁ ବାରଣ କରେ, ତାହା ସେ
ପ୍ରଭୁଙ୍କ ପାଇଁ ସେପରି କରେ, ଓ ତାହାଙ୍କୁ ଧନ୍ୟବାଦ
ଜଣାଏ । [୭]ଆମ୍ଭେ ସମସ୍ତେ ନିଜ ପାଇଁ ନୁହେଁ କିନ୍ତୁ ପ୍ରଭୁଙ୍କ
ପାଇଁ ଜୀବିତ ବା ମୃତ୍ୟୁବରଣ କରୁ । [୮]ଆମ୍ଭେ ଜୀବିତ
ରହିଲେ ପ୍ରଭୁଙ୍କ ପାଇଁ ଜୀବିତ ରହୁ ଓ ମୃତ୍ୟୁ ବରଣ
କଲେ ମଧ୍ୟ ତାହାଙ୍କ ପାଇଁ ମୃତ୍ୟୁ ବରଣ କରୁ ।
ତାହେଲେ ଜୀବିତ ରହୁ ବା ମୃତ୍ୟୁ ବରଣ କରୁ, ଆମ୍ଭେ
ପରମେଶ୍ୱରଙ୍କର ହିଁ ଅଟୁ ।

[୯]ସେଥିପାଇଁ ଖ୍ରୀଷ୍ଟ ମୃତ୍ୟୁ ବରଣ କଲେ ଓ ମୃତ୍ୟୁରୁ
ପୁନଃ ଜୀବିତ ହେଲେ । ଖ୍ରୀଷ୍ଟ ଏପରି କରିବାର କାରଣ
ଯେ, ଯେଉଁମାନେ ମରି ସାରିଛନ୍ତି ଓ ଯେଉଁମାନେ ଜୀବିତ
ଅଛନ୍ତି, ସେ ସମସ୍ତଙ୍କର ପ୍ରଭୁ (ଶାସକ) ହୋଇ ପାରିବେ ।
[୧୦]ଅତଏବ, ତୁମ୍ଭେ ନିଜ ଭାଇଙ୍କୁ ବିଚାର କର ନାହିଁ ।
ନିଜକୁ ନିଜ ଭାଇଠାରୁ ଅଧିକ ଭଲ ବୋଲି ଭାବ ନାହିଁ ।
ଆମ୍ଭେ ସମସ୍ତେ ନ୍ୟାୟବିଚାର ପାଇଁ ପରମେଶ୍ୱରଙ୍କ ଆଗରେ
ଠିଆ ହେବା, ଓ ସେ ଆମ୍ଭର ବିଚାର କରିବେ । [୧୧]ଶାସ୍ତ୍ରରେ
ଲେଖା ଅଛି:

"ପ୍ରଭୁ କହିଛନ୍ତି: ପ୍ରତ୍ୟେକ ଲୋକ ମୋ ଆଗରେ
ଆଣ୍ଠୁ ମାଡ଼ି ବସିବ । ପ୍ରତ୍ୟେକ ଲୋକ ମୋତେ
ପରମେଶ୍ୱର ବୋଲି କହିବ । ମୁଁ ଜୀବିତ ଥିବା
ଯେପରି ସତ୍ୟ, ସେହିପରି ଏହା ଘଟିବ ।"

ଯିଶାଇୟ ୪୫:୨୩

[୧୨]ଅତଏବ ପ୍ରତ୍ୟେକ ଲୋକକୁ ପରମେଶ୍ୱରଙ୍କ ସାମନାରେ
ନିଜ ଜୀବନର ହିସାବ ଦେବାକୁ ହେବ ।

## କୌଣସି ଲୋକର ପାପର କାରଣ ହୁଅ ନାହିଁ

[୧୩]ତାହେଲେ ଆମ୍ଭେ ଏକାରେକକୁ ଦୋଷ ଦେବା ବନ୍ଦ

---

**"ବ୍ୟଭିଚାର ... ନାହିଁ"** ଯାତ୍ରାପୁସ୍ତକ ୨୦:୧୩-୧୫, ୧୭

**"ନିଜକୁ ... କର"** ଲେବୀୟ ପୁସ୍ତକ ୧୯:୧୮

କରିବା ଉଚିତ। ଆମ୍ଭେ ଏପରି ସଂକଳ୍ପ ନେବା ଦରକାର,
ଯେପରି ଆମ୍ଭର କାର୍ଯ୍ୟ ଦ୍ୱାରା ନିଜ ଭାଇ (ବା ଭଉଣୀ)
ପାପରେ ପଡ଼ିବେ ନାହିଁ। [14]ମୁଁ ପ୍ରଭୁ ଯୀଶୁଙ୍କଠାରେ
ରହିଥିବାରୁ, ମୁଁ ଜାଣେ ଯେ, ନିଶ୍ଚୟ କୌଣସି ଭୋଜନ
ଆପେଆପେ ଅଶୁଚି ହୁଏ ନାହିଁ। କିନ୍ତୁ ଯଦି ଜଣେ
କୌଣସି ଖାଦ୍ୟକୁ ଅଶୁଚି ବୋଲି ବିଶ୍ୱାସ କରେ, ସେହି
ଖାଦ୍ୟ ତା ପାଇଁ ଅଶୁଚି ହୁଏ। [15]ତାହାକୁ ସେ ଗ୍ରହଣ
କରିବା ଅନୁଚିତ। ତୁମ୍ଭ ଖାଦ୍ୟ ଦ୍ୱାରା ତୁମ୍ଭେ ଯଦି ତୁମ୍ଭର
ଭାଇର ବିଶ୍ୱାସକୁ ଆଘାତ ଦେଉଛ, ତାହେଲେ ତୁମ୍ଭେ
ପ୍ରକୃତରେ ପ୍ରେମ ଦ୍ୱାରା ପରିଚାଳିତ ବ୍ୟକ୍ତି ଭଳି ବ୍ୟବହାର
କରୁ ନାହଁ। ସେ ମନ୍ଦ ଭାବୁ ଥିବା କୌଣସି ଖାଦ୍ୟ ଗ୍ରହଣ
କରି ତୁମ୍ଭେ ତା'ର ବିଶ୍ୱାସକୁ ନଷ୍ଟ କର ନାହିଁ। ଖ୍ରୀଷ୍ଟ ସେ
ଲୋକ ଲାଗି ମଧ୍ୟ ପ୍ରାଣ ତ୍ୟାଗ କରିଥିଲେ। [16]ତୁମ୍ଭ ଦ୍ୱାରା
ଭଲ ବୋଲି ଗଣିତ କର୍ମର କୌଣସି ବିଷୟକୁ ଅନ୍ୟମାନେ
ମନ୍ଦ ବୋଲି ନ କୁହନ୍ତୁ। [17]ପ୍ରଭୁଙ୍କ ରାଜ୍ୟରେ ଖାଇବାପିଇବା
ଅଧିକ ଗୁରୁତ୍ୱ ନୁହେଁ। ସେଠାରେ ମହତ୍ତ୍ୱପୂର୍ଣ୍ଣ କଥା ହେଲା,
ପରମେଶ୍ୱରଙ୍କ ସହିତ ଧାର୍ମିକ ଜୀବନ କାଟିବା, ଶାନ୍ତି, ଓ
ପବିତ୍ର ଆତ୍ମାରେ ଆନନ୍ଦ କରିବା। [18]ଯେଉଁମାନେ ଖ୍ରୀଷ୍ଟଙ୍କ
ସେବାରେ ରହି ଏହିପ୍ରକାର ଜୀବନଯାପନ କରୁଛନ୍ତି, ସେମାନେ
ପରମେଶ୍ୱରଙ୍କୁ ପ୍ରସନ୍ନ କରନ୍ତି। ଲୋକେ ମଧ୍ୟ ସେହି
ଲୋକମାନଙ୍କୁ ଗ୍ରହଣ କରନ୍ତି ଓ ସମ୍ମାନ ଦିଅନ୍ତି।

[19]ଅତଏବ ଆସ, ଆମ୍ଭେ ଶାନ୍ତି ଆଣୁଥିବା କାର୍ଯ୍ୟଗୁଡ଼ିକ
ପରିଶ୍ରମ ପୂର୍ବକ କରିବା। ପରସ୍ପରକୁ ସାହାଯ୍ୟ ପ୍ରଦାନ
କରୁଥିବା କାର୍ଯ୍ୟମାନ କରିବା। [20]ଖାଦ୍ୟ ଯେପରି ପରମେଶ୍ୱରଙ୍କ
କାମକୁ ନଷ୍ଟ ନକରେ। ସମସ୍ତ ପ୍ରକାରର ଖାଦ୍ୟ ଖାଇବା
ପାଇଁ ଯୋଗ୍ୟ। କିନ୍ତୁ ଏପରି ଖାଦ୍ୟ ଖାଇବା ଭୁଲ, ଯଦି
ତାହା ଅନ୍ୟ ଜଣକୁ ପାପରେ ପଡ଼ିଯିବାର କାରଣ ହୋଇଥାଏ।
[21]ଯଦି ତୁମ୍ଭର ଭାଇ ବା ଭଉଣୀକୁ ତୁମ୍ଭର ଖାଇବା ଓ
ପିଇବା ଦ୍ୱାରା, ପାପକର୍ମ କରିବାକୁ ବାଧ୍ୟ କରେ, ତାହେଲେ
ତୁମ୍ଭେ ମାଂସ ନଖାଇବା ଓ ଅଙ୍ଗୁରରସ ନ ପିଇବା ଅଧିକ
ଭଲ। ଏପରି କୌଣସି କାମ କରିବା ଉଚିତ ନୁହେଁ ଯଦି
ତାହା ତୁମ୍ଭ ଭାଇ ବା ଭଉଣୀଙ୍କୁ ପାପ କରିବା ପାଇଁ
ସୁଯୋଗ ଦିଏ।

[22]ନିଜର ଏହି ଭଳି ବିଶ୍ୱାସଗୁଡ଼ିକୁ ପରମେଶ୍ୱର ଓ ତୁମ୍ଭ
ନିଜ ଭିତରେ ଗୋପନୀୟ ଭାବେ ରଖ। ଯେଉଁଲୋକ
ନିଜେ ବିଶ୍ୱାସ କରୁଥିବା କର୍ମମାନ କଲାବେଳେ ନିଜକୁ
ଦୋଷୀ ବୋଲି ଭାବେ ନାହିଁ, ସେହି ଲୋକ ବାସ୍ତବରେ
ସୁଖୀ ଓ ଧନ୍ୟ। [23]କିନ୍ତୁ ଯଦି ଜଣେ, ସେ ଠିକ କାମ
କରୁଛି ବୋଲି ନିଶ୍ଚିତ ଭାବରେ ନଜାଣି ଭୋଜନ କରେ,
ତା'ହେଲେ ସେ ନିଜକୁ ଦୋଷୀ କରେ। କାରଣ ସେ
ବିଶ୍ୱାସରେ ଭୋଜନ କରେ ନାହିଁ। ଯଦି ଜଣେ ଠିକ
ନୁହେଁ ବୋଲି ଜାଣିପାରି ମଧ୍ୟ କୌଣସି କାମ କରେ,
ତାହେଲେ ସେ ପାପ କରୁଛି।

**୧୫** ଆମ୍ଭେ ଆମ୍ଭର ବିଶ୍ୱାସ ପାଇଁ ବଳବାନ୍ ଅଟୁ।
ଅତଏବ, ଦୁର୍ବଳ ଲୋକମାନଙ୍କୁ ଆମ୍ଭେ ସାହାଯ୍ୟ
କରିବା ଉଚିତ ଏବଂ ସେମାନଙ୍କର ଦୁର୍ବଳତାରୁ ସେମାନଙ୍କୁ
ଉଦ୍ଧାର କରିବା। ଆମ୍ଭେ କେବଳ ନିଜକୁ ଖୁସି ରଖିବା
ପାଇଁ ଚେଷ୍ଟା କରିବା ଉଚିତ ନୁହେଁ। [2]ଆମ୍ଭେ ଅନ୍ୟ
ଲୋକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କରିବା
ଉଚିତ। ସେମାନଙ୍କ ବିଶ୍ୱାସକୁ ବଳବାନ କରିବା ଓ
ବଢ଼ାଇବା ଦୃଷ୍ଟିରୁ ଆମ୍ଭେ ସେମାନଙ୍କ ପାଇଁ କଣ ଭଲ
ତାହା ଭାବିବା ଉଚିତ। [3]ଖ୍ରୀଷ୍ଟ ମଧ୍ୟ ନିଜକୁ ସନ୍ତୁଷ୍ଟ କରିବା
ପାଇଁ ଜୀବିତ ନଥିଲେ। ତାହାଙ୍କ ବିଷୟରେ ଶାସ୍ତ୍ର କୁହେ:
"ଯେଉଁମାନେ ତୁମ୍ଭର ଅପମାନ କରିଛନ୍ତି, ସେମାନେ ମୋର
ମଧ୍ୟ ଅପମାନ କରିଛନ୍ତି।"* [4]ଶାସ୍ତ୍ରରେ ଯେଉଁ କଥାମାନ
ଲେଖା ଅଛି, ସେଗୁଡ଼ିକ ଦ୍ୱାରା ଆମ୍ଭର ଧୈର୍ଯ୍ୟ ଓ ଶକ୍ତି
ବଢ଼େ ଓ ଆମ୍ଭେ ଭରସା ଲାଭ କରୁ। [5]ଧୈର୍ଯ୍ୟ ଓ ଶକ୍ତି
ପରମେଶ୍ୱରଙ୍କ ଠାରୁ ପ୍ରାପ୍ତ ହୁଏ। ମୁଁ ପରମେଶ୍ୱରଙ୍କଠାରେ
ପ୍ରାର୍ଥନା କରୁଛି ଯେ ତୁମ୍ଭେ ସମସ୍ତେ ଯୀଶୁଙ୍କ ମାର୍ଗରେ
ମିଳିମିଶି ରୁହ। [6]ତା'ହେଲେ ତୁମ୍ଭେ ସମସ୍ତେ ଏକତ୍ର
ଭାବରେ ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ପିତା ପରମେଶ୍ୱରଙ୍କୁ
ମହିମା ପ୍ରଦାନ କରି ପାରିବ। [7]ଯୀଶୁ ଖ୍ରୀଷ୍ଟ ତୁମ୍ଭମାନଙ୍କୁ
ଗ୍ରହଣ କରିଛନ୍ତି, ଅତଏବ ତୁମ୍ଭେମାନେ ପରସ୍ପରକୁ ଗ୍ରହଣ
କର। [8]ଏହି କର୍ମ ପରମେଶ୍ୱରଙ୍କୁ ମହିମା ପ୍ରଦାନ କରିବ।
ମୁଁ ତୁମ୍ଭମାନଙ୍କୁ କହୁଛି ଯେ, ପରମେଶ୍ୱର ଯିହୂଦୀମାନଙ୍କର
ପୂର୍ବପୁରୁଷମାନଙ୍କୁ ଯାହା ପ୍ରତିଜ୍ଞା ସବୁ ପ୍ରଦାନ କରିଛନ୍ତି
ତାହା ସତ୍ୟ ବୋଲି ପ୍ରମାଣିତ କରିବା ପାଇଁ, ଖ୍ରୀଷ୍ଟ
ଯିହୂଦୀମାନଙ୍କର ସେବକ ହେଲେ। [9]ଅଣଯିହୂଦୀ ଲୋକେ,
ପରମେଶ୍ୱରଙ୍କ ଦ୍ୱାରା ପ୍ରଦତ୍ତ କରୁଣା ପାଇଁ, ତାହାଙ୍କୁ
ମହିମା ପ୍ରଦାନ କରି ପାରିବେ ସେଥିପାଇଁ ମଧ୍ୟ ସେ ଏହା
କଲେ। ଶାସ୍ତ୍ର କୁହେ:

> "ସେଥିପାଇଁ ମୁଁ ଅଣଯିହୂଦୀ ଲୋକଙ୍କ ଭିତରେ
> ତୁମ୍ଭକୁ ଧନ୍ୟବାଦ ଜଣାଇବି, ଓ ତୁମ୍ଭ ନାମର
> ମହିମା ଗାନ କରିବି।"
>
> ଗୀତସଂହିତା ୧୮:୪୯

[10]ଶାସ୍ତ୍ର ଏ ଭଳି ମଧ୍ୟ କୁହେ,

> "ତୁମ୍ଭେ ଅଣଯିହୂଦୀମାନେ, ପରମେଶ୍ୱରଙ୍କର ବଛା
> ହୋଇଥିବା ଲୋକଙ୍କ ସହିତ ପ୍ରସନ୍ନ ରହିବା ଉଚିତ।"
>
> ଦ୍ୱିତୀୟ ବିବରଣ ୩୨:୪୩

[11]ଶାସ୍ତ୍ର ଏ ଭଳି ମଧ୍ୟ କୁହେ,

> "ତୁମ୍ଭେ ଅଣଯିହୂଦୀମାନେ ପ୍ରଭୁଙ୍କର ପ୍ରଶଂସା ଗାନ
> କର, ସମସ୍ତ ଲୋକେ ମଧ୍ୟ ପ୍ରଭୁଙ୍କର ପ୍ରଶଂସା
> କରିବା ଉଚିତ।"
>
> ଗୀତସଂହିତା ୧୧୭:୧

[12]ଯିଶାଇୟ ମଧ୍ୟ କୁହନ୍ତି,

---

**"ଯେଉଁମାନେ ... କରିଛନ୍ତି"** ଗୀତସଂହିତା ୬୯:୯

"ଯିଶୟ*ଙ୍କ ବଂଶରୁ ଜଣେ ପ୍ରକାଶିତ ହେବ।
ସେହି ଲୋକ ଅଣଯିହୂଦୀ ମାନଙ୍କ ଉପରେ ଶାସନ
କରିବେ, ଓ ଅଣଯିହୂଦୀମାନେ ସେହି ଲୋକ ପାଇଁ
ଭରସା ଲାଭ କରିବେ।"

ଯିଶାଇୟ ୧୧:୧୦

୧୩ମୁଁ ସମସ୍ତ ଭରସା ସ୍ରୋତ ପରମେଶ୍ୱରଙ୍କ ଠାରେ
ପ୍ରାର୍ଥନା କରୁଛି ଯେ, ସେ ତୁମ୍ଭମାନଙ୍କ ବିଶ୍ୱାସ କାରଣରୁ
ତୁମ୍ଭ ଜୀବନରେ ସମ୍ପୂର୍ଣ୍ଣ ଆନନ୍ଦ ଓ ଶାନ୍ତି ଆଣି ଦିଅନ୍ତୁ।
ତାହେଲେ ତୁମ୍ଭେ ପ୍ରଚୁର ଭରସା ଲାଭ କରିବ ଓ ପବିତ୍ର
ଆତ୍ମାଙ୍କର ଶକ୍ତି ତୁମ୍ଭ ଜୀବନରେ ଝରିବ।

## ପାଉଲ ନିଜ କାର୍ଯ୍ୟ ବିଷୟରେ କହୁଛନ୍ତି

୧୪ମୋ ଭାଇ ଓ ଭଉଣୀମାନେ! ମୁଁ ଜାଣେ ଯେ
ତୁମ୍ଭେମାନେ ଭଲ ଗୁଣରେ ପରିପୂର୍ଣ୍ଣ। ତୁମ୍ଭମାନଙ୍କର ପ୍ରଚୁର
ଜ୍ଞାନ ଅଛି ଓ ତୁମ୍ଭେମାନେ ପରସ୍ପରକୁ ଶିକ୍ଷା ଦେଇ
ପାରିବ। ୧୫କିନ୍ତୁ ପୁନର୍ବାର ମନେ ପକାଇବା ପାଇଁ ମୁଁ
ଖୋଲାଖୋଲି ଭାବେ କେତେକ ବିଷୟରେ ଲେଖିଥିଲି।
ପରମେଶ୍ୱରଙ୍କ ଠାରୁ ବିଶେଷ ଅନୁଗ୍ରହଦାନ ପାଇଥିବାରୁ, ମୁଁ
ଏପରି କଲି। ୧୬ପରମେଶ୍ୱର ମୋତେ ଖ୍ରୀଷ୍ଟ ଯୀଶୁଙ୍କର
ଜଣେ ସେବକ ହୋଇ ଅଣଯିହୂଦୀମାନଙ୍କୁ ସାହାଯ୍ୟ କରିବା
ପାଇଁ ନିଯୁକ୍ତ କଲେ। ସେ ମୋତେ ସୁସମାଚାର ଶିକ୍ଷା
ଦେବାର ପବିତ୍ର କାର୍ଯ୍ୟ କରିବା ନିମନ୍ତେ ନିଯୁକ୍ତ କଲେ।
ଏପରି କରିବା ଉଦ୍ଦେଶ୍ୟ ହେଲା ଯେ, ଅଣଯିହୂଦୀମାନେ
ଉତ୍ସର୍ଗଦାନ ସ୍ୱରୂପ ହେବେ ଯାହା କି ପରମେଶ୍ୱର ଗ୍ରହଣ
କରିବେ। ଏହି ଦାନ (ଲୋକମାନେ) ପରମେଶ୍ୱରଙ୍କ ପାଇଁ
ପବିତ୍ର ଆତ୍ମା ଦ୍ୱାରା ପବିତ୍ର କରାଗଲେ।
୧୭ମୁଁ ଗର୍ବ କରେ ଯେ, ଖ୍ରୀଷ୍ଟ ଯୀଶୁଙ୍କଠାରେ ରହି ମୁଁ
ପରମେଶ୍ୱରଙ୍କ ସେବା କରିଛି। ୧୮ମୁଁ ନିଜେ କରିଥିବା
କାର୍ଯ୍ୟ ବିଷୟରେ କିଛି କହିବି ନାହିଁ। ମୁଁ କେବଳ ସେହି
କଥା ଗୁଡ଼ିକ କହିବି, ଯାହା ଖ୍ରୀଷ୍ଟ ଯୀଶୁ ମୋ ଦ୍ୱାରା
କରିଛନ୍ତି ଯଦ୍ଦ୍ୱାରା ଅଣଯିହୂଦୀମାନେ ପରମେଶ୍ୱରଙ୍କ ବାଧ୍ୟ
ହେବେ। ସେମାନେ ମୋ କଥା ଓ କାର୍ଯ୍ୟ ପାଇଁ
ପରମେଶ୍ୱରଙ୍କୁ ମାନିଛନ୍ତି। ୧୯ସେମାନେ ଆଶ୍ଚର୍ଯ୍ୟ କର୍ମ ଓ
ଅଦ୍ଭୁତ ଘଟଣା ମାଧ୍ୟମରେ ପବିତ୍ର ଆତ୍ମାଙ୍କର ଶକ୍ତିରେ
ପରମେଶ୍ୱରଙ୍କୁ ମାନିଛନ୍ତି। ମୁଁ ଯିରୂଶାଲମଠାରୁ ଇଲ୍ଲୁରିକ
ଚାରିପଟ ଅଞ୍ଚଳରେ ଖ୍ରୀଷ୍ଟଙ୍କ ସୁସମାଚାର ପ୍ରଚାର କଲି ଓ
ମୋର ସେହି କାର୍ଯ୍ୟସମାପ୍ତ କଲି। ୨୦ମୁଁ ସେହି ଜାଗା
ମାନଙ୍କରେ ଯୀଶୁ ଖ୍ରୀଷ୍ଟଙ୍କର ସୁସମାଚାର ପ୍ରଚାର କରିବାକୁ
ଇଚ୍ଛା କରେ, ଯେଉଁଠାରେ ଖ୍ରୀଷ୍ଟଙ୍କର ନାମ ମଧ୍ୟ ଲୋକମାନେ
ଶୁଣି ନାହାଁନ୍ତି। ଏପରି କରିବା ଉଦ୍ଦେଶ୍ୟ ଯେ, ଅନ୍ୟ
ଲୋକଦ୍ୱାରା ଆରମ୍ଭ କରା ଯାଇଥିବା ମୂଳଦୁଆ ଉପରେ
କାର୍ଯ୍ୟକୁ ଯେପରି ମୁଁ ଆଉଥରେ ନ କରେ। ୨୧କିନ୍ତୁ
ଶାସ୍ତ୍ରରେ ଏହି ପରି ଲେଖା ହୋଇଛି:

"ଯେଉଁ ଲୋକମାନଙ୍କୁ ତାହାଙ୍କ (ଖ୍ରୀଷ୍ଟ) ବିଷୟରେ
କୁହାଯାଇ ନାହିଁ, ସେମାନେ ତାହାଙ୍କୁ ଦେଖିବେ। ଓ
ଯେଉଁମାନେ ତାହାଙ୍କ ବିଷୟରେ ଶୁଣି ନାହାଁନ୍ତି,
ସେମାନେ ବୁଝିବେ।"

ଯଶାଇୟ ୫୨:୧୫

## ପାଉଲଙ୍କର ରୋମ ଯିବା ଯୋଜନା

୨୨ସେଥିପାଇଁ ଅନେକ ଥର ମୋତେ ତୁମ୍ଭମାନଙ୍କ
ପାଖକୁ ଆସିବା ପାଇଁ ଅଟକାଇ ଦିଆ ଯାଇଛି।
୨୩ଏବେ ଏହି ଅଂଚଳରେ ମୁଁ ମୋର କାର୍ଯ୍ୟ ସମାପ୍ତ
କରି ସାରିଛି। ବିଗତ ଅନେକ ବର୍ଷଧରି ମୁଁ ତୁମ୍ଭମାନଙ୍କ
ପାଖକୁ ଆସିବା ପାଇଁ ଇଚ୍ଛା କରୁଥିଲି। ୨୪ଅତଏବ ମୁଁ
ଯେତେବେଳେ ସ୍ପେନକୁ ଯିବି, ସେତେବେଳେ ତୁମ୍ଭମାନଙ୍କୁ
ଦେଖା କରିବ। ଆଶା କରେ ଯେ ସ୍ପେନକୁ ଯିବା ବାଟରେ
ମୁଁ ତୁମ୍ଭମାନଙ୍କୁ ଦେଖା କରିବ, ସେଠାରେ ରହିବ ଓ
ଆନନ୍ଦ ଉପଭୋଗ କରିବ। ତୁମ୍ଭେମାନେ ମୋତେ ମୋର
ଯାତ୍ରାରେ ମଧ୍ୟ ସାହାଯ୍ୟ କରି ପାରିବ। ୨୫ପରମେଶ୍ୱରଙ୍କ
ଲୋକଙ୍କ ସେବାରେ ଏବେ ମୁଁ ଯିରୁଶାଲମ ଯାଉଛି।
୨୬ଯିରୁଶାଲମଠାରେ ଥିବା ପରମେଶ୍ୱରଙ୍କର ଲୋକମାନେ
ଗରିବ ଅଟନ୍ତି, ଏବଂ ମାକିଦନିଆ ଓ ଆଖାୟାର ବିଶ୍ୱାସୀ
ଲୋକେ ଅର୍ଥସଂଗ୍ରହ କରିବା ପାଇଁ ସ୍ଥିର କରିଛନ୍ତି। ତେଣୁ
ସେମାନେ ସେମାନଙ୍କର ସହାୟ ହୋଇପାରିବେ। ୨୭ସେମାନେ
ଖୁସିରେ ଏହା କରିଛନ୍ତି। ଏହା ସେମାନଙ୍କର କର୍ତ୍ତବ୍ୟ ମଧ୍ୟ
ଅଟେ। କାରଣ ଯିହୂଦୀମାନଙ୍କର ଆତ୍ମିକ ଆଶୀର୍ବାଦର ଅଂଶ
ଅଣଇହୁଦୀମାନେ ପାଇଛନ୍ତି। ଅତଏବ ଯିହୂଦୀମାନଙ୍କର ଉନ୍ନତି
ପାଇଁ ଅଣଯିହୂଦୀମାନେ ସେମାନଙ୍କର ଜାଗତିକ ଆଶୀର୍ବାଦକୁ
ବ୍ୟବହାର କରିବା ଉଚିତ। ୨୮ଅତଏବ, ମୁଁ ଏହି ସେବାମୂଳକ
କର୍ମ ଏକାଠି ଶେଷ କରିସାରିବା ପରେ ଏବଂ ଏହି ଧନକୁ
ସୁରକ୍ଷିତ ଭାବରେ ଯିରୁଶାଲମର ଗରିବମାନଙ୍କୁ ଦେଲା
ପରେ ତୁମ୍ଭମାନଙ୍କ ନଗର ବାଟ ଦେଇ ସ୍ପେନ ଯିବି। ଗଲା
ବାଟରେ ମୁଁ ତୁମ୍ଭମାନଙ୍କୁ ଦେଖା କରିବ ଓ ସେଠାରେ
ରହିବ। ୨୯ମୁଁ ଜାଣେ ଯେ, ଯେତେବେଳେ ମୁଁ ତୁମ୍ଭମାନଙ୍କ
ପାଖକୁ ଆସିବି, ସେତେବେଳେ ଖ୍ରୀଷ୍ଟଙ୍କର ସମ୍ପୂର୍ଣ୍ଣ ଆଶୀର୍ବାଦ
ନେଇ ଆସିବି।
୩୦ଭାଇ ଓ ଭଉଣୀମାନେ! ମୁଁ ତୁମ୍ଭମାନଙ୍କୁ ପ୍ରଭୁ ଯୀଶୁ
ଖ୍ରୀଷ୍ଟଙ୍କ ମାଧ୍ୟମରେ ଅନୁରୋଧ କରେ ଯେ, ତୁମ୍ଭେମାନେ
ପରମେଶ୍ୱରଙ୍କଠାରେ ମୋ ପାଇଁ ପ୍ରାର୍ଥନା କରିବା ଦ୍ୱାରା
ମୋତେ ସାହାଯ୍ୟ କର। ତୁମ୍ଭେମାନେ ପ୍ରଭୁ ଯୀଶୁ ଓ
ଆତ୍ମାର ପ୍ରେମ ଲାଭ କରୁଥିବା ଦୃଷ୍ଟିରୁ ଏପରି କର।
୩୧ପ୍ରାର୍ଥନା କର ଯେ, ମୁଁ ଯିହୁଦା ଠାରେ ଅବିଶ୍ୱାସୀଲୋକମାନଙ୍କ
କବଳରୁ ରକ୍ଷା ପାଇବି। ଏବଂ ଏଥିପାଇଁ ମଧ୍ୟ ପ୍ରାର୍ଥନା
କର ଯେ, ଯିରୂଶାଲମଠାରେ ଯାହା ସାହାଯ୍ୟ ପହଞ୍ଚିବ
ସେଥିରେ ପରମେଶ୍ୱରଙ୍କ ଲୋକେ ପ୍ରସନ୍ନ ହେବେ। ୩୨ତା'ପରେ
ଯଦି ପରମେଶ୍ୱର ଇଚ୍ଛା କରନ୍ତି ତା'ହେଲେ ମୁଁ ତୁମ୍ଭମାନଙ୍କ
ପାଖକୁ ଆନନ୍ଦର ସହ ଆସିବି ଓ ବିଶ୍ରାମ ନେବି।
୩୩ଶାନ୍ତିଦାତା ପରମେଶ୍ୱର ତୁମ୍ଭ ସମସ୍ତଙ୍କ ସହିତ ଥାଆନ୍ତୁ।
ଆମେନ୍।

---

**ଯିଶୟ** ଦାଉଦଙ୍କ ବାପା। ଯୀଶୁ ତାଙ୍କ ବଂଶରେ ଜାତ

## ପବିତ୍ର ଆତ୍ମାଙ୍କର ଅନୁଗ୍ରହଦାନ

୧୨ ଭାଇ ଓ ଭଉଣୀମାନେ! ଆତ୍ମିକ ଦାନଗୁଡ଼ିକ
ବିଷୟରେ ମୁଁ ତୁମ୍ଭମାନଙ୍କୁ ବୁଝାଇବାକୁ ଇଚ୍ଛା
କରୁଛି। ୨ତୁମ୍ଭେମାନେ ମନେପକାଅ ଯେ ବିଶ୍ୱାସୀ ହେବା
ପୂର୍ବରୁ ତୁମ୍ଭେମାନେ କିପରି ବିପଥଗାମୀ ହୋଇ ମୂର୍ତ୍ତିପୂଜା
କରିବାକୁ ଯାଉଥିଲ। ୩ସେଥିପାଇଁ ମୁଁ କହୁଛି ଯେ,
ପରମେଶ୍ୱରଙ୍କ ଆତ୍ମାପ୍ରାପ୍ତ ଲୋକ "ଯୀଶୁ ଅଭିଶପ୍ତ" ବୋଲି
କଦାପି କହିବ ନାହିଁ। ପବିତ୍ର ଆତ୍ମାଙ୍କ ସାହାଯ୍ୟ ବିନା
କୌଣସି ଲୋକ "ଯୀଶୁ ପ୍ରଭୁ ଅଟନ୍ତି" ବୋଲି କହିବ
ନାହିଁ।

୪ଆତ୍ମାଙ୍କ ଦାନ ଅନେକ ପ୍ରକାରର, କିନ୍ତୁ ସେଗୁଡ଼ିକ
ସେହି ଏକ ପବିତ୍ର ଆତ୍ମାଙ୍କଠାରୁ ଆସିଥାଏ। ୫ସେବା ମଧ୍ୟ
ଅନେକ ପ୍ରକାରର, ମାତ୍ର ଆମ୍ଭେ ଯାହାଙ୍କର ସେବା କରୁ,
ସେହି ପ୍ରଭୁ ଏକ ଅଟନ୍ତି। ୬ପରମେଶ୍ୱର ଆମ୍ଭମାନଙ୍କ
ଜୀବନର ଅନେକ ପ୍ରକାର କାର୍ଯ୍ୟ କରନ୍ତି, ମାତ୍ର ଯେ
ଏସମସ୍ତ କରନ୍ତି, ସେହି ପରମେଶ୍ୱର ଏକ ଅଟନ୍ତି।
୭ପ୍ରତ୍ୟେକ ଲୋକଠାରେ ଆତ୍ମାର ବିଶେଷ ଗୁଣ ଗୁଡ଼ିକ
ଦେଖିବାକୁ ମିଳେ। ୮ଏହିଗୁଡ଼ିକ ଅନ୍ୟମାନଙ୍କର ଭଲ ପାଇଁ
ଦିଆ ଯାଇଛି। ଜଣେ ଲୋକକୁ ଆତ୍ମାଙ୍କ ଦ୍ୱାରା ବୁଦ୍ଧିରେ
କଥା କହିବାକୁ ଦକ୍ଷତା ଦିଆ ହୋଇଛି, ଓ ଅନ୍ୟ ଜଣକୁ
ସେହି ଆତ୍ମାଙ୍କ ଦ୍ୱାରା ଜ୍ଞାନର କଥା କହିବାକୁ ଯୋଗ୍ୟତା
ଦିଆ ହୋଇଛି। ୯ସେହି ଏକମାତ୍ର ଆତ୍ମା ଜଣେ ଲୋକକୁ
ବିଶ୍ୱାସ ଓ ଅନ୍ୟଜଣକୁ ପୂର୍ଣ୍ଣ ଆରୋଗ୍ୟ କରିବା ଶକ୍ତି
ଦାନ କରନ୍ତି। ୧୦ଆତ୍ମା ଅନ୍ୟଜଣକୁ ଆଶ୍ଚର୍ଯ୍ୟକାର୍ଯ୍ୟ କରିବା
ଶକ୍ତି ଓ ଅନ୍ୟ ଜଣକୁ ଭଲ ଓ ମନ୍ଦ ଆତ୍ମା ଭିତରେ
ପାର୍ଥକ୍ୟ ଦେଖି ପାରିବା ଶକ୍ତି ପ୍ରଦାନ କରନ୍ତି। କାହାକୁ
ଭିନ୍ନଭିନ୍ନ ପ୍ରକାରର ଭାଷା କହିପାରିବା ଶକ୍ତି ଦିଆ ଯାଇଛି,
ତ ଅନ୍ୟ କାହାକୁ ସେହି ଭାଷାଗୁଡ଼ିକର ଅର୍ଥ କରିବାର
ଶକ୍ତି ଦିଆଯାଇଛି। ୧୧ସେହି ଏକମାତ୍ର ଆତ୍ମା ଆପଣା
ଇଚ୍ଛାନୁସାରେ ଏହି ସମସ୍ତ କାର୍ଯ୍ୟ କରନ୍ତି। ସେହି ଆତ୍ମା
ପ୍ରତ୍ୟେକ ବ୍ୟକ୍ତିଙ୍କୁ କ'ଣ ଦିଆଯିବ, ତାହା ସ୍ଥିର କରନ୍ତି।

## ଖ୍ରୀଷ୍ଟଙ୍କର ଶରୀର

୧୨ଆମ୍ଭର ଶରୀର ହେଉଛି ଏକ, କିନ୍ତୁ ତାହାର
ଅଙ୍ଗପ୍ରତ୍ୟଙ୍ଗ ଅନେକ। ଶରୀରର ଅଙ୍ଗପ୍ରତ୍ୟଙ୍ଗ ଅନେକ
ହେଲେ ହେଁ ଶରୀର ହେଉଛି ଏକ। ସେହିପରି ମଧ୍ୟ
ଖ୍ରୀଷ୍ଟ ଏକ। ୧୩ଆମ୍ଭ ଭିତରୁ କେତେକ ହେଉଛୁ ଯିହୂଦୀ,
କେତେକ ଅଣଯିହୂଦୀ, ଆମ୍ଭ ଭିତରୁ କେତେକ କ୍ରୀତଦାସ
ଓ କେତେକ ସ୍ୱାଧୀନ। କିନ୍ତୁ ଆମ୍ଭେମାନେ ସମସ୍ତେ
ଗୋଟିଏ ଆତ୍ମା ଦ୍ୱାରା ଏକ ଶରୀର ହେବା ଉଦ୍ଦେଶ୍ୟରେ
ଡୁବନ ପ୍ରାପ୍ତ ହୋଇ ଅଛୁ। ଆମ୍ଭ ସମସ୍ତଙ୍କୁ ଗୋଟିଏ ଆତ୍ମା
ମଧ୍ୟ ପ୍ରଦାନ କରାଯାଇଛି।

୧୪ମାନବ ଶରୀର ତ ଏକଅଙ୍ଗ ନୁହେଁ, ମାତ୍ର ଅନେକ
ଗୁଡ଼ିଏ ଅଙ୍ଗ ଦ୍ୱାରା ନିର୍ମିତ। ୧୫ଯଦି ଗୋଡ଼ କୁହେ: "ମୁଁ
ହାତ ନୁହେଁ, ଅତଏବ, ମୁଁ ଶରୀରର ଅଙ୍ଗ ନୁହେଁ।" କିନ୍ତୁ
ଏହା କହିବା ଦ୍ୱାରା କ'ଣ ସେ ଶରୀରର ଅଙ୍ଗ ହୋଇ
ରହିବ ନାହିଁ କି? ୧୬କାନ କହିପାରେ: "ମୁଁ ଆଖି ନୁହେଁ,
ଅତଏବ ମୋର ଶରୀରର ଅଙ୍ଗ ନୁହେଁ," କିନ୍ତୁ ଏହା
କହିବା ଦ୍ୱାରା କ'ଣ ସେ ଶରୀରର ଅଙ୍ଗ ହୋଇ ରହିବ
ନାହିଁ କି? ୧୭ସଂପୂର୍ଣ୍ଣ ଶରୀର ଗୋଟିଏ ଆଖି ହୋଇଥାନ୍ତା,
ତେବେ ସେ ଶରୀର ଶୁଣିପାରନ୍ତା କିପରି? ଯଦି ସଂପୂର୍ଣ୍ଣ
ଶରୀରଟି ଗୋଟିଏ କାନ ହୋଇଥାଆନ୍ତା ତା' ହେଲେ
ଶରୀର ଶୁଙ୍ଘିବା ପାଇଁ ସମର୍ଥ ହୁଅନ୍ତା କିପରି? ୧୮-୧୯ଯଦି
ସଂପୂର୍ଣ୍ଣ ଶରୀରର ଅଙ୍ଗ କେବଳ ସେହି ଗୋଟିଏ ଅଙ୍ଗ
ମାତ୍ର ହୋଇଥାନ୍ତା ତା' ହେଲେ ଶରୀର ନ ଥାନ୍ତା। କିନ୍ତୁ
ପରମେଶ୍ୱର ଯେପରି ଠିକ୍ ମନେ କଲେ ପ୍ରତ୍ୟେକ ଅଙ୍ଗକୁ
ଶରୀରରେ ସେହିଭଳି ସ୍ଥାନ ଦେଲେ। ୨୦ତେଣୁ ପ୍ରକୃତରେ
ଅଙ୍ଗପ୍ରତ୍ୟଙ୍ଗ ଅନେକ, କିନ୍ତୁ ଶରୀର ଗୋଟିଏ।

୨୧ଆଖି ହାତକୁ କେବେହେଲେ କହି ପାରିବ ନାହିଁ
ଯେ, "ତୋଠାରେ ମୋର ଆବଶ୍ୟକତା ନାହିଁ।" ସେହିଭଳି
ମୁଣ୍ଡ ପାଦକୁ କହି ପାରିବ ନାହିଁ ଯେ, "ତୋ'ଠାରେ
ମୋର ଆବଶ୍ୟକତା ନାହିଁ।" ୨୨ବରଂ ଅନ୍ୟ ପକ୍ଷରେ
ଶରୀରର ଯେଉଁ ଅଙ୍ଗଗୁଡ଼ିକ ଦୁର୍ବଳ ବୋଲି ବୋଧ ହୁଏ,
ସେହିସବୁ ପ୍ରକୃତରେ ଗୁରୁତ୍ୱପୂର୍ଣ୍ଣ ଅଟେ। ୨୩ଶରୀରର
ଯେଉଁ ଅଙ୍ଗଗୁଡ଼ିକୁ ଆମେ କମ୍ ଆଦରର ବୋଲି ଭାବୁ,
ସେଗୁଡ଼ିକ ପ୍ରତି ଆମେ ଅଧିକ ଧ୍ୟାନ ଦେଉ। ଯେଉଁ
ଅଙ୍ଗଗୁଡ଼ିକୁ ଅନ୍ୟମାନେ ନ ଦେଖନ୍ତୁ ବୋଲି ଆମେ ଚାହୁଁ,
ସେ ଅଙ୍ଗଗୁଡ଼ିକ ପ୍ରତି ଆମେ ବିଶେଷ ଧ୍ୟାନ ଦେଉ।
୨୪ଆମ୍ଭ ଶରୀରର ସୁନ୍ଦର ଅଙ୍ଗଗୁଡ଼ିକ ପ୍ରତି ଧ୍ୟାନ ଦେବା
ଆବଶ୍ୟକ ହୋଇ ନ ଥାଏ। କିନ୍ତୁ ପରମେଶ୍ୱର ଆଦରହୀ
ଅଙ୍ଗ ଗୁଡ଼ିକ ଅଧିକ ସମ୍ମାନ ଦେଇ ଶରୀରକୁ ଗଠନ
କରିଛନ୍ତି। ୨୫ଆମ୍ଭର ଶରୀରରେ ଯେପରି କୌଣସି ବିଭେଦ
ନ ହେଉ, ସେହି ଦୃଷ୍ଟିରୁ ପରମେଶ୍ୱର ଏପରି କରିଛନ୍ତି।
ଦେହର ଅଙ୍ଗଗୁଡ଼ିକ ପରସ୍ପର ସୁଖ ଦୁଃଖର ସହଭାଗୀ
ହୁଅନ୍ତି ବୋଲି ପରମେଶ୍ୱର ଇଚ୍ଛା କଲେ। ୨୬ଯଦି ଶରୀରର
ଗୋଟିଏ ଅଙ୍ଗ କଷ୍ଟ ପାଏ, ତା'ସହିତ ଶରୀରର ଅନ୍ୟ
ଅଙ୍ଗଗୁଡ଼ିକ ମଧ୍ୟ କଷ୍ଟ ପା'ନ୍ତି। ଯଦି ଶରୀରର କୌଣସି
ଅଙ୍ଗ ସମ୍ମାନ ପାଏ ଅନ୍ୟ ସମସ୍ତ ଅଙ୍ଗଗୁଡ଼ିକ ତାହା ସହିତ
ଏକତ୍ର ହୋଇ ଆନନ୍ଦ କରନ୍ତି।

୨୭ତୁମ୍ଭେମାନେ ଖ୍ରୀଷ୍ଟଙ୍କର ଶରୀର ଅଟ। ତୁମ୍ଭେମାନେ
ପ୍ରତ୍ୟେକ ସେହି ଶରୀରର ଅଙ୍ଗ।

୨୮ପରମେଶ୍ୱରଙ୍କ ମଣ୍ଡଳୀରେ ପ୍ରଥମେ ପ୍ରେରିତମାନଙ୍କୁ,
ଦ୍ୱିତୀୟରେ ଭବିଷ୍ୟଦ୍‌ବକ୍ତାମାନଙ୍କୁ, ତୃତୀୟରେ ଶିକ୍ଷକମାନଙ୍କୁ,
ସ୍ଥାନ ଦେଇଛନ୍ତି। ତା'ପରେ, ଆଶ୍ଚର୍ଯ୍ୟ କାର୍ଯ୍ୟ କରୁଥିବା
ଲୋକଙ୍କୁ, ତା'ପରେ ପରୋପକାରୀଙ୍କୁ ତା'ପରେ ନେତୃତ୍ୱ
ନେଉଥିବା ବ୍ୟକ୍ତିଙ୍କୁ, ତା'ପରେ ବିଭିନ୍ନ ଭାଷା କହି
ପାରୁଥିବା ଲୋକଙ୍କୁ ସ୍ଥାନ ଦେଇଛନ୍ତି। ୨୯ସମସ୍ତ ଲୋକ
କ'ଣ ପ୍ରେରିତ? ସମସ୍ତ ଲୋକ କ'ଣ ଭବିଷ୍ୟଦ୍‌ବକ୍ତା?
ସମସ୍ତେ କ'ଣ ଶିକ୍ଷକ? ସମସ୍ତେ କ'ଣ ଆଶ୍ଚର୍ଯ୍ୟକାର୍ଯ୍ୟ
କରୁଥିବା ଲୋକ? ୩୦ସମସ୍ତେ କ'ଣ ଆରୋଗ୍ୟ କରିବାର
ଶକ୍ତି ପାଇଅଛନ୍ତି? ସମସ୍ତେ କ'ଣ ବିଭିନ୍ନ ଭାଷା କହନ୍ତି?
ସମସ୍ତେ କ'ଣ ଏହି ଭାଷାଗୁଡ଼ିକର ଅର୍ଥ କରି ପାରନ୍ତି କି?
୩୧କିନ୍ତୁ ତୁମ୍ଭେମାନେ ପ୍ରକୃତରେ ଆତ୍ମାଙ୍କ ଶ୍ରେଷ୍ଠ ଦାନଗୁଡ଼ିକ
ପାଇବା ପାଇଁ ଏକାନ୍ତ ଚେଷ୍ଟା କରିବା ଉଚିତ।

### ପ୍ରେମ ସର୍ବୋତ୍କୃଷ୍ଟ ଦାନ ଅଟେ

ଏବେ ମୁଁ ସମସ୍ତ ମାର୍ଗ ଅପେକ୍ଷା ଅତିଉତ୍ତମ ମାର୍ଗ
ଦେଖାଇବି ।
୧୩ ଯଦି ମୁଁ ମଣିଷମାନଙ୍କର ବିଭିନ୍ନ ଭାଷାରେ ବା
ସ୍ୱର୍ଗଦୂତଙ୍କ ଭାଷାରେ କହିପାରେ, ମାତ୍ର ମୋଠାରେ
ପ୍ରେମ ନାହିଁ, ତାହାହେଲେ ମୁଁ ଶବ୍ଦ କାରକ ପିଟା ଘଣ୍ଟି
ବା ଝାଞ୍ଜ ଭଳି ଅଟେ । ୨ମୋ ପାଖରେ ଭାବବାଣୀ
କହିବାର ଶକ୍ତି ଥାଇ ପାରେ, ମୁଁ ପରମେଶ୍ୱରଙ୍କ ସମସ୍ତ
ନିଗୂଢ଼ ତତ୍ତ୍ୱ ଜାଣି ଥାଇ ପାରେ, ମୋର ସମସ୍ତ ଜ୍ଞାନ
ଥାଇପାରେ, ପର୍ବତକୁ ସ୍ଥାନାନ୍ତର କରିବା ନିମନ୍ତେ ମୋହର
ସଂମ୍ପୂର୍ଣ୍ଣ ବିଶ୍ୱାସ ଥାଇପାରେ, କିନ୍ତୁ ଯଦି ମୋଠାରେ ପ୍ରେମ
ନାହିଁ, ତା'ହେଲେ ମୁଁ କିଛି ନୁହେଁ । ୩ଯଦି ମୁଁ ମୋର
ସମସ୍ତ ସମ୍ପତ୍ତି ଦରିଦ୍ରକୁ ଖୁଆଇବା ପାଇଁ ଦାନ କରି
ଦେଇପାରେ, ବା ନିଜ ଶରୀରକୁ ଦଗ୍ଧ ହେବା ପାଇଁ
ସମର୍ପଣ କରି ଦେଇପାରେ, ମାତ୍ର ମୋହର ପ୍ରେମ ନ
ଥାଏ, ତେବେ ମୁଁ କିଛି ପାଇବି ନାହିଁ ।
୪ପ୍ରେମ ଦୀର୍ଘ ସହିଷ୍ଣୁ । ପ୍ରେମ ଦୟାବାନ । ପ୍ରେମରେ
ଈର୍ଷା ନ ଥାଏ । ସେ ଗର୍ବ କରେ ନାହିଁ, ସେ ଅହଂକାରୀ
ନୁହେଁ । ୫ପ୍ରେମ ଅନୁଚିତ ବ୍ୟବହାର କରେ ନାହିଁ, ସ୍ୱାର୍ଥ
ଚେଷ୍ଟା କରେ ନାହିଁ, ସହଜରେ ବିରକ୍ତ ହୁଏ ନାହିଁ । ପ୍ରେମ
କେବେହେଲେ ତା'ପ୍ରତି ହୋଇଥିବା ଅପକାରକୁ ମନ
ରଖେ ନାହିଁ । ୬ସେ ଅଧର୍ମରେ କଦାପି ଆନନ୍ଦ କରେ
ନାହିଁ, ମାତ୍ର ସେ ସତ୍ୟରେ ଆନନ୍ଦ କରେ । ୭ପ୍ରେମ ସମସ୍ତ
ବିଷୟ ସହ୍ୟ କରେ । ପ୍ରେମ ସମସ୍ତ ବିଶ୍ୱାସ କରେ;
ସମସ୍ତ ଭରସା କରେ, ସବୁ ବିଷୟରେ ଧୈର୍ଯ୍ୟ ଧରି
ରହେ ।
୮ପ୍ରେମ କଦାପି ଶେଷ ହୁଏ ନାହିଁ । ଯଦି ଭାବବାଣୀ
ଥାଏ, ତାହା ଲୋପ ହେବ, ଅନେକ ଭାଷା କହିବା ଶକ୍ତି
ବନ୍ଦ ହୋଇଯିବ; ଯଦି ଜ୍ଞାନ ଥାଏ ତାହା ଲୋପ ହେବ ।
୯କାରଣ ଆମ୍ଭକୁ ଜ୍ଞାନ ଓ ଭବିଷ୍ୟତ୍‌ବାଣୀ ଆଂଶିକ
ହେବାରୁ ଏହା ଲୋପ ହେବ । ୧୦କିନ୍ତୁ ସିଦ୍ଧ ବିଷୟ
ଉପସ୍ଥିତ ହେଲେ ସମସ୍ତ ଆଂଶିକ ବିଷୟ ଲୋପ ହେବ ।
୧୧ମୁଁ ଯେତେବେଳେ ଶିଶୁଥିଲି, ମୁଁ ଶିଶୁ ପରି କହୁଥିଲି,
ମୁଁ ଶିଶୁ ପରି ବିଚାର କରୁଥିଲି, ମୁଁ ଶିଶୁ ପରି ଯୋଜନା
କରୁଥିଲି । ଯେତେବେଳେ ମୁଁ ବୟସ୍କ ହେଲି, ମୁଁ ସେହି
ଶିଶୁ ବେଳର କଥାଗୁଡ଼ିକୁ ଛାଡ଼ି ଦେଲି । ୧୨ସେହି ପ୍ରକାର
ଆମ୍ଭେ ଗୋଟିଏ ଦର୍ପଣ ସାହାଯ୍ୟରେ ଦେଖୁଛୁ, କିନ୍ତୁ
ସେତେବେଳେ ଆମ୍ଭେ ସ୍ପଷ୍ଟ ଦେଖିବା । ମୁଁ ଏବେ କେବଳ
ଆଂଶିକଭାବରେ ଜାଣିଛି, କିନ୍ତୁ ସେତେବେଳେ ପରମେଶ୍ୱର
ମୋତେ ଯେପରି ଜାଣିଛନ୍ତି, ସେହିପରି ମୁଁ ସଂମ୍ପୂର୍ଣ୍ଣ ଭାବରେ
ଜାଣିବି । ୧୩ଅତଏବ ବିଶ୍ୱାସ, ଭରସା ଓ ପ୍ରେମ ସ୍ଥାୟୀ
ଅଟେ । ଉକ୍ତ ତିନୋଟି ମଧ୍ୟରୁ ପ୍ରେମ ହେଉଛି ସର୍ବୋତ୍କୃଷ୍ଟ ।

### ଆଧ୍ୟାତ୍ମିକ ଦାନଗୁଡ଼ିକୁ ମଣ୍ଡଳୀ ସେବାରେ ଲଗାଅ

୧୪ ପ୍ରେମର ଅନୁସରଣ କର । ଆଧ୍ୟାତ୍ମିକ ଦାନସବୁ
ପାଇବା ପାଇଁ ଏକାନ୍ତ ଚେଷ୍ଟା କର, ବିଶେଷ
ଭାବରେ ଭାବବାଣୀ କହିବାକୁ ଏକାନ୍ତ ଇଚ୍ଛା କର । ୨ମୁଁ
ବୁଝାଇ କହୁଛି: ଯେଉଁଲୋକ ବିଭିନ୍ନ ଭାଷାରେ କଥା
କହିବାକୁ ଦାନ ପାଇଛି, ସେ ପ୍ରକୃତରେ ମନୁଷ୍ୟକୁ ନୁହେଁ
ବରଂ ପରମେଶ୍ୱରଙ୍କ ସହିତ କଥାବାର୍ତ୍ତା କରେ । କେହିହେଲେ
ତା'କଥା ବୁଝି ପାରନ୍ତି ନାହିଁ, ସେ ଆତ୍ମାଙ୍କ ଦ୍ୱାରା ନିଗୂଢ଼
ବିଷୟ କହେ । ୩କିନ୍ତୁ ଯିଏ ଭାବବାଣୀ କହେ, ସେ
ଲୋକମାନଙ୍କୁ ଶକ୍ତି (ଦୃଢ଼ତା), ଉତ୍ସାହ ଓ ସାନ୍ତ୍ୱନାର କଥା
କହେ । ୪ଯେଉଁଲୋକକୁ ବିଭିନ୍ନ ଭାଷାରେ କହିବା ଶକ୍ତି
ପ୍ରାପ୍ତ ହୋଇଛି, ସେ ନିଜକୁ ନିଷ୍ଠା ଜନ୍ମାଏ; କିନ୍ତୁ
ଯେଉଁଲୋକ ଭାବବାଣୀ କହେ, ସେ ମଣ୍ଡଳୀର ନିଷ୍ଠା
ଜନ୍ମାଏ । ୫ତୁମ୍ଭେମାନେ ସମସ୍ତେ ଅନେକ ଗୁଡ଼ିଏ ଭାଷା
କୁହ, ଏହା ମୁଁ ଇଚ୍ଛା କରେ, କିନ୍ତୁ ତୁମ୍ଭେମାନେ ଯେ
ଭାବବାଣୀ କୁହ, ଏହା ମୋହର ଅଧିକ ଇଚ୍ଛା । ଯେଉଁଲୋକ
ଭାବବାଣୀ କହେ, ସେ ବିଭିନ୍ନ ଭାଷା କହି ପାରିବା
ଲୋକଠାରୁ ଶ୍ରେଷ୍ଠ । କିନ୍ତୁ ସେ ଯଦି ସେହି ଭାଷାଗୁଡ଼ିକର
ଅର୍ଥକରିପାରୁଥିବ ତେବେ ସେ ଭାବବାଣୀ କହୁଥିବା ଲୋକ
ସହିତ ସମାନ । ଏହାଦ୍ୱାରା ମଣ୍ଡଳୀକୁ ସାହାଯ୍ୟ ହେବ ।
୬ଭାଇ (ଓ ଭଉଣୀମାନେ)! ଯଦି ମୁଁ ତୁମ୍ଭମାନଙ୍କ
ପାଖରେ ଅନ୍ୟଭାଷାରେ କଥା କହେ, ତା'ହେଲେ ତୁମ୍ଭର
ବା କଣ ଲାଭ ହେବ? କେବଳ ଯଦି ମୁଁ କୌଣସି ନିଗୂଢ଼
କଥା ବା କାର୍ଯ୍ୟ ବା କିଛି ଭବିଷ୍ୟତ୍‌ବାଣୀ ବା କିଛି
ଉପଦେଶର କଥା କୁହେ ତେବେ ତୁମ୍ଭମାନଙ୍କର ପ୍ରକୃତରେ
ଲାଭ ହେବ । ୭ଅନ୍ୟଥା ମୋର କଥା ତୁମ୍ଭମାନଙ୍କ ପାଇଁ
କୌଣସି ନିର୍ଜୀବ ବଂଶୀ ବା ବୀଣାର ଧ୍ୱନି ତୁଲ୍ୟ ହେବ ।
ଯଦି କୌଣସି ବାଦ୍ୟ ଯନ୍ତ୍ରର ସ୍ୱରଗୁଡ଼ିକରେ ପାର୍ଥକ୍ୟ ନ
ରହିବ, ତା' ହେଲେ ଜଣେ କିପରି ଜାଣି ପାରିବ ଯେ,
ବଂଶୀ ବା ବୀଣା କ'ଣ ବାଜୁଅଛି? ୮ଯୁଦ୍ଧରେ ଯଦି ତୂରୀଟି
ସ୍ପଷ୍ଟ ଭାବରେ ନ ଶୁଭେ ତା'ହେଲେ ସୈନିକଗଣ ଯୁଦ୍ଧ
ପାଇଁ ପ୍ରସ୍ତୁତ ହେବାର ସମୟ ଜାଣି ପାରିବେ ନାହିଁ ।
୯ସେହିଭଳି ତୁମ୍ଭେମାନେ ଜିହ୍ୱା ଦ୍ୱାରା ଯଦି ସ୍ପଷ୍ଟ ଭାବରେ
କଥା ନ କହିବ, ତା' ହେଲେ କୌଣସି ଲୋକ କିଛି
ବୁଝି ପାରିବ ନାହିଁ । ତାହା ପବନରେ କଥା କହିଲାପରି
ହେବ । ୧୦ଏହା ସତ୍ୟ ଯେ, ସଂସାରରେ ଅନେକ ପ୍ରକାରର
ଭାଷା ଅଛି ଓ ସେ ସବୁଗୁଡ଼ିକ ଅର୍ଥପୂର୍ଣ୍ଣ । ୧୧ଅତଏବ, ଯଦି
ଜଣକର କଥା ଶୁଣି ତାହା ବୁଝି ନ ପାରେ ତା'ହେଲେ
ସେହି କଥା ମୋତେ ଅଦ୍ଭୁତ ମନେହେବ । ୧୨ତୁମ୍ଭପାଇଁ
ମଧ୍ୟ ଏହା ପ୍ରଯୁଜ୍ୟ । ତୁମ୍ଭେମାନେ ଆଧ୍ୟାତ୍ମିକ ଦାନ ପାଇବା
ପାଇଁ ଅତି ଉତ୍ସୁକ । ଅତଏବ, ମଣ୍ଡଳୀର ନିଷ୍ଠା ନିମନ୍ତେ
ଆତ୍ମିକ ଦାନ ସବୁ ପ୍ରଚୁର ପରିମାଣରେ ପାଇବାକୁ ଚେଷ୍ଟା
କର ।
୧୩ଅତଏବ, ଯିଏ ଅନ୍ୟ ଭାଷାରେ କହୁଛି, ସେ ଯେପରି
ତାହା ବୁଝାଇ ପାରିବ, ଏଥିପାଇଁ ପ୍ରାର୍ଥନା କରିବା ଉଚିତ ।
୧୪ଯଦି ମୁଁ ଅନ୍ୟ ଭାଷାରେ ପ୍ରାର୍ଥନା କରୁଛି, ତା'ହେଲେ
ମୋର ଆତ୍ମା ପ୍ରାର୍ଥନା କରେ, ମୋର ବୁଦ୍ଧି (ମନ) କିଛି
କରେ ନାହିଁ । ୧୫ତାହାହେଲେ ମୋର କ'ଣ କରିବା
ଉଚିତ? ମୁଁ ମୋହର ଆତ୍ମା ଦ୍ୱାରା ପ୍ରାର୍ଥନା କରିବି ଓ
ବୁଦ୍ଧିଦ୍ୱାରା ମଧ୍ୟ ପ୍ରାର୍ଥନା କରିବି । ପୁଣି ଆତ୍ମାଦ୍ୱାରା ସ୍ତୁତିଗାନ
କରିବି ଓ ବୁଦ୍ଧିସହ ମଧ୍ୟ ସ୍ତୁତିଗାନ କରିବି । ୧୬ତୁମ୍ଭେମାନେ

ଯଦି ଆତ୍ମା ଦ୍ୱାରା ପରମେଶ୍ୱରଙ୍କ ପ୍ରଶଂସା କର, ତେବେ
ସାଧାରଣ ଲୋକ ତୁମ୍ଭକଥା ନ ବୁଝିବାରୁ କିପରି ତୁମ୍ଭ
ଧନ୍ୟବାଦରେ "ଆମେନ୍" କହିବେ? [୧୭]ତୁମ୍ଭେମାନେ
ପରମେଶ୍ୱରଙ୍କୁ ପ୍ରକୃତରେ ଭଲ ଭାବରେ ଧନ୍ୟବାଦ ଜଣାଉଛ,
କିନ୍ତୁ ତା'ଦ୍ୱାରା ଅନ୍ୟଲୋକ ଆଧ୍ୟାତ୍ମିକ ଲାଭ ପାଉ ନାହାଁନ୍ତି।

[୧୮]ମୁଁ ତୁମ୍ଭ ସମସ୍ତଙ୍କ ଅପେକ୍ଷା ଅଧିକ ରୂପେ ବିଭିନ୍ନ
ଭାଷାଗୁଡ଼ିକରେ କଥା କହିବାର ଦାନ ପାଇଛି ବୋଲି
ପରମେଶ୍ୱରଙ୍କୁ ଧନ୍ୟବାଦ ଦେଉଛି। [୧୯]କିନ୍ତୁ ମଣ୍ଡଳୀରେ
ଅନ୍ୟ ଭାଷାରେ ହଜାର ହଜାର କଥା କହିବା ଅପେକ୍ଷା
ବରଂ ସେମାନେ ବୁଝୁଥିବା ପାଞ୍ଚୋଟି କଥା କହିବାକୁ ଭଲ
ପାଏ। ଏହାଦ୍ୱାରା ମୁଁ ନିଜେ ବୁଝି ପାରିବି ଓ ଅନ୍ୟ
ଲୋକମାନଙ୍କୁ ଶିକ୍ଷା ଦେଇ ପାରିବି।

[୨୦]ଭାଇ ଓ ଭଉଣୀମାନେ, ବୁଦ୍ଧିରେ ପିଲାମାନଙ୍କ ପରି
ହୁଅନାହିଁ ବରଂ ମନ୍ଦ ବିଷୟରେ ଶିଶୁ ପରି ହୁଅ ଓ
ବୁଦ୍ଧିରେ ପୂର୍ଣ୍ଣ ବୟସ୍କ ହୁଅ। [୨୧]ଶାସ୍ତ୍ରରେ ଲେଖାଅଛି:

> "ବିଦେଶୀୟ ଭାଷାବାଦୀମାନଙ୍କ ଦ୍ୱାରା ଓ
> ବିଦେଶୀୟମାନଙ୍କ ମୁଖ ଦ୍ୱାରା ଆମ୍ଭେ ଏହି ଲୋକମାନଙ୍କୁ
> କଥା କହିବା, ତଥାପି ଏହି ଲୋକମାନେ ଆମ୍ଭକଥା
> ଶୁଣିବେ ନାହିଁ।"
>
> ଯିଶାୟ ୨୮:୧୧-୧୨

ଏହା ପରମେଶ୍ୱର କହନ୍ତି

[୨୨]ଏଣୁ ବିଭିନ୍ନ ଭାଷାରେ କଥା କହିବା ବିଶ୍ୱାସୀମାନଙ୍କ
ପାଇଁ ଚିହ୍ନ ସ୍ୱରୂପେ ନୁହେଁ, ମାତ୍ର ଅବିଶ୍ୱାସୀମାନଙ୍କ
ନିମନ୍ତେ ଚିହ୍ନସ୍ୱରୂପେ, ଭାବବାଣୀ କହିବା ଅବିଶ୍ୱାସୀମାନଙ୍କ
ନିମନ୍ତେ ଚିହ୍ନସ୍ୱରୂପ ନୁହେଁ, ମାତ୍ର ବିଶ୍ୱାସୀମାନଙ୍କ ନିମନ୍ତେ
ଚିହ୍ନ ସ୍ୱରୂପ। [୨୩]ଯଦି ସମସ୍ତ ମଣ୍ଡଳୀ ସମବେତ ହୁଅନ୍ତି ଓ
ସମସ୍ତେ ଅନ୍ୟଭାଷାରେ କଥା କହନ୍ତି, ପୁଣି ସାଧାରଣ ଓ
ଅବିଶ୍ୱାସୀ ଲୋକମାନେ ଆସନ୍ତି, ସେମାନେ ଯଦି ବୁଝି ନ
ପାରନ୍ତି, ତାହାହେଲେ ସେମାନେ ତୁମ୍ଭକୁ ପାଗଳ କହିବେ।
[୨୪]କିନ୍ତୁ ଯଦି ସମସ୍ତେ ଭାବବାଣୀ କହନ୍ତି, ଜଣେ ଅବିଶ୍ୱାସୀ
ବା ସାଧାରଣ ଲୋକ ଆସେ ତେବେ ତା'ର ଦୋଷ
ତୁମ୍ଭକୁ ଦେଖାଯିବ ଓ ତୁମ୍ଭ କଥା ଦ୍ୱାରା ସେ ବିଗ୍ଭରିତ
ହେବ। [୨୫]ତାହାର ହୃଦୟର ଗୁପ୍ତ ବିଷୟସବୁ ପ୍ରକାଶିତ
ହେବ, ସେଥିରେ ସେ ମସ୍ତକ ନତକରି ପରମେଶ୍ୱର ଯେ
ତୁମ୍ଭମାନଙ୍କ ମଧ୍ୟରେ ଅଛନ୍ତି, ଏହା ସ୍ୱୀକାର କରି ପରମେଶ୍ୱରଙ୍କ
ଉପାସନା କରିବ।

## ତୁମ୍ଭମାନଙ୍କ ସଭାଗୁଡ଼ିକ ମଣ୍ଡଳୀକୁ ସାହାଯ୍ୟ କରିବା ଉଚିତ

[୨୬]ତା'ହେଲେ, ଭାଇ (ଓ ଭଉଣୀ)ମାନେ, ତୁମ୍ଭେ କ'ଣ
କରିବା ଉଚିତ? ତୁମ୍ଭେ ଯେତେବେଳେ ଏକାଠି ହେଉଛ,
ତୁମ୍ଭମାନଙ୍କ ମଧ୍ୟରେ କେହି ଗୀତ ବା ଶିକ୍ଷା ବା ପରମେଶ୍ୱରଙ୍କ
ନୂତନ ସତ୍ୟ, ଅନ୍ୟଭାଷା ବା ଭାଷାର ଅର୍ଥ କହିଥାଏ।
ସମସ୍ତ ବିଷୟ ମଣ୍ଡଳୀର ନିଷ୍ଠା ନିମନ୍ତେ କରାଯାଉ। [୨୭]ଯଦି
କିଏ ଅନ୍ୟ ଭାଷାରେ କହୁଛି, ତା'ହେଲେ ମାତ୍ର ଦୁଇ ବା
ତିନିଜଣ ଲୋକ ଏପରି କହିବା ଉଚିତ ଓ ଅନ୍ୟଜଣେ
ସେମାନେ ଯାହାସବୁ କହେ ତାର ଅନୁବାଦ କରିବା
ଉଚିତ୍। [୨୮]କିନ୍ତୁ ଯଦି ଜଣେ ଅନୁବାଦକାରୀ ନାହାଁନ୍ତି,
ତା'ହେଲେ ଯେଉଁମାନେ ଅନ୍ୟ ଭାଷାରେ କହିବା ପାଇଁ
ଇଚ୍ଛା କରନ୍ତି, ସେମାନେ ମଣ୍ଡଳୀ ସଭାରେ ଚୁପ୍ ରହିବା
ଉଚିତ। ସେ କେବଳ ନିରୋଳାରେ ପରମେଶ୍ୱରଙ୍କ ସହିତ
କଥା କହିବା ଉଚିତ।

[୨୯]ଆହୁରି ମଧ୍ୟ କେବଳ ଦୁଇ ବା ତିନିଜଣ, ଭାବବାଦୀ
କହିବା ଉଚିତ। ଅନ୍ୟମାନେ ସେମାନେ ଯାହା କହୁଛନ୍ତି,
ସେଗୁଡ଼ିକୁ ପରୀକ୍ଷା କରିବା ଉଚିତ। [୩୦]ଯଦି ସେଠାରେ
ବସିଥିବା ଜଣେ ଲୋକ ପରମେଶ୍ୱରଙ୍କଠାରୁ ଏକ ନୂତନ
ସତ୍ୟପାଏ, ତା'ହେଲେ ପ୍ରଥମ ବକ୍ତା ଚୁପ୍ ହୋଇଯିବା
ଉଚିତ। [୩୧]ଏହିପରି ତୁମ୍ଭେମାନେ ସମସ୍ତେ ଜଣକପରେ
ଜଣେ ଭାବବାଣୀ କହି ପାରିବ। ସେପରି ହେଲେ, ସମସ୍ତେ
ଶିଖି ପାରିବେ ଓ ଉତ୍ସାହିତ ହୋଇ ପାରିବେ। [୩୨]ଏପରିକି
ଭାବବାଦୀମାନଙ୍କର ଆତ୍ମା ଭବିଷ୍ୟଦ୍‌ବକ୍ତାମାନଙ୍କ ନିୟନ୍ତ୍ରଣରେ
ଥାନ୍ତି।

[୩୩]ପରମେଶ୍ୱର ବିଶୃଙ୍ଖଳାର ପରମେଶ୍ୱର ନୁହଁନ୍ତି, କିନ୍ତୁ
ସେ ଶାନ୍ତିର ପରମେଶ୍ୱର ଅଟନ୍ତି।

[୩୪]ମଣ୍ଡଳୀର ସଭାମାନଙ୍କରେ ସ୍ତ୍ରୀମାନେ ଚୁପ୍ ରହିବା
ଉଚିତ। ପରମେଶ୍ୱରଙ୍କ ଲୋକମାନଙ୍କର ସମସ୍ତ ମଣ୍ଡଳୀରେ
ଏହି ନିୟମ ଲାଗୁ ଅଛି। ସ୍ତ୍ରୀ ଲୋକଙ୍କୁ କହିବା ପାଇଁ
ଅନୁମତି ଦିଆଯାଇ ନାହିଁ। ମୋଶାଙ୍କ ନିୟମାନୁଯାୟୀ ସେମାନେ
ବଶୀଭୂତ ହୋଇ ରହିବା ଉଚିତ। [୩୫]ଯଦି ସ୍ତ୍ରୀ ମାନଙ୍କର
କିଛି ଜାଣିବାକୁ ଇଚ୍ଛା ଥାଏ, ତା'ହେଲେ ସେମାନେ ନିଜ
ସ୍ୱାମୀଙ୍କୁ ଘରେ ପଚାରି ବୁଝି ପାରିବେ। ମଣ୍ଡଳୀ ସଭାରେ
ସ୍ତ୍ରୀ ଲୋକମାନଙ୍କ ପକ୍ଷେ କିଛି କହିବା ଲଜ୍ଜାଜନକ ଅଟେ।
[୩୬]ପରମେଶ୍ୱରଙ୍କ ବାକ୍ୟ କ'ଣ ତୁମ୍ଭମାନଙ୍କଠାରୁ ଆସିଥିଲା
କି? ନା। ଅଥବା ସେହି ବାକ୍ୟ କ'ଣ କେବଳ ତୁମ୍ଭମାନଙ୍କ
ପାଖରେ ପହଞ୍ଚିଥିଲା? ନା।

[୩୭]ଯଦି ଜଣେ ଲୋକ ନିଜକୁ ଭାବବାଦୀ ବୋଲି ମନେ
କରେ ବା ସେ ନିଜକୁ ଆଧ୍ୟାତ୍ମିକ ଦାନର ଅଧିକାରୀ
ବୋଲି ଭାବେ, ତା'ହେଲେ ସେ ବୁଝି ପାରିବା ଉଚିତ ଯେ,
ମୁଁ ଯାହା କିଛି ତୁମ୍ଭମାନଙ୍କୁ ଲେଖୁଛି, ତାହା ପ୍ରଭୁଙ୍କର
ଆଦେଶ ଅଟେ। [୩୮]ଯଦି ସେ ଏହା ଜାଣେ ନାହିଁ,
ତାହାହେଲେ ସେ ପରମେଶ୍ୱରଙ୍କ ଦ୍ୱାରା ଅଜଣା ଅଟେ।

[୩୯]ଅତଏବ, ମୋ ଭାଇ ଓ ଭଉଣୀମାନେ! ତୁମ୍ଭେମାନେ
ଭବିଷ୍ୟଦ୍‌ବାଣୀ କହିବା ପାଇଁ ଏକାନ୍ତ ଚେଷ୍ଟା କର। କିନ୍ତୁ
ବିଭିନ୍ନ ଭାଷାରେ କହିବାକୁ ଅନ୍ୟମାନଙ୍କୁ ବାଧା ଦିଅ ନାହିଁ।
ପ୍ରତ୍ୟେକ କାମ ଠିକ୍ ଭାବରେ ଓ କ୍ରମାନୁସାରେ କରିବା
ଉଚିତ।

## ଖ୍ରୀଷ୍ଟଙ୍କର ସୁସମାଚାର

**୧୫** ଭାଇ ଓ ଭଉଣୀମାନେ! ମୁଁ ତୁମ୍ଭମାନଙ୍କୁ ପୂର୍ବରୁ
ମନେ ପକାଇ ଦେବାକୁ ଇଚ୍ଛା କରେ। ତୁମ୍ଭେମାନେ
ଏହାକୁ ଗ୍ରହଣ କରିଥିଲ, ଓ ଏବେ ସୁଦ୍ଧା ଦୃଢ଼ ଭାବରେ
ଧରି ରଖିଛ। [୨]ତୁମ୍ଭେମାନେ ଏହି ସୁସମାଚାର ଦ୍ୱାରା
ପରିତ୍ରାଣ ପାଇଛ। କିନ୍ତୁ ମୋ କହିଥିବା କଥାଗୁଡ଼ିକୁ

ତୁମ୍ଭେମାନେ ବିଶ୍ୱାସ କରି ଚାଲିବା ଉଚିତ। ନଚେତ୍ ତୁମ୍ଭେ
ବ୍ୟର୍ଥରେ ବିଶ୍ୱାସୀ ହୋଇଥିଲ।
୩ମୁଁ ପାଇଥିବା ଶିକ୍ଷା ତୁମ୍ଭମାନଙ୍କୁ ଦେଲି। ଏହି ପ୍ରଧାନ
ଶିକ୍ଷା ମୁଁ ତୁମ୍ଭମାନଙ୍କୁ ପ୍ରଦାନ କରିଥିଲି ଯେ, ଯୀଶୁ ଖ୍ରୀଷ୍ଟ
ଶାସ୍ତ୍ର ଅନୁସାରେ ଆମ୍ଭର ପାପ ପାଇଁ ମଲେ। ୪ଯୀଶୁ
ଖ୍ରୀଷ୍ଟଙ୍କୁ କବର ଦିଆ ହେଲା ଓ ତୃତୀୟ ଦିନ ସେ
ମୃତ୍ୟୁରୁ ଉଠିଲେ। ୫ସେ କେଫାଙ୍କୁ ଓ ତା'ପରେ ବାରଜଣ
ପ୍ରେରିତଙ୍କୁ ଦେଖା ଦେଲେ। ୬ତା'ପରେ ସେ ଏକା
ଥରକେ ୫୦୦ ରୁ ଅଧିକ ଭାଇମାନଙ୍କୁ ଦେଖାଦେଇଥିଲେ।
ତାହାଙ୍କ ମଧ୍ୟରୁ ଅଧିକାଂଶ ଲୋକ ଆଜି ମଧ୍ୟ ଜୀବିତ।
କିନ୍ତୁ କେତେକ ମରି ଯାଇଛନ୍ତି। ୭ତା'ପରେ ଖ୍ରୀଷ୍ଟ ଯାକୁବ
ଓ ପରେ ସମସ୍ତ ପ୍ରେରିତମାନଙ୍କୁ ଆଉଥରେ ଦେଖା
ଦେଲେ। ୮ଯଥା ସମୟ ପୂର୍ବରୁ ଜନ୍ମ ହୋଇଥିବା ଶିଶୁଟିଏ
ଭଳି ଯେ ମୁଁ, ସେ ମୋତେ ସର୍ବ ଶେଷରେ ଦେଖା
ଦେଲେ। ୯ମୁଁ ସମସ୍ତ ପ୍ରେରିତମାନଙ୍କ ମଧ୍ୟରେ ସବୁଠାରୁ
କ୍ଷୁଦ୍ରତମ। ଏପରିକି ମୋର ପ୍ରେରିତ ବୋଲି ଡକା ଯିବାର
ଯୋଗ୍ୟତା ମଧ୍ୟ ନାହିଁ, କାରଣ ମୁଁ ପୂର୍ବରୁ ପରମେଶ୍ୱରଙ୍କ
ମଣ୍ଡଳୀକୁ ତାଡ଼ନା କରିଛି। ୧୦କିନ୍ତୁ ପରମେଶ୍ୱରଙ୍କ ଅନୁଗ୍ରହ
ହେତୁ ମୁଁ ଆଜି ଏହା ହୋଇପାରିଛି। ମୋ ପ୍ରତି ତାହାଙ୍କ
ଅନୁଗ୍ରହ ବିଫଳ ହୋଇନାହିଁ। ମୁଁ ଅନ୍ୟ ସମସ୍ତ ପ୍ରେରିତଙ୍କ
ତୁଳନାରେ କଠୋର ପରିଶ୍ରମ କରିଛି। ମୁଁ ପ୍ରକୃତରେ ଯେ
ଅଧିକ ପରିଶ୍ରମ କରିଅଛି, ତାହା ନୁହେଁ କିନ୍ତୁ ପରମେଶ୍ୱରଙ୍କ
ଅନୁଗ୍ରହ ହେତୁ ଏହା କରିପାରିଛି। ୧୧ମୁଁ ତୁମ୍ଭକୁ ପ୍ରଚାର
କରେ ବା ଅନ୍ୟମାନେ ପ୍ରଚାର କରନ୍ତି, ସେଥିରେ କିଛି
ଯାଏ ଆସେ ନାହିଁ, କାରଣ ଆମ୍ଭେ ସମସ୍ତେ ସମାନ ବିଷୟ
ପ୍ରଚାର କରିଥାଉ। ଆଉ ଏହି ପ୍ରକାରେ ତୁମ୍ଭେମାନେ
ବିଶ୍ୱାସୀ ହୋଇଅଛ।

## ଆମ୍ଭେ ମୃତ୍ୟୁରୁ ପୁନର୍ଜୀବିତ ହେବା

୧୨ଯୀଶୁଖ୍ରୀଷ୍ଟ ମୃତ୍ୟୁରୁ ଉଥିତ ହୋଇଥିଲେ, ଏହା ପ୍ରଚାରିତ
ହୋଇଛି, ତା'ହେଲେ ତୁମ୍ଭମାନଙ୍କ ମଧ୍ୟରୁ କେତେଜଣ
କାହିଁକି କୁହନ୍ତି ଯେ, ଲୋକେ ମୃତ୍ୟୁରୁ ଉଥିତ ହୋଇପାରିବେ
ନାହିଁ। ୧୩ଯଦି ଲୋକମାନେ ମୃତ୍ୟୁରୁ ଉଥିତ ହେବେ ନାହିଁ,
ତା'ହେଲେ ଖ୍ରୀଷ୍ଟ ମଧ୍ୟ ମୃତ୍ୟୁରୁ ଉଥିତ ହୋଇ ନାହାଁନ୍ତି।
୧୪ଯଦି ଖ୍ରୀଷ୍ଟ ମୃତ୍ୟୁରୁ ଉତ୍ଥିତ ହୋଇ ନାହାଁନ୍ତି, ତା'ହେଲେ
ଆମ୍ଭର ଶିକ୍ଷାଦାନ ଓ ତୁମ୍ଭମାନଙ୍କର ବିଶ୍ୱାସର କିଛି ମୂଲ୍ୟ
ନାହିଁ। ୧୫ଆମ୍ଭେ ମଧ୍ୟ ପରମେଶ୍ୱରଙ୍କ ବିଷୟରେ ମିଛ
କହିଥିବା ଅପରାଧରେ ଅପରାଧୀ। କାରଣ ଆମ୍ଭେ ପରମେଶ୍ୱରଙ୍କ
ବିଷୟରେ ପ୍ରଚାର କରିଛୁ ଯେ, ସେ ଯୀଶୁଙ୍କୁ ମୃତ୍ୟୁରୁ
ଉଠାଇଛନ୍ତି। ଯଦି ମୃତମାନେ ଉଥିତ ନ ହୁଅନ୍ତି, ତା'ହେଲେ
ପରମେଶ୍ୱର ମଧ୍ୟ ଖ୍ରୀଷ୍ଟଙ୍କୁ ମୃତ୍ୟୁରୁ ଉଠାଇ ନାହାଁନ୍ତି।
୧୬ଯଦି ମୃତମାନେ ଉଥିତ ହୁଅନ୍ତି ନାହିଁ, ତା'ହେଲେ
ଯୀଶୁଖ୍ରିଷ୍ଟ ମଧ୍ୟ ଉଥିତ ହୋଇ ନାହାଁନ୍ତି। ୧୭ଯଦି ଖ୍ରୀଷ୍ଟ
ମୃତ୍ୟୁରୁ ଉଠି ନାହାଁନ୍ତି, ତା'ହେଲେ ତୁମ୍ଭ ବିଶ୍ୱାସର କିଛି
ମୂଲ୍ୟ ନାହିଁ। ତୁମ୍ଭେମାନେ ଏ ପର୍ଯ୍ୟନ୍ତ ନିଜ ନିଜ ପାପରେ
ଅଛ। ୧୮ପୁଣି ଖ୍ରୀଷ୍ଟଙ୍କଠାରେ ଥାଇ ଯେଉଁମାନେ ମରିଛନ୍ତି,
ସେମାନେ ମଧ୍ୟ ବିନଷ୍ଟ ହୋଇ ଯାଇ ଅଛନ୍ତି। ୧୯ଯଦି
ଖ୍ରୀଷ୍ଟଙ୍କଠାରେ ଆମ୍ଭର ଭରସା କେବଳ ଏହି ସଂସାରର
ଜୀବନ ପାଇଁ, ତା'ହେଲେ ଅନ୍ୟ ସମସ୍ତ ଲୋକଙ୍କ ତୁଳନାରେ
ଆମ୍ଭେ ଅଧିକ ହତଭାଗ୍ୟ।
୨୦କିନ୍ତୁ ବାସ୍ତବ କଥା ଏହି ଯେ, ଖ୍ରୀଷ୍ଟଙ୍କୁ ମୃତ୍ୟୁରୁ
ଉଥିତ କରାଯାଇଛି। ସେ ହେଉଛନ୍ତି ମୃତ ବିଶ୍ୱାସୀମାନଙ୍କ
ମଧ୍ୟରୁ ଉଥିତ ପ୍ରଥମ ଫଳ ସ୍ୱରୂପ। ୨୧ଜଣେ ମନୁଷ୍ୟ
ହେତୁ ଲୋକମାନଙ୍କ ପାଖକୁ ମୃତ୍ୟୁ ଆସିଲା। କିନ୍ତୁ ଜଣେ
ମନୁଷ୍ୟ ଦ୍ୱାରା ମଧ୍ୟ ମୃତ୍ୟୁର ପୁନରୁତ୍ଥାନ ହେଲା। ୨୨ଆଦମ
ଯୋଗୁ ସମସ୍ତ ଲୋକ ମୃତ୍ୟୁ ଭୋଗ କରନ୍ତି, ସେହି ଭଳି
ଖ୍ରୀଷ୍ଟଙ୍କ ଯୋଗୁ ସମସ୍ତ ଲୋକଙ୍କୁ ପୁନର୍ଜୀବିତ ହେବେ।
୨୩କିନ୍ତୁ ପ୍ରତ୍ୟେକ ଲୋକ କ୍ରମାନୁସାରେ ପୁନଃର୍ଜୀବିତ ହେବେ।
ପ୍ରଥମ ଫଳ ସ୍ୱରୂପ ଖ୍ରୀଷ୍ଟ, ତା'ପରେ ଖ୍ରୀଷ୍ଟଙ୍କ ଆଗମନ
ସମୟରେ ତାହାଙ୍କ ଆଶ୍ରିତମାନେ ପୁନରୁଥିତ ହେବେ।
୨୪ତା'ପରେ ଯୁଗାନ୍ତ ହେବ। ସମସ୍ତ ଶାସକ, କ୍ଷମତା ଓ
ଶକ୍ତିଗୁଡ଼ିକୁ ଲୋପ କରିବା ପରେ ଖ୍ରୀଷ୍ଟ ପିତା ପରମେଶ୍ୱରଙ୍କ
ରାଜତ୍ୱ ସମର୍ପଣ କରିବେ। ୨୫କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ
ପରମେଶ୍ୱର ସମସ୍ତ ଶତ୍ରୁଙ୍କୁ ଖ୍ରୀଷ୍ଟଙ୍କ ପାଦତଳେ ନ
ରଖିଛନ୍ତି, ସେତେଦିନ ପର୍ଯ୍ୟନ୍ତ ଖ୍ରୀଷ୍ଟ ରାଜତ୍ୱ କରିବେ।
୨୬ଶେଷ ଶତ୍ରୁ ଭାବରେ ମୃତ୍ୟୁକୁ ଲୋପ କରାଯିବ। ୨୭ଶାସ୍ତ୍ର
କୁହେ: "ପରମେଶ୍ୱର ସମସ୍ତ ବିଷୟକୁ ତାହାଙ୍କର ପାଦତଳେ
ରଖିଛନ୍ତି।"* ଯେତେବେଳେ ଏହା କୁହେ ଯେ, ସେ
"ସମସ୍ତ ବିଷୟ" ତାହାଙ୍କ ପାଦତଳେ ବଶୀଭୁତ କଲେ
ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ, ପରମେଶ୍ୱର ନିଜେ ପ୍ରତ୍ୟେକ
ବିଷୟକୁ ଖ୍ରୀଷ୍ଟଙ୍କର ବଶୀଭୂତ କଲେ ଓ ସେ ସେହି
ସବୁରେ ପରମେଶ୍ୱର ଅନ୍ତର୍ଗତ ନୁହଁନ୍ତି। ୨୮ସମସ୍ତ ଖ୍ରୀଷ୍ଟଙ୍କ
ବଶୀଭୂତ ହେଲା ଉତ୍ତାରେ ତା'ଙ୍କ ପୁତ୍ର ଖ୍ରୀଷ୍ଟ ମଧ୍ୟ
ପରମେଶ୍ୱରଙ୍କ ବଶୀଭୂତ ହେବେ। ଯେଉଁ ପରମେଶ୍ୱର
ପ୍ରତ୍ୟେକ ବିଷୟକୁ ଖ୍ରୀଷ୍ଟଙ୍କ ବଶୀଭୁତ କଲେ, ସେହି ଖ୍ରୀଷ୍ଟ
ପରମେଶ୍ୱରଙ୍କ ବଶୀଭୂତ ହେବେ ଓ ଏହିଭଳି ପ୍ରତ୍ୟେକ
ବିଷୟ ଉପରେ ପରମେଶ୍ୱର ଶାସନ ପ୍ରତିଷ୍ଠିତ ହେବେ।

୨୯ଯଦି ଲୋକମାନେ ମୃତ୍ୟୁରୁ ଆଦୌ ଉଥିତ ହେବେ
ନାହିଁ, ତା'ହେଲ ଯେଉଁମାନେ ମୃତମାନଙ୍କ ପାଇଁ ତୁବନ
ପ୍ରାପ୍ତ ହୋଇଛନ୍ତି, ସେମାନେ କ'ଣ କରିବେ? ଯଦି
ମୃତମାନେ ଆଦୌ ଉଥିତ ହେବେ ନାହିଁ, ତା'ହେଲେ
କାହିଁକି ସେମାନଙ୍କ ପାଇଁ ଲୋକମାନଙ୍କୁ ବାପ୍ତିଜିତ
କରାଯାଇଥାଏ?
୩୦ଆମ୍ଭେ ପ୍ରତି ମୁହୂର୍ତ୍ତରେ କ'ଣ ପାଇଁ ବିପଦର
ସମ୍ମୁଖୀନ ହେଉ? ୩୧ଭାଇମାନେ, ଆମ୍ଭ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ
ଠାରେ ତୁମ୍ଭମାନଙ୍କ ପାଇଁ ମୁଁ ଯେଉଁ ଗର୍ବ କରିଥାଏ,
ସେଥିର ଶପଥ କରି କହୁଛି, ମୁଁ ପ୍ରତିଦିନ ମରେ। ୩୨ଯଦି
ମୁଁ ଏଫିସଠାରେ ମୋର ଗର୍ବ ରକ୍ଷାର୍ଥେ ବନ୍ୟପଶୁମାନଙ୍କ
ସହ ଯୁଦ୍ଧ କରିଛି, ତା'ହେଲେ ମୁଁ କ'ଣ ବା ପାଇଲି?
ଯଦି ମୃତ ଲୋକ ମୃତ୍ୟୁରୁ ଉଥିତ ହେବ ନାହିଁ, ତା'ହେଲେ

---

**"ପରମେଶ୍ୱର ... ରଖିଛନ୍ତି।"** ଗୀତସଂହିତା ୮:୬

"ଆସ ଖାଇବା, ପିଇବା (ମଉଜ କରିବା) କାରଣ କାଲି
ମରିବାକୁ ହେବ।"*
୩୩ମୂର୍ଖଙ୍କ ଭଳି ଆଚରଣ କରନାହିଁ। "ମନ୍ଦ ସଙ୍ଗୀମାନେ
ଭଲ ଅଭ୍ୟାସଗୁଡ଼ିକୁ ନଷ୍ଟ କରିଦେବେ।" ୩୪ଅତଏବ,
ତୁମ୍ଭେ ଜାଗ୍ରତ ହୁଅ, ଓ ପାପ କରିବା ବନ୍ଦ କର।
ତୁମ୍ଭମାନଙ୍କ ମଧ୍ୟରୁ କେତେକ ପରମେଶ୍ୱରଙ୍କୁ ଜାଣନ୍ତି
ନାହିଁ। ତୁମ୍ଭମାନଙ୍କୁ ଲଜ୍ଜା ଦେବା ପାଇଁ ଏକଥା ମୁଁ କହୁଛି।

## ଆମ୍ଭେ କେଉଁ ପ୍ରକାର ଶରୀର ପାଇବା ?

୩୫କିନ୍ତୁ ଜଣେ ପଚାରି ପାରେ: "ମୃତଗୁଡ଼ିକ କିପରି
ଉତ୍ଥିତ ହୁଅନ୍ତି? ୩୬ସେମାନେ କେଉଁ ଭଳି ଦେହ ଧାରଣ
କରିବେ?" ଏଗୁଡ଼ିକ ହେଉଛି ନିର୍ବୋଧ ପ୍ରଶ୍ନ। ପୃଥିବୀରେ
ପୋତା ଯାଇଥିବା ବୀଜଟି ନିଜେ ନ ମରିବା ପର୍ଯ୍ୟନ୍ତ
ସଜୀବ ହୁଏ ନାହିଁ। ୩୭ବୁଣିଲା ବେଳେ ତୁମ୍ଭେମାନେ ଯାହା
ବୁଣ, ବିକଶିତ ହେଲା ପରେ ତାହା ସେହି "ଶରୀର"
ଧାରଣ କରେ ନାହିଁ। ତୁମ୍ଭେମାନେ ଗହମ ହେଉ ବା
ଅନ୍ୟ କୌଣସି ଶସ୍ୟ ହେଉ, କେବଳ ବୀଜଟି ବୁଣ।
୩୮ତା'ପରେ ପରମେଶ୍ୱର ଯେପରି ଇଚ୍ଛା କରନ୍ତି, ସେହିପରି
ଶରୀର ତାହାକୁ ପ୍ରଦାନ କରନ୍ତି। ପରମଶ୍ୱର ସମସ୍ତ ବୀଜ
ମଧ୍ୟରୁ ପ୍ରତ୍ୟେକକୁ ତାହାର ନିଜ ଶରୀର ଦିଅନ୍ତି।
୩୯ଶରୀରରୁ ଜାତ ସମସ୍ତ ବିଷୟରେ ସମାନ ପ୍ରକାରର
ଶରୀର ନ ଥାଏ। ମଣିଷମାନଙ୍କର ଶରୀର ଏକ ପ୍ରକାରର
ତ ଚଢ଼େଇମାନଙ୍କର ଶରୀର ଅନ୍ୟ ପ୍ରକାରର ଓ ମାଛମାନଙ୍କର
ଶରୀର ଆହୁରି ଅଲଗା ପ୍ରକାରର। ୪୦ସ୍ୱର୍ଗୀୟ ଶରୀର
ଅଛି, ପୃଥିବୀସ୍ଥ ଶରୀର ମଧ୍ୟ ଅଛି। କିନ୍ତୁ ସ୍ୱର୍ଗୀୟ
ଶରୀରରୁ ଏକ ପ୍ରକାରର ହେବ, ଆଉ ପୃଥିବୀସ୍ଥ ଶରୀରର
ଅନ୍ୟପ୍ରକାରର ହେବ। ୪୧ସୂର୍ଯ୍ୟର ଜ୍ୟୋତିଃ ଗୋଟିଏ ପ୍ରକାରର,
ଚନ୍ଦ୍ରର ଜ୍ୟୋତିଃ ଅନ୍ୟ ପ୍ରକାରର ଓ ତାରାମାନଙ୍କର
ଜ୍ୟୋତିଃ ଆହୁରି ଅନ୍ୟପ୍ରକାରର, ଗୋଟିଏ ତାରାର ଜ୍ୟୋତିଃ,
ଅନ୍ୟ ତାରାମାନଙ୍କର ଠାରୁ ଅଲଗା।
୪୨ମୃତମାନଙ୍କର ଉତ୍ଥାନ ବିଷୟରେ ମଧ୍ୟ ଏହି କଥାଟି
ପ୍ରଯୁଜ୍ୟ। ଯେଉଁ ଶରୀରଟି ପୋତି ଦିଆ ହେଲା, ତାହା
ନଷ୍ଟ ହୋଇଯିବ। କିନ୍ତୁ ସେହି ଶରୀରଟି ଯେଉଁ ନୂତନ
ଦେହ ଧାରଣ କରିବ, ତାହା ନଷ୍ଟ ହେବ ନାହିଁ।
୪୩ଶରୀରଟି ଅନାଦରରେ "ବୁଣାଯାଏ", କିନ୍ତୁ ମହିମାରେ
ତାହା ଉତ୍ଥିତ ହୁଏ। ଯେତେବେଳେ ଦୁର୍ବଳତାରେ ଶରୀରଟି
"ବୁଣାଯାଏ" ଏହା ଶକ୍ତିର ସହିତ ଉତ୍ଥିତ ହୁଏ। ୪୪ପ୍ରାକୃତିକ
ଶରୀରଟି "ବୁଣାଯାଏ", ଆତ୍ମିକ ଶରୀର ଉତ୍ଥିତ ହୁଏ।
ଯଦି ପ୍ରକୃତିକ ଶରୀର ଅଛି, ତା'ହେଲେ ଆଧାତ୍ମିକ
ଶରୀର ମଧ୍ୟ ଅଛି। ୪୫ଶାସ୍ତ୍ରରେ ଲେଖା ଅଛି: "ପ୍ରଥମ
ମନୁଷ୍ୟ (ଆଦମ) ସଜୀବ ପ୍ରାଣୀ,"* କିନ୍ତୁ ଶେଷ ଆଦମ
(ଖ୍ରୀଷ୍ଟ) ଜଣେ ଜୀବନଦାତା ଆତ୍ମା। ୪୬ମାତ୍ର ଯାହା ଆତ୍ମିକ,
ତାହା ପ୍ରଥମ ନୁହେଁ। ମାତ୍ର ଯାହା ପ୍ରାକୃତିକ, ତାହା ପ୍ରଥମ,
ପରେ ଆତ୍ମିକ ଆସେ। ୪୭ପ୍ରଥମ ମନୁଷ୍ୟଟି ପୃଥିବୀର
ମାଟିରୁ ନିର୍ମିତ ହୋଇଥିଲା; କିନ୍ତୁ ଦ୍ୱିତୀୟ ମନୁଷ୍ୟ ସ୍ୱର୍ଗରୁ
ଆସିଥିଲେ। ୪୮ଜଗତର ପ୍ରଥମ ମନୁଷ୍ୟ ଭଳି ପ୍ରତ୍ୟେକ
ମନୁଷ୍ୟ ପୃଥିବୀର ଅଟନ୍ତି। କିନ୍ତୁ ଯେଉଁମାନେ ସ୍ୱର୍ଗର,
ସେମାନେ ସ୍ୱର୍ଗରୁ ଆଗତ ସେହି ମନୁଷ୍ୟ ତୁଲ୍ୟ। ୪୯ଆମ୍ଭେମାନେ
ଜଗତରୁ ସେହି ମନୁଷ୍ୟ ତୁଲ୍ୟ ନିର୍ମିତ ହୋଇଅଛୁ।
ଅତଏବ, ଆମ୍ଭେ ମଧ୍ୟ ସ୍ୱର୍ଗର ସେହି ବ୍ୟକ୍ତି ତୁଲ୍ୟ ଶରୀର
ଧାରଣ କରିବା।
୫୦ଭାଇ ଓ ଭଉଣୀମାନେ! ମୁଁ ତୁମ୍ଭକୁ ଏକଥା କହୁଛି
ଯେ, ମାଂସ ଓ ରକ୍ତ ପରମେଶ୍ୱରଙ୍କ ରାଜ୍ୟର ଉତ୍ତରାଧିକାରୀ
ହୋଇ ପାରିବ ନାହିଁ। କ୍ଷୟ ଅକ୍ଷୟକୁ ଅଧିକାର କରି
ପାରିବ ନାହିଁ। ୫୧କିନ୍ତୁ ଶୁଣ! ମୁଁ ତୁମ୍ଭମାନଙ୍କୁ ଗୋଟିଏ
ନିଗୂଢ଼ କଥା କହୁଛି: ଆମ୍ଭମାନଙ୍କ ମଧ୍ୟରୁ ସମସ୍ତେ ମରିବା
ନାହିଁ, ବରଂ ଆମ୍ଭେ ସମସ୍ତେ ପରିବର୍ତ୍ତିତ ହେବା। ୫୨ଏହା
କେବଳ ମୁହୂର୍ତ୍ତକ ମଧ୍ୟରେ ଆଖି ପିଛୁଳାକେ, ଘଟି ଯିବ।
ଯେତେବେଳେ ତୂରୀ ବାଜିବ, ଓ ଯେତେ ସବୁ ବିଶ୍ୱାସୀ
ମରିଯାଇଛନ୍ତି ସେମାନେ ମୃତ୍ୟୁରୁ ଅନନ୍ତକାଳ ପାଇଁ ଉତ୍ଥିତ
ହେବେ ଓ ଆମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ
ଅଛନ୍ତି, ସେମାନେ ପରିବର୍ତ୍ତିତ ହେବ। ୫୩ଏହି ବିନାଶ
ଦେହ ଅନନ୍ତ ରୂପ ବସ୍ତ୍ର ଧାରଣ କରିବାକୁ ହେବ ଓ ଏହି
ମର୍ତ୍ତ୍ୟ ଦେହ ଅମରତ୍ୱରୂପ ବସ୍ତ୍ର ଧାରଣ କରିବାକୁ ହେବ।
୫୪କିନ୍ତୁ ଏହି କ୍ଷୟ ଶରୀର ଅକ୍ଷୟରୂପ ବସ୍ତ୍ର ଏହି ମର୍ତ୍ତ୍ୟ
ଦେହ ଅମରତ୍ୱ ରୂପ ବସ୍ତ୍ର ଧାରଣ କଲାପରେ ଶାସ୍ତ୍ରର ଏହି
କଥା ସଫଳ ହେବ।

"ଜୟ ମୃତ୍ୟୁକୁ ଗ୍ରାସ କରିଦେଲା"

ଯିଶାଇୟ ୨୫:୮

୫୫ "ମୃତ୍ୟୁ ତୁମ୍ଭର ବିଜୟ କେଉଁଠାରେ ଅଛି? କବର
ତୁମ୍ଭର ଆଘାତ କରିବା ଶକ୍ତି କେଉଁଠାରେ ଅଛି"

ହୋଶେୟ ୧୩:୧୪

୫୬ମୃତ୍ୟୁର ଆଘାତ କରିବା ହେଉଛି ପାପ। ପାପର ବଳ
ହେଉଛି ବ୍ୟବସ୍ଥା। ୫୭କିନ୍ତୁ ପରମେଶ୍ୱରଙ୍କୁ ଧନ୍ୟବାଦ ଦିଏ
ଯେ, ସେ ଆମ୍ଭ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ ଆମ୍ଭକୁ
ବିଜୟ ପ୍ରଦାନ କରନ୍ତି
୫୮ଅତଏବ, ମୋ ଭାଇ ଓ ଭଉଣୀମାନେ, ଦୃଢ଼
ଭାବରେ ସ୍ଥିର ରୁହ। କୌଣସି ବିଷୟ ତୁମ୍ଭକୁ ଅସ୍ଥିର ନ
କରୁ। ପରମେଶ୍ୱରଙ୍କ ପାଇଁ କରାଯାଇଥିବା ତୁମ୍ଭର କାର୍ଯ୍ୟ
କଦାପି ବ୍ୟର୍ଥ ଯିବ ନାହିଁ। ଏହା ଜାଣି ପ୍ରଭୁଙ୍କ କାର୍ଯ୍ୟରେ
ସର୍ବଦା ନିଜକୁ ନିୟୋଜିତ କର।

## ଅନ୍ୟ ବିଶ୍ୱାସୀମାନଙ୍କ ଲାଗି ଦାନ ସଂଗ୍ରହ

୧୬ ବର୍ତ୍ତମାନ ପରମେଶ୍ୱରଙ୍କ ଲୋକମାନଙ୍କର ସାହାଯ୍ୟ
ପାଇଁ ଅର୍ଥ ସଂଗ୍ରହ ବିଷୟରେ ମୁଁ ଗାଲାତୀୟ
ମଣ୍ଡଳୀକୁ ଏ ସଂପର୍କରେ ଦେଇ ଥିବା ନିର୍ଦ୍ଦେଶମାନ
ତୁମ୍ଭେମାନେ ଅବଶ୍ୟ ପାଳନ କରିବା ଉଚିତ। ୨ପ୍ରତ୍ୟେକ
ସପ୍ତାହର ପ୍ରଥମ ଦିନ ତୁମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ନିଜ
ଆୟ ଅନୁଯାୟୀ ଯେତିକି ସମ୍ଭବ ନିଶ୍ଚୟ ସଞ୍ଚୟ କର।

---

**"ଆସ ... ହେବ।"** ଯିଶାଇୟ ୨୨:୧୩; ୫୬:୧୨
**"ପ୍ରଥମ ... ପ୍ରାଣୀ।"** **ଆଦିପୁସ୍ତକ ୨:୭**

ତୁମ୍ଭେମାନେ ଏହାକୁ ଗୋଟିଏ ବିଶେଷ ସ୍ଥାନରେ ରଖି
ଥାଅ। ଏପରି କଲେ, ମୁଁ ତୁମ୍ଭମାନଙ୍କ ପାଖରେ ପହଁଚିଲା
ପରେ ତୁମ୍ଭମାନଙ୍କୁ ସଂଗ୍ରହ କରିବାକୁ ପଡିବ ନାହିଁ।
୩ସେଠାରେ ପହଁଞ୍ଚିଲା ପରେ, ତୁମ୍ଭେମାନେ ଯେଉଁ ବ୍ୟକ୍ତିମାନଙ୍କୁ
ବାଛିବ, ମୁଁ ସେମାନଙ୍କର ପରିଚୟପତ୍ର ସହିତ ତୁମ୍ଭମାନଙ୍କର
ଦାନ ଯିରୂଶାଲମକୁ ପଠାଇ ଦେବି। ୪ଯଦି ମୋର ମଧ୍ୟ
ଯିବାର ହୁଏ ସେମାନେ ମଧ୍ୟ ମୋ ସହିତ ଯିବେ।

## ପାଉଲଙ୍କ ଯୋଜନା

୫ମୋର ମାକିଦନିଆ ବାଟ ଦେଇ ଯିବା କାର୍ଯ୍ୟକ୍ରମ
ଅଛି। ମାକିଦନିଆ ବାଟ ଦେଇ ଗଲା ପରେ ମୁଁ ତୁମ୍ଭମାନଙ୍କ
ପାଖକୁ ଆସିବି। ୬ସେତେବେଳେ ମୁଁ ତୁମ୍ଭମାନଙ୍କ ସହିତ
କିଛି ସମୟ ଅତିବାହିତ କରିବି, ସମ୍ପୂର୍ଣ୍ଣ ବା ଶୀତକାଳ
ତୁମ୍ଭମାନଙ୍କ ସହିତ ରହିବି। ତା'ପରେ, ମୋ ଯାତ୍ରାରେ, ମୁଁ
ଯେଉଁଠାକୁ ଯିବି, ତୁମ୍ଭେମାନେ ମୋତେ ସାହାଯ୍ୟ କରିପାରିବ।
୭ମୁଁ ଏବେ ତୁମ୍ଭମାନଙ୍କ ସହିତ ଦେଖାକରିବାକୁ ଇଚ୍ଛା କରୁ
ନାହିଁ, କାରଣ ପ୍ରଭୁ ଅନୁମତି ଦେଲେ ତୁମ୍ଭମାନଙ୍କ ସହ
ଅଧିକ ସମୟ ରହିବା ପାଇଁ ଆଶା କରେ। ୮କିନ୍ତୁ ମୁଁ
ଏଫିସ ନଗର ଠାରେ ପେଣ୍ଟିକଷ୍ଟ* ପର୍ବ ପର୍ଯ୍ୟନ୍ତ ରହିବି।
୯କାରଣ ସେଠାରେ ଫଳପ୍ରଦ କାର୍ଯ୍ୟ ନିମନ୍ତେ ମୋ ପାଇଁ
ଏକ ମହାନ୍ ସୁଯୋଗର ଦ୍ୱାର ଖୋଲା ହୋଇଛି। ସେଠାରେ
ମୋର ଅନେକ ବିପକ୍ଷ ମଧ୍ୟ ଅଛନ୍ତି। ୧୦ତୀମଥି ତୁମ୍ଭମାନଙ୍କ
ପାଖକୁ ଆସି ପାରନ୍ତି। ତୁମ୍ଭମାନଙ୍କ ମଧ୍ୟରେ ସେ ଯେପରି
ସ୍ୱଚ୍ଛନ୍ଦରେ ରୁହନ୍ତୁ, ଏଥିପାଇଁ ତୁମ୍ଭେ ତାହାଙ୍କ ପ୍ରତି ମନୋଯୋଗୀ
ହୁଅ। ମୋ ଭଳି ସେ ମଧ୍ୟ ପ୍ରଭୁଙ୍କ ପାଇଁ କାମ
କରୁଛନ୍ତି। ୧୧ଅତଏବ ତୀମଥିଙ୍କୁ କେହି ଯେପରି ଗ୍ରହଣ
କରିବାକୁ ମନା ନ କରେ। ସେ ଯେପରି ମୋ ପାଖରେ
ଆସି ପହଁଞ୍ଚିବେ ଏଥିପାଇଁ ତାହାଙ୍କୁ ଶାନ୍ତି ପୂର୍ବକ ଯିବାରେ
ସାହାର୍ଯ୍ୟ କର। ମୁଁ ଅନ୍ୟ ଭାଇମାନଙ୍କ ସହିତ ତାହାଙ୍କ
ଫେରିବା ବାଟକୁ ଚାହିଁ ବସିଛି।
୧୨ଆପଲ୍ଲ ଭାଇଙ୍କ ବିଷୟରେ ଲେଖୁଛି। ଅନ୍ୟ ଭାଇମାନଙ୍କ
ସହିତ ତୁମ୍ଭମାନଙ୍କ ପାଖକୁ ଯିବା ପାଇଁ ମୁଁ ତାହାକୁ ବହୁତ
ଅନୁରୋଧ କଲି କିନ୍ତୁ ଏବେ ଯିବା ପାଇଁ ସେ ଆଦୌ
ଚାହୁଁ ନାହାଁନ୍ତି। କିନ୍ତୁ ଯେତେବେଳେ ସୁଯୋଗ ହେବ, ସେ
ତୁମ୍ଭମାନଙ୍କ ପାଖକୁ ଯିବେ।

## ପାଉଲଙ୍କ ପତ୍ରର ଶେଷ ଅଂଶ

୧୩-୧୪ସାବଧାନ ରୁହ। ଦୃଢ଼ ଭାବେ ନିଜ ବିଶ୍ୱାସରେ
ଅଟଳ ରୁହ। ସାହସୀ ହୁଅ, ବଳବାନ ହୁଅ। ପ୍ରତ୍ୟେକ
କର୍ମ ପ୍ରେମର ସାଧିତ କର।
୧୫ତୁମ୍ଭେମାନେ ସ୍ତିଫାନର ପରିବାରବର୍ଗଙ୍କୁ ଜାଣିଛ।
ସେମାନେ ଆଖାୟା ଦେଶର ପ୍ରଥମ ବିଶ୍ୱାସୀଥିଲେ। ସେମାନେ
ପରମେଶ୍ୱରଙ୍କ ଲୋକମାନଙ୍କ ସେବାରେ ନିଜକୁ ସମର୍ପିତ
କରିଛନ୍ତି। ୧୬ଭାଇ ଓ ଭଉଣୀମାନେ! ମୁଁ ତୁମ୍ଭମାନଙ୍କୁ
ଅନୁରୋଧ କରୁଛି ଯେ ତୁମ୍ଭେମାନେ, ଏହିପ୍ରକାର ଲୋକ
ଓ ସେମାନଙ୍କ ସହିତ ପରମେଶ୍ୱରଙ୍କ ପାଇଁ ପରିଶ୍ରମ କରି
ସେବା କରୁଥିବା ଲୋକମାନଙ୍କର ବଶୀଭୂତ ହୁଅ।
୧୭ମୁଁ ସ୍ତିଫାନ, ଫର୍ତ୍ତୁନାତ ଓ ଆଖାୟିକଙ୍କ ଆଗମନରେ
ଆନନ୍ଦ କରୁଛି। କାରଣ ମୋ ପାଇଁ ଯାହା ତୁମ୍ଭେମାନେ
କରି ପାରି ନାହିଁ, ତାହା ସେମାନେ କରି ପାରିଲେ।
୧୮ସେମାନେ ମୋ ଆତ୍ମାକୁ ଏବଂ ତୁମ୍ଭ ଆତ୍ମାକୁ ମଧ୍ୟ
ଆରାମ ପ୍ରଦାନ କରିଛନ୍ତି। ତୁମ୍ଭେମାନେ ଏଭଳି ଲୋକମାନଙ୍କୁ
ସମ୍ମାନ କରିବା ଉଚିତ।

୧୯ଏସିଆର ସମସ୍ତ ମଣ୍ଡଳୀ ତୁମ୍ଭମାନଙ୍କୁ ଅଭିବାଦନ
ଜଣାନ୍ତି। ଆକ୍ୱିଲା ଓ ପ୍ରୀସ୍କା ପ୍ରଭୁଙ୍କ ନାମରେ ଅନେକ
ଅଭିବାଦନ ପଠାନ୍ତି। ତାହାଙ୍କ ଘରେ ମିଳିତ ହେଉଥିବା
ମଣ୍ଡଳୀ ତୁମ୍ଭମାନଙ୍କୁ ମଧ୍ୟ ଅଭିବାଦନ ଜଣାଏ। ୨୦ସମସ୍ତ
ଭାଇ ଓ ଭଉଣୀଙ୍କର ତୁମ୍ଭମାନଙ୍କୁ ନମସ୍କାର। ଯେତେବେଳେ
ତୁମ୍ଭେମାନେ ଏକତ୍ର ହେଉଛ, ପରସ୍ପରକୁ ପବିତ୍ର ଚୁମ୍ବନ
ଦେଇ ଅଭିବାଦନ ଜଣାଅ।
୨୧ମୁଁ ପାଉଲ, ନିଜ ହାତରେ ତୁମ୍ଭମାନଙ୍କୁ ନମସ୍କାର
ଲେଖି ଜଣାଉଛି।
୨୨ଯଦି କିଏ ପ୍ରଭୁଙ୍କୁ ପ୍ରେମ କରୁ ନାହିଁ, ତାହାହେଲେ
ସେ ଲୋକ ପରମେଶ୍ୱରଙ୍କ ଠାରୁ ବିଚ୍ଛିନ୍ନ ହୋଇ ସେ
ଅନନ୍ତ କାଳ ପାଇଁ ବିନଷ୍ଟ ହେବ।
ମାରାନାଥା* ଅର୍ଥାତ୍ ପ୍ରଭୁ ଆସୁଛନ୍ତି।
୨୩ପ୍ରଭୁ ଯୀଶୁଙ୍କର ଅନୁଗ୍ରହ ତୁମ୍ଭମାନଙ୍କର ସହବର୍ତ୍ତୀ
ହେଉ।
୨୪ଖ୍ରୀଷ୍ଟଯୀଶୁଙ୍କ ଠାରେ ତୁମ୍ଭ ସମସ୍ତଙ୍କ ପ୍ରତି ମୋର
ପ୍ରେମ ଭାବ ରହିଥାଉ।

---

**ପେଣ୍ଟିକଷ୍ଟ** ଇହୁଦୀମାନଙ୍କର ଗହମ ଆମଦାନୀ ବିଷୟକ ପର୍ବ। ଏହା ବାର୍ଷିକ ଉତ୍ସବ 'ପାସୋଭର' ର ୫୦ ଦିନ ପରେ ପାଳନ ହୁଏ।

**ମାରନାଥା** ଏହା ଆମେଇ ଭାଷାରେ ଅଭିବ୍ୟକ୍ତ ଅଟେ। ପ୍ରାଚୀନ କାଳରେ ଖ୍ରୀଷ୍ଟଧର୍ମାବଲମ୍ବିମାନେ ପ୍ରଭୁଙ୍କର ପୁନରାଗମନର ଇଚ୍ଛା ସହିତ ଏହା କହୁଥିଲେ।

# କରିନ୍ଥୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କର ଦ୍ୱିତୀୟ ପତ୍ର

୧ ଯୀଶୁ ଖ୍ରୀଷ୍ଟଙ୍କ ଜଣେ ପ୍ରେରିତ ପାଉଲଙ୍କର ନମସ୍କାର।
ପରମେଶ୍ୱରଙ୍କ ଇଚ୍ଛାରେ ମୁଁ ଜଣେ ପ୍ରେରିତ ହୋଇଛି।
ଆମ୍ଭ ଭାଇ ତୀମଥି ମଧ୍ୟ ତୁମ୍ଭମାନଙ୍କୁ ଶୁଭେଚ୍ଛା ଜଣାନ୍ତି।
କରିନ୍ଥଠାରେ ଥିବା ପରମେଶ୍ୱରଙ୍କ ମଣ୍ଡଳୀ ଓ ସମଗ୍ର
ଆଖାୟା ପ୍ରଦେଶର ପରମେଶ୍ୱରଙ୍କ ସମସ୍ତ ପବିତ୍ର ଲୋକଙ୍କ
ନିକଟକୁ ପତ୍ର।
୨ଆମ୍ଭର ପିତା ପରମେଶ୍ୱର ଓ ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କଠାରୁ
ତୁମ୍ଭମାନଙ୍କୁ ଅନୁଗ୍ରହ ଓ ଶାନ୍ତି ମିଳୁ।

### ପାଉଲ ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାନ୍ତି

୩ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ପିତା ଓ ପରମେଶ୍ୱରଙ୍କ
ପ୍ରଶଂସା ହେଉ। ସେ ପିତା ଅଟନ୍ତି, ସେ କରୁଣାରେ
ପରିପୂର୍ଣ୍ଣ ଓ ସମସ୍ତ ବିଷୟରେ ସାନ୍ତ୍ୱନାଦାତା ପରମେଶ୍ୱର।
୪ଆମ୍ଭ ଅସୁବିଧା ସମୟରେ ସେ ଆମ୍ଭର ସର୍ବଦା ସାନ୍ତ୍ୱନା
ପ୍ରଦାନ କରନ୍ତି, ଏବଂ ଆମ୍ଭେ ମଧ୍ୟ ଅନ୍ୟ ଲୋକମାନଙ୍କର
ଅସୁବିଧା ସମୟରେ ସାନ୍ତ୍ୱନା ପ୍ରଦାନ କରିପାରିବା। ଆମ୍ଭକୁ
ପରମେଶ୍ୱର ଯେଉଁ ପ୍ରକାର ସାନ୍ତ୍ୱନା ଦିଅନ୍ତି, ଆମ୍ଭେ
ସେହିମାନଙ୍କୁ ସେହି ପ୍ରକାର ସାନ୍ତ୍ୱନା ପ୍ରଦାନ କରି ପାରିବା।
୫ଖ୍ରୀଷ୍ଟଙ୍କର ଅନେକ ଦୁଃଖ ଭୋଗରେ ଆମ୍ଭେ ସହଭାଗୀ
ଅଟୁ। ସେହିଭଳି ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ଯେଉଁ ସାନ୍ତ୍ୱନା
ଆମ୍ଭକୁ ମିଳେ ତାହାର ସୀମା ନାହିଁ। ୬ଯଦି ଆମ୍ଭେ
କଷ୍ଟରେ ରହିଛୁ, ସେଗୁଡ଼ିକ ତୁମ୍ଭମାନଙ୍କ ସାନ୍ତ୍ୱନା ଓ
ପରିତ୍ରାଣ ନିମନ୍ତେ ଉଦ୍ଦିଷ୍ଟ। ଯଦି ଆମ୍ଭେ ସାନ୍ତ୍ୱନା ପାଇଛୁ,
ତାହା ତୁମ୍ଭମାନଙ୍କର ପାଇଁ ଅଟେ। ଆମ୍ଭେମାନେ ଯେଉଁ
ଯାତନା ସହୁ, ସେହି ଯାତନା ଧୈର୍ଯ୍ୟ ପୂର୍ବକ ସହିବା ପାଇଁ
ପରମେଶ୍ୱର ତୁମ୍ଭମାନଙ୍କୁ ସାହାଯ୍ୟ କରନ୍ତି। ୭ତୁମ୍ଭମାନଙ୍କଠାରେ
ଆମ୍ଭର ଦୃଢ଼ ଭରସା ଅଛି। ଆମ୍ଭେ ଜାଣୁ ଯେ, ତୁମ୍ଭେମାନେ
ଆମ୍ଭ ଯାତନାରେ ଭାଗୀ। ଅତଏବ, ଆମ୍ଭେ ଜାଣୁ ଯେ,
ସେହିଭଳି ଆମ୍ଭମାନଙ୍କର ସାନ୍ତ୍ୱନାରେ ମଧ୍ୟ ତୁମ୍ଭର ଅଂଶ
ଅଛି।
୮ଭାଇ ଓ ଭଉଣୀମାନେ! ଏସିଆ ଦେଶରେ ଆମ୍ଭେ
ଯେଉଁ ଯାତନା ସହିଲୁ ଆମ୍ଭେ ଚାହୁଁ ଯେପରି ସେହି
ବିଷୟରେ ତୁମ୍ଭେମାନେ ମଧ୍ୟ ଜାଣ। ଆମ୍ଭେମାନେ ଭାରାକ୍ରାନ୍ତ
ହୋଇ ପଡ଼ିଲୁ। ଏପରିକି ଏହା ଏତେ ଅଧିକ ଥିଲା ଯେ,
ଆମ୍ଭେମାନେ ଜୀବନର ସମସ୍ତ ଆଶା ହରାଇଥିଲୁ। ସେହି
ଭାର ଆମ୍ଭମାନଙ୍କର ବହନ କରିବା ଶକ୍ତିଠାରୁ ଅଧିକ
ଥିଲା। ୯ଆମ୍ଭେ ଅନୁଭବ କରୁଥିଲୁ ଯେ, ଆମ୍ଭେ ମରିଯିବୁ।
ଏପରି ଘଟିବାର କାରଣ ହେଲା ଯେ, ଆମ୍ଭେ ନିଜ
ଉପରେ ଭରସା ନ ରଖି ମାତ୍ର ଯେ ଲୋକମାନଙ୍କୁ
ମୃତ୍ୟୁରୁ ଉଥିତ କରନ୍ତି ସେହି ପରମେଶ୍ୱରଙ୍କ ଉପରେ
ବିଶ୍ୱାସ ରଖିବା ଉଚିତ। ୧୦ପରମେଶ୍ୱର ଆମ୍ଭମାନଙ୍କୁ ମୃତ୍ୟୁର
ଏହି ଭୟଙ୍କର ବିପଦରୁ ଉଦ୍ଧାର କଲେ। ପରମେଶ୍ୱର
ସର୍ବଦା ଏପରି ଉଦ୍ଧାର କରିବେ। ଆମ୍ଭେ ତାହାଙ୍କ ଉପରେ,
ଆଶାବାନ ଓ ସେ ଆମ୍ଭମାନଙ୍କୁ ସର୍ବଦା ଉଦ୍ଧାର କରିବେ।
୧୧ତୁମ୍ଭେମାନେ ନିଜ ପ୍ରାର୍ଥନା ଦ୍ୱାରା ଆମ୍ଭକୁ ସାହାଯ୍ୟ
କରିପାର। ଅନେକେ ଆମ୍ଭ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେବେ, ଯେହେତୁ ସେମାନଙ୍କର ପ୍ରାର୍ଥନା ଦ୍ୱାରା ପରମେଶ୍ୱର
ଆମ୍ଭକୁ ଆଶୀର୍ବାଦ ପ୍ରଦାନ କଲେ।

### ପାଉଲଙ୍କ ଯୋଜନାରେ ପରିବର୍ତ୍ତନ

୧୨ପୁଣି ଆମ୍ଭେ ସମ୍ପୂର୍ଣ୍ଣ ହୃଦୟର ସହ କହିପାରୁ ଯେ,
ଏହି ସଂସାରରେ ଆମ୍ଭେ ଯାହା କିଛି କରୁଛୁ, ତାହା ସବୁ
ଆମ୍ଭେ ପରମେଶ୍ୱରଙ୍କଠାରୁ ପାଇଥିବା ଶୁଦ୍ଧ ଓ ଅକପଟ
ହୃଦୟରେ କହୁଛୁ। ଏଥିପାଇଁ ଆମ୍ଭେ ଗର୍ବିତ। ଏହା
ତୁମ୍ଭମାନଙ୍କ ପାଇଁ କରା ଯାଇଥିବା କାର୍ଯ୍ୟ ଦୃଷ୍ଟିରୁ ଏହା
ଅଧିକ ସତ୍ୟ। କାରଣ ଆମ୍ଭେ ଏହା ଜାଗତିକ ଜ୍ଞାନରେ
ନୁହେଁ ମାତ୍ର ପରମେଶ୍ୱରଙ୍କ କୃପାରୁ କରୁଛୁ। ୧୩ତୁମ୍ଭେମାନେ
ଯେଉଁ କଥାଗୁଡ଼ିକ ପଢ଼ି ପାରିବ ଓ ବୁଝି ପାରିବ, କେବଳ
ସେହି କଥାଗୁଡ଼ିକ ଆମ୍ଭେ ତୁମ୍ଭମାନଙ୍କୁ ଲେଖିଛୁ। ୧୪ଯେପରିକି
ତୁମ୍ଭେମାନେ ଆମ୍ଭ ବିଷୟରେ କିଛି କଥା ଆଗରୁ ବୁଝି
ସାରିଛ, ସେଥିପାଇଁ ଆମ୍ଭେ ଆଶା କରୁ ଯେ, ତୁମ୍ଭେମାନେ
ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବରେ ବୁଝି ପାରିବ। ତୁମ୍ଭେମାନେ ଏ
କଥା ବୁଝି ପାରିବ ଯେ, ଯେପରି ବର୍ତ୍ତମାନ ତୁମ୍ଭେ ଆମ୍ଭ
ପାଇଁ ଗର୍ବ କରୁଛ, ସେପରି ଆମ୍ଭ ପ୍ରଭୁ ଯୀଶୁ ଆସିବା
ଦିନ, ଆମ୍ଭେମାନେ ତୁମ୍ଭମାନଙ୍କ ପାଇଁ ଗର୍ବ କରି ପାରିବୁ।
୧୫ମୋହର ଏହି ବିଶ୍ୱାସ ଥିବାରୁ ମୁଁ ପ୍ରଥମରେ
ତୁମ୍ଭମାନଙ୍କ ପାଖକୁ ଆସିବା ପାଇଁ ଠିକ୍ କଲି। ଏହା ଦ୍ୱାରା
ତୁମ୍ଭେମାନେ ଦୁଇଥର ଆଶୀର୍ବାଦ ଲାଭ କରିବ। ୧୬ମାକିଦନିଆ
ଯିବା ବାଟରେ ମୁଁ ତୁମ୍ଭମାନଙ୍କୁ ଦେଖିବା ପାଇଁ ଯୋଜନା
କଲି। ମାକିଦନିଆଠାରୁ ଫେରିଲାବେଳେ ମଧ୍ୟ ପୁନର୍ବାର
ତୁମ୍ଭମାନଙ୍କ ପାଖକୁ ଆସିବି। ତୁମ୍ଭମାନଙ୍କ ସାହାଯ୍ୟରେ
ଯିହୂଦା ଦେଶକୁ ପ୍ରସ୍ଥାନ କରିବି। ୧୭ତୁମ୍ଭେମାନେ କ'ଣ
ଭାବୁଛ ଯେ, ଏହି ଯୋଜନାଗୁଡ଼ିକୁ କଲାବେଳେ ମୁଁ ପ୍ରକୃତରେ
ଚିନ୍ତା କରି ନ ଥିଲି? ବା ଜାଗତିକ ଜ୍ଞାନରେ କରିଥିଲି,
ଯେ ଏକା ସମୟରେ "ହଁ, ହଁ" କହୁଥିବି ଓ "ନା, ନା"
ମଧ୍ୟ କହୁଥିବି।
୧୮କିନ୍ତୁ ଯଦି ତୁମ୍ଭେମାନେ ପରମେଶ୍ୱରଙ୍କୁ ବିଶ୍ୱାସ
କରୁଛ, ତାହାହେଲେ ତୁମ୍ଭେମାନେ ବିଶ୍ୱାସ କରିପାର ଯେ,

ଆମ୍ଭେ ଯାହା କହୁ ତାହାର ଉତ୍ତର “ହଁ” ଓ “ନା”
ଉଭୟ ହୋଇ ପାରିବ ନାହିଁ। [୧୯]ମୁଁ ଏବଂ ସିଲ୍ୱାନ୍ ଓ
ତୀମଥିଙ୍କ ଦ୍ୱାରା ପ୍ରଚାରିତ ପରମେଶ୍ୱରଙ୍କ ପୁତ୍ର ଯୀଶୁଖ୍ରୀଷ୍ଟ
ଉଭୟ ‘ହଁ’ ଓ ‘ନା’ ଏକ ସମୟରେ କହନ୍ତି ନାହିଁ।
ଯୀଶୁ ଖ୍ରୀଷ୍ଟଙ୍କଠାରେ ସର୍ବଦା “ହଁ” କଥା “ହଁ” ହୁଏ।
[୨୦]କାରଣ ପରମେଶ୍ୱର ଯେଉଁ ସମସ୍ତ ପ୍ରତିଜ୍ଞା କରିଛନ୍ତି,
ସେ ଖ୍ରୀଷ୍ଟଙ୍କଠାରେ ସେ ସବୁଗୁଡ଼ିକ “ହଁ” ହୋଇଛି।
ସେଥିପାଇଁ ଆମ୍ଭେ ପରମେଶ୍ୱରଙ୍କ ମହିମା ନିମନ୍ତେ ଖ୍ରୀଷ୍ଟଙ୍କ
ନାମରେ “ଆମେନ୍” ବୋଲି କହିଥାଉ। [୨୧]କେବଳ ପରମେଶ୍ୱର
ତୁମ୍ଭମାନଙ୍କୁ ଓ ଆମ୍ଭମାନଙ୍କୁ ଖ୍ରୀଷ୍ଟଙ୍କଠାରେ ଦୃଢ଼ କରି
ରଖନ୍ତି। ପରମେଶ୍ୱର ତାହାଙ୍କର ବିଶେଷ ଆଶୀର୍ବାଦ ଆମ୍ଭକୁ
ପ୍ରଦାନ କରନ୍ତି। [୨୨]ସେ ଆମ୍ଭଠାରେ ନିଜ ଅଧିକାରର
ମୋହର ଲଗାଇଛନ୍ତି, ଓ ଆମ୍ଭମାନଙ୍କ ହୃଦୟରେ ତାହାଙ୍କ
ଆତ୍ମା ପ୍ରଦାନ କରିଛନ୍ତି,। ଏହା ପ୍ରମାଣ ଦିଏ ଯେ, ସେ
ଯାହା ପ୍ରତିଜ୍ଞା କରିଛନ୍ତି, ତାହା ନିଶ୍ଚୟ ଦେବେ।
[୨୩]ମୁଁ କରିନ୍ଥୀକୁ ଆଉ ଥରେ ଆସି ନ ଥିଲି କାରଣ
ମୁଁ ତୁମ୍ଭମାନଙ୍କୁ ଆଘାତ ଦେବାକୁ ଇଚ୍ଛା କରୁ ନ ଥିଲି।
[୨୪]ପରମେଶ୍ୱର ଏଥିର ସାକ୍ଷୀ। ମୋ କହିବା ଉଦେଶ୍ୟ
ନୁହେଁ ଯେ, ଆମ୍ଭେ ତୁମ୍ଭମାନଙ୍କ ବିଶ୍ୱାସକୁ ନିୟନ୍ତ୍ରିତ
କରିବାକୁ ଇଚ୍ଛା କରୁ। ତୁମ୍ଭେମାନେ ବିଶ୍ୱାସରେ ଦୃଢ଼ କିନ୍ତୁ
ଆମ୍ଭେମାନେ ତୁମ୍ଭର ଆନନ୍ଦ ପାଇଁ ତୁମ୍ଭମାନଙ୍କର ସହକର୍ମୀ।
୨ ସେଥିପାଇଁ ମୁଁ ଠିକ୍ କରିଥିଲି, ଏହିଥର ଗଲେ ମୁଁ
ତୁମ୍ଭମାନଙ୍କୁ ଯେପରି କଷ୍ଟ ନ ଦିଏ। [୨]ମୁଁ ଯଦି
ତୁମ୍ଭମାନଙ୍କୁ ଦୁଃଖିତ କରେ, ତେବେ କିଏ ମୋତେ ସୁଖୀ
କରିବ। କେବଳ ତୁମ୍ଭେମାନେ ମୋତେ ସୁଖ ଦେଇପାରିବ
ଯେଉଁମାନଙ୍କୁ ମୁଁ ପୂର୍ବରୁ ଦୁଃଖ ଦେଇଛି। [୩]ସେଥିପାଇଁ ମୁଁ
ତୁମ୍ଭମାନଙ୍କୁ ପତ୍ର ଲେଖିଲି, ଯେହେତୁ ମୁଁ ଯେତେବେଳେ
ତୁମ୍ଭମାନଙ୍କ ପାଖକୁ ଆସିବି, ଯେଉଁମାନଙ୍କ ଠାରୁ ମୋତେ
ଆନନ୍ଦ ମିଳିବା କଥା, ସେମାନଙ୍କ ଠାରୁ ମୋତେ ଦୁଃଖ ନ
ମିଳୁ। ତୁମ୍ଭମାନଙ୍କଠାରେ ମୋର ବିଶ୍ୱାସ ଅଛି ଯେ,
ତୁମ୍ଭେମାନେ ମୋର ସହିତ ଆନନ୍ଦ କରିବ। [୪]ପୂର୍ବରୁ ମୁଁ
ଯେତେବେଳେ ତୁମ୍ଭକୁ ଲେଖିଥିଲି, ସେତେବେଳେ ମୋ
ହୃଦୟରେ ଅଧିକ ବେଦନା ଓ ଦୁଃଖ ଥିଲା। ମୁଁ ଆଖିରେ
ଲୁହ ଥାଇ ଲେଖିଥିଲି। ତୁମ୍ଭମାନଙ୍କୁ ଦୁଃଖ ଦେବା ମୋର
ଉଦେଶ୍ୟ ନ ଥିଲା। ତୁମ୍ଭମାନଙ୍କ ପାଇଁ ମୋର ପ୍ରେମର
ମାତ୍ରା କେତେ ଅଧିକ, ଏହା ଯେପରି ତୁମ୍ଭେମାନେ
ଜାଣିପାରିବ ଏଥିପାଇଁ ଏହା ଲେଖିଲି।

## ମନ୍ଦ କରିଥିବା ଲୋକକୁ କ୍ଷମା ଦିଅ

[୫]ଯଦି ତୁମ୍ଭମାନଙ୍କ ଭିତରୁ କିଏ ଜଣେ ମୋତେ ଦୁଃଖିତ
କରିଛି, ସେ କେବଳ ମୋତେ ଦୁଃଖିତ କରି ନାହିଁ, ବରଂ
କିଛି ନା କିଛି ମାତ୍ରାରେ ତୁମ୍ଭମାନଙ୍କୁ ମଧ୍ୟ କରିଛି। [୬]ଏହି
ଲୋକକୁ ତୁମ୍ଭେମାନେ ମିଶି ଯାହା ଦଣ୍ଡ ଦେଇଛ, ତାହା
ଯଥେଷ୍ଟ ହେଲାଣି। [୭]କିନ୍ତୁ ଏବେ ତୁମ୍ଭେମାନେ ତାହାକୁ
କ୍ଷମା ଦେବା ଉଚିତ ଓ ତାହାକୁ ସାନ୍ତ୍ୱନା ପ୍ରଦାନ କରିବା
ଉଚିତ। ଏହା ତାହାକୁ ଉତ୍ସାହିତ କରିବ ଓ ସେ ଅଧିକ
ଦୁଃଖରେ ଭାଙ୍ଗି ପଡ଼ିବ ନାହିଁ। [୮]ସେଥିପାଇଁ ମୋର
ଅନୁରୋଧ ଯେ, ତୁମ୍ଭେମାନେ ତା'ପ୍ରତି ପୁନର୍ବାର ତୁମ୍ଭମାନଙ୍କର
ପ୍ରେମଭାବ ଦେଖାଅ। [୯]ତୁମ୍ଭେମାନେ ମୋର ସମସ୍ତ କଥାର
ଆଜ୍ଞାକାରୀ ହେଉଛ ନା ନାହିଁ, ଏହା ପରୀକ୍ଷା କରିବାକୁ
ମୁଁ ତୁମ୍ଭମାନଙ୍କୁ ଲେଖିଲି। [୧୦]ତୁମ୍ଭେମାନେ ଯଦି କାହାକୁ
କ୍ଷମା କର, ମୁଁ ମଧ୍ୟ ତାହାକୁ କ୍ଷମା କରି ଥାଏ, ତାହା ମୁଁ
ତୁମ୍ଭମାନଙ୍କ ପାଇଁ ଯୀଶୁ ଖ୍ରୀଷ୍ଟଙ୍କ ଉପସ୍ଥିତିରେ କ୍ଷମା
କରିଛି। [୧୧]ଏପରି କରିବା ଉଦେଶ୍ୟ ଯେ, ଶୟତାନ
ଆମ୍ଭଠାରୁ ଜିତି ନ ଯାଉ। ଆମ୍ଭେ ଶୟତାନର ଯୋଜନାଗୁଡ଼ିକ
ବିଷୟରେ ଅତି ଭଲ ଭାବରେ ଜାଣୁ।

## ତ୍ରୋୟାରେ ପାଉଲଙ୍କର ଉଦ୍‌ବେଗ

[୧୨]ମୁଁ ଯୀଶୁ ଖ୍ରୀଷ୍ଟଙ୍କର ସୁସମାଚାର ପ୍ରଚାର କରିବା ପାଇଁ
ତ୍ରୋୟା ନଗରକୁ ଯାଇଥିଲି। ପ୍ରଭୁ ସେଠାରେ ମୋତେ
ଭଲ ସୁଯୋଗଟିଏ ଦେଲେ। [୧୩]ସେଠାରେ ମୋ ଭାଇ
ତିତସକୁ ନ ପାଇ ମୁଁ ମୋ ମନରେ ଶାନ୍ତି ହରାଇଲି।
ସେଥିପାଇଁ ସେମାନଙ୍କଠାରୁ ବିଦାୟ ନେଇ ମୁଁ ମାକିଦନିଆକୁ
ଗଲି।

## ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ବିଜୟ

[୧୪]ପରମେଶ୍ୱର ହେଉଛନ୍ତି ଧନ୍ୟ। ସେ ଯୀଶୁ ଖ୍ରୀଷ୍ଟଙ୍କ
ମାଧ୍ୟମରେ ଆମ୍ଭ ବିଜୟ ଅଭିଯାନରେ ସର୍ବଦା ମାର୍ଗ ଦର୍ଶନ
କରାନ୍ତି। ଆମ୍ଭ ମାଧ୍ୟମରେ ସେ ପ୍ରତ୍ୟେକ ସ୍ଥାନରେ ତାହାଙ୍କ
ଜ୍ଞାନର ମଧୁର ସୁଗନ୍ଧି ପ୍ରସାର କରନ୍ତି। [୧୫]ଆମ୍ଭର ଉତ୍ସର୍ଗ
ବଳି ପରମେଶ୍ୱରଙ୍କ ପାଇଁ ହେଉଛି ଏହା: ଯେଉଁ ଲୋକମାନେ
ଉଦ୍ଧାର ପାଇଛନ୍ତି ଏବଂ ଯେଉଁମାନେ ପାଇନାହାଁନ୍ତି, ସେମାନଙ୍କ
ପାଇଁ ଆମ୍ଭେମାନେ ଖ୍ରୀଷ୍ଟଙ୍କ ମଧୁର ସୁଗନ୍ଧି। [୧୬]ଯେଉଁମାନେ
ନଷ୍ଟ ହୋଇ ଯାଇଛନ୍ତି, ସେମାନଙ୍କ ଲାଗି ଆମ୍ଭେମାନେ
ମୃତ୍ୟୁର ଦୁର୍ଗନ୍ଧ ସ୍ୱରୂପ ଅଟୁ। କିନ୍ତୁ ଯେଉଁମାନେ ଉଦ୍ଧାର
ପାଉଛନ୍ତି, ଆମ୍ଭେ ସେମାନଙ୍କ ଲାଗି ଜୀବନର ସୁଗନ୍ଧି ଅଟୁ।
ଅତଏବ ପ୍ରଶ୍ନ ଏହା ଯେ, ଏହି କାମ କରିବା ପାଇଁ କିଏ
ସମର୍ଥ? [୧୭]ଅନେକ ଯେପରି କରନ୍ତି, ସେପରି ଆମ୍ଭେ ନିଜ
ଲାଭ ପାଇଁ ପରମେଶ୍ୱରଙ୍କ ବାକ୍ୟ ବିକ୍ରୀ କରୁନାହୁଁ, କିନ୍ତୁ
ଆମ୍ଭେମାନେ ପରମେଶ୍ୱରଙ୍କ ସାକ୍ଷାତରେ ଖ୍ରୀଷ୍ଟଙ୍କଠାରେ ଥାଇ
ସତ୍ୟ କହୁ। ପରମେଶ୍ୱରଙ୍କ ପ୍ରେରିତ ଲୋକ ଭଳି କଥା
କହୁ।

## ପରମେଶ୍ୱରଙ୍କ ନୂତନ ଚୁକ୍ତିର ସେବକ

୩ ଆମ୍ଭେ କ'ଣ ପୁନର୍ବାର ନିଜ ପ୍ରଶଂସା ନିଜେ
କରିବାକୁ ଆରମ୍ଭ କରିଅଛୁ? ଆମ୍ଭେ କଣ
ତୁମ୍ଭମାନଙ୍କଠାରୁ ବା ତୁମ୍ଭମାନଙ୍କ ପାଖକୁ ପ୍ରଶଂସା ପତ୍ର
ନେବା ଦରକାର କି? କେତେକ ଲୋକ ଏପରି କରନ୍ତି।
[୨]ତୁମ୍ଭେମାନେ ନିଜେ ଆମ୍ଭର ପ୍ରଶଂସା ପତ୍ର ଅଟ। ଏହା
ଆମ୍ଭ ହୃଦୟରେ ଲେଖି ହୋଇ ରହିଛି। ଏହା ସମସ୍ତଙ୍କୁ
ଜଣା ଓ ସମସ୍ତେ ତାହାକୁ ପଢ଼ି ପାରିବେ। [୩]ଏହା ସ୍ପଷ୍ଟ
ଯେ, ତୁମ୍ଭେମାନେ ଆମ୍ଭ ମାଧ୍ୟମରେ ଖ୍ରୀଷ୍ଟଙ୍କ ପ୍ରେରିତ ଏକ
ପତ୍ର ସ୍ୱରୂପ। ଏହି ଚିଠିଟି କାଳିରେ ନୁହେଁ, ମାତ୍ର ଜୀବନ୍ତ
ପରମେଶ୍ୱରଙ୍କ ଆତ୍ମା ଦ୍ୱାରା ଲେଖା ଯାଇଛି। ଏହା ଶିଳା

ଫଳକ* ଉପରେ ଖୋଦିତ ନୁହେଁ ବରଂ ମନୁଷ୍ୟର
ହୃଦୟରେ ଲିଖିତ ।
୪ଯୀଶୁ ଖ୍ରୀଷ୍ଟଙ୍କ ହେତୁ ପରମେଶ୍ୱରଙ୍କ ଠାରେ ଆମ୍ଭର
ନିଶ୍ଚିତ ଭରସା ଥିବାରୁ ଆମ୍ଭେ ଏହା କହି ପାରୁ । ୫ଆମ୍ଭେ
ନିଜେ ସମସ୍ତ ଉତ୍ତମ କର୍ମ କରିପାରୁ, ତାହା ନୁହେଁ, କିନ୍ତୁ
ଆମ୍ଭକୁ ଏହି ସାମର୍ଥ୍ୟ ପରମେଶ୍ୱରଙ୍କଠାରୁ ପ୍ରାପ୍ତ ହୋଇଛି ।
୬ସେ ଆମ୍ଭକୁ ଗୋଟିଏ ନୂତନ ଚୁକ୍ତିର ସେବକ ହେବା
ପାଇଁ ଯୋଗ୍ୟ ବିବେଚିତ କରିଛନ୍ତି । ଏହା ଲିଖିତ ନିୟମ
ନୁହେଁ, ବରଂ ଆତ୍ମାର ଗୋଟିଏ ଚୁକ୍ତି ଅଟେ । ଲିଖିତ
ନିୟମ ମୃତ୍ୟୁ ଆଣେ । କିନ୍ତୁ ଆତ୍ମା ଜୀବନ ପ୍ରଦାନ କରେ ।

## ନୂତନ ଚୁକ୍ତି ଅଧିକ ମହିମା ଆଣେ

୭ମୃତ୍ୟୁଦାୟକ ସେବାର ବ୍ୟବସ୍ଥା ଶିଳା ଲେଖା ହୋଇ
ଥିଲା । ଏହା ପରମେଶ୍ୱରଙ୍କ ମହିମାରେ ପୂର୍ଣ୍ଣ ଥିଲା । ତଦ୍ୱାରା
ମୋଶାଙ୍କ ଚେହେରା ଏତେ ତେଜସ୍ୱୀ ହେଲା ଯେ, ଇସ୍ରାୟେଲର
ଲୋକେ ତାହାଙ୍କ ଚେହେରାକୁ ଦେଖି ମଧ୍ୟ ପାରିଲେ
ନାହିଁ । ଏହି ତେଜ ପରେ ଲୋପ ପାଇଗଲା । ୮ତା'ହେଲେ
ଆତ୍ମାଙ୍କର ଜୀବନଦାୟକ ସେବା କେତେ ଅଧିକ ମହିମାଯୁକ୍ତ
ନ ହେବ? ୯ଯାହା ଲୋକମାନଙ୍କୁ ଦୋଷୀ ପ୍ରମାଣିତ କରେ
ସେଭଳି ସେବାରେ ଯଦି ପ୍ରଭୁଙ୍କ ମହିମା ଅଛି; ତା'ହେଲେ
ଯେଉଁ ସେବା ଲୋକମାନଙ୍କୁ ପରମେଶ୍ୱରଙ୍କ ଦୃଷ୍ଟିରେ
ଧାର୍ମିକ ଗଣିତ କରେ, ତାହାର ମହିମା ନିଶ୍ଚିତଭାବେ ଅଧିକ
ହେବ । ୧୦ପୁରାତନ ସେବାରେ ମହିମା ଥିଲା, କିନ୍ତୁ
ଅଧିକ ମହିମାଯୁକ୍ତ ନୂତନ ସେବା ସହିତ ତୁଳନା କଲେ,
ସେହି ପ୍ରଥମ ମହିମା କିଛି ନୁହେଁ । ୧୧ଯେଉଁ ସେବା
ଅଦୃଶ୍ୟ ହେଲା, ତାହା ଯଦି ମହିମା ସହିତ ଆସିଥିଲା,
ତା'ହେଲେ ଏହି ଅନନ୍ତ କାଳସ୍ଥାୟୀ ସେବା ଅତ୍ୟଧିକ
ମହିମା ମୟ ହେବା ସ୍ୱାଭାବିକ ।
୧୨ଆମ୍ଭମାନଙ୍କଠାରେ ଏହି ପ୍ରକାରର ଭରସା ରହିଥିବା
ହେତୁ ଆମ୍ଭେ ଅତି ସାହସୀ । ୧୩ଆମ୍ଭେ ମୋଶାଙ୍କ ଭଳି
ନୋହୁଁ । ସେ ନିଜ ମୁଖ ମଣ୍ଡଳ ଉପରେ ଗୋଟିଏ
ଆବରଣ ପକାଇଥିଲେ । ଇସ୍ରାୟେଲର ଲୋକେ ଯେପରି
ତାହାଙ୍କ ମୁହଁକୁ ଦେଖିନ ପାରିବେ ତେଣୁ ମୋଶା ମୁଖ
ଆଚ୍ଛାଦନ କରିଥିଲେ । ତହିଁର ମହିମା (ତେଜ) କମି କମି
ଯାଉଥିଲା, ଓ ଲୋକେ ଏହି ସେବାର ଅନ୍ତ ଦେଖନ୍ତୁ,
ମୋଶା ଏହା ଇଚ୍ଛା କରୁ ନ ଥିଲେ । ୧୪କିନ୍ତୁ ସେମାନଙ୍କର
ମନଗୁଡ଼ିକ ଅବରୁଦ୍ଧ ହୋଇ ଯାଇଥିଲା । ଏପରିକି ଆଜି
ମଧ୍ୟ ସେମାନେ ଯେତେବେଳେ ପୁରାତନ ଚୁକ୍ତିକୁ ପଢ଼ନ୍ତି
ସେହି ଆବରଣଟି ଅର୍ଥକୁ ଲୁଚାଇ ରଖେ । ସେ ଆବରଣ
କଢ଼ା ଯାଇ ନାହିଁ । କେବଳ ଖ୍ରୀଷ୍ଟ ଯୀଶୁ ଏହି ଆବରଣ
ଦୂର କରିଛନ୍ତି । ୧୫କିନ୍ତୁ ଏପରି କି ଆଜି ଯେତେବେଳେ
ଏହି ଲୋକମାନେ ମୋଶାଙ୍କ ନିୟମକୁ ପଢ଼ନ୍ତି, ସେହି
ଆବରଣ ହେତୁ ସେମାନେ ଏଥିର ଅର୍ଥ ବୁଝି ପାରନ୍ତି
ନାହିଁ । ୧୬କିନ୍ତୁ ଜଣେ ଲୋକ ଯେତେବେଳେ ପରିବର୍ତ୍ତିତ
ହୁଏ ଓ ସେ ପ୍ରଭୁଙ୍କ ଅନୁସରଣ କରେ, ସେହି ଆବରଣଟି
ବାହାର କରିଦିଆ ଯାଏ । ୧୭ପ୍ରଭୁ ଆତ୍ମା ଅଟନ୍ତି । ଯେଉଁଠାରେ
ପ୍ରଭୁଙ୍କର ଆତ୍ମା ବିଦ୍ୟମାନ, ସେହିଠାରେ ସ୍ୱାଧୀନତା ଅଛି ।
୧୮ଆମ୍ଭ ଚେହେରାଗୁଡ଼ିକ ଆଚ୍ଛାଦିତ ନୁହେଁ । ଆମ୍ଭେ ସମସ୍ତେ
ପ୍ରଭୁଙ୍କର ମହିମା ପ୍ରତିଫଳିତ କରିପାରୁ । ଆମ୍ଭେ ତାହାଙ୍କ
ଭଳି ହେବାକୁ ନିଜକୁ ପରିବର୍ତ୍ତିତ କରୁ । ଏହି ପରିବର୍ତ୍ତନ
ଆମ୍ଭ ଭିତରେ ଅଧିକରୁ ଅଧିକ ମହିମା ଆଣି ଦିଏ । ଉକ୍ତ
ମହିମା ପ୍ରଭୁଙ୍କଠାରୁ ଅର୍ଥାତ୍ ଆତ୍ମାଙ୍କ ଠାରୁ ପ୍ରାପ୍ତ ହେଉ ।

## ମାଟିପାତ୍ର ଭିତରେ ଆଧ୍ୟାତ୍ମିକ ଧନ

୪ ପରମେଶ୍ୱର ଅନୁଗ୍ରହ କରି ଆମ୍ଭମାନଙ୍କୁ ଏହି ସେବା
କାର୍ଯ୍ୟ ଦେଇଛନ୍ତି, ସେଥିପାଇଁ ଆମ୍ଭେ ଏହାକୁ ଛାଡ଼ିବା
ନାହିଁ । ୨ଆମ୍ଭେ ଲଜ୍ଜାପୂର୍ଣ୍ଣ ଓ ଗୁପ୍ତ କାର୍ଯ୍ୟଗୁଡ଼ିକୁ ଛାଡ଼ି
ଦେଇଛୁ । ଆମ୍ଭେ କପଟ କରୁ ନାହୁଁ, ପରମେଶ୍ୱରଙ୍କ
ବାକ୍ୟରେ ପରିବର୍ତ୍ତନ କରୁ ନାହୁଁ, ବରଂ ଆମ୍ଭେ ସତ୍ୟକୁ
ସରଳ ଭାବରେ ପ୍ରକାଶ କରୁଛୁ । ଏହାଦ୍ୱାରା ଲୋକମାନଙ୍କଠାରେ
ଆମ୍ଭେ ନିଜର ବ୍ୟକ୍ତିତ୍ୱ ପ୍ରତିପାଦନ କରୁଛୁ, ଯାହା ଦ୍ୱାରା
ସମସ୍ତେ ନିଜ ହୃଦୟରେ ଜାଣି ପାରିବେ ଯେ, ପରମେଶ୍ୱରଙ୍କ
ସମ୍ମୁଖରେ ଆମ୍ଭେମାନେ ସତ୍ୟ ବାକ୍ୟ ପ୍ରଚାର କରୁଅଛୁ ।
୩ସୁସମାଚାର ଯଦି ଆଚ୍ଛାଦିତ ହୋଇଥାଏ, ତେବେ ସେହି
ଆଚ୍ଛାଦନ କେବଳ ସେହିମାନଙ୍କ ପାଇଁ ଯେଉଁମାନେ ବିନାଶ
ମାର୍ଗରେ ରହିଛନ୍ତି । ୪ଅବିଶ୍ୱାସୀମାନଙ୍କ ମନକୁ ଜଗତପତି
ଶୟତାନ ଅନ୍ଧ କରି ଦେଇଛି । ତେଣୁ ସେମାନେ ଖ୍ରୀଷ୍ଟଙ୍କର
ସୁସମାଚାରର ଆଲୋକ ଦେଖି ପାରନ୍ତି ନାହିଁ । ୫ଯୀଶୁ ଖ୍ରୀଷ୍ଟ
ହେଉଛନ୍ତି ପରମେଶ୍ୱରଙ୍କ ସାକ୍ଷାତ ପ୍ରତିରୂପ । ଆମ୍ଭେ ନିଜର
ପ୍ରଚାର କରୁ ନାହୁଁ, କିନ୍ତୁ ଯୀଶୁଖ୍ରୀଷ୍ଟଙ୍କୁ ପ୍ରଭୁ ରୂପେ ପ୍ରଚାର
କରୁଛୁ । ନିଜ ବିଷୟରେ ଆମ୍ଭେ କହୁ ଯେ, ଯୀଶୁଙ୍କ ପାଇଁ
ଆମ୍ଭେ ତୁମ୍ଭମାନଙ୍କ ସେବକ । ୬ଥରେ ପରମେଶ୍ୱର କହିଲେ:
"ଅନ୍ଧକାର ମଧ୍ୟରୁ ଆଲୋକ ପ୍ରକାଶିତ ହେବ ।"
ସେହି ପରମେଶ୍ୱର ଆମ୍ଭମାନଙ୍କ ହୃଦୟରେ ତାହାଙ୍କର
ଆଲୋକ ଦେଖାଇଛନ୍ତି । ଯୀଶୁ ଖ୍ରୀଷ୍ଟଙ୍କ ମୁହଁରେ ପରମେଶ୍ୱରଙ୍କ
ଯେଉଁ ଗୌରବମୟ ଆଲୋକ ଦେଖିବାକୁ ମିଳେ ସେହି
ଆଲୋକ ସେ ଆମ୍ଭକୁ ଦେଲେ ।
୭ଆମ୍ଭେ ପରମେଶ୍ୱରଙ୍କଠାରୁ ଏହି ଧନ ପାଇଅଛୁ ।
ଆମ୍ଭେ ମାଟିପାତ୍ର ସଦୃଶ କେବଳ ଏହି ଭଣ୍ଡାରକୁ ଧରିଛୁ ।
ଏହା ପ୍ରମାଣିତ କରେ ଯେ, ଏହି ଆଶ୍ଚର୍ଯ୍ୟ ଶକ୍ତି ଆମ୍ଭର
ନୁହେଁ, ତାହା ପରମେଶ୍ୱରଙ୍କର ଅଟେ । ୮ଆମ୍ଭ ଚତୁର୍ଦ୍ଦିଗରୁ
ସମସ୍ୟା ଆମ୍ଭକୁ ଘେରି ପକାଇଛି, କିନ୍ତୁ ଆମ୍ଭେ ହାରି ଯାଉ
ନାହୁଁ । ଅନେକ ସମୟରେ କ'ଣ କରିବାକୁ ହେବ ତାହା
ଆମ୍ଭେ ଜାଣି ପାରୁନାହୁଁ । ୯ଆମ୍ଭେ ନିର୍ଯ୍ୟାତିତ ହେଉଛୁ, କିନ୍ତୁ
ପରମେଶ୍ୱର ଆମ୍ଭକୁ ଛାଡ଼ି ଦିଅନ୍ତି ନାହିଁ । ଆମ୍ଭେ କେତେ
ଥର ଆଘାତ ପାଇଛୁ, କିନ୍ତୁ ବିନଷ୍ଟ ହୋଇ ନାହୁଁ । ୧୦ଯୀଶୁ
ଖ୍ରୀଷ୍ଟଙ୍କ ପରି ଆମ୍ଭ ଶରୀର ସର୍ବଦା ମୃତ୍ୟୁର ସମ୍ମୁଖୀନ
ଯେପରିକି ତାହାଙ୍କର ଜୀବନ ମଧ୍ୟ ଆମ୍ଭ ଭିତରେ ପ୍ରକାଶିତ
ହେବ । ୧୧ଆମ୍ଭେ ଜୀବିତ, କିନ୍ତୁ ଯୀଶୁଙ୍କ ହେତୁ ଆମ୍ଭେ
ସର୍ବଦା ମୃତ୍ୟୁ ସଂକଟର ସମ୍ମୁଖୀନ ହେଉଛୁ । ଯଦ୍ୱାରା

---

**ଶିଳାଫଳକ:** ମୋଶାଙ୍କୁ ଦିଆ ଯାଇଥିବା ନିୟମଗୁଡ଼ିକ ଶିଳାଫଳକଗୁଡ଼ିକ ଉପରେ ଲେଖା ହୋଇ ଥିଲା (ଯାତ୍ରା ପୁସ୍ତକ:୨୪:୧୨, ୨୫:୧୬)

ଯୀଶୁଙ୍କ ଜୀବନ ଆମ୍ଭର ମରଣଶୀଳ ଶରୀର ମଧ୍ୟରେ ସ୍ପଷ୍ଟ
ଭାବରେ ଦେଖି ପାରିବା। ୧୨ଅତଏବ ଆମ୍ଭ ଭିତରେ ମୃତ୍ୟୁ
ଓ ତୁମ୍ଭମାନଙ୍କ ଭିତରେ ଜୀବନ ସକ୍ରିୟ ଅଟେ।
୧୩ଶାସ୍ତ୍ରରେ ଲେଖା ଅଛି: "ମୁଁ ବିଶ୍ୱାସ କଲି, ଏଣୁ ସ୍ପଷ୍ଟ
କହିଲି।"* ଆମ୍ଭର ବିଶ୍ୱାସ ମଧ୍ୟ ସେହିଭଳି ଅଟେ।
ଆମ୍ଭେ ବିଶ୍ୱାସ କରୁ, ସେଥିପାଇଁ ଆମ୍ଭେ କହୁ। ୧୪କାରଣ
ଆମ୍ଭେ ଜାଣୁ ଯେ, ଯେଉଁ ପରମେଶ୍ୱର ଯୀଶୁଙ୍କୁ ମୃତ୍ୟୁରୁ
ପୁନରୁତ୍ଥିତ କଲେ, ସେ ଆମ୍ଭକୁ ମଧ୍ୟ ଯୀଶୁଙ୍କ ସହ
ପୁନରୁତ୍ଥିତ କରିବେ। ୧୫ସେ ଆମ୍ଭକୁ ମଧ୍ୟ ତୁମ୍ଭମାନଙ୍କ
ସହିତ ନିଜ ସମ୍ମୁଖରେ ଠିଆ କରିବେ। ଏହି ସବୁ ବିଷୟ
ତୁମ୍ଭମାନଙ୍କ ପାଇଁ କରା ଯାଉଛି। ଏହାଦ୍ୱାରା ଅନେକ
ଲୋକ ଯେପରି ପରମେଶ୍ୱରଙ୍କ ଅନୁଗ୍ରହ ପାଇ ପାରିବେ।
ପରମେଶ୍ୱରଙ୍କ ମହିମା ନିମନ୍ତେ ତାହାଙ୍କୁ ଅଧିକରୁ ଅଧିକ
ଧନ୍ୟବାଦ ଅର୍ପଣ କରାଯିବ।

## ବିଶ୍ୱାସରେ ଜୀବନ କାଟିବା

୧୬ସେଥିପାଇଁ ଆମ୍ଭେ କେବେହେଲେ ନିରାଶ ନ ହେଉ,
ଯଦିଓ ଆମ୍ଭର ବାହ୍ୟିକ ଶରୀର କ୍ଷୀଣ ହୋଇ ଯାଉଛି,
କିନ୍ତୁ ଆମ୍ଭର ଅନ୍ତଃରସ୍ଥ ଆତ୍ମା ଦିନକୁ ଦିନ ନୂତନରୁ ଅତି
ନୂତନ ହୋଇ ଯାଉଅଛି। ୧୭ବର୍ତ୍ତମାନ ଆମ୍ଭେ ସମ୍ମୁଖୀନ
ହେଉଥିବା ଛୋଟ ଛୋଟ କ୍ଷଣିକ ଅସୁବିଧାଗୁଡ଼ିକ ଆମ୍ଭ
ପାଇଁ ଏକ ଅତୁଳନୀୟ, ଉତ୍କୃଷ୍ଟ ଓ ଅନନ୍ତ ମହିମା ଉତ୍ପନ୍ନ
କରୁଛି। ଏହି ଅତୁଳନୀୟ ମହିମା ଅସୁବିଧାଗୁଡ଼ିକ ତୁଳନାରେ
ଅତି ମହାନ୍। ୧୮ଆମ୍ଭର ଆଖି ଦୃଶ୍ୟ ବିଷୟଗୁଡ଼ିକ ଉପରେ
ନ ରହି, ଅଦୃଶ୍ୟ ବିଷୟ ଉପରେ କେନ୍ଦ୍ରୀଭୂତ ହେଉ।
କାରଣ ଯାହା ଆମ୍ଭକୁ ଦେଖା ଯାଉଛି, ତାହା ଅସ୍ଥାୟୀ, ଓ
ଯାହା ଅଦୃଶ୍ୟ, ତାହା ସମ୍ପୂର୍ଣ୍ଣ ଚିରସ୍ଥାୟୀ।
୫ ଆପଣ ଜାଣନ୍ତି ଯେ, ଆମ୍ଭର ଶରୀରରୂପ ତମ୍ବୁ
ଯେଉଁଥିରେ ଆମ୍ଭେ (ସଂସାରରେ) ରହିଛୁ, ତାହା
ନଷ୍ଟ ହେବ। ଏପରି ଘଟିଲା ପରେ ପରମେଶ୍ୱରଙ୍କ ସହିତ
ବାସ କରିବା ନିମନ୍ତେ ଏକ ଗୃହ ଆମ୍ଭକୁ ଦେବେ। ଏହା
ମଣିଷ ଦ୍ୱାରା ନିର୍ମିତ ନୁହେଁ। ୨ଏହା ସ୍ୱର୍ଗରେ ସ୍ଥାପିତ
ଚିରସ୍ଥାୟୀ ଗୃହ ଅଟେ। ଆମ୍ଭେ ଏହି ପୃଥିବୀର ଘରଟିରେ
ରହି ଥକି ଯାଇଛୁ। ଆମ୍ଭେ ଇଚ୍ଛା କରୁ ଯେ, ପରମେଶ୍ୱର
ଆମ୍ଭକୁ ଆମ୍ଭର ସ୍ୱର୍ଗୀୟ ଘରଟି ଦିଅନ୍ତୁ। ୩ଏହି ଘରଟି
ପାଇଲା ପରେ, ଏହା ଆମ୍ଭକୁ ଆବୃତ କରିବ, ଓ ଆମ୍ଭେ
ଉଲଗ୍ନ ଦେଖା ଯିବୁ ନାହିଁ। ୪ଏହି ଶରୀରରୂପ ତମ୍ବୁରେ
ରହିଲାବେଳେ ଆମ୍ଭେମାନେ ଭାରାକ୍ରାନ୍ତ ହୋଇ ଅଭିଯୋଗ
କରୁ। ମୋର କହିବା ଅର୍ଥ ନୁହେଁ ଯେ, ଆମ୍ଭେ ଏହି
ତମ୍ବୁକୁ ଦୂର କରି ଦେବା ପାଇଁ ଚାହୁଁ। କିନ୍ତୁ ଆମ୍ଭେ
ସ୍ୱର୍ଗୀୟ ଘର ଦ୍ୱାରା ଆଚ୍ଛାଦିତ ହେବାକୁ ଇଚ୍ଛା କରୁ।
ତା'ହେଲେ ଯାଇ ଏହି ମର ଶରୀର ସମ୍ପୂର୍ଣ୍ଣ ଭାବେ ଜୀବନ
ଦ୍ୱାରା ଘୋଡ଼ାଇ ହୋଇ ପାରିବ। ୫ପରମେଶ୍ୱର ଆମ୍ଭକୁ
ଏଥିପାଇଁ ପ୍ରସ୍ତୁତ କରିଛନ୍ତି, ଓ ସେ ଯାହା ପ୍ରତିଜ୍ଞା
କରିଥିଲେ ତାହା ଆମ୍ଭକୁ ପ୍ରଦାନ କରିବେ ବୋଲି ଆତ୍ମା
ଏଥିର ସାକ୍ଷ୍ୟ ଦିଏ।
୬ଅତଏବ ଆମ୍ଭର ପୂର୍ଣ୍ଣ ଆଶା ଅଛି। ଆମ୍ଭେ ଜାଣୁ
ଯେ, ଯେପର୍ଯ୍ୟନ୍ତ ଆମ୍ଭେ ଏହି ଦେହରେ ଅଛୁ ସେପର୍ଯ୍ୟନ୍ତ
ଆମ୍ଭେ ପ୍ରଭୁଙ୍କ ଠାରୁ ଦୂରରେ ଅଛୁ। ୭ଆମ୍ଭେ ଯାହା ଦେଖୁ,
ତା' ସାହାଯ୍ୟରେ ନୁହେଁ, ମାତ୍ର ବିଶ୍ୱାସ ଦ୍ୱାରା ପରିଚାଳିତ
ହେଉ, ସେଥିପାଇଁ ମୁଁ କୁହେ ଯେ, ଆମ୍ଭମାନଙ୍କର ଆଶା
ଅଛି। ୮ଆମ୍ଭେମାନେ ଏହି ଶରୀରରୁ ଦୂରକୁ ଯିବାକୁ ଓ
ପ୍ରଭୁଙ୍କ ନିକଟସ୍ଥ ହେବାକୁ ଅଧିକ ପସନ୍ଦ କରୁ। ୯ଆମ୍ଭର
ଏକମାତ୍ର ଉଦ୍ଦେଶ୍ୟ ପରମେଶ୍ୱରଙ୍କୁ ପ୍ରସନ୍ନ କରିବା। ଆମ୍ଭେ
ଏହିଠାରେ ବାହ୍ୟିକ ଶରୀର ଧାରଣ କରି ରହୁ ବା ସେଠାରେ
ପ୍ରଭୁଙ୍କ ସହିତ ରହୁ, ଆମ୍ଭେ ପ୍ରଭୁଙ୍କୁ ପ୍ରସନ୍ନ କରିବାକୁ
ଚାହୁଁ। ୧୦ଆମ୍ଭେ ସମସ୍ତେ ବିଚାରିତ ହେବା ନିମନ୍ତେ
ଖ୍ରୀଷ୍ଟଙ୍କର ନ୍ୟାୟାସନ ଆଗରେ ଅବଶ୍ୟ ଠିଆ ହେବୁ।
ଆମ୍ଭମାନଙ୍କ ଭିତରୁ ପ୍ରତ୍ୟେକ, ଏହି ପାର୍ଥିବ ଶରୀର ଧାରଣ
କରିଥିଲାବେଳେ ଯାହା କିଛି ଭଲ ବା ମନ୍ଦ କରିଛୁ,
ତା'ପାଇଁ ପ୍ରତିଦାନ ପାଇବ।

## ପରୋପକାରୀ ଲୋକେ ପରମେଶ୍ୱରଙ୍କ ମିତ୍ର ହୁଅନ୍ତି

୧୧ଆମ୍ଭେ ଜାଣୁ ଯେ, ପ୍ରଭୁଙ୍କୁ ଭୟ କରିବା ଅର୍ଥ କ'ଣ
ଅଟେ। ସେଥିପାଇ ଲୋକମାନଙ୍କୁ ସତ୍ୟ ଗ୍ରହଣ କରିବା
ପାଇଁ ଆମ୍ଭେ ବୁଝାଉଁ। ପରମେଶ୍ୱର ଜାଣନ୍ତି ଯେ, ଆମ୍ଭେ
ପ୍ରକୃତରେ କ'ଣ ଓ ମୁଁ ଆଶା କରେ, ତୁମ୍ଭେ ମଧ୍ୟ ଆମ୍ଭର
ପ୍ରକୃତ ପରିଚୟ ପାଇପାରିବ। ୧୨ଆମ୍ଭେ ତୁମ୍ଭମାନଙ୍କ ଆଗରେ
ନିଜର ପ୍ରଶଂସା କରୁ ନାହୁଁ। ବରଂ ଆମ୍ଭେ ତୁମ୍ଭମାନଙ୍କୁ
ସୁଯୋଗ ଦେଉଛୁ ଯେପରି ଆମ୍ଭ ପାଇଁ ତୁମ୍ଭେମାନେ ଗର୍ବ
ଅନୁଭବ କରି ପାରିବ। ତା'ହେଲେ ପ୍ରତ୍ୟକ୍ଷ ଦିଶୁଥିବା
ବିଷୟଗୁଡ଼ିକ ପାଇଁ ଗର୍ବ କରୁଥିବା ଲୋକକୁ ତୁମ୍ଭେମାନେ
ଉତ୍ତର ଦେଇ ପାରିବ। ସେ ଲୋକମାନେ ଜଣକର
ହୃଦୟରେ କ'ଣ ଅଛି, ତହିଁ ପାଇଁ ସେମାନେ ମନୋଯୋଗ
କରନ୍ତି ନାହିଁ। ୧୩ଆମ୍ଭେ ଯଦି ପାଗଳ, ତାହା ପରମେଶ୍ୱରଙ୍କ
ପାଇଁ। ୧୪ଯଦି ଆମ୍ଭେ ଠିକ ମନରେ ଅଛୁ ତାହା
ତୁମ୍ଭମାନଙ୍କ ପାଇଁ। ଖ୍ରୀଷ୍ଟଙ୍କ ପ୍ରେମ ଆମ୍ଭକୁ ନିୟନ୍ତ୍ରିତ
କରେ। କାରଣ ଆମ୍ଭେ ଜାଣୁ ଯେ ଜଣେ ସମସ୍ତଙ୍କ ପାଇଁ
ମରିଛନ୍ତି। ସେଥିପାଇଁ ସମସ୍ତେ ମରିଛନ୍ତି। ୧୫ଖ୍ରୀଷ୍ଟ ସମସ୍ତଙ୍କ
ପାଇଁ ମରିବାର ଉଦ୍ଦେଶ୍ୟ ହେଉଛି ଯେ ଯେଉଁ ଲୋକମାନେ
ଜୀବିତ, ଏହା ପରେ ସେମାନେ ନିଜ ପାଇଁ ଜୀବିତ ନ
ରୁହନ୍ତି, ବରଂ ଯିଏ ମରି ଯାଇଥିଲେ ଓ ପୁନର୍ବାର
ସେମାନଙ୍କ ପାଇଁ ଉତ୍ଥିତ ହେଲେ, ସେହି ଖ୍ରୀଷ୍ଟଙ୍କ ପାଇଁ
ଜୀବିତ ରୁହନ୍ତୁ।
୧୬ଏହି ସମୟ ପରେ, ଆମ୍ଭେ କୌଣସି ଲୋକକୁ
ଜାଗତିକ ଦୃଷ୍ଟିରୁ ଦେଖିବା କରିବା ନାହିଁ। ଅତୀତରେ
ଆମ୍ଭେ ଯୀଶୁ ଖ୍ରୀଷ୍ଟଙ୍କୁ ମଧ୍ୟ ଜାଗତିକ ଦୃଷ୍ଟିରେ ବୁଝିଥିଲୁ।
କିନ୍ତୁ ଏବେ ଆମ୍ଭେ ସେପରି ଭାବୁନାହୁଁ। ୧୭ଯଦି କୌଣସି
ଲୋକ ଖ୍ରୀଷ୍ଟଙ୍କ ଠାରେ ଅଛି, ସେ ନୂତନ ଭାବରେ ସୃଷ୍ଟି
ହୋଇ ଅଛି। ପୁରୁଣା ବିଷୟ ସମସ୍ତ ଚାଲି ଯାଇଅଛି, ଓ
ପ୍ରତ୍ୟେକ ବିଷୟ ନୂଆ ହୋଇ ଯାଇଛି। ୧୮ଏହି ସବୁ

---

**"ମୁଁ ... କହିଲି।"** ଗୀତସଂହିତା, ୧୧୬:୧୦

ବିଷୟ ପରମେଶ୍ୱରଙ୍କ ଠାରୁ ଆସିଛି। ଖ୍ରୀଷ୍ଟଙ୍କ ମାଧ୍ୟମରେ
ପରମେଶ୍ୱର ନିଜେ ଆମ୍ଭମାନଙ୍କ ସହ ଶାନ୍ତି ସ୍ଥାପନ
କରିଛନ୍ତି। ଓ ଲୋକମାନେ ଯେପରି ପରମେଶ୍ୱରଙ୍କ ସହ
ଶାନ୍ତିସ୍ଥାପନ କରିବେ, ଏହି ଦାୟିତ୍ୱ ଆମ୍ଭମାନଙ୍କୁ ଦେଇଛନ୍ତି।
[19]ମୋ କହିବା କଥା ଯେ, ପରମେଶ୍ୱର ଖ୍ରୀଷ୍ଟଙ୍କ ହେତୁ
ଲୋକମାନଙ୍କର ପାପଗୁଡ଼ିକୁ ଗଣନା ନ କରି, ନିଜକୁ
ଜଗତର ଲୋକମାନଙ୍କ ସହିତ ପୁନର୍ମିଳିତ କରୁଛନ୍ତି।
କେବଳ ସେତିକି ନୁହେଁ ମାତ୍ର ସେ ଆମ୍ଭମାନଙ୍କୁ, ଲୋକମାନଙ୍କୁ
ପୁନର୍ମିଳନର ସମ୍ବାଦ କହିବା ଭାର ଦେଇଛନ୍ତି। ସେଥିପାଇଁ
ଆମ୍ଭେ ଯୀଶୁ ଖ୍ରୀଷ୍ଟଙ୍କ ପ୍ରତିନିଧି ଭାବେ କାମ କରୁଛୁ।
[20]ସେ ଆମ୍ଭ ମାଧ୍ୟମରେ ପୃଥିବୀର ଲୋକମାନଙ୍କୁ ଡାକୁଛନ୍ତି।
ଯେତେବେଳେ ଆମ୍ଭେ ତୁମ୍ଭମାନଙ୍କୁ ପରମେଶ୍ୱରଙ୍କ ସହିତ
ପୁନର୍ମିଳିତ ହେବା ପାଇଁ ଅନୁରୋଧ କରୁ,[21]ଆମ୍ଭେ ଖ୍ରୀଷ୍ଟଙ୍କ
ନିମନ୍ତେ କହୁ। ଖ୍ରୀଷ୍ଟଙ୍କର କିଛି ପାପ ନ ଥିଲା। କିନ୍ତୁ
ପରମେଶ୍ୱର ଆମ୍ଭମାନଙ୍କ ପାଇଁ ତାହାଙ୍କୁ ପାପ ରୂପେ ଗଣ୍ୟ
କଲେ, ଯେପରି ତାହାଙ୍କ ମାଧ୍ୟମରେ ଆମ୍ଭେ ପରମେଶ୍ୱରଙ୍କ
ଠାରେ ଧାର୍ମିକ ଗଣିତ ହୋଇପାରିବା।

୬ ଆମ୍ଭେମାନେ ପରମେଶ୍ୱରଙ୍କ ସହିତ କାମ କରୁଥିବା
ହେତୁ ତୁମ୍ଭମାନଙ୍କୁ ବିନତି କରୁ ଯେ, ପରମେଶ୍ୱରଙ୍କ
ଠାରୁ ଯେଉଁ ଅନୁଗ୍ରହ ତୁମ୍ଭେମାନେ ପାଇଛ, ତାହା ଯେପରି
ବ୍ୟର୍ଥ ନ ଯାଏ। [2]ପରମେଶ୍ୱର କହିଛନ୍ତି:

"ମୁଁ ଉଚିତ ସମୟରେ ତୁମ୍ଭ କଥା ଶୁଣିଲି ଓ
ପରିତ୍ରାଣ ଦିନରେ ତୁମ୍ଭକୁ ସାହାଯ୍ୟ କରିବା ପାଇଁ
ଆସିଲି।"

ଯିଶାଇୟ ୪୯:୮

ମୁଁ ତୁମ୍ଭକୁ କହୁଛି, ଦେଖ, ଏହା ହେଉଛି "ଉଚିତ
ସମୟ।" ଏହା "ପରିତ୍ରାଣର ଦିନ" ଅଟେ।
[3]ଆମ୍ଭ କାମରେ ଲୋକେ ଭୁଲ ପାଆନ୍ତୁ, ଏହା ଆମ୍ଭେ
ଇଚ୍ଛା କରୁ ନାହୁଁ। ସେଥିପାଇଁ ଆମ୍ଭେ କୌଣସି ଏପରି
କାମ କରିବା ନାହିଁ ଯାହା ଅନ୍ୟମାନଙ୍କ ପାଇଁ ସମସ୍ୟା
ସୃଷ୍ଟି କରିବ। [4]ବରଂ ପରମେଶ୍ୱରଙ୍କ ସେବକ ରୂପରେ
ଆମ୍ଭେମାନେ ପ୍ରତ୍ୟେକ ଭାବରେ ନିଜକୁ ଭଲ ପ୍ରମାଣିତ
କରୁ ଓ ଦୁଃଖ, କଷ୍ଟ ତଥା ବଡ଼ ସମସ୍ୟା ମଧ୍ୟରେ
ଅନେକ କଠୋର କଥା ଧୈର୍ଯ୍ୟପୂର୍ବକ ସହୁ। [5]ଆମ୍ଭକୁ
ମାଡ଼ ଦିଆଯାଏ, କାରାଗାରରେ ରଖାଯାଏ। ଲୋକେ ଆମ୍ଭ
ବିରୁଦ୍ଧରେ ଉଠନ୍ତି। ଆମ୍ଭେ କଠୋର ପରିଶ୍ରମ କରୁ,
ବେଳେବେଳେ ଆମ୍ଭେ ଅନିଦ୍ରା ରହୁ, ଓ ଭୋକଉପାସରେ
ରହୁ। [6]ଆମ୍ଭର ଜ୍ଞାନ, ଧୈର୍ଯ୍ୟ, ଦୟା, ପବିତ୍ରଆତ୍ମା ଓ
ପବିତ୍ର ଜୀବନ ଧାରଣ ଦ୍ୱାରା ଆମ୍ଭେ ପରମେଶ୍ୱରଙ୍କ
ସେବକ ବୋଲି ପ୍ରମାଣିତ କରୁ। ଆମ୍ଭେ ପବିତ୍ର ଆତ୍ମାଙ୍କ
ପୂର୍ଣ୍ଣତାରେ, ପ୍ରକୃତ ପ୍ରେମ ପ୍ରକାଶିବା ଦ୍ୱାରା, ପୁଣି ସତ୍ୟ
କଥା କହି ଓ ପରମେଶ୍ୱରଙ୍କ ଶକ୍ତିର କାର୍ଯ୍ୟ କରି ଏହାର
ପରିଚୟ ଦେଇଥାଉ। [7]ପ୍ରତ୍ୟେକ କଥାରେ ଆମ୍ଭେ ଆମ୍ଭର
ଧାର୍ମିକ ଜୀବନ ପ୍ରଣାଳୀକୁ ରକ୍ଷାଢ଼ାଲ ଭାବରେ ବ୍ୟବହାର
କରୁ। [8]କେତେକ ଲୋକ ଆମ୍ଭକୁ ସମ୍ମାନ ଦିଅନ୍ତି, କିନ୍ତୁ
କେତେ ଲୋକ ଆମ୍ଭକୁ ଲଜ୍ଜା ଦିଅନ୍ତି। କେତେ ଲୋକ
ଆମ୍ଭ ବିଷୟରେ ମନ୍ଦ କୁହନ୍ତି, କେତେ ଭଲ କଥା
କୁହନ୍ତି। କେତେ ଲୋକ କୁହନ୍ତି ଯେ, ଆମ୍ଭେ ମିଥ୍ୟାବାଦୀ
ଓ ତଥାପି ଆମ୍ଭେ ସତ୍ୟ କହୁ। [9]ଆମ୍ଭେ ଜନପ୍ରିୟ ହୋଇ
ଥିଲେ ମଧ୍ୟ କେତେକଙ୍କ ପାଇଁ ଅଜଣା। ଆମ୍ଭକୁ ମୃତ
ତୁଲ୍ୟ ଧରି ଯାଏ, କିନ୍ତୁ ଦେଖ, ଆମ୍ଭେ ଜୀବିତ ରହିଛୁ।
ଆମ୍ଭକୁ ଦଣ୍ଡ ଦିଆ ଯାଏ, କିନ୍ତୁ ମାରି ଦିଆ ଯାଏ ନାହିଁ।
[10]ଆମ୍ଭର ବହୁତ ଦୁଃଖ ଅଛି କିନ୍ତୁ ଆମ୍ଭେ ସର୍ବଦା ପ୍ରସନ୍ନ
ରହୁ। ଆମ୍ଭେ ଗରିବ, କିନ୍ତୁ ଅନେକଙ୍କୁ ଧନୀ କରୁ।
ଆମ୍ଭର କିଛି ନାହିଁ, କିନ୍ତୁ ଆମ୍ଭର ସବୁ କିଛି ଅଛି।
[11]ହେ କରିନ୍ଥୀବାସୀ! ଆମ୍ଭେ ସଂପୂର୍ଣ୍ଣ ଖୋଲା ମନରେ
ତୁମ୍ଭମାନଙ୍କ ସହିତ କଥା ହୋଇଛୁ। ଆମ୍ଭେ ଆମ୍ଭର ହୃଦୟ
ତୁମ୍ଭମାନଙ୍କ ପାଇଁ ଖୋଲି ଦେଇଛୁ। [12]ତୁମ୍ଭମାନଙ୍କ ପ୍ରତି
ଆମ୍ଭର ପ୍ରେମ ପ୍ରଦର୍ଶନ ଆମ୍ଭେ ବନ୍ଦ କରି ନାହୁଁ। କିନ୍ତୁ
ତୁମ୍ଭେମାନେ ଆମ୍ଭ ପ୍ରତି ପ୍ରେମ ପ୍ରଦର୍ଶନ ବନ୍ଦ କରି
ଦେଇଛ। [13]ମୋ ନିଜର ସନ୍ତାନ ବୋଲି ଭାବି ତୁମ୍ଭମାନଙ୍କୁ,
ମୁଁ କହୁଛି ଯେ, ଉଚିତ ପ୍ରତିଦାନ ସ୍ୱରୂପେ ତୁମ୍ଭେମାନେ
ମଧ୍ୟ ନିଜର ହୃଦୟ ଆମ୍ଭ ପାଇଁ ସମ୍ପୂର୍ଣ୍ଣ ଭାବରେ ଖୋଲା
ରଖିବା ଉଚିତ।

## ଅଣଖ୍ରୀଷ୍ଟୀୟାନମାନଙ୍କ ବିଷୟରେ ସତର୍କବାଣୀ

[14]ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ, ତୁମ୍ଭେମାନେ
ତାହାଙ୍କ ସହିତ ସମାନ ନୁହଁ। ଅତଏବ ସେମାନଙ୍କ ସହିତ
ଯୋଗ ଦିଅ ନାହିଁ। ଭଲ ଓ ମନ୍ଦ ଏକାଠି ରୁହନ୍ତି ନାହିଁ।
ଆଲୋକ ଓ ଅନ୍ଧକାର ମଧ୍ୟରେ କି ସହଭାଗିତା ଅଛି?
[15]ଯୀଶୁ ଖ୍ରୀଷ୍ଟ ଓ ବଲିୟାର୍ ଭିତରେ ଚୁକ୍ତି ହୋଇପାରେ
କି? ଜଣେ ବିଶ୍ୱାସୀ ଓ ଜଣେ ଅବିଶ୍ୱାସୀଙ୍କ ଭିତରେ କ'ଣ
କିଛି ମେଳ ହୋଇପାରେ? [16]ପରମେଶ୍ୱରଙ୍କ ମନ୍ଦିର* ଓ
ମୂର୍ତ୍ତିଗୁଡ଼ିକ ମଧ୍ୟରେ ଚୁକ୍ତି ହୋଇ ପାରିବ ନାହିଁ କାରଣ
ଆମ୍ଭେ ହେଉଛୁ ପରମେଶ୍ୱରଙ୍କ ମନ୍ଦିର। ଯେପରି ପରମେଶ୍ୱର
କହିଛନ୍ତି:

"ମୁଁ ସେମାନଙ୍କ ସହିତ ରହିବି ଓ ସେମାନଙ୍କ
ସହିତ ଚାଲିବି, ମୁଁ ସେମାନଙ୍କର ପରମେଶ୍ୱର ହେବି
ଓ ସେମାନେ ମୋର ଲୋକ ହେବେ।"

ଲେବୀୟ ପୁସ୍ତକ ୨୬:୧୧-୧୨

[17] "ସେଥିପାଇଁ ସେ ଲୋକମାନଙ୍କୁ ଛାଡ଼ି ବାହାରି ଆସ
ସେମାନଙ୍କଠାରୁ ନିଜକୁ ଅଲଗା କରି ରଖ, ଯାହା
ଅଶୁଦ୍ଧ, ତାହାକୁ ଛୁଅଁ ନାହିଁ, ତା'ହେଲେ ମୁଁ
ତୁମ୍ଭମାନଙ୍କୁ ଗ୍ରହଣ କରିବି।"

ଯିଶାଇୟ ୫୨:୧୧

---

**ମନ୍ଦିର** ଅର୍ଥାତ୍-ଉପାସନା ପୀଠ। ଖ୍ରୀଷ୍ଟଧର୍ମାବଲମ୍ବୀମାନେ ନିଜେ ହିଁ ହେଉଛନ୍ତି ମନ୍ଦିର।

୧୮ “ମୁଁ ତୁମ୍ଭମାନଙ୍କର ପିତା ହେବ ଓ ତୁମ୍ଭେମାନେ
ମୋ ପୁଅ ଓ ଝିଅ ହେବ ସର୍ବଶକ୍ତିମାନ ପ୍ରଭୁ ଏହା
କୁହନ୍ତି।”

ଦ୍ୱିତୀୟ ଶାମୁୟେଲ ୭:୧୪, ୭:୮

୭ ଅତଏବ, ଆସ ପରମେଶ୍ୱରଙ୍କ ପ୍ରତି ଭକ୍ତି ଥିବାରୁ
ଆମ୍ଭ ଜୀବନ ଯାପନ ପ୍ରଣାଳୀରେ ନିଜକୁ ପବିତ୍ର
କରିବା ଏବଂ ଆମ୍ଭ ଶରୀର ଓ ଆତ୍ମାକୁ ଅପବିତ୍ର କରୁଥିବା
ପ୍ରତ୍ୟେକ ବିଷୟକୁ ଦୂର କରିବା।

## ପାଉଲଙ୍କ ଆନନ୍ଦ

୨ନିଜ ହୃଦୟରେ ଆମ୍ଭକୁ ସ୍ଥାନ ଦିଅ। ଆମ୍ଭେ କାହାରି
ପ୍ରତି କୌଣସି ଭୁଲ କରି ନାହୁଁ। ଆମ୍ଭେ କାହାରି
ବିଶ୍ୱାସରେ ଆଞ୍ଚ ଆଣିନାହୁଁ, କାହାକୁ ଶୋଷଣ କରି ନାହୁଁ।
୩ତୁମ୍ଭମାନଙ୍କୁ ନିନ୍ଦା ଦେବା ପାଇଁ ମୁଁ ଏହା କହୁ ନାହିଁ। ମୁଁ
ତୁମ୍ଭମାନଙ୍କ ଆଗରୁ କହିଛି ଯେ, ଆମ୍ଭେ ତୁମ୍ଭମାନଙ୍କୁ ଏତେ
ଭଲ ପାଉ ଯେ, ଆମ୍ଭେ ତୁମ୍ଭମାନଙ୍କ ସହିତ ମରିବା ଓ
ବଞ୍ଚିବା ପାଇଁ ମଧ୍ୟ ପ୍ରସ୍ତୁତ। ୪ତୁମ୍ଭମାନଙ୍କ ବିଷୟରେ ମୋର
ଏହି ଦୃଢ଼ବୋଧ ଅଛି। ମୁଁ ତୁମ୍ଭ ପାଇଁ ବହୁତ ଗର୍ବିତ।
ତୁମ୍ଭେମାନେ ମୋତେ ଅଧିକ ଉତ୍ସାହ ଦେଇଥାଅ। ସେଥିପାଇଁ
ସମସ୍ତ ଯାତନା ଭିତରେ ମଧ୍ୟ ମୋର ଆନନ୍ଦ କହିଲେ ନ
ସରେ।

୫ଯେତେବେଳେ ଆମ୍ଭେ ମାକିଦନିଆ ଆସିଥିଲୁ,
ସେତେବେଳେ ଆମ୍ଭ ପାଇଁ ବିଶ୍ରାମ ମିଳି ନ ଥିଲା। ଆମ୍ଭର
ଚାରି ପଟେ ଅସୁବିଧାମାନ ଘେରି ରହିଥିଲା। ବାହାରର
ସଂଗ୍ରାମ ଓ ଭିତରର ଭୟ ମଧ୍ୟରେ ଆମ୍ଭେ ଥିଲୁ। ୬କିନ୍ତୁ
ଯେଉଁ ପରମେଶ୍ୱର ଭାଙ୍ଗି ପଡ଼ିଥିବା ଲୋକକୁ ସାନ୍ତ୍ୱନା
ଦିଅନ୍ତି, ସେ ତିତସଙ୍କର ଆଗମନ ଦ୍ୱାରା ଆମ୍ଭମାନଙ୍କୁ ମଧ୍ୟ
ସାନ୍ତ୍ୱନା ପ୍ରଦାନ କଲେ। ୭ସେ ଆସିବା ଦ୍ୱାରା ଆମ୍ଭେ
ସାନ୍ତ୍ୱନା ପାଇଲୁ। କିନ୍ତୁ ତୁମ୍ଭେମାନେ ଦେଇଥିବା ସୁଖ ଦ୍ୱାରା
ଆମ୍ଭେ ଅଧିକ ଉତ୍ସାହ ଲାଭ କଲୁ। ତିତସ କହିଲେ ଯେ
ତୁମ୍ଭେମାନେ ମୋତେ ଦେଖିବା ପାଇଁ ବ୍ୟାକୁଳ। ତୁମ୍ଭେମାନେ
ପୂର୍ବରୁ କରିଥିବା ବିଷୟ ପାଇଁ ଦୁଃଖିତ ଏବଂ ତୁମ୍ଭେମାନେ
ମୋତେ ଅତି ମାତ୍ରାରେ ଚାହୁଁଛ। ଏହା ଶୁଣିଲା ପରେ ମୁଁ
ଅଧିକ ପ୍ରସନ୍ନ ହେଲି।

୮ଯଦିଓ ପତ୍ର ଲେଖି ମୁଁ ତୁମ୍ଭମାନଙ୍କ ମନରେ ଦୁଃଖ
ଦେଲି, କିନ୍ତୁ ମୁଁ ଏହା ଲେଖିଲି ବୋଲି ମୁଁ ଦୁଃଖିତ
ନୁହେଁ। ମୁଁ ଜାଣେ ଯେ ସେହି ପତ୍ର ତୁମ୍ଭମାନଙ୍କୁ ଦୁଃଖ
ଦେଲା ସେଥିପାଇଁ ମୁଁ ଦୁଃଖିତ। କିନ୍ତୁ ତାହା ତୁମ୍ଭମାନଙ୍କୁ
ଅଳ୍ପ ସମୟ ପାଇଁ ଦୁଃଖ ଦେଲା। ୯ଏବେ ମୁଁ ଖୁସୀ ଅଛି।
ତୁମ୍ଭେମାନେ ଦୁଃଖୀ ହୋଇଥିବା କାରଣରୁ ନୁହେଁ, ବରଂ
ତୁମ୍ଭମାନଙ୍କର ଦୁଃଖ ତୁମ୍ଭମାନଙ୍କ ହୃଦୟକୁ ପରିବର୍ତ୍ତନ
କରିଥିବାରୁ ମୁଁ ଖୁସି। ପରମେଶ୍ୱରଙ୍କ ଇଚ୍ଛା ଅନୁଯାୟୀ
ତୁମ୍ଭେମାନେ ଦୁଃଖି ହେଲ। ଅତଏବ ତୁମ୍ଭେମାନେ ଆମ୍ଭ
ଦ୍ୱାରା କୌଣସି ପ୍ରକାରେ ଆଘାତ ପାଇ ନାହଁ। ୧୦କାରଣ
ଈଶ୍ୱରଙ୍କ ଇଚ୍ଛା ଅନୁସାରେ ଯେଉଁ ଦୁଃଖ ଦ୍ୱାରା ପରିତ୍ରାଣ
ପାଇଲ ଓ ମନ ପରିବର୍ତ୍ତନ କରିଲ, ସେଥିପାଇଁ ଦୁଃଖିତ
ହେବା ଆବଶ୍ୟକ ନାହିଁ। ମାତ୍ର ଜାଗତିକ ଦୁଃଖ ମୃତ୍ୟୁ
ଆଣିଥାଏ। ୧୧ଦେଖ, ଈଶ୍ୱରଙ୍କ ଇଚ୍ଛାନୁସାରେ ତୁମ୍ଭେମାନେ
ଏହି ଯେଉଁ ଦୁଃଖ ପାଇଲ ଏହା ତୁମ୍ଭମାନଙ୍କୁ ଉଦ୍‌ଯୋଗୀ
କରିଛି। ତୁମ୍ଭେମାନେ ଭୁଲରେ ନ, ଥିଲ ବୋଲି ଏହା
ପ୍ରମାଣିତ କରିଛି। ତୁମ୍ଭମାନଙ୍କ ପାଇଁ ଏହା କ୍ରୋଧ, ଭୟ
ଆଣିଛି, ଏବଂ ଆମ୍ଭ ସହିତ ମିଶିବା ପାଇଁ ତୁମ୍ଭମାନଙ୍କ
ଭିତରେ ଇଚ୍ଛା ଜାଗ୍ରତ କରିଛି। ଏହା ତୁମ୍ଭମାନଙ୍କୁ ଅଧିକ
ସମର୍ପିତ କରିଛି, ଏହା ତୁମ୍ଭମାନଙ୍କୁ ନ୍ୟାୟ ପ୍ରଦାନ କରିଛି।
ତୁମ୍ଭେମାନେ ପ୍ରତ୍ୟେକ କଥାରେ ପ୍ରମାଣିତ କରି ଦେଇଛ
ଯେ, ତୁମ୍ଭେମାନେ ସେହି ସମସ୍ୟାର କୌଣସି ଅଂଶ ପାଇଁ
ମଧ୍ୟ ଦୋଷୀ ନ ଥିଲ। ୧୨ମୁଁ ଅପରାଧୀ ଲୋକ ପାଇଁ, ବା
ଯାହା ପ୍ରତି ଅପରାଧ ହୋଇଥିଲା, ତାହା ପାଇଁ ଲେଖି ନ
ଥିଲି, ବରଂ ପରମେଶ୍ୱରଙ୍କ ଆଗରେ ତୁମ୍ଭମାନଙ୍କର ଆମ୍ଭ
ପାଇଁ କେତେ ଚିନ୍ତା ଅଛି, ଏହା ତୁମ୍ଭେମାନେ ଯେପରି
ଦେଖିପାର, ସେଥିପାଇଁ ଲେଖିଥିଲି। ୧୩ଏହି କାରଣରୁ
ଆମ୍ଭେ ଆଶ୍ୱସ୍ତ ଥିଲୁ।

ତୁମ୍ଭେମାନେ ତିତସଙ୍କ ପ୍ରତି ଉତ୍ତମ ବ୍ୟବହାର ଦେଖାଇ
ଥିବାରୁ ତିତସ ଖୁସି ଥିଲେ, ସେଥିପାଇଁ ଆମ୍ଭେମାନେ ମଧ୍ୟ
ଅଧିକ ଆନନ୍ଦିତ ହେଲୁ। ୧୪ତୁମ୍ଭମାନଙ୍କ ବିଷୟରେ ମୁଁ
ତାହାଙ୍କୁ ଯେଉଁ ବଡ଼ବଡ଼ କଥା କହିଥିଲି, ସେଥିପାଇଁ ମୁଁ
ଲଜ୍ଜା ପାଇ ନାହିଁ। ମାତ୍ର ଆମ୍ଭେ ଯେଉଁ ପ୍ରତ୍ୟେକ କଥା
ତୁମ୍ଭମାନଙ୍କୁ କହିଥିଲୁ ତାହା ସତ୍ୟ ବୋଲି ତୁମ୍ଭେମାନେ
ପ୍ରମାଣିତ କଲ। ଆଉ ଆମ୍ଭେ ତୁମ୍ଭମାନଙ୍କ ବିଷୟରେ
ତିତସଙ୍କଠାରେ କରିଥିବା ଗର୍ବୋକ୍ତିଗୁଡ଼ିକ ମଧ୍ୟ ସତ୍ୟ।
୧୫ତୁମ୍ଭେମାନେ ତାହାଙ୍କର ଆଜ୍ଞା ପାଳନ ପାଇଁ କିପରି
ପ୍ରସ୍ତୁତ ତଥା ତୁମ୍ଭେମାନେ ସମସ୍ତେ ସମ୍ମାନ ଓ ଭୟ
ସହକାରେ କିପରି ତାହାଙ୍କର ଆଜ୍ଞା ପାଳନ ପାଇଁ ବ୍ୟଗ୍ର
ଥିଲ ଓ କିପରି ତାହାଙ୍କୁ ପାଛୋଟି ନେଇଥିଲ, ଏସବୁ
କଥା ମନେ ପକାଇ ତୁମ୍ଭମାନଙ୍କ ପାଇଁ ତାହାଙ୍କର ପ୍ରେମ
ଅଧିକ ହେଲା। ୧୬ମୁଁ ତୁମ୍ଭମାନଙ୍କ ଉପରେ ପୂର୍ଣ୍ଣ ଭରସା
ରଖି ପାରିବ, ଏଥିପାଇଁ ମୁଁ ଆନନ୍ଦିତ ଅଟେ।

## ଖ୍ରୀଷ୍ଟିୟାନମାନଙ୍କ ଦାନ

୮ ଭାଇ ଓ ଭଉଣୀମାନେ! ପରମେଶ୍ୱର ମାକିଦନିଆର
ମଣ୍ଡଳୀମାନଙ୍କ ପ୍ରତି ଯେଉଁ ଅନୁଗ୍ରହ ପ୍ରକାଶ କରିଛନ୍ତି,
ସେହି ବିଷୟ ଆମ୍ଭେ ତୁମ୍ଭମାନଙ୍କୁ ଜଣାଇବାକୁ ଇଚ୍ଛା
କରୁଛୁ। ୨ସେହି ବିଶ୍ୱାସୀମାନେ ମହା କ୍ଲେଶ ଦୁଃଖ ଦ୍ୱାରା
ପରୀକ୍ଷିତ ହେଲେ। ଏବଂ ସେମାନେ ଅତି ଗରୀବ। କିନ୍ତୁ
ସେମାନଙ୍କ ମହାନନ୍ଦ ହେତୁ ସେମାନେ ପ୍ରଚୁର ଉଦାରତାର
ଦାନ ଦେଇଥିଲେ। ୩ମୁଁ କହିପାରେ ଯେ, ସେମାନେ
ଯେତେ ଦେଇ ପାରିବା କଥା ତାହା ଦେଇଛନ୍ତି। ଏତିକି
ନୁହେଁ, ସେମାନେ ସ୍ୱେଚ୍ଛାରେ ନିଜ ସାମର୍ଥ୍ୟ ଅପେକ୍ଷା
ଅଧିକ ଦେଇଛନ୍ତି। କେହି ତାହାଙ୍କୁ ଏହା କରିବା ପାଇଁ
କହି ନାହିଁ। ୪କିନ୍ତୁ ସେମାନେ ଆଗ୍ରହ ପୂର୍ବକ, ପରମେଶ୍ୱରଙ୍କ
ପବିତ୍ର ଲୋକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଏହି
ସେବା କାର୍ଯ୍ୟରେ ଅଂଶଗ୍ରହଣ ପାଇଁ ଆମ୍ଭକୁ ବାରମ୍ବାର
ଅନୁନୟ କରୁଥିଲେ। ୫ସେମାନେ ଯେଉଁଭଳି ଭାବରେ

ଦେଲେ ଆମ୍ଭେ ତାହା କେବେ ଭାବ ନ ଥିଲୁ। ସେମାନେ
ତାହାଙ୍କର ଅର୍ଥ ଦେବା ପୂର୍ବରୁ ପ୍ରଥମେ ନଜକୁ ପ୍ରଭୁଙ୍କଠାରେ
ଓ ଆମ୍ଭଠାରେ ସମର୍ପଣ କଲେ। ୬ପରମେଶ୍ୱର ଏହା ଇଚ୍ଛା
କରନ୍ତ। ସେଥିପାଇଁ ଆମ୍ଭେ ତୀତସଙ୍କୁ କହଲୁ ଯେ ସେ
ଏହ ଅନୁଗ୍ରହ କାର୍ଯ୍ୟକୁ ଯେପର ଆରମ୍ଭ କରଥିଲେ,
ସେହପର ଏହ ବଶେଷ ଅନୁଗ୍ରହର କାର୍ଯ୍ୟକୁ ସମାପ୍ତ
କରବାରେ ତୁମ୍ଭମାନଙ୍କୁ ସାହାଯ୍ୟ ମଧ କରନ୍ତୁ। ୭ତୁମ୍ଭେମାନେ
ବଶ୍ୱାସ, ବାକ୍ୟପ୍ରଚ୍ଛର, ଜ୍ଞାନ, ଉପକାର କରବାର ଉତ୍ସାହ,
ଆମ୍ଭଠାରୁ ତୁମ୍ଭେମାନେ ଶିଖିଥିବା ପ୍ରେମ, ଆଦି ସବୁ
ଗୁଡ଼କରେ ଧନୀ ଅଟ। ସେଥିପାଇଁ ଆମ୍ଭେ ଇଚ୍ଛା କରୁ
ଯେ, ଏହ ଦାନ ଦେବା ସେବାରେ ତୁମ୍ଭେମାନେ ଧନୀ
ହୁଅ।

୮ମୁଁ ତୁମ୍ଭମାନଙ୍କୁ ଦାନ ଦେବାପାଇଁ ଆଦେଶ ଦେଉ
ନାହିଁ। କନ୍ତୁ ମୁଁ ଦେଖିବାକୁ ଇଚ୍ଛା କରେ ଯେ, ପ୍ରକୃତରେ
ତୁମ୍ଭମାନଙ୍କ ପ୍ରେମ ସତ୍ୟ ଅଟେ। ଅନ୍ୟ ଲୋକମାନେ
ସାହାଯ୍ୟ କରବା ପାଇଁ ଦେଖାଉଥିବା ଉତ୍ସାହ ବଷୟରେ
କହ ଏହା ମୁଁ ଦେଖାଇ ଦେବାକୁ ଚାହେଁ। ୯ତୁମ୍ଭେମାନେ
ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଅନୁଗ୍ରହ ସହତ ପରଚତ। ତୁମ୍ଭେମାନେ
ଜାଣ ଯେ, ଖ୍ରୀଷ୍ଟ ଈଶ୍ୱରଙ୍କଠାରେ ଧନୀ ହୋଇଥିଲେ ମଧ,
ତୁମ୍ଭମାନଙ୍କ ପାଇଁ ସେ ଗରବ ହେଲେ। ତାହାଙ୍କର ଗରବ
ହେବା ଦ୍ୱାରା ତୁମ୍ଭେମାନେ ଧନୀ ହୁଅ, ସେଥିପାଇଁ ଯୀଶୁ
ଖ୍ରୀଷ୍ଟ ଏପର କଲେ।

୧୦ଏହ ବଷୟରେ ମୁଁ ତୁମ୍ଭମାନଙ୍କୁ ନଜର ପରାମର୍ଶ
ଦେଉଛ। ଏହା ତୁମ୍ଭମାନଙ୍କ ପାଇଁ ସର୍ବଶ୍ରେଷ୍ଠ। ଗତ ବର୍ଷ
ତୁମ୍ଭେମାନେ ପ୍ରଥମେ ଦାନ ଦେବାପାଇଁ ଇଚ୍ଛା କରଥିଲ ଓ
ପ୍ରକୃତରେ ପ୍ରଥମେ ଦାନ ମଧ ଦେଇଥିଲ। ଅତଏବ ଯେଉଁ
କାମଟିକୁ ତୁମ୍ଭେମାନେ ଆରମ୍ଭ କରଥିଲ ତାହାକୁ ଶେଷ
କର। ତା'ହେଲେ ଯାଇ ତୁମ୍ଭମାନଙ୍କର "କରବା" ତୁମ୍ଭମାନଙ୍କର
"ଇଚ୍ଛା କରବା" ସହତ ସମାନ ହେବ। ତୁମ୍ଭମାନଙ୍କ
ପାଖରେ ଯାହା ଅଛ ତହିଁରୁ ଦାନ କର। ୧୨ଯଦ
ତୁମ୍ଭମାନଙ୍କର ଦାନ ଦେବାର ଇଚ୍ଛା ଅଛ, ତା'ହେଲେ
ତୁମ୍ଭମାନଙ୍କର ଦାନ ଗ୍ରହଣୀୟ ହେବ। ତୁମ୍ଭମାନଙ୍କ ପାଖରେ
ଯାହା ଅଛ, ସେହ ଅନୁସାରେ ତୁମ୍ଭମାନଙ୍କ ଦାନ ଗ୍ରାହ୍ୟ
କରାଯିବ; ତୁମ୍ଭମାନଙ୍କ ପାଖରେ ଯାହା ନାହିଁ, ସେ ଅନୁସାରେ
ନୁହେଁ। ୧୩ଅନ୍ୟମାନେ ଆରାମରେ ରହୁଥିବା ବେଳେ
ତୁମ୍ଭେମାନେ ଦୁର୍ଦ୍ଦଶାରେ ରୁହ, ଏ କଥା ଆମ୍ଭେ ଇଚ୍ଛା କରୁ
ନାହିଁ; ବରଂ ଆମ୍ଭେ ସବୁ ବଷୟରେ ସମାନତା ଇଚ୍ଛା
କରୁ। ୧୪ବର୍ତ୍ତମାନ ତୁମ୍ଭମାନଙ୍କ ପାଖରେ ବହୁତ ଅଛ।
ଯାହା ତୁମ୍ଭମାନଙ୍କର ଅଛ, ଯଦ ଦଅ, ତାହାହେଲେ
ଅନ୍ୟମାନଙ୍କ ଆବଶ୍ୟକ ପୂରଣ ହେବ। ତା'ପରେ
ଯେତେବେଳେ ସେମାନଙ୍କର ବୃଦ୍ଧି ହେବ, ସେମାନେ
ତୁମ୍ଭମାନଙ୍କର ଆବଶ୍ୟକତାରେ ସାହାଯ୍ୟ କରବେ। ୧୫ଶାସ୍ତ୍ରରେ
ମଧ ଲେଖାଅଛ:

"ଯିଏ ଅଧିକ ସଂଗ୍ରହ କଲା ତାହା ପାଖରେ ଅଧିକ
ରହଲା ନାହିଁ, ଓ ଯିଏ ଅଳ୍ପ ସଂଗ୍ରହ କଲା ତାହା
ପାଖରେ ଅତି ଅଳ୍ପ ରହଲା ନାହିଁ।"

ଯାତ୍ରା ପୁସ୍ତକ: ୧୬:୧୮

### ତୀତସ ଓ ତାଙ୍କର ସଙ୍ଗୀମାନେ

୧୬ମୁଁ ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଉଛ ଯେ ତିତସଙ୍କ
ମନରେ ମୋ ଭଳ ତୁମ୍ଭମାନଙ୍କ ପ୍ରତି ପ୍ରେମ ଭାବ ରହଛ।
୧୭ଆମ୍ଭର ଅନୁରୋଧକୁ ତିତସ ଗ୍ରହଣ କରଛନ୍ତ। ସେ ମଧ
ତୁମ୍ଭମାନଙ୍କ ପାଖକୁ ଯିବାକୁ ବ୍ୟଗ୍ର ଥିଲେ, ଓ ସ୍ୱଇଚ୍ଛାରେ
ତୁମ୍ଭମାନଙ୍କ ପାଖକୁ ଯିବା ନମନ୍ତେ ଏଠାରୁ ଯାଉଛନ୍ତ।
୧୮ତାଙ୍କ ସହତ ଆମ୍ଭେ ସମସ୍ତ ମଣ୍ଡଳୀଗୁଡ଼କରେ ସୁସମାଚାର
ପ୍ରଚାର କାର୍ଯ୍ୟରେ ସୁନାମ ଥିବା ଜଣେ ଭାଇଙ୍କୁ ମଧ
ପଠାଉଛୁ। ୧୯ଏହା ଛଡ଼ା ଆମ୍ଭ ସହତ ଏହ ଦାନସମୂହ
ନେଇ ଯିବା କାର୍ଯ୍ୟରେ ମଣ୍ଡଳୀ ସମୂହ ତାହାଙ୍କୁ ନଯୁକ୍ତ
କରଛନ୍ତ। ଏହ ସେବା ଦ୍ୱାରା ପ୍ରଭୁଙ୍କ ମହମା ହେବ ଓ
ଆମ୍ଭେ ଯେ ପ୍ରକୃତରେ ପରୋପକାର କରବାପାଇଁ ଆଗ୍ରହୀ,
ଏହା ପ୍ରକାଶ ପାଇବ।

୨୦ଏହ ବହୁ ପରମାଣର ଧନ (ଦାନ)କୁ ଆମ୍ଭେ ଯେଉଁ
ଭାବରେ ନେଉଛୁ, ତା'ପାଇଁ ଲୋକେ ଯେପର ଆମ୍ଭର
ସମାଲୋଚନା ନ କରବେ, ଏ ବଷୟରେ ଆମ୍ଭେ ସାବଧାନ
ଅଛୁ। ୨୧ଯାହା ଠିକ୍, ଆମ୍ଭେ ତାହା କରବା ପାଇଁ
ଯତ୍ନଶୀଳ। ଯାହା ସବୁ ପ୍ରଭୁ ଠିକ୍ ବୋଲ ଧରନ୍ତ, ଓ
ଲୋକେ ଠିକ ବୋଲ ଭାବନ୍ତ, ଆମ୍ଭେ ତହା କରୁ।

୨୨ସେମାନଙ୍କ ସହତ ସର୍ବଦା ସାହାଯ୍ୟ କରବା ପାଇଁ
ପ୍ରସ୍ତୁତ ଥିବା ଆମ୍ଭର ଆଉ ଜଣେ ଭାଇଙ୍କୁ ଆମ୍ଭେ
ପଠାଉଛୁ। ଅନେକ ଘଟଣାରେ ସେ ଏହା ପ୍ରମାଣିତ
କରଛନ୍ତ। ତୁମ୍ଭମାନଙ୍କ ପ୍ରତି ତାଙ୍କ ମନରେ ଅସୀମ ବଶ୍ୱାସ
ଥିବାରୁ, ସେ ଅଧିକ ସାହାଯ୍ୟ କରବା ପାଇଁ ଉତ୍ସାହତ
ଅଛନ୍ତ।

୨୩ତିତସଙ୍କ ସମ୍ବନ୍ଧରେ ଏହା କୁହେ ଯେ, ସେ ମୋର
ସହକର୍ମୀ ଓ ସେ ମୋ ସହତ କାର୍ଯ୍ୟ କର ତୁମ୍ଭମାନଙ୍କୁ
ସାହାଯ୍ୟ କରୁଛନ୍ତ। ଅନ୍ୟ ଭାଇମାନଙ୍କ ବଷୟରେ ଏହା
କହେ ଯେ, ସେମାନେ ବଭିନ୍ନ ମଣ୍ଡଳୀଗୁଡ଼କରୁ ପଠା
ଯାଇଛନ୍ତ, ଓ ଖ୍ରୀଷ୍ଟଙ୍କ ପାଇଁ ଗୌରବ ସ୍ୱରୂପ। ତୁମ୍ଭମାନଙ୍କ
ଭିତରେ ଯେ ପ୍ରକୃତରେ ପ୍ରେମ ଅଛ ଏହା ଦେଖାଅ ଓ
ତୁମ୍ଭମାନଙ୍କ ପାଇଁ ଆମ୍ଭେ କାହିଁକ ଏତେ ଗର୍ବ ଅନୁଭବ
କରୁ, ତାହା ସେମାନଙ୍କୁ ପ୍ରମାଣ କର ଦେଖାଅ। ତା'ହେଲେ
ସମସ୍ତ ମଣ୍ଡଳୀ ଏହା ଦେଖି ପାରବେ।

### ସହଖ୍ରୀଷ୍ଟିୟାନମାନଙ୍କୁ ସାହାଯ୍ୟ କର

୯ ପରମେଶ୍ୱରଙ୍କ ଲୋକମାନଙ୍କ ପାଇଁ ଏହ ସେବା
ବଷୟରେ ଏପର ଲେଖିବା ମୋ ପାଇଁ ପ୍ରକୃତରେ
ଆବଶ୍ୟକ ନୁହେଁ। ୨ମୁଁ ଜାଣେ ଯେ, ତୁମ୍ଭେମାନେ ସାହାଯ୍ୟ
କରବା ପାଇଁ କେତେ ଆଗ୍ରହୀ। ମାକଦନଆର ଲୋକମାନଙ୍କ
ଆଗରେ ଗର୍ବ ସହତ ମୁଁ କୁହେ ଯେ, ଆଖାୟାର ଲୋକେ
ଗତ ବର୍ଷ ଠାରୁ ପ୍ରସ୍ତୁତ ଅଛନ୍ତ। ତୁମ୍ଭମାନଙ୍କର ଆଗ୍ରହ
ଦେଖି ଏଠିକାର ଅଧିକାଂଶ ଲୋକ ଉତ୍ସାହତ ହୋଇ ଦାନ
ଦେବା ପାଇଁ ପ୍ରସ୍ତୁତ ଅଛନ୍ତ। ୩କନ୍ତୁ ମୁଁ ଭାଇମାନଙ୍କୁ
ତୁମ୍ଭମାନଙ୍କ ପାଖକୁ ପଠାଇବା ଉଦ୍ଦେଶ୍ୟ ହେଲା, ତୁମ୍ଭମାନଙ୍କ
ପାଇଁ ଏ ବଷୟରେ ଆମ୍ଭର ଯେଉଁ ଗର୍ବ ତାହା ବ୍ୟର୍ଥ ନ
ହେଉ। ୪ଯେପର ମୁଁ ସେମାନଙ୍କୁ ସବୁବେଳେ ପ୍ରସ୍ତୁତ

ରହିବାକୁ କହିଥିଲି, ମୁଁ ଚାହେଁ ତୁମ୍ଭେମାନେ ମଧ୍ୟ ପ୍ରସ୍ତୁତ
ରୁହ। ଯଦି କେତେକ ଲୋକ ମାକିଦୋନିଆରୁ ମୋ ସହିତ
ତୁମ୍ଭମାନଙ୍କ ପାଖରେ ପହଞ୍ଚିବେ, ଓ ତୁମ୍ଭମାନଙ୍କୁ ପ୍ରସ୍ତୁତ
ଥିବା ଦେଖିବେ ନାହିଁ, ତାହାହେଲେ ତୁମ୍ଭମାନଙ୍କଠାରେ
ଆମ୍ଭର ବିଶ୍ୱାସ ଥିବା ହେତୁରୁ ଆମ୍ଭେ ଲଜ୍ଜା ବୋଧ
କରିବୁ। ତୁମ୍ଭେମାନେ ମଧ୍ୟ ଲଜ୍ଜିତ ହେବ। ୫ସେଥି ପାଇଁ
ମୁଁ ଭାବିଲି ଯେ, ତୁମ୍ଭେମାନେ ଆସିବା ପୂର୍ବରୁ ମୁଁ ସେହି
ଭାଇମାନଙ୍କୁ ତୁମ୍ଭମାନଙ୍କ ନିକଟକୁ ଯିବାପାଇଁ କହିବି।
ତାହାହେଲେ ତୁମ୍ଭେମାନେ ଯେଉଁ ଦାନ ଦେବାପାଇଁ ପ୍ରତିଶ୍ରୁତି
ଦେଇଥିଲ, ତାହା ସେମାନେ ପ୍ରସ୍ତୁତ କରି ରଖିବେ। ଆମ୍ଭେ
ଆସିଲାବେଳେ ସେହି ଦାନଗୁଡ଼ିକ ପ୍ରସ୍ତୁତ ଥିବ। ତୁମ୍ଭମାନଙ୍କ
ଏହି ଦାନ ସ୍ୱେଚ୍ଛାକୃତ ହେଉ, କୃପଣମୂଳକ ନ ହେଉ।
୬ଏହି କଥାଟି ମନେ ରଖ: ଯେଉଁ ଲୋକ ଅଳ୍ପ
ବୁଣିବ, ସେ ଅଳ୍ପ କାଟିବ। ଯେଉଁ ଲୋକ ଅଧିକ ବୁଣିବ,
ସେ ଅଧିକ କାଟିବ। ୭ପ୍ରତ୍ୟେକ ଲୋକ ଆପଣା ହୃଦୟରେ
ସ୍ଥିର କରିଥିବା ଅନୁସାରେ ଦାନ କରୁ, ମନରେ କୌଣସି
ଦୁଃଖ ରଖି ବା ବାଧ୍ୟବାଧକତାରେ ଦାନ ନ ଦେଉ,
ଆନନ୍ଦିତ ମନରେ ଦାନ କରିଥିବା ଲୋକକୁ ପରମେଶ୍ୱର
ଭଲ ପାଆନ୍ତି। ୮ପରମେଶ୍ୱର ତୁମ୍ଭମାନଙ୍କର ଆବଶ୍ୟକତା
ଠାରୁ ଅଧିକ ଆଶୀର୍ବାଦ ଦେଇ ପାରିବେ। ତହିଁରେ
ତୁମ୍ଭେମାନେ ସବୁବେଳେ ସବୁ ବିଷୟ ପ୍ରଚୁର ଭାବେ
ପାଇବ। ପ୍ରତ୍ୟେକ ଭଲ କାମ କରିବା ପାଇଁ ଦାନ
ଦେବାକୁ ତୁମ୍ଭମାନଙ୍କ ପାଖରେ ପ୍ରଚୁର ଥିବ। ୯ଶାସ୍ତ୍ରରେ
ଏହା ଲେଖା ଅଛି:

"ସିଏ ଉଦାର ଭାବରେ ଗରିବ ମାନଙ୍କୁ ଦିଏ ତା'ର
ଦୟା ସର୍ବଦା ପାଇଁ ରହି ଥାଏ।"

ଗୀତସଂହିତା ୧୧୨:୯

୧୦ପରମେଶ୍ୱର ହିଁ ବୁଣିବା ଲୋକ ପାଇଁ ବୀଜ ଓ ଖାଇବା
ପାଇଁ ଖାଦ୍ୟ ଯୋଗାନ୍ତି। ସେ ତୁମ୍ଭମାନଙ୍କୁ ବୀଜ ଯୋଗାଇବେ
ଓ ତାହା ବୃଦ୍ଧି କରାଇବେ। ସେ ତୁମ୍ଭମାନଙ୍କ ଭଲ କାମ
ଗୁଡ଼ିକ ପାଇଁ ବିପୁଳ ଫସଲ ହେବାକୁ ଦେବେ। ୧୧ପରମେଶ୍ୱର
ତୁମ୍ଭମାନଙ୍କୁ ପ୍ରତ୍ୟେକ ବିଷୟରେ ଧନୀ କରିବେ, ଫଳ
ସ୍ୱରୂପ ତୁମ୍ଭେମାନେ ସବୁବେଳେ ଉଦାର ମନରେ ଦାନ
ଦେଇ ପାରିବ। ଆମ୍ଭ ମାଧ୍ୟମରେ ତୁମ୍ଭମାନଙ୍କର ଦାନ ପାଇଁ
ପରମେଶ୍ୱରଙ୍କୁ ଲୋକେ ଧନ୍ୟବାଦ ଦେବେ। ୧୨ଏହି ସେବା
ଯେଉଁଥିରେ କି ତୁମ୍ଭମାନଙ୍କର ଏକ ଭାଗ ରହିଛି ତା'ଦ୍ୱାରା
କେବଳ ଯେ ସାଧୁ ମାନଙ୍କର ଆବଶ୍ୟକତା ପୂରଣ ହୁଏ,
ତା'ନୁହେଁ ବରଂ ପରମେଶ୍ୱରଙ୍କ ପ୍ରତି ହୃଦୟ ଧନ୍ୟବାଦରେ
ଉଚ୍ଛୁଳି ଉଠେ। ୧୩ତୁମ୍ଭମାନଙ୍କର ଏହି ସେବା ତୁମ୍ଭମାନଙ୍କର
ବିଶ୍ୱାସର ପ୍ରମାଣ ଅଟେ। ଏହି ଦ୍ୱାରା ଲୋକେ ପରମେଶ୍ୱରଙ୍କୁ
ପ୍ରଶଂସା କରିବେ, କାରଣ ତୁମ୍ଭେମାନେ ଯେ କେବଳ
ବିଶ୍ୱାସକୁ ସ୍ୱୀକାର କରୁଛ ତା ନୁହେଁ ବରଂ ଖ୍ରୀଷ୍ଟଙ୍କର
ବ୍ୟବହାରିକ ସୁସମାଚାରକୁ ଅନୁସରଣ କରୁଛ। ତୁମ୍ଭେମାନେ
ସେମାନଙ୍କ ପାଇଁ ଓ ସମସ୍ତ ଲୋକଙ୍କ ପାଇଁ ଉଦାର
ଭାବେ ଦାନ କରୁଥିବାରୁ ଲୋକେ ପରମେଶ୍ୱରଙ୍କ ପ୍ରଶଂସା
କରିବେ। ୧୪ଯେତେବେଳେ ସେମାନେ ପ୍ରାର୍ଥନା କରିବେ,
ସେତେବେଳେ ସେମାନେ ତୁମ୍ଭମାନଙ୍କ ସହିତ ରହିବା ପାଇଁ
ଇଚ୍ଛା କରିବେ। ପରମେଶ୍ୱରଙ୍କ ତୁମ୍ଭମାନଙ୍କ ପ୍ରତି ଅସୀମ
ଅନୁଗ୍ରହ ହେତୁରୁ ସେମାନେ ଏପରି ଅନୁଭବ କରିବେ।
୧୫ଆଶ୍ଚର୍ଯ୍ୟଜନକ ଓ ଅବର୍ଣ୍ଣନୀୟ ଏହି ଅନୁଗ୍ରହ ପାଇଁ
ପରମେଶ୍ୱରଙ୍କୁ ଧନ୍ୟବାଦ ଦେଉ।

## ପାଉଲ ନିଜ ସେବାକାର୍ଯ୍ୟର ପକ୍ଷସମର୍ଥନ କଲେ

୧୦ ମୁଁ ପାଉଲ, ଖ୍ରୀଷ୍ଟଙ୍କ ପରି ମୁଁ ମୃଦୁଭାବରେ
ତୁମ୍ଭମାନଙ୍କୁ ନିବେଦନ କରେ। କେତେକ ଲୋକ
କୁହନ୍ତି ମୁଁ ତୁମ୍ଭ ମଧ୍ୟରେ ଥିଲାବେଳେ ନମ୍ର ଥାଏ କିନ୍ତୁ
ଦୂରରେ ଥିଲାବେଳେ ସାହସୀ ବା ନିର୍ଭୟ ଅଟେ। ୨ମୁଁ
ତୁମ୍ଭମାନଙ୍କୁ ଅନୁନୟ କରେ ଯେ, ଯେତେବେଳେ ମୁଁ
ତୁମ୍ଭମାନଙ୍କ ସହିତ ଅଛି, ସେତେବେଳେ ସେଭଳି ସାହସିକତା
ଦେଖାଇବାକୁ ମୋ ଉପରେ ଚାପ ପକାଇବ ନାହିଁ।
ଯେଉଁମାନେ ଭାବନ୍ତି ଯେ ଆମ୍ଭେ ସାଂସାରିକ ଜୀବନଯାପନ
କରୁଛୁ ମୁଁ ସେମାନଙ୍କ ପ୍ରତି ସାହସୀ ହେବି। ୩ଆମ୍ଭେ ମଧ୍ୟ
ସଂସାରରେ ରହୁଛୁ। କିନ୍ତୁ ଆମ୍ଭେ ସାଂସାରିକ ଲୋକଙ୍କ
ଭଳି ସଂଗ୍ରାମ କରୁ ନାହୁଁ। ୪ଆମ୍ଭେ ଯେଉଁ ଅସ୍ତ୍ରଗୁଡ଼ିକ
ସାହାଯ୍ୟରେ ସଂଗ୍ରାମ କରୁ ସେଗୁଡ଼ିକ ସାଂସାରିକ ଅସ୍ତ୍ରଶସ୍ତ୍ର
ନୁହେଁ। ଆମ୍ଭର ଅସ୍ତ୍ରଶସ୍ତ୍ରରେ ପରମେଶ୍ୱରଙ୍କ ଶକ୍ତି ନିହିତ
ଅଛି। ଏହି ଅସ୍ତ୍ରଶସ୍ତ୍ର ଗୁଡ଼ିକ ଶତ୍ରୁର ଶକ୍ତିଶାଳୀ ସ୍ଥାନ
ଗୁଡ଼ିକ ନଷ୍ଟ କରି ପାରେ। ଏହି ଅସ୍ତ୍ରଶସ୍ତ୍ର ଗୁଡ଼ିକ
ସାହାଯ୍ୟରେ ଆମ୍ଭେ ଲୋକଙ୍କ ସମସ୍ତ ଯୁକ୍ତି ଓ ପରମେଶ୍ୱରଙ୍କ
ଜ୍ଞାନ ବିରୁଦ୍ଧରେ ଉଠୁଥିବା ପ୍ରତ୍ୟେକ ଗର୍ବର କଥା ଖଣ୍ଡନ
କରୁ। ୫ଆମ୍ଭେ ପ୍ରତ୍ୟେକ ପ୍ରକାରର ଚିନ୍ତାଧାରାକୁ ଖ୍ରୀଷ୍ଟଙ୍କ
ନିୟନ୍ତ୍ରଣାଧୀନ କରୁ ଓ ତାଙ୍କର ଆଜ୍ଞାକାରୀ ହେବା ପାଇଁ
ବାଧ୍ୟ କରୁ। ୬ଯେଉଁ ଲୋକ ପୂର୍ଣ୍ଣ ଭାବରେ ଯୀଶୁଙ୍କୁ
ମାନେ ନାହିଁ ଆମ୍ଭେ ତାହାଙ୍କୁ ଦଣ୍ଡ ଦେବା ପାଇଁ ପ୍ରସ୍ତୁତ
ଅଛୁ। କିନ୍ତୁ ପ୍ରଥମରେ ଆମ୍ଭେ ଇଚ୍ଛା କରୁ ଯେ ତୁମ୍ଭେମାନେ
ପୂର୍ଣ୍ଣଭାବରେ ତାହାଙ୍କୁ ମାନ।
୭ତୁମ୍ଭମାନଙ୍କ ଆଗରେ ଥିବା ତଥ୍ୟ ଗୁଡ଼ିକୁ ଦେଖ।
ଯଦି ଜଣେ ନିଶ୍ଚିତ ଭାବରେ ଅନୁଭବ କରେ ଯେ, ସେ
ଖ୍ରୀଷ୍ଟଙ୍କର ଅଟେ, ତାହାହେଲେ ସେ ଏହା ମଧ୍ୟ ଜାଣି
ରଖିବା ଉଚିତ ଯେ ଆମ୍ଭେ ମଧ୍ୟ ତାହାରି ଭଳି ସମ
ଭାବରେ ଖ୍ରୀଷ୍ଟଙ୍କର ଅଟୁ। ୮ଏହା ସତ୍ୟ ଯେ ମୁଁ ପ୍ରଭୁଙ୍କ
ଦ୍ୱାରା ପ୍ରଦତ୍ତ ଅଧିକାର ବିଷୟରେ ଅତ୍ୟଧିକ ଗର୍ବର କଥା
କହେ, କିନ୍ତୁ ସେ ଆମ୍ଭକୁ ଏହି ଅଧିକାର ତୁମ୍ଭମାନଙ୍କର
ବିନାଶ ପାଇଁ ନୁହେଁ, ମାତ୍ର ତୁମ୍ଭମାନଙ୍କୁ ଆଧ୍ୟାତ୍ମିକ ଭାବରେ
ଶକ୍ତିଶାଳୀ କରିବା ପାଇଁ ପ୍ରଦାନ କରିଛନ୍ତି। ୯ଏହି ଗର୍ବୋକ୍ତି
ପାଇଁ ମୁଁ ଲଜ୍ଜାବୋଧ କରେ ନାହିଁ। ମୁଁ ମୋ ପତ୍ର ଗୁଡ଼ିକ
ମାଧ୍ୟମରେ ତୁମ୍ଭମାନଙ୍କୁ ଭୟଭୀତ କରିବାକୁ ଚେଷ୍ଟା କରୁଛି
ବୋଲି ତୁମ୍ଭେମାନେ ଭାବ ନାହିଁ। ୧୦କେତେକ ଲୋକ
କୁହନ୍ତି "ପାଉଲଙ୍କ ପତ୍ରଗୁଡ଼ିକ ଶକ୍ତିସମ୍ପନ୍ନ ଓ ମହତ୍ତ୍ୱପୂର୍ଣ୍ଣ
କିନ୍ତୁ ଯେତେବେଳେ ସେ ଆମ୍ଭ ସହିତ ଥାଆନ୍ତି ସେ
ଦୁର୍ବଳ ଓ ତାଙ୍କର କଥା ଗୁଡ଼ିକ ଏତେ ପ୍ରଭାବଶାଳୀ ହୁଏ
ନାହିଁ।" ୧୧ଏଭଳି କହିବା ଲୋକ ଜାଣି ରଖିବା ଉଚିତ

ଯେ: ଆମ୍ଭେ ତୁମ୍ଭମାନଙ୍କ ସହିତ ଏବେ ନାହୁଁ, ଅତଏବ
ଆମ୍ଭେ ଏହି କଥା ଗୁଡ଼ିକ ପତ୍ରରେ ଲେଖିଛୁ। କିନ୍ତୁ
ଯେତେବେଳେ ଆମ୍ଭେ ତୁମ୍ଭମାନଙ୍କ ପାଖକୁ ଯିବୁ ଆମ୍ଭେ
ଦେଖାଇ ଦେବୁ ଯେ, ଆମ୍ଭ ପତ୍ରଟି ଯେଉଁ ଶକ୍ତି ଧାରଣ
କରିଛି ସେହି ସମାନ ଶକ୍ତି ଆମ୍ଭେ ଧାରଣ କରିଛୁ।
୧୨ଯେଉଁମାନେ ନିଜକୁ ବହୁତ ବଡ଼ ମନେ କରୁଛନ୍ତି,
ସେହି ଲୋକମାନଙ୍କ ସହିତ ସମାନ ସ୍ତରରେ ନିଜକୁ
ସ୍ଥାପନ କରିବା ପାଇଁ ବା ତୁଳନା କରିବା ପାଇଁ ଆମ୍ଭେ
ସାହସ କରୁ ନାହୁଁ। ସେମାନେ ନିଜକୁ ତୁଳନାର ମାନଦଣ୍ଡ
ଭଳି ବ୍ୟବହାର କରି ଅନ୍ୟକୁ ନିଜ ସହ ତୁଳନା କରନ୍ତି
ଓ ବିଚାର କରନ୍ତି, ଏତଦ୍ୱାରା ସେମାନେ ଯେ କେତେ
ମୂର୍ଖ, ଜଣାପଡ଼େ। ୧୩ଆମ୍ଭକୁ ଯେଉଁ କାର୍ଯ୍ୟ ଦିଆଯାଇଛି,
ତହିଁର ସୀମାଲଂଘନ କରି କଦାପି ଗର୍ବର କଥା କହିବୁ
ନାହିଁ। ପରମେଶ୍ୱରଙ୍କ ପ୍ରଦତ୍ତ କାମ ପାଇଁ ଆମ୍ଭେ ନିଜେ
ଗର୍ବ ଅନୁଭବ କରିବୁ। ଏହି କାମ ତୁମ୍ଭମାନଙ୍କ ସହିତ
ଆମ୍ଭର କାମକୁ ମଧ୍ୟ ଅନ୍ତର୍ଭୁକ୍ତ କରେ। ୧୪ଆମ୍ଭେ ଅଧିକ
ଗର୍ବ କରୁ ନାହୁଁ। ଆମ୍ଭେ ତୁମ୍ଭମାନଙ୍କ ପାଖକୁ ନ ଆସି
ଥିଲେ ଆମ୍ଭେ ମିଛଟାରେ ଅତ୍ୟଧିକ ପ୍ରଶଂସା ନେଇଥାନ୍ତୁ।
କିନ୍ତୁ ବାସ୍ତବିକତା ଆମ୍ଭେମାନେ ଖ୍ରୀଷ୍ଟଙ୍କର ସୁସମାଚାର
ସହିତ ତୁମ୍ଭମାନଙ୍କ ପାଖରେ ପହଁଚିଛୁ। ୧୫ଆମ୍ଭେ ଅନ୍ୟମାନଙ୍କ
ଦ୍ୱାରା କରା ଯାଇଥିବା କାମ ପାଇଁ ନୁହେଁ, କିନ୍ତୁ କେବଳ
ନିଜେ କରିଥିବା କାମ ପାଇଁ ଗର୍ବ କରୁଛୁ। ଆମ୍ଭେ ଆଶା
କରୁ ଯେ, ତୁମ୍ଭମାନଙ୍କର ବିଶ୍ୱାସ ବଢ଼ିବା ସହିତ ଆମ୍ଭ
କାମ ବ୍ୟାପକ ଭାବରେ ବଢ଼ିବାରେ ତୁମ୍ଭେମାନେ ସାହାଯ୍ୟ
କରିବ। ୧୬ଆମ୍ଭେ ଇଚ୍ଛା କରୁ ଯେପରି ତୁମ୍ଭମାନଙ୍କ
ସହରର ସୀମା ବାହାର ସ୍ଥାନମାନଙ୍କରେ ମଧ୍ୟ ଆମ୍ଭେ
ସୁସମାଚାର ପ୍ରଚାର କରି ପାରିବୁ। ଅନ୍ୟ କୌଣସି ସ୍ଥାନରେ
ଆଉ କାହା ଦ୍ୱାରା ଯେଉଁ କାମ ହୋଇ ସାରିଛି, ସେହି
କାମରେ ଆମ୍ଭେ ଗର୍ବ କରୁ ନାହୁଁ। ୧୭ଯେପରି ଶାସ୍ତ୍ର
କୁହେ: "ଯଦି କିଏ ଗର୍ବ କରିବାକୁ ଇଚ୍ଛା କରେ, ସେ
କେବଳ ପ୍ରଭୁଙ୍କଠାରେ ଗର୍ବ କରିବା ଉଚିତ।"* ୧୮କାରଣ,
ଯେଉଁ ଲୋକ, ପ୍ରଭୁଙ୍କ ଦ୍ୱାରା ଭଲ ବୋଲି ଗୃହୀତ ହୁଏ,
ସେହି ଲୋକ ଭଲ ବୋଲି ସ୍ୱୀକୃତ ହୁଏ, କିନ୍ତୁ ଯିଏ
ନିଜେ ନିଜକୁ ଭଲ ବୋଲି ମନେ କରେ, ସେ ଲୋକ
ଭଲ ବୋଲି ସ୍ୱୀକୃତ ହୁଏ ନାହିଁ।

### ପାଉଲ ଓ ଭଣ୍ଡ ପ୍ରେରିତ

**୧୧** ତୁମେମାନେ ମୋହର ଟିକିଏ ମୂର୍ଖତା ସହ
ନେଇଥିଲେ ଭଲ ହୋଇଥାନ୍ତା। କିନ୍ତୁ ତୁମ୍ଭେ
ସତରେ ମୋ ପ୍ରତି ସହିଷ୍ଣୁ ଅଛ। ମୁଁ ତୁମ୍ଭ ପ୍ରତି ଈର୍ଷା
କରିଲି, ଏହା ପରମେଶ୍ୱରଙ୍କ ଦତ୍ତ ମନୋଭାବ। ମୁଁ ପ୍ରତିଜ୍ଞା
କରିଥିଲି ଯେ, ତୁମ୍ଭମାନଙ୍କୁ ଖ୍ରୀଷ୍ଟଙ୍କ ପବିତ୍ର ସତୀ କନ୍ୟା
ହେବା ପାଇଁ ତାହାଙ୍କଠାରେ ସମର୍ପିତ କରିବି। ୨ସେ
କେବଳ ତୁମ୍ଭମାନଙ୍କର ସ୍ୱାମୀ ହେବେ। କିନ୍ତୁ ମୁଁ ଭୟ
କରୁଛି ଯେ, ଯେପରି ହବ୍‌ବା ସର୍ପର ପ୍ରବଞ୍ଚନା ଦ୍ୱାରା
ପ୍ରଭାବିତ ହୋଇଥିଲା, ସେହି ଭଳି ତୁମ୍ଭମାନଙ୍କ ମନ ମଧ୍ୟ
ଖ୍ରୀଷ୍ଟଙ୍କ ପ୍ରତି ସତ୍ୟ ଓ ପବିତ୍ର ସମର୍ପଣ ଠାରୁ ଦୂରକୁ
ଚାଲି ଯିବ। ୪କାରଣ ଆମ୍ଭେ ଯେଉଁ ଯୀଶୁଙ୍କ ପ୍ରଚାର
କରିଛୁ, ତାହାଠାରୁ ଭିନ୍ନ କଥା କେହି ଯୀଶୁଙ୍କର ବିଷୟରେ
ପ୍ରଚାର କଲେ, ଅଥବା ଆମ୍ଭଠାରୁ ଯେଉଁ ପବିତ୍ର ଆତ୍ମା ବା
ସୁସମାଚାର ବିଷୟରେ ତୁମ୍ଭେମାନେ ଶୁଣିଛ, ତା'ଠାରୁ ଭିନ୍ନ
ଅନ୍ୟ ଆତ୍ମା ବା ସୁସମାଚାର ବିଷୟରେ ଯେତେବେଳେ
ସେମାନେ କୁହନ୍ତି, ସେତେବେଳେ ତୁମ୍ଭେମାନେ ଧୈର୍ଯ୍ୟ
ପୂର୍ବକ ସେମାନଙ୍କ ଠାରୁ ଶୁଣୁଛ।
୫ମୁଁ ଭାବୁ ନାହିଁ ଯେ, ସେହି "ମହାନ ପ୍ରେରିତମାନେ"
ମୋ ଠାରୁ କୌଣସି ଗୁଣରେ ଅଧିକ। ୬ଏହା ସତ୍ୟ ଯେ
ମୁଁ ପ୍ରଶିକ୍ଷିତ ବକ୍ତା ନୁହେଁ, କିନ୍ତୁ ମୋର ଜ୍ଞାନ ଅଛି।
ଆମ୍ଭେ ଏହି କଥାଟିକୁ ତୁମ୍ଭମାନଙ୍କୁ ସବୁ ପ୍ରକାରରେ ସ୍ପଷ୍ଟ
ଭାବରେ ଦେଖାଇ ଦେଇଛୁ।
୭ମୁଁ ତୁମ୍ଭମାନଙ୍କୁ ବିନା ମୂଲ୍ୟରେ ପରମେଶ୍ୱରଙ୍କ ସୁସମାଚାର
ଦେଇଛି। ତୁମ୍ଭମାନଙ୍କୁ ମହତ୍ତ୍ୱପୂର୍ଣ୍ଣ କରିବା ପାଇଁ ମୁଁ ନମ୍ର
ହୋଇ ଯାଇଥିଲି। ତୁମ୍ଭେମାନେ କ'ଣ ଭାବୁଛ ଯେ ମୁଁ
ଭୁଲ କରିଥିଲି? ୮ମୁଁ ତୁମ୍ଭମାନଙ୍କ ସେବାକାର୍ଯ୍ୟ ପାଇଁ ଅନ୍ୟ
ମଣ୍ଡଳୀମାନଙ୍କ ଠାରୁ ଅର୍ଥ (ବା ସେମାନେ ଦରିଦ୍ର ହେଲେ
ମଧ୍ୟ ସେମାନଙ୍କଠାରୁ ଅର୍ଥ ଗ୍ରହଣ କରିବା) ଗ୍ରହଣ କରିଛି।
୯ତୁମ୍ଭମାନଙ୍କ ସହିତ ଥିବା ବେଳେ, ମୋର ଆବଶ୍ୟକତା
ଗୁଡ଼ିକ ପାଇଁ ମୁଁ ତୁମ୍ଭମାନଙ୍କୁ ହଇରାଣ କରି ନାହିଁ। ଯେଉଁ
ଭାଇମାନେ ମାକିଦନିଆରୁ ଆସିଥିଲେ ସେମାନେ ମୋର
ସମସ୍ତ ଆବଶ୍ୟକତା ଗୁଡ଼ିକୁ ପୂରଣ କଲେ। ମୁଁ କୌଣସି
ପ୍ରକାର ତୁମ୍ଭମାନଙ୍କ ଉପରେ ବୋଝ ହୋଇ ନାହିଁ ଓ
ଭବିଷ୍ୟତରେ ମଧ୍ୟ କଦାପି ହେବ ନାହିଁ। ୧୦ମୁଁ ଯୀଶୁ
ଖ୍ରୀଷ୍ଟଙ୍କଠାରେ ଥାଇ ସତ୍ୟ କହୁଛି, ସେହି ବିଷୟରେ ଗର୍ବ
ପୂର୍ବକ କହିବା ପାଇଁ ମୋତେ ସମଗ୍ର ଆଖାୟାରେ କେହି
ଅଟକାଇ ପାରିବ ନାହିଁ। ୧୧ମୁଁ କାହିଁକି ତୁମ୍ଭମାନଙ୍କ ପାଇଁ
ବୋଝ ହେଉ ନାହିଁ? ଏହା କ'ଣ ଏଥିପାଇଁ ଯେ ମୁଁ
ତୁମ୍ଭମାନଙ୍କୁ ଭଲ ପାଏ ନାହିଁ? ନା, ପରମେଶ୍ୱର ଜାଣନ୍ତି
ଯେ, ମୁଁ ତୁମ୍ଭମାନଙ୍କୁ ଭଲ ପାଏ।
୧୨ମୁଁ ଯାହା କରୁଛି, ତାହା କରି ଚାଲି ଥିବି। ସେହି
ଲୋକମାନଙ୍କର ଗର୍ବ କରିବା ପାଇଁ ଯେପରି କୌଣସି
କାରଣ ରହିବ ନାହିଁ, ସେଥିପାଇଁ ମୁଁ ଏପରି କରିଚାଲିଥିବି।
ସେମାନେ ସବୁବେଳେ ଦେଖାଇବାକୁ ଚେଷ୍ଟା କରନ୍ତି ଯେ,
ଯେଉଁ କାରଣ ପାଇଁ ଆମ୍ଭେ ଗର୍ବ କରୁଛୁ, ସେମାନେ ମଧ୍ୟ
ସେଥିପାଇଁ ଗର୍ବ କରନ୍ତି। ସେମାନେ ଭଣ୍ଡ ପ୍ରେରିତ।
ସେମାନେ ପ୍ରତାରକ। ଲୋକେ ଯେପରି ସେମାନଙ୍କୁ ଖ୍ରୀଷ୍ଟଙ୍କର
ପ୍ରେରିତ ବୋଲି ଭାବିବେ, ଏଥିପାଇଁ ସେମାନେ ନିଜର
ବେଶ ବଦଳାଇଥାନ୍ତି। ୧୪ଏହା ଆମ୍ଭକୁ ଆଶ୍ଚର୍ଯ୍ୟ ଲାଗୁ ନାହିଁ
। କାରଣ ଏପରି କି ଶୟତାନ ନିଜେ ମଧ୍ୟ ତେଜସ୍ୱୀ
ସ୍ୱର୍ଗଦୂତର ରୂପ ଧାରଣ କରେ। ୧୫ଅତଏବ, ତା'ର
ସେବକମାନେ ଯଦି ଧାର୍ମିକତାର ସେବକରୂପ ଧାରଣ
କରନ୍ତି, ଏହା କ'ଣ ଆଶ୍ଚର୍ଯ୍ୟର କଥା? କିନ୍ତୁ ଶେଷରେ
ସେମାନେ ତାଙ୍କ କର୍ମ ପାଇଁ ଅବଶ୍ୟ ଦଣ୍ଡ ପାଇବେ।

---

**"ଯଦି … ଉଚିତ।"** ଯିରିମିୟ, ୯:୨୪

## ପାଉଲଙ୍କ ଯାତନା

୧୬ମୁଁ ପୁନର୍ବାର କହୁଛି, କେହି ମୋତେ ମୂର୍ଖ ବୋଲି
ଭାବିବା ଉଚିତ ନୁହେଁ। କିନ୍ତୁ ଯଦି ତୁମ୍ଭେମାନେ ମୋତେ
ମୂର୍ଖ ବୋଲି ଭାବ, ତାହେଲେ ମୂର୍ଖକୁ ଗ୍ରହଣ କଲାଭଳି
ମୋତେ ଗ୍ରହଣ କର। ୧୭ତାହେଲେ ମୁଁ ମଧ୍ୟ ସାମାନ୍ୟ
ଗର୍ବ କରି ପାରିବି। ଯେପରି ପ୍ରଭୁ କହିଥାନ୍ତେ, ସେପରି ମୁଁ
କହୁ ନାହିଁ। ମୁଁ ଜଣେ ମୂର୍ଖ ଭଳି ଗର୍ବ କରେ।
୧୮ଅନେକ ଲୋକ ତାହାଙ୍କର ସାଂସାରିକ ଜୀବନ ପାଇଁ
ଗର୍ବ କରନ୍ତି, ସେହି ଭଳି ମୁଁ ମଧ୍ୟ ଗର୍ବ କରୁଛି।
୧୯ତୁମ୍ଭେମାନେ ଜ୍ଞାନୀ ହୋଇଥିବାରୁ ଖୁସିରେ ମୂର୍ଖମାନଙ୍କ
ପ୍ରତି ସହନଶୀଳ ହୁଅ। ୨୦କାରଣ ତୁମ୍ଭେମାନେ ତୁମ୍ଭକୁ
ଦାସ ଭଳି ବ୍ୟବହାର କରୁଥିବା, ଫାନ୍ଦରେ ପକାଇ
ଧରୁଥିବା, ନିଜକୁ ତୁମ୍ଭମାନଙ୍କଠାରୁ ବଡ଼ ବୋଲି କହୁଥିବା
ଓ ତୁମ୍ଭମାନଙ୍କ ଗାଲରେ ଚାପୁଡ଼ା ମାରୁଥିବା ଲୋକମାନଙ୍କ
ପ୍ରତି ସହନଶୀଳ ହୋଇଛ। ୨୧ଏହା କହିବା ମୋ ପାଇଁ
ଲଜ୍ଜାଜନକ। କିନ୍ତୁ ତୁମ୍ଭମାନଙ୍କ ପ୍ରତି ଏପରି କରିବା ଦୃଷ୍ଟିରୁ
ଆମ୍ଭେମାନେ ଅତି "ଦୁର୍ବଳ" ହୋଇଯାଉଛୁ।

ମୁଁ ମୂର୍ଖତାପୂର୍ବକ କହୁଛି ଯେ, ଯଦି ଜଣେ ଗର୍ବ
କରିବାରେ ସାହସୀ, ତାହେଲେ ମୁଁ ମଧ୍ୟ ଗର୍ବ କରିବା
ପାଇଁ ସାହସୀ ହେବି। ୨୨ସେମାନେ କେବଳ କଣ ଏବ୍ରୀ?
ମୁଁ ମଧ୍ୟ। ୨୩ସେମାନେ କ'ଣ କେବଳ ଇସ୍ରାୟେଲୀୟ? ମୁଁ
ମଧ୍ୟ। ସେମାନେ କ'ଣ କେବଳ ଅବ୍ରାହମଙ୍କ ବଂଶଧର? ମୁଁ
ମଧ୍ୟ। ସେମାନେ କ'ଣ କେବଳ ଖ୍ରୀଷ୍ଟଙ୍କ ସେବକ? ମୁଁ
ମଧ୍ୟ। ମୁଁ କ'ଣ ପାଗଳ ସେଥିପାଇଁ ଏପରି ଦର୍ପ କରୁଛି?
ସେମାନଙ୍କ ତୁଳନାରେ ମୁଁ ଅଧିକ କଠୋର ପରିଶ୍ରମ
କରିଛି। ମୁଁ ଥରକୁ ଥର କାରାବରଣ କରିଛି। ମୋତେ
ଥରକୁ ଥର ମାଡ଼ ମରାଯାଇଛି। ଅନେକ ଥର ମୁଁ ମୃତ୍ୟୁର
ସନ୍ନିକଟ ହୋଇଛି। ୨୪ମୁଁ ଯିହୂଦୀମାନଙ୍କ ଠାରୁ ପାଞ୍ଚ
ଥରରେ ଅଣଚାଳିଶି ଥର ଚାବୁକ ମାଡ଼ ଖାଇଛି। ୨୫ମୁଁ
ତିନିଥର ବେତ ମାଡ଼ ଖାଇଛି, ଥରେ ପଥର ଆଘାତ
ସହିଛି। ଏହା ଛଡ଼ା ମୁଁ ତିନି ଥର ଜାହାଜ ଭାଙ୍ଗିବା
ବେଳେ ସେଥିରେ ଥିଲି, ତା'ମଧ୍ୟରୁ ଥରେ ରାତି ଓ ତା
ଆର ଦିନ ଯାଏ ସମୁଦ୍ରରେ ପଡ଼ି ରହିଥିଲି। ୨୬ମୁଁ ଅନେକ
ଥର ଯାତ୍ରା କରିଛି। ଏହି ଯାତ୍ରା ମାନଙ୍କରେ ନଦୀରେ
ଲୁଣ୍ଠନକାରୀମାନଙ୍କଠାରୁ ମୋର ନିଜ ଲୋକମାନଙ୍କଠାରୁ,
ଅଣଯିହୂଦୀ ମାନଙ୍କଠାରୁ ମୁଁ ବିପଦରେ ଥିଲି। ନଗର
ମାନଙ୍କରେ, ନିର୍ଜନ ସ୍ଥାନ ଗୁଡ଼ିକରେ, ଏବଂ ସମୁଦ୍ରରେ,
ମଧ୍ୟ ମୁଁ ବିପଦରେ ପଡ଼ିଥିଲି। ଯେଉଁଲୋକମାନେ ମିଛରେ
ଭାଇ ବୋଲାଉ ଥିଲେ ସେମାନଙ୍କ ପାଇଁ ମୁଁ ବିପଦରେ
ପଡ଼ିଥିଲି। ୨୭ମୁଁ କଠୋର ପରିଶ୍ରମ କରି କ୍ଳାନ୍ତିପୂର୍ଣ୍ଣ ଜୀବନ
ଯାପନ କରିଛି। ଅନେକ ଥର ମୁଁ ଶୋଇ ନାହିଁ। ମୁଁ
ଅନାହାର ମଧ୍ୟ ଦେଇ ଗତି କରିଛି। ଅନେକ ଥର ମୋ
ପାଖରେ ଖାଇବାକୁ କିଛି ନଥାଏ। ଲୁଗାପଟା ବିନା
ଥଣ୍ଡାରେ ମୁଁ ରହିଛି। ୨୮ଆହୁରି ମଧ୍ୟ ଅନେକ ଗୁଡ଼ିଏ
ସମସ୍ୟା ଦେଇ ମୁଁ ଗତି କରିଛି। ତହିଁ ମଧ୍ୟରୁ ଗୋଟିଏ
ହେଲା ସମସ୍ତ ମଣ୍ଡଳୀ ମାନଙ୍କର ଚିନ୍ତା, ପ୍ରତିଦିନ ସେହି
ଚିନ୍ତାରେ ମୁଁ ରହୁଛି। ୨୯ଯଦି ଜଣେ କେହି ଦୁର୍ବଳ, ମୁଁ
ମଧ୍ୟ ଦୁର୍ବଳ। ଯଦି କୌଣସି ଲୋକ ପାପରେ ଚାଲିବା
ନିମନ୍ତେ ପ୍ରବୃତ୍ତ ହୁଏ, ତେବେ ମୁଁ ଅନ୍ତର ମଧ୍ୟରୁ ଯନ୍ତ୍ରଣା
ଅନୁଭବ କରେ।

୩୦ଯଦି ମୋର ଦର୍ପ (ଗର୍ବ) କରିବା କଥା, ତା'ହେଲେ
ମୁଁ ମୋ ନିଜର ଦୁର୍ବଳତା ଗୁଡ଼ିକ ପାଇଁ ଗର୍ବ କରିବି।
୩୧ପରମେଶ୍ୱର ଜାଣନ୍ତି ଯେ, ମୁଁ ମିଥ୍ୟା କହୁ ନାହିଁ। ସେ
ହେଉଛନ୍ତି ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ପିତା। ୩୨ସେ ସର୍ବଦା
ପ୍ରଶଂସିତ ହେବା କଥା। ମୁଁ ଯେତେବେଳେ ଦମ୍ମେସକଠାରେ
ଥିଲି, ଅରିତସ୍ ରାଜାଙ୍କ ରାଜ୍ୟପାଳ ନଗରର ଚାରି ପଟେ
ପ୍ରହରୀମାନଙ୍କୁ ରଖି ମୋତେ ବନ୍ଦୀ କରିବା ପାଇଁ ଚେଷ୍ଟା
କରିଥିଲେ। ୩୩କିନ୍ତୁ ସହର ପାଚେରୀରେ ଥିବା ଗୋଟିଏ
ଝରକା ବାଟେ ଦେଇ, ଗୋଟିଏ ବାକ୍ସରେ ବସାଇ ମୋତେ
କେତେକ ବନ୍ଧୁମାନଙ୍କ ଦ୍ୱାରା ବାହାରକୁ ଓହ୍ଲାଇ ନିଆ
ଯିବାରୁ ମୁଁ ରାଜ୍ୟପାଳଙ୍କ ହାତରୁ ରକ୍ଷା ପାଇ ଗଲି।

## ପାଉଲଙ୍କ ଜୀବନରେ ବିଶେଷ ଆଶୀର୍ବାଦ

୧୨ ମୁଁ ଗର୍ବ କରି ଚାଲି ଥିବି। ଏହା ଦ୍ୱାରା କିଛି
ଲାଭ ନାହିଁ, କିନ୍ତୁ ମୁଁ ପ୍ରଭୁଙ୍କ ପ୍ରଦତ୍ତ 'ଦର୍ଶନ'
ଓ 'ପ୍ରତ୍ୟାଦେଶ' ବିଷୟରେ କହିବି। ୨ମୁଁ ଚଉଦ ବର୍ଷ
ପୂର୍ବରୁ ଘଟି ଥିବା ଗୋଟିଏ ଘଟଣା କହୁଛି। ଜଣେ
ଖ୍ରୀଷ୍ଟରେ ଥିବା ଲୋକକୁ ମୁଁ ଜାଣେ (ସ୍ୱଦେହରେ କି
ଦେହରହିତ ହୋଇ, ତାହା ମୁଁ ଜାଣେ ନାହିଁ, ପରମେଶ୍ୱର
ଜାଣନ୍ତି) ଯାହାଙ୍କୁ ତୃତୀୟ ସ୍ୱର୍ଗକୁ ନିଆ ଗଲା। ୩ମୁଁ ଜାଣେ
ତାହାଙ୍କୁ ପାରାଦୀଶକୁ* ନିଆଗଲା। (ସ୍ୱଦେହରେ କି
ଦେହରହିତ ହୋଇ, ତାହା ମୁଁ ଜାଣେ ନାହିଁ, ପରମେଶ୍ୱର
ଜାଣନ୍ତି)। ୪ସେ ଏପରି ଶୁଣିବାକୁ ପାଇଲେ ଯାହା ସେ
ବୁଝେଇ ପାରିଲେ ନାହିଁ। ସେ କିଛି ବିଷୟ ଶୁଣିଲେ,
୫ଯାହା କୌଣସି ବ୍ୟକ୍ତିକୁ କହିବା ପାଇଁ ଅନୁମତି ଦିଆଯାଇ
ନାହିଁ। ମୁଁ ଏହି ଭଳି ଲୋକ ପାଇଁ ଗର୍ବ କରିବାକୁ ଇଚ୍ଛା
କରୁଛି, କିନ୍ତୁ ମୁଁ ନିଜ ପାଇଁ ଗର୍ବ କରିବି ନାହିଁ, ମାତ୍ର
ମୋହର ଦୁର୍ବଳତାରେ ଦର୍ପ କରିବି ୬ଯଦିଓ ମୁଁ ନିଜ
ଉପରେ ଗର୍ବ କରିବାକୁ ଚାହିଁଲି ତଥାପି ମୁଁ ମୁର୍ଖ ନୁହେଁ,
କାରଣ ମୁଁ ସତ୍ୟ କଥା କହେ। କିନ୍ତୁ ମୁଁ ନିଜ ପାଇଁ
ଗର୍ବ କରିବି ନାହିଁ କାରଣ ଲୋକେ ମୋ ବିଷୟରେ ଯାହା
ଦେଖିଛନ୍ତି ଓ ଶୁଣିଛନ୍ତି ତା ଠାରୁ ଅଧିକ ବୋଲି ମୋତେ
ଭାବନ୍ତୁ, ଏହା ମୁଁ ଇଚ୍ଛା କରେ ନାହିଁ।

୭ମୋତେ ଦିଆଯାଇଥିବା ଆଶ୍ଚର୍ଯ୍ୟଜନକ ପ୍ରତ୍ୟାଦେଶଗୁଡ଼ିକ
ପାଇଁ କାଳେ ମୁ ଁଅତ୍ୟଧିକ ଗର୍ବ କରିବି, ସେଥିପାଇଁ
ମୋତେ ଶରୀରରେ ଯନ୍ତ୍ରଣାଦାୟକ ଏକ କଣ୍ଟକ ଦିଆ
ହେଲା। ଶୟତାନର ଦୂତ ସ୍ୱରୂପେ ଏହା ମୋତେ ଦିଆଯାଇଛି
ଓ ମୁଁ ଯେପରିକି ଅଧିକ ଗର୍ବ ନ କଲି। ମୋତେ ମାଡ଼
ମାରିବା ପାଇଁ ସେଥିପାଇଁ ତାହାକୁ ପଠାଯାଇଛି। ୮ମୁଁ
ପ୍ରଭୁଙ୍କୁ ତିନି ଥର ପ୍ରାର୍ଥନା କଲି ଯେ ସେ ଏହି
କଣ୍ଟକଟିକୁ ମୋ ଠାରୁ ଦୂରେଇ ନିଅନ୍ତୁ। ୯କିନ୍ତୁ ପ୍ରଭୁ

---

**ପାରାଦୀଶ** ଏହି ସ୍ଥାନକୁ ପରମେଶ୍ୱରଙ୍କ ଲୋକେ ମୃତ୍ୟୁ ପରେ ଯାଇଥାନ୍ତି।

ମୋତେ କହଲେ, "ତୁମ୍ଭ ପାଇଁ ମୋର ଅନୁଗ୍ରହ ଯଥେଷ୍ଟ।
ଯେତେବେଳେ ତୁମ୍ଭେ ଦୁର୍ବଳ, ସେତେବେଳେ ମୋର ଶକ୍ତ
ତୁମ୍ଭଠାରେ ପରପୂର୍ଣ୍ଣତା ଭାବେ ଦେଖା ଦଏ।" ଅତଏବ ମୁଁ
ମୋର ଦୁର୍ବଳତା ପାଇଁ ଗର୍ବ ଅନୁଭବ କରବାରେ ଆନନ୍ଦ
ପାଏ। ଏହା ଦ୍ୱାରା ଖ୍ରୀଷ୍ଟଙ୍କର ଶକ୍ତ ମୋ ଠାରେ ରହଥିବ।
୧୦ଅତଏବ ମୋ ଠାରେ ଦୁର୍ବଳତା ଥିଲେ ମୁଁ ଆନନ୍ଦିତ
ହୁଏ। କେବଳ ଖ୍ରୀଷ୍ଟଙ୍କ ସକାଶେ ଯେତେବେଳେ ମୁଁ
ଅପମାନତ ହୁଏ, ମୁଁ କଠିନ ସମୟ ଦେଇ ଗତି କରେ,
ଯେତେବେଳେ ମୋର କଷ୍ଟ ଥାଏ ବା ଯେତେବେଳେ
ମୋର ସମସ୍ୟା ଥାଏ, ସେତେବେଳେ ମୁଁ ଆନନ୍ଦ କରେ।
ଯେତେବେଳେ ମୁଁ ଦୁର୍ବଳ, ସେତେବେଳେ ମୁଁ ପ୍ରକୃତରେ
ଅତି ସବଳ, ଏଥିପାଇଁ ଅତିଶୟ ଆନନ୍ଦ କରେ।

### କରନ୍ଥୀଠାରେ ଖ୍ରୀଷ୍ଟୀୟାନମାନଙ୍କ ପ୍ରତି ପାଉଲଙ୍କ ପ୍ରେମ

୧୧ମୁଁ ମୂର୍ଖଙ୍କ ଭଳ କହଚାଲ ଥିଲ। କନ୍ତୁ ଏପର
କହବା ପାଇଁ ତୁମ୍ଭେମାନେ ମୋତେ ବାଧ କରଥିଲ।
ତୁମ୍ଭେମାନେ ହେଉଛ ସେହଲୋକ, ଯେଉଁମାନେ ମୋ
ସପକ୍ଷରେ ଭଲକଥା କହବ। ମୁଁ କଛ ନୁହେଁ, କନ୍ତୁ
ତଥାକଥିତ ସେହ "ମହାନ୍ ପ୍ରେରତ" ମାନେ ମୋ ଠାରୁ
ଅଧିକ ମଧ ନୁହଁନ୍ତ। ୧୨ମୁଁ ତୁମ୍ଭମାନଙ୍କ ସହତ ଥିବା
ବେଳେ, ଜଣେ ପ୍ରେରତ ବୋଲ ପ୍ରମାଣିତ କରୁଥିବା କାମ
ମୁଁ କରଥିଲ-ମୁଁ ନାନାଦ ଚହ୍ନ, ଅଦ୍‌ଭୁତ ଓ ଆଶ୍ଚର୍ଯ୍ୟଜନକ
କାମ ଦେଖାଇଥିଲ। ଏ ସବୁ ମୁଁ ଅନେକ ଧୈର୍ଯ୍ୟର ସହତ
କରଥିଲ। ୧୩ଅତଏବ, ଅନ୍ୟ ମଣ୍ଡଳୀଗୁଡ଼କ ଯାହା ପାଇ
ଥିଲେ ତା'ସବୁ ତୁମ୍ଭେମାନେ ମଧ ପାଇଛ। କେବଳ
ଗୋଟିଏ କଥା ତନ୍ମଧ୍ୟରୁ ଅଲଗା: ମୁଁ ତୁମ୍ଭମାନଙ୍କ ଉପରେ
କେବେ ହେଲେ ଭାରସ୍ୱରୂପ ନଥିଲ। ଏଥିପାଇଁ ମୋତେ
କ୍ଷମା କର ଦଅ।
୧୪ମୁଁ ତୁମ୍ଭମାନଙ୍କ ପାଖକୁ ତୃତୀୟ ଥର ଯିବା ପାଇଁ
ପ୍ରସ୍ତୁତ। ଓ ମୁଁ ତୁମ୍ଭମାନଙ୍କ ପାଇଁ ଭାରସ୍ୱରୂପ ହେବ
ନାହିଁ। ତୁମ୍ଭମାନଙ୍କର ଥିବା ସମ୍ପତ୍ତିରୁ ମୁଁ କଛ ଇଚ୍ଛା କରେ
ନାହିଁ। ପ୍ରତ ବଦଳରେ ମୁଁ ତୁମ୍ଭମାନଙ୍କୁ ଚାହେଁ। ସନ୍ତାନମାନଙ୍କର
ନଜ ମାତାପିତା ଲାଗି କୌଣସି ସଞ୍ଚୟର ଆବଶ୍ୟକତା
ନଥାଏ, କନ୍ତୁ ସନ୍ତାନମାନଙ୍କ ଲାଗି ପିତାମାତା ସଞ୍ଚୟ
କରନ୍ତ। ୧୫ଏଣୁ ମୋ ପାଖରେ ଯାହା ଅଛ, ମୁଁ ଆନନ୍ଦର
ସହତ ତୁମମାନଙ୍କୁ ଦେବ। ତୁମ୍ଭମାନଙ୍କ ଲାଗି ମୁଁ ନଜକୁ
ମଧ ଦେଇ ଦେବ। ଯଦ ମୁଁ ତୁମ୍ଭମାନଙ୍କୁ ଅଧିକ ଭଲ
ପାଏ ତା'ହେଲେ ତୁମ୍ଭେମାନେ କ'ଣ ମୋତେ ସ୍ନେହରେ
ଊଣା କରବ?
୧୬ମୁଁ ତୁମ୍ଭମାନଙ୍କ ଉପରେ ଭାରସ୍ୱରୂପ ହେବାକୁ ଚାହେଁନାହିଁ
କନ୍ତୁ ଏହା ନଶ୍ଚିତ ତୁମ୍ଭେମାନେ କ'ଣ ଭାବୁଛ ଯେ ମୁଁ
ଛଳ ଭାବରେ ମିଥ୍ୟା କହ ତୁମ୍ଭମାନଙ୍କୁ ଜାଲରେ ପକାଇବା
ପାଇଁ ଚେଷ୍ଟା କରବ। ୧୭ମୁଁ ତୁମ୍ଭମାନଙ୍କ ପାଖକୁ ପଠାଇଥିବା
ଲୋକମାନଙ୍କ ମଧରୁ କାହାର ମାଧମରେ ତୁମ୍ଭମାନଙ୍କଠାରୁ
ଫାଇଦା ଉଠାଇଛ କ? ନା, ତୁମ୍ଭେମାନେ ଜାଣ ଯେ,
ଏସବୁ ମୁଁ କଦାପି କରନାହିଁ। ୧୮ମୁଁ ତିତସଙ୍କୁ ଓ ଆମ୍ଭର
ଜଣେ ଭାଇଙ୍କୁ ତାହାଙ୍କ ସହତ ପଠାଇଥିଲ। ତିତସ କ'ଣ
ତୁମ୍ଭମାନଙ୍କଠାରୁ ଫାଇଦା ଉଠାଇଥିଲେ କ? ନା! ତୁମ୍ଭେମାନେ
ଜାଣ ଯେ ତିତସ ଓ ମୁଁ ଦୁହେଁ ତୁମ୍ଭମାନଙ୍କ ପାଇଁ ସମାନ
ଭାବରେ ଓ ସମାନ ଉତ୍ସାହରେ କାମ କରଛୁ। ସେହ
ପବତ୍ର ଆତ୍ମାର ପ୍ରେରଣାରେ ଆମ୍ଭେ ଦୁହେଁ କାମ କରଥିଲୁ।
୧୯ତୁମ୍ଭେମାନେ କ'ଣ ଭାବୁଛ ଯେ ଆମ୍ଭେ ଏତେ ସମୟ
ଧର ଆମ୍ଭ ପକ୍ଷରେ ଯୁକ୍ତ ବାଢୁ ଥିଲୁ। ଆମ୍ଭେ ଖ୍ରୀଷ୍ଟଙ୍କର
ଅନୁସରଣକାରୀ ହସାବରେ ପରମେଶ୍ୱରଙ୍କ ଆଗରେ କହଥିଲୁ।
ତୁମ୍ଭେମାନେ ଆମ୍ଭର ପ୍ରିୟ ମିତ୍ର। ଆମ୍ଭେ ଯାହା କଛ
କହୁଛୁ ତାହା ତୁମ୍ଭେମାନେ ଆଧାତ୍ମିକ ଭାବରେ ଶକ୍ତଶାଳୀ
ହେବ ବୋଲ କହୁଛୁ। ୨୦ଏଭଳ କହବାର ଉଦ୍ଦେଶ୍ୟ ଯେ,
ମୋର ଭୟ ହେଉଛ: ଯେତେବେଳେ ମୁଁ ତୁମ୍ଭମାନଙ୍କ
ପାଖକୁ ଯିବ ସେତେବେଳେ ମୁଁ ତୁମ୍ଭମାନଙ୍କୁ ଯାହା ଭାବଛ,
ଠିକ ସେହ ରୂପରେ ନ ପାଇ ପାରେ ଓ ତୁମ୍ଭେମାନେ
ମଧ ମୋତେ ଯାହା ଭାବଛ ଠିକ ସେହ ରୂପରେ ପାଇ
ନ ପାର। ମୋର ଭୟ ଯେ, କାଳେ ତୁମ୍ଭମାନଙ୍କ ମଧରେ
କଳହ, ଈର୍ଷା, କ୍ରୋଧ, ସ୍ୱାର୍ଥ ପରତା, ପରଚର୍ଚ୍ଚା, କାନ
କୁହାକୋହ, ଗର୍ବ ଓ ଦ୍ୱନ୍ଦ ଦେଖିବାକୁ ମିଳବ। ୨୧ମୁଁ ଭୟ
କରୁଛ ଯେ ଯେତେବେଳେ ମୁଁ ତୁମ୍ଭମାନଙ୍କ ପାଖକୁ ଯିବ,
ସେତେବେଳେ ତୁମ୍ଭମାନଙ୍କ ଆଗରେ ମୋର ପରମେଶ୍ୱର
ମୋତେ ଲଜ୍ଜା ନ ଦଅନ୍ତୁ। ଯେହେତୁ ତୁମ୍ଭମାନଙ୍କ ଭିତରୁ
ଅନେକେ ପାପ କରଥିବାରୁ, ମୁଁ ଦୁଃଖିତ ହେବ। କାରଣ
ସେହ ଲୋକମାନେ ସେମାନଙ୍କର ପାପର ଜୀବନ ନମନ୍ତେ
ଦୁଃଖିତ ହୋଇ ନଥିବାରୁ, ଓ ଅନୁତାପ କର ନଥିବାରୁ,
ସେମାନଙ୍କର ଯୌନଗତ ପାପ କାରଣରୁ ଏବଂ ଲଜ୍ଜାଜନକ
କାର୍ଯ୍ୟ କରୁ ଥିବାରୁ; ମୋତେ ଶୋକ କରବାକୁ ପଡ଼ବ।

### ଶେଷ ସତର୍କବାଣୀ ଓ ଶୁଭେଚ୍ଛା

**୧୩** ମୁଁ ତୁମ୍ଭମାନଙ୍କ ପାଖକୁ ତୃତୀୟ ଥର ଆସୁଛ।
ମନେ ରଖ: "ପ୍ରତ୍ୟେକ ଅଭିଯୋଗ ପାଇଁ
ଦୁଇବା ତିନ ଜଣ ସାକ୍ଷୀ ଦେବା ଦରକାର ଯେ ସେମାନେ
ତାହାର ସତ୍ୟତା ବଷୟରେ ଜାଣିଛନ୍ତ।"* ୨ମୁଁ ଯେତେବେଳେ
ତୁମ୍ଭମାନଙ୍କ ସହତ ଦ୍ୱିତୀୟ ଥର ପାଇଁ ଯାଇଥିଲ, ମୁଁ
ପାପୀମାନଙ୍କୁ ସତର୍କ କର ଦେଇ ଥିଲ। ମୁଁ ଏବେ
ତୁମ୍ଭମାନଙ୍କଠାରୁ ଦୂରରେ ଅଛ ଓ ଅନ୍ୟ ପାପୀ ଲୋକମାନଙ୍କୁ
ସତର୍କ କର ଦେଉଛ ଯେ ଯେତେବେଳେ ମୁଁ ତୁମ୍ଭମାନଙ୍କ
ପାଖକୁ ଯିବ, ତୁମ୍ଭମାନଙ୍କ ପାପ ପାଇଁ ଦଣ୍ଡ ଦେବ। ୩ମୋ
ଦ୍ୱାରା ଖ୍ରୀଷ୍ଟ କହୁଛନ୍ତ କ ନାହିଁ, ଏଥିର ତୁମ୍ଭେମାନେ
ପ୍ରମାଣ ଚାହୁଁଛ। ମୋର ପ୍ରମାଣ ଏହ ଯେ, ଖ୍ରୀଷ୍ଟ
ତୁମ୍ଭମାନଙ୍କୁ ଦଣ୍ଡ ପ୍ରଦାନ କରବାରେ ଦୁର୍ବଳ ନୁହଁନ୍ତ। କନ୍ତୁ
ସେ ତୁମ୍ଭମାନଙ୍କ ମଧରେ ଶକ୍ତଶାଳୀ ଅଟନ୍ତ। ୪ଏହା ସତ୍ୟ
ଯେ, ଯେତେବେଳେ ଖ୍ରୀଷ୍ଟ କ୍ରୁଶ ଉପରେ ଚଢ଼ଲେ
ସେତେବେଳେ ସେ ଦୁର୍ବଳ ଥିଲେ, କନ୍ତୁ ଏବେ ପରମେଶ୍ୱରଙ୍କ
ମହାଶକ୍ତରେ ସେ ଜୀବତ। ଆମ୍ଭେ ମଧ ଖ୍ରୀଷ୍ଟଙ୍କଠାରେ

---

**"ପ୍ରତ୍ୟେକ ... ଜାଣିଛନ୍ତ।"** ଦ୍ୱିତୀୟ ବବରଣ, ୧୯:୧୫

ଦୁର୍ବଳ ଅଟୁ। କିନ୍ତୁ ପରମେଶ୍ୱରଙ୍କ ଶକ୍ତିରେ ଆମ୍ଭେ
ଖ୍ରୀଷ୍ଟଙ୍କ ତୁଲ୍ୟ ଜୀବିତ ହୋଇ ଉଠିବା। ନିଜକୁ ତନ୍ନ ତନ୍ନ
କରି ଦେଖ।
୫ତୁମ୍ଭେମାନେ ବିଶ୍ୱାସରେ ଜୀବନ କାଟୁଛ କି ନାହିଁ?
ନିଜ ନିଜକୁ ପରୀକ୍ଷା କରି ଦେଖ। ତୁମ୍ଭେମାନେ ଜାଣ ଯେ
ଯୀଶୁ ଖ୍ରୀଷ୍ଟ ତୁମ୍ଭମାନଙ୍କ ଭିତରେ ଅଛନ୍ତି। କିନ୍ତୁ ଯଦି
ତୁମ୍ଭେମାନେ ପରୀକ୍ଷାରେ ବିଫଳ ହୁଅ, ତାହା ହେଲେ ଖ୍ରୀଷ୍ଟ
ତୁମ୍ଭମାନଙ୍କ ଭିତରେ ରହୁ ନାହାଁନ୍ତି ତାହା ଜାଣ। ୬ମୁଁ
ଆଶା କରେ ଆମ୍ଭେମାନେ ପରୀକ୍ଷାରେ ବିଫଳ ହୋଇ
ନାହୁଁ ବୋଲି ତୁମ୍ଭେମାନେ ଦେଖିବ। ୭ଆମ୍ଭେ
ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରୁ ଯେ ତୁମ୍ଭେମାନେ କିଛି
ଭୁଲ କାମ କରିବ ନାହିଁ। ଆମ୍ଭେ ପରୀକ୍ଷାରେ ଉତ୍ତୀର୍ଣ୍ଣ
ହୋଇଛୁ, ଏ କଥା ଲୋକମାନେ ଦେଖିବାରେ କିଛି ଲାଭ
ନାହିଁ। ପରୀକ୍ଷାରେ ଆମ୍ଭେମାନେ ବିଫଳ ହୋଇଛୁ ବୋଲି
ଯଦି ଲୋକଙ୍କୁ ଦେଖାଯାଏ, ତାହାହେଲେ ଯାହା ଠିକ୍ ତାହା
କରିବା ଆମ୍ଭ ପକ୍ଷରେ ଅଧିକ ଗୁରୁତ୍ୱପୂର୍ଣ୍ଣ। ୮ଆମ୍ଭେ
ସତ୍ୟର ବିପରୀତ କୌଣସି କାମ କରିବା ନାହିଁ। ଆମ୍ଭେ
କେବଳ ସତ୍ୟ ପାଇଁ କିଛି କରି ପାରିବା। ୯ଯଦି
ତୁମ୍ଭେମାନେ ବଳବାନ ଆମ୍ଭେ ଦୁର୍ବଳ ହେବାରେ ଆନନ୍ଦିତ।
ଆମ୍ଭେ ପ୍ରାର୍ଥନା କରୁ ଯେ ତୁମ୍ଭେମାନେ ଅଧିକରୁ ଅଧିକ
ଶକ୍ତିଶାଳୀ ହୋଇ ଯାଅ। ୧୦ମୁଁ ଏବେ ଏହି ଗୁଡ଼ିକ
ତୁମ୍ଭମାନଙ୍କୁ ଲେଖୁଛି କାରଣ ମୁଁ ତୁମ୍ଭମାନଙ୍କ ସହିତ ନାହିଁ।
ଅତଏବ ତାହା ହେଉଛି ଯେ, ଯେତେବେଳେ ମୁଁ ଆସେ,
ସେତେବେଳେ ଦଣ୍ଡ ଦେବା ପାଇଁ ମୋତେ ମୋ ଶକ୍ତିର
ବ୍ୟବହାର କରିବାକୁ ନ ପଡୁ। ପରମେଶ୍ୱର ମୋତେ
ତୁମ୍ଭମାନଙ୍କୁ ଶକ୍ତିଶାଳୀ କରି ଗଢ଼ିବା ପାଇଁ ଶକ୍ତି ପ୍ରଦାନ
କରିଛନ୍ତି, ତୁମ୍ଭମାନଙ୍କୁ ନଷ୍ଟ କରିବା ପାଇଁ ନୁହେଁ।
୧୧ଭାଇ ଓ ଭଉଣୀମାନେ! ମୁଁ ଏବେ ବିଦାୟ ନେଉଛି।
ସିଦ୍ଧ ହେବାକୁ ଚେଷ୍ଟା କର। ମୁଁ ଯେପରି କହିଛି
ସେହିପରି କାମ କରୁଥାଅ। ସମସ୍ତେ ଏକ ମନରେ ଓ
ଶାନ୍ତିରେ ରୁହ। ତେବେ ଶାନ୍ତି ଓ ପ୍ରେମର ପରମେଶ୍ୱର
ତୁମ୍ଭମାନଙ୍କ ସହିତ ରହିବେ।
୧୨ପବିତ୍ର ଚୁମ୍ବନ ଦ୍ୱାରା ପରସ୍ପରକୁ ସ୍ୱାଗତ ଜଣାଅ।
୧୩ପରମେଶ୍ୱରଙ୍କ ସମସ୍ତ ଲୋକ ତୁମ୍ଭମାନଙ୍କୁ ଅଭିବାଦନ
ଜଣାଉଛନ୍ତି।
୧୪ଆମ୍ଭମାନଙ୍କ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଅନୁଗ୍ରହ, ପରମେଶ୍ୱରଙ୍କ
ପ୍ରେମ, ଓ ପବିତ୍ର ଆତ୍ମାଙ୍କ ସହାୟତା ତୁମ୍ଭ ସମସ୍ତଙ୍କର
ସହବର୍ତ୍ତୀ ହେଉ।

# ଗାଲାତୀୟ ମଣ୍ଡଳୀ ନକଟକୁ ପ୍ରେରତ ପାଉଲଙ୍କ ପତ୍ର

୧ ପ୍ରେରତ ପାଉଲଙ୍କ ନକଟରୁ ପତ୍ର। ମୁଁ ପ୍ରେରତ
ହେବା ପାଇଁ ମନୁଷ୍ୟ ଦ୍ୱାରା ବଛା ଯାଇ ନାହିଁ କ
ମନୁଷ୍ୟ ଦ୍ୱାରା ପଠାଯାଇନାହିଁ। ମାତ୍ର ମୁଁ ଯୀଶୁଖ୍ରୀଷ୍ଟ ଓ
ପରମପିତା ପରମେଶ୍ୱରଙ୍କ ଦ୍ୱାରା ପ୍ରେରତ ଭାବେ ନଯୁକ୍ତ
ପାଇଛ। ସେହ ପରମପିତା ହିଁ ଯୀଶୁଖ୍ରୀଷ୍ଟଙ୍କୁ ମୃତ୍ୟୁରୁ
ପୁନର୍ଜୀବତ କର ଥିଲେ।
୨ମୋ ସହତ ଥିବା ଏବଂ ଖ୍ରୀଷ୍ଟଙ୍କ ଠାରେ ବଶ୍ୱାସୀ
ସମସ୍ତ ଭାଇମାନଙ୍କ ତରଫରୁ ଏହ ପତ୍ରଟି ଗାଲାତୀୟ*
ଅଞ୍ଚଳର ସମସ୍ତ ବଶ୍ୱାସୀ ମଣ୍ଡଳୀ ନକଟକୁ ଲେଖାଯାଉଅଛ।
୩ମୁଁ ପ୍ରାର୍ଥନା କରେ ଯେ, ଆମ୍ଭ ପରମପିତା ପରମେଶ୍ୱର
ଓ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଅନୁଗ୍ରହ ଓ ଶାନ୍ତ ତୁମ୍ଭମାନଙ୍କୁ
ମିଳୁ। ୪ପରମପିତା ପରମେଶ୍ୱରଙ୍କ ଇଚ୍ଛା ଅନୁସାରେ ଯୀଶୁ
ଖ୍ରୀଷ୍ଟ ଆମ୍ଭ ପାପଗୁଡକ ପାଇଁ ଓ ଆମ୍ଭେ ରହୁଥିବା ମନ୍ଦ
ସଂସାରରୁ ଆମ୍ଭକୁ ମୁକ୍ତ କରବା ପାଇଁ ନଜକୁ ସମର୍ପିତ
କର ଦେଲେ। ୫ପରମେଶ୍ୱରଙ୍କ ମହମା ସଦାସର୍ବଦା ହେଉ।
ଆମେନ୍।

**ପ୍ରକୃତ ସୁସମାଚାର ଗୋଟିଏ ମାତ୍ର**

୬ଅଳ୍ପକ୍ଷଣ ପୂର୍ବରୁ ପରମେଶ୍ୱର ତାହାଙ୍କର ଅନୁଗମନ
କରବା ନମନ୍ତେ ତୁମ୍ଭମାନଙ୍କୁ ତାହାଙ୍କ ଅନୁଗ୍ରହରେ ଖ୍ରୀଷ୍ଟଙ୍କ
ମାଧ୍ୟମରେ ଡାକଥିଲେ। କନ୍ତୁ ଏବେ ମୁଁ ଏହା ଜାଣି ଅତି
ଆଶ୍ଚର୍ଯ୍ୟ ହେଲ ଯେ, ତୁମ୍ଭେମାନେ ସେହ ପରମେଶ୍ୱରଙ୍କ
ଠାରୁ ଦୂରେଇ ଯାଇ, କୌଣସି ଅନ୍ୟ ସୁସମାଚାରକୁ ବଶ୍ୱାସ
କରୁଛ। ୭ପ୍ରକୃତରେ ଆଉ ଅନ୍ୟ କୌଣସି ସୁସମାଚାର
ନାହିଁ। କନ୍ତୁ କେତେକ ଲୋକ ତୁମ୍ଭମାନଙ୍କୁ ବଭ୍ରାନ୍ତ କରାଇ
ଖ୍ରୀଷ୍ଟଙ୍କ ସୁସମାଚାରକୁ ପରବର୍ତ୍ତନ କରବା ପାଇଁ ଚେଷ୍ଟା
କରୁଛନ୍ତ। ୮କନ୍ତୁ ଆମ୍ଭେ ବା ଅନ୍ୟ କୌଣସି ସ୍ୱର୍ଗଦୂତ
ଯଦ ଆମ୍ଭଦ୍ୱାରା ପ୍ରଚାରତ ସୁସମାଚାର ଠାରୁ ଭିନ୍ନ ଅନ୍ୟ
କୌଣସି ସୁସମାଚାର ପ୍ରଚାର କରେ, ତା'ହେଲେ ସେମାନେ
ଦଣ୍ଡ ଓ ନନ୍ଦାର ପାତ୍ର। ୯ଏହା ମୁଁ ଆଗରୁ କହ ଥିଲ,
ଏବେ ପୁନର୍ବାର କହୁଛ, ତୁମ୍ଭେମାନେ ପୂର୍ବରୁ ପ୍ରକୃତ
ସୁସମାଚାର ଗ୍ରହଣ କର ସାରଛ। ଯଦ ପରତ୍ରାଣ ପାଇଁ
କେହ ବ୍ୟକ୍ତ କଛ ଅନ୍ୟ ଉପାୟ ବଷୟରେ କହେ
ତାହେଲେ ସେ ଦଣ୍ଡ ଓ ନନ୍ଦାର ପାତ୍ର ଅଟେ।
୧୦ତୁମ୍ଭେମାନେ କଣ ଭାବୁଛ ଯେ, ଲୋକେ ମୋତେ
ଯେପର ଗ୍ରହଣ ଓ ସମର୍ଥନ କରନ୍ତ ସେଥିପାଇଁ ମୁଁ ଚେଷ୍ଟା
କରୁଛ? ନା। ଜଣେ ପରମେଶ୍ୱର ଅଛନ୍ତ, ମୁଁ କେବଳ
ତାହାଙ୍କୁ ପ୍ରସନ୍ନ କରବା ପାଇଁ ଚେଷ୍ଟା କରୁଛ। ମୁଁ ଯଦ
ମଣିଷମାନଙ୍କୁ ପ୍ରସନ୍ନ କରବା ପାଇଁ ଚେଷ୍ଟା କରୁଥାନ୍ତ,
ତେବେ ଖ୍ରୀଷ୍ଟଙ୍କର ସେବକ ହୋଇ ନ ଥାନ୍ତ।

**ପାଉଲଙ୍କୁ ପରମେଶ୍ୱରଙ୍କଠାରୁ ଅଧିକାର**

୧୧ଭାଇମାନେ! ମୁଁ କହ ଦେବାକୁ ଚାହେଁ ଯେ, ମୁଁ
ତୁମ୍ଭମାନଙ୍କୁ ଯେଉଁ ସୁସମାଚାର ଶୁଣାଇଲ ତାହା ମନୁଷ୍ୟକୃତ
ନୁହେଁ। ୧୨ମୁଁ ସେହ ସୁସମାଚାର ମଣିଷମାନଙ୍କ ପାଖରୁ
ପାଇ ନାହିଁ। କୌଣସି ମଣିଷ ମୋତେ ତାହା ଶିକ୍ଷା ଦେଇ
ନାହିଁ, ବରଂ ଯୀଶୁଖ୍ରୀଷ୍ଟ ସେହ ସୁସମାଚାର ମୋ ଆଗରେ
ପ୍ରକାଶିତ କଲେ।
୧୩ତୁମ୍ଭେମାନେ ମୋ ପୂର୍ବଜୀବନ ବଷୟରେ ଶୁଣିଛ। ମୁଁ
ଯିହୂଦୀ ଧର୍ମର ଥିଲ। ମୁଁ ପରମେଶ୍ୱରଙ୍କ ମଣ୍ଡଳୀକୁ ତାଡ଼ନା
କରୁଥିଲ। ମୁଁ ମଣ୍ଡଳୀଗୁଡକୁ ନଷ୍ଟ କର ଦେବା ପାଇଁ
ଚେଷ୍ଟା କରଥିଲ। ୧୪ମୁଁ ଯିହୂଦୀଧର୍ମର ଜଣେ ନେତା
ହୋଇ ଉଠୁଥିଲ। ମୁଁ ମୋ ବୟସର ତୁଳନାରେ ଅନ୍ୟ
ଯିହୂଦୀମାନଙ୍କ ଠାରୁ ଆଗୁଆଥିଲ। ପୁରାତନ ନୟମ ଗୁଡକ
ପାଳନ କରବା ପାଇଁ ମୁଁ କଠିନ ପରଶ୍ରମ କରୁଥିଲ। ଏହ
ନୟମ ଗୁଡ଼କ ପରଂପରାଭାବେ ଆମ୍ଭେ ଆମ୍ଭର ପୂର୍ବପୁରୁଷ
ମାନଙ୍କଠାରୁ ପାଇଥିଲୁ।
୧୫କନ୍ତୁ ପରମେଶ୍ୱର ମୋ ଜନ୍ମ ପୂର୍ବରୁ ମୋତେ
ଅନୁଗ୍ରହ କର ବାଛ ନେଇଥିଲେ। ସେ ସ୍ଥିର କରଥିଲେ
ଯେ, ମୁଁ ଅଣଯିହୁଦୀମାନଙ୍କୁ ତାହାଙ୍କ ପୁତ୍ର ଯୀଶୁଖ୍ରୀଷ୍ଟଙ୍କର
ସୁସମାଚାର କହବ। ୧୬ପରମେଶ୍ୱର ତାହାଙ୍କ ପୁତ୍ରଙ୍କ ବଷୟରେ
କହଲେ। ଯେତେବେଳେ ପରମେଶ୍ୱର ମୋତେ ଡାକଲେ,
ମୁଁ କୌଣସି ମଣିଷର ପରାମର୍ଶ ବା ସାହାଯ୍ୟ ନେଇ ନ
ଥିଲ। ୧୭ମୋ ଆଗରୁ ପ୍ରେରତ ହୋଇ ସାରଥିବା ଯିରୂଶାଲମର
ପ୍ରେରତମାନଙ୍କ ପାଖକୁ ମୁଁ ଗଲ ନାହିଁ। କନ୍ତୁ ଅପେକ୍ଷା ନ
କର ମୁଁ ପ୍ରଥମେ ଆରବ ଗଲ ଓ ତା'ପରେ ଦମ୍ମେସକ
ନଗରକୁ ଫେରଗଲ।
୧୮ତିନବର୍ଷ ପରେ ମୁଁ ଯିରୂଶାଲମକୁ ଗଲ। ମୁଁ ପିତର*
ଙ୍କୁ ଦେଖା କରବାକୁ ଯାଇଥିଲ। ୧୯ପିତରଙ୍କ ସହତ ମୁଁ
ପନ୍ଦର ଦନ ରହଲ। ମୁଁ ସେଠାରୁ ପ୍ରଭୁଙ୍କ ଭାଇ ଯାକୁବଙ୍କ
ଛଡ଼ା ଆଉ କୌଣସି ପ୍ରେରତଙ୍କୁ ଦେଖା କଲନାହିଁ।
୨୦ପରମେଶ୍ୱର ଜାଣନ୍ତ ଯେ, ମୁଁ ଏଥିରେ ଯାହା କଛ

---

**ଗାଲାତୀୟ** ନଜର ପ୍ରଥମ ପ୍ରଚାର ଅଭିଯାନ ବେଳେ ପାଉଲଙ୍କ ଦ୍ୱାରା ଏହ ଅଞ୍ଚଳରେ ଚର୍ଚ୍ଚଗୁଡକ ଆରମ୍ଭ କରଥିଲେ।

**ପିତର** ପିତରଙ୍କ ଯିହୂଦୀ ନାମ ହେଉଛ "କେଫା"। ସେ ଯୀଶୁଙ୍କର ବାରଜଣ ଶିଷ୍ୟଙ୍କ ମଧ୍ୟରୁ ଜଣେ।

ଲେଖୁଛି, ତାହା ମିଥ୍ୟା ନୁହେଁ। ୨୧ତା'ପରେ ମୁଁ ସୁରିଆ ଓ
କିଲିକିଆ ଅଞ୍ଚଳଗୁଡ଼ିକୁ ଗଲି।
୨୨ଯିହୂଦାରେ ଖ୍ରୀଷ୍ଟଙ୍କଠାରେ ଥିବା ମଣ୍ଡଳୀଗୁଡ଼ିକ ମୋତେ
ପୂର୍ବରୁ ଦେଖି ନ ଥିବାରୁ ମୋତେ ଚିହ୍ନି ନ ଥିଲେ।
୨୩ସେମାନେ କେବଳ ମୋ ବିଷୟରେ ଶୁଣିଥିଲେ ଯେ,
"ପୂର୍ବରୁ ଏହି ଲୋକ ମଣ୍ଡଳୀକୁ ତାଡ଼ନା କରୁଥିଲା, ଏବେ
ସେ ଖ୍ରୀଷ୍ଟଙ୍କ ବିଶ୍ୱାସମତକୁ ପ୍ରଚାର କରୁଅଛି, ଯାହାକୁ ସେ
ପୂର୍ବରୁ ନଷ୍ଟ କରିବା ପାଇଁ ଚେଷ୍ଟା କରିଥିଲା।" ୨୪ମୋ'ପ୍ରତି
ଯାହା ଘଟିଲା, ସେଥିପାଇଁ ସେମାନେ ପରମେଶ୍ୱରଙ୍କୁ ପ୍ରଶଂସା
କଲେ।

### ଅନ୍ୟ ପ୍ରେରିତମାନେ ପାଉଲଙ୍କୁ ଗ୍ରହଣ କଲେ

୨ ମୁଁ ଚଉଦ ବର୍ଷ ପରେ ପୁଣି ଥରେ ଯିରୂଶାଲମକୁ
ଗଲି। ବର୍ଣ୍ଣବ୍ବା ଓ ତିତସଙ୍କୁ ମଧ୍ୟ ସାଙ୍ଗରେ ନେଇ
ଥିଲି। ୨ଯିରୂଶାଲମ ଯିବା ପାଇଁ ପରମେଶ୍ୱର ମୋତେ
ପ୍ରକାଶ କରିଥିବାରୁ ମୁଁ ସେଠାକୁ ଯାଇଥିଲି। ବିଶ୍ୱାସୀ
ଲୋକମାନଙ୍କ ମଧ୍ୟରେ ଥିବା ନେତୃସ୍ଥାନୀୟ ଲୋକମାନଙ୍କ
ପାଖକୁ ମୁଁ ଗଲି। ଯେତେବେଳେ ଆମ୍ଭେମାନେ ଏକାନ୍ତରେ
ଥିଲୁ, ସେତେବେଳେ ସେମାନଙ୍କୁ ମୁଁ ପ୍ରଚାର କରୁଥିବା
ସୁସମାଚାର ଶୁଣାଇଲି। ମୁଁ ଅଣଯିହୂଦୀମାନଙ୍କୁ ଆଗରୁ ଏହି
ସୁସମାଚାର ଶୁଣାଇ ସାରି ଥିଲି। ଏହାଦ୍ୱାରା ମୁଁ ଇଚ୍ଛା କଲି
ଯେ, ମୁଁ ଯେଉଁ କାମ ପୂର୍ବରୁ କରି ସାରିଥିଲି ଓ ଏବେ
ଯାହା କରୁଛି, ଯେପରି ସେ ସବୁ ବିଫଳ ନ ହୁଏ।
୩ତିତସ ମୋ ସହିତ ଥିଲେ। ସେ ଜଣେ ଅଣଯିହୂଦୀ
ଲୋକ ଥିଲେ। କିନ୍ତୁ ଏହି ଲୋକମାନେ ତିତସଙ୍କୁ ମଧ୍ୟ
ସୁନ୍ନତ ହେବା ପାଇଁ ବାଧ୍ୟ କଲେ ନାହିଁ। ୪ଆମ୍ଭେ ଏହି
ସମସ୍ୟା ବିଷୟରେ କଥାବାର୍ତ୍ତା ହେବାକୁ ଆବଶ୍ୟକ ମନେ
କରୁଥିଲୁ। କାରଣ ଆମ୍ଭ ଦଳ ଭିତରକୁ କେତେକ ଭଣ୍ଡ
ଭାଇ ଲୁଚିଛପି ପଶି ଆସିଥିଲେ, ଓ ଯୀଶୁଖ୍ରୀଷ୍ଟଙ୍କଠାରେ
ଥିବା ଆମ୍ଭର ସ୍ୱାଧୀନତା ଉପରେ ଗୋଇନ୍ଦାଗିରି କରି
ଆମ୍ଭକୁ ଦାସ କରି ରଖିବାକୁ ଚେଷ୍ଟା କରୁଥିଲେ। ୫କିନ୍ତୁ
ସେହି ଭଣ୍ଡ ଭାଇମାନେ ଯାହା କରିବାକୁ ଚାହୁଁଥିଲେ,
ସେଥିରେ ଆମ୍ଭେ କୌଣସି ମତେ ସମ୍ମତ ହେଲୁ ନାହିଁ।
ଆମ୍ଭେ ଇଚ୍ଛା କଲୁ ଯେ, ତୁମ୍ଭମାନଙ୍କ ଭିତରେ ସୁସମାଚାରର
ସତ୍ୟ ରହିଥାଉ।
୬କିନ୍ତୁ ସେହି "ପ୍ରତିଷ୍ଠିତ" ଲୋକମାନେ ମୁଁ କହିଥିବା
ସୁସମାଚାରର ପରିବର୍ତ୍ତନ କଲେ ନାହିଁ। (ମୋ ପାଇଁ କିଏ
ପ୍ରତିଷ୍ଠିତ ବା ନୁହେଁ, ତାହାର କିଛି ଅର୍ଥ ନାହିଁ। ପରମେଶ୍ୱରଙ୍କ
ନିକଟରେ ସମସ୍ତେ ସମାନ।) ୭ଏହି ଲୋକମାନେ ଦେଖିଲେ
ଯେ, ପରମେଶ୍ୱର ପିତରଙ୍କ ଭଳି ମୋତେ ଗୋଟିଏ
ବିଶେଷ କାମ ଦେଇଛନ୍ତି। ପରମେଶ୍ୱର ଯିହୂଦୀମାନଙ୍କୁ
ସୁସମାଚାର କହିବା ପାଇଁ ପିତରଙ୍କୁ ନିଯୁକ୍ତ କରିଛନ୍ତି। କିନ୍ତୁ
ପରମେଶ୍ୱର ମୋତେ ଅଣଯିହୂଦୀମାନଙ୍କୁ ସୁସମାଚାର କହିବା
କାମ ଦେଇଛନ୍ତି। ୮ପରମେଶ୍ୱର ପିତରଙ୍କୁ ଜଣେ ପ୍ରେରିତ
ରୂପରେ କାମ କରିବା ଶକ୍ତି ପ୍ରଦାନ କରିଥିଲେ। ସେ
ଯିହୂଦୀମାନଙ୍କର ଜଣେ ପ୍ରେରିତ। ପରମେଶ୍ୱର ମୋତେ
ମଧ୍ୟ ଜଣେ ପ୍ରେରିତ ଭାବରେ କାମ କରିବା ପାଇଁ ଶକ୍ତି
ପ୍ରଦାନ କରିଛନ୍ତି। କିନ୍ତୁ ମୁଁ ଅଣଯିହୂଦୀମାନଙ୍କ ପାଇଁ
ପ୍ରେରିତ ଅଟେ। ୯ଯାକୁବ, ପିତର ଓ ଯୋହନ ନେତା
ରୂପେ ପରିଗଣିତ ହେଉଥିଲେ। ସେମାନେ ଦେଖିଲେ ଯେ,
ପରମେଶ୍ୱର ମୋତେ ଏହି ବିଶେଷ ଅନୁଗ୍ରହ ପ୍ରଦାନ
କରିଛନ୍ତି। ସେଥିପାଇଁ ସେମାନେ ବର୍ଣ୍ଣବ୍ବା ଓ ମୋତେ
ତାହାଙ୍କର ସହଭାଗୀତାର ଦକ୍ଷିଣହସ୍ତ ପ୍ରଦାନ କଲେ। ଯାକୁବ,
ପିତର ଓ ଯୋହନ କହିଲେ, "ପାଉଲ ଓ ବର୍ଣ୍ଣବ୍ବା,
ତୁମ୍ଭେମାନେ ଅଣଯିହୂଦୀମାନଙ୍କ ପାଖକୁ ଯିବା କଥାରେ
ଆମ୍ଭେମାନେ ରାଜି ଅଛୁ। ମାତ୍ର ଆମ୍ଭେମାନେ ଯିହୂଦୀମାନଙ୍କ
ପାଖକୁ ଯିବୁ।" ୧୦ସେମାନେ ଆମ୍ଭକୁ ଗୋଟିଏ କଥା
କହିବା ଉପରେ ଜୋର ଦେଲେ ଯେ, ଆମ୍ଭେ ଯେପରି
ଅଭାବରେ ଥିବା ଗରିବ ଲୋକମାନଙ୍କୁ ସାହାଯ୍ୟ କରିବା
କଥା ମନେ ରଖୁ। ଏହି କାମଟି କରିବା ପାଇଁ ମୁଁ ଯେ
କେବଳ ଇଚ୍ଛା କରୁଥିଲି ତା ନୁହେଁ, ବରଂ ଏଥିପାଇଁ
ମୋର ଉଦ୍‌ଯୋଗ ମଧ୍ୟ ଥିଲା।

### ପାଉଲ ପିତରଙ୍କ ଭୁଲ ଦେଖାଇଦେଲେ

୧୧ପିତର ଆନ୍ତିୟଖିଆ ନଗରକୁ ଆସିଲେ। ସେ ସେଠାରେ
କିଛି ଭୁଲ କାମ କଲେ। ମୁଁ ତାଙ୍କ ବିରୋଧରେ
ସିଧାସଳଖ କହିଲି, କାରଣ ସେ ଦୋଷୀ ଥିଲେ। ଘଟଣାଟି
ଏହା: ୧୨ଯେତେବେଳେ ପିତର ପ୍ରଥମ ଆନ୍ତିୟଖିଆକୁ
ଆସିଥିଲେ, ସେ ଅଣଯିହୂଦୀଙ୍କ ସହିତ ଖିଆପିଆ କରୁଥିଲେ
ଓ ସମ୍ପର୍କ ରଖିଥିଲେ। ମାତ୍ର ଯେତେବେଳେ ଯାକୁବଙ୍କ
ନିକଟରୁ କେତେକ ଯିହୂଦୀଲୋକ ଆସିଲେ, ସେମାନେ
ଆସିଲା ପରେ ପିତର ଅଣଯିହୂଦୀଲୋକଙ୍କ ସହିତ ଖିଆପିଆ
ବନ୍ଦ କରିଦେଲେ, ଓ ସେମାନଙ୍କ ଠାରୁ ଦୂରରେ ରହିଲେ।
ସୁନ୍ନତ* ହେବା କଥାରେ ବିଶ୍ୱାସ କରୁଥିବା ଲୋକମାନଙ୍କ
ଭୟରେ ପିତର ଏପରି ଆଚରଣ କଲେ। ୧୩ଅତଏବ
ପିତର ଜଣେ କପଟାଚାରୀ ଭାବରେ ଛଳନା ପୂର୍ବକ
ଆଚରଣ କଲେ। ପିତରଙ୍କ ସହିତ ଅନ୍ୟ ଯିହୂଦୀ ବିଶ୍ୱାସୀମାନେ
ମଧ୍ୟ ଯୋଗ ଦେଲେ। ସେଠାରେ ସେମାନେ ମଧ୍ୟ କପଟାଚାରୀ
ଭାବରେ ଛଳନା ପୂର୍ବକ ଆଚରଣ କଲେ। ସେଠାରେ
ସେମାନେ ଯାହା କଲେ, ତାଦ୍ୱାରା ବର୍ଣ୍ଣବ୍ବା ମଧ୍ୟ ପ୍ରଭାବିତ
ହୋଇଗଲେ। ୧୪ଏହି ଯିହୂଦୀମାନେ ଯାହାଯାହା କଲେ, ମୁଁ
ଦେଖିଲି। ସେମାନେ ସୁସମାଚାରର ସତ୍ୟର ପାଳନ କରୁ ନ
ଥିଲେ। ତେଣୁ ସମସ୍ତେ(ଅନ୍ୟ ଯିହୂଦୀମାନେ) ଶୁଣି ପାରିବା
ଭଳି ମୁଁ ପିତରଙ୍କୁ କହିଲି: "ପିତର! ତୁମ୍ଭେ ଜଣେ
ଯିହୂଦୀ। କିନ୍ତୁ ତୁମ୍ଭେ ଜଣେ ଯିହୂଦୀଙ୍କ ଭଳି ଜୀବନ-ଯାପନ
କରୁ ନାହିଁ। ତୁମ୍ଭେ ଅଣଯିହୂଦୀଙ୍କ ଭଳି ଜୀବନଯାପନ
କରୁଛ। ଅତଏବ, ତୁମ୍ଭେ ଅଣଯିହୂଦୀମାନଙ୍କୁ, ଯିହୂଦୀଲୋକଙ୍କ
ଭଳି ଜୀବନଯାପନ କରିବା ପାଇଁ କିପରି ବାଧ୍ୟ କରୁଛ?"
୧୫ଆମ୍ଭେମାନେ ଯିହୂଦୀ ରୂପେ ଜନ୍ମ ହୋଇଛୁ, ଏବଂ
ଆମ୍ଭେମାନେ ପାପୀ ଅଣଯିହୂଦୀମାନଙ୍କ ପରି ନୋହୁଁ। ୧୬ଆମ୍ଭେ
ଜାଣୁ ଯେ ନିୟମପାଳନ ଦ୍ୱାରା କେହି ପରମେଶ୍ୱରଙ୍କ

---

**ସୁନ୍ନତ** ଯିହୂଦୀମାନଙ୍କ ପରମେଶ୍ୱରଙ୍କ ସହିତ ହୋଇଥିବା ଚୁକ୍ତିର ଚିହ୍ନ (ଲିଙ୍ଗାଗ୍ର ଚର୍ମ ଛେଦନ)। ଆଦିପୁସ୍ତକ ୧୭:୯-୧୪

ନକଟରେ ଧାର୍ମିକ ହୁଏ ନାହିଁ। ମାତ୍ର ଯୀଶୁ ଖ୍ରୀଷ୍ଟଙ୍କଠାରେ
ବଶ୍ୱାସ କରବା ଦ୍ୱାରା ଜଣେ ପରମେଶ୍ୱରଙ୍କ ନକଟରେ
ଧାର୍ମିକ ହୁଏ। ସେଥିପାଇଁ ଆମ୍ଭେ ପରମେଶ୍ୱରଙ୍କ ନକଟରେ
ଧାର୍ମିକ ହେବା ପାଇଁ ଯୀଶୁଖ୍ରୀଷ୍ଟଙ୍କଠାରେ ବଶ୍ୱାସ କରଅଛୁ।
ଆମ୍ଭେ ନୟିମ ପାଳନ ପାଇଁ ନୁହେଁ ବରଂ ଯୀଶୁଖ୍ରୀଷ୍ଟଙ୍କଠାରେ
ବଶ୍ୱାସ ରଖିଥିବାରୁ ପରମେଶ୍ୱରଙ୍କ ପ୍ରତି ଧାର୍ମିକ ହୋଇଛୁ।
କେବଳ ବ୍ୟବସ୍ଥା ପାଳନ ଦ୍ୱାରା କୌଣସି ଲୋକ ଧାର୍ମିକ
ହୋଇପାରେ ନାହିଁ।

୧୭ଆମ୍ଭେ ଯିହୂଦୀମାନେ ପରମେଶ୍ୱରଙ୍କ ପ୍ରତି ଧାର୍ମିକ
ହେବା ପାଇଁ ଯୀଶୁଙ୍କ ପାଖକୁ ଯାଇଛୁ। ଅତଏବ ଆମ୍ଭେ
ମଧ୍ୟ ପାପୀ। ଏହାର ଅର୍ଥ କ'ଣ ଏହା ଯେ ଯୀଶୁ ଆମ୍ଭକୁ
ପାପୀ କରୁଛନ୍ତି? ନା। ୧୮କନ୍ତୁ ଯେଉଁ ବଷୟଗୁଡ଼କୁ ଆମ୍ଭେ
ଛାଡ଼ ଦେଇ ସାରଛୁ, ମୁଁ ଯଦ ସେହଗୁଡ଼କର ପୁନଃ ପ୍ରଚାର
ଆରମ୍ଭ କରେ, ତାହେଲେ ଏହା ଭୁଲ ହେବ। ୧୯ମୁଁ
ବ୍ୟବସ୍ଥା ପାଇଁ ଆଉ ବଞ୍ଚିରହ ନାହିଁ। କାରଣ ବ୍ୟବସ୍ଥା
ମୋର ମୃତ୍ୟୁ ଘଟାଇଲା। କନ୍ତୁ ମୁଁ ପରମେଶ୍ୱରଙ୍କ ପାଇଁ
ଜୀବନଯାପନ କରୁଛ, ମୁଁ ଖ୍ରୀଷ୍ଟଙ୍କ ସହତ କ୍ରୁଶ ଉପରେ
ମୃତ୍ୟୁଭୋଗ କରସାରଛ। ୨୦ଅତଏବ ଏବେ ମୁଁ ନଜେ
ଜୀବତ ନାହିଁ, ମାତ୍ର ମୋ' ମଧ୍ୟରେ ଯୀଶୁ ଖ୍ରୀଷ୍ଟ ଜୀବତ
ଅଛନ୍ତି। ମୋର ଶରୀର ମଧ୍ୟରେ ମୁଁ ଏ ପର୍ଯ୍ୟନ୍ତ ଜୀବତ
ଅଛ ଓ ପରମେଶ୍ୱରଙ୍କ ପୁତ୍ରଙ୍କଠାରେ ମୋର ବଶ୍ୱାସ ପାଇଁ
ମୁଁ ଜୀବତ ଅଛ। ସେ ମୋତେ ଭଲ ପାଇଲେ। ସେ
ମୋ ଉଦ୍ଧାର ପାଇଁ ନଜକୁ ସମର୍ପିତ କର ଦେଇଛନ୍ତି।
୨୧ଏହ ଅନୁଗ୍ରହ ହେଉଛ ପରମେଶ୍ୱରଙ୍କର। ଏହା ମୋ
ପାଇଁ ବହୁତ ମହତ୍ତ୍ୱପୂର୍ଣ୍ଣ ଅଟେ। କାରଣ ଯଦ ନୟିମ
ଦ୍ୱାରା ଧାର୍ମିକ ଗଣିତ ହେବା ସମ୍ଭବ ହୋଇଥାଆନ୍ତା,
ତାହେଲେ ଖ୍ରୀଷ୍ଟ ବନା କାରଣରେ ନଜର ପ୍ରାଣ ବସର୍ଜନ
କର ନ ଥାଆନ୍ତେ।

## ପରମେଶ୍ୱରଙ୍କ ଆଶୀର୍ବାଦ ବଶ୍ୱାସ ଦ୍ୱାରା ମିଳେ

୩ ହେ ଗାଲାତୀୟ ଲୋକେ! ଯୀଶୁଖ୍ରୀଷ୍ଟଙ୍କୁ କପର
ଭାବରେ କ୍ରୁଶ ଉପରେ ମୃତ୍ୟୁ ଦଆଗଲା, ତାହା
ତୁମ୍ଭକୁ ସ୍ପଷ୍ଟ ଭାବରେ କୁହା ଯାଇଥିଲା। କନ୍ତୁ ତୁମ୍ଭେମାନେ
ମୂର୍ଖ। ତୁମ୍ଭେ କାହାର ଛଳନାରେ ପଡ଼ଗଲ। ୨ତୁମ୍ଭେମାନେ
ମୋତେ ଗୋଟିଏ କଥା କୁହ: ତୁମ୍ଭେମାନେ ପବତ୍ର ଆତ୍ମାଙ୍କୁ
କପର ଭାବେ ଗ୍ରହଣ(ସ୍ୱୀକାର) କରଥିଲ? କ'ଣ ତୁମ୍ଭେମାନେ
ବ୍ୟବସ୍ଥା ପାଳନ କର ଆତ୍ମାଙ୍କୁ ପାଇଥିଲ? ନା। ତୁମ୍ଭେମାନେ
ସୁସମାଚାର ଶୁଣି ଓ ବଶ୍ୱାସ କର ପବତ୍ର ଆତ୍ମାଙ୍କୁ ସ୍ୱୀକାର
କରଥିଲ। ୩ତୁମ୍ଭେମାନେ ଆତ୍ମାଙ୍କ ସହତ "ତୁମ୍ଭମାନଙ୍କର
ନୂଆ ଜୀବନ ଆରମ୍ଭ କଲ।" ଏବେ କ'ଣ ତୁମ୍ଭେମାନେ
ଭାବୁଛ ଯେ ତୁମ୍ଭେମାନେ ନଜର ଶକ୍ତ ବଳରେ ଶେଷ
ପର୍ଯ୍ୟନ୍ତ ଚଳ ପାରବ? ତୁମ୍ଭେମାନେ କ'ଣ ଏତେ ବୋକା?
୪ତୁମ୍ଭେମାନେ ଅନେକ କଥା ଅନୁଭବ କରଛ। କଣ ସେ
ସବୁ ବଫଳ ହୋଇଗଲା? ନା। ୫ସେ ସବୁ ବଫଳ ହୋଇ
ନାହିଁ। ତୁମ୍ଭେମାନେ ବ୍ୟବସ୍ଥା ପାଳନ କର ବୋଲ କ'ଣ
ପରମେଶ୍ୱର ତୁମ୍ଭମାନଙ୍କୁ ପବତ୍ରଆତ୍ମା ପ୍ରଦାନ କରଛନ୍ତି?
ନା। ତୁମ୍ଭମାନଙ୍କ ମଧ୍ୟରେ ପରମେଶ୍ୱର ଯେଉଁ ଆଶ୍ଚର୍ଯ୍ୟ
କର୍ମମାନ କରଛନ୍ତି, ତାହା କଣ ବ୍ୟବସ୍ଥା ପାଳନ ପାଇଁ
କରାଯାଇଥିଲା? ନା! ବରଂ ତୁମ୍ଭେମାନେ ସୁସମାଚାର ଶୁଣି
ସେଗୁଡ଼କରେ ବଶ୍ୱାସ କଲ ବୋଲ, ପରମେଶ୍ୱର ତୁମ୍ଭମାନଙ୍କୁ
ତାଙ୍କର ଆତ୍ମା ପ୍ରଦାନ କର ତୁମ୍ଭମାନଙ୍କ ମଧ୍ୟରେ ଆଶ୍ଚର୍ଯ୍ୟଜନକ
କର୍ମମାନ କରଛନ୍ତି।

୬ଅବ୍ରହାମଙ୍କ ବଷୟରେ ଶାସ୍ତ୍ର ମଧ୍ୟ ଏହ କଥା କୁହେ:
"ଅବ୍ରହାମ ପରମେଶ୍ୱରଙ୍କୁ ବଶ୍ୱାସ କଲେ ଓ ପରମେଶ୍ୱର
ତାହାଙ୍କ ନଜ ସହତ ଅବ୍ରହାମଙ୍କୁ ଧାର୍ମିକ କରବା ପାଇଁ
ତାହାଙ୍କର ବଶ୍ୱାସକୁ ଗ୍ରହଣ କଲେ।"* ୭ଅତଏବ ତୁମ୍ଭେମାନେ
ଜାଣି ରଖ ଯେ, ବଶ୍ୱାସ କରୁଥିବା ଲୋକେ ଅବ୍ରାହମଙ୍କର
ପ୍ରକୃତ ସନ୍ତାନ। ୮ଶାସ୍ତ୍ରଗୁଡ଼କ ଏହା ମଧ୍ୟ କହେ ଯେ,
ଭବଷ୍ୟତରେ କ'ଣ ହେବ? ଲେଖାଅଛ, ପରମେଶ୍ୱର
ଅଣଯିହୂଦୀମାନଙ୍କୁ ମଧ୍ୟ ସେମାନଙ୍କର ବଶ୍ୱାସ ପାଇଁ ଧାର୍ମିକ
କରବେ। ସୁସମାଚାର ଅବ୍ରାହମଙ୍କୁ ଆଗରୁ କୁହାଯାଇଥିଲା।
ଶାସ୍ତ୍ର କହେ: "ପରମେଶ୍ୱର ପୃଥିବୀର ସମସ୍ତ ଲୋକଙ୍କୁ
ଆଶୀର୍ବାଦ କରବା ପାଇଁ ଅବ୍ରାହାମଙ୍କୁ ବ୍ୟବହାର କରବେ।"*

୯ଅବ୍ରହାମ ଏହାକୁ ବଶ୍ୱାସ କଲେ ଓ ସେଥିପାଇଁ ସେ
ଆଶୀର୍ବାଦ ଲାଭ କଲେ। ସେହପର ଯେଉଁମାନେ ବଶ୍ୱାସ
କରନ୍ତି, ସେମାନେ ଅବ୍ରହାମଙ୍କ ପର ଆଶୀର୍ବାଦ ପାଆନ୍ତି।
୧୦କନ୍ତୁ ଯେଉଁମାନେ ବ୍ୟବସ୍ଥା ପାଳନ ଉପରେ ନର୍ଭର
କରନ୍ତି, ସେମାନେ ଅଭିଶାପଗ୍ରସ୍ତ। କାରଣ, ଯେପର
ବ୍ୟବସ୍ଥାମାନଙ୍କରେ ଲେଖାଅଛ: "ଯାହା ବ୍ୟବସ୍ଥା* ରେ
ଲେଖାଅଛ ସେ ସବୁକୁ ପୂର୍ଣ୍ଣଭାବରେ ପାଳନ କରବା
ଉଚତ, ନହେଲେ ସେ ଲୋକ ଅଭିଶାପଗ୍ରସ୍ତ ହେବ।"*
୧୧ଏଥିରୁ ସ୍ପଷ୍ଟ ଯେ, କୌଣସି ଲୋକ ବ୍ୟବସ୍ଥା ପାଳନ
ଦ୍ୱାରା ପରମେଶ୍ୱରଙ୍କଠାରେ ଧାର୍ମିକ ବୋଲ ପ୍ରମାଣିତ ହୁଏ
ନାହିଁ। କାରଣ ଶାସ୍ତ୍ର କହେ: "ବଶ୍ୱାସକୁ ଆଧାର କର
ଧାର୍ମିକ ବ୍ୟକ୍ତ ସଦାକାଳ ପାଇଁ ଜୀବତ ରହବ।"* ୧୨କନ୍ତୁ
ବ୍ୟବସ୍ଥା ବଶ୍ୱାସ ଉପରେ ଆଧାରତ ନୁହେଁ, ପ୍ରତିବଦଳରେ
ଶାସ୍ତ୍ର କୁହେ: "ଯେଉଁ ଲୋକ ବ୍ୟବସ୍ଥାର ବଧିଗୁଡ଼କ
ପାଳନ କରେ, ସେ ସେଗୁଡ଼କ ମାଧ୍ୟମରେ ବଞ୍ଚିବ।"*
୧୩ଖ୍ରୀଷ୍ଟ ଆମ୍ଭ ନମନ୍ତେ ଅଭିଶାପ ନଜେ ଗ୍ରହଣ କଲେ
ଏବଂ ଆମ୍ଭକୁ ବ୍ୟବସ୍ଥାର ଅଭିଶାପରୁ ମୁକ୍ତ କଲେ। ଶାସ୍ତ୍ର
କୁହେ: "ଯେଉଁ ଲୋକର ଶରୀରକୁ ଗଛରେ ଟାଙ୍ଗି ଦଆ
ଯାଏ,* ସେ ଲୋକଟି ଅଭିଶାପଗ୍ରସ୍ତ।"* ୧୪ଖ୍ରୀଷ୍ଟ ଆମ୍ଭକୁ

---

**"ଅବ୍ରାହାମ ... କଲେ।"** ଆଦପୁସ୍ତକ ୧୫:୬

**"ପରମେଶ୍ୱର ... ବ୍ୟବହାର କରବେ।"** ଆଦପୁସ୍ତକ ୧୨:୩

**ବ୍ୟବସ୍ଥା** ଏକ ନୀତିନୟିମ ଯାହା ମୋଶାଙ୍କ ଦ୍ୱାରା ପରମେଶ୍ୱର ଯିହୂଦୀମାନଙ୍କୁ ଦେଇଥିଲେ।

**"ଯାହା ବ୍ୟବସ୍ଥା ... ହେବ।"** ଦ୍ୱିତୀୟ ବବରଣ ୨୭:୨୬

**"ବଶ୍ୱାସକୁ ... ରହବ।"** ହବକୁକ୍ ୨:୪

**"ଯେଉଁ ଲୋକ ... ବଞ୍ଚିବ।"** ଲେବୀୟ ୧୮:୫

**ଗଛରେ ଟାଙ୍ଗି ... ଯାଏ** ଦ୍ୱିତୀୟ ବବରଣ ୨୧:୨୨-୨୩ କୁହେ ଦୋଷୀଲୋକକୁ ମାର ଅପମାନ ଦେବା ଉଦ୍ଦେଶ୍ୟରେ ଗଛରେ ଟାଙ୍ଗି ଦଆଯାଉଥିଲା।

**"ଯେଉଁ ... ଅଭିଶାପଗ୍ରସ୍ତ"** ଦ୍ୱିତୀୟ ବବରଣ ୨୧:୨୩

ମୁକ୍ତ କରିବାର ଉଦ୍ଦେଶ୍ୟ ଥିଲା, ଯେପରି ଯେଉଁ ଆଶୀର୍ବାଦ
ସବୁ ଅବ୍ରହାମଙ୍କୁ ପ୍ରତିଜ୍ଞା କରାଯାଇଥିଲା, ତାହା ଖ୍ରୀଷ୍ଟ
ଯୀଶୁଙ୍କ ଦ୍ୱାରା ଅଣଯିହୂଦୀମାନଙ୍କୁ ପ୍ରଦାନ କରାଯାଇପାରିବ
ଏବଂ ଯେପରି ବିଶ୍ୱାସ ଦ୍ୱାରା ଆମ୍ଭେ ସମସ୍ତେ ସେହି
ପ୍ରତିଜ୍ଞା ଦିଆଯାଇଥିବା ଆତ୍ମା ପାଇପାରିବୁ।

## ବ୍ୟବସ୍ଥା ଓ ପ୍ରତିଜ୍ଞା

୧୫ଭାଇ(ଓ ଭଉଣୀ)ମାନେ! ମୁଁ ଗୋଟିଏ ଉଦାହରଣ
ଦେଉଛି: ଜଣେ ଲୋକ ଅନ୍ୟ ଜଣଙ୍କ ସହିତ କରିଥିବା
ଚୁକ୍ତି ବିଷୟରେ ଭାବ। ସେହି ଚୁକ୍ତିଟି ଅନୁମୋଦିତ
ହୋଇଗଲା ପରେ, ସେଥିରେ କୌଣସି ପରିବର୍ତ୍ତନ ହୋଇପାରେ
ନାହିଁ। ତାହାକୁ ଅଣଦେଖା କରି ରଖିହୁଏ ନାହିଁ, ଓ ସେଥିରେ
ଯୋଡ଼ା ଯାଇପାରେ ନାହିଁ। ୧୬ସେ ଚୁକ୍ତିକୁ ମଧ୍ୟ ଏଡ଼ାଇ
ଦେଇ ହୁଏନାହିଁ। ସେହିପରି ପରମେଶ୍ୱର ଅବ୍ରହାମ "ଓ
ତାହାଙ୍କ ସନ୍ତାନଙ୍କୁ" ପ୍ରତିଶ୍ରୁତି ଦେଇଥିଲେ। କିନ୍ତୁ "ସେ
ତାହାଙ୍କର ସମସ୍ତ ବଂଶଧର" ପାଇଁ ଏହି ପ୍ରତିଜ୍ଞା ଦେଇ ନ
ଥିଲେ। ତା'ର ଅର୍ଥ ଜଣେ ମାତ୍ର ବ୍ୟକ୍ତିଙ୍କୁ ପ୍ରତିଜ୍ଞା
କରାଯାଇଥିଲା ଏବଂ ସେହି ବ୍ୟକ୍ତି ଜଣକ ହେଉଛନ୍ତି ଖ୍ରୀଷ୍ଟ।
୧୭ମୋ କହିବାର ଅର୍ଥ ଯେ, ଯେଉଁ ଚୁକ୍ତିଟିକୁ ପରମେଶ୍ୱର
ପୂର୍ବରୁ ଅନୁମୋଦନ କରିସାରିଥିଲେ, ତାହା ଚାରିଶହ ତିରିଶବର୍ଷ
ପରେ ଆସିଥିବା ବ୍ୟବସ୍ଥା ଦ୍ୱାରା ମୂଲ୍ୟହୀନ ହୋଇ
ଗଲାନାହିଁ। ସେହି ବ୍ୟବସ୍ଥା ମଧ୍ୟ ସେହି ଚୁକ୍ତିର ପ୍ରଭାବକୁ
ହୀନ କରି ପାରିଲା ନାହିଁ। ୧୮ଯଦି ଉତ୍ତରାଧିକାର "ବ୍ୟବସ୍ଥା
ଆଧାରିତ" ଅଟେ, ତେବେ ତାହା 'ପ୍ରତିଶ୍ରୁତି ଆଧାରିତ'
ହୋଇ ପାରିବ ନାହିଁ। କିନ୍ତୁ ପରମେଶ୍ୱର ଆପଣା ପ୍ରତିଶ୍ରୁତି
ମାଧ୍ୟମରେ ମୁକ୍ତ ଭାବରେ ଅବ୍ରହାମଙ୍କୁ ତାଙ୍କର ଆଶୀର୍ବାଦ
ପ୍ରଦାନ କରିଥିଲେ।

୧୯ତା'ହେଲେ ବ୍ୟବସ୍ଥାର ପ୍ରୟୋଜନ କ'ଣ? ଲୋକମାନଙ୍କ
ଭୁଲ କାମଗୁଡ଼ିକୁ ଦେଖାଇବା ଲାଗି ବ୍ୟବସ୍ଥାକୁ ପ୍ରତିଜ୍ଞା
ସହିତ ଯୋଗ କରାଯାଇଥିଲା। ଅବ୍ରହାମଙ୍କ ବିଶେଷ ସନ୍ତାନଙ୍କ
ଆସିବା ପର୍ଯ୍ୟନ୍ତ ବ୍ୟବସ୍ଥା ଜାରି ରହିବାର ଥିଲା। ପରମେଶ୍ୱରଙ୍କ
ପ୍ରତିଶ୍ରୁତି ଏହି ସନ୍ତାନଙ୍କ ସମ୍ବନ୍ଧରେ ଥିଲା। ବ୍ୟବସ୍ଥାଗୁଡ଼ିକ
ସ୍ୱର୍ଗଦୂତମାନଙ୍କ ଜରିଆରେ ଦିଆଯାଇଥିଲା। ସ୍ୱର୍ଗଦୂତମାନେ
ମୋଶାଙ୍କ ମଧ୍ୟସ୍ଥତାରେ ମନୁଷ୍ୟମାନଙ୍କୁ ଦେଲେ। ୨୦ଗୋଟିଏ
ପକ୍ଷ ଥିଲେ, ମଧ୍ୟସ୍ଥତା ଦରକାର ହୁଏ ନାହିଁ ଓ ପରମେଶ୍ୱର
ହେଉଛନ୍ତି ମାତ୍ର ଜଣେ।

## ମୋଶାଙ୍କ ନିୟମର ପ୍ରୟୋଜନ

୨୧ଏହାର ଅର୍ଥ କଣ ଏହା ଯେ ବ୍ୟବସ୍ଥା ପରମେଶ୍ୱରଙ୍କ
ପ୍ରତିଜ୍ଞାଗୁଡ଼ିକର ବିରୋଧୀ ଅଟେ? ଲୋକଙ୍କ ଭିତରେ
ଜୀବନ ଭଳି ବ୍ୟବସ୍ଥା ଯଦି ଦିଆଯାଇପାରିଥାଆନ୍ତା, ତେବେ
ସେହି ବ୍ୟବସ୍ଥା ଦ୍ୱାରା ପରମେଶ୍ୱରଙ୍କ ସହିତ ଆମ୍ଭେ
ପ୍ରକୃତରେ ଧାର୍ମିକ ହୋଇ ପାରିଥାଆନ୍ତୁ। ୨୨କିନ୍ତୁ ଏହା
ସତ୍ୟ ନୁହେଁ। ଶାସ୍ତ୍ର ଘୋଷଣା କରେ ଯେ, ସବୁ ଲୋକ
ପାପର ଅଧୀନ ଅଟନ୍ତି। ଏଭଳି ଘୋଷଣାର ଉଦ୍ଦେଶ୍ୟ
ହେଲା ଯେ, ବିଶ୍ୱାସ ମାଧ୍ୟମରେ ଲୋକମାନଙ୍କୁ ପ୍ରତିଶ୍ରୁତି
ଦିଆଯିବ। ଯେଉଁମାନେ ଯୀଶୁଖ୍ରୀଷ୍ଟଙ୍କୁ ବିଶ୍ୱାସ କରନ୍ତି, ସେହି
ଲୋକମାନଙ୍କୁ ପ୍ରତିଶ୍ରୁତି ଦିଆଯିବ।

୨୩ଏହି ବିଶ୍ୱାସ ପ୍ରକାଶ ହେବା ପର୍ଯ୍ୟନ୍ତ ଆମ୍ଭେ ବ୍ୟବସ୍ଥା
ଦ୍ୱାରା ବନ୍ଦୀ ଓ ପରିଚାଳିତ ହୋଇ ଥିଲୁ। ଆମ୍ଭର
ସେତେବେଳେ କୌଣସି ସ୍ୱାଧୀନତା ନ ଥିଲା। ୨୪ଅତଏବ,
ଖ୍ରୀଷ୍ଟଙ୍କ ଆଗମନ ପୂର୍ବରୁ ବ୍ୟବସ୍ଥା ଆମ୍ଭର ସ୍ୱାମୀ ଥିଲା।
ତା'ପରେ ଆମ୍ଭେ ବିଶ୍ୱାସ ଦ୍ୱାରା ପରମେଶ୍ୱରଙ୍କ ସହିତ
ଧାର୍ମିକ ହେଲୁ। ୨୫ଏବେ ବିଶ୍ୱାସର ରାସ୍ତା ଉପସ୍ଥିତ
ହୋଇଅଛି ଓ ଆମ୍ଭେ ଏଣିକି ବ୍ୟବସ୍ଥାର ଅଧୀନ ନୋହୁଁ।

୨୬ଖ୍ରୀଷ୍ଟଯୀଶୁଙ୍କ ଠାରେ ବିଶ୍ୱାସ ଦ୍ୱାରା ତୁମ୍ଭେ ସମସ୍ତେ
ପରମେଶ୍ୱରଙ୍କ ସନ୍ତାନଗଣ ଅଟ। ୨୭ତୁମ୍ଭେ ଯେତେଲୋକ
ଖ୍ରୀଷ୍ଟଙ୍କଠାରେ ବାପ୍ତିସ୍ମ ଗ୍ରହଣ କରିଛ, ତୁମ୍ଭେମାନେ ତାହାଙ୍କୁ
ବସ୍ତ୍ରରୂପେ ପରିଧାନ କରିଛ। ୨୮ଅତଏବ ଖ୍ରୀଷ୍ଟଙ୍କଠାରେ
ତୁମ୍ଭେ ସମସ୍ତେ ଏକ ହୋଇଥିବା କାରଣରୁ ଯିହୂଦୀ ଓ
ଗ୍ରୀକ୍, ଦାସ ଓ ସ୍ୱାଧୀନଲୋକ, ପୁରୁଷ ଓ ମହିଳା କାହାରି
ଭିତରେ କୌଣସି ଭେଦ ରହିଲା ନାହିଁ। ୨୯ଯଦି ତୁମ୍ଭେମାନେ
ସମସ୍ତେ ଖ୍ରୀଷ୍ଟଙ୍କର ଅଟ, ତେବେ ସ୍ୱଭାବତଃ ତୁମ୍ଭେ
ଅବ୍ରାହମଙ୍କ ବଂଶଜ ମଧ୍ୟ ଅଟ, ଓ ପରମେଶ୍ୱର ଅବ୍ରହାମଙ୍କୁ
ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ସେହି ପ୍ରତିଶ୍ରୁତିର ମଧ୍ୟ
ତୁମ୍ଭେ ଉତ୍ତରାଧିକାରୀ ଅଟ।

୪ ମୁଁ କହୁଛି ଯେ, ଯେ ପର୍ଯ୍ୟନ୍ତ ଜଣେ ଉତ୍ତରାଧିକାରୀ
ଅବସ୍ଥାରେ ଅଛି, ସେ ସମସ୍ତ ସମ୍ପତ୍ତିର ମାଲିକ
ହୋଇ ଥିଲେ ମଧ୍ୟ, ଜଣେ ଦାସ ଠାରୁ ବେଶି ଭିନ୍ନ
ନୁହେଁ। ୨କାରଣ, ସେହି ଶିଶୁ ଆପଣ ପିତାଙ୍କ ଦ୍ୱାରା
ନିର୍ଦ୍ଧିଷ୍ଟ କରାଯାଇଥିବା ସମୟ ପର୍ଯ୍ୟନ୍ତ, ଅଭିଭାବକ ଓ ତାର
ଯତ୍ନ ନ୍ୟସ୍ତ କରା ଯାଇଥିବା ବ୍ୟକ୍ତିମାନଙ୍କର ଅଧୀନରେ
ଥାଏ। ୩ଠିକ୍ ସେହିପରି ଆମ୍ଭେମାନେ ଶିଶୁଥିବା ସମୟରେ,
ଆମ୍ଭେ ମଧ୍ୟ ସଂସାରର ଅନୁପଯୋଗୀ ନୀତିନିୟମଗୁଡ଼ିକର
ଦାସ ଥିଲୁ। ୪କିନ୍ତୁ ଉଚିତ ସମୟ ଉପସ୍ଥିତ ହେବାରୁ
ପରମେଶ୍ୱର ନିଜ ପୁତ୍ରଙ୍କୁ ପଠାଇଲେ। ସେ ଜଣେ
ସ୍ତ୍ରୀଙ୍କଠାରୁ ଜନ୍ମ ଗ୍ରହଣ କରିଥିଲେ, ଓ ବ୍ୟବସ୍ଥା ଅଧିନରେ
ଜୀବନଯାପନ କରୁଥିଲେ। ୫ବ୍ୟବସ୍ଥାର ଅଧୀନରେ ଥିବା
ଲୋକମାନଙ୍କୁ ମୁକ୍ତ କରିବା ପାଇଁ ଓ ଆମ୍ଭମାନଙ୍କୁ ପରମେଶ୍ୱରଙ୍କ
ସନ୍ତାନ ରୂପେ ଗଢ଼ି ତୋଳିବା ନିମନ୍ତେ ସେ ଏପରି
କରିଥିଲେ।

୬ତୁମ୍ଭେମାନେ ପରମେଶ୍ୱରଙ୍କ ସନ୍ତାନ, ସେଥିପାଇଁ ସେ
ତୁମ୍ଭମାନଙ୍କ ହୃଦୟ ଭିତରେ ନିଜ ପୁତ୍ରଙ୍କ ଆତ୍ମାକୁ ସ୍ଥାପିତ
କଲେ। ସେହି ଆତ୍ମା "ଆବ୍ବା, ପ୍ରିୟ ପିତା" ବୋଲି
ଡାକନ୍ତି। ୭ଅତଏବ, ତୁମ୍ଭେମାନେ ପୂର୍ବଭଳି ଏବେ ଆଉ
ଦାସ ନୁହଁ। ତୁମ୍ଭେ ପରମେଶ୍ୱରଙ୍କ ପୁତ୍ର ଅଟ। ତୁମ୍ଭେ
ତାହାଙ୍କର ସନ୍ତାନ ହୋଇଥିବାରୁ ସେ ତୁମ୍ଭକୁ ଉତ୍ତରାଧିକାରୀ
ଭାବେ ସବୁ ପ୍ରତିଜ୍ଞାତ ବିଷୟ ପ୍ରଦାନ କରିବେ।

## ଗାଲାତୀୟ ଖ୍ରୀଷ୍ଟିୟାନମାନଙ୍କ ପ୍ରତି ପାଉଲଙ୍କ ପ୍ରେମ

୮ପୂର୍ବରୁ ତୁମ୍ଭେ ପରମେଶ୍ୱରଙ୍କୁ ଜାଣି ନ ଥିଲ।
ତୁମ୍ଭେମାନେ ମିଥ୍ୟା ଦେବତାମାନଙ୍କର ଦାସ ଥିଲ। ୯କିନ୍ତୁ
ଏବେ ତୁମ୍ଭେମାନେ ପ୍ରକୃତ ପରମେଶ୍ୱରଙ୍କ ପରିଚୟ ପାଇଅଛ।

ପ୍ରକୃତରେ ପରମେଶ୍ୱରଙ୍କ ଦ୍ୱାରା ପରିଚୟ ପାଇଅଛ। ତେବେ
ତୁମ୍ଭେମାନେ ପୂର୍ବରୁ ପାଳନ କରୁଥିବା ଦୁର୍ବଳ ଓ ଅଦରକାରୀ
ନିୟମଗୁଡ଼ିକ ପ୍ରତି କାହିଁକି ପୁଣି ଆକୃଷ୍ଟ ହେଉଛ?
ତୁମ୍ଭେମାନେ କ'ଣ ପୁଣି ଦାସ ହେବାକୁ ଇଚ୍ଛା କର?
୧୦ତୁମ୍ଭେମାନେ ଏବେ ମଧ୍ୟ ବିଶେଷ ଦିନ, ମାସ, ଋତୁ ଓ
ବର୍ଷଗୁଡ଼ିକ ବିଷୟକ ନୀତି ନିୟମର ଶିକ୍ଷାଗୁଡ଼ିକୁ ପାଳନ
କରୁଛ। ୧୧ତୁମ୍ଭମାନଙ୍କ ପାଇଁ ଯେଉଁ ସବୁ ଚେଷ୍ଟା ଓ କାମ
କରିଛି, ତାହା କାଳେ ବିଫଳ ହୁଏ, ଏଥିପାଇଁ ମୁଁ ଡରୁଛି।
୧୨ଭାଇ(ଓ ଭଉଣୀ)ମାନେ! ମୁଁ ତୁମ୍ଭମାନଙ୍କ ପରି ଥିଲି,
ଅତଏବ ତୁମ୍ଭେମାନେ ବର୍ତ୍ତମାନ ମୋ ପରି ହୁଅ। ୧୩ତୁମ୍ଭେମାନେ
ମୋ ପାଇଁ ଖୁବ୍ ଭଲ ଥିଲ। ତୁମ୍ଭେମାନେ ମନେ ପକାଅ,
ମୁଁ ପ୍ରଥମ ଥର ତୁମ୍ଭମାନଙ୍କ ପାଖକୁ ଆସି ଥିଲି। ଯେହେତୁ
ମୁଁ ଅସୁସ୍ଥ ଥିଲି। ସେ ସମୟରେ ମୁଁ ତୁମ୍ଭମାନଙ୍କ
ନିକଟରେ ସୁସମାଚାର ପ୍ରଚାର କରିଥିଲି। ୧୪ମୋର ଅସୁସ୍ଥତା
ତୁମ୍ଭମାନଙ୍କ ପାଇଁ ଭାରସ୍ୱରୂପ ଥିଲା। କିନ୍ତୁ ତୁମ୍ଭେମାନେ
ମୋତେ ଘୃଣା କରି ନ ଥିଲ। ତୁମ୍ଭେମାନେ ମୋତେ ଛାଡ଼ି
ଯିବାକୁ କହି ନ ଥିଲ। ପରମେଶ୍ୱରଙ୍କ ଠାରୁ ସ୍ୱର୍ଗଦୂତ
ଆସିବା ଭଳି ମୋତେ ତୁମ୍ଭେମାନେ ସ୍ୱାଗତ ଜଣାଇ ଥିଲ।
ତୁମ୍ଭେମାନେ ସ୍ୱୟଂ ଖ୍ରୀଷ୍ଟଯୀଶୁ ଭଳି ମୋତେ ଗ୍ରହଣ
କରିଥିଲ। ୧୫ତୁମ୍ଭେମାନେ ସେତେବେଳେ ଅତ୍ୟଧିକ ଆନନ୍ଦିତ
ଥିଲ। ଏବେ ସେ ଆନନ୍ଦ କୁଆଡ଼େ ଗଲା? ମୋର ମନେ
ପଡ଼େ, ତୁମ୍ଭେମାନେ ତୁମ୍ଭମାନଙ୍କର ସାଧ୍ୟମତେ ମୋତେ
ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲ। ସମ୍ଭବ ହୋଇ
ଥିଲେ, ତୁମ୍ଭେମାନେ ନିଜର ଆଖି ମଧ୍ୟ ତାଡ଼ି ମୋତେ
ପ୍ରଦାନ କରି ଦେଇ ଥାଆନ୍ତ। ୧୬କିନ୍ତୁ ଏବେ କ'ଣ
ତୁମ୍ଭମାନଙ୍କୁ ସତ୍ୟ କହୁଥିବାରୁ ମୁଁ ତୁମ୍ଭମାନଙ୍କ ଶତ୍ରୁ
ହୋଇଗଲି?

୧୭ଭଣ୍ଡ ଶିକ୍ଷକମାନେ ତୁମ୍ଭମାନଙ୍କୁ ବହୁତ ଶ୍ରଦ୍ଧା ଦେଖାଉଛନ୍ତି,
ମାତ୍ର ତାହା ଠିକ୍ ଉଦ୍ଦେଶ୍ୟରେ ନୁହେଁ। କାରଣ, ତାହାଦ୍ୱାରା
ସେମାନେ ତୁମ୍ଭମାନଙ୍କୁ ନିୟନ୍ତ୍ରଣ କରି ଆମ୍ଭ ଠାରୁ ଦୂରେଇ
ନେବାକୁ ଇଚ୍ଛା କରନ୍ତି ଓ ସେମାନଙ୍କ ଛଡ଼ା ଆଉ କାହାକୁ
ଅନୁସରଣ ନ କରିବା ପାଇଁ ପ୍ରବର୍ତ୍ତାଉଛନ୍ତି। ୧୮କିନ୍ତୁ
ଉଦ୍ଦେଶ୍ୟ ଯଦି ଭଲ ହୋଇଥାଏ, ତେବେ କେବଳ ମୁଁ
ତୁମ୍ଭମାନଙ୍କ ସଙ୍ଗରେ ଥିବାବେଳେ ନୁହେଁ, ମାତ୍ର ସବୁବେଳେ
ସେଥିରେ ଉଦ୍‌ଯୋଗୀ ହେବା ଉଚିତ। ୧୯ମୋ ପ୍ରିୟ
ସନ୍ତାନଗଣ! ମୁଁ ତୁମ୍ଭମାନଙ୍କ ପାଇଁ ପୁଣି ଥରେ ଜଣେ ମା'
ପରି ପ୍ରସବବେଦନା ଅନୁଭବ କରୁଛି ଓ ତୁମ୍ଭେମାନେ ଯେ
ପର୍ଯ୍ୟନ୍ତ ପ୍ରକୃତରେ ଖ୍ରୀଷ୍ଟଯୀଶୁଙ୍କ ଭଳି ନ ହୋଇଛ, ସେ
ପର୍ଯ୍ୟନ୍ତ ମୁଁ ଏପ୍ରକାର କଷ୍ଟ ଅନୁଭବ କରୁଥିବି। ୨୦ମୋର
ଇଚ୍ଛା ହେଉଛି ମୁଁ ବର୍ତ୍ତମାନ ସେଠାରେ ତୁମ୍ଭମାନଙ୍କ
ପାଖରେ ଥାଆନ୍ତି କି, ଯଦ୍ଦ୍ୱାରା ମୁଁ ତୁମ୍ଭମାନଙ୍କ ସହିତ ଭିନ୍ନ
ପ୍ରକାରେ କଥା ହୋଇପାରନ୍ତି। କାରଣ ତୁମ୍ଭମାନଙ୍କ ବିଷୟରେ
କ'ଣ କରାଯିବ, ମୁଁ କିଛି ଜାଣିପାରୁ ନାହିଁ।

## ସାରା ଓ ହାଗାରର ଉଦାହରଣ

୨୧ଏବେ ମଧ୍ୟ ତୁମ୍ଭମାନଙ୍କ ଭିତରୁ କେତେକ ବ୍ୟବସ୍ଥା
ଅଧୀନରେ ରହିବାକୁ ଇଚ୍ଛା କରୁଛ। ତୁମ୍ଭେମାନେ ଜାଣ କି
ବ୍ୟବସ୍ଥା କ'ଣ କୁହେ? ୨୨ଶାସ୍ତ୍ର କୁହେ, ଅବ୍ରାହାମଙ୍କର
ଦୁଇଟି ପୁତ୍ର ଥିଲେ। ଗୋଟିଏ ପୁଅର ମା ଜଣେ ଦାସୀ।
ଅନ୍ୟଟିର ମା ଜଣେ ସ୍ୱାଧୀନା ସ୍ତ୍ରୀ। ୨୩ଅବ୍ରାହାମଙ୍କ ଦାସୀପୁତ୍ର
ଶାରୀରିକ ସ୍ୱାଭାବିକ ପଦ୍ଧତିରେ ଜନ୍ମ ହେଲା। କିନ୍ତୁ
ସ୍ୱାଧୀନା ସ୍ତ୍ରୀ ଠାରୁ ଯେଉଁ ପୁତ୍ରଟି ଜନ୍ମ ହେଲା, ପରମେଶ୍ୱର
ଅବ୍ରାହାମଙ୍କୁ ଦେଇଥିବା ପ୍ରତିଜ୍ଞା ଅନୁସାରେ ସେ ଜାତ
ହେଲା।

୨୪ଏହି ସତ୍ୟ କାହାଣୀ ଗୋଟିଏ ଅର୍ଥ ପ୍ରକାଶ କରେ।
ଦୁଇଜଣ ସ୍ତ୍ରୀ ଦୁଇ ପ୍ରକାରର ଚୁକ୍ତିକୁ ଦର୍ଶାନ୍ତି। ଗୋଟିଏ
ଚୁକ୍ତି ସୀନୟ ପର୍ବତ ଠାରେ ହୋଇଥିଲା। ଏହି ଚୁକ୍ତି
ଉଦ୍ଦେଶ୍ୟରେ ଯେଉଁ ଲୋକମାନେ ଜନ୍ମ ହୁଅନ୍ତି, ସେମାନେ
କ୍ରୀତଦାସ ଭଳି। ଏହି ଚୁକ୍ତି ହାଗାର ନାମ୍ନୀ ଏକ ସ୍ତ୍ରୀ
ସହିତ ସଂଯୁକ୍ତ। ୨୫ହାଗାର ଆରବ ଦେଶସ୍ଥିତ ସୀନୟ
ପର୍ବତର ପ୍ରତୀକ। ଏବେ ତାହା ଆଜିର ଯିରୂଶାଲମକୁ
ସଂକେତ କରେ। ଏହା ନିଜ ସନ୍ତାନମାନଙ୍କ ସହିତ
ଦାସତ୍ୱରେ ପଡ଼ିଅଛି। ୨୬କିନ୍ତୁ ସ୍ୱର୍ଗସ୍ଥ ଯିରୂଶାଲମ ସ୍ୱାଧୀନ
ଅଟେ। ସେ ଆମ୍ଭର ମାତା। ୨୭ଶାସ୍ତ୍ର କୁହେ:

> "ହେ ବନ୍ଧ୍ୟା ! ଆନନ୍ଦିତ ହୁଅ, ତୁମ୍ଭେ କାହାରିକୁ
> ଜନ୍ମ ଦେଇନାହଁ; ଖୁବ୍ ଜୋରରେ ହର୍ଷନାଦ କର,
> ତୁମ୍ଭେ ପ୍ରସବବେଦନା କେବେହେଲେ ଅନୁଭବ
> କରିନାହଁ। ଯେଉଁ ସ୍ତ୍ରୀ ପରିତ୍ୟକ୍ତା, ତା'ର ଅଗଣିତ
> ସନ୍ତାନ ସଧବା(ପତିଥିବା)ସ୍ତ୍ରୀଠାରୁ ବେଶୀ ହେବେ।"
> ଯିଶାଇୟ ୫୪:୧

୨୮-୨୯ଏବଂ ଅବ୍ରାହାମଙ୍କର ଗୋଟିଏ ପୁତ୍ର ସାଧାରଣ
ଭାବରେ ଜନ୍ମ ହେଲା। ଅନ୍ୟ ପୁତ୍ର ଯିସ୍ହାକ୍ ଆତ୍ମାଙ୍କ ଶକ୍ତି
ଦ୍ୱାରା ଜାତ ହେଲା। ମୋ ଭାଇ(ଓ ଭଉଣୀ)ମାନେ!
ତୁମ୍ଭେମାନେ ମଧ୍ୟ ଯିସ୍ହାକ ଭଳି ପ୍ରତିଶ୍ରୁତିର ସନ୍ତାନ ଅଟ।
ସାଧାରଣ ଭାବରେ ଜନ୍ମ ଗ୍ରହଣ କରିଥିବା ପୁତ୍ରଟି ଯିସ୍ହାକ
ସହିତ ମନ୍ଦ ବ୍ୟବହାର କଲା। ଆଜି ମଧ୍ୟ ସେହିଭଳି
ଅବସ୍ଥା। ୩୦କିନ୍ତୁ ଶାସ୍ତ୍ର କ'ଣ କୁହେ? "ଦାସୀ ନାରୀ ଓ
ତାହାର ପୁତ୍ରକୁ ବାହାର କରିଦିଅ। ସ୍ୱାଧୀନ ସ୍ତ୍ରୀର ପୁତ୍ର
ପିତାର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରୀ ହେବ। କିନ୍ତୁ
ଦାସୀପୁତ୍ର କିଛି ପାଇବ ନାହିଁ।"* ୩୧ଅତଏବ ଭାଇ(ଓ
ଭଉଣୀମାନେ), ଆମ୍ଭେ ଦାସୀପୁତ୍ର ନୋହୁଁ, ମାତ୍ର ସ୍ୱାଧୀନ
ସ୍ତ୍ରୀର ସନ୍ତାନ ଅଟୁ।

## ସ୍ୱାଧୀନ ରହିଥାଅ

**୫** ଆମ୍ଭେ ସମସ୍ତେ ଏବେ ସ୍ୱାଧୀନ। ଖ୍ରୀଷ୍ଟ ଆମ୍ଭକୁ
ସ୍ୱାଧୀନ କରିଛନ୍ତି। ଦୃଢ଼ ଭାବରେ ରହି ଥାଅ। ପୁଣି
ଥରେ ଦାସତ୍ୱର ବନ୍ଧନ ନିକଟରେ ନିଜନିଜକୁ ସମର୍ପଣ
କର ନାହିଁ। ୨ଶୁଣ! ମୁଁ ପାଉଲ କହୁଛି, ଯଦି ତୁମ୍ଭେମାନେ
ସୁନ୍ନତ ହୋଇ ବ୍ୟବସ୍ଥା ନିକଟକୁ ଫେରି ଯିବ, ତାହେଲେ
ଖ୍ରୀଷ୍ଟ ତୁମ୍ଭମାନଙ୍କ ପାଇଁ ଲାଭଦାୟକ ହେବେ ନାହିଁ। ୩ମୁଁ

---

**"ଦାସୀ ... ନାହିଁ"** ଆଦିପୁସ୍ତକ ୨୧:୧୦

ପୁଣି ଥରେ ସମସ୍ତଙ୍କୁ ସତର୍କ କରାଇ ଦେଉଛି: ଯଦି ଜଣେ
କେହି ସୁନ୍ନତକୁ ଗ୍ରହଣ କରିବ, ତା’ହେଲେ ସେ ସମ୍ପୂର୍ଣ୍ଣ
ଭାବରେ ବ୍ୟବସ୍ଥା ପାଳନ କରିବାକୁ ବାଧ ହେବ। ୪ଯଦି
ତୁମ୍ଭେମାନେ ବ୍ୟବସ୍ଥା ଅନୁସାରେ ପରମେଶ୍ୱରଙ୍କ ସହିତ
ଧାର୍ମିକ ହେବାକୁ ଚେଷ୍ଟା କରୁଛ, ତା’ହେଲେ ଖ୍ରୀଷ୍ଟଙ୍କ
ସହିତ ତୁମ୍ଭମାନଙ୍କ ଜୀବନ ସମାପ୍ତ ହେଲା, ଏହାର ଅର୍ଥ
ତୁମ୍ଭେମାନେ ପରମେଶ୍ୱରଙ୍କ ଅନୁଗ୍ରହକୁ ଅଗ୍ରାହ୍ୟ କଲ। ୫ମୁଁ
ଏହା କହେ କାରଣ ଆମେ ଆଶା କରୁ ଯେ, ବିଶ୍ୱାସ
ଦ୍ୱାରା ପରମେଶ୍ୱରଙ୍କ ପ୍ରତି ଧାର୍ମିକ ହେବୁ। ୬ଆତ୍ମାଙ୍କ
ସାହାଯ୍ୟରେ ଆମେ ଏଥି ପାଇଁ ଅପେକ୍ଷା କରି ରହିଛୁ।
ଯଦି କେହି ଖ୍ରୀଷ୍ଟଯୀଶୁଙ୍କଠାରେ ଅଛି, ତାହେଲେ ସେ
ସୁନ୍ନତ ହୋଇଛି ନା ନାହିଁ, ଏହା ମହତ୍ତ୍ୱପୂର୍ଣ୍ଣ ନୁହେଁ।
ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା, ପ୍ରେମ ଜନକ ବିଶ୍ୱାସ, ଯାହା
କାର୍ଯ୍ୟରେ ପରିପ୍ରକାଶ ହୁଏ।

୭ତୁମ୍ଭେମାନେ ପ୍ରତିଯୋଗିତାରେ ଭଲ ଭାବରେ ଦୌଡ଼ୁ
ଥିଲ। କିଏ ତେବେ ତୁମ୍ଭମାନଙ୍କୁ ସତ୍ୟପଥ ଅନୁସରଣ
କରିବାରେ ବାଧା ଦେଲା? ୮ତୁମ୍ଭକୁ ଯେଉଁ ପ୍ରକାର ପ୍ରବର୍ତ୍ତନା
ଦିଆଯାଇଥାଉ ନା କାହିଁକି, ସେହି ପ୍ରବର୍ତ୍ତନା ପରମେଶ୍ୱରଙ୍କ
ଠାରୁ ଆସିନାହିଁ, ଯେ ତୁମ୍ଭକୁ ମନୋନୀତ କରିଥିଲେ।
୯ସାବଧାନ ରୁହ, “ଅଳ୍ପ ଟିକିଏ ଖମୀର ଜନ୍ତା ହୋଇଥିବା
ସବୁ ମଇଦାକୁ ଫୁଲାଇ ଦିଏ।”* ୧୦ପ୍ରଭୁଙ୍କ ଠାରେ ମୋର
ବିଶ୍ୱାସ ଅଛି ଯେ, ତୁମ୍ଭେମାନେ ଏହିଭଳି ଭିନ୍ନ ମତାମତକୁ
ବିଶ୍ୱାସ କରିବ ନାହିଁ। ଯେଉଁ ଲୋକ ତୁମ୍ଭମାନଙ୍କୁ ବିଚଳିତ
କରୁଛି, ସେ ଯିଏ ହେଉ ନା କାହିଁକି ଦଣ୍ଡ ପାଇବ।

୧୧ମୋ ଭାଇ (ଓ ଭଉଣୀ)ମାନେ! ମୁଁ ତୁମ୍ଭମାନଙ୍କୁ
ଶିଖାଇ ନାହିଁ ଯେ, ଲୋକେ ସୁନ୍ନତ ହେବା ନିହାତି
ଆବଶ୍ୟକ। ଯଦି ମୁଁ ଏହା ଶିଖାଇଛି, ତା’ହେଲେ ମୋତେ
କାହିଁକି ତାଡ଼ନା ଆସୁଛି? ମୁଁ ଯଦି ଏହା ପ୍ରଚାର କରିଥିଲି,
ତା’ହେଲେ କ୍ରୁଶ ସମ୍ବନ୍ଧୀୟ ମୋର ଶିକ୍ଷା ଲୋକଙ୍କୁ
ବ୍ୟତିବ୍ୟସ୍ତ କରି ପକାଇ ନଥାନ୍ତା। ୧୨ମୁଁ କାମନା କରେ
ଯେ, ଯେଉଁମାନେ ତୁମ୍ଭମାନଙ୍କୁ ଉତ୍ତେଜିତ କରୁଛନ୍ତି, ସେମାନେ
ନିଜର ସୁନ୍ନତ କରିବା ସହିତ ଚକ୍ଷୁକୁ ଇନ୍ଦ୍ରିୟହୀନ କରି
ଦେଉ ନାହାଁନ୍ତି କାହିଁକି?

୧୩ମୋ ଭାଇ(ଓ ଭଉଣୀ)ମାନେ! ପରମେଶ୍ୱର ତୁମ୍ଭମାନଙ୍କୁ
ସ୍ୱାଧୀନ ରହିବା ପାଇଁ ବାଛିଛନ୍ତି। କିନ୍ତୁ ଏହି ସ୍ୱାଧୀନତାକୁ
ତୁମ୍ଭେମାନେ ନିଜନିଜର ପାପମୟ ସ୍ୱଭାବର ଇଚ୍ଛା ପୂରଣ
ନିମନ୍ତେ ବ୍ୟବହାର କର ନାହିଁ। ବରଂ ଏକ ଆରେକର
ପ୍ରେମ ପୂର୍ବକ ସେବା କର। ୧୪ସମସ୍ତ ନିୟମ ଗୋଟିଏ
ଆଦେଶର ସାର ଭାବରେ ସମାହିତ ହୋଇଛି: “ନିଜକୁ
ପ୍ରେମ କଲା ପରି ଅନ୍ୟ ସମସ୍ତ ଲୋକଙ୍କୁ ପ୍ରେମ
କର।”* ୧୫ଯଦି ତୁମ୍ଭେ ଏକ ଆରେକକୁ ଆଘାତ ପ୍ରଦାନ
କରୁଥାଅ, ଓ ତଦ୍ଦ୍ୱାରା ପରସ୍ପରକୁ ଗ୍ରାସ କରି ଚାଲ,
ତାହେଲେ ତୁମ୍ଭେମାନେ ନିଜେନିଜେ ସମ୍ପୂର୍ଣ୍ଣ ଭାବେ ନଷ୍ଟ
ହୋଇ ଯିବ। ତେଣୁ ସାବଧାନ ରୁହ।

## ପବିତ୍ରଆତ୍ମା ଓ ମାନବ ପ୍ରକୃତି

୧୬ସେଥିପାଇଁ ମୁଁ କହୁଛି: ଆତ୍ମାଙ୍କର ଅନୁସରଣ କରି
ଜୀବନ ଯାପନ କର। ତାହେଲେ ତୁମ୍ଭେମାନେ ପାପମୟ
ସ୍ୱଭାବର ଇଚ୍ଛାକୁ ସନ୍ତୁଷ୍ଟ କରିବା ନିମନ୍ତେ କୌଣସି ମନ୍ଦ
କାର୍ଯ୍ୟ କରିବ ନାହିଁ। ୧୭ଆମ୍ଭର ପାପମୟ ସ୍ୱଭାବର ଇଚ୍ଛା
ପବିତ୍ରଆତ୍ମାଙ୍କର ବିରୋଧୀ ଓ ପବିତ୍ର ଆତ୍ମା ପାପମୟ
ସ୍ୱଭାବର ବିରୋଧୀ ଅଟନ୍ତି। ଏହି ଦୁଇ ବିଷୟ ପରସ୍ପରର
ବିରୋଧୀ ଅଟନ୍ତି। ସେଥିପାଇଁ ତୁମ୍ଭେମାନେ ପ୍ରକୃତରେ
ଯାହା କରିବାକୁ ଇଚ୍ଛା କର, ତାହା କରି ପାର ନାହିଁ।
୧୮କିନ୍ତୁ ଯଦି ତୁମ୍ଭେମାନେ ଆତ୍ମାଙ୍କର ପରିଚାଳିତ ପଥରେ
ଚାଲୁଛ, ତା’ହେଲେ ତୁମ୍ଭେମାନେ ବ୍ୟବସ୍ଥାର ଅଧୀନ ନୁହଁ।

୧୯ଆମ୍ଭର ପାପମୟ ସ୍ୱଭାବ ଦ୍ୱାରା ହେଉଥିବା ପାପପୂର୍ଣ୍ଣକ୍ରିୟା
ଗୁଡ଼ିକ ବିଷୟରେ ସମସ୍ତେ ଜାଣନ୍ତି। ସେଗୁଡ଼ିକ ହେଲା:
ଯୌନ ପାପାଚାର, ଅପବିତ୍ରତା, ଭୋଗବିଳାସ, ୨୦ମୂର୍ତ୍ତିପୂଜା,
ଯାଦୁବିଦ୍ୟା, ଘୃଣା, ଝଗଡ଼ା, ଈର୍ଷା, କ୍ରୋଧ, ସ୍ୱାର୍ଥପରତା,
ବିଭାଜନ କରିବା, ଦଳୀୟ ମନୋଭାବ, ୨୧ପରଶ୍ରୀକାତରତା,
ନିଶାସକ୍ତ ହେବା, ମଉଜ ଓ ଏହିପରି ଅନ୍ୟ ସବୁ କାମ।
ମୁଁ ପୂର୍ବ ଭଳି ଏବେ ମଧ୍ୟ ତୁମ୍ଭମାନଙ୍କୁ ସତର୍କ କରାଉଛି
ଯେ, ଯେଉଁ ଲୋକମାନେ ଏଭଳି କର୍ମରେ ଲିପ୍ତ ରୁହନ୍ତି,
ସେମାନେ କୌଣସି ପ୍ରକାରେ ପରମେଶ୍ୱରଙ୍କ ରାଜ୍ୟର
ଉତ୍ତରାଧିକାର ପାଇବେ ନାହିଁ। ୨୨ମାତ୍ର ପବିତ୍ରଆତ୍ମା ଆମ୍ଭକୁ
ଏହିଗୁଡ଼ିକ ପ୍ରଦାନ କରନ୍ତି: ପ୍ରେମ, ଆନନ୍ଦ, ଶାନ୍ତି, ଧୈର୍ଯ୍ୟ,
ଦୟାଭାବ, ଉଦାରତା, ବିଶ୍ୱସ୍ତତା, ୨୩ଭଦ୍ରତା ଓ ଆତ୍ମ-ସଂଯମ।
ଏହି ବିଷୟଗୁଡ଼ିକ ଠିକ୍ ନୁହେଁ ବୋଲି କୌଣସି ନିୟମ
କହିପାରିବ ନାହିଁ। ୨୪ଯେଉଁମାନେ ଖ୍ରୀଷ୍ଟଯୀଶୁଙ୍କର, ସେମାନେ
ନିଜର ମନର ଆବେଗ ଓ ପାପମୟ ସ୍ୱଭାବକୁ କ୍ରୁଶରେ
ବିଦ୍ଧ କରିଛନ୍ତି। ସେମାନେ ନିଜର ସ୍ୱାର୍ଥପର ମନୋଭାବ ଓ
ମନ୍ଦକାର୍ଯ୍ୟ ସବୁକୁ ତ୍ୟାଗ କରିଛନ୍ତି। ୨୫ସେହି ଆତ୍ମାଙ୍କଠାରୁ
ଆମ୍ଭେ ନୂତନ ଜୀବନ ପାଇଅଛୁ। ଅତଏବ ଆମ୍ଭେ ଆତ୍ମାଙ୍କର
ଅନୁସରଣ କରିବା ଉଚିତ। ୨୬ଆମ୍ଭେ ବୃଥାଭିମାନୀ ହେବା
ନାହିଁ। ଏକଆରେକକୁ ଅସୁବିଧାରେ ପକାଇବା ନାହିଁ ଏବଂ
ଆମ୍ଭେ ପରସ୍ପରକୁ ଈର୍ଷା କରିବା ନାହିଁ।

## ଏକଆରେକର ସାହାଯ୍ୟ କର

୬ ଭାଇ(ଓ ଭଉଣୀ)ମାନେ! ତୁମ୍ଭମାନଙ୍କ ଭିତରୁ କୌଣସି
ଲୋକ ହୁଏତ କିଛି ଭୁଲ କରି ପାରେ। ସେତେବେଳେ
ତୁମ୍ଭେମାନେ ଆତ୍ମିକ ଲୋକ ହୋଇଥିବାରୁ, ଭଦ୍ରତା ସହକାରେ
ଭୁଲକାର୍ଯ୍ୟ କରୁଥିବା ଲୋକଟିକୁ ସଂଶୋଧନ ହେବା ପାଇଁ
ସାହାଯ୍ୟ କରିବା ଉଚିତ। କିନ୍ତୁ ସାବଧାନ, ତୁମ୍ଭେମାନେ
ଯେପରି ନିଜେ କୌଣସି(ପାପ କରିବା ପାଇଁ) ପରୀକ୍ଷାରେ
ପଡ଼ି ନ ଯାଅ। ୨ନିଜର କର୍ତ୍ତବ୍ୟ କରିବା ସହ ପରସ୍ପରକୁ
ସାହାଯ୍ୟ କର। ଏଭଳି କରିବା ଦ୍ୱାରା ତୁମ୍ଭେମାନେ ଖ୍ରୀଷ୍ଟଙ୍କ
ଆଜ୍ଞାକୁ ପ୍ରକୃତରେ ପାଳନ କରି ପାରିବ। ୩ଯଦି ଜଣେ
ଅତି ନଗଣ୍ୟ ହୋଇଥିଲେ ହେଁ ନିଜକୁ ମହାନ୍ ବୋଲି

---

**“ଅଳ୍ପ ଟିକିଏ ... ଦିଏ।”** ଏହି ଉପଦେଶ କୁହେ ଛୋଟ
ବିଷୟ ଅତି ବଡ଼ ବିପଦ ଆଣିପାରେ ଏବଂ ଜଣେ ଲୋକ
ସମସ୍ତଙ୍କୁ ମନ୍ଦ ପଥରେ ନେଇଯାଇ ପାରେ।

**ନିଜକୁ ... ପ୍ରେମ କର।”** ଲେବୀୟ ପୁସ୍ତକ ୧୯:୧୮

ଭାବେ, ତେବେ ସେ ନିଜକୁ ପ୍ରତାରଣା କରେ। ୪ଜଣେ
ଲୋକ ନିଜକୁ ଅନ୍ୟ ସହିତ ତୁଳନା କରିବା ଉଚିତ
ନୁହେଁ। ମାତ୍ର ପ୍ରତ୍ୟେକ ଲୋକ ନିଜର କାର୍ଯ୍ୟଗୁଡ଼ିକୁ
ପରୀକ୍ଷା ନିରୀକ୍ଷା କରିବା ଉଚିତ। ତା'ହେଲେ ସେ ନିଜର
କାମ ପାଇଁ ଗର୍ବ ଅନୁଭବ କରିପାରିବ। ୫ପ୍ରତ୍ୟେକ ଲୋକ
ନିଜ ନିଜର ଦାୟିତ୍ୱ ବହନ କରିବା ଉଚିତ।
୬ଯେଉଁ ଲୋକ ପରମେଶ୍ୱରଙ୍କ ବାକ୍ୟର ଶିକ୍ଷା କରୁଛି,
ସେ ନିଜର ଶିକ୍ଷକଙ୍କୁ ତା' ନିକଟରେ ଥିବା ସମସ୍ତ ଭଲ
ବିଷୟ ଗୁଡ଼ିକର ସହଭାଗୀ କରାଉ।

## ଜୀବନ ହେଉଛି ଜମି ଚାଷ କରିବା ସହିତ ସମାନ

୭ନିଜକୁ ପ୍ରତାରଣା କର ନାହିଁ। ପରମେଶ୍ୱରଙ୍କୁ ତୁମ୍ଭେମାନେ
ଠକି ପାରିବ ନାହିଁ। ଜଣେ ଲୋକ ଯେପରି ବୁଣିବ,
ସେହିପରି କାଟିବ। ୮ଯେଉଁ ଲୋକ ନିଜର ପାପମୟ
ସ୍ୱଭାବକୁ ସନ୍ତୁଷ୍ଟ କରିବା ପାଇଁ ବୁଣିବ, ସେ ବିନାଶ
ଦାୟକ ଫସଲ କାଟିବ। କିନ୍ତୁ ଜଣେ ଯଦି ଆତ୍ମାଙ୍କୁ ସନ୍ତୁଷ୍ଟ
କରିବା ପାଇଁ ବୁଣିବ, ସେ ଆତ୍ମାଙ୍କଠାରୁ ଅନନ୍ତ ଜୀବନ
ରୂପକ ଶସ୍ୟ କାଟିବ। ୯ଆମ୍ଭେ ଉତ୍ତମ କାର୍ଯ୍ୟ କରିବାରେ
ଥକିଯିବା ନାହିଁ। କାରଣ ଉପଯୁକ୍ତ ସମୟ ଆସିଲା ପରେ
ଆମ୍ଭକୁ ତା'ର ଫଳ ମିଳିବ। ୧୦ତେଣୁ ଯେତେବେଳେ
ଆମ୍ଭେ କାହାର ଉପକାର କରିବା ନିମନ୍ତେ ସୁଯୋଗ ପାଉ,
ଆମ୍ଭେ ଅବଶ୍ୟ ତାହା କରିବା ଉଚିତ। କିନ୍ତୁ ଯେଉଁମାନେ
ମଣ୍ଡଳୀଭୁକ୍ତ ବିଶ୍ୱାସୀ ଅଟନ୍ତି, ସେମାନଙ୍କ ପ୍ରତି ଆମ୍ଭକୁ
ବିଶେଷ ଧ୍ୟାନ ଦେବାକୁ ପଡ଼ିବ।

## ପାଉଲଙ୍କ ପତ୍ରର ସମାପ୍ତି

୧୧ଦେଖ! ମୁଁ ନିଜ ହାତରେ ଓ କେତେ ବଡ଼ବଡ଼
ଅକ୍ଷରରେ ତୁମ୍ଭମାନଙ୍କୁ ଏହି ପତ୍ରଟି ଲେଖିଛି। ୧୨କେତେକ
ଲୋକ ତୁମ୍ଭମାନଙ୍କୁ ସୁନ୍ନତ ହେବା ପାଇଁ ବାଧ୍ୟ କରୁଛନ୍ତି।
ଯିହୂଦୀମାନେ ଯେପରି ସେମାନଙ୍କୁ ଗ୍ରହଣ କରିପାରନ୍ତି,
ସେଥିପାଇଁ ଏହା କରୁଛନ୍ତି। ଖ୍ରୀଷ୍ଟଙ୍କ କ୍ରୁଶ ପାଇଁ କାଳେ
ସେମାନଙ୍କୁ ନିର୍ଯାତନା ସହିବାକୁ ହେବ, ସେଥିପାଇଁ ସେମାନେ
ଭୟ କରୁଛନ୍ତି। ୧୩ଯେଉଁମାନେ ତୁମ୍ଭମାନଙ୍କୁ ସୁନ୍ନତ ପାଇଁ
ପ୍ରବର୍ତ୍ତାଉଛନ୍ତି, ସେମାନେ ନିଜେ ବ୍ୟବସ୍ଥା ପାଳନ କରୁ
ନାହାଁନ୍ତି। କିନ୍ତୁ ସେମାନେ ତୁମ୍ଭମାନଙ୍କୁ ସୁନ୍ନତ କରିବାକୁ
ବଡ଼ ଆଗ୍ରହୀ ଅଟନ୍ତି। ତୁମ୍ଭମାନଙ୍କୁ ଏହିପରି କରିବାକୁ
ବାଧ୍ୟ କରି, ସେମାନେ ଗର୍ବ କରି ପାରିବେ। ୧୪ଆମ୍ଭମାନଙ୍କ
ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ କ୍ରୁଶ ହିଁ ମୋର ଗର୍ବର ଏକମାତ୍ର
କାରଣ। ମୁଁ ଆଶାକରେ ଯେ, ମୁଁ ତାହାଠାରୁ ଆଉ
କେଉଁଠାରେ ଗର୍ବ କରିବି ନାହିଁ। କ୍ରୁଶ ଉପରେ ପ୍ରଭୁ
ଯୀଶୁଖ୍ରୀଷ୍ଟଙ୍କ ମୃତ୍ୟୁ ଦ୍ୱାରା ମୋ ପାଇଁ ଏହି ସଂସାର ମୃତ,
ଓ ମୁଁ ମଧ୍ୟ ସଂସାର ପାଇଁ ମୃତ। ୧୫ଜଣେ ମନୁଷ୍ୟ ସୁନ୍ନତ
ହେଉ ବା ଅସୁନ୍ନତ ହେଉ, ସେଥିରେ କିଛି ଗୁରୁତ୍ୱ ନାହିଁ।
କେବଳ ପରମେଶ୍ୱରଙ୍କ ଦ୍ୱାରା ସୃଷ୍ଟ ନୂତନ ମନୁଷ୍ୟ ହେବା
ଗୁରୁତ୍ୱପୂର୍ଣ୍ଣ। ୧୬ଯେଉଁମାନେ ଏହି ନିୟମ ପାଳନ କରୁଛନ୍ତି,
ସେମାନଙ୍କୁ ଓ ପରମେଶ୍ୱରଙ୍କ ସମସ୍ତ ଲୋକମାନଙ୍କୁ ଶାନ୍ତି
ଓ ଦୟା ମିଳୁ।
୧୭ଅତଏବ ମୋତେ ଅଧିକ କଷ୍ଟ ଦିଅ ନାହିଁ। ମୋ
ଶରୀରରେ ପୂର୍ବରୁ କ୍ଷତ ଚିହ୍ନମାନ ଅଛି। ମୁଁ ଯେ
ଯୀଶୁଖ୍ରୀଷ୍ଟଙ୍କର ଅଟେ, ତାହା ଏହି କ୍ଷତଚିହ୍ନଗୁଡ଼ିକ ପ୍ରମାଣିତ
କରନ୍ତି।
୧୮ମୋ ଭାଇ(ଓ ଭଉଣୀ)ମାନେ! ମୁଁ ପ୍ରାର୍ଥନା କରେ
ଯେ, ଆମ୍ଭର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଅନୁଗ୍ରହ ତୁମ୍ଭମାନଙ୍କ ଆତ୍ମା
ସହିତ ସଦାସର୍ବଦା ରହିଥାଉ। ଆମେନ୍।

# ଏଫିସୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କ ପତ୍ର

୧ ଖ୍ରୀଷ୍ଟ ଯୀଶୁଙ୍କର ଜଣେ ପ୍ରେରିତ ପାଉଲଙ୍କ ଠାରୁ
ପତ୍ର। ପରମେଶ୍ୱରଙ୍କ ଇଚ୍ଛାନୁଯାୟୀ ଏଫିସୀୟ ଠାରେ
ରହୁଥିବା ପରମେଶ୍ୱରଙ୍କ ପବିତ୍ର ଲୋକ ଓ ଖ୍ରୀଷ୍ଟ ଯୀଶୁଙ୍କଠାରେ
ବିଶ୍ୱାସୀ ଲୋକଙ୍କ ପ୍ରତି ମୁଁ ପ୍ରେରିତ ହୋଇଛି।
୨ତୁମ୍ଭମାନଙ୍କୁ ଆମ୍ଭର ପରମପିତା ପରମେଶ୍ୱର ଓ ପ୍ରଭୁ
ଯୀଶୁ ଖ୍ରୀଷ୍ଟଙ୍କ ଠାରୁ ଅନୁଗ୍ରହ ଓ ଶାନ୍ତି ମିଳୁ।

## ଯୀଶୁଙ୍କଠାରେ ଥିବା ଲୋକଙ୍କ ପାଇଁ ଆଧାତ୍ମିକ ଆଶୀର୍ବାଦ

୩ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ପିତା ଓ ପରମେଶ୍ୱରଙ୍କ ପ୍ରଶଂସା
ହେଉ। ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ ଥିବା ହେତୁ ପରମେଶ୍ୱର
ଆମ୍ଭକୁ ସ୍ୱର୍ଗରେ ସମସ୍ତ ଆଧାତ୍ମିକ ଆଶୀର୍ବାଦ ଦେଇଛନ୍ତି।
୪ଖ୍ରୀଷ୍ଟଙ୍କଠାରେ, ଜଗତର ସୃଷ୍ଟି ପୂର୍ବରୁ ପରମେଶ୍ୱର ଆମ୍ଭକୁ
ତାହାଙ୍କ ସମ୍ମୁଖରେ ପବିତ୍ର ଓ ନିର୍ଦ୍ଦୋଷ ହେବା ପାଇଁ
ଆଦରରେ ବାଛି ଥିଲେ। ୫ସେ ଆମ୍ଭମାନଙ୍କୁ ସୃଷ୍ଟି ପୂର୍ବରୁ
ଖ୍ରୀଷ୍ଟ ଯୀଶୁଙ୍କ ଦ୍ୱାରା ନିଜର ସନ୍ତାନ କରିବାକୁ ସ୍ଥିର
କରିଥିଲେ। ଏହା ତାହାଙ୍କର ଇଚ୍ଛା ଓ ଆନନ୍ଦ ଥିଲା।
୬ପରମେଶ୍ୱରଙ୍କ ଆଶ୍ଚର୍ଯ୍ୟଜନକ ଅନୁଗ୍ରହ ସକାଶେ ତାହାଙ୍କର
ପ୍ରଶଂସା ହୁଏ। ଯାହାଙ୍କୁ ପରମେଶ୍ୱର ପ୍ରେମ କରନ୍ତି, ସେହି
ଖ୍ରୀଷ୍ଟଙ୍କ ଦ୍ୱାରା ସେ ଆମ୍ଭକୁ ସେହି ଅନୁଗ୍ରହ ମୁକ୍ତ ଭାବରେ
ଦେଇଥାନ୍ତି। ୭ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ ଥିବା ହେତୁ ଆମ୍ଭେ
ତାହାଙ୍କର ରକ୍ତ ମାଧ୍ୟମରେ ମୁକ୍ତ ହୋଇଛୁ। ପରମେଶ୍ୱରଙ୍କ
ବହୁମୂଲ୍ୟ ଅନୁଗ୍ରହ ଦ୍ୱାରା ଆମ୍ଭର ପାପରୁ ଆମ୍ଭେ କ୍ଷମା
ପାଇପାରୁ। ୮ପରମେଶ୍ୱର ଏହି ଅନୁଗ୍ରହ ପୂର୍ଣ୍ଣ ଭାବରେ ଓ
ମୁକ୍ତ ଭାବରେ ଦେଇଛନ୍ତି। ୯ପରମେଶ୍ୱର ନିଜର ପୂର୍ଣ୍ଣ
ଜ୍ଞାନ ଓ ବୋଧ ଶକ୍ତି ଦ୍ୱାରା ତାହାଙ୍କର ନିଗୂଢ଼ତତ୍ତ୍ୱ ଆମ୍ଭକୁ
ଜଣାଇଛନ୍ତି। ପରମେଶ୍ୱର ଏହା ଚାହୁଁଥିଲେ ଏବଂ ସେ ଏହା
ଖ୍ରୀଷ୍ଟଙ୍କ ଦ୍ୱାରା କରିବା ପାଇଁ ଯୋଜନା କରିଥିଲେ।
୧୦ପରମେଶ୍ୱରଙ୍କର ଯୋଜନା ଥିଲା ଯେ ଉଚିତ ସମୟ
ଉପସ୍ଥିତ ହେଲେ, ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରୁଥିବା ସ୍ୱର୍ଗ ଓ
ପୃଥିବୀର ସମସ୍ତ ବସ୍ତୁଗୁଡ଼ିକୁ ଏକତ୍ର କରିବେ ଓ ଖ୍ରୀଷ୍ଟ
ତହିଁର ମସ୍ତକ ସ୍ୱରୂପ ହେବେ।
୧୧ପରମେଶ୍ୱର ନିଜ ଯୋଜନା ଓ ଇଚ୍ଛା ଅନୁସାରେ
ସମସ୍ତ ଘଟଣା ଘଟାନ୍ତି। ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରୁଥିବା
ହେତୁ ପରମେଶ୍ୱର ଆମ୍ଭକୁ ତାହାଙ୍କର ଲୋକ ହେବା ପାଇଁ
ବାଛିଲେ। ଏକଥା ସେ ନିଜ ଇଚ୍ଛାନୁସାରେ ଅନାଦି କାଳରୁ
ଠିକ୍ କରି ରଖିଥିଲେ। ୧୨ଆମ୍ଭେ ହେଉଛୁ ପ୍ରଥମ ଲୋକ
ଯେଉଁମାନେ ଖ୍ରୀଷ୍ଟଙ୍କଠାରେ ଭରସା ପ୍ରତିଷ୍ଠିତ କରିଥିଲୁ,
ଏବଂ ପରମେଶ୍ୱରଙ୍କ ମହିମାର ପ୍ରଶଂସା କରିବା ଲାଗି
ଆମ୍ଭକୁ ବଛା ଯାଇଥିଲା। ୧୩ତୁମ୍ଭମାନଙ୍କ ପାଇଁ ମୁକ୍ତି ଆଣି
ଦେଉଥିବା ସୁସମାଚାରର ସତ୍‌ଶିକ୍ଷା ତୁମ୍ଭେ ଶୁଣିଲ। ସୁସମାଚାର
ଶୁଣିଲା ପରେ ତୁମ୍ଭେ ଖ୍ରୀଷ୍ଟଙ୍କ ଠାରେ ବିଶ୍ୱାସ କଲ।
ପରମେଶ୍ୱର ପବିତ୍ର ଆତ୍ମାଙ୍କୁ ପ୍ରଦାନ କରି ତୁମ୍ଭ ଉପରେ
ତାହାଙ୍କର ବିଶେଷ ଚିହ୍ନ ଦେଇ ଚିହ୍ନିତ କଲେ। ଏହା
କରିବା ଦ୍ୱାରା ସେ ଆଗରୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା
କରିଥିଲେ। ୧୪ପରମେଶ୍ୱର ନିଜ ଲୋକଙ୍କୁ ଯେସମସ୍ତ
ବିଷୟ ଦେବା ନିମନ୍ତେ ପ୍ରତିଶ୍ରୁତି ଦେଇଛନ୍ତି, ତାହା ଯେ
ଆମ୍ଭେମାନେ ନିଶ୍ଚିତ ରୂପେ ପାଇବା, ଏଥିପାଇଁ ପବିତ୍ର
ଆତ୍ମା ହେଉଛନ୍ତି ପରମେଶ୍ୱରଙ୍କ ନିର୍ଭରଯୁକ୍ତ ପ୍ରତିଶ୍ରୁତି।
ଯେଉଁମାନେ ପରମେଶ୍ୱରଙ୍କର ଲୋକ ଅଟନ୍ତି, ସେମାନଙ୍କ
ନିମନ୍ତେ ଏହା ପୂର୍ଣ୍ଣ ସ୍ୱାଧୀନତା ଆଣିଦେବ। ଏହାର
ଉଦ୍ଦେଶ୍ୟ ପରମେଶ୍ୱରଙ୍କ ମହିମାର ପ୍ରଶଂସା ହେବ।

## ପାଉଲଙ୍କ ପ୍ରାର୍ଥନା

୧୫ସେଥିପାଇଁ ମୁଁ ଯେତେବେଳେ ପ୍ରଭୁ ଯୀଶୁଙ୍କ ଠାରେ
ତୁମ୍ଭମାନଙ୍କ ବିଶ୍ୱାସ ଓ ପରମେଶ୍ୱରଙ୍କ ସମସ୍ତ ଲୋକମାନଙ୍କ
ପାଇଁ ତୁମ୍ଭମାନଙ୍କର ପ୍ରେମ ବିଷୟରେ ଶୁଣିଲି, ମୁଁ ତୁମ୍ଭମାନଙ୍କ
ପାଇଁ ପରମେଶ୍ୱରଙ୍କୁ ନିରନ୍ତର ଧନ୍ୟବାଦ ଅର୍ପଣ କଲି।
୧୬ନିଜର ପ୍ରାର୍ଥନାରେ ମୁଁ ତୁମ୍ଭମାନଙ୍କୁ ମନେ ପକାଉଛି।
୧୭ମୁଁ ମହିମାମୟ ପିତା, ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର
ପରମେଶ୍ୱରଙ୍କୁ ସବୁବେଳେ ପ୍ରାର୍ଥନା କରେ ଯେ, ସେ
ତୁମ୍ଭକୁ ବିଜ୍ଞତାର ଆତ୍ମା ପ୍ରଦାନ କରନ୍ତୁ। ସେହି ଜ୍ଞାନ
ତୁମ୍ଭମାନଙ୍କ ପାଇଁ ପରମେଶ୍ୱର ବିଷୟକ ସମସ୍ତ ତଥ୍ୟକୁ
ସ୍ପଷ୍ଟ କରିଦେବ, ଯାହା ଫଳରେ ତୁମ୍ଭେମାନେ ତାହାଙ୍କୁ
ପୂର୍ଣ୍ଣ ଭାବରେ ଜାଣି ପାରିବ। ୧୮ମୁଁ ପ୍ରାର୍ଥନା କରୁଛି,
ଯେପରି ତୁମ୍ଭେମାନେ ଈଶ୍ୱରଙ୍କ ସମସ୍ତ ସତ୍ୟର ସମ୍ପୂର୍ଣ୍ଣ
ବୋଧଶକ୍ତି ପାଇପାର, ଏଥିପାଇଁ ସେ ତୁମ୍ଭର ମନରୂପ ଚକ୍ଷୁ
ଖୋଲି ଦିଅନ୍ତୁ। ତାପରେ ତୁମ୍ଭେମାନେ ବୁଝି ପାରିବ ଯେ,
କେଉଁ ବିଷୟରେ ଭରସା ରଖିବା ପାଇଁ ପରମେଶ୍ୱର
ଆମ୍ଭମାନଙ୍କୁ ବାଛି ଥିଲେ। ତୁମ୍ଭେମାନେ ବୁଝି ପାରିବ ଯେ
ପରମେଶ୍ୱର ନିଜର ପବିତ୍ରୀକୃତ ଲୋକମାନଙ୍କୁ ଯେଉଁସବୁ
ଆଶୀର୍ବାଦ ଦେବା ପାଇଁ ପ୍ରତିଜ୍ଞା କରିଥିଲେ, ତାହା କେଡ଼େ
ମହିମାମୟ ଓ ଐଶ୍ୱର୍ଯ୍ୟପୂର୍ଣ୍ଣ ଅଟେ। ୧୯ତୁମ୍ଭେମାନେ ଏହା
ମଧ୍ୟ ବୁଝି ପାରିବ ଯେ, ଆମ୍ଭେ ଯେଉଁମାନେ ବିଶ୍ୱାସ
କରୁଛୁ, ଆମ୍ଭମାନଙ୍କ ନିମନ୍ତେ କାମ କରୁଥିବା ପରମେଶ୍ୱରଙ୍କ
ଶକ୍ତି କେଡ଼େ ମହାନ୍। ୨୦ଏହି ଶକ୍ତି ହେଉଛି ସେହି ଶକ୍ତି,
ଯେଉଁ ଶକ୍ତି ବଳରେ ପରମେଶ୍ୱର ଖ୍ରୀଷ୍ଟଙ୍କୁ ମୃତ୍ୟୁରୁ
ପୁନରୁତ୍ଥିତ କରିଥିଲେ। ସ୍ୱର୍ଗ ରାଜ୍ୟରେ ପରମେଶ୍ୱର ଖ୍ରୀଷ୍ଟଙ୍କୁ
ତାହାଙ୍କ ଡାହାଣ ପଟରେ ବସାଇ ଅଛନ୍ତି। ୨୧ପରମେଶ୍ୱର

ଖ୍ରୀଷ୍ଟଙ୍କୁ ସମସ୍ତ ଶାସକ, ଅଧିକାରୀ, ଶକ୍ତି ଓ ରାଜାମାନଙ୍କ
ଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ପଦ ଦେଇଅଛନ୍ତି। ଏହି ସଂସାର
କିମ୍ବା ପରବର୍ତ୍ତୀ ସଂସାରରେ ଥିବା ଯେ କୌଣସି କ୍ଷମତା
ପୂର୍ଣ୍ଣ ଶକ୍ତି ଅପେକ୍ଷା ଖ୍ରୀଷ୍ଟଙ୍କର ଶକ୍ତି ଅତି ଅଧିକ ଅଟେ।
୨୨ପରମେଶ୍ୱର ସବୁ କିଛି ଖ୍ରୀଷ୍ଟଙ୍କ ଅଧିନରେ ରଖିଅଛନ୍ତି ଓ
ତାହାଙ୍କୁ ମଣ୍ଡଳୀର ମୁଖ୍ୟ ରୂପେ ସ୍ଥାପିତ କରିଛନ୍ତି।
୨୩ମଣ୍ଡଳୀ ହେଉଛି ଖ୍ରୀଷ୍ଟଙ୍କ ଶରୀର। ମଣ୍ଡଳୀ ଖ୍ରୀଷ୍ଟଙ୍କ
ଦ୍ୱାରା ପୂର୍ଣ୍ଣ ହୋଇଅଛି। ସେ ସମସ୍ତ ବିଷୟ ପ୍ରତ୍ୟେକ
ଉପାୟରେ ସଂପୂର୍ଣ୍ଣ କରନ୍ତି।

## ମୃତ୍ୟୁରୁ ଜୀବନ ଆଡ଼କୁ

୨ ପୂର୍ବରୁ ତୁମ୍ଭର ପାପ ହେତୁ ଓ ପରମେଶ୍ୱରଙ୍କୁ ବାଧା
ଦେଉଥିବା ଭୁଲ କାର୍ଯ୍ୟ ହେତୁ ତୁମ୍ଭର ଆତ୍ମିକ
ଜୀବନ ମୃତ ଥିଲା। ୨ଅତୀତରେ ତୁମ୍ଭେ ସେହି ପାପ
କାର୍ଯ୍ୟ ସହିତ ଜଡ଼ିତ ଥିଲ। ତୁମ୍ଭେ ସାଂସାରିକ ଜୀବନଯାପନ
କରୁଥିଲ। ପୃଥିବୀରେ ମନ୍ଦ ଶକ୍ତିର ଶାସକଙ୍କୁ ତୁମ୍ଭେ
ଅନୁସରଣ କରୁ ଥିଲ। ସେହି ମନ୍ଦ ଶକ୍ତି ଏବେ ମଧ
ପରମେଶ୍ୱରଙ୍କୁ ଅମାନ୍ୟ କରୁଥିବା ଲୋକଙ୍କ ଭିତରେ କାମ
କରୁଛି। ୩ଅତୀତରେ ଆମ୍ଭେ ସମସ୍ତେ ସେହିଭଳି ଜୀବନଯାପନ
କରୁଥିଲୁ। ଆମ୍ଭେ ଆମ୍ଭର ପାପଭରା ମନୋଭାବର କାମନା
ସବୁ ପୂରଣ କରିବାରେ ଚେଷ୍ଟିତ ଥିଲୁ। ଯାହା ଆମ୍ଭ ଦେହ
ଚାହୁଁଥିଲା ଓ ମନ ଭାବୁଥିଲା, ସେହି କାର୍ଯ୍ୟ କରୁଥିଲୁ।
ଆମ୍ଭେ ମନ୍ଦ ଲୋକ ଥିଲୁ। ଆମ୍ଭର ପାପପୂର୍ଣ୍ଣ ଜୀବନ ଲାଗି
ଆମ୍ଭେମାନେ ଅନ୍ୟ ମାନଙ୍କ ପରି ପରମେଶ୍ୱରଙ୍କ କ୍ରୋଧର
ପାତ୍ର ହୋଇ ଦଣ୍ଡ ଭୋଗ କରିଥାନ୍ତୁ।
୪କିନ୍ତୁ ପରମେଶ୍ୱର ଆମ୍ଭକୁ ଅତିଶୟ ପ୍ରେମ କଲେ
କାରଣ ତାହାଙ୍କ ଦୟା ଅତି ମହାନ୍। ୫ସେ ସମୟରେ
ଆମ୍ଭେ ପରମେଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ଆଚରଣ କରୁଥିବାରୁ
ଆତ୍ମିକ ଭାବରେ ମୃତ ଥିଲୁ। କିନ୍ତୁ ଖ୍ରୀଷ୍ଟଙ୍କ ଠାରେ ବିଶ୍ୱାସ
ହେତୁ ସେ ଆମ୍ଭକୁ ନୂତନ ଜୀବନ ପ୍ରଦାନ କଲେ।
୬ପରମେଶ୍ୱରଙ୍କ ଅନୁଗ୍ରହ ହେତୁ ତୁମ୍ଭେମାନେ ପରିତ୍ରାଣ
ପାଇଅଛ। ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରୁଥିବାରୁ ପରମେଶ୍ୱର
ଆମ୍ଭକୁ ଖ୍ରୀଷ୍ଟଙ୍କ ସହିତ ପୁନରୁଥିତ କଲେ ଓ ତାହାଙ୍କ
ସହିତ ସ୍ୱର୍ଗୀୟ ସ୍ଥାନରେ ବସାଇ ଅଛନ୍ତି। ୭ଭବିଷ୍ୟତରେ
ତାହାଙ୍କ କୃପାର ମହାନ୍ ସମ୍ପଦକୁ ଆମ୍ଭକୁ ଦେଖାଇବା
ପାଇଁ ପରମେଶ୍ୱର ଏପରି କଲେ। ଖ୍ରୀଷ୍ଟ ଯୀଶୁଙ୍କ ଦ୍ୱାରା
ଆମ୍ଭ ପ୍ରତି ପରମେଶ୍ୱର ତାହାଙ୍କର ଏହି ଅନୁଗ୍ରହ ପ୍ରକାଶ
କଲେ। ଏହି ଅନୁଗ୍ରହ ଦ୍ୱାରା ତୁମ୍ଭେ ଉଦ୍ଧାର ପାଇଛ।
୮ତୁମ୍ଭେ ସେହି ଅନୁଗ୍ରହ ତୁମ୍ଭର ବିଶ୍ୱାସ ବଳରେ ପାଇଛ।
ତୁମ୍ଭେ ନିଜକୁ ଉଦ୍ଧାର କରି ନାହିଁ, ବରଂ ଏହା ତୁମ୍ଭ ପ୍ରତି
ପରମେଶ୍ୱରଙ୍କ ଦାନ। ୯ତୁମ୍ଭେ ନିଜ କର୍ମ ଦ୍ୱାରା ଉଦ୍ଧାର
ପାଇ ନାହିଁ। ଯେପରି କୌଣସି ଲୋକ ଆପେ ଉଦ୍ଧାର
ପାଇଅଛି ବୋଲି ଗର୍ବ ନ କରୁ। ୧୦ଆମ୍ଭେ ଯାହା, ତାହା
କେବଳ ପରମେଶ୍ୱରଙ୍କ ଦ୍ୱାରା ହୋଇଅଛୁ। ଆମ୍ଭେ ଯେପରି
ଭଲ କାମ କରିପାରୁ, ସେଥିପାଇଁ ପରମେଶ୍ୱର ଆମ୍ଭକୁ
ଖ୍ରୀଷ୍ଟ ଯୀଶୁଙ୍କ ମଧ୍ୟରେ, ନୂତନ ବ୍ୟକ୍ତି କଲେ। ଏହି ଭଲ
କାମଗୁଡ଼ିକୁ ମଧ ସେ ଆମ୍ଭ ପାଇଁ ପୂର୍ବରୁ ଯୋଜନା କରି
ରଖିଅଛନ୍ତି। ସେ ହିଁ ଯୋଜନା କରିଛନ୍ତି ଆମ୍ଭେ ସେହି
ଭଲ କାମ କରି ଜୀବନଯାପନ କରିବା।

## ଯୀଶୁ ଖ୍ରୀଷ୍ଟଙ୍କଠାରେ ଏକ ହେବା

୧୧ତୁମ୍ଭେମାନେ ଅଣଯିହୂଦୀରୂପେ ଜନ୍ମ ଗ୍ରହଣ କରିଥିଲ।
ତୁମ୍ଭମାନଙ୍କୁ ଯିହୂଦୀମାନେ "ଅସୁନ୍ନତ" ବୋଲି କହନ୍ତି।
ସେମାନେ ନିଜକୁ "ସୁନ୍ନତ"* ବୋଲି କହନ୍ତି। ଏହା ଏକ
କାର୍ଯ୍ୟ, ଯାହାକୁ କି ସେମାନେ ନିଜ ଶରୀର ଉପରେ
କରିଥାନ୍ତି। ୧୨ମନେରଖ, ତୁମ୍ଭେମାନେ ପୂର୍ବରୁ ଖ୍ରୀଷ୍ଟବିହୀନ
ଥିଲ। ତୁମ୍ଭେମାନେ ଇସ୍ରାୟେଲର ନାଗରିକ ନ ଥିଲ।
ତେଣୁ ପରମେଶ୍ୱର ତାହାଙ୍କ ଲୋକମାନଙ୍କ ସହିତ କରିଥିବା
ପ୍ରତିଜ୍ଞା ଯୁକ୍ତ ନିୟମ ତୁମ୍ଭେ ପ୍ରାପ୍ତ ହୋଇ ନ ଥିଲ।
ତୁମ୍ଭର ଆଉ କିଛି ଆଶା ଭରସା ନ ଥିଲା, କି ତୁମ୍ଭେ
ପରମେଶ୍ୱରଙ୍କୁ ଜାଣି ନ ଥିଲ। ୧୩ସେତେବେଳେ ତୁମ୍ଭେମାନେ
ପରମେଶ୍ୱରଙ୍କ ଠାରୁ ଦୂରରେ ଥିଲ। କିନ୍ତୁ ଏବେ ଖ୍ରୀଷ୍ଟ
ଯୀଶୁଙ୍କଠାରେ ବିଶ୍ୱାସ ଥିବା ହେତୁ ତୁମ୍ଭେ ତାଙ୍କର ନିକଟବର୍ତ୍ତୀ
ହୋଇଛ। ଖ୍ରୀଷ୍ଟଙ୍କର ରକ୍ତ ଦ୍ୱାରା ତୁମ୍ଭେ ପରମେଶ୍ୱରଙ୍କର
ନିକଟତର ହୋଇଛ। ୧୪ଖ୍ରୀଷ୍ଟଙ୍କ ହେତୁ ଆମ୍ଭେ ଏବେ
ଶାନ୍ତିରେ ଅଛୁ। ଖ୍ରୀଷ୍ଟ ଯିହୂଦୀ ଓ ଅଣ-ଯିହୂଦୀମାନଙ୍କୁ
ଏକାଠି କଲେ। ଦୁହିଁଙ୍କ ମଝିରେ କାନ୍ଥଟିଏ ଥିଲା ଭଳି
ସେମାନେ ଅଲଗା ଥିଲେ। ସେମାନେ ପରସ୍ପରକୁ ଘୃଣା
କରୁଥିଲେ। କିନ୍ତୁ ନିଜ ଶରୀରକୁ ଉତ୍ସର୍ଗ କରି ଖ୍ରୀଷ୍ଟ
ସେହି ଘୃଣାର କାନ୍ଥଟିକୁ ଭାଙ୍ଗି ଦେଲେ। ୧୫ଯିହୂଦୀମାନଙ୍କ
ବ୍ୟବସ୍ଥାରେ ଅନେକ ଗୁଡ଼ିଏ ଆଦେଶ ଓ ନିୟମାବଳୀ
ଥିଲା; କିନ୍ତୁ ଯୀଶୁ ଖ୍ରୀଷ୍ଟ ସେ ବ୍ୟବସ୍ଥାଟିକୁ ସମାପ୍ତ କଲେ।
ଖ୍ରୀଷ୍ଟଙ୍କ ଉଦ୍ଦେଶ୍ୟ ଥିଲା, ଏହି ଦୁଇ ଦଳର ଲୋକଙ୍କୁ
ଏକାଠି କରି ତାହାଙ୍କଠାରେ ନୂତନ ଲୋକ କରାଇବା।
ଏହା ଦ୍ୱାରା ଯୀଶୁ ଯେପରି ଶାନ୍ତି ସ୍ଥାପନ କରିପାରନ୍ତି।
୧୬କ୍ରୁଶ ଉପରେ ମୃତ୍ୟୁବରଣ କରି ସେ ଦୁଇ ଦଳ
ଭିତରେ ଥିବା ଏହି ଘୃଣାକୁ ସମାପ୍ତ କଲେ। ସେହି ଦୁଇଟି
ଦଳକୁ ଗୋଟିଏ ଶରୀରରେ ପରିଣତ କରିବା ପରେ ଖ୍ରୀଷ୍ଟ
ସେମାନଙ୍କୁ ପରମେଶ୍ୱରଙ୍କ ସହିତ ମିଳିତ କରାଇବା ପାଇଁ
ଚାହିଁଲେ। ୧୭ଖ୍ରୀଷ୍ଟ କ୍ରୁଶରେ ଆପଣା ମୃତ୍ୟୁ ଦ୍ୱାରା ଏହା
ସାଧନ କଲେ। ଦୂରରେ ଥିଲ ଯେ ତୁମ୍ଭେମାନେ, ଖ୍ରୀଷ୍ଟ
ଆସି ତୁମ୍ଭମାନଙ୍କ ନିକଟରେ ଶାନ୍ତି ପ୍ରଚାର କଲେ।
୧୮କାରଣ ଖ୍ରୀଷ୍ଟଙ୍କ ମାଧ୍ୟମରେ ହିଁ, ଏକ ଆତ୍ମା ହୋଇ
ପରମପିତା ପାଖକୁ ଯିବାର ଅଧିକାର ଆମ୍ଭକୁ ମିଳିଲା।
୧୯ଅତଏବ ତୁମ୍ଭେମାନେ ଏବେ ବିଦେଶୀ ଅବା ଅପରିଚିତ
ବ୍ୟକ୍ତି ନୁହଁ ମାତ୍ର ତୁମ୍ଭେ ପରମେଶ୍ୱରଙ୍କ ପବିତ୍ର ଲୋକଙ୍କ
ସହିତ ସହନାଗରିକ ଓ ପରମେଶ୍ୱରଙ୍କ ନିଜ ପରିବାରର
ଲୋକ ଅଟ। ୨୦ପ୍ରେରିତ ଓ ଭବିଷ୍ୟଦ୍‌ବକ୍ତାମାନଙ୍କ ମୂଳଦୁଆ
ଉପରେ ତୁମ୍ଭେ ନିଜେ ଏକ ଭବନ ହୋଇ ଠିଆ
ହୋଇଛ। ପରମେଶ୍ୱର ତା'ର ମାଲିକ ଅଟନ୍ତି। ଖ୍ରୀଷ୍ଟ ଯୀଶୁ
ସେହି ଭବନର କୋଣର ପ୍ରଧାନ ପଥର ଅଟନ୍ତି। ୨୧ସମ୍ପୂର୍ଣ୍ଣ
ଭବନଟି ଖ୍ରୀଷ୍ଟଙ୍କଠାରେ ପରସ୍ପର ସହିତ ସଂଯୁକ୍ତ ହୋଇ

---

**ସୁନ୍ନତ** ଯିହୂଦୀମାନଙ୍କ ଧର୍ମର ଏକ ଚିହ୍ନସ୍ୱରୂପ

ନିର୍ମାଣ ହୋଇଛି। ଖ୍ରୀଷ୍ଟ ସେ ଭବନକୁ ପ୍ରଭୁଙ୍କଠାରେ
ଗୋଟିଏ ପବିତ୍ର ମନ୍ଦିର ହେବା ପାଇଁ ବୃଦ୍ଧି କରାଉଛନ୍ତି।
୨୨ଯୀଶୁ ଖ୍ରୀଷ୍ଟଙ୍କଠାରେ ତୁମ୍ଭେମାନେ ଅନ୍ୟମାନଙ୍କ ସହିତ
ଏକତ୍ର ନିର୍ମିତ ହେଉଅଛ। ତୁମ୍ଭେମାନେ ଏପରି ଗୋଟିଏ
ମନ୍ଦିର ରୂପେ ନିର୍ମିତ ହେଉଛ, ଯେଉଁଠାରେ ଆତ୍ମାଙ୍କ
ମାଧ୍ୟମରେ ପରମେଶ୍ୱର ବାସ କରନ୍ତି।

### ଅଣଯିହୂଦୀଙ୍କ ମଧ୍ୟରେ ପାଉଲଙ୍କ ପ୍ରଚାର କାର୍ଯ୍ୟ

**୩** ଅତଏବ, ମୁଁ ପାଉଲ, ତୁମ୍ଭ ଅଣଯିହୂଦୀମାନଙ୍କ ଲାଗି
ଖ୍ରୀଷ୍ଟ ଯୀଶୁଙ୍କର ବନ୍ଦୀ ଅଟେ। ୨ତୁମ୍ଭେମାନେ ଶୁଣିଥିବ,
ପରମେଶ୍ୱର ତାହାଙ୍କର ମହାନ ଅନୁଗ୍ରହରେ ମୋତେ ଏହି
ବିଶେଷ କାର୍ଯ୍ୟ ଦେଇଅଛନ୍ତି, ଯେପରି ମୁଁ ତୁମ୍ଭମାନଙ୍କୁ
ସାହାଯ୍ୟ କରିପାରେ। ୩ପରମେଶ୍ୱର ମୋ' ନିକଟରେ
ତାହାଙ୍କର ଗୁପ୍ତ ଯୋଜନା ପ୍ରକାଶ କରିଛନ୍ତି। ସେ ମୋତେ
ଯାହା ଦେଖାଇଛନ୍ତି, ସେ ବିଷୟରେ ମୁଁ ଅଳ୍ପ କିଛି ଲେଖି
ସାରିଛି। ୪ସେଗୁଡ଼ିକ ଯଦି ତୁମ୍ଭେମାନେ ପଢ଼, ତାହେଲେ
ଦେଖିବ ଯେ ଖ୍ରୀଷ୍ଟଙ୍କ ସମ୍ବନ୍ଧରେ ଗୁପ୍ତ ସତ୍ୟ ବିଷୟରେ
ମୁଁ ପ୍ରକୃତରେ ବୁଝିଛି। ୫ପୂର୍ବବର୍ତ୍ତୀ ସମୟର ଲୋକମାନଙ୍କୁ
ଏହି ଗୁପ୍ତ ସତ୍ୟ ବିଷୟରେ କୁହା ଯାଇ ନ ଥିଲା। କିନ୍ତୁ
ପରମେଶ୍ୱର ଏବେ ନିଜର ପବିତ୍ର ପ୍ରେରିତ ଓ
ଭବିଷ୍ୟଦ୍‌ବକ୍ତାମାନଙ୍କ ନିକଟରେ ପବିତ୍ରଆତ୍ମାଙ୍କ ମାଧ୍ୟମରେ
ସେହି ଗୁପ୍ତ ସତ୍ୟଟି ପ୍ରକାଶ କରିଛନ୍ତି। ୬ସେହି ଗୁପ୍ତ
ସତ୍ୟଟି ହେଲା: ଯିହୂଦୀମାନଙ୍କ ସହିତ ଅଣଯିହୂଦୀମାନେ
ମଧ୍ୟ ପରମେଶ୍ୱରଙ୍କ ସମସ୍ତ ବିଷୟର ଅଧିକାରୀ ହେବେ।
ଅଣଯିହୂଦୀମାନେ ଯିହୂଦୀମାନଙ୍କ ସହିତ ସେହି ଏକ ଶରୀରଭୁକ୍ତ
ଅଟନ୍ତି। ଖ୍ରୀଷ୍ଟ ଯୀଶୁଙ୍କଠାରେ ପରମେଶ୍ୱର ଯେ ସମସ୍ତ
ପ୍ରତିଜ୍ଞା ଦେଇଅଛନ୍ତି, ସେମାନେ ଖ୍ରୀଷ୍ଟଙ୍କ ଠାରେ ବିଶ୍ୱାସ
କରୁଥିବା ହେତୁ ସେହି ସମସ୍ତର ସହଭାଗୀ ଅଟନ୍ତି।
ସୁସମାଚାର ହେତୁରୁ ଅଣଯିହୂଦୀମାନେ ଏହି ସବୁର ଅଧିକାରୀ
ଅଟନ୍ତି।

୭ପରମେଶ୍ୱରଙ୍କ ବିଶେଷ ଅନୁଗ୍ରହର ଦାନ ଦ୍ୱାରା ମୁଁ
ସୁସମାଚାର କହିବା ପାଇଁ ଜଣେ ସେବକ ହେଲି। ପରମେଶ୍ୱର
ତାହାଙ୍କର କାର୍ଯ୍ୟକାରୀ ଶକ୍ତି ବଳରେ ମୋତେ ଏହି
ଅନୁଗ୍ରହ ଦାନ କଲେ। ୮ପରମେଶ୍ୱରଙ୍କ ଲୋକମାନଙ୍କ
ଭିତରେ ମୁଁ ଅତି କ୍ଷୁଦ୍ର ଲୋକ ଥିଲି, କିନ୍ତୁ ପରମେଶ୍ୱର
ମୋତେ ଏହି ଅନୁଗ୍ରହଦାନ ଦେଲେ ଯେପରି ମୁଁ
ଅଣଯିହୂଦୀମାନଙ୍କୁ ଖ୍ରୀଷ୍ଟଙ୍କ ଐଶ୍ୱର୍ଯ୍ୟପୂର୍ଣ୍ଣ ସୁସମାଚାର କହିବି।
ସେହି ଐଶ୍ୱର୍ଯ୍ୟଗୁଡ଼ିକ ଏତେ ମହାନ ଯେ ତାହାକୁ ସମ୍ପୂର୍ଣ୍ଣରୂପେ
ବୁଝିବା ସମ୍ଭବପର ନୁହେଁ। ୯ପରମେଶ୍ୱରଙ୍କ ଗୁପ୍ତ ସତ୍ୟକୁ
ସମସ୍ତଙ୍କୁ କହିବା ଦାୟିତ୍ୱ ପରମେଶ୍ୱର ମୋତେ ପ୍ରଦାନ
କଲେ। ଏହି ନିଗୂଢ଼ ସତ୍ୟ ସୃଷ୍ଟିର ଆରମ୍ଭରୁ ସମସ୍ତ
ପଦାର୍ଥର ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଭିତରେ ଗୁପ୍ତ ରହିଥିଲା।
୧୦ମଣ୍ଡଳୀ ଦ୍ୱାରା ପରମେଶ୍ୱରଙ୍କ ବହୁବିଧ ଜ୍ଞାନ, ସ୍ୱର୍ଗର
କର୍ତ୍ତାପଣ ଓ ଅଧିକାର ପ୍ରାପ୍ତ ବ୍ୟକ୍ତିମାନଙ୍କୁ ବର୍ତ୍ତମାନ
ଜଣାଇବା ପରମେଶ୍ୱରଙ୍କର ଉଦ୍ଦେଶ୍ୟ ଥିଲା। ସେମାନେ
ମଣ୍ଡଳୀ ଯୋଗୁ ଏହା ଜାଣି ପାରିବେ। ୧୧ସମୟର ପ୍ରାରମ୍ଭରୁ
ପରମେଶ୍ୱରଙ୍କର ଯେଉଁ ଯୋଜନା ଅଛି, ଏହା ତାହା ସହିତ
ମେଳ ଖାଉଛି। ଆମ୍ଭ ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କ ମାଧ୍ୟମରେ
ପରମେଶ୍ୱର ଏହା ସମ୍ପନ୍ନ କଲେ। ୧୨ଖ୍ରୀଷ୍ଟଙ୍କଠାରେ, ବିଶ୍ୱାସ
ଦ୍ୱାରା, ନିର୍ଭୟରେ ପରମେଶ୍ୱରଙ୍କ ସମ୍ମୁଖକୁ ଯିବା ପାଇଁ
ଆମ୍ଭର ସ୍ୱାଧୀନତା ଅଛି। ୧୩ସେଥିପାଇଁ ମୁଁ କୁହେ ଯେ
ତୁମ୍ଭମାନଙ୍କ ପାଇଁ ମୁଁ ଯାତନା ଭୋଗୁ ଥିବାରୁ ହତୋତ୍ସାହିତ
ହୁଅ ନାହିଁ। ମୋର ଏହି ଯାତନାଗୁଡ଼ିକ ତୁମ୍ଭ ନିମନ୍ତେ
ଗୌରବଜନକ ହେବ।

### ଯୀଶୁ ଖ୍ରୀଷ୍ଟଙ୍କ ପ୍ରେମ

୧୪ସେଥିପାଇଁ ପ୍ରାର୍ଥନାରେ ମୁଁ ପରମପିତାଙ୍କ ଆଗରେ
ନତମସ୍ତକ ହୁଏ। ୧୫ପରମେଶ୍ୱର ସ୍ୱର୍ଗ ଓ ପୃଥିବୀର ସମସ୍ତ
ପରିବାରକୁ ପ୍ରକୃତ ନାମ କରଣ କରନ୍ତି। ୧୬ମୁଁ ପରମେଶ୍ୱରଙ୍କ
ଠାରେ ପ୍ରାର୍ଥନା କରେ, ଯେପରି ସେ ତାହାଙ୍କ ସମସ୍ତ
ମହିମା ସହିତ ତୁମ୍ଭମାନଙ୍କୁ ଆତ୍ମିକଭାବେ ଶକ୍ତିଯୁକ୍ତ ହେବା
ପାଇଁ ତାହାଙ୍କର ଶକ୍ତି ପ୍ରଦାନ କରିବେ। ସେ ପବିତ୍ରଆତ୍ମାଙ୍କ
ଦ୍ୱାରା ତୁମ୍ଭମାନଙ୍କୁ ସେହି ଶକ୍ତି ପ୍ରଦାନ କରିବେ। ୧୭ତୁମ୍ଭ
ବିଶ୍ୱାସ ହେତୁ ତୁମ୍ଭ ହୃଦୟରେ ଖ୍ରୀଷ୍ଟ ବାସ କରନ୍ତୁ। ତୁମ୍ଭ
ଜୀବନ ପ୍ରେମରେ ଶକ୍ତିଶାଳୀ ହେଉ ଏବଂ ପ୍ରେମରେ ଗଢ଼ି
ଉଠୁ। ୧୮ଖ୍ରୀଷ୍ଟଙ୍କ ପ୍ରେମର ମହାନତାକୁ ହୃଦୟଙ୍ଗମ କରିବା
ପାଇଁ ତୁମ୍ଭକୁ ଓ ପରମେଶ୍ୱରଙ୍କ ପବିତ୍ରୀକୃତ ଲୋକମାନଙ୍କୁ
ବୁଝିବା ଶକ୍ତି ମିଳୁ। ଯେପରି ତୁମ୍ଭେ ଏହା ମଧ୍ୟ ବୁଝି ପାରି
ଯେ, ସେହି ପ୍ରେମ କେତେ ଓସାର, କେତେ ଲମ୍ବା,
କେତେ ଉଚ୍ଚ, ଓ କେତେ ଗଭୀର। ୧୯ଯୀଶୁ ଖ୍ରୀଷ୍ଟଙ୍କ
ପ୍ରେମ ମନୁଷ୍ୟର ପ୍ରେମଠାରୁ ଅଧିକ ମହାନ୍। କିନ୍ତୁ ମୁଁ
ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରେ ଯେ, ତୁମ୍ଭେ ସେହି
ପ୍ରେମ ବିଷୟରେ ଜାଣିବା ପାଇଁ ସକ୍ଷମ ହୁଅ, ତେବେ
ଯାଇ ତୁମ୍ଭେ ପରମେଶ୍ୱରଙ୍କଠାରେ ପୂର୍ଣ୍ଣ ହୋଇ ଯିବ।
୨୦ଆମ୍ଭ ଭିତରେ ପରମେଶ୍ୱରଙ୍କ ଯେଉଁ ଶକ୍ତି କାର୍ଯ୍ୟ
କରିଥାଏ, ତାହା ଆମ୍ଭର ମାଗିବା ବା ଭାବିବାଠାରୁ ଯଥେଷ୍ଟ
ଅଧିକ ଏବଂ ପରମେଶ୍ୱର ତାହାଠାରୁ ଅଧିକ ଶକ୍ତିର କାର୍ଯ୍ୟ
କରି ପାରନ୍ତି। ୨୧ମଣ୍ଡଳୀରେ ଓ ଖ୍ରୀଷ୍ଟଙ୍କ ଦ୍ୱାରା ସଦାସର୍ବଦା
ତାହାଙ୍କର ମହିମା ହେଉ। ଆମେନ୍।

### ଶରୀରର ଏକତା

**୪** ମୁଁ ପ୍ରଭୁଙ୍କର ହୋଇ ଥିବାରୁ କାରାଗାରରେ ବନ୍ଦୀରୂପେ
ଅଛି। ତୁମ୍ଭମାନଙ୍କୁ ପରମେଶ୍ୱର ନିଜ ଲୋକ ବୋଲି
ବାଛିଛନ୍ତି। ଅତଏବ ପରମେଶ୍ୱରଙ୍କ ଲୋକମାନେ ଯେଉଁଭଳି
ଜୀବନଯାପନ କରିବା ଉଚିତ, ତୁମ୍ଭେମାନେ ସେହିଭଳି
ଜୀବନଯାପନ କର। ୨ସବୁବେଳେ ନମ୍ର, ଭଦ୍ର, ଧୈର୍ଯ୍ୟବାନ
ହୁଅ। ପରସ୍ପରକୁ ପ୍ରେମରେ ଗ୍ରହଣ କର। ୩ତୁମ୍ଭେ
ସମସ୍ତେ ପବିତ୍ରଆତ୍ମାଙ୍କ ଦ୍ୱାରା ଶାନ୍ତିର ବନ୍ଧନରେ ଏକତ୍ର
ହୋଇ ରୁହ। ଏହିଭଳି ରହିବା ପାଇଁ ପାରୁ ପର୍ଯ୍ୟନ୍ତ
ଚେଷ୍ଟା କର। ଆତ୍ମାଦତ୍ତ ଶାନ୍ତି ତୁମ୍ଭକୁ ବାନ୍ଧି ରଖୁ।
୪ଶରୀର ଏକ, ପବିତ୍ରଆତ୍ମା ମଧ୍ୟ ଏକ। ପରମେଶ୍ୱର
ତୁମ୍ଭମାନଙ୍କୁ ଏକ ଭରସା ପାଇବା ପାଇଁ ଡାକି ଥିଲେ।

୫ପ୍ରଭୁ ଏକ, ବିଶ୍ୱାସ ଏକ ଓ ଡୁବନ ମଧ୍ୟ ଏକ।
୬ପରମେଶ୍ୱର ଜଣେ ଓ ସେ ହେଉଛନ୍ତି ପ୍ରତ୍ୟେକ ବିଷୟର
ପିତା। ସେ ସମସ୍ତଙ୍କୁ ଶାସନ କରନ୍ତି, ଓ ସମସ୍ତଙ୍କର
ସ୍ୱାମୀ ଅଟନ୍ତି। ସେ ସବୁଠାରେ ଓ ସମସ୍ତଙ୍କ ଅନ୍ତରରେ
ଅଛନ୍ତି।

୭ଖ୍ରୀଷ୍ଟ ଆମ୍ଭ ପ୍ରତ୍ୟେକଙ୍କୁ ଗୋଟିଏ ବିଶେଷ ଅନୁଗ୍ରହ
ଦାନ ଦେଇଛନ୍ତି। ୮ପ୍ରତ୍ୟେକ ଲୋକ ଖ୍ରୀଷ୍ଟଙ୍କ ଇଚ୍ଛାନୁସାରେ
ସେହି ଦାନ ପାଇଛନ୍ତି। ଏଥି ନିମନ୍ତେ ଶାସ୍ତ୍ର କୁହେ:

"ସେ ଆକାଶରେ ଉଚ୍ଚକୁ ଗଲେ; ସେ ବନ୍ଦୀମାନଙ୍କୁ
ନିଜ ସହିତ ନେଲେ, ଓ ସେ ଲୋକମାନଙ୍କୁ
ଅନୁଗ୍ରହ ଦାନ ଦେଲେ।"

ଗୀତସଂହିତା ୬୮:୧୮

୯"ଉଚ୍ଚକୁ ଗଲେ" କହିବାର ଅର୍ଥ ଯେ, ସେ ପ୍ରଥମେ
ପୃଥିବୀର ନୀଚ ସ୍ଥାନକୁ ଆସିଥିଲେ। ୧୦ଯେଉଁ ଖ୍ରୀଷ୍ଟ
ନୀଚକୁ ଆସିଥିଲେ ସେ ହିଁ ଉଚ୍ଚକୁ ଗଲେ। ସେ ଉଚ୍ଚତମ
ଆକାଶକୁ ଗଲେ ଯେପରି ସେ ନିଜକୁ ପୂର୍ଣ୍ଣ କରନ୍ତି।
୧୧ଏବଂ ସେହି ଖ୍ରୀଷ୍ଟ ଲୋକମାନଙ୍କୁ ଦାନ ଦେଲେ ଅର୍ଥାତ୍
କେତେକ ଲୋକଙ୍କୁ ସେ ପ୍ରେରିତ ହେବା ପାଇଁ, କେତେକଙ୍କୁ
ଭବିଷ୍ୟଦ୍‌ବକ୍ତା ହେବା ପାଇଁ, କେତେକଙ୍କୁ ସୁସମାଚାର
କହିବା ପାଇଁ ଓ କେତେକଙ୍କୁ ପରମେଶ୍ୱରଙ୍କ ଲୋକମାନଙ୍କର
ଯତ୍ନ ନେବା ପାଇଁ ଓ ଶିକ୍ଷା ଦେବା ପାଇଁ। ୧୨ପରମେଶ୍ୱରଙ୍କ
ଲୋକମାନେ ତାହାଙ୍କର ସେବା କରିବା ପାଇଁ ଓ ଖ୍ରୀଷ୍ଟଙ୍କ
ଶରୀରକୁ ସୁଦୃଢ଼ କରିବା ପାଇଁ ପ୍ରସ୍ତୁତ ହେବେ ବୋଲି
ଖ୍ରୀଷ୍ଟ ଏହି ଅନୁଗ୍ରହ ଦାନ ସେମାନଙ୍କୁ ଦେଲେ। ଏହା
ଦ୍ୱାରା ଖ୍ରୀଷ୍ଟଙ୍କ ଶରୀରସ୍ୱରୂପ ଆମ୍ଭେମାନେ ମଧ୍ୟ ଦୃଢ଼ ଓ
ବଳବାନ ହେବା। ୧୩ସମସ୍ତ ଲୋକେ ପରମେଶ୍ୱରଙ୍କ ପୁତ୍ରଙ୍କ
ବିଷୟକ ସମାନ ବିଶ୍ୱାସ ଓ ସମାନ ଜ୍ଞାନ ସହିତ ଏକତ୍ର
ହେବା ପର୍ଯ୍ୟନ୍ତ ଏହି କାମ ଚାଲିଥିବା ନିତାନ୍ତ ଆବଶ୍ୟକ,
ଯେପର୍ଯ୍ୟନ୍ତ ଆମ୍ଭେ ଖ୍ରୀଷ୍ଟଙ୍କ ସଦୃଶ ସିଦ୍ଧ ଓ ସମ୍ପୂର୍ଣ୍ଣ ନ
ହୋଇଛୁ, ସେ ପର୍ଯ୍ୟନ୍ତ ଆମ୍ଭକୁ ବୃଦ୍ଧି ପାଇ ପୂର୍ଣ୍ଣବୟସ୍କ
ହେବାକୁ ପଡ଼ିବ।

୧୪ତାହେଲେ ଆମ୍ଭେ ଆଉ ଶିଶୁ ହୋଇ ରହିବା ନାହିଁ।
ସମୁଦ୍ରରେ ଜାହାଜ ଲହରୀ ହେତୁ ସ୍ଥାନ ପରିବର୍ତ୍ତନ କଲା
ଭଳି ଆମ୍ଭକୁ ପ୍ରତାରଣା କରିବାକୁ ଚେଷ୍ଟା କରୁଥିବା
ଲୋକମାନଙ୍କର ପ୍ରତ୍ୟେକ ପ୍ରକାରର ନୂତନ ଉପଦେଶ
ଦ୍ୱାରା ଆମ୍ଭେ ଏଣେତେଣେ ଆଉ ଭାସି ଯିବା ନାହିଁ। ଏଭଳି
ଲୋକେ ମନ୍ଦ ରାସ୍ତା ଗ୍ରହଣ କରିବା ପାଇଁ ଲୋକଙ୍କୁ ଛଳ
ଓ ଧୂର୍ତ୍ତ ଯୋଜନାରେ ଛନ୍ଦନ୍ତି, ୧୫ନା! ଆମ୍ଭେ ପ୍ରେମ
ସହକାରେ ସତ୍ୟ କହିବା। ଆମ୍ଭେ ପ୍ରତ୍ୟେକ ବିଷୟରେ
ଖ୍ରୀଷ୍ଟଙ୍କ ଭଳି ବୃଦ୍ଧିପ୍ରାପ୍ତ ହେବା। ଖ୍ରୀଷ୍ଟ ଆମ୍ଭର ମସ୍ତକ ଓ
ଆମ୍ଭେ ସମସ୍ତେ ତାହାଙ୍କର ଶରୀର। ୧୬ସମ୍ପୂର୍ଣ୍ଣ ଶରୀର
ଯୀଶୁ ଖ୍ରୀଷ୍ଟଙ୍କ ଉପରେ ନିର୍ଭରଶୀଳ। ଶରୀରର ପ୍ରତ୍ୟେକ
ଅଙ୍ଗ ଏକାଠି ଯୋଡ଼ି ହୋଇ ରହିଛନ୍ତି। ପ୍ରତ୍ୟେକ ଅଙ୍ଗ
ନିଜ ନିଜର କାର୍ଯ୍ୟ କରନ୍ତି। ଏହାଦ୍ୱାରା ସମଗ୍ର ଶରୀର
ପ୍ରେମରେ ବୃଦ୍ଧି ପାଇ ଶକ୍ତିଶାଳୀ ହୁଏ।

## କିଭଳି ଜୀବନ-ଯାପନ କରିବା ଉଚିତ

୧୭ପ୍ରଭୁଙ୍କ ନାମରେ ମୁଁ ସତର୍କ କରି ଦେଉଛି ଯେ
ଅବିଶ୍ୱାସୀ ଲୋକଙ୍କ ଭଳି ଜୀବନଯାପନ କର ନାହିଁ।
ସେମାନଙ୍କ ବିଚାରର କିଛି ମୂଲ୍ୟ ନାହିଁ। ୧୮ସେମାନେ କିଛି
ବୁଝନ୍ତି ନାହିଁ କି କିଛି ଜାଣନ୍ତି ନାହିଁ, କାରଣ ସେମାନେ
ଶୁଣିବା ପାଇଁ ମନା କରନ୍ତି। ସେଥିପାଇଁ ପରମେଶ୍ୱର
ପ୍ରଦତ୍ତ ଜୀବନ ସେମାନେ ପାଇ ପାରିବେ ନାହିଁ। ୧୯ସେମାନଙ୍କର
ଲଜ୍ଜା ନାହିଁ। ସେମାନେ ମନ୍ଦ କାର୍ଯ୍ୟ କରି ଜୀବନ ଯାପନ
କରନ୍ତି। ସବୁ ପ୍ରକାରର ମନ୍ଦ କାମ ଅଧିକରୁ ଅଧିକ
ରୂପେ କରିବାକୁ ସେମାନଙ୍କର ଇଚ୍ଛା। ୨୦କିନ୍ତୁ ତୁମ୍ଭେମାନେ
ଖ୍ରୀଷ୍ଟଙ୍କ ବିଷୟରେ ଯାହା ଶିଖିଲ, ସେଗୁଡ଼ିକ ଏହି ମନ୍ଦ
କାମ ଠାରୁ ଭିନ୍ନ। ୨୧ମୁଁ ଜାଣେ ତୁମ୍ଭେମାନେ ତାହାଙ୍କ
ବିଷୟରେ ଶୁଣିଛ। ତୁମ୍ଭେ ତାହାଙ୍କଠାରେ ଅଛ, ସେଥିପାଇଁ
ତୁମ୍ଭକୁ ସତ୍ୟ ଶିକ୍ଷା ଦିଆଯାଇଛି। ସେହି ସତ୍ୟ ଯୀଶୁ
ଖ୍ରୀଷ୍ଟଙ୍କଠାରେ ଅଛି। ୨୨ତୁମ୍ଭମାନଙ୍କୁ ଶିକ୍ଷା ଦିଆଯାଇଛି ଯେ
ତୁମ୍ଭର ପୁରୁଣା ଆଚରଣ ଓ ତୁମ୍ଭର ପୂର୍ବର ଜୀବନଯାପନ
ଛାଡ଼ି ଦିଅ। କାରଣ ଲୋକମାନେ ମନ୍ଦକାର୍ଯ୍ୟ କରିବାକୁ
ଭଲ ପାଇବାରୁ ତଦ୍ୱାରା ପ୍ରବଞ୍ଚିତ ହୁଅନ୍ତି ଓ ତାହା
ଫଳରେ ପୁରୁଣାରୂପ ଦ୍ୱାରା ମନ୍ଦ ଆତୁର ହୋଇଯାଏ।
୨୩ମାତ୍ର, ତୁମ୍ଭମାନଙ୍କୁ ହୃଦୟରେ ଓ ଭାବନାରେ ନୂତନ
ହେବାକୁ ପଡ଼ିବ। ୨୪ତୁମ୍ଭକୁ ସମ୍ପୂର୍ଣ୍ଣ ନୂତନ ବ୍ୟକ୍ତି ସ୍ୱରୂପ
ହୋଇ ପରମେଶ୍ୱରଙ୍କ ଭଳି ପ୍ରକୃତରେ ଭଲ ଓ ପବିତ୍ର
ହେବାକୁ ପଡ଼ିବ।

୨୫ଅତଏବ ତୁମ୍ଭେ ମିଛ କହିବା ବନ୍ଦ କର। ସର୍ବଦା
ପରସ୍ପରକୁ ସତ୍ୟ କୁହ, ଯେହେତୁ ଆମ୍ଭେ ସମସ୍ତେ
ଗୋଟିଏ ଦେହର ଅଙ୍ଗପ୍ରତ୍ୟଙ୍ଗ ଅଟୁ। ୨୬ଯେତେବେଳେ
ତୁମ୍ଭର କ୍ରୋଧ ହୁଏ, ସେତେବେଳେ ଅତି କ୍ରୋଧୀ ହୋଇ
ପାପ କର ନାହିଁ। ୨୭ଦିନସାରା କ୍ରୋଧ କର ନାହିଁ। ତୁମ୍ଭକୁ
ପରାସ୍ତ କରିବା ନିମନ୍ତେ ଶୟତାନକୁ ସୁଯୋଗ ଦିଅନାହିଁ।
୨୮ଚୋର ଚୋରି କରିବା ବନ୍ଦ କରୁ। ସେ କାମ କରିବା
ଆରମ୍ଭ କରୁ ଓ ନିଜ ହାତକୁ ଭଲ କାମରେ ଲଗାଉ।
ତାହେଲେ ସେ ଗରିବ ଲୋକମାନଙ୍କୁ କିଛି ସାହାଯ୍ୟ
କରିପାରିବ।

୨୯ଯେତେବେଳେ ତୁମ୍ଭେ କଥାବାର୍ତ୍ତା କର, ସେତେବେଳେ
କୌଣସି ଖରାପ ଶବ୍ଦ ଉଚ୍ଚାରଣ କର ନାହିଁ। ଏପରି କଥା
କୁହ, ଯାହା ଲୋକମାନଙ୍କର ପ୍ରୟୋଜନ ଥିବ ଓ ସେମାନଙ୍କୁ
ଶକ୍ତିଶାଳୀ କରିବା ପାଇଁ ସାହାଯ୍ୟ କରିପାରୁଥିବ। ଏହାଦ୍ୱାରା
ଯେଉଁମାନେ ତୁମ୍ଭମାନଙ୍କର କଥା ଶୁଣନ୍ତି, ସେମାନଙ୍କର
ମଙ୍ଗଳ ହେବ। ୩୦ପବିତ୍ରଆତ୍ମାଙ୍କୁ ଦୁଃଖ ଦିଅ ନାହିଁ। ତୁମ୍ଭେ
ଯେ ପରମେଶ୍ୱରଙ୍କର ଅଟ ଏହା ସେ ଆତ୍ମା ପ୍ରମାଣ
ଦିଅନ୍ତି। ଉଚିତ ସମୟ ଉପସ୍ଥିତ ହେଲେ ପରମେଶ୍ୱର
ତୁମ୍ଭକୁ ସ୍ୱାଧୀନତା ପ୍ରଦାନ କରିବେ। ଏହା ଦର୍ଶାଇବା ପାଇଁ
ସେ ପବିତ୍ରଆତ୍ମାଙ୍କୁ ଦେଇଅଛନ୍ତି। ୩୧କେବେହେଲେ କଟୁ
ହୁଅ ନାହିଁ, ରାଗ ନାହିଁ (କ୍ରୋଧ କର ନାହିଁ), ଉତ୍ତେଜିତ
ହୁଅ ନାହିଁ। କ୍ରୋଧରେ ପାଟି କର ନାହିଁ, ବା ଅନ୍ୟମାନଙ୍କୁ
ଆଘାତ ଦେଲାଭଳି କଥା କୁହ ନାହିଁ। କେବେହେଲେ ମନ୍ଦ
କାମ କର ନାହିଁ। ୩୨ପରସ୍ପର ପ୍ରତି ଦୟାଭାବ ଓ ପ୍ରେମ

ଭାବ ରଖ । ଯେପର ଖ୍ରୀଷ୍ଟଙ୍କଠାରେ ପରମେଶ୍ୱର ତୁମ୍ଭମାନଙ୍କୁ
କ୍ଷମା କଲେ, ସେହ ଭଳ ତୁମ୍ଭେମାନେ ପରସ୍ପରକୁ କ୍ଷମା
ଦଅ ।

## ଜ୍ୟୋତିର୍ମୟ ଜୀବନ

**୫** ତୁମ୍ଭେମାନେ ପରମେଶ୍ୱରଙ୍କ ପ୍ରିୟ ସନ୍ତାନ । ଅତଏବ
ପରମେଶ୍ୱରଙ୍କ ଭଳ ହେବାକୁ ଚେଷ୍ଟା କର । ୨ପ୍ରେମପୂର୍ଣ୍ଣ
ଜୀବନଯାପନ କର । ଖ୍ରୀଷ୍ଟ ଆମ୍ଭକୁ ଯେପର ପ୍ରେମ
କରଛନ୍ତ, ତୁମ୍ଭେମାନେ ମଧ ସେହଭଳ ଅନ୍ୟମାନଙ୍କୁ ପ୍ରେମ
କର । ଖ୍ରୀଷ୍ଟ ଆମ୍ଭମାନଙ୍କ ନମନ୍ତେ ଆପଣାକୁ ଦେଲେ, ସେ
ଆମ୍ଭମାନଙ୍କ ନମନ୍ତେ ପରମେଶ୍ୱରଙ୍କ ନକଟରେ ମଧୁର-
ସୁଗନ୍ଧି-ଯୁକ୍ତ ଭେଟି ଓ ପରମେଶ୍ୱରଙ୍କ ବଳ ସରୂପ
ଅଟନ୍ତ ।
୩ତୁମ୍ଭ ଭିତରେ କୌଣସି ଯୌନ-ପାପ, କୌଣସି ପ୍ରକାର
ମନ୍ଦ କାମ, ଏବଂ ଲୋଭ ଆଦୌ ନ ରହୁ । କାରଣ
ଏଗୁଡ଼ିକ ପରମେଶ୍ୱରଙ୍କ ପବତ୍ର ଲୋକମାନଙ୍କ ନମନ୍ତେ
ଉପଯୁକ୍ତ ନୁହେଁ । ୪ତୁମ୍ଭ ଭିତରେ କୌଣସି ମନ୍ଦ କଥା,
ମୂର୍ଖତାପୂର୍ଣ୍ଣ କଥାବାର୍ତ୍ତା ବା ଅସତ୍ ପରହାସ ଯେପର ନ
ହୁଏ । ଏଗୁଡ଼ିକ ତୁମ୍ଭ ପାଇଁ ଅନୁଚତ । କନ୍ତୁ ତୁମ୍ଭେ
ପରମେଶ୍ୱରଙ୍କୁ ସର୍ବଦା ଧନ୍ୟବାଦ ଦେଉଥିବା ଉଚତ ।
୫ଗୋଟିଏ ବଷୟ ତୁମ୍ଭେ ନଶ୍ଚିତ ଭାବରେ ଜାଣିଥାଅ ଯେ,
ଯେଉଁ ଲୋକ ଯୌନ ପାପ ଗୁଡ଼ିକରେ ଲପ୍ତ ରହେ, ମନ୍ଦ
କର୍ମ କରେ ବା ଅତିଶୟ ଲୋଭ କରେ, ସେ ଲୋକ
ପାଇଁ ପରମେଶ୍ୱର ଓ ଖ୍ରୀଷ୍ଟଙ୍କ ରାଜ୍ୟରେ କୌଣସି ସ୍ଥାନ
ନାହିଁ । କାରଣ ଯେଉଁ ଲୋକ ସର୍ବଦା ନଜ ନମନ୍ତେ
କେବଳ ସମସ୍ତ ବଷୟ ଅଧିକରୁ ଅଧିକ ପାଇବାକୁ ଇଚ୍ଛା
କରେ, ସେ ଭଣ୍ଡ ଦେବତାମାନଙ୍କର ପୂଜା କରେ ।
୬ମିଥ୍ୟାକଥା କହ କେହ ତୁମ୍ଭକୁ ପ୍ରତାରଣା ନ କରୁ ।
ଏ ବଷୟରେ ସଚେତନ ରହ । ଯେଉଁମାନେ ଅବାଧ
ହୋଇ ଏ ସମସ୍ତ ମନ୍ଦ କର୍ମ କରନ୍ତ, ସେମାନଙ୍କ ଉପରେ
ପରମେଶ୍ୱର କ୍ରୋଧାନ୍ୱିତ ହୁଅନ୍ତ । ୭ଅତଏବ ତୁମ୍ଭେ ମଧ
ଏଭଳ ମନ୍ଦ କର୍ମ ସେହ ଅବଜ୍ଞାକାରୀଙ୍କ ସହତ କର
ନାହିଁ । ୮ଅତୀତରେ ତୁମ୍ଭେ ଅନ୍ଧକାରରେ ଥିଲ, କନ୍ତୁ ଏବେ
ତୁମ୍ଭେ ପ୍ରଭୁଙ୍କଠାରେ ଆଲୋକରେ ଅଛ । ଅତଏବ ଆଲୋକର
ସନ୍ତାନମାନଙ୍କ ଭଳ ଆଚରଣ କର । ୯ଆଲୋକ ପ୍ରତ୍ୟେକ
ପ୍ରକାରର ଉତ୍ତମ ଭାବ, ଉଚତ ଜୀବନଯାପନ ଓ ସତ୍ୟ
ଫଳ ଉତ୍ପନ୍ନ କରେ । ୧୦କେଉଁ ବଷୟଗୁଡ଼ିକ ଈଶ୍ୱରଙ୍କ
ସନ୍ତୋଷ ଜନ୍ମାଏ, ସେଗୁଡ଼ିକ ଶିଖିବାକୁ ଚେଷ୍ଟା କର ।
ଅନ୍ଧକାରରେ ଲୋକେ ଯେଉଭଳ କାମ କରନ୍ତ, ସେଗୁଡ଼ିକୁ
କର ନାହିଁ । ସେଗୁଡ଼ିକ କରବା ଦ୍ୱାରା କଛ ଲାଭ ହୁଏ
ନାହିଁ । ୧୧ସର୍ବଦା ଭଲ କାମ କର, ଅନ୍ଧକାରର କର୍ମଗୁଡ଼ିକର
ଅସାରତା ପ୍ରମାଣିତ କର । ୧୨ଅନ୍ଧକାରରେ ଯେ ଲୋକେ
ଯେଉଁ ଗୁପ୍ତ କର୍ମ ସବୁ କରନ୍ତ, ସେଗୁଡ଼ିକ କହବା ପାଇଁ
ମଧ ଲଜ୍ଜା ଲାଗେ । ୧୩କନ୍ତୁ ଆଲୋକ ସମ୍ମୁଖରେ ଏଗୁଡ଼ିକୁ
ରଖିଲେ, ଏସବୁ କର୍ମର ସମସ୍ତ ମନ୍ଦତା ସ୍ପଷ୍ଟ ଭାବେ
ପ୍ରକାଶିତ ହୁଏ । ୧୪ଯାହା ସହଜରେ ପ୍ରକାଶିତ ହୁଏ, ତାହା
ଆଲୋକ । ସେଥିପାଇଁ ଆମ୍ଭେ କହୁ:

"ହେ! ଶୋଇଥିବା ଲୋକ, ଜାଗି ଉଠ ମୃତ୍ୟୁରୁ
ଉଠି ଆସ, ଏବଂ ଖ୍ରୀଷ୍ଟ ତୁମ୍ଭକୁ ଆଲୋକତ
କରବେ ।"

୧୫ଅତଏବ କପର ଜୀବନ କାଟୁଅଛ, ଏବଷୟରେ
ବଶେଷ ସାବଧାନ ରହ । ନର୍ବୋଧ ଲୋକଙ୍କ ଭଳ
ଜୀବନଯାପନ କର ନାହିଁ । ମାତ୍ର ଜ୍ଞାନୀ ଲୋକଙ୍କ ପର
ଜୀବନଯାପନ କର । ୧୬ଏହା ଅତ୍ୟନ୍ତ ମନ୍ଦ ସମୟ ହୋଇ
ଥିବାରୁ, ଭଲ କାମ କରବା ପାଇଁ ମିଳୁଥିବା କୌଣସି
ସୁଯୋଗକୁ ଛାଡ଼ ନାହିଁ । ୧୭ଅତଏବ ମୂର୍ଖପର ଜୀବନ ନ
କାଟି ପରମେଶ୍ୱର ତୁମ୍ଭଠାରୁ କ'ଣ ଚାହାଁନ୍ତ, ଏହା ଜାଣିବାକୁ
ଚେଷ୍ଟା କର । ୧୮ମଦ ପିଇ ମାତାଲ ହୁଅ ନାହିଁ । କାରଣ
ତାହା ଆତ୍ମିକ ଭାବେ ତୁମ୍ଭର ସଂପୂର୍ଣ୍ଣ ବନାଶ ଘଟାଇବ
ବରଂ ଆତ୍ମାରେ ପରପୂର୍ଣ୍ଣ ହୁଅ । ୧୯ସ୍ତୁତି, ଭଜନ, ଆଧାତ୍ମିକ
ଗୀତ ସହତ ପରସ୍ପରକୁ ଉତ୍ସାହ କର । ପ୍ରଭୁଙ୍କ ଉଦ୍ଦେଶ୍ୟରେ
ତୁମ୍ଭେମାନେ ଆପଣାର ସଂପୂର୍ଣ୍ଣ ହୃଦୟ ସହତ ସଂଗୀତ ସୃଷ୍ଟି
କର ଗୀତ ଗାଉ ଥାଅ । ୨୦ପ୍ରତ୍ୟେକ କଥା ପାଇଁ
ପରମପିତା ପରମେଶ୍ୱରଙ୍କୁ ସର୍ବଦା ଧନ୍ୟବାଦ ଦଅ, ଆମ୍ଭ
ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ନାମରେ ପରମେଶ୍ୱରଙ୍କୁ ଧନ୍ୟବାଦ
ଅର୍ପଣ କର ।

## ପତି ଓ ପତ୍ନୀ

୨୧ପରସ୍ପର ପ୍ରତି ବାଧ୍ୟ ହେବା ପାଇଁ ଇଚ୍ଛୁକ ହୁଅ ।
ତୁମ୍ଭେମାନେ ଖ୍ରୀଷ୍ଟଙ୍କୁ ସମ୍ମାନ କରୁଥିବାରୁ ଏହା କର ।
୨୨ହେ ପତ୍ନୀମାନେ! ତୁମ୍ଭେମାନେ ଯେପର ପ୍ରଭୁଙ୍କ ପ୍ରତି
ବଶୀଭୂତା ହୋଇଛ, ସେପର ନଜ ସ୍ୱାମୀମାନଙ୍କର ବଶୀଭୂତା
ହୁଅ । ୨୩ଖ୍ରୀଷ୍ଟ ଯେପର ମଣ୍ଡଳୀର * ମସ୍ତକ, ସ୍ୱାମୀ
ସେହପର ସ୍ତ୍ରୀର ମସ୍ତକ । ଖ୍ରୀଷ୍ଟୀୟ ମଣ୍ଡଳୀ ହେଉଛ
ଖ୍ରୀଷ୍ଟଙ୍କ ଶରୀର ଓ ସେହ ଶରୀରର ଉଦ୍ଧାରକର୍ତ୍ତା ହେଉଛନ୍ତ
ଖ୍ରୀଷ୍ଟ । ୨୪ମଣ୍ଡଳୀ ଯେପର ଖ୍ରୀଷ୍ଟଙ୍କର ବଶୀଭୂତ ଅଟେ,
ସେହପର ହେ ପତ୍ନୀମାନେ, ତୁମ୍ଭେମାନେ ପ୍ରତ୍ୟେକ କଥାରେ
ନଜ ପତିଙ୍କର ବଶୀଭୂତା ହେବା ଉଚତ ।
୨୫ହେ ପତିଗଣ! ଖ୍ରୀଷ୍ଟ ଯେପର ମଣ୍ଡଳୀକୁ ପ୍ରେମ କର
ତା'ପାଇଁ ନଜ ଜୀବନକୁ ଉତ୍ସର୍ଗ କରଅଛନ୍ତ, ତୁମ୍ଭେମାନେ
ମଧ ସେହପର ନଜ ନଜର ପତ୍ନୀମାନଙ୍କୁ ପ୍ରେମ କର ।
୨୬ମଣ୍ଡଳୀକୁ ପବତ୍ର କରବା ଲାଗି ଯୀଶୁ ଖ୍ରୀଷ୍ଟ ମୃତ୍ୟୁ
ବରଣ କରଥିଲେ । ଯେପର ସୁସମାଚାରର ବାକ୍ୟ ଓ ଜଳ
ଦ୍ୱାରା ଧୌତ କର ସଫା କରବା ପରେ ସେ ପରମେଶ୍ୱରଙ୍କ
କାର୍ଯ୍ୟ ମାଧ୍ୟମରେ ସେ ମଣ୍ଡଳୀକୁ ଶୁଚ ପବତ୍ର କରପାରନ୍ତ ।
୨୭ଯେପର ସମ୍ପୂର୍ଣ୍ଣ ମହମା(ସୌନ୍ଦର୍ଯ୍ୟ)ର ସହତ ମଣ୍ଡଳୀକୁ
ନଜଠାରେ ତାହାଙ୍କ କନ୍ୟା ରୂପେ ଉପସ୍ଥାପିତ କରାଇପାରନ୍ତ,
ଏଥିନମନ୍ତେ ଖ୍ରୀଷ୍ଟ ମୃତ୍ୟୁଭୋଗ କଲେ । ମଣ୍ଡଳୀ ମଧ୍ୟରେ
ଯେପର କୌଣସି ମନ୍ଦ କର୍ମ, ପାପ ବା ଭୁଲ୍‌କାର୍ଯ୍ୟ ଦେଖା
ନ ଯାଏ, ମାତ୍ର ତାହା ପବତ୍ର, ନଖୁନ୍ତ ଓ ନନ୍ଦାଶୂନ୍ୟ
ହୋଇପାରେ, ଏଥିପାଇଁ ସେ ଆପଣାର ପ୍ରାଣ ଦେଲେ ।

---

**ମଣ୍ଡଳୀ** ଯୀଶୁ ଖ୍ରୀଷ୍ଟଙ୍କୁ ମାନୁଥିବା ବଶ୍ୱାସୀ ଜନ-ସମୂହ ।

୨୮ଠିକ୍ ସେହିଭଳି ପତିମାନେ ନିଜ-ନିଜ ପତ୍ନୀଙ୍କୁ ପ୍ରେମ
କରିବା କଥା। ନିଜ ଶରୀରକୁ ପ୍ରେମ କଲା ଭଳି ପ୍ରେମ
କରିବା କଥା। ଯେଉଁ ଲୋକ ନିଜ ପତ୍ନୀକୁ ପ୍ରେମ କରେ,
ସେ ନିଜ ଶରୀରକୁ ପ୍ରେମ କରେ। ୨୯କୌଣସି ଲୋକ
ନିଜ ଶରୀରକୁ କେବେହେଲେ ଘୃଣା କରେ ନାହିଁ।
ପ୍ରତ୍ୟେକ ଲୋକ ନିଜର ଶରୀର ପାଇଁ ଖାଦ୍ୟ ଖାଏ ଓ
ଶରୀରର ଯତ୍ନ ନିଏ। ଠିକ୍ ଏହି କଥା ଖ୍ରୀଷ୍ଟ ମଣ୍ଡଳୀ
ପାଇଁ ମଧ୍ୟ କରନ୍ତି। ୩୦କାରଣ ଆମ୍ଭେ ହେଉଛୁ ତାହାଙ୍କ
ଶରୀରର ଅଂଶ। ୩୧ଶାସ୍ତ୍ର କୁହେ: "ଅତଏବ ଜଣେ ମନୁଷ୍ୟ
ନିଜ ପିତା ଓ ମାତାକୁ ଛାଡ଼ି ତା ପତ୍ନୀ ସହିତ ସଂଲଗ୍ନ
ହୁଏ। ଓ ସେ ଦୁଇଜଣ ଏକ ହୋଇ ଯାଆନ୍ତି।"* ୩୨ଏହି
ସତ୍ୟଟି ଅତି ମହତ୍ତ୍ୱପୂର୍ଣ୍ଣ। ଖ୍ରୀଷ୍ଟ ଓ ମଣ୍ଡଳୀ ବିଷୟରେ ମୁଁ
ଏହା କହୁଅଛି। ୩୩ଯାହା ହେଉନା କାହିଁକି, ତୁମ୍ଭ ଭିତରୁ
ପ୍ରତ୍ୟେକ ଜଣ ନିଜକୁ ଭଲ ପାଇଲା ଭଳି ନିଜ ପତ୍ନୀକୁ
ଭଲ ପାଇବା ଉଚିତ ଓ ପ୍ରତ୍ୟେକ ପତ୍ନୀ ନିଜର ପତିକୁ
ସମ୍ମାନ କରିବା ଉଚିତ।

### ସନ୍ତାନ ଓ ପିତା ମାତା

୬ ହେ ସନ୍ତାନଗଣ! ପ୍ରଭୁଙ୍କ ଇଚ୍ଛାନୁସାରେ ମାତା
ପିତାଙ୍କ କଥାରେ ବାଧ୍ୟ ହୁଅ। କାରଣ ଏହି ପ୍ରକାର
କରିବା ତୁମ୍ଭମାନଙ୍କର ଉଚିତ। ୨କାରଣ ଦଶ ଆଜ୍ଞା
ମଧ୍ୟରୁ ଗୋଟିଏ ଆଜ୍ଞା ହେଉଛି, "ତୁମ୍ଭେ ଆପଣା ପିତାମାତାଙ୍କୁ
ସମ୍ମାନ କର"।* ଏହି ଆଜ୍ଞାଟି ସହିତ ଏକ ପ୍ରତିଜ୍ଞା ମଧ୍ୟ
ସଂଯୁକ୍ତ। ୩ପ୍ରତିଜ୍ଞାଟି ଏହି: "ଏହା କଲେ ତୁମ୍ଭେ ପୃଥିବୀରେ
ଦୀର୍ଘ ଜୀବନ ପାଇବ ଓ ବହୁ ମଙ୍ଗଳ ଦାନ ଲାଭ
କରିବ।"*

୪ହେ ପିତାମାନେ! ତୁମ୍ଭମାନଙ୍କର ସନ୍ତାନମାନଙ୍କୁ ରଗାଅ
ନାହିଁ। କିନ୍ତୁ ପ୍ରଭୁଙ୍କ ବିଷୟକ ଉପଦେଶ ଓ ଶିକ୍ଷା ଦେଇ
ସେମାନଙ୍କୁ ପ୍ରତିପାଳନ କର।

### ଦାସ ଓ ମାଲିକ

୫ହେ ଦାସମାନେ! ପୃଥିବୀରେ ତୁମ୍ଭ ମାଲିକମାନଙ୍କର
ଆଜ୍ଞା, ଭୟ ଓ ସମ୍ମାନ ସହିତ, ନିଷ୍ଠାପୂର୍ଣ୍ଣ ହୃଦୟରେ
ପାଳନ କର। ଯୀଶୁ ଖ୍ରୀଷ୍ଟଙ୍କ ଆଜ୍ଞା ପାଳନ କଲା ଭଳି
ତୁମ୍ଭେ ଏହା କର। ୬ମାଲିକ ଉପସ୍ଥିତ ଥିଲା ବେଳେ ତୁମ୍ଭେ
ସେମାନଙ୍କୁ ଖୁସି କରିବା ପାଇଁ କେବଳ ଆଜ୍ଞା ପାଳନ
କଲେ ହେବ ନାହିଁ, ମାତ୍ର ତାହାଠାରୁ ଆହୁରି ଅଧିକ
କାର୍ଯ୍ୟ ବିଶ୍ୱସ୍ତ ଭାବରେ ସବୁ ସମୟରେ କରିବାକୁ ହେବ।
ତୁମ୍ଭେ ଯେପରି ଖ୍ରୀଷ୍ଟଙ୍କର ବାଧ୍ୟ ହୋଇଛ, ଠିକ୍ ସେହିପରି
ନିଜ ମାଲିକମାନଙ୍କର ମଧ୍ୟ ବାଧ୍ୟ ହେବ। ସମ୍ପୂର୍ଣ୍ଣ ହୃଦୟର
ସହିତ ଯାହା ପରମେଶ୍ୱର ଚାହାଁନ୍ତି, ତୁମ୍ଭେ ତାହା କରିବ।
୭ତୁମ୍ଭର ସମସ୍ତ କର୍ତ୍ତବ୍ୟକୁ ଖୁସୀ ମନରେ କର ଓ ଏପରି
ଭାବରେ କାର୍ଯ୍ୟ କର ଯେପରି ତୁମ୍ଭେମାନେ କେବଳ
ମଣିଷମାନଙ୍କର ନୁହେଁ ବରଂ ପ୍ରଭୁଙ୍କ (ଯୀଶୁ ଖ୍ରୀଷ୍ଟଙ୍କ)
ସେବା ମଧ୍ୟ କରୁଛ। ୮ମନେରଖ, ପ୍ରତ୍ୟେକ ବ୍ୟକ୍ତିଙ୍କୁ
ସମସ୍ତ ଉତ୍ତମ କାର୍ଯ୍ୟ କରିଥିବା ହେତୁ ପରମେଶ୍ୱର
ପୁରସ୍କାର ଦେବେ। ଦାସ ହେଉ କି ସ୍ୱାଧୀନ ହେଉ,
ପ୍ରତ୍ୟେକ ବ୍ୟକ୍ତି ନିଜର ଉତ୍ତମ କାର୍ଯ୍ୟ ନିମନ୍ତେ ପୁରସ୍କୃତ
ହେବ।

୯ହେ ମାଲିକଗଣ! ଠିକ ସେହି ଭଳି ତୁମ୍ଭର ଦାସମାନଙ୍କୁ
ଉତ୍ତମ ବ୍ୟବହାର କର। ତାହାଙ୍କୁ ଧମକ ଦେଇ ଭୟଭୀତ
କଲା ଭଳି କଥା କୁହ ନାହିଁ। ତୁମ୍ଭେ ଜାଣ ଯେ, ତୁମ୍ଭର
ଓ ତାହାଙ୍କର ସେହି ସମାନ ମାଲିକ ଯେ କି ସ୍ୱର୍ଗରେ
ଅଛନ୍ତି। ସେହି ମାଲିକ(ପରମେଶ୍ୱର) କୌଣସି ପକ୍ଷପାତ
ବିଚାର କରନ୍ତି ନାହିଁ।

### ପରମେଶ୍ୱରଙ୍କ ଯୁଦ୍ଧସାଜ ପିନ୍ଧ

୧୦ଏହି ପତ୍ର ସମାପ୍ତ କଲା ସମୟରେ ମୁଁ କୁହେ,
ପ୍ରଭୁଙ୍କଠାରେ ଓ ତାହାଙ୍କର ମହାନ ଶକ୍ତିରେ ବଳବାନ
ହୁଅ। ୧୧ପରମେଶ୍ୱରଙ୍କର ଆତ୍ମରକ୍ଷଣ ଅସ୍ତ୍ର ପିନ୍ଧ। ଏହା
ପିନ୍ଧିବା ଦ୍ୱାରା ତୁମ୍ଭେ ଶୟତାନର ମନ୍ଦ ଚତୁରତା ବିରୁଦ୍ଧରେ
ସଂଘର୍ଷ କରି ପାରିବ। ୧୨ଆମ୍ଭର ସଂଘର୍ଷ ଏହି ପୃଥିବୀର
ମନୁଷ୍ୟମାନଙ୍କ ବିରୁଦ୍ଧରେ ନୁହେଁ, ମାତ୍ର ପୃଥିବୀସ୍ଥ ଅନ୍ଧକାର
ଶକ୍ତି, ପରାକ୍ରମୀ ଅଧିପତି ଓ ଶାସକମାନଙ୍କ ବିରୁଦ୍ଧରେ।
ଆକାଶସ୍ଥ ଦୁଷ୍ଟାତ୍ମାମାନଙ୍କ ବିରୁଦ୍ଧରେ ଆମ୍ଭେ ସଂଘର୍ଷ କରୁଛୁ।
୧୩ସେଥିପାଇଁ ପରମେଶ୍ୱରଙ୍କର ସମ୍ପୂର୍ଣ୍ଣ ଯୁଦ୍ଧସାଜ ତୁମ୍ଭେମାନେ
ପିନ୍ଧିବା ଆବଶ୍ୟକ ଅଟେ। ତେବେ ଯାଇ ମନ୍ଦଶକ୍ତିର
ରାଜତ୍ୱ ବେଳରେ ତୁମ୍ଭେ ଦୃଢ଼ତା ସହକାରେ ପ୍ରତିରୋଧ
କରି ଅଟଳ ହୋଇ ରହିପାରିବ। ପ୍ରତିରୋଧ କରିସାରିଲା
ପରେ ମଧ୍ୟ ତୁମ୍ଭେ ଅଟଳ ହୋଇ ରହିବ। ୧୪ଅତଏବ,
ଅଣ୍ଟାରେ ସତ୍ୟର କଟିବନ୍ଧ ବାନ୍ଧି, ବକ୍ଷରେ ଧାର୍ମିକ ଜୀବନର
ସୁରକ୍ଷାଯୁକ୍ତ ବୁକୁପଟା ପିନ୍ଧ। ୧୫ଯେପରି ତୁମ୍ଭେ ଅଟଳ
ଭାବରେ ଠିଆ ହୋଇ ରୁହ, ଏଥିପାଇଁ ପାଦରେ ଶାନ୍ତି
ଦାୟକ ସୁସମାଚାରର ଜୋତା ପିନ୍ଧ। ୧୬ଏହା ସହିତ
ବିଶ୍ୱାସର ଢାଲ ମଧ୍ୟ ବ୍ୟବହାର କର। ତାହାଦ୍ୱାରା ତୁମ୍ଭେ
ଶୟତାନର ସମସ୍ତ ଜ୍ୱଳନ୍ତ ତୀରଗୁଡ଼ିକୁ ଅଟକାଇ ପାରିବ।
୧୭ପରମେଶ୍ୱର ଦତ୍ତ ପରିତ୍ରାଣକୁ ଶିରସ୍ତ୍ରାଣ ରୂପେ ପବିତ୍ରଆତ୍ମାଙ୍କ
ଖଡ୍ଗ ଗ୍ରହଣ କର, ସେହି ଖଡ୍ଗ ହେଉଛି ପରମେଶ୍ୱରଙ୍କ
ଉପଦେଶ। ୧୮ଆତ୍ମାଙ୍କ ସାହାଯ୍ୟରେ ସର୍ବଦା ପ୍ରାର୍ଥନା କର।
ସମସ୍ତ ପ୍ରକାରର ପ୍ରାର୍ଥନା କର। ତୁମ୍ଭର ଯାହାକିଛି ଅଭାବ
ଥାଏ, ତାହା ପାଇଁ ମାଗ। ପ୍ରାର୍ଥନା କରିବା ନିମନ୍ତେ ସର୍ବଦା
ପ୍ରସ୍ତୁତ ରୁହ ଏବଂ ସେଥିରୁ କ୍ଷାନ୍ତ ହୁଅ ନାହିଁ। ପରମେଶ୍ୱରଙ୍କ
ସମସ୍ତ ଲୋକଙ୍କ ଲାଗି ପ୍ରାର୍ଥନା କର।

୧୯ମୋ ପାଇଁ ମଧ୍ୟ ପ୍ରାର୍ଥନା କର। ମୁଁ ଯେପରି ନିର୍ଭୟ
ହୋଇ, ସୁସମାଚାରର ନିଗୁଢ଼ ସତ୍ୟ ପ୍ରକାଶ କରିପାରେ,
ସେଥିନିମନ୍ତେ ପରମେଶ୍ୱର ମୋତେ ତାହାଙ୍କର ବାକ୍ୟ
ପ୍ରଦାନ କଲେ। ୨୦ମୋର କାମ ହେଉଛି, ସୁସମାଚାର

---

**"ଅତଏବ ... ଯାଆନ୍ତି"** ଆଦିପୁସ୍ତକ ୨:୨୪

**"ତୁମ୍ଭେ ... କର"** ଯାତ୍ରାପୁସ୍ତକ ୨୦:୧୨;ଦ୍ୱିତୀୟ ବିବରଣ ୫:୧୬

**"ଏହା ... କରିବ"** ଯାତ୍ରା ପୁସ୍ତକ ୨୦:୧୨, ଦ୍ୱିତୀୟ ବିବରଣ ୫:୧୬

ନିମନ୍ତେ କହିବା। ଏବେ ମୁଁ ତାହା ଏହି ବନ୍ଦୀ ଘରେ ମଧ୍ୟ କରୁଅଛି। ମୋ ପାଇଁ ପ୍ରାର୍ଥନା କର ଯେ, ଯେପରିକି ମୁଁ ଯେତେବେଳେ ସୁସମାଚାର ପ୍ରଚାର କରେ, ସେତେବେଳେ ସଂପୂର୍ଣ୍ଣ ନିର୍ଭୟତାର ସହ ତାହା କରିପାରେ।

**ଶେଷ ଶୁଭେଚ୍ଛା**

୨୧ମୁଁ ତୁମ୍ଭ ପାଖକୁ ଆମ୍ଭର ପ୍ରିୟ ଭାଇ ତୁଖିକଙ୍କୁ
ପଠାଉଛି। ସେ ପ୍ରଭୁଙ୍କ କାମରେ ଜଣେ ବିଶ୍ୱସ୍ତ ସେବକ।
ମୋ ସହିତ ଯାହା ଘଟୁଛି, ସେ ସମସ୍ତ ବିଷୟ ସେ
ତୁମ୍ଭକୁ କହିବେ। ତାହେଲେ ତୁମ୍ଭେ ଜାଣି ପାରିବ ଯେ ମୁଁ
କିପରି ଅଛି ଓ କ'ଣ କରୁଛି।
୨୨ସେଥିପାଇଁ ମୁଁ ତାଙ୍କୁ ତୁମ୍ଭ ପାଖକୁ ପଠାଉଛି। ଆମ୍ଭେ
କିପରି ଅଛୁ, ତାହା ତୁମ୍ଭେମାନେ ଜାଣିବା କଥା। ତୁମ୍ଭମାନଙ୍କୁ
ଉତ୍ସାହ ପ୍ରଦାନ କରିବା ଉଦ୍ଦେଶ୍ୟରେ ମୁଁ ତାହାଙ୍କୁ ପଠାଉଛି।
୨୩ପ୍ରଭୁ ଯୀଶୁ ଖ୍ରୀଷ୍ଟ ଓ ପିତା ପରମେଶ୍ୱରଙ୍କ ଦ୍ୱାରା ଭାଇ
ଓ ଭଉଣୀମାନଙ୍କୁ ଶାନ୍ତି, ପ୍ରେମ ଓ ବିଶ୍ୱାସ ପ୍ରାପ୍ତ ହେଉ।
୨୪ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କଠାରେ ଅଶେଷ ପ୍ରେମ ଭାବ ରଖିଥିବା
ତୁମ୍ଭ ସମସ୍ତଙ୍କୁ ପରମେଶ୍ୱରଙ୍କ ଅନୁଗ୍ରହ ହେଉ।

# ଫିଲିପ୍ପୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କ ପତ୍ର

**୧** ଯୀଶୁ ଖ୍ରୀଷ୍ଟଙ୍କ ସେବକ ପାଉଲ ଓ ତୀମଥି, ଫିଲିପ୍ପୀର
ଖ୍ରୀଷ୍ଟଯୀଶୁଙ୍କ ସମସ୍ତ ପବିତ୍ର ଲୋକମାନଙ୍କୁ ଓ
ତୁମ୍ଭମାନଙ୍କର ପ୍ରାଚୀନ* ଏବଂ ବିଶେଷ ସେବକମାନଙ୍କୁ
ପତ୍ର ।
[୨]ଆମ୍ଭ ପିତା ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର
ଅନୁଗ୍ରହ ଓ ଶାନ୍ତି ତୁମ୍ଭମାନଙ୍କ ପ୍ରତି ହେଉ ।

### ପାଉଲଙ୍କ ପ୍ରାର୍ଥନା

[୩-୪]ଯେତେଥର ମୁଁ ତୁମ୍ଭମାନଙ୍କୁ ମନେପକାଏ, ସେତେଥର
ପରମେଶ୍ୱରଙ୍କୁ ଆନନ୍ଦ ସହକାରେ ପ୍ରାର୍ଥନାରେ ଧନ୍ୟବାଦ
ଦିଏ । [୫]ଲୋକମାନଙ୍କୁ ସୁସମାଚାର ଶୁଣାଇଲାବେଳେ,
ତୁମ୍ଭମାନଙ୍କଠାରୁ ପାଇଥିବା ସାହାଯ୍ୟ ପାଇଁ ମୁଁ ପରମେଶ୍ୱରଙ୍କୁ
ଧନ୍ୟବାଦ ଦିଏ । ବିଶ୍ୱାସ କରିବା ପ୍ରଥମଦିନ ଠାରୁ ଏବେ
ପର୍ଯ୍ୟନ୍ତ ତୁମ୍ଭେ ସାହାଯ୍ୟ କରି ଆସୁଛ । [୬]ପରମେଶ୍ୱର
ତୁମ୍ଭର ମଙ୍ଗଳ କରିବା ଆରମ୍ଭ କରିଛନ୍ତି ଓ ବର୍ତ୍ତମାନ
ମଧ୍ୟ ତାହା କରୁଛନ୍ତି । ଯୀଶୁଖ୍ରୀଷ୍ଟଙ୍କ ଆଗମନ ଦିନ ପର୍ଯ୍ୟନ୍ତ
ସେ ସେହି କାମ ସାଧନ କରି ସମାପ୍ତ କରିବେ । ମୁଁ
ଏଥିରେ ନିଶ୍ଚିତ ଅଟେ ।
[୭]ତୁମ୍ଭମାନଙ୍କ ବିଷୟରେ ମୋର ଏପରି ଭାବିବା ଉଚିତ,
କାରଣ ତୁମ୍ଭେ ସମସ୍ତେ ମୋ ହୃଦୟରେ ସ୍ଥାନ ପାଇଛ ।
ତୁମ୍ଭେମାନେ ପରମେଶ୍ୱରଙ୍କ କୃପାରେ ମୋର ଭାଗୀଦାର ।
ବର୍ତ୍ତମାନ ମୁଁ ବନ୍ଦୀଘରେ ଅଛି, ଯେତେବେଳେ ମୁଁ ସୁସମାଚାରର
ପକ୍ଷ ସମର୍ଥନ କରୁଛି ଓ ଯେତେବେଳେ ମୁଁ ସୁସମାଚାରର
ସତ୍ୟ ପ୍ରମାଣିତ କରୁଛି, ସେତେବେଳେ ମଧ୍ୟ ତୁମ୍ଭେମାନେ
ମୋ ସହିତ ପରମେଶ୍ୱରଙ୍କ ଅନୁଗ୍ରହର ସହଭାଗୀ ଅଟ ।
[୮]ପରମେଶ୍ୱର ଜାଣନ୍ତି ଯେ ମୁଁ ତୁମ୍ଭମାନଙ୍କୁ ଦେଖିବାକୁ
କେତେ ଇଚ୍ଛା କରୁଛି । ଖ୍ରୀଷ୍ଟଯୀଶୁଙ୍କର ସ୍ନେହପୂର୍ଣ୍ଣ କରୁଣାରେ
ମୁଁ ତୁମ୍ଭମାନଙ୍କୁ ପ୍ରେମ କରେ ।
[୯]ତୁମ୍ଭମାନଙ୍କ ପାଇଁ ମୋର ପ୍ରାର୍ଥନା ଏହି ଯେ;

ତୁମ୍ଭମାନଙ୍କର ପ୍ରେମ ଅଧିକରୁ ଅଧିକ ବୃଦ୍ଧି ପାଉ;
ତୁମ୍ଭମାନଙ୍କର ପ୍ରେମ ଦ୍ୱାରା ତୁମ୍ଭେ ଜ୍ଞାନ ଓ
ବୋଧଶକ୍ତି ପ୍ରାପ୍ତ ହୁଅ;
[୧୦] ଯେପରି ତୁମ୍ଭେ ଭଲ ଓ ମନ୍ଦର ପ୍ରାର୍ଥକ୍ୟ ଦେଖିପାରିବ
ଓ ଉତ୍ତମ ବିଷୟ ବାଛି ପାରିବ । ତହିଁରେ ଖ୍ରୀଷ୍ଟ
ଯେଉଁଦିନ ଆସିବେ, ତୁମ୍ଭେ ଶୁଦ୍ଧ ଓ ଦୋଷଶୂନ୍ୟ
ହେବ;
[୧୧] ତୁମ୍ଭେ ପରମେଶ୍ୱରଙ୍କ ପାଇଁ ମହିମା ଓ ପ୍ରଶଂସା
ଉଦ୍ଦେଶ୍ୟରେ ଯୀଶୁଖ୍ରୀଷ୍ଟଙ୍କ ସାହାଯ୍ୟରେ ଅନେକ
ଉତ୍ତମ କାମ କରିବ ।

### ପାଉଲଙ୍କ ସମସ୍ୟା ପ୍ରଭୁଙ୍କ କାର୍ଯ୍ୟରେ ସାହାଯ୍ୟ କରେ

[୧୨]ଭାଇ (ଓ ଭଉଣୀ)ମାନେ! ମୁଁ ତୁମ୍ଭମାନଙ୍କୁ ଜଣାଇଦେବାକୁ
ଇଚ୍ଛା କରେ ଯେ ମୋ ପ୍ରତି ଯାହା କିଛି ଘଟିଛି, ତାହା
ସୁସମାଚାର ପ୍ରଚାର କରିବାରେ ସାହାଯ୍ୟ କଲା । [୧୩]ସମଗ୍ର
ପ୍ରହରୀ ଦଳ ଓ ଅନ୍ୟ ଲୋକମାନେ ଜାଣନ୍ତି ଯେ ମୁଁ
ଖ୍ରୀଷ୍ଟଙ୍କ ଜଣେ ବିଶ୍ୱାସୀ ହୋଇଥିବାରୁ ବନ୍ଦୀଘରେ ରଖାଯାଇଛି ।
[୧୪]ମୁଁ ଏବେ ମଧ୍ୟ ବନ୍ଦୀଘରେ ଅଛି କିନ୍ତୁ ଅଧିକାଂଶ ଖ୍ରୀଷ୍ଟ
ବିଶ୍ୱାସୀ ଭାଇମାନେ, ଅଧିକ ଉତ୍ସାହିତ ହୋଇ ସାହସ
ପୂର୍ବକ ନିର୍ଭୟରେ ଲୋକମାନଙ୍କୁ ଖ୍ରୀଷ୍ଟଙ୍କ ବାଣୀ ଶୁଣାଉଛନ୍ତି ।
[୧୫]ଏହା ସତ୍ୟ ଯେ ସେମାନଙ୍କ ଭିତରୁ କେତେଜଣ
କଠୋର ଓ ଈର୍ଷାନ୍ୱିତ ହୋଇ ବିବାଦ ମନୋଭାବ ନେଇ
ଖ୍ରୀଷ୍ଟଙ୍କ ବିଷୟରେ ପ୍ରଚାର କରୁଛନ୍ତି, କିନ୍ତୁ ଅନ୍ୟମାନେ
ସଦ୍‌ଭାବରେ ଖ୍ରୀଷ୍ଟଙ୍କ ବିଷୟରେ ପ୍ରଚାର କରୁଛନ୍ତି । [୧୬]ସେମାନେ
ପ୍ରେମ କରୁଥିବାରୁ ପ୍ରଚାର କରୁଛନ୍ତି । ସେମାନେ ଜାଣନ୍ତି
ଯେ, ସୁସମାଚାରର ପକ୍ଷ ସମର୍ଥନ କରିବା ପାଇଁ ପରମେଶ୍ୱର
ମୋତେ ଦାୟିତ୍ୱ ଦେଇଛନ୍ତି । [୧୭]କିନ୍ତୁ ଅନ୍ୟ ଲୋକମାନେ
ଖ୍ରୀଷ୍ଟଙ୍କ ବିଷୟରେ ପ୍ରଚାର କରୁଛନ୍ତି କାରଣ ସେମାନେ
ସ୍ୱାର୍ଥପର । ସେମାନେ ମନ୍ଦ ଅଭିପ୍ରାୟରେ ପ୍ରଚାର କରନ୍ତି ।
ସେମାନେ ବନ୍ଦୀଘରେ ମୋ ପାଇଁ ବିପଦ ସୃଷ୍ଟି କରିବା
ପାଇଁ ଚାହାଁନ୍ତି ।
[୧୮]ଯଦି ସେମାନେ ମୋ ପାଇଁ ବିପଦ ସୃଷ୍ଟି କରନ୍ତି, ମୁଁ
ସେଥିପାଇଁ ଚିନ୍ତିତ ନୁହେଁ । ମୁଖ୍ୟ କଥା ହେଲା ଯେ
ସେମାନେ ଖ୍ରୀଷ୍ଟଙ୍କ ବିଷୟରେ କହୁଛନ୍ତି । ମୁଁ ମଧ୍ୟ ଚାହେଁ
ଯେ ସେମାନେ ଖ୍ରୀଷ୍ଟଙ୍କ ବିଷୟରେ ଲୋକମାନଙ୍କୁ କୁହନ୍ତୁ ।
ସେମାନେ ଭଲ ଉଦ୍ଦେଶ୍ୟ ରଖି ସେପରି କରନ୍ତୁ । କିନ୍ତୁ
ଉଦ୍ଦେଶ୍ୟ ଭଲ ହେଉ ବା ମନ୍ଦ, ପ୍ରଚାର ତ ଯୀଶୁଙ୍କର
ହେଉଛି, ସେଥିପାଇଁ ମୁଁ ଆନନ୍ଦିତ । ମୁଁ ଆନନ୍ଦିତ ହେଉଥିବି
ମଧ୍ୟ । [୧୯]ତୁମ୍ଭେମାନେ ମୋ ପାଇଁ ପ୍ରାର୍ଥନା କରୁଛ ଓ
ଯୀଶୁଖ୍ରୀଷ୍ଟଙ୍କ ଆତ୍ମା ମୋତେ ସାହାଯ୍ୟ କରୁଛନ୍ତି । ଅତଏବ
ମୁଁ ଜାଣେ ଯେ ଏହି ବିଷୟ ମୋ ପରିତ୍ରାଣର କାରଣ
ହେବ । [୨୦]ମୋର ଦୃଢ଼ ଆଶା ଓ ଭରସା ଯେ ମୁଁ ଖ୍ରୀଷ୍ଟଙ୍କୁ
କଦାପି ହରାଇବି ନାହିଁ । ବରଂ, ମୁଁ ନିଶ୍ଚିତ ଯେ ମୁଁ
ସାହସୀ ହେବି ଏବଂ ମୁଁ ମୃତ ବା ଜୀବିତ ଥାଏ, ଖ୍ରୀଷ୍ଟଙ୍କ
ମହାନତା ମୋ ଶରୀରରେ ପ୍ରକାଶିତ କରିବ । [୨୧]ମୋର
ବଞ୍ଚି ରହିବାର ଅର୍ଥ ହେଉଛି ଖ୍ରୀଷ୍ଟ । ମୃତ୍ୟୁ ମଧ୍ୟ ମୋ

**ପ୍ରାଚୀନ** ମଣ୍ଡଳୀର ପୁରୁଣା ନେତାମାନଙ୍କୁ

ପାଇଁ ଏକ ଲାଭ ଅଟେ।” ୨୨ଯଦି ମୁଁ ଶରୀରରେ ଜୀବିତ
ରହେ, ତାହେଲେ ମୁଁ ପ୍ରଭୁଙ୍କ ପାଇଁ କାମ କରି ପାରିବି।
ଜୀବନ ବା ମୃତ୍ୟୁ ତହିଁରୁ କାହାକୁ ବାଛିବି, ମୁଁ ଏହା
ଜାଣେନା? ୨୩ଜୀବନ ଓ ମୃତ୍ୟୁ ମଧ୍ୟରୁ ଗୋଟିକୁ ବାଛିବା
କଷ୍ଟକର। ମୁଁ ଏହି ଜୀବନକୁ ଛାଡ଼ି ଖ୍ରୀଷ୍ଟଙ୍କ ସହିତ
ରହିବାକୁ ଇଚ୍ଛା କରେ। ଏହା ଅଧିକ ଭଲ। ୨୪କିନ୍ତୁ, ତୁମ୍ଭ
ପାଇଁ ମୋର ଶରୀରରେ (ବଞ୍ଚି) ରହିବା ଅଧିକ ଆବଶ୍ୟକ।
୨୫ମୁଁ ଜାଣେ ତୁମ୍ଭେମାନେ ମୋତେ ଚାହୁଁଛ। ସେଥିପାଇଁ ମୁଁ
ତୁମ୍ଭ ସହିତ ରହିବି ବୋଲି ମୁଁ ଜାଣେ। ବିଶ୍ୱାସରେ ତୁମ୍ଭର
ବୃଦ୍ଧି ଓ ଆନନ୍ଦ ପାଇବା ନିମନ୍ତେ ମୁଁ ତୁମ୍ଭକୁ ସାହାଯ୍ୟ
କରିବି। ୨୬ଯଦି ମୁଁ ତୁମ୍ଭ ପାଖକୁ ଫେରିଯାଏ, ତେବେ
ଏହା ଖ୍ରୀଷ୍ଟଯୀଶୁଙ୍କ ଠାରେ ମୋ ପାଇଁ ତୁମ୍ଭର ଅଧିକ
ଗର୍ବର କାରଣ ହେବ।
୨୭ଖ୍ରୀଷ୍ଟଙ୍କ ସୁସମାଚାରର ଯୋଗ୍ୟ ଜୀବନ ଯାପନ କରିବା
ପାଇଁ ଦୃଢ଼ ସଂକଳ୍ପ ହୁଅ। ଏହାଦ୍ୱାରା ମୁଁ ତୁମ୍ଭ ପାଖକୁ
ଯାଇ ତୁମ୍ଭକୁ ଦେଖେ ବା ତୁମ୍ଭଠାରୁ ଦୂରରେ ଥାଏ; ତୁମ୍ଭ
ବିଷୟରେ ଶୁଣିବି ଯେ ତୁମ୍ଭେମାନେ ଏକ ଉଦ୍ଦେଶ୍ୟରେ,
ଏକମନ ହୋଇ, ସୁସମାଚାରରୁ ଉତ୍ପନ୍ନ ବିଶ୍ୱାସ ପାଇଁ ଦୃଢ଼
ଭାବରେ କାର୍ଯ୍ୟ କରୁଛ। ୨୮ଯେଉଁ ଲୋକମାନେ ତୁମ୍ଭ
ବିରୁଦ୍ଧରେ ଅଛନ୍ତି ସେମାନଙ୍କୁ ଭୟ କରିବ ନାହିଁ। ଏହି
ସମସ୍ତ ବିଷୟ ଯେ ଈଶ୍ୱରଙ୍କଠାରୁ ଆଗତ ଏହାର ପ୍ରମାଣ
ତୁମ୍ଭେମାନେ ପରିତ୍ରାଣ ପାଉଅଛ ଓ ତୁମ୍ଭମାନଙ୍କର ଶତ୍ରୁମାନେ
ବିନାଶ ହେବେ। ୨୯ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରିବା ନିମନ୍ତେ
କେବଳ ପରମେଶ୍ୱର ତୁମ୍ଭକୁ ସୁଯୋଗ ଦେଇଛନ୍ତି। ତାହା
ଯଥେଷ୍ଟ ନୁହେଁ, ଖ୍ରୀଷ୍ଟଙ୍କ ପାଇଁ ଦୁଃଖଭୋଗ କରିବା
ନିମନ୍ତେ ମଧ୍ୟ ତୁମ୍ଭମାନଙ୍କୁ ସୁଯୋଗ ଦେଇଛନ୍ତି। ଏହି
ଉଭୟ ବିଷୟ ଯୀଶୁଖ୍ରୀଷ୍ଟଙ୍କୁ ଗୌରବାନ୍ୱିତ କରେ। ୩୦ମୁଁ
ତୁମ୍ଭମାନଙ୍କ ସହିତ ଥିବା ବେଳେ ତୁମ୍ଭେମାନେ ମୋତେ
ସୁସମାଚାର ବିରୁଦ୍ଧରେ ଥିବା ଲୋକଙ୍କ ସହିତ ସଂଘର୍ଷ
କରିବା ଦେଖିଛ। ତୁମ୍ଭେ ଏବେ ଶୁଣୁଛ ଯେ ମୁଁ ଏଠାରେ
ସଂଘର୍ଷରତ। ତୁମ୍ଭେମାନେ ମଧ୍ୟ ସେହିଭଳି ଏବେ ସଂଘର୍ଷରତ
ଅଛ।

### ଏକତାବଦ୍ଧ ହୋଇ ପରସ୍ପରର ଯତ୍ନ ନିଅ

୨ ଖ୍ରୀଷ୍ଟଙ୍କଠାରେ ଥାଇ କୌଣସି କାର୍ଯ୍ୟ କରିବାକୁ ମୁଁ
ତୁମ୍ଭକୁ କହିପାରେ କି? ତୁମ୍ଭେ ମୋତେ ପ୍ରେମପୂର୍ଣ୍ଣ
ସାନ୍ତ୍ୱନା ଦେଇପାର କି? ଆମ୍ଭେ ଏକତ୍ର ଆତ୍ମାର ସହଭାଗୀତାରେ
ଅଛୁ କି? ତୁମ୍ଭଠାରେ କରୁଣା ଓ ଦୟା ଅଛି କି? ୨ଯଦି
ଏଗୁଡ଼ିକ ତୁମ୍ଭଠାରେ ଅଛି, ତାହେଲେ ମୋ ପାଇଁ କିଛି
କର ବୋଲି ମୁଁ ଚାହେଁ, ଏହା ମୋତେ ଅତ୍ୟନ୍ତ ଆନନ୍ଦିତ
କରିବ। ମୁଁ ଚାହେଁ ଯେ ତୁମ୍ଭେମାନେ ଏକମନା ହୋଇ
ସମ ବିଷୟରେ ବିଶ୍ୱାସ ଦ୍ୱାରା ସଂଯୁକ୍ତ ହୁଅ। ପରସ୍ପର
ପ୍ରତି ସମ ପ୍ରେମଭାବ ରଖ ଏବଂ ଏକ ଆତ୍ମାରେ ଏବଂ
ସମ ଉଦ୍ଦେଶ୍ୟରେ ଏକତ୍ର ବାସ କର। ୩ସ୍ୱାର୍ଥପରତା ଓ
ଗର୍ବ ହେତୁ କୌଣସି କାମ କର ନାହିଁ। ନମ୍ର ହୁଅ ଓ
ଅନ୍ୟ ଲୋକମାନଙ୍କୁ ନିଜଠାରୁ ଅଧିକ ସମ୍ମାନ ଦିଅ।
୪କେବଳ ନିଜ ଜୀବନ ବିଷୟରେ ଆଗ୍ରହୀ ନ ହୋଇ,
ଅନ୍ୟ ଲୋକମାନଙ୍କର ଜୀବନ ବିଷୟରେ ମଧ୍ୟ ଆଗ୍ରହୀ
ହୁଅ।

### ଯୀଶୁ ଖ୍ରୀଷ୍ଟଙ୍କ ଠାରୁ ନିସ୍ୱାର୍ଥପର ହେବା ଶିଖ

୫ନିଜ ଜୀବନରେ ଖ୍ରୀଷ୍ଟ ଯୀଶୁଙ୍କ ଭଳି ଚିନ୍ତା ଓ
ଆଚରଣ କର।
୬ଖ୍ରୀଷ୍ଟ ନିଜେ ସର୍ବୋତଭାବରେ ପରମେଶ୍ୱରଙ୍କ ସାଦୃଶ୍ୟ
ଥିଲେ। ପରମେଶ୍ୱରଙ୍କ ସହିତ ସମାନ ହୋଇ ରହିବା
ବିଷୟକୁ ସମ୍ପତ୍ତି ଭାବରେ ଜାବୁଡ଼ି ଧରିବା ପାଇଁ ଖ୍ରୀଷ୍ଟ
ଇଚ୍ଛା କଲେ ନାହିଁ।
୭ସେ ପରମେଶ୍ୱରଙ୍କ ସହିତ ଥିବା ନିଜ ସ୍ଥାନକୁ ଛାଡ଼ି
ଦାସ ରୂପ ଗ୍ରହଣ କରିଥିଲେ। ସେ ମାନବ ରୂପରେ ଜନ୍ମ
ଗ୍ରହଣ କରି ଦାସ ଭଳି ହେଲେ। ୮ମନୁଷ୍ୟ ଭାବରେ
ଜୀବନ ଯାପନ କଲାବେଳେ ସେ ପୂର୍ଣ୍ଣ ଭାବରେ ପରମେଶ୍ୱରଙ୍କ
ଆଜ୍ଞାକାରୀ ହୋଇ ନିଜକୁ ନମ୍ର କଲେ। ଏପରିକି କ୍ରୁଶରେ
ମୃତ୍ୟୁ ପର୍ଯ୍ୟନ୍ତ ନିଜକୁ ବାଧ୍ୟ ଓ ନମ୍ର କଲେ।
୯ଖ୍ରୀଷ୍ଟ ପରମେଶ୍ୱରଙ୍କ ବାଧ୍ୟ ହେଲେ, ତେଣୁ ପରମେଶ୍ୱର
ଖ୍ରୀଷ୍ଟଙ୍କୁ ଅତି ଉନ୍ନତ କଲେ। ପରମେଶ୍ୱର ଖ୍ରୀଷ୍ଟଙ୍କ ନାମକୁ
ଅନ୍ୟ ସମସ୍ତଙ୍କ ନାମ ଅପେକ୍ଷା ମହାନ କଲେ। ୧୦ଏପରି
କରିବାର ଉଦ୍ଦେଶ୍ୟ ଥିଲା ଯେ ସ୍ୱର୍ଗର, ପୃଥିବୀର ଓ
ପାତାଳର ପ୍ରତ୍ୟେକ ଲୋକ ଯେପରି ଯୀଶୁଙ୍କ ନାମ
ଆଗରେ ମୁଣ୍ଡ ନୁଆଁଇବେ। ୧୧ଅତଏବ ପ୍ରତ୍ୟେକ ଲୋକ
“ଯୀଶୁଖ୍ରୀଷ୍ଟ ଯେ ପ୍ରଭୁ” ଏହା ସ୍ୱୀକାର କରିବେ। ଏହା
ସେମାନେ କହିବା ଦ୍ୱାରା ପିତା ଈଶ୍ୱରଙ୍କର ଗୌରବ
ହେବ।

### ପରମେଶ୍ୱରଙ୍କ ଇଚ୍ଛାନୁରୂପ ହୁଅ

୧୨ମୋ ପ୍ରିୟ ମିତ୍ରଗଣ! ତୁମ୍ଭେମାନେ ସର୍ବଦା ପରମେଶ୍ୱରଙ୍କ
ବାଧ୍ୟ ହୋଇଛ। ମୁଁ ତୁମ୍ଭ ସହିତ ଥିଲାବେଳେ ତୁମ୍ଭେମାନେ
ପରମେଶ୍ୱରଙ୍କ ବାଧ୍ୟ ହୋଇଛ। ମୁଁ ତୁମ୍ଭ ସହିତ ନ ଥିଲା
ବେଳେ ମଧ୍ୟ ତୁମ୍ଭେ ତାହାଙ୍କ ବାଧ୍ୟ ହେବା ଅଧିକ
ଗୁରୁତ୍ୱପୂର୍ଣ୍ଣ ଅଟେ। ତୁମ୍ଭେ ନିଶ୍ଚିତ ହେବା ଆବଶ୍ୟକ ଯେ
ମୋ ସାହାଯ୍ୟ ବିନା ତୁମ୍ଭେ ପରିତ୍ରାଣ ପାଇବ। ପରମେଶ୍ୱରଙ୍କ
ପ୍ରତି ସମ୍ମାନ ଓ ଭୟ ରଖି ଏପରି କର। ୧୩ପରମେଶ୍ୱର
ତୁମ୍ଭ ମଧ୍ୟରେ କାର୍ଯ୍ୟ କରୁଛନ୍ତି। ତାହାଙ୍କୁ ସନ୍ତୁଷ୍ଟ କଲା
ଭଳି କାର୍ଯ୍ୟ କରିବା ନିମନ୍ତେ ସେ ତୁମ୍ଭକୁ ଇଚ୍ଛାଶକ୍ତି
ଦିଅନ୍ତି ଓ ତାହା ସାଧନ କରିବାକୁ ଶକ୍ତି ମଧ୍ୟ ଦିଅନ୍ତି।
୧୪ଅଭିଯୋଗ ବା ବାଦାନୁବାଦ ନ କରି ପ୍ରତ୍ୟେକ
କାର୍ଯ୍ୟ କର। ୧୫ତେବେ ଯାଇ ତୁମ୍ଭେ ନିର୍ଦ୍ଦୋଷ ହେବ ଓ
ତୁମ୍ଭ ଭିତରେ କୌଣସି ଭୁଲ ରହିବ ନାହିଁ। ତୁମ୍ଭେ
ପରମେଶ୍ୱରଙ୍କ ନିର୍ଦ୍ଦୋଷ ପୁତ୍ର ହେବ। କିନ୍ତୁ ତୁମ୍ଭେମାନେ
ନଷ୍ଟ ହୋଇ ଯାଉଥିବା ମନ୍ଦଲୋକଙ୍କ ମଧ୍ୟରେ ରହୁଛ।
କିନ୍ତୁ ସେମାନଙ୍କ ଭିତରେ ତୁମ୍ଭେ ଏହି ଅନ୍ଧକାରପୂର୍ଣ୍ଣ
ଜଗତରେ ଜ୍ୟୋତିଃଭଳି ପ୍ରକାଶିତ ହେଉଛ। ୧୬ତୁମ୍ଭେ
ସେମାନଙ୍କୁ ଜୀବନ ପ୍ରଦାନକାରୀ ଶିକ୍ଷା ଦିଅ। ତେଣୁ
ଖ୍ରୀଷ୍ଟଙ୍କ ଆଗମନରେ ମୁଁ ଖୁସି ହେବି, କାରଣ ମୁଁ ଜାଣିବି

ଯେ ମୋର କାମ ବିଫଳ ହୋଇ ନାହିଁ। ମୁଁ ଜାଣିବି ଯେ
ଦୌଡ଼ ପ୍ରତିଯୋଗିତାରେ ଦୌଡ଼ି ଜିତିଛି।
୧୭ପରମେଶ୍ୱରଙ୍କ ସେବାରେ, ତୁମ୍ଭ ବିଶ୍ୱାସ ତୁମ୍ଭକୁ ଏକ
ବଳିଦାନ ରୂପ ସେବା କରିବା ପାଇଁ ପ୍ରେରଣା ଯୋଗାଏ।
ହୁଏତ ତୁମ୍ଭର ବଳିଦାନ ରୂପ ସେବାରେ ମୋତେ ମୋର
ନିଜ ରକ୍ତ ମଧ୍ୟ ଉତ୍ସର୍ଗ କରିବାକୁ ପଡ଼ିପାରେ। ଯଦି ତାହା
ଘଟେ, ମୁଁ ତୁମ୍ଭମାନଙ୍କ ସହିତ ଆନନ୍ଦରେ ପରିପୂର୍ଣ୍ଣ ଓ
ଖୁସି ହେବି। ୧୮ତୁମ୍ଭେମାନେ ମଧ୍ୟ ମୋ ସହିତ ଖୁସି ହୁଅ
ଓ ଆନନ୍ଦରେ ପରିପୂର୍ଣ୍ଣ ହୁଅ।

## ତୀମଥି ଓ ଏପାଫ୍ରଦିତଙ୍କ ବିଷୟରେ ସମ୍ବାଦ

୧୯ପ୍ରଭୁ ଯୀଶୁଙ୍କଠାରେ ମୁଁ ଆଶା କରେ ଯେ ତୀମଥିଙ୍କୁ
ଖୁବ୍ ଶୀଘ୍ର ତୁମ୍ଭମାନଙ୍କ ପାଖକୁ ପଠାଇବି। ତୁମ୍ଭେମାନେ
କିପରି ଅଛ ଜାଣି ମୁଁ ଆନନ୍ଦିତ ହେବି। ୨୦ତୀମଥିଙ୍କ ଭଳି
ମୋ ପାଖରେ ଆଉ କେହି ଲୋକ ନାହାଁନ୍ତି। ୨୧ସେ
ପ୍ରକୃତରେ ତୁମ୍ଭ ପାଇଁ ମନଯୋଗୀ। ଅନ୍ୟ ଲୋକମାନେ
କେବଳ ତାଙ୍କ ନିଜ ଜୀବନ ବିଷୟରେ ଆଗ୍ରହୀ ଅଟନ୍ତି।
ଖ୍ରୀଷ୍ଟ ଯୀଶୁଙ୍କ କାର୍ଯ୍ୟରେ ସେମାନେ ଆଗ୍ରହୀ ନୁହଁନ୍ତି।
୨୨ତୁମ୍ଭେମାନେ ଜାଣିଛ ଯେ ତୀମଥି କି ପ୍ରକାରର ଲୋକ।
ପୁତ୍ର ଯେପରି ପିତାର ସେବା କରେ, ସେହିପରି ସେ ମୋ
ସହିତ ସୁସମାଗ୍ଭର କହିବା ସମୟରେ ମୋର ସେବା
କରିଛନ୍ତି; ଏକଥା ତୁମ୍ଭମାନେ ଜାଣ। ୨୩ମୁଁ ଶୀଘ୍ର ତାହାଙ୍କୁ
ପଠାଇବା ଯୋଜନା କରୁଛି। ମୋ ସହିତ କ'ଣ ଘଟିବାକୁ
ଯାଉଛି, ଜାଣିଲା ପରେ, ମୁଁ ତାଙ୍କୁ ପଠାଇବି। ୨୪ମୁଁ ନିଶ୍ଚିତ
ଯେ ତୁମ୍ଭମାନଙ୍କ ନିକଟକୁ ଶୀଘ୍ର ଯିବା ପାଇଁ ପ୍ରଭୁ ମୋତେ
ସାହାଯ୍ୟ କରିବେ। ୨୫ଏପାଫ୍ରଦିତ ଖ୍ରୀଷ୍ଟଙ୍କଠାରେ ମୋର
ଭାଇ। ସେ ମୋ ସହିତ ଖ୍ରୀଷ୍ଟ-ବାହିନୀର ଜଣେ ସେବକ
ଓ କାର୍ଯ୍ୟକାରୀ। ମୋ ଦରକାର ବେଳେ ତୁମ୍ଭେମାନେ
ତାହାଙ୍କୁ ମୋ ସାହାଯ୍ୟ ପାଇଁ ପଠାଇଥିଲ। ମୁଁ ଭାବୁଛି
ଏବେ ପୁନର୍ବାର ମୁଁ ତାହାଙ୍କୁ ତୁମ୍ଭ ପାଖକୁ ଫେରାଇ
ଦେବି। ୨୬ସେ ତୁମ୍ଭମାନଙ୍କୁ ଦେଖିବାକୁ ବହୁତ ଇଚ୍ଛୁକ,
ସେଥିପାଇଁ ମୁଁ ତାହାଙ୍କୁ ପଠାଉଛି। ସେ ଅସୁସ୍ଥ ଥିଲେ
ବୋଲି ତୁମ୍ଭେ ଶୁଣି ଥିବା ହେତୁ ସେ ଚିନ୍ତିତ ଥିଲେ।
୨୭ସେ ଅସୁସ୍ଥ ଥିଲେ ଓ ମୃତ୍ୟୁର ଦ୍ୱାର ଦେଶରେ ଥିଲେ।
କିନ୍ତୁ ପରମେଶ୍ୱର ତାହାଙ୍କୁ ଓ ମୋତେ ମଧ୍ୟ ସାହାଯ୍ୟ
କଲେ, ଯେପରି ମୋ ପାଇଁ ଅଧିକ ଦୁଃଖ ନ ଘଟେ।
୨୮ତେଣୁ ମୁଁ ତାହାଙ୍କୁ ପଠାଇବାକୁ ଅତିଶୟ ଇଚ୍ଛା କରେ।
ତୁମ୍ଭେ ମଧ୍ୟ ତାହାଙ୍କୁ ଦେଖିଲେ ଖୁସି ହେବ, ମୁଁ ମଧ୍ୟ
ତୁମ୍ଭ ବିଷୟରେ ଚିନ୍ତାମୁକ୍ତ ହେବି। ୨୯ସେଥିପାଇଁ ପ୍ରଭୁଙ୍କଠାରେ
ଆନନ୍ଦର ସହିତ ତାହାଙ୍କୁ ସ୍ୱାଗତ ଜଣାଅ। ଏପାଫ୍ରଦିତଙ୍କ
ଭଳି ଲୋକମାନଙ୍କୁ ତୁମ୍ଭେମାନେ ସମ୍ମାନ ଦିଅ। ୩୦ଖ୍ରୀଷ୍ଟଙ୍କ
କାମ ପାଇଁ ସେ ମୃତପ୍ରାୟଃ ହୋଇ ଯାଇଥିବାରୁ ସମ୍ମାନିତ
ହେବା ଉଚିତ। ମୋତେ ସାହାଯ୍ୟ କରିବା ପାଇଁ ସେ ନିଜ
ଜୀବନକୁ ବିପଦରେ ପକାଇଥିଲେ। ତୁମ୍ଭେ ଦେଖିଥିବା
ସେବାରେ ଯାହା କମ ରହି ଯାଇଥିଲା, ସେତିକି ସେ
ପୂରଣ କରି ଦେଇଥିଲେ।

## ଯୀଶୁଖ୍ରୀଷ୍ଟ ସବୁଠାରୁ ମହାନ

୩ ଆଉ ଏବେ ହେ ମୋର ଭାଇ(ଓ ଭଉଣୀ)ମାନେ!
ପ୍ରଭୁଙ୍କଠାରେ ଆନନ୍ଦ କର। ତୁମ୍ଭକୁ ଥରକୁ ଥର
ସେହି ଏକାକଥା ଲେଖିବାରେ, ମୋତେ କଷ୍ଟ ହୁଏ ନାହିଁ,
କାରଣ ଏହାଦ୍ୱାରା ତୁମ୍ଭେମାନେ ଅଧିକ ପ୍ରସ୍ତୁତ ହୋଇ
ରହିବ। ୨ଯେଉଁମାନେ ମନ୍ଦକର୍ମରେ ଲିପ୍ତ, ସେମାନଙ୍କଠାରୁ
ସାବଧାନ ହୋଇ ରୁହ, ସେମାନେ କୁକୁରମାନଙ୍କ ପରି।
ସେମାନେ ଲୋକମାନଙ୍କୁ ସୁନ୍ନତ* ହେବାପାଇଁ ଦାବୀ
କରନ୍ତି। ୩କିନ୍ତୁ ଆମ୍ଭେମାନେ ପ୍ରକୃତରେ ସୁନ୍ନତ ହୋଇଥିବା
ଲୋକ ଅଟୁ। ଆମ୍ଭେ ଆତ୍ମା ଦ୍ୱାରା ପରମେଶ୍ୱରଙ୍କର ସେବା
କରୁ। ଆମ୍ଭେ ଖ୍ରୀଷ୍ଟ ଯୀଶୁଙ୍କଠାରେ ଗର୍ବ କରୁ। ଆମ୍ଭେ
ନିଜେ କିଛି କରି ପାରିବା ବୋଲି ନିଜ ଉପରେ ନିର୍ଭର
କରୁ ନାହୁଁ। ୪ଯଦିଓ ମୁଁ ନିଜ ଶକ୍ତିରେ ବିଶ୍ୱାସ ରଖି
ପାରିବି ତଥାପି ମୁଁ ନିଜ ଶକ୍ତି ଉପରେ ବିଶ୍ୱାସ ରଖୁ
ନାହିଁ। ଯଦି କୌଣସି ଲୋକ ଭାବେ ଯେ ନିଜ ଉପରେ
ବିଶ୍ୱାସ କରିବାର ତା'ର କାରଣ ଅଛି, ତାହେଲେ ମୁଁ
କହିବି ଯେ ତା' ଅପେକ୍ଷା ମୋର ନିଜ ଉପରେ ବିଶ୍ୱାସ
କରିବା ପାଇଁ ଅଧିକ କାରଣ ଅଛି। ଏହା ସେ ଜାଣିବା
ଉଚିତ। ୫ମୋର ଜନ୍ମ ହେବାର ଆଠ ଦିନପରେ, ମୋର
ସୁନ୍ନତ କରାଯାଇଥିଲା। ମୁଁ ଜଣେ ଇସ୍ରାୟେଲୀୟ ଲୋକ।
ମୁଁ ବିନ୍ୟାମିନଙ୍କ ବଂଶଧର। ଏବ୍ରୀୟ ପିତାମାତାଙ୍କ ଠାରୁ
ଜନ୍ମିଥିବାରୁ ମୁଁ ଜଣେ ଏବ୍ରୀୟ ଅଟେ। ମୋ ପାଇଁ
ମୋଶାଙ୍କ ବ୍ୟବସ୍ଥା ଅତି ଗୁରୁତ୍ୱପୂର୍ଣ୍ଣ, ସେ ଦୃଷ୍ଟିରୁ ମୁଁ ଜଣେ
ଫାରୂଶୀ। ୬ଯିହୂଦୀଧର୍ମ ପାଇଁ ମୋର ଏତେ ଅଧିକ
ଉଦ୍‌ଯୋଗ ଥିଲା ଯେ ମୁଁ ମଣ୍ଡଳୀକୁ ତାଡ଼ନା କରୁଥିଲି।
ବିଶ୍ୱାସୀମାନଙ୍କୁ ତାଡ଼ନା ଦେଉଥିଲି। ମୁଁ ଯେପରି ଭାବରେ
ମୋଶାଙ୍କ ନିୟମ ପାଳନ କରୁଥିଲି, କେହି ହେଲେ
ମୋଠାରେ କୌଣସି ଦୋଷ ପାଇ ନ ଥିଲେ। ୭ସମୟ
ଥିଲା, ଯେତେବେଳେ ଏଗୁଡ଼ିକ ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ
ଥିଲା। କିନ୍ତୁ ମୁଁ ସ୍ଥିର କଲି ଯେ ଖ୍ରୀଷ୍ଟଙ୍କ ହେତୁ
ସେଗୁଡ଼ିକର କିଛି ମୂଲ୍ୟ ନାହିଁ। ୮ମୁଁ ମୋର ପ୍ରଭୁ ଯୀଶୁ
ଖ୍ରୀଷ୍ଟଙ୍କୁ ଜାଣିବାର ମହାନତା ହେତୁ, ଅନ୍ୟ ସମସ୍ତ ବିଷୟକୁ
ଏବେ ତୁଚ୍ଛ ମନେକରେ, ସେଗୁଡ଼ିକ ମୋ ପାଇଁ ମୂଲ୍ୟହୀନ।
ଖ୍ରୀଷ୍ଟଙ୍କୁ ପାଇବା ପାଇଁ ଯେଉଁ ବିଷୟଗୁଡ଼ିକୁ ମହତ୍ତ୍ୱପୂର୍ଣ୍ଣ
ଭାବୁଥିଲି, ମୁଁ ସବୁ ତ୍ୟାଗ କରିଛି। ମୁଁ ଏବେ ଜାଣେ ଯେ
ସେଗୁଡ଼ିକ ମୂଲ୍ୟହୀନ ସଢ଼ାକୁଟା ପରି। ୯ଏହା ମୋତେ
ଖ୍ରୀଷ୍ଟଙ୍କୁ ଲାଭ କରିବା ପାଇଁ ଓ ଖ୍ରୀଷ୍ଟଙ୍କଠାରେ ରହିବାକୁ
ସାହାଯ୍ୟ କରେ। ଖ୍ରୀଷ୍ଟଙ୍କ ସହଭାଗିତାରେ ମୁଁ ପରମେଶ୍ୱରଙ୍କ
ଧାର୍ମିକତା ପ୍ରାପ୍ତ ହୁଏ କିନ୍ତୁ ଏହି ଧାର୍ମିକତା ବ୍ୟବସ୍ଥା
ପାଳନର ଫଳ ନୁହେଁ। ବରଂ ଏହା ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ
ଦ୍ୱାରା ପରମେଶ୍ୱରଙ୍କଠାରୁ ଆସେ। ପରମେଶ୍ୱର ତାହାଙ୍କ
ପ୍ରତି ମୋତେ ସିଦ୍ଧ କରିବାକୁ ଖ୍ରୀଷ୍ଟଙ୍କଠାରେ ମୋର
ବିଶ୍ୱାସକୁ ବ୍ୟବହାର କରନ୍ତି। ୧୦ମୁଁ ଖ୍ରୀଷ୍ଟଙ୍କୁ ଜାଣିବାକୁ ଓ
ମୃତ୍ୟୁରୁ ସେ ପୁନରୁଜୀବିତ ହୋଇ ଉଠିଥିବା ଶକ୍ତିକୁ ମଧ୍ୟ

---

**ସୁନ୍ନତ** ଗ୍ରୀକ୍‌ରେ ଏହି ଶବ୍ଦର ଅର୍ଥ ହେଉଛି 'ସୁନ୍ନତ' ଭଳି। କିନ୍ତୁ ଏଠାରେ ଅର୍ଥ ହେବ ସମ୍ପୂର୍ଣ୍ଣ ରୂପେ କାଟି ଅଲଗା କରିବା।

ଜାଣିବାକୁ ଇଚ୍ଛା କରେ। ମୁଁ ତାହାଙ୍କ ଦୁଃଖ ଭୋଗରେ
ଅଂଶୀ ହେବାକୁ ଓ ତାହାଙ୍କ ମୃତ୍ୟୁ ଭୋଗରେ ତାହାଙ୍କ
ପରି ହେବାକୁ ଚାହେଁ। ୧୧ଏହିପରି ଭାବରେ ମୁଁ ମୃତମାନଙ୍କ
ମଧ୍ୟରୁ ପୁନରୁତ୍ଥିତ ହୋଇପାରେ, ଏ ଭରସା ମୋର ଅଛି।

## ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଲାଗି ଯତ୍ନ କରିବା

୧୨ମୁଁ କହୁ ନାହିଁ ଯେ ପରମେଶ୍ୱର ମୋତେ ଯେପରି
ହେବାକୁ ଚାହାଁନ୍ତି, ମୁଁ ଠିକ୍ ସେପରି ହୋଇସାରିଛି। ମୁଁ
ସେହି ଲକ୍ଷ୍ୟ ସ୍ଥଳରେ ଏପର୍ଯ୍ୟନ୍ତ ପହଞ୍ଚି ପାରି ନାହିଁ। କିନ୍ତୁ
ମୁଁ ମୋର ଚେଷ୍ଟା ଅବିରତ ଜାରି ରଖିଛି, ଯାହାଦ୍ୱାରା
ସେହି ଲକ୍ଷ୍ୟ ହାସଲ କରିପାରିବି। ଯୀଶୁ ଖ୍ରୀଷ୍ଟ ଚାହାଁନ୍ତି
ଯେ ମୁଁ ସେହି ଲକ୍ଷ୍ୟ ପାଇପାରେ, ସେଥିପାଇଁ ସେ
ମୋତେ ନିଜର କରିଛନ୍ତି। ୧୩ଭାଇ(ଓ ଭଉଣୀ)ମାନେ! ମୁଁ
ଜାଣେ ଯେ ମୁଁ ଏପର୍ଯ୍ୟନ୍ତ ସେହି ଲକ୍ଷ୍ୟ ସ୍ଥଳକୁ ଯାଇ
ପାରିନାହିଁ। କିନ୍ତୁ ମୁଁ ସବୁବେଳେ ଏହି ଗୋଟିଏ କାର୍ଯ୍ୟ
କରେ: ମୁଁ ଅତୀତର ବିଷୟସବୁକୁ ଭୁଲି, ମୋ ଆଗରେ
ଥିବା ଲକ୍ଷ୍ୟକୁ ଆଖିରେ ରଖି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା
ପାଇଁ କଠିନ ପରିଶ୍ରମ କରେ। ୧୪ମୁଁ ସବୁବେଳେ ଲକ୍ଷ୍ୟ
ସ୍ଥଳରେ ପହଞ୍ଚି ପୁରସ୍କାରଟି ପାଇବା ପାଇଁ ଚେଷ୍ଟା କରୁଥାଏ।
ଖ୍ରୀଷ୍ଟଙ୍କଠାରେ ସ୍ୱର୍ଗୀୟ ଜୀବନର ପୁରସ୍କାର ପାଇବା ଲାଗି
ପରମେଶ୍ୱର ମୋତେ ଡାକିଛନ୍ତି।
୧୫ଆମ୍ଭମାନଙ୍କ ଭିତରୁ ଯେଉଁମାନେ ଆତ୍ମିକ ଭାବରେ
ସିଦ୍ଧ ହେବା ପାଇଁ ଯାଉଛୁ, ସେମାନେ ମଧ୍ୟ ଏହିଭଳି
ଭାବିବା ଦରକାର। ଯଦି ଏଥିରେ କୌଣସି କଥାରେ
ତୁମ୍ଭର ଭିନ୍ନ ମତ ଥାଏ, ତାହେଲେ ପରମେଶ୍ୱର ତୁମ୍ଭ
ପାଇଁ ଏହାକୁ ମଧ୍ୟ ସ୍ପଷ୍ଟ କରିଦେବେ। ୧୬କିନ୍ତୁ ଆମ୍ଭେ
ଯେଉଁସବୁ ସତ୍ୟ ଜାଣିଛୁ, ସେହି ସତ୍ୟ ମାର୍ଗରେ ଅବିରତ
ଚାଲିବା ଉଚିତ।
୧୭ଭାଇ(ଓ ଭଉଣୀ)ମାନେ! ତୁମ୍ଭେ ସମସ୍ତେ ମୋ ଭଳି
ଜୀବନ-ଯାପନ କରିବା ପାଇଁ ଚେଷ୍ଟା କରିବା ଉଚିତ।
ଆମ୍ଭେ ଯେଉଁ ଆଦର୍ଶ ଦେଖାଇଛୁ, ତୁମ୍ଭମାନଙ୍କ ଭିତରୁ
ଯେଉଁମାନେ ସେହି ଅନୁସାରେ ଜୀବନ-ଯାପନ କରୁଛନ୍ତି,
ସେମାନଙ୍କୁ ଅନୁସରଣ କର। ୧୮ଅନେକ ଲୋକ ଖ୍ରୀଷ୍ଟଙ୍କ
କ୍ରୁଶର ଶତ୍ରୁମାନଙ୍କ ଭଳି ଜୀବନ-ଯାପନ କରୁଛନ୍ତି। ମୁଁ
ଅନେକଥର ଏହି ଲୋକମାନଙ୍କ ବିଷୟରେ କହିଛି। ଏବେ
ମଧ୍ୟ ମୁଁ କାନ୍ଦିକାନ୍ଦି ସେମାନଙ୍କ ବିଷୟରେ କହୁଛି।
୧୯ସେମାନେ ଯେପରି ଜୀବନ-ଯାପନ କରୁଛନ୍ତି, ତା'ର
ପରିଣତି ବିନାଶ ଅଟେ। ସେମାନେ ପରମେଶ୍ୱରଙ୍କୁ ସେବା
କରିବା ପରିବର୍ତ୍ତେ ନିଜକୁ ଖୁସି କରିବା ପାଇଁ ବଞ୍ଚିଛନ୍ତି।
ସେମାନେ ଲଜ୍ଜାଜନକ କାର୍ଯ୍ୟ କରନ୍ତି ଓ ସେଗୁଡ଼ିକ ପାଇଁ
ଗର୍ବ କରନ୍ତି ଓ ସେମାନେ କେବଳ ପାର୍ଥିବ ବସ୍ତୁଗୁଡ଼ିକର
ଚିନ୍ତା କରନ୍ତି। ୨୦କିନ୍ତୁ ଆମ୍ଭର ଜନ୍ମଭୂମି ହେଉଛି ସ୍ୱର୍ଗ।
ଆମ୍ଭେ ସ୍ୱର୍ଗରୁ ଆମ୍ଭର ତ୍ରାଣକର୍ତ୍ତା ଯୀଶୁ ଖ୍ରୀଷ୍ଟଙ୍କ ଆଗମନକୁ
ପ୍ରତୀକ୍ଷା କରୁଛୁ। ଯୀଶୁଖ୍ରୀଷ୍ଟ ଆମ୍ଭର ପରିତ୍ରାଣକର୍ତ୍ତା ପ୍ରଭୁ
ଅଟନ୍ତି। ୨୧ସେ ସ୍ୱର୍ଗରୁ ଆସିବେ ଏବଂ ଯେଉଁ ଶକ୍ତି
ବଳରେ ସେ ସବୁ ବିଷୟକୁ ନିଜ ଅଧୀନସ୍ଥ କରନ୍ତି, ସେହି
ଶକ୍ତି ବଳରେ ସେ ଆମ୍ଭର ହେୟ ଦେହଗୁଡ଼ିକୁ ପରିବର୍ତ୍ତିତ
କରି ତାଙ୍କ ନିଜର ଦେହ ଭଳି ଗୌରବମୟ କରି
ଦେବେ।

## କେତେକ ବ୍ୟବହାରିକ କଥା

୪ ମୋ ପ୍ରିୟ ଭାଇ(ଓ ଭଉଣୀ)ମାନେ! ମୁଁ ତୁମ୍ଭକୁ ଭଲ
ପାଏ ଓ ଦେଖିବାକୁ ଇଚ୍ଛା କରେ। ତୁମ୍ଭେ ମୋର
ଆନନ୍ଦ ଓ ମୋର ଗର୍ବ। ମୁଁ କହିଥିଲି ଭଳି ପ୍ରଭୁଙ୍କୁ
ଅନୁସରଣ କରି ଚାଲିଥାଅ।
୨ଇୟଦିଆ, ଓ ସନ୍ତୁଖୀ ଉଭୟଙ୍କୁ ପ୍ରଭୁଙ୍କଠାରେ ଏକମତ
ହେବାକୁ ମୁଁ ନିବେଦନ କରେ। ୩ହେ ବନ୍ଧୁ, ତୁମ୍ଭେ
ଯେହେତୁ ମୋ ସହିତ ବିଶ୍ୱସ୍ତ ଭାବରେ ସେବା କରୁଛ,
ଯେଉଁ ସ୍ତ୍ରୀ ଲୋକମାନେ ମୁଁ ସୁସମାଚାର ପ୍ରଚାର କଲାବେଳେ
ମୋ ସହିତ ପରିଶ୍ରମ କରିଅଛନ୍ତି, ସେମାନଙ୍କୁ ସାହାଯ୍ୟ
କର ବୋଲି ତୁମ୍ଭକୁ ମୁଁ ନିବେଦନ କରେ। ସେମାନେ
କ୍ଲେମେନ୍ସ ଏବଂ ମୋର ଅନ୍ୟ ସହକାରୀମାନଙ୍କ ସହିତ
ସେବାକାର୍ଯ୍ୟ କରିଛନ୍ତି। ସେମାନଙ୍କ ନାମ 'ଜୀବନ-ପୁସ୍ତକ'*
ରେ ଲେଖାଅଛି।
୪ପ୍ରଭୁଙ୍କଠାରେ ସର୍ବଦା ଆନନ୍ଦ କର। ମୁଁ ଆଉ ଥରେ
କହେ, ଆନନ୍ଦ କର।
୫ସମସ୍ତେ ଦେଖନ୍ତୁ ଯେ ତୁମ୍ଭେ ଶାନ୍ତ ଓ ଦୟାଳୁ ଅଟ।
ପ୍ରଭୁ ଶୀଘ୍ର ଆସୁଛନ୍ତି। ୬କୌଣସି କଥା ପାଇଁ ଚିନ୍ତିତ ହୁଅ
ନାହିଁ। ତୁମ୍ଭର ଯାହା ଦରକାର, ପରମେଶ୍ୱରଙ୍କୁ ପ୍ରାର୍ଥନା
କରି ମାଗ। ପ୍ରାର୍ଥନା କଲାବେଳେ ସଦା ଧନ୍ୟବାଦ ଦିଅ।
୭ପରମେଶ୍ୱରଙ୍କର ଶାନ୍ତି ତୁମ୍ଭମାନଙ୍କ ହୃଦୟ ଓ ମନଗୁଡ଼ିକୁ
ଖ୍ରୀଷ୍ଟଙ୍କଠାରେ ସୁରକ୍ଷା କରି ରଖିବ। ପରମେଶ୍ୱରଙ୍କ ପ୍ରଦତ୍ତ
ଏହି ଶାନ୍ତି କେତେ ଯେ ମହାନ, ତାହା ଆମ୍ଭେ ବୁଝି
ପାରୁ।
୮ଭାଇ(ଓ ଭଉଣୀ)ମାନେ! ଯାହା ସତ୍ୟ, ସମ୍ମାନଜନକ,
ଯଥାର୍ଥ, ଶୁଦ୍ଧ, ଆଦରଣୀୟ, ପ୍ରୀତିଭାଜନ ଓ କୌଣସି
ସଦ୍‌ଗୁଣ ଓ ପ୍ରଶଂସାର ଥାଏ, ସେହି ବିଷୟଗୁଡ଼ିକରେ
ମନୋଯୋଗ କର। ୯ମୋଠାରୁ ଯାହା ସବୁ ଶିଖିଛ ଓ
ପାଇଛ, ତାହା କର। ମୁଁ ଯାହା କହିଛି ଓ ତୁମ୍ଭେ ମୋତେ
ଯାହାସବୁ କରିଥିବା ଦେଖିଛ, ସେଗୁଡ଼ିକୁ କର। ଶାନ୍ତିଦାତା
ପରମେଶ୍ୱର ତୁମ୍ଭମାନଙ୍କ ସହିତ ରହିବେ।

## ଫିଲିପ୍ପୀୟ ଖ୍ରୀଷ୍ଟିୟାନମାନଙ୍କୁ ପାଉଲଙ୍କ ଧନ୍ୟବାଦ

୧୦ତୁମ୍ଭେମାନେ ମୋ ବିଷୟରେ ଚିନ୍ତିତ ହୋଇଥିବାରୁ
ମୁଁ ପ୍ରଭୁଙ୍କଠାରେ ଆନନ୍ଦିତ। ତୁମ୍ଭେମାନେ ମୋ ବିଷୟରେ
ଚିନ୍ତା କରୁଥିଲ, କିନ୍ତୁ ତାହା ଦେଖାଇବା ପାଇଁ ସୁଯୋଗ
ପାଇ ନ ଥିଲ। ୧୧ମୁଁ ଏପରି କହିବାର କାରଣ ନୁହେଁ
ଯେ ମୁଁ କୌଣସି ବିଷୟ ଚାହୁଁଛି। କାରଣ ମୋର
ବର୍ତ୍ତମାନ ଯାହା ଅଛି ଏବଂ ଯାହା ମୋ ପାଇଁ ଘଟୁଛି,
ସେଥିରେ ସନ୍ତୁଷ୍ଟ ରହିବାକୁ ମୁଁ ଶିଖିଛି। ୧୨ଅଭାବରେ ମୁଁ

---

**'ଜୀବନ ପୁସ୍ତକ'** ପରମେଶ୍ୱରଙ୍କ ବଛା ଲୋକଙ୍କ ନାମ ଲେଖା ଥିବା ପୁସ୍ତକ ପ୍ରକାଶିତ ବାକ୍ୟ ୩:୫, ୨୧:୨୭

ଚଳିବା ଜାଣିଛି। ପ୍ରଚୁରତାରେ କିପରି ରହିବାକୁ ହୁଏ,
ତାହା ମଧ୍ୟ ମୁଁ ଜାଣେ। ପ୍ରତ୍ୟେକ ସମୟରେ ଓ ପ୍ରତ୍ୟେକ
ଘଟଣାରେ ଆନନ୍ଦିତ ହେବାର ରହସ୍ୟ ମୁଁ ଜାଣେ।
ଯେତେବେଳେ ମୋର ଖାଇବା ପାଇଁ ଯଥେଷ୍ଟ ଥାଏ କିମ୍ବା
ଯେତେବେଳେ ଯଥେଷ୍ଟ ନ ଥାଏ, ଯେତେବେଳେ ମୋର
ପ୍ରଚୁର ଥାଏ ବା ଯେତେବେଳେ ମୋର ଅଭାବ ଥାଏ,
ସେତେବେଳେ କିପରି ଆନନ୍ଦିତ ହୋଇପାରିବ, ତାହା ମୁଁ
ଜାଣେ। [13]ଖ୍ରୀଷ୍ଟଙ୍କ ଠାରୁ ମୋତେ ଶକ୍ତି ପ୍ରଦତ୍ତ ହୋଇଥିବାରୁ,
ତାଙ୍କ ମାଧ୍ୟମରେ ମୁଁ ସବୁ କିଛି କରିବାକୁ ସକ୍ଷମ।

[14]କିନ୍ତୁ ମୋର ସାହାଯ୍ୟ ଦରକାର ଥିଲା ବେଳେ,
ତୁମ୍ଭେମାନେ ମୋତେ ସାହାଯ୍ୟ କରି ଭଲ କରିଛ। [15]ମୁଁ
ଯେତେବେଳେ ସେଠାରେ ସୁସମାଚାରର ପ୍ରଚାର ଆରମ୍ଭ କଲି,
ସେତେବେଳେ ତୁମ୍ଭେ ଫିଲିପ୍ପୀବାସୀ, ତାହା ମନେ ରଖିଛ।
ମୁଁ ଯେତେବେଳେ ମାକିଦନିଆ ଛାଡ଼ିଲି, ସେତେବେଳେ
କେବଳ ତୁମ୍ଭର ମଣ୍ଡଳୀ ମୋତେ ସାହାଯ୍ୟ ଦେଇଥିଲା।
[16]ଥେସଲନୀକୀ ନଗରରେ ଥିଲାବେଳେ ତୁମ୍ଭେମାନେ ଅନେକ
ଥର ମୋର ଆବଶ୍ୟକତା ପୂରଣ କରିବାକୁ ଜିନିଷମାନ
ପଠାଇଛ। [17]ମୁଁ ତୁମ୍ଭ ଉପହାର ପାଇଁ ଲାଳାୟିତ ନୁହେଁ
କିନ୍ତୁ ମୁଁ ଚାହେଁ ଯେ, ଦେବା ଦ୍ୱାରା ଯେଉଁ ଲାଭ ମିଳେ,
ତାହା ତୁମ୍ଭେ ପାଅ। [18]ମୋର ସମସ୍ତ ଆବଶ୍ୟକୀୟ ଜିନିଷ
ମୋ ପାଖରେ ଅଛି। ଏପାଫ୍ରଦିତଙ୍କ ଦ୍ୱାରା ତୁମ୍ଭେମାନେ
ଉପହାରମାନ ପଠାଇଥିବାରୁ ମୋ ପାଖରେ ମୋର
ଆବଶ୍ୟକତାଠାରୁ ଅଧିକ ରହିଛି। ତୁମ୍ଭର ଉପହାର ଗୁଡ଼ିକ
ସୁଗନ୍ଧି ବଳି ରୂପେ ପରମେଶ୍ୱରଙ୍କୁ ଅର୍ପଣ କରାଯାଇଛି।
[19]ପରମେଶ୍ୱର ସେଗୁଡ଼ିକୁ ଗ୍ରହଣ କରନ୍ତି ଓ ତାହା ତାହାଙ୍କୁ
ପ୍ରସନ୍ନ କରେ। ଯୀଶୁଙ୍କ ଧନରେ ମୋ ପରମେଶ୍ୱର ଅତି
ଧନୀ। ତୁମ୍ଭର ସମସ୍ତ ଆବଶ୍ୟକତାଗୁଡ଼ିକୁ ପୂରଣ କରିବା
ଲାଗି ପରମେଶ୍ୱର ଖ୍ରୀଷ୍ଟଯୀଶୁଙ୍କ ଠାରେ ତାଙ୍କ ଧନର
ବ୍ୟବହାର କରିବେ। [20]ଆମ୍ଭର ପରମେଶ୍ୱରଙ୍କ ମହିମା
ଗୌରବ ସଦାସର୍ବଦା ହେଉ। ଆମେନ୍!

[21]ଖ୍ରୀଷ୍ଟଙ୍କଠାରେ ପରମେଶ୍ୱରଙ୍କ ପ୍ରତ୍ୟେକ ପବିତ୍ର ଲୋକଙ୍କୁ
ନମସ୍କାର। ମୋ ସହିତ ଥିବା ପରମେଶ୍ୱରଙ୍କ ଲୋକମାନେ
ତୁମ୍ଭମାନଙ୍କୁ ନମସ୍କାର ଜଣାଉଛନ୍ତି। [22]ପରମେଶ୍ୱରଙ୍କ ସମସ୍ତ
ଲୋକ ଓ ବିଶେଷ ଭାବରେ ଯେଉଁମାନେ କାଇସରଙ୍କ
ପ୍ରାସାଦରେ ଅଛନ୍ତି, ସେହି ବିଶ୍ୱାସୀମାନେ ତୁମ୍ଭମାନଙ୍କୁ
ନମସ୍କାର ଜଣାଇଛନ୍ତି।

[23]ତୁମ୍ଭ ସମସ୍ତଙ୍କ ସହିତ ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର
ଅନୁଗ୍ରହ ରହିଥାଉ।

# କଲସୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କ ପତ୍ର

୧ ଈଶ୍ୱରଙ୍କ ଇଚ୍ଛାରେ ଖ୍ରୀଷ୍ଟ ଯୀଶୁଙ୍କ ଜଣେ ପ୍ରେରିତ ମୁଁ
ପାଉଲ ଓ ଆମ୍ଭ ଭାଇ ତୀମଥିଙ୍କ ଠାରୁ
୨କଲସୀରେ ରହୁଥିବା ଖ୍ରୀଷ୍ଟଙ୍କ ଠାରେ ପବିତ୍ର ଓ
ବିଶ୍ୱସ୍ତ ଭାଇ (ଓ ଭଉଣୀ)ମାନଙ୍କୁ ଲେଖୁଛି; ଆମ୍ଭର ପିତା
ପରମେଶ୍ୱରଙ୍କ ଠାରୁ ଅନୁଗ୍ରହ ଓ ଶାନ୍ତି ତୁମ୍ଭମାନଙ୍କ ସହିତ
ରହୁ।
୩ଆମ୍ଭ ପ୍ରାର୍ଥନାରେ ଆମ୍ଭେ ସବୁବେଳେ ତୁମ୍ଭ ପାଇଁ
ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଉଛୁ। ୪ପରମେଶ୍ୱର ଆମ୍ଭ
ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ପିତା ଅଟନ୍ତି। ତୁମ୍ଭମାନଙ୍କର
ଯୀଶୁଙ୍କଠାରେ ବିଶ୍ୱାସ ଓ ପରମେଶ୍ୱରଙ୍କ ସମସ୍ତ ଲୋକମାନଙ୍କ
ପାଇଁ ତୁମ୍ଭଠାରେ ଥିବା ପ୍ରେମ ବିଷୟରେ ଶୁଣି ଆମ୍ଭେ
ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଉଛୁ। ୫ତୁମ୍ଭମାନଙ୍କର ଭରସା
ହେତୁ ତୁମ୍ଭେମାନେ ଖ୍ରୀଷ୍ଟଙ୍କୁ ବିଶ୍ୱାସ ଓ ସାଧୁମାନଙ୍କୁ ପ୍ରେମ
କରୁଛ। ତୁମ୍ଭେ ଯେଉଁ ବିଷୟ ଗୁଡ଼ିକ ପାଇଁ ଭରସା
କରୁଛ, ତାହା ସ୍ୱର୍ଗରେ ତୁମ୍ଭ ପାଇଁ ସୁରକ୍ଷିତ ଅଛି।
ତୁମ୍ଭେମାନେ ଯେତେବେଳେ ସତ୍‌ଶିକ୍ଷା ବା ସୁସମାଚାର
ଶୁଣିଥିଲ, ସେତେବେଳେ ଏହି ଭରସା ବିଷୟରେ ଜାଣିଥିଲ।
୬ବିଶ୍ୱରେ ସର୍ବତ୍ର ସୁସମାଚାର ଆଶୀର୍ବାଦ ଆଣୁଛି ଓ ବୃଦ୍ଧି
ଲାଭ କରୁଛି। ଯେଉଁ ଦିନଠାରୁ ତୁମ୍ଭେମାନେ ସୁସମାଚାର
ଶୁଣିଲ ଓ ପରମେଶ୍ୱରଙ୍କ ଅନୁଗ୍ରହର ସତ୍ୟ ବୁଝିଲ, ସେହି
ଦିନଠାରୁ ତୁମ୍ଭେମାନେ ମଧ୍ୟ ଆଶୀର୍ବାଦ ଲାଭ କରୁଛ।
୭ତୁମ୍ଭେମାନେ ପରମେଶ୍ୱରଙ୍କ ଅନୁଗ୍ରହ ବିଷୟରେ ଏପାଫ୍ରାଙ୍କ
ଠାରୁ ଜାଣିଲ। ଏପାଫ୍ରା ଆମ୍ଭର ସହିତ କାମ କରନ୍ତି ଓ
ଆମ୍ଭେମାନେ ତାହାଙ୍କୁ ଭଲ ପାଉ। ସେ ଖ୍ରୀଷ୍ଟଙ୍କର ଜଣେ
ବିଶ୍ୱାସୀ ସେବକ। ୮ଏପାଫ୍ରା, ପବିତ୍ର ଆତ୍ମାଙ୍କଠାରୁ ପ୍ରାପ୍ତ
ତୁମ୍ଭମାନଙ୍କର ପ୍ରେମ ବିଷୟରେ ଆମ୍ଭକୁ କହିଛନ୍ତି।
୯ସେଥିପାଇଁ ଯେଉଁଦିନଠାରୁ ଆମ୍ଭେ ତୁମ୍ଭମାନଙ୍କ ବିଷୟରେ
ଏହି କଥା ଶୁଣିଲୁ, ଆମ୍ଭେ ତୁମ୍ଭମାନଙ୍କ ପାଇଁ ନିରନ୍ତର
ପ୍ରାର୍ଥନା କରୁଛୁ। ଆମ୍ଭେ ତୁମ୍ଭମାନଙ୍କ ପାଇଁ ପ୍ରାର୍ଥନା କରୁଛୁ:

ଯେପରି ପରମେଶ୍ୱର ଇଚ୍ଛା କରୁଥିବା ବିଷୟଗୁଡ଼ିକ
ତୁମ୍ଭେମାନେ ସଂପୂର୍ଣ୍ଣ ଜାଣିବ; ଯେପରି ତୁମ୍ଭମାନଙ୍କ
ଜ୍ଞାନ ସାହାଯ୍ୟରେ ତୁମ୍ଭେମାନେ ଆଧ୍ୟାତ୍ମିକ
ବିଷୟଗୁଡ଼ିକରେ ସମସ୍ତ ଜ୍ଞାନ ଓ ବୋଧଶକ୍ତି ମଧ୍ୟ
ଲାଭ କରିବ;
୧୦ ଯେପରି ତୁମ୍ଭେମାନେ ପ୍ରଭୁଙ୍କୁ ଗୌରବ (ସମ୍ମାନ)
ଆଣିଲା ଭଳି ଓ ପ୍ରତ୍ୟେକ ଢଙ୍ଗରେ ତାହାଙ୍କୁ
ପ୍ରସନ୍ନ କଲା ଭଳି ଏହି ବିଷୟଗୁଡ଼ିକ ବ୍ୟବହାର
କରି ଜୀବନ-ଯାପନ କରିବ; ଯେପରି ତୁମ୍ଭେମାନେ
ସମସ୍ତ ପ୍ରକାରର ଭଲ କାମ କରିବ ଓ ପରମେଶ୍ୱର
ବିଷୟକ ଜ୍ଞାନରେ ବିକାଶ ଲାଭ କରିବ;
୧୧ ଯେପରି ପରମେଶ୍ୱର ତାହାଙ୍କ ମହାନ୍ ଶକ୍ତି ଦ୍ୱାରା
ତୁମ୍ଭମାନଙ୍କୁ ଶକ୍ତିଶାଳୀ କରନ୍ତୁ; ଯେ ତୁମ୍ଭେମାନେ
ଧୈର୍ଯ୍ୟବାନ ହେବ ଓ କଷ୍ଟ ପଡ଼ିଲେ, ପଳାୟନ
କରିବ ନାହିଁ, ସେଥିପାଇଁ ପରମେଶ୍ୱର ତୁମ୍ଭମାନଙ୍କୁ
ଶକ୍ତି ଦିଅନ୍ତୁ।

୧୨ତାହେଲେ ଯାଇ ତୁମ୍ଭେ ପ୍ରସନ୍ନ ହେବ ଓ ପିତାଙ୍କୁ
ଧନ୍ୟବାଦ ଦେବ। ସେ ଯେଉଁ ବିଷୟଗୁଡ଼ିକ ତୁମ୍ଭ ପାଇଁ
ପ୍ରସ୍ତୁତ କରିଛନ୍ତି, ସେଗୁଡ଼ିକ ପାଇବା ପାଇଁ ସେ ତୁମ୍ଭମାନଙ୍କୁ
ଉପଯୁକ୍ତ କରି ଗଢ଼ିଛନ୍ତି। ଯେଉଁ ସାଧୁମାନେ ଆଲୁଅରେ
ବାସ କରନ୍ତି, ସେମାନଙ୍କ ଲାଗି ସେ ଏହି ବିଷୟଗୁଡ଼ିକ
ସୃଷ୍ଟି କରିଛନ୍ତି। ୧୩ଅନ୍ଧକାରର ଶକ୍ତିରୁ ପରମେଶ୍ୱର ଆମ୍ଭକୁ
ସ୍ୱାଧୀନ କରିଛନ୍ତି। ସେ ଆମ୍ଭକୁ ତାଙ୍କ ପ୍ରିୟ ପୁତ୍ରଙ୍କର
ରାଜ୍ୟ ମଧ୍ୟକୁ ଆଣିଛନ୍ତି। ୧୪ସେହି ପୁତ୍ର ଆମ୍ଭକୁ ମୁକ୍ତ
କରିବା ଲାଗି ମୂଲ୍ୟ ପ୍ରଦାନ କରିଛନ୍ତି। ତାହାଙ୍କ ଦ୍ୱାରା
ଆମ୍ଭ ପାପରୁ ଆମ୍ଭକୁ କ୍ଷମା ମିଳିଛି।

**ଯେତେବେଳେ ଆମ୍ଭେ ଯୀଶୁ ଖ୍ରୀଷ୍ଟଙ୍କୁ ଦେଖୁ, ସେତେବେଳେ ଆମ୍ଭେ ପରମେଶ୍ୱରଙ୍କୁ ଦେଖୁ**

୧୫କୌଣସି ଲୋକ ପରମେଶ୍ୱରଙ୍କୁ ଦେଖି ପାରେ
ନାହିଁ। କିନ୍ତୁ ଖ୍ରୀଷ୍ଟ ଠିକ ପରମେଶ୍ୱରଙ୍କ ଭଳି। ଖ୍ରୀଷ୍ଟ
ସମସ୍ତ ସୃଷ୍ଟ ବିଷୟଗୁଡ଼ିକର ଶାସକ ଅଟନ୍ତି। ୧୬ତାହାଙ୍କର
ଶକ୍ତିରେ ସମସ୍ତ ବିଷୟଗୁଡ଼ିକର ଉତ୍ପତ୍ତି ସ୍ୱର୍ଗର ଓ ପୃଥିବୀର
ବିଷୟ, ଦୃଶ୍ୟ ଓ ଅଦୃଶ୍ୟ ବିଷୟ ସବୁ, ସମସ୍ତ ଆଧ୍ୟାତ୍ମିକ
ଶକ୍ତି, ଅଧିକାରୀଗଣ, ପ୍ରଭୁଗଣ ଓ ଶାସକଗଣ। ସବୁ
ବିଷୟଗୁଡ଼ିକ ଖ୍ରୀଷ୍ଟଙ୍କ ମାଧ୍ୟମରେ ଓ ତାହାଙ୍କ ପାଇଁ
ନିର୍ମିତ। ସମସ୍ତ ବିଷୟ ସୃଷ୍ଟି ହେବା ପୂର୍ବରୁ ଖ୍ରୀଷ୍ଟ ଥିଲେ।
ସମସ୍ତ ବିଷୟର ଅସ୍ତିତ୍ୱ ତାହାଙ୍କ ହେତୁ ରହିଛି। ୧୮ଖ୍ରୀଷ୍ଟ
ମଣ୍ଡଳୀରୂପ ଶରୀରର ମୁଖ୍ୟ ଅଟନ୍ତି। ପ୍ରତ୍ୟେକ ବିଷୟ
ତାହାଙ୍କଠାରୁ ଆସିଥାଏ। ସେ ମୃତ୍ୟୁରୁ ପୁନରୁତ୍ଥିତ (ଏକମାତ୍ର
ପୁନରୁତ୍ଥିତ ଈଶ୍ୱର) ହୋଇଥିବା ପ୍ରଭୁ। ଅତଏବ ପ୍ରତ୍ୟେକ
ବିଷୟରେ ଖ୍ରୀଷ୍ଟ ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଅଟନ୍ତି। ୧୯ପରମେଶ୍ୱର
ଖ୍ରୀଷ୍ଟଙ୍କଠାରେ ବାସ କରିବାକୁ ପସନ୍ଦ କଲେ। ୨୦ଖ୍ରୀଷ୍ଟଙ୍କ
ମାଧ୍ୟମରେ ପରମେଶ୍ୱର ପୁଣି ଥରେ ସମସ୍ତ ପୃଥିବୀର
ବିଷୟ ହେଉ ବା ସ୍ୱର୍ଗର ବିଷୟ ହେଉ ନିଜ ସହିତ
ମିଳିତ କରିବାକୁ ପସନ୍ଦ କଲେ। ଖ୍ରୀଷ୍ଟଙ୍କ କ୍ରୁଶର ରକ୍ତ
ଦ୍ୱାରା ପରମେଶ୍ୱର ଶାନ୍ତି ଆଣିଲେ।

୨୧ପୂର୍ବରୁ ତୁମ୍ଭେ ମନ୍ଦ କାମ କରିଥିବା କାରଣରୁ
ପରମେଶ୍ୱରଙ୍କ ବିରୋଧୀ ଥିଲ। ତୁମ୍ଭେମାନେ ମନରେ
ପରମେଶ୍ୱରଙ୍କ ଶତ୍ରୁ ଥିଲ। ସେଥିପାଇଁ ପରମେଶ୍ୱରଙ୍କ ଠାରୁ
ଦୂରେଇ ଯାଇଥିଲ। ୨୨କିନ୍ତୁ ଖ୍ରୀଷ୍ଟ ପୁଣି ଥରେ ତୁମ୍ଭମାନଙ୍କୁ
ପରମେଶ୍ୱରଙ୍କ ମିତ୍ର କରି ଦେଇଛନ୍ତି। ତାଙ୍କ ମାଂସମୟ
ଶରୀରରେ, ନିଜ ମୃତ୍ୟୁ ଦ୍ୱାରା ସେ ଏହା କରିଛନ୍ତି।
ନିଷ୍କଳଙ୍କ ଓ ନିର୍ଦ୍ଦୋଷ ଭାବରେ ତୁମ୍ଭମାନଙ୍କୁ ପରମେଶ୍ୱରଙ୍କ
ଆଗକୁ ଆଣିବା ପାଇଁ ସେ ଏହା କଲେ। ୨୩ତୁମ୍ଭେମାନେ
ଶୁଣିଥିବା ସୁସମାଚାର ଉପରେ ବିଶ୍ୱାସ ରଖି ପାରିଲେ ଖ୍ରୀଷ୍ଟ
ଏହି କାମ କରି ଚାଲିବେ। ତୁମ୍ଭେମାନେ ନିଜ ବିଶ୍ୱାସରେ
ଦୃଢ଼ତା ଓ ନିଶ୍ଚିତବୋଧ ରଖିଥିବ। ସୁସମାଚାର ତୁମ୍ଭମାନଙ୍କୁ
ଯେଉଁ ଭରସା ଦେଇଛି ସେଥିରୁ ବିଚଳିତ ହେବ ନାହିଁ।
ସେହି ସମାନ ସୁସମାଚାର ସମଗ୍ର ବିଶ୍ୱରେ ସମସ୍ତଙ୍କୁ
କୁହାଯାଇଛି। ମୁଁ ପାଉଲ, ସେହି ସୁସମାଚାର କହିବାରେ
ସାହାଯ୍ୟ କରିଛି।

## ମଣ୍ଡଳୀ ପାଇଁ ପାଉଲଙ୍କ କାମ

୨୪ତୁମ୍ଭମାନଙ୍କ ପାଇଁ ମୁଁ ଯେଉଁ କଷ୍ଟ ପାଇଛି, ସେଥିପାଇଁ
ମୋତେ ଆନନ୍ଦ ମିଳୁଛି। ଖ୍ରୀଷ୍ଟଙ୍କ ପାଇଁ ତାଙ୍କ ଦେହ
ସ୍ୱରୂପ ମଣ୍ଡଳୀ ମାଧ୍ୟମରେ କେତେକ କଷ୍ଟ ଭୋଗିବା ବାକି
ଥିଲା। ସେଗୁଡ଼ିକରୁ ଦୁଃଖଭୋଗ କରିବା ପାଇଁ ଥିବା
ମୋର ଅଂଶ ମୁଁ ମୋ ଦେହରେ ଗ୍ରହଣ କରୁଛି।
୨୫ପରମେଶ୍ୱର ମୋତେ ମଣ୍ଡଳୀର ଜଣେ ସେବକ ହେବା
ପାଇଁ ଏକ ବିଶେଷ କାମ ଦେଇଛନ୍ତି। ଏହି କାମ
ତୁମ୍ଭମାନଙ୍କୁ ସାହାଯ୍ୟ କରୁଛି। ମୋ କାମ ହେଉଛି
ତୁମ୍ଭମାନଙ୍କୁ ପୂର୍ଣ୍ଣଭାବରେ ପରମେଶ୍ୱରଙ୍କ ଶିକ୍ଷା ପ୍ରଦାନ
କରିବା। ୨୬ସୃଷ୍ଟିର ଆରମ୍ଭରୁ ଏହି ଗୁପ୍ତ ସତ୍ୟଟି ସମସ୍ତ
ଲୋକମାନଙ୍କ ପାଇଁ ଗୋପନୀୟ ଥିଲା। କିନ୍ତୁ ଏବେ ସେହି
ଗୁପ୍ତ ସତ୍ୟ ପରମେଶ୍ୱରଙ୍କ ପବିତ୍ର ଲୋକମାନଙ୍କୁ ଜଣାଇ
ଦିଆଗଲା। ୨୭ଏହି ମହାନ୍ ସତ୍ୟଟି ସମସ୍ତଙ୍କ ପାଇଁ ଅଟେ।
ପରମେଶ୍ୱର ଏହି ମହାନ ଓ ବୈଭବପୂର୍ଣ୍ଣ ସତ୍ୟକୁ ନିଜ
ଲୋକଙ୍କୁ ଜଣାଇ ଦେବା ପାଇଁ ସ୍ଥିର କଲେ। ଏହି ସତ୍ୟ
ସ୍ୱୟଂ ତୁମ୍ଭମାନଙ୍କ ଭିତରେ ଥିବା ଖ୍ରୀଷ୍ଟ ନିଜେ ଅଟନ୍ତି।
ପରମେଶ୍ୱରଙ୍କ ମହିମା ପ୍ରାପ୍ତ କରିବା ପାଇଁ, ସେ ହେଉଛନ୍ତି
ଆମ୍ଭର ଏକମାତ୍ର ଭରସା। ୨୮ଅତଏବ ଆମ୍ଭେ ଖ୍ରୀଷ୍ଟଙ୍କ
ବିଷୟରେ ଲୋକଙ୍କୁ କହି ଚାଲିଛୁ। ଆମ୍ଭେ ପ୍ରତ୍ୟେକ
ଲୋକଙ୍କୁ ଶିକ୍ଷା ଦେବା ଓ ଶକ୍ତିଶାଳୀ କରିବା ପାଇଁ
ଆମ୍ଭର ସମସ୍ତ ଜ୍ଞାନ ଖଟାଉଛୁ। ଏପରି କରି ଆମ୍ଭେ
ଖ୍ରୀଷ୍ଟଙ୍କ ଠାରେ ଆଧ୍ୟାତ୍ମିକ ଭାବରେ ପରିପୂର୍ଣ୍ଣ ହୋଇ
ପରମେଶ୍ୱରଙ୍କ ଆଗରେ ସମସ୍ତଙ୍କୁ ଉପସ୍ଥିତ କରି ପାରିବାକୁ
ଚେଷ୍ଟା କରୁଛୁ। ୨୯ଖ୍ରୀଷ୍ଟ ମୋତେ ଦେଇଥିବା ମହାନ୍ ଶକ୍ତି
ବଳରେ ସଂଘର୍ଷ କରି ମୁଁ ଏହି କାମଟି କରୁଛି। ଏହି ଶକ୍ତି
ମୋ ଜୀବନରେ କାମ କରୁଛି।

୨ ମୁଁ ଚାହେଁ ତୁମ୍ଭେମାନେ ଜାଣିରଖ ଯେ ତୁମ୍ଭମାନଙ୍କୁ
ସାହାଯ୍ୟ କରିବା ପାଇଁ ମୁଁ କଠିନ ପରିଶ୍ରମ କରୁଛି।
ଏବଂ ଲାଅଦିକୀଆରେ ଥିବା ଲୋକମାନଙ୍କୁ ଓ ମୋତେ
ଦେଖି ନ ଥିବା ଅନ୍ୟ ଲୋକମାନଙ୍କୁ ମଧ୍ୟ ମୁଁ ସାହାଯ୍ୟ
କରିବାକୁ ଚେଷ୍ଟା କରୁଛି। ୨ମୁଁ ଇଚ୍ଛା କରେ ଯେ
ସେମାନେ ପ୍ରେମରେ ବାନ୍ଧି ହୋଇ ଶକ୍ତିଶାଳୀ ହୁଅନ୍ତୁ। ମୁଁ
ଏହା ମଧ୍ୟ ଇଚ୍ଛା କରେ ଯେ ସେମାନେ ବୋଧଶକ୍ତି ଦ୍ୱାରା
ପ୍ରାପ୍ତ ଦୃଢ଼ ବିଶ୍ୱାସରେ ଧନୀ ହୁଅନ୍ତୁ। ମୋର ଇଚ୍ଛା ଯେ
ତୁମ୍ଭେମାନେ ପରମେଶ୍ୱରଙ୍କ ଦ୍ୱାରା ଜ୍ଞାତ କରାଯାଇଥିବା
ଗୁପ୍ତ ସତ୍ୟ ଅର୍ଥାତ ଖ୍ରୀଷ୍ଟଙ୍କୁ ପୂର୍ଣ୍ଣ ଭାବରେ ଜାଣ।
୩ଖ୍ରୀଷ୍ଟଙ୍କ ଠାରେ ଜ୍ଞାନ ଓ ବିଜ୍ଞତାର ଭଣ୍ଡାର ସୁରକ୍ଷିତ
ରଖା ହୋଇଛି।

୪ମୋର ଏପରି କହିବା ଉଦ୍ଦେଶ୍ୟ ଯେ ତୁମ୍ଭମାନଙ୍କୁ
ଯେପରି କେହି ଭଲ ବୋଲି ଜଣା ପଡୁଥିବା ଅସତ୍ୟ ଶିକ୍ଷା
ଦ୍ୱାରା ବିଭ୍ରାନ୍ତ କରି ନ ଦେଉ। ୫ମୁଁ ମୋ ଶରୀରରେ ତୁମ୍ଭ
ସହିତ ସେଠାରେ ନାହିଁ, କିନ୍ତୁ ମୋର ଆତ୍ମା ସେଠାରେ
ଅଛି। ମୁଁ ତୁମ୍ଭମାନଙ୍କ ଉତ୍ତମ ଜୀବନ ଓ ତୁମ୍ଭମାନଙ୍କର
ଖ୍ରୀଷ୍ଟଙ୍କଠାରେ ବଳିଷ୍ଠ ବିଶ୍ୱାସ ଦେଖି ପ୍ରସନ୍ନ ଅଟେ।

## ଯୀଶୁ ଖ୍ରୀଷ୍ଟଙ୍କ ଠାରେ ରହିଥାଅ:

୬ତୁମ୍ଭେ ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କୁ ଗ୍ରହଣ କରିଛ। ଅତଏବ
କୌଣସି ଅସ୍ଥିରଚିତ୍ତ ନ ହୋଇ ତାହାଙ୍କୁ ଅନୁସରଣ
କରିଚାଲ। ୭ତୁମ୍ଭେ କେବଳ ତାହାଙ୍କ ଉପରେ ନିର୍ଭର
କର। ଜୀବନ ଓ ଶକ୍ତି ତାହାଙ୍କ ଠାରୁ ଆସେ। ତୁମ୍ଭକୁ
ସତ୍ୟର ଶିକ୍ଷା ଦିଆ ଯାଇଛି। ସେହି ସତ୍ୟ ଶିକ୍ଷା ଉପରେ
ତୁମ୍ଭର ଦୃଢ଼ ଆସ୍ଥା ରହିଥିବା ଉଚିତ୍। ପରମେଶ୍ୱରଙ୍କୁ
ସବୁବେଳେ ଧନ୍ୟବାଦ ଦେଉଥାଅ।

୮ସାବଧାନ ରୁହ, ଯେପରି କେହି ତୁମ୍ଭକୁ ଅନର୍ଥକ,
ଅସତ୍ୟ ଚିନ୍ତାଧାରା ଓ ବାକ୍ୟ ଦ୍ୱାରା ଭ୍ରାନ୍ତ ନ କରୁ।
ଏହିଭଳି ଧାରଣାସବୁ ଖ୍ରୀଷ୍ଟଙ୍କ ଠାରୁ ନୁହେଁ, ମନୁଷ୍ୟ ଠାରୁ
ଉତ୍ପନ୍ନ ହୁଏ। ଏହି ଧାରଣାଗୁଡ଼ିକ ହେଉଛି ସଂସାରର
ଲୋକମାନଙ୍କର ମୂଲ୍ୟହୀନ ଧାରଣା। ୯ପରମେଶ୍ୱର
ଖ୍ରୀଷ୍ଟଙ୍କଠାରେ (ପାର୍ଥିବ ଶରୀର ଧାରଣ କରି) ବାସ
କଲେ। ୧୦ଖ୍ରୀଷ୍ଟଙ୍କ ଠାରେ ତୁମ୍ଭେ ସଂପୂର୍ଣ୍ଣ ଅଛ। ତୁମ୍ଭର
ଆଉ କିଛି ଦରକାର ନାହିଁ। ସେ ହେଉଛନ୍ତି ଶାସକମାନଙ୍କର
ଓ ଶକ୍ତିଗୁଡ଼ିକର ଶାସକ ବା ପ୍ରଧାନ। ୧୧ଖ୍ରୀଷ୍ଟଙ୍କ ଠାରେ
ତୁମ୍ଭେମାନେ ଏକ ଭିନ୍ନ ପ୍ରକାରର ସୁନ୍ନତ ହୋଇଛ। ଏହି
ସୁନ୍ନତ କୌଣସି ମଣିଷର ହାତ କରି ନାହିଁ। ଅର୍ଥାତ୍
ତୁମ୍ଭେମାନେ ତୁମ୍ଭର ପାପପୂର୍ଣ୍ଣ ଶକ୍ତିରୁ ମୁକ୍ତ କରାଯାଇଛ।
ଖ୍ରୀଷ୍ଟ ଏହିଭଳି ସୁନ୍ନତ କରନ୍ତି। ୧୨ତୁମ୍ଭେ ଯେତେବେଳେ
ବାପ୍ତିଜିତ ହୋଇଥିଲ, ତୁମ୍ଭର ପୁରୁଣା ସ୍ୱଭାବର ମୃତ୍ୟୁ
ହେଲା ଓ ତୁମ୍ଭେ ଖ୍ରୀଷ୍ଟଙ୍କ ଠାରେ କବର ପ୍ରାପ୍ତ ହେଲ।
ସେହି ବାପ୍ତିସ୍ମରେ ପରମେଶ୍ୱରଙ୍କ ଶକ୍ତିରେ ତୁମ୍ଭେ ବିଶ୍ୱାସ
କରିଥିବା ହେତୁ ତୁମ୍ଭେ ଖ୍ରୀଷ୍ଟଙ୍କ ସହିତ ପୁଣି ପୁନରୁତ୍ଥିତ
ହେଲ। ଯେତେବେଳେ ଖ୍ରୀଷ୍ଟ ମୃତ୍ୟୁରୁ ପୁନର୍ଜୀବିତ ହେଲେ,
ସେତେବେଳେ ପରମେଶ୍ୱରଙ୍କ ଶକ୍ତି ଦେଖା ଯାଇ ଥିଲା।
୧୩ତୁମ୍ଭେ ନିଜର ପା ପହେତୁରୁ ଏବଂ ତୁମ୍ଭର ପାପ ସ୍ୱଭାବ
ହେତୁ ସ୍ୱାଧୀନ ନଥିବାରୁ ଆତ୍ମିକ ଭାବରେ ମୃତ ଥିଲ।
କିନ୍ତୁ ପରମେଶ୍ୱର ତୁମ୍ଭକୁ ଖ୍ରୀଷ୍ଟଙ୍କ ସହିତ ପୁନର୍ଜୀବିତ
କଲେ। ଏହା ସହିତ ପରମେଶ୍ୱର ଆମ୍ଭର ସମସ୍ତ ପାପଗୁଡ଼ିକୁ
କ୍ଷମା ମଧ୍ୟ କଲେ। ୧୪ନିୟମ ଗୁଡ଼ିକ ପାଳନ ନ କରି

ପାରିବା ଦ୍ୱାରା, ଆମ୍ଭ ବିରୁଦ୍ଧରେ ଲେଖା ଯାଇଥିବା ଚିଠାକୁ
ପରମେଶ୍ୱର ବ୍ୟର୍ଥ ବୋଲି ପ୍ରମାଣିତ କରି, ଆମ୍ଭକୁ କ୍ଷମା
କଲେ। ଆମ୍ଭର ବିରୁଦ୍ଧାତ୍ମକ ସେହି ଚିଠାକୁ ପରମେଶ୍ୱର
ନେଇଗଲେ ଓ କ୍ରୁଶ ଉପରେ ଟଙ୍ଗାଇ ଦେଲେ। ୧୫ପରମେଶ୍ୱର
ଆତ୍ମିକ ଶାସକ ଓ ଶକ୍ତିଗୁଡ଼ିକୁ ପରାଜିତ କଲେ। କ୍ରୁଶ
ଦ୍ୱାରା ସେ ଏମାନଙ୍କୁ ପରାଜିତ କଲେ ଓ ନିଜେ ବିଜୟୀ
ହେଲେ। ପରମେଶ୍ୱର ସଂସାରକୁ ଦେଖାଇ ଦେଲେ ଯେ
ସେମାନେ ଶକ୍ତିହୀନ ଅଟନ୍ତି।

## ମନୁଷ୍ୟନିର୍ମିତ ନିୟମଗୁଡ଼ିକୁ ମାନ ନାହିଁ

୧୬ତେଣୁ ଯିହୂଦୀମାନଙ୍କର ଖାଇବା ଓ ପିଇବା କିମ୍ବା
ବିଧିବିଧାନ, (ଅର୍ଥାତ୍ ଉତ୍ସବଗୁଡ଼ିକ ମାସର ପ୍ରତିପଦାଗୁଡ଼ିକ,
ବା ବିଶ୍ରାମବାରଗୁଡ଼ିକ)* ବିଷୟରେ କୌଣସି ଲୋକ
ଯେପରି ନିୟମ ତିଆରି ନ କରୁ। ୧୭ପୂର୍ବ କାଳରେ
ଏଗୁଡ଼ିକ ଭବିଷ୍ୟତ୍‌ରେ ଘଟିବାକୁ ଯାଉଥିବା ଘଟଣାଗୁଡ଼ିକର
ଛାୟା ମାତ୍ର ଥିଲା। କିନ୍ତୁ ଯାହା ସବୁ ଘଟିବାକୁ ଥିଲା,
ସେଗୁଡ଼ିକର ବାସ୍ତବରୂପ ହେଉଛନ୍ତି ଖ୍ରୀଷ୍ଟ। ୧୮କେତେକ
ଲୋକ, ନିଜକୁ ନମ୍ର ବୋଲି ଦେଖାନ୍ତି ଓ ସ୍ୱର୍ଗଦୂତମାନଙ୍କୁ
ପୂଜା କରିବାକୁ ଭଲ ପାଆନ୍ତି। ସେମାନେ ସବୁବେଳେ
ଦେଖିଥିବା ଦର୍ଶନ ବିଷୟରେ କଥାବାର୍ତ୍ତା କରନ୍ତି। ଏଭଳି
ଲୋକଙ୍କୁ କହିବାକୁ ପ୍ରଶ୍ରୟ ଦିଅ ନାହିଁ ଯେ, "ତୁମ୍ଭେମାନେ
ଦର୍ଶନ ଦେଖୁନାହିଁ, ସ୍ୱର୍ଗଦୂତମାନଙ୍କ ପୂଜା କରୁନାହିଁ, ସେଥିପାଇଁ
ତୁମ୍ଭେ ଭୁଲ।" ଏହି ଲୋକେ ପ୍ରକୃତରେ କେବଳ ମନୁଷ୍ୟମାନଙ୍କ
ବିଚାରରେ ବୁଡ଼ି ରହିଥିବାରୁ ଓ ପରମେଶ୍ୱରଙ୍କ କଥା
ବିଚାର ନ କରୁଥିବାରୁ ବୃଥାରେ ଗର୍ବ କରନ୍ତି। ୧୯ସେମାନେ
ନିଜକୁ, ମସ୍ତକରୂପ ଖ୍ରୀଷ୍ଟଙ୍କ ଅଧୀନରେ ରଖନ୍ତି ନାହିଁ।
ସଂପୂର୍ଣ୍ଣ ଶରୀର, ଖ୍ରୀଷ୍ଟଙ୍କ ଉପରେ ନିର୍ଭରଶୀଳ। ଖ୍ରୀଷ୍ଟଙ୍କ
ପାଇଁ ଶରୀରର ସମସ୍ତ ସଦସ୍ୟ ପରସ୍ପରକୁ ସାହାଯ୍ୟ
କରନ୍ତି ଓ ପରସ୍ପରର ଯତ୍ନ ନିଅନ୍ତି। ଏହା ଶରୀରର
ସମସ୍ତ ଅଙ୍ଗଗୁଡ଼ିକୁ ଏକାଠି ଧରି ରଖେ ଓ ଶକ୍ତି ପ୍ରଦାନ
କରେ। ଅତଏବ ପରମେଶ୍ୱରଙ୍କ ଇଚ୍ଛାନୁସାରେ ଶରୀର
ବୃଦ୍ଧି ପାଏ।

୨୦ତୁମ୍ଭେ ଖ୍ରୀଷ୍ଟଙ୍କ ସହିତ ମୃତ୍ୟୁ ବରଣ କରିଛ ଓ
ସଂସାରର ଅସାର ନିୟମଗୁଡ଼ିକରୁ ମୁକ୍ତ କରାଯାଇଛ।
ତଥାପି ତୁମ୍ଭେ ନିଜକୁ ସଂସାରର ଲୋକ ବୋଲି ଭାବି
କାହିଁକି ଏବେ ମଧ୍ୟ ଏପରି ବ୍ୟବହାର କରୁଛ? ତୁମ୍ଭେ
ନିମ୍ନ ନିୟମଗୁଡ଼ିକ କ'ଣ ପାଇଁ ପାଳନ କରୁଛ: ୨୧"ଏହା
ଖାଅ ନାହିଁ।" "ତାହା ଚାଖ ନାହିଁ।", "ସେ ଜିନିଷକୁ ଛୁଅଁ
ନାହିଁ।" ୨୨ଏହି ସାଂସାରିକ ନିୟମଗୁଡ଼ିକ ସେହି ସବୁ
ବିଷୟରେ ଅଟେ, ଯାହା କି ବ୍ୟବହାର ହେବା ପରେ ନଷ୍ଟ
ହୋଇଯାଆନ୍ତି। ସେହି ଆଦେଶ ଓ ଶିକ୍ଷାଗୁଡ଼ିକ
ମନୁଷ୍ୟମାନଙ୍କଠାରୁ, ପରମେଶ୍ୱରଠାରୁ ନୁହେଁ। ୨୩ଏହି
ବ୍ୟବସ୍ଥାଗୁଡ଼ିକ ଜ୍ଞାନପୂର୍ଣ୍ଣ ଜଣା ପଡୁଥିଲେ ମଧ୍ୟ ମନୁଷ୍ୟ
ଦ୍ୱାରା ଗଠନ କରାଯାଇଥିବା ଧର୍ମର ଗୋଟିଏ-ଗୋଟିଏ ଅଂଶ,
ଯାହା ଦ୍ୱାରା ଲୋକେ ନମ୍ର ବୋଲି ଛଳନା କରନ୍ତି ଓ
ନିଜର ଶରୀରକୁ ତାଡ଼ନା କରନ୍ତି। କିନ୍ତୁ ଏହି ନିୟମଗୁଡ଼ିକ
ସେମାନଙ୍କୁ ସେମାନଙ୍କର ପାପ ସ୍ୱଭାବ ଓ ମନ୍ଦ କାର୍ଯ୍ୟରୁ
ଦୂରରେ ରହିବା ପାଇଁ ସାହାଯ୍ୟ କରେ ନାହିଁ।

## ଯୀଶୁ ଖ୍ରୀଷ୍ଟଙ୍କଠାରେ ନୂତନ ଜୀବନ

୩ ତୁମ୍ଭେମାନେ ଖ୍ରୀଷ୍ଟଙ୍କ ସହିତ ମୃତ୍ୟୁରୁ ଜୀବିତ ହୋଇଛ।
ଅତଏବ ସ୍ୱର୍ଗରେ ଥିବା ବିଷୟଗୁଡ଼ିକ ପାଇବା ପାଇଁ
ଯତ୍ନଶୀଳ ହୁଅ। ଯେଉଁଠାରେ ଖ୍ରୀଷ୍ଟ, ପରମେଶ୍ୱରଙ୍କ ଡାହାଣରେ
ବସିଛନ୍ତି। ୨ସବୁବେଳେ ସେହି ସ୍ୱର୍ଗର ବିଷୟଗୁଡ଼ିକ ଅନ୍ୱେଷଣ
କର, ମର୍ତ୍ତ୍ୟର ବିଷୟଗୁଡ଼ିକ ପାଇଁ ନୁହେଁ। ୩ତୁମ୍ଭମାନଙ୍କର
ପୁରାତନ ପାପପୂର୍ଣ୍ଣ ସ୍ୱଭାବର ମୃତ୍ୟୁ ହୋଇଯାଇଛି ଓ
ପରମେଶ୍ୱରଙ୍କ ଠାରେ ଖ୍ରୀଷ୍ଟଙ୍କ ସହିତ ତୁମ୍ଭମାନଙ୍କର ନୂତନ
ଜୀବନ ସୁରକ୍ଷିତ ଅଛି। ୪ଖ୍ରୀଷ୍ଟ ହେଉଛନ୍ତି ତୁମ୍ଭମାନଙ୍କର
ଜୀବନ। ତେଣୁ ଯେତେବେଳେ ସେ ଆଉ ଥରେ ଆସିବେ,
ତାହାଙ୍କ ମହିମାରେ ତୁମ୍ଭେମାନେ ଅଂଶ ପାଇବ।

୫ଅତଏବ, ଯୌନ ପାପଗୁଡ଼ିକ କରିବା, ମନ୍ଦକର୍ମ କରିବା,
କାମନାର ବଶୀଭୂତ ହେବା, ମନ୍ଦ ଇଚ୍ଛା ରଖିବା ଓ ସର୍ବଦା
ଲୋଭୀ ହୋଇ ରହିବା, ଯାହା ଏକ ମିଥ୍ୟା ଦେବତାକୁ
ପୂଜା କରିବା ସଦୃଶ, ସେଭଳି ବିଷୟଗୁଡ଼ିକୁ ନିଜ ଜୀବନଠାରୁ
ଦୂରରେ ରଖ। ଏହିଭଳି ଇଚ୍ଛାଗୁଡ଼ିକ ଥିବାର ଅର୍ଥ ହେଲା
ଯେ, ଜଣେ ମିଥ୍ୟା ଦେବତାର ସେବା କରୁଛି। ୬ଏହି
ବିଷୟଗୁଡ଼ିକ ପରମେଶ୍ୱରଙ୍କୁ କ୍ରୋଧିତ କରେ। ୭ତୁମ୍ଭମାନଙ୍କର
ପୂର୍ବ ପାପପୂର୍ଣ୍ଣ ଜୀବନରେ ମଧ୍ୟ ତୁମ୍ଭେମାନେ ଏହି କାମଗୁଡ଼ିକ
କରିଥିଲ।

୮କିନ୍ତୁ ଏବେ, ଏହି ସମସ୍ତ ବିଷୟ ନିଜ ଜୀବନରୁ
ବାହାର କରିଦିଅ: କ୍ରୋଧ, ଉତ୍ତେଜନା, ଅନ୍ୟ କାହାକୁ
ବାଧିଲା ଭଳି କାର୍ଯ୍ୟ କରିବା ବା କଥା କହିବା, କହିଲାବେଳେ
ଅପଶବ୍ଦ ବ୍ୟବହାର କରିବା। ୯ପରସ୍ପରକୁ ମିଛ କଥା କୁହ
ନାହିଁ, କାରଣ ତୁମ୍ଭେମାନେ ପୂର୍ବ ଜୀବନର ପାପପୂର୍ଣ୍ଣ
ଆଚରଣ ଛାଡ଼ି ଦେଇଛ। ୧୦ତୁମ୍ଭେମାନେ ନୂତନ ଜୀବନ
ଆରମ୍ଭ କରିଛ। ନୂତନ ଜୀବନରେ ତୁମ୍ଭେମାନେ ନୂଆ
ହେଉଅଛ। ତୁମ୍ଭେମାନେ ତୁମ୍ଭମାନଙ୍କର ସେହି ସୃଷ୍ଟିକର୍ତ୍ତାଙ୍କ
ଭଳି ହୋଇଯାଉଛ। ଏହି ନୂତନ ଜୀବନ ଦ୍ୱାରା ତୁମ୍ଭେମାନେ
ପରମେଶ୍ୱରଙ୍କ ବିଷୟରେ ପ୍ରକୃତ ଜ୍ଞାନ ପ୍ରାପ୍ତ ହେଉଛ।
୧୧ଏହି ନୂତନ ଜୀବନରେ ଯିହୂଦୀ ଓ ଅଣଯିହୂଦୀମାନଙ୍କ
ମଧ୍ୟରେ କୌଣସି ତଫାତ୍ ନାହିଁ। ସୁନ୍ନତ ଲୋକ ବା
ଅସୁନ୍ନତ ଲୋକ, ବିଦେଶୀ ବା ସ୍କୁଥୀୟମାନଙ୍କ ମଧ୍ୟରେ
କୌଣସି ତଫାତ୍ ନାହିଁ। କ୍ରୀତଦାସ ବା ସ୍ୱାଧୀନ ଭିତରେ
ମଧ୍ୟ ତଫାତ୍ ନାହିଁ। କିନ୍ତୁ ଖ୍ରୀଷ୍ଟ ସମସ୍ତଙ୍କଠାରେ ଅଛନ୍ତି।
ଯାହା ମହତ୍ତ୍ୱପୂର୍ଣ୍ଣ, ତାହା ଖ୍ରୀଷ୍ଟ।

୧୨ପରମେଶ୍ୱର ତୁମ୍ଭମାନଙ୍କୁ ବାଛିଛନ୍ତି ଓ ନିଜର ପବିତ୍ର
ଲୋକ ବୋଲି ଗ୍ରହଣ କରିଛନ୍ତି। ସେ ତୁମ୍ଭମାନଙ୍କୁ ପ୍ରେମ
କରନ୍ତି। ଅତଏବ ତୁମ୍ଭେମାନେ ସର୍ବଦା ନିମ୍ନୋକ୍ତ କାର୍ଯ୍ୟମାନ
କର: ଲୋକଙ୍କୁ ଦୟା କର, କରୁଣାମୟ ହୁଅ, ନମ୍ର ହୁଅ,
ଭଦ୍ର ହୁଅ, ଧୈର୍ଯ୍ୟବାନ ହୁଅ। ୧୩ପରସ୍ପର ପ୍ରତି କ୍ରୋଧ
କରନାହିଁ, ବରଂ ପରସ୍ପରକୁ କ୍ଷମା ଦିଅ। ଯଦି ଜଣେ ତୁମ୍ଭ

---

**ବିଶ୍ରାମବାର** ପ୍ରତି ସପ୍ତାହର ଶେଷ (ସପ୍ତମ) ବାର

ପ୍ରତି ଭୁଲ କାମ କରେ, ତାକୁ କ୍ଷମା ଦିଅ। ପ୍ରଭୁ ତୁମ୍ଭକୁ
କ୍ଷମା କରି ଦେଇଛନ୍ତି, ସେଥିଲାଗି ତୁମ୍ଭେମାନେ ଅନ୍ୟ
ଲୋକଙ୍କୁ ମଧ୍ୟ କ୍ଷମା ଦିଅ। [୧୪]ଏହିସବୁ କର, କିନ୍ତୁ
ସବୁଠାରୁ ମୁଖ୍ୟ ବିଷୟ ହେଲା, ପରସ୍ପରକୁ ପ୍ରେମ କରିବା।
ପ୍ରେମ ତୁମ୍ଭମାନଙ୍କୁ ଏକତାରେ ଏକାଠି ବାନ୍ଧି ରଖେ।
[୧୫]ଖ୍ରୀଷ୍ଟଙ୍କ ଦ୍ୱାରା ପ୍ରଦତ୍ତ ଶାନ୍ତି, ତୁମ୍ଭ ବିଚାରକୁ ସଂଯମ
କରିବ। ତୁମ୍ଭେମାନେ ଶାନ୍ତି ପାଇବା ପାଇଁ ଗୋଟିଏ
ଶରୀରରେ ଡକା ହୋଇଛ। ସବୁବେଳେ ଧନ୍ୟବାଦୀ ରୁହ।
[୧୬]ଖ୍ରୀଷ୍ଟଙ୍କ ଶିକ୍ଷା ତୁମ୍ଭଠାରେ ପ୍ରଚୁର ଭାବରେ ରହିଥାଉ।
ପରସ୍ପରକୁ ଶିକ୍ଷା ଦେବା ଓ ଶକ୍ତିଶାଳୀ କରିବା ପାଇଁ
ସମସ୍ତ ଜ୍ଞାନର ବ୍ୟବହାର କର। ନିଜ ହୃଦୟରେ ପରମେଶ୍ୱରଙ୍କ
ପାଇଁ କୃତଜ୍ଞତାର ସଂଗୀତ, ଭଜନ, ଆଧ୍ୟାତ୍ମିକ ଗୀତମାନ
ଗାଅ। [୧୭]ତୁମ୍ଭେମାନେ ଯାହା କହୁଛ, ଯାହା କିଛି ବା
କରୁଛ, ସେ ସବୁ ତୁମ୍ଭମାନଙ୍କର ପ୍ରଭୁ ଯୀଶୁଙ୍କ ପାଇଁ କର
ଏବଂ ଏହି ସମସ୍ତ କାର୍ଯ୍ୟ ମଧ୍ୟରେ ପରମପିତା ପରମେଶ୍ୱରଙ୍କୁ
ଯୀଶୁଙ୍କ ମାଧ୍ୟମରେ ଧନ୍ୟବାଦ ଜଣାଅ।

## ଅନ୍ୟ ଲୋକଙ୍କ ସହିତ ତୁମ୍ଭର ନୂତନ ଜୀବନ

[୧୮]ପତ୍ନୀଗଣ! ତୁମ୍ଭର ପତିଙ୍କ ପ୍ରତି ବଶୀଭୂତା ରୁହ।
ପ୍ରଭୁଙ୍କ ଅନୁଗାମୀମାନଙ୍କ ଭଳି ଏହା କରିବା ଉଚିତ
ଅଟେ।
[୧୯]ପତିଗଣ! ତୁମ୍ଭମାନଙ୍କ ପତ୍ନୀଙ୍କୁ ପ୍ରେମ କର। ସେମାନଙ୍କ
ପ୍ରତି ଭଦ୍ର ବ୍ୟବହାର କର।
[୨୦]ସନ୍ତାନଗଣ! ପ୍ରତ୍ୟେକ କଥାରେ ମାତା-ପିତାଙ୍କ ଆଜ୍ଞା
ପାଳନ କର। ଏହା ପ୍ରଭୁଙ୍କୁ ପ୍ରସନ୍ନ କରେ।
[୨୧]ପିତାଗଣ! ତୁମ୍ଭମାନଙ୍କ ସନ୍ତାନମାନଙ୍କୁ ବିରକ୍ତ କର
ନାହିଁ। ଯଦି ତୁମ୍ଭେ ଅଧିକ ଆଶା କର, ତା'ହେଲେ
ସେମାନେ ହତାଶ ହୋଇଯିବେ।
[୨୨]ସେବକଗଣ! ଏହି ପୃଥିବୀରେ ପ୍ରତ୍ୟେକ କଥାରେ
ନିଜର ମାଲିକମାନଙ୍କ ଆଜ୍ଞା ପାଳନ କର। ଯେତେବେଳେ
ମାଲିକ ଦେଖୁ ନାହାଁନ୍ତି, ସେତେବେଳେ ମଧ୍ୟ ଓ ସର୍ବଦା
ତାହାଙ୍କ ଆଜ୍ଞା ପାଳନ କର। ଏପରି କରିବା ଦ୍ୱାରା
ତୁମ୍ଭେମାନେ ପ୍ରକୃତରେ ମନୁଷ୍ୟକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା
କରୁ ନାହଁ, ବରଂ ପ୍ରଭୁଙ୍କୁ ସମ୍ମାନ ଦେଉଥିବାରୁ, ତୁମ୍ଭେମାନେ
ନିଷ୍ଠାପର ସହିତ ଆଜ୍ଞା ପାଳନ କର। [୨୩]ସମସ୍ତ କାମଗୁଡ଼ିକ
କଲା ବେଳେ ସବୁଠାରୁ ଭଲ କରିବା ପାଇଁ ଚେଷ୍ଟା କର।
ପ୍ରଭୁଙ୍କର ସେବା କରୁଛ, ଲୋକମାନଙ୍କର ନୁହେଁ ବୋଲି
ଭାବି କାମ କର। [୨୪]ମନେରଖ! ତୁମ୍ଭେମାନେ ତୁମ୍ଭମାନଙ୍କର
ପୁରସ୍କାର ପ୍ରଭୁଙ୍କଠାରୁ ପାଇବ। ସେ ତାଙ୍କ ଲୋକଙ୍କୁ ଯାହା
ପ୍ରତିଶ୍ରୁତି ଦେଇଛନ୍ତି, ତାହା ତୁମ୍ଭମାନଙ୍କୁ ଦେବେ। ତୁମ୍ଭେମାନେ
ପ୍ରଭୁ ଖ୍ରୀଷ୍ଟଙ୍କ ସେବା କରୁଛ। [୨୫]ମନେରଖ! ଭୁଲ୍ କର୍ମ
ପାଇଁ, ପ୍ରତ୍ୟେକ ଲୋକ ଦଣ୍ଡ ପାଇବ। ପ୍ରଭୁ ପ୍ରତ୍ୟେକ
ଲୋକଙ୍କୁ ସମାନ ଭାବରେ ଦେଖନ୍ତି।

**୪** ମାଲିକମାନେ! ଯାହା ସୁନ୍ଦର ଓ ଯଥାର୍ଥ ତାହା ତୁମ୍ଭ
ସେବକମାନଙ୍କୁ ଦିଅ। ମନେରଖ ଯେ ସ୍ୱର୍ଗରେ
ତୁମ୍ଭମାନଙ୍କର ମଧ୍ୟ ଜଣେ ମାଲିକ ଅଛନ୍ତି।

## ଖ୍ରୀଷ୍ଟିୟାନମାନଙ୍କୁ ପାଉଲଙ୍କ ପରାମର୍ଶ

[୨]ସବୁବେଳେ ପ୍ରାର୍ଥନା କରୁଥାଅ। ପ୍ରାର୍ଥନା କଲାବେଳେ
ସର୍ବଦା ପରମେଶ୍ୱରଙ୍କୁ ଧନ୍ୟବାଦ ଦିଅ। [୩]ଆମ୍ଭ ପାଇଁ ମଧ୍ୟ
ପ୍ରାର୍ଥନା କର। ପରମେଶ୍ୱରଙ୍କ ସମ୍ବାଦ ଲୋକମାନଙ୍କୁ
କହିବା ପାଇଁ ଆମ୍ଭକୁ ସୁଯୋଗ ପ୍ରଦାନ କରିବା ପାଇଁ
ପରମେଶ୍ୱରଙ୍କୁ ପ୍ରାର୍ଥନା କର। ଖ୍ରୀଷ୍ଟଙ୍କ ବିଷୟରେ
ପରମେଶ୍ୱର ଯେଉଁ ଗୁପ୍ତ ସତ୍ୟ ପ୍ରକାଶ କରିଛନ୍ତି, ତାହାକୁ
ଯେପରି ଆମ୍ଭେ ପ୍ରଚାର କରିପାରୁ, ସେଥିପାଇଁ ପ୍ରାର୍ଥନା
କର। ଏହି ସତ୍ୟ ପ୍ରଚାର କରୁଛି ବୋଲି ମୁଁ କାରାଗାରରେ
ବନ୍ଦୀ। [୪]ମୁଁ ଯେପରି ଏହି ସତ୍ୟ ଲୋକମାନଙ୍କ ଆଗରେ
ସ୍ପଷ୍ଟ କରିପାରିବି, ସେଥିପାଇଁ ପ୍ରାର୍ଥନା କର। ମୁଁ ତାହା
କରିବା ଉଚିତ।
[୫]ଅବିଶ୍ୱାସୀ ଲୋକମାନଙ୍କ ସହିତ ବ୍ୟବହାର କଲାବେଳେ
ବୁଦ୍ଧି ସହ ବ୍ୟବହାର କର। ଯେତେ ଭଲ ଭାବରେ
ପାରିବ ନିଜର ସମୟର ସଦୁପଯୋଗ କର। [୬]କଥାବାର୍ତ୍ତା
କଲାବେଳେ, ସବୁବେଳେ ଦୟାଭାବ ରଖ ଓ ବିବେକୀ
ହୁଅ। ତେବେ ତୁମ୍ଭେମାନେ ସମସ୍ତଙ୍କୁ ଉଚିତ ଉତ୍ତର
ଦେବାକୁ ସକ୍ଷମ ହେବ।

## ପାଉଲଙ୍କ ସାଥୀମାନଙ୍କ ବିଷୟରେ

[୭]ଯୀଶୁ ଖ୍ରୀଷ୍ଟଙ୍କ ପାଇଁ ମୋର ପ୍ରିୟ ଭାଇ ତୁଖିକ,
ଜଣେ ବିଶ୍ୱାସୀ ସେବକ ଓ ମୋ ସହିତ ପ୍ରଭୁଙ୍କର ଜଣେ
ସେବକ ଅଟନ୍ତି। ମୋ ସହିତ ଏଠାରେ ଯାହା କିଛି
ଘଟୁଛି, ସେହି ସମସ୍ତ କଥା ସେ ତୁମ୍ଭମାନଙ୍କୁ କହିବେ।
[୮]ସେଥିପାଇଁ ମୁଁ ତାହାଙ୍କୁ ପଠାଉଛି। ମୁଁ ଇଚ୍ଛା କରେ ଯେ,
ଆମ୍ଭେମାନେ କିପରି ଅଛୁ, ତାହା ତୁମ୍ଭେମାନେ ଜାଣ। [୯]ସେ
ତୁମ୍ଭମାନଙ୍କୁ ଉତ୍ସାହିତ କରିବେ। ମୁଁ ଅନୀସିମଙ୍କ ସହିତ
ତାଙ୍କୁ ପଠାଉଛି। ଅନୀସିମ ଖ୍ରୀଷ୍ଟଙ୍କ ଠାରେ ଜଣେ ବିଶ୍ୱାସୀ
ଓ ପ୍ରିୟ ଭାଇ ଅଟନ୍ତି। ସେ ତୁମ୍ଭମାନଙ୍କ ଦଳର ଅଟନ୍ତି।
ତୁଖିକ ଓ ଅନୀସିମ, ଏଠାରେ ଘଟିଥିବା ସମସ୍ତ ବିଷୟ
ତୁମ୍ଭମାନଙ୍କୁ କହିବେ।
[୧୦]ଆରିସ୍ତାର୍ଖଙ୍କ ନମସ୍କାର ଜଣାଉଛି। ସେ ମୋ ସହିତ
ଜଣେ ସହବନ୍ଦୀ। ବର୍ଣ୍ଣବାଙ୍କ କୁଟୁମ୍ବୀୟ ଭାଇ ମାର୍କ ନମସ୍କାର
କରୁଛନ୍ତି। (ମୁଁ ଆଗରୁ ତାହାଙ୍କ ବିଷୟରେ କହି ସାରିଛି।
ସେ ଯଦି ଆସନ୍ତି, ତାହାଙ୍କୁ ସ୍ୱାଗତ କରିବ)। [୧୧]ଯୁସ୍ତ
ନାମରେ ମଧ୍ୟ ଖ୍ୟାତ, (ଯୀଶୁ) ତୁମ୍ଭମାନଙ୍କୁ ନମସ୍କାର
ଜଣାଉଛନ୍ତି। ଯିହୂଦୀ ବିଶ୍ୱାସୀମାନଙ୍କ ମଧ୍ୟରେ କେବଳ
ଏମାନେ ପରମେଶ୍ୱରଙ୍କ ରାଜ୍ୟ ପାଇଁ ମୋ ସହିତ କାମ
କରନ୍ତି। ସେମାନେ ଏପର୍ଯ୍ୟନ୍ତ ମୋର ସାନ୍ତ୍ୱନାର କାରଣ
ହୋଇଛନ୍ତି।
[୧୨]ଏପାଫ୍ରା ତୁମ୍ଭମାନଙ୍କୁ ନମସ୍କାର କରୁଛନ୍ତି। ସେ ଯୀଶୁ
ଖ୍ରୀଷ୍ଟଙ୍କର ଜଣେ ସେବକ। ସେ ତୁମ୍ଭମାନଙ୍କ ଦଳର
ଲୋକ। ସେ ସର୍ବଦା ତୁମ୍ଭମାନଙ୍କ ପାଇଁ ପ୍ରାର୍ଥନା କରନ୍ତି।
ତୁମ୍ଭେମାନେ ଆଧ୍ୟାତ୍ମିକ ଭାବରେ ପରିପକ୍ୱ ହୁଅ, ଓ
ପରମେଶ୍ୱର ଯାହା କିଛି ଇଚ୍ଛା କରନ୍ତି, ସେ ଭଳି ହୁଅ
ବୋଲି ସେ ପ୍ରାର୍ଥନା କରନ୍ତି। [୧୩]ସେ ତୁମ୍ଭମାନଙ୍କ ପାଇଁ

ଲାଅଦିକୀଆ ଏବଂ ହିଏରାପଲିର ଲୋକମାନଙ୍କ ପାଇଁ କଠିଣ
ପରିଶ୍ରମ କରନ୍ତି ବୋଲି ମୁଁ ଜାଣେ। ୧୪ଦୀମା ଓ ଆମ୍ଭର
ପ୍ରିୟ ବୈଦ୍ୟ ଲୂକ ନମସ୍କାର କରୁଛନ୍ତି।
୧୫ଲାଅଦିକୀଆର ଭାଇ ଓ ଭଉଣୀମାନଙ୍କୁ ନମସ୍କାର
ଜଣାଅ। ନୁମ୍ଫା ଓ ତାଙ୍କ ଘରେ ମିଳିତ ହେଉଥିବା
ମଣ୍ଡଳୀକୁ ନମସ୍କାର ଜଣାଅ। ୧୬ଏହି ପତ୍ରଟି ତୁମ୍ଭ ପାଖରେ
ପଢ଼ା ଯାଇ ସାରିଲା ପରେ, ଲାଅଦିକୀଆର ମଣ୍ଡଳୀକୁ ଏହି
ପତ୍ରଟି ପଢ଼ିବାକୁ ଦିଅ। ଲାଅଦିକୀଆକୁ ଯେଉଁ ପତ୍ର ମୁଁ
ଲେଖୁଛି, ତାକୁ ମଧ୍ୟ ତୁମ୍ଭେମାନେ ପଢ଼। ୧୭ଆର୍ଖିପ୍ପଙ୍କୁ କୁହ:
"ପ୍ରଭୁ ଯେଉଁ କାମ ତୁମ୍ଭକୁ ଦେଇଛନ୍ତି, ତାହା ତୁମ୍ଭେ
ନିଶ୍ଚିତ ହୋଇ କର।"
୧୮ମୁଁ ପାଉଲ, ନିଜ ହସ୍ତାକ୍ଷରରେ ତୁମ୍ଭମାନଙ୍କୁ ନମସ୍କାର
ଜଣାଉଛି। ମୋର ବନ୍ଦୀଦଶା ସ୍ମରଣ କର। ତୁମ୍ଭମାନଙ୍କ
ପ୍ରତି ପରମେଶ୍ୱରଙ୍କର ଅନୁଗ୍ରହ ରହୁ। ଆମେନ୍।

# ଥେସଲନୀକୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କର ପ୍ରଥମ ପତ୍ର

୧ ପାଉଲ, ସିଲ୍ୱାନ ଓ ତୀମଥିଙ୍କ ଠାରୁ ଥେସଲନୀକୀୟ
ମଣ୍ଡଳୀ ନିକଟକୁ ପତ୍ର। ଏହି ମଣ୍ଡଳୀଟି ପରମପିତା
ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କଠାରେ ଅଛି। ତୁମ୍ଭମାନଙ୍କ
ପ୍ରତି ପରମେଶ୍ୱରଙ୍କ ଅନୁଗ୍ରହ ଓ ଶାନ୍ତି ହେଉ।

### ଥେସଲନୀକୀୟମାନଙ୍କ ଜୀବନ ଓ ବିଶ୍ୱାସ

୨ପ୍ରାର୍ଥନା କଲାବେଳେ ଆମ୍ଭେ ସର୍ବଦା ତୁମ୍ଭମାନଙ୍କ କଥା
ମନେପକାଉ ଓ ତୁମ୍ଭମାନଙ୍କ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେଉ। ୩ଆମ୍ଭମାନଙ୍କର ପରମପିତା ପରମେଶ୍ୱରଙ୍କୁ ଆମ୍ଭ
ପ୍ରାର୍ଥନାରେ ନିବେଦନ କଲାବେଳେ ତୁମ୍ଭେମାନେ ତୁମ୍ଭମାନଙ୍କର
ବିଶ୍ୱାସ ହେତୁ ଯାହା କରିଛ, ସେଥିପାଇଁ ତାଙ୍କୁ ଧନ୍ୟବାଦ
ଦେଉ। ତୁମ୍ଭେମାନେ ତୁମ୍ଭମାନଙ୍କର ପ୍ରେମ ହେତୁରୁ ଯେଉଁ
କାର୍ଯ୍ୟ କରିଛ, ସେଥିପାଇଁ ତାହାଙ୍କୁ ଧନ୍ୟବାଦ ଦେଉ।
ଏବଂ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କଠାରେ ତୁମ୍ଭମାନଙ୍କ ଭରସା ହେତୁ
ତୁମ୍ଭେମାନେ ଦୃଢ଼ ହୋଇ ରହିଛ ବୋଲି ଆମ୍ଭେ ତାଙ୍କୁ
ସର୍ବଦା ଧନ୍ୟବାଦ ଅର୍ପଣ କରୁଛୁ। ୪ଭାଇ (ଓ ଭଉଣୀ)ମାନେ!
ପରମେଶ୍ୱର ତୁମ୍ଭକୁ ପ୍ରେମ କରନ୍ତି। ଆମ୍ଭେ ଏହା ମଧ୍ୟ
ଜାଣୁ ଯେ, ସେ ତୁମ୍ଭମାନଙ୍କୁ ନିଜର ବୋଲି ବାଛିଛନ୍ତି।
୫ଆମ୍ଭେ ତୁମ୍ଭମାନଙ୍କୁ ସୁସମାଚାର କହିଛୁ। କିନ୍ତୁ ଆମ୍ଭେ
କେବଳ ଶବ୍ଦ ବ୍ୟବହାର କରିନାହୁଁ। ସେହି ସୁସମାଚାର
ଆମ୍ଭେ ଶକ୍ତି ଓ ପବିତ୍ର ଆତ୍ମା ସହିତ ଆଣିଛୁ। ଆମ୍ଭେ
ନିଶ୍ଚିତ ଭାବରେ ଜାଣିଛୁ ଯେ, ତାହା ସତ୍ୟ। ତୁମ୍ଭେମାନେ
ଜାଣିଛ ଯେ, ଆମ୍ଭେ ତୁମ୍ଭମାନଙ୍କ ସହିତ ଥିଲାବେଳେ
କିଭଳି ଜୀବନ ବିତାଉଥିଲୁ, ସେଭଳି ଜୀବନଯାପନ କରି
ତୁମ୍ଭମାନଙ୍କୁ ସାହାଯ୍ୟ କରିବା ପାଇଁ ଚାହୁଁଥିଲୁ। ୬ଏବେ
ତୁମ୍ଭେମାନେ ମଧ୍ୟ ଆମ୍ଭ ଭଳି ଓ ପ୍ରଭୁଙ୍କ ଭଳି ହୋଇଯାଇଛ।
ଅତ୍ୟଧିକ କଷ୍ଟ ପାଇଲା ପରେ ମଧ୍ୟ ତୁମ୍ଭେମାନେ ସେହି
ଶିକ୍ଷାକୁ ଆନନ୍ଦରେ ଗ୍ରହଣ କରିଛ। ପବିତ୍ର ଆତ୍ମା ତୁମ୍ଭମାନଙ୍କୁ
ଏହି ଆନନ୍ଦ ପ୍ରଦାନ କରିଛନ୍ତି।

୭ମାକିଦନିଆ ଓ ଆଖାୟାର ବିଶ୍ୱାସୀ ଲୋକମାନଙ୍କ
ପାଇଁ ତୁମ୍ଭେମାନେ ଆଦର୍ଶ ହୋଇଥିଲ। ୮ମାକିଦନିଆ ଓ
ଆଖାୟାରେ ତୁମ୍ଭମାନଙ୍କ ପାଖରୁ ପ୍ରଭୁଙ୍କର ଶିକ୍ଷା ପ୍ରସାରିତ
ହୋଇଥିଲା। ପ୍ରତ୍ୟେକ ସ୍ଥାନରେ ପରମେଶ୍ୱରଙ୍କ ଠାରେ
ତୁମ୍ଭ ବିଶ୍ୱାସ ପରିଚିତ ହୋଇଛି। ଅତଏବ ତୁମ୍ଭମାନଙ୍କ
ବିଶ୍ୱାସ ବିଷୟରେ ଆମ୍ଭର କିଛି କହିବାର ଆବଶ୍ୟକ
ନାହିଁ। ୯ଆମ୍ଭେ ତୁମ୍ଭମାନଙ୍କ ସହିତ ଥିଲାବେଳେ, ଯେପରି
ଭଲ ଭାବରେ ତୁମ୍ଭେମାନେ ଆମ୍ଭମାନଙ୍କୁ ଗ୍ରହଣ କରିଥିଲ,
ସେ ବିଷୟରେ ସର୍ବତ୍ର ଲୋକମାନେ କଥାବାର୍ତ୍ତା ହେଉଛନ୍ତି।
ତୁମ୍ଭେମାନେ କିପରି ମୂର୍ତ୍ତିପୂଜା ବନ୍ଦ କରି, ଜୀବିତ ଓ
ପ୍ରକୃତ ପରମେଶ୍ୱରଙ୍କ ସେବା କରିବା ପାଇଁ ପରିବର୍ତ୍ତିତ
ହେଲ, ସେ ବିଷୟରେ ସେମାନେ କହନ୍ତି।

୧୦ତୁମ୍ଭେମାନେ ପରମେଶ୍ୱରଙ୍କ ପୁତ୍ରଙ୍କର ସ୍ୱର୍ଗରୁ ଆସିବା
ସମୟକୁ ଅପେକ୍ଷା କରି ମୂର୍ତ୍ତିପୂଜା ବନ୍ଦ କରିଥିଲ।
ପରମେଶ୍ୱର ତାଙ୍କ ପୁତ୍ର ଯୀଶୁଙ୍କୁ ମୃତ୍ୟୁରୁ ପୁନରୁତ୍ଥିତ
କରିଛନ୍ତି। ପରମେଶ୍ୱରଙ୍କ ଆଗାମୀ କ୍ରୋଧପୂର୍ଣ୍ଣ ବିଚାରରୁ
ଯୀଶୁ ଆମ୍ଭକୁ ଉଦ୍ଧାର କରନ୍ତି।

### ଥେସଲନୀକୀଠାରେ ପାଉଲଙ୍କ କାର୍ଯ୍ୟ

୨ ଭାଇ(ଓ ଭଉଣୀ)ମାନେ! ତୁମ୍ଭେମାନେ ଜାଣିଛ ଯେ,
ଆମ୍ଭମାନଙ୍କର ତୁମ୍ଭମାନଙ୍କ ପାଖକୁ ଯିବା ବୃଥା ନ
ଥିଲା। ୨ତୁମ୍ଭମାନଙ୍କ ପାଖକୁ ଯିବା ପୂର୍ବରୁ ଫିଲିପ୍ପୀ ଠାରେ
ଆମ୍ଭେ ଦୁଃଖ ଓ ଅପମାନ ପାଇଥିଲୁ। ଏହି ବିଷୟରେ
ତୁମ୍ଭେମାନେ ଜାଣିଛ। ଆମ୍ଭେମାନେ ଯେତେବେଳେ ତୁମ୍ଭମାନଙ୍କ
ପାଖକୁ ଗଲୁ, ସେତେବେଳେ ଅନେକ ଲୋକ ଆମ୍ଭର
ବିରୁଦ୍ଧ ଥିଲେ। କିନ୍ତୁ ପରମେଶ୍ୱରଙ୍କ ସାହାଯ୍ୟରୁ ଆମ୍ଭେ
ସାହସୀ ହୋଇ ପାରିଲୁ। ତୁମ୍ଭମାନଙ୍କୁ ତାହାଙ୍କର ସୁସମାଚାର
କହିବା ପାଇଁ ସେ ଆମ୍ଭକୁ ସାହାଯ୍ୟ କଲେ। ୩ଆମ୍ଭେ
ଲୋକଙ୍କୁ ଶିକ୍ଷା ଦେଉ। କେହି ଆମ୍ଭକୁ ପ୍ରବଞ୍ଚିତ କରିନାହିଁ।
ଆମ୍ଭେ ମନ୍ଦ ନୋହୁଁ। ଆମ୍ଭେ ଲୋକମାନଙ୍କୁ ଛଳନା କରି
ନାହୁଁ। କିନ୍ତୁ ଏଗୁଡ଼ିକ ଆମ୍ଭର ଶିକ୍ଷାଦାନ କରିବା ଉଦ୍ଦେଶ୍ୟ
ନୁହେଁ। ୪ପରମେଶ୍ୱର ଆମ୍ଭକୁ ପରୀକ୍ଷା କରି ଓ ବିଶ୍ୱାସ
କରି ସୁସମାଚାର କହିବା ଦାୟିତ୍ୱ ଦେଇଥିବାରୁ ଆମ୍ଭେ
ସୁସମାଚାର ପ୍ରଚାର କରୁଛୁ। ଅତଏବ ଯେତେବେଳେ ଆମ୍ଭେ
କିଛି କହୁ ମନୁଷ୍ୟକୁ ସନ୍ତୁଷ୍ଟ କଲାପରି ନୁହେଁ, ପରମେଶ୍ୱରଙ୍କୁ
ଖୁସି କରିବା ଆମ୍ଭର ଉଦ୍ଦେଶ୍ୟ ଅଟେ। ପରମେଶ୍ୱର
ଆମ୍ଭର ହୃଦୟଗୁଡ଼ିକୁ ପରୀକ୍ଷା କରନ୍ତି। ୫ତୁମ୍ଭେମାନେ
ଜାଣିଛ ଯେ, କେବେହେଲେ ଆମ୍ଭେ ଖୋସାମଦିଆ କଥା
କହି ତୁମ୍ଭକୁ ପ୍ରଭାବିତ କରିବା ପାଇଁ ଚେଷ୍ଟା କରି ନାହୁଁ।
ଆମ୍ଭେ ତୁମ୍ଭମାନଙ୍କର ଟଙ୍କା ପାଇବା ପାଇଁ ଚାହିଁ ନାହୁଁ।
ତୁମ୍ଭମାନଙ୍କଠାରୁ ଆମ୍ଭେ ନିଜର କୌଣସି ସ୍ୱାର୍ଥପର ଭାବ
ଗୁପ୍ତ ରଖିନାହୁଁ। ପରମେଶ୍ୱର ଜାଣନ୍ତି ଯେ, ଏହା ସତ୍ୟ।
୬ଆମ୍ଭେ ଲୋକମାନଙ୍କର ପ୍ରଶଂସା ଚାହୁଁ ନାହୁଁ। ଆମ୍ଭେ
ତୁମ୍ଭମାନଙ୍କ ପାଖରୁ ବା ଅନ୍ୟମାନଙ୍କ ପାଖରୁ ପ୍ରଶଂସା ଚାହୁଁ
ନାହୁଁ। ୭ଆମ୍ଭେମାନେ ଯୀଶୁଖ୍ରୀଷ୍ଟଙ୍କର ପ୍ରେରିତ। ଅତଏବ
ତୁମ୍ଭମାନଙ୍କ ମଧ୍ୟରେ ଥିଲାବେଳେ ଆମ୍ଭେମାନେ ତୁମ୍ଭମାନଙ୍କ
ଦ୍ୱାରା କାମ କରାଇବା ପାଇଁ ଆମ୍ଭ ଅଧିକାର ପ୍ରୟୋଗ କରି
ପାରିଥାଆନ୍ତୁ। କିନ୍ତୁ ଆମ୍ଭେ ତୁମ୍ଭମାନଙ୍କ ସହିତ ଭଦ୍ର
ବ୍ୟବହାର କଲୁ। ଜଣେ ମାଆ ନିଜ ଶିଶୁମାନଙ୍କର ଯେପରି

ଯତ୍ନ ନିଏ, ଆମ୍ଭେ ଠିକ ସେହିପରି କଲୁ। ୮ଆମ୍ଭେ
ତୁମ୍ଭମାନଙ୍କୁ ବହୁତ ଭଲ ପାଇଲୁ। ଅତଏବ ଆମ୍ଭେ
ତୁମ୍ଭମାନଙ୍କୁ କେବଳ ପରମେଶ୍ୱରଙ୍କ ସୁସମାଚାରର ଅଂଶୀ
କଲୁ ତାହା ନୁହେଁ, ବରଂ ନିଜର ଜୀବନ ମଧ୍ୟ ତୁମ୍ଭମାନଙ୍କ
ସହିତ ବାଣ୍ଟି ଦେବାକୁ ପ୍ରସ୍ତୁତ ଥିଲୁ। ୯ଭାଇ(ଓ ଭଉଣୀ)ମାନେ!
ତୁମ୍ଭେମାନେ ମନେ ପକାଅ ଯେ, ଆମ୍ଭେ କେତେ କଠିନ
ପରିଶ୍ରମ କରିଛୁ। ଆମ୍ଭେ ଦିନରାତି କାମ କରିଛୁ। ଆମ୍ଭେମାନେ
ପରମେଶ୍ୱରଙ୍କ ସୁସମାଚାର ପ୍ରଚାର କଲାବେଳେ, ତୁମ୍ଭେମାନେ
ଆମ୍ଭକୁ କିଛି ଦେଇ ଭାରାକ୍ରାନ୍ତ ହୁଅ, ସେ କଥା ଆମ୍ଭେ
ଚାହିଁଲୁ ନାହିଁ। ୧୦ବିଶ୍ୱାସୀ ଯେ ତୁମ୍ଭେମାନେ, ତୁମ୍ଭମାନଙ୍କ
ଗହଣରେ ରହିଥିଲାବେଳେ, ଆମ୍ଭେମାନେ ପବିତ୍ର, ଧାର୍ମିକ
ଓ ତ୍ରୁଟି ରହିତ ଜୀବନଯାପନ କରିଥିଲୁ। ୧୧ତୁମ୍ଭେମାନେ ଓ
ପରମେଶ୍ୱର ମଧ୍ୟ ଜାଣନ୍ତି ଯେ, ଏହା ସତ୍ୟ। ପିତା ନିଜ
ସନ୍ତାନମାନଙ୍କୁ ସ୍ନେହ କଲା ଭଳି ଆମ୍ଭେ ତୁମ୍ଭମାନଙ୍କ ସହିତ
ସ୍ନେହପୂର୍ବକ ବ୍ୟବହାର କରିଛୁ। ୧୨ଆମ୍ଭେ ତୁମ୍ଭମାନଙ୍କୁ
ଉତ୍ସାହ ପ୍ରଦାନ କରିଛୁ, ଆମ୍ଭେ ତୁମ୍ଭମାନଙ୍କୁ ଆଶ୍ୱାସନା
ଦେଲୁ ଏବଂ ପରମେଶ୍ୱରଙ୍କ ପାଇଁ ଭଲ ଜୀବନଯାପନ
କରିବା ପାଇଁ କହିଛୁ। ପରମେଶ୍ୱର ତୁମ୍ଭମାନଙ୍କୁ ନିଜ ରାଜ୍ୟ
ଓ ମହିମା ପ୍ରାପ୍ତ କରିବା ପାଇଁ ଡାକୁଛନ୍ତି।
୧୩ତୁମ୍ଭେମାନେ ଆମ୍ଭମାନଙ୍କ ଠାରୁ ଶୁଣିଥିବା ଶିକ୍ଷାଗୁଡ଼ିକୁ
ମଣିଷମାନଙ୍କର ନୁହେଁ ବରଂ ପରମେଶ୍ୱରଙ୍କ ବାକ୍ୟ ବୋଲି
ଭାବି ଗ୍ରହଣ କରିଥିବାରୁ, ଆମ୍ଭେ ପରମେଶ୍ୱରଙ୍କୁ ଅନବରତ
ଧନ୍ୟବାଦ ଜଣାଉଛୁ। ଏହା ପ୍ରକୃତରେ ପରମେଶ୍ୱରଙ୍କ
ଶିକ୍ଷା। ଏହି ଶିକ୍ଷାର ପ୍ରଭାବ, ବିଶ୍ୱାସୀ ଯେ ତୁମ୍ଭେମାନେ,
ତୁମ୍ଭମାନଙ୍କ ଉପରେ ପଡ଼ିଛି। ୧୪ଭାଇ(ଓ ଭଉଣୀ)ମାନେ!
ତୁମ୍ଭେମାନେ ଯିହୂଦାରେ* ଥିବା ଖ୍ରୀଷ୍ଟ ଯୀଶୁଙ୍କ ଠାରେ
ପରମେଶ୍ୱରଙ୍କ ମଣ୍ଡଳୀଗୁଡିକର ଲୋକମାନଙ୍କ ଭଳି ହୋଇଛ।
ଯିହୂଦାରେ ପରମେଶ୍ୱରଙ୍କ ଲୋକମାନେ ଅନ୍ୟ
ଯିହୂଦୀମାନଙ୍କଠାରୁ ଯାତନା ଭୋଗ କରିଥିଲେ। ତୁମ୍ଭେମାନେ
ମଧ୍ୟ ନିଜ ଦେଶର ଲୋକମାନଙ୍କ ଠାରୁ ସେହିଭଳି ଯାତନା
ପାଇଛ। ୧୫ସେ ଯିହୂଦୀମାନେ ପ୍ରଭୁ ଯୀଶୁଙ୍କୁ ମାରିଦେଲେ।
ସେମାନେ ଭବିଷ୍ୟଦ୍‌ବକ୍ତାମାନଙ୍କୁ ମଧ୍ୟ ମାରିଦେଲେ। ସେହି
ଯିହୂଦୀମାନେ ଆମ୍ଭକୁ ସେହି ଅଞ୍ଚଳ ଛାଡ଼ିବା ପାଇଁ ବାଧ
କଲେ। ପରମେଶ୍ୱର ସେମାନଙ୍କଠାରେ ସନ୍ତୁଷ୍ଟ ନୁହଁନ୍ତି।
ସେମାନେ ସମଗ୍ର ମାନବ ଜାତିର ବିରୋଧୀ। ୧୬ସେମାନେ
ଆମ୍ଭକୁ ଅଣଯିହୂଦୀମାନଙ୍କ ନିକଟରେ ଶିକ୍ଷା ଦେବା ପାଇଁ
ଅଟକାଇବାକୁ ଚେଷ୍ଟା କରନ୍ତି। ଅଣଯିହୂଦୀମାନେ ଉଦ୍ଧାର
ହୁଅନ୍ତୁ, ଏହି ଉଦ୍ଦେଶ୍ୟରେ ଆମ୍ଭେ ସେମାନଙ୍କୁ ଶିକ୍ଷା
ଦେଉ। କିନ୍ତୁ ସେହି ଯିହୂଦୀମାନେ ପୂର୍ବରୁ କରିଥିବା
ପାପଗୁଡ଼ିକର ସୂଚୀ, ବର୍ତ୍ତମାନ ମଧ୍ୟ ବଢ଼ି ଚାଲିଛି। ଏବେ
ପୂର୍ଣ୍ଣଭାବରେ ପରମେଶ୍ୱରଙ୍କ କ୍ରୋଧ ସେମାନଙ୍କ ଉପରେ
ଆସି ପଡ଼ିଲାଣି।

## ପାଉଲ ପୁଣି ଥରେ ସେମାନଙ୍କୁ ଦେଖାକରିବାକୁ ଇଚ୍ଛା କରନ୍ତି

୧୭ଭାଇ ଓ (ଭଉଣୀମାନେ)! ଆମ୍ଭେ ଅଳ୍ପ ସମୟ ପାଇଁ
ତୁମ୍ଭମାନଙ୍କ ପାଖରୁ ଦୂରରେ ଥିଲୁ। ଆମ୍ଭେ ଶାରୀରିକ
ଭାବରେ ସେଠାରେ ନ ଥିଲେ ମଧ୍ୟ, ଆମ୍ଭର ଚିନ୍ତାଗୁଡ଼ିକ
ସେଠାରେ ଅଛି। ଆମ୍ଭେ ତୁମ୍ଭମାନଙ୍କୁ ଦେଖିବା ଲାଗି ବ୍ୟଗ୍ର
ଥିଲୁ ଓ ସେଥିପାଇଁ ଅଧିକ ଯତ୍ନ ମଧ୍ୟ କରିଥିଲୁ। ୧୮ଆମ୍ଭେ
ତୁମ୍ଭମାନଙ୍କ ପାଖକୁ ଆସିବାକୁ ଚେଷ୍ଟା କରିଥିଲୁ। ମୁଁ
ପାଉଲ ନିଜେ କେତେ ଥର ଆସିବାକୁ ଚେଷ୍ଟା କରିଛି,
କିନ୍ତୁ ଶୟତାନ ଆମ୍ଭକୁ ବାଧା ଦେଇଛି। ୧୯ତୁମ୍ଭେମାନେ
ଆମ୍ଭର ଆଶା, ଆମ୍ଭର ଆନନ୍ଦ ଓ ଆମ୍ଭର ମୁକୁଟ।
ଯେତେବେଳେ ଆମ୍ଭମାନଙ୍କର ପ୍ରଭୁଯୀଶୁ ଆସିବେ, ଆମ୍ଭେ
ତୁମ୍ଭମାନଙ୍କ ପାଇଁ ଗର୍ବ ଅନୁଭବ କରିବୁ। ୨୦ପ୍ରକୃତରେ
ତୁମ୍ଭେମାନେ ଆମ୍ଭର ମହିମା ଓ ଆମ୍ଭର ଆନନ୍ଦ ଅଟ।

୩ ଆମ୍ଭେ ତୁମ୍ଭମାନଙ୍କ ପାଖକୁ ଆସିପାରି ନ ଥିଲୁ,
କିନ୍ତୁ ଅଧିକ ଅପେକ୍ଷା କରିବା ମଧ୍ୟ ଅତ୍ୟନ୍ତ
କଷ୍ଟଦାୟକ ଥିଲା। ୨ଅତଏବ ଆଥୀନୀରେ ଏକଲା ରହି
ଯାଇ, ତୀମଥିଙ୍କୁ ତୁମ୍ଭମାନଙ୍କ ପାଖକୁ ପଠାଇବାକୁ ଆମ୍ଭେ
ସ୍ଥିର କଲୁ। ତୀମଥି ଆମ୍ଭର ଭାଇ। ସେ ପରମେଶ୍ୱରଙ୍କ
ଲାଗି ମୋ ସହିତ କାମ କରନ୍ତି। ଲୋକମାନଙ୍କୁ ଖ୍ରୀଷ୍ଟଙ୍କ
ସୁସମାଚାର ପ୍ରଚାର କରନ୍ତି। ତୁମ୍ଭମାନଙ୍କ ବିଶ୍ୱାସରେ ଶକ୍ତି
ଉତ୍ସାହ ଆଣିବା ପାଇଁ ଆମ୍ଭେ ତୀମଥିଙ୍କୁ ପଠାଇଥିଲୁ।
୩ଆମ୍ଭେ ଏବେ ଯେଉଁ ଅସୁବିଧାରେ ଅଛୁ, ସେଥିରେ
ତୁମ୍ଭେମାନେ କେହି ଯେପରି ବିବ୍ରତ ନ ହୁଅ, ସେଥିପାଇଁ
ଆମ୍ଭେ ତୀମଥିଙ୍କୁ ପଠାଇଲୁ। ତୁମ୍ଭେମାନେ ଜାଣିଥିଲ ଯେ
ଆମ୍ଭେ ଭବିଷ୍ୟତ୍‌ରେ ଏଭଳି କଷ୍ଟ ନିଶ୍ଚୟ ପାଇବା।
୪ଯେତେବେଳେ ଆମ୍ଭେ ତୁମ୍ଭମାନଙ୍କ ସହିତ ଥିଲୁ, ଆମ୍ଭେ
ତୁମ୍ଭମାନଙ୍କୁ କହିଥିଲୁ ଯେ, ଆମ୍ଭେ ଅସୁବିଧାଗୁଡ଼ିକର ସମ୍ମୁଖୀନ
ହେବାକୁ ବାଧ୍ୟ। ତୁମ୍ଭେମାନେ ଜାଣିଛ ଯେ, ଆମ୍ଭେ ଯେଭଳି
କହିଥିଲୁ, ସେହିଭଳି ସବୁ ଘଟିଛି। ୫ତୁମ୍ଭମାନଙ୍କ ବିଶ୍ୱାସ
ବିଷୟରେ ଜାଣି ପାରିବା ଉଦ୍ଦେଶ୍ୟରେ ମୁଁ ତୀମଥିଙ୍କୁ
ତୁମ୍ଭମାନଙ୍କ ପାଖକୁ ପଠାଇଥିଲି। ଅଧିକ ଅପେକ୍ଷା କରିବାକୁ
ଧୈର୍ଯ୍ୟ ନ ଥିବାରୁ, ମୁଁ ତାହାଙ୍କୁ ପଠାଇଥିଲି। ମୋର ଭୟ
ଥିଲା ଯେ, କାଳେ ପ୍ରଲୋଭନକାରୀ ଶୟତାନ ତୁମ୍ଭମାନଙ୍କୁ
ପ୍ରଲୋଭନ ଦ୍ୱାରା ପରାଜିତ କରିଥିବ। ତା'ହେଲେ ଆମ୍ଭର
କଠୋର ପରିଶ୍ରମ ବ୍ୟର୍ଥ ହୋଇଯିବ।
୬କିନ୍ତୁ ତୀମଥି ତୁମ୍ଭମାନଙ୍କ ପାଖରୁ ଆମ୍ଭମାନଙ୍କ ପାଖକୁ
ଫେରି ଆସିଛନ୍ତି। ସେ ତୁମ୍ଭମାନଙ୍କର ବିଶ୍ୱାସ ଓ ପ୍ରେମର
ସୁଖବର ଆମ୍ଭକୁ ଦେଇଛନ୍ତି। ତୁମ୍ଭେମାନେ ଆମ୍ଭକୁ ସର୍ବଦା
ମନେ ପକାଉଛ ବୋଲି ତୀମଥି ଆମ୍ଭକୁ କହିଲେ।
ତୁମ୍ଭେମାନେ ଆମ୍ଭକୁ ଆଉଥରେ ଦେଖିବାକୁ ଗଭୀର ଭାବରେ
ଚାହିଁ ବୋଲି ସେ ଆମ୍ଭକୁ କହିଲେ। ଆମ୍ଭର ମଧ୍ୟ ସେହି
ଇଚ୍ଛା। ଆମ୍ଭେମାନେ ତୁମ୍ଭକୁ ଦେଖିବାକୁ ପ୍ରବଳ ଆଗ୍ରହୀ।
୭ଅତଏବ ଭାଇ (ଓ ଭଉଣୀ)ମାନେ! ତୁମ୍ଭମାନଙ୍କ ବିଶ୍ୱାସ
ଯୋଗୁ ଆମ୍ଭେ ସାନ୍ତ୍ୱନା ଲାଭ କଲୁ। ଆମ୍ଭର ଅନେକ କଷ୍ଟ
ଓ ଯାତନା ଥିଲେ ମଧ୍ୟ, ଆମ୍ଭେ ସାନ୍ତ୍ୱନା ଲାଭ କରିଛୁ।
୮ତୁମ୍ଭେମାନେ ପ୍ରଭୁଙ୍କଠାରେ ଦୃଢ଼ ରହିଲେ, ଆମ୍ଭର ଜୀବନ

**ଯିହୂଦା** ଯିହୂଦୀମାନଙ୍କ ସ୍ଥାନ। ଏଠାରେ ଯୀଶୁଖ୍ରୀଷ୍ଟ ରହିଥିଲେ ଓ ପ୍ରଥମ ମଣ୍ଡଳୀ ଆରମ୍ଭ ହୋଇଥିଲା।

ପ୍ରକୃତରେ ସଫଳ ହୁଏ। ୯ତୁମ୍ଭମାନଙ୍କ କାରଣରୁ ଆମ୍ଭ
ପରମେଶ୍ୱରଙ୍କ ଆଗରେ ଆମ୍ଭର ମହାନ ଆନନ୍ଦ। ଅତଏବ
ତୁମ୍ଭମାନଙ୍କ ଲାଗି ଆମ୍ଭେ ପରମେଶ୍ୱରଙ୍କୁ ଧନ୍ୟବାଦ ଅର୍ପଣ
କରୁଛୁ। କିନ୍ତୁ ଆମ୍ଭେ ଯେତେ ଆନନ୍ଦ ଅନୁଭବ କରୁଛୁ,
ସେହି ଅନୁପାତରେ ଆମ୍ଭେ ତାଙ୍କୁ ଧନ୍ୟବାଦ ଦେଇପାରିବୁ
ନାହିଁ। ୧୦ଦିନରାତି ଆମ୍ଭେ ଅତି ଦୃଢ଼ତାର ସହିତ ତୁମ୍ଭମାନଙ୍କ
ପାଇଁ ପ୍ରାର୍ଥନା କରି ଚାଲିଛୁ। ତୁମ୍ଭମାନଙ୍କର ବିଶ୍ୱାସକୁ ଦୃଢ଼
କରିବା ଲାଗି ଓ ତୁମ୍ଭମାନଙ୍କ ବିଶ୍ୱାସରେ ଯାହାକିଛି ଅଭାବ
ଅଛି, ତାହା ଯୋଗାଇ ଦେବା ପାଇଁ ଆମ୍ଭେ ତୁମ୍ଭମାନଙ୍କ
ପାଖକୁ ଆସିବାକୁ ଓ ଦେଖିବା ପାଇଁ ପ୍ରାର୍ଥନା କରୁଛୁ।
୧୧ଆମ୍ଭର ପରମେଶ୍ୱର, ପରମପିତା ଓ ଆମ୍ଭର ପ୍ରଭୁ ଯୀଶୁ
ତୁମ୍ଭମାନଙ୍କ ପାଖରେ ପହଞ୍ଚିବା ପାଇଁ ମାର୍ଗ ପ୍ରସ୍ତୁତ କରନ୍ତୁ
ବୋଲି, ଆମ୍ଭେ ପ୍ରାର୍ଥନା କରୁଛୁ। ୧୨ତୁମ୍ଭମାନଙ୍କର ପ୍ରେମ
ବୃଦ୍ଧି ହେଉ ବୋଲି, ଆମ୍ଭେ ପ୍ରଭୁଙ୍କୁ ପ୍ରାର୍ଥନା କରୁଛୁ।
ପରସ୍ପର ନିମନ୍ତେ ଓ ଅନ୍ୟ ସମସ୍ତଙ୍କ ପାଇଁ ସେ
ତୁମ୍ଭମାନଙ୍କୁ ଅଧିକରୁ ଅଧିକ ପ୍ରେମ ପ୍ରଦାନ କରନ୍ତୁ, ଆମ୍ଭେ
ଏହି ପ୍ରାର୍ଥନା କରୁଛୁ। ଆମ୍ଭେ ଯେଭଳି ତୁମ୍ଭମାନଙ୍କୁ ଭଲ
ପାଉ, ସେହିଭଳି ତୁମ୍ଭେମାନେ ସମସ୍ତଙ୍କୁ ଭଲ ପାଅ ବୋଲି
ଆମ୍ଭେ ପ୍ରାର୍ଥନା କରୁଛୁ। ୧୩ତୁମ୍ଭମାନଙ୍କର ହୃଦୟ ଦୃଢ଼
ହେଉ ବୋଲି ଆମ୍ଭେ ପ୍ରାର୍ଥନା କରୁ। ତେବେ ଯେତେବେଳେ
ଆମ୍ଭ ପ୍ରଭୁ ଯୀଶୁ ନିଜର ସମସ୍ତ ପବିତ୍ର ଲୋକଙ୍କ ଗହଣରେ
ଆସିବେ, ତୁମ୍ଭେମାନେ ପରମପିତା ପରମେଶ୍ୱରଙ୍କ ଆଗରେ
ପବିତ୍ର ଭାବରେ ଓ ଦୋଷରହିତ ହୋଇ ଠିଆ ହୋଇପାରିବ।

## ପରମେଶ୍ୱରଙ୍କୁ ପ୍ରସନ୍ନ କରୁଥିବା ଜୀବନ

୪ ଭାଇ(ଓ ଭଉଣୀ)ମାନେ! ବର୍ତ୍ତମାନ ତୁମ୍ଭମାନଙ୍କୁ ମୋର
କେତେକ ଅନ୍ୟ କଥାଗୁଡ଼ିକ କହିବାକୁ ଅଛି।
ପରମେଶ୍ୱରଙ୍କୁ ପ୍ରସନ୍ନ କରିପାରୁଥିବା ଜୀବନଯାପନ ପ୍ରଣାଳୀ
ବିଷୟରେ ଆମ୍ଭେମାନେ ତୁମ୍ଭମାନଙ୍କୁ ଶିଖାଇଛୁ। ତୁମ୍ଭେମାନେ
ସେହିଭଳି ଜୀବନଯାପନ କରୁଛ। ପ୍ରଭୁ ଯୀଶୁଙ୍କ ପାଇଁ ଅଧିକରୁ
ଅଧିକ ସେହିଭଳି ଜୀବନଯାପନ କରିବା ପାଇଁ ଆମ୍ଭେ
ତୁମ୍ଭମାନଙ୍କୁ କହୁଛୁ ଓ ଉତ୍ସାହିତ ମଧ୍ୟ କରୁଛୁ। ୨ତୁମ୍ଭେମାନେ
ଜାଣିଛ ଯେ, ଆମ୍ଭେ ତୁମ୍ଭମାନଙ୍କୁ କ'ଣ କରିବା ପାଇଁ
କହିଛୁ। ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଅଧିକାର ମାଧ୍ୟମରେ ଆମ୍ଭେ
ତୁମ୍ଭମାନଙ୍କୁ ସେହି କଥାଗୁଡ଼ିକ କହିଛୁ। ପରମେଶ୍ୱର ଇଚ୍ଛା
କରନ୍ତି ଯେ, ତୁମ୍ଭେମାନେ ପବିତ୍ର ହୁଅ। ୩ସେ ଚାହାଁନ୍ତି
ଯେ, ତୁମ୍ଭେମାନେ ଯୌନଗତ ପାପଗୁଡ଼ିକରୁ ଦୂରରେ ରୁହ।
୪"ପରମେଶ୍ୱର ଚାହାଁନ୍ତି ଯେ, ତୁମ୍ଭେମାନେ ପ୍ରତ୍ୟେକ ନିଜ
ଶରୀରକୁ ସଂଯମ କରିବାକୁ ଶିଖ। ତୁମ୍ଭେମାନେ ନିଜ
ଶରୀରକୁ ଏପରି ବ୍ୟବହାର କର ଯେ, ତାହା ପବିତ୍ର
ହେବ ଓ ପରମେଶ୍ୱରଙ୍କୁ ଗୌରବ ଦେବ। ତୁମ୍ଭମାନଙ୍କ
ଶରୀରକୁ କାମାସକ୍ତିର ବଶବର୍ତ୍ତୀ ହେବାକୁ ଦିଅ ନାହିଁ।"*
୫ଯେଉଁମାନେ ପରମେଶ୍ୱରଙ୍କୁ ଜାଣନ୍ତି ନାହିଁ, ସେମାନେ ନିଜ
ଶରୀରର ଏପରି ବ୍ୟବହାର କରନ୍ତି। ୬ଖ୍ରୀଷ୍ଟଙ୍କ ଠାରେ
ତୁମ୍ଭମାନଙ୍କ ଭାଇ ବିରୁଦ୍ଧରେ କୌଣସି ମନ୍ଦକାର୍ଯ୍ୟ କର
ନାହିଁ ଓ ଏହି ବିଷୟରେ ତାହାଙ୍କୁ ଠକ ନାହିଁ। ଯେଉଁମାନେ
ଏଭଳି କାମ କରିବେ, ସେମାନଙ୍କୁ ପରମେଶ୍ୱର ଦଣ୍ଡ
ଦେବେ। ଆମ୍ଭେ ଏ ବିଷୟରେ ଆଗରୁ ତୁମ୍ଭମାନଙ୍କୁ କହିଛୁ
ଓ ସତର୍କ କରିଛୁ। ୭ପରମେଶ୍ୱର ଆମ୍ଭକୁ ପବିତ୍ର ହେବା
ପାଇଁ ଆହ୍ୱାନ କରିଛନ୍ତି। ଆମ୍ଭେ ପାପରେ ଜୀବନ ଯାପନ
କରିବା ପାଇଁ ସେ ଚାହାଁନ୍ତି ନାହିଁ। ୮ଅତଏବ ଯେଉଁ
ଲୋକ ଏହି ଶିକ୍ଷାକୁ ଅବମାନନା କରେ, ସେ ପରମେଶ୍ୱରଙ୍କ
ଅବମାନନା କରେ, ମଣିଷକୁ ନୁହେଁ। ପରମେଶ୍ୱର ତାଙ୍କର
ପବିତ୍ରଆତ୍ମା ତୁମ୍ଭମାନଙ୍କୁ ପ୍ରଦାନ କରି ଥାଆନ୍ତି।
୯ଖ୍ରୀଷ୍ଟଙ୍କଠାରେ ତୁମ୍ଭମାନଙ୍କର ଭାଇ ଓ ଭଉଣୀମାନଙ୍କ
ପାଇଁ ପ୍ରେମଭାବ ବିଷୟରେ ତୁମ୍ଭମାନଙ୍କୁ ଲେଖିବାର ଆବଶ୍ୟକତା
ନାହିଁ। ପରସ୍ପରକୁ ପ୍ରେମ କରିବା ପାଇଁ ପରମେଶ୍ୱର
ତୁମ୍ଭମାନଙ୍କୁ ଆଗରୁ ଶିଖାଇଛନ୍ତି। ୧୦ସମଗ୍ର ମାକିଦନିଆର
ଭାଇ(ଓ ଭଉଣୀ) ମାନଙ୍କୁ ତୁମ୍ଭେମାନେ ପ୍ରକୃତରେ ଭଲ
ପାଅ। ହେ ଭାଇଭଉଣୀମାନେ ଆମ୍ଭେ ଏବେ, ସେମାନଙ୍କୁ
ଅଧିକରୁ ଅଧିକ ଭଲ ପାଇବାକୁ ତୁମ୍ଭମାନଙ୍କୁ ଉତ୍ସାହିତ
କରୁଛୁ।
୧୧ଶାନ୍ତିପୂର୍ଣ୍ଣ ଜୀବନଯାପନ ପାଇଁ ଯାହା ସମ୍ଭବ, ତାହା
କର। ନିଜ କାର୍ଯ୍ୟର ଯତ୍ନ ନିଅ। ନିଜ ହାତରେ କାମ
କର। ଆମ୍ଭେ ଏହି କଥାଗୁଡ଼ିକ କରିବା ପାଇଁ ତୁମ୍ଭମାନଙ୍କୁ
ଆଗରୁ କହିଛୁ। ୧୨ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ,
ସେମାନେ ମଧ୍ୟ, ଏପରି କାମ କରିବା ଓ ଜୀବନଯାପନ
ଦେଖି ତୁମ୍ଭମାନଙ୍କୁ ସମ୍ମାନ ଦେବେ। ତୁମ୍ଭମାନଙ୍କୁ ମଧ୍ୟ ନିଜ
ଆବଶ୍ୟକତାଗୁଡ଼ିକ ପାଇଁ ଅନ୍ୟ ଲୋକମାନଙ୍କ ଉପରେ
ନିର୍ଭର କରିବାକୁ ପଡ଼ିବ ନାହିଁ।

## ପ୍ରଭୁଙ୍କର ଆଗମନ

୧୩ଭାଇ(ଓ ଭଉଣୀ) ମାନେ! ମୃତମାନଙ୍କ ବିଷୟରେ
ତୁମ୍ଭେମାନେ ଅଜ୍ଞାତ ରୁହ ବୋଲି ଆମ୍ଭେ ଚାହୁଁନାହୁଁ।
ଭରସା ପାଇ ନ ଥିବା ଅନ୍ୟ ଲୋକଙ୍କ ଭଳି ତୁମ୍ଭେମାନେ
ଦୁଃଖି ହୁଅ ବୋଲି ଆମ୍ଭେ ଚାହୁଁ ନାହୁଁ। ୧୪ଆମ୍ଭେ ବିଶ୍ୱାସ
କରୁ ଯେ, ଯୀଶୁ ମଲେ। କିନ୍ତୁ ଆମ୍ଭେ ବିଶ୍ୱାସ କରୁ ଯେ,
ଯୀଶୁ ପୁନରୁତ୍ଥିତ ହେଲେ। ଅତଏବ, ଯୀଶୁଙ୍କ ହେତୁ
ଯୀଶୁଙ୍କ ସହିତ ମୃତବ୍ୟକ୍ତିମାନଙ୍କୁ ପରମେଶ୍ୱର ଏକାଠି
ଆଣିବେ। ୧୫ଆମ୍ଭେ ଏବେ ତୁମ୍ଭମାନଙ୍କୁ ପ୍ରଭୁଙ୍କ ନିଜ ଶିକ୍ଷା
କହୁଛୁ। ପ୍ରଭୁ ପୁନର୍ବାର ଆସିବାବେଳେ ଆମ୍ଭମାନଙ୍କ ଭିତରୁ
ଯେଉଁମାନେ ବର୍ତ୍ତମାନ ଜୀବିତ, ସେମାନେ ସେ ପର୍ଯ୍ୟନ୍ତ
ଜୀବିତ ରହିଥିବେ। ଆମ୍ଭେ ଯେଉଁମାନେ ଜୀବିତ ଥିବୁ,
ପ୍ରଭୁଙ୍କ ସହିତ ରହିବୁ ଏହା ସତ୍ୟ; କିନ୍ତୁ ଯେଉଁମାନେ
ମରି ଯାଇଛନ୍ତି, ସେମାନେ ଆମ୍ଭମାନଙ୍କ ପୂର୍ବରୁ ତାହାଙ୍କ
ଉପସ୍ଥିତି ମଧ୍ୟକୁ ଯିବେ। ୧୬ସ୍ୱର୍ଗରୁ ପ୍ରଭୁ ନିଜେ ଓହ୍ଲାଇ
ଆସିବେ। ସେତେବେଳେ ଉଚ୍ଚ ସ୍ୱରରେ ଏକ ଆଦେଶ
ହେବ। ମୁଖ୍ୟ ସ୍ୱର୍ଗଦୂତଙ୍କ ସ୍ୱର ଓ ପରମେଶ୍ୱରଙ୍କ ତୂରୀନାଦ
ମାଧ୍ୟମରେ ଏହି ଆଦେଶ ଦିଆ ହେବ। ଯେଉଁମାନେ
ଖ୍ରୀଷ୍ଟଙ୍କଠାରେ ଥାଇ ମରିଛନ୍ତି, ସେମାନେ ପ୍ରଥମରେ ପୁନରୁତ୍ଥିତ

---

**"ପରମେଶ୍ୱର ... ନାହିଁ"** ତୁମ୍ଭର ସ୍ତ୍ରୀକୁ କିପରି ପବିତ୍ର ଓ ସମ୍ମାନଜନକ ଭାବରେ ଗ୍ରହଣ କରିବାକୁ ପଡେ, ତାହା ତୁମ୍ଭର ଜାଣିବା ଉଚିତ।

ହେବେ। ୧୭ତା'ପରେ ସେ ସମୟରେ ଆମ୍ଭେ ଜୀବିତ ଥିବା
ଲୋକେ ମୃତଲୋକମାନଙ୍କ ସହିତ ଏକାଠି ରୁଣ୍ଡ ହେବା।
ଆମ୍ଭକୁ ମେଘମାଳା ଭିତରକୁ ନିଆଯିବ ଓ ସେଠାରେ
ବାୟୁମଣ୍ଡଳରେ ଆମ୍ଭେ ପ୍ରଭୁଙ୍କୁ ସାକ୍ଷାତ କରିବୁ। ୧୮ଏବଂ
ଆମ୍ଭେ ପ୍ରଭୁଙ୍କ ସହିତ ସବୁ ଦିନ ପାଇଁ ରହିବୁ। ଅତଏବ
ଏହିସବୁ କଥା କହି ପରସ୍ପରକୁ ସାନ୍ତ୍ୱନା ଦିଅ।

## ପ୍ରଭୁଙ୍କ ଆଗମନ ପାଇଁ ପ୍ରସ୍ତୁତ ରୁହ

**୫** ଭାଇ (ଓ ଭଉଣୀ) ମାନେ! ସମୟଗୁଡ଼ିକ ଓ
ତାରିଖଗୁଡ଼ିକ ବିଷୟରେ ଏବେ କିଛି ଲେଖିବାର
ଆବଶ୍ୟକତା ନାହିଁ। ୨କାରଣ ଏହା ତୁମ୍ଭେ ଭଲ ଭାବେ
ଜାଣ ଯେ, ଜଣେ ଚୋର ରାତିରେ ଆସିବା ଭଳି, ପ୍ରଭୁଙ୍କର
ପୁନର୍ବାଗମନ ଦିନଟି ଆଶ୍ଚର୍ଯ୍ୟଜନକ ହେବ। ୩ଲୋକେ
କହିବେ: "ଆମ୍ଭେ ଶାନ୍ତି ପାଇଛୁ ଓ ସୁରକ୍ଷିତ ଅଛୁ।"
ସେହି ସମୟରେ ଗର୍ଭବତୀ ସ୍ତ୍ରୀର ପ୍ରସବ-ବେଦନା ହେଲା
ଭଳି, ହଠାତ୍ ତାହାଙ୍କ ପାଇଁ ବିନାଶ ଆସିବ ଓ ସେମାନେ
ରକ୍ଷା ପାଇପାରିବେ ନାହିଁ। ୪କିନ୍ତୁ ତୁମ୍ଭ ଭାଇ ଓ
ଭଉଣୀମାନଙ୍କ ପାଇଁ ସେହି ଦିନଟି ଚୋର ଆସିବା ଭଳି
ଆଶ୍ଚର୍ଯ୍ୟର କଥା ହେବ ନାହିଁ, କାରଣ ତୁମ୍ଭେମାନେ
ଅନ୍ଧକାରରେ ବାସ କରୁ ନାହଁ। ୫ତୁମ୍ଭେ ସମସ୍ତେ ହେଉଛ
ଆଲୋକର ସନ୍ତାନ ଓ ଦିନର ସନ୍ତାନ। ଆମ୍ଭେମାନେ
ରାତ୍ରିରେ କିମ୍ବା ଅନ୍ଧକାରରେ ନାହୁଁ। ୬ଅତଏବ ଆମ୍ଭେମାନେ
ଅନ୍ୟ ଲୋକମାନଙ୍କ ଭଳି ଶୋଇ ରହିବା ଉଚିତ ନୁହେଁ।
ଆମ୍ଭେ ଜାଗ୍ରତ ରହିବା ଦରକାର। ନିଜ ଉପରେ ଆମ୍ଭର
ସଂଯମ ଥିବା ଆବଶ୍ୟକ। ୭ଯେଉଁ ଲୋକମାନେ ଶୁଅନ୍ତି,
ସେମାନେ ରାତିରେ ଶୁଅନ୍ତି। ଯେଉଁମାନେ ମାତାଲ ହୁଅନ୍ତି,
ସେମାନେ ରାତିରେ ମାତାଲ ହୁଅନ୍ତି। ୮କିନ୍ତୁ ଆମ୍ଭେ ଦିନର
ହୋଇଥିବାରୁ ନିଜକୁ ସଂଯମ କରିବା ଆବଶ୍ୟକ। ବିଶ୍ୱାସ
ଓ ପ୍ରେମର ସାଞ୍ଜୁ ପିନ୍ଧିବା ଓ ପରିତ୍ରାଣର ଭରସାକୁ
ଶିରସ୍ତ୍ରାଣ ରୂପେ ପରିଧାନ କରିବା ଦରକାର। ୯ଯେହେତୁ
ପରମେଶ୍ୱର ଆମ୍ଭକୁ ତାହାଙ୍କ କ୍ରୋଧର ବିଷୟ ହେବା
ପାଇଁ ବାଛି ନାହାଁନ୍ତି। ବରଂ ଆମ୍ଭ ପ୍ରଭୁଯୀଶୁଖ୍ରୀଷ୍ଟଙ୍କ
ମାଧ୍ୟମରେ ମୁକ୍ତି ପାଇବା ପାଇଁ ପରମେଶ୍ୱର ଆମ୍ଭକୁ
ବାଛିଛନ୍ତି। ୧୦ଆମ୍ଭେ ଯୀଶୁଖ୍ରୀଷ୍ଟଙ୍କ ସହିତ ରହି ପାରିବା
ବୋଲି, ସେ ଆମ୍ଭ ପାଇଁ ମଲେ। ଯେତେବେଳେ ଯୀଶୁ
ଆସିବେ, ସେହି ସମୟରେ ଆମ୍ଭେ ଜୀବିତ ରହିବା କି
ମରିଯାଇଥିବା, ତାହା ମହତ୍ତ୍ୱପୂର୍ଣ୍ଣ ନୁହେଁ। ୧୧ଅତଏବ ପରସ୍ପରକୁ
ସାନ୍ତ୍ୱନା ଦିଅ, ଜଣେ ଅନ୍ୟ ଜଣକୁ ଆଧାତ୍ମିକ ଭାବରେ
ଗଢ଼ ଏବଂ ପରସ୍ପରଠାରେ ନିଷ୍ଠା ଜନ୍ମାଅ। ତୁମ୍ଭେ ଏବେ
ମଧ୍ୟ ସେଇଆ କରୁଛ।

## ଶେଷ ନିର୍ଦ୍ଦେଶ ଓ ଅଭିନନ୍ଦନ

୧୨ଭାଇ (ଓ ଭଉଣୀମାନେ)! ଯେଉଁମାନେ ତୁମ୍ଭମାନଙ୍କ
ସହିତ କଠୋର ପରିଶ୍ରମ କରୁଛନ୍ତି, ଓ ପ୍ରଭୁଙ୍କଠାରେ
ତୁମ୍ଭକୁ ନେତୃତ୍ୱ ଦେଉଛନ୍ତି ଓ ତୁମ୍ଭକୁ ଉପଦେଶ ପ୍ରଦାନ
କରୁଛନ୍ତି, ସେମାନଙ୍କୁ ସମ୍ମାନ ଦେବା ପାଇଁ ଆମ୍ଭେ
ନିବେଦନ କରୁଛୁ। ୧୩ତୁମ୍ଭମାନଙ୍କ ମଧ୍ୟରେ କାମ କରୁଥିବା
ଯୋଗୁ, ସେମାନଙ୍କୁ ପ୍ରେମ କର ଓ ସେମାନଙ୍କୁ ବିଶେଷ
ସମ୍ମାନ ଦେଖାଅ।

୧୪ପରସ୍ପର ଶାନ୍ତିରେ ରୁହ। ଯେଉଁମାନେ କାମ କରୁ
ନାହାଁନ୍ତି, ଭାଇ(ଓ ଭଉଣୀ)ମାନେ, ସେମାନଙ୍କୁ ସତର୍କ
କରିଦିଅ। ଯେଉଁମାନେ ଭୟରେ ଅଛନ୍ତି, ସେମାନଙ୍କୁ
ଉତ୍ସାହିତ କର। ଦୁର୍ବଳ ଲୋକଙ୍କୁ ସାହାଯ୍ୟ କର।
ପ୍ରତ୍ୟେକ ଲୋକ ପାଇଁ ଧୈର୍ଯ୍ୟବାନ ହୁଅ। ୧୫ଦେଖ,
ଯେପରି କେହି ଅପକାର ବଦଳରେ ଅପକାର ନ କରୁ।
ପରସ୍ପର ପାଇଁ ଓ ସମସ୍ତ ଲୋକଙ୍କ ପାଇଁ ଉତ୍ତମ ବିଷୟ,
ସବୁବେଳେ କରିବା ପାଇଁ ସର୍ବଦା ଚେଷ୍ଟା କର।

୧୬ସଦାସର୍ବଦା ଆନନ୍ଦିତ ରୁହ। ୧୭କଦାପି ପ୍ରାର୍ଥନା
କରିବା ବନ୍ଦ କର ନାହିଁ। ୧୮ସର୍ବଦା ପରମେଶ୍ୱରଙ୍କୁ
ଧନ୍ୟବାଦ ଜଣାଉଥାଅ। ପରମେଶ୍ୱର ଖ୍ରୀଷ୍ଟଯୀଶୁଙ୍କ ଠାରେ
ତୁମ୍ଭମାନଙ୍କ ପାଇଁ ଏହା ଚାହାଁନ୍ତି।

୧୯କଦାପି ପବିତ୍ର ଆତ୍ମାର କାର୍ଯ୍ୟ ବନ୍ଦ କର ନାହିଁ।
୨୦ଭବିଷ୍ୟଦ୍‌ବକ୍ତାମାନଙ୍କର କଥାଗୁଡ଼ିକୁ ତୁଚ୍ଛ ବୋଲି ମନେକର
ନାହିଁ। ୨୧କିନ୍ତୁ ପ୍ରତ୍ୟେକ କଥାର ସତ୍ୟାସତ୍ୟ ପରୀକ୍ଷା କରି
ଯାହା ଭଲ ତାହାକୁ ଧରି ରଖ। ୨୨ସମସ୍ତ ପ୍ରକାରର ମନ୍ଦ
ଠାରୁ ଦୂରରେ ରୁହ।

୨୩ପରମେଶ୍ୱରଙ୍କଠାରେ ଆମ୍ଭେ ପ୍ରାର୍ଥନା କରୁ ଯେ,
ସେହି ଶାନ୍ତିର ପରମେଶ୍ୱର ତୁମ୍ଭମାନଙ୍କୁ ପବିତ୍ର କରନ୍ତୁ ଓ
ପୂର୍ଣ୍ଣଭାବରେ ତାହାଙ୍କ ନିଜର କରିନିଅନ୍ତୁ। ଆମ୍ଭେ ପ୍ରାର୍ଥନା
କରୁ ଯେ, ଆମ୍ଭ ପ୍ରଭୁ ଯୀଶୁଖ୍ରୀଷ୍ଟ ଆସିଲା ବେଳେ
ତୁମ୍ଭମାନଙ୍କର ସମ୍ପୂର୍ଣ୍ଣ ଅସ୍ତିତ୍ୱ - ଅର୍ଥାତ୍ ଆତ୍ମା, ପ୍ରାଣ ଓ
ଶରୀର -ନିନ୍ଦାରହିତ ହୋଇ ସୁରକ୍ଷିତ ରହୁ। ୨୪ଯେଉଁ
ପରମେଶ୍ୱର ତୁମ୍ଭମାନଙ୍କୁ ଡାକିଛନ୍ତି, ତୁମ୍ଭେମାନେ ତାହାଙ୍କ
ଉପରେ ଭରସା ରଖ। ଯିଏ ତୁମ୍ଭମାନଙ୍କୁ ଡାକିଛନ୍ତି, ସେ
ସବୁ କିଛି କରିବେ।

୨୫ଭାଇ(ଓ ଭଉଣୀ)ମାନେ! ଆମ୍ଭ ପାଇଁ ପ୍ରାର୍ଥନା କର।
୨୬ଏକତ୍ରିତ ହେଲାବେଳେ, ସମସ୍ତ ଭାଇ(ଓ ଭଉଣୀ)ମାନଙ୍କୁ
ପବିତ୍ର ଚୁମ୍ବନ ଦେଇ ନମସ୍କାର କର। ୨୭ପ୍ରଭୁଙ୍କର କ୍ଷମତା
ଦ୍ୱାରା ମୁଁ ଏହି ପତ୍ରକୁ ସମସ୍ତ ଭାଇ(ଓ ଭଉଣୀ)ମାନଙ୍କୁ
ପଢ଼ି ଶୁଣାଇବା ପାଇଁ କହୁଛି। ୨୮ଆମ୍ଭର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର
ଅନୁଗ୍ରହ ତୁମ୍ଭ ସହିତ ରହିଥାଉ।

# ଥେସଲନୀକୀୟ ମଣ୍ଡଳୀ ନିକଟକୁ ପ୍ରେରିତ ପାଉଲଙ୍କର ଦ୍ୱିତୀୟ ପତ୍ର

୧ ପାଉଲ, ସିଲ୍ୱାନ୍ ଓ ତୀମଥିଙ୍କଠାରୁ ଥେସଲନୀକୀୟ
ମଣ୍ଡଳୀ ନିକଟକୁ ଏହି ପତ୍ର। ତୁମ୍ଭେମାନେ ସମସ୍ତେ
ପିତା ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଠାରେ ରହିଛ।
୨ପରମପିତା ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କଠାରୁ
ଅନୁଗ୍ରହ ଓ ଶାନ୍ତି ତୁମ୍ଭମାନଙ୍କ ଠାରେ ରହିଥାଉ।
୩ଆମ୍ଭେ ସର୍ବଦା ତୁମ୍ଭମାନଙ୍କ ପାଇଁ ପରମେଶ୍ୱରଙ୍କୁ
ଧନ୍ୟବାଦ ଜଣାଉଛୁ। ଆମ୍ଭ ପାଇଁ ଏଭଳି କରିବା ଠିକ୍
ବୋଲି ଆମ୍ଭେ ଉଚିତ ମନେ କରୁଛୁ। ତୁମ୍ଭମାନଙ୍କ ବିଶ୍ୱାସ
ଯେହେତୁ ଅଧିକରୁ ଅଧିକ ବୃଦ୍ଧି ପାଇଛି, ଏହା ଠିକ୍
ବୋଲି ପ୍ରମାଣିତ ହେଉଛି। ୪ତୁମ୍ଭମାନଙ୍କଠାରେ ପରସ୍ପର
ପ୍ରତି ଥିବା ପ୍ରେମ ଭାବ ମଧ୍ୟ ବୃଦ୍ଧି ପାଉଛି। ଅତଏବ,
ପରମେଶ୍ୱରଙ୍କର ଅନ୍ୟ ମଣ୍ଡଳୀମାନଙ୍କଠାରେ ଆମ୍ଭେ ତୁମ୍ଭମାନଙ୍କ
ପାଇଁ ଗର୍ବ ଅନୁଭବ କରୁ। ଯେପ୍ରକାରେ ତୁମ୍ଭେମାନେ ଦୃଢ଼
ରହିଛ ଏବଂ ତୁମ୍ଭର ବିଶ୍ୱାସ ରହିଛି, ଆମ୍ଭେ ଏହା
ବିଷୟରେ ପରମେଶ୍ୱରଙ୍କ ଅନ୍ୟ ମଣ୍ଡଳୀଗୁଡ଼ିକରେ କହୁ।
ତୁମ୍ଭେମାନେ ଦୁଃଖ କଷ୍ଟ ଓ ଅନେକ ଅସୁବିଧାର ସମ୍ମୁଖୀନ
ହେଉଛ; କିନ୍ତୁ ତୁମ୍ଭେମାନେ ନିଜର ଦୃଢ଼ତା ଓ ବିଶ୍ୱାସ
ଆଦୌ ନ ହରାଇ ଆଗେଇ ଚାଲିଛ।

### ପରମେଶ୍ୱରଙ୍କ ନ୍ୟାୟ ସମ୍ପର୍କରେ ପାଉଲ କହନ୍ତି

୫ପରମେଶ୍ୱର ତାହାଙ୍କର ବିଚାରରେ ଠିକ୍ ବୋଲି ଏହା
ପ୍ରମାଣିତ କରେ। ପରମେଶ୍ୱର ଚାହାଁନ୍ତି ଯେ, ତୁମ୍ଭେ
ତାହାଙ୍କ ରାଜ୍ୟରେ ପ୍ରବେଶ ପାଇଁ ଯୋଗ୍ୟ ହୁଅ, ଯେଉଁଥିପାଇଁ
ତୁମ୍ଭେମାନେ ଏହିସବୁ ଯାତନାର ସମ୍ମୁଖୀନ ହେଉଛ।
୬ଯାହା ଠିକ୍ ପରମେଶ୍ୱର ତାହା କରିବେ। ଯେଉଁ ଲୋକମାନେ
ତୁମ୍ଭମାନଙ୍କୁ କଷ୍ଟ ଦିଅନ୍ତି, ପରମେଶ୍ୱର ସେମାନଙ୍କୁ କଷ୍ଟ
ଦେବେ। ୭ଦୁଃଖ ପାଇଥିବା ତୁମ୍ଭ ସମସ୍ତଙ୍କୁ ପରମେଶ୍ୱର
ଶାନ୍ତି ପ୍ରଦାନ କରିବେ। ସେ ଆମ୍ଭକୁ ମଧ୍ୟ ଶାନ୍ତି ଦେବେ।
ଯେତେବେଳେ ପ୍ରଭୁ ଯୀଶୁ ନିଜର ଶକ୍ତିଶାଳୀ ସ୍ୱର୍ଗଦୂତମାନଙ୍କ
ସହିତ ସ୍ୱର୍ଗରୁ ଆସିବେ, ସେତେବେଳେ ପରମେଶ୍ୱର
ଆମ୍ଭର ଦୁଃଖ ଉପଶମ କରିଦେବେ। ୮ଯେଉଁମାନେ
ପରମେଶ୍ୱରଙ୍କୁ ଜାଣନ୍ତି ନାହିଁ ଓ ଆମ୍ଭ ପ୍ରଭୁ ଯୀଶୁଙ୍କର
ସୁସମାଚାରକୁ ମାନନ୍ତି ନାହିଁ, ସେମାନଙ୍କୁ ଦଣ୍ଡ ଦେବା ଲାଗି
ସେ ଜ୍ୱଳନ୍ତ ଅଗ୍ନି ଶିଖା ସହିତ ଆସିବେ। ୯ସେହି
ଲୋକମାନେ ଅନନ୍ତ ବିନାଶ ଦ୍ୱାରା ଦଣ୍ଡିତ ହେବେ।
ସେମାନଙ୍କୁ ପ୍ରଭୁଙ୍କ ସହିତ ରହିବାକୁ ଦିଆଯିବ ନାହିଁ।
ପ୍ରଭୁଙ୍କର ମହାନଶକ୍ତି ଠାରୁ ସେମାନଙ୍କୁ ଦୂରରେ ରଖାଯିବ।
୧୦ପ୍ରଭୁ ଯୀଶୁଙ୍କ ଆସିବା ଦିନର ଏହି ଘଟଣା ଘଟିବ। ନିଜ
ପବିତ୍ର ଲୋକଙ୍କ ଗହଣରେ ମହିମା ମଣ୍ଡିତ ହେବା ପାଇଁ
ଯୀଶୁ ଆସିବେ। ଯେଉଁମାନେ ସମସ୍ତେ ବିଶ୍ୱାସ କରିଛନ୍ତି,
ସେମାନେ ଯୀଶୁଙ୍କୁ ଦେଖି ବିସ୍ମିତ ହେବେ। ଯେହେତୁ
ତୁମ୍ଭେମାନେ ଆମ୍ଭେ କହିଥିବା କଥାଗୁଡ଼ିକୁ ବିଶ୍ୱାସ କରିଛ,
ସେଥିପାଇଁ ସେହି ବିଶ୍ୱାସୀ ମଣ୍ଡଳୀରେ ତୁମ୍ଭେମାନେ ମଧ୍ୟ
ଥିବ।
୧୧ସେଥିପାଇଁ ଆମ୍ଭେ ତୁମ୍ଭମାନଙ୍କ ପାଇଁ ସର୍ବଦା ପ୍ରାର୍ଥନା
କରୁଛୁ। ପରମେଶ୍ୱର ଯେପରି ତୁମ୍ଭମାନଙ୍କୁ ଆପଣା ଆହ୍ୱାନର
ଯୋଗ୍ୟ ବୋଲି ଭାବିବେ, ସେଭଳି ଧାର୍ମିକ ଭାବରେ
ଜୀବନଯାପନ କରିବା ପାଇଁ ଓ ସାହାଯ୍ୟ କରିବା ପାଇଁ,
ଆମ୍ଭେ ଆମ୍ଭ ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଛୁ। ତୁମ୍ଭମାନଙ୍କଠାରେ
ଥିବା ଭଲ ବିଷୟ ତୁମ୍ଭକୁ ଭଲ କାମ କରିବା ପାଇଁ
ଇଚ୍ଛୁକ କରୁ। ତୁମ୍ଭମାନଙ୍କଠାରେ ଥିବା ବିଶ୍ୱାସ ଦ୍ୱାରା
ତୁମ୍ଭେମାନେ କାମ କର। ଉକ୍ତ କାମଗୁଡ଼ିକ ତୁମ୍ଭେ
ଅଧିକରୁ ଅଧିକ କର ବୋଲି ପରମେଶ୍ୱର ନିଜ ଶକ୍ତି
ଦ୍ୱାରା ତୁମ୍ଭମାନଙ୍କୁ ସାହାଯ୍ୟ କରନ୍ତୁ ବୋଲି ଆମ୍ଭେ ପ୍ରାର୍ଥନା
କରୁ। ୧୨ପ୍ରଭୁ ଯୀଶୁଙ୍କ ନାମ ତୁମ୍ଭମାନଙ୍କ ମାଧ୍ୟମରେ
ମହିମାବାନ୍ ହେଉ। ଏହା ଆମ୍ଭେ ପ୍ରାର୍ଥନା କରୁ। ତୁମ୍ଭେମାନେ
ମଧ୍ୟ ତାହାଙ୍କଠାରେ ମହିମାବାନ ହୋଇପାରିବ। ଆମ୍ଭ
ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଦୟାରୁ ସେହି ମହିମା
ପ୍ରାପ୍ତ ହୁଏ।

### ମନ୍ଦ ଦୁର୍ଘଟଣାମାନ ଘଟିବ

୨ ଭାଇ (ଓ ଭଉଣୀ)ମାନେ! ଆମ୍ଭ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ
ଆସିବା ବିଷୟରେ ଆମ୍ଭର କିଛି କହିବାକୁ ଅଛି।
ଯେତେବେଳେ ଆମ୍ଭେ ସମସ୍ତେ ମିଶି ତାହାଙ୍କୁ ଭେଟିବା,
ସେହି ସମୟ ବିଷୟରେ ଆମ୍ଭେ ତୁମ୍ଭକୁ କହିବାକୁ ଚାହୁଁ।
୨ଯଦି ତୁମ୍ଭେମାନେ ଶୁଣ ଯେ, ପ୍ରଭୁଙ୍କର ସେହି ଦିନଟି
ଆସିଗଲାଣି, ତୁମ୍ଭେମାନେ ଚିନ୍ତାରେ ସହଜରେ ବିବ୍ରତ
ହୋଇ ଯାଅ ନାହିଁ କି ଭୟ କର ନାହିଁ। କେତେଜଣ
ଏହାକୁ କୌଣସି ଭବିଷ୍ୟତ୍‌ବାଣୀ ବା କୌଣସି ସମ୍ବାଦ
ବୋଲି କହି ପାରନ୍ତି, କିମ୍ବା କେତେକ ଲୋକ ଏହାକୁ
ଆମ୍ଭର ଏକ ଚିଠି ବୋଲି କହି ପାରନ୍ତି ଓ ଦାବି କରି
ପାରନ୍ତି ଯେ, ଆମ୍ଭମାନଙ୍କ ଦ୍ୱାରା ଏହି ପତ୍ର ଲେଖାଯାଇଅଛି।
୩ଏପରି ଭାବରେ, କୌଣସି ଲୋକକୁ କୌଣସି ପ୍ରକାରେ
ତୁମ୍ଭମାନଙ୍କୁ ଠକିବାକୁ ଦିଅ ନାହିଁ। ପରମେଶ୍ୱରଙ୍କ ବିରୁଦ୍ଧରେ
ବିଦ୍ରୋହ ସଂଘଟିତ ନ ହେଲା ପର୍ଯ୍ୟନ୍ତ ପ୍ରଭୁଙ୍କର ସେହି
ଦିନଟି ଆସିବ ନାହିଁ। ମନ୍ଦ ବ୍ୟକ୍ତିର ଦେଖା ନ ଦେବା
ପର୍ଯ୍ୟନ୍ତ ସେହି ଦିନଟି ଆସିବ ନାହିଁ। ସେହି ମନ୍ଦ ବ୍ୟକ୍ତି
ନରକର ଅଟେ। ୪ସେହି ମନ୍ଦ ବ୍ୟକ୍ତି, ପରମେଶ୍ୱରଙ୍କ

କିମ୍ବା ଏପରି କିଛି ଯାହା ଲୋକଙ୍କ ଦ୍ୱାରା ଉପାସିତ,
ଏହିପରି ପ୍ରତ୍ୟେକ ବିଷୟର ବିରୋଧୀ କରେ। ସେ ନିଜକୁ
ପ୍ରତ୍ୟେକ ଠାରୁ ଉଚ୍ଚ ବୋଲି ଦେଖାଏ, ଈଶ୍ୱରଙ୍କ ନାମରେ
ଖ୍ୟାତ ଓ ପୂଜା ପାଉଥିବା ସମସ୍ତଙ୍କର ସେ ବିରୋଧ
କରେ। ସେ ଲୋକ ପରମେଶ୍ୱରଙ୍କ ମନ୍ଦିରକୁ ଯାଇ,
ସିଂହାସନରେ ବସି ନିଜକୁ ପରମେଶ୍ୱର ବୋଲି ଘୋଷଣା
କରେ।
୫ମୁଁ ପୂର୍ବରୁ କହିଥିଲି ଯେ ଏହି ଘଟଣାଗୁଡ଼ିକ ଘଟିବ।
୬ମନେ ଅଛି ତ? ଏବେ ମନ୍ଦବ୍ୟକ୍ତିକୁ କିଏ ଅଟକାଇ
ରଖିଛି, ଏହା ତୁମ୍ଭେମାନେ ଜାଣିଛ। ଯେତେବେଳେ ଉଚିତ
ସମୟ ଆସିବ, ସେ ନିଜକୁ ପ୍ରକାଶ କରିବ ବୋଲି
ତାହାକୁ ବର୍ତ୍ତମାନ ଅଟକାଇ ରଖାଯାଇଛି। ୭ସଂସାରରେ
ଏବେ ମନ୍ଦ ବ୍ୟକ୍ତିର ଗୁପ୍ତ ଶକ୍ତି କାମ କରୁଛି। କିନ୍ତୁ
ଜଣେ ମାତ୍ର ଅଛନ୍ତି ଯିଏ, ମନ୍ଦ ବ୍ୟକ୍ତିର ଗୁପ୍ତ ଶକ୍ତିକୁ
ଅଟକାଉଛନ୍ତି। ସେ ଦୃଶ୍ୟପଟରୁ ଦୂରେଇ ନ ଯିବା ପର୍ଯ୍ୟନ୍ତ
ସେହି ଶକ୍ତିକୁ ପ୍ରତିରୋଧ କରୁ ଥିବେ, ୮ତା'ପରେ ଯାଇ
ମନ୍ଦ ବ୍ୟକ୍ତି ପ୍ରକାଶିତ ହେବ। ପ୍ରଭୁଯୀଶୁ ସେହି ମନ୍ଦ
ବ୍ୟକ୍ତିକୁ, ତାହାଙ୍କର ମୁହଁରୁ ନିର୍ଗତ ହେଉଥିବା ନିଶ୍ୱାସ
ଦ୍ୱାରା ନଷ୍ଟ କରିଦେବେ। ପ୍ରଭୁ ଯୀଶୁ ନିଜର ମହିମାମୟ
ଆଗମନ ଦ୍ୱାରା ତାହାକୁ ବିନଷ୍ଟ କରିଦେବେ। ମନ୍ଦ ବ୍ୟକ୍ତି
ଶୟତାନର ଶକ୍ତି ନେଇ ଆସିବ। ୯ତା'ର ମହାନ ଶକ୍ତି
ଥିବ ଓ ସେ ଅସତ୍ୟ ଆଧାରିତ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ,
ଚିହ୍ନ ଓ ଅଦ୍ଭୁତ କାର୍ଯ୍ୟମାନ ଘଟାଇବ। ୧୦ଯେଉଁ ଲୋକମାନେ
ହଜିଯାଇଛନ୍ତି, ସେମାନଙ୍କୁ ଠକିବାକୁ ଏହି ମନ୍ଦବ୍ୟକ୍ତି ପ୍ରତ୍ୟେକ
ପ୍ରକାରର ମନ୍ଦ ଫାନ୍ଦ ସୃଷ୍ଟି କରିବ। କାରଣ ସେମାନେ
ସତ୍ୟକୁ ଭଲ ପାଇବା ପାଇଁ ଅସ୍ୱୀକାର କଲେ, ଯାହା
ଦ୍ୱାରା ସେମାନେ ଉଦ୍ଧାର ପାଇଥାନ୍ତେ। ୧୧ସତ୍ୟକୁ ଭଲ
ପାଇବା ପାଇଁ ସେମାନେ ମନା କରିବାରୁ, ପରମେଶ୍ୱର
ମଧ୍ୟ ସେମାନଙ୍କ ପାଖକୁ ସତ୍ୟ ଠାରୁ ଦୂରେଇ ନେଇ
ଯିବା ଭଳି ଏକ ଶକ୍ତିକୁ ପଠାନ୍ତି। ଅସତ୍ୟକୁ ବିଶ୍ୱାସ
କରିବା ଲାଗି ପରମେଶ୍ୱର ସେମାନଙ୍କ ପାଖକୁ ସେହି ଶକ୍ତି
ପଠାନ୍ତି। ୧୨ଅତଏବ ଯେଉଁମାନେ ସତ୍ୟକୁ ବିଶ୍ୱାସ କରୁ
ନାହାଁନ୍ତି, ସେମାନେ ଦୋଷୀ ବୋଲି ବିଚାରିତ ହେବେ।
ସେମାନେ ସତ୍ୟକୁ ମାନି ନାହାଁନ୍ତି ଓ ମନ୍ଦ କର୍ମ
କରିବାରେ ଆନନ୍ଦ ପାଇଛନ୍ତି।

## ତୁମ୍ଭେମାନେ ମୁକ୍ତି ପାଇଁ ମନୋନୀତ

୧୩ଭାଇ (ଓ ଭଉଣୀ)ମାନେ! ପ୍ରଭୁ ତୁମ୍ଭମାନଙ୍କୁ ପ୍ରେମ
କରନ୍ତି। ସେ ତୁମ୍ଭମାନଙ୍କୁ ଉଦ୍ଧାର କରିବା ପାଇଁ ପ୍ରଥମରୁ
ବାଛିଛନ୍ତି। ଅତଏବ ଆମ୍ଭେ ତୁମ୍ଭମାନଙ୍କ ପାଇଁ ସର୍ବଦା
ପରମେଶ୍ୱରଙ୍କୁ ଧନ୍ୟବାଦ ଦେବା ଉଚିତ। ଆତ୍ମା ତୁମ୍ଭକୁ
ପବିତ୍ର କରିବା ଯୋଗୁଁ ଓ ସତ୍ୟରେ ତୁମ୍ଭମାନଙ୍କର ବିଶ୍ୱାସ
ଥିବା ଯୋଗୁଁ ତୁମ୍ଭେମାନେ ଉଦ୍ଧାର ପାଇଛ। ୧୪ପରମେଶ୍ୱର
ସେହି ମୁକ୍ତି ଦେବା ଲାଗି ତୁମ୍ଭମାନଙ୍କୁ ଡାକିଲେ। ଆମ୍ଭ
ଦ୍ୱାରା ପ୍ରଚାରିତ ସୁସମାଚାର ମାଧ୍ୟମରେ ସେ ତୁମ୍ଭମାନଙ୍କୁ
ଡାକିଲେ। ଆମ୍ଭମାନଙ୍କର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ମହିମାରେ
ଅଂଶ ଗ୍ରହଣ କରିବା ପାଇଁ ସେ ତୁମ୍ଭମାନଙ୍କୁ ଡାକିଲେ।
୧୫ଅତଏବ, ଭାଇ (ଓ ଭଉଣୀ)ମାନେ ଦୃଢ଼ ଭାବରେ ଠିଆ
ହୁଅ ଓ ଆମ୍ଭ ଦ୍ୱାରା ଦିଆ ଯାଇଥିବା ଶିକ୍ଷାଗୁଡ଼ିକୁ ଅବିରତ
ବିଶ୍ୱାସ କର। ଆମ୍ଭେ ଏହି ଶିକ୍ଷାଗୁଡ଼ିକୁ କହି ଓ ଚିଠି
ମାଧ୍ୟମରେ ଲେଖି, ତୁମ୍ଭମାନଙ୍କୁ ଶିଖାଇଛୁ।
୧୬-୧୭ତୁମ୍ଭମାନଙ୍କ ପାଇଁ ପ୍ରତ୍ୟେକ ଉତ୍ତମ କାର୍ଯ୍ୟ କରିବାକୁ
ଓ ପ୍ରତ୍ୟେକ ଉତ୍ତମ କଥା କହିବା ପାଇଁ ସକ୍ଷମ ହେବ।
ସେଥିପାଇଁ ଆମ୍ଭର ପ୍ରଭୁ ଯୀଶୁଖ୍ରୀଷ୍ଟ ନିଜେ ଓ ଆମ୍ଭର
ପରମପିତା ଓ ପରମେଶ୍ୱର ତୁମ୍ଭମାନଙ୍କୁ ଉତ୍ସାହ ଓ ଶକ୍ତି
ପ୍ରଦାନ କରନ୍ତୁ ଓ ସାନ୍ତ୍ୱନା ଦିଅନ୍ତୁ, ବୋଲି ଆମ୍ଭେ ପ୍ରାର୍ଥନା
କରୁଛୁ। ପରମେଶ୍ୱର ଆମ୍ଭକୁ ପ୍ରେମ କରନ୍ତି। ନିଜ
ଅନୁଗ୍ରହ ମାଧ୍ୟମରେ ସେ ଆମ୍ଭକୁ ଅନନ୍ତକାଳସ୍ଥାୟୀ ଉତ୍ସାହ
ଓ ଉତ୍ତମ ଭରସା ଦେଇଛନ୍ତି।

## ଆମ୍ଭ ପାଇଁ ପ୍ରାର୍ଥନା କର

୩ ଭାଇ (ଓ ଭଉଣୀ)ମାନେ! ଏବେ ଆମ୍ଭ ପାଇଁ
ପ୍ରାର୍ଥନା କର। ପ୍ରାର୍ଥନା କର, ଯେ ପ୍ରଭୁଙ୍କ
ଶିକ୍ଷାଗୁଡ଼ିକ ଶୀଘ୍ର ପ୍ରସାରିତ ହେବ। ପ୍ରାର୍ଥନା କର,
ତୁମ୍ଭେମାନେ ଯେଉଁଭଳି ସେହି ଶିକ୍ଷାକୁ ସମ୍ମାନ ଦେଲ,
ଠିକ୍ ସେହିଭଳି ଲୋକେ ସେହି ଶିକ୍ଷାକୁ ସମ୍ମାନ ଦେବେ।
୨ଆହୁରି ମଧ୍ୟ ପ୍ରାର୍ଥନା କର, ଯେ ଆମ୍ଭେ ଭ୍ରଷ୍ଟ ଓ ମନ୍ଦ
ଲୋକମାନଙ୍କ ଠାରୁ ଯେପରି ସୁରକ୍ଷିତ ରହୁ। (କାରଣ
ସମସ୍ତଙ୍କର ତ ପ୍ରଭୁଙ୍କଠାରେ ବିଶ୍ୱାସ ନ ଥାଏ।)
୩ପରମେଶ୍ୱର ହେଉଛନ୍ତି ବିଶ୍ୱସନୀୟ। ସେ ତୁମ୍ଭମାନଙ୍କୁ
ଶକ୍ତି ପ୍ରଦାନ କରିବେ ଓ ସେହି ଦୁଷ୍ଟାତ୍ମା ଠାରୁ ରକ୍ଷା
କରିବେ। ୪ତୁମ୍ଭମାନଙ୍କୁ କୁହା ଯାଇଥିବା କାମ ସବୁ
ତୁମ୍ଭେମାନେ କରୁଛ ବୋଲି ପରମେଶ୍ୱର ଆମ୍ଭକୁ ନିଶ୍ଚିତ
ଭାବେ ଉପଲବ୍ଧି କରାଇଛନ୍ତି। ଆମ୍ଭେ ଜାଣିଛୁ ଯେ,
ତୁମ୍ଭେମାନେ ଏହି କାମ ସବୁ କରି ଚାଲିଥିବ। ୫ଖ୍ରୀଷ୍ଟଙ୍କର
ଧୈର୍ଯ୍ୟ ଓ ପରମେଶ୍ୱରଙ୍କ ପ୍ରେମ ପଥରେ ତୁମ୍ଭମାନଙ୍କ
ହୃଦୟ ଅଗ୍ରସର ହେବା ନିମନ୍ତେ ସେ ତୁମ୍ଭମାନଙ୍କୁ ପରିଚାଳିତ
କରିବେ ବୋଲି ଆମ୍ଭେ ପ୍ରାର୍ଥନା କରୁଛୁ।

## କର୍ମର ବାଧ୍ୟତା

୬ଭାଇ (ଓ ଭଉଣୀ)ମାନେ! ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କଠାରୁ
ମିଳିଥିବା ଅଧିକାର ବଳରେ, କାମ କରିବାକୁ ମନା
କରୁଥିବା ବିଶ୍ୱାସୀ ଭାଇମାନଙ୍କ ଠାରୁ ଦୂରରେ ରହିବା ପାଇଁ
ଆମ୍ଭେ ତୁମ୍ଭମାନଙ୍କୁ ଆଦେଶ ଦେଉଛୁ। କୌଣସି କାମ
କରିବା ପାଇଁ ଚାହୁଁ ନ ଥିବା ଲୋକମାନେ ଆମ୍ଭଠାରୁ
ଗ୍ରହଣ କରିଥିବା ଶିକ୍ଷାଗୁଡ଼ିକୁ ମାନୁ ନାହାଁନ୍ତି। ୭ତୁମ୍ଭେମାନେ
ଜାଣିଛ ଯେ, ଆମ୍ଭ ପରି ତୁମ୍ଭେମାନେ ରହିବା ଉଚିତ।
ତୁମ୍ଭମାନଙ୍କ ସହିତ ଥିଲାବେଳେ ଆମ୍ଭେ କେବେହେଲେ
କାମ କରିବା ପାଇଁ ମନା କରି ନ ଥିଲୁ। ୮ମୂଲ୍ୟ ନ
ଦେଇ ଆମ୍ଭେ କାହାରି ଘରେ ଭୋଜନ ଗ୍ରହଣ କରି
ନାହୁଁ। ଆମ୍ଭେମାନେ କାହାରି ଉପରେ ଭାର ସ୍ୱରୂପ ନ
ହେବୁ ବୋଲି ସର୍ବଦା କର୍ମରତ ରହୁଥିଲୁ। ୯ଆମ୍ଭେ ଦିନ
ରାତି କାମ କରୁଥିଲୁ। ତୁମ୍ଭମାନଙ୍କୁ ସାହାଯ୍ୟ ମାଗିବା

ନିମନ୍ତେ ଆମ୍ଭର ଅଧିକାର ଥିଲା। କିନ୍ତୁ ଆମ୍ଭେ ନିଜର
ଯତ୍ନ ନିଜେ ନେବା ପାଇଁ କାମ କରୁଥିଲୁ। ତୁମ୍ଭମାନଙ୍କ
ସମ୍ମୁଖରେ ଗୋଟିଏ ଆଦର୍ଶ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ
ଆମ୍ଭେ ଏପରି କରିଥିଲୁ। [୧୦]ତୁମ୍ଭମାନଙ୍କ ସହିତ ଥିଲାବେଳେ
ଆମ୍ଭେ ତୁମ୍ଭମାନଙ୍କୁ ଗୋଟିଏ ନିୟମ ଶିଖାଇଥିଲୁ: "ଯଦି
ଜଣେ କାମ ନ କରିବ, ତା'ହେଲେ ସେ ଖାଇବ ନାହିଁ।"
[୧୧]ତୁମ୍ଭମାନଙ୍କ ଦଳରେ କେତେ ଜଣ କାମ କରିବା
ପାଇଁ ମନା କରୁଛନ୍ତି ବୋଲି ଆମ୍ଭେ ଶୁଣିଲୁ। ସେମାନେ
କିଛି କରୁ ନାହାଁନ୍ତି। ସେମାନେ ଅନ୍ୟମାନଙ୍କ ଜୀବନରେ
ହସ୍ତକ୍ଷେପ କରିବାରେ ସମୟ ଅତିବାହିତ କରନ୍ତି। [୧୨]ଆମ୍ଭେ
ସେମାନଙ୍କୁ ଆଦେଶ ଦେଉଛୁ ଯେ, ସେମାନେ ଅନ୍ୟମାନଙ୍କ
ବିଷୟରେ ଚିନ୍ତା କରିବା ଛାଡ଼ି ଦିଅନ୍ତୁ। ସେମାନେ କର୍ମ
କରି ନିଜର ଖାଦ୍ୟ ପାଇଁ ଉପାର୍ଜ୍ଜନ କରନ୍ତୁ। ଏଭଳି
ଲୋକମାନଙ୍କୁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ନାମରେ ଆମ୍ଭେ ଅନୁରୋଧ
କରୁଛୁ ଯେ, ସେମାନେ ଏପରି କରନ୍ତୁ। [୧୩]ଭାଇ (ଓ
ଭଉଣୀ)ମାନେ! ଭଲ କାମ କରିବା ପାଇଁ କେବେହେଲେ
କ୍ଳାନ୍ତ ହୁଅ ନାହିଁ।
[୧୪]ଆମ୍ଭେ ଏହି ପତ୍ରରେ ତୁମ୍ଭମାନଙ୍କୁ ଯାହା କହିଛୁ, ଯଦି
କୌଣସି ଲୋକ ତାହା ପାଳନ କରେ ନାହିଁ, ତା'ହେଲେ
ସେହି ଲୋକଠାରୁ ସତର୍କ ରୁହ। ତା'ସହିତ ସମ୍ପର୍କ ରଖ
ନାହିଁ। ତାହାହେଲେ ସେ ଲଜ୍ଜିତ ହେବ। [୧୫]କିନ୍ତୁ ତାକୁ
ଶତ୍ରୁ ଭଳି ବ୍ୟବହାର ନ କରି, ଭାଇ ଭଳି ଚେତେଇ
ଦିଅ।

## ଶେଷ କଥା

[୧୬]ଆମ୍ଭେ ପ୍ରାର୍ଥନା କରୁ ଯେ, ଶାନ୍ତିର ପ୍ରଭୁ ତୁମ୍ଭମାନଙ୍କୁ
ଶାନ୍ତି ପ୍ରଦାନ କରନ୍ତୁ। ଆମ୍ଭେ ପ୍ରାର୍ଥନା କରୁ ଯେ, ସେ
ତୁମ୍ଭମାନଙ୍କୁ ସବୁବେଳେ ଓ ପ୍ରତ୍ୟେକ କ୍ଷେତ୍ରରେ ଶାନ୍ତି
ପ୍ରଦାନ କରନ୍ତୁ। ପ୍ରଭୁ ତୁମ୍ଭମାନଙ୍କ ସମସ୍ତଙ୍କ ସହିତ
ଥାଆନ୍ତୁ।
[୧୭]ମୁଁ ପାଉଲ, ମୋ ନିଜ ହାତରେ ଲେଖିଥିବା ଏହି
ପତ୍ର ମୋ ଦସ୍ତଖତ କରି ସମାପ୍ତ କରୁଛି। ପତ୍ରଗୁଡ଼ିକ
ମୋର ବୋଲି ଜଣାଇ ଦେବା ପାଇଁ ମୁଁ ମୋର ସମସ୍ତ
ପତ୍ରରେ ଦସ୍ତଖତ କରିଛି। ମୋ ଲେଖିବାର ଢଙ୍ଗ ଏହିପରି।
[୧୮]ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଅନୁଗ୍ରହ ତୁମ୍ଭ ସମସ୍ତଙ୍କ
ସହିତ ରହିଥାଉ।

# ତୀମଥିଙ୍କ ନିକଟକୁ ପ୍ରେରିତ ପାଉଲଙ୍କର ପ୍ରଥମ ପତ୍ର

୧ ଖ୍ରୀଷ୍ଟ ଯୀଶୁଙ୍କ ଜଣେ ପ୍ରେରିତ ପାଉଲଙ୍କ ଠାରୁ
ନମସ୍କାର। ଆମ୍ଭର ଉଦ୍ଧାରକର୍ତ୍ତା ପରମେଶ୍ୱରଙ୍କ ଆଦେଶ
ଦ୍ୱାରା ପ୍ରେରିତ ଏବଂ ଆମ୍ଭମାନଙ୍କର ଭରସା ଖ୍ରୀଷ୍ଟ ଯୀଶୁ।
୨ଏହି ପତ୍ର ତୀମଥିଙ୍କ ପାଇଁ। ତୁମ୍ଭେ ବିଶ୍ୱାସ କରୁଥିବାରୁ
ମୋର ପ୍ରକୃତ ପୁତ୍ର ଅଛ।
ପରମପିତା ପରମେଶ୍ୱର ଓ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଠାରୁ
ତୁମ୍ଭକୁ ଅନୁଗ୍ରହ, ଦୟା ଓ ଶାନ୍ତି ମିଳୁ।

### ଅସତ୍ୟ ଉପଦେଶ ବିରୁଦ୍ଧରେ ସତର୍କତା

୩ମୁଁ ଚାହେଁ ଯେ ତୁମ୍ଭେ ଏଫିସଠାରେ ରୁହ। ମାକିଦନିଆ
ଯିବା ବେଳେ ମୁଁ ତୁମ୍ଭକୁ ତାହା କରିବା ପାଇଁ ଅନୁରୋଧ
କରି କହିଥିଲି। ଏଫିସଠାରେ କେତେ ଲୋକ ଭ୍ରାନ୍ତ
ଶିକ୍ଷାଗୁଡ଼ିକ ଦେଉଛନ୍ତି। ଏଫିସଠାରେ ରହି ତୁମ୍ଭେ ସେମାନଙ୍କୁ
ଭ୍ରାନ୍ତ ଶିକ୍ଷା ନ ଦେବା ପାଇଁ ଆଦେଶ ଦେଇ ପାରିବ।
୪ସେମାନଙ୍କୁ କୁହ ଯେ, ସେମାନେ ଅସତ୍ୟ କଥା (କାହାଣୀ)
ଗୁଡ଼ିକ କହି ଓ ବଂଶାବଳୀର ଲମ୍ବା ନାମସୂଚୀଗୁଡ଼ିକ ଦେଇ
ସମୟ ନଷ୍ଟ କରନ୍ତୁ ନାହିଁ। କାରଣ ସେଗୁଡ଼ିକ ଦ୍ୱାରା
କେବଳ ତର୍କବିତର୍କ ହୁଏ। ସେଗୁଡ଼ିକ ପରମେଶ୍ୱରଙ୍କ କାମ
ପାଇଁ ସାହାଯ୍ୟ କରେ ନାହିଁ।
କେବଳ ବିଶ୍ୱାସ ଦ୍ୱାରା ପରମେଶ୍ୱରଙ୍କ କାମ ସାଧନ
ହୋଇଥାଏ। ଏହି ଆଦେଶର ଲକ୍ଷ୍ୟ ଯେ, ଲୋକମାନେ
ପ୍ରେମ ଗ୍ରହଣ କରନ୍ତୁ। ୫ଏହି ପ୍ରେମ ପାଇବା ଲାଗି
ଲୋକଙ୍କର ପବିତ୍ର ହୃଦୟ ଥିବା ଆବଶ୍ୟକ ଓ ସେମାନେ
ଯାହା ଠିକ ବୋଲି ଜାଣନ୍ତି ତାହା ନିଶ୍ଚୟ କରିବା
ଦରକାର ଏବଂ ସେମାନଙ୍କ ତାହାଙ୍କଠାରେ ସତ୍ୟ ବିଶ୍ୱାସ
ଥିବା ଦରକାର। ୬କେତେଲୋକ ଏହି ବିଷୟଗୁଡ଼ିକ ପ୍ରତି
ଧ୍ୟାନ ନ ଦେଇ, ପଥଭ୍ରଷ୍ଟ ହୋଇଛନ୍ତି। ସେମାନେ ଏବେ
ମୂଲ୍ୟହୀନ କଥାଗୁଡ଼ିକ କୁହନ୍ତି। ୭ସେହି ଲୋକମାନେ
ବ୍ୟବସ୍ଥାର* ଶିକ୍ଷାଦାତା ହେବାକୁ ଚାହାଁନ୍ତି। କିନ୍ତୁ ସେମାନେ
କ'ଣ କହୁଛନ୍ତି, ତାହା ଜାଣନ୍ତି ନାହିଁ। ସେମାନେ ଯେଉଁ
ବିଷୟଗୁଡ଼ିକୁ ନିଶ୍ଚିତ ଭାବେ ଜାଣିବା ଭଳି ଜୋର ଦେଇ
କହୁଛନ୍ତି, ସେହି ଶିକ୍ଷାଗୁଡ଼ିକୁ ସେମାନେ ନିଜେ ମଧ୍ୟ ବୁଝି
ନ ଥାନ୍ତି।
୮ଆମ୍ଭେ ଜାଣୁ ଯେ, ବ୍ୟବସ୍ଥା ଭଲ, ଯଦି ଲୋକେ
ଠିକ୍ ଭାବରେ ଏହାକୁ ବ୍ୟବହାର କରନ୍ତି। ୯ଆମ୍ଭେ ଏହା
ମଧ୍ୟ ଜାଣିଛୁ ଯେ, ଭଲ ଲୋକଙ୍କ ଲାଗି ବ୍ୟବସ୍ଥାର
ଆବଶ୍ୟକତା ନାହିଁ। ଯେଉଁ ଲୋକମାନେ ବ୍ୟବସ୍ଥା ବିରୋଧୀ
ଓ ଆଜ୍ଞାଧୀନ ନୁହଁନ୍ତି, ସେହିମାନଙ୍କ ଲାଗି ବ୍ୟବସ୍ଥା ନିର୍ମିତ
ହୋଇଛି। ଯେଉଁମାନେ ପରମେଶ୍ୱରଙ୍କ ବିରୋଧୀ ଏବଂ
ପାପୀ, ଅପବିତ୍ର, ଧର୍ମବିହୀନ, ମାତାପିତାଙ୍କ ହତ୍ୟାକାରୀ
ତଥା ନରହତ୍ୟାକାରୀ, ୧୦ଯୌନପାପାଚରଣ କରୁଥିବା ଲୋକେ,
ସମଲିଙ୍ଗୀ ଯୌନ ଅଭିଳାଷୀ, ଦାସମାନଙ୍କ ବିକ୍ରେତା, ମିଥ୍ୟାବାଦୀ,
ମିଥ୍ୟା ଶପଥ ନେଉଥିବା ଲୋକେ ଓ ପରମେଶ୍ୱରଙ୍କ
ସତ୍‌ଶିକ୍ଷାର ବିରୋଧାଚରଣ କରୁଥିବା ଯେ କୌଣସି ବ୍ୟକ୍ତି
ପାଇଁ ବ୍ୟବସ୍ଥା ଆବଶ୍ୟକ। ୧୧ଏହି ଉପଦେଶ ପରମେଶ୍ୱର
ମୋତେ ପ୍ରଚାର କରିବାକୁ ଦେଇଥିବା ସୁସମାଚାରର
ଅଂଶବିଶେଷ। ଏହି ମହିମାମୟ ସୁସମାଚାର ପରମଧନ୍ୟ
ପରମେଶ୍ୱରଙ୍କଠାରୁ ଆସିଛି।

### ଅନୁଗ୍ରହ ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ

୧୨ମୋ ପ୍ରତି ଭରସା ରଖି ଏହି ସେବା କାର୍ଯ୍ୟରେ
ନିଯୁକ୍ତ କରିଥିବାରୁ ମୁଁ ଆମ୍ଭ ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କୁ
ଧନ୍ୟବାଦ ଦିଏ। ସେ ମୋତେ ଶକ୍ତି ପ୍ରଦାନ କରନ୍ତି।
୧୩ଅତୀତରେ ମୁଁ ଯୀଶୁଙ୍କ ବିରୁଦ୍ଧରେ କହିଛି, ତାହାଙ୍କୁ
ତାଡ଼ନା ଦେଇଛି ଓ ତାହାଙ୍କୁ ଆଘାତ ଦେବା ଭଳି
କାର୍ଯ୍ୟମାନ କରିଛି। କିନ୍ତୁ ମୁଁ କ'ଣ କରୁଛି ବୋଲି ଜାଣି
ନ ଥିବାରୁ, ପରମେଶ୍ୱର ମୋତେ ଦୟା କଲେ। ଅବିଶ୍ୱାସୀ
ଥିଲାବେଳେ ମୁଁ ସେପରି କରିଥିଲି। ୧୪କିନ୍ତୁ ପ୍ରଭୁଙ୍କର
ଅନୁଗ୍ରହ ମୋତେ ସଂପୂର୍ଣ୍ଣ ଭାବେ ମିଳିଲା। ସେହି ଅନୁଗ୍ରହ
ସହିତ ଖ୍ରୀଷ୍ଟ ଯୀଶୁଙ୍କଠାରେ ଥିବା ବିଶ୍ୱାସ ଓ ପ୍ରେମ ମଧ୍ୟ
ମୋତେ ମିଳିଲା।
୧୫ମୁଁ ଯାହା କହୁଛି ତାହା ସତ୍ୟ ଓ ତୁମ୍ଭେ ଏହାକୁ
ପୂର୍ଣ୍ଣ ଭାବରେ ଗ୍ରହଣ କରିବା ଉଚିତ ଯେ ପାପୀମାନଙ୍କୁ
ଉଦ୍ଧାର କରିବା ପାଇଁ ଖ୍ରୀଷ୍ଟ ଯୀଶୁ ଜଗତକୁ ଆସିଥିଲେ।
ମୁଁ ସେମାନଙ୍କ ମଧ୍ୟରେ ସବୁଠାରୁ ଜଘନ୍ୟ ପାପୀ। ୧୬କିନ୍ତୁ
ମୋତେ ଅନୁଗ୍ରହ ମିଳିଲା। ମୋତେ ଅନୁଗ୍ରହ ଦିଆଗଲା,
ଯାହା ଦ୍ୱାରା ଖ୍ରୀଷ୍ଟ ଯୀଶୁ ପ୍ରମାଣିତ କଲେ ଯେ ସେ ମୋ
ପ୍ରତି ଅସୀମ ଧୈର୍ଯ୍ୟ ଦେଖାଇଛନ୍ତି। ମୋ ଭଳି ବଡ଼ ପାପୀ
ପ୍ରତି ସେ ଧୈର୍ଯ୍ୟଶୀଳତା ଦେଖାଇଲେ। ଯେଉଁମାନେ
ତାହାଙ୍କୁ ବିଶ୍ୱାସ କରିବେ, ଅନନ୍ତ ଜୀବନ ଲାଭ କରିବେ।
ସେମାନଙ୍କ ପାଇଁ ମୁଁ ଯେପରି ଆଦର୍ଶ ସ୍ୱରୂପ ହୁଏ,
ସେଥିପାଇଁ ଖ୍ରୀଷ୍ଟ ଯୀଶୁ ଚାହିଁଲେ। ୧୭ସେହି ଅନନ୍ତକାଳୀନ
ରାଜାଙ୍କର ଗୌରବ ଓ ସମ୍ଭ୍ରମ ହେଉ। ସେ ଅଦୃଶ୍ୟ ଓ
ଅକ୍ଷୟ। ଗୌରବ ଓ ସମ୍ଭ୍ରମ ଯୁଗେ ଯୁଗେ କେବଳ
ପରମେଶ୍ୱରଙ୍କର। ଆମେନ୍।

---

**ବ୍ୟବସ୍ଥା** ଯିହୂଦୀମାନଙ୍କ ନିୟମ: ସିନୟ ପର୍ବତ ଉପରେ ପରମେଶ୍ୱର ମୋଶାଙ୍କୁ ଏହି ନିୟମଗୁଡ଼ିକ ଦେଇ ଥିଲେ। ଯାତ୍ରା ପୁସ୍ତକ: ୧୯ ଓ ୨୦

[୧୮]ତୀମଥି! ତୁମ୍ଭେ ମୋ ପୁତ୍ର ଭଳି। ମୁଁ ତୁମ୍ଭକୁ ଏହି
ଆଦେଶ ଦେଉଛି। ଅତୀତରେ ତୁମ୍ଭ ବିଷୟରେ ଯାହା ସବୁ
ଭବିଷ୍ୟଦ୍‌ବାଣୀ କୁହା ଯାଇଥିଲା, ତା'ସହିତ ଏହି ଆଦେଶଟି
ଏକମତ ଅଟେ। ମୁଁ ତୁମ୍ଭକୁ ଏଗୁଡ଼ିକ କହୁଛି, ଯେପରି
ତୁମ୍ଭେ ସେହି ଭବିଷ୍ୟଦ୍‌ବାଣୀର ଅନୁସରଣ କରିବ ଓ
ବିଶ୍ୱାସର ଉତ୍ତମ ଲଢ଼େଇ ଲଢ଼ି ପାରିବ। [୧୯]ବିଶ୍ୱାସ ଜାରି
ରଖ। ଯାହା ଠିକ୍ ବୋଲି ଭାବୁଛ, ତାହା କର। କେତେ
ଲୋକ ଏହା କରି ନାହାଁନ୍ତି। ତେଣୁ ସେମାନଙ୍କର ବିଶ୍ୱାସ
ନଷ୍ଟ ହୋଇଛି। [୨୦]ହୁମିନାୟ ଓ ଆଲେକ୍‌ଜାଣ୍ଡର ସେମାନଙ୍କ
ମଧ୍ୟରୁ କେତେକ ଅଟନ୍ତି। ମୁଁ ସେମାନଙ୍କୁ ଶୟତାନ
ହାତରେ ଦେଇଛି, ଯାହା ଫଳରେ ସେମାନେ ପରମେଶ୍ୱରଙ୍କ
ବିରୁଦ୍ଧରେ ଆଉ ନ କହିବାକୁ ଶିକ୍ଷା ଲାଭ କରିବେ।

## ସ୍ତ୍ରୀ ଓ ପୁରୁଷମାନଙ୍କ ପାଇଁ କେତେକ ନିୟମ

୨ ସର୍ବପ୍ରଥମେ ସବୁ ଲୋକଙ୍କ ପାଇଁ ପ୍ରାର୍ଥନା କରିବାକୁ
ମୁଁ ତୁମ୍ଭକୁ କହୁଛି। ସମସ୍ତଙ୍କ ପାଇଁ ପରମେଶ୍ୱରଙ୍କୁ
କୁହ। ଲୋକମାନଙ୍କର ଆବଶ୍ୟକତା ପାଇଁ ତାହାଙ୍କୁ କୁହ
ଓ ଧନ୍ୟବାଦ ଦିଅ। [୨]ତୁମ୍ଭେ ରାଜା ଓ ଅଧିକାରୀମାନଙ୍କ
ଲାଗି ପ୍ରାର୍ଥନା କରିବା ଉଚିତ। ତେବେ ଆମ୍ଭେ ଏକ
ଶାନ୍ତିପୂର୍ଣ୍ଣ, ସ୍ଥିର ଜୀବନ ପରମେଶ୍ୱରଙ୍କ ପାଇଁ ସମ୍ମାନ ଓ
ଭକ୍ତି ଭରା ଜୀବନ ବିତେଇ ପାରିବା। [୩]ଏହା ଉତ୍ତମ ଓ
ଏହା ଆମ୍ଭର ତ୍ରାଣକର୍ତ୍ତା ପରମେଶ୍ୱରଙ୍କୁ ସନ୍ତୁଷ୍ଟ କରେ।
[୪]ପରମେଶ୍ୱର ଚାହାଁନ୍ତି ଯେ ସମସ୍ତେ ଉଦ୍ଧାର ପାଆନ୍ତୁ ଓ
ସତ୍ୟକୁ ଜାଣନ୍ତୁ। [୫]କେବଳ ଜଣେ ମାତ୍ର ପରମେଶ୍ୱର
ଅଛନ୍ତି। ମଣିଷ ପାଇଁ ପରମେଶ୍ୱରଙ୍କ ନିକଟରେ ପହଞ୍ଚିବା
ନିମନ୍ତେ ଜଣେ ମାତ୍ର ମଧ୍ୟସ୍ଥ ଅଛନ୍ତି। ସେହି ମଧ୍ୟସ୍ଥ
ଯୀଶୁଖ୍ରୀଷ୍ଟ ଅଟନ୍ତି। ସେ ଜଣେ ମଣିଷ। [୬]ଯୀଶୁ ସବୁ
ଲୋକଙ୍କ ପାପ ଲାଗି ନିଜକୁ ଦାନ କରି ଦେଇଥିଲେ।
ଯୀଶୁ ନିଜେ ହେଉଛନ୍ତି ଏହାର ପ୍ରମାଣ ଯେ, ପରମେଶ୍ୱର
ସମସ୍ତ ଲୋକଙ୍କର ଉଦ୍ଧାର ଚାହାଁନ୍ତି। [୭]ସେ ଠିକ୍ ସମୟରେ
ଆସିଥିଲେ। ସେଥିପାଇଁ ସୁସମାଚାର କହିବା ପାଇଁ ମୁଁ
ମନୋନୀତ ହୋଇଥିଲି। ମୁଁ ପ୍ରେରିତ ରୂପେ ମଧ୍ୟ ସେଥିପାଇଁ
ମନୋନୀତ ହୋଇଥିଲି। ମୁଁ ମିଛ କହୁ ନାହିଁ, ମୁଁ ସତ୍ୟ
କହୁଛି। ମୁଁ ଅଣଯିହୂଦୀମାନଙ୍କର ଶିକ୍ଷକ ହେବା ପାଇଁ
ମନୋନୀତ ହୋଇଥିଲି। ବିଶ୍ୱାସ କରିବା ଓ ସତ୍ୟକୁ
ଜାଣିବା ପାଇଁ ମୁଁ ସେମାନଙ୍କୁ ଶିକ୍ଷା ଦିଏ।
[୮]ମୁଁ ଚାହେଁ ଯେ ସର୍ବତ୍ର ଲୋକେ ପ୍ରାର୍ଥନା କରନ୍ତୁ।
ଯେଉଁ ଲୋକମାନେ ପ୍ରାର୍ଥନା ପାଇଁ ହାତ ଉଠାଇବେ,
ସେମାନେ ପବିତ୍ର ହୋଇଥିବା ଆବଶ୍ୟକ। ସେମାନେ ରାଗି
ଯିବା ଉଚିତ ନୁହେଁ ଓ ଯୁକ୍ତିତର୍କରେ ପ୍ରବୃତ୍ତ ହେବା ଉଚିତ
ନୁହେଁ। [୯]ମୁଁ ଏହା ମଧ୍ୟ ଚାହେଁ ଯେ ସ୍ତ୍ରୀ ଲୋକମାନେ
ଏପରି ପୋଷାକ ପିନ୍ଧନ୍ତୁ, ଯାହା ସେମାନଙ୍କ ପାଇଁ ଉପଯୁକ୍ତ।
ଉତ୍ତମ ମନୋଭାବ ସହିତ ସମ୍ମାନନୀୟ ଭାବରେ ନିଜକୁ
ସଜାନ୍ତୁ। ନିଜକୁ ସୁନ୍ଦର ଦେଖାଇବା ଲାଗି ବେଣୀ ବାନ୍ଧନ୍ତୁ
ନାହିଁ, ସୁନା, ରତ୍ନ ଓ ଦାମିକା ଲୁଗାର ବ୍ୟବହାର କରନ୍ତୁ
ନାହିଁ। [୧୦]ଭଲ କାମ କରିବା ଦ୍ୱାରା ନିଜକୁ ସୁନ୍ଦର ଭାବେ
ସୁଶୋଭିତ କରନ୍ତୁ। ପରମେଶ୍ୱରଙ୍କ ଉପାସନା କରୁଛୁ
ବୋଲି କହୁଥିବା ସ୍ତ୍ରୀଲୋକେ ନିଜକୁ ଏହି ରୂପରେ ସୁନ୍ଦର
ଭାବେ ସଜାଇବା ଆବଶ୍ୟକ।
[୧୧]ଜଣେ ସ୍ତ୍ରୀଲୋକ ନୀରବ ଭାବରେ ଶୁଣି ଶିକ୍ଷା ଗ୍ରହଣ
କରୁ ଓ ତାହାର ବାଧ୍ୟ ହେଉ। [୧୨]ଜଣେ ସ୍ତ୍ରୀ ଜଣେ
ପୁରୁଷକୁ ଉପଦେଶ ଦେବା ପାଇଁ ମୁଁ ଅନୁମତି ଦିଏ ନାହିଁ।
ଜଣେ ସ୍ତ୍ରୀ ଜଣେ ପୁରୁଷ ଉପରେ କର୍ତ୍ତୃତ୍ୱ କରୁ, ଏହା ମୁଁ
ଅନୁମତି ଦିଏ ନାହିଁ। ଜଣେ ସ୍ତ୍ରୀଲୋକ ନୀରବ ହୋଇ
ରହିବା ଦରକାର। [୧୩]କାରଣ ଆଦମ ପ୍ରଥମରେ ସୃଷ୍ଟି
ହେଲେ। ହବା ପରେ ସୃଷ୍ଟି ହେଲେ। [୧୪]ଆହୁରି ଶୟତାନ
ପ୍ରଥମେ ଆଦମକୁ ପ୍ରତାରଣା କରି ନ ଥିଲା। ହବା
ପ୍ରତାରିତ ହୋଇଥିଲା। ଏବଂ ସେ ଜଣେ ପାପିନୀ ହୋଇଥିଲା।
[୧୫]କିନ୍ତୁ ସ୍ତ୍ରୀମାନେ ସନ୍ତାନ ପ୍ରସବ କରିବା ଦ୍ୱାରା ପରିତ୍ରାଣ
ପାଇବେ। ସେମାନେ ନିରନ୍ତର ବିଶ୍ୱାସ, ପ୍ରେମ, ପବିତ୍ରତା
ଓ ଆତ୍ମସଂଯମ ସହିତ ଜୀବନଯାପନ କଲେ, ମୁକ୍ତି
ପାଇବେ।

## ମଣ୍ଡଳୀର ନେତାଗଣ

୩ ମୁଁ ଯାହା କହୁଛି ତାହା ସତ୍ୟ: ଯଦି କେହି ଅଧ୍ୟକ୍ଷ*
ହେବା ପାଇଁ ଚେଷ୍ଟା କରେ, ତେବେ ସେ ଭଲ
କାର୍ଯ୍ୟ ଚାହୁଁଛନ୍ତି। [୨]ଅଧ୍ୟକ୍ଷ ବ୍ୟକ୍ତି ଜଣଙ୍କ ଏତେ ଭଲ
ହେବା ଦରକାର ଯେ ଲୋକେ ପ୍ରକୃତରେ ତାହାଙ୍କୁ
ସମାଲୋଚନା କରିବାକୁ ଅସମର୍ଥ ହେବେ। ତାହାଙ୍କର
ନିଶ୍ଚୟ ଗୋଟିଏ ମାତ୍ର ପତ୍ନୀ ଥିବା ଉଚିତ। ତାହାଙ୍କର
ଆତ୍ମସଂଯମ ଥିବା ଦରକାର ଓ ସେ ବୁଦ୍ଧିମାନ ହେବା
ଦରକାର। ସେ ଅନ୍ୟମାନଙ୍କ ଦ୍ୱାରା ସମ୍ମାନ ପାଉଥିବା
ଦରକାର। ନିଜ ଘରେ ସ୍ୱାଗତ କରି ଲୋକମାନଙ୍କୁ ସେ
ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଥିବା ଦରକାର। ସେ
ଜଣେ ଭଲ ଶିକ୍ଷାଦାତା ହୋଇଥିବା ଦରକାର। [୩]ସେ
ଅତ୍ୟଧିକ ମଦ୍ୟପାନ କରିବା ଉଚିତ ନୁହେଁ। ସେ କଳହ
ମନୋବୃତ୍ତିର ଲୋକ ନ ହୋଇଥିବା କଥା। ସେ ନମ୍ର ଓ
ଶାନ୍ତ ହେବା ଦରକାର। [୪]ସେ ଧନଲୋଭୀ ହୋଇ ନ
ଥିବେ, ସେ ନିଜ ପରିବାରକୁ ଉପଯୁକ୍ତ ଭାବରେ ନେତୃତ୍ୱ
ଦେଇପାରୁଥିବେ। ତା'ର ଅର୍ଥ ଯେ ତାହାଙ୍କର ପିଲାମାନେ
ତାହାଙ୍କୁ ପୂର୍ଣ୍ଣ ସମ୍ମାନ ସହିତ ତାହାଙ୍କର ବାଧ୍ୟ ହେଉଥିବେ।
[୫](ଯଦି ଜଣେ ପରିବାରର ନେତୃତ୍ୱ ଦେଇ ଜାଣି ନାହିଁ,
ସେ ପରମେଶ୍ୱରଙ୍କ ମଣ୍ଡଳୀର ଯତ୍ନ ନେଇ ପାରିବ ନାହିଁ।)
[୬]କିନ୍ତୁ ଜଣେ ଅଧ୍ୟକ୍ଷ ନୂତନ ଶିଷ୍ୟ ହୋଇ ନ ଥିବେ।
ନୂତନ ବିଶ୍ୱାସୀଙ୍କୁ ଅଧ୍ୟକ୍ଷ କରାଗଲେ, ତାହା ତାହାଙ୍କୁ
ଅତିଶୟ ଗର୍ବୀ କରିପାରେ। ଏଭଳି ପରିସ୍ଥିତିରେ ତା'ର
ଗର୍ବ ଲାଗି ସେ ଶୟତାନ ଭଳି ଦୋଷୀ ହୋଇ ଦଣ୍ଡିତ
ହେବ। [୭]ଯେଉଁମାନେ ମଣ୍ଡଳୀର ସଦସ୍ୟ ନୁହଁନ୍ତି, ବାହାରର
ସେହି ଲୋକମାନଙ୍କର ମଧ୍ୟ, ଅଧ୍ୟକ୍ଷଙ୍କ ନିମନ୍ତେ ସମ୍ମାନ

---

**ଅଧ୍ୟକ୍ଷ** ଅର୍ଥାତ୍, ଯେ ମଣ୍ଡଳୀକୁ କଢ଼େଇ ନେବା ନିମନ୍ତେ ମନୋନୀତ ହୋଇଥାଏ, ତାକୁ ପାଳକ ମଧ୍ୟ କୁହାଯାଏ ଓ ପରମେଶ୍ୱରଙ୍କ ଲୋକମାନଙ୍କର ଯତ୍ନ ନେବାର କାର୍ଯ୍ୟ ସେମାନଙ୍କୁ ଅର୍ପଣ କରାଯାଇଥାଏ।

ଭାବ ଥିବା ଆବଶ୍ୟକ। ତହିଁରେ ସେ ଅନ୍ୟମାନଙ୍କ ଦ୍ୱାରା
ସମାଲୋଚିତ ହେବେ ନାହିଁ କି ଶୟତାନର ଫାନ୍ଦରେ
ପଡ଼ିବେ ନାହିଁ।

## ମଣ୍ଡଳୀର ସେବକଗଣ

୮ସେହିପରି ମଣ୍ଡଳୀରେ ନିଯୁକ୍ତ ପାଇଥିବା ସ୍ୱତନ୍ତ୍ର
ସେବକଗଣ ଏଭଳି ଲୋକ ହୋଇଥିବା କଥା, ଯେଉଁମାନଙ୍କୁ
ଲୋକେ ସମ୍ମାନ କରୁଥିବେ। ସେମାନେ ଯାହା କହନ୍ତି,
ତାହା ବିଶ୍ୱାସ ଯୋଗ୍ୟ ହେବା ଉଚିତ। ଅଧିକ ମଦ
ପିଇବାରେ ନିଜ ସମୟ କାଟିବା ଉଚିତ ନୁହେଁ। ସବୁବେଳେ
ଅନ୍ୟମାନଙ୍କୁ ଠକି ଧନୀ ହେବାକୁ ଚେଷ୍ଟା କରୁଥିବା
ଲୋକମାନଙ୍କ ପରି ସେମାନେ ହୋଇ ନ ଥିବେ। ୯ସେମାନେ
ପରମେଶ୍ୱରଙ୍କ ଦ୍ୱାରା ଆମ୍ଭକୁ ଜ୍ଞାତ କରାଯାଇଥିବା ସତ୍ୟର
ଅନୁସରଣ କରୁଥିବେ ଓ ଯାହା ଠିକ୍ ଭାବନ୍ତି, ତାହା
କରୁଥିବେ। ୧୦ତୁମ୍ଭେମାନେ ପ୍ରଥମେ ସେମାନଙ୍କୁ ପରୀକ୍ଷା
କରିବ। ଯଦି ସେମାନଙ୍କ ଭିତରେ କୌଣସି ଦୁର୍ଗୁଣ ନାହିଁ,
ତାହେଲେ ସେମାନେ ବିଶେଷ ସେବକ ଭାବେ ସେବା କରି
ପାରିବେ। ୧୧ସେହିପରି ବିଶେଷ ସେବିକା ହେବା ପାଇଁ
ନିଯୁକ୍ତ ସ୍ତ୍ରୀମାନଙ୍କର ପ୍ରତି ଅନ୍ୟ ଲୋକମାନଙ୍କର ସମ୍ମାନ
ଭାବ ଥିବା ଦରକାର। ସେମାନେ ଅନ୍ୟମାନଙ୍କ ବିଷୟରେ
ମନ୍ଦ କଥା ଆଦୌ କହୁ ନ ଥିବେ। ସେମାନଙ୍କର ଆତ୍ମା
ସଂଯମ ଥିବା ପ୍ରୟୋଜନ ଓ ପ୍ରତ୍ୟେକ କଥାରେ ଯେପରି
ସେମାନଙ୍କୁ ବିଶ୍ୱାସ କରାଯାଇ ପାରୁଥିବ। ୧୨ଯେଉଁମାନେ
ବିଶେଷ ସେବକ ହେବେ, ସେମାନଙ୍କର କେବଳ ଗୋଟିଏ
ପତ୍ନୀ ଥିବ। ସେମାନେ ନିଜ ସନ୍ତାନସନ୍ତତି ଓ ପରିବାରକୁ
ଭଲ ନେତୃତ୍ୱ ଦେଇପାରୁଥିବେ। ୧୩ଯେଉଁ ଲୋକମାନେ
ଭଲ ଭାବରେ ସେବା କରନ୍ତି, ସେମାନେ ନିଜ ପାଇଁ
ସମ୍ମାନଜନକ ସ୍ଥାନ ଅଧିକାର କରନ୍ତି ଏବଂ ସେମାନେ ଖ୍ରୀଷ୍ଟ
ଯୀଶୁଙ୍କଠାରେ ତାହାଙ୍କ ବିଶ୍ୱାସ ସଂପର୍କରେ ଦୃଢ଼ ନିଶ୍ଚୟତା
ବୋଧ ପାଆନ୍ତି।

## ଆମ୍ଭ ଜୀବନର ରହସ୍ୟ

୧୪ମୁଁ ତୁମ୍ଭ ପାଖକୁ ଶୀଘ୍ର ଯିବି ବୋଲି ଆଶା କରେ।
୧୫କିନ୍ତୁ ମୁଁ ଏବେ ଏହି କଥାଗୁଡ଼ିକ ତୁମ୍ଭକୁ ଲେଖୁଛି। ଯଦି
ମୁଁ ଶୀଘ୍ର ନ ଯାଏ, ତେବେ ମଧ୍ୟ ତୁମ୍ଭେମାନେ ଜାଣି
ପାରିବ ଯେ ପରମେଶ୍ୱରଙ୍କ ପରିବାରରେ ଲୋକମାନେ
କ'ଣ କ'ଣ କରିବା ଆବଶ୍ୟକ। ସେହି ପରିବାର ଜୀବିତ
ପରମେଶ୍ୱରଙ୍କର ମଣ୍ଡଳୀ ଅଟେ। ପରମେଶ୍ୱରଙ୍କ ମଣ୍ଡଳୀ
ସତ୍ୟର ଅବଲମ୍ବନ କରେ ଓ ମୂଳଦୂଆ ଅଟେ। ୧୬ଏଥିରେ
ସନ୍ଦେହ ନାହିଁ ଯେ ଆମ୍ଭ ଧର୍ମର ମହାନ ଗୁପ୍ତ ସତ୍ୟ ଏହା
ଯେ,

ଖ୍ରୀଷ୍ଟ ମଣିଷ ଶରୀରରେ ଆମ୍ଭକୁ ଦେଖା ଦେଲେ;
ପବିତ୍ରାତ୍ମା ତାହାଙ୍କୁ ଧାର୍ମିକ ବୋଲି ପ୍ରମାଣିତ କଲେ
ସ୍ୱର୍ଗଦୂତମାନଙ୍କ ଦ୍ୱାରା ସେ ଦେଖାଗଲେ; ତାହାଙ୍କ
ବିଷୟରେ ଅଣଯିହୂଦୀମାନଙ୍କୁ ସୁସମାଚାର ପ୍ରଚାରିତ
ହେଲା; ସଂସାରରେ ଲୋକେ ତାହାଙ୍କୁ ବିଶ୍ୱାସ
କଲେ; ସେ ସ୍ୱର୍ଗକୁ ମହିମାମୟ ହୋଇ ନିଆଗଲେ।

## ଭଣ୍ଡ ଶିକ୍ଷକମାନଙ୍କ ବିଷୟରେ ସତର୍କବାଣୀ

୪ ୧ପବିତ୍ର ଆତ୍ମା ସ୍ପଷ୍ଟ ଭାବରେ କୁହନ୍ତି ଯେ ପରବର୍ତ୍ତୀ
କାଳରେ କେତେ ଲୋକ ସତ୍ୟ ବିଶ୍ୱାସକୁ ପରିତ୍ୟାଗ
କରିବେ। ସେମାନେ ସେମାନଙ୍କୁ ପ୍ରତାରଣା କରୁଥିବା
ଦୁଷ୍ଟାତ୍ମାମାନଙ୍କ ଉପଦେଶଗୁଡ଼ିକୁ ମାନିବେ। ୨ପ୍ରବଞ୍ଚକ ଆତ୍ମା
ମାନଙ୍କର ଶିକ୍ଷାଗୁଡ଼ିକୁ ପାଳନ କରିବେ। ସେହି ଶିକ୍ଷାଗୁଡ଼ିକ
ପ୍ରତାରକ ଓ ମିଥ୍ୟାବାଦୀ ଲୋକମାନଙ୍କ ଦ୍ୱାରା ଆସେ।
ସେମାନେ କଣ ଭଲ ଓ କଣ ମନ୍ଦ, ତାହା ଜାଣି ପାରନ୍ତି
ନାହିଁ। ତାହାଙ୍କର ବୋଧ ଶକ୍ତି ନଷ୍ଟ ହୋଇଯାଇଥାଏ।
୩ସେମାନେ ଲୋକମାନଙ୍କୁ ବିବାହ କରିବା ଅନୁଚିତ ବୋଲି
କହନ୍ତି। ସେମାନେ ଲୋକମାନଙ୍କୁ ଏ କଥା ମଧ୍ୟ କୁହନ୍ତି
ଯେ କେତେକ ଖାଦ୍ୟ ଅଛି, ଯାହାକୁ ଲୋକେ ଆଦୌ
ଖାଇବା ଉଚିତ ନୁହେଁ। କିନ୍ତୁ ସେ ଖାଦ୍ୟଗୁଡ଼ିକୁ ପରମେଶ୍ୱର
ସୃଷ୍ଟି କରିଛନ୍ତି। ଅତଏବ ଯେଉଁମାନେ ବିଶ୍ୱାସୀ ଏବଂ
ସତ୍ୟକୁ ଜାଣନ୍ତି, ସେମାନେ ପରମେଶ୍ୱରଙ୍କୁ ଧନ୍ୟବାଦ
ଦେଇ ସେହି ଖାଦ୍ୟ ଖାଇ ପାରିବେ। ୪ପରମେଶ୍ୱର ଯାହା
ସବୁ ସୃଷ୍ଟି କରିଛନ୍ତି, ସେ ସବୁ ଉତ୍ତମ ଅଟେ। ପରମେଶ୍ୱରଙ୍କୁ
ଧନ୍ୟବାଦ ଦେଲା ପରେ, ତାହାଙ୍କ ସୃଷ୍ଟ କୌଣସି ବିଷୟ
ଗ୍ରହଣ କରିବା ପାଇଁ ମନା କରିବା ଉଚିତ ନୁହେଁ।
୫ପରମେଶ୍ୱରଙ୍କ ଦ୍ୱାରା ସୃଷ୍ଟ ପ୍ରତ୍ୟେକ ବିଷୟ ପରମେଶ୍ୱର
କହିଥିବା କଥା ଦ୍ୱାରା ଓ ପ୍ରାର୍ଥନା ଦ୍ୱାରା ପବିତ୍ର ହୋଇଥାଏ।

## ଯୀଶୁ ଖ୍ରୀଷ୍ଟଙ୍କର ଭଲ ସେବକ ହୁଅ

୬ସେଠାରେ ଥିବା ଭାଇ ଓ ଭଉଣୀମାନଙ୍କୁ ଏ କଥା
କୁହ। ଏପରି କରିବା ଦ୍ୱାରା ତୁମ୍ଭେ ଖ୍ରୀଷ୍ଟ ଯୀଶୁଙ୍କର ଭଲ
ସେବକ ବୋଲି ପ୍ରମାଣିତ ହେବ। ତୁମ୍ଭେ ପ୍ରମାଣ କରିବ
ଯେ ତୁମ୍ଭେ ଅନୁସରଣ କରିଥିବା ବିଶ୍ୱାସର ଶିକ୍ଷାଗୁଡ଼ିକ
ଦ୍ୱାରା ଶକ୍ତିଶାଳୀ ହୋଇଛ। ୭ପରମେଶ୍ୱରଙ୍କ ସତ୍ୟ ସହିତ
ମେଳ ନ ଖାଉଥିବା ନିର୍ବୋଧ କାହାଣୀମାନ ଲୋକେ
କୁହନ୍ତି। ଏଭଳି କାହାଣୀ ଗୁଡ଼ିକୁ ପାଳନ କର ନାହିଁ।
କିନ୍ତୁ ତୁମ୍ଭେ ପ୍ରକୃତ ଭାବରେ ପରମେଶ୍ୱରଙ୍କୁ ସେବା କରିବା
ଲାଗି ନିଜକୁ ଶିକ୍ଷିତ କର। ୮ନିଜ ଶରୀର ସାଧନା
ଅନେକାଂଶରେ ତୁମ୍ଭକୁ ସାହାଯ୍ୟ କରେ। କିନ୍ତୁ ପରମେଶ୍ୱରଙ୍କ
ସେବା କରିବା ଦ୍ୱାରା ତାହା ସମସ୍ତ ବିଷୟରେ ତୁମ୍ଭକୁ
ସାହାଯ୍ୟ କରେ। ଏହା ବର୍ତ୍ତମାନର ଜୀବନରେ ଓ ଭବିଷ୍ୟତର
ଜୀବନରେ ମଧ୍ୟ ତୁମ୍ଭ ପାଇଁ ଆଶୀର୍ବାଦ ଆଣେ। ୯ମୁଁ ଯାହା
କହୁଛି ତାହା ସତ୍ୟ, ଓ ତୁମ୍ଭେ ଏହାକୁ ପୂର୍ଣ୍ଣ ଭାବରେ
ଗ୍ରହଣ କରିବା ଉଚିତ। ୧୦ଏଥିପାଇଁ ଆମ୍ଭେ କାମ ଓ
ସଂଘର୍ଷ କରୁଛୁ: ଆମ୍ଭେ ଜୀବିତ ପରମେଶ୍ୱରଠାରେ ଭରସା
ରଖିଥାଉ। ସେ ସମସ୍ତ ଲୋକଙ୍କର ଏବଂ ବିଶେଷ ଭାବରେ,
ଯେଉଁ ଲୋକମାନେ ତାହାଙ୍କୁ ବିଶ୍ୱାସ କରନ୍ତି ସେମାନଙ୍କର
ତ୍ରାଣକର୍ତ୍ତା।

୧୧ଏହି କଥା ଗୁଡ଼ିକ ଶିକ୍ଷା ଦିଅ। ୧୨ତୁମ୍ଭେ ଯୁବକ,
କିନ୍ତୁ କେହି ତୁମ୍ଭକୁ ଯେପରି ତୁଚ୍ଛ ବୋଲି ଭାବି ତୁମ୍ଭ
ସହିତ କୁବ୍ୟବହାର ନ କରେ। ବିଶ୍ୱାସୀମାନଙ୍କ ପାଇଁ,
ସେମାନେ କିପରି ରହିବା କଥା ତାହା ଦେଖାଇବାକୁ ତୁମ୍ଭେ
ଆଦର୍ଶବାନ ହୁଅ। ତୁମ୍ଭର କଥା ଓ ଜୀବନ ପ୍ରଣାଳୀ

ପ୍ରେମ, ବିଶ୍ୱାସ, ପବିତ୍ର ଜୀବନ ଦ୍ୱାରା ତୁମ୍ଭେ ସେମାନଙ୍କୁ
ତାହା ଦେଖାଇ ଦିଅ। [୧୩]ଲୋକମାନଙ୍କ ନିକଟରେ ଶାସ୍ତ୍ର
ପଢ଼ି ଶୁଣାଇବା ଜାରି ରଖ। ବଳ (ଆତ୍ମିକ) ଓ ବୃଦ୍ଧି
ପାଇବାକୁ ସେମାନଙ୍କୁ ସାହାଯ୍ୟ କର। ସେମାନଙ୍କୁ ଉପଦେଶ
ଦେବା କାର୍ଯ୍ୟ ଜାରି ରଖ ଏବଂ ମୁଁ ଆସିବା ପର୍ଯ୍ୟନ୍ତ
ଏପରି କରୁଥାଅ। [୧୪]ତୁମ୍ଭ ଭିତରେ ଯେଉଁ ଅନୁଗ୍ରହ ଦାନଟି
ଅଛି, ତାହାକୁ ବ୍ୟବହାର କରିବାରେ ଅବହେଳା କର
ନାହିଁ। ଭବିଷ୍ୟଦ୍‌ବାଣୀ ମାଧ୍ୟମରେ ଯେତେବେଳେ
ପ୍ରାଚୀନମାନଙ୍କର ଦଳ ତୁମ୍ଭ ଉପରେ ହାତ ରଖିଲେ,
ସେତେବେଳେ ସେହି ଅନୁଗ୍ରହଦାନ ତୁମ୍ଭକୁ ଦିଆ ଯାଇଥିଲା।
[୧୫]ସେଗୁଡ଼ିକ କରୁଥାଅ। ଉକ୍ତ କାମଗୁଡ଼ିକୁ କରିବା ପାଇଁ
ଜୀବନକୁ ଉତ୍ସର୍ଗ କର। ତହିଁରେ ସବୁ ଲୋକେ ଦେଖିବେ
ଯେ ତୁମ୍ଭ କାମରେ ଉନ୍ନତି ହେଉଛି ଓ ଚାଲିଛି। [୧୬]ତୁମ୍ଭ
ନିଜ ଜୀବନ ସମ୍ବନ୍ଧରେ ଓ ତୁମ୍ଭ ବିଷୟରେ ସତର୍କ ରୁହ।
ଉତ୍ତମ ଜୀବନଯାପନ ଓ ଶିକ୍ଷା ପ୍ରଦାନ କର। ତାହେଲେ
ତୁମ୍ଭେ ତୁମ୍ଭର ଶିକ୍ଷା ଶୁଣୁଥିବା ଲୋକଙ୍କୁ ଓ ନିଜକୁ ରକ୍ଷା
କରି ପାରିବ।

### ଅନ୍ୟ ଲୋକଙ୍କ ସହିତ ରହିବା ପାଇଁ କେତୋଟି ନିୟମ

**୫** ତୁମ୍ଭେ ଜଣେ ବୟସ୍କ ଲୋକ ସହିତ ରାଗରେ
କଥାବାର୍ତ୍ତା କର ନାହିଁ। ନିଜ ପିତା ବୋଲି ଭାବି
ତାହାଙ୍କ ସହିତ କଥା କୁହ। ସାନମାନଙ୍କ ପ୍ରତି ନିଜ ଭାଇ
ଭଳି ଆଚରଣ କର। [୨]ବୟସ୍କା ସ୍ତ୍ରୀଲୋକମାନଙ୍କୁ ମାଁ ଭଳି
ଓ ଯୁବତୀ ସ୍ତ୍ରୀଲୋକମାନଙ୍କୁ ଭଉଣୀ ଭଳି ଆଚରଣ କର।
ସର୍ବଦା ସେମାନଙ୍କ ପ୍ରତି ପବିତ୍ରତାର ସହିତ ଆଚରଣ
କର।

[୩]ପ୍ରକୃତରେ ଏକୁଟିଆଥିବା ବିଧବାମାନଙ୍କର ଯତ୍ନ ନିଅ।
[୪]କିନ୍ତୁ ଯଦି ଜଣେ ବିଧବାର ପୁଅଝିଅ ବା ନାତିନାତୁଣୀ
ଥାନ୍ତି, ସେମାନେ ପ୍ରଥମରେ ନିଜ ପରିବାର ପ୍ରତି ସମ୍ମାନଭାବ
ଦେଖାଇବା ଉଚିତ। ସେମାନେ ତାଙ୍କର ମାତାପିତାଙ୍କୁ
ସାହାଯ୍ୟ କରିବା ଉଚିତ। ଏପରି କରିବା ଦ୍ୱାରା ସେମାନେ
ନିଜର ମାତାପିତା ଓ ପିତାମହ ଓ ମାତାମହୀଙ୍କୁ ପ୍ରତିଦାନ
କରି ଥାଆନ୍ତି। ତାହା ପରମେଶ୍ୱରଙ୍କୁ ପ୍ରସନ୍ନ କରେ। [୫]ଯଦି
ଜଣେ ବିଧବା ପ୍ରକୃତରେ ଏକୁଟିଆ ଓ ନିରାଶାରେ ରହିଥାଏ,
ତାହେଲେ ସେ ତା' ପ୍ରତି ପରମେଶ୍ୱରଙ୍କର ସାହାଯ୍ୟ
ଉପରେ ଭରସା କରେ। ସେହି ବିଧବାଟି ରାତିଦିନ
ପରମେଶ୍ୱରଙ୍କୁ ପ୍ରାର୍ଥନା କରେ, ତାହାଙ୍କ ସାହାଯ୍ୟ ପାଇଁ
ଅନୁରୋଧ କରେ। [୬]କିନ୍ତୁ ଏଭଳି ବିଧବା ଯାହାର ଜୀବନର
ଲକ୍ଷ କେବଳ ନିଜକୁ ସନ୍ତୁଷ୍ଟ କରିବା, ସେ ବଞ୍ଚି ଥାଉଥାଉ
ମଧ୍ୟ ପ୍ରକୃତରେ ମୃତ। [୭]ସେଠାରେ ଥିବା ସମସ୍ତ ବିଶ୍ୱାସୀ
ଲୋକଙ୍କୁ ଏହି କାମଗୁଡ଼ିକ କରିବା ପାଇଁ କୁହ, ତାହେଲେ
କେହି କହିବେ ନାହିଁ ଯେ ସେମାନେ ଭୁଲ କରୁଛନ୍ତି।
[୮]ନିଜର ଆତ୍ମୀୟ ସମସ୍ତଙ୍କର ଯତ୍ନ ନେବା ଜଣେ ଲୋକର
କର୍ତ୍ତବ୍ୟ ଅଟେ। ଏପରିକି ଆଉ ମଧ୍ୟ ସେ ନିଜ
ପରିବାରର ଯତ୍ନ ନେବା ଅଧିକ ଗୁରୁତ୍ୱପୂର୍ଣ୍ଣ। ଯଦି ଜଣେ
ଲୋକ ସେପରି କରୁ ନାହିଁ, ତା ହେଲେ ସେ ଲୋକ
ସତ୍ୟ ବିଶ୍ୱାସକୁ ଅନୁସରଣ କରୁନାହିଁ। ସେହି ଲୋକ
ଜଣେ ଅବିଶ୍ୱାସୀଠାରୁ ମଧ୍ୟ ଖରାପ।

[୯]ବିଧବା ତାଲିକା (ସେବାକାର୍ଯ୍ୟ) ରେ ଆହୁରି ମଧ୍ୟ
ଯୋଗ କରା ଯାଇପାରେ ଯେ ସେ ନିଶ୍ଚିତ ରୂପେ ଷାଠିଏ
ବର୍ଷ ବା ତାଠାରୁ ଅଧିକ ବୟସର ହୋଇଥିବେ। ସେ
କେବଳ ସ୍ୱାମୀର ବିଶ୍ୱସ୍ତ ହୋଇଥିବେ। [୧୦]ସେ ଜୀବନରେ
ଭଲ କାମ କରିଥିବେ। ଯେପରି ପିଲାମାନଙ୍କୁ ବୃଦ୍ଧି କରିବା,
ଘରେ ଅତିଥିମାନଙ୍କୁ ସତ୍କାର କରିବା, ପରମେଶ୍ୱରଙ୍କ
ଲୋକମାନଙ୍କର ଗୋଡ଼ ଧୋଇବା, କଷ୍ଟରେ ପଡ଼ିଥିବା
ଲୋକଙ୍କୁ ସାହାଯ୍ୟ କରିବା ଓ ନିଜ ଜୀବନରେ ସମସ୍ତ
ପ୍ରକାରର ଭଲ କାମ କରିବା।

[୧୧]କିନ୍ତୁ ଯୁବତୀ ବିଧବାମାନଙ୍କୁ ସେହି ତାଲିକାଭୁକ୍ତ କର
ନାହିଁ। ସେମାନେ ଯୀଶୁ ଖ୍ରୀଷ୍ଟଙ୍କ ପାଇଁ ସମର୍ପିତ ହେବା
ପରେ ମଧ୍ୟ ନିଜର ପ୍ରବଳ କାମାଭିଳାଷ ଯୋଗୁ ତାହାଙ୍କଠାରୁ
ଦୂରକୁ ଆକର୍ଷିତ ହୋଇ ପାରନ୍ତି। ତା'ପରେ ସେମାନେ
ପୁଣିଥରେ ବିବାହ କରିବାକୁ ଇଚ୍ଛା କରନ୍ତି। [୧୨]ସେଥିପାଇଁ
ସେମାନଙ୍କର ବିଚାର ହେବ। ତାହାଙ୍କର ପ୍ରଥମ ପ୍ରତିଜ୍ଞା
ଅନୁସାରେ, କାମ ନ କରିବା ଯୋଗୁ ସେମାନେ ବିଚାରିତ
ହେବେ। [୧୩]ସେହି ଯୁବତୀ ବିଧବାମାନେ ଘରକୁ ଘର
ଅଯଥାରେ ବୁଲାବୁଲି କରି ସମୟ ନଷ୍ଟ କରିବା ଶିଖନ୍ତି।
ସେମାନେ ବଚସା କରିବା ଓ ଅନ୍ୟଲୋକଙ୍କ ଜୀବନ
ବିଷୟରେ ଚର୍ଚ୍ଚା କରିବା ଆରମ୍ଭ କରନ୍ତି। ଅନୁଚିତ
କଥାଗୁଡ଼ିକ କୁହନ୍ତି। [୧୪]ଅତଏବ ଯୁବତୀମାନେ ବିବାହ
କରନ୍ତୁ, ସେମାନଙ୍କର ପିଲା-ଛୁଆ ହୁଅନ୍ତୁ ଏବଂ ସେମାନେ
ନିଜ ଘରର ଯତ୍ନ ନିଅନ୍ତୁ, ମୁଁ ଏହା ଚାହେଁ। ଯଦି
ସେମାନେ ଏପରି କରିବେ, ତାହେଲେ ଆମ୍ଭ ଶତ୍ରୁମାନେ
ସେମାନଙ୍କୁ ସମାଲୋଚନା କରିବା ପାଇଁ କୌଣସି କାରଣ
ପାଇବେ ନାହିଁ। [୧୫]ଏଥିପୂର୍ବରୁ କେତେ ଜଣ ଯୁବତୀ ବିଧବା
ଶୟତାନର ପଥରେ ଯାଇଛନ୍ତି।

[୧୬]ଯଦି ଜଣେ ବିଶ୍ୱାସୀ ସ୍ତ୍ରୀଲୋକର ପରିବାରରେ
ବିଧବାମାନେ ଅଛନ୍ତି, ତାହେଲେ ସେମାନଙ୍କର ସେ ନିଜେ
ଯତ୍ନ ନେବା ଦରକାର। ମଣ୍ଡଳୀକୁ ଏଥିପାଇଁ ଭାରଗ୍ରସ୍ତ
କରିବା ଉଚିତ ନୁହେଁ। ତା'ପରେ ମଣ୍ଡଳୀ କେବଳ
ପରିବାର ବିହୀନ ବିଧବାମାନଙ୍କର ଯତ୍ନ ନେବାରେ ସକ୍ଷମ
ହେବ।

[୧୭]ମଣ୍ଡଳୀକୁ ଉତ୍ତମରୂପେ ଆଗେଇ ନେଇ ଯାଉଥିବା
ପ୍ରାଚୀନମାନେ ଅତ୍ୟଧିକ ସମ୍ମାନ ପାଇବା ଉଚିତ। ଯେଉଁ
ପ୍ରାଚୀନମାନେ ପ୍ରଚାର ଓ ଉପଦେଶ ପ୍ରଦାନ କରୁଛନ୍ତି,
ସେମାନେ ଅତ୍ୟଧିକ ସମ୍ମାନର ଅଧିକାରୀ ଅଟନ୍ତି। [୧୮]କାରଣ
ଶାସ୍ତ୍ର କୁହେ: "ଯେତେବେଳେ ବଳଦ ଅମଳ ପାଇଁ
ଘୁରୁଥାଏ, ସେତେବେଳେ ତା'ର ମୁହଁ ବାନ୍ଧ ନାହିଁ ଓ ତାକୁ
ଶସ୍ୟ ଖାଇବା ପାଇଁ ଅଟକାଅ ନାହିଁ।"* ଶାସ୍ତ୍ର ଏପରି
ମଧ୍ୟ କୁହେ: "ଜଣେ କାମ କରୁଥିବା ଲୋକ ତା'ର
ଦରମା ପାଇବା ଉଚିତ।"*

---

**"ଯେତେବେଳେ … ନାହିଁ।"** ଦ୍ୱିତୀୟ ବିବରଣୀ ୨୫:୪

**"ଜଣେ … ଉଚିତ।"** ଲୂକ ୧୦:୭

୧୯ଯେଉଁ ଲୋକ ଜଣେ ପ୍ରାଚୀନ ବିରୁଦ୍ଧରେ ନିନ୍ଦା
କରେ, ଓ ତା'ସହିତ ଯଦି ଅନ୍ୟ ଦୁଇ ବା ତିନି ଜଣ
ଲୋକ ମଧ୍ୟ ପ୍ରାଚୀନ ଲୋକ ଭୁଲ କରିଛନ୍ତି ବୋଲି
କୁହନ୍ତି, ତା'ହେଲେ ଯାଇ ସେ ଲୋକର କଥା ତୁମ୍ଭେ
ଶୁଣିବ। ୨୦ଯେଉଁମାନେ ପାପ କରନ୍ତି, ସେମାନଙ୍କୁ ସେମାନଙ୍କର
ଭୁଲ ଦେଖାଇଦିଅ। ମଣ୍ଡଳୀର ଲୋକମାନଙ୍କ ସମ୍ମୁଖରେ
ଏହା କର। ସେପରି କଲେ, ଅନ୍ୟମାନେ ସତର୍କ ହେବେ।
୨୧ପରମେଶ୍ୱର, ଖ୍ରୀଷ୍ଟ ଯୀଶୁ ଏବଂ ମନୋନୀତ ସ୍ୱର୍ଗଦୂତଙ୍କ
ଆଗରେ ଏଗୁଡ଼ିକ କରିବା ପାଇଁ ମୁଁ ତୁମ୍ଭକୁ ଆଦେଶ
ଦେଉଛି। ସତ୍ୟ ଜାଣିବା ପୂର୍ବରୁ ଲୋକମାନଙ୍କର ବିଚାର
କର ନାହିଁ। ସମସ୍ତଙ୍କ ପାଇଁ ସମାନ ଭାବ ଦେଖାଅ।
୨୨ଜଣେ ଲୋକକୁ ମଣ୍ଡଳୀର ପ୍ରାଚୀନ ଭାବେ ତା'ଉପରେ
ହାତ ଥୋଇବା ସମୟରେ ଖୁବ୍ ସତର୍କ ଭାବେ ଚିନ୍ତା
କର। ଅନ୍ୟ ଲୋକମାନଙ୍କ ପାପରେ ଅଂଶ ଗ୍ରହଣ କର
ନାହିଁ। ନିଜକୁ ସର୍ବଦା ପବିତ୍ର ରଖ।
୨୩ତୀମଥି, ତୁମ୍ଭେ କେବଳ ପାଣି ପିଉଛ। ତାହା ବନ୍ଦ
କରି କିଛି ଅଙ୍ଗୁର ରସ ମଧ୍ୟ ପିଅ। ଏହା ତୁମ୍ଭ ପେଟ
ପାଇଁ ଦରକାର, ଓ ତୁମ୍ଭେ ବାରମ୍ବାର ବେମାର ପଡ଼ିବ
ନାହିଁ।
୨୪କେତେ ଜଣଙ୍କ ପାପ ସବୁ ସ୍ପଷ୍ଟ ହୋଇ ଦେଖାଯାଏ
କାରଣ ସେମାନଙ୍କର ବିଚାର ହେବ ବୋଲି ସେମାନଙ୍କର
ପାପଗୁଡ଼ିକ ଆଗଭୁରୁ ଦେଖାଯାଏ। କିନ୍ତୁ ଅନ୍ୟ କେତେ
ଜଣଙ୍କ ପାପ ପରେ ଜଣା ପଡ଼େ। ୨୫ଲୋକମାନଙ୍କ
କ୍ଷେତ୍ରରେ ମଧ୍ୟ ଏହା ସତ। ଲୋକଙ୍କ ଭଲ କାମ
ସହଜରେ ଦେଖାଯାଏ। କିନ୍ତୁ ଯେତେବେଳେ ସେହି ଭଲ
କାମଗୁଡ଼ିକ ଦେଖାଯାଏ ନାହିଁ, ସେଗୁଡ଼ିକ ଲୁଚି ରହେ
ନାହିଁ।

**୬** କ୍ରୀତଦାସମାନେ ନିଜ ମାଲିକଙ୍କୁ ପୂର୍ଣ୍ଣ ସମ୍ମାନ ଦେବା
ଉଚିତ। ସେମାନେ ସେପରି କଲେ ପରମେଶ୍ୱରଙ୍କ
ନାମ ଏବଂ ଖ୍ରୀଷ୍ଟିୟାନ ଉପଦେଶଗୁଡ଼ିକ ସମାଲୋଚିତ ହେବ
ନାହିଁ। ୨କେତେକ କ୍ରୀତଦାସମାନଙ୍କ ମାଲିକମାନେ ବିଶ୍ୱାସୀ
ଅଟନ୍ତି। ଅତଏବ ସେହି ଦାସମାନେ ସେହି ମାଲିକମାନଙ୍କୁ
ଭାଇ ବୋଲି ଭାବି ସେମାନଙ୍କୁ କମ୍ ସମ୍ମାନ ଦେଖାଇବା
ଉଚିତ ନୁହେଁ। ଏପରିକି ସେହି ଦାସମାନେ ନିଜ ମାଲିକ
ମାନଙ୍କର ଅଧିକ ଭଲରେ ସେବା କରିବା ଉଚିତ। କାରଣ
ସେପରି କରିବା ଦ୍ୱାରା ସେମାନେ ଭଲ ପାଉଥିବା ବିଶ୍ୱାସୀ
ଲୋକମାନଙ୍କୁ ସାହାଯ୍ୟ କରୁଛନ୍ତି।

## ଭଣ୍ଡ ଶିକ୍ଷା ଓ ପ୍ରକୃତ ଧନ

୩ତୁମ୍ଭେ ଲୋକମାନଙ୍କୁ ଏହି ବିଷୟଗୁଡ଼ିକ କରିବା ପାଇଁ
ଶିକ୍ଷା ଦେବା ଓ କହିବା ଉଚିତ। କେତେ ଲୋକ ଭଣ୍ଡ
ଶିକ୍ଷା ଦେବେ। ସେମାନେ ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର
ସତ୍ୟ ଶିକ୍ଷା ସହିତ ଏକମତ ହୁଅନ୍ତି ନାହିଁ। ପରମେଶ୍ୱରଙ୍କ
ସେବା କରିବାର ସତ୍‌ମାର୍ଗ ସହିତ ମିଳି ଯାଉ ଥିବା ଶିକ୍ଷା
ସେମାନେ ଗ୍ରହଣ କରନ୍ତି ନାହିଁ; ୪ଯେଉଁ ଲୋକ ଭଣ୍ଡ
ଶିକ୍ଷା ଦିଏ, ସେ ଗର୍ବୀ ଓ କିଛି ବୁଝି ନ ଥାଏ। ସେହି
ଲୋକ ଶବ୍ଦର ଅର୍ଥକୁ ନେଇ ଯୁକ୍ତି ତର୍କ କରିବା ପାଇଁ
ଅତ୍ୟଧିକ ଆଗ୍ରହୀ ହୋଇଥାଏ ଓ ସେ ବାଗ୍‌ଯୁଦ୍ଧ କରେ।
ଏଗୁଡ଼ିକ ଦ୍ୱାରା କଳି, ଈର୍ଷା, ଅପମାନ ଓ ସନ୍ଦେହ
ଆସିଥାଏ। ୫ତାହା ମନ୍ଦ ମନ ଥିବା ଲୋକମାନଙ୍କ ମଧ୍ୟରେ
ସୀମାହୀନ ଯୁକ୍ତିତର୍କ ଆରମ୍ଭ କରେ। କୁତର୍କକୁ ମଧ୍ୟ ତାହା
ଆମନ୍ତ୍ରିତ କରେ। ସେହି ଲୋକମାନେ ସତ୍ୟକୁ ହରାଇ
ବସିଛନ୍ତି। ସେମାନେ ଭାବନ୍ତି ଯେ ପରମେଶ୍ୱରଙ୍କ ସେବା
କରିବା ହେଉଛି ଧନୀ ହେବାର ଏକ ଉପାୟ।
୬ଯଦି ଜଣେ ଲୋକ ତା ପାଖରେ ଯାହା ଅଛି,
ସେତିକିରେ ସନ୍ତୁଷ୍ଟ ରହେ, ତାହେଲେ ପ୍ରକୃତରେ
ପରମେଶ୍ୱରଙ୍କ ସେବା ଦ୍ୱାରା ସେହି ଲୋକ ବହୁତ ଧନୀ
ହୋଇଯାଏ। ୭ପୃଥିବୀକୁ ଆସିଲାବେଳେ ଆମ୍ଭେ କିଛି ଆଣି
ନ ଥିଲୁ ଓ ଯେତେବେଳେ ଆମ୍ଭେ ମରିଯିବା ଏଠାରୁ କିଛି
ନେଇ ଯାଇ ପାରିବା ନାହିଁ। ୮ଅତଏବ ଯଦି ଆମ୍ଭର
ଖାଇବା ଓ ପିନ୍ଧିବା ଜିନିଷ ଅଛି, ଆମ୍ଭେ ସେଥିରେ ସନ୍ତୁଷ୍ଟ
ରହିବା। ୯ଯେଉଁମାନେ ଧନୀ ହେବାକୁ ଚାହୁଁଛନ୍ତି, ସେମାନେ
ପ୍ରଲୋଭନ ଫାନ୍ଦରେ ପଡ଼ି ଯାଆନ୍ତି। ଅନେକ ମୂର୍ଖତାପୂର୍ଣ୍ଣ
ଓ ଦୁଃଖ ଦେଉଥିବା ବିଷୟଗୁଡ଼ିକ ପାଇଁ ସେମାନେ ଇଚ୍ଛା
ପୋଷଣ କରନ୍ତି। ସେଗୁଡ଼ିକ ଲୋକମାନଙ୍କୁ ନଷ୍ଟ କରି
ତଳତଳାନ୍ତ କରିଦିଏ। ୧୦ଧନର ଲୋଭ ସମସ୍ତ ପ୍ରକାର
ମନ୍ଦର କାରଣ। ଅଧିକରୁ ଅଧିକ ଧନ ପାଇବା ଲୋଭରେ
କେତେ ଲୋକ ସତ୍ୟ ବିଶ୍ୱାସକୁ ଛାଡ଼ି ଦେଇଛନ୍ତି। କିନ୍ତୁ
ସେପରି କରିବା ଦ୍ୱାରା ସେମାନେ ନିଜ ଉପରକୁ ଅନେକ
ଦୁଃଖ ଟାଣି ଆଣିଛନ୍ତି।

## କେତୋଟି ମନେ ରଖିବା କଥା

୧୧କିନ୍ତୁ ତୁମ୍ଭେ ଜଣେ ପରମେଶ୍ୱରଙ୍କର ଲୋକ। ଅତଏବ
ତୁମ୍ଭେ ସେହି ସବୁ ବିଷୟଠାରୁ ଦୂରରେ ରହିବା କଥା।
ଧାର୍ମିକ ଭାବରେ ରହିବା ପାଇଁ ଚେଷ୍ଟା କର, ପରମେଶ୍ୱରଙ୍କ
ସେବା କର। ତୁମ୍ଭ ଜୀବନରେ ବିଶ୍ୱାସ, ପ୍ରେମ, ଧୈର୍ଯ୍ୟ,
ଭଦ୍ର ଆଚରଣ କରିବା ପାଇଁ ଚେଷ୍ଟା କର। ୧୨ବିଶ୍ୱାସକୁ
ଧରି ରଖିବା ଗୋଟିଏ ଦୌଡ଼ ପ୍ରତିଯୋଗିତା ଭଳି।
କୌଣସି ମତେ ସେହି ପ୍ରତିଯୋଗିତା ଜିତିବାକୁ ଚେଷ୍ଟା
କର। ଅନନ୍ତଜୀବନ ଧାରଣ କର। ତୁମ୍ଭକୁ ସେଥିପାଇଁ
ଡକା ଯାଇଛି। ଅନେକ ଲୋକଙ୍କ ଆଗରେ ତୁମ୍ଭେ ଯୀଶୁ
ଖ୍ରୀଷ୍ଟଙ୍କ ବିଷୟରେ ମହାନ୍ ସତ୍ୟକୁ ସ୍ୱୀକାର କରିଛ।
୧୩ପରମେଶ୍ୱର ଓ ଖ୍ରୀଷ୍ଟଯୀଶୁଙ୍କ ଆଗରେ ମୁଁ ତୁମ୍ଭକୁ ଏହି
ଆଦେଶ ଦେଉଛି। ପନ୍ତିୟ ପୀଲାତଙ୍କ ଆଗରେ ଠିଆ
ହୋଇଥିବାବେଳେ ଖ୍ରୀଷ୍ଟ ଯୀଶୁ ସେହି ଏକା ମହାନ୍
ସତ୍ୟଟିକୁ ସ୍ୱୀକାର କରିଥିଲେ। ଏକମାତ୍ର ପରମେଶ୍ୱର
ପ୍ରତ୍ୟେକ ବିଷୟକୁ ଜୀବନ ପ୍ରଦାନ କରନ୍ତି। ୧୪ଏବେ ମୁଁ
ତୁମ୍ଭକୁ କହୁଛି: ତୁମ୍ଭକୁ ଦିଆ ଯାଇଥିବା ଆଦେଶଗୁଡ଼ିକ
ପାଳନ କର। ଯୀଶୁ ଖ୍ରୀଷ୍ଟଙ୍କର ପୁନରାଗମନ ପର୍ଯ୍ୟନ୍ତ
ସେହି କାମଗୁଡ଼ିକ ନିର୍ଭୁଲ ଭାବରେ ଓ ଅନିନ୍ଦନୀୟ
ଭାବରେ କର। ୧୫ପରମେଶ୍ୱର ଉପଯୁକ୍ତ ସମୟ ଆସିଲେ,
ତାହା ସାଧନ କରିବେ। ପରମେଶ୍ୱର ଏକମାତ୍ର ପରମଧନ୍ୟ
ସମ୍ରାଟ୍। ସେ ରାଜାମାନଙ୍କର ରାଜା ଓ ପ୍ରଭୁମାନଙ୍କର ପ୍ରଭୁ।
୧୬ପରମେଶ୍ୱର ଅମର ଅଟନ୍ତି। ପରମେଶ୍ୱର ଏତେ ଉଜ୍ଜ୍ୱଳ

ପ୍ରକାଶ ମଧ୍ୟରେ ବାସ କରନ୍ତ ଯେ ଲୋକେ ତାହା ପାଖକୁ
ଯାଇ ପାରନ୍ତ ନାହିଁ। କେହ କେବେହେଲେ ପରମେଶ୍ୱରଙ୍କୁ
ଦେଖି ନାହିଁ। କେହ କେବେ ପରମେଶ୍ୱରଙ୍କୁ ମଧ୍ୟ ଦେଖି
ପାରବେ ନାହିଁ। ପରମେଶ୍ୱରଙ୍କ ଗୌରବ ଓ ଶକ୍ତ
ଅନନ୍ତକାଳ ପର୍ଯ୍ୟନ୍ତ ପ୍ରକାଶ ପାଉ। ଆମେନ୍।

୧୭ଏହ ଆଦେଶ ସେହମାନଙ୍କୁ ଦଅ ଯେଉଁମାନେ ଏ
ପୃଥିବୀରେ ଧନୀ ଅଛନ୍ତ। ସେମାନଙ୍କୁ ଗର୍ବ ନ କରବା
ପାଇଁ କୁହ। ସେମାନଙ୍କୁ କୁହ ଯେ ସେମାନେ ନଜ ଧନର
ନୁହେଁ, ମାତ୍ର ପରମେଶ୍ୱରଙ୍କର ଆଶ୍ରୟ ନେବା ଉଚତ।
ଧନ ଉପରେ ଆସ୍ଥା ରଖ ନାହିଁ। କନ୍ତୁ ପରମେଶ୍ୱର
ପ୍ରତ୍ୟେକ ବସ୍ତୁ ଯଥେଷ୍ଟ ପରମାଣରେ ଆମ୍ଭକୁ ପ୍ରଦାନ
କରନ୍ତ। ସେ ଭୋଗ କରବା ପାଇଁ ଆମ୍ଭକୁ ପ୍ରତ୍ୟେକ
ଜନଷ ଦଅନ୍ତ। ୧୮ଧନୀ ଲୋକମାନଙ୍କୁ କୁହ ଯେ ସେମାନେ
ଭଲ କାମ କରନ୍ତୁ। ସେମାନଙ୍କୁ କୁହ ଯେ, ଭଲ କାମ
କରବାରେ ସେମାନେ ଧନୀ ହୁଅନ୍ତୁ। ୧୯ସେପର କର
ସେମାନେ ସ୍ୱର୍ଗରେ ନଜ ପାଇଁ ସମ୍ପତ୍ତି ଜମା ରଖିବେ।
ସେହ ସମ୍ପତ୍ତି ହେଉଛ ଦୃଢ଼ ମୂଳଦୁଆ ଯାହା ଉପରେ
ସେମାନଙ୍କର ଭବଷ୍ୟତ୍ ଜୀବନ ଠିଆ ହୋଇପାରବ।
ତା'ହେଲେ ସେମାନେ ପ୍ରକୃତ ଜୀବନର ଅଧିକାରୀ ହୋଇ
ପାରବେ।

୨୦ତୀମଥି, ପରମେଶ୍ୱର ତୁମ୍ଭ ଉପରେ ଅନେକ ବଷୟ୍ର
ଭାର ଦେଇଛନ୍ତ। ସେଗୁଡ଼କୁ ସୁରକ୍ଷିତ ରଖିଥାଅ। ପରମେଶ୍ୱରଙ୍କ
ନକଟକୁ ଆସି ନ ଥିବା ଅସାର କଥା କହୁଥିବା
ଲୋକମାନଙ୍କ ଠାରୁ ଦୂରରେ ରୁହ। ସତ୍ୟ ବରୁଦ୍ଧରେ
ଯୁକ୍ତତର୍କ କରୁଥିବା ଲୋକମାନଙ୍କ ଠାରୁ ଦୂରରେ ରୁହ।
ଏହାକୁ ସେମାନେ ମିଛରେ "ଜ୍ଞାନ" ବୋଲ କହଥାନ୍ତ।
କନ୍ତୁ ଏହା ପ୍ରକୃତ ଜ୍ଞାନ ନୁହେଁ। ୨୧କେତେ ଲୋକ
କୁହନ୍ତ ଯେ ସେମାନଙ୍କର ସେହ "ଜ୍ଞାନ" ଅଛ। ସେମାନେ
ସତ୍ୟ ବଶ୍ୱାସକୁ ତ୍ୟାଗ କର ସାରଛନ୍ତ।

ପରମେଶ୍ୱରଙ୍କ ଅନୁଗ୍ରହ ତୁମ୍ଭ ସମସ୍ତଙ୍କ ସହତ ରହୁ।

# ତୀମଥିଙ୍କ ନିକଟକୁ ପ୍ରେରିତ ପାଉଲଙ୍କର ଦ୍ୱିତୀୟ ପତ୍ର

୧ ଖ୍ରୀଷ୍ଟଯୀଶୁଙ୍କ ଜଣେ ପ୍ରେରିତ, ପାଉଲଙ୍କ ଠାରୁ ନମସ୍କାର।
ପରମେଶ୍ୱରଙ୍କ ଇଚ୍ଛାନୁଯାୟୀ ମୁଁ ପ୍ରେରିତ ହୋଇଛି।
ଖ୍ରୀଷ୍ଟଯୀଶୁଙ୍କଠାରେ ଥିବା ଜୀବନର ପ୍ରତିଜ୍ଞା ବିଷୟରେ
ଲୋକମାନଙ୍କୁ କହିବା ପାଇଁ ପରମେଶ୍ୱର ମୋତେ
ପଠାଇଲେ।
୨ଏହି ପତ୍ର ତୀମଥିଙ୍କ ପାଇଁ। ତୁମ୍ଭେ ମୋ ପାଇଁ ମୋ
ପ୍ରିୟ ପୁତ୍ର ଭଳି। ପରମପିତା ପରମେଶ୍ୱରଙ୍କ ଠାରୁ ଓ
ଆମ୍ଭ ପ୍ରଭୁ ଖ୍ରୀଷ୍ଟଯୀଶୁଙ୍କ ଠାରୁ ତୁମ୍ଭକୁ ଅନୁଗ୍ରହ, ଦୟା ଓ
ଶାନ୍ତି ମିଳୁ।

## ଧନ୍ୟବାଦ ଓ ଆଶ୍ୱାସନା

୩ମୁଁ ସବୁବେଳେ ଦିନରାତି ମୋ ପ୍ରାର୍ଥନାରେ ତୁମ୍ଭକୁ
ମନେପକାଉଛି। ସେହି ପ୍ରାର୍ଥନାରେ ମୁଁ ତୁମ୍ଭ ପାଇଁ ପରମେଶ୍ୱରଙ୍କୁ
ଧନ୍ୟବାଦ ଜଣାଉଛି। ମୋର ପୂର୍ବଜମାନେ ସେହି ପରମେଶ୍ୱରଙ୍କୁ
ସେବା କରିଥିଲେ। ମୁଁ ଯାହା ଠିକ ବୋଲି ଜାଣେ ତାହା
କରି ସର୍ବଦା ତାହାଙ୍କର ସେବା କରିଛି। ୪ତୁମ୍ଭେ ମୋ
ପାଇଁ କାନ୍ଦିଛ ବୋଲି ମୁଁ ମନେରଖିଛି। ମୁଁ ତୁମ୍ଭକୁ ଦେଖି
ଆନନ୍ଦ ପାଇବା ପାଇଁ ଅତି ଇଚ୍ଛୁକ। ତୁମ୍ଭର ଦୃଢ଼ ବିଶ୍ୱାସ
ମୁଁ ମନେପକାଏ। ୫ପ୍ରଥମରେ ସେହି ବିଶ୍ୱାସ ତୁମ୍ଭର
ମାତାମହୀ ଲୋୟି ଓ ମାତା ଇଉନୀକୀଙ୍କ ଠାରେ ଥିଲା।
୬ମୁଁ ଜାଣେ ଯେ ତୁମ୍ଭଠାରେ ସେହି ସମାନ ବିଶ୍ୱାସ ଅଛି।
ସେଥିପାଇଁ ମୁଁ କୁହେ ଯେ ପରମେଶ୍ୱର ତୁମ୍ଭକୁ ଦେଇଥିବା
ଅନୁଗ୍ରହ ଦାନକୁ ମନେ ପକାଅ। ଯେତେବେଳେ ମୁଁ ମୋର
ହାତଦ୍ୱୟ ତୁମ୍ଭ ଉପରେ ରଖିଲି, ସେତେବେଳେ ପରମେଶ୍ୱର
ସେହି ଅନୁଗ୍ରହଦାନ ତୁମ୍ଭକୁ ଦେଇଥିଲେ। ମୁଁ ଚାହେଁ ଯେ
ତୁମ୍ଭେ ସେହି ଅନୁଗ୍ରହ ଦାନକୁ ବ୍ୟବହାର କର ଓ ତାହା
ଅଧିକରୁ ଅଧିକ ବୃଦ୍ଧି ପାଉ ଯେପରି ସାନ ଅଗ୍ନି ଶିଖା
ଏକ ଜ୍ୱାଳାରେ ପରିବର୍ତ୍ତିତ ହୁଏ। ୭ପରମେଶ୍ୱର ଆମ୍ଭକୁ
ଭୟର ଆତ୍ମା ଦେଇ ନାହାଁନ୍ତି। ସେ ଆମ୍ଭକୁ ଶକ୍ତି, ପ୍ରେମ
ଓ ଆତ୍ମସଂଯମର ଆତ୍ମା ପ୍ରଦାନ କରିଛନ୍ତି।
୮ଅତଏବ ଲୋକମାନଙ୍କୁ ଆମ୍ଭ ପ୍ରଭୁଯୀଶୁଙ୍କ ବିଷୟରେ
କହିବା ପାଇଁ ଲଜ୍ଜାବୋଧ କରନାହିଁ। ମୁଁ ପ୍ରଭୁଙ୍କ ପାଇଁ
ବନ୍ଦୀ ହୋଇ ରହିଛି ମୋ ପାଇଁ ମଧ୍ୟ ଲଜ୍ଜାବୋଧ
କରନାହିଁ। କିନ୍ତୁ ମୋ ସହିତ ସୁସମାଚାର ପାଇଁ କଷ୍ଟ
ସହ୍ୟ କର। ତାହା କରିବା ପାଇଁ ପରମେଶ୍ୱର ଆମ୍ଭକୁ
ଶକ୍ତି ଦିଅନ୍ତି। ୯ପରମେଶ୍ୱର ଆମ୍ଭକୁ ଉଦ୍ଧାର କରି ନିଜର
ପବିତ୍ର ଲୋକ କରିଛନ୍ତି। ଆମ୍ଭମାନଙ୍କର ନିଜ ବଳରେ
ତାହା ହୋଇ ନାହିଁ। ବରଂ ପରମେଶ୍ୱର ନିଜେ ଇଚ୍ଛାକରି
ଓ ନିଜର ଅନୁଗ୍ରହ ଦ୍ୱାରା ଆମ୍ଭମାନଙ୍କୁ ଉଦ୍ଧାର କରିଛନ୍ତି
ଓ ନିଜ ଲୋକ କରିଛନ୍ତି। ସେହି ଅନୁଗ୍ରହ ଖ୍ରୀଷ୍ଟଯୀଶୁଙ୍କ
ମାଧ୍ୟମରେ ଆମ୍ଭକୁ ଅନାଦି କାଳରୁ ମିଳିଛି। ୧୦ସେହି
ଅନୁଗ୍ରହ ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ଆମ୍ଭକୁ ଦେଖାଯାଉ ନ
ଥିଲା। ଆମ୍ଭର ତ୍ରାଣକର୍ତ୍ତା ଖ୍ରୀଷ୍ଟଯୀଶୁଙ୍କ ଆସିବା ପରେ
ତାହା ଆମ୍ଭଠାରେ ପ୍ରକାଶିତ ହେଲା। ଖ୍ରୀଷ୍ଟଯୀଶୁ ମୃତ୍ୟୁକୁ
ନଷ୍ଟ କଲେ ଓ ଆମ୍ଭକୁ ଜୀବନ ପାଇବାର ପଥ ଦେଖାଇଲେ।
ସୁସମାଚାର ମାଧ୍ୟମରେ ସେ ଆମ୍ଭକୁ ଅନନ୍ତ ଜୀବନ ପାଇବା
ପାଇଁ ମାର୍ଗ ଦେଖାଇଲେ। ୧୧ସେହି ସୁସମାଚାର କହିବା
ପାଇଁ ମୁଁ ମନୋନୀତ ହେଲି। ମୁଁ ସୁସମାଚାର ପାଇଁ
ପ୍ରଚାରକ, ପ୍ରେରିତ ଓ ଶିକ୍ଷକ ଭାବେ ମନୋନୀତ ହେଲି।
୧୨ସେହି ସୁସମାଚାର କହିଥିବାରୁ ଏବେ ମୁଁ କଷ୍ଟ ପାଉଛି।
କିନ୍ତୁ ମୁଁ ଲଜ୍ଜିତ ନୁହେଁ। ମୁଁ ଯାହାଙ୍କୁ ବିଶ୍ୱାସ କରିଛି,
ତାହାଙ୍କୁ ମୁଁ ଜାଣେ। ମୋର ପୂର୍ଣ୍ଣ ଆଶା ଅଛି ଯେ, ସେ
ସେହି ବିଷୟଗୁଡ଼ିକ ସେହିଦିନ* ପର୍ଯ୍ୟନ୍ତ ରକ୍ଷା କରିବେ,
ଯେଉଁଗୁଡ଼ିକର ଦାୟିତ୍ୱ ସେ ମୋ ଉପରେ ନ୍ୟସ୍ତ କରିଥିଲେ।
୧୩ମୋଠାରୁ ଶୁଣିଥିବା ସତ୍ ଶିକ୍ଷାଗୁଡ଼ିକୁ ପାଳନ କର।
ସେହି ଶିକ୍ଷାଗୁଡ଼ିକ ଖ୍ରୀଷ୍ଟଯୀଶୁଙ୍କ ଠାରେ ଥିବା ଆମ୍ଭର
ବିଶ୍ୱାସ ଓ ପ୍ରେମ। ସେହି ଉପଦେଶଗୁଡ଼ିକ ଉଦାହରଣ
ସ୍ୱରୂପ ଅଟେ ଓ ତାହା ଦର୍ଶାଏ ଯେ, ତୁମ୍ଭେ କିପରି
ଉପଦେଶ ଦେବା ଉଚିତ। ୧୪ତୁମ୍ଭକୁ ଯେଉଁ ସତ୍ୟ ପ୍ରଦାନ
କରାଯାଇଛି, ତାହାକୁ ରକ୍ଷା କର। ପବିତ୍ର ଆତ୍ମାର ସାହାଯ୍ୟରେ
ସେଗୁଡ଼ିକୁ ରକ୍ଷା କର। ସେହି ପବିତ୍ର ଆତ୍ମା ଆମ୍ଭ ଭିତରେ
ରହନ୍ତି।
୧୫ତୁମ୍ଭେ ଜାଣ ଯେ ଏସିଆ* ପ୍ରଦେଶର ପ୍ରତ୍ୟେକ
ଲୋକ ମୋତେ ପରିତ୍ୟାଗ କରିଛନ୍ତି। ଏପରିକି ଫୁଗେଲ
ଓ ହର୍ମଗେନା ମଧ୍ୟ ମୋତେ ଛାଡ଼ିଗଲେ। ମୁଁ ପ୍ରାର୍ଥନା
କରେ ଯେ, ଅନୀସିଫରଙ୍କ ପରିବାରକୁ ପ୍ରଭୁ ଦୟା
ଦେଖାନ୍ତୁ। ଅନୀସିଫର ମୋତେ ଅନେକ ଥର ସାହାଯ୍ୟ
କରିଛନ୍ତି। ୧୬ମୁଁ ଜେଲରେ ରହିବା ଦ୍ୱାରା ସେ ଲଜ୍ଜିତ
ହୋଇ ନାହାଁନ୍ତି। ୧୭ସେ ରୋମକୁ ଯେତେବେଳେ ଆସିଲେ,
ମୋତେ ପାଇବା ପର୍ଯ୍ୟନ୍ତ ସେ ଅତି ଯତ୍ନ ସହକାରେ
ମୋତେ ଖୋଜି ଥିଲେ। ୧୮ମୁଁ ପ୍ରଭୁଙ୍କଠାରେ ପ୍ରାର୍ଥନା କରେ
ଯେ ସେ ସେହି ମହାଦିନରେ ଅନୀସିଫରଙ୍କୁ ଦୟା ଦାନ
କରନ୍ତୁ। ଅନ୍ୟ ସମସ୍ତଙ୍କ ଅପେକ୍ଷା ତୁମ୍ଭେ ଭଲ ଭାବରେ

---

**ସେହିଦିନ** ଯେଉଁ ଦିନ ସେ(ଯୀଶୁ) ସବୁଲୋକଙ୍କ ବିଚାର ପାଇଁ ଆସିବେ ଓ ନିଜ ଲୋକମାନଙ୍କୁ ତାଙ୍କ ସହିତ ରହିବା ପାଇଁ ନେଇ ଯିବେ।

**ଏସିଆ** ମାଇନରର ପଶ୍ଚିମାଞ୍ଚଳ।

ଜାଣ ଯେ ଏଫିସଠାରେ ଅନେକ ପ୍ରକାରରେ ସେ ମୋତେ
ସାହାଯ୍ୟ କରିଛନ୍ତି।

### ଯୀଶୁଖ୍ରୀଷ୍ଟଙ୍କର ଏକ ବିଶ୍ୱସ୍ତ ସୈନିକ

୨ ତୀମଥି, ତୁମ୍ଭେ ମୋର ଜଣେ ପୁତ୍ର ଭଳି।
ଖ୍ରୀଷ୍ଟଯୀଶୁଙ୍କଠାରେ ଆମ୍ଭକୁ ମିଳିଥିବା ଅନୁଗ୍ରହରେ
ଶକ୍ତିଶାଳୀ ହୁଅ। ୨ମୁଁ ଶିକ୍ଷା ଦେଇଥିବା କଥାସବୁ ତୁମ୍ଭେ
ଶୁଣିଛ। ଅନେକ ଅନ୍ୟ ଲୋକ ମଧ୍ୟ ସେହି କଥା
ଶୁଣିଛନ୍ତି। ତୁମ୍ଭେ ସେହି ବିଷୟଗୁଡିକ ଶିକ୍ଷାଦେବା ଉଚିତ।
ଯେଉଁ କେତେକଙ୍କୁ ତୁମ୍ଭେ ବିଶ୍ୱାସ କରିପାରିବ, ସେମାନଙ୍କୁ
ସେହି ଉପଦେଶଗୁଡ଼ିକ ଦିଅ। ତା’ହେଲେ ସେମାନେ
ଅନ୍ୟଲୋକମାନଙ୍କୁ ସେହି ଉପଦେଶଗୁଡ଼ିକ ଦେଇ ପାରିବେ।
୩ଆମ୍ଭ ସମସ୍ତଙ୍କ କଷ୍ଟରେ ଭାଗୀହୁଅ। ଖ୍ରୀଷ୍ଟଯୀଶୁଙ୍କର ଜଣେ
ଅନୁଗତ ଓ ପ୍ରକୃତ ସୈନିକ ଭାବରେ ସେହି କଷ୍ଟଗୁଡ଼ିକୁ
ସହିଯାଅ। ୪ଜଣେ ସୈନିକ ତା’ର ନାୟକକୁ ଖୁସି
କରିବାକୁ ଚେଷ୍ଟା କରେ। ଅତଏବ ଦୈନିକ ଜୀବନର
ଘଟଣାରେ ସେ ନିଜର ସମୟ ଅତିବାହିତ କରେ ନାହିଁ।
୫ଜଣେ ଖେଳାଳୀ ପୁରସ୍କାର ଜିଣିବା ପାଇଁ ଦୌଡ଼ର ସମସ୍ତ
ନିୟମପାଳନ କରିବା ଦରକାର। ୬ଜଣେ କୃଷୀ ନିଜର
କଠିନ ପରିଶ୍ରମ କରି ଯେଉଁ ଶସ୍ୟ ଉତ୍ପାଦନ କରିଛି, ସେ
ପ୍ରଥମରେ ସେହି ଉତ୍ପାଦନରୁ ଖାଦ୍ୟ ପାଇବା ଉଚିତ। ୭ମୁଁ
ଯେଉଁ କଥା କହୁଛି, ତାହା ବିଷୟରେ ଚିନ୍ତା କର। ପ୍ରଭୁ
ତୁମ୍ଭକୁ ଏହି ସମସ୍ତ କଥାଗୁଡ଼ିକ ବୁଝିବା ପାଇଁ ଶକ୍ତି
ଦେବେ।

୮ଯୀଶୁଖ୍ରୀଷ୍ଟଙ୍କୁ ମନେ ପକାଅ। ସେ ଦାଉଦ* ଙ୍କ
ପରିବାରର ଅଟନ୍ତି। ଯୀଶୁ ମୃତ୍ୟୁପରେ ପୁନଃ ଜୀବିତ
ହୋଇଉଠିଲେ। ୯ଏହି ସୁସମାଚାର ମୁଁ ଲୋକଙ୍କୁ ଶୁଣାଏ।
ସେହି ସୁସମାଚାର କହି ଥିବାରୁ ମୁଁ ଯାତନା ଭୋଗ
କରୁଛି। ଏପରିକି ଜଣେ ଅପରାଧୀ ଭଳି ମୁଁ ଶିକୁଳିରେ
ବନ୍ଧା ମଧ୍ୟ ହୋଇଛି। ୧୦ଅତଏବ ମୁଁ ଧୈର୍ଯ୍ୟପୂର୍ବକ ଉକ୍ତ
କଷ୍ଟଗୁଡ଼ିକୁ ସହି ନେଉଛି। ପରମେଶ୍ୱର ଯେଉଁଲୋକଙ୍କୁ
ବାଛିଛନ୍ତି, ସେମାନଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଏପରି
କରୁଛି। ମୁଁ ଏଗୁଡ଼ିକ ସହି ନେବାର କାରଣ ଯେ, ସେହି
ଲୋକମାନେ ଖ୍ରୀଷ୍ଟଯୀଶୁଙ୍କ ଠାରେ ଥିବା ପରିତ୍ରାଣ ପାଇ
ପାରିବେ। ସେହି ପରିତ୍ରାଣ ଗୋଟିଏ ଅସୀମ ମହିମା ସହିତ
ଆସେ।

୧୧ ଏହି ଶିକ୍ଷା ସତ୍ୟ ଅଟେ: ଯଦି ଆମ୍ଭେ ତାହାଙ୍କ
ସହିତ ମରୁ, ତା’ହେଲେ ଆମେ ତାହାଙ୍କ ସହିତ
ବଞ୍ଚିବା।
୧୨ ଯଦି ଆମ୍ଭେ ଯାତନା ସହିବା, ତା’ହେଲେ ଆମ୍ଭେ
ତାଙ୍କ ସହିତ ଶାସନ କରିବା। ଯଦି ଆମ୍ଭେ ତାଙ୍କୁ
ଗ୍ରହଣ କରିବା ପାଇଁ ମନା କରିବା, ତା’ହେଲେ
ସେ ଆମ୍ଭକୁ ଗ୍ରହଣ କରିବା ପାଇଁ ମନା କରିବେ।
୧୩ ଯଦି ଆମ୍ଭେ ବିଶ୍ୱସ୍ତ ନହେଉ, ତଥାପି ସେ ବିଶ୍ୱସ୍ତ
ହୋଇ ରହିବେ। କାରଣ ସେ ନିଜ ପାଇଁ ଅସତ୍
ହୋଇପାରିବେ ନାହିଁ।

### ଜଣେ ଅନୁମୋଦିତ କାର୍ଯ୍ୟକାରୀ

୧୪ଉକ୍ତ କଥାଗୁଡ଼ିକୁ ଲୋକମାନଙ୍କୁ ସର୍ବଦା କୁହ।
ପରମେଶ୍ୱରଙ୍କ ଆଗରେ ସତର୍କ କରିଦିଅ ଯେ, ସେମାନେ
ଅଯଥା ବାଦାନୁବାଦ କରନ୍ତୁ ନାହିଁ। ଯୁକ୍ତିତର୍କ କରିବା ଦ୍ୱାରା
କାହାରିକୁ ଲାଭ ହୁଏ ନାହିଁ। ଯେଉଁମାନେ ଏହା ଶୁଣନ୍ତି,
ସେମାନଙ୍କୁ ତାହା ନଷ୍ଟ କରିଦିଏ। ୧୫ପରମେଶ୍ୱରଙ୍କ ସୁଗ୍ରାହ୍ୟ
ବ୍ୟକ୍ତି ହେବା ଲାଗି ଯଥାସାଧ୍ୟ ଚେଷ୍ଟା କର। ନିଜକୁ
ତାହାଙ୍କଠାରେ ସମର୍ପଣ କର। ତାହାଙ୍କ କାମ ପାଇଁ
କୌଣସି ପ୍ରକାର ଲଜ୍ଜାବୋଧ ନ କରି ଏପରି ସେବକ
ହୁଅ ଯିଏ ସତ୍ ଶିକ୍ଷା ଠିକ୍ ଭାବରେ କାମରେ ଲଗାଉଛି।
୧୬ପରମେଶ୍ୱରଙ୍କ ଠାରୁ ଆସିନଥିବା ନିରର୍ଥକ କଥାଗୁଡ଼ିକ
କହୁଥିବା ଲୋକଙ୍କ ଠାରୁ ଦୂରରେ ରୁହ। ସେଭଳି କଥା
ପରମେଶ୍ୱରଙ୍କ ଠାରୁ ଅଧିକରୁ ଅଧିକ ଦୂରେଇ ନେବ।
୧୭ଶରୀର ଭିତରେ ରୋଗ ବ୍ୟାପିଲା ଭଳି ସେମାନଙ୍କର
ମନ୍ଦ ଶିକ୍ଷା ବ୍ୟାପି ଯିବ। ହୁମିନାୟ ଓ ଫିଲୀତ ହେଉଛନ୍ତି
ସେହିଭଳି ଲୋକ। ୧୮ସେମାନେ ସତ୍ ଶିକ୍ଷା ତ୍ୟାଗ
କରିଛନ୍ତି। ସେମାନେ କୁହନ୍ତି ଯେ ମୃତ୍ୟୁରୁ ସମସ୍ତଙ୍କ ଉଠି
ଆସିବା ଘଟଣା ଘଟିସାରିଛି। ସେହି ଦୁଇଜଣ ଲୋକ କିଛି
ଲୋକଙ୍କର ବିଶ୍ୱାସ ନଷ୍ଟ କରୁଛନ୍ତି। କିନ୍ତୁ ପରମେଶ୍ୱରଙ୍କ
ଦୃଢ଼ ମୂଳଦୁଆ ସେହିଭଳି ରହିଛି। ୧୯ସେହି ବାକ୍ୟଗୁଡ଼ିକ
ସେହି ମୂଳଦୁଆ ଉପରେ ଲେଖାହୋଇଛି: “ଯେଉଁମାନେ
ପ୍ରଭୁଙ୍କର ଲୋକ, ସେମାନଙ୍କୁ ପ୍ରଭୁ ଜାଣନ୍ତି।” ନିୟମଲିଖିତ
ଶବ୍ଦଗୁଡ଼ିକ ମଧ୍ୟ ମୂଳଦୁଆ ଉପରେ ଲେଖାଯାଇଛି: “ଯେଉଁ
ଲୋକ ଦାବୀ କରେ ଯେ ସେ ପ୍ରଭୁଙ୍କୁ ବିଶ୍ୱାସ କରେ,
ସେ ମନ୍ଦ କାମ ନ କରୁ।”

୨୦ଗୋଟିଏ ବଡ଼ ଘରେ ସୁନା ଓ ରୂପାଜିନିଷ ସହିତ
ମାଟି ଓ କାଠର ଜିନିଷ ମଧ୍ୟ ଥାଏ। କେତେକ ଜିନିଷ
ବିଶେଷ ଉଦ୍ଦେଶ୍ୟ ପାଇଁ ବ୍ୟବହାର ହୁଏ। କେତେକ
ଜିନିଷ ନୀଚ କାର୍ଯ୍ୟ ପାଇଁ ବ୍ୟବହାର ହୁଏ। ୨୧ଯଦି ଜଣେ
ନିଜକୁ ସମସ୍ତ ମନ୍ଦ ଜିନିଷରୁ ଅଲଗା କରି ପରିଷ୍କାର ହୁଏ,
ତାହେଲେ ସେ ମୂଲ୍ୟବାନ କାମ ପାଇଁ ବିଶେଷ ଉପଯୋଗୀ
ହେବ। ସେ ଲୋକ ପବିତ୍ର ହେବ। ମୁନିବ ତାହାକୁ
ବ୍ୟବହାର କରି ପାରିବେ। ସେ ଯେକୌଣସି ଭଲ କାମ
ପାଇଁ ପ୍ରସ୍ତୁତ ରହିବ।

୨୨ଯୁବକମାନେ ଯେଉଁ ସବୁ ମନ୍ଦ କାମ କରିବାକୁ ଇଚ୍ଛା
କରନ୍ତି, ସେଗୁଡ଼ିକରୁ ଦୂରରେ ରୁହ। ଧାର୍ମିକ ଭାବରେ
ବଞ୍ଚିବା ପାଇଁ କଠିଣ ପରିଶ୍ରମ କର। ବିଶ୍ୱାସ, ପ୍ରେମ ଓ
ଶାନ୍ତି ପାଇବା ପାଇଁ ଚେଷ୍ଟା କର। ଯେଉଁ ଲୋକମାନେ
ପ୍ରଭୁଙ୍କୁ ବିଶ୍ୱାସ କରନ୍ତି ଓ ଯେଉଁ ମାନଙ୍କର ଶୁଦ୍ଧ ହୃଦୟ,
ସେମାନଙ୍କ ସହିତ ମିଶି ଉକ୍ତ ଆଚରଣ କର। ୨୩ମୂର୍ଖ ଓ
ଅର୍ଥହୀନ ତର୍କବିତର୍କରୁ ଦୂରରେ ରୁହ। ତୁମ୍ଭେ ଜାଣ ଯେ
ସେହି ଯୁକ୍ତିତର୍କଗୁଡ଼ିକ ବଢ଼ିଯାଇ ବଡ଼ ବିବାଦ ସୃଷ୍ଟି କରେ।
୨୪ପ୍ରଭୁଙ୍କର ସେବକ ଯୁକ୍ତି କରିବା ଉଚିତ ନୁହେଁ। ସେ

---

**ଦାଉଦ** ଇସ୍ରାୟେଲର ରାଜା। ଖ୍ରୀଷ୍ଟଙ୍କର ପ୍ରାୟଃ ୧୦୦୦ ବର୍ଷ ପୂର୍ବର ସମୟ।

ସବୁ ଲୋକଙ୍କ ପ୍ରତି ଦୟାଳୁ ହେବା ଉଚିତ। ସେ ଜଣେ
ଭଲ ଶିକ୍ଷକ ହେବା ଉଚିତ। ସେ ସହନଶୀଳ ହେଉ।
୨୫ଯେଉଁମାନେ ତାଙ୍କୁ ବିରୋଧ କରନ୍ତି, ସେମାନଙ୍କୁ ଭଦ୍ର
ଭାବରେ ଶିଖାଇବା ଉଚିତ। ହୁଏତ ପରମେଶ୍ୱର ସେମାନଙ୍କ
ହୃଦୟରେ ଗୋଟିଏ ପରିବର୍ତ୍ତନ ପ୍ରଦାନ କରିବେ, ଯାହାଦ୍ୱାରା
ସେମାନେ ସତ୍ୟକୁ ଗ୍ରହଣ କରିବେ। ୨୬ଶୟତାନ ସେମାନଙ୍କୁ
ଫାନ୍ଦରେ ପକାଇଛି ଓ ତା ଇଚ୍ଛା ଅନୁସାରେ କାମ
କରାଉଛି। ହୋଇପାରେ ଯେ ସେମାନେ ସଜାଗ ହେବେ
ଓ ଶୟତାନର ସେହି କାର୍ଯ୍ୟ ଦେଖିବେ। ତା'ପରେ
ସେମାନେ ଶୟତାନର ଫାନ୍ଦରୁ ମୁକ୍ତ ହେବେ।

## ଶେଷ ଦିନଗୁଡ଼ିକରେ

୩ ଏହା ମନେରଖ ଯେ ଶେଷ ଦିନଗୁଡ଼ିକରେ ଅନେକ
କଷ୍ଟକର ପରିସ୍ଥିତି ଆସିବ। ୨ସେହି ସମୟରେ
ଲୋକେ କେବଳ ନିଜ ନିଜକୁ ଓ ଧନକୁ ଭଲ ପାଇବେ।
ସେମାନେ ଅହଂକାରୀ ଓ ଉଦ୍ଧତ ହେବେ। ଅନ୍ୟ ଲୋକଙ୍କ
ବିରୁଦ୍ଧରେ ନିନ୍ଦାକଥା କହିବେ। ମାତାପିତାଙ୍କୁ ମାନିବେ
ନାହିଁ। ସେମାନେ ବିଶ୍ୱାସଘାତକ ହେବେ। ପରମେଶ୍ୱରଙ୍କ
ଇଚ୍ଛାନୁଯାୟୀ ଜୀବନଯାପନ କରିବେ ନାହିଁ। ୩ଅନ୍ୟମାନଙ୍କ
ଲାଗି ପ୍ରେମଭାବ ରଖିବେ ନାହିଁ। ସେମାନେ ଲୋକମାନଙ୍କୁ
କ୍ଷମା ଦେବା ପାଇଁ ମନା କରିବେ ଓ ଅନ୍ୟମାନଙ୍କ
ବିଷୟରେ ଖରାପ କଥା କହିବେ। ଆତ୍ମସଂଯମୀ ହେବେ
ନାହିଁ। ସେମାନେ କ୍ରୋଧୀ ଓ ହୀନମନା ହେବେ ଓ
ଉତ୍ତମ ବିଷୟଗୁଡ଼ିକୁ ଘୃଣା କରିବେ। ୪ଶେଷ ଦିନରେ
ଲୋକେ ନିଜ ସାଙ୍ଗମାନଙ୍କ ବିରୋଧରେ ଯିବେ। ବିଚାର ନ
କରି ମୂର୍ଖତାପୂର୍ଣ୍ଣ କାର୍ଯ୍ୟମାନ କରିବେ। ଆତ୍ମବଡ଼ିମା କରିବେ
ଓ ଗର୍ବୀ ହେବେ। ଲୋକେ ପରମେଶ୍ୱରଙ୍କୁ ଯେତେ ଭଲ
ପାଆନ୍ତି, ତାଠାରୁ ଅଧିକ ଆମୋଦ ପ୍ରମୋଦକୁ ଭଲ
ପାଇବେ। ୫ସେମାନେ ପରମେଶ୍ୱରଙ୍କ ସେବକ ହେବାର
ଛଳନା କରିବେ। କିନ୍ତୁ ତାଙ୍କ ଜୀବନପଦ୍ଧତି ଦ୍ୱାରା ଜଣାପଡ଼ିବ
ଯେ ସେମାନେ ପ୍ରକୃତରେ ପରମେଶ୍ୱରଙ୍କ ସେବା କରୁନାହାଁନ୍ତି।
ତୀମଥି , ତୁମ୍ଭେ ସେହି ଲୋକମାନଙ୍କ ଠାରୁ ଦୂରରେ
ରୁହ। ୬ଏମାନଙ୍କ ଭିତରୁ କେତେଜଣ ଘରକୁ ଘର ଯାଇ
ଦୁର୍ବଳମନା ସ୍ତ୍ରୀମାନଙ୍କୁ ବଶୀଭୂତ କରିବେ। ସେହି ସ୍ତ୍ରୀ
ଲୋକମାନେ ପାପରେ ପୂର୍ଣ୍ଣ। ସମସ୍ତ ପ୍ରକାର ମନ୍ଦ ଇଚ୍ଛା
ଦ୍ୱାରା ପରିଚାଳିତ ହେଉଥିବା ଯୋଗୁ ଏହି ସ୍ତ୍ରୀ ଲୋକମାନେ
ପାପରେ ପଡ଼ନ୍ତି। ୭ସେହି ସ୍ତ୍ରୀମାନେ ନୂତନ ଶିକ୍ଷାଗୁଡ଼ିକୁ
ଶିଖିବାକୁ ସର୍ବଦା ଚେଷ୍ଟା କରନ୍ତି, କିନ୍ତୁ ସେମାନେ
କେବେହେଲେ ସତ୍ୟକୁ ପୂର୍ଣ୍ଣ ଭାବରେ ବୁଝି ପାରନ୍ତି ନାହିଁ।
ଯନ୍ନିସ୍ ଓ ଯମ୍ବ୍ରିସ୍ କଥା ମନେପକାଅ। ୮ସେମାନେ
ମୋଶାଙ୍କୁ ବିରୋଧ କରିଥିଲେ। ସେହିଭଳି ଏହି ଲୋକମାନେ
ମଧ୍ୟ ସତ୍ୟର ବିରୋଧ କରନ୍ତି, ସେମାନଙ୍କର ମନ
ବିପଥଗାମୀ। ଈଶ୍ୱର ବିଶ୍ୱାସର ଅନୁସରଣ କରିବାରେ
ଏମାନେ ବିଫଳ ହୋଇଛନ୍ତି। ୯କିନ୍ତୁ ନିଜ କର୍ମରେ
ସେମାନେ ସଫଳକାମ ହେବେ ନାହିଁ। ସମସ୍ତେ ଦେଖିବେ
ଯେ ସେମାନଙ୍କର ମୂର୍ଖତା ପ୍ରକାଶିତ ହୋଇଛି। ଯନ୍ନିସ୍ ଓ
ଯମ୍ବ୍ରିସ୍ ସହିତ ମଧ୍ୟ ଏହା ଘଟିଥିଲା।

## ଶେଷ ଶିକ୍ଷା

୧୦କିନ୍ତୁ ତୁମ୍ଭେ ସମସ୍ତେ ମୋତେ ଜାଣିଛ। ଏହା ମଧ୍ୟ
ଜାଣିଛ ଯେ ମୁଁ କ'ଣ ଶିକ୍ଷା(ଉପଦେଶ) ଦିଏ ଓ କିପରି
ରହେ। ମୋ ଜୀବନର ଉଦ୍ଦେଶ୍ୟ ବିଷୟରେ ମଧ୍ୟ ତୁମ୍ଭେ
ଜାଣିଛ। ତୁମ୍ଭେ ମୋର ବିଶ୍ୱାସ, ଧୈର୍ଯ୍ୟ, ପ୍ରେମ ବିଷୟରେ
ଜାଣିଛ ଓ ଏହା ମଧ୍ୟ ଜାଣିଛ ଯେ ମୁଁ କେବେହେଲେ
ଚେଷ୍ଟା କରିବାରୁ ବିରତ ହୁଏ ନାହିଁ। ୧୧ତୁମ୍ଭେମାନେ ମୋ
ପ୍ରତି ନିର୍ଯ୍ୟାତନାଗୁଡ଼ିକ ଓ ମୋର ଦୁଃଖଗୁଡ଼ିକ ବିଷୟରେ
ଜାଣିଛ। ଆନ୍ତିୟଖିଆ, ଇକନିୟ ଓ ଲୁସ୍ତ୍ରାରେ ମୋ ପ୍ରତି
ଯାହା ସବୁ ଘଟିଲା, ତୁମ୍ଭେ ତାହା ଜାଣିଛ। ସେହି
ସ୍ଥାନଗୁଡ଼ିକରେ ମୁଁ କିପରି ନିର୍ଯ୍ୟାତନା ଭୋଗ କଲି, ତାହା
ତୁମ୍ଭେ ଜାଣିଛ। କିନ୍ତୁ ସେହିସବୁ କଷ୍ଟରୁ ପରମେଶ୍ୱର
ମୋତେ ରକ୍ଷା କଲେ। ୧୨ପରମେଶ୍ୱରଙ୍କ ଇଚ୍ଛାନୁଯାୟୀ
ଖ୍ରୀଷ୍ଟଯୀଶୁଙ୍କଠାରେ ବିଶ୍ୱାସପୂର୍ବକ ଜୀବନ ଅତିବାହିତ କରିବାକୁ
ଚାହୁଁଥିବା ପ୍ରତ୍ୟେକ ଲୋକ ନିର୍ଯ୍ୟାତିତ ହେବେ। ମନ୍ଦଲୋକେ
ଓ ଅନ୍ୟମାନଙ୍କୁ ଠକୁଥିବା ଲୋକେ ମନ୍ଦରୁ ମନ୍ଦ ହୋଇଯିବେ।
୧୩ସେମାନେ ଅନ୍ୟମାନଙ୍କୁ ଭ୍ରାନ୍ତ କରାଇବେ ଓ ନିଜେ
ଭ୍ରାନ୍ତ ହେବେ।

୧୪କିନ୍ତୁ ତୁମ୍ଭେ ଯେଉଁ ଉପଦେଶ ଶିଖିଛ, ସେଗୁଡ଼ିକୁ
ପାଳନ କରି ଚାଲ। ତୁମ୍ଭେ ଜାଣ ଯେ ସେହି ଶିକ୍ଷାଗୁଡ଼ିକ
ସତ୍ୟ। ଯେଉଁମାନେ ସେହି ଶିକ୍ଷାଗୁଡ଼ିକ ପ୍ରଦାନ କଲେ
ତାହାଙ୍କୁ ତୁମ୍ଭେ ବିଶ୍ୱାସ କରିପାରିବ। ୧୫ପିଲାବେଳୁ ତୁମ୍ଭେ
ପବିତ୍ର ଶାସ୍ତ୍ରଗୁଡ଼ିକୁ ଜାଣିଛ। ସେହି ଶାସ୍ତ୍ରଗୁଡ଼ିକ ତୁମ୍ଭକୁ
ଜ୍ଞାନୀ କରିପାରିବ ଓ ସେହି ଜ୍ଞାନ ଖ୍ରୀଷ୍ଟଯୀଶୁଙ୍କ ପ୍ରତି
ବିଶ୍ୱାସ ମାଧ୍ୟମରେ ମୁକ୍ତି ଆଡ଼କୁ ଆଗେଇନେବ। ୧୬ସବୁ
ଶାସ୍ତ୍ର ପରମେଶ୍ୱରଙ୍କ ଦ୍ୱାରା ଦିଆଯାଇଛି। ଏବଂ ତ୍ରୁଟି ପ୍ରକାଶ
କରିବା ପାଇଁ, ଭୁଲ୍ ସଂଶୋଧନ କରିବା ପାଇଁ, ଠିକ୍
ଭାବରେ ଜୀବନ ଧାରଣ କରିବାକୁ ଶିଖାଇବା ପାଇଁ ଏହା
ଉପଯୋଗୀ ଅଟେ। ୧୭ପରମେଶ୍ୱରଙ୍କ ସେବକ, ଶାସ୍ତ୍ରଗୁଡ଼ିକର
ବ୍ୟବହାର ଦ୍ୱାରା ସମସ୍ତ ଉତ୍ତମ କାର୍ଯ୍ୟ କରିବା ନିମନ୍ତେ
ସକ୍ଷମ ହେବ ଓ ତା'ର ପ୍ରତ୍ୟେକ ଆବଶ୍ୟକ ବିଷୟ
ପାଇବ।

୪ ପରମେଶ୍ୱର ଓ ଖ୍ରୀଷ୍ଟଯୀଶୁଙ୍କ ଆଗରେ ମୁଁ ତୁମ୍ଭକୁ
ଗୋଟିଏ ଆଦେଶ ଦେଉଛି। ଖ୍ରୀଷ୍ଟ ଯୀଶୁ ଜୀବିତ ଓ
ମୃତ ଉଭୟ ଲୋକମାନଙ୍କର ବିଚାର କରିବେ। ଯୀଶୁଙ୍କର
ଗୋଟିଏ ରାଜ୍ୟ ଅଛି ଓ ସେ ଆଉଥରେ ଆସୁଛନ୍ତି।
ଅତଏବ ମୁଁ ତୁମ୍ଭକୁ ଏହି ଆଦେଶ ଦେଉଛି। ୨ଲୋକମାନଙ୍କୁ
ସୁସମାଚାର ପ୍ରଚାର କର। ସବୁବେଳେ ପ୍ରସ୍ତୁତ ରୁହ।
ଲୋକମାନଙ୍କୁ କୁହ ଯେ ସେମାନେ କ'ଣ କରିବା ଉଚିତ,
ସେମାନେ ଭୁଲ କଲାବେଳେ ସେମାନଙ୍କୁ ଅନୁଯୋଗ କର
ଓ ସେମାନଙ୍କୁ ଉତ୍ସାହ ଦିଅ। ଅତି ଧୈର୍ଯ୍ୟ ସହକାରେ ଓ
ଯତ୍ନପୂର୍ବକ ଶିକ୍ଷା ଦ୍ୱାରା ଏହି ସମସ୍ତ ବିଷୟ କର। ୩ସମୟ
ଆସୁଛି, ଯେତେବେଳେ ଲୋକେ ସତ୍ ଶିକ୍ଷା ଶୁଣିବେ
ନାହିଁ। କିନ୍ତୁ ଲୋକେ ଅଧିକରୁ ଅଧିକ ନିଜ ମନପସନ୍ଦ
ଶିକ୍ଷା ସେମାନଙ୍କଠାରୁ ସଂଗ୍ରହ କରିବେ, ଯେଉଁମାନେ ସେମାନଙ୍କୁ
ସନ୍ତୁଷ୍ଟ କଲାଭଳି କଥା କହିବେ। ୪ଲୋକେ ସତକଥା
ଶୁଣିବା ବନ୍ଦ କରିଦେବେ। ମିଥ୍ୟା କାହାଣୀର ଶିକ୍ଷାଗୁଡ଼ିକ

ଅନୁସରଣ କରିବାକୁ ସେମାନେ ଆରମ୍ଭ କରିବେ। ୫କିନ୍ତୁ
ତୁମ୍ଭେ ସର୍ବଦା ନିଜକୁ ସଂଯମ କର। କ୍ଲେଶ ଆସିଲେ
ସେଗୁଡ଼ିକୁ ଗ୍ରହଣ କର। ସୁସମାଚାର ପ୍ରଚାର କାମ କରି
ଚାଲିଥାଅ। ପରମେଶ୍ୱରଙ୍କ ଜଣେ ସେବକ ଭାବରେ ସମସ୍ତ
କର୍ତ୍ତବ୍ୟ କରୁଥାଅ।

୬ମୋ ଜୀବନ ମୁଁ ପରମେଶ୍ୱରଙ୍କୁ ଉତ୍ସର୍ଗ କରିଦେଇଛି।
ମୋ ପାଇଁ ଏ ସଂସାର ଛାଡ଼ିବାର ସମୟ ଆସିଯାଇଛି। ମୁଁ
ଉତ୍ତମ ଯୁଦ୍ଧ ଲଢ଼ିଛି। ୭ମୁଁ ଦୌଡ଼ ପୂର୍ଣ୍ଣ କରିସାରିଛି। ମୁଁ
ବିଶ୍ୱାସ ବଜାୟ ରଖିଛି। ୮ଏବେ ବିଜୟ ମୁକୁଟ ମୋ
ଅପେକ୍ଷାରେ ଅଛି। ପରମେଶ୍ୱରଙ୍କ ସହିତ ଧାର୍ମିକ ହୋଇଥିବାରୁ
ମୁଁ ସେହି ମୁକୁଟଟି ପାଇବି। ପ୍ରଭୁ ନ୍ୟାୟପୂର୍ଣ୍ଣ ଭାବରେ
ବିଚାର କରନ୍ତି। ସେହି ମହାଦିନରେ* ସେ ମୋତେ
ବିଜୟ ମୁକୁଟ ପିନ୍ଧାଇବେ। କେବଳ ମୋତେ ନୁହେଁ,
ଯେଉଁମାନେ ତାହାଙ୍କର ଆଗମନ ଓ ତାହାଙ୍କୁ ଅପେକ୍ଷା
କରୁଛନ୍ତି, ସମସ୍ତଙ୍କୁ ସେ ବିଜୟ ମୁକୁଟ ପିନ୍ଧାଇବେ।

**ବ୍ୟକ୍ତିଗତ ସମ୍ବାଦ**

୯ଯେତେଶୀଘ୍ର ସମ୍ଭବ ମୋ ସହିତ ଦେଖା କରିବାକୁ
ଆସିବା ପାଇଁ ଚେଷ୍ଟା କର। ୧୦ଦୀମା ଏହି ସଂସାରକୁ
ଅଧିକ ଭଲ ପାଉଥିବାରୁ ମୋତେ ଛାଡ଼ି ଚାଲିଗଲେ। ସେ
ଥେସଲନୀକୀକୁ ଯାଇଛନ୍ତି। କ୍ରେସକେନ୍ସ୍ ଗାଲାତୀଆକୁ,
ତିତସ୍ ଦଲ୍ମତିଆକୁ ଯାଇଛନ୍ତି। ୧୧ଏବେ ମୋ ସହିତ
କେବଳ ଲୂକ ଅଛନ୍ତି। ତୁମ୍ଭେ ଆସିଲାବେଳେ ମାର୍କଙ୍କୁ ତୁମ୍ଭ
ସହିତ ନେଇ ଆସିବ। ସେ ଏଠାରେ ମୋ କାମରେ
ଅତ୍ୟନ୍ତ ଆବଶ୍ୟକୀୟ ହୋଇପାରିବେ। ୧୨ତୁଖିକଙ୍କୁ ମୁଁ
ଏଫିସ(ନଗର) କୁ ପଠାଇଅଛି।

୧୩ମୁଁ ଯେତେବେଳେ ତ୍ରୋୟାରେ ଥିଲି, ମୁଁ କାର୍ପଙ୍କ
ପାଖରେ ମୋର ଏକ ଭଲ ଜାମା ଛାଡ଼ି ଆସିଥିଲି।
ଅତଏବ ତୁମ୍ଭେ ଯେତେବେଳେ ଆସିବ, ତାହା ମୋ ପାଇଁ
ନେଇ ଆସିବ। ମୋ ବହିଗୁଡ଼ିକୁ ମଧ୍ୟ ଆଣିବ। ଚର୍ମପତ୍ର*
ଉପରେ ଲିଖିତ ବହିଗୁଡ଼ିକ ବିଶେଷଭାବରେ ମୋର ଦରକାର।
୧୪କ'ଣ ଆଲେକଜାଣ୍ଡର ମୋର ବହୁତ ଅନିଷ୍ଟ କରିଛି।
ପ୍ରଭୁ ତାହାକୁ ଏହି କାର୍ଯ୍ୟଗୁଡ଼ିକ ଲାଗି ଦଣ୍ଡ ଦେବେ।
୧୫ତୁମ୍ଭେ ମଧ୍ୟ ସତର୍କ ରୁହ, ଯେପରି ସେ ତୁମ୍ଭର କ୍ଷତି ନ
କରେ। ସେ ଆମ୍ଭ ଶିକ୍ଷାଗୁଡ଼ିକର ଘୋର ପ୍ରତିରୋଧ
କରିଥିଲା।

୧୬ପ୍ରଥମଥର ନିଜକୁ ରକ୍ଷା କରିବା ପାଇଁ ମୁଁ ଅଦାଲତରେ
ଠିଆ ହେଲାବେଳେ କୌଣସି ଲୋକ ମୋତେ ସମର୍ଥନ
କରିବାକୁ ଆଗେଇ ଆସି ନ ଥିଲା। ସମସ୍ତେ ମୋତେ
ଛାଡ଼ି ଚାଲିଗଲେ। ମୁଁ ପ୍ରାର୍ଥନା କରେ ଯେ, ପ୍ରଭୁ
ପରମେଶ୍ୱର ସେମାନଙ୍କୁ କ୍ଷମା କରନ୍ତୁ। କିନ୍ତୁ ପ୍ରଭୁ ମୋ
ସହିତ ଥିଲେ। ୧୭ଅଣଯିହୂଦୀମାନଙ୍କୁ ସୁସମାଚାର ପୂର୍ଣ୍ଣ
ଭାବରେ ପ୍ରଚାର କରିବା ବେଳେ ପ୍ରଭୁ ମୋତେ ଶକ୍ତି
ପ୍ରଦାନ କଲେ। ସମସ୍ତ ଅଣଯିହୂଦୀ ଲୋକେ ସୁସମାଚାର
ଶୁଣନ୍ତୁ ବୋଲି ପ୍ରଭୁ ଚାହିଁଥିଲେ। ମୁଁ ସିଂହ ମୁଖରୁ ରକ୍ଷା
ପାଇଲି। ୧୮ଯେତେବେଳେ କୌଣସି ଲୋକ ମୋର କ୍ଷତି
କରିବା ପାଇଁ ଚେଷ୍ଟା କରିବ, ପ୍ରଭୁ ମୋତେ ରକ୍ଷା
କରିବେ। ସେ ମୋତେ ନିରାପଦରେ ତାହାଙ୍କର ସ୍ୱର୍ଗରାଜ୍ୟକୁ
ନେଇଯିବେ। ପ୍ରଭୁଙ୍କର ମହିମା ସଦାସର୍ବଦା ପାଇଁ ରହିଥାଉ।

**ଶେଷ ଅଭିନନ୍ଦନ**

୧୯ପ୍ରୀସ୍କା ଓ ଆକ୍ୱିଲାଙ୍କୁ ତଥା ଅନୀସିଫରଙ୍କ ପରିବାର
ଲୋକମାନଙ୍କୁ ମୋର ନମସ୍କାର ଜଣାଇବ। ୨୦ଏରାଷ୍ଟ କରିନ୍ଥ
ନଗରଠାରେ ରହିଛନ୍ତି ଏବଂ ତ୍ରଫିମଙ୍କୁ ମୁଁ ମୀଲୀତଠାରେ
ଛାଡ଼ି ଆସିଛି କାରଣ ସେ ଅସୁସ୍ଥ ଥିଲେ। ୨୧ଶୀତଦିନ
ପୂର୍ବରୁ ମୋ ପାଖକୁ ଆସିବା ପାଇଁ ପୂର୍ଣ୍ଣ ଚେଷ୍ଟା କର।
ଇଉବୁଲ, ପୁଦେନ୍ସ୍, ଲିନ, କ୍ଳୌଦିୟା ଓ ଅନ୍ୟସମସ୍ତ
ଭାଇଭଉଣୀ ତୁମ୍ଭକୁ ନମସ୍କାର ଜଣାଉଛନ୍ତି।

୨୨ତୁମ୍ଭର ଆତ୍ମା ସହିତ ପ୍ରଭୁ ରୁହନ୍ତୁ। ତୁମ୍ଭ ସମସ୍ତଙ୍କ
ଉପରେ ତାହାଙ୍କର ଅନୁଗ୍ରହ ରହୁ।

---

**ମହାଦିନ** ଯେଉଁଦିନ ସେ (ଯୀଶୁ) ସବୁ ଲୋକଙ୍କ ବିଚାର ପାଇଁ ଆସିବେ ଓ ନିଜ ଲୋକମାନଙ୍କୁ ତାଙ୍କ ସହିତ ରହିବା ପାଇଁ ନେଇ ଯିବେ।

**ଚର୍ମ-ପତ୍ର** ମେଣ୍ଢା ଚର୍ମ, ଏହା ପୂର୍ବକାଳରେ କାଗଜଭଳି ଲେଖିବା କାମରେ ବ୍ୟବହୃତ ହେଉଥିଲା।

# ତିତସଙ୍କ ନିକଟକୁ ପ୍ରେରିତ ପାଉଲଙ୍କ ପତ୍ର

୧ ପରମେଶ୍ୱରଙ୍କ ସେବକ, ଓ ଯୀଶୁଖ୍ରୀଷ୍ଟଙ୍କ ପ୍ରେରିତ
ପାଉଲଙ୍କଠାରୁ ପତ୍ର। ପରମେଶ୍ୱରଙ୍କ ମନୋନୀତ
ଲୋକମାନଙ୍କ ବିଶ୍ୱାସରେ ସାହାଯ୍ୟ କରିବା ପାଇଁ ମୋତେ
ପଠାଯାଇଛି। ସତ୍ୟ ଜାଣିବା ପାଇଁ ସେହି ଲୋକମାନଙ୍କୁ
ସାହାଯ୍ୟ କରିବା ପାଇଁ ମୋତେ ପଠାଯାଇଛି। ପରମେଶ୍ୱରଙ୍କୁ
ଲୋକେ କିପରି ସେବା କରିବେ, ତାହା ସେହି ସତ୍ୟ
ଦେଖାଇ ଥାଏ। ୨ଅନନ୍ତଜୀବନ ପାଇଁ ଆମ୍ଭର ଆଶାରୁ
ସେହି ବିଶ୍ୱାସ ଓ ଜ୍ଞାନ ଆସିଛି। ସମୟ ଆରମ୍ଭ ହେବା
ପୂର୍ବରୁ ପରମେଶ୍ୱର ସେହି ଅନନ୍ତ ଜୀବନର ପ୍ରତିଶ୍ରୁତି
ଦେଇଥିଲେ ଓ ପରମେଶ୍ୱର ମିଛ କହନ୍ତି ନାହିଁ। ୩ଉଚିତ
ସମୟରେ ପରମେଶ୍ୱର ସେହି ଜୀବନ ବିଷୟରେ ସଂସାରକୁ
ଜଣାଇଲେ। ପ୍ରଚାର ଦ୍ୱାରା ପରମେଶ୍ୱର ଜଗତକୁ କହିଲେ।
ପରମେଶ୍ୱର ମୋତେ ସେହି କାମର ଦାୟିତ୍ୱ ଦେଲେ।
ଆମ୍ଭର ତ୍ରାଣକର୍ତ୍ତା ପରମେଶ୍ୱର ଆଦେଶ ଦେଇଥିବାରୁ ମୁଁ
ସେଗୁଡ଼ିକର ପ୍ରଚାର କଲି।
୪ଏହି ପତ୍ର ତିତସଙ୍କୁ ଲେଖାଯାଉଛି। ତୁମ୍ଭେ ସମବିଶ୍ୱାସରେ
ମୋର ପ୍ରକୃତ ପୁତ୍ର ଭଳି।
ଆମ୍ଭର ପରମପିତା ପରମେଶ୍ୱର ଖ୍ରୀଷ୍ଟଯୀଶୁ, ଆମ୍ଭର
ତ୍ରାଣକର୍ତ୍ତାଙ୍କ ଠାରୁ ତୁମ୍ଭକୁ ଅନୁଗ୍ରହ ଓ ଶାନ୍ତି ମିଳୁ।

## କ୍ରୀତୀଠାରେ ତିତସଙ୍କ କାର୍ଯ୍ୟ

୫ମୁଁ ତୁମ୍ଭକୁ କ୍ରୀତୀ ଠାରେ ଏବେ ସୁଦ୍ଧା ଯେଉଁ କାମ
ବାକି ରହି ଯାଇଛି, ସେଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ପାଇଁ ଛାଡ଼ି
ଆସିଥିଲି। ମୁଁ ସେଠାରେ ତୁମ୍ଭକୁ ଏଥିପାଇଁ ମଧ୍ୟ ଛାଡ଼ି
ଆସିଥିଲି ଯେ ତୁମ୍ଭେ ପ୍ରତ୍ୟେକ ନଗରରେ ପ୍ରାଚୀନ ହେବା
ଲୋକମାନଙ୍କୁ ବାଛି ପାରିବ। ୬ଏକ ପ୍ରାଚୀନ ହେବା ପାଇଁ
ଜଣେ ଲୋକର ଯେଉଁ ଗୁଣ ଥିବା ଦରକାର, ସେଗୁଡ଼ିକ
ହେଲା ସେ ନିର୍ଦ୍ଦୋଷ ଥିବେ। ତାହାଙ୍କର ଜଣେ ମାତ୍ର ସ୍ତ୍ରୀ
ଥିବେ। ତାହାଙ୍କର ସନ୍ତାନମାନେ ବିଶ୍ୱାସୀ ହୋଇଥିବେ।
ସେମାନେ ହିଂସ୍ର ଜୀବନ ଯାପନ କରୁ ନ ଥିବେ ଓ
ଅନୁଶାସନହୀନ ନ ଥିବେ। ୭ଏହି ପ୍ରାଚୀନମାନଙ୍କର କାମ
ହେଉଛି ପରମେଶ୍ୱରଙ୍କ କାମର ଯତ୍ନ ନେବା, ଅତଏବ ସେ
ନିର୍ଦ୍ଦୋଷ ହେବା କଥା। ସେ ଗର୍ବୀ, ସ୍ୱାର୍ଥୀ ଓ ଶୀଘ୍ର
କ୍ରୋଧୀ ହୋଇ ନ ଥିବେ। ସେ ଅତ୍ୟଧିକ ମଦ୍ୟ ପାନ
କରୁ ନ ଥିବେ। ସେ କଳହ ପ୍ରିୟ ହୋଇ ନ ଥିବେ।
ଅନ୍ୟମାନଙ୍କୁ ଠକି ଧନୀ ହେବା ପାଇଁ ସର୍ବଦା ଚେଷ୍ଟା କରୁ
ନ ଥିବେ। ୮ନିଜ ଘରେ ଲୋକମାନଙ୍କୁ ସ୍ୱାଗତ କରି
ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଥିବେ। ସେ ଉତ୍ତମ
ବିଷୟକୁ ପ୍ରେମ କରୁଥିବେ, ଜ୍ଞାନୀ ହୋଇଥିବେ, ଧାର୍ମିକଭାବେ
ଜୀବନଯାପନ କରୁଥିବେ, ପବିତ୍ର ହୋଇଥିବେ ଓ ନିଜକୁ
ସଂଯମ କରି ପାରୁଥିବେ। ଆମ୍ଭେ ସତ୍ୟର ଯେଉଁ ରୂପରେ
ଶିକ୍ଷା ପ୍ରଦାନ କରିଛୁ, ଜଣେ ପ୍ରାଚୀନ, ନିଷ୍ଠାପର ଭାବରେ
ତାହା ପାଳନ କରୁଥିବେ। ୯ପ୍ରକୃତ ଶିକ୍ଷାକୁ ବ୍ୟବହାର କରି
ଜଣେ ପ୍ରାଚୀନ ଲୋକମାନଙ୍କୁ ସାହାଯ୍ୟ କରିବାରେ ସକ୍ଷମ
ହୋଇଥିବେ ଏବଂ ପ୍ରକୃତ ଶିକ୍ଷାର ବିରୋଧୀମାନଙ୍କୁ ସେ
ଯେପରି ଦେଖାଇ ଦେବାକୁ ସକ୍ଷମ ହେବେ ଯେ ସେମାନେ
ଭୁଲ ଅଟନ୍ତି।
୧୦ଅନେକ ଲୋକ ଏପରି ଅଛନ୍ତି, ଯେଉଁମାନେ ମାନିବାକୁ
ମନା କରନ୍ତି, ଅବାନ୍ତର କଥାମାନ କୁହନ୍ତି ଓ ଅନ୍ୟ
ଲୋକମାନଙ୍କୁ ଭୁଲ ବାଟରେ ପରିଚାଳିତ କରନ୍ତି। ମୁଁ
ବିଶେଷ ଭାବରେ ସେ ଲୋକମାନଙ୍କ ବିଷୟରେ କହୁଛି,
ଯେଉଁମାନେ ସମସ୍ତ ଅଣଯିହୂଦୀମାନଙ୍କୁ ସୁନ୍ନତ ହେବା ପାଇଁ
କହନ୍ତି। ୧୧ଜଣେ ପ୍ରାଚୀନ ସେମାନଙ୍କର ଭୁଲ ବିଷୟରେ
ତାହାଙ୍କୁ ଅବଗତ କରାଇବାକୁ ସକ୍ଷମ ଥିବେ ଓ ସେମାନଙ୍କୁ
ଏପରି ଅବାନ୍ତର କଥା କହିବାରୁ ବନ୍ଦ କରାଇପାରୁଥିବେ।
ସେହି ଲୋକମାନେ କୁଶିକ୍ଷାର ଉପଦେଶ ଦେଇ ସମ୍ପୂର୍ଣ୍ଣ
ପରିବାରଗୁଡ଼ିକୁ ନଷ୍ଟ କରୁଛନ୍ତି। ସେମାନେ କେବଳ
ଲୋକମାନଙ୍କୁ ଠକିବା ପାଇଁ ଏଭଳି ଶିକ୍ଷା ଦିଅନ୍ତି କାରଣ
ସେମାନେ ଧନ ଅର୍ଜ୍ଜନ କରିବାକୁ ଇଚ୍ଛା କରନ୍ତି। ୧୨ତାହାଙ୍କ
ନିଜ ଲୋକମାନଙ୍କ ମଧ୍ୟରୁ ଜଣେ, ଯିଏ କି ଭବିଷ୍ୟଦ୍‌ବକ୍ତା,
କହିଛନ୍ତି: "କ୍ରୀତୀର ଲୋକେ ସର୍ବଦା ମିଛ କୁହନ୍ତି।
ସେମାନେ ଦୁଷ୍ଟ ପଶୁ ଓ ଅଳସୁଆ। ସେମାନେ ଖାଇବା
ଛଡ଼ା ଅନ୍ୟ କିଛି କରନ୍ତି ନାହିଁ।" ୧୩ସେହି ଭାବବାଦୀଙ୍କ
କଥା ସତ। ଅତଏବ ସେମାନଙ୍କୁ କୁହ ଯେ ସେମାନେ
ଭୁଲ କରୁଛନ୍ତି। ତୁମ୍ଭେ ତାହାଙ୍କ ପ୍ରତି କଠୋର ହେବା
ଉଚିତ। ତା'ହେଲେ ସେମାନେ ବିଶ୍ୱାସରେ ଦୃଢ଼ ହେବେ।
୧୪ତା'ହେଲେ ସେମାନେ ଯିହୂଦୀ ଗପଗୁଡ଼ିକୁ ଗ୍ରହଣ କରିବେ
ନାହିଁ କି ସତ୍ୟକୁ ଗ୍ରହଣ କରୁ ନ ଥିବା ଲୋକଙ୍କ
ଆଦେଶ ପାଳନ କରିବେ ନାହିଁ। ୧୫ଯେଉଁମାନେ ପବିତ୍ର,
ତାହାଙ୍କ ପାଇଁ ସବୁ କିଛି ପବିତ୍ର। କିନ୍ତୁ ଯେଉଁମାନେ
ପାପୀ ଓ ଅବିଶ୍ୱାସୀ, ସେମାନଙ୍କ ଲାଗି କିଛି ହେଲେ
ପବିତ୍ର ନୁହେଁ। ସେମାନଙ୍କର ଚିନ୍ତା ପାପରେ ଦୂଷିତ
ହୋଇଯାଇଛି ଓ ଠିକ୍ କ'ଣ, ସେ ସମ୍ବନ୍ଧରେ ସେମାନଙ୍କର
ଜ୍ଞାନ ନଷ୍ଟ ହୋଇ ଯାଇଛି। ୧୬ସେ ଲୋକମାନେ କୁହନ୍ତି
ଯେ ସେମାନେ ପରମେଶ୍ୱରଙ୍କୁ ଜାଣିଛନ୍ତି। କିନ୍ତୁ ଯେଉଁସବୁ
ମନ୍ଦ କାମ ସେମାନେ କରୁଛନ୍ତି, ସେଥିରୁ ଜଣାଯାଏ ଯେ
ସେମାନେ ପରମେଶ୍ୱରଙ୍କୁ ଗ୍ରହଣ କରନ୍ତି ନାହିଁ। ସେମାନେ

ଭୟଙ୍କର ଲୋକ, ଆଜ୍ଞା ବିରୋଧୀ ଓ କୌଣସି ଭଲ
କାମ ପାଇଁ ଅଯୋଗ୍ୟ।

### ପ୍ରକୃତ ଶିକ୍ଷାର ଅନୁସରଣ

୨ ପ୍ରକୃତ ଶିକ୍ଷା(ଉପଦେଶ)ର ଅନୁସରଣ କରିବା ପାଇଁ
ତୁମ୍ଭେ ଲୋକଙ୍କୁ କହିବା କଥା। ୨ବୃଦ୍ଧ ଲୋକମାନଙ୍କୁ
ଶିକ୍ଷା ଦିଅ ଯେ ସେମାନେ ଆତ୍ମସଂଯମୀ, ଗମ୍ଭୀର ଓ ଜ୍ଞାନୀ
ହୁଅନ୍ତୁ। ସେମାନେ ବିଶ୍ୱାସରେ, ପ୍ରେମରେ ଓ ଧୈର୍ଯ୍ୟରେ
ଦୃଢ଼ ହେବା ଉଚିତ।
୩ବୃଦ୍ଧା ନାରୀମାନଙ୍କୁ ଶିକ୍ଷା ଦିଅ ଯେ ସେମାନେ
ଜୀବନପ୍ରଣାଳୀରେ ପବିତ୍ର ହୁଅନ୍ତୁ। ସେମାନେ ଅନ୍ୟମାନଙ୍କ
ବିରୁଦ୍ଧରେ କୁହନ୍ତୁ ନାହିଁ ଓ ଅଧିକ ମାତ୍ରାରେ ମଦ୍ୟପାନର
ଅଭ୍ୟାସ ରଖନ୍ତୁ ନାହିଁ। ସେମାନେ ଭଲ କଥାର ଶିକ୍ଷା
ଦିଅନ୍ତୁ। ୪ଏପରି ଭାବରେ ସେମାନେ ଯୁବତୀମାନଙ୍କୁ
ସେମାନଙ୍କର ସ୍ୱାମୀ ଓ ସନ୍ତାନମାନଙ୍କୁ ଭଲ ପାଇବା
ଶିଖାଇ ପାରିବେ। ୫ସେମାନେ ଯୁବତୀମାନଙ୍କୁ ଶିଖାଇ
ପାରିବେ ଯେ ସେମାନେ ଜ୍ଞାନୀ ଓ ପବିତ୍ର ହୁଅନ୍ତୁ, ନିଜ
ଘରର ଯତ୍ନ ନିଅନ୍ତୁ, ଦୟାଳୁ ହୁଅନ୍ତୁ ଏବଂ ନିଜ ସ୍ୱାମୀଙ୍କର
ଆଜ୍ଞାକାରିଣୀ ହୁଅନ୍ତୁ। ତା'ହେଲେ କୌଣସି ଲୋକ ଆମ୍ଭକୁ
ଦିଆଯାଇଥିବା ପରମେଶ୍ୱରଙ୍କ ଶିକ୍ଷାର ସମାଲୋଚନା କରିପାରିବ
ନାହିଁ।
୬ସେହିଭଳି ଯୁବକମାନଙ୍କୁ କୁହ ଯେ ସେମାନେ ଜ୍ଞାନୀ
ହୁଅନ୍ତୁ। ୭ତୁମ୍ଭେ ନିଜେ ଯୁବକମାନଙ୍କ ପାଇଁ ପ୍ରତ୍ୟେକ
ଭାବରେ ଆଦର୍ଶ ହେବା ପାଇଁ ଉତ୍ତମ କାମ କରିବା
ଦରକାର। ତୁମ୍ଭର ଶିକ୍ଷା ଦେବାରେ ତୁମ୍ଭେ ସଚ୍ଚୋଟ ଓ
ଗମ୍ଭୀର ରହିବା ଉଚିତ। ୮ତୁମ୍ଭେ ଯେପରି ସମାଲୋଚିତ ନ
ହୁଅ, ସେଥିପାଇଁ ତୁମ୍ଭେ ସତ କୁହ। ତା'ହେଲେ ଜଣେ
ବିରୋଧୀ ମଧ୍ୟ ଲଜ୍ଜା ବୋଧ କରିବ କାରଣ ସେ ଆମ୍ଭ
ବିରୁଦ୍ଧରେ କୌଣସି ମନ୍ଦ ବିଷୟ ପାଇବ ନାହିଁ।
୯ଦାସମାନଙ୍କୁ ମଧ୍ୟ ସେମାନଙ୍କର ମାଲିକମାନଙ୍କର ଆଜ୍ଞା
ସର୍ବଦା ପାଳନ କରିବାକୁ କୁହ। ସେମାନେ ମାଲିକମାନଙ୍କୁ
ଖୁସି ରଖିବେ, ସେମାନଙ୍କ ସହିତ ଯୁକ୍ତିତର୍କ କରିବେ
ନାହିଁ। ୧୦ମାଲିକଙ୍କର ଚୋରି କରିବେ ନାହିଁ, ଏବଂ
ସେମାନେ ପ୍ରମାଣିତ କରିବେ ଯେ ସେମାନେ ବିଶ୍ୱାସଯୋଗ୍ୟ
ଅଟନ୍ତି। ଦାସମାନେ ନିଜର ପ୍ରତ୍ୟେକ କାମରେ ଏହା
ପ୍ରମାଣିତ କରିବେ ଯେ ଆମ୍ଭର ତ୍ରାଣକର୍ତ୍ତା ପରମେଶ୍ୱରଙ୍କ
ଶିକ୍ଷା ଭଲ ଅଟେ।
୧୧ପରମେଶ୍ୱରଙ୍କ ଅନୁଗ୍ରହ ମିଳିଥିବାରୁ ଆମ୍ଭେ ସେହିଭଳି
ଜୀବନଯାପନ କରିବା କଥା। ସେହି ଅନୁଗ୍ରହ ପ୍ରତ୍ୟେକ
ଲୋକଙ୍କୁ ଉଦ୍ଧାର କରିପାରେ। ୧୨ସେହି ଅନୁଗ୍ରହ ଆମ୍ଭକୁ
ମିଳିଛି। ସେହି ଅନୁଗ୍ରହ ପରମେଶ୍ୱରଙ୍କ ବିରୋଧୀ ନ
ହେବା ଓ ସଂସାର ଚାହୁଁ ଥିବା ମନ୍ଦକାମ ନ କରିବା ପାଇଁ
ଶିକ୍ଷା ଦିଏ। ସେହି ଅନୁଗ୍ରହ ଏହି ସଂସାରରେ ଜ୍ଞାନରେ
ଧାର୍ମିକ ଓ ନ୍ୟାୟ ମାର୍ଗରେ ରହିବା ଶିଖାଏ। ୧୩ଆମ୍ଭର
ମହାନ୍ ପରମେଶ୍ୱର ଓ ତ୍ରାଣକର୍ତ୍ତା ଯୀଶୁଖ୍ରୀଷ୍ଟଙ୍କ ଆସିବା
ବାଟକୁ ଚାହିଁ ରହିଥିଲା ବେଳେ ଆମ୍ଭେ ଏହିଭଳି ରହିବା
ଦରକାର। ସେ ଆମ୍ଭମାନଙ୍କର ମହାନ୍ ଭରସା ଓ ସେ
ଗୌରବରେ ଆସିବେ। ୧୪ସେ ଆମ୍ଭ ପାଇଁ ନିଜକୁ ଦେଲେ।
ଆମ୍ଭକୁ ସମସ୍ତ ମନ୍ଦରୁ ମୁକ୍ତ କରିବା ପାଇଁ ଏବଂ ଆମ୍ଭକୁ
ଜଣେ ପବିତ୍ର ଜାତି ଓ କେବଳ ତାହାଙ୍କ ଭଲ ବ୍ୟକ୍ତିସମୂହ
ଭାବରେ ଗଢ଼ିବା ପାଇଁ ସେ ମଲେ। ଏହି ପବିତ୍ର
ଲୋକମାନେ ସର୍ବଦା ଭଲ କାମ କରିବା ପାଇଁ ଇଚ୍ଛା
କରନ୍ତି।
୧୫ଲୋକମାନଙ୍କୁ ଏହି କଥାଗୁଡ଼ିକ କୁହ। ତୁମ୍ଭର ପୂର୍ଣ୍ଣ
କ୍ଷମତା ରହିଛି, ତେଣୁ ଲୋକମାନଙ୍କୁ ଶକ୍ତିଶାଳୀ କରିବା
ପାଇଁ ଓ ସେମାନେ ଯାହା କରୁଛନ୍ତି, ତାହା ଭୁଲ ବୋଲି
କହିବା ପାଇଁ ତୁମ୍ଭର କ୍ଷମତାର ବ୍ୟବହାର କର। କୌଣସି
ଲୋକ ଯେପରି ତୁମ୍ଭ ସହିତ ଏଭଳି ବ୍ୟବହାର ନ କରେ,
ଯାହା କି ତୁମ୍ଭକୁ ଗୁରୁତ୍ୱହୀନ କରିଦେବ।

### ଜୀବନଯାପନର ଉତ୍ତମ ରୀତି

୩ ଲୋକମାନଙ୍କୁ ସର୍ବଦା ଏହିଗୁଡ଼ିକ କରିବା ପାଇଁ
ମନେ ରଖିବାକୁ କୁହ: ସେମାନେ ସରକାରୀ
ଅଧିକାରୀମାନଙ୍କ ଅଧୀନରେ ରୁହନ୍ତୁ, ସେମାନଙ୍କ ଆଜ୍ଞା
ପାଳନ କରନ୍ତୁ ଓ ଭଲ କାମ କରିବା ପାଇଁ ପ୍ରସ୍ତୁତ
ଥାଆନ୍ତୁ; ୨ଅନ୍ୟମାନଙ୍କ ବିଷୟରେ ଖରାପ କଥା କହନ୍ତୁ
ନାହିଁ, ଅନ୍ୟ ଲୋକମାନଙ୍କ ସହିତ ଶାନ୍ତିରେ ରୁହନ୍ତୁ;
ଧୈର୍ଯ୍ୟବାନ ଓ ସବୁ ଲୋକଙ୍କ ପ୍ରତି ଭଦ୍ରତା ପ୍ରଦର୍ଶନ
କରନ୍ତୁ। ସମସ୍ତ ଲୋକଙ୍କ ପ୍ରତି ଏସବୁ କରିବା ପାଇଁ
ବିଶ୍ୱାସୀମାନଙ୍କୁ କୁହ।
୩ଅତୀତରେ ଆମ୍ଭେ ମଧ୍ୟ ମୂର୍ଖ ଥିଲୁ। ଆମ୍ଭେ ଆଜ୍ଞାପାଳନ
କରୁ ନ ଥିଲୁ, ଭୁଲ କାମ କରୁଥିଲୁ, ଆମ୍ଭେ ସମସ୍ତ
ପ୍ରକାର ଶାରୀରିକ କାମନା ଓ ଭୋଗର ଦାସ ଥିଲୁ।
ଆମ୍ଭେ ଈର୍ଷାଳୁ ଓ ଦ୍ୱେଷପୂର୍ଣ୍ଣ ଜୀବନ ଯାପନ କରୁଥିଲୁ।
ଲୋକେ ଆମ୍ଭକୁ ଘୃଣା କରୁଥିଲେ ଓ ଆମ୍ଭେ ପରସ୍ପରକୁ
ଘୃଣା କରୁଥିଲୁ। ୪କିନ୍ତୁ ଯେତେବେଳେ ଆମ୍ଭର ତ୍ରାଣକର୍ତ୍ତା
ପରମେଶ୍ୱରଙ୍କ ଦୟା ଓ ପ୍ରେମ ପ୍ରକାଶିତ ହେଲା, ସେତେବେଳେ
ସେ ନିଜ କୃପା ଦ୍ୱାରା ଆମ୍ଭକୁ ରକ୍ଷା କଲେ। ୫ପରମେଶ୍ୱରଙ୍କ
ସହିତ ସୁସଂପର୍କ ରଖିବା ପାଇଁ ଆମ୍ଭେ କରିଥିବା ଉତ୍ତମ
କାର୍ଯ୍ୟଗୁଡ଼ିକ ହେତୁ ଆମ୍ଭେ ରକ୍ଷା ପାଇ ନ ଥିଲୁ। ସେ
ଆମ୍ଭକୁ ଧୋଇ କରି ନୂଆ ମଣିଷ କରିଅଛନ୍ତି। ଏହି
ଉଦ୍ଧାର ଓ ନୂତନତା ପବିତ୍ର ଆତ୍ମାଙ୍କ ମାଧ୍ୟମରେ ଆସିଥିଲା।
୬ପରମେଶ୍ୱର ଆମ୍ଭର ତ୍ରାଣକର୍ତ୍ତା ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ
ସେହି ପବିତ୍ର ଆତ୍ମାଙ୍କୁ ପୂର୍ଣ୍ଣଭାବରେ ଆମ୍ଭ ଉପରେ
ଢାଳିଲେ। ୭ତାହାଙ୍କ କୃପା (ଦୟା) ପାଇଁ ଆମ୍ଭେ ପରମେଶ୍ୱରଙ୍କ
ପ୍ରତି ଧାର୍ମିକ ହେଲୁ। ଆମ୍ଭେ ଯେପରି ଅନନ୍ତଜୀବନ
ପାଇବୁ, ସେଥିପାଇଁ ପରମେଶ୍ୱର ଆମ୍ଭକୁ ପବିତ୍ରଆତ୍ମା ଦାନ
କଲେ। ୮ତାହାହିଁ ଆମ୍ଭର ଭରସା। ଏହି ଶିକ୍ଷା ବିଶ୍ୱାସଯୋଗ୍ୟ
ଅଟେ।
ମୁଁ ଚାହେଁ ଯେ ଲୋକେ ଏହି ବିଷୟ ବୁଝନ୍ତୁ ବୋଲି
ତୁମ୍ଭେ ନିଶ୍ଚିତ ହୁଅ। ତା'ହେଲେ ପରମେଶ୍ୱରଙ୍କୁ ବିଶ୍ୱାସ
କରୁଥିବା ଲୋକେ, ଭଲ କାମଗୁଡ଼ିକ କରିବା ପାଇଁ ନିଜ
ଜୀବନକୁ ନିୟୋଜିତ କରିବା ବିଷୟରେ ଆଗ୍ରହୀ ହେବେ।

ଏହି କଥାଗୁଡ଼ିକ ଭଲ ଓ ସବୁ ଲୋକଙ୍କୁ ସାହାଯ୍ୟ
କରିବ। ୯ମୂର୍ଖତାପୂର୍ଣ୍ଣ ତର୍କବିତର୍କ, ବଂଶାବଳୀ ବିଷୟରେ
ଯୁକ୍ତି, ଝଗଡ଼ା, ମୋଶାଙ୍କ ବ୍ୟବସ୍ଥା ଶିକ୍ଷାଗୁଡ଼ିକ ବିଷୟକ
ସଂଘର୍ଷ ଠାରୁ ଦୂରରେ ରୁହ। ସେଗୁଡ଼ିକ ମୂଲ୍ୟହୀନ ଓ
ଲୋକମାନଙ୍କୁ ସାହାଯ୍ୟ କରେ ନାହିଁ। ୧୦ଯଦି କିଏ
ତର୍କବିତର୍କ କରେ, ତା'ହେଲେ ତାହାକୁ ସତର୍କ କରିଦିଅ।
ସେ ଯଦି ତର୍କବିତର୍କ ଜାରି ରଖେ, ତା'ହେଲେ ତାହାକୁ
ଆଉ ଥରେ ସତର୍କ କର। ୧୧ଯଦି ତା'ପରେ ମଧ୍ୟ ସେ
ପୁନଃ ତର୍କବିତର୍କ କରେ, ତା'ସହିତ ସମ୍ପର୍କ ରଖ ନାହିଁ।
ତୁମ୍ଭେ ଜାଣି ରଖ ଯେ ସେଭଳି ଲୋକ ମନ୍ଦ ଓ ପାପୀ।
ତାହାର ପାପ ପ୍ରମାଣିତ କରେ ଯେ ସେ ହେଉଛି
ଦୋଷୀ।

**ମନେ ରଖିବା ପାଇଁ କେତୋଟି କଥା**

୧୨ମୁଁ ତୁମ୍ଭମାନଙ୍କ ପାଖକୁ ଆର୍ତ୍ତେମା ଓ ତୁଖିକଙ୍କୁ
ପଠାଇବି। ସେମାନଙ୍କୁ ପଠାଇଲା ପରେ ତୁମ୍ଭେ ନିକପଲି
ଠାରେ ମୋ ପାଖକୁ ଆସିବା ପାଇଁ ପ୍ରାଣପଣେ ଚେଷ୍ଟା
କରିବ। ମୁଁ ଠିକ୍ କରିଛି ଯେ ଶୀତକାଳ ସେଠାରେ
କଟାଇବି। ୧୩ଓକିଲ ଜୀନା ଓ ଆପଲ୍ଲ ସେଠାରୁ ଆସୁଛନ୍ତି।
ସେମାନଙ୍କ ଆସିବା ଯାତ୍ରା ପାଇଁ ତୁମ୍ଭେ ଯଥାସାଧ୍ୟ ସାହାଯ୍ୟ
କର। ତୁମ୍ଭେ ସତର୍କ ହୁଅ ଯେ ସେମାନଙ୍କର କୌଣସି
ଅଭାବ ନ ଘଟୁ। ୧୪ନିଜ ଜୀବନକୁ ସତ୍ କର୍ମରେ
ଲଗାଇବା ପାଇଁ ଲୋକମାନେ ଶିଖିବା ଆବଶ୍ୟକ।
ଯେଉଁମାନଙ୍କର ପ୍ରକୃତରେ ଦରକାର, ସେମାନଙ୍କର ମଙ୍ଗଳ
କର। ତା'ହେଲେ ଆମ୍ଭ ଲୋକେ ବିଫଳ ଜୀବନଯାପନ
କରିବେ ନାହିଁ।

୧୫ମୋ ସହିତ ଏଠିକାର ସମସ୍ତେ ତୁମ୍ଭକୁ ନମସ୍କାର
ଜଣାଉଛନ୍ତି। ଯେଉଁମାନେ ବିଶ୍ୱାସରେ ଆମ୍ଭକୁ ଭଲ ପାଆନ୍ତି,
ସେମାନଙ୍କୁ ନମସ୍କାର ଜଣାଇବ।

ପରମେଶ୍ୱରଙ୍କ ଅନୁଗ୍ରହ ତୁମ୍ଭ ସମସ୍ତଙ୍କ ସହିତ ରହୁ।

# ଫିଲୀମୋନଙ୍କ ନିକଟକୁ ପ୍ରେରିତ ପାଉଲଙ୍କର ପତ୍ର

ଖ୍ରୀଷ୍ଟଯୀଶୁଙ୍କ ପାଇଁ ବନ୍ଦୀ ହୋଇଥିବା ପାଉଲ ଓ ଆମ୍ଭର
ଭାଇ ତୀମଥିଙ୍କ ଠାରୁ ୨ଆମ୍ଭର ପ୍ରିୟ ମିତ୍ର ଓ ସହକର୍ମୀ
ଫିଲୀମୋନ, ଆମ୍ଭର ଭଉଣୀ ଆପ୍ପିୟା, ସାଥି ସୈନିକ
ଆର୍ଖିପ୍ପ ଓ ତୁମ୍ଭ ଘରଠାରେ ଏକତ୍ରିତ ହେଉଥିବା ଉପାସନା
ମଣ୍ଡଳୀକୁ ପତ୍ର ଲେଖୁଛୁ।
୩ଆମ୍ଭର ପରମପିତା ପରମେଶ୍ୱର ଓ ପ୍ରଭୁ
ଯୀଶୁଖ୍ରୀଷ୍ଟଙ୍କଠାରେ ତୁମ୍ଭକୁ ଅନୁଗ୍ରହ ଓ ଶାନ୍ତି ମିଳୁ।

## ଫିଲୀମୋନଙ୍କ ପ୍ରେମ ଓ ବିଶ୍ୱାସ

୪ମୋ ପ୍ରାର୍ଥନାମାନଙ୍କରେ ମୁଁ ତୁମ୍ଭକୁ ସ୍ମରଣ କରେ।
ତୁମ୍ଭ ପାଇଁ ସର୍ବଦା ମୁଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦିଏ।
୫ପରମେଶ୍ୱରଙ୍କ ସମସ୍ତ ପବିତ୍ରଲୋକମାନଙ୍କ ପ୍ରତି ତୁମ୍ଭର
ପ୍ରେମ ଓ ପ୍ରଭୁ ଯୀଶୁଙ୍କଠାରେ ତୁମ୍ଭର ବିଶ୍ୱାସ ବିଷୟରେ
ମୁଁ ଶୁଣିଛି ଓ ମୁଁ ତୁମ୍ଭର ସେହି ପ୍ରେମ ଓ ବିଶ୍ୱାସ ପାଇଁ
ପରମେଶ୍ୱରଙ୍କୁ ଧନ୍ୟବାଦ ଜଣାଉଛି। ୬ଖ୍ରୀଷ୍ଟଙ୍କଠାରେ ଥିବା
ଆମ୍ଭର ସମସ୍ତ ଭଲ କଥାଗୁଡ଼ିକ ବୁଝିପାରିବା ପାଇଁ ତୁମ୍ଭର
ବିଶ୍ୱାସର ସହଭାଗିତା ତୁମ୍ଭକୁ ସାହାଯ୍ୟ କରିବ ବୋଲି ମୁଁ
ପ୍ରାର୍ଥନା କରେ। ୭ହେ ଭାଇ ପରମେଶ୍ୱରଙ୍କ ଲୋକମାନଙ୍କ
ପ୍ରତି ତୁମ୍ଭେ ପ୍ରେମଭାବ ଦେଖାଇଛ, ସେମାନଙ୍କୁ ତୁମ୍ଭେ ଖୁସି
କରିଛ। ଏହା ମୋତେ ବହୁତ ଆନନ୍ଦ ଓ ଆଶ୍ୱାସନା
ଦେଲା।

## ଅନୀସିମଙ୍କୁ ଭାଇ ଭଳି ସ୍ୱୀକାର କର

୮କେତେଗୁଡ଼ିଏ କଥା ତୁମ୍ଭର କରିବା ଉଚିତ। ଖ୍ରୀଷ୍ଟରେ
ଭାଇ ହିସାବରେ ସତ୍‌କାର୍ଯ୍ୟ କରିବା ନିମନ୍ତେ ତୁମ୍ଭକୁ
ଆଦେଶ ଦେବାର ମୋର ଅଧିକାର ଅଛି। ୯କିନ୍ତୁ ମୁଁ
ତୁମ୍ଭକୁ ପ୍ରେମରେ ନିବେଦନ କରିବାକୁ ଇଚ୍ଛା କରେ। ମୁଁ
ପାଉଲ, ବୁଢ଼ାହୋଇ ଗଲଣି ଓ ଖ୍ରୀଷ୍ଟଯୀଶୁଙ୍କ ପାଇଁ ବନ୍ଦୀ
ହୋଇଛି। ୧୦ମୁଁ ତୁମ୍ଭକୁ ଅନୀସିମ ପାଇଁ ନିବେଦନ କରୁଛି।
ମୁଁ ବନ୍ଦୀ ଗୃହରେ ଥିଲାବେଳେ ସେ ମୋର ସନ୍ତାନ
ହୋଇଥିଲା। ୧୧ଅତୀତରେ ସେ ତୁମ୍ଭ ପାଇଁ ଅଦରକାରୀ
ଥିଲା। କିନ୍ତୁ ଏବେ ସେ ମୋ' ଓ ତୁମ୍ଭ ଦୁହିଁଙ୍କ ପାଇଁ
ବଡ଼ ଉପଯୋଗୀ ଅଟେ।
୧୨ମୁଁ ତାହାକୁ ତୁମ୍ଭ ପାଖକୁ ଫେରାଇ ଦେଉଛି। ତା
ସହିତ ମୋର ହୃଦୟ ମଧ୍ୟ ବନ୍ଧା ହୋଇଛି। ୧୩ମୁଁ ବନ୍ଦୀ
ଗୃହରେ ଥିବା ସମୟରେ ମୋତେ ସୁସମାଚାର ପାଇଁ
ସାହାଯ୍ୟ କରିବ ବୋଲି ତାହାକୁ ମୋ ସହିତ ରଖିବାକୁ
ଚାହୁଁଥିଲି। ମୋତେ ସାହାଯ୍ୟ କରିବା ଦ୍ୱାରା ସେ ତୁମ୍ଭର
ସେବା କରିଥାଆନ୍ତା। ୧୪କିନ୍ତୁ ତୁମ୍ଭମାନଙ୍କୁ ପ୍ରଥମେ ନ
ପଚାରି ମୁଁ କିଛି କରିବା ପାଇଁ ଇଚ୍ଛା କଲି ନାହିଁ। ତୁମ୍ଭର
କୌଣସି ଭଲ କାମ ନିଜ ଇଚ୍ଛାରେ ହେଉ, ମୋର ବାଧ
ବାଧକତାରେ ନ ହେଉ ବୋଲି ମୁଁ ଚାହେଁ।
୧୫ଅନୀସିମ* କ୍ଷଣିକ ପାଇଁ ତୁମ୍ଭଠାରୁ ଅଲଗା ଥିଲା।
ଏହା ଏପରି ଘଟିଥାଇପାରେ ଯଦ୍ୱାରା ତୁମ୍ଭେ ତାହାକୁ
ସବୁଦିନ ପାଇଁ ପୁନଃ ପ୍ରାପ୍ତ ହୋଇ ପାରିବ। ୧୬ଦାସ
ହେବା ପାଇଁ ନୁହେଁ, ବରଂ ଦାସଠାରୁ ବଳି ଏକ ପ୍ରିୟ
ଭାଇ ଭଳି। ମୁଁ ତାହାକୁ ବହୁତ ଭଲ ପାଏ। କିନ୍ତୁ ତୁମ୍ଭେ
ଆହୁରି ଅଧିକ ଭଲ ପାଇବ। ତୁମ୍ଭେ ତାହାକୁ ଜଣେ
ମଣିଷ ଓ ପ୍ରଭୁଙ୍କଠାରେ ଜଣେ ଭାଇ ଭଳି ଭଲ ପାଇବ।
୧୭ଯଦି ତୁମ୍ଭେ ମୋତେ ମିତ୍ର ବୋଲି ଗ୍ରହଣ କରୁଛ,
ତା'ହେଲେ ଅନୀସିମଙ୍କୁ ପୁନର୍ବାର ଗ୍ରହଣ କର। ମୋତେ
ଯେପରି ସ୍ୱାଗତ କରିଥାନ୍ତ, ସେପରି ତାହାକୁ ସ୍ୱାଗତ
କର। ୧୮ଯଦି ଅନୀସିମ ତୁମ୍ଭ ପ୍ରତି କିଛି ଭୁଲ କରିଛି ବା
ତା'ର ତୁମ୍ଭକୁ କିଛି ଦେବାକୁ ଅଛି ତେବେ ତାହା ମୋ
ଖାତାରେ ପକାଇ ଦିଅ। ୧୯ମୁଁ ପାଉଲ, ଏହି କଥା ମୋ
ହାତରେ ଲେଖୁଛି। ଅନୀସିମର ଯଦି ତୁମ୍ଭକୁ କିଛି ଦେବାକୁ
ଅଛି, ମୁଁ ତାହା ତୁମ୍ଭକୁ ଫେରାଇଦେବି। ନିଜ ଜୀବନ ପାଇଁ
ତୁମ୍ଭେ ଯେ ମୋ ଠାରେ କେତେ ଋଣୀ, ସେ ସଂପର୍କରେ
ମୁଁ କିଛି କହିବି ନାହିଁ। ୨୦ତେଣୁ ହେ ମୋର ଭାଇ!
ପ୍ରଭୁଙ୍କଠାରେ ତୁମ୍ଭେ ମୋ ପାଇଁ କିଛି ଆବଶ୍ୟକୀୟ ବିଷୟ
କର ବୋଲି, ମୁଁ ଲୋଡ଼େ। ଖ୍ରୀଷ୍ଟଙ୍କ ଠାରେ ମୋ ହୃଦୟକୁ
ଆଶ୍ୱାସନା ଦିଅ। ୨୧ମୁଁ ଯାହା କହୁଛି, ସେଗୁଡ଼ିକ କରିବ
ବୋଲି ଜାଣି ମୁଁ ଏହି ଚିଠି ଲେଖୁଛି। ମୁଁ ଜାଣେ ଯେ ମୁଁ
ଯେତିକି କହେ, ତୁମ୍ଭେ ତା' ଠାରୁ ଅଧିକ କରିବ।
୨୨ମୋ ରହିବା ପାଇଁ ଗୋଟିଏ ବଖରା ମଧ୍ୟ ପ୍ରସ୍ତୁତ
କର। ମୁଁ ଆଶା କରେ ଯେ ପରମେଶ୍ୱର ତୁମ୍ଭ ପ୍ରାର୍ଥନା
ଶୁଣିବେ ଓ ମୁଁ ତୁମ୍ଭ ପାଖକୁ ଯିବାକୁ ସମର୍ଥ ହୋଇ
ପାରିବି।

## ଶେଷ ଅଭିନନ୍ଦନ

୨୩ଖ୍ରୀଷ୍ଟଯୀଶୁଙ୍କ ପାଇଁ ଏପାଫ୍ରା ହେଉଛନ୍ତି ମୋର
ସହବନ୍ଦୀ। ସେ ତୁମ୍ଭକୁ ନମସ୍କାର ଜଣାଉଛନ୍ତି। ୨୪ମାର୍କ,
ଆରିସ୍ତାର୍ଖ, ଦୀମା ଓ ଲୂକ ଏମାନେ ମଧ୍ୟ ତୁମ୍ଭକୁ ନମସ୍କାର
ଜଣାଉଛନ୍ତି।
୨୫ଆମ୍ଭମାନଙ୍କର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଅନୁଗ୍ରହ ତୁମ୍ଭମାନଙ୍କର
ଆତ୍ମା ସହିତ ରହିଥାଉ।

---

**ଅନୀସିମ** ଅନୀସିମର ଅର୍ଥ "ଉପଯୋଗୀ"

# ଏବ୍ରୀ

**ପରମେଶ୍ୱର ନିଜ ପୁତ୍ର ମାଧ୍ୟମରେ କଥା କହିଛନ୍ତି**

୧ ଅତୀତରେ ପରମେଶ୍ୱର ଆମ୍ଭ ଲୋକମାନଙ୍କୁ ବିଭିନ୍ନ
ସମୟରେ ବିଭିନ୍ନ ଭାବରେ ଭବିଷ୍ୟଦ୍‌ବକ୍ତାମାନଙ୍କ
ମାଧ୍ୟମରେ କଥା କହିଥିଲେ। ୨କିନ୍ତୁ ଏହି ଶେଷ ସମୟରେ
ପରମେଶ୍ୱର ଆପଣା ପୁତ୍ରଙ୍କ ଦ୍ୱାରା ଆମ୍ଭମାନଙ୍କୁ ପୁନର୍ବାର
କଥା କହିଅଛନ୍ତି। ସେ ନିଜ ପୁତ୍ରଙ୍କ ଦ୍ୱାରା ସାରା ବିଶ୍ୱ
ସୃଷ୍ଟି କଲେ। ସେ ନିଜ ପୁତ୍ରଙ୍କୁ ସମସ୍ତ ବିଷୟର
ଉତ୍ତରାଧିକାରୀ କରିବା ନିମନ୍ତେ ମନୋନୀତ କରିଛନ୍ତି।
ସେହି ପୁତ୍ର ପରମେଶ୍ୱରଙ୍କ ମହିମା ପ୍ରକାଶ କରନ୍ତି। ୩ସେ
ପରମେଶ୍ୱରଙ୍କ ମହିମାର ଅବିକଳ ପ୍ରତିମୂର୍ତ୍ତି। ସେହି ପୁତ୍ର
ନିଜର ଶକ୍ତିଯୁକ୍ତ ବାକ୍ୟ ଦ୍ୱାରା ପ୍ରତ୍ୟେକ ବିଷୟକୁ ଧରି
ରଖିଛନ୍ତି। ସେହି ପୁତ୍ର ଲୋକମାନଙ୍କୁ ପାପରୁ ମୁକ୍ତ କରି
ସେମାନଙ୍କୁ ପବିତ୍ର କଲେ। ତା’ପରେ ସେ ସ୍ୱର୍ଗସ୍ଥ ମହାମହିମ
ପରମେଶ୍ୱରଙ୍କ ଡାହାଣପଟରେ ବସିଲେ। ୪ପରମେଶ୍ୱର ତାହାଙ୍କୁ
ସମସ୍ତ ସ୍ୱର୍ଗଦୂତମାନଙ୍କ ଅପେକ୍ଷା ଅତ୍ୟଧିକ ଉତ୍କୃଷ୍ଟ ନାମ
ଦେଲେ, ତେଣୁ ସେ ଯେକୌଣସି ସ୍ୱର୍ଗଦୂତଙ୍କ ଠାରୁ ମଧ୍ୟ
ଅଧିକ ମହାନ୍ ହୋଇଅଛନ୍ତି।
୫ଆହୁରି ମଧ୍ୟ ସେ କୌଣସି ସ୍ୱର୍ଗଦୂତଙ୍କୁ କହି ନ
ଥିଲେ ଯେ:

"ତୁମ୍ଭେ ମୋର ପୁତ୍ର; ଆଜି ଆମ୍ଭେ ତୁମ୍ଭର ପିତା
ହେଲୁ।"

ଗୀତସଂହିତା ୨:୭

ପୁନର୍ବାର ପରମେଶ୍ୱର କୌଣସି ସ୍ୱର୍ଗଦୂତଙ୍କୁ ଏହା କହି ନାହାଁନ୍ତି ଯେ,

"ମୁଁ ତା’ର ପିତା ହେବି, ସେ ମୋର ପୁତ୍ର ହେବ।"

ଦ୍ୱିତୀୟ ଶାମୁୟେଲ ୭:୧୪

୬ଓ ଯେତେବେଳେ ପରମେଶ୍ୱର ନିଜର ପ୍ରଥମ ଜାତ
ସନ୍ତାନଙ୍କୁ ପୁନର୍ବାର ଜଗତ ମଧ୍ୟକୁ ଆଣିବେ, ସେହି
ସମୟକୁ ଲକ୍ଷ୍ୟ କରି ସେ କହନ୍ତି:

"ପରମେଶ୍ୱରଙ୍କର ସବୁ ସ୍ୱର୍ଗଦୂତ ପୁତ୍ରଙ୍କୁ ପ୍ରଣାମ କରନ୍ତୁ,*

ଦ୍ୱିତୀୟ ବିବରଣୀ ୩୨:୪୩

୭ନିଜର ସ୍ୱର୍ଗଦୂତମାନଙ୍କ ବିଷୟରେ ପରମେଶ୍ୱର କହିଛନ୍ତି:

"ପରମେଶ୍ୱର ଆପଣା ସ୍ୱର୍ଗଦୂତମାନଙ୍କୁ ବାୟୁସ୍ୱରୂପ କରନ୍ତି, ଓ ଆପଣା ସେବକମାନଙ୍କୁ ଅଗ୍ନିର ଶିଖା ସ୍ୱରୂପ କରନ୍ତି।"

ଗୀତସଂହିତା ୧୦୪:୪

୮କିନ୍ତୁ ପରମେଶ୍ୱର ନିଜ ପୁତ୍ର ବିଷୟରେ କୁହନ୍ତି:

"ହେ ପରମେଶ୍ୱର! ତୁମ୍ଭର ସିଂହାସନ ଅନନ୍ତକାଳସ୍ଥାୟୀ,
ତୁମ୍ଭେ ନ୍ୟାୟରେ ରାଜ୍ୟଶାସନ କରିବ
୯ ତୁମ୍ଭେ ଧାର୍ମିକତାକୁ ଭଲ ପାଅ, ଓ ତୁମ୍ଭେ ଭୁଲକୁ
ଘୃଣା କର। ଅତଏବ ପରମେଶ୍ୱର, ତୁମ୍ଭ ପରମେଶ୍ୱର
ତୁମ୍ଭର ସଙ୍ଗୀମାନଙ୍କ ଅପେକ୍ଷା ତୁମ୍ଭକୁ ଅଧିକ ଆନନ୍ଦ
ପ୍ରଦାନ କରିଛନ୍ତି।"

ଗୀତସଂହିତା ୪୫:୬-୭

୧୦ପରମେଶ୍ୱର ଏହା ମଧ୍ୟ କହନ୍ତି:

"ହେ ପ୍ରଭୁ! ତୁମ୍ଭେ ଆରମ୍ଭରେ ପୃଥିବୀ ନିର୍ମାଣ
କଲ, ଓ ତୁମ୍ଭର ହାତ ଆକାଶ ନିର୍ମାଣ କଲା।
୧୧ ଏହି ବିଷୟ ଗୁଡିକ ଲୋପ ପାଇବ, କିନ୍ତୁ ତୁମ୍ଭେ
ନିତ୍ୟସ୍ଥାୟୀ। ସମସ୍ତ ବିଷୟ ବସ୍ତ୍ରଭଳି ପୁରୁଣା ହୋଇ
ଯିବ।
୧୨ ତୁମ୍ଭେ ଚାଦର ଭଳି ସେହିସବୁ ଗୁଡ଼ାଇବ ଓ
ସେମାନେ ବସ୍ତ୍ର ଭଳି ପରିବର୍ତ୍ତିତ ହେବେ। କିନ୍ତୁ
ତୁମ୍ଭେ କଦାପି ବଦଳିବ ନାହିଁ, ଓ ତୁମ୍ଭ ଜୀବନର
ଶେଷ ହେବ ନାହିଁ।"

ଗୀତସଂହିତା ୧୦୨: ୨୫-୨୭

୧୩ପରମେଶ୍ୱର କେବେହେଲେ କୌଣସି ସ୍ୱର୍ଗଦୂତଙ୍କୁ କହିଛନ୍ତି
କି ଯେ:

"ଯେତେବେଳ ପର୍ଯ୍ୟନ୍ତ ମୁଁ ତୁମ୍ଭର ସମସ୍ତ ଶତ୍ରୁଙ୍କୁ ତୁମ୍ଭ କର୍ତ୍ତୃତ୍ୱରେ ନ ଆଣିଛି, ସେ ପର୍ଯ୍ୟନ୍ତ ମୋ ଡ଼ାହାଣରେ ବସିଥାଅ।"

ଗୀତସଂହିତା ୧୧୦:୧

୧୪ସମସ୍ତ ସ୍ୱର୍ଗଦୂତ ଆତ୍ମା ଅଟନ୍ତି। ସେମାନେ ପରମେଶ୍ୱରଙ୍କ
ସେବା କରନ୍ତି ଏବଂ ଯେଉଁମାନେ ପରିତ୍ରାଣ ପାଇଛନ୍ତି
ସେମାନଙ୍କୁ ସାହାଯ୍ୟ କରନ୍ତି।

---

**"ପରମେଶ୍ୱରଙ୍କର ... କରନ୍ତୁ।"** ଗ୍ରୀକ୍‌ର ଆଦିପୁସ୍ତକର ଦ୍ୱିତୀୟ ବିବରଣ: ୩୨:୪୩ ଓ ଏବ୍ରୀ ପ୍ରତିଲିପିଟିରେ ଏହା ମିଳେ।

### ବ୍ୟବସ୍ଥା ଅପେକ୍ଷା ଆମ୍ଭର ପରିତ୍ରାଣ ସର୍ବଶ୍ରେଷ୍ଠ

୨ ଅତଏବ, ଆମ୍ଭକୁ ଶିଖା ଯାଇଥିବା କଥାଗୁଡ଼ିକୁ ପାଳନ
କରିବା ବିଷୟରେ ଅଧିକ ମନଯୋଗୀ ହେବା ଦରକାର,
ନଚେତ୍ ସତ୍ୟମାର୍ଗରୁ ବିଚଳିତ ହୋଇ ପଥଭ୍ରଷ୍ଟ ହେବୁ।
୨ସ୍ୱର୍ଗଦୂତମାନଙ୍କ ମାଧ୍ୟମରେ ପରମେଶ୍ୱର କହିଥିବା ଶିକ୍ଷା
ସତ୍ୟ ବୋଲି ଦେଖାଇ ଦିଆଗଲା। ପ୍ରତ୍ୟେକ ଥର
ଯିହୂଦୀମାନେ ତାହାର ବିରୁଦ୍ଧାଚରଣ କରି ଦଣ୍ଡ ପାଇଥିଲେ।
ଯେତେବେଳେ ସେହି ଶିକ୍ଷାକୁ ସେମାନେ ଅବମାନନା
କଲେ, ସେମାନେ ଦଣ୍ଡିତ ହେଲେ। ୩ଆମ୍ଭକୁ ଦତ୍ତ
ମହାପରିତ୍ରାଣ ଅବହେଳା କଲେ, ଆମ୍ଭେ ମଧ୍ୟ ନିଶ୍ଚିତ
ଭାବରେ ଦଣ୍ଡ ପାଇବା। ପ୍ରଭୁ ଯୀଶୁଖ୍ରୀଷ୍ଟ ହେଉଛନ୍ତି ପ୍ରଥମ
ବ୍ୟକ୍ତି, ଯିଏ ଲୋକମାନଙ୍କୁ ଏହି ପରିତ୍ରାଣ ବିଷୟରେ
କହିଲେ। ଯେଉଁମାନେ ଶୁଣିଲେ, ସେମାନେ ଆମ୍ଭକୁ ଏହାର
ସତ୍ୟତା ପ୍ରମାଣ କରି ଦେଖାଇଦେଲେ। ଆଶ୍ଚର୍ଯ୍ୟ କର୍ମ,
ନାନାଦି ଚିହ୍ନ ଓ ଅନେକ ପ୍ରକାରର ଅଦ୍ଭୁତ ୪କର୍ମ ଦ୍ୱାରା
ପରମେଶ୍ୱର ମଧ୍ୟ ଏହାର ପ୍ରମାଣ ଦେଲେ। ପରମେଶ୍ୱର
ଆପଣା ଇଚ୍ଛାନୁସାରେ ପବିତ୍ରଆତ୍ମାଙ୍କ ଅନ୍ୟାନ୍ୟ ଦାନ ଦ୍ୱାରା
ଏହା ପ୍ରମାଣିତ କରିଅଛନ୍ତି।

### ଲୋକମାନଙ୍କୁ ରକ୍ଷା କରିବାଲାଗି ଯୀଶୁଖ୍ରୀଷ୍ଟ ମାନବଦେହ ଧାରଣ କଲେ

୫ଯେଉଁ ଭାବୀଜଗତ ବିଷୟରେ ଆମ୍ଭେ ଆଲୋଚନା
କରୁଛୁ, ତାହାକୁ ଶାସନ କରିବା ପାଇଁ ପରମେଶ୍ୱର
ସ୍ୱର୍ଗଦୂତମାନଙ୍କୁ ବାଛି ନାହାନ୍ତି। ୬ଶାସ୍ତ୍ରରେ କୌଣସି ସ୍ଥାନରେ
ଏପରି ଲେଖା ଅଛି:

"ପରମେଶ୍ୱର! ତୁମ୍ଭେ କାହିଁକି ମନୁଷ୍ୟ ବିଷୟରେ
ଚିନ୍ତା କର? ତୁମ୍ଭେ କାହିଁକି ମନୁଷ୍ୟ ସନ୍ତାନ ପାଇଁ
ଚିନ୍ତିତ ହୁଅ? ସେ କ'ଣ ସତରେ ମହାନ ଅଟନ୍ତି
ଯେ
୭ ତୁମ୍ଭେ ସ୍ୱର୍ଗଦୂତଙ୍କ ଠାରୁ ତାହାକୁ ଅଳ୍ପକ୍ଷଣ ପାଇଁ
ନ୍ୟୂନ କରିଅଛ? ତୁମ୍ଭେ ତାହାକୁ ଗୌରବ ଓ
ସମ୍ମାନର ରାଜମୁକୁଟ ପିନ୍ଧାଇଅଛ,
୮ ଓ ପ୍ରତ୍ୟେକ ବିଷୟ ତା' ନିୟନ୍ତ୍ରଣରେ ରଖିଅଛ।"

ଗୀତସଂହିତା ୮:୪-୬

ଯଦି ପରମେଶ୍ୱର ପ୍ରତ୍ୟେକ ବିଷୟକୁ ତା'ର ବଶୀଭୂତ
କଲେ, ତାହାହେଲେ ଏପରି କୌଣସି ବିଷୟ ନାହିଁ,
ଯାହାକି ତାହାଙ୍କ ନିୟନ୍ତ୍ରଣାଧୀନ ନୁହେଁ। କିନ୍ତୁ ଆମ୍ଭେ ଏବେ
ସୁଦ୍ଧା ପ୍ରତ୍ୟେକ ବିଷୟ ଉପରେ ତାହାଙ୍କୁ କର୍ତ୍ତୃତ୍ୱ କରିବା
ଦେଖି ପାରୁନାହୁଁ। ୯ଅତି ଅଳ୍ପ ସମୟ ନିମନ୍ତେ ଯୀଶୁଙ୍କୁ
ସ୍ୱର୍ଗଦୂତମାନଙ୍କ ଠାରୁ ନିମ୍ନ ସ୍ତରରେ ରଖା ଯାଇଥିଲା, କିନ୍ତୁ
ଏବେ ଆମ୍ଭେ ଦେଖୁଛୁ ଯେ, ସେ ଗୌରବ ଓ ସମ୍ମାନର
ରାଜମୁକୁଟ ପିନ୍ଧିଛନ୍ତି। ଏହାର କରଣ, ତାହାଙ୍କର ଦୁଃଖଭୋଗ
ଓ ମୃତ୍ୟୁ ଅଟେ। ପରମେଶ୍ୱରଙ୍କ ଅନୁଗ୍ରହ ହେତୁ ଯୀଶୁ
ପ୍ରତ୍ୟେକ ଲୋକଙ୍କ ପାଇଁ ମୃତ୍ୟୁ ବରଣ କଲେ।

୧୦ପରମେଶ୍ୱର ସମସ୍ତ ବିଷୟ ସୃଷ୍ଟି କରିଛନ୍ତି। ସମସ୍ତ
ବିଷୟ ଗୁଡ଼ିକ ତାହାଙ୍କ ମହିମା ପାଇଁ ଉଦ୍ଦିଷ୍ଟ। ଅନେକ
(ଲୋକ) ଯେପରି ତାହାଙ୍କ ଗୌରବରେ ପ୍ରବେଶ କରନ୍ତି
ଏହା ଇଚ୍ଛା କରି ସେ ଯୀଶୁଙ୍କୁ ଦୁଃଖଭୋଗ ମାଧ୍ୟମରେ
ସିଦ୍ଧ କଲେ, ତହିଁରେ ସେ ଲୋକମାନଙ୍କୁ ପରିତ୍ରାଣର ମାର୍ଗ
ଦେଖାଇଲେ।
୧୧ଯେଣୁ ଯେ ପବିତ୍ର କରନ୍ତି, ଓ ଯେଉଁମାନେ ପବିତ୍ର
ହୁଅନ୍ତି, ଦୁହେଁ ଗୋଟିଏ ପରିବାରର ଅଟନ୍ତି। ଅତଏବ
ଯୀଶୁ ସେମାନଙ୍କୁ ନିଜ ଭାଇ ଓ ଭଉଣୀ ଡାକିବାରେ
ଲଜ୍ଜାବୋଧ କରନ୍ତି ନାହିଁ। ଯୀଶୁ କୁହନ୍ତି:

୧୨ "ହେ ପରମେଶ୍ୱର, ମୁଁ ମୋର ଭାଇ(ଓ ଭଉଣୀ)ମାନଙ୍କୁ
ତୁମ୍ଭ ବିଷୟରେ କହିବି। ତୁମ୍ଭର ସବୁଲୋକ (ସାଧୁ)
ମାନଙ୍କ ଆଗରେ, ମୁଁ ତୁମ୍ଭର ପ୍ରଶଂସା ଗାଇବି।"

ଗୀତସଂହିତା ୨୨:୨୨

୧୩ସେ ଆହୁରି କହନ୍ତି:

"ମୁଁ ପରମେଶ୍ୱରଙ୍କୁ ବିଶ୍ୱାସ କରିବି।"

ଯିଶାଇୟ ୮:୧୭

ଓ ସେ କୁହନ୍ତି:

"ମୁଁ ଏହିଠାରେ ଅଛି। ଓ ପରମେଶ୍ୱରଙ୍କ ଦତ୍ତ
ସନ୍ତାନଗଣ ମଧ୍ୟ ମୋ ସହିତ ଅଛନ୍ତି।"

ଯିଶାଇୟ ୮:୧୮

୧୪ସେହି ସନ୍ତାନମାନେ ରକ୍ତମାଂସ ବିଶିଷ୍ଟ ଶରୀର
ଧାରଣ କରିଛନ୍ତି। ଅତଏବ ଯୀଶୁ ସେମାନଙ୍କ ଭଳି ରକ୍ତ
ମାଂସର ଶରୀର ଧାରଣ କଲେ। ସେପରି କରିବା ଦ୍ୱାରା,
ଯୀଶୁ ମୃତ୍ୟୁ ଶକ୍ତିର ନିଦାନ ଶୟତାନକୁ ବିନଷ୍ଟ କଲେ।
୧୫ମୃତ୍ୟୁ ଭୟରେ ସାରା ଜୀବନ ବନ୍ଧନ ଗ୍ରସ୍ତ ଲୋକଙ୍କୁ
ଉଦ୍ଧାର କରିବାପାଇଁ ଯୀଶୁ ମାନବରୂପ ଧାରଣ କରି ମୃତ୍ୟୁ
ବରଣ କଲେ। ୧୬କାରଣ ପ୍ରକୃତରେ ଯୀଶୁ ସ୍ୱର୍ଗଦୂତମାନଙ୍କ
ପ୍ରତି ମନଯୋଗୀ ନ ହୋଇ ଅବ୍ରାହାମର ସନ୍ତାନମାନଙ୍କୁ
ସାହାଯ୍ୟ କରନ୍ତି। ୧୭ଅତଏବ ସମସ୍ତ ବିଷୟରେ ସେ
ଆପଣା ଭାଇ ଓ ଭଉଣୀମାନଙ୍କ ପରି ହେବାକୁ ପଡ଼ିଲା।
ଯେପରି ପରମେଶ୍ୱରଙ୍କ ସେବାରେ ସେହି ଲୋକମାନଙ୍କର
ପାପର ପ୍ରାୟଶ୍ଚିତ୍ତ ସାଧନ ପାଇଁ ଦୟାଳୁ ଓ ବିଶ୍ୱସ୍ତ
ମହାଯାଜକ ହୁଅନ୍ତି। ୧୮ଯୀଶୁ ପରୀକ୍ଷିତ ହୋଇ ଦୁଃଖଭୋଗ
କରିଥିବାରୁ ପରୀକ୍ଷିତ ଲୋକମାନଙ୍କୁ ସାହାଯ୍ୟ କରିବା
ନିମନ୍ତେ ସକ୍ଷମ ଅଟନ୍ତି।

### ମୋଶାଙ୍କଠାରୁ ଯୀଶୁ ମହାନ

୩ ଅତଏବ ତୁମ୍ଭେମାନେ ସମସ୍ତେ ଯୀଶୁଙ୍କଠାରେ ମନ
ଦିଅ। ପରମେଶ୍ୱର ତାହାଙ୍କୁ ଆମ୍ଭପାଖକୁ ପଠାଇଛନ୍ତି।
ସେ ଆମ୍ଭ ବିଶ୍ୱାସର ମହାଯାଜକ। ମୋ ପବିତ୍ର ଭାଇଓ

ଭଉଣୀ)ମାନେ, ମୁଁ ଏକାଥା ତୁମ୍ଭମାନଙ୍କୁ କହୁଛି ଯେ,
ପରମେଶ୍ୱର ତୁମ୍ଭମାନଙ୍କୁ ସମସ୍ତଙ୍କୁ ଆହ୍ୱାନ କରିଛନ୍ତି।
୨ପରମେଶ୍ୱର ଯୀଶୁଙ୍କୁ ମହାଯାଜକ ସ୍ୱରୂପେ ଆମ୍ଭ ପାଖକୁ
ପଠାଇଛନ୍ତି। ମୋଶାଙ୍କ ପରି ଯୀଶୁ ମଧ୍ୟ ପରମେଶ୍ୱରଙ୍କ
ପ୍ରତି ବିଶ୍ୱସ୍ତ ଥିଲେ। ଈଶ୍ୱରଙ୍କ ଗୃହରେ ଈଶ୍ୱର ଇଚ୍ଛା
କରୁଥିବା ସମସ୍ତ କାର୍ଯ୍ୟ ସେ କଲେ। ୩ଯେତେବେଳେ
ଜଣେ ଲୋକ ଘରଟିଏ ତିଆରି କରେ, ଲୋକେ ଘର
ତୁଳନାରେ ସେହି ଲୋକକୁ ଅଧିକ ସମ୍ମାନ ଦିଅନ୍ତି।
ଯୀଶୁଙ୍କ ପାଇଁ ମଧ୍ୟ ଏହା ପ୍ରଯୁଜ୍ୟ। ମୋଶାଙ୍କ ତୁଳନାରେ
ଯୀଶୁ ଅଧିକ ସମ୍ମାନର ଯୋଗ୍ୟ। ୪ପ୍ରତ୍ୟେକ ଘର କୌଣସି
ଲୋକ ଦ୍ୱାରା ନିର୍ମିତ। ୫କିନ୍ତୁ ପରମେଶ୍ୱର ସମସ୍ତ ବିଷୟ
ନିର୍ମାଣ କରିଛନ୍ତି। ପରମେଶ୍ୱରଙ୍କ ଗୃହରେ ମୋଶା ଜଣେ
ସେବକ ରୂପେ ବିଶ୍ୱସ୍ତ ଥିଲେ। ପରମେଶ୍ୱର ଭବିଷ୍ୟତରେ
ଯାହା କିଛି କହିବେ, ସେ ଲୋକମାନଙ୍କୁ ସେହି କଥା
କହି ଥିଲେ। ୬କିନ୍ତୁ ଖ୍ରୀଷ୍ଟ ପୁତ୍ର ଭାବେ ପରମେଶ୍ୱରଙ୍କ
ଗୃହର ତତ୍ତ୍ୱାବଧାନରେ ବିଶ୍ୱସ୍ତ ଥିଲେ। ଆମ୍ଭେ ବିଶ୍ୱାସୀଗଣ
ପରମେଶ୍ୱରଙ୍କ ଗୃହ ସ୍ୱରୂପ (ପରିବାର) ଅଟୁ। ଯଦି ଆମ୍ଭେ
ସେହି ମହତ୍ ଆଶାର ଅପେକ୍ଷାରେ ଦୃଢ଼ ଓ ଅଟଳ
ରହିବା, ତା'ହେଲେ ଆମ୍ଭ ଅନ୍ତରରେ ପରମେଶ୍ୱର ବାସ
କରିବେ।

## ଆମ୍ଭେ ପରମେଶ୍ୱରଙ୍କୁ ଅନୁସରଣ କରି ଚାଲି ଥିବା

୭ଅତଏବ ପବିତ୍ର ଆତ୍ମା କୁହନ୍ତି:

"ଯଦି ତୁମ୍ଭେମାନେ 'ଆଜି' ପରମେଶ୍ୱରଙ୍କ ବାକ୍ୟ
ଶୁଣ,
୮ ତେବେ ମରୁଭୂମିରେ ପରମେଶ୍ୱରଙ୍କୁ ପରୀକ୍ଷା କରିବା
ଦିନ ଯେପ୍ରକାର ପରମେଶ୍ୱରଙ୍କ ବିରୁଦ୍ଧରେ ଥିଲେ,
ସେପ୍ରକାର ପୂର୍ବପରି ତୁମ୍ଭମାନଙ୍କ ହୃଦୟ କଠିନ ନ
କର।
୯ ଚାଳିଶ ବର୍ଷ ଧରି ତୁମ୍ଭ ଲୋକମାନେ ମରୁଭୂମିରେ
ମୋର କାର୍ଯ୍ୟ ଗୁଡିକ ଦେଖିଲେ। ତଥାପି ସେମାନେ
ମୋ ଧୈର୍ଯ୍ୟର ପରୀକ୍ଷା ନେଲେ।
୧୦ ସେଥିପାଇଁ ମୁଁ ସେହିଲୋକମାନଙ୍କ ପ୍ରତି କ୍ରୁଦ୍ଧ ଥିଲି।
ମୁଁ କହିଥିଲି, ସେ ଲୋକମାନଙ୍କର ଚିନ୍ତାଧାରା
ସର୍ବଦା ଭୁଲ ଅଟେ। ସେମାନେ ମୋର ମାର୍ଗ
ବୁଝନ୍ତି ନାହିଁ।
୧୧ ଅତଏବ ମୁଁ କ୍ରୋଧରେ ପ୍ରତିଜ୍ଞା କରି କହିଥିଲି-
'ସେ ଲୋକମାନେ କେବେହେଲେ ମୋର ବିଶ୍ରାମ
ସ୍ଥଳରେ* ପ୍ରବେଶ କରିବେ ନାହିଁ।'"

ଗୀତସଂହିତା ୯୫:୭-୧୧

୧୨ଅତଏବ ଭାଇ (ଓ ଭଉଣୀ) ମାନେ, ତୁମ୍ଭ ମଧ୍ୟରେ
କେହି ପାପ ନ କର, ଅବିଶ୍ୱାସୀ ନ ହୁଅ, ଓ ଜୀବିତ
ପରମେଶ୍ୱରଙ୍କ ପ୍ରତି ବିମୁଖ ନ ହୁଅ, ଏଥିପାଇଁ ସାବଧାନ
ରୁହ। ୧୩କିନ୍ତୁ ପରସ୍ପରକୁ ପ୍ରତିଦିନ ଉତ୍ସାହିତ କର।
'ଆଜିଦିନ' ରେ ପ୍ରଭୁଙ୍କ ପ୍ରତି ମନ ଦିଅ। ପାପର
ଛଳନାପୂର୍ଣ୍ଣ ପ୍ରଲୋଭନରେ ପଡ଼ି ଲୋକେ ଯେପରି ହୃଦୟ
କଠିନ ନ କରନ୍ତି, ଏଥିପାଇଁ ପରସ୍ପରକୁ ସାହାଯ୍ୟ କର।
୧୪କାରଣ ପ୍ରାରମ୍ଭରୁ ତୁମ୍ଭର ଯେଉଁ ଦୃଢ ବିଶ୍ୱାସ ଥିଲା,
ତାହା ଯଦି ଶେଷ ପର୍ଯ୍ୟନ୍ତ ବଜାୟ ରଖିବ, ତାହାହେଲେ
ଯୀଶୁଖ୍ରୀଷ୍ଟଙ୍କ ସମସ୍ତ ଅଧିକାରରେ ସହଭାଗୀ ହେବ। ୧୫ଏହାହିଁ
ଶାସ୍ତ୍ର ମଧ୍ୟ କୁହେ:

"ତୁମ୍ଭେମାନେ ଯଦି ଆଜି ପରମେଶ୍ୱରଙ୍କ ବାକ୍ୟ
ଶୁଣ, ତା'ହେଲେ ଅତୀତରେ ଯେପରି ତୁମ୍ଭେମାନେ
ପରମେଶ୍ୱରଙ୍କ ବିରୁଦ୍ଧାଚରଣ କରିଥିଲ, ସେପରି
ଆପଣା ହୃଦୟ, କଠିନ ନ କର।"

ଗୀତସଂହିତା ୯୫:୭-୮

୧୬ପରମେଶ୍ୱରଙ୍କ ବାକ୍ୟ ଶୁଣି କେଉଁମାନେ ତାହାଙ୍କର
ବିରୁଦ୍ଧାଚରଣ କରିଥିଲେ? ଯେଉଁମାନେ ମୋଶାଙ୍କ ଦ୍ୱାରା
ମିସର ଦେଶରୁ ବାହାରି ଆସିଥିଲେ, ଏମାନେ ସେହି
ଲୋକ ଅଟନ୍ତି। ୧୭ପରମେଶ୍ୱର ଚାଳିଶ ବର୍ଷ ଧରି କାହା
ପ୍ରତି କ୍ରୋଧ କରିଥିଲେ? ଯେଉଁମାନେ ପାପ କରିଥିଲେ
ସେମାନଙ୍କ ପ୍ରତି ପରମେଶ୍ୱର କ୍ରୋଧ କରିଥିଲେ। ସେମାନେ
ମରୁଭୂମିରେ ମଲେ। ୧୮ପରମେଶ୍ୱରଙ୍କର କେଉଁ ଲୋକମାନେ
ତାହାଙ୍କର ବିଶ୍ରାମସ୍ଥଳରେ ପ୍ରବେଶ କରିବେ ନାହିଁ ବୋଲି
ପ୍ରତିଜ୍ଞା କରିଥିଲେ? ପରମେଶ୍ୱରଙ୍କ ଆଜ୍ଞାର ଅବାଧ ହେଉଥିବା
ଲୋକମାନଙ୍କୁ ସେ ଏହା କହିଥିଲେ। ୧୯ଅତଏବ ଆମ୍ଭେ
ଦେଖୁଛୁ ଯେ, ସେମାନେ ନିଜ ଅବିଶ୍ୱାସ ହେତୁ ସେଠାରେ
ପ୍ରବେଶ କରିବା ପାଇଁ ଅସମର୍ଥ ହେଲେ।

୪ ପରମେଶ୍ୱରଙ୍କ ବିଶ୍ରାମସ୍ଥଳରେ ପ୍ରବେଶ କରିବାର
ପ୍ରତିଜ୍ଞା ଥିବା ସ୍ଥଳେ ସୁଦ୍ଧା ଆମ୍ଭମାନଙ୍କ ମଧ୍ୟରୁ
କେହି ଯେପରି ଏଥିରୁ ବଞ୍ଚିତ ନ ହେଉ, ଏଥିପାଇଁ
ସତର୍କତାର ଜୀବନ କାଟିବା ଉଚିତ। ୨କାରଣ ସେମାନଙ୍କ
ନିକଟରେ ଯେପରି, ଆମ୍ଭମାନଙ୍କ ନିକଟରେ ସେପରି ସୁସମାଚାର
କୁହାଯାଇଅଛି, କିନ୍ତୁ ସେମାନେ ଶୁଣି ମଧ୍ୟ ତାହାକୁ
ବିଶ୍ୱାସପୂର୍ବକ ନିଜସ୍ୱ ନ କରିବାରୁ ସେମାନଙ୍କ ପକ୍ଷରେ
ସୁସମାଚାର ଲାଭଜନକ ହେଲା ନାହିଁ। ୩ଆମ୍ଭେ ବିଶ୍ୱାସୀ
ଲୋକମାନେ ବିଶ୍ରାମ ସ୍ଥଳରେ ପ୍ରବେଶ କରିବାକୁ ସକ୍ଷମ
ଅଟୁ। ଯେପରି ପରମେଶ୍ୱର କହିଅଛନ୍ତି:

"ମୁଁ କ୍ରୋଧରେ ପ୍ରତିଜ୍ଞା କରି କହିଥିଲି- ସେ
ଲୋକମାନେ କେବେହେଲେ ମୋର ବିଶ୍ରାମସ୍ଥଳରେ
ପ୍ରବେଶ କରିବେ ନାହିଁ।"

ଗୀତସଂହିତା ୯୫:୧୧

ପରମେଶ୍ୱର ଏହା କହିଲେ। କିନ୍ତୁ ଜଗତ ସୃଷ୍ଟି କରିବା
ଦିନଠାରୁ ପରମେଶ୍ୱରଙ୍କ କାମ ସରି ଯାଇ ଥିଲା। ୪ଶାସ୍ତ୍ରର
କୌଣସି ସ୍ଥାନରେ ପରମେଶ୍ୱର ସପ୍ତାହର ସପ୍ତମ ଦିନ

---

**ବିଶ୍ରାମ ସ୍ଥଳ** ଲୋକମାନଙ୍କୁ ବିଶ୍ରାମ ଦେବା ପାଇଁ ପ୍ରତିଜ୍ଞା କରିଥିବା ସ୍ଥଳ।

ବିଷୟରେ କହିଛନ୍ତି: "ସପ୍ତମ ଦିନରେ ପରମେଶ୍ୱର ନିଜର
ସମସ୍ତ କାମରୁ ବିଶ୍ରାମ ନେଲେ।"* ୫ପରମେଶ୍ୱର ଆଉ
ଏକ ଶାସ୍ତ୍ରରେ କହିଛନ୍ତି: "ସେହି ଲୋକମାନେ କେବେହେଲେ
ମୋର ବିଶ୍ରାମ ସ୍ଥଳରେ ପ୍ରବେଶ କରିବେ ନାହିଁ।"*
୬ଯେଉଁଲୋକମାନଙ୍କୁ ଆଗରୁ ସୁସମାଚାର ଶୁଣା ଯାଇ
ଥିଲା, ନିଜର ଅବଜ୍ଞା ଯୋଗୁ ସେମାନେ ବିଶ୍ରାମସ୍ଥଳରେ
ପ୍ରବେଶ କରି ପାରିଲେ ନାହିଁ କିନ୍ତୁ ଏବେ ମଧ୍ୟ କେତେ
ଲୋକ ପରମେଶ୍ୱରଙ୍କ ବିଶ୍ରାମସ୍ଥଳରେ ପ୍ରବେଶ କରିବାକୁ
ବାକି ଥିବାରୁ ପରମେଶ୍ୱର ଆଉ ଗୋଟିଏ ବିଶେଷ ଦିନ
ଅର୍ଥାତ 'ଆଜି ଦିନ'* ନିରୂପଣ କଲେ। ୭ଏହି ଦିନଟି
ବିଷୟରେ ପରମେଶ୍ୱର ବହୁତ ଦିନ ପରେ ଦାଉଦଙ୍କ
ମାଧ୍ୟମରେ କହିଛନ୍ତି। ସେହି ଶାସ୍ତ୍ରରେ, ଆମ୍ଭେ ପୂର୍ବରୁ
କହିଛୁ:

> "ଯଦି ତୁମ୍ଭେମାନେ 'ଆଜି' ପରମେଶ୍ୱରଙ୍କ ବାଣୀ
> ଶୁଣିଛ, ତାହାହେଲେ ପୂର୍ବପରି ଆପଣା ହୃଦୟ
> କଠିନ ନ କର।"
>
> ଗୀତସଂହିତା ୯୫:୭-୮

୮ଆମ୍ଭେ ଜାଣୁ ଯେ ଯିହୋଶୂୟ ଲୋକଙ୍କୁ ଈଶ୍ୱରଙ୍କ
ପ୍ରତିଜ୍ଞାତ ବିଶ୍ରାମସ୍ଥଳକୁ ନେଇ ଯାଇ ନ ଥିଲେ। ଯଦି ସେ
ନେଇଥାନ୍ତେ, ତେବେ ପରମେଶ୍ୱର ବିଶ୍ରାମ ପାଇଁ ଆଉ
ଗୋଟିଏ ଦିନ 'ଆଜି' ବୋଲି ଘୋଷଣା କରି ନ ଥାନ୍ତେ।
୯ଏହା ପ୍ରମାଣିତ କରେ ଯେ, ପରମେଶ୍ୱରଙ୍କ ଲୋକମାନଙ୍କ
ଲାଗି ସପ୍ତମ ଦିନର ବିଶ୍ରାମ ଭୋଗିବାର ବାକି ଅଛି।
୧୦ପରମେଶ୍ୱର ନିଜ କାମ ସମାପ୍ତ କଲା ପରେ ବିଶ୍ରାମ
କଲେ। ସେପ୍ରକାର ପରମେଶ୍ୱରଙ୍କ ପରି ମନୁଷ୍ୟ ଆପଣା
କାର୍ଯ୍ୟ ସମାପ୍ତ କଲାପରେ ବିଶ୍ରାମ ପାଇଥାଏ। ୧୧ଅତଏବ,
ଆମ୍ଭେ ପରମେଶ୍ୱରଙ୍କ ସେହି ବିଶ୍ରାମ ସ୍ଥଳରେ ପ୍ରବେଶ
କରିବା ପାଇଁ କଠିନ ଚେଷ୍ଟା କରିବା ଆବଶ୍ୟକ। ପରମେଶ୍ୱରଙ୍କ
ଆଜ୍ଞା ପାଳନ ନ କରି ଯେଉଁମାନେ ବିଶ୍ରାମ ସ୍ଥଳରେ
ପ୍ରବେଶ କରିପାରନ୍ତି ନାହିଁ, ସେହି ଲୋକମାନଙ୍କ ପଦାଙ୍କ
ଅନୁସରଣ କରି ଆମ୍ଭମାନଙ୍କ ମଧ୍ୟରୁ କେହି ଯେପରି ପତିତ
ନ ଯାଆନ୍ତି; ସେଥିପାଇଁ ଆମ୍ଭେମାନେ ଯଥାସାଧ୍ୟ ପରିଶ୍ରମ
କରିବା ଆବଶ୍ୟକ।
୧୨ପରମେଶ୍ୱରଙ୍କ ବାକ୍ୟ ଜୀବନ୍ତ ଓ କାର୍ଯ୍ୟସାଧକ
ଅଟେ। ତାହାଙ୍କର ବାକ୍ୟ ଯେ କୌଣସି ଦ୍ୱିଧାର ଖଡ୍ଗ
ଠାରୁ ମଧ୍ୟ ଅଧିକ ଧାରୁଆ। ପରମେଶ୍ୱରଙ୍କ ବାକ୍ୟ ଆମ୍ଭ
ପ୍ରାଣ, ଆତ୍ମା, ହାଡ଼ ଓ ମଜ୍ଜାର ସନ୍ଧିସ୍ଥଳ ଭେଦ କରିପାରେ।
ଏହା ହୃଦୟର ଚିନ୍ତା ଓ ଭାବର ବିଚାର କରେ। ୧୩ସମଗ୍ର
ବିଶ୍ୱରେ ପରମେଶ୍ୱରଙ୍କ ଦୃଷ୍ଟିରେ କୌଣସି କଥା ଲୁଚି ରହି
ପାରେ ନାହିଁ। ସେ ସ୍ପଷ୍ଟ ଭାବରେ ସବୁ କିଛି ଦେଖି
ପାରନ୍ତି। ତାହାଙ୍କ ସମ୍ମୁଖରେ ସମସ୍ତ ବିଷୟ ଅନାବୃତ।
ଆମ୍ଭେ କିପରି ଜୀବନଯାପନ କରିଛୁ ତାହାଙ୍କ ଛାମୁରେ
ତହିଁର ହିସାବ ଦେବାକୁ ହେବ।

### ଯୀଶୁ ଆମ୍ଭକୁ ପରମେଶ୍ୱରଙ୍କ ସମ୍ମୁଖୀନ ହେବାରେ ସାହାଯ୍ୟ କରନ୍ତି

୧୪ପୁତ୍ର ପ୍ରଭୁ ଯୀଶୁ ପରମେଶ୍ୱରଙ୍କ ସହିତ ରହିବା ପାଇଁ
ସ୍ୱର୍ଗକୁ ଯାଇଛନ୍ତି। ସେ ହେଉଛନ୍ତି ଆମ୍ଭର ପ୍ରଧାନ
ମହାଯାଜକ। ୧୫ଅତଏବ ଆମ୍ଭେ ଆମ୍ଭମାନଙ୍କ ବିଶ୍ୱାସରେ
ଦୃଢ଼ ରହିବା ଉଚିତ। ମହାଯାଜକ ଯୀଶୁ ଆମ୍ଭର ସମସ୍ତ
ଦୁର୍ବଳତା ଜାଣନ୍ତି। ଜଗତରେ ଥିବା ବେଳେ ସେ ପ୍ରତ୍ୟେକ
ଭାବରେ ପରୀକ୍ଷିତ ହେଲେ। ୧୬ଆମ୍ଭେମାନେ ଉପଯୁକ୍ତ
ସମୟରେ ଦୟା ଓ କୃପାପ୍ରାପ୍ତି ନିମନ୍ତେ ପରମେଶ୍ୱରଙ୍କ
ଅନୁଗ୍ରହଜନକ ସିଂହାସନ ନିକଟକୁ ଆମ୍ଭର ମହାଯାଜକ
ଯୀଶୁଙ୍କ ସହ ସମ୍ପୂର୍ଣ୍ଣ ଭରସାର ସହ ଯାଇପାରିବା।

୫ ପ୍ରତ୍ୟେକ ଯିହୂଦୀ ମହାଯାଜକ ପୁରୁଷମାନଙ୍କ ଭିତରୁ
ମନୋନୀତ ହୁଅନ୍ତି। ପରମେଶ୍ୱରଙ୍କୁ ଆପଣା ପାପ
ନିମନ୍ତେ ନୈବେଦ୍ୟ ଓ ବଳି ଉତ୍ସର୍ଗ କରିବା ନିମନ୍ତେ
ସେହି ମହାଯାଜକ ଲୋକମାନଙ୍କୁ ସାହାଯ୍ୟ କରନ୍ତି।
୨ଅନ୍ୟଲୋକମାନଙ୍କ ଭଳି ମହାଯାଜକର ମଧ୍ୟ ଦୁର୍ବଳତା
ରହିଛି, ତେଣୁ ସେ ଅଜ୍ଞାନ ଓ ଭ୍ରାନ୍ତ ଲୋକମାନଙ୍କ ପ୍ରତି
ସହାନୁଭୂତି ଦେଖାଇବାକୁ ସମର୍ଥ। ୩ମହାଯାଜକ
ଅନ୍ୟଲୋକମାନଙ୍କ ପାପ ନିମନ୍ତେ ବଳି ଉତ୍ସର୍ଗ କରନ୍ତି
କିନ୍ତୁ ତାହାଙ୍କର ନିଜର ମଧ୍ୟ ଦୁର୍ବଳତା ଥିବା ହେତୁରୁ ସେ
ମଧ୍ୟ ନିଜ ପାପ ପାଇଁ ବଳି ଉତ୍ସର୍ଗ କରିବା ଉଚିତ।
୪ମହାଯାଜକ ହେବା ଏକ ସମ୍ମାନର ବିଷୟ। କିନ୍ତୁ
କେହି ହେଲେ ନିଜେ ଏହି କାମ ପାଇଁ ବାଛେ ନାହିଁ।
ଜଣଙ୍କୁ ପରମେଶ୍ୱରଙ୍କ ଦ୍ୱାରା ଆହୂତ ହେବାକୁ ପଡ଼ିବ,
ଯେପରି ହାରୋଣ ଆହୂତ ହୋଇଥିଲେ। ୫ଖ୍ରୀଷ୍ଟ ମଧ୍ୟ
ସେହି ଡ଼କା ହୋଇଥିଲେ। ସେ ପରମେଶ୍ୱରଙ୍କ ଦ୍ୱାରା ସେ
ମନୋନୀତ ହୋଇଥିଲେ। ପରମେଶ୍ୱର ତାହାଙ୍କୁ କହିଲେ:

> "ତୁମ୍ଭେ ମୋର ପୁତ୍ର; ଆଜି ଆମ୍ଭେ ତୁମ୍ଭର ପିତା
> ହେଲୁ।"
>
> ଗୀତସଂହିତା ୨:୭

୬ଅନ୍ୟ ଗୋଟିଏ ସ୍ଥାନରେ (ଶାସ୍ତ୍ରରେ) ପରମେଶ୍ୱର କୁହନ୍ତି:

> "ମଲ୍‌କୀସେଦକଙ୍କ ପରି ତୁମ୍ଭେ ଅନନ୍ତକାଳୀନ ଯାଜକ
> ଅଟ।"
>
> ଗୀତସଂହିତା ୧୧୦:୪

୭ଖ୍ରୀଷ୍ଟ ଜଗତରେ ଥିଲାବେଳେ ଯେ, ତାହାଙ୍କୁ ମୃତ୍ୟୁରୁ
ରକ୍ଷା କରିବାକୁ ସମର୍ଥ, ସେହି ପରମେଶ୍ୱରଙ୍କୁ ଆକୁଳଭାବରେ
ଅଶ୍ରୁପାତ ସହ ପ୍ରାର୍ଥନା ଓ ବିନତି ଉତ୍ସର୍ଗ କରିଥିଲେ।
ଯେହେତୁ ଯୀଶୁ ପରମେଶ୍ୱରଙ୍କ ଇଚ୍ଛାନୁସାରେ କାମ କରୁଥିଲେ
ଓ ନମ୍ର ଥିଲେ, ତେଣୁ ପରମେଶ୍ୱର ତାହାଙ୍କ ପ୍ରାର୍ଥନାରେ
ପ୍ରତ୍ୟୁତ୍ତର ଦେଇଥିଲେ। ୮ଯୀଶୁ ପରମେଶ୍ୱରଙ୍କ ପୁତ୍ର ଥିଲେ।

---

**"ସପ୍ତମ ଦିନରେ ... ନେଲେ।"** ଆଦିପୁସ୍ତକ ୨:୨
**"ସେହି ଲୋକମାନେ .... ନାହିଁ।"** ଗୀତସଂହିତା ୯୫:୧୧
**'ଆଜିଦିନ'** ଏହାର ଅର୍ଥ 'ଏବେ' କରିବା।

ତଥାପି ଦୁଃଖଭୋଗ ଦ୍ୱାରା ଆଜ୍ଞା ବହିତା ଶିଖିଲେ। ୯ପୁଣି
ଯୀଶୁ ନିର୍ଦ୍ଦୋଷ ଥିଲେ। ଅତଏବ ଯେଉଁମାନେ ତାହାଙ୍କର
ଆଜ୍ଞା ମାନନ୍ତି ସେମାନେ ଅନନ୍ତ ଜୀବନ ପାଇପାରିବେ।
ପରମେଶ୍ୱର ମଲକୀସେଦକଙ୍କ ଭଳି ଯୀଶୁଙ୍କୁ ମହାଯାଜକ
ରୂପେ ବାଛିଲେ।

## ପତନ ବିରୁଦ୍ଧରେ ସତର୍କବାଣୀ

୧୧ଏ ବିଷୟରେ ଆମ୍ଭର ତୁମ୍ଭମାନଙ୍କୁ ଅନେକ କଥା
କହିବା ପାଇଁ ଅଛି। କିନ୍ତୁ ଯେହେତୁ ତୁମ୍ଭେମାନେ ଅବୁଝା
ହେଉଛ, ଏହାକୁ ବୁଝାଇବା କଷ୍ଟକର। ୧୨ବର୍ତ୍ତମାନ ପର୍ଯ୍ୟନ୍ତ
ଯେତିକି ସମୟ ଅତିବାହିତ ହୋଇ ଗଲାଣି, ତୁମ୍ଭେମାନେ
ଶିକ୍ଷକ (ଉପଦେଶକ) ହୋଇ ସାରନ୍ତିଣି। କିନ୍ତୁ ଯାହା ଜଣା
ପଡ଼େ, ପରମେଶ୍ୱରଙ୍କ ଶିକ୍ଷାର ପ୍ରାଥମିକ ମୌଳିକ ପାଠଗୁଡ଼ିକୁ
ତୁମ୍ଭମାନଙ୍କୁ ଶିଖାଇବା ପାଇଁ ଜଣେ ଲୋକ ଦରକାର।
ଶିଶୁମାନଙ୍କୁ ଦୁଧ ଦରକାର ହେଲା ଭଳି, ତୁମ୍ଭେମାନେ
ଏବେ ମଧ୍ୟ ପ୍ରାରମ୍ଭିକ ଶିକ୍ଷା କରୁଛ। ତୁମ୍ଭେମାନେ କଠିଣ
ଆହାର ଖାଇବା ପାଇଁ ପ୍ରସ୍ତୁତ ହୋଇ ନାହଁ। ୧୩ଯେ
କେବଳ ଦୁଧ ଖାଇ ବଞ୍ଚେ, ସେ ଶିଶୁପରି। ସେ ବ୍ୟକ୍ତି
ଉଚିତ ଶିକ୍ଷା କଣ ତାହା ଜାଣିନାହିଁ। ସେମାନେ ଭଲ ଓ
ମନ୍ଦର ପାର୍ଥକ୍ୟ ନିରୂପଣ କରିବା ପାଇଁ ଆତ୍ମିକ ଶିକ୍ଷା
ଗୁଡ଼ିକ ଲାଭ କରିଛନ୍ତି। ୧୪କିନ୍ତୁ କଠିଣ ଖାଦ୍ୟ ସେହିମାନଙ୍କ
ପାଇଁ ଯେଉଁମାନେ ଶିଶୁପରି ବ୍ୟବହାର ବନ୍ଦ କରି ଦେଇଛନ୍ତି।
ଏହା ସେହିମାନଙ୍କ ପାଇଁ ଯେଉଁମାନେ ଆତ୍ମାରେ ବୃଦ୍ଧି
ପାଇଛନ୍ତି।

୬ ଅତଏବ ଖ୍ରୀଷ୍ଟଙ୍କ ବିଷୟରେ ପ୍ରାରମ୍ଭିକ ଶିକ୍ଷାର
ସମାପ୍ତି ଘଟାଇବା ଦରକାର। ଆମ୍ଭେ ଯେଉଁ ସବୁ
କାର୍ଯ୍ୟ କରିବା ଆରମ୍ଭ କରିଛୁ, ତହିଁରୁ ପଶ୍ଚାତପଦ ହେବା
ନାହିଁ। ଯେତେବେଳେ ଆମ୍ଭେ ଖ୍ରୀଷ୍ଟଙ୍କଠାରେ ଆମ୍ଭ ଜୀବନ
ଆରମ୍ଭ କରିଲୁ, ଆମ୍ଭେମାନେ ମନ୍ଦକର୍ମରୁ ବିମୁଖ ହୋଇ
ପରମେଶ୍ୱରଙ୍କଠାରେ ବିଶ୍ୱାସ କଲୁ। ୨ସେତେବେଳେ ଆମ୍ଭେ
ବାପ୍ତିସ୍ମ ବିଷୟରେ, ଲୋକଙ୍କୁ ହସ୍ତାର୍ପଣ କରିବା ବିଷୟରେ,
ମୃତ୍ୟୁରୁ ପୁନରୁତ୍ଥିତ ହେବା ବିଷୟରେ ଓ ଶେଷ ବିଚାର
ବିଷୟରେ ଶିକ୍ଷା ପାଇଥିଲୁ। କିନ୍ତୁ ଏବେ ଆମ୍ଭେ ସିଦ୍ଧିଲାଭ
କରିବାକୁ ଅଗ୍ରସର ହେବା ଉଚିତ। ୩ହିଁ ଯଦି ପରମେଶ୍ୱର
ଅନୁମତି ଦିଅନ୍ତି, ଆମ୍ଭେ ଏପରି କରିବା।

୪-୬ଲୋକମାନେ ଖ୍ରୀଷ୍ଟଙ୍କ ମାର୍ଗ ଛାଡି ଦେଲା ପରେ
କ'ଣ ତୁମ୍ଭେମାନେ ସେମାନଙ୍କ ଜୀବନ କେବେ ପରିବର୍ତ୍ତିତ
କରି ପାରିବ? ଯେଉଁମାନେ ସତ୍ୟର ଶିକ୍ଷା ପାଇ ସାରିଛନ୍ତି
ମୁଁ ସେମାନଙ୍କୁ ଏହା କହୁଛି। ସେମାନେ ପରମେଶ୍ୱରଙ୍କ
ଦାନ ପ୍ରାପ୍ତ କରି, ଓ ପବିତ୍ର ଆତ୍ମାଙ୍କ ସହଭାଗୀ ହୋଇଛନ୍ତି।
ସେମାନେ ପରମେଶ୍ୱରଙ୍କ କଥା ଶୁଣିଲେ ଓ ପରମେଶ୍ୱରଙ୍କ
ଭାବୀ ଜଗତର ମହାନ୍ ଶକ୍ତି ଗୁଡିକୁ ଦେଖିଥିଲେ।
ସେମାନେ ତହିଁର ଉତ୍ତମତା ଜୀବନରେ ଉପଲବ୍ଧି କରିଛନ୍ତି।
କିନ୍ତୁ ତା'ପରେ ମଧ୍ୟ ସେମାନେ ଖ୍ରୀଷ୍ଟଙ୍କ ମାର୍ଗ ଛାଡିଛନ୍ତି।
ସେମାନେ ଯୀଶୁଙ୍କୁ ପୁନର୍ବାର କ୍ରୁଶରେ ଚଢ଼ାଇ କଣ୍ଟା
ମାରୁଛନ୍ତି। ସେମାନେ ସମସ୍ତଙ୍କ ଆଗରେ ଯୀଶୁଖ୍ରୀଷ୍ଟଙ୍କୁ
ଅପମାନିତ କରୁଛନ୍ତି।

୭ସେ ଲୋକମାନେ ହେଉଛନ୍ତି ପ୍ରଚୁର ବୃଷ୍ଟି ହେଉଥିବା
କ୍ଷେତ୍ର ସଦୃଶ। କୃଷକ ଲୋକମାନଙ୍କ ପାଇଁ ଶସ୍ୟ ଉତ୍ପନ୍ନ
କରିବା ନିମନ୍ତେ ସେହି କ୍ଷେତ୍ରର ରକ୍ଷଣ ବେକ୍ଷଣ କରେ।
ଯଦି ସେହି କ୍ଷେତ୍ର ଲୋକମାନଙ୍କ ପାଇଁ ଉପଯୋଗୀ ଫସଲ
ଉତ୍ପନ୍ନ କରେ, ତାହା, ପରମେଶ୍ୱରଙ୍କର ଆଶୀର୍ବାଦ ପାଏ।
୮କିନ୍ତୁ ଯଦି ସେହି କ୍ଷେତ୍ର କଣ୍ଟା ଓ ଅନାବନା (ବିଣୁଆ)
ଘାସ ଉତ୍ପନ୍ନ କରେ, ତାହେଲେ ତାହା ଅକାମୀ ଅଟେ।
ସେହି ଭୂମି ପରମେଶ୍ୱରଙ୍କ ଦ୍ୱାରା ଅଗ୍ରାହ୍ୟ ହୋଇ ଅଭିଶପ୍ତ
ହୁଏ, ଓ ଶେଷରେ ତାହା ଅଗ୍ନି ଦ୍ୱାରା ବିନଷ୍ଟ ହେବ।

୯ପ୍ରିୟ ମିତ୍ରଗଣ! ଆମ୍ଭେ ତୁମ୍ଭମାନଙ୍କୁ ଏହି କଥା
କହୁଛୁ। କିନ୍ତୁ ପ୍ରକୃତରେ ଆମ୍ଭେ ତୁମ୍ଭମାନଙ୍କଠାରୁ ଅଧିକ
ଉତ୍ତମ ବିଷୟ ଆଶା କରୁ। ଆମ୍ଭେ ନିଶ୍ଚିତ ଯେ
ତୁମ୍ଭେମାନେ ପରିତ୍ରାଣର କଥା ଆମ୍ଭକୁ କହିବ। ତୁମ୍ଭେମାନେ
ତାହାଙ୍କ ଲୋକମାନଙ୍କୁ ସାହାଯ୍ୟ କରି ଯେଉଁ ପ୍ରେମଭାବ
ପ୍ରଦର୍ଶିତ କରିଛ, ସେହି ଭଲ କାମକୁ ପରମେଶ୍ୱର
ସଦାସର୍ବଦା ମନେ ରଖିବେ। ୧୦ପରମେଶ୍ୱର ହେଉଛନ୍ତି
ନ୍ୟାୟୀ। ତୁମ୍ଭେମାନେ ତାହାଙ୍କ ଲୋକମାନଙ୍କୁ ସାହାଯ୍ୟ କରି
ଚାଲିଛ, ଏକଥା ସେ ମନେ ରଖିବେ। ୧୧ଆମ୍ଭେ ଚାହୁଁ ଯେ
ତୁମ୍ଭମାନଙ୍କ ଭିତରୁ ପ୍ରତ୍ୟେକ ଜୀବନସାରା ସେହି ଭଳି
କଠୋର ପରିଶ୍ରମ କରୁଥାଅ। ତେବେ ତୁମ୍ଭେମାନେ ତୁମ୍ଭର
ପ୍ରତ୍ୟାଶିତ ମହତ୍ ବିଷୟ ଲାଭ କରିବ। ୧୨ତୁମ୍ଭେମାନେ
ଆଳସ୍ୟପରାୟଣ ନ ହୋଇ ଯେପରି ପରମେଶ୍ୱରଙ୍କ ପ୍ରତିଜ୍ଞାତ
ବିଷୟ ପ୍ରାପ୍ତ ହୋଇଥିବା ଲୋକମାନଙ୍କ ପରି ହୁଅ, ଏକଥା
ଆମ୍ଭେ ଚାହୁଁ। ସେମାନେ ତାହାଙ୍କର ବିଶ୍ୱାସ ଓ ଧୈର୍ଯ୍ୟ
ହେତୁରୁ ପରମେଶ୍ୱରଙ୍କ ପ୍ରତିଜ୍ଞାର ଅଧିକାରୀ ହେଉଛନ୍ତି।

୧୩ପରମେଶ୍ୱର ଅବ୍ରାହାମଙ୍କୁ ପ୍ରତିଜ୍ଞା ଦେଇଥିଲେ।
ପରମେଶ୍ୱରଙ୍କ ବ୍ୟତୀତ ମହାନ ଲୋକ ଆଉ କେହି
ନାହାଁନ୍ତି। ଅତଏବ ପରମେଶ୍ୱର ନିଜ ନାମରେ ଯାହା
ପ୍ରତିଜ୍ଞା କରିଛନ୍ତି, ତାହା ସାଧନା କରିବେ ବୋଲି କହିଛନ୍ତି।
୧୪ପରମେଶ୍ୱର କହିଲେ: "ମୁଁ ଅବଶ୍ୟ ତୁମ୍ଭକୁ ଆଶୀର୍ବାଦ
କରିବ। ମୁଁ ତୁମ୍ଭର ବଂଶ ଅତିଶୟ ବୃଦ୍ଧି କରିବ।"*
୧୫ଅବ୍ରାହାମ ଧୈର୍ଯ୍ୟପୂର୍ବକ ଏହା ଘଟିବା ପାଇଁ ଅପେକ୍ଷା
କଲେ। ଓ ପରେ ସେ ପରମେଶ୍ୱରଙ୍କ ପ୍ରତିଜ୍ଞାନୁସାରେ
ଫଳପ୍ରାପ୍ତ ହେଲେ।

୧୬ମନୁଷ୍ୟମାନେ ନିଜ ଅପେକ୍ଷା ମହତ୍ ଲୋକର ନାମ
ନେଇ ଶପଥ କରିଥାନ୍ତି। ଏହା ଦ୍ୱାରା ସେମାନଙ୍କର କଥାର
ସତ୍ୟତା ପ୍ରମାଣିତ ହୁଏ ଓ ସେମାନଙ୍କ ବିବାଦର ନିଷ୍ପତ୍ତି
ହୁଏ। ୧୭ପରମେଶ୍ୱର ନିଜ ପ୍ରତିଜ୍ଞାର ସତ୍ୟତା ପ୍ରମାଣିତ
କରିବା ପାଇଁ ଇଚ୍ଛା କଲେ। ପରମେଶ୍ୱରଙ୍କ ପ୍ରତିଜ୍ଞାର
ଅଧିକାରୀମାନଙ୍କ ନିକଟରେ ପ୍ରମାଣିତ କରିବାକୁ ଇଚ୍ଛାକଲେ।
ସେ ସେମାନଙ୍କୁ ସ୍ପଷ୍ଟ ଭାବରେ ବୁଝାଇ ଦେବାକୁ ଚାହିଁଲେ
ଯେ ତାହାଙ୍କର ଉଦ୍ଦେଶ୍ୟ (ଯୋଜନା)ରେ କୌଣସି ପରିବର୍ତ୍ତନ
ଘଟେ ନାହିଁ। କାରଣ ପରମେଶ୍ୱର ଯାହା କହନ୍ତି, ତାହା
ନିଶ୍ଚିତ ହେବ ଏବଂ ଏହା ପ୍ରମାଣିତ କରିବାକୁ ସେ ପ୍ରତିଜ୍ଞା
ସହ ଶପଥ ମଧ୍ୟ କରନ୍ତି। ୧୮ଉକ୍ତ ଦୁଇଟି ଯାକ

---

**"ମୁଁ ଅବଶ୍ୟ ... ବୃଦ୍ଧି କରିବ।"** ଆଦିପୁସ୍ତକ ୨୨:୧୭

ଅପରିବର୍ତ୍ତନୀୟ। ଯେତେବେଳେ ପରମେଶ୍ୱର କିଛି କହନ୍ତି
ସେ ମିଛ କହି ପାରନ୍ତି ନାହିଁ, ପୁଣି କୌଣସି ଶପଥ
କଲାବେଳେ ମଧ୍ୟ ସେ ମିଛ କହି ପାରନ୍ତି ନାହିଁ। ଅତଏବ
ଯେଉଁମାନେ ନିଜର ସୁରକ୍ଷା ଦୃଷ୍ଟିରୁ ପରମେଶ୍ୱରଙ୍କ ପାଖକୁ
ଆସିଛନ୍ତି, ସେମାନଙ୍କୁ ଉକ୍ତ କଥା ସାନ୍ତ୍ୱନା ପ୍ରଦାନ କରେ
ଓ ପରମେଶ୍ୱରଙ୍କ ଭରସାରେ ସ୍ଥିର ରହିବା ପାଇଁ ଦୃଢ଼
ଉତ୍ସାହ ପ୍ରଦାନ କରେ। ୧୯ଆମ୍ଭର ସେହି ଭରସା ଗୋଟିଏ
ଲଙ୍ଗର ଭଳି ନିଶ୍ଚିତ ଓ ସୁଦୃଢ଼। ଏହା ମନ୍ଦିରର ପରଦା
ଆଢୁଆଳରେ ଥିବା ପବିତ୍ର ସ୍ଥାନରେ ପ୍ରବେଶ କରି ଆମ୍ଭର
ଆତ୍ମାକୁ ସୁରକ୍ଷିତ ରଖେ। ୨୦ଯୀଶୁ ଆଗରୁ ସେଠାକୁ ଯାଇ
ସାରିଛନ୍ତି, ଓ ଆମ୍ଭ ପାଇଁ ପଥ ଉନ୍ମୁକ୍ତ କରିଛନ୍ତି।
ମଲକୀସେଦକଙ୍କ ଭଳି ଯୀଶୁ ଅନନ୍ତକାଳୀନ ମହାଯାଜକ
ଅଟନ୍ତି।

## ଯାଜକ ମଲ୍‌କୀସେଦକ

୭ ମଲ୍‌କୀସେଦକ ଶାଲେମର ରାଜା ଥିଲେ, ଓ ସର୍ବୋଚ୍ଚ
ପରମେଶ୍ୱରଙ୍କ ଯାଜକ ଥିଲେ। ଅବ୍ରାହାମ ରାଜାମାନଙ୍କୁ
ପରାଜିତ କରି ଫେରିଲାବେଳେ ମଲ୍‌କୀସେଦକ ଅବ୍ରାହାମଙ୍କୁ
ଦେଖାକଲେ। ସେ ଅବ୍ରାହାମଙ୍କୁ ଆଶୀର୍ବାଦ କଲେ। ୨ଯୁଦ୍ଧରେ
ଜିତି ଅବ୍ରାହାମ ଯାହା ପାଇଥିଲେ ତା'ର ଏକ ଦଶମାଂଶ
ସେ ମଲ୍‌କୀସେଦକଙ୍କୁ ଦେଲେ। (ମଲ୍‌କୀସେଦକ ନାମର
ଅର୍ଥ: ପ୍ରଥମଟି ହେଉଛି "ଧର୍ମରାଜା" ଓ ଦ୍ୱିତୀୟଟି ହେଲା
"ଶାଲେମର ରାଜା" ଅର୍ଥାତ୍ "ଶାନ୍ତିର ରାଜା"।) ୩କେହି
ହେଲେ ମଲ୍‌କୀସେଦକଙ୍କ ପିତା କିମ୍ବା ମାତାଙ୍କ ବିଷୟରେ
ଜାଣନ୍ତି ନାହିଁ ପୁଣି ସେ କେଉଁଠାରୁ ଆସିଛନ୍ତି, ସେ
କେବେ ଜନ୍ମ ଗ୍ରହଣ କଲେ, ଓ କେବେ ମଲେ ତା'ମଧ୍ୟ
କେହି ଜାଣନ୍ତି ନାହିଁ। ମଲ୍‌କୀସେଦକ ପରମେଶ୍ୱରଙ୍କ ପୁତ୍ର
ଭଳି, ଓ ସେ ସଦା ସର୍ବଦା ପାଇଁ ଯାଜକ ହୋଇ
ରହିଛନ୍ତି।
୪ମଲ୍‌କୀସେଦକ କେତେ ମହାନ୍ ବ୍ୟକ୍ତି, ଭାବି ଦେଖ।
ମହାନ ପିତା ଅବ୍ରାହାମ ଯୁଦ୍ଧରେ ଯାହା କିଛି ଜିତି ଥିଲେ
ତାର ଏକ ଦଶମାଂଶ ମଲ୍‌କୀସେଦଙ୍କୁ ଦେଲେ। ୫ବ୍ୟବସ୍ଥା
ଅନୁସାରେ ଲେବୀ ବଂଶର ଯାଜକମାନେ ଲୋକମାନଙ୍କ
ଠାରୁ ଏକଦଶମାଂଶ ପାଇବା କଥା। ଯାଜକମାନେ ଏହି
ଅଂଶ ନିଜଲୋକ (ଯିହୂଦୀ) ମାନଙ୍କଠାରୁ ନେଉଥିଲେ,
ଯଦିଓ ଯାଜକ ଓ ତାହାଙ୍କ ଲୋକମାନେ ସମସ୍ତେ ଅବ୍ରାହାମଙ୍କ
ବଂଶଜ ଅଟନ୍ତି। ୬ମଲ୍‌କୀସେଦକ ଲେବୀ ବଂଶର ନ
ଥିଲେ। ତଥାପି ସେ ଅବ୍ରାହାମଙ୍କ ଠାରୁ ଏକଦଶମାଂଶ
ପାଇଲେ। ଓ ସେ ପରମେଶ୍ୱରଙ୍କ ପ୍ରତିଜ୍ଞାର ଅଧିକାରୀ
ଅବ୍ରାହାମଙ୍କୁ ଆଶୀର୍ବାଦ କଲେ। ୭ସମସ୍ତେ ଜାଣନ୍ତି ଯେ,
ସାନ ବଡ଼ଠାରୁ ଆଶୀର୍ବାଦ ପ୍ରାପ୍ତ ହୁଏ। ୮ଯାଜକମାନେ
ଲୋକମାନଙ୍କ ଠାରୁ ଏକଦଶମାଂଶ ପାଆନ୍ତି, କିନ୍ତୁ ସେମାନେ
ସାଧାରଣ ମନୁଷ୍ୟ ପରି ବଞ୍ଚି ପରିଶେଷରେ ମୃତ୍ୟୁ ବରଣ
କରନ୍ତି। କିନ୍ତୁ ଅବ୍ରାହାମଙ୍କ ଠାରୁ ଏକଦଶମାଂସ ପାଇଥିବା
ମଲ୍‌କୀସେଦକ ଶାସ୍ତ୍ର ଅନୁସାରେ ଏବେ ମଧ୍ୟ ଜୀବିତ।
୯ଲେବୀ ଲୋକମାନଙ୍କଠାରୁ ଏକଦଶମାଂଶ ଗ୍ରହଣ କରନ୍ତି।
କିନ୍ତୁ ଆମ୍ଭେ କହି ପାରିବା ଯେ, ଯେତେବେଳେ ଅବ୍ରାହାମ
ମଲ୍‌କୀସେଦକଙ୍କୁ ଦଶମାଂଶ ଦେଲେ, ତା'ର ଅର୍ଥ ଲେବୀ
ମଧ୍ୟ ତାହା ଦେଲେ। ୧୦ଲେବୀ ସେ ପର୍ଯ୍ୟନ୍ତ ଜନ୍ମ ନ
ହୋଇଥିଲେ ସୁଦ୍ଧା ଅବ୍ରାହାମ ମଲ୍‌କୀସେଦକଙ୍କୁ ଭେଟିବା
ସମୟରେ ଲେବୀ ଅବ୍ରାହାମଙ୍କ ପୂର୍ବପୁରୁଷଙ୍କ ଶରୀରରେ
ଥିଲେ।
୧୧ଲେବୀ ପରିବାର ବର୍ଗଙ୍କ* ଯାଜକମାନଙ୍କର ପଦ୍ଧତି
ଅନୁଯାୟୀ ଲୋକଙ୍କୁ ବ୍ୟବସ୍ଥା ପ୍ରଦତ୍ତ ହୋଇଥିଲା। କିନ୍ତୁ
ଏହି ଯାଜକ ମାନଙ୍କର ପଦ୍ଧତି ଦ୍ୱାରା ଲୋକମାନଙ୍କୁ
ଆଧାତ୍ମିକ ଭାବରେ ସିଦ୍ଧ କରା ଯାଇ ପାରିଲା ନାହିଁ।
ଅତଏବ, ଆଉ ଜଣେ ଯାଜକର ଆସିବା ଆବଶ୍ୟକ ଥିଲା।
ହାରୋଣଙ୍କ ଭଳି ନୁହେଁ ମାତ୍ର ମଲ୍‌କୀସେଦକଙ୍କ ଭଳି
ଆଉ ଜଣେ ଯାଜକର ଆବଶ୍ୟକ ଥିଲା। ୧୨ଯେତେବେଳେ
ଯାଜକର ପରିବର୍ତ୍ତନ ହୁଏ ସେତେବେଳେ ବ୍ୟବସ୍ଥାର ମଧ୍ୟ
ପରିବର୍ତ୍ତନ ଆବଶ୍ୟକ ହୋଇଥାଏ। ୧୩ଆମ୍ଭେ ଏହି କଥାଗୁଡିକ
ଖ୍ରୀଷ୍ଟଙ୍କ ବିଷୟରେ କହୁଛୁ। ସେ ଅନ୍ୟ ଏକ ଗୋଷ୍ଠୀର
ଲୋକ ଥିଲେ। ସେହି ଗୋଷ୍ଠୀର କେହି କେବେ ହେଲେ
ଆଗରୁ ଯାଜକ ଭାବେ ବେଦୀ* ରେ ସେବା କରି ନ
ଥିଲେ। ୧୪କାରଣ ଏହା ସ୍ପଷ୍ଟ ଯେ, ଆମ୍ଭମାନଙ୍କର ପ୍ରଭୁ
ଯିହୂଦାଙ୍କ ଗୋଷ୍ଠୀରେ ଜାତ। ମାତ୍ର ସେହି ଗୋଷ୍ଠୀର
ଯାଜକମାନଙ୍କ ବିଷୟରେ ମୋଶା କହିନାହାଁନ୍ତି।

## ଯୀଶୁ ମଲ୍‌କୀସେଦକଙ୍କ ଭଳି ଜଣେ ଯାଜକ

୧୫ଏହି କଥା ଗୁଡିକ ଅଧିକ ସୁସ୍ପଷ୍ଟ ହୁଏ ଯେ,
ମଲ୍‌କୀସେଦକଙ୍କ ଭଳି ଆଉ ଜଣେ ଯାଜକ ଅଛନ୍ତି।
୧୬ସେ କୌଣସି ଗୋଷ୍ଠୀର ବ୍ୟବସ୍ଥା ଦ୍ୱାରା ଯାଜକ ହୋଇ
ନ ଥିଲେ। ବରଂ ଅକ୍ଷୟ ଜୀବନର ଶକ୍ତି ଅନୁସାରେ
ଯାଜକ ହେଲେ। ୧୭ଶାସ୍ତ୍ରରେ ତାହାଙ୍କ ବିଷୟରେ କୁହାଯାଇଛି:
"ତୁମ୍ଭେ ମଲ୍‌କୀସେଦକଙ୍କ ଭଳି ଜଣେ ଅନନ୍ତକାଳୀନ
ଯାଜକ ଅଟ।"*
୧୮ପୂର୍ବ ବ୍ୟବସ୍ଥା ଦୁର୍ବଳ ଓ ବ୍ୟର୍ଥ ହୋଇଥିବାରୁ ଲୋପ
କରି ଦିଆ ହେଲା। ୧୯ମୋଶାଙ୍କ ବ୍ୟବସ୍ଥା କୌଣସି ବିଷୟ
ସିଦ୍ଧ କରି ନ ଥିଲା। ଏବେ ଆମ୍ଭକୁ ମିଳିଥିବା ଶ୍ରେଷ୍ଠତର
ଭରସାରେ ଆମ୍ଭେ ପରମେଶ୍ୱରଙ୍କ ପାଖକୁ ଆସି ପାରିବା।
୨୦ଯୀଶୁଖ୍ରୀଷ୍ଟଙ୍କୁ ମହାଯାଜକ କଲାବେଳେ, ପରମେଶ୍ୱର
ଯେଉଁ ଶପଥ କରିଥିଲେ, ଏହା ଗୁରୁତ୍ୱପୂର୍ଣ୍ଣ ଅଟେ।
ଯେତେବେଳେ ଅନ୍ୟମାନେ ଯାଜକ ହୋଇଥିଲେ,
ସେତେବେଳେ କୌଣସି ଶପଥ ହୋଇ ନ ଥିଲା। ୨୧କିନ୍ତୁ
ପରମେଶ୍ୱରଙ୍କ ଶପଥ କରିଥିବା ହେତୁରୁ ଯୀଶୁ ଯାଜକ
ହୋଇଥିଲେ। ପରମେଶ୍ୱର କହିଥିଲେ:

---

**ଲେବୀ ପରିବାର ବର୍ଗ** ଯାକୁବଙ୍କର ବାରଜଣ ପୁତ୍ରଙ୍କ ନାମରେ ନାମିତ, ଇହୁଦୀମାନଙ୍କର ବାରଟି 'ଜନଜାତି' ଭିତରୁ ଗୋଟିଏ।

**ବେଦୀ** ପଥରର ଚବୁତରା, ଯେଉଁଠାରେ ପରମେଶ୍ୱରଙ୍କୁ ସମର୍ପିତ ବଳିକୁ ପୋଡା ଯାଏ।

**"ତୁମ୍ଭେ ... ଯାଜକ ଅଟ।"** ଗୀତସଂହିତା ୧୧୦:୪

"ପ୍ରଭୁ ଶପଥ କରିଛନ୍ତି ଓ ସେ ନିଜ ନିର୍ଣ୍ଣୟ
ପରିବର୍ତ୍ତନ କରିବେ ନାହିଁ, 'ତୁମ୍ଭେ ଅନନ୍ତକାଳୀନ
ଯାଜକ ଅଟ।'"

ଗୀତସଂହିତା ୧୧୦-୪

୨୨ଏହାର ଅର୍ଥ ହେଲା ଯେ ସେହି ପ୍ରକାରେ ପରମେଶ୍ୱରଙ୍କ
ନିଜଲୋକଙ୍କ ସହିତ କରିଥିବା ଶ୍ରେଷ୍ଠତର ନିୟମର ଯୀଶୁ
ହେଉଛନ୍ତି ଜଣେ ଜାମିନ୍‌ଦାର।
୨୩ଆହୁରି ମଧ୍ୟ ଯେତେବେଳେ ସେହି ଅନ୍ୟ ଯାଜକମାନେ
ମରିଗଲେ, ସେମାନେ ଆଉ ଯାଜକ ହୋଇ ରହି ପାରିଲେ
ନାହିଁ। ଏଥିପାଇଁ ସେହି ଯାଜକମାନଙ୍କ ଭିତରୁ ଅନେକ
ସେଠାରେ ଥିଲେ। ୨୪କିନ୍ତୁ ଯୀଶୁ ଅମର। ସେ କେବେହେଲେ
ଯାଜକ ସେବାରୁ ଅବ୍ୟାହତି ହେବେ ନାହିଁ। ୨୫ଅତଏବ
ଯେଉଁମାନେ ଖ୍ରୀଷ୍ଟଙ୍କ ମାଧ୍ୟମରେ ପରମେଶ୍ୱରଙ୍କ ପାଖକୁ
ଆସନ୍ତି, ସେମାନଙ୍କୁ ଯୀଶୁ ପରିତ୍ରାଣ ଦେଇ ପାରିବେ। ସେ
ନିତ୍ୟ ଜୀବିତ ହେବାରୁ, ଲୋକେ ଯେତେବେଳେ ପରମେଶ୍ୱରଙ୍କ
ପାଖକୁ ଆସିବେ, ଯୀଶୁ ସେମାନଙ୍କୁ ସର୍ବଦା ସାହାଯ୍ୟ କରି
ପାରିବେ।
୨୬ଅତଏବ, ଯୀଶୁଖ୍ରୀଷ୍ଟଙ୍କ ଭଳି ମହାଯାଜକ ଆମ୍ଭର
ଆବଶ୍ୟକ ଥିଲା। ସେ ପବିତ୍ର, ତାହାଙ୍କଠାରେ କୌଣସି
ପାପ ନାହିଁ। ସେ ପବିତ୍ର ଓ ପାପୀମାନଙ୍କ ଦ୍ୱାରା ପ୍ରଭାବିତ
ନୁହଁନ୍ତି। ତାହାଙ୍କୁ ସ୍ୱର୍ଗଠାରୁ ମଧ୍ୟ ଉଚ୍ଚସ୍ଥାନକୁ ନିଆ
ଯାଇଛି। ୨୭ସେ ଅନ୍ୟ ଯାଜକମାନଙ୍କ ଭଳି ନୁହଁନ୍ତି। ଅନ୍ୟ
ଯାଜକମାନେ ପ୍ରତିଦିନ ବଳି ଉତ୍ସର୍ଗ କରିବା ଆବଶ୍ୟକ
ଥିଲା। ପ୍ରଥମେ ନିଜ ପାଇଁ ଓ ପରେ ଅନ୍ୟ ଲୋକମାନଙ୍କ
ପାପ ଲାଗି ସେମାନଙ୍କୁ ବଳି ଉତ୍ସର୍ଗ କରିବାକୁ ପଡୁଥିଲା।
କିନ୍ତୁ ଯୀଶୁଙ୍କୁ ଏହା କରିବାକୁ ପଡ଼ି ନାହିଁ। ଯୀଶୁ ଚିରକାଳ
ନିମନ୍ତେ ଏକାଥରକେ ବଳୀକୃତ ହେଲେ। ସେ ନିଜକୁ
ସମର୍ପି ଦେଲେ। ୨୮ବ୍ୟବସ୍ଥା ଦୁର୍ବଳତା ବିଶିଷ୍ଟ ମନୁଷ୍ୟଙ୍କୁ
ମହାଯାଜକ ପଦରେ ନିଯୁକ୍ତ କରେ। ପରମେଶ୍ୱର ଯେଉଁ
ଶପଥ ବ୍ୟବସ୍ଥା ପରେ କରିଥିଲେ, ତଦ୍ଦ୍ୱାରା ପରମେଶ୍ୱରଙ୍କ
ପୁତ୍ର ଅନନ୍ତକାଳ ପର୍ଯ୍ୟନ୍ତ ମହାଯାଜକ ପଦରେ ନିଯୁକ୍ତ
ପାଇଲେ।

## ଯୀଶୁ ଆମ୍ଭର ମହାଯାଜକ

୮ ଆମ୍ଭେ ଯାହା କିଛି କହୁଛୁ, ତାର ସାର ମର୍ମ ହେଲା
ଯେ, ଆମ୍ଭମାନଙ୍କର ଏଭଳି ଜଣେ ମହାଯାଜକ
ଅଛନ୍ତି, ଯେ ସ୍ୱର୍ଗର ପରମେଶ୍ୱରଙ୍କ ସିଂହାସନର ଦକ୍ଷିଣ
ପାର୍ଶ୍ୱରେ ବସି ଅଛନ୍ତି। ୨ଆମ୍ଭର ମହାଯାଜକ ମହା ପବିତ୍ର
ସ୍ଥାନ* ରେ ସେବା କାର୍ଯ୍ୟ କରନ୍ତି। ସେ ଲୋକମାନଙ୍କ
ହସ୍ତ ନିର୍ମିତ ସ୍ଥାନରେ ନୁହେଁ, ମାତ୍ର ପରମେଶ୍ୱରଙ୍କ ଦ୍ୱାରା
ନିର୍ମିତ ସେହି ଉପାସନା ସ୍ଥଳରେ ସେବା କରନ୍ତି।
୩ପରମେଶ୍ୱରଙ୍କୁ ଦାନ ଓ ବଳି ଉତ୍ସର୍ଗ କରିବା
ପ୍ରତ୍ୟେକ ମହାଯାଜକଙ୍କର କାମ ଅଟେ। ଅତଏବ ଆମ୍ଭର
ମହାଯାଜକ ମଧ୍ୟ ପରମେଶ୍ୱରଙ୍କୁ କିଛି ଉତ୍ସର୍ଗ କରିବା
କଥା। ୪ଯଦି ଆମ୍ଭର ମହାଯାଜକ ପୃଥିବୀରେ ଏବେ
ଜୀବିତ ଥାଆନ୍ତେ, ତା'ହେଲେ ସେ ଯାଜକ ହୋଇ ପାରି
ନ ଥାନ୍ତେ। ମୋର କହିବାର କାରଣ ବ୍ୟବସ୍ଥା ଅନୁସାରେ
ବଳି ଉତ୍ସର୍ଗ କରୁଥିବା ଯାଜକମାନେ ଅଛନ୍ତି। ୫ଏହି
ଯାଜକମାନେ ଯେଉଁ କାମ କରନ୍ତି, ତାହା ପ୍ରକୃତରେ
ସ୍ୱର୍ଗରେ ଥିବା କାମ ଗୁଡ଼ିକର ଛାୟା ଓ ନମୁନା ମାତ୍ର।
ସେଥିପାଇଁ ମୋଶା ତମ୍ବୁ* ନିର୍ମାଣ କରିବାକୁ ଗଲାବେଳେ
ପରମେଶ୍ୱର ତାହାଙ୍କୁ ଚେତାବନୀ ଦେଇ କହିଥିଲେ: "ପର୍ବତ
ଉପରେ ମୁଁ ତୁମ୍ଭକୁ ଯେଉଁ ନମୁନା ଦେଖାଇ ଥିଲି,
ତଦନୁସାରେ ସମସ୍ତ ନିର୍ମାଣ କର।"* ୬କିନ୍ତୁ ଯୀଶୁଙ୍କୁ
ଯେଉଁ କାମ କରିବାକୁ ଦିଆ ହୋଇଛି ତାହା ସେହି
ଯାଜକମାନଙ୍କ କାମଠାରୁ ଉତ୍କୃଷ୍ଟତର। ସେପ୍ରକାରେ,
ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ ପରମେଶ୍ୱର ଆପଣା ଲୋକଙ୍କ
ପ୍ରତି କରିଥିବା ନୂତନ ଚୁକ୍ତି ପୁରାତନ ଚୁକ୍ତି ଅପେକ୍ଷା
ଉତ୍କୃଷ୍ଟ ଅଟେ। ଏହି ନୂତନଚୁକ୍ତି ଅପେକ୍ଷାକୃତ ଉତ୍ତମ
ପ୍ରତିଜ୍ଞା ସମ୍ବଳିତ ଅଟେ।
୭ଯଦି ପ୍ରଥମ ଚୁକ୍ତିରେ କୌଣସି ଦୋଷ ନଥାନ୍ତା
ତାହେଲେ ସେଠାରେ ଦ୍ୱିତୀୟ ଚୁକ୍ତିର ଆବଶ୍ୟକତା ନ
ଥାନ୍ତା। ୮କିନ୍ତୁ ପରମେଶ୍ୱର ଲୋକମାନଙ୍କଠାରେ ତ୍ରୁଟି
ଦେଖିଲେ। ପରମେଶ୍ୱର କହିଲେ:

"ପ୍ରଭୁ କହନ୍ତି, ସମୟ ଆସୁଛି, ଯେତେବେଳେ ମୁଁ
ଇସ୍ରାୟେଲ ଲୋକମାନଙ୍କ ଓ ଯିହୁଦୀୟ ଲୋକମାନଙ୍କ
ସହିତ ନୂତନ ଚୁକ୍ତି କରିବି।
୯ ତାହାଙ୍କ ପୂର୍ବପୁରୁଷଙ୍କ ସହିତ ଆମ୍ଭେ ଯେଉଁ ଚୁକ୍ତି
କରିଥିଲୁ ସେ ଅନୁସାରେ ହେବ ନାହିଁ। ସେହି
ଚୁକ୍ତି ମୁଁ ସେମାନଙ୍କର ହାତ ଧରିଲା ବେଳେ ଓ
ମିସର ଦେଶରୁ ଆଣିଥିଲା ବେଳେ କରି ଥିଲି।
ପ୍ରଭୁ କୁହନ୍ତି: ମୁଁ ଦେଇଥିବା ଚୁକ୍ତି ସେମାନେ
ପାଳନ କରିବା ବନ୍ଦ କରି ଦେଲେ, ଓ ମୁଁ ନିଜକୁ
ସେମାନଙ୍କ ଠାରୁ ଦୂରେଇ ଆଣିଲି।
୧୦ ଏହି ନୂତନ ଚୁକ୍ତିଟି ମୁଁ ଇସ୍ରାୟେଲର ଲୋକଙ୍କ
ସହିତ କରିବି, ଏହି ଚୁକ୍ତିଟି ମୁଁ ଭବିଷ୍ୟତରେ
କରିବି ପ୍ରଭୁ କୁହନ୍ତି: ମୁଁ ସେମାନଙ୍କ ମନରେ
ଆପଣା ବ୍ୟବସ୍ଥା ଦେବି ସେମାନଙ୍କ ହୃଦୟରେ
ସେହିସବୁ ଲେଖିବି। ମୁଁ ସେମାନଙ୍କ ପରମେଶ୍ୱର
ହେବି, ଓ ସେମାନେ ମୋର ଲୋକ ହେବେ।
୧୧ ଏହାପରେ ପୁନର୍ବାର କେହି ନିଜ ଭାଇ ବା
ପରମେଶ୍ୱରଙ୍କ ଅନ୍ୟଲୋକମାନଙ୍କୁ ଶିକ୍ଷା ଦେବ ନାହିଁ
କିମ୍ବା ପ୍ରଭୁଙ୍କୁ ଜାଣିବା ନିମନ୍ତେ କିଛି କହିବା
ଆବଶ୍ୟକ ହେବ ନାହିଁ, କାହିଁକି? କାରଣ ସାନଠାରୁ
ବଡ଼ ପର୍ଯ୍ୟନ୍ତ ସେମାନେ ସମସ୍ତେ ମୋତେ ଜାଣିବେ।

**ପବିତ୍ର ସ୍ଥାନ** ଆଧ୍ୟାତ୍ମିକ ସ୍ଥାନ, ଯେଉଁଠାରେ ପରମେଶ୍ୱର ରହି ପୂଜିତ ହୁଅନ୍ତି।

**ତମ୍ବୁ** ଯାହାଭିତରେ ନିଜଲୋକଙ୍କ ସହିତ ପରମେଶ୍ୱର ରହିଥିଲେ ଓ ଯିହୂଦୀ ଯାଜକମାନେ ଉପାସନା କରିଥିଲେ। ଏହାକୁ ଆବାସ ତମ୍ବୁ କୁହାଯାଏ।

**"ପର୍ବତ ... ନିର୍ମାଣ କର।"** ଯାତ୍ରାପୁସ୍ତକ ୨୫:୪୦

[୧୨] ଓ ମୋ ବିରୁଦ୍ଧରେ କରିଥିବା ଦୋଷ ସବୁ ମୁଁ କ୍ଷମା
କରିଦେବି, ଏବଂ ମୁଁ ସେମାନଙ୍କ ପାପଗୁଡ଼ିକୁ ଆଉ
ଅଧିକ ମନେ ରଖିବି ନାହିଁ।”
ଯିରିମିୟ ୩୧:୩୧-୩୪

[୧୩]ପରମେଶ୍ୱର ଏହାକୁ ନୂତନ ଚୁକ୍ତି ବୋଲି କହି,
ପ୍ରଥମ ଚୁକ୍ତିଟିକୁ ପୁରାତନ ଚୁକ୍ତି କରି ଅଛନ୍ତି। ଯେଉଁ
ବିଷୟସବୁ ପୁରାତନ ଓ ଅକାମୀ ହୋଇଯାଇଛି, ତାହା
ଅତିଶୀଘ୍ର ଲୋପ ପାଇ ଯିବ।

## ପୁରାତନ ଚୁକ୍ତିର ଉପାସନା

୯ ପ୍ରଥମଚୁକ୍ତିରେ ଉପାସନାର ନିୟମାବଳୀ ଥିଲା। ଏନିମନ୍ତେ
ମଣିଷ ନିର୍ମିତ ଗୋଟିଏ ଉପାସନା ଗୃହ ମଧ୍ୟ ଥିଲା।
[୨]ଏହି ସ୍ଥାନଟି ଗୋଟିଏ ତମ୍ବୁ ଭିତରେ ଥିଲା। ଏହି ତମ୍ବୁର
ପ୍ରଥମ ଭାଗରେ ଦୀପ, ମେଜ ଓ ତହିଁ ଉପରେ ପରମେଶ୍ୱରଙ୍କୁ
ଉତ୍ସର୍ଗୀକୃତ ରୋଟୀ ଥିଲା। ଏହି ସ୍ଥାନକୁ ‘ପବିତ୍ର ସ୍ଥାନ’
ବୋଲି କୁହା ଯାଇଥିଲା। [୩]ଦ୍ୱିତୀୟ ପରଦା ପଛ ପଟରେ
ଯେଉଁ ବଖରାଟି ଥିଲା ତାହାକୁ ‘ମହାପବିତ୍ର ସ୍ଥାନ’*
କୁହାଯାଉଥିଲା। [୪]ଏଠାରେ ସୁଗନ୍ଧିତ ଦ୍ରବ୍ୟ ପୋଡ଼ିବା ପାଇଁ
ଗୋଟିଏ ସୁନାର ବେଦୀ ଥିଲା। ‘ପୁରାତନ ଚୁକ୍ତି’* ଗୋଟିଏ
ପବିତ୍ର ବାକସ୍ ଭିତରେ ଥିଲା। ବାକସ୍ ସୁନାରେ ତିଆରି
ହୋଇ ଥିଲା। ସେହି ବାକସ୍ ଭିତରେ ସୁନାରେ ତିଆରି
ମାନ୍ନା* ରଖାହୋଇ ଥିବା ଗୋଟିଏ ପାତ୍ର ଥିଲା। ହାରୋଣର
ବାଡ଼ିଟି (ଯେଉଁବାଡ଼ି ଉପରେ ନୂଆ ହୋଇ ପତ୍ର କଅଁଳି
ଥିଲା) ମଧ୍ୟ ଥିଲା। ସେହି ବାକସ୍‌ରେ ପୁରାତନ ଚୁକ୍ତିର
ଦଶଆଜ୍ଞା ଲେଖାଥିବା ପ୍ରସ୍ତର ଫଳକମାନ ମଧ୍ୟ ଥିଲା।
[୫]ବାକ୍ସ ଉପରେ କିରୁବ ସ୍ୱର୍ଗଦୂତଗଣ ପରମେଶ୍ୱରଙ୍କ
ମହିମା ପ୍ରଦର୍ଶିତ କରୁଥିଲେ। ଏମାନେ ‘ଦୟାର ଆସନ’*
ରେ ଉପବିଷ୍ଟ ଥିଲେ। କିନ୍ତୁ ଆମ୍ଭେ ଏବେ ବିସ୍ତାର ପୂର୍ବକ
ସେ ବିଷୟରେ କହି ପାରିବୁ ନାହିଁ।
[୬]ମୋର କହିବା ଅନୁଯାୟୀ ସେହି ତମ୍ବୁରେ ସମସ୍ତ
କିଛି ପ୍ରସ୍ତୁତ କରି ରଖା ଯାଇ ଥିଲା। ଯାଜକମାନେ
ଉପାସନା କାର୍ଯ୍ୟ କରିବା ଲାଗି ପ୍ରଥମ ବଖରାଟିକୁ ପ୍ରତିଦିନ
ଯାଆନ୍ତି। [୭]କିନ୍ତୁ ଦ୍ୱିତୀୟ ବଖରା ଭିତରକୁ କେବଳ
ବର୍ଷରେ ଥରେ ମହାଯାଜକ ଯାଇ ପାରୁ ଥିଲେ। ମହାଯାଜକ
ଉତ୍ସର୍ଗ କରିବାର ରକ୍ତ ନ ନେଇ କଦାପି ସେଠାରେ
ପ୍ରବେଶ କରନ୍ତି ନାହିଁ। ଯାଜକ ନିଜର ଲୋକମାନଙ୍କ
ଅଜ୍ଞାନକୃତ ପାପ ନିମନ୍ତେ ସେହି ରକ୍ତ ପରମେଶ୍ୱରଙ୍କୁ
ଅର୍ପଣ କରୁ ଥିଲେ। [୮]ଏତଦ୍ୱାରା ପବିତ୍ର ଆତ୍ମା ଆମ୍ଭକୁ ଏହି
ଶିକ୍ଷା ଦିଅନ୍ତି ଯେ, ପ୍ରଥମ ବଖରାଟି ଥିବା ପର୍ଯ୍ୟନ୍ତ
ଅତିପବିତ୍ର ସ୍ଥାନରେ ପ୍ରବେଶ କରିବାର ପଥ ଖୋଲା
ହୋଇ ନାହିଁ। [୯]ଏହା ଆଜି ଆମ୍ଭ ପାଇଁ ଉଦାହାରଣ
ସ୍ୱରୂପ। ଏହା ସୂଚାଇ ଦିଏ ଯେ, ଯେଉଁ ଦାନ ଓ
ବଳିଗୁଡ଼ିକ ପରମେଶ୍ୱରଙ୍କୁ ଉତ୍ସର୍ଗ କରାଯାଏ, ତଦ୍ଦ୍ୱାରା ଉପାସକ
ପାପରୁ ସମ୍ପୂର୍ଣ୍ଣ ଧୌତ ହୋଇପାରେ ନାହିଁ। ଉକ୍ତ ବଳି
ହେତୁ ସେ ସିଦ୍ଧିଲାଭ କରିପାରେ ନାହିଁ। [୧୦]ସେଗୁଡ଼ିକ
ଖାଦ୍ୟ, ପେୟ ଓ ବିଭିନ୍ନ ପ୍ରକାରର ଶୌଚକ୍ରିୟା କେବଳ
ଶାରୀରିକ ବିଧିବିଧାନ ଅଟେ, ଏତଦ୍ଦ୍ୱାରା ହୃଦୟର ପରିବର୍ତ୍ତନ
ହୁଏ ନାହିଁ। ପରମେଶ୍ୱରଙ୍କ ନୂତନ ଚୁକ୍ତିର ସମୟ ପର୍ଯ୍ୟନ୍ତ
ପରମେଶ୍ୱର ସେହି ସବୁ ନିୟମ ଲୋକମାନଙ୍କୁ ଦେଲେ।

## ନୂତନ ଚୁକ୍ତିର ଉପାସନା

[୧୧]କିନ୍ତୁ ଏବେ ଖ୍ରୀଷ୍ଟ ମହାଯାଜକ ରୂପେ ଆସି ଅଛନ୍ତି।
ଖ୍ରୀଷ୍ଟ ହେଉଛନ୍ତି ଆମ୍ଭପାଖରେ ଥିବା ସମସ୍ତ ଉତ୍ତମ
ବିଷୟର ମହାଯାଜକ। କିନ୍ତୁ ଯୀଶୁ ଅନ୍ୟ ଯାଜକମାନଙ୍କ
ଭଳି ତମ୍ବୁରେ ଆପଣା ସେବାକାର୍ଯ୍ୟ କରନ୍ତି ନାହିଁ। ଖ୍ରୀଷ୍ଟ
ତାହା ଅପେକ୍ଷା ମହତ୍ତର ଓ ଶ୍ରେଷ୍ଠ ସ୍ଥଳରେ ସେବାକାର୍ଯ୍ୟ
କରନ୍ତି ଏବଂ ଏହି ସ୍ଥାନଟି ମଣିଷମାନେ ତିଆରି କରି
ନାହାଁନ୍ତି। [୧୨]ଏହି ସ୍ଥାନଟି ଏହି ଜଗତର ନୁହେଁ। ଖ୍ରୀଷ୍ଟ
ମହାପବିତ୍ର ସ୍ଥାନରେ ଛେଳି ବା ଗୋବତ୍ସର ରକ୍ତ ନୁହେଁ,
ମାତ୍ର ନିଜ ରକ୍ତ ଘେନି ଏକାଥରକେ ପ୍ରବେଶ କଲେ ଓ
ସବୁ ଦିନ ପାଇଁ ଆମ୍ଭକୁ ମୁକ୍ତ ଦାନ କଲେ।
[୧୩]ଯେଉଁ ଲୋକମାନେ ଉପାସନାସ୍ଥଳରେ ପ୍ରବେଶ କରିବା
ନିମନ୍ତେ ଆଉ ପବିତ୍ର ନୁହଁନ୍ତି ସେମାନଙ୍କ ଉପରେ ଛେଳି,
ବଳଦର ରକ୍ତ ଓ ଗାଈର ପାଉଁଶ ଛିଞ୍ଚା ଯାଇ ଥିଲା।
ସେହି ରକ୍ତ ଓ ପାଉଁଶ ସେ ଲୋକମାନଙ୍କ(କେବଳ)
ଶରୀରକୁ ପୁନର୍ବାର ପବିତ୍ର କରୁ ଥିଲା। [୧୪]ନିଶ୍ଚିତ ରୂପେ
ଖ୍ରୀଷ୍ଟଙ୍କର ରକ୍ତ ବହୁତ କିଛି ଅଧିକ କରି ପାରେ। ଖ୍ରୀଷ୍ଟ
ଅନନ୍ତ ଆତ୍ମାଙ୍କ ଦ୍ୱାରା ଆପଣାକୁ ନିଖୁନ୍ତ ବଳିସ୍ୱରୂପେ
ପରମେଶ୍ୱରଙ୍କୁ ଉତ୍ସର୍ଗ କଲେ। ତାହାଙ୍କର ରକ୍ତ, ଆମ୍ଭର
ମନ୍ଦକାର୍ଯ୍ୟରୁ ଆମ୍ଭକୁ ଧୋଇ ପୂର୍ଣ୍ଣ ଭାବରେ ଶୁଚି କରି
ଦେବ। ତାହାଙ୍କର ରକ୍ତ ଆମ୍ଭ ହୃଦୟକୁ ମଧ୍ୟ ପବିତ୍ର
କରିବ। ଆମ୍ଭେ ପବିତ୍ର (ଶୁଦ୍ଧ) ହୋଇ ଜୀବନ୍ତ ପରମେଶ୍ୱରଙ୍କର
ସେବା କରିପାରିବା। [୧୫]ଅତଏବ, ପରମେଶ୍ୱରଙ୍କ ପାଖରୁ
ଯୀଶୁଖ୍ରୀଷ୍ଟ ଗୋଟିଏ ନୂତନଚୁକ୍ତି ଆଣିଲେ। ଏହି ନୂତନ
ଚୁକ୍ତିର ଉଦ୍ଦେଶ୍ୟ ଯେପରି ପରମେଶ୍ୱରଙ୍କ ଦ୍ୱାରା ଆହୂତ
ପ୍ରତ୍ୟେକ ଲୋକ ପରମେଶ୍ୱରଙ୍କ ପ୍ରତିଜ୍ଞାର ଅଧିକାରୀ
ହେବେ। ସେମାନେ ଅନନ୍ତକାଳ ଏହି ଅଧିକାର ଭୋଗ
କରିବେ। କାରଣ ପ୍ରଥମ ଚୁକ୍ତି କାଳରେ ଲୋକମାନେ
ଯେଉଁ ପାପସବୁ କରିଥିଲେ, ତହିଁର ପ୍ରତିଦାନରେ ଖ୍ରୀଷ୍ଟ
ମୃତ୍ୟୁ ବରଣ କଲେ।

---

**‘ମହା ପବିତ୍ର ସ୍ଥାନ’** ଯେଉଁଠାରେ ପରମେଶ୍ୱର ମହାଯାଜକ ସହିତ ଦେଖା କରନ୍ତି।

**ପୁରାତନ ଚୁକ୍ତି** ସୁନା ଛାଉଣୀ ହୋଇଥିବା କାଠ ବାକସ୍ ଭିତରେ ଦୁଇଟି ଫଳକ ପଥରରେ ପରମେଶ୍ୱରଙ୍କ ନିୟମ (ବ୍ୟବସ୍ଥା) ଲେଖା ହୋଇଥିଲା।

**ମାନ୍ନା** ମରୁଭୂମିରେ ଯିହୂଦୀମାନଙ୍କୁ ପରମେଶ୍ୱରଙ୍କ ଦ୍ୱାରା ଦିଆଯାଇ ଥିବା ଖାଦ୍ୟ।

**‘ଦୟାର ଆସନ’** ବାକ୍ସରେ ଚୁକ୍ତି ରଖା ଯାଇଥିବା ଜାଗାର, ଠିକ ବାକ୍ସ ଉପର ସ୍ଥାନ ଯେଉଁଠାରେ ମହାଯାଜକ କୌଣସି ପଶୁର ରକ୍ତ, ବର୍ଷକରେ ଥରେ ପୂଜା ଭାବେ ଲୋକଙ୍କର ପାପ ପାଇଁ ସମର୍ପଣ କରେ।

[୧୬]ଯେତେବେଳେ ଜଣେ ଲୋକ ମୃତ୍ୟୁବରଣ କରେ
ସେ ଗୋଟିଏ ଉଇଲ୍ ଛାଡ଼ ଯାଏ। କନ୍ତୁ ଲୋକେ ସେହ
ଲୋକଜଣକର ମୃତ୍ୟୁ ପ୍ରମାଣିତ କରବା ଉଚତ। [୧୭]ଚୁକ୍ତି
ଲେଖିଥିବା ଲୋକ ଯଦ ଜୀବତ, ତାହେଲେ ସେହ
ଉଇଲ୍‌ଟି କାର୍ଯ୍ୟକାରୀ ହୋଇ ପାରବ ନାହିଁ। ମଣିଷଟି
ମରଗଲା ପରେ ଯାଇ ଉଇଲ୍‌ଟି ଲାଗୁ ହୋଇ ପାରବ।
[୧୮]ପରମେଶ୍ୱର ଓ ଲୋକଙ୍କ ମଧ୍ୟରେ ହୋଇଥିବା ପ୍ରଥମ
ଚୁକ୍ତି ଠିକ ସେହଭଳ। ପ୍ରଥମ ଚୁକ୍ତି ମଧ୍ୟ ରକ୍ତଦ୍ୱାରା
କାର୍ଯ୍ୟକାରୀ ହୋଇଥିଲା। [୧୯]ପ୍ରଥମରେ, ବ୍ୟବସ୍ଥାର ପ୍ରତ୍ୟେକ
ଈଶ୍ୱରୀୟ ଆଜ୍ଞା ମୋଶା ଲୋକମାନଙ୍କୁ କହଥିଲେ। ତା'ପରେ
ମୋଶା ବାଛୁରୀଗୁଡ଼କର ରକ୍ତ ସହତ ଜଳ ମଶାଇଲେ।
ତା'ପରେ ସେ ଲାଲ (ଉଲ) ଓ ଏସୋବର ଡାଳଟିଏ
ନେଇ ଜଳ ମିଶ୍ରିତ ରକ୍ତ ବ୍ୟବସ୍ଥା ପୁସ୍ତକ ତଥା ସବୁଲୋକଙ୍କ
ଉପରେ ଛିଞ୍ଚିଲେ। [୨୦]ତା'ପରେ ମୋଶା କହଲେ,
"ଯେଉଁଚୁକ୍ତିଗୁଡ଼କୁ ପରମେଶ୍ୱର ତୁମ୍ଭମାନଙ୍କୁ ପାଳନ କରବା
ପାଇଁ ଆଜ୍ଞା ଦେଇଛନ୍ତି, ସେହ ଚୁକ୍ତିର ରକ୍ତ ଏହ।"
[୨୧]ମୋଶା ପବତ୍ର ତମ୍ବୁ ଉପରେ ସେହ ରକ୍ତ ଛିଞ୍ଚିଲେ।
ଉପାସନା ପାଇଁ ଆବଶ୍ୟକ ହେଉଥିବା ପ୍ରତ୍ୟେକ ବସ୍ତୁ
ଉପରେ ମଧ୍ୟ ସେ ସେହ ରକ୍ତ ଛିଞ୍ଚିଲେ। [୨୨]ବ୍ୟବସ୍ଥା
କୁହେ ଯେ, ପ୍ରତ୍ୟେକ ବସ୍ତୁ ରକ୍ତ ଦ୍ୱାରା ଶୁଦ୍ଧ ହୋଇ
ପାରବ। ଓ ବନା ରକ୍ତରେ ପାପଗୁଡ଼କୁ କ୍ଷମା କରା ଯାଇ
ପାରବ ନାହିଁ।

## ଖ୍ରୀଷ୍ଟଙ୍କ ବଳଦାନ ପାପଗୁଡ଼କୁ ଧୋଇ ଦଏ

[୨୩]ସ୍ୱର୍ଗସ୍ଥ ବଷୟଗୁଡ଼କର ପ୍ରତକୃତିଗୁଡ଼କ ପଶୁବଳ ଦ୍ୱାରା
ଶୁଦ୍ଧ(ପବତ୍ର) କରା ଯାଏ। କନ୍ତୁ ସ୍ୱର୍ଗସ୍ଥ ବଷୟରେ ଶୁଦ୍ଧତା
ପାଇଁ ଅପେକ୍ଷାକୃତ ଭଲ ବଳ ଦରକାର। [୨୪]ଖ୍ରୀଷ୍ଟ ମହାପବତ୍ର
ସ୍ଥାନ ଭିତରକୁ ଗଲେ। କନ୍ତୁ ସେ ମନୁଷ୍ୟ ହସ୍ତନର୍ମିତ
ମହାପବତ୍ର ସ୍ଥାନକୁ ଗଲେ ନାହିଁ। ଏହ ପରମ ପବତ୍ର
ସ୍ଥାନଟି ପ୍ରକୃତ ସ୍ଥାନର ପ୍ରତକୃତି ମାତ୍ର। ଯୀଶୁ ସ୍ୱର୍ଗ
ଭିତରକୁ ଗଲେ। [୨୫]ବର୍ତ୍ତମାନ ସେ ମଧ୍ୟ ଆମ୍ଭକୁ ସାହାଯ୍ୟ
କରବା ପାଇଁ ସେଠାରେ ପରମେଶ୍ୱରଙ୍କ ଆଗରେ ଅଛନ୍ତି।
ମହାଯାଜକ ମହାପବତ୍ର ସ୍ଥାନରେ ବର୍ଷକୁ ଥରେ ମାତ୍ର
ପ୍ରବେଶ କରନ୍ତି। ପୁଣି ଉତ୍ସର୍ଗ କରବା ନମନ୍ତେ ରକ୍ତ
ନେଇ ଯାଆନ୍ତି। କନ୍ତୁ ସେ ଯୀଶୁଙ୍କ ଭଳ ନଜର ରକ୍ତ
ସମର୍ପଣ କରନ୍ତି ନାହିଁ। ମହାଯାଜକ ଯେପର ଥରକୁ ଥର
ରକ୍ତ ସମର୍ପଣ କରନ୍ତି, ଖ୍ରୀଷ୍ଟ ନଜକୁ ସେଭଳ ଥରକୁ ଥର
ସମର୍ପଣ କରବା ପାଇଁ ସ୍ୱର୍ଗରେ ପ୍ରବେଶ କର ନ ଥିଲେ।
[୨୬]ଯଦ ଖ୍ରୀଷ୍ଟ ନଜକୁ ଅନେକ ଥର ସମର୍ପଣ କର
ଥାଆନ୍ତେ, ତା'ହେଲେ ଜଗତ ସୃଷ୍ଟି ହେବା ଦନ ଠାରୁ
ତାହାଙ୍କୁ ଅନେକ ଥର ଯାତନା ସହବାକୁ ପଡ଼ଥାନ୍ତା। କନ୍ତୁ
ଖ୍ରୀଷ୍ଟ ଥରେ ମାତ୍ର ଆସିଲେ ଓ ନଜକୁ ଉତ୍ସର୍ଗ କଲେ।
ଯୁଗାନ୍ତ ସମୟରେ ଆପଣାକୁ ବଳରୂପେ ଉତ୍ସର୍ଗ କରବା
ଦ୍ୱାରା ଯୀଶୁ ସମସ୍ତ ପାପ ହରଣ କରବା ପାଇଁ ଆସିଥିଲେ।
[୨୭]ପ୍ରତ୍ୟେକ ଲୋକ ଥରେ ମରବା ଦରକାର। ଜଣେ
ମଲାପରେ ତାହାର ବଚାର ହୁଏ। [୨୮]ଖ୍ରୀଷ୍ଟ ଥରେ ବଳ
ଭାବରେ ସମର୍ପିତ ହେଲେ, ଯେପର ଅନେକ ଲୋକଙ୍କର
ପାପ ଦୂର କର ପାରବେ। ଖ୍ରୀଷ୍ଟ ଦ୍ୱିତୀୟଥର ଲୋକମାନଙ୍କର
ପାପ ପାଇଁ ନୁହେଁ, ମାତ୍ର ଯେଉଁମାନେ ତାହାଙ୍କ ପାଇଁ
ପ୍ରତୀକ୍ଷା କରୁଥିବେ, ସେମାନଙ୍କର ମୁକ୍ତି ପାଇଁ ଆସିବେ।

## ଯୀଶୁଙ୍କ ବଳଦାନ ଆମ୍ଭକୁ ସମ୍ପୂର୍ଣ୍ଣ କରେ

୧୦ ବ୍ୟବସ୍ଥା ଆମ୍ଭକୁ ଭବଷ୍ୟରେ ଘଟିବାକୁ ଥିବା
ଉତ୍ତମ ବଷୟଗୁଡ଼କର ଅସ୍ପଷ୍ଟ ଚତ୍ର ପ୍ରଦାନ
କରେ। ବ୍ୟବସ୍ଥା ପ୍ରକୃତ ବଷୟଗୁଡ଼କର ପରପୂର୍ଣ୍ଣ ଚତ୍ର
ନୁହେଁ। ବ୍ୟବସ୍ଥା ଲୋକମାନଙ୍କୁ ସମାନ ବଳ ଗୁଡ଼କୁ
ପ୍ରତବର୍ଷ ସମର୍ପଣ କରବା ପାଇଁ କୁହେ। ଯେଉଁଲୋକମାନେ
ପରମେଶ୍ୱରଙ୍କୁ ଉପାସନା କରବା ପାଇଁ ଆସନ୍ତି, ସେହ
ବଳ ସମର୍ପଣ କାର୍ଯ୍ୟ କର ଗୃଲଥାନ୍ତି। କନ୍ତୁ ବ୍ୟବସ୍ଥା
କେବେହେଲେ ସେ ଲୋକମାନଙ୍କୁ ସମ୍ପୂର୍ଣ୍ଣ ସଦ୍ଧ କର ନ
ଥାଏ। [୨]ଯଦ ବ୍ୟବସ୍ଥା ଲୋକମାନଙ୍କୁ ସମ୍ପୂର୍ଣ୍ଣ ସଦ୍ଧ କରଥାନ୍ତା
ତା'ହେଲେ ସେହ ବଳ ଗୁଡ଼କ ବନ୍ଦ ହୋଇ ଯାଇ
ସାରଥାଆନ୍ତା। ସେହ ଲୋକମାନେ ମଧ୍ୟ ପାପରୁ ଶୁଦ୍ଧ
ହୋଇ ଯାଇ ସାରଥାନ୍ତେ। ସେମାନେ ଏବେ ସୁଦ୍ଧା ନଜ
ପାପ ପାଇଁ ନଜକୁ ଦୋଷୀ ଅନୁଭବ କରୁ ନ ଥାନ୍ତେ।
କନ୍ତୁ ବ୍ୟବସ୍ଥା କଦାପି ତାହା କର ପାରବ ନାହିଁ।
[୩]ସେମାନେ ଯେଉଁ ବଳ ଗୁଡ଼କ ଦଅନ୍ତି, ତାହା ପ୍ରତବର୍ଷ
ସେମାନଙ୍କୁ ସେମାନଙ୍କର ପାପ ଗୁଡ଼କ ସ୍ମରଣ କରାଇ
ଦଏ। [୪]ଏହାର କାରଣ ହେଲା ଯେ, ବଳଦମାନଙ୍କ ଓ
ଛେଳମାନଙ୍କର ରକ୍ତ ପାପ ହରଣ କରବା ପାଇଁ ସକ୍ଷମ
ନୁହନ୍ତି।

[୫]ଅତଏବ ଯେତେବେଳେ ଖ୍ରୀଷ୍ଟ ସଂସାରକୁ ଆସିଲେ
ସେ କହଲେ:

"ତୁମ୍ଭେ ବଳ ଓ ସମର୍ପଣ ଗୃହଁ ନାହିଁ, କନ୍ତୁ ତୁମ୍ଭେ
ମୋ ପାଇଁ ଶରୀରଟିଏ ନର୍ମାଣ କରଛ,
[୬] ହୋମବଳ ଓ ପାପାର୍ଥକ ବଳରେ ତୁମ୍ଭେ ଖୁସି ହୁଅ
ନାହିଁ। ବଳ ଦ୍ୱାରା ପାପହରଣ କଥାରେ ମଧ୍ୟ ତୁମ୍ଭେ
ଖୁସି ନୁହଁ।
[୭] ତା'ପରେ ମୁଁ କହଲ: 'ପରମେଶ୍ୱର ମୁଁ ଅଛ
ଏଠାରେ ବ୍ୟବସ୍ଥା (ବଧାନ) ପୁସ୍ତକରେ ମୋ ବଷୟରେ
ଲେଖା ଅଛ। ତୁମ୍ଭେ ଗୃହଁ ଥିବା କାର୍ଯ୍ୟଗୁଡ଼କ ମୁଁ
କରବା ପାଇଁ ଆସିଛ।'"

ଗୀତସଂହତା ୪୦:୬-୮

[୮]ଏହ ଶାସ୍ତ୍ରରେ ସେ ପ୍ରଥମେ କହଥିଲେ, "ତୁମ୍ଭେ ବଳ ଓ
ନୈବେଦ୍ୟମାନ ଗୃହଁ ନାହିଁ। ତୁମ୍ଭେ ହୋମବଳ ଦ୍ୱାରା ବା
ପାପହରଣ ହେବା ପାଇଁ ଦଆଯାଉଥିବା ବଳଗୁଡ଼କ ଦ୍ୱାରା
ପ୍ରସନ୍ନ ହୁଅ ନାହିଁ।" (ବ୍ୟବସ୍ଥା ଆଜ୍ଞାଦଏ ଏହ ବଳଦାନ
ପାଇଁ।) [୯]ତା'ପରେ ସେ କହଲେ "ପରମେଶ୍ୱର, ମୁଁ
ଏଠାରେ ଅଛ। ମୁଁ ତୁମ୍ଭେ ଗୃହୁଁଥିବା କାମ କରବା ପାଇଁ
ଆସିଛ।" ଅତଏବ ପରମେଶ୍ୱର ତାହାଙ୍କର ପ୍ରଥମ ବଳଦାନ
ପ୍ରଥା ସମାପ୍ତ କର ନୂତନପ୍ରଥା ଆରମ୍ଭ କଲେ। [୧୦]ପରମେଶ୍ୱର
ଗୃହୁଁଥିବା କର୍ମମାନ ଖ୍ରୀଷ୍ଟ କଲେ। ଓ ଏହା ଦ୍ୱାରା ତାହାଙ୍କ

ଶରୀରର ବଳିଦାନ ହେତୁ ଆମ୍ଭେ ପବିତ୍ର ହେଲୁ। ଯୀଶୁ
ସବୁଦିନ ପାଇଁ ପର୍ଯ୍ୟାପ୍ତ ହେଲା ଭଳି ଥରେମାତ୍ର ସେହି
ବଳିଦାନ କଲେ।
୧୧ଯାଜକମାନେ ପ୍ରତିଦିନ ଠିଆ ହୋଇ ସେମାନଙ୍କର
ଧାର୍ମିକ ସେବା କାର୍ଯ୍ୟ କରନ୍ତି। ସେହି, ସମାନ ବଳିଗୁଡ଼ିକ
ସେମାନେ ବାରମ୍ବାର ସମର୍ପଣ କରନ୍ତି। କିନ୍ତୁ ସେହିଭଳି
ବଳି କେବେହେଲେ ପାପହରଣ କରି ପାରେ ନାହିଁ।
୧୨ଖ୍ରୀଷ୍ଟ ପାପଗୁଡ଼ିକ ପାଇଁ ଥରେ ମାତ୍ର ବଳିଦାନ ରୂପେ
ସମର୍ପିତ କରି ଥିଲେ, ଓ ସେହି ବଳିଦାନ ସବୁଦିନ ପାଇଁ
ପର୍ଯ୍ୟାପ୍ତ ଅଟେ। ୧୩ତା'ପରେ ଖ୍ରୀଷ୍ଟ ପରମେଶ୍ୱରଙ୍କ ଡାହାଣ
ପଟେ ବସିଲେ। ସେଠାରେ ଖ୍ରୀଷ୍ଟ ଏବେ ନିଜ ଶତ୍ରୁମାନଙ୍କୁ,
ତାହାଙ୍କ ଶକ୍ତି ତଳେ ରହିବା ପାଇଁ ଅପେକ୍ଷାରେ ଅଛନ୍ତି।
୧୪ମାତ୍ର ଗୋଟିଏ ବଳିଦାନ ଦ୍ୱାରା ଯୀଶୁ ନିଜଲୋକମାନଙ୍କୁ
ସର୍ବଦା ପାଇଁ ସମ୍ପୂର୍ଣ୍ଣ ସିଦ୍ଧ କରିଦେଲେ। ସେହି ଲୋକମାନେ
ପବିତ୍ର କରା ଯାଇଛନ୍ତି।
୧୫ପବିତ୍ର ଆତ୍ମା ମଧ୍ୟ ଆମ୍ଭକୁ ଏହା ବିଷୟରେ କୁହନ୍ତି।
ପ୍ରଥମରେ ସେ କୁହନ୍ତି:

୧୬ "ପ୍ରଭୁ କହିଲେ, ଭବିଷ୍ୟତରେ ମୋ ଲୋକମାନଙ୍କ
ସହିତ ମୁଁ ଏହି ଚୁକ୍ତି କରିବି। ମୁଁ ମୋ ନିୟମ(ବ୍ୟବସ୍ଥା)
ଗୁଡ଼ିକୁ ସେମାନଙ୍କ ହୃଦୟରେ ରଖିବି। ମୁଁ ମୋ
ନିୟମ(ବ୍ୟବସ୍ଥା) ଗୁଡ଼ିକୁ ସେମାନଙ୍କ ମନରେ ଲେଖିବି।"
ଯିରିମିୟ ୩୧:୩୩

୧୭ଏହା ମଧ୍ୟ କୁହନ୍ତି:

"ମୁଁ ସେମାନଙ୍କର ପାପ ଓ କରୁଥିବା ମନ୍ଦକାମ
ଗୁଡ଼ିକୁ କ୍ଷମା କରିଦେବି, ମୁଁ ସେ ଗୁଡ଼ିକୁ ପୁଣି
କେବେ ହେଲେ ମନେ ପକାଇବି ନାହିଁ।"
ଯିରିମିୟ ୩୧:୩୪

୧୮ଓ ଏହି ସବୁ ଗୁଡ଼ିକୁ କ୍ଷମା କରି ଦିଆଗଲା ପରେ, ଆଉ
ପାପଗୁଡ଼ିକ ପାଇଁ ବଳିଦାନର କୌଣସି ଆବଶ୍ୟକତା ନାହିଁ।

## ପରମେଶ୍ୱରଙ୍କ ନିକଟକୁ ଆସ

୧୯ଅତଏବ ହେ ଭାଇ (ଓ ଭଉଣୀ) ମାନେ, ଆମ୍ଭେ
ପରମ ପବିତ୍ର ସ୍ଥାନରେ ପ୍ରବେଶ କରିବା ପାଇଁ ପୂର୍ଣ୍ଣ
ସ୍ୱାଧୀନ ପାଇଛୁ। ଯୀଶୁଙ୍କର ରକ୍ତ କାରଣରୁ ଆମ୍ଭେ
ନିର୍ଭୟରେ ଏପରି କରି ପାରିବା। ୨୦ଯୀଶୁଙ୍କ ଦ୍ୱାରା ଖୋଲି
ଦିଆ ଯାଇଥିବା ଗୋଟିଏ ନୂତନ ବାଟ ଦେଇ ଆମ୍ଭେ
ପ୍ରବେଶ କରି ପାରିବା। ଏହା ଏକ ଜୀବନ୍ତ ପଥ। ଏହି
ନୂତନ ପଥଟି ପରଦା ମଧ୍ୟ ଦେଇ ଯାଏ, ଯାହା କି
ଯୀଶୁଙ୍କ ଶରୀର ଅଟେ। ୨୧ପରମେଶ୍ୱରଙ୍କ ଘରକୁ ଶାସନ
କରୁଥିବା ଭଳି ଆମ୍ଭର ମଧ୍ୟ ଜଣେ ମହାନ୍ ମହାଯାଜକ
ଅଛନ୍ତି। ୨୨ଆମ୍ଭର ଦେହ ଶୁଦ୍ଧ ଜଳରେ ସ୍ନାନ କରିଛି।
ଅତଏବ ପରମେଶ୍ୱରଙ୍କ ପାଖକୁ ସତ୍ୟନିଷ୍ଠା ହୃଦୟରେ
ଆସ। ଆମ୍ଭ ବିଶ୍ୱାସ ହେତୁ ଆମ୍ଭେ ନିଶ୍ଚିତତା ଅନୁଭବ
କରିବା ଉଚିତ। ୨୩ଆମ୍ଭର ଭରସାକୁ ଦୃଢ଼ ଭାବରେ ଧରି
ରଖ। ଆମ୍ଭେ ନିଜର ଭରସାକୁ ଲୋକମାନଙ୍କ ଆଗରେ
ବ୍ୟକ୍ତ କରିବାକୁ ରୋକିବା ଉଚିତ ନୁହେଁ। ସେ ଯାହା
ପ୍ରତିଜ୍ଞା କଲେ, ତାହା କରିବେ ବୋଲି ଆମ୍ଭେ
ପରମେଶ୍ୱରଙ୍କଠାରେ ବିଶ୍ୱାସ କରି ପାରିବା।

## ପରସ୍ପରକୁ ସାହାଯ୍ୟ କର, ଦୃଢ଼ ହୁଅ

୨୪ଆମ୍ଭେ ପରସ୍ପର ବିଷୟରେ ଚିନ୍ତା କରିବା ଏବଂ
ପରସ୍ପରକୁ ଭଲ ପାଇବା ଓ ଭଲ କାମ କରିବା ପାଇଁ
ଉତ୍ସାହିତ କରିବା ଉଚିତ। ୨୫କିଛି ଲୋକ ଯେପରି ମଣ୍ଡଳୀ
ଉପାସନା ପରିତ୍ୟାଗ କରନ୍ତି, ଆମ୍ଭେ ସେପରି ଏକାଠି
ମିଳିତ ହେବା ବନ୍ଦ କରିବା ଉଚିତ ନୁହେଁ। ତା'
ପରିବର୍ତ୍ତେ, ସେହି ଦିନଟି ନିକଟତର ହେଉଛି ଦେଖି
ଆମ୍ଭେମାନେ ଏକାଠି ମିଳିତ ହୋଇ ପରସ୍ପରକୁ ଅଧିକ
ଉତ୍ସାହିତ କରିବା ଉଚିତ।

## ଖ୍ରୀଷ୍ଟଙ୍କ ଠାରୁ ମୁହଁ ବୁଲାଇ ନିଅ ନାହିଁ

୨୬ସତ୍ୟକୁ ଜାଣିଲା ପରେ ମଧ୍ୟ ଯଦି ଆମ୍ଭେ ପାପକାମ
କରି ଚାଲିବା ପାଇଁ ଇଚ୍ଛା କରିବା, ତା'ହେଲେ ସିଦ୍ଧାନ୍ତ
ନେଉ, ପାପ ହରଣ କରିବା ପାଇଁ ଆଉ କୌଣସି
ବଳିଦାନ ନାହିଁ। ୨୭ଆମ୍ଭେ ଯଦି ପାପ କରି ଚାଲିଥିବା,
ତାହେଲେ ଆମ୍ଭେ ନିଶ୍ଚିତ ଯେ, ଆମ୍ଭ ପାଇଁ ବିଚାରର
ଭୟଙ୍କର ଆଶଙ୍କା ରହିଛି, ଓ ପରମେଶ୍ୱରଙ୍କ ବିରୋଧୀ
ଜୀବନଯାପନ କରୁଥିବା ଲୋକମାନଙ୍କୁ ଗ୍ରାସ କରିବାକୁ
ଥିବା ଭୟଙ୍କର ଅଗ୍ନି ଆମ୍ଭ ପାଇଁ ରହିଛି। ୨୮ଯେଉଁଲୋକ
ମୋଶାଙ୍କ ବ୍ୟବସ୍ଥା ମାନିବାକୁ ମନା କଲା, ତାହାକୁ ଦୋଷୀ
ପ୍ରମାଣିତ କରିବା ଲାଗି ଦୁଇ ବା ତିନିଜଣ ସାକ୍ଷୀ
ଆବଶ୍ୟକ ଥିଲେ। କ୍ଷମା ଦିଆ ନ ଯାଇ, ତାହାକୁ ବଧ
କରା ଯାଇଥିଲା। ୨୯ତା'ହେଲେ ଯେଉଁଲୋକ ପରମେଶ୍ୱରଙ୍କ
ପୁତ୍ର ପ୍ରତି ଘୃଣା ପ୍ରଦର୍ଶିତ କରେ, ତା'ପାଇଁ କିଣ
ଦଣ୍ଡବିଧାନ ହେବା ଉଚିତ? ଏହା ନିଶ୍ଚିତ ଯେ ତା'ର ଦଣ୍ଡ
ଅଧିକ ଖରାପ ପ୍ରକାରର ହେବ। ନୂତନ ଚୁକ୍ତି ଆରମ୍ଭ
କରି ଥିବା ରକ୍ତ ପ୍ରତି ଯେଉଁଲୋକ ଅସମ୍ମାନଭାବ ପ୍ରଦର୍ଶିତ
କରିଛି, ଓ ଅନୁଗ୍ରହର ଆତ୍ମା ପ୍ରତି ଘୃଣାଭାବ ପ୍ରଦର୍ଶିତ
କରିଛି, ସେହି ଲୋକର ଦଣ୍ଡ ଅଧିକ ଖରାପ ପ୍ରକାରର
ହେବ କାରଣ ସେହି ରକ୍ତ ସେହି ଲୋକକୁ ଥରେ ପବିତ୍ର
କରିଥିଲା। ୩୦ଆମ୍ଭେ ଜାଣୁ ଯେ, ପରମେଶ୍ୱର କହିଥିଲେ:
"ମନ୍ଦ କାମ କରିଥିବା ଲୋକଙ୍କୁ ମୁଁ ଦଣ୍ଡ ଦେବି, ମୁଁ
ତାହାଙ୍କୁ ପ୍ରତିଦାନ ଦେବି।"* ପରମେଶ୍ୱର ଆହୁରି ମଧ୍ୟ
କହିଥିଲେ: "ପ୍ରଭୁ ତାହାଙ୍କ ଲୋକଙ୍କର ବିଚାର କରିବେ।"*
୩୧ଜୀବିତ ପରମେଶ୍ୱରଙ୍କ ହାତରେ ଜଣେ ପାପୀ ପଡ଼ିଯିବା,
ଗୋଟିଏ ଭୟଙ୍କର କଥା।

---

**"ମନ୍ଦ କାମ ... ପ୍ରତିଦାନ ଦେବି।"** ଦ୍ୱିତୀୟ ବିବରଣୀ ୩୨:୩୫

**"ପ୍ରଭୁ ... କରିବେ।"** ଗୀତସଂହିତା ୧୩୫:୧୪

## ଗ୍ରହଣ କରିଥିବା ସାହସ ଓ ଆନନ୍ଦକୁ ଛାଡ଼ ନାହିଁ

୩୨ପ୍ରଥମଥର ସତ୍ୟ ଜାଣିବା ଦିନଗୁଡ଼ିକୁ ମନେ ପକାଅ।
ଅନେକ ପ୍ରକାରର ଯାତନା ସହିତ ତୁମ୍ଭେମାନେ ସଂଘର୍ଷ
କରିଥିଲ, କିନ୍ତୁ ତୁମ୍ଭେମାନେ ଦୃଢ଼ ରହିଥିଲ। ୩୩ସେତେବେଳେ
ଲୋକେ ତୁମ୍ଭମାନଙ୍କୁ ଘୃଣାପୂର୍ଣ୍ଣ କଥାମାନ କହିଥିଲେ, ଓ
ଅନେକ ଲୋକଙ୍କ ଆଗରେ ତୁମ୍ଭମାନଙ୍କୁ ଅପଦସ୍ତ କରିଥିଲେ।
ବେଳେବେଳେ ଏହି ଭଳି ଖରାପ ବ୍ୟବହାର ମଧ୍ୟ ଦେଇ
ଗତି କରୁଥିବା ଲୋକଙ୍କୁ ତୁମ୍ଭେମାନେ ସାହାଯ୍ୟ କଲ।
୩୪ଯେଉଁମାନେ ବନ୍ଦୀଘରେ ରଖା ଯାଇ ଥିଲେ, ସେମାନଙ୍କର
ଅସୁବିଧାଗୁଡ଼ିକରେ ତୁମ୍ଭେମାନେ ଭାଗନେଲ, ଓ ସେମାନଙ୍କୁ
ସାହାଯ୍ୟ କଲ। ତୁମ୍ଭମାନଙ୍କର ଧନ-ସମ୍ପତ୍ତି ସବୁ ତୁମ୍ଭମାନଙ୍କଠାରୁ
ନେଇ ଯିବା ପରେ ମଧ୍ୟ ତୁମ୍ଭେମାନେ ଆନନ୍ଦରେ ଥିଲ।
ତୁମ୍ଭେମାନେ ଆନନ୍ଦରେ ରହିଥିଲ, କାରଣ ଜାଣିଥିଲ ଯେ
ତୁମ୍ଭମାନଙ୍କ ପାଖରେ ଯାହା କିଛି ଅଛି ତାହା ଅତ୍ୟଧିକ
ଭଲ। ଏବଂ ତାହା ସବୁଦିନ ପାଇଁ ରହିବ।
୩୫ଅତଏବ ପୂର୍ବରୁ ଥିବା ସାହସ ତୁମ୍ଭେମାନେ ହରାଅ
ନାହିଁ। ତୁମ୍ଭମାନଙ୍କର ସାହସ ପାଇଁ ତୁମ୍ଭେମାନେ ପ୍ରଚୁର
ମାତ୍ରାରେ ପୁରସ୍କାର ପାଇବ। ୩୬ତୁମ୍ଭେମାନେ ଧୈର୍ଯ୍ୟବାନ
ହେବା ଦରକାର। ପରମେଶ୍ୱର ଯାହା ଇଚ୍ଛା କରନ୍ତି, ସେହି
ସବୁ କାମ କରି ସାରିଲା ପରେ, ସେ ଯାହା ପ୍ରତିଜ୍ଞା
କରିଛନ୍ତି, ସେ ସବୁ ତୁମ୍ଭେମାନେ ପାଇବ। ୩୭ଅତି ଅଳ୍ପ
ସମୟରେ,

"ଯାହାଙ୍କ ଆସିବା କଥା ସେ ଆସିବେ, ତାହାଙ୍କର
ଡେରି ହେବ ନାହିଁ।
୩୮ ଯେଉଁଲୋକ ମୋ ସହିତ ଧାର୍ମିକ, ତା'ର ବିଶ୍ୱାସ
ହେତୁ ସେ ଜୀବିତ ରହିବ। କିନ୍ତୁ ଯଦି ସେଲୋକ
ଭୟରେ ମୁହଁ ମୋଡ଼େ, ମୁଁ ତା'ଉପରେ ପ୍ରସନ୍ନ
ହେବି ନାହିଁ।"

ହବକ୍‌କୂକ୍ ୨:୩-୪

୩୯କିନ୍ତୁ ଆମ୍ଭେ ସେହି ଲୋକମାନଙ୍କ ପରି ନୋହୁଁ ଯେଉଁମାନେ
ବିମୁଖ ହୁଅନ୍ତି ଓ ହଜିଯାଆନ୍ତି। ଯେଉଁମାନଙ୍କର ବିଶ୍ୱାସ
ରହିଛି, ଓ ଉଦ୍ଧାର ପାଇଛନ୍ତି ଆମ୍ଭେ ସେମାନଙ୍କ ଭଳି
ଅଛୁ।

### ବିଶ୍ୱାସ

୧୧ ବିଶ୍ୱାସର ଅର୍ଥ ହେଉଛି ଆମ୍ଭେ ଭରସା କରୁଥିବା
ବିଷୟ ପ୍ରତି ସୁନିଶ୍ଚିତତା। ବିଶ୍ୱାସ ଏଭଳି ସୁନିଶ୍ଚିତ
ବୋଧ ଯେ, ଆମ୍ଭେ ଯାହା ନ ଦେଖୁ, ତାହା ବାସ୍ତବ
ବୋଲି ଜାଣୁ। ୨ପ୍ରାଚୀନ କାଳରେ, ଲୋକମାନଙ୍କର ଏହି
ଭଳି ବିଶ୍ୱାସ ଥିଲା ବୋଲି, ପରମେଶ୍ୱର ସେମାନଙ୍କ
ଉପରେ ପ୍ରସନ୍ନ ଥିଲେ।
୩ବିଶ୍ୱାସ ଦ୍ୱାରା ଆମ୍ଭେ ବୁଝିଛୁ ଯେ ସମଗ୍ର ସୃଷ୍ଟିର
ରଚନା ପରମେଶ୍ୱର ନିଜ ଆଜ୍ଞା ବଳରେ କରି ଥିଲେ।
ଏହାର ଅର୍ଥ ଯେ, ଆମ୍ଭକୁ ଦିଶୁଥିବା ବିଷୟଗୁଡ଼ିକର ସୃଷ୍ଟି
ଅଦୃଶ୍ୟ ବିଷୟ ଦ୍ୱାରା ହୋଇଛି।
୪କୟିନ ଓ ହେବଲ ଦୁହେଁ ପରମେଶ୍ୱରଙ୍କୁ ବଳି
ଉତ୍ସର୍ଗ କଲେ। କିନ୍ତୁ ବିଶ୍ୱାସ ଥିବା ହେତୁ ହେବଲ ଭଲ
ବଳି ଉତ୍ସର୍ଗ କଲେ। ପରମେଶ୍ୱର କହିଲେ ଯେ, ସେ
ହେବଲ ଉତ୍ସର୍ଗ କରିଥିବା ବଳି ପାଇଁ ପ୍ରସନ୍ନ ଥିଲେ।
ପରମେଶ୍ୱରଙ୍କଠାରେ ହେବଲର ବିଶ୍ୱାସ ହେତୁ ତାହାକୁ
ଭଲ ଲୋକ ବୋଲି କହିଲେ। ହେବଲ ମରି ଯାଇଛି
କିନ୍ତୁ ନିଜ ବିଶ୍ୱାସ ହେତୁ ଏବେ ସୁଦ୍ଧା ସେ କଥା କହୁଛି।
୫ବିଶ୍ୱାସ ହେତୁ ହନୋକଙ୍କୁ ଏହି ପୃଥିବୀରୁ ଉଠାଇ
ନିଆ ହେଲା। ସେ କେବେବି ମୃତ୍ୟୁ ଅନୁଭବ କଲେ
ନାହିଁ। ଶାସ୍ତ୍ର କୁହେ ଯେ, ହନୋକଙ୍କୁ ଉଠାଇ ନେଇ ଯିବା
ପୂର୍ବରୁ ସେ ପରମେଶ୍ୱରଙ୍କୁ ସନ୍ତୁଷ୍ଟ କରି ଥିଲେ। ପରେ
ଲୋକେ ତାହାଙ୍କୁ ଖୋଜି ପାରିଲେ ନାହିଁ, କାରଣ ପରମେଶ୍ୱର
ହନୋକଙ୍କୁ ନିଜ ସହିତ ରହିବା ଲାଗି ନେଇ ଗଲେ।
୬ବିଶ୍ୱାସ ବିନା ଜଣେ ପରମେଶ୍ୱରଙ୍କୁ ପ୍ରସନ୍ନ କରି ପାରିବ
ନାହିଁ। ପରମେଶ୍ୱରଙ୍କ ପାଖକୁ ଆସୁଥିବା ପ୍ରତ୍ୟେକ ଲୋକ
ପରମେଶ୍ୱର ଅଛନ୍ତି ବୋଲି ବିଶ୍ୱାସ କରିବା ଉଚିତ। ଯିଏ
ପରମେଶ୍ୱରଙ୍କ ପାଖକୁ ଆସିବ ସେ ବିଶ୍ୱାସ କରିବା
ଦରକାର ଯେ ଯିଏ ପ୍ରକୃତରେ ତାହାଙ୍କୁ ଖୋଜେ, ପରମେଶ୍ୱର
ତାହାକୁ ପୁରସ୍କାର ପ୍ରଦାନ କରନ୍ତି।
୭କେତେକ ଦେଖି ନ ପାରୁ ଥିବା ବିଷୟଗୁଡ଼ିକ ପ୍ରତି
ପରମେଶ୍ୱର ନୋହଙ୍କୁ ସତର୍କ କରି ଦେଇଥିଲେ। ନୋହଙ୍କର
ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ଓ ଭକ୍ତିଭାବ ଥିଲା। ଅତଏବ
ନୋହ ନିଜ ପରିବାରକୁ ରକ୍ଷା କରିବାକୁ ଯାଇ ବଡ
ଜାହାଜଟିଏ ତିଆରି କଲେ। ନିଜ ବିଶ୍ୱାସ ବଳରେ ନୋହ
ଦେଖାଇଲେ ଯେ, ଜଗତ ଦୋଷୀ ଥିଲା। ଯେଉଁମାନଙ୍କୁ
ପରମେଶ୍ୱର ବିଶ୍ୱାସ ବଳରେ ଧାର୍ମିକ କରନ୍ତି, ସେମାନଙ୍କ
ଭିତରୁ ନୋହ ଜଣେ ଥିଲେ।
୮ପରମେଶ୍ୱର ଅବ୍ରାହାମଙ୍କୁ ତାହାଙ୍କ ସ୍ଥାନ ଛାଡ଼ିବାକୁ, ଓ
ଅନ୍ୟ ଗୋଟିଏ ସ୍ଥାନକୁ ଯିବା ପାଇଁ ଡାକିଲେ। ପରମେଶ୍ୱର
ତାହାଙ୍କୁ ସେହିଦେଶ ଦେବା ପାଇଁ ପ୍ରତିଜ୍ଞା କରିଥିଲେ।
ସେ କେଉଁଠାକୁ ଯାଉଅଛନ୍ତି, ତାହା ଅବ୍ରାହାମ ଜାଣି
ନଥିଲେ। କିନ୍ତୁ ଅବ୍ରାହାମ ନିଜ ବିଶ୍ୱାସ ଦ୍ୱାରା ମାନିଲେ, ଓ
ସେହି ସ୍ଥାନ ପାଇଁ ପ୍ରସ୍ଥାନ କଲେ। ୯ପରମେଶ୍ୱର ପ୍ରତିଜ୍ଞା
ଅନୁସାରେ ଅବ୍ରାହାମ ସେହି ସ୍ଥାନରେ ରହିଲେ। ସେ
ଜଣେ ଯାତ୍ରୀ ଭଳି ରହିଲେ, ଜଣେ ବାସିନ୍ଦା ଭଳି ନୁହେଁ।
ବିଶ୍ୱାସ ଥିବା ହେତୁ ସେ ଏପରି କଲେ। ଯିସ୍‌ହାକ ଓ
ଯାକୁବଙ୍କ ସହିତ ଅବ୍ରାହାମ ତମ୍ବୁରେ ରହିଲେ। ଯିସ୍‌ହାକ
ଓ ଯାକୁବ ମଧ୍ୟ ୧୦ପରମେଶ୍ୱରଙ୍କ ଠାରୁ ସେହି ପ୍ରତିଜ୍ଞା
ପାଇ ଥିଲେ। ଅବ୍ରାହାମ ସୁଦୃଢ଼ ମୂଳଦୁଆ ଥିବା ନଗରୀ*
ର ଅପେକ୍ଷାରେ ଥିଲେ। ପରମେଶ୍ୱର ସ୍ୱୟଂ ସେହି
ନଗରୀଟିର ଯୋଜନା ଓ ନିର୍ମାଣ କରିଥିଲେ।
୧୧ପିଲାପିଲି ହେବା ପାଇଁ ଅବ୍ରହାମଙ୍କର ବୟସ ଅଧିକ
ହୋଇ ଯାଇ ଥିଲା। ଆହୁରି ମଧ୍ୟ ସାରାର ପିଲାପିଲି ହୋଇ

---

**ସୁଦୃଢ଼ ମୂଳଦୁଆ ଥିବା ନଗରୀ** ପରମେଶ୍ୱରଙ୍କ ସହିତ ନିଜଲୋକ (ସନ୍ଥ) ରହୁଥିବା ଆଧ୍ୟାତ୍ମିକ ନଗରୀ। ଏହାକୁ 'ସ୍ୱର୍ଗର ଯିରୁଶାଲମ' ମଧ୍ୟ କହନ୍ତି। ଏବ୍ରୀ ୧୨:୨୨

ପାରି ନ ଥିଲା। କିନ୍ତୁ ପରମେଶ୍ୱରଙ୍କଠାରେ ଅବ୍ରହାମଙ୍କର
ବିଶ୍ୱାସ ଥିଲା, ଅତଏବ ପରମେଶ୍ୱର ସେମାନଙ୍କୁ ସନ୍ତାନ
ହେବା ପାଇଁ ସକ୍ଷମ କଲେ। ପରମେଶ୍ୱରଙ୍କ ପ୍ରତିଜ୍ଞା
ପୂରଣ କରିବା ବିଷୟରେ ଅବ୍ରହାମ ତାହାଙ୍କ ଉପରେ
ବିଶ୍ୱାସ ରଖି ଥିଲେ। [୧୨]ଏହି ଲୋକ ଜଣକ ଏତେ ବୃଦ୍ଧ
ଥିଲେ ଯେ ସେ ମୃତବତ ଥିଲେ। କିନ୍ତୁ ସେହି ଜଣେ
ଲୋକଙ୍କ ଠାରୁ ଆକାଶର ତାରାଗଣ ଓ ସମୁଦ୍ର କୂଳର
ବାଲି ଭଳି ଅସଂଖ୍ୟ ସନ୍ତାନ ଜନ୍ମଗ୍ରହଣ କଲେ।

[୧୩]ସେହି ସମସ୍ତ ମହାନ ଲୋକ ମୃତ୍ୟୁ ପର୍ଯ୍ୟନ୍ତ ନିଜର
ବିଶ୍ୱାସ ସହିତ ଜୀବିତ ରହିଲେ। ପରମେଶ୍ୱର ନିଜଲୋକଙ୍କୁ
ପ୍ରତିଜ୍ଞା କରିଥିବା ବସ୍ତୁମାନ ସେହିଲୋକମାନେ ପାଇଲେ
ନାହିଁ। ସେମାନେ ଖାଲି ଦେଖିଲେ ଯେ, ସେହି ବିଷୟଗୁଡ଼ିକ
ସୁଦୂର ଭବିଷ୍ୟତରେ ଆସିବ, ଓ ସେମାନେ (ସେତିକିରେ)
ଖୁସି ହେଲେ। ସେମାନେ ଗ୍ରହଣ କରି ନେଲେ ଯେ
ସେମାନେ ଏହି ପୃଥିବୀରେ ଯାତ୍ରୀ ଓ ଅପରିଚିତ ବ୍ୟକ୍ତି
ଅଟନ୍ତି। [୧୪]ଯେଉଁଲୋକମାନେ ସେହିଭଳି କଥା ମାନି
ନିଅନ୍ତି, ସେମାନେ ସେମାନଙ୍କର ନିଜର ଗୋଟିଏ ଦେଶ
ପାଇଁ ଅପେକ୍ଷାରତ ଅଛନ୍ତି ବୋଲି ପ୍ରଦର୍ଶିତ କରନ୍ତି।
[୧୫]ଯଦି ସେମାନେ ପୂର୍ବରୁ ଛାଡି ଥିବା ଦେଶ ବିଷୟରେ
ଭାବୁ ଥିଲେ, ସେମାନେ ସେହିସ୍ଥାନକୁ ଫେରିବାକୁ ଗୋଟିଏ
ସୁଯୋଗ ଖୋଜି ପାଇ ପାରି ଥାଆନ୍ତେ। [୧୬]କିନ୍ତୁ ବାସ୍ତବିକ
ସେମାନେ ଗୋଟିଏ ଅପେକ୍ଷାକୃତ ଭଲ ଦେଶ ପାଇଁ
ଅପେକ୍ଷା କରୁଥିଲେ, ଯାହାକି ଗୋଟିଏ ସ୍ୱର୍ଗୀୟ ଦେଶ।
ତେଣୁ, ପରମେଶ୍ୱର ସଙ୍କୋଚ କଲେ ନାହିଁ ସେମାନଙ୍କର
ପରମେଶ୍ୱର ଭାବରେ ପରିଚିତ ହେବା ପାଇଁ। ସେହି
ଲୋକମାନଙ୍କ ଲାଗି ପରମେଶ୍ୱର ଗୋଟିଏ ନଗର ତିଆରି
କରି ରଖି ଅଛନ୍ତି।

[୧୭-୧୮]ପରମେଶ୍ୱର ଅବ୍ରାହାମଙ୍କୁ ପରୀକ୍ଷା କରିଥିଲେ।
ଅବ୍ରାହାମଙ୍କୁ ପରମେଶ୍ୱର କହିଥିଲେ ଯେ, ଯିସ୍‌ହାକଙ୍କୁ
ବଳିରୂପେ ସମର୍ପିତ କରିବ। ଅବ୍ରାହାମଙ୍କ ବିଶ୍ୱାସଥିବାରୁ
ସେ ତାହା ମାନିଲେ। ପରମେଶ୍ୱରଙ୍କଠାରୁ ଅବ୍ରାହାମ ପୂର୍ବରୁ
ପ୍ରତିଜ୍ଞା ପାଇଥିଲେ। ପରମେଶ୍ୱର ଅବ୍ରାହାମଙ୍କୁ କହି ସାରିଥିଲେ
ଯେ, "ଯିସ୍‌ହାକଙ୍କ ଦ୍ୱାରା ତୁମ୍ଭର ବଂଶଧରମାନେ ଆସିବେ।"
କିନ୍ତୁ ନିଜର ଏକମାତ୍ର ପୁତ୍ର ଯିସ୍‌ହାକଙ୍କୁ ସେ ସମର୍ପିତ
କରିବା ପାଇଁ ପ୍ରସ୍ତୁତ ଥିଲେ। ବିଶ୍ୱାସ ଥିବାରୁ ଅବ୍ରାହାମ
ଏପରି କଲେ। [୧୯]ଅବ୍ରାହାମ ବିଶ୍ୱାସ କରିଥିଲେ ଯେ,
ପରମେଶ୍ୱର ଲୋକମାନଙ୍କୁ ମୃତ୍ୟୁରୁ ଉଠାଇ ଆଣି ପାରିବେ।
ପ୍ରକୃତରେ ଯେତେବେଳେ ସେ ଯିସ୍‌ହାକଙ୍କୁ ମାରିବା ପାଇଁ
ଗଲାବେଳେ ପରମେଶ୍ୱର ଅବ୍ରାହାମଙ୍କୁ ଅଟକାଇ ଦେଲେ।
ସେତେବେଳେ ଅବ୍ରାହାମ ଯେପରି ଯିସ୍‌ହାକଙ୍କୁ ମୃତ୍ୟୁରୁ
ଫେରି ପାଇଲେ।

[୨୦]ବିଶ୍ୱାସ କାରଣରୁ ଯିସ୍‌ହାକ, ଯାକୁବ ଓ ଏସୌଙ୍କୁ
ସେମାନଙ୍କ ଭବିଷ୍ୟତ ବିଷୟରେ ଆଶୀର୍ବାଦ ଦେଲେ।
[୨୧]ବିଶ୍ୱାସ କାରଣରୁ ହିଁ, ମଲାବେଳେ ଯାକୁବ, ଯୋସେଫଙ୍କ
ପ୍ରତ୍ୟେକ ପୁତ୍ରକୁ ଆଶୀର୍ବାଦ କଲେ। ସେ ନିଜର ବାଡି
ଉପରେ ନଇଁ ପଡି ପରମେଶ୍ୱରଙ୍କୁ ଉପାସନା କଲେ।

[୨୨]ବିଶ୍ୱାସ ଦ୍ୱାରା ହିଁ, ନିଜର ଶେଷ ସମୟ ନିକଟ
ହେବା ପୂର୍ବରୁ, ଯୋସେଫ ଇସ୍ରାୟେଲ ନିବାସୀମାନଙ୍କର
ମିସର ଦେଶରୁ ନିର୍ଗମନ ବିଷୟରେ, ତାହାଙ୍କ ମୃତ୍ୟୁ ପରେ
ତାହାଙ୍କୁ କିପରି କବର ଦେବେ, ସେ ବିଷୟରେ କହିଥିଲେ।

[୨୩]ବିଶ୍ୱାସ ଦ୍ୱାରା ହିଁ, ମୋଶାଙ୍କର ମା ଓ ବାପା
ମୋଶାଙ୍କୁ ଜନ୍ମ ଦେଲା ପରେ ତିନିମାସ ଧରି ଲୁଚାଇ
ରଖିଲେ। କାରଣ ସେମାନେ ଦେଖିଲେ ଯେ ମୋଶା
ସୁନ୍ଦର ଶିଶୁଟିଏ। ସେମାନେ ରାଜାଜ୍ଞାକୁ ଅବଜ୍ଞା କରିବାକୁ
ଭୟ କରି ନ ଥିଲେ।

[୨୪]ମୋଶା ବଡ଼ ହୋଇ ମଣିଷ ହେଲେ। ସେ ଫାରୋଙ୍କ
ଝିଅର ପୁତ୍ର ହେବା ପାଇଁ ମନା କଲେ। [୨୫]ସେ ପାପର
କ୍ଷଣିକ ସୁଖଭୋଗ କରିବା ପାଇଁ ଚାହିଁଲେ ନାହିଁ। ତା'
ପରିବର୍ତ୍ତେ ସେ ଈଶ୍ୱରଙ୍କ ଲୋକମାନଙ୍କ ସହ୍ୟ ହେଉଥିବା
ଦୁର୍ବ୍ୟବହାର ସହିବା ପସନ୍ଦ କଲେ। ନିଜର ବିଶ୍ୱାସ ହେତୁ
ସେ ଏପରି କଲେ। [୨୬]ମିସର ଦେଶର ସମସ୍ତ ଧନଭଣ୍ଡାର
ପ୍ରାପ୍ତ କରିବା ବଦଳରେ ଖ୍ରୀଷ୍ଟଙ୍କ ପାଇଁ କଷ୍ଟ ସହନ
କରିବା, ମୋଶା ଅପେକ୍ଷାକୃତ ଭଲ ମନେ କଲେ।
ପରମେଶ୍ୱରଙ୍କ ଦ୍ୱାରା ଭବିଷ୍ୟତରେ ମିଳିବାକୁ ଥିବା ପ୍ରତିଦାନ
ପାଇଁ ସେ ପ୍ରତୀକ୍ଷା କଲେ। [୨୭]ନିଜ ବିଶ୍ୱାସ କାରଣରୁ
ମୋଶା ମିସର ଦେଶ ଛାଡିଲେ। ସେ ରାଜାଙ୍କର କ୍ରୋଧ
ପ୍ରତି ଭୟଭୀତ ନ ଥିଲେ। ସେ ଅନ୍ୟମାନଙ୍କୁ ଅଦୃଶ୍ୟ
ପରମେଶ୍ୱରଙ୍କୁ ଦେଖି ପାରିଲା ଭଳି ନିଜ ବିଶ୍ୱାସରେ ଦୃଢ଼
ଥିଲେ। [୨୮]ମୋଶା ନିସ୍ତାର ଭୋଜି* (ପର୍ବ) କରି ଦ୍ୱାର
ମାନଙ୍କରେ ରକ୍ତ ସିଞ୍ଚନ କଲେ। ଯିହୂଦୀଲୋକଙ୍କର ପ୍ରଥମଜାତ
ସନ୍ତାନ ମାନଙ୍କୁ ମୃତ୍ୟୁର ଦୂତ ଯେପରି ମାରି ପାରିବେ
ନାହିଁ, ସେଥିପାଇଁ ମୋଶା ଏପରି କଲେ। ମୋଶାଙ୍କର
ବିଶ୍ୱାସ ଥିବାରୁ ସେ ଏପରି କଲେ।

[୨୯]ବିଶ୍ୱାସଥିବା ହେତୁ ହିଁ ମୋଶାଙ୍କ ନେତୃତ୍ୱରେ ସମସ୍ତେ
ସୁଫସାଗର ମଧ୍ୟ ଦେଇ ଶୁଖିଲା ଭୂଇଁ ଥିଲା ଭଳି ଚାଲିଚାଲି
ପାର ହୋଇ ଗଲେ। ଯେତେବେଳେ ମିସରଦେଶର ଲୋକେ
ସୁଫସାଗର ଦେଇ ଯିବାପାଇଁ ଚେଷ୍ଟାକଲେ ସେମାନେ ବୁଡ଼ି
ଗଲେ।

[୩୦]ଈଶ୍ୱରଙ୍କ ଲୋକମାନଙ୍କ ବିଶ୍ୱାସ ହେତୁ ଯିରୀହୋ
ନଗରର ପାଚେରୀଗୁଡିକ ସେମାନେ ସାତଦିନ ପରିକ୍ରମା
କଲାପରେ, ଭାଙ୍ଗି ପଡି ଗଲା।

[୩୧]ନିଜର ବିଶ୍ୱାସ ଦ୍ୱାରା, ରାହାବ ନାମ୍ନୀ ବେଶ୍ୟା,
ଇସ୍ରାୟେଲର ଗୁପ୍ତଚର ମାନଙ୍କୁ ମିତ୍ର ଭଳି ସ୍ୱାଗତ କଲା,
ଓ ସେମାନଙ୍କୁ ସାହାଯ୍ୟ କଲା, ଓ ଅନ୍ୟ ଯେଉଁ ଲୋକମାନେ
ମାନିବାକୁ ମନା କରି ଥିଲେ, ସେମାନଙ୍କ ସହିତ ମୃତ
ହେଲା ନାହିଁ।

[୩୨]ମୁଁ ଅଧିକ ଆଉ କଣ କହିବି, ଓ କି ଉଦାହରଣ
ମାନ ପ୍ରସ୍ତୁତ କରିବି? ଗିଦିୟୋନ, ବାରାକ, ଶାମ୍‌ଶୋନ,
ଯିପ୍ତାହ, ଦାଉଦ, ଶାମୁୟେଲ, ଓ ଭବିଷ୍ୟତ୍‌ବକ୍ତାମାନଙ୍କ

---

**ନିସ୍ତାର ଭୋଜି** ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଦିନ। ପ୍ରତିବର୍ଷ ଏହି ଦିନରେ, ଯିହୂଦୀମାନେ (ମୋଶାଙ୍କ ସମୟରେ ପରମେଶ୍ୱର ମିଶର ଦେଶରୁ ସେମାନଙ୍କୁ ମୁକ୍ତ ଦେଇଥିଲେ ବୋଲି) ବିଶେଷ ଭୋଜିର ଆୟୋଜନ କରନ୍ତି।

ବିଷୟରେ କହିବା ପାଇଁ ମୋ ପାଖରେ ଅଧିକ ସମୟ
ନାହିଁ, ୩୩ସେ ସମସ୍ତଙ୍କର ବହୁତ ଅଧିକ ବିଶ୍ୱାସ ଥିଲା।
ସେହି ବିଶ୍ୱାସ ବଳରେ ସେମାନେ ସାମ୍ରାଜ୍ୟଗୁଡ଼ିକୁ ପରାସ୍ତ
କରି ଥିଲେ। ସେମାନେ ସମସ୍ତେ ଧାର୍ମିକ କାର୍ଯ୍ୟ କଲେ,
ପରମେଶ୍ୱରଙ୍କ ପ୍ରତିଜ୍ଞାର ବିଷୟ ଗୁଡ଼ିକ ପାଇଲେ। ସେମାନେ
ନିଜ ବିଶ୍ୱାସ ଦ୍ୱାରା ସିଂହମାନଙ୍କର ମୁହଁ ବନ୍ଦ କଲେ।
୩୪ସେହି ବିଶ୍ୱାସ ବଳରେ କେତେ ଜଣ ଅଗ୍ନିର ଶକ୍ତି ବନ୍ଦ
କଲେ, ଓ କେତେ ଲୋକ ଖଡ୍ଗ ଦ୍ୱାରା ମରିବାରୁ ରକ୍ଷା
ପାଇଲେ। ବିଶ୍ୱାସ କାରଣରୁ ଦୁର୍ବଳ ଲୋକ ଶକ୍ତିଶାଳୀ
ହେଲେ। ସେମାନେ ଯୁଦ୍ଧରେ ଶକ୍ତିଶାଳୀ ହୋଇ ଶତ୍ରୁ
ସେନାଙ୍କୁ ପରାସ୍ତ କଲେ। ୩୫ମୃତ୍ୟୁରୁ ଲୋକମାନେ ପୁନଃ
ଜୀବିତ ହୋଇ ପରିବାରରେ ନିଜ ନାରୀମାନଙ୍କ ପାଖକୁ
ଗଲେ। ଅନ୍ୟଲୋକମାନଙ୍କୁ ଯାତନା ଦିଆ ହେଲା, ସେମାନେ
ସ୍ୱାଧୀନ ହେବାକୁ ଚାହିଁଲେ ନାହିଁ କାରଣ ସେମାନେ
ମୃତ୍ୟୁରୁ ପୁନଃ ଜୀବନ ଲାଭ କରି ଗୋଟିଏ ଅଧିକ ଭଲ
ଜୀବନ ପାଇ ପାରିବେ ବୋଲି ଭାବି ଏହି ସବୁ କାର୍ଯ୍ୟ
କରିଥିଲେ। ୩୬କେତେ ଲୋକ ହାସ୍ୟର ପାତ୍ର ହେଲେ ଓ
କୋରଡ଼ା ଆଘାତ ପାଇଲେ। ଅନ୍ୟମାନେ ବନ୍ଧା ହେଲେ,
ଓ ବନ୍ଦୀଘରେ ରଖା ଗଲେ। ୩୭ସେମାନଙ୍କୁ ପଥର ମାରି
ଦିଆହେଲା, ଓ କରତରେ ଦୁଇ ଫାଳ କରି ଚିରି ଦିଆ
ହେଲା। କେତେକଙ୍କୁ ଖଡ୍‌ଗଦ୍ୱାରା ମାରି ଦିଆ ହେଲା।
ସେମାନଙ୍କ ଭିତରୁ କେତେ ଜଣ ମେଣ୍ଢା ଓ ଛେଳିର
ଚମଡ଼ା ପିନ୍ଧିଲେ। ସେମାନେ ଗରିବ ଥିଲେ, ନିର୍ଯ୍ୟାତିତ
ହେଲେ, ଓ ଅନ୍ୟମାନଙ୍କ ଦ୍ୱାରା ମନ୍ଦ ବ୍ୟବହାର ପାଇଲେ।
୩୮ଏହି ମହାନ୍ ଲୋକମାନଙ୍କ ଲାଗି ପୃଥିବୀ ଉପଯୁକ୍ତ ନ
ଥିଲା। ସେମାନେ ମରୁଭୂମିରେ ଓ ପାହାଡ଼ରେ ବୁଲିଲେ ଓ
ଗୁମ୍ଫା ଏବଂ ଭୂମିରେ ଥିବା ଗାତ ମାନଙ୍କରେ ନିଜକୁ
ଲୁଚାଇ ରଖିଲେ।

୩୯ଏହି ସମସ୍ତ ଲୋକମାନେ ନିଜର ବିଶ୍ୱାସ ପାଇଁ ଜଣା
ଶୁଣା। କିନ୍ତୁ ଏମାନଙ୍କ ଭିତରୁ କେହି ହେଲେ ପରମେଶ୍ୱରଙ୍କ
ମହାନ୍ ପ୍ରତିଜ୍ଞା ପାଇ ପାରି ନଥିଲେ। ୪୦ପରମେଶ୍ୱର
ଆମ୍ଭକୁ କିଛି ଅପେକ୍ଷାକୃତ ଭଲ ଦେବା ପାଇଁ ଯୋଜନା
କରିଥିଲେ। ପରମେଶ୍ୱରଙ୍କ ଯୋଜନା ଥିଲା ଯେ, ସେମାନେ
କେବଳ ଆମ୍ଭ ସହିତ ପରିପୂର୍ଣ୍ଣ ହେବେ।

## ଆମ୍ଭେ ଯୀଶୁଙ୍କ ଉଦାହରଣ ଅନୁସରଣ କରିବା ଉଚିତ

୧୨ ଆମ୍ଭର ଚାରିପଟେ, ବିଶ୍ୱାସଧାରୀ ଆମ୍ଭର ବହୁ
ସଂଖ୍ୟକ ଲୋକ ରହିଛନ୍ତି। ବିଶ୍ୱାସ ବିଷୟରେ
ସେମାନଙ୍କ ଜୀବନ ଆମ୍ଭକୁ କହିଥାଏ। ତେଣୁ ଆମ୍ଭେ
ସେମାନଙ୍କ ଭଳି ହେବା ଉଚିତ। ଆମ୍ଭେ ଜୀବନରେ
ଆଗକୁ ଯିବା ପାଇଁ ଯାହା କିଛି ବାଧା ଅଛି, ସେଗୁଡ଼ିକୁ
ଆମ୍ଭେ ଆଡ଼େଇ ଦେବା ଉଚିତ ଓ ଆମ୍ଭ ସମ୍ମୁଖରେ ଥିବା
ଦୌଡ଼ରେ ଦୌଡ଼ିବା ଉଚିତ। ପ୍ରଚେଷ୍ଟା ଥିବା ଦରକାର।
ଆମ୍ଭକୁ ସହଜରେ ବାନ୍ଧି ରଖୁଥିବା ପାପକୁ ଆମ୍ଭେ ତ୍ୟାଗ
କରିବା ଉଚିତ। ୨ଆମ୍ଭେ ସର୍ବଦା ଯୀଶୁଙ୍କ ଉଦାହରଣ
ଗ୍ରହଣ କରିବା ଉଚିତ। ଆମ୍ଭ ବିଶ୍ୱାସର ନେତା ଯୀଶୁଖ୍ରୀଷ୍ଟ
ଅଟନ୍ତି। ସେ ଆମ୍ଭର ବିଶ୍ୱାସକୁ ସିଦ୍ଧ କରନ୍ତି। ସେ କ୍ରୁଶ
ଉପରେ ମୃତ୍ୟୁର ଯାତନା ଭୋଗିଛନ୍ତି। କିନ୍ତୁ ସେ କ୍ରୁଶର
ଲଜ୍ଜାକୁ ଏକ ଅର୍ଥହୀନ ବିଷୟ ବୋଲି ମନେ କରି ଗ୍ରହଣ
କରିଛନ୍ତି। ପରମେଶ୍ୱର ତାହାଙ୍କ ସମ୍ମୁଖରେ ଯେଉଁ ଆନନ୍ଦର
ଲକ୍ଷ ରଖିଥିଲେ, ସେଥିପାଇଁ ସେ ତାହା କଲେ। ଏବେ
ସେ ପରମେଶ୍ୱରଙ୍କ ସିଂହାସନର ଡାହାଣରେ ବସିଛନ୍ତି।
୩ଯୀଶୁଙ୍କ ବିଷୟରେ ଭାବିଦେଖ। ଯେତେବେଳେ
ପାପୀଲୋକମାନେ ତାହାଙ୍କ ବିରୁଦ୍ଧରେ କିଛି କରୁ ଥିଲେ,
ସେ ଅତି ଧୈର୍ଯ୍ୟର ସହିତ ସବୁଗୁଡ଼ିକୁ ଗ୍ରହଣ କଲେ।
ତୁମ୍ଭେମାନେ ମଧ୍ୟ ସେହି ଭଳି ଧୈର୍ଯ୍ୟବାନ ହୁଅ। ଚେଷ୍ଟା
କରିବାରୁ ନିରୁତ୍ସାହ ହୁଅ ନାହିଁ।

## ପରମେଶ୍ୱର: ପିତାତୁଲ୍ୟ

୪ତୁମ୍ଭେମାନେ ପାପ ବିରୁଦ୍ଧରେ ସଂଗ୍ରାମ କରୁଛ, କିନ୍ତୁ
ସେହି ସଂଗ୍ରାମ ବର୍ତ୍ତମାନ ସୁଦ୍ଧା ତୁମ୍ଭମାନଙ୍କର ମୃତ୍ୟୁର
କାରଣ ହୋଇ ପାରି ନାହିଁ। ୫ତୁମ୍ଭେମାନେ ପରମେଶ୍ୱରଙ୍କ
ପୁତ୍ରଗଣ ହୋଇଥିବା କାରଣରୁ ସେ ତୁମ୍ଭମାନଙ୍କୁ ସାନ୍ତ୍ୱନା
(ସାହାସ) ର ବାକ୍ୟ କୁହନ୍ତି। ତୁମ୍ଭେମାନେ ସେହି ବାକ୍ୟ
(ଶବ୍ଦ) ଗୁଡ଼ିକୁ ଭୁଲି ଯାଇଛ:

"ହେ ମୋର ପୁତ୍ର! ଯେତେବେଳେ ପ୍ରଭୁ ତୁମ୍ଭକୁ
ଦଣ୍ଡ ଦିଅନ୍ତି ଭାବିନାହିଁ ଯେ ତାହା ମୂଲ୍ୟହୀନ, ଓ
ଯେତେବେଳେ ପ୍ରଭୁ ତୁମ୍ଭର ସଂଶୋଧନ କରନ୍ତି
ଚେଷ୍ଟା କରିବାରେ ନିରୁତ୍ସାହ ହୁଅ ନାହିଁ।
୬ ପ୍ରଭୁ ଭଲ ପାଉଥିବା ପ୍ରତ୍ୟେକ ଲୋକକୁ ଦଣ୍ଡ
ଦିଅନ୍ତି, ଓ ପୁତ୍ର ଭାବରେ ମାନିଥିବା ପ୍ରତ୍ୟେକ
ଲୋକକୁ ସେ ଶାସ୍ତି ଦିଅନ୍ତି।"

ହିତୋପଦେଶ ୩:୧୧-୧୨

୭ଅତଏବ ପ୍ରତ୍ୟେକ ଯାତନାକୁ ପିତାଙ୍କର ଦଣ୍ଡ ବୋଲି
ଭାବି ଗ୍ରହଣ କର। ଜଣେ ପିତା ତାର ପୁତ୍ର ପ୍ରତି ଯେଉଁଭଳି
ବ୍ୟବହାର କରେ, ପରମେଶ୍ୱର ତୁମ୍ଭମାନଙ୍କ ପ୍ରତି ସେପରି
ବ୍ୟବହାର କରନ୍ତି। ୮ପ୍ରତ୍ୟେକ ପୁତ୍ର ପିତା ଦ୍ୱାରା ଦଣ୍ଡ
ପାଇ ଥାଏ। ଯଦି ତୁମ୍ଭେମାନେ କେବେ ଦଣ୍ଡ ପାଇ ନାହିଁ
(ପ୍ରତ୍ୟେକ ପୁତ୍ର ଦଣ୍ଡ ପାଇବା ଉଚିତ) ତାହେଲେ ତୁମ୍ଭେମାନେ
ଅବୈଧ ପୁତ୍ର ଅଟ ଏବଂ ପ୍ରକୃତ ପୁତ୍ର ନୁହଁ। ୯ଏହି
ପୃଥିବୀରେ ଆମ୍ଭ ସମସ୍ତଙ୍କର ବାପାମାନେ ଥିଲେ ଓ
ସେମାନେ ଆମ୍ଭମାନଙ୍କୁ ଦଣ୍ଡ ଦେଲେ। ତଥାପି ଆମ୍ଭେ ଆମ୍ଭ
ବାପାମାନଙ୍କୁ ସମ୍ମାନ ଦେଖାଇଲୁ। ଅତଏବ ଏହା ଅଧିକ
ଗୁରୁତ୍ୱପୂର୍ଣ୍ଣ ଯେ ଆମ୍ଭେ ଆମ୍ଭ ଆତ୍ମାଗୁଡ଼ିକର ପିତାଙ୍କ ଠାରୁ
ଦଣ୍ଡ ଗ୍ରହଣ କରିବା ଉଚିତ। ଏପରି କଲେ ଆମ୍ଭେ
ଜୀବନ ପାଇବା। ୧୦ଆମ୍ଭର ପୃଥିବୀର ପିତାମାନେ ଆମ୍ଭକୁ
ଅଳ୍ପ ସମୟ ଧରି ଦଣ୍ଡ ଦେଲେ। ସେମାନେ ଯେପରି ଭଲ
ଭାବିଲେ, ସେହି ପରି ଦଣ୍ଡ ଦେଲେ। କିନ୍ତୁ ପରମେଶ୍ୱର,
ତାହାଙ୍କ ନିଜଭଳି ଆମ୍ଭକୁ ପବିତ୍ର ହେବାପାଇଁ ସାହାଯ୍ୟ
କରିବା ନିମନ୍ତେ ଆମ୍ଭକୁ ଦଣ୍ଡ ଦିଅନ୍ତି। ୧୧ଦଣ୍ଡ ପାଇଲା
ବେଳେ ଆମ୍ଭେ ଆନନ୍ଦ ଲାଭ କରୁ ନାହିଁ। ଦଣ୍ଡ ପାଇବା
କଷ୍ଟଦାୟକ ଅଟେ। କିନ୍ତୁ ପରବର୍ତ୍ତୀ କାଳରେ, ଦଣ୍ଡ

ପାଇବା ଦ୍ୱାରା ଶିଖିବା ପରେ, ଆମ୍ଭେ ଶାନ୍ତି ଲାଭ କରୁ ଓ ଧାର୍ମିକ ଜୀବନ ବଞ୍ଚାଉ।

## ଜୀବନ ପଦ୍ଧତି ବିଷୟରେ ସାବଧାନ ରୁହ

୧୨ତୁମ୍ଭେମାନେ ଦୁର୍ବଳ ହୋଇ ଯାଇଛ। ଅତଏବ ନିଜକୁ
ପୁନର୍ବାର ଶକ୍ତିଶାଳୀ କର। ୧୩ଧାର୍ମିକ ହୋଇ ଜୀବନଯାପନ
କର, ଯେପରି ତୁମ୍ଭମାନଙ୍କର ଦୁର୍ବଳତା ଗୁଡ଼ିକ ନଷ୍ଟ
ହେବାର କାରଣ ହେବ ନାହିଁ, ଓ ତୁମ୍ଭେମାନେ ରକ୍ଷା ପାଇ
ପାରିବ।

୧୪ସମସ୍ତଙ୍କ ସହିତ ଶାନ୍ତିରେ ରହିବାକୁ ଚେଷ୍ଟା କର।
ପାପରହିତ ଜୀବନଯାପନ କରିବା ପାଇଁ ଚେଷ୍ଟା କର। ଯଦି
ଜଣଙ୍କର ଜୀବନ ପବିତ୍ର ନୁହେଁ, ତା'ହେଲେ ସେ ପ୍ରଭୁଙ୍କୁ
କେବେହେଲେ ଦେଖି ପାରିବ ନାହିଁ। ୧୫ସାବଧାନ ରୁହ
ଯେପରି ତୁମ୍ଭମାନଙ୍କ ମଧ୍ୟରୁ କେହି ପରମେଶ୍ୱରଙ୍କ ଅନୁଗ୍ରହ
ପାଇବାରେ ବଞ୍ଚିତ ହେବ ନାହିଁ। ସାବଧାନ ରୁହ ଯେପରି
ତୁମ୍ଭମାନଙ୍କ ଭିତରୁ କୌଣସି ଲୋକ ତିକ୍ତତାରମୂଳ ନ
ହେଉ। ସେଭଳି ଲୋକ ସମୁଦାୟ ଦଳକୁ ନଷ୍ଟ କରି
ଦେବେ। ୧୬ସାବଧାନ ରୁହ ଯେପରି କେହିହେଲେ
ଯୌନବ୍ୟଭିଚାର ନ କରେ। ସାବଧାନ ରୁହ ଯେପରି
କେହି ଏଷୌ ଭଳି ନ ହେଉ। ସେ ପରମେଶ୍ୱରଙ୍କ
ବିଷୟରେ ଚିନ୍ତା କରେ ନାହିଁ। ଏଷୌ ଜ୍ୟେଷ୍ଠପୁତ୍ର ଥିଲା,
ଓ ସେ ତା' ପିତାଙ୍କଠାରୁ ସବୁକିଛି ଉତ୍ତରାଧିକାରୀ ଭାବରେ
ପାଇଥାନ୍ତା। କିନ୍ତୁ ଥରକର ଭୋଜନ ବଦଳରେ ସେ
ସବୁକିଛି ବିକ୍ରି କରି ଦେଲା। ୧୭ତୁମ୍ଭେମାନେ ଜାଣିଛ ଯେ,
ଏପରି କରି ସାରିଲା ପରେ, ଏଷୌ ବାପାଙ୍କର ଆଶୀର୍ବାଦ
ପାଇବା ପାଇଁ ଚାହିଁଲା। ସେ ଆଶୀର୍ବାଦ ପାଇବା ନିମନ୍ତେ
ଏତେ ବ୍ୟାକୁଳ ହେଲା ଯେ, ସେ ବହୁତ କାନ୍ଦିଲା। କିନ୍ତୁ
ତା'ବାପା ତାହାକୁ ଆଶୀର୍ବାଦ କରିବା ପାଇଁ ମନା କଲେ,
କାରଣ ଏଷୌ ଯାହା କରିଥିଲା, ତାହାକୁ ବଦଳାଇବା ପାଇଁ
କୌଣସି ଉପାୟ ପାଇ ପାରିଲା ନାହିଁ।

୧୮ତୁମ୍ଭେମାନେ ଗୋଟିଏ ନୂଆ ଯାଗାକୁ ଆସିଛ। ଏହି
ସ୍ଥାନଟି ଇସ୍ରାୟେଲୀୟମାନେ ଆସିଥିବା ପର୍ବତ ଭଳି ଯାଗା
ନୁହେଁ। ତୁମ୍ଭେମାନେ ଗୋଟିଏ ଛୁଇଁ ପାରୁଥିବା ଓ ନିଆଁରେ
ଜଳୁଥିବା ପର୍ବତ ପାଖକୁ ଆସି ନାହିଁ। ତୁମ୍ଭେମାନେ
ଅନ୍ଧାରୁଆ, ଝାପ୍‌ସା ଓ ଝଡ଼ ହେଉଥିବା ସ୍ଥାନକୁ ଆସିନାହିଁ।
୧୯ସେଠାରେ ତୂରୀର ଧ୍ୱନି, ଏବଂ ଶବ୍ଦ ଉଚ୍ଚାରଣ କରୁଥିବା
ଧ୍ୱନି ନାହିଁ। ଯେତେବେଳେ ଲୋକେ ସେ ଧ୍ୱନି ଶୁଣିଲେ,
ସେମାନେ ପ୍ରାର୍ଥନା କଲେ ଯେ, ଅନ୍ୟ କୌଣସି ଶବ୍ଦ
ଯେପରି ନ ଶୁଣନ୍ତି। ୨୦ସେମାନେ ଆଦେଶକୁ ସହି
ପାରିଲେ ନାହିଁ: "ଯଦି କିଏ, କୌଣସି ପଶୁ ମଧ୍ୟ,
ପର୍ବତକୁ ଛୁଁଏ ତା'ହେଲେ ତାହାକୁ ପଥର ଆଘାତ ଦ୍ୱାରା
ମାରି ଦେବାକୁ ହେବ।"* ୨୧ସେହି ଲୋକମାନେ ଯାହା
ଦେଖିଲେ, ସେଗୁଡ଼ିକ ଏତେ ଭୟଙ୍କର ଥିଲା ଯେ, ମୋଶା
କହିଥିଲେ: "ମୁଁ ଭୟରେ ଥରୁଛି।"*

୨୨କିନ୍ତୁ ତୁମ୍ଭେମାନେ ସେପରି ଯାଗାକୁ ଆସିନାହିଁ।
ତୁମ୍ଭେମାନେ ଯେଉଁ ନୂତନ ଯାଗାକୁ ଆସିଛ, ତାହାର ନାମ
ସୀୟୋନ ପର୍ବତ।* ତୁମ୍ଭେମାନେ ଜୀବନ୍ତ ପରମେଶ୍ୱରଙ୍କ
ନଗରୀକୁ ଆସିଛ, ସ୍ୱର୍ଗୀୟ ଯିରୁଶାଲମକୁ ଆସିଛ। ତୁମ୍ଭେମାନେ
ଏକତ୍ରିତ ହୋଇଥିବା ଓ ଆନନ୍ଦରେ ପରିପୂର୍ଣ୍ଣ ହଜାର
ହଜାର ସ୍ୱର୍ଗଦୂତଙ୍କ ପାଖରେ ଆସି ପହଁଞ୍ଚିଛ। ୨୩ତୁମ୍ଭେମାନେ
ପରମେଶ୍ୱରଙ୍କ ପ୍ରଥମ ଜାତ* ସନ୍ତାନମାନଙ୍କ ମିଳନ ସ୍ଥଳରେ
ଆସି ପହଁଞ୍ଚିଛ। ସେମାନଙ୍କ ନାମ ସ୍ୱର୍ଗରେ ଲେଖା ରହିଛି।
ସବୁଲୋକଙ୍କର ବିଚାରପତି ପରମେଶ୍ୱରଙ୍କ ନିକଟକୁ ତୁମ୍ଭେମାନେ
ଆସିଛ। ଯେଉଁଲୋକମାନେ ସିଦ୍ଧ ହୋଇ ସାରିଛନ୍ତି, ସେହିଭଳି
ଭଲ ଲୋକମାନଙ୍କ ଆତ୍ମାମାନଙ୍କ ପାଖକୁ ତୁମ୍ଭେମାନେ
ଆସିଛ। ୨୪ତୁମ୍ଭେମାନେ, ପରମେଶ୍ୱରଙ୍କଠାରୁ ନୂତନ ଚୁକ୍ତି
ନିଜଲୋକଙ୍କ ପାଖକୁ ଆଣିଥିବା ଯୀଶୁଙ୍କ ପାଖକୁ ଆସିଛ।
ତୁମ୍ଭେମାନେ ହେବଲଙ୍କ ରକ୍ତ ଅପେକ୍ଷା ଅଧିକ ଭଲ ବାକ୍ୟ
କହି ପାରୁଥିବା ରକ୍ତ ସେଚନ* ନିକଟକୁ ଆସିଛ।

୨୫ସାବଧାନ ରୁହ, ଓ ପରମେଶ୍ୱର କଥା କହିଲା
ବେଳେ ଶୁଣିବାକୁ ମନା କର ନାହିଁ। ଯେତେବେଳେ ସେ
ପୃଥିବୀର ସେହି ଲୋକମାନଙ୍କୁ ସତର୍କକଲେ, ସେତେବେଳେ
ସେମାନେ ତାହାଙ୍କ କଥା ଅଗ୍ରାହ୍ୟ କଲେ। କିନ୍ତୁ ସେମାନେ
ରକ୍ଷା ପାଇଲେ ନାହିଁ। ଏବେ ପରମେଶ୍ୱର ସ୍ୱର୍ଗରୁ କହୁଛନ୍ତି।
ଅତଏବ, ଏବେ ଯେଉଁମାନେ ତାହାଙ୍କ ବାକ୍ୟ ଶୁଣିବା ପାଇଁ
ମନା କରୁଛନ୍ତି, ତାହା ସେମାନଙ୍କ ଲାଗି ଅତି ଖରାପ
ହେବ। ୨୬ଆଗରୁ ଯେତେବେଳେ ସେ କହିଲେ, ତାହା
ପୃଥିବୀକୁ କମ୍ପାଇ ଥିଲା, କିନ୍ତୁ ଏବେ ସେ ପ୍ରତିଜ୍ଞା
କରିଛନ୍ତି, "ଆଉ ଥରେ ମୁଁ କମ୍ପାଇବି କେବଳ ପୃଥିବୀକୁ
ନୁହେଁ ବରଂ ମୁଁ ସ୍ୱର୍ଗକୁ ମଧ୍ୟ କମ୍ପାଇବି।"* ୨୭"ଆଉ
ଥରେ" କହିବା ଅର୍ଥ ଯେ ଯାହାକିଛି ନିର୍ମିତ ହୋଇଥିଲା,
ସେ ସବୁ ନଷ୍ଟ ହୋଇ ଯିବ। ସେହିଗୁଡ଼ିକୁ ଟଳମଳ
କରାଯାଇ ପାରିବ ଓ ଯେଉଁ ବିଷୟଗୁଡ଼ିକୁ ଟଳମଳ
କରାଯାଇ ପାରିବ ନାହିଁ ସେଗୁଡ଼ିକ ରହିବେ।

୨୮ଅତଏବ, ଆମ୍ଭେ ଧନ୍ୟବାଦ ଦେବା କଥା ଯେ,
ଯେଉଁ ସାମ୍ରାଜ୍ୟ ଆମ୍ଭକୁ ଦିଆ ଯାଇଛି, ତାହା ଟଳମଳ
ହୋଇ ପାରିବ ନାହିଁ। ଆମ୍ଭେ ତାହାଙ୍କୁ ଧନ୍ୟବାଦ ଅର୍ପଣ
କରିବା ଉଚିତ, ଓ ଏପରି ପଦ୍ଧତିରେ ଉପାସନା କରିବା
କଥା ଯେ ସେ ଯେପରି ପ୍ରସନ୍ନ ରହିବେ। ପରମେଶ୍ୱରଙ୍କୁ
ଆମ୍ଭେ ଉପାସନା କରିବା, ଓ ଭୟ ସହିତ ତାହାଙ୍କୁ ସମ୍ମାନ
କରିବା। ୨୯କାରଣ ଆମ୍ଭ ପରମେଶ୍ୱର ଗ୍ରାସକାରୀ ଅଗ୍ନିଭଳି
ଅଟନ୍ତି।

**୧୩** ଖ୍ରୀଷ୍ଟଙ୍କଠାରେ ଥିବା ତୁମ୍ଭର ଭାଇ ଓ ଭଉଣୀ
ମାନଙ୍କ ପାଇଁ, ପ୍ରେମଭାବ ରଖିଥାଅ। ୨ନିଜ
ଘରେ ସ୍ୱାଗତ ଜଣାଇ ସର୍ବଦା ଲୋକଙ୍କୁ ସାହାଯ୍ୟ କରିବା

---

**"ଯଦି କିଏ ... ଦେବାକୁ ହେବ।"** ଯାତ୍ରାପୁସ୍ତକ, ୧୯:୧୨-୧୩

**"ମୁଁ ଭୟରେ ଥରୁଛି"** ଦ୍ୱିତୀୟ ବିବରଣ ୯:୧୯

**ସୀୟୋନ ପର୍ବତ** ଯିରୁଶାଲମ ଲାଗି ଅନ୍ୟ ନାମ।

**ପ୍ରଥମ ଜାତ** ଯିହୂଦୀ ପରିବାରର ପ୍ରଥମଜାତ ସନ୍ତାନ ଅତି ମହତ୍ତ୍ୱପୂର୍ଣ୍ଣ। ପରମେଶ୍ୱରଙ୍କ ସମସ୍ତ ସନ୍ତାନ ଏହି ଭଳି।

**ରକ୍ତ ସେଚନ** ଯୀଶୁଙ୍କ ରକ୍ତ (ମୃତ୍ୟୁ)

**"ଆଉଥରେ ... କମ୍ପାଇବି।"** ହାଗୟ, ୨:୬

କଥା ମନେ ରଖ। କେତେଲୋକ ଏହିପରି କରି ଅଜାଣତରେ
ସ୍ୱର୍ଗଦୂତମାନଙ୍କୁ ସାହାଯ୍ୟ କରିଛନ୍ତି। ୩ବନ୍ଦୀଘରେ ଥିବା
ସେହି ଲୋକମାନଙ୍କୁ ଭୁଲି ଯାଅ ନାହିଁ। ତୁମ୍ଭେମାନେ
ନିଜେ ମଧ୍ୟ ବନ୍ଦୀଘରେ ଥିବା ଭଳି ସେମାନଙ୍କୁ ମନେ
ରଖ। ଯେଉଁମାନେ ଯାତନା ପାଉଛନ୍ତି, ସେମାନଙ୍କୁ ମଧ୍ୟ
ଭୁଲ ନାହିଁ। ମନେ ରଖ ଯେ, ତୁମ୍ଭେମାନେ ମଧ୍ୟ
ସେମାନଙ୍କ ସ୍ଥାନରେ (ଭବିଷ୍ୟତରେ) ରହି ପାର।
୪ବିବାହକୁ ସବୁଲୋକଙ୍କ ଦ୍ୱାରା ସମ୍ମାନ ମିଳିବା ଆବଶ୍ୟକ।
ପ୍ରତ୍ୟେକ ବିବାହକୁ କେବଳ ଦୁଇ ଜଣଙ୍କ ଭିତରେ ନିର୍ଦ୍ଦିଷ୍ଟ
ରଖି ପବିତ୍ର ରଖିବା ଉଚିତ। ଯେଉଁମାନେ ଯୌନଗତ ପାପ
ଓ ବ୍ୟଭିଚାର କରୁଛନ୍ତି ପରମେଶ୍ୱର ସେମାନଙ୍କୁ ଦୋଷୀ
ବୋଲି ବିଚାର କରିବେ ୫ନିଜ ଜୀବନକୁ ଧନର ଲୋଭରୁ
ମୁକ୍ତ ରଖ। ତୁମ୍ଭମାନଙ୍କ ପାଖରେ ଯାହା ଅଛି, ସେଥିରେ
ସନ୍ତୋଷ ଲାଭ କର। ପରମେଶ୍ୱର କହିଛନ୍ତି:

"ମୁଁ ତୁମ୍ଭକୁ କେବେହେଲେ ଛାଡିବି ନାହିଁ; ମୁଁ
ତୁମ୍ଭଠାରୁ କେବେହେଲେ ଦୂରେଇ ଯିବି ନାହିଁ।"

ଦ୍ୱିତୀୟ ବିବରଣ ୩୧:୬

୬ଅତଏବ ଆମ୍ଭେ ନିଃସନ୍ଦେହ ଭାବରେ କହିପାରିବା:

"ପରମେଶ୍ୱର ହେଉଛନ୍ତି ମୋର ସାହାଯ୍ୟକାରୀ, ମୁଁ
ଭୟ କରିବି ନାହିଁ, ମନୁଷ୍ୟ ମୋର କିଛି କରିପାରିବ
ନାହିଁ।"

ଗୀତସଂହିତା ୧୧୮:୬

୭ତୁମ୍ଭେମାନେ ତୁମ୍ଭମାନଙ୍କର ନେତାମାନଙ୍କୁ ମନେ ପକାଅ।
ସେମାନେ ପରମେଶ୍ୱରଙ୍କ ବାକ୍ୟ ତୁମ୍ଭମାନଙ୍କୁ ଶିଖାଇଛନ୍ତି।
ସେମାନେ କିପରି ଜୀବନଯାପନ କରି ଥିଲେ, ଓ ମୃତ୍ୟୁଭୋଗ
କଲେ ତାହା ମନେ ପକାଅ, ଏବଂ ସେମାନଙ୍କର ବିଶ୍ୱାସର
ଉଦାହରଣକୁ ଅନୁସରଣ କର। ୮ଯୀଶୁଖ୍ରୀଷ୍ଟ ଗତକାଲି,
ଆଜି ଓ ସବୁ ସମୟପାଇଁ ସମାନ ଅଟନ୍ତି।
୯ନାନା ପ୍ରକାରର ଅଜଣା ଶିକ୍ଷା ଦ୍ୱାରା ଭୁଲ ବାଟରେ
ପରିଚାଳିତ ହୁଅ ନାହିଁ। ତୁମ୍ଭମାନଙ୍କର ହୃଦୟ ଖାଦ୍ୟର
ନିୟମ ଗୁଡିକ ଦ୍ୱାରା ନୁହେଁ, ବରଂ ପରମେଶ୍ୱରଙ୍କ ଅନୁଗ୍ରହ
ଦ୍ୱାରା ଶକ୍ତିଶାଳୀ ହେବା ଉଚିତ। ଏହି ଭଳି ନିୟମ ଗୁଡିକ
ମାନିବା ଦ୍ୱାରା କିଛି ସାହାଯ୍ୟ ମିଳେ ନାହିଁ।
୧୦ଆମ୍ଭର ବଳିଟିଏ ଅଛି। ପବିତ୍ର ତମ୍ବୁ* ରେ ସେବା
କରୁଥିବା ଯାଜକମାନେ ଆମ୍ଭ ବଳିରୁ ଖାଇ ପାରିବେ ନାହିଁ।
୧୧ମହାଯାଜକ ପଶୁମାନଙ୍କର ରକ୍ତକୁ ଅତି ପବିତ୍ର ସ୍ଥାନକୁ
ନେଇ ଯାଆନ୍ତି, ଓ ପାପ ପାଇଁ ସେ ରକ୍ତକୁ ସମର୍ପଣ
କରନ୍ତି। କିନ୍ତୁ ଶିବିର ବାହାରେ ପଶୁମାନଙ୍କର ଶରୀରଗୁଡିକୁ
ପୋଡି ଦିଆଯାଏ। ୧୨ସେହି ଭଳି ଯୀଶୁ ମଧ୍ୟ ସହର
ବାହାରେ ଯାତନା ପାଇଲେ। ନିଜ ରକ୍ତ ଦ୍ୱାରା ନିଜଲୋକମାନଙ୍କୁ
ପବିତ୍ର କରିବା ପାଇଁ ଯୀଶୁ ମଲେ। ୧୩ଅତଏବ, ଆମ୍ଭେ
ଶିବିରର ବାହାରକୁ ଯୀଶୁଙ୍କ ପାଖକୁ ଯିବା ଉଚିତ। ଆମ୍ଭେ
ମଧ୍ୟ, ଯୀଶୁ ପାଇଥିବା ସମାନ ଲଜ୍ଜା ଗ୍ରହଣ କରିବା
ଉଚିତ। ୧୪ଏହି ପୃଥିବୀରେ ଆମ୍ଭର କୌଣସି ଚିରସ୍ଥାୟୀ
ନଗର ନାହିଁ। କିନ୍ତୁ ଆମ୍ଭେ ଗୋଟିଏ ନଗରପାଇଁ ପ୍ରତୀକ୍ଷା
କରୁଛୁ, ଯାହା ଭବିଷ୍ୟତରେ ଆସିବ। ୧୫ଅତଏବ ଯୀଶୁଙ୍କ
ମାଧ୍ୟମରେ ପରମେଶ୍ୱରଙ୍କୁ ଆମ୍ଭର ବଳି ଉତ୍ସର୍ଗ କରିବା
ବିଷୟ ଆମ୍ଭେ କେବେ ହେଲେ ବନ୍ଦ କରିବା ଉଚିତ
ନୁହେଁ। ମୁଖ ଦ୍ୱାରା ପ୍ରଶଂସାପୂର୍ବକ ତାହାଙ୍କର ନାମ
ଉଚ୍ଚାରଣ ସେହି 'ବଳି' ଅଟେ। ୧୬ଅନ୍ୟମାନଙ୍କର ପାଇଁ
ଭଲ କାମ କରିବା କେବେହେଲେ ଭୁଲି ଯାଅ ନାହିଁ।
ତୁମ୍ଭମାନଙ୍କ ପାଖରେ ଯାହା ଅଛି ଅନ୍ୟଲୋକମାନଙ୍କ ସହିତ
ଅଂଶୀ କର। ଏହି ପରି ବଳି ଗୁଡିକ ଦ୍ୱାରା ପରମେଶ୍ୱର
ପ୍ରସନ୍ନ ହୁଅନ୍ତି।
୧୭ତୁମ୍ଭମାନଙ୍କର ନେତାମାନଙ୍କର ଆଜ୍ଞାପାଳନ କର।
ସେମାନଙ୍କର ଅଧୀନରେ ରୁହ। ସେମାନେ ତୁମ୍ଭମାନଙ୍କ
ପାଇଁ ଉତ୍ତରଦାୟୀ। ଅତଏବ, ସେମାନେ ସବୁବେଳେ
ତୁମ୍ଭମାନଙ୍କର ଆତ୍ମାର ରକ୍ଷା ପାଇଁ ଜଗି ଥାଆନ୍ତି। ସେମାନଙ୍କର
ଆଜ୍ଞାପାଳନ କର ଯେପରି ଏହି କାମଟି ସେମାନେ ଖୁସି
ମନରେ (ଆନନ୍ଦରେ) କରିବେ, ଦୁଃଖରେ ନୁହେଁ। ସେମାନଙ୍କର
କାମ କଠିନ ହେଲେ, ତା'ଦ୍ୱାରା ତୁମ୍ଭମାନଙ୍କର କୌଣସି
ଲାଭ ହେବ ନାହିଁ।

୧୮ଆମ୍ଭ ପାଇଁ ପ୍ରାର୍ଥନା କରୁ ଥାଅ। ଆମ୍ଭେ ସବୁବେଳେ
ସର୍ବୋତ୍କୃଷ୍ଟ କାମ କରିବାକୁ ଚେଷ୍ଟା କରୁଥିବାରୁ, ଆମ୍ଭେ
କରୁଥିବା କାମ ଗୁଡିକ ଠିକ୍ (ଧାର୍ମିକ) ବୋଲି ଅନୁଭବ
କରୁ। ୧୯ମୁଁ ତୁମ୍ଭମାନଙ୍କୁ ଅନୁରୋଧ କରୁଛି, ତୁମ୍ଭେମାନେ
ପ୍ରାର୍ଥନା କର ଯେ, ଯେପରି ପରମେଶ୍ୱର ମୋତେ ଶୀଘ୍ର
ତୁମ୍ଭମାନଙ୍କ ପାଖକୁ ପଠାନ୍ତୁ। ଅନ୍ୟ କୌଣସି କଥା
ଅପେକ୍ଷା ଏହା ମୁଁ ବିଶେଷ ଭାବରେ ଚାହେଁ।
୨୦-୨୧ମୁଁ ଶାନ୍ତିର ପରମେଶ୍ୱରଙ୍କ ଠାରେ ପ୍ରାର୍ଥନା କରୁଛି
ଯେ, ତାହାଙ୍କର ଇଚ୍ଛାନୁସାରେ ତୁମ୍ଭେମାନେ କାମ କରିବା
ପାଇଁ ସେ ତୁମ୍ଭମାନଙ୍କୁ ପ୍ରତ୍ୟେକ ଉତ୍ତମ ବସ୍ତୁ ପ୍ରଦାନ
କରନ୍ତୁ। ପରମେଶ୍ୱର ହିଁ ଆମ୍ଭର ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କୁ
ମୃତ୍ୟୁରୁ ପୁନଃ ଜୀବିତ କରିଥିଲେ। ମହାନ୍ ମେଷପାଳକ
ଯୀଶୁଙ୍କୁ ପରମେଶ୍ୱର ତାହାଙ୍କ ରକ୍ତ ହେତୁ ପୁନର୍ଜୀବିତ
କଲେ। ତାହାଙ୍କର ରକ୍ତ ହିଁ ନୂତନଚୁକ୍ତି ଆରମ୍ଭ କଲା।
ଏହି ନୂତନଚୁକ୍ତି ଚିରନ୍ତନ ଅଟେ। ମୁଁ ପ୍ରାର୍ଥନା କରୁଛି, ଯେ
ତାହାଙ୍କୁ ପ୍ରସନ୍ନ କଲାଭଳି କାର୍ଯ୍ୟଗୁଡ଼ିକ ପରମେଶ୍ୱର ଆମ୍ଭ
ଦ୍ୱାରା କରାଉ ଥାଆନ୍ତୁ। ଯୀଶୁଖ୍ରୀଷ୍ଟଙ୍କ ମାଧ୍ୟମରେ ସେ
ଏପରି କରନ୍ତୁ ବୋଲି ମୁଁ କହୁଛି। ସଦାସର୍ବଦା ଯୀଶୁଙ୍କ
ମହିମା ହେଉ। ଆମେନ୍!
୨୨ମୋ ଭାଇ(ଓ ଭଉଣୀ)ମାନେ! ମୋ କହିଥିବା କଥା
ଗୁଡିକୁ ଧୈର୍ଯ୍ୟପୂର୍ବକ ଶୁଣ ବୋଲି ମୁଁ ଅନୁରୋଧ କରେ।
ଏହି କଥାଗୁଡିକ ମୁଁ ତୁମ୍ଭମାନଙ୍କୁ ଶକ୍ତିଶାଳୀ କରିବା ପାଇଁ
କହିଛି। ଏହି ଚିଠିଟି ବହୁତ ଲମ୍ବା ନୁହେଁ। ୨୩ଆମ୍ଭ ଭାଇ

---

**ପବିତ୍ର ତମ୍ବୁ** ପରମେଶ୍ୱରଙ୍କ ନିଜ ଲୋକ(ସନ୍ଥ) ମାନଙ୍କ ସହିତ ରହିବା ସ୍ଥଳ ଓ ଯିହୂଦୀଯାଜକମାନଙ୍କର ଉପାସନା ସ୍ଥଳ: ଗୋଟିଏ ବିଶେଷ ତମ୍ବୁ।

ତୀମଥି ବନ୍ଦୀଗୃହରୁ ମୁକ୍ତ ହୋଇ ଅଛନ୍ତି, ଏହା ତୁମ୍ଭେମାନେ
ଜାଣ ବୋଲି ମୋର ଇଚ୍ଛା। ଯଦି ସେ ମୋ ପାଖକୁ ଶୀଘ୍ର
ଆସନ୍ତି, ତା’ହେଲେ ଆମ୍ଭେ ଦୁହେଁ ତୁମ୍ଭମାନଙ୍କ ଦେଖା
କରିବାକୁ ଆସିବୁ।
୨୪ସେଠାରେ ତୁମ୍ଭମାନଙ୍କର ସବୁ ପ୍ରାଚୀନ (ନେତା)
ମାନଙ୍କୁ ଓ ପରମେଶ୍ୱରଙ୍କ ଲୋକମାନଙ୍କୁ ଆମ୍ଭର ନମସ୍କାର
ଜଣାଇବ। ଇଟାଲିଆ ଦେଶର ସମସ୍ତ ପରମେଶ୍ୱରଙ୍କ
ଲୋକମାନଙ୍କର ତୁମ୍ଭମାନଙ୍କୁ ନମସ୍କାର।
୨୫ପରମେଶ୍ୱରଙ୍କ ଅନୁଗ୍ରହ ତୁମ୍ଭ ସମସ୍ତଙ୍କ ସହିତ ରହି
ଥାଉ।

# ଯାକୁବଙ୍କ ପତ୍ର

୧ ମୁଁ ପରମେଶ୍ୱର ଓ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର ଜଣେ
ସେବକ ଯାକୁବ, ସାରା ପୃଥିବୀରେ ବ୍ୟାପି ହୋଇ
ରହିଥିବା ପ୍ରଭୁଙ୍କ ଲୋକମାନଙ୍କୁ ନମସ୍କାର ଜଣାଏ।

### ବିଶ୍ୱାସ ଓ ଜ୍ଞାନ

୨ମୋ ଭାଇ ଓ ଭଉଣୀମାନେ, ତୁମ୍ଭେମାନେ ଅନେକ
ପ୍ରକାରର ଅସୁବିଧାର ସମ୍ମୁଖୀନ ହେବ। କିନ୍ତୁ ଏପରି
ହେଲାବେଳେ ତୁମ୍ଭେମାନେ ଅଧିକ ଖୁସି ହେବା ଉଚିତ।
୩କାରଣ ତୁମ୍ଭେ ଜାଣିଛ ଯେ, ଏହି ଅସୁବିଧାଗୁଡ଼ିକ ତୁମ୍ଭର
ବିଶ୍ୱାସକୁ ପରୀକ୍ଷା କରେ, ଓ ଏଗୁଡ଼ିକ ତୁମ୍ଭର ଧୈର୍ଯ୍ୟ
ଜନ୍ମାଏ। ୪ତୁମ୍ଭ କାମଗୁଡ଼ିକରେ ତୁମ୍ଭର ଧୈର୍ଯ୍ୟକୁ ସମ୍ପୂର୍ଣ୍ଣ
ରୂପେ ପ୍ରକାଶିତ ହେବାକୁ ଦିଅ। ତେବେ ଯାଇ ତୁମ୍ଭେ
ସିଦ୍ଧ ଓ ସମ୍ପୂର୍ଣ୍ଣ ହେବ। ତୁମ୍ଭର ପ୍ରତ୍ୟେକ ଆବଶ୍ୟକ
ବିଷୟ ତୁମ୍ଭେ ପାଇବ। ୫କିନ୍ତୁ ତୁମ୍ଭ ଭିତରୁ ଯଦି କେହି
ଜ୍ଞାନର ଆବଶ୍ୟକ କରେ, ତାହେଲେ ତୁମ୍ଭେ ଏହା
ପରମେଶ୍ୱରଙ୍କୁ ମାଗିବା ଉଚିତ। ପରମେଶ୍ୱର ଅତ୍ୟନ୍ତ
ଦୟାଳୁ ଅଟନ୍ତି। ସେ ସମସ୍ତଙ୍କୁ ଜ୍ଞାନ ଦେବାରେ ଆନନ୍ଦ
ଅନୁଭବ କରନ୍ତି। ଅତଏବ ପରମେଶ୍ୱର ତୁମ୍ଭକୁ ଜ୍ଞାନ
ଦେବେ। ୬କିନ୍ତୁ ତୁମ୍ଭେ ଯେତେବେଳେ ପରମେଶ୍ୱରଙ୍କୁ
ମାଗିଥାଅ, ସେତେବେଳେ ତୁମ୍ଭକୁ ବିଶ୍ୱାସ କରିବାକୁ ପଡ଼ିବ।
ପରମେଶ୍ୱରଙ୍କୁ ସନ୍ଦେହ କର ନାହିଁ। ସନ୍ଦେହୀ ଲୋକ
ସମୁଦ୍ରର ଢେଉ ଭଳି। ପବନ ଢେଉକୁ ଉପରକୁ ଉଠାଏ
ଓ ତଳକୁ ପକାଏ, ସନ୍ଦେହୀ ଲୋକ ସେହି ଢେଉ ଭଳି।
୭-୮ସନ୍ଦେହୀ ଲୋକ ଏକାଥରକେ ଦୁଇଟି କଥା ଭାବେ।
ତେଣୁ ସେ କରୁଥିବା କୌଣସି ବିଷୟରେ ନିଷ୍ପତ୍ତି ନେଇପାରେ
ନାହିଁ। ସେଭଳି ଲୋକ ପ୍ରଭୁଙ୍କ ଠାରୁ କିଛି ପାଇବ ବୋଲି
ଆଶା କରିବା ଉଚିତ ନୁହେଁ।

### ପ୍ରକୃତ ଧନ

୯ଯଦି ଜଣେ ବିଶ୍ୱାସୀ ଗରିବ ହୋଇଥାଏ, ତେବେ
ପରମେଶ୍ୱର ତାହାକୁ ଆତ୍ମିକ ଭାବେ ଧନୀ କରିଥିବାରୁ,
ସେ ଗର୍ବ କରିବା ଉଚିତ। ୧୦ସେହିପରି ଜଣେ ଧନୀ
ବିଶ୍ୱାସୀ ଯେ ଆତ୍ମିକ ଭାବରେ ଗରିବ, ତାହା ପରମେଶ୍ୱର
ତାହାକୁ ଦେଖାଇ ଦେଇଥିବାରୁ, ସେ ଗର୍ବ କରିବା ଉଚିତ୍।
ଧନୀଲୋକ ଜଣକ ଘାସର ଫୁଲ ଭଳି ଝଡ଼ିପଡ଼ି ମରିଯିବ।
୧୧ସୂର୍ଯ୍ୟ ଉଦୟ ହୋଇ ଅଧିକ ଉତ୍ତପ୍ତ କରେ। ସୂର୍ଯ୍ୟର
ଉତ୍ତାପ ଗୃରା ଗଛଟିକୁ ଶୁଖେଇ ଦିଏ। ଫୁଲ ଝଡ଼ି ଯାଏ।
ସେହି ଫୁଲ ଅତି ସୁନ୍ଦର ଥିଲା, କିନ୍ତୁ ଏବେ ତାହା ମୃତ
ହେଲା। ଧନୀଲୋକର କଥା ମଧ୍ୟ ଠିକ୍ ସେହିଭଳି। ସେ
ତାହାର ବ୍ୟବସାୟ ଲାଗି ଯୋଜନା କରୁଥିବା ବେଳେ
ମରିଯିବ।

### ପରମେଶ୍ୱରଙ୍କଠାରୁ ପରୀକ୍ଷା ଆସେ ନାହିଁ

୧୨ଯେଉଁ ବ୍ୟକ୍ତି ପରୀକ୍ଷିତ ହୋଇ ଦୃଢ଼ ରହି ପାରେ,
ସେ ଖୁସି ହେବା କଥା। କାରଣ, ସେ ତାହାର ବିଶ୍ୱାସକୁ
ଦୃଢ଼ ବୋଲି ପ୍ରମାଣିତ କରି ସାରିଲା ପରେ, ପରମେଶ୍ୱର
ତାହାକୁ ଅନନ୍ତଜୀବନର ପୁରସ୍କାର ଦେବେ। ପରମେଶ୍ୱରଙ୍କୁ
ପ୍ରେମ କରୁଥିବା ସବୁ ଲୋକଙ୍କୁ ପରମେଶ୍ୱର ଏହି ପ୍ରତିଜ୍ଞା
ଦେଇଛନ୍ତି। ୧୩ଯେତେବେଳେ ଜଣେ ବ୍ୟକ୍ତି ପରୀକ୍ଷିତ ହୁଏ,
ସେ କହିବା ଉଚିତ ନୁହେଁ ଯେ, "ପରମେଶ୍ୱର ମୋତେ
ପରୀକ୍ଷା କରୁଛନ୍ତି।" କାରଣ ମନ୍ଦତା ପରମେଶ୍ୱରଙ୍କୁ ପରୀକ୍ଷା
କରିପାରେ ନାହିଁ। ଏବଂ ପରମେଶ୍ୱର ନିଜେ କାହାକୁ
ପରୀକ୍ଷା କରନ୍ତି ନାହିଁ। ୧୪ପ୍ରତ୍ୟେକ ବ୍ୟକ୍ତି ତା'ର ନିଜର
ମନ୍ଦ ପ୍ରବୃତ୍ତି ଯୋଗୁ ପରୀକ୍ଷିତ ହୁଏ। ତାହାର ମନ୍ଦ ଇଚ୍ଛା
ତାହାକୁ ଭସାଇ ନିଏ ଓ ବାନ୍ଧି ରଖେ। ୧୫ଏହି ଇଚ୍ଛା ହିଁ
ପାପକୁ ଜାତ କରେ। ଏହି ପାପ ବଢ଼ି ମୃତ୍ୟୁକୁ ଜନ୍ମ
ଦିଏ।

୧୬ମୋ ଭାଇ ଓ ଭଉଣୀମାନେ! ଏହି ବିଷୟରେ
କୌଣସି ପ୍ରକାର ମୂର୍ଖାମୀରେ ପଡ଼ ନାହିଁ। ୧୭ପ୍ରତ୍ୟେକ
ଉତ୍ତମ ବିଷୟ ଓ ସିଦ୍ଧ ଦାନ ପରମେଶ୍ୱରଙ୍କଠାରୁ ଆସିଥାଏ।
ଯେଉଁ ପରମପିତା ଆକାଶସ୍ଥ ସମସ୍ତ ଜ୍ୟୋତିର୍ଗଣ (ସୂର୍ଯ୍ୟ,
ଚନ୍ଦ୍ର, ତାରା)ଙ୍କୁ ନିର୍ମାଣ କରିଛନ୍ତି, ତାହାଙ୍କଠାରୁ ଏହି ସମସ୍ତ
ଉତ୍ତମ ଦାନ ଆସେ। ପରମେଶ୍ୱର ପରିବର୍ତ୍ତିତ ହୁଅନ୍ତି
ନାହିଁ, ସେ ସର୍ବଦା ସମାନ ଅଟନ୍ତି। ୧୮ସତ୍ୟ ବାକ୍ୟ ଦ୍ୱାରା
ସେ ଆମ୍ଭକୁ ଜୀବନ ଦାନ ଦେବା ନିମନ୍ତେ ସ୍ଥିର କଲେ।
ତାହାଙ୍କ ସୃଷ୍ଟି ସମସ୍ତ ବସ୍ତୁ ମଧ୍ୟରୁ ଆମ୍ଭମାନଙ୍କୁ ସର୍ବାଧିକ
ମହତ୍ତ୍ୱପୂର୍ଣ୍ଣ କରିବା ତାହାଙ୍କର ଇଚ୍ଛା ଥିଲା।

### ଶୁଣିବା ଓ ପାଳନ କରିବା

୧୯ମୋ ପ୍ରିୟ ଭାଇ ଓ ଭଉଣୀମାନେ, କହିବା ଅପେକ୍ଷା
ଶୁଣିବାରେ ବେଶି ଇଚ୍ଛୁକ ହୁଅ। ସହଜରେ ରାଗି ଯାଅ
ନାହିଁ। ୨୦କାରଣ ଜଣେ ମଣିଷର କ୍ରୋଧ ତାହାକୁ ପରମେଶ୍ୱରଙ୍କ
ଇଚ୍ଛାନୁମୋଦିତ ଧାର୍ମିକ ଜୀବନ କାଟିବାକୁ ସାହାଯ୍ୟ କରେ
ନାହିଁ। ୨୧ତେଣୁ ତୁମ୍ଭମାନଙ୍କ ଜୀବନରୁ ପ୍ରତ୍ୟେକ ମନ୍ଦ
ବିଷୟ ଓ ମନ୍ଦ କର୍ମକୁ କାଢ଼ି ପକାଅ। ତୁମ୍ଭର ହୃଦୟରେ
ବୁଣା ଯାଇଥିବା ପରମେଶ୍ୱରଙ୍କ ଶିକ୍ଷାଗୁଡ଼ିକୁ ନମ୍ରତାର ସହିତ
ଗ୍ରହଣ କର। ଏହି ଶିକ୍ଷା ତୁମ୍ଭର ଆତ୍ମାକୁ ରକ୍ଷା କରି
ପାରିବ।

୨୨ପରମେଶ୍ୱରଙ୍କ ଶିକ୍ଷାଗୁଡ଼ିକ ପାଳନ କର, କେବଳ
ଯେ ଶୁଣିବ ତାହା ନୁହେଁ, କିନ୍ତୁ କାର୍ଯ୍ୟରେ ଦେଖାଇବା
ଦରକାର। କେବଳ ବସି ରହି ଶୁଣିବା ଦ୍ୱାରା ତୁମ୍ଭେ
ପ୍ରକୃତରେ ନିଜକୁ ଠକୁଛ। ୨୩ଯଦି ଜଣେ ପରମେଶ୍ୱରଙ୍କ
ଶିକ୍ଷାକୁ କେବଳ ଶୁଣେ ଓ କିଛି କରେ ନାହିଁ, ସେ
ଲୋକ ଦର୍ପଣରେ ନିଜ ମୁହଁ ଦେଖିଲା ଭଳି ଅଟେ।
୨୪ସେ ଦର୍ପଣରେ ନିଜକୁ ଦେଖେ ଓ ଦୂରେଇ ଚାଲିଯାଏ
ଓ ଶୀଘ୍ର ଭୁଲିଯାଏ ଯେ, ସେ କିପରି ଦିଶୁଥିଲା। ୨୫କିନ୍ତୁ
ପ୍ରକୃତ ସୁଖୀ ଲୋକ ଯତ୍ନ ସହକାରେ ପରମେଶ୍ୱରଙ୍କ ସିଦ୍ଧ
ବ୍ୟବସ୍ଥାକୁ ଅଧ୍ୟୟନ କରେ ଯାହା ମନୁଷ୍ୟମାନଙ୍କୁ ସ୍ୱାଧୀନ
କରିଥାଏ। ସେ ସର୍ବଦା ତାହା ଅଧ୍ୟୟନ କରୁଥାଏ। ସେ
ପରମେଶ୍ୱରଙ୍କ ଶିକ୍ଷାକୁ ଶୁଣେ ଓ ସେହି ଶୁଣିଥିବା ବିଷୟ
ଭୁଲିଯାଏ ନାହିଁ। ତା'ପରେ ସେ ପରମେଶ୍ୱରଙ୍କ ସେହି
ଶିକ୍ଷାକୁ ପାଳନ କରେ। ଏପରି କରିବା ଦ୍ୱାରା ସେ ସୁଖୀ
ହୁଏ।

### ପରମେଶ୍ୱରଙ୍କୁ ଉପାସନା କରିବାର ପ୍ରକୃତ ମାର୍ଗ

୨୬ଜଣେ ଲୋକ ଭାବିପାରେ ଯେ, ସେ ନିଜେ ଜଣେ
ଧାର୍ମିକ ଲୋକ ଅଟେ। କିନ୍ତୁ ଯେଉଁ ସବୁ କଥା କହିବା
ଉଚିତ ନୁହେଁ, ତାହା କହିବା ଦ୍ୱାରା ସେ ନିଜକୁ ଠକେ।
ତେଣୁ ତା'ର "ଧର୍ମ"ର କିଛି ମୂଲ୍ୟ ରହେ ନାହିଁ।
୨୭ପରମେଶ୍ୱର ଯେଉଁ ଧର୍ମକୁ ଭଲ ପାଆନ୍ତି, ତାହା ହେଲା:
ଅନାଥ, ବିଧବା ଓ ଅସହାୟ ଲୋକମାନଙ୍କର ଯତ୍ନ ନେବା
ଓ ନିଜକୁ ଏହି ସଂସାରର ମନ୍ଦ ପ୍ରଭାବରୁ ମୁକ୍ତ ରଖିବା।
ଏହି ପ୍ରକାର ଧର୍ମକୁ ପରମେଶ୍ୱର ସମ୍ପୂର୍ଣ୍ଣ ଶୁଦ୍ଧ ଓ ଉତ୍ତମ
ବୋଲି ଗ୍ରହଣ କରନ୍ତି।

### ସମସ୍ତଙ୍କୁ ପ୍ରେମ କର

୨ ମୋ ପ୍ରିୟ ଭାଇ ଓ ଭଉଣୀମାନେ, ଆମ୍ଭର ମହିମାମୟ
ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ ତୁମ୍ଭେମାନେ ବିଶ୍ୱାସ କର।
ଅତଏବ କେତେକ ଲୋକଙ୍କୁ ଅନ୍ୟମାନଙ୍କ ତୁଳନାରେ
ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ଭାବ ନାହିଁ। ୨ମନେକର, ଜଣେ
ଲୋକ ଖୁବ୍ ଦାମିକା ସୁନ୍ଦର ଲୁଗାପଟା ଓ ସୁନା ମୁଦି
ପିନ୍ଧି ତୁମ୍ଭର ସଭାକୁ ଆସେ ଓ ଅନ୍ୟ ଗରିବ ଲୋକ
ଜଣେ ମଇଳା ପୁରୁଣା ଲୁଗା ପିନ୍ଧି ସେତିକି ବେଳେ
ଆସେ। ୩ତୁମ୍ଭେ ଦାମିକା ସୁନ୍ଦର ଲୁଗାପଟା ପିନ୍ଧିଥିବା
ଲୋକକୁ ଡାକି ବିଶେଷ ଅଭ୍ୟର୍ଥନା ଜଣାଇ କହିଥାଅ:
"ଏହି ଭଲ ଆସନରେ ବସନ୍ତୁ।" କିନ୍ତୁ ଗରିବ ଲୋକଟିକୁ
କହିଥାଅ: "ତୁମ୍ଭେ ସେଠାରେ ଠିଆ ହୁଅ" ବା "ମୋ
ଗୋଡ଼ ପାଖର ଭୁଇଁରେ ବସ।" ୪ତୁମ୍ଭେ ଏ କଣ କରୁଛ?
ଏହାଦ୍ୱାରା ତୁମ୍ଭେ କେତେକ ଲୋକଙ୍କୁ ଅନ୍ୟମାନଙ୍କ ତୁଳନାରେ
ଅଧିକ ମହତ୍ତ୍ୱ ପ୍ରଦାନ କରୁଛ! ମନ୍ଦ ଅଭିପ୍ରାୟ ରଖି ତୁମ୍ଭେ
ନିର୍ଣ୍ଣୟ କରୁଛ ଯେ, କେଉଁ ଲୋକଟି ଅଧିକ ଭଲ।
୫ମୋ ପ୍ରିୟ ଭାଇ ଓ ଭଉଣୀମାନେ, ଶୁଣ! ପରମେଶ୍ୱର
ବିଶ୍ୱାସରେ ଧନୀ ହେବା ପାଇଁ ପୃଥିବୀର ଗରିବ ଲୋକମାନଙ୍କୁ
ବାଛିଛନ୍ତି। ଯେଉଁମାନେ ପରମେଶ୍ୱରଙ୍କୁ ପ୍ରେମ କରନ୍ତି,
ସେମାନଙ୍କୁ ସେ ଯେଉଁ ରାଜ୍ୟ ଦେବା ପାଇଁ ପ୍ରତିଜ୍ଞା
କରିଥିଲେ, ସେଥିପାଇଁ ସେମାନଙ୍କୁ ବାଛିଛନ୍ତି। ୬କିନ୍ତୁ ତୁମ୍ଭେ
ଗରିବ ଲୋକଙ୍କୁ କୌଣସି ସମ୍ମାନ ଦେଉ ନାହଁ। ଏବଂ
ତୁମ୍ଭେ ଜାଣିଛ ଯେ, ଧନୀ ଲୋକମାନେ ତୁମ୍ଭର ଜୀବନକୁ
ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଛନ୍ତି ଓ ସେହିମାନେ
ତୁମ୍ଭକୁ କଚେରୀକୁ ଟାଣି ନେଇ ଯାଆନ୍ତି। ୭ଏବଂ ଯେଉଁ
ମହତ ନାମରେ ତୁମ୍ଭେମାନେ ନାମିତ ହୋଇଅଛ ଓ ଯେ
ତୁମ୍ଭମାନଙ୍କୁ ଆପଣାର କରିଅଛନ୍ତି, ସେମାନେ ତାହାଙ୍କର
ନିନ୍ଦା କରନ୍ତି।

୮ଗୋଟିଏ ନିୟମ, ଅନ୍ୟ ସମସ୍ତ ନିୟମଗୁଡ଼ିକର ଉପରେ
ଆଧିପତ୍ୟ କରେ। ଶାସ୍ତ୍ରରେ ଏହି ରାଜକୀୟ ନିୟମଟି
ମିଳେ: "ତୁମ୍ଭେ ଆପଣା ପ୍ରତିବାସୀକୁ ଆତ୍ମତୁଲ୍ୟ ପ୍ରେମ
କର।"* ଯଦି ତୁମ୍ଭେ ଏହି ନିୟମ ପାଳନ କରୁଛ,
ତା'ହେଲେ ତୁମ୍ଭେ ଠିକ୍ କରୁଛ। ୯କିନ୍ତୁ ଯଦି ତୁମ୍ଭେ
ଜଣକୁ ଅନ୍ୟ ଜଣକ ତୁଳନାରେ ଅଧିକ ମହତ୍ତ୍ୱ ଦେଉଛ,
ତା'ହେଲେ ତୁମ୍ଭେ ପାପ କରୁଛ। ସେହି ରାଜକୀୟ ବ୍ୟବସ୍ଥା
ପ୍ରମାଣିତ କରେ ଯେ, ତୁମ୍ଭେ ପରମେଶ୍ୱରଙ୍କ ନିୟମ ଭଙ୍ଗ
କରିବାରେ ଦୋଷୀ ଅଟ। ୧୦ଜଣେ ଲୋକ ହୁଏତ ପରମେଶ୍ୱରଙ୍କ
ସବୁ ବ୍ୟବସ୍ଥା ପାଳନ କରୁଥାଇପାରେ, କିନ୍ତୁ ସେ ଯଦି
ଗୋଟିଏ ଆଜ୍ଞାର ଅବାଧ ହୁଏ, ତାହେଲେ ସେ ବ୍ୟବସ୍ଥାର
ସମସ୍ତ ଆଜ୍ଞା ଭଙ୍ଗ କରିବା ଦୋଷରେ ଦୋଷୀ ହୁଏ।
୧୧ପରମେଶ୍ୱର କହିଛନ୍ତି, "ବ୍ୟଭିଚାରର ପାପ କର ନାହିଁ।"*
ସେହି ପରମେଶ୍ୱର ପୁନଃ କହିଛନ୍ତି, "ହତ୍ୟା କର
ନାହିଁ।"* ଅତଏବ, ତୁମ୍ଭେ ଯଦି ବ୍ୟଭିଚାର ପାପ କରି
ନାହିଁ କିନ୍ତୁ ଜଣକୁ ହତ୍ୟା କରିଛ, ତାହେଲେ ପରମେଶ୍ୱରଙ୍କ
ବ୍ୟବସ୍ଥା ଭାଙ୍ଗିବା ଦୋଷରେ ଦୋଷୀ ହେଲ। ୧୨ଲୋକମାନଙ୍କୁ
ସ୍ୱାଧୀନ କରୁଥିବା ବ୍ୟବସ୍ଥା ଦ୍ୱାରା ତୁମ୍ଭର ବିଚାର ହେବ।
ପ୍ରତ୍ୟେକ କଥା କହିଲାବେଳେ ଓ ପ୍ରତ୍ୟେକ କାମ କଲାବେଳେ,
ତୁମ୍ଭେ ଏହି କଥା ମନେ ରଖିବା ଉଚିତ। ୧୩ତୁମ୍ଭେ
ଅନ୍ୟମାନଙ୍କ ପ୍ରତି ନିଶ୍ଚୟ ଦୟା ଦେଖାଇବା ଉଚିତ। ଯଦି
ତୁମ୍ଭେ ଦୟା ନ ଦେଖାଇବ, ତାହେଲେ ପରମେଶ୍ୱର
ବିଚାର କଲାବେଳେ ତୁମ୍ଭ ପ୍ରତି ମଧ୍ୟ ସେ ଦୟା ଦେଖାଇବେ
ନାହିଁ। କିନ୍ତୁ ଅନ୍ୟମାନଙ୍କୁ ଦୟା ଦେଖାଇଥିବା ବ୍ୟକ୍ତି
ତାହାର ବିଚାର ହେଲାବେଳେ ନିର୍ଭୟରେ ଠିଆ ହେବ।

### ବିଶ୍ୱାସ ଓ ସତ୍କର୍ମ

୧୪ମୋ ଭାଇ ଓ ଭଉଣୀମାନେ! ଯଦି ଜଣେ କୁହେ
ଯେ, ସେ ଜଣେ ବିଶ୍ୱାସୀ, କିନ୍ତୁ କିଛି କର୍ମ କରେ ନାହିଁ,
ତାହେଲେ ତାହାର ବିଶ୍ୱାସ ମୂଲ୍ୟହୀନ। କ'ଣ ଏହି ଭଳି
ବିଶ୍ୱାସ ତାହାକୁ ରକ୍ଷା କରିପାରିବ? ନା! ୧୫ଖ୍ରୀଷ୍ଟଙ୍କଠାରେ
ବିଶ୍ୱାସ ରଖୁଥିବା ଜଣେ ଭାଇ ବା ଭଉଣୀ, ପିନ୍ଧିବାକୁ ଲୁଗା
ବା ଖାଇବାକୁ ଖାଦ୍ୟ ଆବଶ୍ୟକ କରିପାରେ। ୧୬ଏବଂ

---

**"ତୁମ୍ଭେ ... ପ୍ରେମ କର।"** ଲେବୀୟ ପୁସ୍ତକ ୧୯:୧୮

**"ବ୍ୟଭିଚାରର ... ନାହିଁ।"** ଯାତ୍ରା ପୁସ୍ତକ ୨୦:୧୪, ଦ୍ୱିତୀୟ ବିବରଣ ୫:୧୮

**"ହତ୍ୟା ... ନାହିଁ।"** ଯାତ୍ରା ପୁସ୍ତକ ୨୦:୧୩, ଦ୍ୱିତୀୟ ବିବରଣ୫:୧୭

ତୁମ୍ଭେ ତାହାକୁ କହୁଛ, "ପରମେଶ୍ୱର ତୁମ୍ଭ ସହିତ ଥାଆନ୍ତୁ!
ତୁମ୍ଭେ ଉଷ୍ମ ରୁହ ଓ ଖାଇବାକୁ ପ୍ରଚୁର ପାଅ।" ତୁମ୍ଭେ
ଏଗୁଡ଼ିକ ବିଷୟରେ ଖାଲି କହୁଛ, କିନ୍ତୁ ତାହାର ଆବଶ୍ୟକ
ଥିବା ଜିନିଷ ତାହାକୁ ଦେଉ ନାହଁ। ଯଦି ତୁମ୍ଭେ ତାହାକୁ
ସାହାଯ୍ୟ କରୁ ନାହଁ, ତାହାହେଲେ ତୁମ୍ଭର କଥାଗୁଡ଼ିକ
ସମ୍ପୂର୍ଣ୍ଣ ମୂଲ୍ୟହୀନ ଅଟେ। ୧୭ବିଶ୍ୱାସ ବିଷୟରେ ମଧ୍ୟ ଠିକ
ସେହି କଥା ଅଟେ। ଯଦି ବିଶ୍ୱାସ କିଛି କାର୍ଯ୍ୟ ଉତ୍ପନ୍ନ ନ
କରେ, ତେବେ ସେ ବିଶ୍ୱାସ ମୃତ ଅଟେ।

୧୮ଜଣେ ଲୋକ କହିପାରେ, "ତୁମ୍ଭ ପାଖରେ ବିଶ୍ୱାସ
ଅଛି, ପୁଣି ମୋ ପାଖରେ କର୍ମ ଅଛି। ତୁମ୍ଭେ କର୍ମବିନା
ତୁମ୍ଭର ବିଶ୍ୱାସ ମୋତେ ଦେଖାଅ, ଆଉ ମୁଁ ମୋ
କର୍ମଗୁଡ଼ିକ ଦ୍ୱାରା ମୋ ବିଶ୍ୱାସ ତୁମ୍ଭକୁ ଦେଖାଇବି।"
୧୯ତୁମ୍ଭେ ବିଶ୍ୱାସ କର ଯେ, କେବଳ ଜଣେ ପରମେଶ୍ୱର
ଅଛନ୍ତି; ଭଲ କଥା। କିନ୍ତୁ ଭୂତମାନେ ମଧ୍ୟ ଏହା ବିଶ୍ୱାସ
କରନ୍ତି ଓ ଭୟରେ ଥରହର ହୁଅନ୍ତି।

୨୦ହେ ମୂର୍ଖ ଲୋକ! କର୍ମଗୁଡ଼ିକ ବିନା ବିଶ୍ୱାସ ଯେ
ମୂଲ୍ୟହୀନ ଅଟେ, ଏହାର ପ୍ରମାଣ କ'ଣ ତୁମ୍ଭେ ଦେଖିବାକୁ
ଚାହୁଁଛ? ୨୧ଅବ୍ରାହାମ ଆମ୍ଭର ପିତା। ସେ ନିଜର କର୍ମଗୁଡ଼ିକ
ଦ୍ୱାରା ପରମେଶ୍ୱରଙ୍କ ନିକଟରେ ଧାର୍ମିକ ଭାବେ ଗଣାଗଲେ।
ସେ ବେଦୀ ଉପରେ ନିଜ ପୁତ୍ର ଯିସ୍ହାକଙ୍କୁ ବଳି ରୂପରେ
ପରମେଶ୍ୱରଙ୍କଠାରେ ଉତ୍ସର୍ଗ କଲେ। ୨୨ଅତଏବ ତୁମ୍ଭେ
ଦେଖ ଯେ, ଅବ୍ରାହାମଙ୍କର ବିଶ୍ୱାସ ଓ କର୍ମ ଏକା
ସାଙ୍ଗରେ କାମ କରୁଥିଲା। ତାହାଙ୍କ କାମ ଦ୍ୱାରା ହିଁ
ତାହାଙ୍କର ବିଶ୍ୱାସ ସିଦ୍ଧ ହେଲା। ୨୩ଏହାଦ୍ୱାରା ଶାସ୍ତ୍ରର
ସମ୍ପୂର୍ଣ୍ଣ ଅର୍ଥ ପ୍ରକାଶିତ ହୁଏ ଯେ: "ଅବ୍ରାହାମ ପରମେଶ୍ୱରଙ୍କୁ
ବିଶ୍ୱାସ କଲେ। ଓ ପରମେଶ୍ୱର ଅବ୍ରାହାମଙ୍କ ବିଶ୍ୱାସକୁ
ଗ୍ରହଣ କଲେ। ସେହି ବିଶ୍ୱାସ ଅବ୍ରାହାମଙ୍କୁ ପରମେଶ୍ୱରଙ୍କ
ନିକଟରେ ଧାର୍ମିକ କଲା।"* "ପରମେଶ୍ୱରଙ୍କ ମିତ୍ର"*
ବୋଲି ଅବ୍ରାହାମ ଡକା ଗଲେ। ୨୪ଅତଏବ ତୁମ୍ଭେ ଦେଖ
ଯେ, କର୍ମ ଦ୍ୱାରା ଜଣେ ଲୋକ ପରମେଶ୍ୱରଙ୍କ ନିକଟରେ
ଧାର୍ମିକ ହୋଇ ପାରୁଛି। ସେ କେବଳ ବିଶ୍ୱାସ ଦ୍ୱାରା
ଧାର୍ମିକ ହୋଇ ପାରିବ ନାହିଁ।

୨୫ଆଉ ଗୋଟିଏ ଉଦାହରଣ ହେଉଛି, ରାହାବ। ସେ
ଜଣେ ବେଶ୍ୟା ଥିଲା। କିନ୍ତୁ ସେ ନିଜ କର୍ମଗୁଡ଼ିକ
କାରଣରୁ ପରମେଶ୍ୱରଙ୍କ ନିକଟରେ ଧାର୍ମିକା ହେଲା। ସେ
ପରମେଶ୍ୱରଙ୍କ ଗୁପ୍ତଚରମାନଙ୍କୁ ସାହାଯ୍ୟ କଲା ଓ ସେମାନଙ୍କୁ
ନିଜ ଘରେ ସ୍ୱାଗତ କଲା ଓ ଅନ୍ୟ ବାଟଦେଇ ସେମାନଙ୍କୁ
ପଳାୟନ କରିବାରେ ସାହାଯ୍ୟ କଲା।

୨୬ଆତ୍ମା ନ ଥିଲେ ଜଣେ ମନୁଷ୍ୟର ଶରୀରଟି ମୃତ
ହୋଇଯାଏ। ସେହିପରି ବିଶ୍ୱାସ ବିଷୟରେ ମଧ୍ୟ ଏହି
କଥାଟି ସତ। କର୍ମ ନ ଥିଲେ ବିଶ୍ୱାସ ମୃତ ଅଟେ।

## କଥା କହିବାରେ ସଂଯତ ହେବା

୩ ମୋ ଭାଇ ଓ ଭଉଣୀମାନେ! ତୁମ୍ଭମାନଙ୍କ ଭିତରୁ
ଅନେକ ଶିକ୍ଷକ ହେବା ଉଚିତ ନୁହେଁ। କାରଣ
ତୁମ୍ଭେ ଜାଣ ଯେ, ଆମ୍ଭେ ଶିକ୍ଷକମାନେ, ଅନ୍ୟ ଲୋକମାନଙ୍କ
ଅପେକ୍ଷା ଅଧିକ କଠୋର ଭାବରେ ବିଚାରିତ ହେବୁ।
୨ଆମ୍ଭେ ସମସ୍ତେ ଅନେକ ଭୁଲ କରୁ। ଯଦି ଜଣେ ଲୋକ
କୌଣସି ଭୁଲ କଥା କହି ନାହିଁ, ତାହେଲେ ସେ ଜଣେ
ସିଦ୍ଧ ମଣିଷ ଅଟେ। ସେ ନିଜ ସମସ୍ତ ଶରୀରକୁ ମଧ୍ୟ
ସଂଯତ କରିପାରିବ। ୩ଘୋଡ଼ାମାନଙ୍କୁ ନିଜ ବଶରେ ରଖିବା
ପାଇଁ ସେମାନଙ୍କ ମୁହଁରେ ଆମ୍ଭେ ଲଗାମ ଲଗାଇଥାଉ।
ଆମ୍ଭେ ଏହିପରି ଭାବରେ ସେମାନଙ୍କର ସମ୍ପୂର୍ଣ୍ଣ ଶରୀରକୁ
ବଶୀଭୂତ କରିଥାଉ। ୪ସମୁଦ୍ରର ଜାହାଜ କ୍ଷେତ୍ରରେ ମଧ୍ୟ
ସେହିପରି ହୋଇଥାଏ। ଜାହାଜଟି ଆକାରରେ ବହୁତ ବଡ଼
ଓ ଏହା ପ୍ରବଳ ପବନ ଦ୍ୱାରା ଚାଳିତ ହୋଇଥାଏ। କିନ୍ତୁ
ଛୋଟ ମଙ୍ଗଟି ସେହି ବଡ଼ ଜାହାଜଟିକୁ ନିୟନ୍ତ୍ରିତ କରି
ଥାଏ। ଯେଉଁ ଲୋକ ଏହି ଯନ୍ତ୍ରଟିକୁ ଚାଳନା କରେ, ସେ
ସ୍ଥିର କରେ ଯେ, ଜାହାଜଟି କେଉଁଠାକୁ ଯିବ। ସେ
ଲୋକ ଯେଉଁଠାକୁ ଚାହେଁ, ଜାହାଜଟି ସେଠାକୁ ଯାଏ। ଆମ୍ଭ
ଜିହ୍ୱା ନିମନ୍ତେ ମଧ୍ୟ ଏହି ବିଷୟ ସମାନ ଅଟେ। ୫ଜିହ୍ୱାଟି
ଶରୀରର ଏକ ଅତି କ୍ଷୁଦ୍ର ଅଙ୍ଗ, କିନ୍ତୁ ଏହା ଅତ୍ୟଧିକ
ମାତ୍ରାରେ ଗର୍ବ କରିଥାଏ।

୬ଜିହ୍ୱା ହେଉଛି ଏକ ଛୋଟ ଅଗ୍ନିଶିଖା ଭଳି। ଯେଉଁ
ଛୋଟ ଅଗ୍ନି ଶିଖାଟି ଗୋଟିଏ ବଡ଼ ଜଙ୍ଗଲରେ ନିଆଁ
ଲଗେଇ ଦେଇପାରିବ। ଆମ୍ଭ ଶରୀରର ଅଙ୍ଗଗୁଡ଼ିକ ଭିତରେ
ଜିହ୍ୱା ହେଉଛି ସବୁଠାରୁ ମନ୍ଦ। କିପରି? ଜିହ୍ୱା ଆମ୍ଭ
ଶରୀର ମାଧ୍ୟମରେ ନିଜର ମନ୍ଦତା ପ୍ରସାର କରେ। ଏହା
ଏପରି ଅଗ୍ନି ସୃଷ୍ଟି କରେ ଯେ, ତାହା ସମଗ୍ର ଜୀବନକୁ
ପ୍ରଭାବିତ କରେ। ୭ଜିହ୍ୱା ଏହି ଅଗ୍ନିକୁ ନରକରୁ ପାଇଥାଏ।
ମଣିଷ ପ୍ରତ୍ୟେକ ପ୍ରକାର ହିଂସ୍ର ପଶୁ, ପକ୍ଷୀ, ସରୀସୃପ ଓ
ମାଛକୁ ବଶବର୍ତ୍ତୀ କରିପାରେ ଓ କରିଛି ମଧ୍ୟ। ୮କିନ୍ତୁ
କୌଣସି ମଣିଷ ଜିହ୍ୱାକୁ ବଶୀଭୂତ କରିପାରି ନାହିଁ। ଏହା
ଅତି ଦୁର୍ଦ୍ଦାନ୍ତ ଓ ମନ୍ଦ ଅଟେ। ଏହା ଏକ ବିଷଯୁକ୍ତ
ଘାତକ ଅଟେ। ୯ଏହି ଜିହ୍ୱା ଦ୍ୱାରା ଆମ୍ଭେ ଆମ୍ଭ ପ୍ରଭୁ ଓ
ପିତାଙ୍କ ଗୁଣଗାନ କରୁ, କିନ୍ତୁ ତା'ପରେ ପରମେଶ୍ୱର
ଯେଉଁ ଲୋକମାନଙ୍କୁ ନିଜ ସାଦୃଶ୍ୟରେ ତିଆରି କରିଛନ୍ତି,
ସେହି ଲୋକମାନଙ୍କୁ ଅଭିଶାପ ଦେଉ। ୧୦ଗୁଣଗାନ ଓ
ଅଭିଶାପ ସେହି ଗୋଟିଏ ମୁହଁରୁ ବାହାରେ! ମୋ ଭାଇ ଓ
ଭଉଣୀମାନେ, ଏଭଳି ହେବା ଉଚିତ ନୁହେଁ। ୧୧ଗୋଟିଏ
ସମାନ ଝରଣାରୁ ଉଭୟ ଭଲ ଓ ମନ୍ଦ ପାଣି କ'ଣ ଝରି
ଆସି ପାରେ? ନା! ୧୨ମୋ ଭାଇ ଓ ଭଉଣୀମାନେ, ଡିମ୍ବିରି
ଗଛରେ କ'ଣ ଜିତ ଫଳ ଫଳେ? ନା! ଅଙ୍ଗୁରଲତା କ'ଣ
ଡିମ୍ବିରି ଉତ୍ପନ୍ନ କରି ପାରେ? ନା! ଗୋଟିଏ ଲୁଣିଆ ପାଣିର
କୂଅ କେବେ ମିଠା ପାଣି ଦେଇ ପାରେ ନାହିଁ।

## ପ୍ରକୃତ ଜ୍ଞାନ

୧୩ତୁମ୍ଭମାନଙ୍କ ଭିତରେ ପ୍ରକୃତ ଜ୍ଞାନୀ ଓ ବୁଦ୍ଧିମାନ
କିଏ ଅଛି? ତାହେଲେ ସେ ଧାର୍ମିକ ଜୀବନଯାପନ କରି

---

**"ଅବ୍ରାହାମ ... ଧାର୍ମିକ କଲା।"** ଆଦିପୁସ୍ତକ ୧୫:୬
**"ପରମେଶ୍ୱରଙ୍କର ମିତ୍ର"** ଦ୍ୱିତୀୟ ବଂଶାବଳୀ ୨୦:୭, ଯିଶାଇୟ ୪୧:୮

ନିଜର ବିଜ୍ଞତା ଦେଖାଉ। ସେ ନମ୍ର ଭାବରେ ଭଲ କାମ
କରିବା ଉଚିତ। ଜ୍ଞାନୀ ଲୋକ ଗର୍ବ କରେ ନାହିଁ। ୧୪ଯଦି
ତୁମ୍ଭେ ନିହାତି ସ୍ୱାର୍ଥପର ଓ ତୁମ୍ଭ ହୃଦୟରେ ଈର୍ଷାଭାବ
ଅଛି, ତା'ହେଲେ ତୁମ୍ଭର ଗର୍ବ କରିବା ପାଇଁ କିଛି କାରଣ
ନାହିଁ। ତୁମ୍ଭର ଅହଂକାର କେବଳ ମିଛ, ଏବଂ ତାହା
ସତ୍ୟକୁ ଘୋଡ଼ାଇ ଦିଏ। ୧୫ଏହିପ୍ରକାର "ଜ୍ଞାନ"
ପରମେଶ୍ୱରଙ୍କଠାରୁ ଆସେ ନାହିଁ। ମାତ୍ର ଏହି "ଜ୍ଞାନ"
ସଂସାରରୁ ଆସେ। ଏହା ଆତ୍ମିକ ନୁହେଁ। ଏହା ଶୟତାନଠାରୁ
ଆସିଛି। ୧୬ଯେଉଁଠାରେ ଈର୍ଷାଭାବ ଓ ସ୍ୱାର୍ଥପର ମନୋଭାବ
ଅଛି, ସେହିଠାରେ ସମସ୍ତ ପ୍ରକାର ବିଶୃଙ୍ଖଳା ଓ ସମସ୍ତ
ପ୍ରକାରର ମନ୍ଦତା ଦେଖାଯାଏ। ୧୭କିନ୍ତୁ ପରମେଶ୍ୱରଙ୍କ ଠାରୁ
ଆସିଥିବା 'ଜ୍ଞାନ" ଏହିପରି: ପ୍ରଥମରେ ଏହା ପବିତ୍ର,
ଶାନ୍ତିପୂର୍ଣ୍ଣ, ଭଦ୍ର ଓ ପ୍ରସନ୍ନ ଅଟେ। ଯେଉଁମାନେ ଅସୁବିଧା
ବା କଷ୍ଟରେ ପଡ଼ିଛନ୍ତି, ଏହି ଜ୍ଞାନ ସେମାନଙ୍କୁ ସାହାଯ୍ୟ
କରିବା ପାଇଁ ସର୍ବଦା ପ୍ରସ୍ତୁତ ଥାଏ ଓ ଏହା ଅନ୍ୟମାନଙ୍କର
ମଙ୍ଗଳ କରେ। ଏହି ଜ୍ଞାନ ସର୍ବଦା ନିରପେକ୍ଷ ଓ
ନିଷ୍କପଟ ଅଟେ। ୧୮ଯେଉଁ ଲୋକମାନେ ଶାନ୍ତିପୂର୍ଣ୍ଣ ଭାବରେ
ଶାନ୍ତି ପାଇଁ କାମ କରନ୍ତି, ସେମାନେ ଧାର୍ମିକ ଜୀବନଯାପନ
ଦ୍ୱାରା ସେଥିରୁ ଉତ୍ପନ୍ନ ଉତ୍ତମ ବିଷୟମାନ ପାଆନ୍ତି।

## ପରମେଶ୍ୱରଙ୍କଠାରେ ସମର୍ପିତ ହୁଅ

୪ ତୁମ୍ଭେ କ'ଣ ଜାଣିଛ କି ତୁମ୍ଭମାନଙ୍କ ଭିତରେ ଝଗଡ଼ା
ଓ ଯୁକ୍ତିତର୍କ କାହିଁକି ହୁଏ? ତୁମ୍ଭର ଝଗଡ଼ା ଓ
ଯୁକ୍ତିତର୍କ ସ୍ୱାର୍ଥପର ଇଚ୍ଛାରୁ ଆସେ ଓ ତୁମ୍ଭ ମଧ୍ୟରେ ବିବାଦ
ସୃଷ୍ଟି କରିଥାଏ? ୨ତୁମ୍ଭେମାନେ ଅନେକ ବିଷୟ ଇଚ୍ଛା କର,
କିନ୍ତୁ ପାଅ ନାହିଁ। ତେଣୁ ତୁମ୍ଭେ ଅନ୍ୟ ଲୋକମାନଙ୍କ ପ୍ରତି
ଈର୍ଷାନ୍ୱିତ ହୋଇ ସେମାନଙ୍କୁ ହତ୍ୟା କରିଥାଅ। ତଥାପି
ତୁମ୍ଭେ ଇଚ୍ଛା କରୁଥିବା ବିଷୟଗୁଡ଼ିକ ପାଇ ପାର ନାହିଁ।
ସେଥିପାଇଁ ତୁମ୍ଭେ ତର୍କବିତର୍କ କରିଥାଅ ଓ ବିବାଦ କରିଥାଅ।
ଯେହେତୁ ତୁମ୍ଭେ ପରମେଶ୍ୱରଙ୍କୁ ତୁମ୍ଭର ଦରକାରୀ ବିଷୟଗୁଡ଼ିକ
ମାଗି ନ ଥାଅ, ତେଣୁ ତୁମ୍ଭେମାନେ ସେଗୁଡ଼ିକ ପାଇ ନ
ଥାଅ। ୩ବା ଯେତେବେଳେ ତୁମ୍ଭେ ମାଗ, ତାହା ପାଅ ନାହିଁ।
କାହିଁକି? କାରଣ ଯେଉଁ କାରଣରୁ ତୁମ୍ଭେ ମାଗ, ତାହା ଭୁଲ
ଥାଏ। ତୁମ୍ଭେ ନିଜର ଅଭିଳାଷ ପାଇଁ ଯେପରି ସେଗୁଡ଼ିକୁ
ବ୍ୟବହାର କରିପାର, ସେଥିପାଇଁ ସେହିସବୁ ମାଗିଥାଅ।
୪ଏହାଦ୍ୱାରା ତୁମ୍ଭେମାନେ ପରମେଶ୍ୱରଙ୍କ ନିକଟରେ ବିଶ୍ୱସ୍ତ
ନୁହଁ। ତୁମ୍ଭେ ଜାଣି ରଖିବା ଉଚିତ ଯେ, ଜଗତକୁ ଭଲ
ପାଇବା ଓ ପରମେଶ୍ୱରଙ୍କୁ ଘୃଣା କରିବା ବିଷୟ ସମାନ।
ଅତଏବ ଯଦି କେହି ଏହି ସଂସାରର ଅଂଶୀ ହେବା ପାଇଁ
ଇଚ୍ଛା କରେ, ତେବେ ସେ ନିଜକୁ ପରମେଶ୍ୱରଙ୍କ ଶତ୍ରୁ
କରି ପକାଏ। ୫ତୁମ୍ଭେ କ'ଣ ଭାବୁଛ କି ଶାସ୍ତ୍ରର ଅର୍ଥ କିଛି
ନାହିଁ? ଶାସ୍ତ୍ର କୁହେ: "ପରମେଶ୍ୱର ଆମ୍ଭ ମଧ୍ୟରେ ବାସ
କରିବା ପାଇଁ ଯେଉଁ ଆତ୍ମାଙ୍କୁ ଦେଇଛନ୍ତି, ସେ ଆମ୍ଭକୁ
ସମ୍ପୂର୍ଣ୍ଣରୂପେ ଅଧିକାର କରିବା ନିମନ୍ତେ ଚାହାଁନ୍ତି।"* ୬କିନ୍ତୁ
ପରମେଶ୍ୱର ଆମ୍ଭକୁ ଦେଇଥିବା ଅନୁଗ୍ରହ ଅତି ମହାନ
ଅଟେ। ଯେପରି ଶାସ୍ତ୍ର କୁହେ: "ପରମେଶ୍ୱର ଅହଂକାରୀ
ଲୋକମାନଙ୍କର ବିରୋଧୀ, କିନ୍ତୁ ସେ ନମ୍ର ଲୋକମାନଙ୍କୁ
ଅନୁଗ୍ରହ କରନ୍ତି।"* ୭ଅତଏବ ନିଜକୁ ପରମେଶ୍ୱରଙ୍କଠାରେ
ସମର୍ପିତ କର। ଶୟତାନକୁ ବାଧା ଦିଅ, ତାହେଲେ ସେ
ତୁମ୍ଭଠାରୁ ଦୂରେଇ ଯିବ। ୮ପରମେଶ୍ୱରଙ୍କ ନିକଟକୁ ଆସ,
ତେବେ ସେ ମଧ୍ୟ ତୁମ୍ଭମାନଙ୍କ ନିକଟକୁ ଆସିବେ। ତୁମ୍ଭେମାନେ
ପାପୀ ଅଟ। ଅତଏବ ତୁମ୍ଭମାନଙ୍କ ଜୀବନରୁ ପାପକୁ
ପରିଷ୍କାର କର। ତୁମ୍ଭେ ଏକା ସମୟରେ ପରମେଶ୍ୱର ଓ
ସଂସାର, ଉଭୟର ଅନୁସରଣ କରିବାକୁ ଚେଷ୍ଟା କରୁଛ।
ତୁମ୍ଭର ଚିନ୍ତାଧାରାକୁ ପବିତ୍ର କର। ୯ଦୁଃଖି ହୁଅ, ଦୁଃଖ
ପ୍ରକାଶ କର ଓ କ୍ରନ୍ଦନ କର! ତୁମ୍ଭର ହାସ୍ୟକୁ କ୍ରନ୍ଦନରେ
ବଦଳାଇ ଦିଅ। ତୁମ୍ଭର ପ୍ରଫୁଲ୍ଲତାକୁ ଦୁଃଖରେ ବଦଳାଅ।
୧୦ପ୍ରଭୁଙ୍କ ଆଗରେ ନମ୍ର ହୁଅ ଓ ସେ ତୁମ୍ଭକୁ ମହାନ୍
କରିବେ।

## ତୁମ୍ଭେ ବିଚାରପତି ନୁହଁ

୧୧ଭାଇ ଓ ଭଉଣୀମାନେ! ପରସ୍ପର ବିରୁଦ୍ଧରେ କିଛି
କୁହ ନାହିଁ। ତୁମ୍ଭେ ଯଦି ଖ୍ରୀଷ୍ଟଙ୍କଠାରେ ଥିବା ତୁମ୍ଭର
କୌଣସି ଭାଇର ସମାଲୋଚନା କରୁଛ, ବା ବିଚାର କରୁଛ;
ତାହେଲେ ସେ ଯେଉଁ ବ୍ୟବସ୍ଥା (ନିୟମ) ପାଳନ କରୁଛି,
ତୁମ୍ଭେ ତା'ର ସମାଲୋଚନା କରୁଛ। ଯଦି ତୁମ୍ଭେ ଖ୍ରୀଷ୍ଟରେ
ଥିବା ଜଣେ ଭାଇର ବିଚାର କର, ତେବେ ତୁମ୍ଭେ
ପ୍ରକୃତରେ ସେ ପାଳନ କରୁଥିବା ବ୍ୟବସ୍ଥାର ବିଚାର
କରୁଛ। ଏବଂ ତୁମ୍ଭେ ଯଦି ବ୍ୟବସ୍ଥାର ବିଚାର କରୁଛ,
ତେବେ ତୁମ୍ଭେ ବ୍ୟବସ୍ଥାର ପାଳନ କରୁ ନାହଁ। ତୁମ୍ଭେ
ନିଜେ ତାହାର ବିଚାରପତି ହୋଇଗଲ। ୧୨କେବଳ ପରମେଶ୍ୱର
ହିଁ ବ୍ୟବସ୍ଥା ରଚନା କରନ୍ତି। ସେ ହେଉଛନ୍ତି ଏକମାତ୍ର
ବିଚାରପତି। ସେ କେବଳ ରକ୍ଷା କରି ପାରନ୍ତି ଓ ବିନାଶ
ମଧ୍ୟ କରି ପାରନ୍ତି। ଅତଏବ ଅନ୍ୟ କୌଣସି ଲୋକର
ବିଚାର କରିବାର ତୁମ୍ଭ ପକ୍ଷରେ ଠିକ୍ ନୁହେଁ।

## ପରମେଶ୍ୱର ତୁମ୍ଭ ଜୀବନର ଯୋଜନା କରନ୍ତୁ

୧୩ତୁମ୍ଭ ଭିତରେ କେହି କେହି କୁହନ୍ତି, "ଆମ୍ଭେ ଆଜି
ବା କାଲି କୌଣସି ସହରକୁ ଯିବୁ। ଆମ୍ଭେ ସେଠାରେ
ବର୍ଷେ ରହିବୁ ଓ ବ୍ୟବସାୟ କରି ଧନ ଅର୍ଜନ କରିବୁ।"
ଶୁଣ! ଏହି ବିଷୟରେ ଚିନ୍ତା କର: ୧୪ତୁମ୍ଭେ ଜାଣି ନାହଁ,
ଆସନ୍ତା କାଲି କଣ ଘଟିବ! ତୁମ୍ଭ ଜୀବନଟି ଗୋଟିଏ
କୁହୁଡ଼ି ତୁଲ୍ୟ। ତୁମ୍ଭେ ତାହାକୁ ଅଳ୍ପ ସମୟ ଧରି
ଦେଖିପାରିବ, ତାପରେ ସେ ଚାଲି ଯାଏ। ୧୫ଅତଏବ ତୁମ୍ଭେ
କହିବା ଉଚିତ: "ଯଦି ପରମେଶ୍ୱରଙ୍କ ଇଚ୍ଛା ଥାଏ, ଆମ୍ଭେ
ଜୀବିତ ରହିବୁ ଓ ଏହା କରିବୁ ବା ତାହା କରିବୁ।"
୧୬କିନ୍ତୁ ଏବେ ତୁମ୍ଭେ ଅହଂକାର କରି ଗର୍ବ କରୁଛ।
ଏହିପ୍ରକାର ଅହଂକାର କରିବା ଅନୁଚିତ ଅଟେ। ୧୭ଯଦି
ଜଣେ ଲୋକ ଭଲ କାମ କରିବାକୁ ଜାଣି ସୁଦ୍ଧା ତାହା
କରେ ନାହିଁ, ତାହେଲେ ସେ ପାପ କରିଥାଏ।

---

**"ପରମେଶ୍ୱର ... ଚାହାଁନ୍ତି।"** ଯାତ୍ରା ପୁସ୍ତକ ୨୦:୫

**"ପରମେଶ୍ୱର ... କରନ୍ତି।"** ହିତୋପଦେଶ ୩:୩୪

### ସ୍ୱାର୍ଥପର ଧନୀଲୋକେ ଦଣ୍ଡ ପାଇବେ

**୫** ଧନୀ ଲୋକେ! ଶୁଣ! କ୍ରନ୍ଦନ କରି ଓ ଅତି ଦୁଃଖିତ ହୁଅ। କାରଣ ଅତ୍ୟଧିକ କ୍ଲେଶ ତୁମ୍ଭ ଉପରେ ମାଡ଼ି ଆସୁଛି। ୨ତୁମ୍ଭର ଧନସବୁ ନଷ୍ଟ ହୋଇଯାଇଛି ଓ ମୂଲ୍ୟହୀନ ହୋଇ ପଡ଼ିଛି। ତୁମ୍ଭର ପୋଷାକ ପୋକ ଖାଇ ଯାଇଛନ୍ତି। ୩ତୁମ୍ଭର ସୁନା ଓ ରୂପାରେ କଳଙ୍କି ଲାଗି ଯାଇଛି। ଏହା ନଷ୍ଟ ହୋଇ ପ୍ରମାଣ କରୁଛି ଯେ, ତୁମ୍ଭେ ଭୁଲକାର୍ଯ୍ୟ କରିଛ। ସେହି କଳଙ୍କ ତୁମ୍ଭ ଶରୀରକୁ ଅଗ୍ନି ଭଳି ଗ୍ରାସ କରି ଦେବ। ଶେଷଦିନଗୁଡ଼ିକରେ ତୁମ୍ଭେ ନିଜର ଧନ ସଞ୍ଚୟ କରୁଅଛ। ୪ଲୋକେ ତୁମ୍ଭ କ୍ଷେତମାନଙ୍କରେ କାମ କଲେ, କିନ୍ତୁ ତୁମ୍ଭେ ତାହାଙ୍କୁ ସେମାନଙ୍କର ମଜୁରୀ ଦେଲ ନାହିଁ। ସେମାନେ ତୁମ୍ଭ ବିରୁଦ୍ଧରେ କ୍ରନ୍ଦନ କରୁଛନ୍ତି। ସେମାନେ ତୁମ୍ଭ ପାଇଁ ଶସ୍ୟ ଆମଦାନୀ କଲେ। ଏବେ ସ୍ୱର୍ଗୀୟ ସେନାବାହିନୀର ପ୍ରଭୁ ସେମାନଙ୍କ ଚିତ୍କାର ଶୁଣିଛନ୍ତି। ୫ପୃଥିବୀରେ ତୁମ୍ଭ ଜୀବନ ବିଳାସପୂର୍ଣ୍ଣ ଥିଲା। ତୁମ୍ଭେ ଯାହା ଇଚ୍ଛା କରିଥିଲ, ତାହା ପୂରଣ କରି ନିଜକୁ ଆନନ୍ଦିତ କଲ। ତୁମ୍ଭେ ବଳି ଦିବସ ପାଇଁ ପ୍ରସ୍ତୁତ ଥିବା ଏକ ପଶୁପରି ନିଜକୁ ମୋଟା କଲ। ୬ତୁମ୍ଭେ ଉତ୍ତମ ଲୋକମାନଙ୍କୁ କୌଣସି ଦୟା ଦେଖାଇଲ ନାହିଁ। ସେମାନେ ତୁମ୍ଭର ବିରୋଧୀ ନ ଥିଲେ ମଧ୍ୟ, ତୁମ୍ଭେ ସେମାନଙ୍କୁ ହତ୍ୟା କରିଛ।

### ଧୈର୍ଯ୍ୟବାନ ହୁଅ

୭ଭାଇ ଓ ଭଉଣୀମାନେ, ଧୈର୍ଯ୍ୟ ରଖ, ପ୍ରଭୁ ଯୀଶୁ ଆସିବେ। ସେହି ସମୟ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ରୁହ। ୮କୃଷୀ ଯେପରି ନିଜ କ୍ଷେତର ମୂଲ୍ୟବାନ ଶସ୍ୟ ବଢ଼ି ଉଠିବାକୁ ଧୈର୍ଯ୍ୟର ସହିତ ଆଶାରଖି, ଏବଂ ଆରମ୍ଭ ଓ ଶେଷ ବର୍ଷା ପଡ଼ିବା ପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ ଅପେକ୍ଷା କରେ, ତୁମ୍ଭେମାନେ ସେହିଭଳି ଧୈର୍ଯ୍ୟଶୀଳ ହେବା ଉଚିତ। ନିଜର ଆଶା ଛାଡ଼ି ଦିଅ ନାହିଁ। ପ୍ରଭୁ ଯୀଶୁ ଶୀଘ୍ର ଆସୁଛନ୍ତି। ୯ଭାଇ ଓ ଭଉଣୀମାନେ, ପରସ୍ପର ବିରୁଦ୍ଧରେ ଅଭିଯୋଗ କର ନାହିଁ। ତୁମ୍ଭେ ଅଭିଯୋଗ କରିବା ବନ୍ଦ ନ କଲେ, ନିଜେ ଦୋଷୀ ବୋଲି ବିଚାରିତ ହେବ। ବିଚାରପତି ଆସିବାକୁ ପ୍ରସ୍ତୁତ ଅଛନ୍ତି। ୧୦ଭାଇ ଓ ଭଉଣୀମାନେ, ପ୍ରଭୁଙ୍କ ପାଇଁ ଭାବବାଣୀ କହିଥିବା ଭାବବାଦୀମାନଙ୍କ ଉଦାହରଣ ଅନୁସରଣ କର। ସେମାନେ ଅନେକ ଯାତନା ସହି ଥିଲେ ହେଁ ଧୈର୍ଯ୍ୟବାନ ଥିଲେ। ୧୧ଆମ୍ଭେ କହୁଛୁ ଯେ, ଯେଉଁମାନେ ସେମାନଙ୍କର ଅସୁବିଧାଗୁଡ଼ିକୁ ଧୈର୍ଯ୍ୟର ସହିତ ଗ୍ରହଣ କଲେ, ସେମାନେ ବର୍ତ୍ତମାନ ଖୁସିରେ ଅଛନ୍ତି। ତୁମ୍ଭେମାନେ ଆୟୁବଙ୍କର ଧୈର୍ଯ୍ୟ* କଥା ଶୁଣିଛ। ତୁମ୍ଭେ ଜାଣିଛ ଯେ, ଆୟୁବ ସବୁ କଷ୍ଟରୁ ଉତ୍ତୀର୍ଣ୍ଣ ହୋଇ ସାରିଲା ପରେ ପରମେଶ୍ୱର ତାହାଙ୍କୁ ସାହାଯ୍ୟ କରିଥିଲେ। ଏହା ଦର୍ଶାଏ ଯେ, ପ୍ରଭୁ କରୁଣାରେ ପୂର୍ଣ୍ଣ ଓ ଦୟାଳୁ ଅଟନ୍ତି।

### ସାବଧାନ ରହି କଥା କୁହ

୧୨ମୋ ଭାଇ ଓ ଭଉଣୀମାନେ! ମନେରଖ ଯେ କୌଣସି ପ୍ରତିଜ୍ଞା କଲା ବେଳେ ଶପଥ କର ନାହିଁ। ଏହା ଅତି ଗୁରୁତ୍ୱପୂର୍ଣ୍ଣ ଅଟେ। ତୁମ୍ଭର କଥାକୁ ସତ୍ୟ ବୋଲି ପ୍ରମାଣିତ କରିବା ପାଇଁ ସ୍ୱର୍ଗ, ପୃଥିବୀ ବା ଅନ୍ୟ କିଛିର ନାମ ନିଅ ନାହିଁ। "ତୁମ୍ଭର ହଁ କଥା ହଁ ହେଉ, ଏବଂ ନା କଥା ନା ହେଉ। ଏପରି କଲେ ତୁମ୍ଭେ ଦୋଷୀ ସାବ୍ୟସ୍ତ ହେବ ନାହିଁ।"

### ପ୍ରାର୍ଥନାର ଶକ୍ତି

୧୩ଯଦି କେହି ସଙ୍କଟରେ ପଡ଼ିଛି, ତା'ହେଲେ ସେ ପ୍ରାର୍ଥନା କରୁ। ଯଦି କେହି ଖୁସି ଅଛି, ତାହେଲେ ସେ (ଗୀତ) ଗାଉ। ୧୪ଯଦି ତୁମ୍ଭ ମଧ୍ୟରୁ କେହି ଜଣେ ଅସୁସ୍ଥ ଅଛି, ତେବେ ସେ ମଣ୍ଡଳୀର ବୟୋଜ୍ୟେଷ୍ଠମାନଙ୍କୁ* ଡାକିବା ଦରକାର। ସେମାନେ ପ୍ରଭୁଙ୍କ ନାମରେ ତାହାଙ୍କୁ ତେଲ ମଖାଇବେ ଓ ତାହାଙ୍କ ପାଇଁ ପ୍ରାର୍ଥନା କରିବେ। ୧୫ବିଶ୍ୱାସରେ କରାଯାଇଥିବା ସେହି ପ୍ରାର୍ଥନା ରୋଗୀକୁ ସୁସ୍ଥ କରିଦେବ। ପ୍ରଭୁ ତାହାକୁ ସୁସ୍ଥ କରିବେ। ଯଦି ଏହି ଲୋକଟି ପାପ କରି ଥାଏ, ତେବେ ପରମେଶ୍ୱର ତାହାକୁ କ୍ଷମା କରିବେ। ୧୬ତୁମ୍ଭେ କରିଥିବା ପାପଗୁଡ଼ିକୁ ପରସ୍ପର ନିକଟରେ ସ୍ୱୀକାର କର। ତା'ପରେ ପରସ୍ପର ପାଇଁ ପ୍ରାର୍ଥନା କର। ପରମେଶ୍ୱର ଯେପରି ତୁମ୍ଭକୁ ସୁସ୍ଥ କରି ଦିଅନ୍ତି, ସେଥିନିମନ୍ତେ ଏପରି କର। ଜଣେ ଧାର୍ମିକ ଲୋକ ଯେତେବେଳେ ନିରନ୍ତର ପ୍ରାର୍ଥନା କରେ, ସେତେବେଳେ ମହାନ ଘଟଣାମାନ ଘଟିଥାଏ। ୧୭ଏଲୀୟ ଆମ୍ଭ ଭଳି ଜଣେ ସାଧାରଣ ଲୋକ ଥିଲେ। ସେ ବର୍ଷା ନ ହେବା ପାଇଁ ପ୍ରାର୍ଥନା କଲେ। ଏବଂ ଭୂମି ଉପରେ ତିନି ବର୍ଷ ଛଅମାସ ଧରି ବର୍ଷା ହେଲା ନାହିଁ। ୧୮ତା'ପରେ ଏଲୀୟ ବର୍ଷା ହେବା ପାଇଁ ପ୍ରାର୍ଥନା କଲେ। ଆକାଶରୁ ବର୍ଷା ହେଲା ଓ ପୃଥିବୀରେ ପୁନଃ ଶସ୍ୟ ଉତ୍ପନ୍ନ ହେଲା।

### ଆତ୍ମା ରକ୍ଷା କରିବା

୧୯ମୋ ଭାଇ ଓ ଭଉଣୀମାନେ! ତୁମ୍ଭ ଭିତରୁ ଯଦି ଜଣେ ସତ୍ୟରୁ ବିଚଳିତ ହୋଇଯାଏ, ତେବେ ଅନ୍ୟ ଜଣେ ତାହାକୁ ସତ୍ୟକୁ ଫେରାଇ ଆଣିବା ପାଇଁ ସାହାଯ୍ୟ କରୁ। ୨୦ଏହା ମନେରଖ: ଯେଉଁ ଲୋକ ମନ୍ଦ ମାର୍ଗରୁ ଜଣେ ପାପୀକୁ ଫେରାଇ ଆଣେ, ତେବେ ସେ ମୃତ୍ୟୁରୁ ତାହାର ଆତ୍ମାକୁ ରକ୍ଷା କରେ। ଏହା କରିବା ଦ୍ୱାରା, ସେହି ଲୋକ ଅନେକ ପାପ କ୍ଷମାର କାରଣ ହୋଇପାରିଥାଏ।

---

**ଆୟୁବଙ୍କର ଧୈର୍ଯ୍ୟ** ଆୟୁବ ପୁସ୍ତକ ପଢ଼ନ୍ତୁ।

**ବୟୋଜ୍ୟେଷ୍ଠ** ଯେଉଁମାନଙ୍କ ଉପରେ ମନ୍ଦିରର ଭାର ନ୍ୟସ୍ତ ଥାଏ। ସେମାନଙ୍କୁ ମଧ୍ୟ "ପର୍ଯ୍ୟବେକ୍ଷକ" ଓ "ପାଳକ" (ମେଷପାଳକ) କୁହାଯାଏ, ସେମାନଙ୍କର କାମ ହେଲା ପ୍ରଭୁଙ୍କର ଲୋକମାନଙ୍କୁ ବାଟ କଢ଼ାଇନେବା। ପ୍ରେରିତ ୨୦:୧୭,୨୮; ଏଫିସୀୟ ୪:୧୧; ପ୍ରଥମ ତୀମଥି ୩:୧-୭; ତିତସ ୧:୫-୯

# ପିତରଙ୍କ ପ୍ରଥମ ପତ୍ର

୧ ଯୀଶୁ ଖ୍ରୀଷ୍ଟଙ୍କର ଜଣେ ପ୍ରେରିତ ପିତରଙ୍କଠାରୁ ପନ୍ତ,
ଗାଲାତିଆ, କାପ୍ପାଦକିଆ, ଆସିଆ ଓ ବୀଥୂନିଆ
ଅଞ୍ଚଳରେ ସର୍ବତ୍ର ଛିନ୍ନଭିନ୍ନ ହୋଇଥିବା ପରମେଶ୍ୱରଙ୍କ
ମନୋନୀତ ଲୋକମାନଙ୍କୁ ପତ୍ର।
୨ପରମେଶ୍ୱର ଖୁବ୍ ଆଗରୁ ତାଙ୍କର ପବିତ୍ର ଲୋକ
ହେବା ପାଇଁ ତୁମ୍ଭମାନଙ୍କୁ ମନୋନୀତ କରିବାକୁ ଯୋଜନା
କରିଥିଲେ। ତୁମ୍ଭକୁ ପବିତ୍ର କରିବା ପବିତ୍ର ଆତ୍ମାଙ୍କର କାମ
ଅଟେ। ଯୀଶୁ ଖ୍ରୀଷ୍ଟଙ୍କ ରକ୍ତ ଦ୍ୱାରା ପବିତ୍ର ହୋଇ ତୁମ୍ଭେ
ଯେପରି ପରମେଶ୍ୱରଙ୍କ ଆଜ୍ଞା ପାଳନ କରିବ, ଏହା ସେ
ଚାହୁଁଥିଲେ। ଈଶ୍ୱରଙ୍କ ଅନୁଗ୍ରହ ଓ ଶାନ୍ତି ଅଧିକରୁ ଅଧିକ
ତୁମ୍ଭ ଉପରେ ବର୍ତ୍ତୁ।

**ଜୀବନ୍ତ ଭରସା**

୩ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ପିତା ଓ ପରମେଶ୍ୱର ଧନ୍ୟ
ହେଉନ୍ତୁ। ପରମେଶ୍ୱରଙ୍କ କରୁଣା ଅପାର, ଓ ଏହି କରୁଣା
(କୃପା) ଦ୍ୱାରା ସେ ଆମ୍ଭକୁ ଗୋଟିଏ ନୂତନ ଜୀବନ
ଦେଇଛନ୍ତି। ଯୀଶୁ ଖ୍ରୀଷ୍ଟ ମୃତ୍ୟୁରୁ ପୁନର୍ଜୀବିତ ହେବା ଦ୍ୱାରା
ଏହି ନୂତନ ଜୀବନ ଆମ୍ଭକୁ ଗୋଟିଏ ଜୀବନ୍ତ ଭରସା
ଦେଇଛି। ୪ପରମେଶ୍ୱର ଆପଣା ସନ୍ତାନମାନଙ୍କ ପାଇଁ
ରଖିଥିବା ଆଶୀର୍ବାଦ ଆମ୍ଭେ ଏବେ ପାଇବାକୁ ଭରସା
କରୁ। ସେହି ଆଶୀର୍ବାଦଗୁଡ଼ିକ ସ୍ୱର୍ଗରେ ତୁମ୍ଭ ପାଇଁ
ସୁରକ୍ଷିତ। ସେହି ଆଶୀର୍ବାଦଗୁଡ଼ିକ କଦାପି ନଷ୍ଟ ହେବ
ନାହିଁ, ବା ଧ୍ୱଂସ ପାଇବ ନାହିଁ କିଅବା ସେଗୁଡ଼ିକ
ସେମାନଙ୍କର ସୌନ୍ଦର୍ଯ୍ୟ ହରାଇବେ ନାହିଁ। ୫ତୁମ୍ଭର ପରିତ୍ରାଣର
ସମୟ ନ ଆସିବା ପର୍ଯ୍ୟନ୍ତ ତୁମ୍ଭ ବିଶ୍ୱାସ ମାଧମରେ
ପରମେଶ୍ୱରଙ୍କ ଶକ୍ତି ତୁମ୍ଭକୁ ରକ୍ଷା କରିବ। ସେହି ପରିତ୍ରାଣ
ତୁମ୍ଭ ପାଇଁ ପ୍ରସ୍ତୁତ ହୋଇ ରହିଛି ଏବଂ ଯୁଗର ଶେଷରେ
ତୁମ୍ଭେ ଏହା ପାଇବ। ୬ତେଣୁ ତୁମ୍ଭେ ଆନନ୍ଦିତ ହୁଅ। କିନ୍ତୁ
ଏବେ ଅଳ୍ପ ସମୟ ପାଇଁ ଅନେକ ପ୍ରକାରର ସମସ୍ୟା
ତୁମ୍ଭକୁ ଦୁଃଖୀ କରୁଥାଇପାରେ। ୭ଏହି ସମସ୍ୟାଗୁଡ଼ିକ
କାହିଁକି ହୁଏ? କେବଳ ତୁମ୍ଭର ବିଶ୍ୱାସର ସତ୍ୟତା ପ୍ରମାଣିତ
କରିବା ଲାଗି ଏପରି ଘଟେ। ଏହି ବିଶ୍ୱାସର ପ୍ରମାଣ
ସୁନାଠାରୁ ଅଧିକ ମୂଲ୍ୟବାନ। ସୁନାର ବିଶୁଦ୍ଧତା ଅଗ୍ନି ଦ୍ୱାରା
ପରୀକ୍ଷିତ ହୁଏ, କିନ୍ତୁ ତାହା ନଷ୍ଟଶୀଳ। ଯୀଶୁ (ପୁନଃ)
ଆସିବାବେଳେ, ତୁମ୍ଭ ବିଶ୍ୱାସର ପବିତ୍ରତା ହେତୁ ତୁମ୍ଭେ
ପ୍ରଶଂସା, ମହିମା ଓ ସମ୍ମାନ ପାଇବ। ୮ତୁମ୍ଭେ ଯୀଶୁ
ଖ୍ରୀଷ୍ଟଙ୍କୁ ନ ଦେଖି ମଧ ପ୍ରେମ କରୁଛ। ଏବେ ତୁମ୍ଭେ
ତାହାଙ୍କୁ ନ ଦେଖି ମଧ ବିଶ୍ୱାସ କରୁଛ। ତୁମ୍ଭେ
ଅତୁଳନୀୟ ଆନନ୍ଦ ପାଉଛ। ସେହି ଆନନ୍ଦ ମହିମାରେ
ପରିପୂର୍ଣ୍ଣ। ୯ତୁମ୍ଭ ବିଶ୍ୱାସର ଗୋଟିଏ ଲକ୍ଷ୍ୟ ଅଛି। ତାହା
ହେଲା ଆତ୍ମାର ଉଦ୍ଧାର। ତୁମ୍ଭେ ସେହି ଲକ୍ଷ୍ୟ ଅର୍ଥାତ୍
ଉଦ୍ଧାର ପାଉଛ।
୧୦ଭବିଷ୍ୟଦ୍‌ବକ୍ତାମାନେ ମନୋଯୋଗ ସହକାରେ ଅଧ୍ୟୟନ
କରି ଏହି ଉଦ୍ଧାର ବିଷୟରେ ଜାଣିବା ପାଇଁ ଚେଷ୍ଟା
କଲେ। ସେହି ଭବିଷ୍ୟଦ୍‌ବକ୍ତାମାନେ ତୁମ୍ଭ ପ୍ରତି ଆଗତ
ଅନୁଗ୍ରହ ବିଷୟରେ କହିଥିଲେ। ୧୧ଖ୍ରୀଷ୍ଟଙ୍କ ଆତ୍ମା ସେହି
ଭବିଷ୍ୟଦ୍‌ବକ୍ତାମାନଙ୍କ ଅନ୍ତରରେ ଥିଲା। ଖ୍ରୀଷ୍ଟଙ୍କୁ କିପରି
କଷ୍ଟ ଭୋଗିବାକୁ ହେବ ଓ ତା'ପରେ କିପରି ମହିମା
ପ୍ରକାଶିତ ହେବ, ସେହି ବିଷୟରେ 'ଆତ୍ମା' କଥା କହୁଥିଲେ।
ସେହି ଆତ୍ମା ଯାହା ଦେଖାଉଥିଲେ, ସେହି ଭବିଷ୍ୟଦ୍‌ବକ୍ତାମାନେ
ତାହା ଶିଖିବାକୁ ଚେଷ୍ଟା କଲେ। ସେମାନେ ଜାଣିବାକୁ
ଚେଷ୍ଟା କଲେ ଯେ କେତେବେଳେ ଏହି ସବୁ ଘଟଣାମାନ
ଘଟିବ ଏବଂ ସେତେବେଳେ ଜଗତର ଅବସ୍ଥା କିପରି
ହୋଇଥିବ। ୧୨ସେହି ଭବିଷ୍ୟଦ୍‌ବକ୍ତାମାନଙ୍କ ସେବା କାର୍ଯ୍ୟ
ସେମାନଙ୍କ ନିଜ ପାଇଁ ନୁହେଁ ବୋଲି ସେମାନଙ୍କୁ ଦେଖାଇ
ଦିଆହେଲା। ଭବିଷ୍ୟଦ୍‌ବକ୍ତାମାନେ ତୁମ୍ଭର ସେବା କରୁଥିଲେ।
ସେମାନେ ସେବା କଲାବେଳେ ଯାହା କହିଥିଲେ ତୁମ୍ଭେ
ତାହା ଶୁଣିଛ। ଯେଉଁ ଲୋକମାନେ ତୁମ୍ଭକୁ ସେହି ସୁସମାଚାର
କହିଲେ, ସେମାନେ ହିଁ ତାହା କହିଥିଲେ। ସ୍ୱର୍ଗରୁ
ପଠାଯାଇଥିବା ପବିତ୍ର ଆତ୍ମା ସାହାଯ୍ୟରେ ସେମାନେ କହିଥିଲେ।
ଯେଉଁ କଥାଗୁଡ଼ିକ ତୁମ୍ଭକୁ କୁହାଯାଇଛି, ସେଗୁଡ଼ିକୁ
ସ୍ୱର୍ଗଦୂତମାନେ ମଧ ଜାଣିବା ପାଇଁ ବହୁତ ଆଗ୍ରହୀ।

**ପବିତ୍ର ଜୀବନ ପାଇଁ ଡାକରା**

୧୩ଆତ୍ମସଂଯମୀ ହୁଅ ଓ ନିଜ ମନକୁ ସେବା କାର୍ଯ୍ୟ
ପାଇଁ ପ୍ରସ୍ତୁତ କର। ଯୀଶୁ ଖ୍ରୀଷ୍ଟ ଆସିବା ବେଳେ, ଯେଉଁ
ଅନୁଗ୍ରହ ତୁମ୍ଭ ପ୍ରତି ବର୍ତ୍ତିବ, ସେଥିରେ ତୁମ୍ଭର ପୂର୍ଣ୍ଣ
ଭରସା ରହିବା ଉଚିତ। ୧୪ଅତୀତରେ ତୁମ୍ଭେ ଏହି କଥା
ବୁଝି ନ ପାରି, ନିଜ ଇଚ୍ଛାରେ ସେହି ସବୁ ମନ୍ଦ କାମ
କରିଥିଲ କିନ୍ତୁ ଏବେ ତୁମ୍ଭେ ପରମେଶ୍ୱରଙ୍କ ଆଜ୍ଞାକାରୀ
ସନ୍ତାନ ଅଟ। ଅତଏବ ଅତୀତର ମନ୍ଦ ଜୀବନଯାପନ କର
ନାହିଁ। ୧୫ନିଜେ କରୁଥିବା ସମସ୍ତ କାମରେ, ପରମେଶ୍ୱର
ଯେପରି ପବିତ୍ର, ସେହିପରି ପବିତ୍ର ହୁଅ। ପରମେଶ୍ୱର ହିଁ
ତୁମ୍ଭକୁ ଆହ୍ୱାନ କରିଥିଲେ। ୧୬ଶାସ୍ତ୍ରରେ ଲେଖାଅଛି: "ପବିତ୍ର
ହୁଅ, କାରଣ ମୁଁ ହେଉଛି ପବିତ୍ର।"*

---

**"ପବିତ୍ର ... ପବିତ୍ର"** ଲେବୀୟ ପୁସ୍ତକ ୧୧:୪୪-୪୫; ୧୯:୨; ୨୦:୭,

୧୭ତୁମ୍ଭେ ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଛ ଓ ପିତା
ବୋଲି ଡାକୁଛ। ପରମେଶ୍ୱର ପ୍ରତ୍ୟେକ ଲୋକଙ୍କୁ ତାହାର
କାର୍ଯ୍ୟ ଅନୁସାରେ ସମାନ ଭାବରେ ବିଚାର କରନ୍ତି। ତେଣୁ
ତୁମ୍ଭେ ଯେ ପର୍ଯ୍ୟନ୍ତ ପୃଥିବୀରେ ବଞ୍ଚି ରହିଛ, ତୁମ୍ଭେ
ପରମେଶ୍ୱରଙ୍କ ପ୍ରତି ଭୟ ରଖି ବଞ୍ଚିବା ଉଚିତ। ୧୮ତୁମ୍ଭେ
ଜାଣିଛ ଯେ ଅତୀତରେ ତୁମ୍ଭେ ନିରର୍ଥକ ଜୀବନଯାପନ
କରୁଥିଲ। ତୁମ୍ଭ ପୂର୍ବ ବଂଶଧରମାନଙ୍କଠାରୁ ତୁମ୍ଭେ ସେହିପରି
ଜୀବନ କାଟିବାକୁ ଶିଖିଥିଲ। କିନ୍ତୁ ତୁମ୍ଭେ ବର୍ତ୍ତମାନ
ସେପରି ଜୀବନ କାଟିବାରୁ ରକ୍ଷା ପାଇଛ। ସୁନା ଓ ରୂପା
ଭଳି କ୍ଷୟଶୀଳ ଜିନିଷ ବଦଳରେ ନୁହେଁ, ୧୯ବରଂ ନିର୍ଦ୍ଦୋଷ
ପବିତ୍ର ମେଷଶାବକ ଖ୍ରୀଷ୍ଟଙ୍କର ବହୁମୂଲ୍ୟ ରକ୍ତ ଦ୍ୱାରା
ତୁମ୍ଭେ କିଣା ହୋଇଅଛ। ୨୦ଜଗତ ଆରମ୍ଭ ହେବା ପୂର୍ବରୁ
ଖ୍ରୀଷ୍ଟ ମନୋନୀତ ହୋଇଥିଲେ। କିନ୍ତୁ ଏହି ଶେଷ ସମୟରେ
ତୁମ୍ଭ ନିମନ୍ତେ ସେ ଜଗତରେ ପ୍ରକାଶିତ ହେଲେ। ୨୧ତୁମ୍ଭେ
ଖ୍ରୀଷ୍ଟଙ୍କ ମାଧ୍ୟମରେ ପରମେଶ୍ୱରଙ୍କୁ ବିଶ୍ୱାସ କର। ପରମେଶ୍ୱର
ଖ୍ରୀଷ୍ଟଙ୍କୁ ମୃତ୍ୟୁରୁ ପୁନର୍ଜୀବିତ କଲେ। ତା'ପରେ ସେ
ତାହାଙ୍କୁ ମହିମା ପ୍ରଦାନ କଲେ। ତେଣୁ ତୁମ୍ଭର ବିଶ୍ୱାସ ଓ
ଭରସା ପରମେଶ୍ୱରଙ୍କ ଠାରେ ଅଛି।

୨୨ଏବେ, ସତ୍ୟ ପାଳନ ଦ୍ୱାରା ତୁମ୍ଭେମାନେ ନିଜ ନିଜକୁ
ପବିତ୍ର କରିଛ। ତୁମ୍ଭେମାନେ ତୁମ୍ଭମାନଙ୍କର ଭାଇ ଓ
ଭଉଣୀମାନଙ୍କ ପାଇଁ ସତ୍ୟ ପ୍ରେମ ଦେଖାଇ ପାରିବ।
ଅତଏବ, ପୂର୍ଣ୍ଣ ହୃଦୟ ସହିତ ଗଭୀର ଭାବରେ ପରସ୍ପରକୁ
ପ୍ରେମ କର। ୨୩ତୁମ୍ଭେ ପୁନର୍ଜନ୍ମ ଗ୍ରହଣ କରିଛ। ଏହି
ନୂତନ ଜୀବନ ମରଣଶୀଳ ବିଷୟରୁ ଆସି ନାହିଁ କିନ୍ତୁ
ଯାହା କିଛି କେବେ ମରେ ନାହିଁ, ସେଠାରୁ ଆସିଛି। ଯାହା
ସବୁଦିନ ପାଇଁ ରୁହେ, ପରମେଶ୍ୱରଙ୍କ ସେହି ଜୀବନ୍ତ
ସୁସମାଚାର ଯୋଗୁଁ ତୁମ୍ଭେ ଆଉ ଥରେ ଜନ୍ମ ଗ୍ରହଣ
କରିଛ। ୨୪ଶାସ୍ତ୍ର କୁହେ:

"ସମସ୍ତ ମନୁଷ୍ୟ ନିତ୍ୟଜୀବ ନୁହନ୍ତି, ସେମାନେ
ଘାସ ଭଳି, ସେମାନଙ୍କର ମହିମା ଏକ ବନ୍ୟ ଫୁଲ
ଭଳି। ଘାସ ଶୁଖି ଯାଏ, ଫୁଲ ଝଡ଼ି ଯାଏ।
୨୫ କିନ୍ତୁ ପରମେଶ୍ୱରଙ୍କ ବାକ୍ୟ ଅନନ୍ତକାଳ-ସ୍ଥାୟୀ ଏବଂ
ଏହି ଶିକ୍ଷା ତୁମ୍ଭକୁ ଦିଆ ଯାଇଥିଲା।"

ଯିଶାଇୟ, ୪୦:୬-୮

### ଜୀବନ୍ତ ପଥର ଓ ପବିତ୍ର ଦେଶ

**୨** ଅନ୍ୟ ଲୋକମାନଙ୍କୁ ଆଘାତ କଲାଭଳି କୌଣସି
କାମ କର ନାହିଁ। ମିଛ କୁହ ନାହିଁ, ଲୋକଙ୍କୁ ଠକ
ନାହିଁ, ଈର୍ଷାନ୍ୱିତ ହୁଅ ନାହିଁ, ଲୋକମାନଙ୍କର ନିନ୍ଦା କର
ନାହିଁ। ନିଜ ଜୀବନରୁ ଏଗୁଡ଼ିକୁ ଦୂର କର। ୨ନୂତନ
ଜନ୍ମଲାଭ କରିଥିବା ଶିଶୁ ଭଳି ହୁଅ। ତୁମ୍ଭ ଆତ୍ମାକୁ
ପରିତୃପ୍ତ କରୁଥିବା ବିଶୁଦ୍ଧ ଦୁଗ୍ଧ ପାନ ପାଇଁ ତୁମ୍ଭେ
ଲାଳାୟିତ ହୁଅ। ଏହାକୁ ପାନ କରିବା ଦ୍ୱାରା ତୁମ୍ଭେ ବୃଦ୍ଧି
ପାଇବ ଓ ଉଦ୍ଧାର ପାଇବ। ୩ପ୍ରଭୁଙ୍କର ଉତ୍ତମତାର ସ୍ୱାଦ
ତୁମ୍ଭେ ଚାଖି ସାରିଛ।

୪ପ୍ରଭୁ ଯୀଶୁ ହେଉଛନ୍ତି ଜୀବନ୍ତ "ପଥର"। ଜଗତର
ଲୋକମାନେ ସେହି ପଥରଟି ଅଗ୍ରାହ୍ୟ କଲେ। କିନ୍ତୁ
ପରମେଶ୍ୱର ସେହି ପଥରଟିକୁ ମନୋନୀତ କରିଛନ୍ତି।
ପରମେଶ୍ୱରଙ୍କ ପାଇଁ ତାହାଙ୍କର ମୂଲ୍ୟ ଅଧିକ। ୫ଅତଏବ
ତାହାଙ୍କ ପାଖକୁ ଆସ। ତୁମ୍ଭେମାନେ ମଧ୍ୟ ଜୀବନ୍ତ ପଥର
ଭଳି। ପରମେଶ୍ୱର ଗୋଟିଏ ଆଧ୍ୟାତ୍ମିକ ମନ୍ଦିର ନିର୍ମାଣ
କରୁଛନ୍ତି। ସେହି ମନ୍ଦିରରେ ପରମେଶ୍ୱରଙ୍କ ଦ୍ୱାରା ଯୀଶୁ
ଖ୍ରୀଷ୍ଟଙ୍କ ମାଧ୍ୟମରେ ଗୃହୀତ ହେବା ଭଳି ଆଧ୍ୟାତ୍ମିକ
ବଳିଦାନ ଉତ୍ସର୍ଗ କରି ପବିତ୍ର ଯାଜକ ହେବା ପାଇଁ,
ନିଜକୁ ନିୟୋଜିତ କର। ୬ଶାସ୍ତ୍ର କୁହେ:

"ଦେଖ, ସିୟୋନଠାରେ, ଗୋଟିଏ ମୂଲ୍ୟବାନ କୋଣ-
ପଥର ବାଛି ମୁଁ ରଖିଛି; ଯେଉଁ ଲୋକ ଏହାକୁ
ବିଶ୍ୱାସ କରିବ ସେ କେବେହେଲେ ଲଜ୍ଜିତ ହେବ
ନାହିଁ।"

ଯିଶାଇୟ-୨୮:୧୬

୭ତୁମ୍ଭ ଭଳି ବିଶ୍ୱାସୀମାନଙ୍କ ଲାଗି ସେ ପଥରଟି (ଯୀଶୁ)
ଅତି ମୂଲ୍ୟବାନ। କିନ୍ତୁ ଯୀଶୁ ଅବିଶ୍ୱାସୀମାନଙ୍କ ଲାଗି:

"ଗୃହ ନିର୍ମାଣକାରୀମାନେ ଯେଉଁ ପଥରଟିକୁ ଅଗ୍ରାହ୍ୟ
କଲେ ସେହି ପଥରଟି ଅତି ବହୁମୂଲ୍ୟ ପଥର
ହୋଇଗଲା।"

ଗୀତସଂହିତା ୧୧୮:୨୨

୮ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ଲାଗି:

"ସେହି ପଥର ଲୋକଙ୍କ ଝୁଣ୍ଟିବା କାରଣ ହୁଏ
ସେହି ପଥର ଲୋକଙ୍କ ପତନର କାରଣ ହୁଏ।"

ଯିଶାଇୟ ୮:୧୪

ପରମେଶ୍ୱରଙ୍କ କଥା ଅବମାନନା କରିବା ହେତୁ ଲୋକେ
ଝୁଣ୍ଟନ୍ତି। ସେହି ଲୋକମାନଙ୍କ ନିମନ୍ତେ ପରମେଶ୍ୱର ଏପରି
ଯୋଜନା କରିଥିଲେ।

୯କିନ୍ତୁ ତୁମ୍ଭେମାନେ ମନୋନୀତ ଲୋକ ଅଟ। ତୁମ୍ଭେମାନେ
ରାଜାଙ୍କର ଯାଜକ। ତୁମ୍ଭେମାନେ ପବିତ୍ର ଜାତି ଅଟ।
ତୁମ୍ଭେମାନେ ପରମେଶ୍ୱରଙ୍କ ଲୋକ। ପରମେଶ୍ୱର କରିଥିବା
ଆଶ୍ଚର୍ଯ୍ୟ ଘଟଣାମାନ କହିବା ପାଇଁ ପରମେଶ୍ୱର ତୁମ୍ଭକୁ
ମନୋନୀତ କରିଛନ୍ତି। ସେ ଅନ୍ଧକାରରୁ ତୁମ୍ଭମାନଙ୍କୁ ତାହାଙ୍କର
ଆଶ୍ଚର୍ଯ୍ୟଜନକ ଆଲୋକକୁ ଆଣିଛନ୍ତି। ୧୦ଅତୀତରେ ତୁମ୍ଭେ
ପରମେଶ୍ୱରଙ୍କ ଲୋକ ନ ଥିଲ। କିନ୍ତୁ ଏବେ ତୁମ୍ଭେ
ପରମେଶ୍ୱରଙ୍କ ଲୋକ ଅଟ। ଅତୀତରେ ତୁମ୍ଭେ ଅନୁଗ୍ରହ
ପାଇ ନ ଥିଲ। କିନ୍ତୁ ଏବେ ତୁମ୍ଭେମାନେ ପରମେଶ୍ୱରଙ୍କ
ଠାରୁ ଅନୁଗ୍ରହ ଲାଭ କରିଛ।

### ପରମେଶ୍ୱରଙ୍କ ପାଇଁ ଜୀବିତ ରୁହ

୧୧ପ୍ରିୟ ମିତ୍ରଗଣ, ତୁମ୍ଭେମାନେ ଏହି ଜଗତରେ ବିଦେଶୀ
ଓ ପ୍ରବାସୀ ଲୋକ ଭାବରେ ଅଛ। ଅତଏବ ତୁମ୍ଭମାନଙ୍କର
ଶରୀର ଇଚ୍ଛା କରୁଥିବା ମନ୍ଦ କାମଗୁଡ଼ିକରୁ ଦୂରରେ ରୁହ।

ଏହି କାମଗୁଡ଼ିକ ତୁମ୍ଭ ଆତ୍ମା ବିରୁଦ୍ଧରେ ସଂଘର୍ଷ କରନ୍ତି। ୧୨ଅବିଶ୍ୱାସୀ ଲୋକମାନେ ତୁମ୍ଭ ଚାରିପଟେ ଅଛନ୍ତି। ସେମାନେ କହି ପାରନ୍ତି ଯେ ତୁମ୍ଭେ ଖରାପ କାର୍ଯ୍ୟ କରୁଛ। ଅତଏବ ଉତ୍ତମ ଜୀବନଯାପନ କର। ତାହେଲେ ତୁମ୍ଭେମାନେ କରୁଥିବା ଭଲ କାମଗୁଡ଼ିକୁ ସେମାନେ ଦେଖିବେ ଓ ପରମେଶ୍ୱରଙ୍କ ଆସିବା ଦିନ ସେମାନେ ତାହାଙ୍କୁ ମହିମା ଦେବେ।

### କ୍ଷମତାରେ ଥିବା ଲୋକମାନଙ୍କ ଆଜ୍ଞା ପାଳନ କର

୧୩ଏହି ଜଗତରେ କ୍ଷମତାପ୍ରାପ୍ତ ଲୋକଙ୍କ ଆଜ୍ଞା ପାଳନ କର। ପ୍ରଭୁଙ୍କ ଲାଗି ଏହା କର। ସର୍ବୋଚ୍ଚ ଶାସନକର୍ତ୍ତା ରାଜାଙ୍କ ଆଜ୍ଞା ପାଳନ କର। ୧୪ରାଜାଙ୍କ ଦ୍ୱାରା ପ୍ରେରିତ ନେତାମାନଙ୍କର ଆଜ୍ଞା ପାଳନ କର। ମନ୍ଦ କାମ କରୁଥିବା ଲୋକଙ୍କୁ ଦଣ୍ଡ ଦେବା ଓ ଭଲ କାମ କରୁଥିବା ଲୋକଙ୍କୁ ପ୍ରଶଂସା କରିବା ଲାଗି ସେମାନଙ୍କୁ ପଠାଯାଇଥାଏ। ୧୫ଅତଏବ ଭଲ କାମ କରିବା ଦ୍ୱାରା, ଯେଉଁମାନେ ତୁମ୍ଭ ବିଷୟରେ ନିର୍ବୋଧ କଥାଗୁଡ଼ିକ କୁହନ୍ତି, ସେମାନଙ୍କ ମୁହଁ ବନ୍ଦ ହୋଇଯିବ। ୧୬ପରମେଶ୍ୱର ଏହା ଚାହାଁନ୍ତି। ସ୍ୱାଧୀନ ଲୋକ ଭଳି ବିଚରଣ କର। କିନ୍ତୁ ମନ୍ଦ କର୍ମ କରିବା ପାଇଁ ଏହି ସ୍ୱାଧୀନତାର ଅପବ୍ୟବହାର କର ନାହିଁ। ପରମେଶ୍ୱରଙ୍କ ସେବାରେ ଜୀବନ କାଟ। ୧୭ସମସ୍ତଙ୍କୁ ସମ୍ମାନ ଦିଅ। ପରମେଶ୍ୱରଙ୍କ ପରିବାରର ସମସ୍ତ ଭାଇ ଓ ଭଉଣୀମାନଙ୍କୁ ଭଲ ପାଅ। ପରମେଶ୍ୱରଙ୍କୁ ଭୟ କର ଓ ରାଜାଙ୍କୁ ସମ୍ମାନ ଦିଅ।

### ଯୀଶୁଙ୍କ ଦୁଃଖଭୋଗର ଦୃଷ୍ଟାନ୍ତ

୧୮ହେ କ୍ରୀତଦାସଗଣ! ତୁମ୍ଭ ମାଲିକର ଶାସନକୁ ସମ୍ମାନର ସହିତ ଗ୍ରହଣ କର। ତୁମ୍ଭେମାନେ ଭଲ ଓ ଭଦ୍ର ମାଲିକ ଏବଂ ମନ୍ଦ ମାଲିକର ମଧ୍ୟ ଆଜ୍ଞା ପାଳନ କରିବା ଉଚିତ। ୧୯ଜଣେ ଲୋକ ଭୁଲ ନ କରିଥିଲେ ମଧ୍ୟ ସେ ଦୁଃଖ ପାଇ ପାରେ। ଯଦି ସେ ଲୋକ ପରମେଶ୍ୱରଙ୍କ କଥା ଚିନ୍ତା କରେ ଓ କଷ୍ଟକୁ ସହି ଯାଏ, ତାହେଲେ ପରମେଶ୍ୱର ପ୍ରସନ୍ନ ହୁଅନ୍ତି। ୨୦କିନ୍ତୁ ଯଦି ତୁମ୍ଭେ ଭୁଲ କରିଥିବାରୁ ଦଣ୍ଡିତ ହୁଅ, ତାହେଲେ ସେହି ଦଣ୍ଡ ସହିଥିଲ ବୋଲି ତୁମ୍ଭେ ପ୍ରଶଂସା ପାଇବାର କୌଣସି କାରଣ ନାହିଁ। କିନ୍ତୁ ତୁମ୍ଭେ ଯଦି ଭଲ କାମ କର, ଯାତନା ସହି ଧୈର୍ଯ୍ୟବାନ ରୁହ, ତାହା ପରମେଶ୍ୱରଙ୍କୁ ପ୍ରସନ୍ନ କରେ। ୨୧ଏହା କରିବାକୁ ତୁମ୍ଭେ ଆହ୍ୱାନ ପାଇଛ। ତୁମ୍ଭେ ଅନୁସରଣ କରିବା ପାଇଁ ଖ୍ରୀଷ୍ଟ ଏକ ଉଦାହରଣ ଦେଖାଇ ଦେଇଯାଇଛନ୍ତି। ସେ ଯାହା କରିଥିଲେ, ତୁମ୍ଭେ ତାହା କରିବା ଉଚିତ। ସେ ତୁମ୍ଭ ପାଇଁ ଯାତନା ସହି ଥିବାରୁ, ତୁମ୍ଭେ ମଧ୍ୟ କଷ୍ଟ ଭୋଗିଲା ବେଳେ ଧୈର୍ଯ୍ୟଶୀଳ ହେବା ଉଚିତ।

୨୨ “ସେ କୌଣସି ପାପ କରି ନ ଥିଲେ ଓ କୌଣସି
ମିଛ କଥା ମୁହଁରେ ଉଚ୍ଚାରଣ କରି ନ ଥିଲେ।”
ଯିଶାଇୟ ୫୩:୯

୨୩ଲୋକେ ଖ୍ରୀଷ୍ଟଙ୍କୁ ମନ୍ଦ କଥା କହିଲେ, କିନ୍ତୁ ଯୀଶୁ ସେମାନଙ୍କୁ ମନ୍ଦ କଥା କହି ନାହାଁନ୍ତି। ଯୀଶୁ ଯାତନା ସହିଲେ, କିନ୍ତୁ ସେ ଲୋକଙ୍କୁ ଧମକ ଦେଇ କିଛି କହି ନ ଥିଲେ। ଯୀଶୁ ତାହାଙ୍କ ଯତ୍ନ ନେବା ପାଇଁ ପରମେଶ୍ୱରଙ୍କ ଠାରେ ନିର୍ଭରଶୀଳ ହେଲେ। ୨୪ପରମେଶ୍ୱର ନ୍ୟାୟ ବିଚାର କରନ୍ତି। କ୍ରୁଶ ଉପରେ ଯୀଶୁ ଆମ୍ଭ ପାପଗୁଡ଼ିକୁ ସ୍ୱଦେହରେ ବହନ କଲେ। ସେ ଏହା କଲେ, ଯେପରି ଆମ୍ଭେ ପାପ ପାଇଁ ମୃତ ହୋଇ, ଯାହା ସତ୍ୟ ତାହା ପାଇଁ ଜୀବିତ ରହିବା। ଯୀଶୁଙ୍କ କ୍ଷତଗୁଡ଼ିକ ଦ୍ୱାରା ତୁମ୍ଭେମାନେ ସୁସ୍ଥ ହୋଇଛ। ୨୫ମେଣ୍ଢା ଭଳି ତୁମ୍ଭେମାନେ ଭୁଲ ରାସ୍ତାରେ ଚାଲି ଯାଇଥିଲ। କିନ୍ତୁ ଏବେ ତୁମ୍ଭମାନଙ୍କର ଆତ୍ମାର ମେଷପାଳକ ଓ ରକ୍ଷକଙ୍କ ପାଖକୁ ଫେରି ଆସିଛ।

### ପତି ପତ୍ନୀ

୩ ଠିକ ସେହି ଭଳି ପତ୍ନୀମାନେ ନିଜ ନିଜର ପତିମାନଙ୍କର ଅଧିକାର ମାନିବା ଉଚିତ। ତା'ହେଲେ, ଯଦି ପତିମାନଙ୍କ ମଧ୍ୟରୁ କେତେଜଣ ପରମେଶ୍ୱରଙ୍କ ଶିକ୍ଷା ମାନୁ ନାହାଁନ୍ତି, ସେମାନଙ୍କୁ ବିଶ୍ୱାସ କରିବା ପାଇଁ ମନାଇପାରିବ। ତୁମ୍ଭେ କିଛି କହିବା ଦରକାର ହେବ ନାହିଁ। ସେମାନେ ସେମାନଙ୍କର ପତ୍ନୀଙ୍କ ଜୀବନ ଦେଖି ପ୍ରଭାବିତ ହେବେ। ୨ତୁମ୍ଭ ପତି ଦେଖିବେ ଯେ ତୁମ୍ଭେ ପବିତ୍ର ଜୀବନ ଯାପନ କରୁଛ, ପରମେଶ୍ୱରଙ୍କୁ ସମ୍ମାନ ଦେଉଛ। ୩ତୁମ୍ଭର କେଶ, ସୁନା ଅଳଙ୍କାର ବା ସୁନ୍ଦର ବସ୍ତ୍ର ଉପରେ ତୁମ୍ଭର ସୌନ୍ଦର୍ଯ୍ୟ ନିର୍ଭର କରେ ନାହିଁ। ୪ତୁମ୍ଭର ସୌନ୍ଦର୍ଯ୍ୟ ଅନ୍ତରରୁ ବାହାରି ନମ୍ର (କୋମଳ) ଓ ଶାନ୍ତ ଗୁଣର ପରିଚୟ ଦେବା ଉଚିତ। ଏହି ସୌନ୍ଦର୍ଯ୍ୟ କେବେହେଲେ ସମାପ୍ତ ହେବ ନାହିଁ। ପରମେଶ୍ୱର ଏହାକୁ ସବୁଠାରୁ ମୂଲ୍ୟବାନ୍ ମନେ କରନ୍ତି। ୫ବହୁ ପୂର୍ବରୁ ପରମେଶ୍ୱରଙ୍କୁ ଅନୁସରଣ କରୁଥିବା ପବିତ୍ର ମହିଳାମାନଙ୍କ ପ୍ରତି ଏହା ହିଁ ଘଟିଥିଲା। ଏହିପରି ଭାବରେ ସେମାନେ ନିଜକୁ ସୁନ୍ଦର କରି ଗଢ଼ି ଥିଲେ। ସେମାନେ ନିଜ ପତିମାନଙ୍କ ଅଧୀନରେ ଥିଲେ। ୬ମୁଁ 'ସାରା' ଭଳି ସ୍ତ୍ରୀ ଲୋକମାନଙ୍କ କଥା କହୁଛି। ସେ ନିଜ ପତି ଅବ୍ରାହାମକୁ ମାନିଲେ ଓ ତାହାଙ୍କୁ ମାଲିକ ବୋଲି ଡାକିଲେ। ତୁମ୍ଭେ ସମସ୍ତ ସ୍ତ୍ରୀଲୋକମାନେ, ଯଦି ଧାର୍ମିକ(ଠିକ୍) କାମ କର ଓ ନିର୍ଭୟ ରୁହ, ତାହେଲେ ସାରାର ପ୍ରକୃତ ସନ୍ତାନ ଅଟ।

୭ଠିକ୍ ସେହିଭଳି ତୁମ୍ଭେ ପତିମାନେ! ତୁମ୍ଭ ପତ୍ନୀମାନଙ୍କ ସହିତ ଭଲ ବୁଝାମଣାରେ ଜୀବନଯାପନ କର। ତୁମ୍ଭେମାନେ ନିଜ ପତ୍ନୀକୁ ସମ୍ମାନ ଦେଖାଇବା ଉଚିତ। ସେମାନେ ତୁମ୍ଭଠାରୁ ଦୁର୍ବଳ। କିନ୍ତୁ ପରମେଶ୍ୱର, ତୁମ୍ଭ ଭଳି ସେମାନଙ୍କୁ ମଧ୍ୟ ଆଶୀର୍ବାଦ ଦାନ କରନ୍ତି, ଯାହାକି ପ୍ରକୃତ ଜୀବନ ଦାନ କରେ। ତୁମ୍ଭ ପ୍ରାର୍ଥନାରେ କୌଣସି ଅସୁବିଧା ନ ଘଟିବା ଲାଗି ଏହାସବୁ କର।

### ସତ୍କର୍ମ ପାଇଁ ଦୁଃଖଭୋଗ

୮ଅତଏବ ସମସ୍ତେ ମିଳିମିଶି ଶାନ୍ତିରେ ରହିବା ଉଚିତ। ପରସ୍ପରକୁ ବୁଝିବା ପାଇଁ ଚେଷ୍ଟା କର। ପରସ୍ପରକୁ ଭାଇ ଭଉଣୀ ଭଳି ଭଲ ପାଅ। ସଦୟ ଓ ନମ୍ର ହୁଅ। ୯ତୁମ୍ଭ ପ୍ରତି ମନ୍ଦ କାମ କରିଥିବା ଲୋକକୁ ଆକ୍ରମଣ କରିବା

ଉଦ୍ଦେଶ୍ୟରେ କୌଣସି ଲୋକ ପ୍ରତି ମନ୍ଦ କାମ କର
ନାହିଁ। ବା ତୁମ୍ଭକୁ ଖରାପ କଥା କହିଥିବା ଯୋଗୁ କୌଣସି
ଲୋକକୁ ତା' ବଦଳରେ ମନ୍ଦ କଥା କୁହ ନାହିଁ। ତା'
ବଦଳରେ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କର ଯେ, ସେ
ତା'ଙ୍କୁ ଆଶୀର୍ବାଦ କରିବେ। ତୁମ୍ଭେ ନିଜେ ଆଶୀର୍ବାଦ
ଗ୍ରହଣ କରିବା ପାଇଁ ଆହ୍ୱାନ ପାଇଥିବାରୁ ଏପରି କର।
୧୦ଶାସ୍ତ୍ର କୁହେ:

"ଯେଉଁ ଲୋକ ଜୀବନକୁ ଭଲ ପାଇବାକୁ ଚାହେଁ
ଓ ଭଲ ଦିନଗୁଡ଼ିକୁ ଉପଭୋଗ କରିବାକୁ ଚାହେଁ
ସେ ମନ୍ଦକଥା କହିବା ଓ ମିଛ କଥା କହିବା ବନ୍ଦ
କରିବା ଉଚିତ।
୧୧ ସେ ମନ୍ଦ କାର୍ଯ୍ୟ ନିଶ୍ଚୟ ବନ୍ଦ କରୁ ଓ ଭଲ କାମ
କରୁ। ସେ ଶାନ୍ତି ପାଇବା ପାଇଁ ଲକ୍ଷ୍ୟ ରଖି
ଚେଷ୍ଟା କରିବା ଉଚିତ।
୧୨ ଭଲ ଲୋକମାନଙ୍କୁ ପ୍ରଭୁ ଦେଖନ୍ତି, ସେମାନଙ୍କର
ପ୍ରାର୍ଥନା ସବୁ ସେ ଶୁଣନ୍ତି। କିନ୍ତୁ ମନ୍ଦ କାମ
କରୁଥିବା ଲୋକଙ୍କର ସେ ବିରୋଧୀ ଅଟନ୍ତି।"
ଗୀତସଂହିତା ୩୪:୧୨-୧୬

୧୩ଯଦି ତୁମ୍ଭେ ସବୁବେଳେ ଭଲ କରିବା ପାଇଁ ଚେଷ୍ଟା
କରୁଥାଅ, ତାହେଲେ କୌଣସି ଲୋକ ତୁମ୍ଭକୁ ଆଘାତ
କରି ପାରିବ ନାହିଁ। ୧୪କିନ୍ତୁ ତୁମ୍ଭେ ଭଲ କାମ ପାଇଁ
ଦୁଃଖ ଭୋଗିପାର। ଯଦି ଏପରି ଘଟେ, ତାହେଲେ ତୁମ୍ଭେ
ହେଉଛ ଆଶୀର୍ବାଦର ପାତ୍ର। "ଯେଉଁ ଲୋକମାନେ ତୁମ୍ଭକୁ
ଯାତନା ଦିଅନ୍ତି ସେମାନଙ୍କୁ ଭୟ କର ନାହିଁ, କିଅବା
ଚିନ୍ତିତ ହୁଅ ନାହିଁ।"* ୧୫କିନ୍ତୁ ତୁମ୍ଭେ ପବିତ୍ର ଭାବରେ
ପ୍ରଭୁ ଖ୍ରୀଷ୍ଟଙ୍କୁ ନିଜ ହୃଦୟରେ ଧରି ରଖ। ତୁମ୍ଭର
ଭରସାର କାରଣ ବିଷୟରେ କେହି ତୁମ୍ଭକୁ ପ୍ରଶ୍ନ କଲେ
ତାହାକୁ ବୁଝାଇବା ପାଇଁ ସର୍ବଦା ପ୍ରସ୍ତୁତ ରହିଥାଅ। ୧୬କିନ୍ତୁ
ତୁମ୍ଭେ ସେମାନଙ୍କୁ ଭଦ୍ର ଭାବରେ ଓ ନମ୍ର ଭାବରେ
ବୁଝାଅ। ତୁମ୍ଭେ ସବୁବେଳେ ଅନୁଭବ କରିବା ଉଚିତ ଯେ,
ତୁମ୍ଭେ ଠିକ କାମ କରୁଛ। ଏପରି କଲେ, ଯେଉଁମାନେ
ତୁମ୍ଭ ବିରୁଦ୍ଧରେ ମନ୍ଦ କଥା କହୁଛନ୍ତି, ସେମାନେ ଲଜ୍ଜିତ
ହେବେ। ତୁମ୍ଭେ ଖ୍ରୀଷ୍ଟଙ୍କଠାରେ ଥାଇ ଉତ୍ତମ ଜୀବନ
କାଟୁଥିବାରୁ ସେମାନେ ମନ୍ଦ କଥାଗୁଡ଼ିକ କୁହନ୍ତି। ସେମାନେ
ତୁମ୍ଭ ବିଷୟରେ ମନ୍ଦ କଥା କହିଥିବା ହେତୁ ଲଜ୍ଜିତ
ହେବେ। ୧୭ଭଲ କାମ କରି ଯାତନା ସହିବା ମନ୍ଦ କାମ
କରିବାଠାରୁ ଉତ୍ତମ। ଏହା ଯଦି ପରମେଶ୍ୱରଙ୍କର ଇଚ୍ଛା,
ତେବେ ଏହାହିଁ ଭଲ। ୧୮ଖ୍ରୀଷ୍ଟ ନିଜେ ତୁମ୍ଭ ପାଇଁ ମଲେ।
ସେହି ମୃତ୍ୟୁ ତୁମ୍ଭର ପାପ ପାଇଁ ମୂଲ୍ୟ ଦେଲା। ସେ
ନିଜେ ଦୋଷୀ ନ ଥିଲେ କିନ୍ତୁ ଦୋଷୀ ଲୋକଙ୍କ ଲାଗି
ମୃତ୍ୟୁ ବରଣ କଲେ। ସେ ତୁମ୍ଭ ସମସ୍ତଙ୍କୁ ପରମେଶ୍ୱରଙ୍କ
ପାଖକୁ ଆଣିବା ପାଇଁ ଏପରି କଲେ। ତାହାଙ୍କର ଶରୀରକୁ
ବଧ କରାଗଲା, କିନ୍ତୁ ଆତ୍ମାରେ ସେ ପୁନର୍ଜୀବିତ ହେଲେ,
୧୯ଏବଂ ଆତ୍ମାରେ ସେ ଗଲେ ଓ ବନ୍ଦୀ ଆତ୍ମାମାନଙ୍କୁ
ଉପଦେଶ ପ୍ରଦାନ କଲେ। ୨୦ବହୁ ପୂର୍ବରୁ ନୋହଙ୍କ
ସମୟରେ ଏହି ଆତ୍ମାଗୁଡ଼ିକ ପରମେଶ୍ୱରଙ୍କ ଅବାଧ
ହୋଇଥିଲେ। ନୋହ ତାହାଙ୍କ ଜାହାଜ ତିଆରି କଲା
ପର୍ଯ୍ୟନ୍ତ ପରମେଶ୍ୱର ଧୈର୍ଯ୍ୟ ସହିତ ଅପେକ୍ଷା କରୁଥିଲେ।
ସେହି ଜାହାଜରେ ଅଳ୍ପ କେତେ ଜଣ, ମାତ୍ର ଆଠ ଜଣ
ଜଳରୁ ରକ୍ଷା ପାଇ ପାରିଲେ। ୨୧ସେହି ଜଳ ବାପ୍ତିସ୍ମ
ସଦୃଶ ତୁମ୍ଭକୁ ଏବେ ରକ୍ଷା କରୁଛି। ଶରୀରର ମଇଳା
ସଫା କରିବା ବାପ୍ତିସ୍ମ ନୁହେଁ। ମାତ୍ର ବାପ୍ତିସ୍ମ ହେଉଛି,
ପରମେଶ୍ୱରଙ୍କୁ ଏକ ହୃଦୟ ମାଗିବା। ଯୀଶୁ ମୃତ୍ୟୁରୁ
ଜୀବିତ ହୋଇଥିବାରୁ ଏହା ତୁମ୍ଭକୁ ରକ୍ଷା କରୁଛି। ୨୨ଏବେ
ଯୀଶୁ ସ୍ୱର୍ଗକୁ ଗଲେଣି। ସେ ପରମେଶ୍ୱରଙ୍କ ଡାହାଣରେ
ବିରାଜମାନ। ସେ ସେଠାରେ ସ୍ୱର୍ଗଦୂତ, ସମସ୍ତ କ୍ଷମତା ଓ
ଶକ୍ତିଗୁଡ଼ିକର ଶାସକ ଅଟନ୍ତି।

### ପରିବର୍ତ୍ତିତ ଜୀବନ

୪ ଖ୍ରୀଷ୍ଟ ନିଜ ଶରୀରରେ ଥିଲାବେଳେ ଯାତନା ପାଇଲେ।
ଅତଏବ ତାହାଙ୍କର ଯେଉଁଭଳି ଚିନ୍ତାଧାରା ଥିଲା, ତାହା
ଦ୍ୱାରା ତୁମ୍ଭେ ଆପଣାକୁ ଶକ୍ତିଯୁକ୍ତ କର। ଯେଉଁ ଲୋକ
ନିଜ ଶରୀରରେ ଯାତନା ଭୋଗ କଲା, ସେ ପାପରୁ
ନିବୃତ୍ତ ହୋଇଛି। ୨ତୁମ୍ଭେ ଏପରି ଭାବରେ ନିଜକୁ ଶକ୍ତିଶାଳୀ
କର, ଯେପରି ତୁମ୍ଭେ ପରମେଶ୍ୱରଙ୍କ ଇଚ୍ଛାନୁସାରେ
ଜୀବନଯାପନ କରିବ, ଲୋକମାନଙ୍କ ଇଚ୍ଛାରେ, ମନ୍ଦକାର୍ଯ୍ୟ
କରି, ଜୀବନଯାପନ କରିବ ନାହିଁ। ୩ଅତୀତରେ ଅବିଶ୍ୱାସୀ
ଲୋକଙ୍କ କଥାରେ କାମ କରି ତୁମ୍ଭେ ଅନେକ ସମୟ
ନଷ୍ଟ କରିସାରିଛ। ତୁମ୍ଭେ ଯୌନପାପ କରୁଥିଲ। ନିଜ
ଇଚ୍ଛାନୁସାରେ ମନ୍ଦକାମ କରୁଥିଲ। ତୁମ୍ଭେ ମାତାଲ ହେଉଥିଲ,
ନାନାଦି ହିଂସ୍ରକ ଓ ଧ୍ୱଂସର କାର୍ଯ୍ୟ କରୁଥିଲ, ମଦ୍ୟପାନ
ଦଳରେ ଯୋଗ ଦେଉଥିଲ, ଓ ମୂର୍ତ୍ତିମାନଙ୍କୁ ଉପାସନା କରି
ମନ୍ଦକାମ କରୁଥିଲ। ୪ସେହି ଅବିଶ୍ୱାସୀମାନେ ଆଶ୍ଚର୍ଯ୍ୟ
ହେଉଛନ୍ତି ଯେ ବର୍ତ୍ତମାନ ତୁମ୍ଭେ ସେମାନଙ୍କ ଭଳି ହିଂସ୍ରକ
ଓ ଧ୍ୱଂସକାରୀ କାମମାନ କରୁନାହିଁ। ୫ଅତଏବ ସେମାନେ
ତୁମ୍ଭ ବିଷୟରେ ମନ୍ଦକଥା କହୁଛନ୍ତି। କିନ୍ତୁ ସେମାନଙ୍କୁ
ସେମାନଙ୍କ କୃତ କର୍ମ ଲାଗି ଉତ୍ତର ଦେବାକୁ ହେବ।
ଯେଉଁ ଖ୍ରୀଷ୍ଟ ମୃତ ଓ ଜୀବିତ ଉଭୟର ବିଚାର କରିବାକୁ
ପ୍ରସ୍ତୁତ, ତାହାଙ୍କ ନିକଟରେ ସେମାନଙ୍କୁ ସମସ୍ତ କର୍ମର
ହିସାବ ଦେବାକୁ ହେବ। ୬ଯେଉଁ ଲୋକମାନେ ବର୍ତ୍ତମାନ
ମୃତ, ସେମାନଙ୍କୁ ସୁସମାଚାର କୁହାଯାଇଥିଲା, କାରଣ ସବୁ
ଲୋକଙ୍କର ବିଚାର ହେବା ଭଳି ସେମାନଙ୍କର (ମୃତମାନଙ୍କର)
ମଧ୍ୟ ବିଚାର ହେବ। ସେମାନେ ଜୀବିତ ଥିଲାବେଳେ ଯାହା
କିଛି କରିଥିଲେ, ସେହି ଅନୁସାରେ ବିଚାରିତ ହେବେ।
କିନ୍ତୁ ସେମାନେ ଯେପରି ପରମେଶ୍ୱରଙ୍କ ଭଳି ଆତ୍ମାରେ
ଜୀବିତ ହେବେ, ଏଥିପାଇଁ ସେମାନଙ୍କ ନିକଟରେ ସୁସମାଚାର
ପ୍ରଚାରିତ ହୋଇଥିଲା।

### ପରମେଶ୍ୱରଙ୍କ ଦାନଗୁଡ଼ିକର ଭଲ ତତ୍ତ୍ୱାବଧାରକ ହୁଅ

୭ସବୁ ବିଷୟ ସମାପ୍ତ ହେବାର ସମୟ ନିକଟତର

**"ଯେଉଁ ... ହୁଅନାହିଁ"** ଯିଶାଇୟ ୮:୧୨

ହେଲାଣି। ଅତଏବ ନିଜର ମନକୁ ଶୁଚି ରଖି ଏବଂ ନିଜକୁ
ସଂଯତ କରି। ଏହା ତୁମ୍ଭକୁ ପ୍ରାର୍ଥନା କରିବାରେ ସାହାଯ୍ୟ
କରିବ। ୮ସବୁଠାରୁ ବଡ଼ କଥା ହେଲା ଯେ, ପରସ୍ପରକୁ
ନିବିଡ଼ ଭାବେ ପ୍ରେମ କର। ୯ପ୍ରେମ ଅନେକ ପାପ
ଆଚ୍ଛାଦିତ କରେ। କୌଣସି ପ୍ରକାରର ଆପତ୍ତି ନ ଉଠାଇ
ପରସ୍ପରକୁ ନିଜ ଘରକୁ ସ୍ୱାଗତ ଜଣାଅ। ୧୦ତୁମ୍ଭ ମଧ୍ୟରୁ
ପ୍ରତ୍ୟେକେ ଗୋଟିଏ ଗୋଟିଏ ଆଧ୍ୟାତ୍ମିକ ଦାନ
ପରମେଶ୍ୱରଙ୍କଠାରୁ ପାଇଛ। ପରମେଶ୍ୱର ଅନେକ ପ୍ରକାରେ
ତାହାଙ୍କର ଅନୁଗ୍ରହ ତୁମ୍ଭକୁ ଦେଖାଇଛନ୍ତି। ତୁମ୍ଭେ ତାହାଙ୍କର
ଦାନଗୁଡ଼ିକୁ ଦାୟିତ୍ୱପୂର୍ଣ୍ଣ ସହିତ ପରମେଶ୍ୱରଙ୍କ ସେବକ
ଭଳି ବ୍ୟବହାର କର। ଅତଏବ ଭଲ ସେବକ ହୋଇ
ପରସ୍ପରର ସେବାରେ ସେଗୁଡ଼ିକୁ ଲଗାଅ। ୧୧ଯେଉଁ ଲୋକ
କହିବାକୁ ଚାହେଁ, ସେ ପରମେଶ୍ୱରଙ୍କ ବାକ୍ୟରୁ କଥା
କହୁ। ଯେଉଁ ଲୋକ ସେବା କରିବ, ସେ ପରମେଶ୍ୱରଙ୍କ
ପ୍ରଦତ୍ତ ଶକ୍ତି ସାହାଯ୍ୟରେ ସେବା କରୁ। ତୁମ୍ଭେ ଏହି ସବୁ
କାମ ଏପରି ଭାବରେ କରିବା ଉଚିତ ଯେ, ଖ୍ରୀଷ୍ଟଙ୍କ
ମାଧ୍ୟମରେ ଯେପରି ପରମେଶ୍ୱର ସମସ୍ତ ବିଷୟରେ ପ୍ରଶଂସା
ପାଇବେ। କ୍ଷମତା ଓ ମହିମା ସଦାସର୍ବଦା ପାଇଁ ତାହାଙ୍କର
ଅଟେ। ଆମେନ୍।

### ଖ୍ରୀଷ୍ଟିୟାନ ଭାବରେ ଯାତନା ସହିବା

୧୨ମୋ ମିତ୍ରଗଣ, ତୁମ୍ଭେମାନେ ବର୍ତ୍ତମାନର ଦୁଃଖ
ସହୁଥିବାରୁ ଆଶ୍ଚର୍ଯ୍ୟ ମନେକରନାହିଁ। ଏହି ଦୁଃଖଭୋଗ
ତୁମ୍ଭମାନଙ୍କର ବିଶ୍ୱାସ ପରୀକ୍ଷା କରୁଛି। ଭାବନାହିଁ ଯେ ତୁମ୍ଭ
ପ୍ରତି କିଛି ଆଶ୍ଚର୍ଯ୍ୟ କଥା ଘଟୁଛି। ୧୩ବରଂ ତୁମ୍ଭେ ଖୁସି
ହେବା ଉଚିତ ଯେ, ତୁମ୍ଭେ ଖ୍ରୀଷ୍ଟଙ୍କର ଯାତନାର ସହଭାଗୀ
ହୋଇଛ। ଖ୍ରୀଷ୍ଟ ନିଜର ମହିମା ପ୍ରକାଶ କଲାବେଳେ ତୁମ୍ଭେ
ଖୁସି ହେବ ଓ ଆନନ୍ଦରେ ପୂର୍ଣ୍ଣ ହେବ। ୧୪ଖ୍ରୀଷ୍ଟଙ୍କୁ
ଅନୁସରଣ କରୁଛ ବୋଲି ଲୋକେ ତୁମ୍ଭକୁ ମନ୍ଦକଥା
କହିଲେ, ତୁମ୍ଭେ ଧନ୍ୟ ବୋଲି ଜାଣିବ। ତୁମ୍ଭ ଭିତରେ
ଗୌରବମୟ ଆତ୍ମା ଅଛନ୍ତି ବୋଲି ତୁମ୍ଭେ ଧନ୍ୟ। ତାହା
ହିଁ ହେଉଛି ପରମେଶ୍ୱରଙ୍କ ଆତ୍ମା। ୧୫ତୁମ୍ଭମାନଙ୍କ ଭିତରୁ
କେହି ହତ୍ୟାକାରୀ ବା ଚୋର ବା ଦୁଷ୍କର୍ମକାରୀ ବା
ଅନ୍ୟମାନଙ୍କ କାରବାରରେ ମୁଣ୍ଡ ଖେଳାଇଲା ଭଳି ଲୋକ
ନ ଥାଉ। ସେହି ଭଳି କାମ କଲେ, ଜଣେ ଦୁଃଖ
ଭୋଗିବ। ତୁମ୍ଭ ଭିତରୁ କେହି ଏପରି କାର୍ଯ୍ୟ କରି ଯାତନା
ନ ଭୋଗୁ। କିନ୍ତୁ ଜଣେ କେହି ଖ୍ରୀଷ୍ଟିୟାନ ହେବାରୁ
ଯାତନା ପାଇଲେ, ଲଜ୍ଜିତ ନ ହେଉ। ୧୬ତୁମ୍ଭେ ସେହି
(ଖ୍ରୀଷ୍ଟିୟାନ) ନାମଟି ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ ଦିଅ।
୧୭ଏବେ ବିଚାରର ସମୟ ଆସିଛି। ତାହା ପରମେଶ୍ୱରଙ୍କ
ପରିବାରଠାରୁ ଆରମ୍ଭ ହେବ। ଯଦି ସେହି ବିଚାର ଆମ୍ଭଠାରୁ
ଆରମ୍ଭ ହୁଏ, ତାହାହେଲେ ଯେଉଁମାନେ ପରମେଶ୍ୱରଙ୍କ
ସୁସମାଚାର ଗ୍ରହଣ କରି ନାହାଁନ୍ତି, ସେମାନଙ୍କର କି ଅବସ୍ଥା
ହେବ? ୧୮"ଉତ୍ତମ ଲୋକ ରକ୍ଷା ପାଇବା ବଡ଼ କଠିଣ।
ତାହେଲେ ଯେଉଁମାନେ ପରମେଶ୍ୱରଙ୍କ ବିରୋଧୀ ଓ ପାପରେ
ପୂର୍ଣ୍ଣ ସେମାନଙ୍କର କ'ଣ ହେବ?"* ୧୯ଅତଏବ ଯେଉଁ
ଲୋକମାନେ ପରମେଶ୍ୱରଙ୍କ ଇଚ୍ଛାନୁସାରେ ଯାତନା ଭୋଗ
କରୁଛନ୍ତି, ସେମାନେ ତାହାଙ୍କୁ ସେମାନଙ୍କର ଆତ୍ମା ବିଶ୍ୱାସପୂର୍ବକ
ସମର୍ପଣ କରି ଦେବା ଉଚିତ। ପରମେଶ୍ୱର ସେମାନଙ୍କୁ
ଗଠନ କରିଛନ୍ତି ଓ ତେଣୁ ସେମାନେ ତାହାଙ୍କୁ ବିଶ୍ୱାସ
କରି ପାରିବେ। ଅତଏବ ସେମାନେ ଭଲ କାମ କରି
ଚାଲିବା ଉଚିତ।

### ପରମେଶ୍ୱରଙ୍କ ମେଷପଲ

୫ ତୁମ୍ଭ ଦଳରେ ଥିବା ପ୍ରାଚୀନମାନଙ୍କୁ ଏବେ ମୋର
କିଛି କହିବାର ଅଛି। ମୁଁ ମଧ୍ୟ ଜଣେ ପ୍ରାଚୀନ। ମୁଁ
ଖ୍ରୀଷ୍ଟଙ୍କର ଯନ୍ତ୍ରଣା ନିଜ ଆଖିରେ ଦେଖିଛି। ଆମ୍ଭକୁ ଯେଉଁ
ମହିମା ଭବିଷ୍ୟତରେ ଦେଖାଇ ଦିଆଯିବ, ସେଥିରେ ମଧ୍ୟ
ମୁଁ ଭାଗ ନେବି। ୨ମୁଁ ତୁମ୍ଭକୁ ଅନୁରୋଧ କରେ ଯେ,
ପରମେଶ୍ୱରଙ୍କ ଯେଉଁ ମେଷଗଣର ଦାୟିତ୍ୱରେ ତୁମ୍ଭେ
ରହିଛ, ସେହି ମେଷ ସମୂହର ତୁମ୍ଭେ ଯତ୍ନ ନେବା
ଉଚିତ। ସେମାନେ ପରମେଶ୍ୱରଙ୍କ ମେଷପଲ। ତୁମ୍ଭେ
ବାଧ୍ୟବାଧକତାରେ ନୁହେଁ, ମାତ୍ର ସ୍ୱଇଚ୍ଛାରେ ପ୍ରତିପାଳନ
କର। ପରମେଶ୍ୱର ତାହାହିଁ ଚାହାଁନ୍ତି। ତୁମ୍ଭେ ସେବା
କରିବାରେ ଆନନ୍ଦ ପାଉଛ ବୋଲି ସେପରି କର, ଧନ
ଲୋଭରେ ତାହା କରନାହିଁ। ୩ଯେଉଁମାନଙ୍କର ଦାୟିତ୍ୱ
ତୁମ୍ଭେ ନେଇଛ, ସେମାନଙ୍କ ପ୍ରତି ନିଷ୍ଠୁର ହୁଅ ନାହିଁ ।
କିନ୍ତୁ ସେମାନଙ୍କ ନିକଟରେ ଆଦର୍ଶ ସ୍ୱରୂପ ହୁଅ।
୪ଯେତେବେଳେ ମୁଖ୍ୟ ମେଷପାଳକ ଆସିବେ, ସେତେବେଳେ
ତୁମ୍ଭେ ମୁକୁଟ ପାଇବ। ସେହି ମୁକୁଟଟି ଅତ୍ୟନ୍ତ ଗୌରବମୟ
ହୋଇଥିବ ଓ ଏହା କେବେହେଲେ ନିଜର ସୌନ୍ଦର୍ଯ୍ୟ
ହରାଇବ ନାହିଁ।

୫ଯୁବକଗଣ, ତୁମ୍ଭମାନଙ୍କୁ ମୋର କିଛି କଥା ମଧ୍ୟ
କହିବାକୁ ଅଛି। ତୁମ୍ଭେ ବୟୋଜ୍ୟେଷ୍ଠମାନଙ୍କ କଥା ମାନିବା
ଉଚିତ। ପରସ୍ପର ପ୍ରତି ବିନମ୍ର ଭାବ ରଖିବା ଉଚିତ।

> "ପରମେଶ୍ୱର ଗର୍ବୀ ଲୋକଙ୍କ ବିରୁଦ୍ଧରେ ଉଠନ୍ତି,
> କିନ୍ତୁ ବିନମ୍ର ଲୋକଙ୍କୁ ଅନୁଗ୍ରହ କରନ୍ତି।"
>
> ହିତୋପଦେଶ ୩:୩୪

୬ଅତଏବ ପରମେଶ୍ୱରଙ୍କ ବଳିଷ୍ଠ ହାତ ତଳେ ନିଜକୁ
ନମ୍ର କର। ତାହେଲେ ଠିକ୍ ସମୟ ଉପସ୍ଥିତ ହେଲେ ସେ
ତୁମ୍ଭକୁ ଉନ୍ନତ କରିବେ। ୭ତୁମ୍ଭର ସମସ୍ତ ଚିନ୍ତା ତାହାଙ୍କ
ଉପରେ ରଖ, କାରଣ ସେ ତୁମ୍ଭର ଯତ୍ନ ନିଅନ୍ତି।

୮ନିଜକୁ ସଂଯତ କର ଓ ସାବଧାନ ରୁହ। ଶୟତାନ
ହେଉଛି ତୁମ୍ଭର ଶତ୍ରୁ। ସେ ଗର୍ଜନ କରୁଥିବା ସିଂହ ଭଳି
କାହାକୁ ମାରି ଖାଇବା ପାଇଁ ଚାରିଆଡ଼େ ଖୋଜି ବୁଲୁଛି।
୯ଶୟତାନର ଅନୁସରଣ କରନାହିଁ। ନିଜ ବିଶ୍ୱାସରେ ଦୃଢ଼
ହୋଇ ରୁହ। ସମଗ୍ର ବିଶ୍ୱରେ ସର୍ବତ୍ର ତୁମ୍ଭ ଭାଇ ଓ
ଭଉଣୀମାନେ ସମାନ ଭାବରେ ତୁମ୍ଭ ଭଳି ଯାତନା ପାଉଛନ୍ତି,
ଏ କଥା ତୁମ୍ଭେ ଜାଣ।

---

**"ଉତ୍ତମ ... କ'ଣ ହେବ?"** ହିତୋପଦେଶ ୧୧:୩୧

୧୦ତୁମ୍ଭେ ଅଳ୍ପ ସମୟ ପାଇଁ ଯାତନା ପାଇବ। କିନ୍ତୁ
ତା'ପରେ ପରମେଶ୍ୱର ସବୁ ଠିକ କରିଦେବେ। ସେ
ତୁମ୍ଭକୁ ଶକ୍ତିଶାଳୀ କରିବେ। ସେ ତୁମ୍ଭର ଭାରବହନ
କରିବେ ଓ ପଡ଼ିବା ବେଳେ ତୁମ୍ଭକୁ ଉଠାଇବେ। ସେଇ
ପରମେଶ୍ୱର ତୁମ୍ଭକୁ ସମସ୍ତ ଅନୁଗ୍ରହ ଦିଅନ୍ତି। ଖ୍ରୀଷ୍ଟ
ଯୀଶୁଙ୍କଠାରେ ତାହାଙ୍କ ମହିମାରେ ଅଂଶୀଦାର ହେବା ଲାଗି
ସେ ତୁମ୍ଭକୁ ଡାକି ଅଛନ୍ତି। ସେହି ମହିମା ଅନନ୍ତ କାଳ
ଧରି ରହିବ। ୧୧ସଦା ସର୍ବଦା ପାଇଁ ସମସ୍ତ କ୍ଷମତା
ତାହାଙ୍କର ଅଟେ, ଆମେନ୍।

**ଶେଷ ଅଭିନନ୍ଦନ**

୧୨ସିଲ୍ୱାନ୍ ସାହାଯ୍ୟରେ ମୁଁ ଏହି ଛୋଟ ପତ୍ରଟି ଲେଖିଲି।
ସେ ଖ୍ରୀଷ୍ଟରେ ଜଣେ ବିଶ୍ୱସ୍ତ ଭ୍ରାତା ବୋଲି ମୁଁ ଜାଣେ।
ଏହା ତୁମ୍ଭକୁ ସାନ୍ତ୍ୱନା ଦେବା ଓ ଉତ୍ସାହିତ କରିବା ପାଇଁ
ମୁଁ ଲେଖିଥିଲି। ମୁଁ ତୁମ୍ଭକୁ କହିବାକୁ ଚାହିଁଥିଲି ଯେ ଏହା
ହେଉଛି ପରମେଶ୍ୱରଙ୍କ ଅନୁଗ୍ରହ। ସେହି ଅନୁଗ୍ରହରେ ଦୃଢ଼
ହୋଇ ରୁହ।

୧୩ବାବିଲୋନ ମଣ୍ଡଳୀ ତୁମ୍ଭମାନଙ୍କୁ ନମସ୍କାର ଜଣାଉଛନ୍ତି।
ତୁମ୍ଭ ଭଳି ସେମାନେ ମଧ୍ୟ ମନୋନୀତ। ଯୀଶୁ ଖ୍ରୀଷ୍ଟଙ୍କ
ବିଶ୍ୱାସୀ ମୋ ପୁତ୍ର ମାର୍କ ନମସ୍କାର ଜଣାଉଛନ୍ତି।
୧୪ଯେତେବେଳେ ଦେଖା ସାକ୍ଷାତ ହେଉଛି, ପରସ୍ପରକୁ
ପ୍ରେମ ଚୁମ୍ବନ ଦ୍ୱାରା ନମସ୍କାର କର।

ଯୀଶୁ ଖ୍ରୀଷ୍ଟଙ୍କଠାରେ ଥିବା ତୁମ୍ଭ ସମସ୍ତଙ୍କୁ ଶାନ୍ତି ମିଳୁ।
ଆମେନ୍।

# ପିତରଙ୍କ ଦ୍ୱିତୀୟ ପତ୍ର

୧ ଯୀଶୁଖ୍ରୀଷ୍ଟଙ୍କ ସେବକ ଓ ପ୍ରେରିତ, ଶିମିୟୋନ
ପିତର ତୁମ୍ଭମାନଙ୍କୁ, ଯେଉଁମାନଙ୍କର ବିଶ୍ୱାସ ଅତି
ବହୁମୂଲ୍ୟ, ଏହି ପତ୍ରଟି ଲେଖୁଅଛି। ଆମ୍ଭର ପରମେଶ୍ୱର
ଓ ତ୍ରାଣକର୍ତ୍ତା ଯୀଶୁ ଖ୍ରୀଷ୍ଟଙ୍କ ଧାର୍ମିକତା ହେତୁ ତୁମ୍ଭେମାନେ
ଏହି ବିଶ୍ୱାସ ପାଇଅଛ। ପରମେଶ୍ୱର ଯାହା ଉତ୍ତମ, ତାହା
କରନ୍ତି।
୨ଅନୁଗ୍ରହ ଓ ଶାନ୍ତି ପ୍ରଚୁର ଭାବେ ତୁମ୍ଭକୁ ମିଳୁ।
ତୁମ୍ଭେମାନେ ପ୍ରକୃତରେ ପରମେଶ୍ୱରଙ୍କୁ ଓ ଆମ୍ଭମାନଙ୍କର
ପ୍ରଭୁ ଯୀଶୁଙ୍କୁ ଜାଣିଥିବାରୁ ତୁମ୍ଭେ ଅନୁଗ୍ରହ ଓ ଶାନ୍ତି
ପାଇବ।

### ପରମେଶ୍ୱର ସବୁ ଆବଶ୍ୟକୀୟ ବିଷୟ ଦେଇଛନ୍ତି

୩ଯୀଶୁଙ୍କଠାରେ ପରମେଶ୍ୱରଙ୍କ ଶକ୍ତି ଅଛି। ଆମ୍ଭର
ଜୀବନ-ଯାପନ ପାଇଁ ଓ ପରମେଶ୍ୱରଙ୍କୁ ସେବା କରିବା
ପାଇଁ ଯାହା କିଛି ଦରକାର ସେ ସବୁ ଆପଣା ଶକ୍ତିରେ
ଆମ୍ଭକୁ ଦେଇଛନ୍ତି। ଆମ୍ଭେ ତାହାଙ୍କୁ ଜାଣିଛୁ ବୋଲି
ଏହାସବୁ ପାଇଛୁ। ଯୀଶୁ ଆପଣା ମହିମା ଓ ଉତ୍ତମତାରେ
ଆମ୍ଭମାନଙ୍କୁ ଡାକିଛନ୍ତି। ୪ଯୀଶୁ ନିଜ ମହିମା ଓ ଉତ୍ତମତା
ହେତୁ, ପ୍ରତିଜ୍ଞା କରିଥିବା ଅତି ମୂଲ୍ୟବାନ୍ ଓ ମହତ
ବିଷୟଗୁଡ଼ିକ ଆମ୍ଭକୁ ଦେଇଛନ୍ତି। ସେହି ଦାନଗୁଡ଼ିକ
ସାହାଯ୍ୟରେ ତୁମ୍ଭେ ପରମେଶ୍ୱରଙ୍କ ଆଚରଣର ଅଂଶ
ହୋଇପାରିବ। ଏହାଦ୍ୱାରା ଜଗତରେ ଥିବା ମନ୍ଦ ବିଷୟଗୁଡ଼ିକ
ତୁମ୍ଭକୁ ନଷ୍ଟ କରିପାରିବ ନାହିଁ।
୫ଯେହେତୁ ଏହି ଆଶୀର୍ବାଦଗୁଡ଼ିକ ତୁମ୍ଭଠାରେ ଅଛି,
ତେଣୁ ତୁମ୍ଭେ ନିଜ ଜୀବନରେ ଏଗୁଡ଼ିକ ଅଧିକ ପାଇବା
ପାଇଁ ପାରୁପର୍ଯ୍ୟନ୍ତ ପରିଶ୍ରମ କରିବା ଉଚିତ। ନିଜ
ବିଶ୍ୱାସରେ ଉତ୍ତମ ଗୁଣ, ନିଜ ଉତ୍ତମଗୁଣରେ ଜ୍ଞାନ,
୬ଜ୍ଞାନରେ ଆତ୍ମସଂଯମତା, ଆତ୍ମସଂଯମତାରେ ଧୈର୍ଯ୍ୟ ଓ
ଧୈର୍ଯ୍ୟରେ ପରମେଶ୍ୱରଙ୍କ ସେବା, ୭ପରମେଶ୍ୱରଙ୍କ ସେବାରେ
ଖ୍ରୀଷ୍ଟ, ଭାଇ ଓ ଭଉଣୀମାନଙ୍କ ପ୍ରତି ଦୟାଭାବ, ଓ ଏହି
ଦୟାରେ ପ୍ରେମକୁ ଯୋଗ କର। ୮ଯଦି ଏସମସ୍ତ ବିଷୟ
ତୁମ୍ଭ ଭିତରେ ଅଛି ଓ ବୃଦ୍ଧି ପାଇ ଚାଲିଛି, ତା'ହେଲେ
ତୁମ୍ଭେ କେବେହେଲେ ଶିଥିଳ ହେବ ନାହିଁ। ସେଗୁଡ଼ିକ
ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ବିଷୟକ ଜ୍ଞାନରେ ପୂର୍ଣ୍ଣତା
ପାଇବା ପାଇଁ କେବେହେଲେ ତୁମ୍ଭକୁ ମୂଲ୍ୟହୀନ ହେବାକୁ
ଦେବ ନାହିଁ। ୯ଯଦି କୌଣସି ଲୋକଠାରେ ଏଗୁଡ଼ିକ
ନାହିଁ, ତାହେଲେ ସେ ସ୍ପଷ୍ଟ ଭାବେ ଦେଖି ପାରିବ ନାହିଁ।
ସେ ଲୋକ ଅନ୍ଧ। ସେ ପୂର୍ବକୃତ ପାପରୁ କ୍ଷମା ପାଇଅଛି
ବୋଲି ଭୁଲିଯାଇଛି।
୧୦ମୋ ଭାଇ(ଓ ଭଉଣୀ)ମାନେ, ପରମେଶ୍ୱର ତୁମ୍ଭକୁ
ଡାକି ମନୋନୀତ କରି ନିଜର କରିଛନ୍ତି। ତୁମ୍ଭର ସର୍ବୋତ୍ତମ
କାର୍ଯ୍ୟ ଦ୍ୱାରା ପ୍ରମାଣିତ କରିବାକୁ ଚେଷ୍ଟା କର ଯେ, ତୁମ୍ଭେ
ପରମେଶ୍ୱରଙ୍କ ଦ୍ୱାରା ଡକା ଯାଇଛ ଓ ବଛା ଯାଇଛ ଏବଂ
ଏପରି କାର୍ଯ୍ୟ କଲେ ତୁମ୍ଭେ କେବେହେଲେ ଝୁଣ୍ଟିବ ନାହିଁ।
୧୧ଆମ୍ଭ ପ୍ରଭୁ ଓ ତ୍ରାଣକର୍ତ୍ତା ଯୀଶୁ ଖ୍ରୀଷ୍ଟଙ୍କ ରାଜ୍ୟରେ
ତୁମ୍ଭକୁ ସ୍ୱାଗତ କରାଯିବ। ସେହି ରାଜ୍ୟ ଅନନ୍ତକାଳ ସ୍ଥାୟୀ
ଅଟେ।
୧୨ତୁମ୍ଭେ ଏହି କଥା ଜାଣ। ତୁମ୍ଭଠାରେ ବର୍ତ୍ତମାନ ଥିବା
ସତ୍ୟରେ, ତୁମ୍ଭେ ଅତି ଦୃଢ଼ ଅଟ। କିନ୍ତୁ ମୁଁ ସବୁବେଳେ
ଏହି କଥାଗୁଡ଼ିକ ମନେ ପକାଇବା ପାଇଁ ସାହାଯ୍ୟ କରୁଥିବି।
୧୩ମୁଁ ଶରୀରରେ ବଞ୍ଚିଥିବା ପର୍ଯ୍ୟନ୍ତ, ଏକଥା ତୁମ୍ଭକୁ ମନେ
ପକାଉଥିବାରେ ସାହାଯ୍ୟ କରିବି, ଏହା ଉଚିତ ବୋଲି ମୁଁ
ମନେ କରେ। ୧୪ମୁଁ ଜାଣେ ଯେ, ମୁଁ ଶୀଘ୍ର ମୋର
ଶରୀର ତ୍ୟାଗ କରିବି। ଆମ୍ଭ ପ୍ରଭୁ ଯୀଶୁ ଖ୍ରୀଷ୍ଟ ମୋତେ
ତାହା ଦେଖାଇଛନ୍ତି। ୧୫ତୁମ୍ଭେମାନେ ଏହିକଥା ସର୍ବଦା
ମନେରଖିବା ପାଇଁ ମୁଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିବି। ମୁଁ
ଚାଲି ଗଲା ପରେ ମଧ୍ୟ ତୁମ୍ଭେ ଯେପରି ଏକଥା ମନେ
ରଖିବ, ଏହା ମୁଁ ଚାହେଁ।

### ଆମ୍ଭେ ଖ୍ରୀଷ୍ଟଙ୍କ ମହିମା ଦେଖିଲୁ

୧୬ଆମ୍ଭେ ଆମ୍ଭ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଶକ୍ତି ବିଷୟରେ
ତୁମ୍ଭମାନଙ୍କୁ କହିଛୁ। ତାହାଙ୍କର ଆସିବା ବିଷୟ ତୁମ୍ଭମାନଙ୍କୁ
କହିଛୁ। ସେଗୁଡ଼ିକ ଲୋକମାନଙ୍କ ବିଜ୍ଞାନ ପାଇଁ ମନ ଗଢ଼ା
ଗଳ୍ପ ନୁହେଁ। ଆମ୍ଭେ ନିଜେ ନିଜ ଆଖିରେ ଯୀଶୁଙ୍କର
ମହାନତା ଦେଖିଛୁ। ୧୭ଯେତେବେଳେ ପରମପିତା
ପରମେଶ୍ୱରଙ୍କ ଠାରୁ ଯୀଶୁ ସମ୍ମାନ ଓ ମହିମା ପାଇଥିଲେ,
ସେତେବେଳେ ଯୀଶୁ ପିତା ପରମେଶ୍ୱରଙ୍କ ମହାଗୌରବଯୁକ୍ତ
ବାଣୀ ଶୁଣିଥିଲେ। ସେହି ସ୍ୱର କହିଥିଲା: "ଏ ମୋର
ପୁତ୍ର, ମୁଁ ତାହାକୁ ପ୍ରେମ କରେ। ମୁଁ ତା' ଉପରେ ଅତି
ପ୍ରସନ୍ନ।" ୧୮ଆମ୍ଭେ ସେହି ବାଣୀ ଶୁଣିଛୁ। ଆମ୍ଭେମାନେ
ଯୀଶୁଙ୍କ ସହିତ ପବିତ୍ର ପର୍ବତରେ ଥିଲାବେଳେ ଏହି ବାଣୀ
ଆକାଶରୁ ଆସିଥିଲା।
୧୯ଭବିଷ୍ୟଦ୍‌ବକ୍ତା କହିଥିବା କଥାଗୁଡ଼ିକ ବିଷୟରେ ସୁନିଶ୍ଚିତ
ହେବା ପାଇଁ ଏହା ଅଧିକ ସାହାଯ୍ୟ କରେ। ଭବିଷ୍ୟଦ୍‌ବକ୍ତାମାନେ
ଯାହା ଯାହା କହିଛନ୍ତି, ସେଗୁଡ଼ିକୁ ଯଥାସମ୍ଭବ କାର୍ଯ୍ୟକାରୀ
କରିବା ତୁମ୍ଭ ପାଇଁ ଭଲ। ସେମାନେ ଯାହା କହିଛନ୍ତି
ତାହା ଅନ୍ଧକାରରେ ଜ୍ୟୋତିଃ ତୁଲ୍ୟ ପ୍ରକାଶିତ ହେଲା।
ସକାଳ ହେବା ପର୍ଯ୍ୟନ୍ତ ଓ ପ୍ରଭାତୀ ତାରା ତୁମ୍ଭ ମନରେ

ନୂତନ ଜ୍ୟୋତିଃ ନ ଆଣିବା ପର୍ଯ୍ୟନ୍ତ, ତୁମ୍ଭ ପାଖରେ
ସେହି ଜ୍ୟୋତିଃ ଅଛି। [20]ଶାସ୍ତ୍ରର କୌଣସି ଭାବବାଣୀ
ମନୁଷ୍ୟର ନିଜର ବ୍ୟାଖ୍ୟା ନୁହେଁ। [21]କୌଣସି ଭବିଷ୍ୟତ୍‌ବାଣୀ,
ମନୁଷ୍ୟର ନିଜର ଇଚ୍ଛାରୁ ଜାତ ହୋଇ ନାହିଁ। କିନ୍ତୁ
ଲୋକମାନେ ପବିତ୍ର ଆତ୍ମାଙ୍କ ଦ୍ୱାରା ଚାଳିତ ହୋଇ,
ପରମେଶ୍ୱରଙ୍କଠାରୁ ପ୍ରାପ୍ତ କଥା କହି ଅଛନ୍ତି।

**ଭଣ୍ଡ ଶିକ୍ଷକଗଣ**

**2** ଅତୀତକାଳରେ ପରମେଶ୍ୱରଙ୍କ ଲୋକମାନଙ୍କ ମଧ୍ୟରେ
ମିଥ୍ୟା ଭବିଷ୍ୟଦ୍‌ବକ୍ତା ଥିଲେ। ଏବେ ମଧ୍ୟ ସେହି
ଭଳି ଅଛନ୍ତି। ତୁମ୍ଭ ଦଳରେ କେତେ ଜଣ ଭଣ୍ଡ ଶିକ୍ଷକ
ରହିବେ। ସେମାନେ ଏପରି ଭୁଲ ଶିକ୍ଷା ଦେବେ ଯେ,
ଲୋକେ ନିଜକୁ ହଜାଇ ଦେବେ। ସେମାନେ ଏଭଳି
ଭାବରେ ଶିକ୍ଷା ଦେବେ ଯେ ସେମାନେ ଯେ ଭୁଲ
କରୁଛନ୍ତି, ତାହାତୁମ୍ଭେ ଜାଣିବା କଠିଣ ହେବ। ସେମାନେ
ମୁକ୍ତିଦାତା ଯୀଶୁଙ୍କୁ ଗ୍ରହଣ କରିବାକୁ ମଧ୍ୟ ମନା କରିବେ।
ସେ'ପ୍ରକାରେ ସେମାନେ ନିଜକୁ ଶୀଘ୍ର ନଷ୍ଟ କରିଦେବେ।
[2]ସେମାନେ କରୁଥିବା ମନ୍ଦ କାମକୁ ଅନେକ ଲୋକ
ଅନୁସରଣ କରିବେ। ସେମାନଙ୍କ ହେତୁରୁ ଅନ୍ୟ ଲୋକେ
ମଧ୍ୟ ସତ୍ୟର ମାର୍ଗ ବିଷୟରେ ସମାଲୋଚନା କରିବେ।
[3]ସେହି ଭଣ୍ଡ ଶିକ୍ଷକମାନେ କେବଳ ତୁମ୍ଭର ଧନ ଚାହାଁନ୍ତି।
ସେମାନେ ଖାଲି ମିଛ କଥା କହି ତୁମ୍ଭର ମନ ନେବେ।
ଏହି ଭଣ୍ଡ ଶିକ୍ଷକଙ୍କର ନ୍ୟାୟ ବିଚାର ବହୁ ପୂର୍ବରୁ ପ୍ରସ୍ତୁତ
ହୋଇ ରହିଛି। ପରମେଶ୍ୱର ସେମାନଙ୍କୁ ନଷ୍ଟ କରି
ଦେବେ। ସେମାନେ ତାହାଙ୍କଠାରୁ ରକ୍ଷା ପାଇବେ ନାହିଁ।
[4]ଯେତେବେଳେ ସ୍ୱର୍ଗଦୂତମାନେ ପାପ କଲେ, ପରମେଶ୍ୱର
ସେମାନଙ୍କୁ ଦଣ୍ଡ ନ ଦେଇ ଛାଡ଼ିଲେ ନାହିଁ। ପରମେଶ୍ୱର
ସେହି ସ୍ୱର୍ଗଦୂତମାନଙ୍କୁ ନରକକୁ ପଠାଇଦେଲେ। ସେ
ସେମାନଙ୍କୁ ଅନ୍ଧକାର ଗୁମ୍ଫାମାନଙ୍କରେ ପକାଇ ରଖିଲେ।
ବିଚାର ଦିନ ପର୍ଯ୍ୟନ୍ତ ସେମାନେ ସେଠାରେ ପଡ଼ିଥିବେ।
[5]ଅତି ପୂର୍ବକାଳରେ ରହୁଥିବା ମନ୍ଦଲୋକଙ୍କୁ ପରମେଶ୍ୱର
ଦଣ୍ଡ ଦେଇଥିଲେ। ପରମେଶ୍ୱର ଆପଣା ବିରୋଧୀ
ଲୋକମାନଙ୍କ ପାଇଁ ଏକ ପ୍ରଳୟକାରୀ ବନ୍ୟା ଆଣିଥିଲେ।
କିନ୍ତୁ ପରମେଶ୍ୱର ନୋହ ଓ ତାହାଙ୍କ ସହି ଅନ୍ୟ
ସାତଜଣଙ୍କୁ ସେହି ପ୍ରଳୟକାରୀ ବନ୍ୟାରୁ ରକ୍ଷା କରିଥିଲେ।
ଲୋକମାନଙ୍କୁ ନୋହ ଉତ୍ତମ ଜୀବନ କାଟିବାକୁ ଉପଦେଶ
ଦେଉଥିଲେ। [6]ପରମେଶ୍ୱର ଦଣ୍ଡ ସ୍ୱରୂପେ ଦୁଷ୍ଟ ନଗରୀ
ସଦୋମ ଓ ଗମୋରାକୁ ପୋଡ଼ି ପାଉଁଶ କରି ଦେଇଥିଲେ।
ଯେଉଁମାନେ ପରମେଶ୍ୱରଙ୍କ ବିରୋଧୀ, ସେମାନଙ୍କ ପ୍ରତି
କ'ଣ ଘଟିବ, ଏହି ନଗରଗୁଡ଼ିକ ତାହାର ଉଦାହରଣ
ସ୍ୱରୂପ ଅଟେ। [7]କିନ୍ତୁ ସେହି ନଗର ମଧ୍ୟରୁ ପରମେଶ୍ୱର
ଲୋଟକୁ ରକ୍ଷା କଲେ। ସେ ଜଣେ ଅତି ଭଲଲୋକ
ଥିଲେ। ଲୋକମାନଙ୍କର ଦୁଷ୍ଟାଚରଣ ହେତୁ ସେ ଦୁଃଖ
ପାଉଥିଲେ। [8]ଲୋଟ ଜଣେ ଭଲଲୋକ ଥିଲେ। କିନ୍ତୁ
ପ୍ରତିଦିନ ସେହି ମନ୍ଦଲୋକଙ୍କ ମଧ୍ୟରେ ବାସ କରୁଥିଲେ।
ସେମାନଙ୍କର ମନ୍ଦ ବିଷୟଗୁଡ଼ିକୁ ଦେଖି ଓ ଶୁଣି ସେ
ହୃଦୟରେ ଆଘାତ ପାଉଥିଲେ। [9]ପରମେଶ୍ୱର ଏହି ସମସ୍ତ
କାର୍ଯ୍ୟ କଲେ। ଅତଏବ ଯେଉଁମାନେ ତାହାଙ୍କୁ ସେବା
କରୁଛନ୍ତି, ପ୍ରଭୁ ସର୍ବଦା ସେମାନଙ୍କୁ ରକ୍ଷା କରିବେ।
ସମସ୍ୟାରେ ପଡ଼ିଥିଲାବେଳେ ସେ ସେମାନଙ୍କୁ ରକ୍ଷା କରିବେ।
ଏହା ସହିତ, ପ୍ରଭୁ ମନ୍ଦ ଲୋକମାନଙ୍କୁ ବିଚାର ଦିନରେ
ଦଣ୍ଡ ଦେବେ। [10]ଯେଉଁମାନେ ନିଜର ପାପପୂର୍ଣ୍ଣ ପ୍ରକୃତିଗୁଡ଼ିକର
ଇଚ୍ଛା ପୂରଣ ପାଇଁ ମନ୍ଦକାର୍ଯ୍ୟ କରି ଜୀବିତ ରହିଛନ୍ତି ଓ
ପ୍ରଭୁଙ୍କର କର୍ତ୍ତୃତ୍ୱକୁ ଅବମାନନା କରନ୍ତି, ସେମାନେ ଏଭଳି
ଦଣ୍ଡର ଯୋଗ୍ୟ।

ଏହି ଭଣ୍ଡଶିକ୍ଷକମାନେ ମନମୁତାବକ କାର୍ଯ୍ୟ କରନ୍ତି ଓ
ଆପଣା ବିଷୟରେ ଗର୍ବର କଥା କହନ୍ତି। ସେମାନେ
ସ୍ୱର୍ଗଦୂତମାନଙ୍କ ବିରୁଦ୍ଧରେ ମନ୍ଦ କଥା କହିବାକୁ ଭୟ
କରନ୍ତି ନାହିଁ। [11]ଏହି ଭଣ୍ଡ ଶିକ୍ଷକମାନଙ୍କ ତୁଳନାରେ
ସ୍ୱର୍ଗଦୂତମାନେ ଅତ୍ୟଧିକ ଶକ୍ତିଶାଳୀ ଓ ବଳବାନ। କିନ୍ତୁ
ସେମାନେ କେବେହେଲେ ଏହି ଭଣ୍ଡ ଶିକ୍ଷକମାନଙ୍କୁ ଦୋଷୀ
ସାବ୍ୟସ୍ତ କରନ୍ତି ନାହିଁ ବା ସେମାନଙ୍କ ବିରୁଦ୍ଧରେ ମନ୍ଦ
କଥା ପ୍ରଭୁଙ୍କୁ କହନ୍ତି ନାହିଁ। [12]କିନ୍ତୁ ଏହି ଭଣ୍ଡ ଶିକ୍ଷକମାନେ
ନିଜେ ବୁଝିନଥିବା ବିଷୟଗୁଡ଼ିକ ସମ୍ବନ୍ଧରେ ମନ୍ଦକଥା କୁହନ୍ତି।
ଏହି ଭଣ୍ଡଶିକ୍ଷକମାନେ ଚିନ୍ତା କରିବାର ଶକ୍ତି ନ ଥିବା ପଶୁ
ଭଳି ଆଚରଣ କରନ୍ତି, ପୁଣି ବନ୍ୟ ପଶୁମାନଙ୍କ ପରି
ଧରାଯାଇ ମରି ଯିବା ନିମନ୍ତେ ଜନ୍ମ ହୋଇଛନ୍ତି। ସେହି
ପଶୁମାନଙ୍କ ଭଳି ଏହି ଭଣ୍ଡଶିକ୍ଷକ ମାନେ ମଧ୍ୟ ନଷ୍ଟ
ହେବେ। [13]ଏହି ଭଣ୍ଡ ଶିକ୍ଷକମାନେ ଅନେକ ଲୋକଙ୍କୁ
ଦୁଃଖ ଦେଇଛନ୍ତି। ଅତଏବ ସେମାନେ ନିଜେ ଦୁଃଖ
ପାଇବେ। ସେମାନେ କରିଥିବା କାମର ଏହା ହେଉଛି
ପ୍ରତିଦାନ। ଏହି ଭଣ୍ଡ ଶିକ୍ଷକମାନେ ଭାବନ୍ତି ଯେ ସମସ୍ତଙ୍କ
ଆଗରେ ଖୋଲାଖୋଲି ଭାବେ ମନ୍ଦ କାମ କରିବା ଗୋଟିଏ
ଆନନ୍ଦର ବିଷୟ ଅଟେ। ମନ୍ଦ କାମ କରି ସେମାନେ
ଆନନ୍ଦ ଉପଭୋଗ କରନ୍ତି। ତୁମ୍ଭମାନଙ୍କ ସହିତ
ଭୋଜିଉତ୍ସବରେ ସମ୍ମିଳିତ ହେବାବେଳେ, ସେମାନେ ତୁମ୍ଭ
ନିମନ୍ତେ ମଇଳା ଦାଗ ଓ କଳଙ୍କି ଦାଗ ଭଳି ଲଜ୍ଜାର
କାରଣ ସ୍ୱରୂପ ଅଟନ୍ତି। [14]ପ୍ରତ୍ୟେକ ଥର କୌଣସି
ସ୍ତ୍ରୀଲୋକକୁ ଦେଖିଲେ, ସେମାନେ ବ୍ୟଭିଚାର କରିବା ପାଇଁ
ଚାହାଁନ୍ତି। ଏହିଭଳି ଭାବରେ ସେମାନେ ସବୁବେଳେ ପାପ
କରୁଥାନ୍ତି। ସେମାନେ ଦୁର୍ବଳ ଲୋକମାନଙ୍କୁ ପାପର ଫାନ୍ଦରେ
ପକାଇ ଦିଅନ୍ତି। ସେମାନଙ୍କ ହୃଦୟଗୁଡ଼ିକ ସ୍ୱାର୍ଥପରତାରେ
ପରିପୂର୍ଣ୍ଣ। ସେମାନେ ଅଭିଶପ୍ତ। [15]ଏହି ଭଣ୍ଡ ଶିକ୍ଷକମାନେ
ଉତ୍ତମ ପଥ ଛାଡ଼ି ଦେଇଛନ୍ତି ଓ ବିୟୋରର ପୁତ୍ର
ବିଲୀୟାମର ଭୁଲ ମାର୍ଗ ଅନୁସରଣ କରିଛନ୍ତି। ସେ ମନ୍ଦ
କାମ କରି ଧନ ପାଇବାକୁ ଭଲ ପାଉଥିଲା। [16]କିନ୍ତୁ
ଗୋଟିଏ ଗଧ ତାହାକୁ କହିଲା ଯେ ସେ ଭୁଲ କରୁଛି।
ଗଧ ସାଧାରଣ ଭାବରେ କଥା କହିପାରେ ନାହିଁ, କିନ୍ତୁ
ସେହି ଗଧଟି ମଣିଷର ଭାଷାରେ କଥା କହିଲା ଓ
ବିଲୀୟାମର ବିକୃତ ଚିନ୍ତାଧାରାରୁ ତାହାକୁ ବିରତ କଲା।

[17]ଏହି ଭଣ୍ଡ ଶିକ୍ଷକମାନେ ପାଣି ନ ଥିବା ନଈ ଭଳି,
ସେମାନେ ପ୍ରଚଣ୍ଡ ଝଡ଼ରେ ଉଡ଼ୁଥିବା ମେଘଗୁଡ଼ାକ ଭଳି,
ସେମାନଙ୍କ ନିମନ୍ତେ ଘୋର ଅନ୍ଧକାର ସ୍ଥାନ ରଖା ଯାଇଅଛି।
[18]ସେହି ଭଣ୍ଡ ଶିକ୍ଷକମାନେ ନିରର୍ଥକ କଥାଗୁଡ଼ିକ ପାଇଁ

ଗର୍ବ କରନ୍ତି। ସେମାନେ ଲୋକମାନଙ୍କୁ ପାପ ରାସ୍ତାରେ
କଢ଼ାଇ ନିଅନ୍ତି। ମନ୍ଦ ଭାବରେ ରହୁଥିବା ଲୋକଙ୍କଠାରୁ
ବାହାର ଆସି ଭଲ ମାର୍ଗରେ ଯିବାକୁ ଆରମ୍ଭ କରିଥିବା
ଲୋକଙ୍କୁ ଏମାନେ ଆକର୍ଷିତ କରନ୍ତି। ପାପପୂର୍ଣ୍ଣ ଆତ୍ମାରେ
ମନ୍ଦ ଇଚ୍ଛାଗୁଡ଼ିକୁ ଜାଗ୍ରତ କରାଇ ଭଣ୍ଡ ଶିକ୍ଷକମାନେ ଏପରି
କରନ୍ତି। ୧୯ଏହି ଭଣ୍ଡ ଶିକ୍ଷକମାନେ ସେହି ଲୋକମାନଙ୍କୁ
ମୁକ୍ତିର ପ୍ରତିଜ୍ଞା ଦିଅନ୍ତି। ମାତ୍ର ଏହି ଭଣ୍ଡ ଶିକ୍ଷକମାନେ
ନିଜେ ମୁକ୍ତ ପାଇନାହାଁନ୍ତି। ସେମାନେ ନିଜେ ବିନଷ୍ଟ
ବିଷୟର ଦାସ ଅଟନ୍ତି। ଜଣେ ବ୍ୟକ୍ତି ଯାହା ଦ୍ୱାରା
ନିୟନ୍ତ୍ରିତ ହୁଏ,ସେ ସେଥିର ଦାସ ଅଟେ। ୨୦ସେହି
ଲୋକମାନଙ୍କୁ ସଂସାରର ମନ୍ଦ ବିଷୟରୁ ମୁକ୍ତ କରାଯାଇଥିଲା।
ଆମ୍ଭର ପ୍ରଭୁ ଓ ତ୍ରାଣକର୍ତ୍ତା ଯୀଶୁ ଖ୍ରୀଷ୍ଟଙ୍କୁ ଜାଣିବା ଦ୍ୱାରା
ସେମାନେ ମୁକ୍ତ ପାଇଥିଲେ। କିନ୍ତୁ ଯଦି ସେମାନେ
ପୁନର୍ବାର ମନ୍ଦ ବିଷୟଗୁଡ଼ିକ ପ୍ରତି ଆକର୍ଷିତ ହୋଇ ତାହାର
ବନ୍ଧନରେ ବାନ୍ଧି ହୋଇଯିବେ, ତେବେ ସେମାନଙ୍କ ପୂର୍ବ
ଅବସ୍ଥାଠାରୁ ବର୍ତ୍ତମାନର ଅବସ୍ଥା ଆହୁରି ଅଧିକ ଖରାପ
ହେବ। ୨୧ଯଦି ସେମାନେ ମୂଳରୁ ଠିକ ରାସ୍ତା ଜାଣି ନ
ଥାନ୍ତେ, ସେମାନଙ୍କ ପକ୍ଷେ ଭଲ ହୋଇଥାନ୍ତା। ଉତ୍ତମ
ମାର୍ଗ ଜାଣି, ପବିତ୍ର ଶାସ୍ତ୍ରର ଶିକ୍ଷାରୁ ବିମୁଖ ହେବା ଅପେକ୍ଷା
ତାହା ନ ଜାଣିଥିଲେ, ଅଧିକ ଭଲ ହୋଇଥାନ୍ତା। ୨୨ସେହି
ଲୋକମାନଙ୍କ ପ୍ରତି ଯାହା ଘଟିଲା, ତାହା ନିମ୍ନ ସତ୍ୟ
ପ୍ରବାଦ ଭଳି: "କୁକୁର ବାନ୍ତି କଲା ପରେ ପୁନର୍ବାର ତା'
ବାନ୍ତି ଖାଇବାକୁ ଆସେ"* ଓ "ଘୁଷୁରୀଟିକୁ ଧୋଇ
ପରିଷ୍କାର କଲା ପରେ ସେ ପୁନର୍ବାର ଯାଇ ପଙ୍କରେ
ଗଡ଼େ।"

### ଯୀଶୁ ପୁନର୍ବାର ଆସିବେ

୩ ମୋ ମିତ୍ରଗଣ, ଏହି ଦ୍ୱିତୀୟ ପତ୍ର ମୁଁ ତୁମ୍ଭକୁ
ଲେଖୁଅଛି। ତୁମ୍ଭକୁ କେତେଗୁଡ଼ିଏ ବିଷୟ ମନେ
ପକାଇ ଦେବା ଲାଗି ମୁଁ ଦୁଇଟି ପତ୍ର ଲେଖିଛି। ୨ପବିତ୍ର
ଭବିଷ୍ୟଦ୍‌ବକ୍ତାମାନେ ଅତୀତରେ ଯାହା କିଛି କହି ଯାଇଛନ୍ତି
ମୁଁ ଚାହେଁ ଯେ, ସେଗୁଡ଼ିକୁ ତୁମ୍ଭେମାନେ ମନେ ପକାଅ।
ଆମ୍ଭର ପ୍ରଭୁ ଓ ତ୍ରାଣକର୍ତ୍ତା ଯେଉଁ ଆଜ୍ଞା ଦେଇଛନ୍ତି,
ସେଗୁଡ଼ିକୁ ମଧ ମନେ ପକାଅ। ତୁମ୍ଭମାନଙ୍କ ପ୍ରେରିତମାନଙ୍କ
ମାଧମରେ ସେ ଆମ୍ଭକୁ ଏହି ଆଜ୍ଞା ଦେଇଥିଲେ। ୩ପ୍ରଥମେ,
ଶେଷ ଦିନଗୁଡ଼ିକରେ କ'ଣ କ'ଣ ଘଟିବ, ସେଗୁଡ଼ିକ
ବୁଝିବା ତୁମ୍ଭର ଦରକାର। ଲୋକେ ତୁମ୍ଭକୁ ପରିହାସ
କରିବେ। ସେମାନେ ନିଜ ଇଚ୍ଛାରେ ମନ୍ଦ କାର୍ଯ୍ୟ କରି
ଜୀବନଧାରଣ କରିବେ। ୪ସେମାନେ କହିବେ, "ଯୀଶୁ
ପୁନର୍ବାର ଆସିବା ପାଇଁ କହିଥିଲେ। ସେ କାହାନ୍ତି? ଆମ୍ଭର
ପିତାମାନେ ମରିଛନ୍ତି। କିନ୍ତୁ ଜଗତ ସୃଷ୍ଟି ହେଲା ବେଳୁ
ସେହିପରି ଭାବରେ ଚାଲିଛି।" ୫ସୁଦୂର ଅତୀତରେ କ'ଣ
ଘଟିଥିଲା, ସେମାନେ ତାହା ମନେ ପକାଇବା ପାଇଁ ଇଚ୍ଛା
କରନ୍ତି ନାହିଁ। ଆକାଶମଣ୍ଡଳ ଥିଲା, ପରମେଶ୍ୱର ପାଣିରୁ
ଓ ପାଣି ଦ୍ୱାରା ଜଗତକୁ ସୃଷ୍ଟି କଲେ। ପରମେଶ୍ୱରଙ୍କ
ବାକ୍ୟ ଦ୍ୱାରା ଏହା ସାଧିତ ହେଲା। ୬ତାହା ପରେ ସେହି
ସଂସାର ପ୍ରଳୟକାରୀ ବନ୍ୟା ଜଳ ଦ୍ୱାରା ନଷ୍ଟ ହୋଇ
ଗଲା। ୭ମାତ୍ର ପରମେଶ୍ୱରଙ୍କ ସେହି ବାକ୍ୟ ଦ୍ୱାରା ଆକାଶମଣ୍ଡଳ
ଓ ବର୍ତ୍ତମାନର ଜଗତ ରହିଅଛି। ଆକାଶମଣ୍ଡଳ ଓ ପୃଥିବୀ
ଅଗ୍ନି ଦ୍ୱାରା ବିନଷ୍ଟ ହେବା ନିମନ୍ତେ ରକ୍ଷିତ ଅଛି।
ପରମେଶ୍ୱରଙ୍କ ସମସ୍ତ ବିରୋଧୀ ଲୋକମାନେ ପୁଣି
ଆକାଶମଣ୍ଡଳ ଓ ପୃଥିବୀ ନଷ୍ଟ ହେବା ନିମନ୍ତେ ବିଚାର
ଦିନ ପର୍ଯ୍ୟନ୍ତ ସୁରକ୍ଷିତ ଥିବେ।

୮ପ୍ରିୟ ମିତ୍ରଗଣ, କିନ୍ତୁ ଏହି ବିଶେଷ କଥା ଭୁଲ ନାହିଁ,
ପରମେଶ୍ୱରଙ୍କ ଲାଗି ଗୋଟିଏ ଦିନ ହଜାର ବର୍ଷ ଭଳି ଓ
ହଜାର ବର୍ଷ ଗୋଟିଏ ଦିନ ଭଳି ଅଟେ। ୯ଯଦିଓ କିଛି
ଲୋକେ ଏହାକୁ ଡେରି ବୋଲି ଭାବୁଛନ୍ତି, ତଥାପି ପରମେଶ୍ୱର
ନିଜ ପ୍ରତିଜ୍ଞା ପୂରଣ କରିବାରେ ଡେରି କରିବେ ନାହିଁ।
ବରଂ ପରମେଶ୍ୱର ତୁମ୍ଭ ପ୍ରତି ଧୈର୍ଯ୍ୟବାନ ହେଉଛନ୍ତି।
ପରମେଶ୍ୱର କୌଣସି ଲୋକ ନଷ୍ଟ ହେଉ ବୋଲି ଚାହାଁନ୍ତି
ନାହିଁ। ପରମେଶ୍ୱର ଚାହାଁନ୍ତି ଯେ ପ୍ରତ୍ୟେକ ଲୋକ ନିଜର
ହୃଦୟ ପରିବର୍ତ୍ତନ କରୁ ଓ ପାପ କରିବାରୁ କ୍ଷାନ୍ତ ହେଉ।

୧୦କିନ୍ତୁ ଚୋର ଆସିବା ଦିନପରି, ପ୍ରଭୁଙ୍କ ଆସିବା
ଦିନଟି ପ୍ରତ୍ୟେକଙ୍କୁ ଆଶ୍ଚର୍ଯ୍ୟ କରିବ। ଭୟଙ୍କର ଗର୍ଜନ
ସହିତ ଆକାଶମଣ୍ଡଳ ଅଦୃଶ୍ୟ ହୋଇଯିବ। ଆକାଶମଣ୍ଡଳର
ସମସ୍ତ ବସ୍ତୁ ଅଗ୍ନିରେ ଧ୍ୱଂସ ହୋଇଯିବ। ଜଗତ ଏହାର
ସମସ୍ତ ବିଷୟ ସହିତ ଜଳି ଯିବ। ୧୧ମୁଁ କହିଲା ଭଳି,
ଏପରି ଭାବରେ ସବୁ କିଛି ନଷ୍ଟ ହୋଇଯିବ। ଅତଏବ,
ତୁମ୍ଭେ କିପରି ଲୋକ ହେବା ଉଚିତ? ତୁମ୍ଭେ ପବିତ୍ର
ଜୀବନଯାପନ କରି ପରମେଶ୍ୱରଙ୍କ ସେବା କରିବା ଉଚିତ।
୧୨ପ୍ରଭୁଙ୍କ ଦିନଟି ଆସିବା ପାଇଁ ତୁମ୍ଭେ ଅପେକ୍ଷାରେ ରହିବା
ଉଚିତ। ସେହି ଦିନ ଆସିଲେ ଅଗ୍ନି ଦ୍ୱାରା ଆକାଶ ନଷ୍ଟ
ହୋଇ ଯିବ ଓ ଆକାଶରେ ଥିବା ସବୁ ମୌଳିକ
ବସ୍ତୁଗୁଡିକ ଉତ୍ତାପରେ ତରଳି ଯିବ। ୧୩କିନ୍ତୁ ପରମେଶ୍ୱର
ଆମ୍ଭକୁ ଗୋଟିଏ ପ୍ରତିଶ୍ରୁତି ଦେଇଛନ୍ତି। ଆମ୍ଭେମାନେ ତାହାଙ୍କ
ପ୍ରତିଜ୍ଞାନୁସାରେ ଏକ ନୂତନ ଆକାଶମଣ୍ଡଳ ଓ ନୂତନ
ଜଗତର ଅପେକ୍ଷାରେ ଅଛୁ। ତାହା ଧାର୍ମିକତାର ବାସସ୍ଥଳୀ
ହେବ।

୧୪ପ୍ରିୟ ମିତ୍ରଗଣ, ଏହି ଘଟଣା ଘଟିବା ପାଇଁ ଆମ୍ଭେ
ଅପେକ୍ଷାରେ ଅଛୁ। ଅତଏବ ପାପ ଓ ଦୋଷ ନ କରିବା
ପାଇଁ କଠୋର ପରିଶ୍ରମ କର। ପରମେଶ୍ୱରଙ୍କ ସହିତ
ଶାନ୍ତିରେ ରହିବାକୁ ଚେଷ୍ଟା କର। ୧୫ପ୍ରଭୁ ଧୈର୍ଯ୍ୟବାନ
ବୋଲି ଆମ୍ଭେ ରକ୍ଷା ପାଇଛୁ, ଏହା ମନେରଖ। ପରମେଶ୍ୱରଙ୍କ
ପ୍ରଦତ୍ତ ଜ୍ଞାନ ବଳରେ ଆମ୍ଭର ପ୍ରିୟ ଭାଇ ପାଉଲ ତୁମ୍ଭକୁ
ଲେଖିଲା ବେଳେ ସେ ସେହି କଥା କହିଥିଲେ। ୧୬ନିଜର
ସମସ୍ତ ପତ୍ରଗୁଡ଼ିକରେ ପାଉଲ ଏହିକଥା ଲେଖନ୍ତି।
ବେଳେବେଳେ ପାଉଲଙ୍କ ପତ୍ରରେ କେତେକ କଥା ବୁଝିବା
ପାଇଁ କଷ୍ଟକର ହୁଏ। କେତେଲୋକ ସେହି କଥାଗୁଡ଼ିକୁ
ଭୁଲ ଭାବରେ ବ୍ୟାଖ୍ୟା କରନ୍ତି। ସେମାନେ ମୂର୍ଖ ଓ
ବିଶ୍ୱାସରେ ଦୁର୍ବଳ। ସେହି ଲୋକମାନେ ଅନ୍ୟ ଶାସ୍ତ୍ରଗୁଡ଼ିକୁ*

---

**"କୁକୁର ... ଆସେ"** ହିତୋପଦେଶ ୨୬:୧୧

**ଅନ୍ୟ ଶାସ୍ତ୍ରଗୁଡ଼ିକ** ପୁରାତନ ନିୟମ

ମଧ୍ୟ ଭୁଲଭାବେ ବୁଝାଇଥାନ୍ତି। କିନ୍ତୁ ଏପରି କରିବା ଦ୍ୱାରା
ସେମାନେ ନିଜର ଅନିଷ୍ଟ କରୁଛନ୍ତି।
୧୭ ପ୍ରିୟ ମିତ୍ରଗଣ, ତୁମ୍ଭେ ଏହି ବିଷୟରେ ଆଗରୁ
ଜାଣ। ଅତଏବ ସାବଧାନ ରୁହ। ସେହି ମନ୍ଦ ଲୋକମାନେ
କରୁଥିବା ମନ୍ଦକାର୍ଯ୍ୟ ଦ୍ୱାରା ତୁମ୍ଭେ ନିଜକୁ ପ୍ରଭାବିତ
ହେବାକୁ ଦିଅ ନାହିଁ। ନିଜ ଦୃଢ଼ ବିଶ୍ୱାସରୁ ବିଚଳିତ ନ
ହେବା ପାଇଁ ସାବଧାନ ରୁହ। ୧୮ କିନ୍ତୁ ଆମ୍ଭ ପ୍ରଭୁ ଓ
ତ୍ରାଣକର୍ତ୍ତା ଯୀଶୁଖ୍ରୀଷ୍ଟଙ୍କ ଜ୍ଞାନ ଓ ଅନୁଗ୍ରହରେ ବୃଦ୍ଧି ପାଅ।
ତାହାଙ୍କର ମହିମା ବର୍ତ୍ତମାନ ଓ ସଦାସର୍ବଦା ରହିଥାଉ।
ଆମେନ୍।

# ଯୋହନଙ୍କ ପ୍ରଥମ ପତ୍ର

୧ ଆମ୍ଭେମାନେ ତୁମ୍ଭମାନଙ୍କୁ ବର୍ତ୍ତମାନ ଯେଉଁ ବିଷୟରେ
କହିବାକୁ ଯାଉଛୁ, ତାହା ସୃଷ୍ଟିର ଆରମ୍ଭରୁ ଥିଲା।

ଆମ୍ଭେମାନେ ଏହା ଶୁଣିଲୁ,
ଆମ୍ଭେମାନେ ଏହା ସ୍ୱଚକ୍ଷୁରେ ଦେଖିଲୁ,
ଆମ୍ଭେମାନେ ଏହା ନିରୀକ୍ଷଣ କଲୁ ଏବଂ
ଆମ୍ଭେମାନେ ନିଜ ହସ୍ତରେ ସ୍ପର୍ଶ କଲୁ।

ଆମ୍ଭେମାନେ ସେହି "ବାକ୍ୟ" (ଖ୍ରୀଷ୍ଟଙ୍କ) ବିଷୟରେ ତୁମ୍ଭକୁ
ଲେଖୁଛୁ, ଯାହା ଜୀବନ ଦାନ କରେ। ୨ସେହି ଜୀବନ
ଆମ୍ଭ ନିକଟରେ ପ୍ରକାଶିତ ହେଲା। ଆମ୍ଭେ ତାହା ଦେଖିଲୁ।
ଆମ୍ଭେ ଏ ସଂପର୍କରେ ପ୍ରମାଣ ଦେଇପାରୁ। ବର୍ତ୍ତମାନ
ଆମ୍ଭେ ସେହି ଜୀବନ ସଂପର୍କରେ ତୁମ୍ଭକୁ କହୁଛୁ। ଏହି
ଜୀବନ ସଦାକାଳ ରହିଛନ୍ତି। ପୂର୍ବରୁ ଏହା ପିତା ପରମେଶ୍ୱରଙ୍କ
ସହିତ ଥିଲା। ପରମେଶ୍ୱର ସେହି ଜୀବନ ଆମ୍ଭକୁ ପ୍ରକାଶିତ
କଲେ। ୩ବର୍ତ୍ତମାନ ତୁମ୍ଭମାନଙ୍କୁ ସେହି ସମ୍ବନ୍ଧରେ କହିବୁ
ଯାହା ଆମ୍ଭେମାନେ ଦେଖିଛୁ ଓ ଶୁଣିଛୁ। କାରଣ ଏହା
ଦ୍ୱାରା ତୁମ୍ଭେମାନେ ଆମ୍ଭର ସହଭାଗୀ ହୋଇପାରିବ। ପରମପିତା
ଓ ତାହାଙ୍କ ପୁତ୍ର ଯୀଶୁ ଖ୍ରୀଷ୍ଟଙ୍କ ସହ ଆମ୍ଭେ ମଧ୍ୟ
ସହଭାଗୀ। ୪ଆମ୍ଭମାନଙ୍କର ଆନନ୍ଦର ପରିପୂର୍ଣ୍ଣତା ପାଇଁ
ଆମ୍ଭେ ଏସବୁ ତୁମ୍ଭମାନଙ୍କୁ ଲେଖୁଛୁ।

### ପରମେଶ୍ୱର ଆମ୍ଭର ପାପ କ୍ଷମା କରନ୍ତି

୫ଆମ୍ଭେ ପରମେଶ୍ୱରଙ୍କ ଠାରୁ ଯେଉଁ ସତ୍ୟ ଶିକ୍ଷା
ଶୁଣିଅଛୁ, ତାହା ତୁମ୍ଭମାନଙ୍କୁ କହୁଅଛୁ। ପରମେଶ୍ୱର
ଆଲୋକ(ଧାର୍ମିକ)। ତାହାଙ୍କଠାରେ ଆଦୌ ଅନ୍ଧକାର(ପାପ)
ନାହିଁ। ୬ଯଦି ଆମ୍ଭେ କହୁ, ଆମ୍ଭର ପରମେଶ୍ୱରଙ୍କ ସହିତ
ସହଭାଗୀତା ଅଛି, କିନ୍ତୁ ଅବିରତ ଅନ୍ଧକାରରେ ଜୀବନଯାପନ
କରୁ, ତାହାହେଲେ ଆମ୍ଭେ ମିଥ୍ୟାବାଦୀ ଓ ସତ୍ୟର
ଅନୁସରଣ କରୁନାହୁଁ। ୭ପରମେଶ୍ୱର ଆଲୋକରେ ବାସ
କରନ୍ତି, ତେଣୁ ଆମ୍ଭେ ମଧ୍ୟ ଆଲୋକରେ ବାସ କରିବା
ଉଚିତ। ଯଦି ଆମ୍ଭେ ଆଲୋକରେ ଜୀବନଯାପନ କରୁ,
ତେବେ ଆମ୍ଭେ ପରସ୍ପର ସହଭାଗୀ ହୋଇପାରିବା। ଯଦି
ଆମ୍ଭେମାନେ ଆଲୋକରେ ରହୁ, ତେବେ ତାହାଙ୍କ ପୁତ୍ର
ଯୀଶୁଙ୍କ ରକ୍ତ(ମୃତ୍ୟୁ) ଆମ୍ଭର ସମସ୍ତ ପାପ ଧୋଇ ଦିଏ।
୮ଯଦି ଆମ୍ଭେ କହୁ, ଆମ୍ଭମାନଙ୍କର କିଛି ପାପ ନାହିଁ,
ତେବେ ଆମ୍ଭେ ନିଜେ ନିଜକୁ ଠକୁଛୁ ଏବଂ ଆମ୍ଭଠାରେ
ସତ୍ୟ ନାହିଁ। ୯ଯଦି ଆମ୍ଭେ ନିଜ ନିଜର ପାପ ସ୍ୱୀକାର
କରୁ ତେବେ ପରମେଶ୍ୱର ଆମ୍ଭକୁ ପାପରୁ କ୍ଷମା କରିବେ।
କାରଣ ସେ ବିଶ୍ୱସ୍ତ ଓ ନ୍ୟାୟବାନ ଅଟନ୍ତି। ସେ ଆମ୍ଭକୁ
ସମସ୍ତ ଅଧର୍ମରୁ ପରିଷ୍କାର କରିବେ। ୧୦ଆମ୍ଭେ ଯଦି କହୁ
ଯେ ଆମ୍ଭେ କିଛି ପାପ କରିନାହୁଁ, ତେବେ ଆମ୍ଭେ
ପରମେଶ୍ୱରଙ୍କୁ ମିଥ୍ୟାବାଦୀ କରୁ ଏବଂ ତାହାଙ୍କ ସତ୍ୟଶିକ୍ଷା
ଆମ୍ଭେମାନେ ଗ୍ରହଣ କରି ନାହୁଁ।

### ଯୀଶୁ ଆମ୍ଭମାନଙ୍କର ସହାୟକ

୨ ମୋର ପ୍ରିୟ ପିଲାମାନେ, ମୁଁ ଏହିସବୁ ତୁମ୍ଭମାନଙ୍କୁ
ଲେଖୁଅଛି ଯେପରି, ତୁମ୍ଭେମାନେ ପାପ ନ କରି।
କିନ୍ତୁ ଯଦି କେହି ପାପ କରେ, ଆମ୍ଭର ଯୀଶୁ ଖ୍ରୀଷ୍ଟ ଯିଏ
କି ଧାର୍ମିକ ଓ ଯିଏ ପିତାଙ୍କ ଛାମୁରେ ଆମ୍ଭମାନଙ୍କର
ସପକ୍ଷବାଦୀ; ସେ ଆମ୍ଭମାନଙ୍କୁ ସାହାଯ୍ୟ କରିବେ। ୨ଯୀଶୁ
ହେଉଛନ୍ତି ପଥ ଓ ଆମ୍ଭର ସବୁ ପାପ ବହନଅନ୍ତି।
କେବଳ ଆମ୍ଭମାନଙ୍କ ନୁହେଁ, ମାତ୍ର ସମସ୍ତ ଜଗତର ପାପ
ମଧ୍ୟ ସେ ବହନଅନ୍ତି।
୩ଆମ୍ଭେ ଯଦି ପରମେଶ୍ୱରଙ୍କର ଆଜ୍ଞା ପାଳନ କରୁ,
ତେବେ ଆମ୍ଭେମାନେ ସୁନିଶ୍ଚିତ ଯେ, ଆମ୍ଭେ ପ୍ରକୃତରେ
ତାହାଙ୍କୁ ଜାଣିଛୁ। ୪ଯଦି କିଏ କୁହେ, "ମୁଁ ପରମେଶ୍ୱରଙ୍କୁ
ଜାଣେ," କିନ୍ତୁ ତାହାଙ୍କ ଆଜ୍ଞା ପାଳନ କରେ ନାହିଁ,
ତେବେ ସେ ଜଣେ ମିଥ୍ୟାବାଦୀ। ତାହାଠାରେ ସତ୍ୟ ନାହିଁ।
୫ଯେଉଁ ବ୍ୟକ୍ତି ପରମେଶ୍ୱରଙ୍କ ଶିକ୍ଷା ପାଳନ କରେ,
ତା'ଠାରେ ପରମେଶ୍ୱରଙ୍କ ପ୍ରେମର ଉଦ୍ଦେଶ୍ୟ ସାଧିତ ହୋଇଛି।
ଏହିଭଳି ଭାବେ ଆମ୍ଭେମାନେ ପରମେଶ୍ୱରଙ୍କର ଅନୁଗମନ
କରୁଛୁ ବୋଲି ଜାଣିପାରିବା। ୬ପରମେଶ୍ୱରଙ୍କ ସହ ଜୀବନଯାପନ
କରୁଛୁ ବୋଲି ଦାବି କରୁଥିବା ବ୍ୟକ୍ତି ଯୀଶୁଙ୍କ ଭଳି
ଜୀବନଯାପନ କରିବା ଉଚିତ।

### ସମସ୍ତଙ୍କୁ ଭଲ ପାଅ

୭ପ୍ରିୟ ବନ୍ଧୁଗଣ! ମୁଁ ତୁମ୍ଭମାନଙ୍କ ନିକଟକୁ କୌଣସି
ନୂତନ ଆଜ୍ଞା ବିଷୟରେ ଲେଖୁ ନାହିଁ, ମାତ୍ର ଏହା ସେହି
ପୁରାତନ ଆଜ୍ଞା, ଯାହା ଆରମ୍ଭରୁ ତୁମ୍ଭେମାନେ ପାଇଅଛ।
ଯେଉଁ ଶିକ୍ଷା ତୁମ୍ଭେମାନେ ଶୁଣିଅଛ, ତାହାହିଁ ସେହି ଆଜ୍ଞା।
୮ପୁନଶ୍ଚ ମୁଁ ତୁମ୍ଭମାନଙ୍କୁ ଆଉ ଗୋଟିଏ ନୂତନ ଆଜ୍ଞା
ବିଷୟରେ ଲେଖୁଛି, ଏହାର ସତ୍ୟତା ଯୀଶୁଙ୍କଠାରେ ଓ
ତୁମ୍ଭମାନଙ୍କ ଜୀବନରେ ମଧ୍ୟ ଦେଖିପାରିବ। କାରଣ ଅନ୍ଧକାର
ଘୁଞ୍ଚି ଯାଉଅଛି ଓ ସତ୍ୟ ଜ୍ୟୋତିଃ ପ୍ରକାଶିତ ହେଲାଣି।
୯ଯେଉଁ ଲୋକ ଆଲୋକରେ ଅଛି ବୋଲି କୁହେ କିନ୍ତୁ
ନିଜ ଭାଇକୁ ଘୃଣା କରେ, ତେବେ ସେ ଏପର୍ଯ୍ୟନ୍ତ
ଅନ୍ଧକାରରେ ରହିଛି। ୧୦ନିଜ ଭାଇକୁ ପ୍ରେମ କରୁଥିବା

ବ୍ୟକ୍ତି ଆଲୋକରେ ବାସ କରୁଥାଏ ଏବଂ ତା'ଠାରେ ଭୁଲ
କାମ କରିବାର କୌଣସି କାରଣ ନ ଥାଏ। ୧୧କିନ୍ତୁ ନିଜ
ଭାଇକୁ ଘୃଣା କରୁଥିବା ବ୍ୟକ୍ତି ଅନ୍ଧକାରରେ ଥାଏ। ସେ
ଅନ୍ଧକାରରେ ବାସ କରେ। ସେ କେଉଁଆଡ଼େ ଯାଏ, ନିଜେ
ଜାଣିପାରେ ନାହିଁ; କାରଣ ଅନ୍ଧକାର ତାକୁ ଅନ୍ଧ କରିଦେଇଥାଏ।

୧୨ ପ୍ରିୟ ପିଲାମାନେ, ତୁମ୍ଭମାନଙ୍କ ପାପ ଖ୍ରୀଷ୍ଟଙ୍କ ଦ୍ୱାରା
କ୍ଷମା କରାଯାଇଥିବା କାରଣରୁ ମୁଁ ତୁମ୍ଭମାନଙ୍କୁ
ଲେଖୁଛି।
୧୩ ପିତାମାନେ! ଯେ ଆଦ୍ୟରୁ ଅଛନ୍ତି, ତୁମ୍ଭେମାନେ
ତାହାଙ୍କୁ ଆରମ୍ଭରୁ ଜାଣିଥିବାରୁ ମୁଁ ତୁମ୍ଭମାନଙ୍କୁ
ଲେଖୁଛି। ଯୁବକମାନେ! ତୁମ୍ଭେମାନେ ପାପାତ୍ମାକୁ
ପରାଜିତ କରିଥିବାରୁ ମୁଁ ତୁମ୍ଭମାନଙ୍କୁ ଲେଖୁଛି।
୧୪ ପିଲାମାନେ! ତୁମ୍ଭେମାନେ ପରମ ପିତାଙ୍କୁ
ଚିହ୍ନିସାରିଥିବାରୁ ମୁଁ ତୁମ୍ଭମାନଙ୍କୁ ଲେଖୁଛି। ପିତାମାନେ!
ସେ ଆଦ୍ୟରୁ ଅଛନ୍ତି ବୋଲି ତୁମ୍ଭେମାନେ ଜାଣିଥିବାରୁ
ମୁଁ ତୁମ୍ଭମାନଙ୍କୁ ଲେଖୁଛି। ଯୁବକମାନେ! ତୁମ୍ଭେମାନେ
ବଳବାନ ଏବଂ ପରମେଶ୍ୱରଙ୍କ ବାକ୍ୟ ତୁମ୍ଭମାନଙ୍କଠାରେ
ଅଛି, ଓ ତୁମ୍ଭେମାନେ ସେହି ପାପାତ୍ମାକୁ ପରାଜିତ
କରିଥିବାରୁ ମୁଁ ତୁମ୍ଭମାନଙ୍କୁ ଲେଖୁଛି।

୧୫ତୁମ୍ଭେମାନେ ସଂସାରକୁ ବା ସେଥିରେ ଥିବା ବିଷୟଗୁଡ଼ିକୁ
ଭଲ ପାଅ ନାହିଁ। ଯଦି କେହି ସଂସାରକୁ ଭଲ ପାଏ,
ତେବେ ପିତାଙ୍କ ପ୍ରେମ ତାହାଠାରେ ନାହିଁ। ୧୬ସଂସାରର
ଏହି ବିଷୟଗୁଡ଼ିକ ମନ୍ଦ ଅଟେ। ଯଥା:

ଆମ୍ଭର ପାପ ପ୍ରକୃତିକୁ ତୁଷ୍ଟ କରିବାକୁ ବିଭିନ୍ନ
ଆକର୍ଷଣୀୟ ବିଷୟ ପାଇବାର ଇଚ୍ଛା;
ଯେଉଁସବୁ ମନ୍ଦ ବିଷୟ ଆମ୍ଭର ଦୃଷ୍ଟିଗୋଚର ହୁଏ,
ତାହା ପାଇବାର ଇଚ୍ଛା;
ତଥା ଆମ୍ଭର ଯାହା ଅଛି, ତହିଁ ପାଇଁ ଗର୍ବ
କରିବା।

ଏ ସମସ୍ତ ବିଷୟ ପରମପିତାଙ୍କଠାରୁ ନୁହେଁ, ମାତ୍ର ଏହି
ସଂସାରରୁ ଆସିଅଛି। ୧୭ସଂସାର କ୍ଷୟ ପାଉଅଛି। ଏଥିସହିତ
ସଂସାରରେ ଥିବା ବିଷୟଗୁଡ଼ିକ ମଧ୍ୟ କ୍ଷୟ ପାଉଅଛି। ମାତ୍ର
ଯେ କେହି ପରମେଶ୍ୱରଙ୍କ ଇଚ୍ଛା ପାଳନ କରେ, ସେ
ଅନନ୍ତକାଳ ଜୀବିତ ହୋଇ ରହିବ।

### ଖ୍ରୀଷ୍ଟଙ୍କ ଶତ୍ରୁମାନଙ୍କର ପଥ ଅନୁସରଣ କରନାହିଁ

୧୮ପିଲାମାନେ! ବର୍ତ୍ତମାନ ଶେଷକାଳ ଆସି ପହଞ୍ଚିଲାଣି।
ତୁମ୍ଭେ ଯେପରି ଶୁଣିଥିଲ, ଖ୍ରୀଷ୍ଟଙ୍କ ଶତ୍ରୁ ଆସୁଛନ୍ତି, ଏବେ
ସେହିପରି ଅନେକ ସଂଖ୍ୟାରେ ଖ୍ରୀଷ୍ଟ ବିରୋଧୀମାନେ ଦେଖା
ଦେଲେଣି। ଏଥିରୁ ଆମ୍ଭେ ଜାଣି ପାରୁଛୁ ଯେ, ପ୍ରକୃତରେ
ଶେଷ କାଳ ଆସି ପହଞ୍ଚିଛି। ୧୯ଏହି ଖ୍ରୀଷ୍ଟଙ୍କ ଶତ୍ରୁମାନେ
ଆମ୍ଭ ଦଳରେ ଥିଲେ, ମାତ୍ର ଆମ୍ଭକୁ ଛାଡ଼ି ଚାଲିଗଲେ।
ସେମାନେ ପ୍ରକୃତରେ ଆମ୍ଭ ନିଜର ନ ଥିଲେ। ଯଦି
ସେମାନେ ଆମ୍ଭ ନିଜର ହୋଇଥାନ୍ତେ, ତେବେ ସେମାନେ
ଆମ୍ଭ ସହିତ ରହିଥାନ୍ତେ। ସେମାନେ ଆମ୍ଭକୁ ଛାଡ଼ି
ଚାଲିଗଲେ ତେଣୁ, ଏହା ସ୍ପଷ୍ଟ ରୂପେ ପ୍ରକାଶପାଇଲା ଯେ,
ସେମାନେ ପ୍ରକୃତରେ ଆମ୍ଭର ନୁହଁନ୍ତି।
୨୦ଆଉ ତୁମ୍ଭେମାନେ ସେହି ପବିତ୍ର ବ୍ୟକ୍ତିଙ୍କଠାରୁ ଦାନ*
ପାଇଥିବାରୁ, ତୁମ୍ଭେ ସମସ୍ତେ ସତ୍ୟକୁ ଜାଣିଛ। ୨୧ମୁଁ
ତୁମ୍ଭମାନଙ୍କ ପାଖକୁ ଲେଖିବାର କାରଣ କ'ଣ? ତୁମ୍ଭେ
ସତ୍ୟକୁ ଜାଣିନାହିଁ ବୋଲି କ'ଣ ମୁଁ ଏହା ଲେଖୁଛି? ନା,
ତୁମ୍ଭେ ଏହି ସତ୍ୟ ଜାଣିଥିବାରୁ ମୁଁ ଏହି ପତ୍ର ଲେଖୁଅଛି।
ତୁମ୍ଭେ ମଧ୍ୟ ଜାଣିଛ ସତ୍ୟରୁ କେବେହେଲେ କୌଣସି
ମିଥ୍ୟା ଉତ୍ପନ୍ନ ହୁଏନାହିଁ।
୨୨ତେବେ ମିଥ୍ୟାବାଦୀ କିଏ? ଯୀଶୁ ଯେ ଖ୍ରୀଷ୍ଟ ଅଟନ୍ତି,
ଏହା ଯେ ଅସ୍ୱୀକାର କରେ, ସେ ହେଉଛି ମିଥ୍ୟାବାଦୀ।
ସେ ଖ୍ରୀଷ୍ଟଙ୍କର ଶତ୍ରୁ। ସେ ପରମ ପିତା ଓ ପୁତ୍ର ଦୁହିଁଙ୍କୁ
ଅସ୍ୱୀକାର କରେ। ୨୩ଯେଉଁ ବ୍ୟକ୍ତି ପୁତ୍ରକୁ ବିଶ୍ୱାସ
କରେନାହିଁ, ପିତା ତାହାଙ୍କଠାରେ ବାସ କରନ୍ତି ନାହିଁ।
ଯେଉଁ ବ୍ୟକ୍ତି ପୁତ୍ରକୁ ଗ୍ରହଣ କରେ, ତାହାଙ୍କଠାରେ ପିତା
ମଧ୍ୟ ଅଛନ୍ତି।
୨୪ତୁମ୍ଭେମାନେ ଆରମ୍ଭରୁ ଯାହା ଶିକ୍ଷା ପାଇଛ, ତାହା
ପାଳନ କର। ତୁମ୍ଭେ ଯଦି ସେହି ଶିକ୍ଷା ଅନୁଯାୟୀ ଜୀବନ
କାଟିବ, ତେବେ ତୁମ୍ଭେ ପିତା (ପରମେଶ୍ୱର) ଓ
ପୁତ୍ରଙ୍କ(ଖ୍ରୀଷ୍ଟ)ଠାରେ ରହିବ। ୨୫ପୁତ୍ର ଆମ୍ଭମାନଙ୍କୁ ଏହି
ଅନନ୍ତ ଜୀବନ ଦେବେ ବୋଲି ପ୍ରତିଜ୍ଞା କରିଛନ୍ତି।
୨୬ଯେଉଁମାନେ ତୁମ୍ଭମାନଙ୍କୁ ଭୁଲ ପଥରେ କଢ଼ାଇ
ନେବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କ ବିଷୟରେ ମୁଁ
ତୁମ୍ଭମାନଙ୍କୁ ଏହି କଥା ଲେଖୁଛି। ୨୭ଖ୍ରୀଷ୍ଟ ତୁମ୍ଭମାନଙ୍କୁ ଏକ
ବିଶେଷ ଦାନ ଦେଇଛନ୍ତି, ତାହା ତୁମ୍ଭଠାରେ ଏପର୍ଯ୍ୟନ୍ତ
ଅଛି। ଏଥିପାଇଁ ତୁମ୍ଭର କାହାଠାରୁ ଶିକ୍ଷା ନେବା ଆବଶ୍ୟକ
ନାହିଁ। ମାତ୍ର ତାହାଙ୍କଠାରୁ ପ୍ରାପ୍ତ ସେହି ଦାନ ତୁମ୍ଭକୁ
ସମସ୍ତ ବିଷୟରେ ଶିକ୍ଷା ଦେଉଛି। ସେ ତୁମ୍ଭକୁ ଦେଇଥିବା
ସେହି ଦାନ ସତ୍ୟ ଅଟେ, ମିଥ୍ୟା ନୁହେଁ। ତେଣୁ
ତାହାଙ୍କର ସେହି ଦାନର ଶିକ୍ଷାନୁସାରେ ତୁମ୍ଭେମାନେ
ଖ୍ରୀଷ୍ଟଙ୍କଠାରେ ଥାଇ ଜୀବନଯାପନ କର। ୨୮ପ୍ରିୟ ପିଲାମାନେ,
ତାହାଙ୍କଠାରେ ରୁହ। ଏହା କଲେ, ଖ୍ରୀଷ୍ଟ ଯେଉଁଦିନ
ଆସିବେ ଆମ୍ଭେମାନେ ଭରସାଯୁକ୍ତ ହୋଇ ଭୟ କରିବା
ନାହିଁ। ଯେଉଁଦିନ ସେ ଆସିବେ, ସେହିଦିନ ଆମ୍ଭକୁ ଲଜ୍ଜିତ
ହେବାକୁ କିମ୍ବା ଆତ୍ମଗୋପନ କରିବାକୁ ପଡ଼ିବ ନାହିଁ।
୨୯ସେ ଧାର୍ମିକ ବୋଲି ତୁମ୍ଭେ ଜାଣିଛ। ତେଣୁ ତୁମ୍ଭେ ଏହା
ମଧ୍ୟ ଜାଣିରଖ ଯେ, ଧର୍ମାଚରଣ କରୁଥିବା ସମସ୍ତ ବ୍ୟକ୍ତି
ପରମେଶ୍ୱରଙ୍କର ସନ୍ତାନ ଅଟନ୍ତି।

---

**ଦାନ** ଆକ୍ଷରିକ ଭାବରେ "ଅଭିଷେକ କରିବା।" ଏହା ହୁଏତ ପବିତ୍ର ଆତ୍ମା ବୁଝାଇପାରେ ବା ୨୪ ପଦ ଭଳି ଏହା ଶିକ୍ଷା ବା ସତ୍ୟକୁ ବୁଝାଇପାରେ।

### ଆମ୍ଭେ ପରମେଶ୍ୱରଙ୍କ ସନ୍ତାନ

୩ ପରମପିତା ଆମ୍ଭମାନଙ୍କୁ ଅତ୍ୟଧିକ ପ୍ରେମ କଲେ।
ଆମ୍ଭେ ପରମେଶ୍ୱରଙ୍କର ସନ୍ତାନ ରୂପେ ନାମିତ
ହେବା ଦ୍ୱାରା ଆମ୍ଭ ପ୍ରତି ତାଙ୍କର ମହାନ୍ ପ୍ରେମ ପ୍ରକାଶ
ପାଏ। ଆମ୍ଭେ ପ୍ରକୃତରେ ତାଙ୍କର ସନ୍ତାନ ଅଟୁ କିନ୍ତୁ ଏ
ସଂସାର(ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ) ପରମେଶ୍ୱରଙ୍କୁ
ଚିହ୍ନିପାରି ନ ଥିବାରୁ ଆମ୍ଭକୁ ମଧ୍ୟ ପରମେଶ୍ୱରଙ୍କ ସନ୍ତାନ
ବୋଲି ଚିହ୍ନି ପାରୁ ନାହିଁ। ୨ପ୍ରିୟ ବନ୍ଧୁମାନେ, ଆମ୍ଭେ
ବର୍ତ୍ତମାନ ପରମେଶ୍ୱରଙ୍କର ସନ୍ତାନ, କିନ୍ତୁ ଭବିଷ୍ୟତରେ
ଆମ୍ଭେ କ'ଣ ହେବା ତାହା ଆମ୍ଭକୁ ଜଣାଇ ଦିଆଯାଇନାହିଁ।
ଆମ୍ଭେ ଏହା ଜାଣିଛୁ ଯେ ଖ୍ରୀଷ୍ଟଙ୍କ ପୁନରାଗମନ ସମୟରେ
ଆମ୍ଭେ ସବୁ ତାହାଙ୍କ ଭଳି ହୋଇଯିବା। ସେ ଯେପରି,
ଆମ୍ଭେ ତାହାଙ୍କୁ ସେହି ରୂପରେ ଦେଖିବା। ୩ଖ୍ରୀଷ୍ଟ ପବିତ୍ର।
ଯେ କେହି ଖ୍ରୀଷ୍ଟଙ୍କଠାରେ ଆଶା ରଖେ, ସେ ଖ୍ରୀଷ୍ଟଙ୍କ
ଭଳି ନିଜକୁ ପବିତ୍ର ରଖେ।
୪ଯେଉଁ ଲୋକ ପାପ କରେ, ସେ ପରମେଶ୍ୱରଙ୍କର
ନିୟମ ଭାଙ୍ଗେ। କାରଣ ନିୟମର ଲଙ୍ଘନ ହେଉଛି ପାପ।
୫ତୁମ୍ଭେ ତ ଜାଣିଛ, ଲୋକମାନଙ୍କର ପାପ ଦୂର କରିବା
ପାଇଁ ଖ୍ରୀଷ୍ଟ ସଂସାରକୁ ଆସିଥିଲେ। ତାହାଙ୍କ ଭିତରେ
କୌଣସି ପାପ ନାହିଁ। ୬ତାହାଙ୍କଠାରେ ରହୁଥିବା ଲୋକ
ପାପ କରେ ନାହିଁ। ପାପ କରୁଥବା ଲୋକ ଖ୍ରୀଷ୍ଟଙ୍କୁ
କଦାପି ଜାଣିନାହିଁ କି ବୁଝି ପାରିନାହିଁ।
୭ପ୍ରିୟ ପିଲାମାନେ, କେହି ତୁମ୍ଭମାନଙ୍କୁ ମନ୍ଦ ପଥରେ
ଯିବା ପାଇଁ ନ ଭୁଲାଉ। ଖ୍ରୀଷ୍ଟ ଧାର୍ମିକ ଅଟନ୍ତି। ତେଣୁ
ଯେକେହି ଖ୍ରୀଷ୍ଟଙ୍କ ପରି ଉତ୍ତମ ହେବାକୁ ଇଚ୍ଛା କରେ,
ସେ ଉଚିତ କର୍ମ କରୁ। ୮ଶୟତାନ ଆରମ୍ଭରୁ ପାପ କରି
ଆସୁଅଛି! ଯେଉଁ ଲୋକ ପାପ କରେ, ସେ ଶୟତାନର
ଅଟେ। ତେଣୁ ଶୟତାନର ପାପ କାମକୁ ଧ୍ୱଂସ କରିବା
ପାଇଁ ପରମେଶ୍ୱରଙ୍କର ପୁତ୍ର ଏହି ସଂସାରକୁ ଆସିଛନ୍ତି।
୯ପରମେଶ୍ୱରଙ୍କର ସନ୍ତାନ ହେବା ଲୋକ ଆଉ ପାପ
କରେ ନାହିଁ, କାରଣ ଯେଉଁ ନୂଆ ଜୀବନ ପରମେଶ୍ୱର
ସେହି ଲୋକକୁ ଦିଅନ୍ତି, ତାହା ତା'ଠାରେ ଥାଏ। ତେଣୁ
ସେ ଆଉ ପାପ କରିପାରେ ନାହିଁ ଯେହେତୁ ସେ
ପରମେଶ୍ୱରଙ୍କର ସନ୍ତାନ ହୋଇସାରିଥାଏ। ୧୦ତେଣୁ
କେଉଁମାନେ ପରମେଶ୍ୱର ସନ୍ତାନ ଓ କେଉଁମାନେ ଶୟତାନର
ସନ୍ତାନ, ତାହା ତୁମ୍ଭେମାନେ ଜାଣି ପାରିବ। ଯେଉଁମାନେ
ସତ୍କର୍ମ କରନ୍ତି ନାହିଁ, ସେମାନେ ପରମେଶ୍ୱରଙ୍କର ସନ୍ତାନ
ନୁହଁନ୍ତି, ଯେ କେହି ନିଜ ଭାଇକୁ ପ୍ରେମ କରେ ନାହିଁ,
ସେ ମଧ୍ୟ ଈଶ୍ୱରଙ୍କର ସନ୍ତାନ ନୁହେଁ।

### ଆମ୍ଭେ ନିଶ୍ଚୟ ପରସ୍ପରକୁ ଭଲ ପାଇବା ଉଚିତ

୧୧ତୁମ୍ଭେମାନେ ଆରମ୍ଭରୁ ଏହି ଶିକ୍ଷା ଶୁଣିଛ, ଆମ୍ଭର
ପରସ୍ପରକୁ ନିଶ୍ଚୟ ପ୍ରେମ କରିବା ଉଚିତ। ୧୨ଆମ୍ଭେ
କୟିନ* ଭଳି ହେବା ଉଚିତ ନୁହେଁ। କାରଣ ତାହାଙ୍କଠାରେ
ପାପାତ୍ମା ଥିଲା। ସେ ନିଜ ଭାଇ ହେବଲକୁ ହତ୍ୟା କଲା।
ସେ ତା'ର ଭାଇକୁ କାହିଁକି ହତ୍ୟା କଲା? ସେ ଏପରି
କଲା, କାରଣ ତା'ର କାର୍ଯ୍ୟଗୁଡ଼ିକ ମନ୍ଦ ଥିଲା ଓ ତା'
ଭାଇର କର୍ମଗୁଡ଼ିକ ଭଲ ଥିଲା।
୧୩ଭାଇ ଓ ଭଉଣୀମାନେ, ଯଦି ଜଗତ ତୁମ୍ଭକୁ ଘୃଣା
କରେ, ତେବେ ଆଶ୍ଚର୍ଯ୍ୟ ହୁଅ ନାହିଁ। ୧୪ଆମ୍ଭେ ଜାଣୁ ଯେ,
ଆମ୍ଭେ ମୃତ୍ୟୁର ସୀମା ପାର ହୋଇ ଜୀବନରେ ପ୍ରବେଶ
କରିଛୁ, କାରଣ ଆମ୍ଭେ ନିଜ ଭାଇ ଓ ଭଉଣୀମାନଙ୍କୁ
ପ୍ରେମ କରୁ। ଯେଉଁ ଲୋକ ପ୍ରେମ କରେ ନାହିଁ, ସେ
ମୃତ୍ୟୁ ସୀମା ମଧ୍ୟରେ ଥାଏ। ୧୫ନିଜ ଭାଇକୁ ଘୃଣା
କରୁଥିବା ପ୍ରତ୍ୟେକ ଲୋକ ନିଜେ ହତ୍ୟାକାରୀ ଅଟେ।
ତୁମ୍ଭେ ତ' ଜାଣିଛ ଯେ, କୌଣସି ହତ୍ୟାକାରୀଠାରେ ଅନନ୍ତ
ଜୀବନ ନାହିଁ। ୧୬ଯୀଶୁ ଆମ୍ଭମାନଙ୍କ ପାଇଁ ନିଜ ଜୀବନ
ଦେଇଛନ୍ତି। ଏଥିରୁ ପ୍ରକୃତ ପ୍ରେମ କ'ଣ, ତାହା ଆମ୍ଭେ
ଜାଣିଛୁ। ଆମ୍ଭେ ମଧ୍ୟ ନିଜ ଭାଇମାନଙ୍କ ପାଇଁ ଜୀବନ
ଦାନ କରିବା ଉଚିତ। ୧୭ଯେଉଁ ବିଶ୍ୱାସୀ ଜଗତର ସମସ୍ତ
ଧନରେ ଧନୀ, କିନ୍ତୁ ନିଜ ଭାଇକୁ ଅଭାବ ଅବସ୍ଥାରେ
ଦେଖି ମଧ୍ୟ ତାହାକୁ ସାହାଯ୍ୟ କରେ ନାହିଁ, ତା'
ହୃଦୟରେ ପରମେଶ୍ୱରଙ୍କର ପ୍ରେମ ନାହିଁ। ୧୮ପ୍ରିୟ ପିଲାମାନେ,
ଆମ୍ଭର ପ୍ରେମ କେବଳ ଶବ୍ଦ ଓ କଥା ମଧ୍ୟରେ ସୀମିତ
ରହିବା ଉଚିତ ନୁହେଁ। ମାତ୍ର ଏହା ସତ୍ୟପ୍ରେମ ହେବା
ଆବଶ୍ୟକ ଓ ଆଚରଣରେ ଆମ୍ଭେ ଏହା ଦେଖାଇବା
ଉଚିତ।
୧୯-୨୦ଏହିପରି ଭାବରେ ଆମ୍ଭେ ସତ୍ୟମାର୍ଗରେ ଅଛୁ
ବୋଲି ଜାଣି ପାରିବା। ପୁଣି ଯଦି କୌଣସି ବିଷୟରେ
ଆମ୍ଭମାନଙ୍କ ହୃଦୟ ଆମ୍ଭମାନଙ୍କୁ ଦୋଷୀ କରେ, ତେବେ
ମଧ୍ୟ ଆମ୍ଭେମାନେ ପରମେଶ୍ୱରଙ୍କ ଛାମୁରେ ଶାନ୍ତ ରହିପାରିବା,
କାରଣ ପରମେଶ୍ୱର ଆମ୍ଭମାନଙ୍କ ହୃଦୟ(ବିବେକ)ଠାରୁ ମହାନ
ଓ ସେ ସବୁ ଜାଣନ୍ତି।
୨୧ପ୍ରିୟ ବନ୍ଧୁମାନେ, ଆମ୍ଭମାନଙ୍କ ହୃଦୟ ଯଦି ଆମ୍ଭମାନଙ୍କୁ
ଦୋଷୀ ନ କରେ, ତାହାହେଲେ ପରମେଶ୍ୱରଙ୍କ ଛାମୁରେ
ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଭରସା ଅଛି। ୨୨ଆମ୍ଭେ ଯାହା
ତାହାଙ୍କଠାରୁ ମାଗୁ, ଆମ୍ଭେ ତାହାଙ୍କଠାରୁ ପାଇଥାଉ। ଆମ୍ଭେ
ତାଙ୍କ ଆଦେଶ ପାଳନ କରୁ ଏବଂ ଆମ୍ଭେ ସେହି
କାମଗୁଡ଼ିକ କରୁ, ଯାହା ତାହାଙ୍କୁ ସନ୍ତୁଷ୍ଟ କରେ।
୨୩ପରମେଶ୍ୱରଙ୍କର ଏହା ଆଦେଶ: ତାଙ୍କ ପୁତ୍ର ଯୀଶୁଖ୍ରୀଷ୍ଟଙ୍କ
ନାମରେ ଆମ୍ଭେମାନେ ବିଶ୍ୱାସ କରିବା ଓ ପରସ୍ପରକୁ ଭଲ
ପାଇବା। ୨୪ଯେଉଁ ଲୋକ ତାହାଙ୍କ ଆଦେଶଗୁଡ଼ିକ ପାଳନ
କରେ, ସେ ପରମେଶ୍ୱରଙ୍କଠାରେ ରୁହେ ଓ ପରମେଶ୍ୱର
ସେହି ଲୋକଠାରେ ରୁହନ୍ତି। ପରମେଶ୍ୱର ଯେ
ଆମ୍ଭମାନଙ୍କଠାରେ ବାସ କରନ୍ତି, ତାହା ଆମ୍ଭେମାନେ କିପରି
ଜାଣିବା? ପରମେଶ୍ୱରଙ୍କ ଦତ୍ତ ପବିତ୍ର ଆତ୍ମାଙ୍କ ଦ୍ୱାରା
ଆମ୍ଭେମାନେ ତାହା ଜାଣି ପାରିବା।

### ଭଣ୍ଡ ଶିକ୍ଷକଙ୍କ ପ୍ରତି ସାବଧାନ

୪ ପ୍ରିୟ ବନ୍ଧୁମାନେ, ଏ ଜଗତର ଚାରିଆଡ଼େ ବହୁତ
ଭଣ୍ଡ ଭାବବାଦୀ ବର୍ତ୍ତମାନ ଅଛନ୍ତି। ତେଣୁ ପ୍ରତ୍ୟେକ

---

**କୟିନ** କୟିନ ଓ ହେବଲ ଆଦମ ଓ ହବାର ପୁଅ। କୟିନ ହେବଲକୁ ହତ୍ୟା କରିଥିଲା।

ଆତ୍ମାକୁ ବିଶ୍ୱାସ କର ନାହିଁ, ବରଂ ସେମାନେ ପରମେଶ୍ୱରଙ୍କଠାରୁ
ଆଗତ କି ନା, ଏହା ପରୀକ୍ଷା କରି ଦେଖ। ୨ଏହି
ପ୍ରକାରେ ତୁମ୍ଭେମାନେ ପରମେଶ୍ୱରଙ୍କର ଆତ୍ମାକୁ ଚିହ୍ନିପାରିବ:
ଏକ ଆତ୍ମା କହିବ ଯେ, “ମୁଁ ବିଶ୍ୱାସ କରେ ଯେ ଯୀଶୁ
ହିଁ ଖ୍ରୀଷ୍ଟ ଅଟନ୍ତି ଓ ସେ ଏ ଜଗତକୁ ମନୁଷ୍ୟ ରୂପ
ଧାରଣ କରି ଆସିଥିଲେ,” ସେହି ଆତ୍ମା ପରମେଶ୍ୱରଙ୍କଠାରୁ
ଆଗତ। ୩ଅନ୍ୟ ଆତ୍ମା ଯୀଶୁଙ୍କ ବିଷୟରେ ଏପରି ସାକ୍ଷ୍ୟ
ଦିଅନ୍ତି ନାହିଁ, ସେହି ଆତ୍ମା ପରମେଶ୍ୱରଙ୍କଠାରୁ ଆସି ନାହିଁ,
ସେମାନେ ଖ୍ରୀଷ୍ଟଙ୍କର ଶତ୍ରୁ। ଖ୍ରୀଷ୍ଟଙ୍କ ଶତ୍ରୁ ଆସିବା ସମ୍ବନ୍ଧରେ
ତୁମ୍ଭେମାନେ ଶୁଣିଛ ଏବଂ ସେ ବର୍ତ୍ତମାନ ଏହି ସଂସାର
ଭିତରେ ରହିଛି।

୪ପିଲାମାନେ! ତୁମ୍ଭେମାନେ ପରମେଶ୍ୱରଙ୍କର ଅଟ।
ସେଥିପାଇଁ ତୁମ୍ଭେମାନେ ସେମାନଙ୍କୁ (ଭଣ୍ଡ ଶିକ୍ଷକମାନଙ୍କୁ)
ପରାସ୍ତ କରିଛ କାରଣ ତୁମ୍ଭ ମଧ୍ୟରେ ଯେ ଅଛନ୍ତି, ସେ
ଜାଗତିକ ଲୋକମାନଙ୍କଠାରେ ଥିବା ଶୟତାନଠାରୁ ମଧ୍ୟ
ମହାନ୍। ୫ସେହି ଲୋକମାନେ ଜଗତର ଅଟନ୍ତି। ସେଥିପାଇଁ
ସେମାନଙ୍କର କଥାଗୁଡ଼ିକ ଜାଗତିକ ଅଟେ। ଏବଂ ଜଗତ
ସେମାନଙ୍କ କଥା ଶୁଣେ। ୬କିନ୍ତୁ ଆମ୍ଭେସବୁ ପରମେଶ୍ୱରଙ୍କର।
ତେଣୁ ପରମେଶ୍ୱରଙ୍କୁ ଜାଣିଥିବା ଲୋକ ଆମ୍ଭ କଥା
ଶୁଣେ। ଯେଉଁ ଲୋକ ପରମେଶ୍ୱରଙ୍କର ନୁହେଁ, ସେ ଆମ୍ଭ
କଥା ଶୁଣେ ନାହିଁ। ଏହିପରି ଭାବରେ ଆମ୍ଭେ ସତ୍ୟମୟ
ଆତ୍ମା ଓ ଲୋକମାନଙ୍କୁ ବିଭ୍ରାନ୍ତ କରୁଥିବା ଆତ୍ମାକୁ ଚିହ୍ନି
ପାରିବା।

### ପ୍ରେମ ପରମେଶ୍ୱରଙ୍କଠାରୁ ଆସେ

୭ପ୍ରିୟ ବନ୍ଧୁମାନେ, ଆମ୍ଭେସବୁ ପରସ୍ପରକୁ ଭଲ ପାଇବା
ଉଚିତ, କାରଣ ପ୍ରେମ ପରମେଶ୍ୱରଙ୍କଠାରୁ ଆସେ। ଯେଉଁ
ଲୋକ ପ୍ରେମ କରେ, ସେ ପରମେଶ୍ୱରଙ୍କର ସନ୍ତାନ ହୁଏ
ଓ ତାହାଙ୍କୁ ଜାଣିପାରେ। ୮ଯେଉଁ ଲୋକ ପ୍ରେମ କରେ
ନାହିଁ, ସେ ପରମେଶ୍ୱରଙ୍କୁ ଜାଣେ ନାହିଁ, କାରଣ ପରମେଶ୍ୱର
ତ ପ୍ରେମ। ୯ଏହିପରି ଭାବରେ ପରମେଶ୍ୱର ଆମ୍ଭକୁ
ତାହାଙ୍କ ପ୍ରେମ ଦେଖାଇଛନ୍ତି। ସେ ତାହାଙ୍କର ଏକମାତ୍ର
ପୁତ୍ରକୁ ଏ ଜଗତକୁ ପଠାଇଛନ୍ତି ଯେପରି ଆମ୍ଭେ ତାହାଙ୍କ
ମାଧ୍ୟମରେ ଜୀବନ ପାଇପାରିବା। ୧୦ଆମ୍ଭେମାନେ ଯେ
ପରମେଶ୍ୱରଙ୍କୁ ପ୍ରେମ କଲୁ, ତାହା ନୁହେଁ, ମାତ୍ର ସେ
ଆମ୍ଭମାନଙ୍କୁ ପ୍ରେମ କଲେ, ଏହା ହେଉଛି ପ୍ରକୃତ ପ୍ରେମ।
ପୁଣି ଆପଣା ପୁତ୍ରଙ୍କୁ ଆମ୍ଭମାନଙ୍କ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ
କରି ପଠାଇଲେ:

୧୧ଏହାଦ୍ୱାରା ଆମ୍ଭ ପ୍ରତି ପରମେଶ୍ୱରଙ୍କ ମହାନ୍ ପ୍ରେମ
ପ୍ରକାଶ ପାଏ। ତେଣୁ ପ୍ରିୟ ବନ୍ଧୁମାନେ, ଆମ୍ଭେମାନେ ମଧ୍ୟ
ପରସ୍ପରକୁ ନିଶ୍ଚୟ ପ୍ରେମ କରିବା। ୧୨କେହି କେବେ
ପରମେଶ୍ୱରଙ୍କୁ ଦେଖିନାହିଁ। କିନ୍ତୁ ଯଦି ଆମ୍ଭେ ପରସ୍ପରକୁ
ପ୍ରେମ କରିବା, ତେବେ ପରମେଶ୍ୱର ଆମ୍ଭମାନଙ୍କ ମଧ୍ୟରେ
ବାସ କରିବେ ଓ ତାହାଙ୍କର ପ୍ରେମ ଆମ୍ଭଠାରେ ସିଦ୍ଧ
ହେବ। ୧୩ଆମ୍ଭେ ଜାଣୁ ଯେ, ଆମ୍ଭେ ସବୁ ପରମେଶ୍ୱରଙ୍କଠାରେ
ରହିଛୁ ଓ ସେ ଆମ୍ଭଠାରେ ଅଛନ୍ତି। ଆମ୍ଭେ ଏହା ଜାଣୁ,
କାରଣ ପରମେଶ୍ୱର ଆମ୍ଭମାନଙ୍କୁ ତାଙ୍କର ପବିତ୍ର ଆତ୍ମାଙ୍କୁ
ଦେଇଛନ୍ତି। ୧୪ଆମ୍ଭେମାନେ ଦେଖିଅଛୁ ଯେ ପରମେଶ୍ୱର
ଜଗତର ଉଦ୍ଧାର ପାଇଁ ଯେ ନିଜର ପୁତ୍ରଙ୍କୁ ପଠାଇଛନ୍ତି,
ଆମ୍ଭେମାନେ ଏଥିର ସାକ୍ଷୀ। ବର୍ତ୍ତମାନ ମଧ୍ୟ ଆମ୍ଭେ ସେହି
ସାକ୍ଷ୍ୟ ଦେଉଅଛୁ। ୧୫ଯଦି କେହି ବିଶ୍ୱାସ କରେ ଯେ,
“ଯୀଶୁ ପରମେଶ୍ୱରଙ୍କର ପୁତ୍ର ଅଟନ୍ତି,” ତେବେ ପରମେଶ୍ୱର
ତାଠାରେ ରହନ୍ତି ଓ ସେ ମଧ୍ୟ ପରମେଶ୍ୱରଙ୍କଠାରେ
ରହେ। ୧୬ତେଣୁ ଆମ୍ଭେ ପରମେଶ୍ୱରଙ୍କ ପ୍ରେମକୁ ଜାଣିଛୁ
ଓ ତହିଁରେ ଭରସା ରଖିଛୁ।

ପରମେଶ୍ୱର ତ ପ୍ରେମ। ଯେଉଁ ଲୋକ ପ୍ରେମରେ ସ୍ଥିର
ରହେ, ସେ ପରମେଶ୍ୱରଙ୍କଠାରେ ସ୍ଥିର ରହେ ଓ ପରମେଶ୍ୱର
ତାହାଠାରେ ବାସ କରନ୍ତି। ୧୭ଯଦି ଆମ୍ଭେ ପରମେଶ୍ୱରଙ୍କ
ପ୍ରେମରେ ସ୍ଥିର ହୋଇ ରହୁ, ତେବେ ତାହାର ବିଚାର
ଦିନରେ ଆମ୍ଭେମାନେ ଭରସାଯୁକ୍ତ ହୋଇ ନିର୍ଭୟରେ
ରହିପାରିବା। ଏହି ସଂସାରରେ ଆମ୍ଭେମାନେ ତାହାଙ୍କ (ଖ୍ରୀଷ୍ଟଙ୍କ)
ଭଳି ହୋଇଥିବାରୁ, ନିର୍ଭୟରେ ରହିପାରିବା। ୧୮ପ୍ରେମରେ
ଭୟ ନଥାଏ। ବରଂ ପରମେଶ୍ୱର ଦତ୍ତ ସିଦ୍ଧ ପ୍ରେମ
ଭୟକୁ ଦୂର କରିଦିଏ। ଭୟ ସହିତ ଦଣ୍ଡର ସଂପର୍କ
ଥାଏ। ତେଣୁ ଯାହାର ଭୟ ଅଛି, ଈଶ୍ୱରଙ୍କ ପ୍ରେମ
ତାହାଠାରେ ସିଦ୍ଧ ହୋଇ ନାହିଁ।

୧୯ପରମେଶ୍ୱର ଆମ୍ଭକୁ ପ୍ରଥମେ ପ୍ରେମ କରିବାରୁ
ଆମ୍ଭେମାନେ ତାହାଙ୍କୁ ପ୍ରେମ କରିଲୁ। ୨୦ଯଦି କେହି କହେ
“ମୁଁ ପରମେଶ୍ୱରଙ୍କୁ ପ୍ରେମ କରେ,” କିନ୍ତୁ ନିଜ ଭାଇକୁ
ଘୃଣା କରେ, ତେବେ ସେ ହେଉଛି ମିଥ୍ୟାବାଦୀ, କାରଣ
ଯେଉଁ ଲୋକ ତାହାର ଦେଖିଥିବା ଭାଇକୁ ଭଲ ପାଏ
ନାହିଁ, ତେବେ ଯେଉଁ ପରମେଶ୍ୱରଙ୍କୁ ସେ କେବେ
ଦେଖିନାହିଁ, ତାହାଙ୍କୁ ପ୍ରେମ କରି ପାରିବ ନାହିଁ। ୨୧ଏହି
ଆଜ୍ଞା ଆମ୍ଭେ ପରମେଶ୍ୱରଙ୍କଠାରୁ ପାଇଛୁ ଯେ ଯେକେହି
ପରମେଶ୍ୱରଙ୍କୁ ପ୍ରେମ କରେ, ସେ ନିଜ ଭାଇକୁ ମଧ୍ୟ
ପ୍ରେମ କରେ।

### ପରମେଶ୍ୱରଙ୍କ ସନ୍ତାନ ଜଗତ ବିରୁଦ୍ଧରେ ଜୟଲାଭ କରନ୍ତି

୫ ଯୀଶୁ ହେଉଛନ୍ତି ଖ୍ରୀଷ୍ଟ ବୋଲି ଯେଉଁମାନେ ବିଶ୍ୱାସ
କରନ୍ତି, ସେମାନେ ପରମେଶ୍ୱରଙ୍କର ସନ୍ତାନ ଅଟନ୍ତି।
ପରମ ପିତାଙ୍କୁ ପ୍ରେମ କରୁଥିବା ବ୍ୟକ୍ତି ତାହାଙ୍କର ସନ୍ତାନମାନଙ୍କୁ
ମଧ୍ୟ ପ୍ରେମ କରେ। ୨ଆମ୍ଭେ ପରମେଶ୍ୱରଙ୍କ ସନ୍ତାନମାନଙ୍କୁ
ପ୍ରେମ କରୁ ବୋଲି କିପରି ଜାଣିପାରୁ? ଆମ୍ଭେ ପରମେଶ୍ୱରଙ୍କୁ
ପ୍ରେମ କରୁ ଓ ତାହାଙ୍କର ଆଜ୍ଞା ପାଳନ କରୁଥିବାରୁ
ଜାଣିପାରୁ ଯେ, ଆମ୍ଭେ ପରମେଶ୍ୱରଙ୍କ ସନ୍ତାନ ଅଟୁ।
୩କାରଣ ପରମେଶ୍ୱରଙ୍କୁ ପ୍ରେମ କରିବାର ଅର୍ଥ, ତାହାଙ୍କ
ଆଜ୍ଞା ପାଳନ କରିବା। ଆଉ ତାହାଙ୍କ ଆଜ୍ଞା ସବୁ
ଅତିଶୟ କଠିନ ନୁହେଁ। ୪ଯେଉଁ ବ୍ୟକ୍ତି ପରମେଶ୍ୱରଙ୍କ
ସନ୍ତାନ, ଜଗତକୁ ଜୟ କରିବା ନିମନ୍ତେ ତାହାର କ୍ଷମତା
ଅଛି। ୫ଆମ୍ଭର ବିଶ୍ୱାସ ଦ୍ୱାରା ଆମ୍ଭେ ଜଗତକୁ ଜିତିଛୁ।
ଆମ୍ଭର ବିଶ୍ୱାସ ଜଗତକୁ ଜୟ କରେ। ଯେଉଁ ଲୋକ
ବିଶ୍ୱାସ କରେ ଯେ ଯୀଶୁ ପରମେଶ୍ୱରଙ୍କ ପୁତ୍ର, ସେ
ଜଗତରେ ବିଜୟୀ ହୁଏ।

## ପରମେଶ୍ୱର ଆମ୍ଭମାନଙ୍କୁ ତାହାଙ୍କର ପୁତ୍ର ବିଷୟରେ କହିଲେ

୬ଯିଏ ଏ ସଂସାରକୁ ଆସିଲେ, ସେ ହେଉଛନ୍ତି ଯୀଶୁ
ଖ୍ରୀଷ୍ଟ। ଯୀଶୁ ଖ୍ରୀଷ୍ଟ ଆମ୍ଭ ପାଖକୁ ଜଳ ଓ ରକ୍ତ* ସହିତ
ଆସିଥିଲେ। କେବଳ ଜଳ ନୁହେଁ, ମାତ୍ର ଜଳ ଓ ରକ୍ତ
ଉଭୟ ସହିତ ଯୀଶୁ ଆସିଥିଲେ। ସେହି ଆତ୍ମା ଆମ୍ଭମାନଙ୍କ
ନିକଟରେ ଏହି ସତ୍ୟ ସାକ୍ଷ୍ୟ ଦେଲେ। ଆତ୍ମା ହିଁ ସତ୍ୟ।
୭ଯୀଶୁଙ୍କ ବିଷୟରେ ଆମ୍ଭକୁ ତିନିଜଣ ସାକ୍ଷ୍ୟ ଦିଅନ୍ତି;
୮ପବିତ୍ର ଆତ୍ମା, ଜଳ ଓ ରକ୍ତ। ଏହି ତିନିଜଣଙ୍କ ସାକ୍ଷ୍ୟ
ଏକ ଅଟେ। ୯ଯେତେବେଳେ ଲୋକମାନେ ସତ୍ୟକଥା
କହନ୍ତି, ଆମ୍ଭେ ତାହା ବିଶ୍ୱାସ କରିଥାଉ। କିନ୍ତୁ ପରମେଶ୍ୱର
ଯାହା କହନ୍ତି, ତାହା ତ ଅଧିକ ବିଶ୍ୱାସ ଯୋଗ୍ୟ।
ପରମେଶ୍ୱର ତାହାଙ୍କ ପୁତ୍ରଙ୍କ ବିଷୟରେ ସତ୍ୟ ସାକ୍ଷ୍ୟ
ଦିଅନ୍ତି। ୧୦ପରମେଶ୍ୱରଙ୍କର ପୁତ୍ରଙ୍କୁ ବିଶ୍ୱାସ କରୁଥିବା
ବ୍ୟକ୍ତି ନିଜ ହୃଦୟରେ ସେହି ସତ୍ୟ ସାକ୍ଷ୍ୟ ପାଇଅଛି।
ପରମେଶ୍ୱରଙ୍କଠାରେ ବିଶ୍ୱାସ କରୁ ନଥିବା ବ୍ୟକ୍ତି ପରମେଶ୍ୱରଙ୍କୁ
ମିଥ୍ୟାବାଦୀ କରିଦିଏ, କାରଣ ଈଶ୍ୱର ଆପଣା ପୁତ୍ରଙ୍କ
ସମ୍ବନ୍ଧରେ ଯାହା କହିଛନ୍ତି, ସେ ତାହା ବିଶ୍ୱାସ କରେ
ନାହିଁ। ୧୧ପରମେଶ୍ୱର ଏହା କହନ୍ତି: ପରମେଶ୍ୱର ଆମ୍ଭମାନଙ୍କୁ
ଅନନ୍ତ ଜୀବନ ଦେଇଛନ୍ତି ଓ ସେ ଜୀବନ ତାହାଙ୍କ
ପୁତ୍ରଙ୍କଠାରେ ଅଛି। ୧୨ଯିଏ ପୁତ୍ରଙ୍କୁ ପାଇଅଛି ସେ ଜୀବନ
ପାଇଅଛି। କିନ୍ତୁ ଯେ ପରମେଶ୍ୱରଙ୍କ ପୁତ୍ରଙ୍କୁ ପାଇ ନାହିଁ,
ସେ ଜୀବନ ପାଇ ନାହିଁ।

## ବର୍ତ୍ତମାନ ଆମ୍ଭ ପାଖରେ ଅନନ୍ତ ଜୀବନ ଅଛି

୧୩ହେ ପରମେଶ୍ୱରଙ୍କ ପୁତ୍ରଙ୍କ ନାମରେ ବିଶ୍ୱାସ କରୁଥିବା
ଲୋକମାନେ, ତୁମ୍ଭେମାନେ ଯେପରି ଜାଣ ଯେ, ତୁମ୍ଭେମାନେ
ଅନନ୍ତ ଜୀବନ ପାଇଅଛ, ଏଥିନିମନ୍ତେ ମୁଁ ତୁମ୍ଭମାନଙ୍କ
ନିକଟକୁ ଏହି ସମସ୍ତ ଲେଖିଲି। ୧୪ଆମ୍ଭେ ନିଃସନ୍ଦେହରେ
ତାହାଙ୍କ ନିକଟକୁ ଆସିବା କାରଣ ତାହାଙ୍କଠାରେ ଆମ୍ଭର
ଏହି ଭରସା ଅଛି ଯେ ଯେତେବେଳେ ଆମ୍ଭେ ତାହାଙ୍କ
ଇଚ୍ଛା ଅନୁଯାୟୀ ତାହାଙ୍କୁ କୌଣସି ବିଷୟ ମାଗୁ ସେ
ଆମ୍ଭର ପ୍ରାର୍ଥନା ଶୁଣନ୍ତି। ୧୫ପ୍ରତ୍ୟେକ ସମୟରେ ସେ
ଆମ୍ଭର ମାଗୁଣି ଶୁଣନ୍ତି। ତେଣୁ ଆମ୍ଭେ ତାହାଙ୍କୁ ଯାହା
ମାଗୁ, ତାହା ସେ ଦେବେ ବୋଲି ଜାଣୁ।

୧୬ଯଦି କେହି ନିଜ ଭାଇକୁ କିମ୍ବା ଭଉଣୀକୁ ଏଭଳି
ପାପ କରୁଥିବାର ଦେଖେ ଆଉ ସେହି ପାପ ମୃତ୍ୟୁଜନକ,
ତେବେ ସେ ପାପ କରୁଥିବା ନିଜ ଭାଇ ଓ ଭଉଣୀମାନଙ୍କ
ପାଇଁ ପ୍ରାର୍ଥନା କରିବା ଉଚିତ। ତହିଁରେ ପରମେଶ୍ୱର
ସେମାନଙ୍କୁ ଜୀବନ ପ୍ରଦାନ କରିବେ। ମୁଁ ଏପରି ଲୋକମାନଙ୍କ
ବିଷୟରେ କହୁଛି,, ଯେଉଁମାନେ ଏପରି ପାପରେ ଲିପ୍ତ
ଅଛନ୍ତି ଯାହା ସେମାନଙ୍କୁ ଅନନ୍ତ ମୃତ୍ୟୁ ପାଖକୁ ନେଇ
ଯାଇ ପାରିବ ନାହିଁ। ଏପରି ପାପ ମଧ୍ୟ ଅଛି, ଯାହାର
ପରିଣାମ ମୃତ୍ୟୁ ଅଟେ। ମୁଁ ତୁମ୍ଭମାନଙ୍କୁ ସେପରି ପାପ
ବିଷୟରେ ପ୍ରାର୍ଥନା କରିବା ପାଇଁ କହୁନାହିଁ। ୧୭ସମସ୍ତ ମନ୍ଦ
କାମ ପାପ ଅଟେ। କିନ୍ତୁ ଏପରି ପାପ କାମ ମଧ୍ୟ ଅଛି
ଯାହା ଅନନ୍ତ ମୃତ୍ୟୁ ଆଡ଼କୁ ନେଇଯାଏ ନାହିଁ।

୧୮ଆମ୍ଭେ ଜାଣୁ ଯେ, ପରମେଶ୍ୱରଙ୍କର ସନ୍ତାନ ହୋଇଥିବା
ବ୍ୟକ୍ତି ଆଉ ପାପରେ ଲିପ୍ତ ରହେନାହିଁ। ବରଂ ପରମେଶ୍ୱରଙ୍କ
ପୁତ୍ର ତାହାକୁ ରକ୍ଷା କରନ୍ତି ଏବଂ ପାପାତ୍ମା ତା'ର କିଛି
କ୍ଷତି କରି ପାରେନାହିଁ। ୧୯ଆମ୍ଭେ ଜାଣୁ, ଯେ ଆମ୍ଭେ
ପରମେଶ୍ୱରଙ୍କର ଅଟୁ ମାତ୍ର ସମଗ୍ର ଜଗତ ଶୟତାନର
ନିୟନ୍ତ୍ରଣରେ ଅଛି। ୨୦ଆମ୍ଭେ ଏହା ମଧ୍ୟ ଜାଣୁ ଯେ,
ପରମେଶ୍ୱରଙ୍କ ପୁତ୍ର ଆସି ଅଛନ୍ତି ଓ ସେ ଆମ୍ଭମାନଙ୍କୁ
ବୁଝିବା ଶକ୍ତି ପ୍ରଦାନ କରିଛନ୍ତି। ତେଣୁ ବର୍ତ୍ତମାନ ଆମ୍ଭେ
ପରମେଶ୍ୱରଙ୍କୁ ଜାଣିପାରୁ। ସେହି ପରମେଶ୍ୱର ସତ୍ୟ
ଅଟନ୍ତି। ସେହି ସତ୍ୟମୟ ପରମେଶ୍ୱର ଓ ତାହାଙ୍କ ପୁତ୍ର
ଯୀଶୁ ଖ୍ରୀଷ୍ଟଙ୍କଠାରେ ଆମ୍ଭମାନଙ୍କର ଜୀବନ ଅଛି। ୨୧ତେଣୁ
ପ୍ରିୟ ପିଲାମାନେ, ତୁମ୍ଭେମାନେ ସବୁ ନିଜ ନିଜକୁ ଭଣ୍ଡ
ଦେବତାମାନଙ୍କଠାରୁ ଦୂରରେ ରଖ।

---

**"ଜଳ ଓ ରକ୍ତ"** ଜଳ ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କର ବାପ୍ତିସ୍ମର ଜଳ, ରକ୍ତ ଅର୍ଥାତ୍ ଯୀଶୁଖ୍ରୀଷ୍ଟଙ୍କର ମୃତ୍ୟୁର ରକ୍ତ।

# ଯୋହନଙ୍କ ଦ୍ୱିତୀୟ ପତ୍ର

ପ୍ରାଚୀନ ଯେ ମୁଁ, ପରମେଶ୍ୱରଙ୍କ ଦ୍ୱାରା ମନୋନୀତା
ମହିଳା ଓ ତାହାଙ୍କର ସନ୍ତାନମାନଙ୍କ ନିକଟକୁ ଏହି ପତ୍ର
ଲେଖୁଛି:
ମୁଁ ତୁମ୍ଭ ସମସ୍ତଙ୍କୁ ସତ୍ୟରେ ରହି ପ୍ରେମ କରେ।
ସତ୍ୟକୁ ଜାଣିଥିବା ସମସ୍ତ ଲୋକମାନେ ମଧ୍ୟ ତୁମ୍ଭକୁ ପ୍ରେମ
କରନ୍ତି। ୨ଆମ୍ଭ ଅନ୍ତରରେ ଯେଉଁ ସତ୍ୟ ରହିଛି, ସେଥିପାଇଁ
ଆମ୍ଭେ ତୁମ୍ଭମାନଙ୍କୁ ପ୍ରେମ କରୁଛୁ। ଏହି ସତ୍ୟ ଆମ୍ଭ
ପାଖରେ ସବୁଦିନ ପାଇଁ ରହିବ।
୩ପରମପିତା ପରମେଶ୍ୱର ଓ ତାହାଙ୍କ ପୁତ୍ର ଯୀଶୁ
ଖ୍ରୀଷ୍ଟଙ୍କଠାରୁ ଦୟା, ଅନୁଗ୍ରହ ଓ ଶାନ୍ତି ଆମ୍ଭ ସହିତ
ରହିବ। ଆମ୍ଭେ ସତ୍ୟ ଓ ପ୍ରେମ ଦ୍ୱାରା ତାହାଙ୍କଠାରୁ ଏହି
ଆଶୀର୍ବାଦ ଲାଭ କରୁ।
୪ମୁଁ ତୁମ୍ଭର କେତେକ ସନ୍ତାନମାନଙ୍କ ବିଷୟରେ ଶୁଣି
ଖୁସି ହେଲି। ମୁଁ ଅତିଶୟ ଆନନ୍ଦିତ ଯେ, ପିତାଙ୍କ
ଆଜ୍ଞାନୁସାରେ ସେମାନେ ସତ୍ୟପଥ ଅନୁସରଣ କରୁଛନ୍ତି।
୫ପ୍ରିୟ ମହାଶୟା। ମୁଁ ତୁମକୁ କହୁଛି: ଆମ୍ଭେ ସମସ୍ତେ
ପରସ୍ପରକୁ ପ୍ରେମ କରିବା ଉଚିତ। ଏହା ଏକ ନୂତନ
ଆଜ୍ଞା ନୁହେଁ। ଏହା ସେହି ଆଜ୍ଞା, ଯାହା ଆମ୍ଭମାନଙ୍କ
ନିକଟରେ ଆରମ୍ଭରୁ ଅଛି। ୬ପ୍ରେମର ଅର୍ଥ ହେଉଛି,
ତାହାଙ୍କର ଆଜ୍ଞା ଅନୁସାରେ ଜୀବନଯାପନ କରିବା।
ପରମେଶ୍ୱରଙ୍କ ଆଜ୍ଞା ଏହି: ତୁମ୍ଭେ ଏକ ପ୍ରେମର ଜୀବନ
ବିତାଅ। ତୁମ୍ଭେ ଏହି ଆଜ୍ଞା ଆରମ୍ଭରୁ ଶୁଣିଛ।
୭ଏ ଜଗତରେ ବର୍ତ୍ତମାନ ଅନେକ ଭଣ୍ଡ ଶିକ୍ଷକ
ବାହାରିଲେଣି। ଯୀଶୁ ଖ୍ରୀଷ୍ଟ ଏହି ଜଗତକୁ ଆସିଛନ୍ତି, ଏହା
ସେମାନେ ଅସ୍ୱୀକାର କରନ୍ତି। ଏହି ସତ୍ୟକୁ ଅସ୍ୱୀକାର
କରୁଥିବା ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଭଣ୍ଡ ଶିକ୍ଷକ ଓ
ଖ୍ରୀଷ୍ଟଙ୍କର ଶତ୍ରୁ। ୮ସାବଧାନ ରୁହ, ଯେପରି ତୁମ୍ଭ କାର୍ଯ୍ୟର
ପୁରସ୍କାର ହରାଇ ନ ଦିଅ। ଯେପରି ତୁମ୍ଭେ ତୁମ୍ଭର ସମସ୍ତ
ପୁରସ୍କାର ପାଇବ, ସେଥିପାଇଁ ଯତ୍ନବାନ ହୁଅ।
୯ପ୍ରତ୍ୟେକ ଲୋକ ଖ୍ରୀଷ୍ଟଙ୍କର ଶିକ୍ଷାକୁ କେବଳ ଅନୁସରଣ
କରିବା ଉଚିତ। ଯଦି କେହି ଖ୍ରୀଷ୍ଟଙ୍କ ଶିକ୍ଷାକୁ ପରିବର୍ତ୍ତନ
କରେ, ତେବେ ସେହି ଲୋକ ପାଖରେ ପରମେଶ୍ୱର
ନାହାଁନ୍ତି। ଯଦି କୌଣସି ବ୍ୟକ୍ତି ଖ୍ରୀଷ୍ଟଙ୍କ ଶିକ୍ଷା ଅନୁସରଣ
କରେ, ତେବେ ସେହି ଲୋକ ପାଖରେ ଉଭୟ ପରମପିତା
ଏବଂ ପୁତ୍ର ଅଛନ୍ତି।
୧୦ଯଦି ତୁମ୍ଭ ପାଖକୁ କେହି ଆସେ କିନ୍ତୁ ଏହି ଶିକ୍ଷା
ନଦିଏ, ତେବେ ତାହାକୁ ଗୃହରେ ସ୍ୱାଗତ ଓ ଗ୍ରହଣ କର
ନାହିଁ। ୧୧ତୁମ୍ଭେ ତାହାକୁ ଯଦି ଗ୍ରହଣ କର, ତେବେ
ତାହାକୁ ମନ୍ଦକର୍ମ କରିବାରେ ସାହାଯ୍ୟ କରୁଛ।
୧୨ମୋର ତୁମ୍ଭକୁ କହିବା ପାଇଁ ବହୁତ କଥା ଅଛି।
କିନ୍ତୁ ମୁଁ କାଗଜ ଏବଂ କଲମରେ ତାହା ଲେଖୁନାହିଁ।
ତାହା ବଦଳରେ ମୁଁ ତୁମ୍ଭକୁ ସାକ୍ଷାତ କରିବାକୁ ଆଶା
କରୁଛି, ତେବେ ଆମ୍ଭେ ମୁହାମୁହିଁ ହୋଇ କଥାବାର୍ତ୍ତା
ହୋଇପାରିବା। ତାହା ଆମ୍ଭକୁ ଅତିଶୟ ଆନନ୍ଦିତ କରିବ।
୧୩ପରମେଶ୍ୱରଙ୍କ ଦ୍ୱାରା ମନୋନୀତା ତୁମ୍ଭମାନଙ୍କର ଭଉଣୀଙ୍କ
ସନ୍ତାନମାନେ ତୁମ୍ଭମାନଙ୍କୁ ସେମାନଙ୍କର ନମସ୍କାର ଜଣାଇଛନ୍ତି।

# ଯୋହନଙ୍କ ତୃତୀୟ ପତ୍ର

ପ୍ରାଚୀନ ଯେ ମୁଁ, ମୁଁ ମୋର ପ୍ରିୟ ବନ୍ଧୁ ଗାୟଙ୍କ
ନିକଟକୁ ଲେଖୁଛି। ମୁଁ ତାହାଙ୍କୁ ସତ୍ୟରେ ରହି ପ୍ରେମ
କରେ।
୨ପ୍ରିୟ ବନ୍ଧୁ, ମୁଁ ଜାଣେ, ତୁମ୍ଭର ଆତ୍ମା କୁଶଳରେ
ଅଛି। ତେଣୁ ମୁଁ ପ୍ରାର୍ଥନା କରେ, ତୁମ୍ଭେ ସବୁ ଦୃଷ୍ଟିରୁ
ଭଲରେ ଥିବ। ତୁମ୍ଭର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ମୁଁ ପ୍ରାର୍ଥନା
କରୁଛି। ୩ଖ୍ରୀଷ୍ଟରେ କେତେକ ଭାଇମାନେ ଏଠାକୁ ଆସିଲେ
ଓ ସତ୍ୟ ପ୍ରତି ତୁମ୍ଭର ବିଶ୍ୱସ୍ତତା ସଂପର୍କରେ କହିଲେ।
ସେମାନେ ମୋତେ କହିଲେ ଯେ ତୁମ୍ଭେ ଅବିରତ ସତ୍ୟ
ପଥ ଅନୁସରଣ କରୁଛ। ଏହା ଶୁଣି ମୁଁ ଅତ୍ୟନ୍ତ ଆନନ୍ଦିତ
ହେଲି। ୪ମୁଁ ଯେତେବେଳେ ଶୁଣେ ଯେ ମୋର ପିଲାମାନେ
ସତ୍ୟର ମାର୍ଗ ଅନୁସରଣ କରୁଛନ୍ତି, ତାହା ମୋତେ
ବିଶେଷ ଆନନ୍ଦ ଦିଏ।
୫ମୋର ପ୍ରିୟ ବନ୍ଧୁ, ଏହା ଉତ୍ତମ ଯେ ତୁମ୍ଭେ ଖ୍ରୀଷ୍ଟରେ
ଥିବା ଭାଇମାନଙ୍କୁ ସାହାଯ୍ୟ କରୁଛ। ତୁମ୍ଭେ ଅପରିଚିତ
ଭାଇମାନଙ୍କୁ ମଧ୍ୟ ସାହାଯ୍ୟ କରୁଛ। ୬ସେହି ଭାଇମାନେ,
ତୁମ୍ଭର ପ୍ରେମ ସମ୍ବନ୍ଧରେ ମଣ୍ଡଳୀକୁ କହିଛନ୍ତି। ଦୟାକରି
ତୁମ୍ଭେ ସେମାନଙ୍କୁ ସେମାନଙ୍କର ଯାତ୍ରାରେ ସାହାଯ୍ୟ କର।
ତୁମ୍ଭେ ସେମାନଙ୍କୁ ଏପରି ସାହାଯ୍ୟ କର, ଯେପରି ତାହା
ପରମେଶ୍ୱରଙ୍କୁ ସନ୍ତୁଷ୍ଟ କରିବ। ୭ସେହି ଭାଇମାନେ ଖ୍ରୀଷ୍ଟଙ୍କର
ସେବା ପାଇଁ ଭ୍ରମଣ କରନ୍ତି। ସେମାନେ ବିଶ୍ୱାସ ନ
କରୁଥିବା ଲୋକମାନଙ୍କଠାରୁ କିଛି ଗ୍ରହଣ କରନ୍ତି ନାହିଁ।
୮ତେଣୁ ଆମ୍ଭେ ସେହି ଭାଇମାନଙ୍କୁ ସାହାର୍ଯ୍ୟ କରିବା
ଉଚିତ। ଆମ୍ଭେ ତାହାଙ୍କୁ ସାହାଯ୍ୟ କରିବା ଦ୍ୱାରା ଆମ୍ଭେ
ସତ୍ୟ ନିମନ୍ତେ ସେମାନଙ୍କର କାର୍ଯ୍ୟରେ ଭାଗୀଦାର
ହୋଇପାରିବା।
୯ମୁଁ ମଣ୍ଡଳୀକୁ ଗୋଟିଏ ପତ୍ର ଲେଖିଥିଲି। କିନ୍ତୁ
ଦିୟତ୍ରଫି ଆମ୍ଭ କଥା ଶୁଣିବା ପାଇଁ ରାଜି ନୁହେଁ। ସେ
ସର୍ବଦା ସେଠାରେ ନେତା ହୋଇ ରହିବା ପାଇଁ ଚାହେଁ।
୧୦ମୁଁ ସେଠାରୁ ଆସିଲେ, ଦିୟତ୍ରଫିର କାର୍ଯ୍ୟ ବିଷୟରେ
କଥାବାର୍ତ୍ତା କରିବି। ସେ ଆମ୍ଭମାନଙ୍କ ବିଷୟରେ ମିଥ୍ୟା ଓ
ମନ୍ଦ କଥାମାନ କହୁଛି। ଏହାଛଡ଼ା, ସେ ଖ୍ରୀଷ୍ଟଙ୍କ ପାଇଁ
ସେବା କରୁଥିବା ଭାଇମାନଙ୍କୁ ମଧ୍ୟ ସାହାଯ୍ୟ କରୁ ନାହିଁ।
ଯେଉଁମାନେ ସେହି ଭାଇମାନଙ୍କୁ ସାହାଯ୍ୟ କରିବାକୁ ଚାହାଁନ୍ତି,
ସେମାନଙ୍କୁ ମଧ୍ୟ ସେ ମନା କରୁଛି। ସେ ସେମାନଙ୍କୁ
ମଣ୍ଡଳୀରୁ ବାହାର କରିଦିଏ।
୧୧ମୋର ପ୍ରିୟ ବନ୍ଧୁ, ମନ୍ଦ ବିଷୟକୁ ଅନୁସରଣ କର
ନାହିଁ, କିନ୍ତୁ ଉତ୍ତମ ବିଷୟର ଅନୁଗାମୀ ହୁଅ। ଉତ୍ତମ
କାର୍ଯ୍ୟ କରୁଥିବା ବ୍ୟକ୍ତି ପରମେଶ୍ୱରଙ୍କ ପାଖରୁ ଆସିଥାଏ।
କିନ୍ତୁ ମନ୍ଦ କାର୍ଯ୍ୟ କରୁଥିବା ବ୍ୟକ୍ତି ପରମେଶ୍ୱରଙ୍କୁ କେବେ
ଦେଖି ନାହିଁ।
୧୨ଦୀମୀତ୍ରିୟଙ୍କ ବିଷୟରେ ସମସ୍ତେ ଭଲ କଥା କହନ୍ତି।
ସେମାନେ ଯାହା କହନ୍ତି, ସତ୍ୟ ଏଥିର ସାକ୍ଷ୍ୟ ଦିଏ।
ଆମ୍ଭେ ମଧ୍ୟ ତାହା ବିଷୟରେ ଭଲ କଥା କହୁ, ଏବଂ
ତୁମ୍ଭେ ଜାଣ ଯେ ଆମ୍ଭର ସାକ୍ଷ୍ୟ ସତ୍ୟ ଅଟେ।
୧୩ମୋର ତୁମ୍ଭକୁ କହିବା ପାଇଁ ବହୁତ ବିଷୟ ଅଛି।
କିନ୍ତୁ ମୁଁ ତାହା କାଳି ଏବଂ କଲମରେ ଲେଖିବା ପାଇଁ
ଚାହୁଁନାହିଁ। ୧୪ମୋର ତୁମ୍ଭ ସହିତ ଶୀଘ୍ର ଦେଖା ହେବ
ବୋଲି ଆଶା କରୁଛି। ସେତେବେଳେ ଆମ୍ଭେ ଏକାଠି
ହୋଇ କଥା ହେବା।
୧୫ତୁମ୍ଭ ପ୍ରତି ଶାନ୍ତି ହେଉ। ମୋର ଏଠାରେ ଥିବା
ବନ୍ଧୁମାନେ ତୁମ୍ଭ ପାଖକୁ ସେମାନଙ୍କର ପ୍ରେମ ଜଣାଉଛନ୍ତି।
ଦୟା କରି ଆମ୍ଭର ପ୍ରେମ ସେଠାରେ ଥିବା ପ୍ରତ୍ୟେକ
ବନ୍ଧୁଙ୍କୁ ଜଣାଇବ।

# ଯିହୂଦାଙ୍କ ପତ୍ର

ମୁଁ ଯିହୂଦା, ଯୀଶୁ ଖ୍ରୀଷ୍ଟଙ୍କର ଜଣେ ସେବକ ଓ ଯାକୁବଙ୍କର
ଭାଇ ଅଟେ।
ଯେଉଁମାନେ ପରମେଶ୍ୱରଙ୍କ ଦ୍ୱାରା ଆହ୍ୱାନ ପାଇଛନ୍ତି
ସେମାନଙ୍କ ନିକଟକୁ ଲେଖୁଛି। ପରମ ପିତା ପରମେଶ୍ୱର
ତୁମ୍ଭମାନଙ୍କୁ ପ୍ରେମ କରନ୍ତି ଓ ଯୀଶୁ ଖ୍ରୀଷ୍ଟଙ୍କଠାରେ ତୁମ୍ଭେମାନେ
ସୁରକ୍ଷିତ ଭାବେ ରଖାଯାଇଛ।
୨ପରମେଶ୍ୱରଙ୍କର ଦୟା, ପ୍ରେମ ଓ ଶାନ୍ତି ପ୍ରଚୁର
ଭାବରେ ତୁମ୍ଭେମାନେ ଭୋଗ କର।

### ଭୁଲ କରୁଥିବା ଲୋକମାନଙ୍କୁ ପରମେଶ୍ୱର ଦଣ୍ଡ ଦେବେ

୩ପ୍ରିୟ ବନ୍ଧୁମାନେ, ମୁଁ ତୁମ୍ଭମାନଙ୍କ ପାଖକୁ ଆମ୍ଭେ
ସମସ୍ତେ ଅଂଶୀଦାର ହୋଇଥିବା ପରିତ୍ରାଣ ସମ୍ବନ୍ଧରେ ଲେଖିବା
ପାଇଁ ବହୁତ ଇଚ୍ଛା କରୁଥିଲି। କିନ୍ତୁ ତାହା ବଦଳରେ ମୁଁ
ଅନ୍ୟ କଥା ଲେଖିବା ଆବଶ୍ୟକ ଇଚ୍ଛା କଲି; ମୁଁ ତୁମ୍ଭକୁ,
ବିଶ୍ୱାସ ସକାଶେ କଠିନ ପରିଶ୍ରମ କରିବା ପାଇଁ ଉତ୍ସାହିତ
କରିବାକୁ ଚାହେଁ। ପରମେଶ୍ୱର ତାହାଙ୍କର ପବିତ୍ର ଲୋକମାନଙ୍କୁ
ସେହି ବିଶ୍ୱାସ ଦେଇଥିଲେ। ପରମେଶ୍ୱର ଏକାଥରକେ ଏହି
ବିଶ୍ୱାସ ଦେଇଛନ୍ତି ଓ ଏହା ସବୁଦିନ ପାଇଁ ଉତ୍ତମ।
୪କେତେକ ଲୋକମାନେ ଗୁପ୍ତ ଭାବରେ ତୁମ୍ଭ ଦଳରେ
ପ୍ରବେଶ କରିଛନ୍ତି। ସେମାନେ ସେମାନଙ୍କର କାର୍ଯ୍ୟ ପାଇଁ
ଦୋଷୀ ବିବେଚିତ ହୋଇ ସାରିଲେଣି। ଭବିଷ୍ୟଦ୍‌ବକ୍ତାମାନେ
ବହୁତ ଆଗରୁ ଏହି ଲୋକମାନଙ୍କ ବିଷୟରେ ଲେଖିଥିଲେ।
ଏହି ଲୋକମାନେ ପରମେଶ୍ୱରଙ୍କର ବିରୋଧୀ। ସେମାନେ
ପାପପୂର୍ଣ୍ଣ କାର୍ଯ୍ୟ କରିବା ପାଇଁ ଆମ୍ଭ ପରମେଶ୍ୱରଙ୍କର
ଅନୁଗ୍ରହକୁ ଅପବ୍ୟବହାର କରୁଛନ୍ତି। ଏହି ଲୋକମାନେ
ଆମ୍ଭର କର୍ତ୍ତା ଓ ପ୍ରଭୁ, ଯୀଶୁ ଖ୍ରୀଷ୍ଟଙ୍କୁ ଗ୍ରହଣ କରୁନାହାନ୍ତି।
୫ତୁମ୍ଭେ ଆଗରୁ ଜାଣିଥିବା କେତେକ କଥା ସ୍ମରଣ
କରାଇବା ପାଇଁ ମୁଁ ତୁମ୍ଭମାନଙ୍କୁ ସାହାଯ୍ୟ କରିବାକୁ ଚାହେଁ।
ମନେରଖ, ପ୍ରଭୁ ତାହାଙ୍କର ଲୋକଙ୍କୁ ମିସର ଦେଶରୁ
ଉଦ୍ଧାର କଲେ। କିନ୍ତୁ ପରେ ପ୍ରଭୁ ସମସ୍ତ ଅବିଶ୍ୱାସୀ
ଲୋକମାନଙ୍କୁ ଧ୍ୱଂସ କରିଦେଲେ। ୬ତୁମ୍ଭେ ସେହି
ସ୍ୱର୍ଗଦୂତମାନଙ୍କ ବିଷୟ ମନେ ପକାଅ, ଯେଉଁମାନଙ୍କର
କ୍ଷମତା ଥିଲା କିନ୍ତୁ ସେମାନେ ତାହାକୁ ରଖିପାରିଲେ ନାହିଁ।
ସେମାନେ ନିଜ ନିଜ ଘର ଛାଡ଼ିଦେଲେ। ତେଣୁ ପ୍ରଭୁ
ସେମାନଙ୍କୁ ଅନ୍ଧକାରରେ ରଖିଛନ୍ତି। ସେମାନେ ଅନନ୍ତକାଳୀନ
ବନ୍ଧନରେ ବନ୍ଧା ହୋଇଛନ୍ତି। ସେ ସେମାନଙ୍କୁ ମହାବିଚାରଦିନ
ପର୍ଯ୍ୟନ୍ତ ରଖିଛନ୍ତି। ୭ସଦୋମ, ଗମୋରା ଓ ତା' ପାଖାପାଖି
ଅନ୍ୟ ନଗରଗୁଡ଼ିକୁ ମନେ ପକାଅ। ସେମାନେ ଠିକ୍ ସେହି
ସ୍ୱର୍ଗଦୂତମାନଙ୍କ ପରି। ସେହି ନଗର ଗୁଡ଼ିକ ବ୍ୟଭିଚାର
ପାପ ଓ ଅସ୍ୱାଭାବିକ କାମୁକତାରେ ପରିପୂର୍ଣ୍ଣ ଥିଲା।
ସେମାନେ ଅନନ୍ତ ଅଗ୍ନି ଦଣ୍ଡରେ ଦଣ୍ଡିତ ହେଲେ। ସେମାନଙ୍କର
ଦଣ୍ଡ ଆମ୍ଭମାନଙ୍କ ଆଗରେ ଗୋଟିଏ ଉଦାହରଣ ସ୍ୱରୂପ
ରହିଛି।
୮ତୁମ୍ଭମାନଙ୍କ ଦଳରେ ପ୍ରବେଶ କରିଥିବା ଲୋକମାନେ
ଠିକ୍ ଏହିପରି। ସେମାନେ ସ୍ୱପ୍ନ ଦ୍ୱାରା ପରିଚାଳିତ ହୁଅନ୍ତି।
ସେମାନେ ନିଜ ଶରୀରକୁ ପାପ କାର୍ଯ୍ୟରେ ଦୂଷିତ କରନ୍ତି।
ସେମାନେ ପରମେଶ୍ୱରଙ୍କର କର୍ତ୍ତୃତ୍ୱକୁ ଅସ୍ୱୀକାର କରନ୍ତି ଓ
ଗୌରବମୟ ସ୍ୱର୍ଗଦୂତମାନଙ୍କ ବିରୁଦ୍ଧରେ ବହୁତ ମନ୍ଦ କଥା
କହନ୍ତି। ୯ପ୍ରଧାନ ସ୍ୱର୍ଗଦୂତ ମୀଖାୟେଲ ମଧ୍ୟ ଏହା
କରିନଥିଲେ। ସେ ମୋଶାଙ୍କ ଶରୀର ନେବା ବିଷୟରେ
ଶୟତାନ ସହିତ ଯୁକ୍ତି କରିଥିଲେ। କିନ୍ତୁ ମୀଖାୟେଲ
ସମାଲୋଚନାମୂଳକ କଥା କହି ତାହାକୁ ଦୋଷୀ କରିବାକୁ
ସାହସ କଲେ ନାହିଁ। କିନ୍ତୁ ସେ କହିଲେ, "ପ୍ରଭୁ ତୁମ୍ଭକୁ
ଦଣ୍ଡ ଦିଅନ୍ତୁ।" ୧୦କିନ୍ତୁ ଏହି ଲୋକମାନେ ଗୋଟିଏ କଥା
ନ ବୁଝି, ସେ ବିଷୟରେ ସମାଲୋଚନା କରନ୍ତି। ସେମାନେ
ଅଳ୍ପ କିଛି ବୁଝନ୍ତି। କିନ୍ତୁ ସେମାନେ ଚିନ୍ତା ନକରି ବୁଝନ୍ତି।
କେବଳ ମୂକ ପଶୁମାନଙ୍କ ପରି ସ୍ପର୍ଶ କରି ବୁଝନ୍ତି। ଏହି
ବିଷୟଗୁଡ଼ିକ ହେତୁ ସେମାନେ ବିନଷ୍ଟ ହୁଅନ୍ତି। ୧୧ଏହା
ସେମାନଙ୍କ ପାଇଁ ଖରାପ ଅଟେ। ଏହି ଲୋକମାନେ
କୟିନର ପଥ ଅନୁସରଣ କରିଛନ୍ତି। ସେମାନେ ଅର୍ଥ
ଲୋଭ ସକାଶେ ବିଲୟାମ ପରି ଅନ୍ୟାୟ ପଥ ଅନୁସରଣ
କରିଛନ୍ତି। ଏହି ଲୋକମାନେ କୋରହ ପରି ପରମେଶ୍ୱରଙ୍କ
ବିରୁଦ୍ଧରେ ଆଚରଣ କରିଛନ୍ତି। କୋରହ ପରି ସେମାନେ
ମଧ୍ୟ ଧ୍ୱଂସ ହେବେ। ୧୨ଏମାନେ ତୁମ୍ଭମାନଙ୍କର ପ୍ରେମଭୋଜିର
କଳଙ୍କ ପରି। ସେମାନେ ନିର୍ଭୟରେ ତୁମ୍ଭ ସହିତ ଭୋଜନ
କରନ୍ତି। ସେମାନେ କେବଳ ନିଜର ଯତ୍ନ ନିଅନ୍ତି।
ସେମାନେ ବର୍ଷା ବିହୀନ ମେଘ ଖଣ୍ଡମାନ। ପବନ ଦ୍ୱାରା
ସେମାନେ ଚାରିଆଡ଼େ ଉଡ଼ନ୍ତି। ସେମାନେ ହେମନ୍ତ କାଳରେ
ଫଳ ନ ଥିବା ଗଛ ପରି ଓ ଭୂମିରୁ ହଠାତ୍ ଉପୁଡ଼ି
ଯାଆନ୍ତି। ସେମାନଙ୍କର ଦୁଇ ଥର ମୃତ୍ୟୁ ହୁଏ। ୧୩ସେମାନେ
ସମୁଦ୍ରର ପ୍ରଚଣ୍ଡ ତରଙ୍ଗ ସଦୃଶ। ଏହି ତରଙ୍ଗ ଫେଣ ସୃଷ୍ଟି
କରେ। ତରଙ୍ଗ ଫେଣ ସୃଷ୍ଟି କଲା ଭଳି ଏହି ଲୋକମାନେ
ଲଜ୍ଜାଜନକ କାର୍ଯ୍ୟ କରନ୍ତି। ଏହି ଲୋକମାନେ ଆକାଶରେ
ଏଣେତେଣେ ଘୁରି ବୁଲୁଥିବା ନକ୍ଷତ୍ର ତୁଲ୍ୟ। ଏହି ଲୋକମାନଙ୍କ
ନିମନ୍ତେ ଚିରକାଳ ପାଇଁ ଘୋର ଅନ୍ଧକାରମୟ ସ୍ଥାନ
ରଖାଯାଇଅଛି।
୧୪ଆଦମଙ୍କଠାରୁ ପୁରୁଷାନୁକ୍ରମେ ସପ୍ତମ ପୁରୁଷରେ ଜାତ
ହନୋକ ଏହି ଲୋକମାନଙ୍କ ବିଷୟରେ ଏହି କଥା

କହିଥିଲେ: “ଦେଖ, ପ୍ରଭୁ ତାହାଙ୍କର ହଜାର ହଜାର
ପବିତ୍ର ସ୍ୱର୍ଗଦୂତମାନଙ୍କ ସହିତ ଆସୁଛନ୍ତି। ୧୫ପ୍ରଭୁ ପ୍ରତ୍ୟେକ
ଲୋକଙ୍କର ବିଚାର କରିବେ। ସେ ପରମେଶ୍ୱରଙ୍କ ବିରୋଧୀ
ପ୍ରତ୍ୟେକ ଲୋକଙ୍କୁ ବିଚାର କରିବାକୁ ଓ ଦଣ୍ଡ ଦେବାକୁ
ଆସୁଛନ୍ତି। ସେ ପରମେଶ୍ୱରଙ୍କର ବିରୁଦ୍ଧରେ ଦୁଷ୍କର୍ମ କରିଥିବା
ପ୍ରତ୍ୟେକ ଲୋକଙ୍କୁ ଦଣ୍ଡ ଦେବେ। ଯେଉଁମାନେ ପରମେଶ୍ୱରଙ୍କ
ବିରୋଧୀ, ସେହି ପାପୀମାନଙ୍କୁ ପରମେଶ୍ୱର ଦଣ୍ଡ ଦେବେ।
ପରମେଶ୍ୱରଙ୍କ ବିରୁଦ୍ଧରେ ମନ୍ଦ କଥା କହିବା ହେତୁ ସେ
ସେମାନଙ୍କୁ ଦଣ୍ଡ ଦେବେ।”

୧୬ଏହି ଲୋକମାନେ ସର୍ବଦା ଅନ୍ୟ ଲୋକମାନଙ୍କ
ବିରୁଦ୍ଧରେ ଅଭିଯୋଗ କରନ୍ତି ଓ ସେମାନଙ୍କର ଦୋଷ
ବାହାର କରନ୍ତି। ସେମାନେ ସବୁବେଳେ ନିଜ ଇଚ୍ଛା
ଅନୁସାରେ ମନ୍ଦ କାର୍ଯ୍ୟମାନ କରିଥାଆନ୍ତି। ସେମାନେ ନିଜ
ବିଷୟରେ ଅହଙ୍କାର କରି କଥା କୁହନ୍ତି। ସେମାନେ ନିଜ
ସ୍ୱାର୍ଥ ହାସଲ କରିବା ପାଇଁ କେବଳ ଅନ୍ୟ ଲୋକମାନଙ୍କ
ସପକ୍ଷରେ ଭଲ କଥା କୁହନ୍ତି।

## ଗୋଟିଏ ସତର୍କ ବାଣୀ ଏବଂ ବ୍ୟବହାରିକ ବିଷୟ

୧୭ପ୍ରିୟ ବନ୍ଧୁମାନେ, ଆମ୍ଭମାନଙ୍କର ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କର
ପ୍ରେରିତମାନେ ତୁମ୍ଭମାନଙ୍କୁ ପୂର୍ବରୁ ଯେଉଁ ସବୁ କଥା
କହିଛନ୍ତି, ତାହା ସ୍ମରଣ କର। ୧୮ପ୍ରେରିତମାନେ ତୁମ୍ଭକୁ
କହିଥିଲେ, “ଶେଷ କାଳରେ ପରମେଶ୍ୱରଙ୍କୁ ଉପହାସ
କରୁଥିବା ଲୋକମାନେ ଉଠିବେ।” ଏହି ଲୋକମାନେ
କେବଳ ନିଜ ଇଚ୍ଛା ଅନୁସାରେ ପରମେଶ୍ୱରଙ୍କ ବିରୁଦ୍ଧରେ
କାର୍ଯ୍ୟ କରନ୍ତି। ୧୯ଏହି ଲୋକମାନେ ତୁମ୍ଭମାନଙ୍କ ମଧ୍ୟରେ
ଦଳଭେଦ ସୃଷ୍ଟି କରନ୍ତି। ସେମାନେ ନିଜର ପାପ ଇଚ୍ଛା
ଅନୁସାରେ ସମସ୍ତ କାର୍ଯ୍ୟ କରନ୍ତି। ସେମାନଙ୍କ ମଧ୍ୟରେ
ପବିତ୍ରଆତ୍ମା ନାହାଁନ୍ତି।

୨୦କିନ୍ତୁ ମୋର ପ୍ରିୟ ବନ୍ଧୁଗଣ, ତୁମ୍ଭେମାନେ ନିଜର
ପବିତ୍ର ବିଶ୍ୱାସ ଉପରେ ନିଜନିଜ ଜୀବନକୁ ଦୃଢ଼ ଭାବରେ
ଗଢ଼। ପବିତ୍ର ଆତ୍ମାଙ୍କ ସାହାଯ୍ୟରେ ପ୍ରାର୍ଥନା କର।
୨୧ପରମେଶ୍ୱରଙ୍କର ପ୍ରେମରେ ନିଜ ନିଜକୁ ସ୍ଥିର କରି
ରଖ। ତୁମ୍ଭେମାନେ ପ୍ରଭୁ ଖ୍ରୀଷ୍ଟ ଯୀଶୁଙ୍କ ଦୟାର ଅପେକ୍ଷା
କର। ସେ ତୁମ୍ଭକୁ ଅନନ୍ତ ଜୀବନ ପ୍ରଦାନ କରିବେ।

୨୨ସନ୍ଦେହରେ ପଡ଼ିଥିବା ଲୋକମାନଙ୍କୁ ସାହାଯ୍ୟ
କର। ୨୩ଅନ୍ୟ ଲୋକମାନଙ୍କୁ ରକ୍ଷା କର। ସେହି
ଲୋକମାନଙ୍କୁ ଅଗ୍ନିରୁ ଟାଣି ଆଣ। କିନ୍ତୁ ତୁମ୍ଭେ ଅନ୍ୟ
ପାପୀମାନଙ୍କୁ ଦୟା ଦେଖାଇବାବେଳେ ସାବଧାନରେ ରୁହ।
ପାପରେ କଳଙ୍କିତ ହୋଇଥିବା ସେମାନଙ୍କର ଲୁଗାପଟାକୁ
ମଧ୍ୟ ଘୃଣା କର।

## ପରମେଶ୍ୱରଙ୍କ ପ୍ରଶଂସା କର

୨୪ପରମେଶ୍ୱର ଶକ୍ତିଶାଳୀ ଓ ସେ ତୁମ୍ଭକୁ ପତନରୁ
ରକ୍ଷା କରିବେ। ସେ ତୁମ୍ଭକୁ ମନ୍ଦରୁ ରକ୍ଷା କରି ନିଜର
ଗୌରବ ସମ୍ମୁଖକୁ ଆଣି ପାରିବେ ଓ ତୁମ୍ଭକୁ ମହାନନ୍ଦ
ଦେଇ ପାରିବେ। ୨୫ସେ ଏକମାତ୍ର ପରମେଶ୍ୱର। ସେ
କେବଳ ଆମ୍ଭକୁ ଉଦ୍ଧାର କରନ୍ତି। ଆମ୍ଭର ପ୍ରଭୁ ଯୀଶୁ
ଖ୍ରୀଷ୍ଟଙ୍କ ଦ୍ୱାରା ଅତୀତ, ବର୍ତ୍ତମାନ ଓ ଚିରଦିନ ପାଇଁ
ତ୍ରାଣକର୍ତ୍ତା ପରମେଶ୍ୱରଙ୍କର ଗୌରବ, ମହିମା, କ୍ଷମତା ଓ
ଅଧିକାର ହେଉ। ଆମେନ୍।

# ଯୋହନଙ୍କ ପ୍ରତି ପ୍ରକାଶିତ ବାକ୍ୟ

### ଯୋହନଙ୍କର ଏହି ପୁସ୍ତକ ବିଷୟରେ କହନ୍ତି

୧ ଏହା ଯୀଶୁଖ୍ରୀଷ୍ଟଙ୍କର ପ୍ରକାଶିତ ବାକ୍ୟ ଯାହା ଯାହା
ଶୀଘ୍ର ଘଟିବ, ସେ ବିଷୟରେ ତାହାଙ୍କ ସେବକମାନଙ୍କୁ
ଦେଖାଇବା ପାଇଁ ପରମେଶ୍ୱର ଯୀଶୁଙ୍କୁ ଏସବୁ ଦେଇଥିଲେ।
ଖ୍ରୀଷ୍ଟ ତାହାଙ୍କର ଦୂତଙ୍କୁ ଏସବୁ ଦେଖାଇବା ପାଇଁ ତାହାଙ୍କ
ଦାସ ଯୋହନଙ୍କ ନିକଟକୁ ପଠାଇଲେ। ୨ଯୋହନ ଯାହା
ସବୁ ଦେଖିଲେ, ତାହାର ସାକ୍ଷ୍ୟ ସେ ଦେଲେ ଓ
ପରମେଶ୍ୱରଙ୍କର ଏହି ସତ୍ୟ ବାକ୍ୟ ଯୀଶୁଖ୍ରୀଷ୍ଟଙ୍କ ଦ୍ୱାରା
ଯୋହନଙ୍କୁ କୁହାଗଲା। ୩ଯେଉଁ ଲୋକମାନେ ପରମେଶ୍ୱରଙ୍କ
ଏହି ବାକ୍ୟ ପଢ଼ନ୍ତି, ଓ ଯେଉଁଲୋକମାନେ ଏହି ଭାବବାଣୀକୁ
ଶୁଣନ୍ତି ଓ ଏଥିରେ ଲେଖାଥିବା ବିଷୟଗୁଡ଼ିକୁ ପାଳନ
କରନ୍ତି, ସେମାନେ ଧନ୍ୟ। କାରଣ ସମୟ ନିକଟବର୍ତ୍ତୀ।

### ଯୋହନ ଯୀଶୁଙ୍କର ବାର୍ତ୍ତା ମଣ୍ଡଳୀମାନଙ୍କୁ ଲେଖନ୍ତି

୪ଏସିଆ ପ୍ରଦେଶର ସାତୋଟି ମଣ୍ଡଳୀକୁ ମୁଁ, ଯୋହନ,
ଏହା ଲେଖୁଅଛି: ଯେଉଁ ଈଶ୍ୱର ଅତୀତରେ ଥିଲେ,
ବର୍ତ୍ତମାନ ଅଛନ୍ତି, ଓ ଭବିଷ୍ୟତରେ ଆସୁଛନ୍ତି ଏବଂ ତାହାଙ୍କ
ସିଂହାସନ ସମ୍ମୁଖରେ ଥିବା ସପ୍ତ ଆତ୍ମାଙ୍କଠାରୁ ଓ
ଯୀଶୁଖ୍ରୀଷ୍ଟଙ୍କଠାରୁ ଅନୁଗ୍ରହ ଓ ଶାନ୍ତି ତୁମ୍ଭମାନଙ୍କର ହେଉ।
୫ଯୀଶୁ ହେଉଛନ୍ତି ବିଶ୍ୱସ୍ତ ସାକ୍ଷୀ। ମୃତ୍ୟୁରୁ ବଞ୍ଚି ଉଠିଥିବା
ଲୋକଙ୍କ ମଧ୍ୟରେ ପ୍ରଥମ ଓ ସେ ଏହି ଜଗତର
ରାଜାମାନଙ୍କର ରାଜା।

ସେହି ଯୀଶୁ ଆମ୍ଭମାନଙ୍କୁ ପ୍ରେମ କରନ୍ତି। ସେହି ଯୀଶୁ
ତାହାଙ୍କ ରକ୍ତ ଦେଇ ଆମ୍ଭମାନଙ୍କୁ ପାପରୁ ମୁକ୍ତ କରିଛନ୍ତି।
୬ଯୀଶୁ ଆମ୍ଭମାନଙ୍କୁ ଗୋଟିଏ ରାଜ୍ୟ ସ୍ୱରୂପ କରିଛନ୍ତି ଓ
ସେ ଆମ୍ଭମାନଙ୍କୁ ତାହାଙ୍କ ପିତାପରମେଶ୍ୱରଙ୍କର ସେବାରେ
ଯାଜକ ରୂପେ ନିଯୁକ୍ତ କରିଛନ୍ତି। ତାହାଙ୍କର ଗୌରବ ଓ
ପରାକ୍ରମ ଯୁଗେ ଯୁଗେ ହେଉ। ଆମେନ୍।

୭ଦେଖ, ଯୀଶୁ ମେଘମାଳାରେ ଆସୁଅଛନ୍ତି। ପ୍ରତ୍ୟେକ
ଲୋକର ଚକ୍ଷୁ ତାହାଙ୍କୁ ଦେଖିବ ଏପରିକି ତାହାଙ୍କୁ ବିଦ୍ଧ
କରିଥିବା ଲୋକମାନେ ମଧ୍ୟ ତାହାଙ୍କୁ ଦେଖିବେ। ଏ
ପୃଥିବୀର ସବୁ ଜାତିର ଲୋକମାନେ ତାହାଙ୍କ ଆଗମନରେ
ଉଚ୍ଚ ସ୍ୱରରେ ରୋଦନ କରିବେ। ହଁ, ଏହା ଘଟିବ।
ଆମେନ୍।

୮ପ୍ରଭୁ ପରମେଶ୍ୱର କହନ୍ତି, ମୁଁ “ଆରମ୍ଭ ଓ ଶେଷ”
(“ଆଲଫା” ଓ “ଓମେଗା”) ମୁଁ ବର୍ତ୍ତମାନ ଅଛି, ଅତୀତରେ
ଥିଲି ଓ ଭବିଷ୍ୟତରେ ମଧ୍ୟ ରହିଥିବି। ମୁଁ ସର୍ବଶକ୍ତିମାନ।”

୯ଯୀଶୁଙ୍କ ଦୁଃଖଭୋଗ, ରାଜ୍ୟ ଓ ଧୈର୍ଯ୍ୟରେ ତୁମ୍ଭମାନଙ୍କର
ସହଭାଗୀ ଭାଇ ମୁଁ ଯୋହନ, ପରମେଶ୍ୱରଙ୍କ ବାକ୍ୟ ପ୍ରଚାର
ଓ ଯୀଶୁଙ୍କର ସାକ୍ଷୀ ହେବା ହେତୁ ନିର୍ବାସିତ ହୋଇ ପାତ୍ମ
ଦ୍ୱୀପରେ ଥିଲି କାରଣ ମୁଁ ପରମେଶ୍ୱରଙ୍କର ବାକ୍ୟ ପ୍ରଚାର
କଲି। ମୁଁ ଯୀଶୁଙ୍କ ବିଷୟରେ ସାକ୍ଷ୍ୟ ଦେଲି। ୧୦ପ୍ରଭୁଙ୍କ
ଦିନରେ ପବିତ୍ରଆତ୍ମା ମୋତେ ସମ୍ପୂର୍ଣ୍ଣରୂପେ ଅଧିକାର
କରିନେଲେ। ମୁଁ ହଠାତ୍ ପଛପଟୁ ଗୋଟିଏ ଉଚ୍ଚ ଶବ୍ଦ
ଶୁଣିଲି। ଏହି ଶବ୍ଦ ତୂରୀନାଦ ପରି ଥିଲା। ୧୧ସେହି ସ୍ୱର
ମୋତେ କହିଲେ, “ତୁମ୍ଭେ ଯାହା ଦେଖୁଛ, ସବୁ ଗୋଟିଏ
ପୁସ୍ତକରେ ଲେଖ ଓ ତାହାକୁ ସାତୋଟି ମଣ୍ଡଳୀ: ଏଫିସ,
ସ୍ମୁର୍ଣ୍ଣା, ପର୍ଗାମ, ଥୁୟାତୀର ସାର୍ଦ୍ଦୀ, ଫିଲାଦେଲଫିଆ ଓ
ଲାଓଦିକୀଆକୁ ପଠାଅ।

୧୨ମୁଁ ବୁଲିପଡ଼ି ଦେଖିବାକୁ ଚାହିଁଲି ଯେ, କିଏ ମୋତେ
ଏହିକଥା କହୁଛନ୍ତି। ମୁଁ ଯେତେବେଳେ ବୁଲିପଡ଼ିଲି,
ସେତେବେଳେ ସାତୋଟି ସୁନାର ଦୀପରୁଖା ଦେଖିଲି।
୧୩ସେହି ସାତୋଟି ସୁନାର ଦୀପରୁଖା ମଝିରେ: “ମନୁଷ୍ୟ
ପୁତ୍ରଙ୍କ ପରି” ଜଣେ ଠିଆ ହୋଇଛନ୍ତି। ସେ ଗୋଟିଏ
ଲମ୍ବା ପୋଷାକ ପିନ୍ଧିଥିଲେ। ସେ ତାହାଙ୍କ ଛାତିରେ
ଗୋଟିଏ ସୁନାର ପଟୁକା ପିନ୍ଧିଥିଲେ। ୧୪ତାହାଙ୍କ ମୁଣ୍ଡ ଓ
ବାଳ ଶୁଭ୍ର ପଶମ ଓ ହିମ ପରି ଶୁଭ୍ର ଥିଲା। ତାହାଙ୍କ
ଆଖି ଅଗ୍ନିଶିଖା ପରି ଦେଖାଯାଉଥିଲା। ୧୫ତାହାଙ୍କ ପାଦ
ଯେପରି, ପିତ୍ତଳ ନିଆଁ ଭାଟିରେ ଦେଖାଯାଏ ସେହିପରି
ଶୁଦ୍ଧ ଦେଖାଯାଉଥିଲା। ତାହାଙ୍କ ସ୍ୱର ବନ୍ୟାଜଳର ଗର୍ଜନ
ଭଳି ଥିଲା। ୧୬ସେ ତାହାଙ୍କ ଡାହାଣ ହାତରେ ସାତୋଟି
ନକ୍ଷତ୍ର ଧରିଥିଲେ। ତାହାଙ୍କ ମୁଖ ଭିତରୁ ତୀକ୍ଷ୍ଣ ଦୁଇଧାର
ଯୁକ୍ତ ଖଡ୍ଗ ବାହାରିଆସିଲା। ସେ ମଧ୍ୟାହ୍ନ ସୂର୍ଯ୍ୟଭଳି
ତେଜୋମୟ ଦେଖାଯାଉଥିଲେ।

୧୭ମୁଁ ତାହାଙ୍କୁ ଦେଖି ତାହାଙ୍କ ପାଦତଳେ ଗୋଟିଏ ମୃତ
ମଣିଷ ପରି ପଡ଼ିଗଲି। ମୋ ଉପରେ ଆପଣା ଡାହାଣ
ହାତ ରଖି ସେ କହିଲେ, “ଭୟ କର ନାହିଁ। ମୁଁ ପ୍ରଥମ
ଓ ଶେଷ।” ୧୮ମୁଁ ଜୀବିତ। ମୁଁ ମରିଯାଇଥିଲି କିନ୍ତୁ ଦେଖ,
ମୁଁ ସବୁବେଳେ ପାଇଁ ଜୀବିତ ହୋଇଅଛି। ମୋ ପାଖରେ
ମୃତ୍ୟୁ ଓ ପାତାଳ*ର ଚାବି ରହିଛି। ୧୯ତେଣୁ ତୁମ୍ଭେ
ଦେଖିଥିବା କଥା ଲେଖ। ବର୍ତ୍ତମାନ ଯାହା ଘଟୁଛି ଓ
ଭବିଷ୍ୟତରେ ଯାହା ଘଟିବ, ସେ ସବୁ ଲେଖ। ୨୦ମୋର
ଡାହାଣ ହାତରେ ଯେଉଁ ସାତୋଟି ନକ୍ଷତ୍ର ଦେଖିଲି,
ତାହାର ଓ ସାତଟି ସୁନାର ଦୀପରୁଖାର ନିଗୂଢ଼ ଅର୍ଥ
ଏହିପରି ଅଟେ: ସାତ ଦୀପରୁଖା ହେଉଛି ସାତୋଟି

---

**ପାତାଳ** ଏକ ସ୍ଥାନ ଯେଉଁଠାକୁ ମୃତ୍ୟୁପରେ ଲୋକମାନେ ଯାଆନ୍ତି।

ମଣ୍ଡଳୀ। ସାତ ନକ୍ଷତ୍ର ହେଉଛନ୍ତି ସାତୋଟି ମଣ୍ଡଳୀର ଦୂତ।"

### ଏଫିସ ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୨ ଏଫିସ୍ ନଗରର ମଣ୍ଡଳୀର ଦୂତଙ୍କୁ ଏହା ଲେଖ:

"ଯିଏ ଡାହାଣ ହାତରେ ସାତୋଟି ନକ୍ଷତ୍ର ଧରିଛନ୍ତି ଓ ସାତୋଟି ସୁନାର ଦୀପରୂଖା ମଧ୍ୟରେ ବୁଲନ୍ତି, ସେ ତୁମ୍ଭକୁ ଏହିକଥାମାନ କହୁଛନ୍ତି। ୨ମୁଁ ତୁମ୍ଭର କାର୍ଯ୍ୟ ଜାଣେ, ତୁମ୍ଭେ ଯେ କଠିନ ପରିଶ୍ରମ କର ଓ ଅସୀମ ଧୈର୍ଯ୍ୟଧରି ରଖିଥାଅ। ତୁମ୍ଭେ ଯେ ମନ୍ଦ ଲୋକଙ୍କୁ ଗ୍ରହଣ କରନାହିଁ, ଏହା ମଧ୍ୟ ମୁଁ ଜାଣେ। ଯେଉଁମାନେ ପ୍ରକୃତରେ ପ୍ରେରିତ ନ ହେଲେ ହେଁ ନିଜକୁ ପ୍ରେରିତ ବୋଲି କହନ୍ତି; ସେମାନଙ୍କୁ ତୁମ୍ଭେ ପରୀକ୍ଷା କରିଛ ଏବଂ ସେମାନେ ଯେ ମିଥ୍ୟାବାଦୀ ଅଟନ୍ତି, ଏହା ତୁମ୍ଭେ ଚିହ୍ନି ପାରିଛ। ୩ମୁଁ ଜାଣେ ତୁମ୍ଭର ବହୁତ ଧୈର୍ଯ୍ୟ ଅଛି କାରଣ ତୁମ୍ଭେ ମୋ ନାମ ନିମନ୍ତେ କଷ୍ଟ ସହିଛ ଓ ଏସବୁ କରିବାରେ ତୁମ୍ଭେ କ୍ଳାନ୍ତ ହୋଇପଡ଼ନାହିଁ।

୪କିନ୍ତୁ ତୁମ୍ଭ ବିରୁଦ୍ଧରେ ମୋର ଏହି କଥା ଅଛି: ତୁମ୍ଭର ଆରମ୍ଭରେ ଯେଉଁ ପ୍ରେମ ଥିଲା, ତୁମ୍ଭେ ସେହି ପ୍ରେମ ହରାଇଛ। ୫ତେଣୁ କେଉଁଠାରୁ ତୁମ୍ଭର ପତନର ଆରମ୍ଭ ହୋଇଅଛି, ତାହା ମନେ ପକାଅ। ହୃଦୟ ପରିବର୍ତ୍ତନ କରି ଅନୁତାପ କର ଓ ପୂର୍ବରୁ କରୁଥିବା କାର୍ଯ୍ୟଗୁଡ଼ିକ କର। ତୁମ୍ଭେ ଯଦି ବଦଳିବ ନାହିଁ ତେବେ ମୁଁ ଆସି ତୁମ୍ଭର ଦୀପରୂଖାକୁ ତା'ର ସ୍ଥାନରୁ ଅଲଗା କରିଦେବି। ୬ତୁମ୍ଭେ କେତେକ ଉତ୍ତମ କାର୍ଯ୍ୟ କରୁଛ। ତୁମ୍ଭେ ନିକଲାୟତୀୟମାନଙ୍କର କାର୍ଯ୍ୟ କଳାପକୁ ଘୃଣା କର। ମୁଁ ମଧ୍ୟ ସେମାନଙ୍କର କାର୍ଯ୍ୟକୁ ଘୃଣା କରେ।

୭ଯାହାର ଶୁଣିବା ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା କଥା ସବୁ ସେ ଶୁଣିବା ଉଚିତ।"

### ସ୍ମୁର୍ଣ୍ଣା ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୮ସ୍ମୁର୍ଣ୍ଣା ମଣ୍ଡଳୀର ଦୂତଙ୍କୁ ଏହା ଲେଖ:

"ଯେ ପ୍ରଥମ ଓ ଶେଷ, ଯେ ମୃତ ହୋଇ ପୁଣି ଥରେ ଜୀବିତ ହୋଇଥିଲେ,ସେ ତୁମ୍ଭକୁ ଏହି କଥା କହୁଛନ୍ତି, ୯ମୁଁ ତୁମ୍ଭର କଷ୍ଟ ଜାଣେ। ମୁଁ ଜାଣେ, ତୁମ୍ଭେ ଗରୀବ। କିନ୍ତୁ ପ୍ରକୃତରେ ତୁମ୍ଭେ ଧନୀ। ତୁମ୍ଭ ବିରୁଦ୍ଧରେ ଅପବାଦ ମୁଁ ଶୁଣିଛି। ସେହି ମନ୍ଦ କଥା କହିବା ଲୋକମାନେ ଯିହୂଦୀ ଅଟନ୍ତି। କିନ୍ତୁ ସେମାନେ ପ୍ରକୃତ ଯିହୂଦୀ ନୁହଁନ୍ତି। ସେମାନେ ଶୟତାନର ଦଳର ଲୋକ। ୧୦ତୁମ୍ଭ ପାଇଁ ଯେଉଁସବୁ ଦୁଃଖ ଆସୁଛି, ସେଥିପାଇଁ ଭୟ କରନାହିଁ। ମୁଁ ଜାଣେ, ତୁମ୍ଭମାନଙ୍କ ଭିତରୁ କେତେ ଜଣଙ୍କୁ ଶୟତାନ କାରାଗାରରେ ରଖିବ। ସେ ତୁମ୍ଭମାନଙ୍କୁ ପରୀକ୍ଷା କରିବା ପାଇଁ ଏପରି କରିବ। ତୁମ୍ଭେମାନେ ଦଶଦିନ ପର୍ଯ୍ୟନ୍ତ ଦୁଃଖକଷ୍ଟ ସହିବ। କିନ୍ତୁ ବିଶ୍ୱସ୍ତ ରୁହ, କାରଣ ତୁମ୍ଭକୁ ହୁଏତ ମୃତ୍ୟୁବରଣ କରିବାକୁ ପଡ଼ିପାରେ। ତୁମ୍ଭେ ଯଦି ବିଶ୍ୱସ୍ତ ରହିବ, ତେବେ ମୁଁ ତୁମ୍ଭକୁ ଜୀବନରୂପକ ମୁକୁଟ ଦେବି।

୧୧"ଯାହାର ଶୁଣିବା ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା କଥା ସବୁ ସେ ଶୁଣିବା ଉଚିତ। ଯେ ବିଜୟୀ ହୁଏ, ସେ ଦ୍ୱିତୀୟ ମୃତ୍ୟୁ ଦ୍ୱାରା ଆଦୌ କ୍ଷତିଗ୍ରସ୍ତ ହେବନାହିଁ।"

### ପର୍ଗାମ୍ ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୧୨"ପର୍ଗାମ ମଣ୍ଡଳୀର ଦୂତଙ୍କୁ ଏହା ଲେଖ:

"ଯାହାଙ୍କର ତୀକ୍ଷ୍ଣ ଦ୍ୱିଧାରଯୁକ୍ତ ଖଡ୍ଗ ଅଛି, ସେ ଏହା ତୁମ୍ଭକୁ କହୁଛନ୍ତି। ୧୩ମୁଁ ଜାଣେ ଯେ, ଶୟତାନର ସିଂହାସନ ଯେଉଁଠାରେ ରହିଛି, ସେହି ନଗରରେ ତୁମ୍ଭେ ବାସ କରୁଛ। ତଥାପି ତୁମ୍ଭେ ମୋ ପ୍ରତି ନିଷ୍ଠାବାନ ହୋଇଅଛ ଏପରିକି, ଶୟତାନ ବାସ କରୁଥିବା ସେହି ନଗରରେ ମୋର ବିଶ୍ୱସ୍ତ ସାକ୍ଷୀ ଅନ୍ତିପାଙ୍କୁ ହତ୍ୟା କରାଯିବା ସମୟରେ ମଧ୍ୟ ତୁମ୍ଭେ ମୋ'ଠାରେ ବିଶ୍ୱାସ କରୁଅଛ ବୋଲି ଅସ୍ୱୀକାର କରି ନ ଥିଲ।

୧୪"ତଥାପି ମୋର ତୁମ୍ଭ ବିରୁଦ୍ଧରେ କିଛି କହିବାକୁ ଅଛି: ତୁମ୍ଭ ଦଳ ଭିତରୁ କେତେକ ଲୋକ ବିଲୟାମର ଶିକ୍ଷା ଅନୁସରଣ କରୁଛନ୍ତି। ଏହି ବିଲୟମ ବାଲାକ ପ୍ରତିମାକୁ ଅର୍ପିତ ହୋଇଥିବା ଖାଦ୍ୟ ଖାଇବା ପାଇଁ ଓ ଯୌନଗତ ପାପ କରି ଇସ୍ରାୟେଲର ଲୋକମାନଙ୍କୁ ପାପ କରିବା ପାଇଁ ଶିଖାଇଥିଲା। ୧୫ସେହିପରି ତୁମ୍ଭ ଦଳର କେତେକ ଲୋକମାନେ ନୀକଲାୟତୀୟମାନଙ୍କର ଶିକ୍ଷା ଅନୁସରଣ କରୁଛନ୍ତି। ୧୬ତେଣୁ ତୁମ୍ଭେ ମନ ପରିବର୍ତ୍ତନ କର। ଯଦି ତୁମ୍ଭେ ମନ ପରିବର୍ତ୍ତନ କରିବ ନାହିଁ, ତେବେ ମୁଁ ତୁମ୍ଭ ପାଖକୁ ଶୀଘ୍ର ଆସିବି ଓ ମୋର ମୁଖରୁ ବାହାରୁଥିବା ଖଡ୍ଗରେ ସେହି ଲୋକମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବି।

୧୭"ଯାହାର ଶୁଣିବା ନିମନ୍ତେ କାନଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା କଥାସବୁ ସେ ଶୁଣିବା ଉଚିତ।

ଯେ ବିଜୟୀ ହୁଏ, ତାହାକୁ ମୁଁ ଗୁପ୍ତ ମାନ୍ନା* ଦେବି। "ମୁଁ ତାହାକୁ ଗୋଟିଏ ଧଳା ପଥର ଦେବି, ଯାହା ଉପରେ ଗୋଟିଏ ନୂତନ ନାମ ଲେଖାଥିବ। ଯେଉଁ ବ୍ୟକ୍ତି ଏହି ପଥର ପାଇବ, ତାହାଛଡ଼ା କୌଣସି ଲୋକ ଏହି ନୂତନ ନାମ ବିଷୟରେ ଜାଣନ୍ତି ନାହିଁ।"

### ଥୁୟାତୀରା ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୧୮"ଥୁୟାତୀରା ମଣ୍ଡଳୀର ଦୂତଙ୍କୁ ଏହା ଲେଖ:

"ପରମେଶ୍ୱରଙ୍କର ପୁତ୍ର, ଯାହାଙ୍କର ଆଖି ଅଗ୍ନିଶିଖା ପରି ପ୍ରଜ୍ଜ୍ୱଳିତ ଓ ପାଦ ଦୁଇଟି ପିତ୍ତଳ ପରି ଉଜ୍ଜ୍ୱଳ ସେ ତୁମ୍ଭକୁ ଏହି କଥା କୁହନ୍ତି: ୧୯ମୁଁ ତୁମ୍ଭ କାର୍ଯ୍ୟ ବିଷୟରେ ଜାଣେ, ମୁଁ ତୁମ୍ଭର ପ୍ରେମ, ବିଶ୍ୱାସ, ସେବା, ଓ ଧୈର୍ଯ୍ୟ ବିଷୟରେ ମଧ୍ୟ ଜାଣେ। ମୁଁ ଜାଣେ, ତୁମ୍ଭେ ଆରମ୍ଭରେ କରିଥିବା କାର୍ଯ୍ୟ ଅପେକ୍ଷା ଅଧିକ କାର୍ଯ୍ୟ କରୁଛ। ୨୦କିନ୍ତୁ ମୋର ତୁମ୍ଭ ବିରୁଦ୍ଧରେ ଏହି କଥା ଅଛି: ତୁମ୍ଭେ ସେହି

---

**ମାନ୍ନା** ମରୁଭୂମିରେ ପରମେଶ୍ୱରଙ୍କ ଦ୍ୱାରା ନିଜଲୋକଙ୍କୁ ଦିଆ ଯାଇ ଥିବା ସ୍ୱର୍ଗର ଖାଦ୍ୟ ଯାତ୍ରା ୧୬:୪-୩୬

ଯିଜେବଲ ନାମଧାରିଣୀ ମହିଳାକୁ ତା'ର ଇଚ୍ଛାନୁସାରେ
କାର୍ଯ୍ୟ କରିବାକୁ ଦେଉଛ। ସେ ନିଜକୁ ଭବିଷ୍ୟଦ୍‌ବକ୍ତ୍ରୀ
ବୋଲି କହେ। ସେ ତା'ର ଶିକ୍ଷା ଦ୍ୱାରା ମୋର ଲୋକମାନଙ୍କୁ
ଭୁଲାଉଅଛି। ସେ ମୋର ଦାସମାନଙ୍କୁ ବ୍ୟଭିଚାରର ପାପ
କରିବାକୁ ଓ ପ୍ରତିମାକୁ ଦିଆଯାଉଥିବା ଖାଦ୍ୟ ଖାଇବାକୁ
ଶିକ୍ଷା ଦେଉଛି। ୨୧ମୁଁ ତାହାକୁ ହୃଦୟ ପରିବର୍ତ୍ତନ କରିବାକୁ
ଓ ପାପପଥରୁ ଦୂରେଇ ଯିବା ପାଇଁ ସମୟ ଦେଲେ ହେଁ
ସେ ନିଜକୁ ପରିବର୍ତ୍ତନ କରିବାକୁ ଇଚ୍ଛା କରୁନାହିଁ।
୨୨ତେଣୁ ମୁଁ ତାକୁ ଯନ୍ତ୍ରଣାପୂର୍ଣ୍ଣ ଶଯ୍ୟାରେ ପକାଇଦେବି।
ତା'ସହିତ ଯେଉଁମାନେ ବ୍ୟଭିଚାରର ପାପକର୍ମ କରିବେ,
ସେମାନେ ମଧ୍ୟ କଷ୍ଟ ଭୋଗିବେ। ସେମାନେ ଯଦି ତା'ର
ମନ୍ଦକାର୍ଯ୍ୟରୁ ନିଜକୁ ଫେରାଇ ନ ଆଣିବେ, ତେବେ ମୁଁ
ସେମାନଙ୍କୁ ଦଣ୍ଡ ଦେବି। ୨୩ମୁଁ ତା'ର ସନ୍ତାନମାନଙ୍କୁ ମଧ୍ୟ
ମହାମାରୀ ଦ୍ୱାରା ବଧ କରିବି। ସେତେବେଳେ ସମସ୍ତ
ମଣ୍ଡଳୀବର୍ଗ ଜାଣିବେ ଯେ, ମୁଁ, ଲୋକମାନଙ୍କର ଭାବନା ଓ
ବିଚାରଗୁଡ଼ିକ ଜାଣେ ଓ ତାହାର ପରୀକ୍ଷା କରେ। ମୁଁ ତୁମ୍ଭ
ପ୍ରତ୍ୟେକଙ୍କୁ ତୁମ୍ଭର କର୍ମ ଅନୁସାରେ ଫଳ ଦେବି।
୨୪"କିନ୍ତୁ ଥୁୟାଟୀରାର ଯେଉଁ ଅବଶିଷ୍ଟ ଲୋକେ ତା'ର
ଶିକ୍ଷା ଅନୁସରଣ କରିନାହାଁନ୍ତି ଓ ସେମାନଙ୍କର କହିବା
ଶୟତାନର ନିଗୂଢ଼ତତ୍ତ୍ୱ ଗ୍ରହଣ କରି ନାହାଁନ୍ତି, "ମୁଁ
ସେମାନଙ୍କୁ ଏହା କହୁଛି: ମୁଁ ତୁମ୍ଭମାନଙ୍କ ଉପରେ କୌଣସି
ଅନ୍ୟ ଭାର ଲଦିବିନାହିଁ। ୨୫ମୁଁ ଆସିବା ପର୍ଯ୍ୟନ୍ତ ତୁମ୍ଭମାନଙ୍କ
ନିକଟରେ ଯାହା ଅଛି, ତାହା ଦୃଢ଼ ଭାବେ ଧରି ରଖିଥାଅ।
୨୬ଯେ ବିଜୟୀ ହୁଏ ଓ ଶେଷପର୍ଯ୍ୟନ୍ତ ମୋ ଇଚ୍ଛା
ଅନୁଯାୟୀ କାର୍ଯ୍ୟରେ ଲାଗିରହେ, ମୁଁ ତାହାକୁ ଜାତିଗୁଡ଼ିକ
ଉପରେ ଶାସନ କରିବାର ଶକ୍ତି ଦେବି।
୨୭ 'ସେ ଲୌହଦଣ୍ଡରେ ସେମାନଙ୍କୁ ଶାସନ କରିବ।
ସେ ସେମାନଙ୍କୁ ମାଟିପାତ୍ର ଭଳି ଭାଙ୍ଗି ଖଣ୍ଡ-ଖଣ୍ଡ
କରିଦେବ।" ଗୀତସଂହିତା ୨:୯

୨୮ମୁଁ ମୋର ପରମପିତାଙ୍କଠାରୁ ଏହି କ୍ଷମତା ପାଇଥିଲି।
ମୁଁ ସେହି ଲୋକଙ୍କୁ ପ୍ରଭାତୀତାରା ମଧ୍ୟ ଦେବି। ୨୯ଯାହାର
ଶୁଣିବା ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା
କଥାସବୁ ସେ ଶୁଣିବା ଉଚିତ।

## ସାର୍ଦ୍ଦୀ ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୩ ସାର୍ଦ୍ଦୀ ମଣ୍ଡଳୀର ଦୂତଙ୍କୁ ଏହା ଲେଖ: "ଯାହାଙ୍କଠାରେ
ପରମେଶ୍ୱରଙ୍କର ସାତୋଟି ଆତ୍ମା ଓ ସାତୋଟି
ନକ୍ଷତ୍ର ଅଛି, ସେ ଏହି କଥାଗୁଡ଼ିକ ତୁମ୍ଭକୁ କହୁଛନ୍ତି, ମୁଁ
ତୁମ୍ଭ କର୍ମ ବିଷୟରେ ଜାଣେ। ଲୋକମାନେ କହନ୍ତି, ତୁମ୍ଭେ
ନାମକୁ ମାତ୍ର ଜୀବିତ, କିନ୍ତୁ ପ୍ରକୃତରେ ମୃତ। ୨ଜାଗି
ଉଠ! ତୁମ୍ଭର ଯେଉଁ ଅବଶିଷ୍ଟ ବିଷୟଗୁଡ଼ିକ ଲୋପ
ପାଇଯାଉଅଛି ସେଗୁଡ଼ିକ ସମ୍ପୂର୍ଣ୍ଣ ମରିଯିବା ପୂର୍ବରୁ ସେସବୁ
ଦୃଢ଼ କର। କାରଣ ପରମେଶ୍ୱରଙ୍କ ଦୃଷ୍ଟିରେ ତୁମ୍ଭର କର୍ମକୁ
ମୁଁ ନିର୍ଦ୍ଦୋଷ ପାଇନାହିଁ। ୩ତେଣୁ ପ୍ରଥମରେ ତୁମ୍ଭେ ଯାହା
ଗ୍ରହଣ କରିଥିଲ ଓ ଶୁଣିଥିଲ, ତାହା ମନେ ପକାଅ।
ସେଗୁଡ଼ିକର ବାଧ୍ୟ ହୁଅ। ନିଜ ହୃଦୟ ଓ ଜୀବନ
ପରିବର୍ତ୍ତନ କର। ତୁମ୍ଭେ ଜାଗ୍ରତ ହୁଅ, ନଚେତ୍ ମୁଁ
ଗୋଟିଏ ଚୋର ପରି ତୁମ୍ଭ ପାଖକୁ ଆସିବି ଓ କେତେବେଳେ
ତୁମ୍ଭ ନିକଟକୁ ଆସି ତୁମ୍ଭକୁ ହତବୁଦ୍ଧି କରିଦେବି, ତାହା
ତୁମ୍ଭେ ଜାଣିପାରିବ ନାହିଁ। ୪ତଥାପି ସାର୍ଦ୍ଦୀରେ କେତେକ
ଲୋକ ଅଛନ୍ତି ଯେଉଁମାନେ ନିଜର ବସ୍ତ୍ରକୁ ଅପରିଷ୍କାର
କରି ନାହାଁନ୍ତି। ସେହି ଲୋକମାନେ ଶୁଭ୍ର ବସ୍ତ୍ର ପିନ୍ଧି ମୋ
ସହିତ ଗମନାଗମନ କରିବେ, କାରଣ ସେମାନେ ସେଥିପାଇଁ
ଯୋଗ୍ୟ ଅଟନ୍ତି। ୫ଯେ ବିଜୟୀ ହୁଏ, ସେ ଏହି ଲୋକମାନଙ୍କ
ଭଳି ଧଳା ବସ୍ତ୍ର ପିନ୍ଧିବ। ମୁଁ ଜୀବନ ପୁସ୍ତକରୁ ସେହି
ଲୋକର ନାମ କଦାପି ଲୋପ କରିବି ନାହିଁ। ମାତ୍ର ମୁଁ
ତାହାର ନାମକୁ ମୋହର ପରମପିତା ଓ ତାହାଙ୍କର
ଦୂତମାନଙ୍କ ସାମନାରେ ସ୍ୱୀକାର କରିବି। ୬ଯାହାର ଶୁଣିବା
ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା
କଥାସବୁ ସେ ଶୁଣିବା ଉଚିତ।

## ଫିଲାଦେଲ୍‌ଫିଆ ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୭ଫିଲାଦେଲ୍‌ଫିଆସ୍ଥିତ ମଣ୍ଡଳୀର ଦୂତଙ୍କୁ ଏହା ଲେଖ:
"ଯେ ପବିତ୍ର ଓ ସତ୍ୟ, ସେ ତୁମ୍ଭକୁ ଏହି କଥା
ଲେଖୁଛନ୍ତି। ସେ ଦାଉଦଙ୍କ ଚାବି ହାତରେ ଧରିଛନ୍ତି। ସେ
ଯାହା ଖୋଲି ଦିଅନ୍ତି, ତାହା ବନ୍ଦ ହୋଇପାରେ ନାହିଁ।
୮ମୁଁ ତୁମ୍ଭର ସବୁ କାର୍ଯ୍ୟ ଜାଣେ। ଦେଖ, ମୁଁ ତୁମ୍ଭ
ସମ୍ମୁଖରେ ଗୋଟିଏ ଦ୍ୱାର ଖୋଲା ରଖିଛି। କେହି ତାହାକୁ
ବନ୍ଦ କରିପାରିବେ ନାହିଁ। ମୁଁ ଜାଣେ, ତୁମ୍ଭେ ଦୁର୍ବଳ। କିନ୍ତୁ
ତୁମ୍ଭେ ମୋର ଶିକ୍ଷା ଅନୁସରଣ କରିଛ। ତୁମ୍ଭେ ମୋ ନାମ
ଉଚ୍ଚାରଣ କରିବା ପାଇଁ କେବେ ଭୟ କରିନାହଁ। ୯ଶୁଣ!
ତୁମ୍ଭ ମଧ୍ୟରେ ଶୟତାନର ଗୋଟିଏ ଦଳ ଅଛି। ସେମାନେ
ନିଜକୁ ଯିହୂଦୀ ବୋଲି କହନ୍ତି, କିନ୍ତୁ ପ୍ରକୃତରେ ସେମାନେ
ମିଥ୍ୟାବାଦୀ। ସେମାନେ ବାସ୍ତବରେ ଯିହୂଦୀ ନୁହଁନ୍ତି। ମୁଁ
ସେ ଲୋକମାନଙ୍କୁ ତୁମ୍ଭ ସମ୍ମୁଖକୁ ଆଣିବି ଓ ତୁମ୍ଭ ପାଦ
ତଳେ ସେମାନଙ୍କର ମୁଣ୍ଡ ନୁଆଁଇବି। ତେବେ ସେମାନେ
ଜାଣିବେ ଯେ, ମୁଁ ତୁମ୍ଭକୁ ପ୍ରେମ କରିଛି। ୧୦ତୁମ୍ଭେ
ଧୈର୍ଯ୍ୟର ସହିତ ମୋର ଆଜ୍ଞା ପାଳନ କରିଛ। ତେଣୁ
ଜଗତନିବାସୀମାନଙ୍କୁ ପରୀକ୍ଷା କରିବା ନିମନ୍ତେ ସମଗ୍ର
ଜଗତ ଉପରେ ଦାରୁଣ ତାଡ଼ନା ଓ ପରୀକ୍ଷାର ସମୟ
ଆସିବ, ମୁଁ ତୁମ୍ଭକୁ ସେଥିରୁ ରକ୍ଷା କରିବି।
୧୧"ମୁଁ ଶୀଘ୍ର ଆସୁଛି। ତୁମ୍ଭର ଯାହା ଅଛି, ତାହା ଦୃଢ଼
ଭାବେ ଧରିରଖ। ତେବେ କେହି ତୁମ୍ଭର ମୁକୁଟ ହରଣ
କରିପାରିବ ନାହିଁ। ୧୨ଯେ ବିଜୟୀ ହୁଏ, ତାହାକୁ ମୁଁ
ମୋର ପରମେଶ୍ୱରଙ୍କ ମନ୍ଦିରରେ ଗୋଟିଏ ସ୍ତମ୍ଭ ସ୍ୱରୂପ
ରଖିବି। ସେ କଦାପି ସେଠାରୁ ସ୍ଥାନଚ୍ୟୁତ ହେବ ନାହିଁ।
ମୁଁ ସେହି ଲୋକ ଉପରେ ପରମେଶ୍ୱରଙ୍କ ନାମ ଲେଖିବି।
ମୋ ପରମେଶ୍ୱରଙ୍କର ନଗରର ନାମ ମଧ୍ୟ ମୁଁ ତା'
ଉପରେ ଲେଖିବି। ଏହି ନଗରର ନାମ 'ନୂତନ ଯିରୂଶାଲମ'।
ସେହି ନଗର ମୋହର ପରମେଶ୍ୱରଙ୍କଠାରୁ ସ୍ୱର୍ଗରୁ ଆସୁଅଛି।
ମୁଁ ମୋର ନୂତନ ନାମ ମଧ୍ୟ ସେହି ଲୋକ ଉପରେ
ଲେଖିବି। ୧୩ଯାହାର ଶୁଣିବା ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ
ଆତ୍ମା କହୁଥିବା କଥାସବୁ ସେ ଶୁଣିବା ଉଚିତ।

### ଲାଅଦକୀଆ ମଣ୍ଡଳୀକୁ ଯୀଶୁଙ୍କର ପତ୍ର

୧୪“ଲାଅଦକୀଆ ମଣ୍ଡଳୀର ଦୂତଙ୍କ ପାଖକୁ ଏହା ଲେଖ:
“ଯେ ଏହି ସବୁ ତୁମ୍ଭକୁ କହୁଛନ୍ତି, ସେ ଆମେନ୍*
ବିଶ୍ୱସ୍ତ ଓ ସତ୍ୟ ସାକ୍ଷୀ ଅଟନ୍ତି। ପରମେଶ୍ୱର ସୃଷ୍ଟି
କରିଥିବା ସମସ୍ତ ବିଷୟର ଶାସକ। ସେ ଏହି କଥା
କହନ୍ତି: ୧୫ମୁଁ, ତୁମ୍ଭର କାର୍ଯ୍ୟ ଜାଣେ। ତୁମ୍ଭେ ଉତ୍ତପ୍ତ ନୁହଁ
ବା ଶୀତଳ ନୁହଁ। ମୁଁ ଆଶା କରେ, ତୁମ୍ଭେ ଉତ୍ତପ୍ତ କିମ୍ବା
ଶୀତଳ ହୋଇଥିଲେ ଭଲ ହୋଇଥାଆନ୍ତା। ୧୬କିନ୍ତୁ ତୁମ୍ଭେ
ଉତ୍ତପ୍ତ କିମ୍ବା ଶୀତଳ ନ ହୋଇ ନାତିଶୀତୋଷ୍ଣ ହେବାରୁ
ମୁଁ ତୁମ୍ଭକୁ ମୁଖରୁ ଉଦ୍‌ଗାର କରି ବାହାର କରିଦେବି।
୧୭ତୁମ୍ଭେ କୁହ ଯେ, ତୁମ୍ଭେ ଧନୀ। ତୁମ୍ଭର ବହୁତ ଧନ
ଅଛି ଓ ତୁମ୍ଭର କୌଣସି ଅଭାବ ନାହିଁ। କିନ୍ତୁ ତୁମ୍ଭେ
ଜାଣିନାହିଁ ଯେ, ତୁମ୍ଭେ ପ୍ରକୃତରେ ଅଭାଗା, ଦୟନୀୟ,
ଦରିଦ୍ର, ଅନ୍ଧ ଓ ଉଲଗ୍ନ। ୧୮ସେଥିପାଇଁ ମୁଁ ତୁମ୍ଭକୁ
ପରାମର୍ଶ ଦେଉଛି ଯେ, ତୁମ୍ଭେ ମୋଠାରୁ ଅଗ୍ନିରେ ଖାଣ୍ଟି
ହୋଇଥିବା ସୁନା କିଣ। ତା'ପରେ ତୁମ୍ଭେ ପ୍ରକୃତରେ ଧନୀ
ହୋଇଯିବ। ମୁଁ ତୁମ୍ଭକୁ ଏହା କହୁଛି: ଧଳା ବସ୍ତ୍ର କିଣ।
ତେବେ ତୁମ୍ଭେ ନିଜର ଲଜ୍ଜାପୂର୍ଣ୍ଣ ଉଲଗ୍ନତାକୁ ଘୋଡେଇ
ରଖିପାରିବ। ମୁଁ ତୁମ୍ଭକୁ ଔଷଧ କିଣି ଆଖିରେ ଲଗାଇବାପାଇଁ
ମଧ୍ୟ କହୁଛି। ତାହାହେଲେ ତୁମ୍ଭେ ପ୍ରକୃତରେ ଦେଖିପାରିବ।
୧୯ମୁଁ ଯେଉଁମାନଙ୍କୁ ପ୍ରେମ କରେ ସେମାନଙ୍କୁ ସଂଶୋଧନ
କରେ ଓ ଦଣ୍ଡ ଦିଏ। ତେଣୁ କଠିନ ଚେଷ୍ଟା କର। ନିଜ
ହୃଦୟ ଓ ନିଜ ଜୀବନ ପରିବର୍ତ୍ତନ କର। ୨୦ଦେଖ, ମୁଁ
ଏଠାରେ ଅଛି ଓ ଦ୍ୱାର ପାଖରେ ଠିଆହୋଇ ଆଘାତ
କରୁଛି। ଯଦି ଜଣେ ଲୋକ ମୋ ସ୍ୱର ଶୁଣେ ଓ ଦ୍ୱାର
ଫିଟାଏ, ତେବେ ମୁଁ ଭିତରକୁ ଆସି ସେହି ଲୋକ ସହିତ
ଖାଇବି। ସେ ଲୋକ ମଧ୍ୟ ମୋ ସହିତ ଖାଦ୍ୟ ଖାଇବ।
୨୧ଯେ ବିଜୟୀ ହୁଏ, ମୁଁ ତାହାକୁ ମୋ ସହିତ
ସିଂହାସନରେ ବସାଇବି। ଯେପରି ମୁଁ ବିଜୟୀ ହୋଇ
ମୋର ପରମପିତାଙ୍କ ସହ ତାହାଙ୍କ ସିଂହାସନରେ ବସିଥିଲି,
ସେ ସେହିପରି ମୋ ସହିତ ବସିବ। ୨୨ଯାହାର ଶୁଣିବା
ନିମନ୍ତେ କାନ ଅଛି, ମଣ୍ଡଳୀଗୁଡ଼ିକୁ ଆତ୍ମା କହୁଥିବା
କଥାସବୁ ସେ ଶୁଣିବା ଉଚିତ।

### ଯୋହନଙ୍କର ସ୍ୱର୍ଗ ଦେଖିବା

୪ ଏହାପରେ ମୁଁ ଦେଖିଲି, ମୋ ସମ୍ମୁଖରେ ସ୍ୱର୍ଗର
ଗୋଟିଏ ଦ୍ୱାର ଖୋଲା ହୋଇଅଛି। ମୁଁ ଯେଉଁ ସ୍ୱର
ପୂର୍ବରୁ ଶୁଣିଥିଲି, ସେହି ସ୍ୱର ପୁଣି ଶୁଣିଲି। ଏହି ସ୍ୱର
ତୂରୀନାଦର ଶବ୍ଦ ପରି ମନେହେଲା। ସେହି ସ୍ୱର କହିଲା,
“ଏଠାରୁ ଉପରକୁ ଉଠିଆସ ଏବଂ ଭବିଷ୍ୟତରେ ଯାହା
ଘଟିବ, ତାହା ମୁଁ ତୁମ୍ଭକୁ ଦେଖାଇବି।” ୨ତତ୍‌କ୍ଷଣାତ୍ ଆତ୍ମା
ମୋତେ ତାହାଙ୍କ ଅଧୀନକୁ ନେଇଗଲେ। ସ୍ୱର୍ଗରେ ମୋ
ସମ୍ମୁଖରେ ଗୋଟିଏ ସିଂହାସନ ଥିଲା। ସେହି ସିଂହାସନରେ
ଜଣେ ବସିଥିଲେ। ୩ସିଂହାସନରେ ଯେଉଁ ବ୍ୟକ୍ତି ବସିଥିଲେ,
ତାହାଙ୍କର ରୂପ ମୂଲ୍ୟବାନ ସୂର୍ଯ୍ୟକାନ୍ତମଣି ଓ ପଦ୍ମରାଗମଣିର
ଭଳି ଦେଖାଯାଉଥିଲା। ତାହାଙ୍କ ସିଂହାସନକୁ ମରକତମଣିର
ଶୋଭା ସଦୃଶ ଗୋଟିଏ ମେଘଧନୁ ଘେରି ରହିଥିଲା।
୪ସେହି ସିଂହାସନର ଚାରିପାଖରେ ଆଉ ଚବିଶଟି ସିଂହାସନ
ଥିଲା। ସେହି ଚବିଶଟି ସିଂହାସନରେ ଚବିଶ ଜଣ ପ୍ରାଚୀନ
ବସିଥିଲେ। ସେମାନେ ଶୁଭ୍ରବସ୍ତ୍ର ପିନ୍ଧିଥିଲେ ଏବଂ ମସ୍ତକରେ
ସୁନାର ମୁକୁଟ ପିନ୍ଧିଥିଲେ। ୫ସିଂହାସନରୁ ବିଜୁଳିର ଆଲୋକ
ଓ ଘଡ଼ଘଡ଼ିର ଶବ୍ଦ ଶୁଭୁଥିଲା। ସିଂହାସନ ସାମନାରେ
ସାତୋଟି ଜ୍ୱଳନ୍ତା ଦୀପ ଥିଲା। ଏହି ଦୀପଗୁଡ଼ିକ ପରମେଶ୍ୱରଙ୍କର
ସାତୋଟି ଆତ୍ମା ଅଟନ୍ତି। ୬ସେହି ସିଂହାସନ ସମ୍ମୁଖରେ
କିଛି ଗୋଟିଏ କାଚର ସମୁଦ୍ର ଭଳି ଦେଖାଯାଉଥିଲା, ଯାହା
ସ୍ଫଟିକପରି ସ୍ୱଚ୍ଛ ଥିଲା। ସେହି ସିଂହାସନର ଚାରିପଟେ
ଚାରୋଟି ଜୀବିତ ପ୍ରାଣୀ ଥିଲେ।
ସେହି ଜୀବିତ ପ୍ରାଣୀଙ୍କର ଆଗ ଓ ପଛ ଉଭୟ ପଟେ
ଚକ୍ଷୁ ଭରି ହୋଇରହିଥିଲା। ୭ପ୍ରଥମ ଜୀବିତ ପ୍ରାଣୀର
ଆକୃତି ସିଂହପରି। ଦ୍ୱିତୀୟ ପ୍ରାଣୀ ଗୋଟିଏ ଗୋରୁ ସଦୃଶ।
ତୃତୀୟ ପ୍ରାଣୀର ମୁଖ ଜଣେ ମନୁଷ୍ୟର ମୁଖ ଭଳି। ଚତୁର୍ଥ
ପ୍ରାଣୀଟି ଗୋଟିଏ ଉଡ଼ନ୍ତା ଉତ୍କ୍ରୋଶ ପକ୍ଷୀ ପରି ଥିଲା।
୮ପ୍ରତ୍ୟେକଙ୍କର ଛଅଟି ଲେଖାଏଁ ଡେଣା ଥିଲା। ଏହି
ପ୍ରାଣୀମାନଙ୍କର ଭିତର ଓ ବାହାର ଚାରିପାଖ ଆଖିରେ
ପରିପୂର୍ଣ୍ଣ ଥିଲା। ସେମାନେ ଦିନରାତି ଅବିରତ କହୁଥିଲେ:

“ସର୍ବଶକ୍ତିମାନ ପ୍ରଭୁ ପରମେଶ୍ୱର ପବିତ୍ର, ପବିତ୍ର,
ପବିତ୍ର। ସେ ସର୍ବଦା ଅତୀତରେ ଥିଲେ, ବର୍ତ୍ତମାନ
ଅଛନ୍ତି ଏବଂ ଭବିଷ୍ୟତରେ ରହିଥିବେ।”

୯ଏହି ଜୀବିତ ପ୍ରାଣୀମାନେ ସିଂହାସନରେ ବସିଥିବା
ବ୍ୟକ୍ତିଙ୍କୁ ଗୌରବ, ସମ୍ମାନ ଓ ଧନ୍ୟବାଦ ଦିଅନ୍ତି। ସେ
ସବୁଦିନ ପାଇଁ ଜୀବିତ ଅଟନ୍ତି ଏବଂ ଏହି ଜୀବିତ
ପ୍ରାଣୀମାନେ ସର୍ବଦା ଏହିଭଳି କରନ୍ତି। ୧୦ଚବିଶଜଣ ପ୍ରାଚୀନ
ବ୍ୟକ୍ତି ସିଂହାସନରେ ବସିଥିବା ସେହିବ୍ୟକ୍ତିଙ୍କ ସମ୍ମୁଖରେ
ମୁଣ୍ଡ ନୁଆଁଇ ତାହାଙ୍କୁ ପ୍ରଣାମ କରନ୍ତି। ସେମାନେ ତାହାଙ୍କ
ସମ୍ମୁଖରେ ନିଜର ମୁକୁଟ ରଖି କହନ୍ତି:

୧୧ “ହେ ପ୍ରଭୁ! ଆମ୍ଭର ପରମେଶ୍ୱର! ତୁମ୍ଭେ ଗୌରବ,
ସମ୍ମାନ ଓ କ୍ଷମତା ପାଇବା ପାଇଁ ଯୋଗ୍ୟ। ତୁମ୍ଭେ
ହିଁ ଏସବୁ ସୃଷ୍ଟି କରିଅଛ। ତୁମ୍ଭ ଇଚ୍ଛା ଅନୁସାରେ
ସମସ୍ତ ବିଷୟର ସୃଷ୍ଟି ହୋଇଛି ଓ ଅସ୍ତିତ୍ୱ ପାଇଅଛି।”

୫ “ତା'ପରେ ମୁଁ ସିଂହାସନରେ ବସିଥିବା ସେହି ବ୍ୟକ୍ତିଙ୍କର
ଦକ୍ଷିଣ ହସ୍ତରେ ଗୋଟିଏ ଚର୍ମପତ୍ର* ଥିବାର ଦେଖିଲି।
ସେହି ଚର୍ମପତ୍ରଟିର ଉଭୟ ପଟେ ଲେଖା ହୋଇଥିଲା।

---

**ଆମେନ** ଅର୍ଥାତ୍ “ସତ୍”। ଏହା ଯୀଶୁଙ୍କ ନାମପରି ବ୍ୟବହାର ହୋଇଛି।

**ଚର୍ମପତ୍ର** ଗୋଟିଏ ଗୁଡ଼ା ହୋଇଥିବା ଲମ୍ବା କାଗଜ ଅତଏବ ଚର୍ମ ଯାହାକୁ ପ୍ରାଚୀନ ଯୁଗରେ ଲେଖିବା କାମରେ ବ୍ୟବହାର କରି ଯାଉଥିଲା।

ସେହି ଚର୍ମପତ୍ରଟି ସାତୋଟି ମୁଦ୍ରାରେ ବନ୍ଦ କରାଯାଇଥିଲା।
୨ମୁଁ ଜଣେ ମହାଶକ୍ତିଶାଳୀ ଦୂତଙ୍କୁ ଦେଖିଲି। ସେ ଉଚ୍ଚ
ସ୍ୱରରେ କହିଲେ, "ଏହି ଚର୍ମପତ୍ରର ମୁଦ୍ରା ଭାଙ୍ଗି ତାହା
ଫିଟାଇବା ନିମନ୍ତେ କିଏ ଯୋଗ୍ୟ ଅଟନ୍ତି?" ୩କିନ୍ତୁ ସେହି
ଚର୍ମପତ୍ରକୁ ଫିଟାଇବାକୁ ଓ ତା'ଭିତର ଦେଖିବାକୁ ସ୍ୱର୍ଗ,
ମର୍ତ୍ତ୍ୟ ବା ପାତାଳରେ କାହାରି ସାଧ୍ୟ ନ ଥିଲା। ୪ତେଣୁ
ମୁଁ ଆକୁଳ ଭାବରେ କାନ୍ଦିବାକୁ ଲାଗିଲି, କାରଣ ସେହି
ଚର୍ମପତ୍ରକୁ ଫିଟାଇବା ପାଇଁ କିମ୍ବା ଦେଖିବା ପାଇଁ ସେଠାରେ
କେହି ସକ୍ଷମ ନ ଥିଲେ। ୫କିନ୍ତୁ ସେହି ପ୍ରାଚୀନମାନଙ୍କ
ମଧ୍ୟରୁ ଜଣେ ମୋତେ କହିଲେ, "କାନ୍ଦ ନାହିଁ! ଯିହୂଦା
ବଂଶଜାତ ସିଂହ (ଖ୍ରୀଷ୍ଟ) ଏହି କାର୍ଯ୍ୟ କରିବାକୁ ବିଜୟୀ
ହୋଇଛନ୍ତି। ସେ ଦାଉଦଙ୍କ ବଂଶଧର। ସେ ଏହି ଚର୍ମପତ୍ର
ଓ ଏହାର ସାତୋଟି ମୁଦ୍ରା ଫିଟାଇବାକୁ ସକ୍ଷମ ଅଟନ୍ତି।"
୬ସେତେବେଳେ ମୁଁ ସିଂହାସନର ମଝିରେ ଜଣେ ମେଷଶାବକଙ୍କୁ
ଦେଖିଲି। ତାହାଙ୍କ ଚାରିପାଖେ ଚାରୋଟି ଜୀବିତପ୍ରାଣୀ ଓ
ପ୍ରାଚୀନମାନେ ଘେରି ରହିଥିଲେ। ବଳି ଦିଆଯାଇଥିବା ପରି
ସେ ଦେଖା ଯାଉଥିଲେ। ତାହାଙ୍କର ସାତୋଟି ଶିଙ୍ଗ ଓ
ସାତୋଟି ଚକ୍ଷୁ ଥିଲା, ଏହି ସାତୋଟି ଚକ୍ଷୁ ପରମେଶ୍ୱରଙ୍କର
ସାତୋଟି ଆତ୍ମା, ଯାହାଙ୍କୁ ପୃଥିବୀର ଚାରିଆଡ଼େ ପ୍ରେରିତ
କରାଯାଇଥିଲା।
୭ସେହି ମେଷଶାବକ ସିଂହାସନରେ ବସିଥିବା ବ୍ୟକ୍ତିଙ୍କ
ପାଖକୁ ଯାଇ ତାହାଙ୍କ ଦକ୍ଷିଣହସ୍ତରୁ ଚର୍ମପତ୍ର ନେଲେ।
୮ସେ ଚର୍ମପତ୍ରକୁ ଗ୍ରହଣ କରିବାପରେ, ଚାରିଜୀବିତ ପ୍ରାଣୀ
ଓ ଚବିଶଜଣ ପ୍ରାଚୀନ ତାହାଙ୍କ ସମ୍ମୁଖରେ ନଇଁପଡ଼ି
ପ୍ରମାଣ କଲେ। ସେମାନେ ପ୍ରତ୍ୟେକେ ଗୋଟିଏଗୋଟିଏ
ବୀଣା ଧରି ଥିଲେ। ସେମାନେ ସୁଗନ୍ଧିତ ଧୂପରେ ସୁନାର
ପାତ୍ର ମଧ୍ୟ ଧରିଥିଲେ। ସେହି ସୁଗନ୍ଧିତ ଧୂପପାତ୍ରଗୁଡ଼ିକ
ହେଉଛି, ପରମେଶ୍ୱରଙ୍କ ପବିତ୍ର ଲୋକମାନଙ୍କର ପ୍ରାର୍ଥନା।
୯ସେମାନେ ମେଷଶାବକଙ୍କ ପାଇଁ ଗୋଟିଏ ନୂତନ ଗୀତ
ଗାନ କଲେ:

"ତୁମ୍ଭେ ଚର୍ମପତ୍ର ଗ୍ରହଣ କରିବାକୁ ଏବଂ ମୁଦ୍ରା
ଖୋଲିବାକୁ ଯୋଗ୍ୟ ଅଟ, କାରଣ ତୁମ୍ଭେ ହତ
ହୋଇଥିଲ; ଏବଂ ତୁମ୍ଭର ରକ୍ତରେ ପ୍ରତ୍ୟେକ ଗୋଷ୍ଠୀ,
ଭାଷା, ବଂଶ ଓ ଜାତି ମଧ୍ୟରୁ ପରମେଶ୍ୱରଙ୍କ ପାଇଁ
ଲୋକମାନଙ୍କୁ କିଣିଥିଲ
୧୦ ତୁମ୍ଭେ ଏହି ଲୋକମାନଙ୍କୁ ଗୋଟିଏ ସାମ୍ରାଜ୍ୟ ସ୍ୱରୂପ,
ଓ ଆମ୍ଭମାନଙ୍କର ପରମେଶ୍ୱରଙ୍କ ପାଇଁ ଯାଜକଗଣ
କରିଅଛ। ସେମାନେ ଏ ପୃଥିବୀ ଉପରେ ରାଜତ୍ୱ
କରିବେ।"

୧୧ତା'ପରେ ମୁଁ ଦେଖିଲି ଓ ଅନେକ ସ୍ୱର୍ଗଦୂତଙ୍କର
ସ୍ୱର ଶୁଣିଲି। ସ୍ୱର୍ଗଦୂତମାନେ ସିଂହାସନ, ଜୀବିତପ୍ରାଣୀ ଓ
ପ୍ରାଚୀନମାନଙ୍କ ଚାରିପାଖରେ ଥିଲେ। ମୁଁ ହଜାରହଜାର
ସ୍ୱର୍ଗଦୂତଙ୍କୁ ଦେଖିଲି। ସେଠାରେ ୧୦,୦୦୦ ର ୧୦,୦୦୦
ଗୁଣ ସ୍ୱର୍ଗଦୂତ ଥିଲେ। ୧୨ସେମାନେ ଉଚ୍ଚ ସ୍ୱରରେ ଏହା
କହୁଥିଲେ:

"ମେଷଶାବକ ଯେ ବଳିକୃତ ଥିଲେ, ସେ କ୍ଷମତା,
ଧନ, ପ୍ରଜ୍ଞା, ଶକ୍ତି, ସମ୍ମାନ, ମହିମା ଓ ପ୍ରଶଂସା
ପାଇବାକୁ ଯୋଗ୍ୟ।"

୧୩ତା'ପରେ ମୁଁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଓ ସମୁଦ୍ରର
ସମସ୍ତ ପ୍ରାଣୀଙ୍କୁ ଏହା କହିବାର ଶୁଣିଲି:

"ଯେ ସିଂହାସନରେ ବସିଛନ୍ତି, ତାହାଙ୍କର ଓ
ମେଷଶାବକଙ୍କର ପ୍ରଶଂସା, ଗୌରବ, ସମ୍ମାନ ଓ
କ୍ଷମତା ଯୁଗେ ଯୁଗେ ହେଉ।"

୧୪ଚାରିଜଣ ଜୀବିତପ୍ରାଣୀ କହିଲେ, "ଆମେନ୍!" ଏବଂ
ଚବିଶଜଣ ପ୍ରାଚୀନ ବ୍ୟକ୍ତି ନଇଁପଡ଼ି ତାହାଙ୍କୁ ପ୍ରଣାମ କଲେ
ଓ ଉପାସନା କଲେ।

୬ ତା'ପରେ ମୁଁ ମେଷଶାବକଙ୍କୁ ପୁସ୍ତକର ସାତମୁଦ୍ରାଙ୍କ
ମଧ୍ୟରୁ ପ୍ରଥମ ମୁଦ୍ରାକୁ ଭାଙ୍ଗିବାର ଦେଖିଲି। ସେହି
ଚାରିଜଣ ଜୀବିତପ୍ରାଣୀଙ୍କ ମଧ୍ୟରୁ ଜଣେ ବଜ୍ର ପରି ଉଚ୍ଚ
ସ୍ୱରରେ କହିଲେ, "ଆସ!" ୨ସେଥିରେ ମୁଁ ମୋର
ସମ୍ମୁଖରେ ଗୋଟିଏ ଧଳାଘୋଡ଼ା ଦେଖିଲି। ସେହି ଘୋଡ଼ାର
ଆରୋହୀଜଣକ ଗୋଟିଏ ଧନୁ ଧରିଥିଲେ। ତାହାଙ୍କୁ ଗୋଟିଏ
ମୁକୁଟ ଦିଆଗଲା। ସେ ବିଜୟୀ ହୋଇ ଆହୁରି ଜୟ
କରିବାକୁ ବାହାରିଗଲେ।
୩ତା'ପରେ ମେଷଶାବକ ଦ୍ୱିତୀୟ ମୁଦ୍ରା ଭାଙ୍ଗିଲେ। ମୁଁ
ଦ୍ୱିତୀୟ ଜୀବିତ ପ୍ରାଣୀଙ୍କୁ ଏହା କହିବାର ଶୁଣିଲି, "ଆସ"।
୪ତା'ପରେ ଆଉ ଗୋଟିଏ ଲାଲଘୋଡ଼ା ଆସିଲା। ସେହି
ଘୋଡ଼ାର ଆରୋହୀଙ୍କୁ ଗୋଟିଏ ବଡ଼ ଖଣ୍ଡା ଦିଆଗଲା।
ତାହାଙ୍କୁ ଜଗତରୁ ଶାନ୍ତି ଲୋପ କରିବାକୁ କ୍ଷମତା ଦିଆଗଲା।
ଲୋକମାନେ ଯେପରି ପରସ୍ପରକୁ ମାରିଦେବେ, ସେଥିପାଇଁ
ସେ ଅନୁମତି ଓ ଶକ୍ତି ପାଇଲେ।
୫ତା'ପରେ ମେଷଶାବକ ତୃତୀୟ ମୁଦ୍ରା ଭାଙ୍ଗିଲେ।
ସେତେବେଳେ ତୃତୀୟ ଜୀବିତପ୍ରାଣୀଙ୍କୁ ଏହା କହିବାର ମୁଁ
ଶୁଣିଲି, "ଆସ।" ସେତେବେଳେ ମୋ ସମ୍ମୁଖରେ ଗୋଟିଏ
କଳାରଙ୍ଗର ଘୋଡ଼ା ଥିଲା। ତାହାର ଆରୋହୀଙ୍କ ହାତରେ
ଗୋଟିଏ ତରାଜୁ ଥିଲା। ୬ତା'ପରେ ଚାରି ଜୀବିତପ୍ରାଣୀଙ୍କ
ମଧ୍ୟରୁ କେହି ଜଣେ କହିଲା ପରି ମୋତେ ଗୋଟିଏ ସ୍ୱର
ଶୁଭିଲା। ସେ ସ୍ୱର କହୁଥିଲା, "ଗୋଟିଏ ଦିନକର ମଜୁରୀ
ଏକ କିଲୋ ଗହମ, ଗୋଟିଏ ଦିନକର ମଜୁରୀ ତିନି
କିଲୋ ଯବ ହେବ। କିନ୍ତୁ ତେଲ ଓ ଅଙ୍ଗୁରରସର କ୍ଷତି
କର ନାହିଁ।"
୭ମେଷଶାବକ ଚତୁର୍ଥ ମୁଦ୍ରା ଭାଙ୍ଗିଲେ। ମୁଁ ଚତୁର୍ଥ
ଜୀବିତ ପ୍ରାଣୀଙ୍କର କହିବାର ଶୁଣିଲି, "ଆସ।" ୮ଆଉ, ମୁଁ
ଧୂସରରଙ୍ଗର ଗୋଟିଏ ଘୋଡ଼ା ଦେଖିଲି। ତାହାର ଆରୋହୀଙ୍କର
ନାମ ଥିଲା, 'ମୃତ୍ୟୁ'। ପାତାଳ ତାହାଙ୍କର ଅନୁଗମନ
କରୁଥିଲା। ପୃଥିବୀର ଏକ ଚତୁର୍ଥାଂଶ ଉପରେ ସେମାନଙ୍କୁ
କ୍ଷମତା ଦିଆଯାଇଥିଲା। ସେମାନଙ୍କୁ ଖଡ୍ଗ, ଅନାହାର, ରୋଗ
ଓ ପୃଥିବୀର ବନ୍ୟ ପଶୁଙ୍କ ଦ୍ୱାରା ଲୋକମାନଙ୍କୁ ମାରିଦେବାକୁ
ଶକ୍ତି ଦିଆଗଲା।

[୯]‘ମେଷଶାବକ’ ପଞ୍ଚମ ମୁଦ୍ରା ଫିଟାଇଲେ। ସେତେବେଳେ
ମୁଁ ବେଦୀ ତଳେ କେତେକ ଆତ୍ମାଙ୍କୁ ଦେଖିଲି। ପରମେଶ୍ୱରଙ୍କର
ବାକ୍ୟ ପ୍ରତି ବିଶ୍ୱସ୍ତ ଥିବାରୁ ଓ ସେମାନେ ଦେଉଥିବା
ସାକ୍ଷ୍ୟ ହେତୁ ଯେଉଁମାନଙ୍କୁ ମାରିଦିଆଯାଇଥିଲା, ସେଗୁଡ଼ିକ
ହେଉଛି, ସେହି ଲୋକମାନଙ୍କର ଆତ୍ମା। [୧୦]ସେହି ଆତ୍ମାମାନେ
ଉଚ୍ଚ ସ୍ୱରରେ ଚିତ୍କାର କଲେ, “ହେ ପବିତ୍ର, ଓ ସତ୍ୟ
ପ୍ରଭୁ! ଆମ୍ଭମାନଙ୍କୁ ହତ୍ୟା କରିଥିବାରୁ ତୁମ୍ଭେ ଏ ପୃଥିବୀର
ଲୋକମାନଙ୍କର ବିଚାର କର। ସେମାନଙ୍କୁ ଦଣ୍ଡ ଦେବାକୁ
ଆଉ କେତେ କାଳ ଆମ୍ଭକୁ ଅପେକ୍ଷା କରିବାକୁ ପଡ଼ିବ?”
[୧୧]ତା’ପରେ ପ୍ରତ୍ୟେକ ଆତ୍ମାଙ୍କୁ ଗୋଟିଏ-ଗୋଟିଏ ଧଳା
ରାଜପୋଷାକ ଦିଆଗଲା। ସେମାନଙ୍କୁ ଆଉ ଅଳ୍ପ ସମୟ
ଅପେକ୍ଷା କରିବାକୁ କୁହାଗଲା। ଖ୍ରୀଷ୍ଟଙ୍କଠାରେ ଥିବା ସେମାନଙ୍କର
ଅନ୍ୟସବୁ ଭାଇମାନଙ୍କୁ ସେମାନଙ୍କ ପରି ହତ୍ୟା କରାଯିବା
ପର୍ଯ୍ୟନ୍ତ ଓ ସେମାନଙ୍କ ସମ୍ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଏହି
ଆତ୍ମାମାନଙ୍କୁ ଅପେକ୍ଷା କରିବାକୁ କୁହାଗଲା। ଅତଏବ, ଏହି
ହତ୍ୟାର ସବୁକିଛି ସରିବା ପର୍ଯ୍ୟନ୍ତ, ସେମାନଙ୍କୁ ଅପେକ୍ଷା
କରିବାକୁ କୁହାଗଲା।

[୧୨]ତା’ପରେ ମୁଁ ମେଷଶାବକଙ୍କୁ ଷଷ୍ଠ ମୁଦ୍ରା ଭାଙ୍ଗିବାର
ଦେଖିଲି। ସେତେବେଳେ ଭୀଷଣ ଭୂମିକମ୍ପ ହେଲା। ସୂର୍ଯ୍ୟ
ଲୋମରେ ତିଆରି ହୋଇଥିବା କଳାକମ୍ବଳ ପରି କଳାବର୍ଣ୍ଣ
ହୋଇଗଲା। ପୂର୍ଣ୍ଣଚନ୍ଦ୍ର ସମ୍ପୂର୍ଣ୍ଣଭାବରେ ରକ୍ତ ପରି ଲାଲବର୍ଣ୍ଣ
ହୋଇଗଲା। [୧୩]ପ୍ରବଳ ଝଡ଼ରେ ଦୋହଲି ଡିମ୍ବିରି ଗଛରୁ
ଅପକ୍ୱ ଡିମ୍ବିରି ଫଳ ଝଡ଼ି ପଡ଼ିଲା ପରି ଆକାଶର ତାରାଗଣ
ପୃଥିବୀରେ ଝଡ଼ି ପଡ଼ିଲେ। [୧୪]ଆକାଶ ଭାଗଭାଗ ହୋଇଗଲା
ଓ ଚର୍ମପତ୍ର ଭଳି ଗୁଡ଼େଇ ହୋଇଗଲା। ପର୍ବତ ଓ
ଦ୍ୱୀପସମୂହ ନିଜନିଜ ସ୍ଥାନରୁ ସ୍ଥାନଚ୍ୟୁତ ହୋଇଗଲେ।

[୧୫]ତା’ପରେ ସମସ୍ତ ଲୋକମାନେ ଗୁମ୍ଫା ଓ ପର୍ବତର
ପଛପଟେ ଲୁଚିଲେ। ସେମାନଙ୍କ ଭିତରେ ପୃଥିବୀର ରାଜାମାନେ,
ଶାସକମାନେ, ସେନାପତିମାନେ, ଧନୀଲୋକମାନେ ଓ
ଶକ୍ତିଶାଳୀ ଲୋକମାନେ ଥିଲେ। ପ୍ରତ୍ୟେକ ବ୍ୟକ୍ତି, ଦାସ
ଓ ମୁକ୍ତଲୋକମାନେ ନିଜକୁ ଲୁଚାଇ ରଖିଲେ। [୧୬]ଲୋକମାନେ
ପର୍ବତ ଓ ଶିଳାଗୁଡ଼ିକୁ କହିଲେ, “ଆମ୍ଭ ଉପରେ ଖସି
ପଡ଼। ସିଂହାସନରେ ଯିଏ ବସିଛନ୍ତି, ତାହାଙ୍କ ସମ୍ମୁଖରୁ ଓ
ମେଷଶାବକଙ୍କ କ୍ରୋଧରୁ ଆମ୍ଭମାନଙ୍କୁ ଲୁଚାଅ। [୧୭]ସେମାନଙ୍କର
କ୍ରୋଧର ମହାଦିନ ଆସିଗଲାଣି। ଏହା ବିରୁଦ୍ଧରେ କେହି
ଠିଆ ହୋଇପାରିବେ ନାହିଁ।”

## ଇସ୍ରାୟେଲର ୧୪୪,୦୦୦ ଲୋକ

୭ ଏହି ସବୁ ଘଟିବା ପରେ ମୁଁ ପୃଥିବୀର ଚାରିକୋଣରେ
ଚାରିଜଣ ସ୍ୱର୍ଗଦୂତଙ୍କୁ ଠିଆ ହେବାର ଦେଖିଲି।
ସେହି ଦୂତମାନେ ପୃଥିବୀର ଚାରି ବାୟୁକୁ ଅଟକାଇ
ଧରିଥିଲେ। ଯେପରି ପୃଥିବୀ କିମ୍ବା ସମୁଦ୍ର ଉପରେ କିମ୍ବା
କୌଣସି ଗଛରେ ପବନ ନ ବହେ। [୨]ତା’ପରେ ମୁଁ ଅନ୍ୟ
ଜଣେ ସ୍ୱର୍ଗଦୂତଙ୍କୁ ପୂର୍ବଦିଗରୁ ଆସିବାର ଦେଖିଲି। ଏହି
ଦୂତଙ୍କ ପାଖରେ ଜୀବିତ ପରମେଶ୍ୱରଙ୍କର ମୁଦ୍ରା ଥିଲା।
ସେ ଉଚ୍ଚ ସ୍ୱରରେ ଚାରିଜଣ ସ୍ୱର୍ଗଦୂତଙ୍କୁ ଡାକିଲେ,
ଯେଉଁମାନଙ୍କୁ ପରମେଶ୍ୱର ପୃଥିବୀ ଓ ସମୁଦ୍ରର କ୍ଷତି
କରିବାକୁ କ୍ଷମତା ଦେଇଥିଲେ। [୩]ସେ ଚାରି ଦୂତଙ୍କୁ
କହିଲେ, “ଆମ୍ଭେମାନେ ଆମ୍ଭର ପରମେଶ୍ୱରଙ୍କର
ଲୋକମାନଙ୍କର କପାଳରେ ମୁଦ୍ରାଙ୍କିତ ନ କରିବା ପର୍ଯ୍ୟନ୍ତ
ତୁମ୍ଭେମାନେ ପୃଥିବୀ କି ସମୁଦ୍ର କୌଣସି ବୃକ୍ଷର କିଛି କ୍ଷତି
କର ନାହିଁ।” [୪]ଏହିପରି ମୁଦ୍ରାଙ୍କିତ ହେବା ଲୋକମାନଙ୍କର
ସଂଖ୍ୟା ମୁଁ ଶୁଣିଲି। ସେମାନେ ୧୪୪,୦୦୦ ଜଣ ଥିଲେ।
ସେମାନେ ଇସ୍ରାୟେଲର ପ୍ରତି ପରିବାର ବର୍ଗ ମଧ୍ୟରୁ
ଥିଲେ।

| | | |
|---|---|---|
| [୫] | ଯିହୂଦା ପରିବାରବର୍ଗରୁ | ୧୨,୦୦୦ |
| | ରୁବେନ ପରିବାରବର୍ଗରୁ | ୧୨,୦୦୦ |
| | ଗାଦ ପରିବାରବର୍ଗରୁ | ୧୨,୦୦୦ |
| [୬] | ଆଶେର ପରିବାରବର୍ଗରୁ | ୧୨,୦୦୦ |
| | ନପ୍ତାଲୀ ପରିବାରବର୍ଗରୁ | ୧୨,୦୦୦ |
| | ମନଶେହ ପରିବାରବର୍ଗରୁ | ୧୨,୦୦୦ |
| [୭] | ଶିମିୟୋନ ପରିବାରବର୍ଗରୁ | ୧୨,୦୦୦ |
| | ଲେବୀ ପରିବାରବର୍ଗରୁ | ୧୨,୦୦୦ |
| | ଯିସାଖାର ପରିବାରବର୍ଗରୁ | ୧୨,୦୦୦ |
| [୮] | ଜବୂଲୂନ୍ ପରିବାରବର୍ଗରୁ | ୧୨,୦୦୦ |
| | ଯୋସେଫ ପରିବାରବର୍ଗରୁ | ୧୨,୦୦୦ |
| | ବିନ୍ୟାମୀନ ପରିବାରବର୍ଗରୁ | ୧୨,୦୦୦ |

## ବିଶାଳ ଜନତା

[୯]ତା’ପରେ ମୁଁ ବହୁତ ଲୋକଙ୍କୁ ଦେଖିଲି। ସେଠାରେ
ଏତେଲୋକ ଥିଲେ ଯେ, କେହି ସେମାନଙ୍କୁ ଗଣିପାରିବ
ନାହିଁ। ସେମାନେ ପ୍ରତ୍ୟେକ ଜାତି, ଗୋଷ୍ଠୀ, ବଂଶୀୟ ଓ
ଭାଷାବାଦୀର ଲୋକ ଥିଲେ। ସେହି ଲୋକମାନେ ସିଂହାସନ
ଓ ମେଷଶାବକଙ୍କ ସାମନାରେ ଠିଆ ହୋଇଥିଲେ। ସେମାନେ
ସମସ୍ତେ ଧଳା ରାଜପୋଷାକ ପିନ୍ଧିଥିଲେ। ସେମାନଙ୍କର
ହାତରେ ଖଜୁରିବାହୁଙ୍ଗା ଥିଲା। [୧୦]ସେମାନେ ଉଚ୍ଚ ସ୍ୱରରେ
ପାଟିକରି କହୁଥିଲେ, “ବିଜୟ (ପରିତ୍ରାଣ) ସିଂହାସନୋପବିଷ୍ଟ
ଆମ୍ଭମାନଙ୍କର ପରମେଶ୍ୱର ଓ ମେଷଶାବକଙ୍କର।”
[୧୧]ପ୍ରାଚୀନମାନେ ଓ ଚାରି ଜଣ ପ୍ରାଣୀ ସେଠାରେ ଥିଲେ।
ସବୁ ଦୂତମାନେ ସେମାନଙ୍କର ଓ ସିଂହାସନର ଚାରିପାଖରେ
ଘେରି ଠିଆ ହୋଇଥିଲେ। ସେମାନେ ସିଂହାସନ ସମ୍ମୁଖରେ
ପ୍ରଣାମକରି ପରମେଶ୍ୱରଙ୍କ ଉପାସନା କଲେ। [୧୨]ସେମାନେ
କହିଲେ, “ଆମେନ୍! ପ୍ରଶଂସା, ମହିମା, ଧନ୍ୟବାଦ, ସମ୍ମାନ,
କ୍ଷମତା ଓ ଶକ୍ତି ସଦାସର୍ବଦା ପାଇଁ ଆମ୍ଭମାନଙ୍କର
ପରମେଶ୍ୱରଙ୍କର ଅଟେ। ଆମେନ୍!”

[୧୩]ତା’ପରେ ଜଣେ ପ୍ରାଚୀନ ମୋତେ କହିଲେ, “ଧଳା
ରାଜପୋଷାକ ପିନ୍ଧିଥିବା ଏ ଲୋକମାନେ କିଏ? ସେମାନେ
କେଉଁଠାରୁ ଆସିଅଛନ୍ତି?”

[୧୪]ମୁଁ ଉତ୍ତର ଦେଲି, “ମୋ ପ୍ରଭୁ! ଆପଣ ତାହା
ଜାଣନ୍ତି, ସେମାନେ କିଏ।

ପ୍ରାଚୀନ ଜଣକ କହିଲେ, “ଏହି ଲୋକମାନେ ଭୟଙ୍କର
ତାଡ଼ନା ଭିତରୁ ଆସିଛନ୍ତି। ସେମାନେ ମେଷଶାବକଙ୍କ
ରକ୍ତରେ ଆପଣା ଆପଣାର ପୋଷାକ ପରିଷ୍କାର ଓ ଧଳା

କରିଅଛନ୍ତି। ୧୫ତେଣୁ ଏହି ଲୋକମାନେ ପରମେଶ୍ୱରଙ୍କର
ସିଂହାସନ ସମ୍ମୁଖରେ ଅଛନ୍ତି। ସେମାନେ ଦିନରାତି
ପରମେଶ୍ୱରଙ୍କର ମନ୍ଦିରରେ ତାହାଙ୍କର ଉପାସନା କରନ୍ତି।
ସିଂହାସନରେ ବସିଥିବା ଜଣେ ବ୍ୟକ୍ତି ସେମାନଙ୍କୁ ସୁରକ୍ଷା
ପ୍ରଦାନ କରିବେ। ୧୬ସେହି ଲୋକମାନେ ଆଉ କେବେ
କ୍ଷୁଧିତ ହେବେନାହିଁ। ସେମାନେ କଦାପି ତୃଷାର୍ତ୍ତ ହେବେ
ନାହିଁ। ସୂର୍ଯ୍ୟ ତାହାଙ୍କୁ ଆଘାତ କରିବ ନାହିଁ କି କୌଣସି
ଉତ୍ତାପ ସେମାନଙ୍କୁ ଜାଳିପାରିବ ନାହିଁ। ୧୭ସିଂହାସନର
ମଧ୍ୟରେ ଥିବା 'ମେଷଶାବକ' ସେମାନଙ୍କର ମେଷପାଳକ
ହେବେ। ସେ ସେମାନଙ୍କୁ ଜୀବନ ପ୍ରଦାନକାରୀ ଜଳର
ନିର୍ଝର ପାଖକୁ କଢ଼େଇ ନେଇଯିବେ। ପରମେଶ୍ୱର ସେମାନଙ୍କର
ଆଖିରୁ ସବୁ ଲୁହ ପୋଛିଦେବେ।

## ସପ୍ତମ ମୁଦ୍ରା

୮ ମେଷଶାବକ ସପ୍ତମ ମୁଦ୍ରା ଖୋଲିଲେ। ସେତେବେଳେ
ସ୍ୱର୍ଗରେ ଅଧଘଣ୍ଟା ପର୍ଯ୍ୟନ୍ତ ନୀରବତା ଥିଲା। ୨ତା'ପରେ
ମୁଁ ପରମେଶ୍ୱରଙ୍କ ସାମନାରେ ସାତଜଣ ସ୍ୱର୍ଗଦୂତଙ୍କୁ ଠିଆ
ହୋଇଥିବାର ଦେଖିଲି। ସେମାନଙ୍କୁ ସାତୋଟି ତୂରୀ ଦିଆଗଲା।
୩ଆଉ ଜଣେ ଦୂତ ଆସି ବେଦୀ ପାଖରେ ଠିଆ
ହେଲେ। ପରମେଶ୍ୱରଙ୍କର ପବିତ୍ର ଲୋକମାନଙ୍କର ପ୍ରାର୍ଥନା
ସହିତ ପ୍ରଚୁର ସୁଗନ୍ଧି ଧୂପ, ସୁନାର ବଳିବେଦୀ ଉପରେ
ଅର୍ପଣ କରିବା ନିମନ୍ତେ ତାହାଙ୍କ ହାତରେ ଗୋଟିଏ ସୁନାର
ଧୂପଦାନୀ ଥିଲା। ୪ସ୍ୱର୍ଗଦୂତ ଏହି ପ୍ରାର୍ଥନାଯୁକ୍ତ ଧୂପକୁ
ବେଦୀ ଉପରେ ପକାନ୍ତେ ତାହା ଈଶ୍ୱରଙ୍କ ଉଦ୍ଦେଶ୍ୟରେ
ଉପରକୁ ଉଠିଲା। ୫ତା'ପରେ ଦୂତ ବେଦୀରୁ ଅଗ୍ନି ନେଇ
ଧୂପଦାନୀ ପୂର୍ଣ୍ଣ କଲେ ଓ ତାହା ପୃଥିବୀ ଉପରକୁ ନିକ୍ଷେପ
କଲେ। ତେଣୁ ସେଠାରେ ବଜ୍ରପାତ, ମେଘ ଘଡ଼ଘଡ଼,
ବିଜୁଳି, କୋଳାହଳ ଓ ଭୂମିକମ୍ପ ହେଲା।

## ସାତ ଜଣ ସ୍ୱର୍ଗ ଦୂତଙ୍କର ତୂରୀନାଦ

୬ତା'ପରେ ସାତ ଜଣ ସ୍ୱର୍ଗଦୂତ ସାତୋଟି ତୂରୀ ଧରି
ବଜାଇବାକୁ ପ୍ରସ୍ତୁତ ହେଲେ।
୭ପ୍ରଥମ ସ୍ୱର୍ଗଦୂତ ତାହାଙ୍କ ତୂରୀ ବଜାଇଲେ। ଏହା
ଦ୍ୱାରା ପୃଥିବୀ ଉପରେ ରକ୍ତ ମିଶ୍ରିତ ଅଗ୍ନି ଓ ଶିଳା ବୃଷ୍ଟି
ହେଲା। ଏହି କାରଣରୁ ପୃଥିବୀର ଏକ ତୃତୀୟାଂଶରେ ନିଆଁ
ଲାଗି ଏକ ତୃତୀୟାଂଶ ବୃକ୍ଷ ଓ ସବୁଜ ଘାସସବୁ ପୋଡ଼ିଗଲା।
୮ଦ୍ୱିତୀୟ ସ୍ୱର୍ଗଦୂତ ତୂରୀ ବଜାଇଲା ପରେ ଗୋଟିଏ
ବୃହତ୍ ଜ୍ୱଳନ୍ତା ପର୍ବତ ପରି ଦିଶୁଥିବା ଏକ ବସ୍ତୁ ସମୁଦ୍ରରେ
ପଡ଼ିଲା। ଏହାଦ୍ୱାରା ସମୁଦ୍ରର ଏକ ତୃତୀୟାଂଶ ଜଳ ରକ୍ତରେ
ପୂର୍ଣ୍ଣ ହୋଇଗଲା। ୯ସମୁଦ୍ରରେ ଥିବା ଏକ ତୃତୀୟାଂଶ
ଜୀବନ୍ତ ପ୍ରାଣୀ ମରିଗଲେ ଓ ଏକ ତୃତୀୟାଂଶ ଜାହାଜ ନଷ୍ଟ
ହୋଇଗଲା।
୧୦ଯେତେବେଳେ ତୃତୀୟ ସ୍ୱର୍ଗଦୂତ ତୂରୀ ବଜାଇଲେ,
ସେତେବେଳେ ଏକ ପ୍ରକାଣ୍ଡ ତାରା ମଶାଲପରି ଜଳୁଥିବା
ଅବସ୍ଥାରେ ଆକାଶରୁ ଖସିପଡ଼ିଲା। ଏହା ଏକ ତୃତୀୟାଂଶ
ନଦୀ ଓ ଏକ ତୃତୀୟାଂଶ ଜଳ ନିର୍ଝର ଗୁଡ଼ିକ ଉପରେ
ପଡିଲା।" ୧୧ସେହି ତାରାର ନାମ 'ନାଗଦଅଣା' ଥିଲା।
ଏହାଦ୍ୱାରା ପୃଥିବୀର ଏକ ତୃତୀୟାଂଶ ଜଳଭାଗ ପିତା
ହୋଇଗଲା। ଏହି ପିତା ଜଳ ପାନକରି ଅନେକ ଲୋକ
ମୃତ୍ୟୁବରଣ କଲେ।
୧୨ଯେତେବେଳେ ଚତୁର୍ଥ ଦୂତ ତୂରୀ ବଜାଇଲେ,
ଏକତୃତୀୟାଂଶ ସୂର୍ଯ୍ୟ, ଏକତୃତୀୟାଂଶ ଚନ୍ଦ୍ର ଓ ଏକତୃତୀୟାଂଶ
ନକ୍ଷତ୍ରଗୁଡ଼ିକ ଆଘାତ ପାଇଲେ। ତେଣୁ ସେମାନଙ୍କ ମଧ୍ୟରୁ
ଏକ ତୃତୀୟାଂଶ ଅନ୍ଧକାରମୟ ହୋଇଗଲା। ଦିନ ଓ
ରାତ୍ରିର ଏକ ତୃତୀୟାଂଶ ଆଲୋକବିହୀନ ହେଲା।
୧୩ମୁଁ ସେତେବେଳେ ଗୋଟିଏ ଉତ୍କ୍ରୋଶ ପକ୍ଷୀକୁ ଆକାଶର
ଉପରଭାଗରେ ଉଡୁଥିବାର ଦେଖିଲି, ସେ ଖୁବ୍ ଜୋରରେ
କହିଲା, "ହାୟ, ହାୟ! ପୃଥିବୀ ନିବାସୀମାନଙ୍କ ଉପରେ
ଭୟଙ୍କର କ୍ଲେଶ ଆସୁଅଛି। କାରଣ ଆହୁରି ତିନି ଜଣ
ଦୂତ ତୂରୀ ବଜାଇବାକୁ ଯାଉଅଛନ୍ତି।"
୯ ଏହାପରେ ପଞ୍ଚମ ଦୂତ ତୂରୀ ବଜାଇଲେ। ସେତେବେଳେ
ମୁଁ ଆକାଶରୁ ଗୋଟିଏ ତାରା ପୃଥିବୀ ଉପରେ
ପଡ଼ିବାର ଦେଖିଲି। ସେହି ତାରାକୁ ପାତାଳ ଅତଳ
ଗହ୍ୱରର ପ୍ରବେଶ ଦ୍ୱାରର ଚାବି ଦିଆଗଲା। ୨ସେହି ତାରା
ପାତାଳର ପ୍ରବେଶ ଦ୍ୱାର ଖୋଲିଲା କ୍ଷଣି ପ୍ରକାଣ୍ଡ ଭାଟିରୁ
ଧୂଆଁ ଉଠିଲାଭଳି ସେହି ଅତଳଗର୍ଭ ଭିତରୁ ଧୂଆଁ ଉଠିଲା।
ସେହି ଧୂଆଁ ଦ୍ୱାରା ସୂର୍ଯ୍ୟ ଓ ଆକାଶ ଅନ୍ଧକାରମୟ
ହୋଇଗଲା ଓ ୩ଧୂଆଁ ଭିତରୁ ପଙ୍ଗପାଳମାନେ ବାହାରି
ପୃଥିବୀ ଉପରକୁ ଓହ୍ଲାଇ ଆସିଲେ। ସେମାନଙ୍କୁ ବିଛା ଭଳି
ଦଂଶନକାରୀ ଶକ୍ତି ଦିଆଗଲା। ୪ପୃଥିବୀର ଘାସ କିମ୍ବା
କୌଣସି ଲତା କିମ୍ବା ଗଛର କ୍ଷତି ନ କରିବା ପାଇଁ
ପଙ୍ଗପାଳଙ୍କୁ କୁହାଗଲା। ଯେଉଁମାନଙ୍କର କପାଳରେ
ପରମେଶ୍ୱରଙ୍କର ମୁଦ୍ରା ନାହିଁ, କେବଳ ସେହି ଲୋକମାନଙ୍କର
କ୍ଷତି କରିବାକୁ ସେମାନଙ୍କୁ କୁହାଗଲା। ୫କିନ୍ତୁ ମନୁଷ୍ୟମାନଙ୍କୁ
ମାରିଦେବା ପାଇଁ ପଙ୍ଗପାଳଙ୍କୁ କ୍ଷମତା ଦିଆ ଯାଇ ନ
ଥିଲା, ମାତ୍ର ଲୋକମାନଙ୍କୁ ପାଞ୍ଚମାସ ପର୍ଯ୍ୟନ୍ତ ଯନ୍ତ୍ରଣା
ଦେବା ପାଇଁ ସେମାନଙ୍କୁ ଅନୁମତି ଦିଆଯାଇଥିଲା। ସେହି
ଯନ୍ତ୍ରଣା ଜଣେ ଲୋକକୁ କଙ୍କଡାବିଛାର ଦଂଶନ ପରି
ଯନ୍ତ୍ରଣାଦାୟକ ହେବ। ୬ସେହି ସମୟରେ ଲୋକମାନେ
ମରଣ ଚାହିଁବେ, କିନ୍ତୁ ମରିପାରିବେ ନାହିଁ। ମରଣ
ଖୋଜିବା ସତ୍ତ୍ୱେ ମରଣ ସେମାନଙ୍କୁ ମିଳିବ ନାହିଁ।
୭ସେହି ପଙ୍ଗପାଳମାନେ ଯୁଦ୍ଧ ପାଇଁ ସୁସଜ୍ଜିତ ଅଶ୍ୱପରି
ଥିଲେ। ସେମାନଙ୍କର ମସ୍ତକରେ ସୁବର୍ଣ୍ଣ ମୁକୁଟ ଭଳି
ଦେଖାଯାଉଥିବା କିଛି ଥିଲା। ସେମାନଙ୍କର ମୁହଁ ମଣିଷ
ପରି ଥିଲା। ୮ସ୍ତ୍ରୀମାନଙ୍କର କେଶ ପରି ସେମାନଙ୍କର କେଶ
ଥିଲା। ସେମାନଙ୍କର ଦାନ୍ତ ସିଂହ ଦାନ୍ତ ପରି ଥିଲା।
୯ସେମାନେ ଛାତିରେ ଲୁହାର ସାଞ୍ଜୁ ପିନ୍ଧିଲା ଭଳି ଦିଶୁଥିଲେ।
ସେମାନଙ୍କର ଡେଣାର ଶବ୍ଦ ଯୁଦ୍ଧକୁ ଦୌଡୁଥିବା ଅନେକ
ଘୋଡ଼ା ଓ ରଥର ଶବ୍ଦ ଭଳି ଥିଲା। ୧୦ବିଛାର ନାହୁଡ଼
ଭଳି ସେମାନଙ୍କ ଲାଙ୍ଗୁଡ଼ରେ ନାହୁଡ଼ ଥିଲା। ପାଞ୍ଚମାସ
ପର୍ଯ୍ୟନ୍ତ ଲୋକମାନଙ୍କୁ ଯନ୍ତ୍ରଣା ଦେବା ପାଇଁ ସେମାନଙ୍କୁ
ଯେଉଁ କ୍ଷମତା ଦିଆଯାଇଥିଲା, ତାହା ସେମାନଙ୍କ ଲାଙ୍ଗୁଳରେ
ଥିଲା। ୧୧ପାତାଳସ୍ଥ ସେହି ଅତଳ ଗହ୍ୱରର ଦୂତ
ପଙ୍ଗପାଳମାନଙ୍କର ରାଜା ଥିଲେ। ତାହାଙ୍କର ନାମ ଏବ୍ରୀ

ଭାଷାରେ 'ଅବଦ୍ଦୋନ୍' ଓ ଗ୍ରୀକ୍ ଭାଷାରେ 'ଅପଲ୍ଲିୟୋନ୍' (ବିନାଶକ) ଥିଲା।

୧୨ପ୍ରଥମ କ୍ଲେଶଟି ଶେଷ ହୋଇଗଲା, ଏହାପରେ ଆହୁରି ଦୁଇଟି ବଡ଼ କ୍ଲେଶ ଆସିବ।

୧୩ତା'ପରେ ଷଷ୍ଠ ସ୍ୱର୍ଗଦୂତ ତୂରୀ ବଜାଇଲେ। ମୁଁ ପରମେଶ୍ୱରଙ୍କ ସମ୍ମୁଖରେ ଥିବା ସୁନା ବେଦୀର ଚାରି ଶୃଙ୍ଗ ମଧ୍ୟରୁ ଗୋଟିଏ ସ୍ୱର ଶୁଣିଲି। ୧୪ଏହି ସ୍ୱର ତୂରୀ ଧରିଥିବା ଷଷ୍ଠ ଦୂତଙ୍କୁ କହିଲା, "ଫରାତ୍ ମହାନଦୀରେ ବନ୍ଧା ହୋଇ ରହିଥିବା ଚାରି ଜଣ ସ୍ୱର୍ଗଦୂତଙ୍କୁ ମୁକ୍ତ କରିଦିଅ।" ୧୫ତେଣୁ ଯେଉଁ ଚାରି ଜଣ ଦୂତଙ୍କୁ ପୃଥିବୀର ଏକ ତୃତୀୟାଂଶ ଲୋକମାନଙ୍କର ପ୍ରାଣନାଶ କରିବାକୁ ସେହି ଘଣ୍ଟା, ଦିନ, ମାସ ଓ ସେହି ବର୍ଷ ପର୍ଯ୍ୟନ୍ତ ପ୍ରସ୍ତୁତ କରି ରଖାଯାଇଥିଲା, ସେମାନଙ୍କୁ ମୁକ୍ତ କରାଗଲା। ୧୬ଅଶ୍ୱାରୋହୀ ସୈନ୍ୟ କୋଡ଼ିଏ କୋଟି ବୋଲି ମୁଁ ଶୁଣିବାକୁ ପାଇଲି।

୧୭ମୋ ଦର୍ଶନରେ ମୁଁ ଅଶ୍ୱ ଓ ଅଶ୍ୱାରୋହୀମାନଙ୍କୁ ଦେଖିଲି। ସେମାନେ ନୀଳକାନ୍ତ ମଣି ତୁଲ୍ୟ ଲୋହିତ, ନୀଳକାନ୍ତ ମଣି ତୁଲ୍ୟ ନୀଳ ଓ ଗନ୍ଧକ ପରି ହଳଦିଆ ବର୍ଣ୍ଣର ସାଞ୍ଜୁ ଛାତିରେ ପିନ୍ଧିଥିଲେ। ଅଶ୍ୱମାନଙ୍କର ମୁଣ୍ଡ ସିଂହର ମୁଣ୍ଡ ପରି ଦେଖାଯାଉଥିଲା। ସେମାନଙ୍କ ମୁଖରୁ ଅଗ୍ନି, ଧୂଆଁ, ଓ ଗନ୍ଧକ ବାହାରୁଥିଲା। ୧୮ସେମାନଙ୍କ ମୁହଁରୁ ବାହାରୁଥିବା ଏହି ତିନୋଟି ମହାମାରୀ ଅଗ୍ନି, ଧୂଆଁ ଓ ଗନ୍ଧକ ହେତୁ ମନୁଷ୍ୟ ଜାତିର ଏକ ତୃତୀୟାଂଶ ପ୍ରାଣ ହରାଇଲେ। ୧୯ସେହି ଅଶ୍ୱମାନଙ୍କର ମାରାତ୍ମକ ଶକ୍ତି କେବଳ ମୁହଁରେ ନଥାଇ ଲାଙ୍ଗୁଳରେ ମଧ୍ୟ ଥିଲା। ସେମାନଙ୍କର ଲାଙ୍ଗୁଳ ସାପ ପରି, ଯାହାଙ୍କର ମୁଣ୍ଡ ଲୋକମାନଙ୍କୁ ଦଂଶନ ଓ ଅନିଷ୍ଟ କରିବା ପାଇଁ ଥିଲା।

୨୦ପୃଥିବୀର ଯେଉଁ ଅବଶିଷ୍ଟ ଲୋକମାନେ ଏହି ମହାମାରୀ ଦ୍ୱାରା ପ୍ରାଣ ହରାଇ ନ ଥିଲେ, ସେମାନେ ତଥାପି ସେମାନଙ୍କର ମନ ଓ ଜୀବନ ପରିବର୍ତ୍ତନ କଲେ ନାହିଁ। ସେମାନେ ତାହାଙ୍କ ହାତ ତିଆରି କର୍ମଗୁଡ଼ିକ ଠାରୁ ମଧ୍ୟ ନିଜକୁ ଦୂରେଇ ଦେଲେ ନାହିଁ। ସେମାନେ ଦୁଷ୍ଟାତ୍ମାଗୁଡ଼ିକର ପୂଜା କଲେ ଓ ସୁନା, ରୂପା, ପିତ୍ତଳ, ପଥର, କାଠରେ ତିଆରି, ଦେଖି ପାରୁନଥିବା, ଶୁଣି ପାରୁନଥିବା ବା ଚାଲି ପାରୁନଥିବା ପ୍ରତିମା ଗୁଡ଼ିକର ପୂଜା କରିବା ବନ୍ଦ କଲେନାହିଁ। ୨୧ଏହା ବ୍ୟତୀତ ସେମାନେ ସେମାନଙ୍କର ନରହତ୍ୟା, ଗୁଣିବିଦ୍ୟା, ଯୌନଗତପାପ କିମ୍ବା ଚୋରୀପାପ ପରିତ୍ୟାଗ କଲେ ନାହିଁ କି ସେଥିରୁ ମନ ଫେରାଇ ଅନୁତାପ କଲେ ନାହିଁ।

## ସ୍ୱର୍ଗଦୂତ ଏବଂ କ୍ଷୁଦ୍ର ପୁସ୍ତକ

୧୦ ତା'ପରେ ମୁଁ ଜଣେ ଶକ୍ତିଶାଳୀ ଦୂତଙ୍କୁ ସ୍ୱର୍ଗରୁ ଆସିବାର ଦେଖିଲି। ସେ ମେଘ ଦ୍ୱାରା ଆଚ୍ଛାଦିତ ଥିଲେ। ତାହାଙ୍କ ମସ୍ତକରେ ମେଘଧନୁ ଶୋଭା ପାଉଥିଲା। ତାହାଙ୍କର ମୁଖ ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ଓ ପାଦ ଦୁଇଟି ଅଗ୍ନିସ୍ତମ୍ଭ ସଦୃଶ ଥିଲା। ୨ସେହି ଦୂତଙ୍କ ହାତରେ ଗୋଟିଏ କ୍ଷୁଦ୍ର ଖୋଲା ଚର୍ମପତ୍ର ଥିଲା। ସେ ତାହାଙ୍କର ଦକ୍ଷିଣ ପାଦ ସମୁଦ୍ର ଉପରେ ଓ ବାମ ପାଦ ସ୍ଥଳଭାଗ ଉପରେ ରଖିଥିଲେ। ୩ସେ ସିଂହ ଗର୍ଜନ ପରି ଜୋରରେ ପାଟି କଲେ। ସେ ପାଟି କରନ୍ତେ ପରେ ସାତବଜ୍ର ତାହାର ଉତ୍ତର ଦେଲେ। ୪ମୁଁ ଏହା ଲେଖିବାକୁ ପ୍ରସ୍ତୁତ ହେଲି। ସେତେବେଳେ ମୋତେ ଆକାଶବାଣୀ ଶୁଭିଲା, "ସାତ ବଜ୍ର ଯାହା କହିଲେ, ତାହା ଲେଖନାହିଁ। ସେଗୁଡ଼ିକ ଗୁପ୍ତ ରଖ।" ୫ତା'ପରେ ସେହି ସ୍ୱର୍ଗଦୂତ ଯେଙ୍କ ସମୁଦ୍ର ଓ ପୃଥିବୀ ଉପରେ ପାଦଦେଇ ଠିଆ ହୋଇଥିବାର ମୁଁ ଦେଖିଲି, ସେ ତାହାଙ୍କ ଦକ୍ଷିଣ ହସ୍ତ ସ୍ୱର୍ଗକୁ ଉଠାଇଲେ। ୬ଯେ ନିତ୍ୟଜୀବିତ, ଯେ ଆକାଶ ଓ ତନ୍ମଧ୍ୟସ୍ଥ ସକଳ ବିଷୟ ଏବଂ ପୃଥିବୀ ଓ ତନ୍ମଧ୍ୟସ୍ଥ ସକଳ ବିଷୟ ସୃଷ୍ଟି କରିଛନ୍ତି, ତାହାଙ୍କ ନାମରେ ସେହି ସ୍ୱର୍ଗଦୂତ ଶପଥକରି କହିଲେ, "ଆଉ ଅଧିକ ବିଳମ୍ବ ହେବ ନାହିଁ! ୭କିନ୍ତୁ ସପ୍ତମ ଦୂତ ସେହି ଦିନମାନଙ୍କରେ ତୂରୀ ବଜାନ୍ତେ ପରମେଶ୍ୱର ଆପଣା ସେବକ ଭବିଷ୍ୟଦ୍‌ବକ୍ତାମାନଙ୍କୁ କହିଥିବା ବାକ୍ୟ ଅନୁସାରେ ତାହାଙ୍କର ଗୁପ୍ତ ଯୋଜନା ସମ୍ପୂର୍ଣ୍ଣ ହେବ।" ୮ତା'ପରେ ମୁଁ ସେହି ସ୍ୱର ସ୍ୱର୍ଗରୁ ପୁଣି ଥରେ ଶୁଣିଲି। ସେ ସ୍ୱର ମୋତେ କହିଲା, "ଯାଅ ଓ ସମୁଦ୍ର ଓ ପୃଥିବୀ ଉପରେ ଠିଆ ହୋଇଥିବା ଦୂତଙ୍କ ହାତରୁ ଖୋଲା ଚର୍ମପତ୍ରଟି ନିଅ।"

୯ତେଣୁ ମୁଁ ଦୂତଙ୍କ ପାଖକୁ ଯାଇ କ୍ଷୁଦ୍ର ଚର୍ମପତ୍ରଟି ମାଗିଲି। ସେ ମୋତେ କହିଲେ, "ଏହାକୁ ନିଅ ଓ ଏହା ଖାଅ। ଏହା ତୁମ୍ଭ ପେଟକୁ ଖଟା ଲାଗିବ, କିନ୍ତୁ ତୁମ୍ଭ ମୁହଁକୁ ମହୁ ପରି ମିଠା ଲାଗିବ।" ୧୦ତେଣୁ ମୁଁ ତାହାଙ୍କ ହସ୍ତରୁ କ୍ଷୁଦ୍ର ଚର୍ମପତ୍ର ନେଲି ଓ ଖାଇଲି। ମୋ ପାଟିକୁ ତାହା ମିଠା ଲାଗିଲା, କିନ୍ତୁ ଯେତେବେଳେ ମୁଁ ଏହାକୁ ଢୋକିଲି, ପେଟରେ ଏହା ଖଟା ଲାଗିଲା। ୧୧ତା'ପରେ ସେମାନେ ମୋତେ କହିଲେ, "ଅନେକ ଦେଶ, ଜାତି, ଭାଷା ଓ ରାଜାମାନଙ୍କ ବିଷୟରେ ତୁମ୍ଭକୁ ଆହୁରି ଭବିଷ୍ୟଦ୍‌ବାଣୀ କହିବାକୁ ପଡ଼ିବ।"

## ଦୁଇଜଣ ସାକ୍ଷୀ

୧୧ ତା'ପରେ ମୋତେ ବୁଲାବାଡ଼ି ଲମ୍ବର ଗୋଟିଏ ମାପଦଣ୍ଡ ଦିଆଗଲା। ମୋତେ କୁହାଗଲା, "ଯାଅ, ପରମେଶ୍ୱରଙ୍କର ମନ୍ଦିର, ବେଦୀକୁ ମାପ, ଏବଂ ସେଠାରେ ଉପାସନା କରୁଥିବା ଲୋକମାନଙ୍କର ସଂଖ୍ୟା ଗଣନା କର। ୨କିନ୍ତୁ ମନ୍ଦିରର ବାହାର ଅଗଣା ମାପ ନାହିଁ। ତାହାକୁ ସେହିପରି ଛାଡ଼ି ଦିଅ, କାରଣ ତାହା ଅଣଯିହୂଦୀୟ ଦେଶଗୁଡ଼ିକର ଲୋକମାନଙ୍କୁ ଦିଆଯାଇଛି। ସେହି ଲୋକମାନେ ବୟାଳିଶମାସ ପର୍ଯ୍ୟନ୍ତ ପବିତ୍ର ନଗରକୁ ପଦଦଳିତ କରିବେ। ୩ମୁଁ ମୋର ଦୁଇ ସାକ୍ଷୀଙ୍କୁ କ୍ଷମତା ଦେବି। ସେମାନେ ୧୨୬୦ ଦିନ ପର୍ଯ୍ୟନ୍ତ ଅଖା ପିନ୍ଧି ଭବିଷ୍ୟଦ୍‌ବାଣୀ କହିବେ।" ୪ଏହି ଦୁଇ ସାକ୍ଷୀ ହେଉଛନ୍ତି, ପୃଥିବୀରେ ପ୍ରଭୂଙ୍କ ସମ୍ମୁଖରେ ଠିଆ ହୋଇଥିବା ଦୁଇ ଜୀତ ବୃକ୍ଷ ଓ ଦୁଇ ଦୀପରୂଖା। ୫ଯଦି କେହି ସେମାନଙ୍କର କ୍ଷତି କରିବାକୁ ଚାହେଁ, ତା'ହେଲେ ସେମାନଙ୍କର ମୁହଁରୁ ବାହାରୁଥିବା ଅଗ୍ନି ସେମାନଙ୍କୁ ଧ୍ୱଂସ କରିବ। ଯଦି କୌଣସି ଲୋକ ସେମାନଙ୍କର କ୍ଷତି କରିବାକୁ ଚେଷ୍ଟା କରେ, ସେ ଏହିପରିଭାବେ ମୃତ୍ୟୁଭୋଗ କରିବ।

୬ଏହି ଦୁଇଜଣ ଭବିଷ୍ୟଦ୍‌ବାଣୀ କହିବାବେଳେ ଯେପରି
ବର୍ଷା ନ ହୁଏ, ସେଥିନିମନ୍ତେ ଆକାଶକୁ ରୁଦ୍ଧ କରିବା
ନିମନ୍ତେ ସେମାନଙ୍କର କ୍ଷମତା ଅଛି। ଜଳକୁ ରକ୍ତରେ
ପରିଣତ କରିବାର କ୍ଷମତା ସେମାନଙ୍କର ଅଛି। ପୃଥିବୀକୁ
ପ୍ରତ୍ୟେକ ପ୍ରକାରର ମହାମାରୀ ଦ୍ୱାରା କଷ୍ଟ ଦେବାର କ୍ଷମତା
ସେମାନଙ୍କର ଅଛି। ସେମାନେ ସେମାନଙ୍କର ନିଜ ଇଚ୍ଛା
ଅନୁସାରେ ଯେତେଥର ଚାହିଁବେ, ସେତେଥର ଏହା କରି
ପାରିବେ।
୭ସେମାନଙ୍କର ସାକ୍ଷ୍ୟ ଦେବା ସମୟ ସରିଯିବା ପରେ
ସେହି ପଶୁ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବ। ପାତାଳର
ଅତଳ ଗର୍ତ୍ତରୁ ଉପରକୁ ଆସୁଥିବା ପଶୁ ସେମାନଙ୍କ
ବିରୁଦ୍ଧରେ ଯୁଦ୍ଧ କରିବ। ସେ ସେମାନଙ୍କୁ ପରାସ୍ତ କରି
ହତ୍ୟା କରିବ। ୮ଏହି ଦୁଇ ସାକ୍ଷୀଙ୍କର ଶରୀର ମହାନଗରୀର
ରାସ୍ତାରେ ପଡ଼ିରହିବ। ଏହି ନଗରର ନାମ 'ସଦୋମ' ଓ
'ମିସର'। ନଗରର ଏହି ନାମଗୁଡ଼ିକର ବିଶେଷ ଅର୍ଥ
ରହିଛି। ଏହି ନଗରରେ ସେମାନଙ୍କର ପ୍ରଭୁଙ୍କୁ ମଧ୍ୟ
କ୍ରୁଶରେ ଚଢ଼ାଇ ମାରି ଦିଆଯାଇଥିଲା। ୯ସାଢ଼େ ତିନିଦିନ
ପର୍ଯ୍ୟନ୍ତ ସମସ୍ତ ମଣିଷ ଜାତି, ସମସ୍ତ ଗୋଷ୍ଠୀ, ସମସ୍ତ ଭାଷା
ଏବଂ ସମସ୍ତ ରାଷ୍ଟ୍ରର ଲୋକମାନେ ସେମାନଙ୍କର ଶବ
ଦେଖିବେ। କିନ୍ତୁ ସେମାନେ ସେମାନଙ୍କର ଶବ ସମାଧିସ୍ଥ
ହେବାକୁ ଦେବେ ନାହିଁ। ୧୦ସେମାନଙ୍କର ମୃତ୍ୟୁରେ ପୃଥିବୀର
ଲୋକେ ଖୁସି ହେବେ। ସେମାନେ ଭୋଜି କରିବେ ଓ
ପରସ୍ପର ଭିତରେ ଉପହାର ଦିଆନିଆ କରିବେ। ସେମାନେ
ଏପରି କରିବେ, କାରଣ ଏହି ଦୁଇଜଣ ସାକ୍ଷୀ ପୃଥିବୀବାସୀଙ୍କୁ
ବହୁତ ଯନ୍ତ୍ରଣା ଦେଇଥିଲେ।
୧୧କିନ୍ତୁ ସାଢ଼େ ତିନି ଦିନ ପରେ ପରମେଶ୍ୱରଙ୍କଠାରୁ
ଜୀବନୀ ଶକ୍ତି ସେହି ଦୁଇଜଣ ଭବିଷ୍ୟଦ୍‌ବକ୍ତାଙ୍କ ଭିତରେ
ପ୍ରବେଶ କଲା। ସେମାନେ ସେମାନଙ୍କର ପାଦରେ ଉଠି
ଠିଆହେଲେ। ସେମାନଙ୍କୁ ଦେଖିବା ଲୋକମାନେ ବହୁତ
ଭୟ କଲେ। ୧୨ତା'ପରେ ସେହି ଦୁଇଜଣ ସାକ୍ଷୀ ସ୍ୱର୍ଗରୁ
ଆସୁଥିବା ଗୋଟିଏ ଉଚ୍ଚ ସ୍ୱର ଶୁଣିପାରିଲେ, "ଏଠାକୁ ଉଠି
ଆସ।" ଏହା ଶୁଣି ଦୁଇ ଜଣ ଭବିଷ୍ୟଦ୍‌ବକ୍ତା ମେଘ ଦ୍ୱାରା
ସ୍ୱର୍ଗକୁ ଗଲେ। ଏହା ସେମାନଙ୍କର ଶତ୍ରୁମାନେ ଦେଖୁଥିଲେ।
୧୩ଠିକ୍ ସେହି ସମୟରେ ଏକ ମହା ଭୂମିକମ୍ପ ହେଲା।
ନଗରର ଏକ ଦଶାଂଶ ନଷ୍ଟ ହୋଇଗଲା। ସାତ ହଜାର
ଲୋକ ପ୍ରାଣ ହରାଇଲେ। ପ୍ରାଣ ହରାଇ ନଥିବା ଲୋକମାନେ
ଅଧିକ ଭୟ କଲେ। ସେମାନେ ସ୍ୱର୍ଗର ପରମେଶ୍ୱରଙ୍କୁ
ଗୌରବ ଦେଲେ।
୧୪ଦ୍ୱିତୀୟ କ୍ଳେଶ ଦୂର ହେଲା। ତୃତୀୟ କ୍ଳେଶଟି ଖୁବ୍
ଶୀଘ୍ର ଆସୁଛି।

## ସପ୍ତମ ତୂରୀ

୧୫ସପ୍ତମ ଦୂତ ତାହାଙ୍କ ତୂରୀ ବଜାଇଲେ। ସ୍ୱର୍ଗରେ
ଉଚ୍ଚ ସ୍ୱରମାନ ଶୁଣାଗଲା। ସେମାନେ କହିଲେ,

"ଏହି ପୃଥିବୀ ବର୍ତ୍ତମାନ ଆମ୍ଭ ପ୍ରଭୁଙ୍କର ଓ ତାହା
ଖ୍ରୀଷ୍ଟଙ୍କର ରାଜ୍ୟ ହେଲା। ସେ ଅନନ୍ତକାଳ ନିମନ୍ତେ
ରାଜତ୍ୱ କରିବେ।"

୧୬ତା'ପରେ ଚବିଶ ଜଣ ପ୍ରାଚୀନ ମୁଣ୍ଡ ନୁଆଁଇ ପ୍ରଣାମ
କଲେ ଓ ପରମେଶ୍ୱରଙ୍କର ଉପାସନା କଲେ। ଏହି
ପ୍ରାଚୀନମାନେ ପରମେଶ୍ୱରଙ୍କ ସମ୍ମୁଖରେ ସେମାନଙ୍କ
ସିଂହାସନରେ ବସନ୍ତି। ୧୭ସେହି ପ୍ରାଚୀନମାନେ କହିଲେ:

"ହେ ପ୍ରଭୁ ପରମେଶ୍ୱର, ତୁମ୍ଭେ ସର୍ବଶକ୍ତିମାନ
ଅଟ। ଆମ୍ଭେ ତୁମ୍ଭକୁ ଧନ୍ୟବାଦ ଦେଉଅଛୁ; ତୁମ୍ଭେ
ହିଁ ଏକମାତ୍ର ବର୍ତ୍ତମାନ ଅଛ, ଓ ଅତୀତରେ ଥିଲ।
ଏବେ ତୁମ୍ଭେ ତୁମ୍ଭର ମହାଶକ୍ତି ପ୍ରୟୋଗ କରି
ଶାସନ କରିବାକୁ ଆରମ୍ଭ କରିଛ, ସେଥିପାଇଁ
ତୁମ୍ଭକୁ ଧନ୍ୟବାଦ ଦେଉଅଛୁ।
୧୮ ଅନ୍ୟ ଜାତୀୟମାନେ ତୁମ୍ଭ ଉପରେ କ୍ରୋଧ କରିଥିଲେ,
କିନ୍ତୁ ବର୍ତ୍ତମାନ ତୁମ୍ଭ କ୍ରୋଧର ସମୟ ଉପସ୍ଥିତ,
ମୃତମାନଙ୍କର ବିଚାର ସମୟ ଆସିଛି; ତୁମ୍ଭ
ସେବକମାନଙ୍କୁ, ଭବିଷ୍ୟଦ୍‌ବକ୍ତାମାନଙ୍କୁ ପୁରସ୍କାର
ଦେବାର ସମୟ ଆସିଛି, ଏବଂ ତୁମ୍ଭକୁ ଭୟ ଓ
ସମ୍ମାନ କରୁଥିବା ସାନବଡ଼ ପ୍ରତ୍ୟେକଙ୍କୁ ପୁରସ୍କାର
ଦେବାର ସମୟ ଆସିଛି। ପୃଥିବୀକୁ ବିନାଶ କରୁଥିବା
ବିନାଶକାରୀଙ୍କର ବିନାଶର ସମୟ ଉପସ୍ଥିତ ହୋଇଛି!"

୧୯ତା'ପରେ ସ୍ୱର୍ଗରେ ପରମେଶ୍ୱରଙ୍କ ମନ୍ଦିର ଖୋଲିଗଲା
ଓ ସେହି ମନ୍ଦିରରେ ପବିତ୍ର ନିୟମସିନ୍ଦୁକ ଦେଖାଗଲା।
ଏହି ପବିତ୍ର ସିନ୍ଦୁକରେ ସେହି ଚୁକ୍ତି ଥିଲା, ଯାହାକୁ
ପରମେଶ୍ୱର ଲୋକମାନଙ୍କୁ ଦେଇଥିଲେ। ତା'ପରେ ସେଠାରେ
ବିଜୁଳିର ଆଲୋକ ଝଲସି ଉଠିଲା, ତଥା ମହାକୋଳାହଳ,
ବଜ୍ର ନାଦ, ଭୂମିକମ୍ପ ଓ ପ୍ରବଳ କୁଆପଥର ବୃଷ୍ଟି ହେଲା।

## ନାରୀ ଓ ମହାସର୍ପ

୧୨ ତା'ପରେ ସ୍ୱର୍ଗରେ ଏକ ବିଚିତ୍ର ଚିହ୍ନ ଦେଖାଗଲା।
ମୁଁ ଜଣେ ନାରୀଙ୍କୁ ସୂର୍ଯ୍ୟଙ୍କୁ ବସ୍ତ୍ରରୂପେ ଧାରଣ
କରିବାର ଦେଖିଲି। ଚନ୍ଦ୍ର ତାହାଙ୍କ ପାଦତଳେ ଥିଲେ।
ତାହାଙ୍କ ମସ୍ତକରେ ବାରଟି ନକ୍ଷତ୍ରର ମୁକୁଟ ଥିଲା। ୨ସେହି
ନାରୀ ଜଣକ ଗର୍ଭବତୀ ଥିଲେ। ପ୍ରସବ ବେଦନାରେ ସେ
ଚିତ୍କାର କଲେ। ତାହାଙ୍କର ପ୍ରସବ କରିବା ସମୟ
ହୋଇଯାଇଥିଲା। ୩ସ୍ୱର୍ଗରେ ଅନ୍ୟ ଏକ ଚିହ୍ନ ଦେଖାଗଲା।
ସେଠାରେ ଗୋଟିଏ ବିରାଟ ଲାଲ ରଙ୍ଗର ସାପ ମୁଁ
ଦେଖିଲି। ତା'ର ସାତୋଟି ମୁଣ୍ଡ ଥିଲା ଓ ପ୍ରତି ମୁଣ୍ଡରେ
ସାତୋଟି ମୁକୁଟ ଥିଲା। ତା'ର ଦଶଟି ଶିଙ୍ଗ ମଧ୍ୟ ଥିଲା।
୪ତାହାର ଲାଙ୍ଗୁଳ ଆକାଶର ତାରାଗଣ ମଧ୍ୟରୁ ଏକତୃତୀୟାଂଶ
ତାରାକୁ ଟାଣିଆଣି ପୃଥିବୀରେ ନିକ୍ଷେପ କଲା। ସେହି ସାପ,
ପ୍ରସବ କରିବାକୁ ଯାଇଥିବା ସେହି ନାରୀଙ୍କ ସାମନାରେ
ଠିଆ ହୋଇ ରହିଲା। ତାହାଙ୍କର ସନ୍ତାନ ଜନ୍ମ ହେବା
ମାତ୍ରେ ତାହାକୁ ଖାଇବା ଉଦ୍ଦେଶ୍ୟରେ ସେ ପ୍ରସ୍ତୁତ
ହୋଇରହିଲା। ୫ସେହି ନାରୀ ଗୋଟିଏ ପୁତ୍ର ଶିଶୁକୁ ଜନ୍ମ
ଦେଲେ। ସେ ସମଗ୍ର ରାଷ୍ଟ୍ରଗୁଡ଼ିକୁ ଗୋଟିଏ ଲୌହ ଦଣ୍ଡରେ
ଶାସନ କରିବେ। ତା'ର ଶିଶୁଙ୍କୁ ପରମେଶ୍ୱରଙ୍କ ସିଂହାସନ
ପାଖକୁ ଉଠାଇ ନିଆଗଲା। ୬ସେହି ସ୍ତ୍ରୀଲୋକଟି, ପରମେଶ୍ୱର

ତା’ ପାଇଁ ପ୍ରସ୍ତୁତ କରି ରଖିଥିବା ମରୁଭୂମିର ଗୋଟିଏ
ସ୍ଥାନକୁ ଚାଲିଗଲା। ସେଠାରେ ତା’ର ଯତ୍ନ ୧୨୬୦ ଦିନ
ପର୍ଯ୍ୟନ୍ତ ନିଆଯିବ।

୭ଏହିପରି ସମୟରେ ସ୍ୱର୍ଗରେ ଯୁଦ୍ଧ ହେଲା। ମୀଖାୟେଲ
ଓ ତାହାଙ୍କର ଦୂତଗଣ ସେହି ସାପ ଓ ତାହାର ଦୂତମାନଙ୍କ
ବିରୁଦ୍ଧରେ ଯୁଦ୍ଧ କଲେ। ସାପ ତା’ର ଦୂତମାନଙ୍କ ସହିତ
ପ୍ରତିଯୁଦ୍ଧ କଲା। ୮କିନ୍ତୁ ବିଶାଳ ସାପ ଅଧିକ ବଳଶାଳୀ ନ
ଥିବାରୁ ସେ ଓ ତାହାର ଦୂତମାନେ ପରାସ୍ତ ହେଲେ ଓ
ସ୍ୱର୍ଗରେ ସ୍ଥାନ ହରାଇଲେ। ୯ବିଶାଳ ସାପକୁ ସ୍ୱର୍ଗରୁ
ପୃଥିବୀରେ ନିକ୍ଷେପ କରାଗଲା। (ସେହି ବିଶାଳ ସାପ
ହେଉଛି ସେହି ଅତୀତର ପୁରୁଣା ସାପ, ଯାହାକୁ ଶୟତାନ
କୁହାଯାଏ। ସେ ପୃଥିବୀ ବାସୀଙ୍କୁ ଭୁଲ ରାସ୍ତାରେ ନିଏ।
ସାପକୁ ତା’ର ଦୂତମାନଙ୍କ ସହିତ ସଦଳବଳରେ ପୃଥିବୀରେ
ନିକ୍ଷେପ କରାଗଲା।

୧୦ତା’ପରେ ମୁଁ ସ୍ୱର୍ଗରେ ଗୋଟିଏ ଉଚ୍ଚ ଧ୍ୱନି ଏହା
କହିବାର ଶୁଣିଲି, “ବର୍ତ୍ତମାନ ଆମ୍ଭ ପରମେଶ୍ୱରଙ୍କ ବିଜୟ,
କ୍ଷମତା, ଓ ରାଜତ୍ୱର ସମୟ ଉପସ୍ଥିତ। ତାହାଙ୍କର ଖ୍ରୀଷ୍ଟଙ୍କ
ଶାସନ କରିବା ଅଧିକାର ସମୟ ମଧ୍ୟ ଉପସ୍ଥିତ ହୋଇଛି।
କାରଣ, ଆମ୍ଭମାନଙ୍କର ଭାଇମାନଙ୍କ ଅଭିଯୋଗକାରୀକୁ ବାହାରେ
ନିକ୍ଷେପ କରାଯାଇଛି। ସେ ଦିନରାତି ଆମ୍ଭ ପରମେଶ୍ୱରଙ୍କ
ସମ୍ମୁଖରେ ଆମ୍ଭ ଭାଇମାନଙ୍କ ବିଷୟରେ ଅଭିଯୋଗ କରୁଥିଲା।
୧୧ଆମ୍ଭ ଭାଇମାନେ ମେଷଶାବକଙ୍କ ରକ୍ତ ଦ୍ୱାରା ଓ
ସେମାନଙ୍କର ପ୍ରଚାର ଦ୍ୱାରା ତାହାକୁ ପରାସ୍ତ କରିଛନ୍ତି,
କାରଣ ସେମାନେ ନିଜନିଜର ଜୀବନକୁ ତୁଚ୍ଛଜ୍ଞାନ କରି
ତାହାଙ୍କ ନିମନ୍ତେ ମୃତ୍ୟୁଭୋଗ କରିଥିଲେ । ୧୨ତେଣୁ ହେ
ସ୍ୱର୍ଗ ଓ ସ୍ୱର୍ଗବାସୀଗଣ, ଆନନ୍ଦ ଉଲ୍ଲାସ କର। କିନ୍ତୁ ହାୟ!
ଏହା ପୃଥିବୀ ଓ ସମୁଦ୍ର ପାଇଁ ଅତ୍ୟନ୍ତ ଖରାପ ସମୟ,
ଯେହେତୁ ସମୟ ଅତି ଅଳ୍ପ ବୋଲି ଜାଣି ଶୟତାନ
ଭୀଷଣ କ୍ରୋଧରେ ପୂର୍ଣ୍ଣ ହୋଇ ତୁମ୍ଭମାନଙ୍କ ମଧ୍ୟକୁ
ଓହ୍ଲାଇ ଯାଇଅଛି।

୧୩ବିଶାଳ ସାପ ନିଜକୁ ପୃଥିବୀରେ ନିକ୍ଷେପ ହେବାର
ଦେଖିଲା। ତେଣୁ ସେ ପୁତ୍ର ସନ୍ତାନ ଜାତ କରିଥିବା ନାରୀ
ପଛେ ପଛେ ଦୌଡ଼ିଲା। ୧୪କିନ୍ତୁ ସେହି ନାରୀକୁ ବୃହତ୍
ଉତ୍କ୍ରୋଶ ପକ୍ଷୀର ଦୁଇଟି ପକ୍ଷ ଦିଆଗଲା। ତେଣୁ ସେ
ମରୁଭୂମିରେ ତା’ପାଇଁ ପ୍ରସ୍ତୁତ ହୋଇଥିବା ସ୍ଥାନକୁ ଉଡ଼ିଯାଇ
ପାରିଲା। ସେଠାରେ ସାପଠାରୁ ସୁରକ୍ଷା ପାଇଁ ସାଢ଼େ ତିନି
ବର୍ଷ ପର୍ଯ୍ୟନ୍ତ ତାହାଙ୍କର ଯତ୍ନ ନିଆଯିବ। ୧୫ତା’ପରେ ସାପ
ନିଜ ମୁଖରୁ ନଦୀ ପରି ପାଣି ବାହାର କଲା। ସେ ସେହି
ନାରୀର ପଛପଟରୁ ଜଳ ଛାଡ଼ିଲା ଯଦ୍ଦ୍ୱାରା ସେ ଜଳସ୍ରୋତ
ଦ୍ୱାରା ତାହାକୁ ଭସାଇ ନେଇପାରିବ। ୧୬କିନ୍ତୁ ପୃଥିବୀ
ସେହି ସ୍ତ୍ରୀକୁ ସାହାଯ୍ୟ କଲା। ପୃଥିବୀ ତା’ର ମୁଖ
ଖୋଲିଲା ଓ ବିଶାଳ ସାପ ମୁଖରୁ ବାହାରି ଆସୁଥିବା
ନଦୀକୁ ଗିଳିଦେଲା। ୧୭ତେଣୁ ସାପ ସେହି ନାରୀ ଉପରେ
ଭୀଷଣ ରାଗିଗଲା। ସେ ତା’ର ଅନ୍ୟ ପିଲାମାନଙ୍କ ବିରୁଦ୍ଧରେ
ଯୁଦ୍ଧ କରିବାକୁ ବାହାରିଲା। ଯେଉଁମାନେ ପରମେଶ୍ୱରଙ୍କର
ଆଜ୍ଞା ଗୁଡ଼ିକୁ ପାଳନ କରନ୍ତି ଓ ଯୀଶୁଙ୍କ ବିଷୟରେ
ସାକ୍ଷ୍ୟ ଦିଅନ୍ତି ସେହିମାନେ ତାହାଙ୍କର ସନ୍ତାନ।

୧୮ସେହି ବିଶାଳ ସାପ ଯାଇ ସମୁଦ୍ର କୂଳରେ ଠିଆ
ହେଲା।

### ଦୁଇଟି ପଶୁ

**୧୩** ତା’ପରେ ମୁଁ ଗୋଟିଏ ପଶୁକୁ ସମୁଦ୍ର ଭିତରୁ
ଉପରକୁ ଆସିବାର ଦେଖିଲି। ଏହାର ଦଶଟି
ଶିଙ୍ଗ ଓ ସାତୋଟି ମୁଣ୍ଡ ଥିଲା। ପ୍ରତ୍ୟେକ ଶିଙ୍ଗରେ
ଗୋଟିଏ ଗୋଟିଏ ମୁକୁଟ ଥିଲା। ପ୍ରତ୍ୟେକ ମସ୍ତକରେ
ପରମେଶ୍ୱରଙ୍କୁ ନିନ୍ଦା କରୁଥିବା ଖରାପ ନାମ ସବୁ
ଲେଖାଯାଇଥିଲା। ୨ଏହି ପଶୁ ଚିତାବାଘ ଭଳି ଥିଲା। କିନ୍ତୁ
ତା’ର ପାଦ ଭାଲୁ ପରି ଓ ପାଟି ସିଂହ ପରି ଥିଲା। ସେହି
ବିଶାଳ ସାପ ସମୁଦ୍ରକୂଳରେ ରହି ତା’ର ସମସ୍ତ କ୍ଷମତା,
ସିଂହାସନ ଓ ମହାନ ଅଧିକାର ତାହାକୁ ଦେଲା। ୩ତାହାର
ମସ୍ତକଗୁଡ଼ିକ ମଧ୍ୟରୁ ଗୋଟିଏ ମସ୍ତକ ଆଘାତ ପ୍ରାପ୍ତ
ହୋଇଥିବା ପରି ଓ ମରାଯାଇଥିବା ପରି ଦେଖାଗଲା। କିନ୍ତୁ
ତା’ର ମାରାତ୍ମକ କ୍ଷତ ଭଲ ହୋଇଯାଇଥିଲା। ପୃଥିବୀର
ସବୁଲୋକମାନେ ତାହାକୁ ଦେଖି ଆଶ୍ଚର୍ଯ୍ୟ ହେଲେ ଓ
ସେହି ପଶୁର ଅନୁଗମନ କଲେ। ୪ଲୋକମାନେ ସେହି
ସାପକୁ ପୂଜା କଲେ, କାରଣ ସେ ତା’ର କ୍ଷମତା ପଶୁକୁ
ଦାନ କରିଦେଇଥିଲା। ଲୋକମାନେ ସେହି ପଶୁକୁ ମଧ୍ୟ
ପୂଜା କଲେ। ସେମାନେ କହିଲେ, “ଏହି ପଶୁ ଭଳି
ଶକ୍ତିଶାଳୀ କିଏ ଅଛି? ତା’ ବିରୁଦ୍ଧରେ କିଏ ଯୁଦ୍ଧ
କରିପାରିବ?”

୫ସେହି ପଶୁକୁ ଗର୍ବ କରିବା ପାଇଁ ଓ ଖରାପ କଥା
କହିବା ପାଇଁ ଅନୁମତି ଦିଆଗଲା। ତାକୁ ବୟାଳିଶମାସ
ପର୍ଯ୍ୟନ୍ତ ତା’ର କ୍ଷମତା ପ୍ରୟୋଗ କରିବା ପାଇଁ ଅନୁମତି
ଦିଆଗଲା। ୬ସେହି ପଶୁ ପରମେଶ୍ୱରଙ୍କ ବିରୁଦ୍ଧରେ ଖରାପ
କଥା କହିବା ପାଇଁ ମୁହଁ ଖୋଲିଲା। ସେ ପରମେଶ୍ୱରଙ୍କର
ନାମ ବିରୁଦ୍ଧରେ, ତାହାଙ୍କର ବାସସ୍ଥଳୀ ବିରୁଦ୍ଧରେ ଓ
ଯେଉଁମାନେ ସ୍ୱର୍ଗରେ ରହୁଥିଲେ, ସେମାନଙ୍କ ବିରୁଦ୍ଧରେ
ଖରାପ କଥାମାନ କହିଲା। ୭ତାହାକୁ ପରମେଶ୍ୱରଙ୍କ
ପବିତ୍ରଲୋକ ବିରୁଦ୍ଧରେ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ
କରିବାର କ୍ଷମତା ଦିଆଗଲା। ତାହାକୁ ପୃଥିବୀର ସବୁ
ଗୋଷ୍ଠୀ, ଜାତି, ପ୍ରଜାତି ଓ ଦେଶଗୁଡ଼ିକ ଉପରେ ଶାସନ
କରିବାକୁ କ୍ଷମତା ଦିଆଗଲା। ୮ପୃଥିବୀରେ ରହୁଥିବା ସମସ୍ତ
ଲୋକମାନେ ସେହି ପଶୁକୁ ପୂଜା କରିବେ। ପୃଥିବୀ
ଆରମ୍ଭରୁ ଏହି ଲୋକମାନଙ୍କର ନାମ ମେଷଶାବକଙ୍କ
ଜୀବନ ପୁସ୍ତକରେ ଲେଖା ହୋଇନାହିଁ। ଏହି ମେଷଶାବକଙ୍କୁ
ବଧ କରାଯାଇଥିଲା।

୯ଯାହାର ଶୁଣିବା ନିମନ୍ତେ କାନ ଅଛି, ସେ ଏହାକୁ
ଶୁଣିବା ଉଚିତ।

୧୦ ଯେଉଁ ବ୍ୟକ୍ତିର ବନ୍ଦୀ ହେବାର ଅଛି, ତେବେ ସେ
ବନ୍ଦୀ ହେବ। ଯେଉଁ ବ୍ୟକ୍ତିର ମୃତ୍ୟୁ ଖଣ୍ଡା ଦ୍ୱାରା
ହେବାର ଅଛି, ତେବେ ସେ ଲୋକ ଖଣ୍ଡାରେ
ମୃତ୍ୟୁବରଣ କରିବ। ଏହି ସମୟରେ, ପରମେଶ୍ୱରଙ୍କର
ପବିତ୍ରଲୋକମାନଙ୍କର ଧୈର୍ଯ୍ୟ ଓ ବିଶ୍ୱାସ ରହିବା
ଉଚିତ।

୧୧ତା'ପରେ ମୁଁ ଅନ୍ୟ ଏକ ପଶୁକୁ ପୃଥିବୀ ଉପରକୁ
ଆସିବାର ଦେଖିଲି। ତା'ର ମେଷ ପରି ଦୁଇଟି
ଶିଙ୍ଗ ଥିଲା, କିନ୍ତୁ ସେ ଏକ ସାପ ଭଳି ଭୟଙ୍କର
କଥା କହୁଥିଲା। ୧୨ଏହି ପଶୁ ପ୍ରଥମପଶୁ ସାମନାରେ
ଠିଆ ହେଲା ଓ ପ୍ରଥମପଶୁଠାରେ ଥିବା ସମସ୍ତ
କ୍ଷମତା ଭଳି କ୍ଷମତା ବ୍ୟବହାର କଲା। ସେ
ପ୍ରଥମପଶୁକୁ ପୂଜା କରିବା ପାଇଁ ସମଗ୍ର ପୃଥିବୀବାସୀଙ୍କୁ
ବାଧ କଲା। ସେହି ପ୍ରଥମପଶୁର ମାରାତ୍ମକ କ୍ଷତ
ସୁସ୍ଥ ହୋଇଯାଇଥିଲା। ୧୩ଏହି ଦ୍ୱିତୀୟ ପଶୁ
ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରେ। ଲୋକମାନେ ଦେଖୁଥିଲା
ବେଳେ ସେ ଆକାଶରୁ ପୃଥିବୀ ଉପରେ ଅଗ୍ନିବର୍ଷା
କରେ। ୧୪ଦ୍ୱିତୀୟ ପଶୁ ପୃଥିବୀର ଲୋକଙ୍କୁ ବୋକା
ବନାଏ। ଆଶ୍ଚର୍ଯ୍ୟ କାର୍ଯ୍ୟ ଦେଖାଏ। ସେ ଯେଉଁ
କ୍ଷମତା ପାଇଥିଲା, ତା ସହିତ ସେ ପ୍ରଥମ ପଶୁକୁ
ରକ୍ଷା କରିବା ପାଇଁ ଏହି ସବୁ ଆଶ୍ଚର୍ଯ୍ୟକର୍ମମାନ
କରେ। ଦ୍ୱିତୀୟ ପଶୁ ପ୍ରଥମ ପଶୁକୁ ସମ୍ମାନ ଦେବା
ପାଇଁ ପୃଥିବୀର ଲୋକମାନଙ୍କୁ ଗୋଟିଏ ମୂର୍ତ୍ତି ତିଆରି
କରିବା ପାଇଁ ଆଦେଶ ଦେଲା। ଏହି ପଶୁ ଖଣ୍ଡାରେ
ଆଘାତ ପାଇ ସୁଦ୍ଧା ମରି ନଥିଲା। ୧୫ଦ୍ୱିତୀୟ
ପଶୁକୁ ପ୍ରଥମ ପଶୁର ପ୍ରତିମାକୁ ଜୀବନ ଦେବା
ପାଇଁ କ୍ଷମତା ଦିଆ ଯାଇଥିଲା। ତା'ପରେ ସେହି
ପ୍ରତିମା କଥା କହିବ ଓ ଯେଉଁମାନେ ତାହାକୁ ପୂଜା
ନ କରିବେ, ସେ ସେମାନଙ୍କୁ ମୃତ୍ୟୁଦଣ୍ଡର ଆଦେଶ
ଦେବ। ୧୬ଦ୍ୱିତୀୟ ପଶୁ ସବୁ ଲୋକମାନଙ୍କୁ, ବଡ଼
ଓ ସାନ, ଧନୀ ଓ ଗରିବ, ସ୍ୱାଧୀନ ଓ ପରାଧୀନ
ନିର୍ବିଶେଷରେ ସମସ୍ତଙ୍କୁ ସେମାନଙ୍କ ଦକ୍ଷିଣ ହାତରେ
କିମ୍ବା ସେମାନଙ୍କ କପାଳରେ ଗୋଟିଏ ଚିହ୍ନ ଧାରଣ
କରିବା ପାଇଁ ବାଧ କଲା। ୧୭ଯେଉଁ ମନୁଷ୍ୟ ସେହି
ପଶୁର ନାମ କିମ୍ବା ତାହାର ନାମର ସଂଖ୍ୟା ଧାରଣ
କରି ନ ଥିବ, ସେ କୌଣସି ଜିନିଷ କିଣାବିକା
କରିପାରିବ ନାହିଁ। ୧୮ଯେଉଁ ଲୋକର ବୁଦ୍ଧି ଅଛି,
ସେ ପଶୁର ସଂଖ୍ୟାର ଅର୍ଥକୁ ଠିକରୂପ ଦେଇପାରିବ।
ଏଥିପାଇଁ ବୁଦ୍ଧି ଆବଶ୍ୟକ କାରଣ ଏହିସଂଖ୍ୟା
ଗୋଟିଏ ମନୁଷ୍ୟର ସଂଖ୍ୟା। ତାହାର ସଂଖ୍ୟା ହେଉଛି
୬୬୬।

### ମୁକ୍ତିପ୍ରାପ୍ତ ଲୋକଙ୍କର ଗୀତ

୧୪ ତା'ପରେ ମୁଁ ମୋ ସମ୍ମୁଖରେ ମେଷଶାବକଙ୍କୁ
ଦେଖିଲି। ସେ ସିୟୋନ ପର୍ବତ ଉପରେ
ଠିଆହୋଇଥିଲେ। ତାହାଙ୍କ ସହିତ ଶହେଚଉରାଳିଶ
ହଜାରଲୋକ(୧,୪୪,୦୦୦) ଥିଲେ। ସେମାନଙ୍କ କପାଳରେ
ମେଷଶାବକ ଓ ତାହାଙ୍କ ପରମପିତାଙ୍କ ନାମ ଲେଖାଥିଲା।
୨ମୁଁ ସ୍ୱର୍ଗରୁ ମହାଜଳପ୍ରପାତ ଓ ମହାବଜ୍ରନାଦ ଭଳି ଏକ
ଏକ ସ୍ୱର ଶୁଣିଲି। ଏହା ବୀଣାବାଦକମାନେ ସେମାନଙ୍କର
ବୀଣାବାଦନ କରିବାପରି ମନେହେଲା। ୩ଏହି ଲୋକମାନେ
ସିଂହାସନ ସମ୍ମୁଖରେ ଚାରିଜଣ ଜୀବନ୍ତ ପଶୁଙ୍କ ସମ୍ମୁଖରେ
ଓ ପ୍ରାଚୀନମାନଙ୍କ ସମ୍ମୁଖରେ ଗୋଟିଏ ନୂତନ ଗୀତ
ଗାଇଲେ। ପୃଥିବୀରୁ କ୍ରୀୟ କରାଯାଇଥିବା କେବଳ ୧,୪୪,୦୦୦
ଜଣ ଲୋକମାନଙ୍କ ଛଡ଼ା କେହିହେଲେ ଏହି ଗୀତ ଶିଖି
ପାରିଲେ ନାହିଁ। ୪ଏହି ୧,୪୪,୦୦୦ ଜଣ ଲୋକମାନେ
ସ୍ତ୍ରୀମାନଙ୍କ ସହିତ କୌଣସି ବ୍ୟଭିଚାରପାପ କରିନାହାଁନ୍ତି।
ସେମାନେ ନିଜକୁ କୁମାରୀକନ୍ୟା ତୁଲ୍ୟ ପବିତ୍ର କରି
ରଖିଛନ୍ତି। ମେଷଶାବକ ଯେଉଁ ଯେଉଁ ସ୍ଥାନକୁ ଯାଆନ୍ତି,
ସେମାନେ ତାହାଙ୍କର ଅନୁସରଣ କରନ୍ତି। ଏହି ୧,୪୪,୦୦୦
ଜଣ ମନୁଷ୍ୟଜାତି ମଧ୍ୟରୁ ମୁକ୍ତି ପାଇଛନ୍ତି। ସେମାନେ
ପରମେଶ୍ୱର ଓ ମେଷଶାବକଙ୍କ ଉଦ୍ଦେଶ୍ୟରେ ପ୍ରଥମଫଳ
ସ୍ୱରୂପେ ଉତ୍ସର୍ଗୀକୃତ ହୋଇଛନ୍ତି। ୫ସେମାନେ କେବେ
ମିଥ୍ୟା କହନ୍ତି ନାହିଁ। ସେମାନେ ସର୍ବଦା ନିର୍ଦ୍ଦୋଷ।

### ତିନି ଜଣ ସ୍ୱର୍ଗଦୂତ

୬ତା'ପରେ ମୁଁ ଆଉ ଏକ ଦୂତଙ୍କୁ ଉଚ୍ଚ ଆକାଶରେ
ଉଡୁଥିବାର ଦେଖିଲି। ପୃଥିବୀର ସକଳ ବାସିନ୍ଦାମାନଙ୍କୁ,
ସମସ୍ତଦେଶ, ଜାତି, ଭାଷା ଓ ପ୍ରଜାତିର ଲୋକମାନଙ୍କୁ
ଉପଦେଶ ଦେବାପାଇଁ ସେହି ସ୍ୱର୍ଗଦୂତଙ୍କ ପାଖରେ ଏକ
ଅନନ୍ତକାଳୀନ ସୁସମାଚାର ଥିଲା। ୭ସେହି ସ୍ୱର୍ଗଦୂତ ଉଚ୍ଚ
ସ୍ୱରରେ କହିଲେ, "ପରମେଶ୍ୱରଙ୍କୁ ଭୟ କର ଓ ତାହାଙ୍କୁ
ମହିମା ପ୍ରଦାନ କର। ପରମେଶ୍ୱରଙ୍କ ଦ୍ୱାରା ଲୋକମାନଙ୍କୁ
ବିଚାର କରିବା ସମୟ ଉପସ୍ଥିତ। ପରମେଶ୍ୱରଙ୍କର ଉପାସନା
କର। ସେ ସ୍ୱର୍ଗ, ପୃଥିବୀ, ସମୁଦ୍ର ଓ ଜଳଉତ୍ସଗୁଡ଼ିକର
ସୃଷ୍ଟିକର୍ତ୍ତା।"

୮ତା'ପରେ ଦ୍ୱିତୀୟ ଦୂତ ଜଣକ, ପ୍ରଥମ ସ୍ୱର୍ଗଦୂତଙ୍କୁ
ଅନୁସରଣ କରି କହିଲେ, "ଯେଉଁ ମହାନଗରୀ ବାବିଲ
ସମସ୍ତ ଜାତିର ଲୋକଙ୍କୁ ଲୋଭ ଦେଖାଇ ଭ୍ରଷ୍ଟାଚାରର
କାମ ଓ ପରମେଶ୍ୱରଙ୍କ କ୍ରୋଧ ରୂପକ ସୁରା ପାନ
କରାଇଛି, ସେ ନଷ୍ଟ ହୋଇଯାଇଛି।"

୯ତା'ପରେ ତୃତୀୟଦୂତ ଜଣକ, ଅନ୍ୟ ଦୁଇଜଣ ଦୂତଙ୍କୁ
ଉଚ୍ଚ ସ୍ୱରରେ ଅନୁସରଣ କରି କହିଲେ, "ଯଦି କେହି
ଲୋକ ସେହି ପଶୁକୁ ଓ ତାହାର ପ୍ରତିମାକୁ ପୂଜା କରେ
ଓ ତା' ନିଜ କପାଳରେ ଓ ହାତରେ ତା'ର ଚିହ୍ନ ଧାରଣ
କରେ, ୧୦ସେହି ଲୋକ ପରମେଶ୍ୱରଙ୍କ କ୍ରୋଧର ସୁରା
ପାନ କରିବ। ଏହି ସୁରା ପରମେଶ୍ୱରଙ୍କ କ୍ରୋଧର ପାତ୍ରରେ
ଅମିଶ୍ରିତ ଭାବେ ଢ଼ଳା ହୋଇଛି। ସେ ପବିତ୍ର ଦୂତଗଣ ଓ
ମେଷଶାବକଙ୍କ ସମ୍ମୁଖରେ ଜ୍ୱଳନ୍ତ ଗନ୍ଧକରେ ଯନ୍ତ୍ରଣା
ପାଇବ। ୧୧ସେମାନଙ୍କ ଯନ୍ତ୍ରଣାର ଧୂଆଁ ସବୁବେଳ ପାଇଁ
ଉଠୁଥିବ। ସେମାନଙ୍କୁ ଯନ୍ତ୍ରଣାରୁ ଦିନରାତି କେବେହେଲେ
ଆରାମ ମିଳିବ ନାହିଁ, କାରଣ ସେମାନେ ସେହି ପଶୁକୁ ଓ
ତାହାର ପ୍ରତିମାକୁ ପୂଜା କରିଛନ୍ତି ଓ ତାହାର ନାମର ଚିହ୍ନ
ଧାରଣ କରିଛନ୍ତି। ୧୨ଏହାର ଅର୍ଥ ହେଉଛି ଯେ,
ପରମେଶ୍ୱରଙ୍କର ପବିତ୍ର ଲୋକମାନେ ଧୈର୍ଯ୍ୟବାନ୍ ହୁଅନ୍ତୁ।
ସେମାନେ ପରମେଶ୍ୱରଙ୍କର ଆଜ୍ଞା ମାନିବା ଓ ଯୀଶୁଙ୍କ
ପାଖରେ ବିଶ୍ୱାସ ରଖୁଥିବା ଉଚିତ।

୧୩ତା'ପରେ ମୁଁ ଗୋଟିଏ ସ୍ୱର ସ୍ୱର୍ଗରୁ ଶୁଣିଲି। ସେହି
ସ୍ୱର କହିଲା: "ଏହା ଲେଖିରଖ: ବର୍ତ୍ତମାନଠାରୁ ପ୍ରଭୁଙ୍କଠାରେ

ବିଶ୍ୱାସ ରଖି ଯେଉଁମାନେ ମୃତ୍ୟୁବରଣ କରନ୍ତି, ସେମାନେ
ଧନ୍ୟ।"
ଆତ୍ମା କହନ୍ତି, "ହଁ, ତାହା ସତ୍ୟ। ସେହି ଲୋକମାନେ
ସେମାନଙ୍କର କଠିନ ପରିଶ୍ରମରୁ ବିଶ୍ରାମ ନେବେ କାରଣ
ସେମାନେ କରିଥିବା କାମ ସେମାନଙ୍କ ସାଙ୍ଗରେ ଯିବ।"

### ପୃଥିବୀରୁ ଶସ୍ୟ କଟାହେବ

[୧୪]ତା'ପରେ ମୁଁ ଦେଖିଲି, ମୋ ସମ୍ମୁଖରେ ଗୋଟିଏ
ଧଳା ମେଘ ଥିଲା। ସେହି ମେଘ ଉପରେ ମନୁଷ୍ୟପୁତ୍ରଙ୍କ
ପରି ଜଣେ ବ୍ୟକ୍ତି ବସିଥିଲେ। ତାହାଙ୍କ ମୁଣ୍ଡରେ ଗୋଟିଏ
ସୁନାର ମୁକୁଟ ଓ ହାତରେ ଗୋଟିଏ ମୁନିଆ ଦାଆ ଥିଲା।
[୧୫]ତା'ପରେ ମନ୍ଦିରରୁ ଆଉ ଜଣେ ଦୂତ ବାହାରି ଆସିଲେ।
ସେ ମେଘ ଉପରେ ବସିଥିବା ବ୍ୟକ୍ତିଙ୍କୁ ଡାକି କହିଲେ,
"ଦାଆ ଲଗାଇ ଶସ୍ୟ ଅମଳ କର, କାରଣ ଶସ୍ୟ
ଅମଳର ସମୟ ହୋଇ ଗଲାଣି। ପୃଥିବୀର ଫଳ ପାଚିଗଲାଣି।"
[୧୬]ତେଣୁ ମେଘ ଉପରେ ଯିଏ ବସିଥିଲେ, ସେ ପୃଥିବୀର
ଶସ୍ୟରେ ଦାଆ ଲଗାଇଲେ। ଏହିପରି ପୃଥିବୀର ଶସ୍ୟ
କଟାଗଲା।
[୧୭]ତା'ପରେ ଆଉ ଜଣେ ସ୍ୱର୍ଗ ଦୂତ ସ୍ୱର୍ଗର ମନ୍ଦିର
ଭିତରୁ ଆସିଲେ। ତାହାଙ୍କର ମଧ୍ୟ ଗୋଟିଏ ଧାରୁଆ ଦାଆ
ଥିଲା। [୧୮]ତା'ପରେ ଆଉ ଜଣେ ସ୍ୱର୍ଗଦୂତ ବେଦୀରୁ
ଆସିଲେ। ସେହି ଦୂତଙ୍କର ଅଗ୍ନି ଉପରେ କ୍ଷମତା ଥିଲା।
ସେ ଧାରୁଆ ଦାଆ ଧରିଥିବା ଦୂତଙ୍କୁ ଉଚ୍ଚସ୍ୱରରେ ଡାକି
କହିଲେ, "ପୃଥିବୀର ଅଙ୍ଗୁର ପେନ୍ଥାଗୁଡ଼ିକ ଦାଆ ବ୍ୟବହାର
କରି କାଟି ପକାଅ, କାରଣ ଅଙ୍ଗୁର ପାଚିଗଲାଣି।"
[୧୯]ତା'ପରେ ସ୍ୱର୍ଗଦୂତ ପୃଥିବୀ ଉପରେ ନିଜର ଦାଆ
ବୁଲାଇଲେ ଓ ପୃଥିବୀରୁ ଅଙ୍ଗୁରଗୁଡ଼ିକୁ ଏକାଠି କଲେ।
ସେ ପରମେଶ୍ୱରଙ୍କର କ୍ରୋଧ ରୂପ ଅଙ୍ଗୁରପେଷା କୁଣ୍ଡରେ
ସେଗୁଡ଼ିକୁ ପକାଇ ଦେଲେ। [୨୦]ନଗର ବାହାରେ ଅଙ୍ଗୁର
ଫଳ ସବୁ ସେହି ଅଙ୍ଗୁରପେଷା କୁଣ୍ଡରେ ଚିପୁଡ଼ା ହେଲା।
ସେହି ଅଙ୍ଗୁରକୁଣ୍ଡରୁ ରକ୍ତ ବୋହିଲା। ଏହା ଘୋଡ଼ାମାନଙ୍କ
ଲଗାମ ପର୍ଯ୍ୟନ୍ତ ଉପରକୁ ଉଠି ୩୦୦ କିଲୋମିଟର
ପର୍ଯ୍ୟନ୍ତ ରକ୍ତ ସ୍ରୋତ ହୋଇ ବହିବାରେ ଲାଗିଲା।

### ଦୂତଙ୍କର ଶେଷ ମହାମାରୀ

**୧୫** ଏହାପରେ ମୁଁ ସ୍ୱର୍ଗରେ ଗୋଟିଏ ବଡ଼ ଓ
ଆଶ୍ଚର୍ଯ୍ୟ ଜନକ ଲକ୍ଷଣ ଦେଖିଲି। ସେଠାରେ
ସାତ ଜଣ ଦୂତ ସେମାନଙ୍କ ହାତରେ ସାତୋଟି ଶେଷ
ମହାମାରୀ ଧରିଥିଲେ। ଏହା ଘଟିଲା ପରେ ପରମେଶ୍ୱରଙ୍କର
କ୍ରୋଧର ସମାପ୍ତି ଘଟିବ।
[୨]ମୁଁ ମୋ ସାମନାରେ ଅଗ୍ନି ମିଶ୍ରିତ କାଚ ପରି ଏକ
ସମୁଦ୍ର ଦେଖିଲି। ଯେଉଁ ଲୋକମାନେ ସେହି ପଶୁ,
ତାହାର ପ୍ରତିମା, ଓ ତାହାର ନାମର ସଂଖ୍ୟା ଉପରେ
ଜୟଲାଭ କରିଥିଲେ, ସେମାନଙ୍କୁ ସେହି ସମୁଦ୍ର କୂଳରେ
ଠିଆ ହେବାର ଦେଖିଲି। ସେମାନଙ୍କ ହାତରେ ପରମେଶ୍ୱର
ଦେଇଥିବା ବୀଣା ଥିଲା। [୩]ସେମାନେ ପରମେଶ୍ୱରଙ୍କର
ସେବକ ମୋଶାଙ୍କର ଓ ମେଷଶାବକଙ୍କର ଗୀତ ବୋଲୁଥିଲେ:

"ହେ ସର୍ବଶକ୍ତିମାନ ପ୍ରଭୁ ପରମେଶ୍ୱର! ତୁମ୍ଭର
କାର୍ଯ୍ୟଗୁଡ଼ିକ ମହାନ ଓ ଆଶ୍ଚର୍ଯ୍ୟପୂର୍ଣ୍ଣ ହେ ଜାତି
ସମୂହର ରାଜା, ତୁମ୍ଭର ପଥଗୁଡ଼ିକ ନ୍ୟାୟସଙ୍ଗତ ଓ
ସତ୍ୟ।
୪ ହେ ପ୍ରଭୁ! କିଏ ତୁମ୍ଭକୁ ଭୟ ନ କରିବ?
ସମସ୍ତଙ୍କର ତୁମ୍ଭେ ପ୍ରଶଂସନୀୟ ଅଟ। କାରଣ
କେବଳ ତୁମ୍ଭେ ହିଁ ପବିତ୍ର; ସମସ୍ତ ଜାତିଗୁଡ଼ିକ ତୁମ୍ଭ
ପାଖକୁ ଆସିବେ ଓ ତୁମ୍ଭର ଉପାସନା କରିବେ।
କାରଣ ତୁମ୍ଭେ ହିଁ ନ୍ୟାୟବନ୍ତ

ଏହା ଜଗତେ ବିଦିତ।"
[୫]ଏହାପରେ ମୁଁ ସ୍ୱର୍ଗରେ ପରମେଶ୍ୱରଙ୍କ ଉପସ୍ଥିତିର
ପବିତ୍ର ସ୍ଥାନର ମନ୍ଦିର ଖୋଲାହେବାର ଦେଖିଲି। [୬]ସେହି
ମନ୍ଦିର ଭିତରୁ ସାତଜଣ ଦୂତ ସାତୋଟି ମହାମାରୀଗୁଡ଼ିକୁ
ଧରି ବାହାରି ଆସିଲେ। ସେମାନେ ଶୁଦ୍ଧ, ଉଜ୍ଜ୍ୱଳ ମସିନା,
ଶୁଭ୍ର ବସ୍ତ୍ର ପିନ୍ଧିଥିଲେ। ସେମାନଙ୍କ ବକ୍ଷରେ ସ୍ୱର୍ଣ୍ଣ ବନ୍ଧନୀ
ଥିଲା। [୭]ତା'ପରେ ଚାରି ଜୀବିତ ପ୍ରାଣୀମାନଙ୍କ ମଧ୍ୟରୁ ଜଣେ
ପ୍ରାଣୀ ସାତଦୂତଙ୍କୁ ସାତୋଟି ସ୍ୱର୍ଣ୍ଣ ପାତ୍ର ଦେଲେ। ସେହି
ପାତ୍ର ନିତ୍ୟଜୀବୀ ପରମେଶ୍ୱରଙ୍କର କ୍ରୋଧରେ ପରିପୂର୍ଣ୍ଣ
ଥିଲା। [୮]ସେହି ମନ୍ଦିର ପରମେଶ୍ୱରଙ୍କ ଗୌରବ ଓ କ୍ଷମତାର
ଧୂଆଁରେ ଭର୍ତ୍ତି ହୋଇଗଲା। ସାତଜଣ ଦୂତଙ୍କର ସାତୋଟି
ମହାମାରୀ ଶେଷ ନ ହେବା ପର୍ଯ୍ୟନ୍ତ କୌଣସି ଲୋକ
ମନ୍ଦିରରେ ପ୍ରବେଶ କରିପାରିଲେ ନାହିଁ।

### ପରମେଶ୍ୱରଙ୍କ କ୍ରୋଧରେ ସାତୋଟି ପାତ୍ର ପୂର୍ଣ୍ଣ

**୧୬** ତା'ପରେ ମୁଁ ମନ୍ଦିର ଭିତରୁ ଏକ ଉଚ୍ଚ ଧ୍ୱନି
ଶୁଣିଲି। ତାହା ସାତୋଟି ଦୂତଙ୍କୁ କହିଲା, "ଯାଅ,
ପରମେଶ୍ୱରଙ୍କ କ୍ରୋଧରେ ପୂର୍ଣ୍ଣ ହୋଇଥିବା ସାତୋଟି
ପାତ୍ରକୁ ପୃଥିବୀ ଉପରେ ଢ଼ାଳିଦିଅ।"
[୨]ତହୁଁ ପ୍ରଥମ ଦୂତ ମନ୍ଦିରରୁ ବାହାରି ପୃଥିବୀ ଉପରେ
ତାହାଙ୍କ ପାତ୍ରକୁ ଢ଼ାଳିଦେଲେ। ତା'ପରେ ଯେଉଁମାନେ
ସେହି ପଶୁର ଚିହ୍ନ ଧାରଣ କରିଥିଲେ ଓ ତା'ର ପ୍ରତିମାକୁ
ପୂଜା କରୁଥିଲେ, ସେମାନଙ୍କର ଶରୀରରେ ଅତି କଷ୍ଟଦାୟକ
ଓ ସାଂଘାତିକ ଧରଣର ଘା ବାହାରି ପଡ଼ିଲା।
[୩]ଦ୍ୱିତୀୟ ଦୂତ ତାହାଙ୍କ ପାତ୍ରକୁ ସମୁଦ୍ର ଉପରେ ଢ଼ାଳି
ଦେଲେ। ସେଥିରେ ସମୁଦ୍ର ଜଳ ମୃତ ଲୋକର ରକ୍ତ
ପରି ଲାଲ ହୋଇଗଲା। ସମୁଦ୍ରରେ ଥିବା ସମସ୍ତ ଜୀବନ୍ତ
ପ୍ରାଣୀ ମରିଗଲେ।
[୪]ତୃତୀୟ ସ୍ୱର୍ଗ ଦୂତ ତାହାଙ୍କ ପାତ୍ରକୁ ନଦୀ ଓ ଜଳ
ନିର୍ଝରଗୁଡ଼ିକ ଉପରେ ଢ଼ାଳିଲେ। ନଦୀ ଓ ଜଳ ନିର୍ଝର
ଗୁଡ଼ିକର ଜଳ ରକ୍ତ ହୋଇଗଲା। [୫]ତା'ପରେ ମୁଁ ଜଳ
ସମୂହର ଅଧିକାରୀ ଦୂତଙ୍କୁ ପରମେଶ୍ୱରଙ୍କୁ କହିବାର ଶୁଣିଲି:

"ହେ ପବିତ୍ର ପରମେଶ୍ୱର, ତୁମ୍ଭେ ହିଁ କେବଳ
ଅତୀତରେ ସର୍ବଦା ଥିଲ ଓ ବର୍ତ୍ତମାନ ଅଛ। ତୁମ୍ଭେ
ଏହି ବିଚାରକରିବା ଦ୍ୱାରା ନ୍ୟାୟ କରିଅଛ।
୬ ଲୋକମାନେ ଯେହେତୁ ତୁମ୍ଭର ପବିତ୍ରଲୋକ ଓ

ଭବିଷ୍ୟଦ୍‌ବକ୍ତାମାନଙ୍କର ରକ୍ତପାତ କରିଥିଲେ, ଏବେ
ତୁମ୍ଭେ ସେମାନଙ୍କୁ ରକ୍ତପାନ କରିବାକୁ ଦେଇଛ।
ସେମାନେ ଏହା ହିଁ ପାଇବାକୁ ଯୋଗ୍ୟ।”

୭ ମୁଁ ବେଦୀକୁ ଏହା କହିବାର ଶୁଣିଲି,

“ହେ ସର୍ବଶକ୍ତିମାନ ପ୍ରଭୁ ପରମେଶ୍ୱର ହିଁ, ତୁମ୍ଭର
ବିଚାରଗୁଡ଼ିକ ସତ୍ୟ ଓ ନ୍ୟାୟସଙ୍ଗତ।”

୮ ଏହାପରେ ଚତୁର୍ଥ ଦୂତ ତାହାଙ୍କ ପାତ୍ର ସୂର୍ଯ୍ୟଙ୍କ
ଉପରେ ଢ଼ାଳିଲେ। ସେଥିରେ ସୂର୍ଯ୍ୟଙ୍କୁ, ମନୁଷ୍ୟମାନଙ୍କୁ
ଅଗ୍ନିରେ ପୋଡ଼ିଦେବାର କ୍ଷମତା ଦିଆଗଲା। ୯ ଲୋକମାନେ
ପ୍ରଚଣ୍ଡ ଉତ୍ତାପରେ ଜଳି ପୋଡ଼ିଗଲେ। ସେମାନେ
ପରମେଶ୍ୱରଙ୍କ ନାମକୁ ଅଭିଶାପ ଦେଲେ। କାରଣ ତାହାଙ୍କର
କେବଳ ଏହି ସମସ୍ତ ମହାମାରୀ ଉପରେ ନିୟନ୍ତ୍ରଣର
ଅଧିକାର ଥିଲା। ସେମାନେ ସେମାନଙ୍କର ହୃଦୟ ଓ
ଜୀବନ ପରିବର୍ତ୍ତନ କଲେ ନାହିଁ କି, ପରମେଶ୍ୱରଙ୍କୁ ମହିମା
ଦେଲେ ନାହିଁ।
୧୦ ପଞ୍ଚମ ଦୂତ ତାହାଙ୍କ ପାତ୍ର ସେହି ପଶୁର ସିଂହାସନ
ଉପରେ ଢ଼ାଳିଲେ। ଏହାଦ୍ୱାରା ପଶୁର ରାଜ୍ୟରେ ଅନ୍ଧକାର
ଘୋଟିଗଲା। ଲୋକମାନେ ଯନ୍ତ୍ରଣାରେ ଜିଭ କାମୁଡ଼ିଲେ।
୧୧ ସେମାନେ ତାହାଙ୍କ ଯନ୍ତ୍ରଣା ଓ ଘା ସକାଶେ ସ୍ୱର୍ଗରେ
ଥିବା ପରମେଶ୍ୱରଙ୍କର ନିନ୍ଦା କଲେ। କିନ୍ତୁ ସେମାନେ
ତାହାଙ୍କର ହୃଦୟ ପରିବର୍ତ୍ତନ କଲେ ନାହିଁ ଓ ନିଜର ମନ୍ଦ
କାମ ପାଇଁ ଅନୁତାପ କଲେ ନାହିଁ।
୧୨ ଷଷ୍ଠ ଦୂତ ତାହାଙ୍କ ପାତ୍ର ଫରାତ ମହାନଦୀର
ଉପରେ ଢ଼ାଳିଲେ। ଏହାଦ୍ୱାରା ନଦୀ ଜଳ ଶୁଖିଗଲା ଓ
ପୂର୍ବ ଦିଗରୁ ଆସିବାକୁ ରାଜାମାନଙ୍କ ପାଇଁ ବାଟ ତିଆରି
କଲା। ୧୩ ତା'ପରେ ମୁଁ ତିନୋଟି ଅଶୁଚି ଆତ୍ମାଙ୍କୁ ଦେଖିଲି।
ସେମାନେ ବେଙ୍ଗ ପରି ଦେଖାଯାଉଥିଲେ। ସେମାନେ ସେହି
ଭୟଙ୍କର ସର୍ପ ମୁଖରୁ, ପଶୁ ମୁଖରୁ ଓ ଭଣ୍ଡଭବିଷ୍ୟଦ୍‌ବକ୍ତା
ମୁଖରୁ ବାହାରି ଆସିଲେ। ୧୪ ସେମାନେ ଭୂତର ଆତ୍ମା ଓ
ସେମାନଙ୍କର ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରିବାର କ୍ଷମତା
ଥିଲା। ସେମାନେ ସର୍ବଶକ୍ତିମାନ ପରମେଶ୍ୱରଙ୍କ ମହାଦିନର
ଯୁଦ୍ଧ ପାଇଁ ପୃଥିବୀର ସବୁ ରାଜାମାନଙ୍କୁ ଏକତ୍ର କରିବା
ନିମନ୍ତେ ସେମାନଙ୍କ ପାଖକୁ ଯାଆନ୍ତି।
୧୫ “ଦେଖ! ମୁଁ ଗୋଟିଏ ଚୋର ଭଳି ଆସିବି। ଯେ
ମୋ ଅପେକ୍ଷାରେ ଚାହିଁ ରହେ ଓ ନିଜର ବସ୍ତ୍ର ପ୍ରସ୍ତୁତ
କରି ରଖିଥାଏ, ସେହି ଲୋକ ସୁଖୀ। ତେବେ ତାହାକୁ
ଉଲଗ୍ନ ହୋଇ ଚାଲିବାକୁ ପଡ଼ିବ ନାହିଁ ଓ ଲୋକମାନେ
ତାହାର ଲଜ୍ଜା ଦେଖିବେ ନାହିଁ।
୧୬ ସେହି ଭୂତାତ୍ମାମାନେ ରାଜାମାନଙ୍କୁ ଏବ୍ରୀ ଭାଷାରେ
କୁହାଯାଉଥିବା 'ହର୍ମିଗିଦୋନ୍' ନାମକ ସ୍ଥାନରେ ଏକାଠି
କଲେ।
୧୭ ତା'ପରେ ସପ୍ତମ ଦୂତ ତାହାଙ୍କ ପାତ୍ରକୁ ବାୟୁରେ
ଢ଼ାଳିଲେ ଓ ମନ୍ଦିର ଭିତରୁ ସିଂହାସନଠାରୁ ଗୋଟିଏ ଉଚ୍ଚ
ସ୍ୱର ଆସିଲା। ସେହି ସ୍ୱର କହିଲା, “ଏହା ସମାପ୍ତ
ହେଲା।” ୧୮ ତା'ପରେ ସେଠାରେ ବିଜୁଳି ଚମକିଲା, କୋଳାହଳ,
ବଜ୍ରନାଦ ଓ ଏକ ଭୟଙ୍କର ଭୂମିକମ୍ପ ହେଲା। ଏଭଳି
ଭୟଙ୍କର ଭୂମିକମ୍ପ ମନୁଷ୍ୟ ଇତିହାସରେ କେବେ ହୋଇ
ନ ଥିଲା। ୧୯ ମହାନଗରୀ ତିନି ଭାଗରେ ବିଭକ୍ତ ହେଲା।
ଦେଶଗୁଡ଼ିକର ନଗରସବୁ ନଷ୍ଟ ହୋଇଗଲା। ପରମେଶ୍ୱର
ମହାନଗରୀ ବାବିଲୋନକୁ ଦଣ୍ଡ ଦେବାପାଇଁ ଭୁଲିଲେ
ନାହିଁ। ସେ ତାହାକୁ ତାହାଙ୍କର ପ୍ରଚଣ୍ଡ କ୍ରୋଧରୂପ
ମଦିରାପାତ୍ରରୁ ପାନ କରାଇଲେ। ୨୦ ପ୍ରତ୍ୟେକ ଦ୍ୱୀପ ଉଭେଇ
ଗଲା ଓ ସେଠାରେ ଗୋଟିଏ ହେଲେ ପର୍ବତ ରହିଲା
ନାହିଁ। ୨୧ ଆକାଶରୁ ଲୋକମାନଙ୍କ ଉପରେ ପ୍ରକାଣ୍ଡ
କୁଆପଥରମାନ ପଡ଼ିଲା। ପ୍ରତ୍ୟେକ କୁଆପଥରର ଓଜନ
ପ୍ରାୟ ୫୦ କିଲୋଗ୍ରାମ ଥିଲା। ଲୋକମାନେ ସେହି
କୁଆପଥର ମହାମାରୀ(ବିପତ୍ତି) ପାଇଁ ପରମେଶ୍ୱରଙ୍କୁ ନିନ୍ଦା
କଲେ। ଏହି କ୍ଲେଶ ଅତି ଭୟାନକ ଥିଲା।

## ପଶୁ ଉପରେ ନାରୀ

୧୭ ସାତଦୂତଙ୍କ ମଧ୍ୟରୁ ଯେଉଁମାନେ ସାତୋଟି ପାତ୍ର
ଧାରଣ କରିଥିଲେ, ସେମାନଙ୍କ ମଧ୍ୟରୁ ଜଣେ
ମୋ ନିକଟକୁ ଆସି ମୋତେ କହିଲେ, “ଆସ, ପ୍ରସିଦ୍ଧ
ବେଶ୍ୟାକୁ କ'ଣ ଦଣ୍ଡ ଦିଆଯିବ, ତାହା ମୁଁ ତୁମ୍ଭକୁ
ଦେଖାଇବି। ସେ ବହୁତ ଜଳରାଶି ଉପରେ ବସିଛି।
୨ ପୃଥିବୀର ରାଜାମାନେ ତା'ସହିତ ଯୌନପାପ (ବ୍ୟଭିଚାର)
କରିଛନ୍ତି। ପୃଥିବୀର ଲୋକମାନେ ତା'ର ବ୍ୟଭିଚାର ରୂପ
ସୁରାରେ ମାତାଲ୍ ହୋଇଛନ୍ତି।”
୩ ତା'ପରେ ଦୂତ ମୋତେ ଆତ୍ମା ଦ୍ୱାରା ମରୁଭୂମିକୁ ବହି
ନେଇଗଲେ। ସେଠାରେ ମୁଁ ଗୋଟିଏ ନାରୀକୁ ନାଲି
ରଙ୍ଗର ପଶୁ ଉପରେ ବସିଥିବାର ଦେଖିଲି। ସେ ପଶୁର
ସର୍ବାଙ୍ଗ ଶରୀର ଉପରେ ଈଶ୍ୱରଙ୍କ ନିନ୍ଦା କରୁଥିବା
ନାମସବୁ ଲେଖା ଯାଇଥିଲା। ସେହି ପଶୁର ସାତୋଟି
ମସ୍ତକ ଓ ଦଶଟି ଶିଙ୍ଗ ଥିଲା। ୪ ସେହି ସ୍ତ୍ରୀ ଲୋକଟି
ବାଇଗଣି ଓ ନାଲି ରଙ୍ଗର ବସ୍ତ୍ର ପିନ୍ଧିଥିଲା। ସେ ପିନ୍ଧିଥିବା
ସୁନା, ଅଳଙ୍କାର ଓ ମଣିମୁକ୍ତା ଯୋଗୁ ଝଲକୁଥିଲା। ତା'
ହାତରେ ଗୋଟିଏ ସୁବର୍ଣ୍ଣ ପାତ୍ର ଥିଲା। ସେହି ପାତ୍ରଟି
ଘୃଣ୍ୟ ବିଷୟଗୁଡ଼ିକରେ ଓ ତା'ର ନିଜର ଯୌନଗତପାପର
ଆବର୍ଜନାରେ ପୂର୍ଣ୍ଣ ଥିଲା। ୫ ତା'ର କପାଳରେ ଏକ ଗୁପ୍ତ
ଅର୍ଥ ଥିବା ଉପାଧି ଲେଖା ହେଲା:

**ମହାନ୍ ବାବିଲ, ବେଶ୍ୟାମାନଙ୍କର
ଓ ପୃଥିବୀର ସବୁ ଘୃଣ୍ୟ
ବିଷୟସକଳର ମାତା।**

୬ ମୁଁ ସେହି ସ୍ତ୍ରୀ ଲୋକକୁ ପରମେଶ୍ୱରଙ୍କର ପବିତ୍ର
ଲୋକଙ୍କର ରକ୍ତ ଓ ଯୀଶୁଙ୍କ ବିଷୟରେ ସେମାନଙ୍କର
ସାକ୍ଷ୍ୟ ଦେଇଥିବା ଲୋକମାନଙ୍କର ରକ୍ତ ପିଇଥିବାର ଦେଖିଲି।
ମୁଁ ସେହି ସ୍ତ୍ରୀ ଲୋକକୁ ଦେଖି ବହୁତ ଆଶ୍ଚର୍ଯ୍ୟ
ହୋଇଗଲି। ୭ ତା'ପରେ ସେ ଦୂତ ମୋତେ କହିଲେ,

"ତୁମ୍ଭେ କାହିଁକି ଆଶ୍ଚର୍ଯ୍ୟ ହେଉଛ? ମୁଁ ତୁମ୍ଭକୁ ଏହି
ସ୍ତ୍ରୀଲୋକର ରହସ୍ୟ କହିବି ଓ ସପ୍ତ ମସ୍ତକ ଓ ଦଶଶିଙ୍ଗ
ବିଶିଷ୍ଟ ତା'ର ବାହନ ପଶୁ ବିଷୟରେ ମଧ୍ୟ କହିବି।
୮ତୁମ୍ଭେ ଯେଉଁ ପଶୁକୁ ଦେଖିଲ, ସେ ଆଗରୁ ଥିଲା, କିନ୍ତୁ
ବର୍ତ୍ତମାନ ସେ ଜୀବିତ ନାହିଁ। କିନ୍ତୁ ସେ ବଞ୍ଚିବ ଏବଂ
ଗଭୀର ଗହ୍ୱରରୁ ଉଠି ଆସି ଧ୍ୱଂସ ପାଇବ। ଜଗତ
ଆରମ୍ଭରୁ ଯେଉଁ ଲୋକମାନଙ୍କର ନାମ ଜୀବନ ପୁସ୍ତକରେ
ଆଦୌ ଲେଖା ହୋଇନାହିଁ, ସେହି ଲୋକମାନେ ତାହାକୁ
ଦେଖି ଆଶ୍ଚର୍ଯ୍ୟ ହେବେ, କାରଣ ସେ ଅତୀତରେ ଥିଲା,
ବର୍ତ୍ତମାନ ନାହିଁ କିନ୍ତୁ ପୁଣି ବଞ୍ଚିବ।
୯ଏହାକୁ ବୁଝିବା ପାଇଁ ଜ୍ଞାନଯୁକ୍ତ ମନ ଆବଶ୍ୟକ।
ଏହି ପଶୁର ସାତୋଟିମସ୍ତକ ହେଉଛି ସାତୋଟିପର୍ବତ, ଯାହା
ଉପରେ ସେ ବସେ। ତାହା ସାତଜଣ ରାଜାଙ୍କୁ ମଧ୍ୟ
ବୁଝାଏ। ୧୦ଏହା ଭିତରୁ ପାଞ୍ଚ ଜଣ ରାଜା ମରିସାରଲେଣି।
ଜଣେ ରାଜା ବର୍ତ୍ତମାନ ବଞ୍ଚିଛନ୍ତି ଏବଂ ଶେଷ ରାଜା
ଆସୁଛନ୍ତି। ସେ ଯେତେବେଳେ ଆସିବେ, ସେ
ଅଳ୍ପ ସମୟ ପାଇଁ ରହିବେ। ୧୧ଯେଉଁ ପଶୁ କେବେ
ଜୀବିତ ଥିଲା, ବର୍ତ୍ତମାନ ନାହିଁ, ସେ ଅଷ୍ଟମ ରାଜା। ସେ
ପ୍ରଥମ ସାତ ଜଣ ରାଜାଙ୍କ ମଧ୍ୟରୁ ଜଣେ। ସେ ମଧ୍ୟ ଧ୍ୱଂସ
ପାଇବ।
୧୨ତୁମ୍ଭେ ଯେଉଁ ଦଶଶିଙ୍ଗ ଦେଖିଲ, ତାହା ଦଶଜଣ
ରାଜା। ଏହି ଦଶଜଣ ରାଜା ଏ ପର୍ଯ୍ୟନ୍ତ ରାଜା ଭଳି ରାଜ୍ୟ
ପାଇ ନାହାଁନ୍ତି। କିନ୍ତୁ ସେମାନେ ସେହି ପଶୁ ସହିତ
ଗୋଟିଏ ଘଣ୍ଟା ପର୍ଯ୍ୟନ୍ତ ଶାସନ କରିବା ପାଇଁ କ୍ଷମତା
ପାଇବେ। ୧୩ଏହି ଦଶଜଣ ରାଜାଙ୍କର ଉଦ୍ଦେଶ୍ୟ ସମାନ।
ସେମାନେ ସେମାନଙ୍କର କ୍ଷମତା ଓ ଅଧିକାର ସେହି ପଶୁକୁ
ଦେବେ। ୧୪ସେମାନେ ମେଷଶାବକଙ୍କ ବିରୁଦ୍ଧରେ ଯୁଦ୍ଧ
କରିବେ। କିନ୍ତୁ ମେଷଶାବକ ସେମାନଙ୍କୁ ପରାସ୍ତ କରିବେ।
କାରଣ ସେ ପ୍ରଭୁମାନଙ୍କର ପ୍ରଭୁ ଓ ରାଜାମାନଙ୍କର ରାଜା।
ସେ ଡାକିଥିବା ଲୋକମାନଙ୍କୁ ଅର୍ଥାତ୍ ତାହାଙ୍କର ମନୋନୀତ
ଓ ବିଶ୍ୱସ୍ତ ଅନୁଗାମୀମାନଙ୍କ ସହିତ ମିଶି ସେମାନଙ୍କୁ ପରାସ୍ତ
କରିବେ।"
୧୫ତା'ପରେ ସେ ସ୍ୱର୍ଗଦୂତ ମୋତେ କହିଲେ, "ତୁମ୍ଭେ
ଯେଉଁ ଜଳରାଶୀ ଉପରେ ବେଶ୍ୟା ବସିଥିବାର ଦେଖିଲ,
ସେହି ଜଳରାଶୀ ହେଉଛି ବିଭିନ୍ନ ଲୋକ, ବିଭିନ୍ନ ଦେଶ
ଓ ଭାଷାମାନ। ୧୬ତୁମ୍ଭେ ଯେଉଁ ପଶୁ ଓ ଦଶ ଶିଙ୍ଗ
ଦେଖିଲ, ସେମାନେ ସେହି ବେଶ୍ୟାକୁ ଘୃଣା କରିବେ।
ସେମାନେ ତା'ର ସବୁ ନେଇଯିବେ ଓ ତାହାକୁ ଉଲଗ୍ନ
କରି ଛାଡ଼ିଦେବେ। ସେମାନେ ତାହାର ଶରୀରର ମାଂସ
ଖାଇବେ ଓ ତାହାକୁ ଅଗ୍ନିରେ ପୋଡ଼ିଦେବେ। ୧୭ସେମାନେ
ତାହାଙ୍କର ଶାସନ କ୍ଷମତା ସେହି ପଶୁକୁ ଦେବା ପାଇଁ
ଯେପରି ରାଜି ହୁଅନ୍ତି, ଏଥିନିମନ୍ତେ ପରମେଶ୍ୱର ସେମାନଙ୍କ
ମନରେ ଏକ ଇଚ୍ଛା ଦେବେ। ଏହାଦ୍ୱାରା ପରମେଶ୍ୱର
କହିଥିବା ବାକ୍ୟ ସଫଳ ହେବା ପର୍ଯ୍ୟନ୍ତ ସେମାନେ ଶାସନ
କରିବେ। ୧୮ତୁମ୍ଭେ ଯେଉଁ ସ୍ତ୍ରୀକୁ ଦେଖିଲ, ସେ ପୃଥିବୀର
ରାଜାମାନଙ୍କ ଉପରେ ରାଜତ୍ୱ କରୁଥିବା, ସେହି ମହାନଗରୀକୁ
ବୁଝାଏ।

## ବାବିଲର ଧ୍ୱଂସ

୧୮ ତା'ପରେ ମୁଁ ସ୍ୱର୍ଗରୁ ଆଉ ଜଣେ ଦୂତଙ୍କୁ
ଓହ୍ଲାଇବାର ଦେଖିଲି। ସେହି ଦୂତଙ୍କର ବହୁତ
କ୍ଷମତା ଥିଲା। ତାହାଙ୍କର ମହିମା ପୃଥିବୀରେ ପ୍ରକାଶିତ
ହେଲା। ୨ସେ ଦୂତ ବହୁତ ଉଚ୍ଚ ସ୍ୱରରେ ପାଟିକରି
କହିଲେ:

"ତା'ର ପତନ ହେଲା। ମହାନଗରୀ ବାବିଲର
ପତନ ହୋଇଗଲା। ତାହା ଭୂତମାନଙ୍କର ବାସସ୍ଥଳୀ
ହେଲା। ତାହା ପ୍ରତ୍ୟେକ ଭୂତାତ୍ମା, ପ୍ରତ୍ୟେକ ପ୍ରକାରର
ଶୁଚି ପକ୍ଷୀ ଏବଂ ପ୍ରତ୍ୟେକ ଅଶୁଚି ତଥା ଘୃଣ୍ୟ
ପଶୁଙ୍କ ଆଶ୍ରୟସ୍ଥଳ ହେଲା।
୩ ପୃଥିବୀର ସବୁ ଲୋକମାନେ ତା'ର ବ୍ୟଭିଚାରର
ପାପର ଓ ପରମେଶ୍ୱରଙ୍କର କ୍ରୋଧର ସୁରାପାନ
କରିଛନ୍ତି। ପୃଥିବୀର ରାଜାମାନେ ତା'ସହିତ ବ୍ୟଭିଚାରର
ପାପ କାର୍ଯ୍ୟ କରିଛନ୍ତି। ସଂସାରର ବ୍ୟବସାୟୀମାନେ
ତାହାର ଧନରେ ଧନବାନ୍ ହୋଇଛନ୍ତି।"

୪ତା'ପରେ ମୁଁ ସ୍ୱର୍ଗରୁ ଆଉ ଏକ ସ୍ୱର ଶୁଣିଲି

"ହେ ମୋର ଲୋକମାନେ, ତୁମ୍ଭେମାନେ ସେହି
ନଗରରୁ ବାହାରି ଆସ, ତୁମ୍ଭେମାନେ ବାହାରି
ଆସିଲେ, ତା'ର ପାପରେ ଭାଗୀଦାର ହେବନାହିଁ ଓ
ତାହାର କ୍ଳେଶର ସହଭାଗୀ ହେବନାହିଁ।
୫ ସ୍ୱର୍ଗ ଯେତେ ଉଚ୍ଚ, ତାହାର ପାପକାର୍ଯ୍ୟ ସେତିକି
ଉଚ୍ଚ ହେଲାଣି। ପରମେଶ୍ୱର ତା'ର ଭୁଲ କାମଗୁଡ଼ିକ
ଭୁଲି ନାହାଁନ୍ତି। ସେ ତା'ର କୁକର୍ମ ସବୁ
ମନେପକାଇଲାଣି।
୬ ସେ ନଗର ଅନ୍ୟମାନଙ୍କର ଯେପରି କ୍ଷତି କରିଛି,
ତାହାର ସେହି ପ୍ରକାର କ୍ଷତି ହେବ। ତା'ର କୁକର୍ମ
ପାଇଁ ତାହାକୁ ଦୁଇ ଗୁଣ ଅଧିକ ପ୍ରତିଫଳ ଦିଆଯିବ।
ସେ ନଗର ଅନ୍ୟମାନଙ୍କୁ ଯେପରି ସୁରା ଦେଇଛି,
ତା'ନିମନ୍ତେ ତା' ଅପେକ୍ଷା ଦୁଇଗୁଣ ଅଧିକନିଶାଯୁକ୍ତ
ସୁରା ପ୍ରସ୍ତୁତ କରାଯିବ ଓ ତାହାକୁ ପାନ କରିବାକୁ
ଦିଆଯିବ।
୭ ସେ ଯେପରି ନିଜେ ଭୋଗବିଳାସ ଓ ଆମୋଦ
ପ୍ରମୋଦରେ ଜୀବନ ବିତାଇଛି, ସେହିପରି ତାହାକୁ
ଅଧିକ ପରିମାଣରେ ଯନ୍ତ୍ରଣା ଓ ବ୍ୟଥା ଭୋଗିବାକୁ
ଦିଆଯିବ। ସେ ନିଜେ ଗର୍ବରେ କହେ, "ମୁଁ ରାଣୀ
ପରି ସିଂହାସନରେ ବସିଛି। ମୁଁ ବିଧବା ନୁହେଁ, ମୁଁ
କେବେ ଶୋକ କରିବ ନାହିଁ।"
୮ ସେଥିପାଇଁ ଗୋଟିଏ ଦିନ ଭିତରେ ଏହି କ୍ଳେଶ
ତାକୁ ଆକ୍ରମଣ କରିବ: ମୃତ୍ୟୁ, ଦୁଃଖଦାୟକ କ୍ରନ୍ଦନ,
ମହା କ୍ଷୁଧା। ସେ ଅଗ୍ନିରେ ଜଳିଯିବ, କାରଣ ପ୍ରଭୁ
ପରମେଶ୍ୱର ତା'ର ବିଚାର କରିଛନ୍ତି ଏବଂ ସେ
ସର୍ବଶକ୍ତିମାନ ଅଟନ୍ତି।"

୯ଜଗତର ଯେଉଁ ରାଜାମାନେ ତା' ସହିତ ବ୍ୟଭିଚାରର
ପାପ କାର୍ଯ୍ୟରେ ଲିପ୍ତ ଥିଲେ ଓ ତା'ଧନରେ ଭାଗୀଦାର

ଥିଲେ, ସେମାନେ ଯେତେବେଳେ ତାହାର ଦହନର ଧୂଆଁ
ଦେଖିବେ, ସେମାନେ ତା'ର ମୃତ୍ୟୁ କାରଣରୁ କାନ୍ଦିବେ ଓ
ଦୁଃଖିତ ହେବେ। ୧୦ସେହି ରାଜାମାନେ ଯେତେବେଳେ
ତାହାର ଯନ୍ତ୍ରଣା ଦେଖିବେ, ସେତେବେଳେ ସେମାନେ ଭୟ
କରିବେ ଏବଂ ତା'ଠାରୁ ବହୁତ ଦୂରରେ ରହିବେ।
ସେମାନେ କହିବେ:

"ହେ ମହାନଗରୀ, ହେ ଶକ୍ତିଶାଳୀ ନଗରୀ ବାବିଲ!
ଏହା ଭୟାନକ! ଏହା ଭୟାନକ! ଘଣ୍ଟାକ ମଧ୍ୟରେ
ତୁମ୍ଭ ପାଇଁ ଦଣ୍ଡ ଆସିଲା।"

୧୧ଏହି ଜଗତର ବ୍ୟବସାୟୀମାନେ ତା'ପାଇଁ ବିଳାପ ଓ
ଦୁଃଖ କରିବେ। ସେମାନେ ଦୁଃଖ ଅନୁଭବ କରିବେ,
କାରଣ ସେମାନଙ୍କର ବାଣିଜ୍ୟଦ୍ରବ୍ୟ ଏହାପରେ କେହି
କିଣିବେ ନାହିଁ। ୧୨ସେମାନେ ସୁନା, ରୂପା, ମୂଲ୍ୟବାନ
ପଥର, ମୁକ୍ତା, ସୂକ୍ଷ୍ମ ରେଶମବସ୍ତ୍ର, ବାଇଗଣି ରଙ୍ଗର ବସ୍ତ୍ର;
ରେଶମୀ ଓ ଲାଲ ବସ୍ତ୍ର; ପ୍ରତ୍ୟେକ ପ୍ରକାରର ଚନ୍ଦନ ଆଦି
ସୁବାସିତ କାଠଜିନିଷ; ହାତୀ ଦାନ୍ତର ପଦାର୍ଥମାନ, ମୂଲ୍ୟବାନ୍
କାଠ, ପିତ୍ତଳ, ଲୌହ ଓ ମର୍ମର ପଥରରେ ନିର୍ମିତ ଶିଳ୍ପ
ଦ୍ରବ୍ୟ; ୧୩ଦାରୁଚିନି ପ୍ରଭୃତି ସୁଗନ୍ଧି ମସଲା; ଅତର, ଧୂପ,
ମଲମ, ସୁଗନ୍ଧି ଧୂପ, ମଦ୍ୟ, ଜୀତତୈଳ, ମଇଦା, ଗହମ,
ଗୃହପାଳିତ ତୃଣଭୋଜୀ ପଶୁ, ମେଷ, ଘୋଡ଼ା, ରଥ, ଏବଂ
ମନୁଷ୍ୟମାନଙ୍କର ଶରୀର ଓ ପ୍ରାଣ ସବୁ ବିକ୍ରି କରନ୍ତି।
ତେଣୁ ବ୍ୟବସାୟୀମାନେ କାନ୍ଦିବେ ଓ କହିବେ:

୧୪ "ହେ ବାବିଲ! ତୁମ୍ଭେ ଯେଉଁ ଉତ୍ତମ ଜିନିଷ
ଚାହୁଁଥିଲ, ସେସବୁ ତୁମ୍ଭଠାରୁ ଚାଲିଯାଇଛି। ତୁମ୍ଭର
ସବୁ ସୌଖିନ ଓ ମନୋହାରୀ ଦ୍ରବ୍ୟମାନ ତୁମ୍ଭଠାରୁ
ଉଭେଇ ଯାଇଛି। ତୁମ୍ଭେ ସେସବୁ ଆଉ କେବେ
ପାଇବ ନାହିଁ।"

୧୫ବ୍ୟବସାୟୀମାନେ ତା'ର ଦୁଃଖ ଯନ୍ତ୍ରଣା ଦେଖି ଭୟ
କରିବେ ଓ ତା'ଠାରୁ ବହୁ ଦୂରରେ ଠିଆ ହେବେ। ସେହି
ଲୋକମାନେ ତାହାକୁ ସେହି ମୂଲ୍ୟବାନ୍ ଜିନିଷ ବିକ୍ରିକରି
ଧନୀ ହୋଇଥିଲେ। ତେଣୁ ସେମାନେ କାନ୍ଦିବେ ଓ ଦୁଃଖ
କରିବେ। ୧୬ସେମାନେ କହିବେ:

"ହେ ମହାନଗରୀ! ଭୟାନକ! ତୁମ୍ଭ ପାଇଁ ଏହା
କେତେ ଭୟାନକ: ଯେଉଁ ମହାନଗରୀ ସୂକ୍ଷ୍ମରେଶମ,
ବାଇଗଣି ଓ ଘନ ଲାଲ ବର୍ଣ୍ଣର ବସ୍ତ୍ର ପିନ୍ଧିଥିଲା,
ସୁନା, ମଣି ଓ ମୁକ୍ତାରେ ଝଟକୁଥିଲା,
୧୭ ଘଣ୍ଟାକ ମଧ୍ୟରେ ଏହି ସମସ୍ତ ବିଶାଳ ସମ୍ପତ୍ତି ନଷ୍ଟ
କରିଦିଆଗଲା।"

ସମସ୍ତ ସମୁଦ୍ର କପ୍ତାନ, ସମୁଦ୍ର ଯାତ୍ରୀ, ନାବିକ,
ନୌବାଣିଜ୍ୟ କରୁଥିବା ସମସ୍ତ ଲୋକ ବାବିଲଠାରୁ ଦୂରରେ
ଠିଆ ହେଲେ। ୧୮ସେମାନେ ତା'ର ଜଳୁଥିବାର ଧୂଆଁ
ଦେଖିଲେ। ସେମାନେ ଉଚ୍ଚ ସ୍ୱରରେ କହିଲେ, "ଏହି
ମହାନଗରୀ ପରି ଅନ୍ୟ କୌଣସି ନଗରୀ ନାହିଁ।"
୧୯ସେମାନେ ନିଜନିଜ ମସ୍ତକ ଉପରେ ଧୂଳି ଫିଙ୍ଗିଲେ।
ସେମାନେ କାନ୍ଦିଲେ ଓ ବହୁତ ଦୁଃଖିତ ହେଲେ। ସେମାନେ
ଉଚ୍ଚ ସ୍ୱରରେ କହିଲେ:

"ହେ ମହାନଗରୀ! ଭୟାନକ! ତୁମ୍ଭ ପାଇଁ ଏହା
କେତେ ଭୟାନକ। ଏହି ମହାନଗରୀର ଧନରେ
ସମୁଦ୍ରରେ ବାଣିଜ୍ୟ, ବ୍ୟବସାୟ କରୁଥିବା ଲୋକମାନେ
ଧନୀ ହୋଇଥିଲେ। କିନ୍ତୁ ଘଣ୍ଟାକ ମଧ୍ୟରେ ସେ
ଧ୍ୱଂସ ହୋଇଗଲା।
୨୦ ହେ ସ୍ୱର୍ଗ! ହେ ପରମେଶ୍ୱରଙ୍କର ପବିତ୍ର ଲୋକମାନେ,
ଭବିଷ୍ୟଦ୍‌ବକ୍ତାଗଣ ଏବଂ ପ୍ରେରିତଗଣ! ମହାନଗରୀର
ଧ୍ୱଂସରେ ଆନନ୍ଦ ଉଲ୍ଲାସ କର। ସେ ତୁମ୍ଭକୁ ଯେଉଁ
କଷ୍ଟ ଦେଇଛି, ସେଥିପାଇଁ ପରମେଶ୍ୱର ତାହାକୁ
ଦଣ୍ଡ ଦେଇଛନ୍ତି।

୨୧ତା'ପରେ ଜଣେ ଶକ୍ତିଶାଳୀ ଦୂତ ଗୋଟିଏ ପ୍ରକାଣ୍ଡ
ପଥର ଉଠାଇଲେ। ଏହି ପଥରଟି ଗୋଟିଏ ଚକିପଥର
ପରି ବହୁତ ବଡ଼। ସେହି ଦୂତ ଜଣକ ପଥରଟିକୁ ସମୁଦ୍ର
ଭିତରକୁ ଫିଙ୍ଗି ଦେଲେ ଏବଂ କହିଲେ:

"ଏହିପରି ଢଙ୍ଗରେ ମହାନଗରୀ ବାବିଲକୁ ତଳକୁ
ନିକ୍ଷେପ କରାଯିବ। ତାହାକୁ ଆଉ କେବେ କେହି
ଦେଖିପାରିବେ ନାହିଁ।
୨୨ ତୋ'ଠାରେ କେହିହେଲେ ଆଉ ଲୋକମାନଙ୍କର
ବୀଣାର ସଙ୍ଗୀତ ଓ ବଂଶୀ, ତୂରୀ ଭଳି ଅନ୍ୟ
ବାଦ୍ୟଯନ୍ତ୍ର ଶୁଣିବେ ନାହିଁ। ତୋ'ଠାରେ କୌଣସି
ଶିଳ୍ପର କାରିଗରମାନେ ଆଉ ଦେଖାଯିବେ ନାହିଁ।
ତୋ'ଠାରେ ଚକିପେଷାର ଶବ୍ଦ ଆଉ କେବେହେଲେ
ଶୁଣାଯିବ ନାହିଁ।
୨୩ ତୋ'ପାଖରେ ଦୀପର ଆଲୋକ ଆଉ ଜଳିବ
ନାହିଁ। ତୋ'ପାଖରେ ବରକନ୍ୟାଙ୍କର ଆନନ୍ଦର ଧ୍ୱନି
ଆଉ କେବେହେଲେ ଶୁଣାଯିବ ନାହିଁ। ତୋ'ର
ବ୍ୟବସାୟୀମାନେ ପୃଥିବୀର ବହୁତ ମହାନ୍ ଲୋକ
ଥିଲେ। ସମସ୍ତ ଦେଶଗୁଡ଼ିକ ତୋ'ର ଯାଦୁ ଶକ୍ତି
ଦ୍ୱାରା ପଥଭ୍ରଷ୍ଟ ହୋଇଥିଲେ।
୨୪ ସେ (ବାବିଲ) ଭବିଷ୍ୟଦ୍‌ବକ୍ତାମାନଙ୍କର ଓ
ପରମେଶ୍ୱରଙ୍କର ପବିତ୍ର ଲୋକମାନଙ୍କର ଏବଂ
ପୃଥିବୀରେ ମାରି ଦିଆଯାଇ ଥିବା ସମସ୍ତ ଲୋକଙ୍କ
ରକ୍ତ ପାଇଁ ଦାୟୀ ଅଟେ।

## ସ୍ୱର୍ଗବାସୀମାନଙ୍କର ପରମେଶ୍ୱରଙ୍କୁ ପ୍ରଶଂସା

୧୯ ତା'ପରେ ମୁଁ ସ୍ୱର୍ଗରେ ଅନେକ ଲୋକମାନଙ୍କର
ସ୍ୱର ଭଳି ଏକ ସ୍ୱର ଶୁଣିଲି। ସେମାନେ
କହୁଥିଲେ:

"ହାଲେଲୁୟା! ବିଜୟ, ମହିମା ଓ କ୍ଷମତା ଆମ୍ଭମାନଙ୍କ
ପରମେଶ୍ୱରଙ୍କର ଅଟେ।
୨ ତାହାଙ୍କର ବିଚାରଗୁଡ଼ିକ ସତ୍ୟ ଓ ଯଥାର୍ଥ। ସେ
ମହା ବେଶ୍ୟାକୁ ଦଣ୍ଡ ଦେଇଛନ୍ତି। ସେହି ବେଶ୍ୟା
ତା'ର ଯୌନଗତ ପାପରେ ପୃଥିବୀକୁ ଭ୍ରଷ୍ଟ
କରିଦେଇଅଛି। ପରମେଶ୍ୱର ତାହାଙ୍କ ସେବକମାନଙ୍କର
ରକ୍ତ ହେତୁ ତାହାକୁ ଦଣ୍ଡ ଦେଇଛନ୍ତି।

୩ସେମାନେ ପୁଣି କହିଲେ:

"ହାଲେଲୁୟା ! ସେ ବେଶ୍ୟା ଜଳି ଯାଉଛି। ତାହାର
ଧୂଆଁ ସର୍ବଦା ଉପରକୁ ଉଠୁଥିବ।"

୪ତା'ପରେ ଚବିଶ ଜଣ ପ୍ରାଚୀନ ଓ ଚାରିଜଣ ଜୀବିତ
ପ୍ରାଣୀ ସିଂହାସନରେ ଉପବିଷ୍ଟ ପରମେଶ୍ୱରଙ୍କ ଆଗରେ
ନଇଁଲେ ଓ ତାହାଙ୍କର ଉପାସନା କଲେ। ସେମାନେ
କହିଲେ:
"ଆମେନ୍! ହାଲେଲୁୟା!" (ପରମେଶ୍ୱରଙ୍କର ପ୍ରଶଂସା
କର)।

୫ତା'ପରେ ସିଂହାସନ ମଧ୍ୟରୁ ଗୋଟିଏ ଉଚ୍ଚ ଧ୍ୱନି
ଆସିଲା। ସେହି ଧ୍ୱନି କହିଲା:

"ହେ ପରମେଶ୍ୱରଙ୍କର ସେବକମାନେ! ତୁମ୍ଭେମାନେ
ସମସ୍ତେ ଆମ୍ଭମାନଙ୍କର ପରମେଶ୍ୱରଙ୍କର ପ୍ରଶଂସା
କର! ହେ କ୍ଷୁଦ୍ର ଓ ମହାନ୍ ଲୋକମାନେ! ତୁମ୍ଭେମାନେ
ସମସ୍ତେ ଆମ୍ଭମାନଙ୍କ ପରମେଶ୍ୱରଙ୍କର ପ୍ରଶଂସା କର
ଓ ତାହାଙ୍କୁ ସମ୍ମାନ ଦିଅ।"

୬ତା'ପରେ ମୁଁ ଅନେକ ଲୋକମାନଙ୍କର ସ୍ୱର ଶୁଣିଲି।
ଏହା ଜଳପ୍ରପାତର ଧ୍ୱନିପରି ଏବଂ ବିରାଟ ମେଘ ଗର୍ଜନର
ଶବ୍ଦ ପରି ଥିଲା। ସେମାନେ କହୁଥିଲେ:

"ହାଲେଲୁୟା! ଆମ୍ଭମାନଙ୍କର ପ୍ରଭୁ ପରମେଶ୍ୱର ରାଜତ୍ୱ
କରୁଛନ୍ତି। ସେ ସର୍ବଶକ୍ତିମାନ।
୭ ଆସ, ଆମ୍ଭେମାନେ ଆନନ୍ଦଉଲ୍ଲାସ କରିବା ଓ
ପରମେଶ୍ୱରଙ୍କୁ ଗୌରବ ଦେବା ! ଯେହେତୁ
'ମେଷଶାବକ'ଙ୍କର ବିବାହ ଉତ୍ସବର ସମୟ ଆସି
ଉପସ୍ଥିତ ଓ ତାହାଙ୍କର କନ୍ୟା ନିଜକୁ ପ୍ରସ୍ତୁତ କରି
ସାରିଛି; ତେଣୁ ଆମ୍ଭେମାନେ ତାହାଙ୍କୁ ଗୌରବ
ଦେବା।
୮ କନ୍ୟାକୁ ପିନ୍ଧିବା ପାଇଁ ସୂକ୍ଷ୍ମ, ଶୁଭ୍ର ଓ ପରିଷ୍କାର
ବସ୍ତ୍ର ଦିଆଯାଇଛି।"

(ସୂକ୍ଷ୍ମ ବସ୍ତ୍ରର ଅର୍ଥ ହେଉଛି, ପରମେଶ୍ୱରଙ୍କ ପବିତ୍ର
ଲୋକମାନଙ୍କର ଉତ୍ତମ କାର୍ଯ୍ୟ, ଯାହା ସବୁ ସେମାନେ
କରିଥିଲେ।)

୯ତା'ପରେ ଦୂତ ମୋତେ କହିଲେ, "ଏହା ଲେଖ:
ମେଷଶାବକଙ୍କ ବିବାହ ଭୋଜିକୁ ନିମନ୍ତ୍ରିତ ବ୍ୟକ୍ତିମାନେ
ଧନ୍ୟ!" ସେ ଦୂତ ପୁଣି କହିଲେ, "ପରମେଶ୍ୱରଙ୍କର
ବାକ୍ୟ ସତ୍ୟ ଅଟେ।"
୧୦ତା'ପରେ ମୁଁ ଦୂତଙ୍କୁ ପ୍ରଣାମ କରିବା ପାଇଁ ତାହାଙ୍କ
ପାଦତଳେ ପଡ଼ିଗଲି। କିନ୍ତୁ ସେ ମୋତେ କହିଲେ,
"ମୋତେ ପ୍ରଣାମ କରନାହିଁ! ମୁଁ ତୁମ୍ଭର ଓ ତୁମ୍ଭ ଖ୍ରୀଷ୍ଟ
ବିଶ୍ୱାସୀ ଓ ଯୀଶୁଙ୍କର ସାକ୍ଷୀ ଭାଇମାନଙ୍କ ପରି ପରମେଶ୍ୱରଙ୍କର
ଜଣେ ସେବକ ମାତ୍ର। ତେଣୁ ପରମେଶ୍ୱରଙ୍କୁ ଉପାସନା
କର! କାରଣ ଯୀଶୁଙ୍କ ପାଇଁ ସାକ୍ଷ୍ୟ ହେଉଛି ଭବିଷ୍ୟଦ୍‌ବାଣୀର
ମୂଳ ଆତ୍ମା ସ୍ୱରୂପ।

## ଶ୍ୱେତ ଅଶ୍ୱର ଆରୋହୀ

୧୧ତା'ପରେ ମୁଁ ସ୍ୱର୍ଗ ଖୋଲିବାର ଦେଖିଲି। ସେଠାରେ
ଗୋଟିଏ ଶ୍ୱେତ ଅଶ୍ୱ ଠିଆ ହୋଇଥିଲା। ଅଶ୍ୱାରୋହୀଙ୍କ
ନାମ 'ବିଶ୍ୱସ୍ତ' ଓ 'ସତ୍ୟବାନ'। ସେ ନ୍ୟାୟପୂର୍ଣ୍ଣ ଭାବରେ
ବିଚାର କରନ୍ତି ଓ ଲଢ଼ନ୍ତି। ୧୨ତାହାଙ୍କର ଚକ୍ଷୁ ଦୁଇଟି
ଜ୍ୱଳନ୍ତ ଅଗ୍ନି ସଦୃଶ। ତାହାଙ୍କ ମସ୍ତକରେ ଅନେକ ଗୁଡ଼ିଏ
ମୁକୁଟ ଅଛି। ତାହାଙ୍କ କପାଳରେ ଗୋଟିଏ ନାମ ଲେଖା
ଯାଇଥିଲା, କିନ୍ତୁ ତାହାଙ୍କ ବ୍ୟତୀତ ଅନ୍ୟ କେହି ସେ ନାମ
ଜାଣି ନ ଥିଲେ। ୧୩ସେ ରକ୍ତଭିଜା ଗୋଟିଏ ରାଜପୋଷାକ
ପିନ୍ଧିଥିଲେ। ତାହାଙ୍କ ନାମ 'ପରମେଶ୍ୱରଙ୍କ ବାକ୍ୟ'। ୧୪ସ୍ୱର୍ଗର
ସେନାବାହିନୀଗଣ ତାହାଙ୍କର ଅନୁଗମନ କରୁଥିଲେ। ସେମାନେ
ମଧ୍ୟ ଶ୍ୱେତ ଅଶ୍ୱ ଉପରେ ବସିଥିଲେ। ସେମାନେ ସୂକ୍ଷ୍ମ,
ପରିଷ୍କୃତ, ଶୁଭ୍ରବସ୍ତ୍ର ପିନ୍ଧିଥିଲେ। ୧୫ସେହି ଅଶ୍ୱା ରୋହୀଙ୍କ
ମୁଖରୁ ଗୋଟିଏ ତୀକ୍ଷ୍ଣ ଖଣ୍ଡା ବାହାରି ଥିଲା। ସେ
ଜାତିଗଣଙ୍କୁ ଦମନ କରିବା ପାଇଁ ଏହି ଖଣ୍ଡାର ପ୍ରୟୋଗ
କରିବେ। ସେ ଲୌହ ଦଣ୍ଡରେ ସେମାନଙ୍କୁ ଶାସନ
କରିବେ। ସେ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର କ୍ରୋଧରୂପ
ଅଙ୍ଗୁରପେଷା କୁଣ୍ଡକୁ ଦଳିପକାଇବେ। ୧୬ତାହାଙ୍କ ପୋଷାକ
ଓ ଜଙ୍ଘଦେଶରେ ଏହା ଲେଖାଥିଲା:

**ରାଜାମାନଙ୍କର ରାଜା ଓ ପ୍ରଭୁମାନଙ୍କର ପ୍ରଭୁ।**

୧୭ତା'ପରେ ମୁଁ ଜଣେ ଦୂତଙ୍କୁ ସୂର୍ଯ୍ୟ ମଧ୍ୟରେ ଠିଆ
ହେବାର ଦେଖିଲି। ସେ ଆକାଶରେ ଉଡୁଥିବା ସବୁ
ପକ୍ଷୀମାନଙ୍କୁ ଉଚ୍ଚ ସ୍ୱରରେ କହିଲେ, "ଆସ, ପରମେଶ୍ୱରଙ୍କର
ମହାଭୋଜି ପାଇଁ ଏକାଠି ହୁଅ। ୧୮ଆସ, ତୁମ୍ଭେମାନେ
ଏକାଠି ହୋଇ ରାଜା, ସେନାପତି ଓ ପ୍ରସିଦ୍ଧ ଲୋକମାନଙ୍କ
ଶରୀରର ମାଂସ ତଥା ଅଶ୍ୱ ଓ ସେମାନଙ୍କର ଆରୋହୀଙ୍କର
ଓ ସ୍ୱାଧୀନ ଓ ପରାଧୀନ, ସାନ ଓ ବଡ଼, ସବୁ
ଲୋକମାନଙ୍କର ମାଂସ ଖାଇବ।"
୧୯ତା'ପରେ ମୁଁ ସେହି ପଶୁ ଓ ପୃଥିବୀର ରାଜାମାନଙ୍କୁ
ଦେଖିଲି। ସେମାନଙ୍କର ସେନାବାହିନୀଗଣ, ଅଶ୍ୱାରୋହୀ ଓ
ସେମାନଙ୍କର ସେନାବାହିନୀ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ
ଏକତ୍ର ହେଲେ। ୨୦କିନ୍ତୁ ସେହି ପଶୁ ବନ୍ଦୀ ହେଲା ଏବଂ
ଭଣ୍ଡ ଭବିଷ୍ୟଦ୍‌ବକ୍ତା ମଧ୍ୟ ବନ୍ଦୀ ହେଲା। ଏହି ଭଣ୍ଡ

ଭବଷ୍ୟଦ୍‌ବକ୍ତା ସେହ ପଶୁ ପାଇଁ ବହୁତ ଆଶ୍ଚର୍ଯ୍ୟଜନକ
କାର୍ଯ୍ୟ କରଥିଲା। ଏହ ପଶୁ, ଯିଏ କ ପଶୁର ଚହ୍ନ
ଧାରଣ କରଥିବା ଓ ତାହାର ପ୍ରତିମାକୁ ପୂଜା କରଥିବା
ଲୋକମାନଙ୍କୁ ଭ୍ରାନ୍ତ କରଥିଲା, ସେ ବନ୍ଦୀ ହେଲା। ସେହ
ଭଣ୍ଡ ଭବଷ୍ୟଦ୍‌ବକ୍ତା ଓ ପଶୁଙ୍କୁ ଗନ୍ଧକ ଜଳୁଥିବା ଅଗ୍ନିପୂର୍ଣ୍ଣ
ହ୍ରଦରେ ଜୀବନ୍ତ ଫିଙ୍ଗି ଦଆଗଲା। ୨୧ସେମାନଙ୍କର
ସେନାବାହନୀଗଣ ଅଶ୍ୱାରୋହୀଙ୍କ ମୁଖରୁ ବାହାରଥିବା ଖଡ୍‌ଗରେ
ନହତ ହେଲେ। ସମସ୍ତ ପକ୍ଷୀଗଣ ସେମାନଙ୍କର ଏହ
ଶରୀରଗୁଡ଼କୁ ପେଟ ପୁରବା ପର୍ଯ୍ୟନ୍ତ ଖାଇଲେ।

### ଏକ ହଜାର ବର୍ଷ

**୨୦** ତା'ପରେ ମୁଁ ସ୍ୱର୍ଗରୁ ଜଣେ ସ୍ୱର୍ଗଦୂତଙ୍କୁ ଓହ୍ଲାଇବାର
ଦେଖିଲ। ତାହାଙ୍କ ପାଖରେ ପାତାଳର ଅତଳ
ଗହ୍ୱରର ଚାବ ଥିଲା। ତାହାଙ୍କ ହାତରେ ଗୋଟିଏ ବଡ଼
ଶିକୁଳ ଥିଲା। ୨ସ୍ୱର୍ଗଦୂତ ସେହ ବଶାଳକାୟ ପୁରୁଣା
ସାପକୁ ଧରପକାଇଲେ। ସେହ ସାପ ହେଉଛ ଶୟତାନ।
ଦୂତ ତାହାକୁ ଏକହଜାର ବର୍ଷ ପର୍ଯ୍ୟନ୍ତ ଶିକୁଳରେ
ବାନ୍ଧିଦେଲେ। ୩ସେ ତାହାକୁ ଗଭୀରତମ ଗହ୍ୱରରେ ଫୋପାଡ଼
ଦେଲେ ଓ ତାହାକୁ ବନ୍ଦ କରଦେଲେ। ଦୂତ ସେହ
ଗହ୍ୱରକୁ ବନ୍ଦ କର ମୁଦ୍ରା ବସାଇଲେ, ଯେପର ସେ
ହଜାରବର୍ଷ ପୂର୍ଣ୍ଣ ହେବାପର୍ଯ୍ୟନ୍ତ ଲୋକମାନଙ୍କୁ ଭ୍ରାନ୍ତ କରପାରବ
ନାହିଁ। ଏକ ହଜାର ବର୍ଷ ପରେ ତାହାକୁ ଖୁବ୍ ଅଳ୍ପ
ସମୟ ପାଇଁ ମୁକ୍ତ କରାଯିବ।

### ଶୟତାନର ପରାଜୟ

୪ତା'ପରେ ମୁଁ କେତୋଟି ସିଂହାସନ ଓ ତା'ଉପରେ
ଲୋକମାନଙ୍କୁ ବସିଥିବାର ଦେଖିଲ। ସେହ ଲୋକମାନଙ୍କୁ
ବଚାର କରବାର ଶକ୍ତ ଦଆଯାଇଥିଲା। ଯୀଶୁଙ୍କ ପାଇଁ
ସାକ୍ଷୀ ହେବା ଓ ପରମେଶ୍ୱରଙ୍କର ବାକ୍ୟ ପ୍ରଚାର କରବା
ହେତୁ ଯେଉଁମାନଙ୍କୁ ମାର ଦଆଯାଇଥିଲା, ମୁଁ ସେହ
ଲୋକମାନଙ୍କର ଆତ୍ମାକୁ ଦେଖିଲ। ସେହ ଲୋକମାନେ
ପଶୁକୁ କମ୍ବା ତାହାର ପ୍ରତିମାକୁ ପୂଜା କରନଥିଲେ।
ସେମାନେ ତାହାଙ୍କ କପାଳରେ ବା ହାତରେ ସେହ ପଶୁର
ଚହ୍ନ ଧାରଣ କର ନଥିଲେ। ସେମାନେ ପୁନର୍ବାର ଜୀବତ
ହେଲେ ଓ ଖ୍ରୀଷ୍ଟଙ୍କ ସହତ ଏକହଜାର ବର୍ଷ ପର୍ଯ୍ୟନ୍ତ
ଶାସନ କଲେ। ୫(ଅବଶିଷ୍ଟ ମୃତ ଲୋକମାନେ ଏକ
ହଜାର ବର୍ଷ ପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ, ବଞ୍ଚି ଉଠିଲେ
ନାହିଁ।) ଏହା ହିଁ ପ୍ରଥମ ପୁନରୁତ୍ଥାନ। ୬ଏହ ପ୍ରଥମ
ପୁନରୁତ୍ଥାନରେ ଯେଉଁମାନେ ଅଂଶୀ ହୁଅନ୍ତି, ସେମାନେ
ଧନ୍ୟ ଓ ପବତ୍ର। ଏମାନଙ୍କ ଉପରେ ଦ୍ୱିତୀୟ ମୃତ୍ୟୁର
କୌଣସି କ୍ଷମତା ନାହିଁ। ସେହ ଲୋକମାନେ ପରମେଶ୍ୱରଙ୍କର
ଓ ଖ୍ରୀଷ୍ଟଙ୍କର ଯାଜକ ହେବେ। ସେମାନେ ତାହାଙ୍କ ସହତ
ଏକହଜାର ବର୍ଷ ପର୍ଯ୍ୟନ୍ତ ଶାସନ କରବେ। ୭ଏକ ହଜାର
ବର୍ଷ ଶେଷ ହେବାପରେ ଶୟତାନକୁ ତା'ର ଗଭୀରତମ
ଗହ୍ୱରର ବନ୍ଦୀଶାଳାରୁ ମୁକ୍ତ ମିଳବ। ୮ସେ ପୃଥିବୀର
ଚାରକୋଣକୁ ଯାଇ ସବୁ ଦେଶମାନଙ୍କୁ ଭ୍ରାନ୍ତ କରବ, ଓ
ସେହ ସମୁଦ୍ରର ବାଲ ପର ଅସଂଖ୍ୟ ଗୋଗ୍ ଓ ମାଗୋଗ୍‌ଙ୍କୁ
ଏକତ୍ର କର ଯୁଦ୍ଧ କରବାକୁ ବାହାରବ। ୯ଶୟତାନର
ସେନାବାହନୀ ପୃଥିବୀର ପ୍ରତ୍ୟେକ ସ୍ଥାନକୁ ଯାଇ
ପରମେଶ୍ୱରଙ୍କର ଲୋକମାନଙ୍କ ଶିବରଗୁଡ଼କୁ ଓ ପରମେଶ୍ୱରଙ୍କ
ପ୍ରିୟ ନଗରକୁ ଘେରଗଲେ। କନ୍ତୁ ସ୍ୱର୍ଗରୁ ଅଗ୍ନି ଆସିଲା ଓ
ତା'ର ସେନାବାହନୀକୁ ବନାଶ କରଦେଲା। ୧୦ସେତେବେଳେ
ଶୟତାନ(ଯିଏ ସେହ ଲୋକମାନଙ୍କୁ ଭ୍ରାନ୍ତ କରଥିଲା),
ସେହ ପଶୁ ଓ ମିଥ୍ୟାବାଦୀ ଭବଷ୍ୟଦ୍‌ବକ୍ତା ସହତ ଗନ୍ଧକରେ
ପ୍ରଜ୍ୱଳତ ଅଗ୍ନିମୟ ହ୍ରଦ ମଧ୍ୟକୁ ନକ୍ଷେପ କରାଗଲେ।
ସେମାନେ ସେଠାରେ ଦନରାତ ସଦାସର୍ବଦା ପାଇଁ ଯନ୍ତ୍ରଣା
ପାଇବେ।

### ପୃଥିବୀର ଲୋକଙ୍କର ବଚାର

୧୧ତା'ପରେ ମୁଁ ଗୋଟିଏ ବରାଟ ଶୁଭ୍ର ସିଂହାସନ
ଦେଖିଲ। ମୁଁ ଜଣେ ବ୍ୟକ୍ତଙ୍କୁ ସେହ ସିଂହାସନରେ
ବସିଥିବାର ଦେଖିଲ। ଆକାଶ ଓ ପୃଥିବୀ ତାହାଙ୍କ ପାଖରୁ
ଦୌଡ଼ ଚାଲଗଲେ ଓ ଉଭେଇ ଗଲେ। ୧୨ମୁଁ ବଡ଼ଠାରୁ
ସାନ ପର୍ଯ୍ୟନ୍ତ ମୃତବ୍ୟକ୍ତଙ୍କୁ ସିଂହାସନ ସାମନାରେ ଠିଆହେବାର
ଦେଖିଲ। ଜୀବନ ପୁସ୍ତକ ଖୋଲାଥିଲା। ସେଠାରେ ଅନ୍ୟ
ପୁସ୍ତକଗୁଡ଼କ ମଧ୍ୟ ଖୋଲାଥିଲା। ମୃତ ଲୋକମାନଙ୍କର
ନଜନଜ କର୍ମ ଅନୁସାରେ ବଚାର ହେଲା। ସେହ
ପୁସ୍ତକଗୁଡ଼କରେ ଏସବୁ ବଷୟ ଲେଖାଯାଇଥିଲା। ୧୩ସମୁଦ୍ର
ଭିତରେ ଯେଉଁ ମୃତଲୋକମାନେ ଥିଲେ, ସେ ସେମାନଙ୍କୁ
ଦେଇଦେଲା। ମୃତ୍ୟୁ ଓ ପାତାଳ ନଜ ପାଖରେ ଥିବା ମୃତ
ଲୋକମାନଙ୍କୁ ଦେଇଦେଲା, ପ୍ରତ୍ୟେକ ଲୋକକୁ ତା'ର
କର୍ମଗୁଡ଼କ ଅନୁସାରେ ବଚାର କରାଗଲା। ୧୪ତା'ପରେ
ମୃତ୍ୟୁ ଓ ପାତାଳକୁ ଅଗ୍ନିମୟ ହ୍ରଦକୁ ନକ୍ଷେପ କରାଗଲା।
ଏହ ଅଗ୍ନିମୟ ହ୍ରଦ ଦ୍ୱିତୀୟ ମୃତ୍ୟୁ ଅଟେ। ୧୫ଯେଉଁ
ଲୋକର ନାମ ଜୀବନ ପୁସ୍ତକରେ ଲେଖାହୋଇଥିବାର
ଦେଖାଗଲାନାହିଁ, ତାହାକୁ ମଧ୍ୟ ଅଗ୍ନିମୟ ହ୍ରଦରେ ନକ୍ଷେପ
କରାଗଲା।

### ନୂତନ ଯିରୂଶାଲମ

**୨୧** ଏହାପରେ ମୁଁ ଗୋଟିଏ ନୂତନ ସ୍ୱର୍ଗ ଓ ନୂତନ
ପୃଥିବୀ ଦେଖିଲ। ପ୍ରଥମ ସ୍ୱର୍ଗ ଓ ପ୍ରଥମ
ପୃଥିବୀ ଅଦୃଶ୍ୟ ହୋଇ ଯାଇଥିଲା। ସେଠାରେ ଆଉ ସମୁଦ୍ର
ନଥିଲା। ୨ତା'ପରେ ମୁଁ ପରମେଶ୍ୱରଙ୍କଠାରୁ ସ୍ୱର୍ଗରୁ ପବତ୍ର
ନଗରୀ ତଳକୁ ଆସିବାର ଦେଖିଲ। ଏହ ପବତ୍ର ନଗରୀ
ନୂତନ ଯିରୂଶାଲମ ଅଟେ। ବର ପାଇଁ କନ୍ୟା ଯେପର
ସୁସଜ୍ଜିତା ହୋଇଥାଏ, ଠିକ୍ ସେହପର ଏହା ପ୍ରସ୍ତୁତ ଥିଲା।
୩ମୁଁ ସିଂହାସନରୁ ଏକ ଉଚ୍ଚ ସ୍ୱର ଶୁଣିଲ। ସେହ ସ୍ୱର
କହଲା, "ବର୍ତ୍ତମାନ ପରମେଶ୍ୱରଙ୍କର ବାସସ୍ଥାନ ଲୋକମାନଙ୍କ
ପାଖରେ ଅଛ। ସେ ସେମାନଙ୍କ ସହତ ରହବେ। ସେମାନେ
ତାହାଙ୍କର ଲୋକ ହେବେ। ପରମେଶ୍ୱର ନଜେ ସେମାନଙ୍କ
ସହତ ରହବେ ଓ ସେମାନଙ୍କର ପରମେଶ୍ୱର ହେବେ।
୪ପରମେଶ୍ୱର ସେମାନଙ୍କ ଆଖିରୁ ସମସ୍ତ ଲୁହ ପୋଛଦେବେ।
ଆଉ ଅଧିକ ମୃତ୍ୟୁ, ବଷାଦ, କ୍ରନ୍ଦନ ବା କଷ୍ଟ ରହବ
ନାହିଁ। ସବୁ ପୁରାତନ ବଷୟ ଲୋପପାଇଛ।"

୫ସିଂହାସନ ଉପରେ ଯିଏ ବସିଥିଲେ, ସେ କହିଲେ,
"ମୁଁ ସମସ୍ତ ବିଷୟ ନୂତନ କରୁଅଛି।" ତା'ପରେ ସେ
କହିଲେ, "ଏହା ଲେଖି ରଖ, କାରଣ ଏହି କଥାସବୁ
ବିଶ୍ୱାସଯୋଗ୍ୟ ଓ ସତ୍ୟ।"

୬ସିଂହାସନରେ ବସିଥିବା ବ୍ୟକ୍ତି ମୋତେ କହିଲେ,
"ଏହା ସମାପ୍ତ ହୋଇଯାଇଛି। ମୁଁ ହେଉଛି ପ୍ରଥମ ଓ
ଶେଷ*। ମୁଁ ତୃଷାର୍ତ୍ତ ଲୋକକୁ ବିନା ମୂଲ୍ୟରେ ଜୀବନ୍ତଜଳ
ନିର୍ଝରରୁ ପାନ କରିବାକୁ ଦେବି। ୭ଯେ ବିଜୟୀ ହେବ,
ସେ ଏହିସବୁ ପାଇବ। ମୁଁ ତାହାର ପରମେଶ୍ୱର ହେବି ଓ
ସେ ମୋର ପୁତ୍ର ହେବ। ୮କିନ୍ତୁ ଯେଉଁ ଲୋକମାନେ
ଭୀରୁ, ଅବିଶ୍ୱାସୀ, ଘୃଣାକାର୍ଯ୍ୟ, ନରହତ୍ୟା, ଯୌନଗତ ପାପ,
ମନ୍ଦ କୁହୁକ କରନ୍ତି ଓ ପ୍ରତିମାପୂଜକ ଏବଂ ମିଥ୍ୟାବାଦୀ
ସେମାନେ ଅଗ୍ନି ଓ ଗନ୍ଧକ ଜଳୁଥିବା ହ୍ରଦରେ ସ୍ଥାନ
ପାଇବେ। ଏହା ଦ୍ୱିତୀୟ ମୃତ୍ୟୁ।

୯ତା'ପରେ ସାତଜଣ ସ୍ୱର୍ଗଦୂତଙ୍କ ମଧ୍ୟରୁ ଯେଉଁମାନଙ୍କ
ପାଖରେ ସାତୋଟି ଶେଷ କ୍ଳେଶର ସାତପାତ୍ର ଥିଲା,
ସେହିମାନଙ୍କ ମଧ୍ୟରୁ ଜଣେ ମୋ ପାଖକୁ ଆସିଲେ। ସେହି
ସ୍ୱର୍ଗଦୂତ ମୋତେ କହିଲେ, "ମୋ ସହିତ ଆସ। ମୁଁ
ତୁମ୍ଭକୁ ବଧୂକୁ ଦେଖାଇବି। ସେ ମେଷଶାବକଙ୍କର ସ୍ତ୍ରୀ।
୧୦ସେ ଦୂତ ମୋତେ ଆତ୍ମା ଦ୍ୱାରା ଗୋଟିଏ ବହୁତ ବଡ଼
ଓ ଉଚ୍ଚ ପର୍ବତକୁ ନେଇଗଲେ। ସେ ମୋତେ ପବିତ୍ର
ନଗରୀ ଯିରୂଶାଲମ ଦେଖାଇଲେ। ମୁଁ ସେହି ନଗରୀକୁ
ପରମେଶ୍ୱରଙ୍କ ପାଖରୁ ସ୍ୱର୍ଗରୁ ଆସିବାର ଦେଖିଲି। ୧୧ସେହି
ନଗରୀ ପରମେଶ୍ୱରଙ୍କ ଗୌରବରେ ଉଜ୍ଜ୍ୱଳମୟ
ଦେଖାଯାଉଥିଲା। ଏହା ମୂଲ୍ୟବାନ ମଣି, ସୂର୍ଯ୍ୟକାନ୍ତ ପରି
ଉଜ୍ଜ୍ୱଳ ହୋଇ ଝଲକୁଥିଲା। ଏହା ସ୍ଫଟିକ ପରି ସ୍ୱଚ୍ଛ
ଥିଲା। ୧୨ନଗରୀର ଗୋଟିଏ ବଡ଼ ଉଚ୍ଚ କାନ୍ଥ ଥିଲା।
ଏହାର ବାରଟି ପ୍ରବେଶଦ୍ୱାର ଥିଲା। ସେହି ଦ୍ୱାରମାନଙ୍କରେ
ବାରଟି ସ୍ୱର୍ଗଦୂତ ଥିଲେ। ପ୍ରତ୍ୟେକ ପ୍ରବେଶ ଦ୍ୱାରରେ
ଇସ୍ରାୟେଲର ବାର ପରିବାରର ଗୋଟିଏ ଗୋଟିଏ ଦଳର
ନାମ ଖୋଦିତ ଥିଲା। ୧୩ସେଠାରେ ପୂର୍ବ ଦିଗରେ ତିନୋଟି
ପ୍ରବେଶ ଦ୍ୱାର, ଉତ୍ତରରେ ତିନୋଟି ପ୍ରବେଶ ଦ୍ୱାର,
ଦକ୍ଷିଣରେ ତିନୋଟି ପ୍ରବେଶ ଦ୍ୱାର ଏବଂ ପଶ୍ଚିମ ଦିଗରେ
ତିନୋଟି ଦ୍ୱାର ଥିଲା। ୧୪ନଗରୀର କାନ୍ଥସବୁ ବାରଟି
ମୂଳଦୁଆ ପଥର ଉପରେ ଥିଲା। ସେହି ପଥରଉପରେ
ମେଷଶାବକଙ୍କର ବାର ଜଣ ପ୍ରେରିତଙ୍କର ନାମ
ଲେଖାଯାଇଥିଲା।

୧୫ମୋ ସହିତ କଥାବାର୍ତ୍ତା ହେଉଥିବା ସ୍ୱର୍ଗଦୂତଙ୍କ
ହାତରେ ଗୋଟିଏ ସୁନାର ମାପଦଣ୍ଡ ଥିଲା। ସେ ନଗର,
ଏହାର ପ୍ରବେଶ ଦ୍ୱାର ଏବଂ ଏହାର କାନ୍ଥ ମାପ କରିବା
ପାଇଁ ଏହି ମାପଦଣ୍ଡ ନିଜ ହାତରେ ରଖିଥିଲେ। ୧୬ସେହି
ନଗରୀଟି ଚାରିକୋଣିଆ ଥିଲା। ଏହାର ଲମ୍ବ ଓ ଚଉଡ଼ା
ସମାନ। ସେହି ଦୂତ ମାପଦଣ୍ଡରେ ନଗରୀକୁ ମାପିଲେ।
ନଗରୀର ଲମ୍ବ ୧୨୦୦୦ ଷ୍ଟାଡିଆ, ଚଉଡା ୧୨୦୦୦
ଷ୍ଟାଡିଆ ଓ ଉଚ୍ଚତା ମଧ୍ୟ ୧୨୦୦୦ ଷ୍ଟାଡିଆ* ଥିଲା।
୧୭ସେ ଦୂତ କାନ୍ଥର ଉଚ୍ଚତା ମଧ୍ୟ ମାପିଲେ ଏହା ୧୪୪
ହାତ ହେଲା। ଦୂତ ମନୁଷ୍ୟମାନଙ୍କ ଦ୍ୱାରା ବ୍ୟବହୃତ
ମାନଦଣ୍ଡରେ ମାପିଥିଲେ। ୧୮ସେହି ନଗରୀର କାନ୍ଥ
ସୂର୍ଯ୍ୟକାନ୍ତମଣିରେ ତିଆରି ହୋଇଥିଲା। ସେହି ନଗରୀ
ସ୍ୱଚ୍ଛକାଚ ପରି ଉଜ୍ଜ୍ୱଳ ଖାଣ୍ଟି ସୁନାରେ ତିଆରି ହୋଇଥିଲା।
୧୯ନଗରୀ କାନ୍ଥର ମୂଳଦୁଆ ପଥରରେ ବହୁମୂଲ୍ୟ ମଣି
ଖଚିତ ଥିଲା। ପ୍ରଥମ କୋଣ ପଥରଟି ହୀରକମଣି,
ଦ୍ୱିତୀୟଟି ନୀଳକାନ୍ତମଣି, ତୃତୀୟ ବୈଦୂର୍ଯ୍ୟମଣି, ଚତୁର୍ଥଟି
ମରକତମଣି ଥିଲା। ୨୦ପଞ୍ଚମରେ ପୁଲକମଣି, ଷଷ୍ଠ ମଣିକ୍ୟମଣି,
ସପ୍ତମଟି ପୁଷ୍ପରାଗମଣି, ଅଷ୍ଟମରେ ଫିରୋଜମଣି, ନବମରେ
ଗୋମେଦକମଣି, ଦଶମରେ ଲଶୁନୀୟମଣି, ଏକାଦଶରେ
ଇନ୍ଦ୍ରନୀଳମଣି, ଓ ଦ୍ୱାଦଶରେ ସୁଗନ୍ଧମଣି ଖଚିତ ଥିଲା।
୨୧ବାରଟି ପ୍ରବେଶ ଦ୍ୱାର ହେଉଛି ବାରଗୋଟି ମୁକ୍ତା।
ପ୍ରତ୍ୟେକ ପ୍ରବେଶ ଦ୍ୱାର ଗୋଟିଏ ଲେଖା ମୁକ୍ତାରେ ତିଆରି
ହୋଇଥିଲା। ନଗରର ରାଜପଥ ନିର୍ମଳ କାଚପରି, ଖାଣ୍ଟି
ସୁନାରେ ତିଆରି ହୋଇଥିଲା।

୨୨ମୁଁ ସେହି ନଗରୀ ଭିତରେ କୌଣସି ମନ୍ଦିର
ଦେଖିଲିନାହିଁ। ସର୍ବଶକ୍ତିମାନ୍ ପ୍ରଭୁ ପରମେଶ୍ୱର ଓ ମେଷଶାବକ
ହେଉଛନ୍ତି ସେହି ନଗରର ମନ୍ଦିର। ୨୩ସେହି ନଗରୀକୁ
ଆଲୋକ ଦେବାପାଇଁ ସୂର୍ଯ୍ୟ ବା ଚନ୍ଦ୍ରର ଆବଶ୍ୟକତା
ନାହିଁ। ପରମେଶ୍ୱରଙ୍କର ମହିମା ନଗରୀକୁ ଆଲୋକ ଦିଏ।
ମେଷଶାବକ ସେହି ନଗରୀର ପ୍ରଦୀପ ସ୍ୱରୂପ। ୨୪ନଗରୀର
ଆଲୋକରେ ଜାତିସମୂହର ଲୋକମାନେ ଚାଲିବେ। ପୃଥିବୀର
ରାଜାମାନେ ସେମାନଙ୍କର ଐଶ୍ୱର୍ଯ୍ୟ ଏହି ନଗରୀକୁ ଦେବେ।
୨୫ସେହି ନଗରୀର ଦ୍ୱାରଗୁଡ଼ିକ କୌଣସି ଦିନ ବନ୍ଦ ରହିବ
ନାହିଁ କାରଣ ସେଠାରେ କେବେ ହେଲେ ରାତି ହେବ
ନାହିଁ। ୨୬ସେହି ନଗରକୁ ଜାତିସମୂହର ଐଶ୍ୱର୍ଯ୍ୟ ଓ
ମହିମା ଅଣାଯିବ। ୨୭କୌଣସି ଅଶୁଚି ଜିନିଷ ତା' ଭିତରେ
ପ୍ରବେଶ କରିବ ନାହିଁ। ଲଜ୍ଜାପୂର୍ଣ୍ଣ କାର୍ଯ୍ୟ କରିବା ଲୋକ
ଓ ମିଥ୍ୟା କହିବା ଲୋକ ତା' ଭିତରେ ପଶିପାରିବେନାହିଁ।
ମେଷଶାବକଙ୍କ ଜୀବନପୁସ୍ତକରେ ନାମ ଲେଖାହୋଇଥିବା
ଲୋକମାନେ ସେହି ନଗରୀ ଭିତରେ ପ୍ରବେଶ କରିବେ।

୨୨ ତା'ପରେ ଦୂତ ମୋତେ ଜୀବନଜଳର ନଦୀ
ଦେଖାଇଲେ। ସେ ନଦୀଟି ସ୍ଫଟିକ ପରି ଉଜ୍ଜ୍ୱଳ
ଥିଲା। ସେହି ନଦୀ ପରମେଶ୍ୱର ଓ ମେଷଶାବକଙ୍କ
ସିଂହାସନରୁ ପ୍ରବାହିତ ହେଉଛି। ୨ଏହା ନଗରୀର ରାଜପଥ
ଦେଇ ତଳକୁ ବୋହିଯାଏ। ନଦୀର ଦୁଇ ପଟେ ଜୀବନ
ବୃକ୍ଷ ଥିଲା। ଏହି ବୃକ୍ଷରେ ପ୍ରତିବର୍ଷ ବାର ଥର ଫଳ
ଫଳେ। ଏହା ପ୍ରତିମାସ ଫଳ ଦିଏ। ଏହି ଗଛର
ପତ୍ରଗୁଡ଼ିକ ଜାତିସମୂହର ସୁସ୍ଥତା ପାଇଁ ଅଟେ। ୩ସେଠାରେ
ପରମେଶ୍ୱରଙ୍କ ଦ୍ୱାରା ବିଚାରିତ ଦୋଷୀ ବିଷୟ ରହିବନାହିଁ।
ପରମେଶ୍ୱର ଓ ମେଷଶାବକଙ୍କ ସିଂହାସନ ସେଠାରେ
ରହିବ। ତାହାଙ୍କର ସେବକମାନେ ତାହାଙ୍କୁ ଉପାସନା

---

**ଆରମ୍ଭ ଓ ଶେଷ** ଗ୍ରିକ୍ ଭାଷାରେ ଏହା ଆଲ୍ଫା ଓ ଓମେଗା କୁହାଯାଏ। ଏହା ବର୍ଣ୍ଣମାଳାର ପ୍ରଥମ ଓ ଶେଷ ଅକ୍ଷର। ଅନ୍ୟ ଅର୍ଥରେ ପରମେଶ୍ୱର ପ୍ରଥମ ଓ ଶେଷ।

**୧ ଷ୍ଟାଡିଆ** ୧୯୨ ମିଟର।

କରିବେ। ୪ସେମାନେ ତାହାଙ୍କ ମୁଖ ଦେଖିବେ। ସେମାନଙ୍କ
କପାଳରେ ପରମେଶ୍ୱରଙ୍କର ନାମ ଲେଖାହେବ। ୫ସେଠାରେ
ଆଉ କେବେ ରାତି ହେବନାହିଁ। ଲୋକମାନେ ପ୍ରଦୀପର
କିମ୍ବା ସୂର୍ଯ୍ୟର ଆଲୋକ ଆଉ ଆବଶ୍ୟକ କରିବେ ନାହିଁ।
ପ୍ରଭୁ ପରମେଶ୍ୱର ସେମାନଙ୍କୁ ଆଲୋକ ଦେବେ। ସେମାନେ
ରାଜାଙ୍କପରି ସଦାସର୍ବଦାପାଇଁ ରାଜତ୍ୱ କରିବେ।
୬ସେ ସ୍ୱର୍ଗଦୂତ ମୋତେ କହିଲେ, "ଏହି କଥାଗୁଡ଼ିକ
ସତ୍ୟ ଓ ବିଶ୍ୱାସଯୋଗ୍ୟ। ପ୍ରଭୁ ଭବିଷ୍ୟଦ୍‌ବକ୍ତାମାନଙ୍କ
ଆତ୍ମାର ପରମେଶ୍ୱର ଅଟନ୍ତି। ଯାହା ଶୀଘ୍ର ଘଟିବ, ତାହା
ତାହାଙ୍କ ସେବକମାନଙ୍କୁ ଦେଖାଇବା ପାଇଁ ପରମେଶ୍ୱର
ସ୍ୱର୍ଗଦୂତଙ୍କୁ ପଠାଇଛନ୍ତି।
୭"ଶୁଣ! ମୁଁ ଶୀଘ୍ର ଆସୁଅଛି। ଏହି ପୁସ୍ତକରେ ଲେଖାଥିବା
ଭବିଷ୍ୟବାଣୀର ବାକ୍ୟଗୁଡ଼ିକୁ ଯେଉଁ ଲୋକ ପାଳନ କରିବ,
ସେ ଧନ୍ୟ ହେବ।
୮ମୁଁ ଯୋହନ। ମୁଁ ଏସବୁ ଶୁଣିଛି ଓ ଦେଖିଛି। ପୁଣି
କଥା ଶୁଣିବା ଓ ଦେଖିବା ପରେ ମୁଁ ଏସବୁ କହିବାଦୂତଙ୍କ
ପାଦତଳେ ପ୍ରଣାମ କରିବା ପାଇଁ ପଡ଼ିଗଲି। ୯କିନ୍ତୁ ସେହି
ଦୂତ ମୋତେ କହିଲେ, "ମୋତେ ପ୍ରଣାମ କର ନାହିଁ! ମୁଁ
ତୁମ୍ଭର ପରି, ଓ ତୁମ୍ଭର ଭବିଷ୍ୟଦ୍‌ବକ୍ତାମାନଙ୍କ ପରି ଜଣେ
ସେବକ। ମୁଁ ସେହିମାନଙ୍କ ପରି ଜଣେ ସେବକ ଯିଏ,
ଏହି ପୁସ୍ତକର ବାକ୍ୟଗୁଡ଼ିକୁ ପାଳନ କରେ। ତେଣୁ ତୁମ୍ଭେ
କେବଳ ପରମେଶ୍ୱରଙ୍କୁ ପ୍ରଣାମ କର।"
୧୦ତା'ପରେ ସ୍ୱର୍ଗଦୂତ ମୋତେ କହିଲେ, "ଏହି ପୁସ୍ତକରେ
ଥିବା ଭବିଷ୍ୟଦ୍‌ବାଣୀର ବାକ୍ୟଗୁଡ଼ିକୁ ଗୋପନୀୟ ରଖନାହିଁ।
ଏସବୁ ଘଟିବାର ସମୟ ପାଖେଇ ଆସିଲାଣି। ୧୧ଯେ ମନ୍ଦ
କରୁଛି, ତାହାକୁ ମନ୍ଦ କରିବାକୁ ଦିଅ। ଯେ ଅଶୁଚି, ସେ
ଅଶୁଚି ହୋଇ ରହୁ। ଯେ ଭଲ କରୁଛି, ତାହାକୁ ଭଲ
କରିବାକୁ ଦିଅ। ଯେ ପବିତ୍ର, ତାହାକୁ ପବିତ୍ର ହୋଇ
ରହିବାକୁ ଦିଅ।"
୧୨"ଶୁଣ! ମୁଁ ଶୀଘ୍ର ଆସୁଛି, ମୁଁ ସାଙ୍ଗରେ ପୁରସ୍କାର
ନେଇ ଆସିବି। ମୁଁ ପ୍ରତ୍ୟେକ ବ୍ୟକ୍ତିକୁ ତା'ର କର୍ମଅନୁସାରେ
ପ୍ରତିଦାନ ଦେବି। ୧୩ମୁଁ ପ୍ରଥମ ଓ ଶେଷ; କ ଓ କ୍ଷ,
ଆଦି ଓ ଅନ୍ତ।"
୧୪"ଯେଉଁ ଲୋକମାନେ ନିଜର ରାଜପୋଷାକ ଧୋଇଛନ୍ତି,
ସେମାନେ ଧନ୍ୟ ହେବେ। ଜୀବନ ବୃକ୍ଷର ଫଳ ଖାଇବା
ପାଇଁ ସେମାନଙ୍କର ଅଧିକାର ରହିଛି। ସେମାନେ ନଗରୀ
ଭିତରକୁ ନଗରୀ ଦ୍ୱାର ଦେଇ ପ୍ରବେଶ କରିପାରିବେ।
୧୫କିନ୍ତୁ କୁକୁରମାନେ, ମନ୍ଦ କୁହୁକ କରୁଥିବା ଲୋକମାନେ,
ଯେଉଁମାନେ ଯୌନଗତ ପାପ କରନ୍ତି, ନରହନ୍ତାମାନେ,
ପ୍ରତିମାପୂଜକଗଣ, ମିଥ୍ୟାପ୍ରିୟ ଓ ମିଥ୍ୟାବାଦୀମାନେ ନଗରର
ବାହାରେ ରହିବେ।"
୧୬"ମୁଁ ନିଜେ ଯୀଶୁ। ମୁଁ ମଣ୍ଡଳୀଗୁଡ଼ିକୁ ଏହି ସମସ୍ତ
କହିବା ପାଇଁ ମୋର ଦୂତଙ୍କୁ ତୁମ୍ଭ ପାଖକୁ ପଠାଇଛି। ମୁଁ
ଦାଉଦଙ୍କ ପରିବାରର ବଂଶଜାତ। ମୁଁ ଉଜ୍ଜ୍ୱଳ ପ୍ରଭାତୀ
ତାରା।"
୧୭ଆତ୍ମା ଓ କନ୍ୟା କହନ୍ତି, "ଆସ!" ଏସବୁ ଶୁଣୁଥିବା
ପ୍ରତ୍ୟେକ ଲୋକ ମଧ୍ୟ କହୁ, "ଆସ!"। ଯେ ତୃଷାର୍ତ୍ତ, ସେ
ଆସୁ; ଯେ ଇଚ୍ଛା କରେ, ସେ ବିନା ମୂଲ୍ୟରେ ଜୀବନର
ଜଳପାନ କରିପାରେ।
୧୮ଏହି ପୁସ୍ତକର ଭବିଷ୍ୟଦ୍‌ବାଣୀର ବାକ୍ୟଗୁଡ଼ିକୁ ଶୁଣୁଥିବା
ପ୍ରତ୍ୟେକ ଲୋକକୁ ମୁଁ ସତର୍କ କରିଦିଏ। କେହି ଯଦି ଏହି
ବାକ୍ୟଗୁଡ଼ିକ ସହିତ କିଛି ଯୋଗକରେ, ତେବେ ପରମେଶ୍ୱର
ତାହାକୁ ଏହି ପୁସ୍ତକରେ ଲେଖାଥିବା କ୍ଳେଶଗୁଡ଼ିକ ଦେବେ।
୧୯ଯଦି କୌଣସି ବ୍ୟକ୍ତି ଏହି ପୁସ୍ତକରେ ଲିଖିତ ଭବିଷ୍ୟଦ୍‌ବାଣୀର
ବାକ୍ୟଗୁଡ଼ିକରୁ କିଛି କାଢ଼ି ଦିଏ, ତେବେ ପରମେଶ୍ୱର ଏହି
ପୁସ୍ତକରେ ଲିଖିତ ଜୀବନବୃକ୍ଷ ଓ ପବିତ୍ର ନଗରୀରୁ ତାହାର
ଅଧିକାର କାଢ଼ିନେବେ।
୨୦ଯୀଶୁ ହିଁ ଏସବୁ ସତ୍ୟ କହନ୍ତି। ବର୍ତ୍ତମାନ ସେ
କହନ୍ତି, "ହିଁ, ମୁଁ ଶୀଘ୍ର ଆସୁଛି।" ଆମେନ୍! ହେ
ପ୍ରଭୁଯୀଶୁ, ଆସନ୍ତୁ।
୨୧ପ୍ରଭୁ ଯୀଶୁଙ୍କର ଅନୁଗ୍ରହ ସମସ୍ତ ଲୋକମାନଙ୍କ ସହିତ
ରହିଥାଉ। ଆମେନ୍।

# License Agreement for Bible Texts

***World Bible Translation Center***
***Last Updated: September 21, 2006***



**These Scriptures:**

- Are copyrighted by World Bible Translation Center.
- Are not public domain.
- May not be altered or modified in any form.
- May not be sold or offered for sale in any form.
- May not be used for commercial purposes (including, but not limited to, use in advertising or Web banners used for the purpose of selling online add space).
- May be distributed without modification in electronic form for non-commercial use. However, they may not be hosted on any kind of server (including a Web or ftp server) without written permission. A copy of this license (without modification) must also be included.
- May be quoted for any purpose, up to 1,000 verses, without written permission. However, the extent of quotation must not comprise a complete book nor should it amount to more than 50% of the work in which it is quoted. A copyright notice must appear on the title or copyright page using this pattern: "Taken from the HOLY BIBLE: EASY-TO-READ VERSION™ © 2006 by World Bible Translation Center, Inc. and used by permission." If the text quoted is from one of WBTC's non-English versions, the printed title of the actual text quoted will be substituted for "HOLY BIBLE: EASY-TO-READ VERSION™." The copyright notice must appear in English or be translated into another language. When quotations from WBTC's text are used in non-saleable media, such as church bulletins, orders of service, posters, transparencies or similar media, a complete copyright notice is not required, but the initials of the version (such as "ERV" for the Easy-to-Read Version™ in English) must appear at the end of each quotation.

Any use of these Scriptures other than those listed above is prohibited. For additional rights and permission for usage, such as the use of WBTC's text on a Web site, or for clarification of any of the above, please contact World Bible Translation Center in writing or by email at distribution@wbtc.com.

World Bible Translation Center
P.O. Box 820648
Fort Worth, Texas 76182, USA
Telephone: 1-817-595-1664
Toll-Free in US: 1-888-54-BIBLE
E-mail: info@wbtc.com

**WBTC's web site –** World Bible Translation Center's web site: http://www.wbtc.org

**Order online –** To order a copy of our texts online, go to: http://www.wbtc.org

**Current license agreement –** *This license is subject to change without notice. The current license can be found at:* http://www.wbtc.org/downloads/biblelicense.htm

**Trouble viewing this file –** If the text in this document does not display correctly, use Adobe Acrobat Reader 5.0 or higher. Download Adobe Acrobat Reader from:
http://www.adobe.com/products/acrobat/readstep2.html

**Viewing Chinese or Korean PDFs –** To view the Chinese or Korean PDFs, it may be necessary to download the Chinese Simplified or Korean font pack from Adobe. Download the font packs from:
http://www.adobe.com/products/acrobat/acrrasianfontpack.html